## ରାଜା କୃଷ୍ଣସିଂହଙ୍କ କୃତ

# କର୍ଣ୍ଣପର୍ବ

## ସୂଚୀପତ୍ର





# ମହାଭାରତ

## କର୍ଣ୍ଣପର୍ବ

* * * * *

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାର ନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବହୁଳା କର୍ଣ୍ଣେନ ବେଳାକୁଳା ।।
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ କୁରୁନଦୀ କୈବର୍ତ୍ତକଃ କେଶବଃ ।।

### ମଙ୍ଗଳାଚରଣ

ଜୟ ଜଗନ୍ନାଥ ସାଗର ତଟ ବାସୀ
ପୀତବସନସ୍ୱାମୀ ଅସୁର ମୁର ଧ୍ୱଂସୀ ।
ଜୟ ଜଗନ୍ନାଥ ଦୁସ୍ତର ଭବସିନ୍ଧୁ
ଚରଣେ ତୁମ୍ଭ ନାମ ଭେଳା ଏକା ବନ୍ଧୁ ।
ଜୟ ଜଗନ୍ନାଥ ହେ ତମାଳ ବରନ
ଦଳିତ ଶତଦଳ ମଞ୍ଜୁଳ ନୟନ ।
ଜୟ ଜଗନ୍ନାଥ ବିପତ୍ତି ବିନାଶନ
ତୁମ୍ଭେ ତ ଏକା ତିନିଲୋକର ପାବନ ।
ଜୟ ଜଗନ୍ନାଥ ହେ ନୀଳଗିରି ହରି
ବାନା ବନ୍ଧିଅଛ ତ ପାତକୀ ଉଦ୍ଧାରି ।
ଜୟ ଜଗନ୍ନାଥ ହେ କମଳା ବିଳାସ
ମୁନି ଜନ ମାନସ ସରସିଜ ହଂସ ।
ଜୟ ଜଗନ୍ନାଥ ଅରକ୍ଷ ରକ୍ଷା କାରୀ
ଗୋପ କୁଳ ବଧୂ ସୁରତ ଅପହାରୀ ।
ଜୟ ଜଗନ୍ନାଥ ହେ ରାଧିକା ବିନୋଦ
ବକ ଅଘ କଂସ କେଶୀ ମଲ୍ଲ ବିବାଦୀ ।
ଜୟ ଜଗନ୍ନାଥ ହେ ଅନଳ ନିବାରି
କଦମ୍ବ ଗଛ ଚଢ଼ା ଯମୁନା ବିହାରୀ ।
ଜୟ ଜଗନ୍ନାଥ ହେ ଷଣ୍ଢ ବେକ ମୋଡ଼ା
ଶୀତୋଷ୍ଣ ସୁଖ ଦୁଃଖ ନ କର ମନ୍ଦ ଲୋଡ଼ା
ଜୟ ଜଗନ୍ନାଥ ହେ ଦେବଙ୍କ ପୂର୍ବଜ
ବ୍ରହ୍ମା ଇନ୍ଦ୍ର ରୁଦ୍ର ଉପରେ ତୁମ୍ଭେ ରାଜ ।
ଜୟ ଜଗନ୍ନାଥ ହେ ପ୍ରଳୟ କରତା
ସ୍ଥାବର ଜଙ୍ଗମାଦିଙ୍କର ମାତା ପିତା ।
ଜୟ ଜଗନ୍ନାଥ ହେ ସୁଭଦ୍ରା ଅଗ୍ରଜ
ଭବଗ୍ରାହୀ ବୋଲିଅ ଭକ୍ତେ ନ ବରଜ ।
ଜୟ ଜଗନ୍ନାଥ ହେ ରାବଣ ଅନ୍ତକ
ସୂର୍ପଣଖା ନାସିକା ଶ୍ରବଣ ଛେଦକ ।
ଜୟ ଜଗନ୍ନାଥ କଳାପି ପିଞ୍ଛ ଚୂଡ଼ା
ଅନାଥ ଲୋକନାଥ ଶଙ୍ଖ ଚକ୍ର ବାହା ।
ଜୟ ଜଗନ୍ନାଥ ହେ ଉତ୍କଟ ଶକଟ
ନାଶ କରି କରିଅ ମହିମା ପ୍ରକଟ ।
ଆଦି ସଭା ବନ ବିରାଟ ଉଦ୍‌ଯୋଗ
ଭୀଷ୍ମ ଦ୍ରୋଣପର୍ବ ଯାଏ ହୋଇ ଉଦବେଗ ।
ତୁମ୍ଭ ମହିମାରୁ କଲି ହେ ଗୀତ ମୁହିଁ
ଏବେ କର୍ଣ୍ଣପର୍ବକୁ ମୋ ସାଧ ବଳଇ ।
ମୋ ହୃଦରେ ବୁଦ୍ଧି ଦେଇଣ ହେ ଅଚ୍ୟୁତ
କରାଅ ଗୀତେ ସ୍ଫୁରି ଦୁଷ୍କୃତି ଦୂର ହତ ।
ମୋହର ତ ବୁଦ୍ଧି ଅଟଇ ଅତି ଅଳ୍ପ
ତୁମ୍ଭେ କର୍ଣ୍ଣପର୍ବ କରିବ ଜଳପ ।
ଏଥିକି ଜଣାଉଛି ଅନନ୍ତ ତଳପ
ପୂରାଇ ଦିଅ ମୋର ମାନସ ସଂକଳ୍ପ ।

ମୋ ଜ୍ୟେଷ୍ଠପିତା କୁରୁସିଂହ ନରମଣି
ଦ୍ରୋଣପର୍ବକୁ ଗୀତ କରିବାରେ ଶୁଣି ।
ଦ୍ରୋଣପର୍ବକୁ ମୁଁ ଗୀତରେ ନ କହିଲି
କର୍ଣ୍ଣପର୍ବ ଗ୍ରନ୍ଥ ବସି ଯେ ଆରମ୍ଭିଲି ।
ଏହାକୁ ସାଧୁଜନେ ମନରେ ଘେନିବ
ନକଲେ ଦ୍ରୋଣପର୍ବ ବୋଲି ନ ବୋଲିବ ।
ନ ଜାଣି ଶାସ୍ତ୍ରଅର୍ଥ ନିନ୍ଦିବା ଜନକୁ
ଅଛି ତ ଉତ୍ତର ସମାଧାନ କରିବାକୁ ।



## ସଞ୍ଜୟଙ୍କର କର୍ଣ୍ଣବଧ ଶେଷରେ ଧୃତରାଷ୍ଟ୍ରଙ୍କ ନିକଟକୁ ଆଗମନ

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଏଥୁଁ କର୍ଣ୍ଣପର୍ବ କହିବା ମନ ଦିଅ ।
ଦ୍ରୋଣ ଗୁରୁ ବୃଦ୍ଧାଦ୍ଭୁଅନ୍ତେ ରଣେ ହତ
ଅବଶେଷ ନୃପ ଆକୁଳ କରି ଚିତ୍ତ ।
ଦୁର୍ଯ୍ୟୋଧନ ରାଜାକୁ ଆଗରେ ଚଳାଇ
ଦ୍ରୋଣସୁତ ଭୁବେ ଦେଖା ହେଲେ ଯାଇ ।
ଆହା ଦ୍ରୋଣ ମଲେ ବୋଲି ତ ଧ୍ୱନି କଲେ
ମାରଜ-ନୟନରୁ ଲୋତକ ମୁଞ୍ଚିଲେ ।
ଦ୍ରୋଣି ସେହିରୂପେ ପିତାଙ୍କର ମରଣ
ଶୁଣି କଲେ ଅନ୍ତଃପୁରରେ ଯେ କାରୁଣ୍ୟ ।
ସବୁ ରାଜାମାନେ ମରଣ ନିତ୍ୟ ବୋଲି
କହିଲେ ଦୃଷ୍ଟାନ୍ତ ଦେଖାଇ ତାଙ୍କୁ ପେଲି ।
ଅଶ୍ୱତ୍ଥାମା ତା ଶୁଣି ହୋଇନ୍ତେ କେତେ ତୋଷ
ଗଲେ ରାଜାମାନେ ଯେ ଯାହା ବାସାବାସ ।
ରାଜାମାନେ ମନରେ ଦ୍ରୋଣଙ୍କ ମରଣ
ଭାବିବାରୁ ନିଦ୍ରା ନୋହିଲା ରାତ୍ର ଜାଣ ।
ବିଶେଷରେ ଦୁଃଶାସନ ଯେ ଦୁର୍ଯ୍ୟୋଧନ
ଶକୁନି କର୍ଣ୍ଣ ମନ କରି ଛନଛନ ।
ପରସ୍ପରେ ଏ କଥା ହୋଇଲେ ସେମାନେ
ଗଲେଁ ତ ଆମ୍ଭେ ହେ ଯମଙ୍କ ସଦନେ ।
ପାଣ୍ଡୁସୁତ-ସର୍ବେ ଯେ ସୁଖେ ଥିଲେ ଶୋଇ
ତାଙ୍କ ମୁଖେ ହାତ ଦେଲାଉଁ ବଳେ ନେଇ ।
ଏଥିକି ଆସି ଫଳୁଅଛି ଯେଉଁ ଫଳ
କି କରିବା ତହିଁକି ମନ୍ଦ ତ କପାଳ ।

ଏରୂପେ ଅନେକ ଭାବନା କରି କରି
ବଡ଼କଷ୍ଟେ ଦେଲେ ସେ ରଜନୀଟି ମାରି ।
ଶୋଇବା ଆସନକୁ ଛାଡ଼ି ସବୁ ରାରେ
ସ୍ନାନ ଜପ ତପସ୍ୟା କରି କି ବିଧିରେ ।
ଦୁର୍ଯ୍ୟୋଧନଙ୍କର ମତରେ ସ୍ଥିତ ହୋଇ
ସେନାପତି କଲେ ସେ କର୍ଣ୍ଣଙ୍କୁ ବସାଇ ।
ବ୍ରାହ୍ମଣଙ୍କୁ ଗାଈ ସୁବର୍ଣ୍ଣ ବସ୍ତ୍ରଦାନ
ବହୁତ ଦେଲେ ଜିଣିବାକୁ ପାଣ୍ଡୁ ସୈନ୍ୟ ।
ସୁତ ମାଗଧରେ ସେ ହୋଇଣ ବନ୍ଦିତ
ଯୁଦ୍ଧକୁ ବାହାରିଲେ ଧୈର୍ଯ୍ୟ ଧରି ଚିତ୍ତ ।
ଏହା ଦେଖିଣ ଜିତକାମୀ ପାଣ୍ଡୁସୁତେ
ସକାଳ କର୍ମଯାକ ସାରିଣ ତୁରିତେ ।
ଯେ ଯାହାର ସେ ରଥମାନଙ୍କରେ ବସି
ବାହାରିଲେ ଧନୁକୁ ଦୁଇହାତେ କଷି ।
ଏରୂପେ ଦୁଇଦଳଯାକ ପାଣ୍ଡୁସୁତେ
କର୍ଣ୍ଣ ଭୁଲେ ଯୁଦ୍ଧ କରିଣ କ୍ରୋଧଚିତ୍ତେ ।
ଅରଜୁନ କାଣ୍ଡରେ ଯମଦାଣ୍ଡେ ନେଇ
ରାଧାର ନନ୍ଦନକୁ ଦେଲେଟି ବସାଇ ।
କର୍ଣ୍ଣଭାର୍ଯ୍ୟା ତ ରାଣ୍ଡ ହୋଇଣ ଦରାଣ୍ଡି—
ଦାଣ୍ଡଧୂଳି କାନ୍ଦିଲେ ଲୋଟାଇ ମହୀ ଗଣ୍ଡି ।
ସଞ୍ଜୟ ତ କୁରୁଙ୍କ ଭୁଲେ ଯୁଝୁଥିଲେ
ମରନ୍ତେ କର୍ଣ୍ଣ ଧୃତରାଷ୍ଟ୍ର ପାଖେ ଗଲେ ।



## ସଞ୍ଜୟଙ୍କର କର୍ଣ୍ଣବଧ ସମ୍ବାଦ ଦାନ

ସଞ୍ଜୟ ମୁହିଁ ବୋଲି କରି ଜଣାମଣା
କଲେ ଧୃତରାଷ୍ଟ୍ରଙ୍କ ପାଦରେ ବନ୍ଦନା ।
ଧୃତରାଷ୍ଟ୍ର ବୋଇଲେ ଯୁଝୁଁ ତ ଆସିଲ
କହ ମୋହର ପୁଅମାନଙ୍କର ଭଲ ।
ସଞ୍ଜୟ ବୋଇଲେ ହେ କି କହିବି ରାଜେ
ମଲେ ତୁମ୍ଭ କର୍ଣ୍ଣ ଅର୍ଜୁନ କାଣ୍ଡଯାଏ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଶୁଣି ଭୀଷ୍ମ ଦ୍ରୋଣ ଦୁହିଙ୍କର ନିଧନ ।
ଧୃତରାଷ୍ଟ୍ର ରାଜା ତ ସାହସ ଉଡ଼ାଇ
ଥିଲେ ଏହା ଶୁଣିଣ ଜୀଇଲେ ସେ କେହି ।
ବାହ୍ଲିକ ଭୂରିଶ୍ରବା ସୋମଦତ୍ତ ସାର
ଆଦି ରଥୀମାନେ ତ ହୋଇଲେ ସଂହାର ।

ଏ ବାର୍ତ୍ତାରେ ପୁଅମାନେ ସେ କ୍ଷୟ ହେଲେ
ଏହା ଶୁଣି ଜୀବନ କିରୂପେ ରଖିଲେ ।
ପଥରଠାରୁ ତାଙ୍କ ହୃଦୟ କଠିନ
ଅଟେ କି କହ ମୋତେ ବୈଶମ୍ପାୟନ ।
ବୈଶମ୍ପାୟନ ବୋଇଲେ ଜନ୍ମେଜୟ
ଯୁଦ୍ଧଦାଣ୍ଡରୁ ଯାଇ କରଣ ସଞ୍ଜୟ ।
ଧୃତରାଷ୍ଟ୍ର ରାଜାଙ୍କୁ ବୋଇଲେ ନୃପତି
ଭଲେ ଅନ୍ଧ ଟିକି ନ ପାଇଣ ସ୍ୱପତ୍ତି ।
ବିଦୁର ଦ୍ରୋଣ କୃଷ୍ଣ ଭୀଷ୍ମଙ୍କ ବଚନ
ନ ଶୁଣିବା ଫଳକୁ ଭୁଞ୍ଜ ହେ ରାଜନ ।
ମୁହିଁ ମଧ୍ୟ ତୁମ୍ଭଙ୍କୁ ବହୁତ ଥର
କହିଛି ତାହା ନ ଶୁଣିଲ ଦଣ୍ଡଧାରି ।
ଭୀଷ୍ମ ଦ୍ରୋଣ ଆଦି ବୀରଙ୍କୁ ମରାଇଲ
ତେବେ ଯେତେ ରାଜ୍ୟ ଲୋଭ ନ ଛାଡ଼ିଲ ।
ଏବେ ତ ସୂତପୁତ୍ର କର୍ଣ୍ଣଙ୍କୁ ବଡାଇ
ଦେଲେ ଅର୍ଜୁନ ହେ କରଣ ଲଢ଼ାଇ ।
ଏଣିକି ରକ୍ଷା ହେବା ଉପାୟ ନୃବର
ପୁଅଙ୍କୁ ଡକାଇଣ ଏକାନ୍ତେ ବିଚାର ।

—❈—

## ଧୃତରାଷ୍ଟ୍ରଙ୍କର ଅନୁତାପ ଓ ଯୁଦ୍ଧ ବୃତ୍ତାନ୍ତ ଶୁଣିବାପାଇଁ ସଞ୍ଜୟଙ୍କୁ ଅନୁରୋଧ

ଧୃତରାଷ୍ଟ୍ର ବୋଇଲେ ଭୀଷ୍ମ ମହାରଥୀ
ଜିନି ଦଶସହସ୍ର ରଥୀଙ୍କ ପ୍ରାଣ ମନ୍ଥି ।
ଶିଖଣ୍ଡୀକାଣ୍ଡେ ଗଣ୍ଡି-ହାଣ୍ଡି କି ଗଲାଇ
ତେଡ଼େଭଲ ଲୋକ ଶୋଇଲେ ଦୁଃଖୀହୋଇ
ତାହା ଶୁଣି ମୋ ମନ ବ୍ୟସ୍ତ ହେଉଥିଲା
ପୁଣି ଦ୍ରୋଣଙ୍କର ତ ନିଧନ ହୋଇଲା ।
ଏଥୁଁ ମୁଁ ଜାଣିଲି ମୋହର ବଧ କୁଳ
ଛେଚିବେ ଖଡ଼୍ଗବାହୁ ଲୋଟାଇ ତଳେ ବାଳ
ପର୍ଶୁରାମ ପ୍ରସାଦେ ଦ୍ରୋଣ ଦ୍ୱିଜବର
ପାରନ୍ତି ଜିଣି କଲେ ଯୁଦ୍ଧ ପୁରନ୍ଦର ।
ତିନି ଲୋକ ଜିଣି ତ ପାରେ ଦ୍ରୋଣ ବାହା
ସେ ମରନ୍ତେ କି କଲେ ଯୋଏ କହ ତାହା ।

ସଂଶପ୍ତକମାନେ ଅର୍ଜୁନ କାଣ୍ଡଘାତ
ପାଇ କରି ହେଲେ ଯମଙ୍କ କରଗତ ।
ନାରାୟଣ ଅସ୍ତ୍ର ପ୍ରତାପେ ଦ୍ରୋଣପୁତ୍ର
ପାଣ୍ଡବସେନାଙ୍କର କମ୍ପାଇଲେ ଗାତ୍ର ।
ପାଣ୍ଡବସୈନ୍ୟ ସିନ୍ଧୁ ଦ୍ରୋଣ ନାବ ପାଇ
ମୋ ପୁଅ ତରିବାକୁ ଥିଲେ ସିନା ଧାଇଁ ।
ଅର୍ଜୁନ ବାତବଳେ ତ ସେ ନାବୁଟି
ଭାଙ୍ଗିଲା କି କଲା ମୋ ପ୍ରଥମ ବେଠାଟି ।
ଏହା ମୋତେ ବିସ୍ତାରି କରଣ ସଞ୍ଜୟ
କହିକରି କର ସନ୍ତୋଷ ମୋ ହୃଦୟ ।
କର୍ଣ୍ଣ ଦ୍ରୌଣି କୃପ ଶଲ୍ୟ ଯେ କୃତବର୍ମା
ଏମାନେ ତ ଅଟନ୍ତି ମହତକରମା ।
ଅଶ୍ୱତ୍ଥାମା ଯେ ନାରାୟଣ ଅସ୍ତ୍ର ହତ
ଦେଖି କରି କଲେ ଟିକିଏ ଦୁଃଖ ଚିତ୍ତ ।
ଏହା ମୋର ଆଗରେ ବିଶେଷାବିଶେଷି
କରି କହ ଆହେ ସଞ୍ଜୟ ମନ୍ତ୍ରୀ ବସି ।
ସଞ୍ଜୟ ବୋଇଲେ ଦଇବ ଯା କରିଛି
ତା କହୁଛି ଶୁଣ ବିଚିତ୍ରବୀର୍ଯ୍ୟବହ୍ନି ।
ତୁମ୍ଭ ଅପରାଧୁ କ୍ଷତ୍ରିୟେ ହେଲେ ବଧ
ଭାଳିଲେ ବୋଲିବେଟି ଜଗତେ ଦୁର୍ବୋଧ ।
ଧୃତରାଷ୍ଟ୍ର ବୋଇଲେ ଏଥି କିଛି ଚିନ୍ତା
ନାହିଁ ହେ ସଞ୍ଜୟ ଶୁଣିବି ଯୁଦ୍ଧବାର୍ତ୍ତା ।
ସଞ୍ଜୟ ବୋଇଲେ ମରନ୍ତେ ଦ୍ରୋଣଗୁରୁ
ତୁମ୍ଭ ପୁଅମାନେ ହୋଇଣ ଯୁଦ୍ଧଭୀରୁ ।
ତଳକୁ ମୁଣ୍ଡ କରି ନ କହିଲେ କଥା
ଶୁକ୍ଳ ପନ୍ତ ଘେନିଲା ଦ୍ରୋଣ ମଲା ବ୍ୟଥା ।
ତୁମ୍ଭ ପୁଅମାନଙ୍କର ଏ ଦଶା ଦେଖି
ତୁମ୍ଭ ସୈନ୍ୟପ କି ହୋଇଲେ ମଧ୍ୟ ଦୁଃଖୀ ।
ସୈନ୍ୟଙ୍କ ହସ୍ତ ଆକାଶରୁ ଶସ୍ତ୍ରଗଣ
ତାର ପରି ଖସି ମହୀରେ କଲା ସ୍ଥାନ ।
ଦୁର୍ଯ୍ୟୋଧନ ରାଜା ତା ଦେଖି ସଇନକୁ
ବୋଇଲେ ତୁମ୍ଭ ବଳେ ଯୁଝିଲି ଶତ୍ରୁଙ୍କୁ ।
ଏବେ ହେ ତୁମ୍ଭେ ଶସ୍ତ୍ର ପକାଇ ନ ରହ
ଦ୍ରୋଣ ମଲେ ବୋଲି ହୃଦରେ କିମ୍ବା କୋହ
ଯୁଦ୍ଧକଲେ ତ ଜୟ ପରାଜୟ ଦୁଇ
ଶାସ୍ତ୍ର ଲେଖିଅଛି ତା ଅବଶ୍ୟ ହୁଅଇ ।

ଏହି ସକାଶରୁ ମୋ ବୋଲ କର ସେନା—
ରଣ ଯୁଦ୍ଧେ କର ହେ ପୂର୍ବ ମୋ କାମନା ।
କର୍ଣ୍ଣ ଦେଖ ଏକାକୀ ହୋଇ ସିଂହପରି
ଖଦାରେ କାଣ୍ଡ ନଖେ ପାଣ୍ଡୁ ସୈନ୍ୟ କରି
ଦେଖ ହେ ଅର୍ଜୁନ କର୍ଣ୍ଣର ରୂପଟି
ଦେଖିଣ ରହିଅଛୁ ଆଖିକି ତରାଟି ।
ନାଗାୟୁତ ପରାଏ ଭୀମ ଅଙ୍ଗେ ବହି
କର୍ଣ୍ଣଙ୍କୁ ଯୁଦ୍ଧଦାଣ୍ଡେ ନ ପାରିଲେ କହି ।
ମହାବଳୀ ଯେ ଘଟୋତ୍କଚ ରାକ୍ଷସ
କର୍ଣ୍ଣ ଶକ୍ତିରେ ତ ଦେଖିଲେ ହେଲା ନାଶ ।
ଏବେ କର୍ଣ୍ଣ ବାହୁବଳକୁ ଆଶ୍ରେ କରି
ହଅ ପାଣ୍ଡୁ ସଇନଯାକଙ୍କୁ ସହାରି ।
ଆଜ ହେ ଦ୍ରୋଣପୁତ୍ର ପିତୃଛଳେ ଯାହା
କହିବେ ବଚନେ କେ ଏରେ କହି ତାହା ।
ଏହି ବଚନମାନ କର୍ଣ୍ଣ କର୍ଣ୍ଣେ ଶୁଣି
ଯୁଦ୍ଧ କଲେ କ୍ରୋଧରେ ହୋଇ ଠାଣିଠୁଣି ।
ବିଦେହ ସଞ୍ଜୟ ଯେ ପାଞ୍ଚାଳ କେକୟ—
ମାନଙ୍କର ଦମ୍ଭ ଦଳେ ଯେ ପୀଡ଼ାଚୟ ।
କର୍ଣ୍ଣ ଧନୁର୍ଗୁଣ ବାହାରି ଶରପନ୍ତି
ପକ୍ଷୀଙ୍କ ପିବା ବାଟେ କରି ଅନ୍ତ ଗତି ।
ଭ୍ରମର ପରି ପାଣ୍ଡୁ ସେନା ହୃଦ ପଦ୍ମ—
ରକତ ମଧୁ ପାନ କଲେ ଛାଡ଼ି ଛଦ୍ମ ।
ମହାବଳ କର୍ଣ୍ଣ ଯୁଦ୍ଧରେ ହୋଇ ଦୁଃଖୀ
ଅର୍ଜୁନ ଶରେ ସେନ ଗଲେ ଯମ ଦେଖି ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଶୁଣି ଧୃତରାଷ୍ଟ୍ର ଯେ କର୍ଣ୍ଣଙ୍କର କ୍ଷୟ ।
ହା କର୍ଣ୍ଣ ମଲ ବୋଲି ଉଚ୍ଚେ ଦେଇ ରଡ଼ି
ପଡ଼ିଲେ ମହୀଦେଶେ ଦେହୁଁ ଜ୍ଞାନ ଛାଡ଼ି ।
ଧୃତରାଷ୍ଟ୍ର ରାଜାଙ୍କ ମୂର୍ଚ୍ଛା ଦେଖି ଅନ୍ତଃ—
ପୁର ସ୍ତ୍ରୀ ଜାଣିଲେ କୁରୁଙ୍କ ହେଲା ଅନ୍ତ ।
ପ୍ରଭୁ ସ୍ନେହେ ସମସ୍ତେ ପାଣ୍ଡବଙ୍କୁ ନିନ୍ଦି
କ୍ଷିରେ କର ଚାଡ଼ି ବସିଲେ ଦୁଃଖେ କାନ୍ଦି ।
ଗାନ୍ଧାରୀ ପତିଙ୍କ କନ୍ଦିବା ଦଶା ଜାଣି
ସେହି ମଧ୍ୟ କାନ୍ଦିଲେ ଲୋଟିଣ ଧରଣୀ ।
ସଞ୍ଜୟ ବୋଇଲେ ନ କାନ୍ଦ ଶ୍ରିତଜନ
କ୍ଷୁଦନା କର ତୁମ୍ଭ କର୍ମ ହୀନମାନ ।

ଭାଇଭାଗ ନ ଦେଇ ଆମ୍ଭ ଅନ୍ଧରାଜା
ଯୁଦ୍ଧ କଲା ମାନସରୁ ତ ଛାଡ଼ି ଲଜ୍ଜା ।
ଏଥିକି ଅନୁରୂପ ଫଳ କପାକୃତି—
ମାନଙ୍କରେ ଦେଖ ତ ଅଛ ପରମେଷ୍ଠୀ ।
ତା ଆନ କରିବାକୁ କାର ଅଛି ବଳ
ରହ ତୁମ୍ଭେ ହୋଇ ନ ଲେଟି ଭୂମିତଳ ।
ବିଦୁର ଧୃତରାଷ୍ଟ୍ର ମୁଖେ ପାଣି ସିଞ୍ଚି
ବାୟୁନ୍ତେ ଉଠିଲେ ସେ ମନୁଁ ମୋହ ମୁଞ୍ଚି ।
ମନେ ମନେ ସେ ଆପଣାକୁ ନିନ୍ଦାକଲେ
ପୁଣି ସଞ୍ଜୟଙ୍କୁ ବୃଦ୍ଧିଣ ଯେ ପୁଚ୍ଛିଲେ ।
କର୍ଣ୍ଣ ମରିବାର ଦେଖିଣ ଦୁର୍ଯ୍ୟୋଧନ
କହ ଆହେ ସଞ୍ଜୟ ହେଲା କି ନିଧନ ।
ସଞ୍ଜୟ ବୋଇଲେ ହେ ତୁମ୍ଭ ପୁଅ ଜୀଇ
ଅଛି କର୍ଣ୍ଣ ଗଲେ ଯମଙ୍କୁ ଏକା ଚାହିଁ ।
କେବଳ ଦୁଃଶାସନ ପ୍ରାଣ ଭୀମସେନ
ସେନ ତାଙ୍କ ରକତ କଲେ ମୁଖେ ପାନ ।
ଧୃତରାଷ୍ଟ୍ର ବୋଇଲେ ଶୁଣ କର୍ଣ୍ଣ ମୃତ୍ୟୁ
ବୁଡ଼ି ଯାଇଛି ହେ ସଞ୍ଜୟ ମୋର ହେତୁ ।
କୁରୁ ପାଣ୍ଡବରେ ମଲେ କେ ଜୀଇଛନ୍ତି
ଏହା ମୋତେ ବତାଇ କହ ମହାମତି ।
ସଞ୍ଜୟ ବୋଇଲେ ଅର୍ବୁଦେ ଯୋଦ୍ଧା ପ୍ରାଣ
ଦଶଦିନେ ମାରିଣ ଭୀଷ୍ମ ମଲେ ଜାଣ ।
ଦ୍ରୋଣ ପାଞ୍ଚ ଲକ୍ଷଙ୍କୁ ଯେ ତୁମ୍ଭଙ୍କୁ ଦେଖାଇ
ସେହି ମଧ୍ୟ ଯମପାଶକୁ ଗଲେ ଧାଇଁ ।
କର୍ଣ୍ଣ ପାଣ୍ଡୁ ସୈନ୍ୟ ସଂହାରି ବହି କ୍ରୋଧ
ତୁମ୍ଭଙ୍କୁ ଦେଖିଗଲେ ଯୁଦ୍ଧେ ପାଇ ବୋଧ ।
ତୁମ୍ଭ ପୁତ୍ର ଦ୍ୱିବିଂଶତି ଯେ ରାଜପୁତ୍ର
ଶତେ ମାରି ଶରରେ ପୋଡ଼ାଇଲେ ଗାତ୍ର ।
ବିକର୍ଣ୍ଣଙ୍କ ମୁଣ୍ଡ କାଟନ୍ତେ ବାତବେଗା
ଦେଲା ତାଙ୍କ ଗଣ୍ଡିଟି ଭୂମିକି ସାଉଣ୍ଟା ।
ବନ୍ଧ ଅନୁବନ୍ଧ ଦୁଷ୍କର କର୍ମକରି
ଅର୍ଜୁନ କାଣ୍ଡରେ ଶୋଇଲେ ରାତ୍ରେ ମରି ।
ଜୁଆଇଁ ଜୟଦ୍ରଥ ମାଥ ଏକା ପାର୍ଥ
ଆଣିଣ କାଟିଲେ ଦେଖାଇ ସମରଥ ।
ଅଭିମନ୍ୟୁ କାଣ୍ଡରେ ତୁମ୍ଭର ନାତିଟି
ଲକ୍ଷଣ ଗଲେ ରାଜ୍ୟ ଯମଙ୍କୁଟି ଭେଟି ।

ଦ୍ରୌପଦୀ ସୁତଙ୍କର ପାଇ ମାରଗଣ
ଦୁଃଶାସନ ସୁତ ଯେ ପାଇଲେ ମରଣ ।
କରାତମାନଙ୍କ ଅଧିପ ଭଗଦତ୍ତ
ଅର୍ଜ୍ଜୁନ ମାରଣଗଣେ ହେଲେ ହତ ।
ଭୂରିଶ୍ରବା ସାତ୍ୟକି ବାଳ ଜରେ ଝିଙ୍କି
ଧରନ୍ତେ ମାଇଲେ ସେ ତାଙ୍କୁ ଖଣ୍ଡା ଟେକ ।
ଶ୍ରୁତାୟୁ ଯୁଦ୍ଧଦାଣ୍ଡ-ବନେ ସିଂହପରି
ଗତ୍ତ କରୁଥିଲେ ସାୟକ-ନଖ ଧରି ।
ଅର୍ଜ୍ଜୁନ ଧନୁରୁ ବାହାରି ପଳ ପଳ
ଶର-ଶରଭରେ ମଲେ ସେ ମହାମଲ୍ଲ ।
ଦୁଃଶାସନ ଭୀମ ହାତରେ ପ୍ରାଣ ଦେଲେ
ସୁଦକ୍ଷିଣ ଶରକୁ ଅର୍ଜ୍ଜୁନ ମାଇଲେ ।
ବୃଦ୍‌ବହଳ ବଳ ନ ପାରିଣ ଦେଖାଇ
ଅର୍ଜ୍ଜୁନ କାଣ୍ଡେ ମରି ଶୋଇଲେ ସେ ଭୂଇଁ ।
ଭୀମଙ୍କ ସଙ୍ଗେ ଚିତ୍ରସେନ ଯୁଦ୍ଧ କଲେ
ନ ପାରିବାରୁ ଯମ ଦାଣ୍ଡକୁ ପାଇଲେ ।
ଶଲ୍ୟଙ୍କର ପୁଅଟି କରୁଥିଲା ଯୁଦ୍ଧ
ଅରଜୁନ କ୍ରୋଧରେ ହୋଇଲା ସେ ବଧ ।
କର୍ଣ୍ଣଙ୍କର ପୁଅ କର୍ଣ୍ଣ ବୃହ୍ମଁ ବୃହ୍ମଁ
ଘେନଗଲେ ପ୍ରାଣ ଗାଣ୍ଡୀବ ଧରିବାହୁ ।
ଭଗୀରଥ ବୃହତକ୍ଷେତ୍ରଙ୍କୁ ନକୁଳ
ସହଦେବ ମାଇଲେ କରି ରଣଗୋଳ ।
ଭଗଦତ୍ତ ପୁତ୍ର ନକୁଳ ରଣେ ଭେଟି
ଭେଟାଇବେ ତାହାଙ୍କୁ ସୂର୍ଯ୍ୟଙ୍କ ବେଟାଟି ।
ଭୀଷ୍ମର ପିତାମହ ବାହ୍ଲିକଙ୍କୁ ଭୀମ
ମାରିଣ ଦେଖାଇଲେ ଯମଙ୍କର ଗ୍ରାମ ।
ଜୟସେନ ଜୟସନ୍ଧ ଯେ ମଗଧଙ୍କୁ
ଅଭିମନ୍ୟୁ ନେଲେ ହେ ଯମଙ୍କ ଦାଣ୍ଡକୁ ।
ଦୁର୍ମୁଖ ଦୁଃସହଙ୍କୁ ମାରି ଭୀମସେନ
କଲେ ସେ ପ୍ରେତଙ୍କର ପତିଙ୍କ ଅଧୀନ ।
ଦୁର୍ଜୟ ଦୁର୍ମର୍ଷଣ ଦୁର୍ବିସହ ତିନ
ପୁତ୍ରଙ୍କୁ କଲେ ଭୀମ ମାରି ଯମସ୍ଥାନ ।
କଳିଙ୍ଗ ଦେଶ ରାଜା ଦୁହେଁ ଯୁଦ୍ଧେ ମଲେ
ବୃଷଧର୍ମା ରାଜାଙ୍କୁ ଭୀମ ସଂହାରିଲେ ।
ଅଯୁତେ ହାତୀବଳ କଉରବ ରାଜା
ଅର୍ଜ୍ଜୁନ କାଣ୍ଡେ ମରି ନେଲେ ସ୍ୱର୍ଗ ପୂଜା ।

ଦ୍ୱିସହସ୍ର ବସାନ୍ତ ଶିବ କଳିଙ୍ଗଙ୍କୁ
ଅରଜୁନ ପେଷିଲେ ପ୍ରେତଙ୍କ ପୁରକୁ ।
ସଂଶପ୍ତକମାନେ ଯୁଦ୍ଧରେ ହୋଇ କ୍ଷୟ
ପୂର୍ଣ୍ଣ କଲେ ଦାରୁଣ ଯମଙ୍କର କ୍ଷୟ ।
ଭୀଷ୍ମ ଶଳା ନୃପଙ୍କ ଅବଳା ଅବଳ
ଯୁଦ୍ଧ କରି ମାରିଲେ ଇନ୍ଦ୍ରଙ୍କ ଦୁଲାଳ ।
ଉଗ୍ରକର୍ମା ଶାଲ୍ୱ ରାଜକୁ ଭୀମବର୍ମା
ଶରବଳୀ ଅଗ୍ନିରେ ପକାଇଲେ ଜାଳି ।
ଓଘବାନ ବୃହନ୍ତ ଯୁଦ୍ଧେ ହେଲେ ହତ
ନୃହନ୍ତ ତ ସେମାନେ ଅତି ବଳବନ୍ତ ।
କ୍ଷେମଧୂର୍ତ୍ତି ପାଆନ୍ତେ ଭୀମ ଗଦାବାଡ଼
ପ୍ରିୟ ପ୍ରାଣୁଟିକି ଦେହରୁ ଦେଲେ କାଢ଼ି ।
ଜଳସନ୍ଧ ସାତ୍ୟକି ହାତୁ ବାଣ ପାଇ
ଯାଇଲେ ପରଲୋକ ହସ୍ତିନା ନୃସାଇଁ ।
ଅଳଂବୃଷ ଘଟୋତ୍କଚ ହାତେ ହତ
ହେଲା ଜାଣି ଆହେ ଅମ୍ବିକା ଦେଶସୁତ ।
ରାଧେୟ ସୁତପୁତ୍ର କେକୟଗଣର
ପରାଣ ଘେନଗଲେ ଅରଜୁନ ଶର ।
ଯୋଧେୟ ଉଶୀନର ମାଳବ ମଦ୍ରକ
ଦ୍ରାବିଡ଼ ଦାକ୍ଷିଣାତ୍ୟ ସାରନ୍ଧ୍ର୍ୟ ପୁଣ୍ଡ୍ରକ ।
ପ୍ରାଚ୍ୟୋଦୀଚ୍ୟ ପ୍ରତୀଚ୍ୟ ମିଶିମାରେଲୁକ
ଏମାନଙ୍କୁ ମାଇଲେ ସୁଭଦ୍ରା ନାୟକ ।
ଏ ବାହାରେ ଅଯୁତାୟୁତ ହାତୀ ରଥୀ
ହୟ ପାଇକଙ୍କର ପ୍ରାଣ ଦେଲେ ମନ୍ଥି ।
ଏହା ହୋଇକରି ଗାଣ୍ଡିବଧନୁ ବାହା
ମୋ କହିବାରୁ ଜାଣ ହସ୍ତିନା ନୃନାହା ।
କର୍ଣ୍ଣ ଅରଜୁନ ଦୁହିଁଙ୍କ ସମାଗମେ
ଏତେ ଲୋକ ଯାଇ ବସିଲେ ଯମ ଗ୍ରାମେ ।
ବୃତ୍ରଙ୍କୁ ଶଚୀପତି ରାବଣଙ୍କୁ ରାମ
କୃତବୀର୍ଯ୍ୟ ତନୟଙ୍କୁ ତ ପର୍ଶୁରାମ ।
ନରକକୁ କୃଷ୍ଣ ଯେ ଅନ୍ଧକକୁ ହର
ମହିଷେ କୁମାରୀ ମାଇଲା ପରି ଧର ।
ଶର ଅରଜୁନ ଯେ କର୍ଣ୍ଣଙ୍କୁ ସଂହାରି
ହେଲେ ଯୁଧିଷ୍ଠିର ନୃପଙ୍କ ଜୟକାରୀ ।
ବନ୍ଧୁମାନଙ୍କର ଯେ କହିବା ବଚନ
ନ ଘେନିମା ଫଳକୁ ଭୁଞ୍ଜ ହେ ରାଜନ ।

ଧୃତରାଷ୍ଟ୍ର ବୋଲେ ମୋ ଲୋକ ଶରଘାତେ
ପାଣ୍ଡବଲୋକ କେତେ ମଲେ କହ ମୋତେ ।
ସଞ୍ଜୟ ବୋଇଲେ ହେ ଅନୁବନ୍ଧ ଭୂଲେ
କୁନ୍ତଦେଶ ରାଜାଙ୍କୁ ଭୀଷ୍ମ ସଂହାରିଲେ ।
ଏ ବାହାରେ ଯେ ନାରାୟଣ ବନଯାକ
ମାଇଲେଣି ଭୀଷ୍ମ ରଥିଙ୍କ ହେ ନାୟକ ।
ସତ୍ୟଜିତ ରାଜାଙ୍କୁ ଦ୍ରୋଣବୁଢ଼ା ମାରି
ହେଲେ ତୁମ୍ଭ ଲୋକମାନଙ୍କ ହିତକାରୀ ।
ଦ୍ରୁପଦ ବିରାଟଙ୍କୁ ଦେଖାଇ ବିକ୍ରମ
ମାଇଲେ ମଧ୍ୟ ଦ୍ରୋଣ ଦ୍ୱିଜଙ୍କ ଉତ୍ତମ ।
ଅର୍ଜୁନ ପ୍ରିୟପୁତ୍ର ଅଭିମନ୍ୟୁ ବୀର
ଦୌଶାସନ ହାତେ ଯେ ଗଲେ ଯମପୁର ।
ଅମ୍ବଷ୍ଠ ରାଜା ତୁମ୍ଭ ଲକ୍ଷ୍ମଣେର ହାତେ
ପ୍ରାଣ ଦେଲେ ରାଜନ ଜାଣ ମହାମତେ ।
ବୃହନ୍ତ ଦୁଃଶାସନ ବିକ୍ରମକୁ ପାଇ
ବସିଲେ ଯମଙ୍କର ସମୀପେ ସେ ଯାଇଁ ।
ମଣିମାନ ଦଣ୍ଡଧରକୁ ଦ୍ରୋଣବୁଢ଼ା
ମାରି ପକାଇଲେ ଦେଖାଇ ଯୁଦ୍ଧପୌଢ଼ା ।
ଅଂଶୁମାନ ଦ୍ରୋଣର ପାଇଣ ଆଶୁଗ
ଛାଡ଼ିଦେଲେ ଦେହରୁ ପ୍ରିୟ ପ୍ରାଣଖଗ ।
ଚନ୍ଦ୍ରସେନ ନୃପେ ସମୁଦ୍ରସେନ ଯୋଟି
ଯୁଦ୍ଧରେ କାଟିଦେଲେ ତାହାଙ୍କ ମୁଣ୍ଡଟି ।
ନୀଳ ବ୍ୟାଘ୍ରଦତ୍ତ ଦୁହିଁଙ୍କି ଅଶ୍ୱତ୍ଥାମା
ମାଇଲେ ଦେଖାଇଣ ତାହାଙ୍କ ମହିମା ।
ଚିତ୍ରାୟୁଧ ଚିତ୍ରଯୋଧିକ ଯେ ବିକର୍ଣ୍ଣ
ମାଇଲେ ଶରେ ଖୋଳି କରି ତାଙ୍କ କର୍ଣ୍ଣ ।
ବୃକ କେକୟ ତ ଅଟନ୍ତି ଦୁହେଁ ଭାଇ
କେକୟ ଯୁଦ୍ଧେ ଦେଲେ ବୃକଙ୍କୁ ବଢ଼ାଇ ।
ଗଦାଯୋଧୀ ଜନମେଜୟଙ୍କୁ ଦୁର୍ମୁଖ
କୁନ୍ତ ପୁତ୍ର ମାଇଲେ ତୀକ୍ଷ୍ଣ ବିଶିଖ ।
ରୋଚମାନ ଦୁଇ ରାଜ ତ ହଣ୍ଟକାରୁ
ଯୁଦ୍ଧଭାଣ୍ଡେ ମାଇଲେ ତାଙ୍କୁ ଦ୍ରୋଣଗୁରୁ ।
ଅର୍ଜୁନମାମୁଁ ପୁରୁଜିତ କୁନ୍ତିଭୋଜ
ମଲେ ପାଇକରି ଦ୍ରୋଣଙ୍କ ନାରାଜ ।
କାଶୀଦେଶରାଜାକୁ ବସୁଦାନସୁତ
ଦେଖାଇ ନିଜ ବଳ ଯୁଦ୍ଧେ କଲେ ହତ ।
ବୃହତ୍କ୍ଷେତ୍ର କ୍ଷତ୍ରୀ ଦେବଶତ୍ରୁ ମାରି
ପ୍ରିୟ ପ୍ରାଣୁଟିକ ଛାଡ଼ିଲେ ଦଣ୍ଡଧାରୀ ।
କୃତବର୍ମା ମିତ୍ରବର୍ମା ଏ ଦୁଇ ପୁତ୍ର
ଦ୍ରୁପଦଙ୍କର ହେଲେ ଦ୍ରୋଣ କାଣ୍ଡେ ହତ ।
ଶିଖଣ୍ଡୀ ପୁତ୍ର କ୍ଷତ୍ରଦେବେ ତୁମ୍ଭ ନାତି
ଲକ୍ଷ୍ମଣ ମାରିଦେଲେ ଶରବନ୍ଧ ଅତି ।
ସୁଚିତ୍ର ଚିତ୍ରବର୍ମା ଦୁହେଁ ପିତା ପୁତ୍ର
ଜାଣ ଆହେ ରାଜନ ଦ୍ରୋଣ କଲେ ହତ ।
ସେନାବିନ୍ଦୁ ରାଜା ଯେ ବାହ୍ଲିକଙ୍କ ହାତେ
ମରନ୍ତେ ଭେଟିଲେ ହେ ଯମଙ୍କୁ ନୃପତେ ।
ଧୃଷ୍ଟକେତୁ ରାଜା ଦୁଷ୍କର କର୍ମ କରି
ଯୁଦ୍ଧଭାଣ୍ଡିରେ ଶୋଇଲେ ପଡ଼ି ମରି ।
ସେହିରୂପେ ସତ୍ୟଧୃତ ଯେ ମହାବୀର
ଯୁଦ୍ଧ କରୁ କରୁ ପରାଣ କଲେ ଦୂର ।
ଶିଶୁପାଳପୁତ୍ର ସୁକେତୁ ମହାପତି
ଦ୍ରୋଣ କାଣ୍ଡ ଘାତେ ବସିଲେ ଯମକତି ।
ମଦିରାଶ୍ୱ ସୂର୍ଯ୍ୟଦତ୍ତ ଏ ଦୁଇ ବୀରେ
ଗଲେ ଯମପୁରକୁ ଦ୍ରୋଣଙ୍କର ଶରେ ।
ଶ୍ରେଣିମନ୍ତ ବହୁତ କୁ ରୁଙ୍କୁ ସଂହାରି
ରହିଲେ ନିବର୍ତ୍ତି ଯେ ପ୍ରାଣୁଟିକ ହାରି ।
ସହଦେବ ଯେ ଜରାସନ୍ଧକ କୁମର
ଭୀଷ୍ମ ସଙ୍ଗତେ ଯୁଝି ମଲେ ତେତେ ବୀର ।
ବସୁଦାନ ରାଜା ଦ୍ରୋଣଙ୍କ କାଣ୍ଡ ପାଇ
ବସିଲେ ସ୍ୱର୍ଗପୁରେ ଗ୍ରନ୍ଥିକ ଫୁଲାଇ ।
ଏରୂପେ ଦ୍ରୋଣ ସକାଶୁଁ ପାଣ୍ଡୁ ସୈନ୍ୟ
ନୃପତିଗଣ ମଲେ ଜାଣ ହେ ରାଜନ ।
ଧୃତରାଷ୍ଟ୍ର ବୋଇଲେ ମଲେ ଭୀଷ୍ମ ଦ୍ରୋଣ
ଆଜ ଯେ ଅଛନ୍ତି ସେ ମଲାପରି ଜାଣ ।
ଶତ ଶତ ହାଜାର ପରାକ୍ରମ ବାହୁ
ବହଇ କର୍ଣ୍ଣଙ୍କର ଯୁଦ୍ଧେ ହୋଇ ରାହୁ ।
ପାଣ୍ଡୁ ସୈନ୍ୟ ଚନ୍ଦ୍ରକୁ ଗ୍ରାସି ବେଢ଼ିଥିଲେ
ସେ ମଲେ ବୋଲି ସତ ହେବ କେଉଁ ଭଲେ
ମୋର ସୈନ୍ୟଯାକେ ଅଛନ୍ତି କେତେ ଜୀଇ
ଏହା ମୋର ଆଗରେ କହ ତ ବତାଇ ।
ସଞ୍ଜୟ ବୋଇଲେ ହେ ଦ୍ରୋଣଙ୍କ କୁମର
ସବୁ ଶସ୍ତ୍ର ଅସ୍ତ୍ରମାନଙ୍କେ ସୁଚତୁର ।

ସେ ଯାଇଁଛନ୍ତି ତୁମ୍ଭପାଇଁ ପ୍ରାଣଗ୍ରହି
ଯୁଝୁଛନ୍ତି ରାଜନ ଅହର୍ନିଶ ଘୋର ।
ହୃଦିକଙ୍କ ପୁଅ ସେ ରାଜନ ମହାଉଜରସା
ଅଛନ୍ତି ଯାଇ ଜାଣ ନାମ କୃତବର୍ମା ।
ଆର୍ତ୍ତାୟନୀ ଶଲ୍ୟ ଅଛନ୍ତି ରାସ୍ତେ ଯାଇ
ତୁମ୍ଭ ହିତ କଥାକୁ ମାନସରେ ଧ୍ୟାଇ ।
କାମ୍ବୋଜ କନାୟୁନ ବାହ୍ଲିକ ଯୋଡ଼ା ଯେନ
ଅଛନ୍ତି ଯାଇ ତୁମ୍ଭ ଶଳାଟି ଶକୁନି ।
ଶରବଣପୁତ୍ର ସେ କୃପ ସାରଦ୍ୱତ
ରଖିଅଛନ୍ତି ତୁମ୍ଭପାଇଁ ସେ ଜୀବତ ।
କେକୟରାଜା ପୁତ୍ର ଯୁଦ୍ଧରେ ତ ମରି
ଯାଇଣ ମୋଡ଼ୁଛନ୍ତି ନଣ ଦୁଇ ଧରି ।
ତୁମ୍ଭର ପୁଅ ଦୁର୍ଯ୍ୟୋଧନ ସୁନାରଥ
ଚଢ଼ି ଯୁଝିବାକୁ କହନ୍ତି ଲୋକ ମାଥ ।
ତୁମ୍ଭ ପୁଅ ସୁଷେଣ ଚିତ୍ରସେନ ଦୁଇ
ସତ୍ୟସନ୍ଧ ତୁଲେ ଅଛନ୍ତି ଜାଣ ଯାଇ ।
ସତ୍ୟବ୍ରତ ଶ୍ରୁତବର୍ମା ସେ ଚିତ୍ରାୟୁଧ
ଜୟ ଶାଲ୍ୱ ଦୁଷଳ ଶ୍ରୁତାୟୁ ଶ୍ରୁତାୟୁଧ ।
ସେ ଚିତ୍ରାଙ୍ଗଦ ଚିତ୍ରବର୍ମା ଆଦି ବୀରେ
ଜୀବନ ରଖିଛନ୍ତି ତୁମ୍ଭର ହିତରେ ।
କର୍ଣ୍ଣଙ୍କ ପୁଅ ଜଣେକେତେ ଛନ୍ତି ଯାଇ
କର୍ଣ୍ଣଙ୍କୁ ତ ଦେଲେ ହେ ଅର୍ଜୁନ ବଢ଼ାଇ ।
ଏତେକ ରଥୀ ଯେନ ସୈନ୍ୟ ତୁଲେ ତୁମ୍ଭ
ଦୁର୍ଯ୍ୟୋଧନ ରହିଲେ ଯୁଦ୍ଧେ କରି ଦମ୍ଭ ।
ଧୃତରାଷ୍ଟ୍ର ବୋଇଲେ ରଥୀମାନେ ଯାଇ
ଥିବାରୁ ହେ ସଞ୍ଜୟ କିଛି କାର୍ଯ୍ୟ ନାହିଁ ।
ପ୍ରଧାନମାନେ ଯୁଦ୍ଧେ ହେଲେ ତ ନିଧନ
ଏ ଯାଇଥିଲେ ମଲାପରି ମନେ ଯେନ ।
ଏହା କହି ନୟନଯୁଗ୍ମୁ ଅଶ୍ରୁ ଝାଡ଼ି
ପଡ଼ିଲେ ଭୂମିତଳେ ହୋଇଣ ଅଜାଡ଼ି ।
ସଞ୍ଜୟଙ୍କୁ ବୋଇଲେ କ୍ଷଣେ ଭିନ ହୁଅ
କହିବ ପୁଣି କେଉଁରୂପେ ମଲା ପୁଅ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଏମାନ ଶୁଣି ଗଲେ ମୋହ ଦୁର୍ଯ୍ୟୋଧନ ।
ପିତା ପୁଣି ଉଠିଣ ପଚାରିଲେ କିସ
ଏହା ମୋର ଆଗରେ କରି ତ ପ୍ରକାଶ ।

ବଇଶମ୍ପାୟନ ବୋଇଲେ ନରପତି
କହିବା ଶୁଣ ଯାହା ଭାବିଲେ ନୃପତି ।
ସୂର୍ଯ୍ୟ ଆକାଶରୁ ସେ ମହୀରେ ପଡ଼ିବ
ଇନ୍ଦ୍ରଙ୍କର ଯୁଦ୍ଧରେ ପରାଜୟ ହେବ ।
ସମୁଦ୍ରରେ ଜଳ ନ ରହିବ ଯେ କିଛି
ଧର୍ମ ଦେବେ ପ୍ରାଣୀଏ ମନରୁ ମୁ ଝୁଛି ।
ପାପ ପୁଣ୍ୟ ଦୁଇଟି ହୋଇବ ନିଷ୍ଫଳ
ତେବେ ସିନା ମରିବ କର୍ଣ୍ଣ ମହାବଳ ।
ଯେବେ କର୍ଣ୍ଣବୀରକୁ ଅର୍ଜୁନ ମାରିଛି
ଜାଣୁଛି ମୋର କୁଳ ନ ରହିବ କିଛି ।
ଏହା ଭାବି ନିଃଶ୍ୱାସ ଗୋଟାଏ ପକାଇ
ବୋବାଇଲେ ହୃଦୟ ପଦ୍ମକୁ କମ୍ପାଇ ।
ସଞ୍ଜୟଙ୍କୁ ବୋଇଲେ ରହେ ମନ୍ତ୍ରୀବର
ହସ୍ତୀ ସିଂହ ପ୍ରାୟେ ତ ବଳ କର୍ଣ୍ଣଙ୍କର ।
ବୃଷଭ ପରି ସ୍କନ୍ଧ ବୃଷ ପରି ସ୍ୱନ
ବୃଷଭ ପରି ଗତି କ୍ଷତ୍ରିୟ ମଣ୍ଡନ ।
କର୍ଣ୍ଣ ମହାବୀର ଅର୍ଜୁନ ବାଣ ପାଇ
ଶୋଇଲେ ବୋଲି କହୁଅଛ ରଣ ଭୂଇଁ ।
ଯାହାଙ୍କର ଧନୁ ଶବଦ ଶୁଣି କାନେ
ରଥୀ ପରି ଗଜ ଭାଜନ୍ତି ଅବିଛନ୍ନେ ।
ଯେଉଁ କର୍ଣ୍ଣ ବାହୁକୁ ମୋ ପୁଅ ଆଶ୍ରେ କରି
ବୋଲୁଥାଏ ଦେଖ ମୁଁ ପାଣ୍ଡବଙ୍କୁ ମାରି ।
ସେ କର୍ଣ୍ଣ କେଉଁରୂପେ ଅର୍ଜୁନ ସଙ୍ଗରେ
ଯୁଦ୍ଧ କରି ଗଲେ ହେ ଯମଙ୍କ ନଗରେ ।
ଏ କଥା ମୋ ମନେ ପରତେ ହେଉନାହିଁ
ସତ କରି କହ ସଞ୍ଜୟ ସନ୍ଦେହ ଛୁଇଁ ।
କର୍ଣ୍ଣ ତ ବୋଲୁଥାନ୍ତି କୃଷ୍ଣ ଅର୍ଜୁନଙ୍କୁ
ମାରିବ କାଣ୍ଡକରେ ଆସିଲେ ଆଗକୁ ।
ସଂଗର୍ତ୍ତି ମତ୍ସ୍ୟ କାଶୀ ଗାନ୍ଧାର ମଦ୍ରକ
କଉଶଳ ଟଙ୍ଗଣ କୁଳିନ୍ଦ ସୁହ୍ମଣକ ।
ଅଙ୍ଗ ବଙ୍ଗ ପାଞ୍ଚାଳ ନିଷାଦ ପୁଣ୍ଡ୍ରକ
ବିଦେହ ବତ୍ସ ବକ ତରଳ ଅସ୍ମକ ।
ଆଦି ଦେଶମାନଙ୍କୁ ଜିଣି କର୍ଣ୍ଣବୀର
କରି ଆଣି ପୂର୍ଣ୍ଣ ସେ କଲା ମୋ ଭଣ୍ଡାର ।
ଉଚ୍ଚୈଃଶ୍ରବା ଅଶ୍ୱରେ କୁବେର ଯକ୍ଷରେ
ଯେରୂପେ ବଡ଼ କର୍ଣ୍ଣ ତଥା କ୍ଷତ୍ରିୟରେ ।

ଯାହାଙ୍କ ବଳ ଦେଖି ଜରାସନ୍ଧ ବୀର
ନ କଲା ଆସି କୁରୁମାନଙ୍କୁ ସମର ।
କର୍ଣ୍ଣ ମଲା ଶୁଣି ଯା ଜାଇଅଛି ମୂର୍ଚ୍ଛି
ଏଥିରୁ ଅଲଜ୍ଜୁକ ହୋଇ କଥା ନାହିଁ ।
ଯେବେ ମୋର ହିତ ବାଞ୍ଛୁଅଛ ତୁମ୍ଭେ
ଆଣିଦିଅ ବିଷ, ପିଇଣ ମରୁ ଆମ୍ଭେ ।
ଆଉ ଜୀଇଥିଲେ କାର୍ଯ୍ୟଟି କିଛି ନାହିଁ
ନ ପାରିବି ପାଣ୍ଡବ ବାର୍ତ୍ତା ଶୁଣି ମୁହିଁ ।
ସଞ୍ଜୟ ବୋଇଲେ ହେ ହୋଇ ଜାଣିବାର
ଅଧୈର୍ଯ୍ୟ କର୍ମ ହେଉଛ ନରବର ।
ଯଯାତି ପରି ଲୋକେ ତୁମ୍ଭଠାରେ ବୁଦ୍ଧି
କରିଥାନ୍ତି ନ ଛାଡ଼ିଅ ଟି ସେହି ସିଦ୍ଧି ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟକୁ ଧିକ
ହେଉ ମଲା ହାରି ଯା ବୀରଙ୍କ ନାୟକ ।
କର୍ଣ୍ଣ ମହାରଥୀ ଅର୍ଜ୍ଜୁନ କାଣ୍ଡ ପାଇ
ଜାଣୁଛ ସଞ୍ଜୟ କହିବି କିସ ମୁହିଁ ।
ଏ ସକାଶୁଁ ମୁହିଁ ଯେ କହୁଛି ତୁମ୍ଭଙ୍କୁ
ଶୋକ ଅନ୍ତ ଗୋଚର ନୋହୁଛି ଆମ୍ଭଙ୍କୁ ।
କର୍ଣ୍ଣଙ୍କର ମରଣ ଅର୍ଜ୍ଜୁନଙ୍କ ଜୟ
ଶୁଣିଲେ କେହି ଧରି ପାରିବ ହୃଦୟ ।
ବିଧି ମୋତେ ଆୟୁଷ ଗୁଡ଼ାଏ ଦେଇଛି
ଏଣୁ କର୍ଣ୍ଣ କଲି ତା ବସି ମୁଁ ଶୁଣୁଛି ।
ଜୀବନକୁ ମୋହର ହେଉ ଧିକ ଧିକ
ହେଲା ତ ଆସି ପାଣ୍ଡବଙ୍କୁ [illegible] ।
ଭୀଷ୍ମ ଦ୍ରୋଣ ଦୁହିଙ୍କ ଅଦୃଷ୍ଟରେ ବହି
ଏକାବେଳରେ ତ ମୃତ୍ୟୁ ଥିଲା ଲିହି ।
ମୋର ପୁଅଙ୍କ ଯୁଦ୍ଧ ଜଳ ନାବ କର୍ଣ୍ଣ
ମଲେ ତ କର୍ମ ଅଛି ମୋହର ଜୀବନ ।
ମୁଣ୍ଡ ଟିକ ଗଣ୍ଡିଟିରୁ ତ ଦୂର କରି
ଅର୍ଜ୍ଜୁନ କାଣ୍ଡେ ଶୋଇଅଛି କର୍ଣ୍ଣ ମରି ।
ଏହା ଶୁଣିକରି ସଞ୍ଜୟ ମୋ ସାହସ
ଉଡ଼ି ଯାଇଅଛି ହେ ଛାଡ଼ି ସବୁ ଆଶ ।
ଦୁର୍ଯ୍ୟୋଧନ ମୋହର କର୍ଣ୍ଣ ମୃତ୍ୟୁ ଦେଖି
ଶରଣ ପଶିନାହିଁ ଟିକ ହୋଇ ଦୁଃଖୀ ।
ଯୁଧିଷ୍ଠିର ନ ଯୁଝିବା ତା ବୋଲୁଥିଲେ
ମୋ ପୋଏ ଲୋଡ଼ି ଏହା ଆଣିଲେ କଳିଲେ

ଭୀଷ୍ମ ଶରତଳ୍ପେ ମ ଗିଲେ ଅର୍ଜ୍ଜୁନଙ୍କୁ
ପାଣି ଆଣି ଦେଲେ ସେ ବିକ୍ରମେ ତାହାଙ୍କୁ ।
ତେତେବେଳେ ଭୀଷ୍ମ ବୋଇଲେ ଦୁର୍ଯ୍ୟୋଧନ
ତଦନ୍ତ କରି କର ପାଣ୍ଡବେ ସମାଧାନ ।
ତା ତ ନ ଶୁଣିଲା ମୋ ଦୁର୍ଯ୍ୟୋଧନ ବାଇ
ତାର ଫଳ ଏବେ ଫଳୁଛି ଭୁଞ୍ଜୁ ସେହି ।
ଗୋବର ତଡ଼ାଇକ ପାଠ ଉପୁଜାଇ
ଘୁଡ଼ଦେବା ପରିଏ ହୋଇଛି ତ ମୁହିଁ ।
କେଉଁଆଡ଼େ ଯିବି ହେ କହ ତ ସଞ୍ଜୟ
କେ ଅଛି ସମ୍ଭାଳିବା ମୋର ହୋଇ ପ୍ରିୟ ।
କର୍ଣ୍ଣଙ୍କୁ ଅର୍ଜ୍ଜୁନ ମାଇଲା କାଳେ ମୋର
ରଥି କେ କେ ଥିଲେ ହେ କହ ମନ୍ତ୍ରୀବର
କପଟରେ ଦେଖ ପାଣ୍ଡୁଙ୍କ ସବୁ ଚେଷ୍ଟା
ଗୋଟି ହୋଇ ଭୀଷ୍ମଙ୍କ ଫୁଟାଇଲେ ପୃଷ୍ଠା ।
ଦ୍ରୋଣ ପରି ରଥୀ ସେ ସାଧୁ ଥିଲେ ଯୋଗ
ଖଡ଼୍ଗ ମାରି ତାଙ୍କୁ କଲେ ଦୁଇ ଭାଗ ।
ଭୀଷ୍ମ ଦ୍ରୋଣ ଦୁହିଙ୍କି ନ୍ୟାୟଯୁଦ୍ଧ କଲେ
ଜିଣି ସେ ନ ପାରନ୍ତେ ସୁରପତି ହେଲେ ।
ଦିବ୍ୟଅସ୍ତ୍ର ଭାଙ୍ଗୁଥିଲା ତ ସୂତବେଟା
ଭଲ ଅରଜୁନ କାଟିଲା ତା ମୁଣ୍ଡଟା ।
ଶକ୍ତି ଦେଇ କବଚ କୁଣ୍ଡଳ ବାସବ
ମାଗି ନେଲେ ଦେଖଟି କର୍ଣ୍ଣର ପ୍ରଭାବ ।
ଅବଜ୍ଞା କରି କର୍ଣ୍ଣ ଭୀଷ୍ମ ଦ୍ରୋଣଗୁରୁ
ଶିଖିଲେ ବ୍ରହ୍ମଅସ୍ତ୍ର ପରଶୁରାମଠାରୁ ।
ସତର ଥର ଭୀଷ୍ମ ବଳେ ହୋଇ ହଳ
ଭୀମଙ୍କୁ ଟି ଜିଣିଲେ କର୍ଣ୍ଣ ମହାବଳୀ ।
ସହଦେବ ଯେ ଯୁଧିଷ୍ଠିର ନକୁଳକୁ
ଦେଲେ କୃପା କରି ସେ ଜୀବନଦାନକୁ ।
ପ୍ରଳୟଘନ ପରି ଘଟୋତ୍କଚ ଯୋଟି
ଥିଲା ଆମ୍ଭ ସୈନ୍ୟ ଗିଳିକ ତାକୁ କାଟି ।
ମୋଟା ଦେହ ପାଣ୍ଡବଙ୍କର କୁଣ୍ଠା କଲେ
ସୂତବେଟା କର୍ଣ୍ଣ ପ୍ରଶଂସା ତାକୁ ନେଲେ ।
ଏରୂପେ କର୍ଣ୍ଣ ବଳ ଜାଣିଣ ଅର୍ଜ୍ଜୁନ
ଯୁଦ୍ଧକାଳେ ହେଉଥାନ୍ତି ତ ଛନ୍ନ ଛନ୍ନ ।
ତମ କେଉଁରୂପେ ଦୁଇଥର ଯୁଦ୍ଧ କରି
ତେତେ ବଳୀ ରଥିକ ମୋର ଦେଲେ ମାରି

ଅସ୍ତ୍ର ଶସ୍ତ୍ର ରଥ କାର୍ମୁକ କର୍ଣ୍ଣଙ୍କର
ଥିଲାଟିକ କହ ସଞ୍ଜୟ ମନ୍ତ୍ରିବର ।
ଧନୁ ଧରିଲେ କର୍ଣ୍ଣଙ୍କୁ ଭିନଲୋକେ
ଯୁଝିବାକୁ ଲୋକ ତ ନ ଦେଖି ନିଃଶଙ୍କେ ।
ନଷ୍ଟେ ଜାଣୁଅଛୁ କର୍ଣ୍ଣର ଧ୍ୱଜ ଧନୁ
ରଥକୁ କାଟିଥିବା କୁନ୍ତୀଦେବୀ ସୁନୁ ।
ନୋହିଲେ ଅବା ଅସ୍ତ୍ର ମୃତ୍ୟୁକାଳ ଜାଣି
ନ ସ୍ଫୁରୁଥିବ କର୍ଣ୍ଣ ହୋଇଲେ ହେ ଗୁଣି ।
ଅର୍ଜ୍ଜୁନଙ୍କୁ ନ ମାଇଲେ ମୁହିଁ ଗୋଡ଼
ନ ଧୋଇବି ବୋଲି ସେ କରିଥିଲେ ଦୃଢ଼ ।
କର୍ଣ୍ଣଙ୍କର ବଳ ମୋହର ପୁଏ ପାଇ
କୃଷ୍ଣାଙ୍କୁ ସଭାରେ ଲଙ୍ଗଳା କଲେ ନେଇ ।
କର୍ଣ୍ଣହାତେ ଗୁଣ୍ଟେଣି ବାନ୍ଧ ଧନୁ ଟାଣି
ରହିଥିଲେ ତାଙ୍କୁ କେ ନ ପାରଇ ଜିଣି ।
ପୃଥ୍ୱୀ ଚନ୍ଦ୍ର ସୂର୍ଯ୍ୟ ପ୍ରଭାବରେ ହେବ ହୀନ
ନୋହିବ କଦାଚିତେ କର୍ଣ୍ଣର ନିଧନ ।
କର୍ଣ୍ଣ ସହାୟରେ ଶ୍ରୀକୃଷ୍ଣଙ୍କୁ ନ ମାନ
ଦୁର୍ଯ୍ୟୋଧନ ଯୁଝିଲା ହୋଇଟି ଗୁମାନୀ ।
କର୍ଣ୍ଣ ଗଲା ଉତ୍ତାରୁ ହତୋତ୍ସାହ ବଳ
ଦେଖି ଜସ କଲା ସେ ଦୁର୍ଯ୍ୟୋଧନ ବାଳ ।
ଭୀମ ଦୁଃଶାସନକୁ ମାରିଣ ରକତ
ପିଇବା ଦେଖି ଦୁଃଖ ନୋହିଲା କି ଚିତ୍ତ ।
ଜୁଆ ଖେଳାଇ ତ ସୁବଳଙ୍କର ପୁଅ
କଢ଼ାଇଲା ଯୁଦ୍ଧରେ ମୋ ପୁତ୍ରଙ୍କ କ୍ଷୟ ।
କର୍ଣ୍ଣଙ୍କର ମରିବା ଦଶାଟିକ ଦେଖି
ଫୁଟି ନ ଗଲା କି ତାହାର ବେନି ଆଖି ।
କୃତବର୍ମା ଶୁଣି କର୍ଣ୍ଣଙ୍କୁ ମାରିବାର
କି କରିଲେ ହେ ସଞ୍ଜୟ ମନ୍ତ୍ରିବର ।
ବୀରଚୂଡ଼ାମଣି ସେ ଦ୍ରୌଣି ମହାମତି
ମରନ୍ତେ କର୍ଣ୍ଣ କହ କଲେ କେଉଁ ଗତି ।
ତାହାଙ୍କର ମାମୁଁ ଯେ କୃପ ମହାତମା
କର୍ଣ୍ଣ ମଲା ଦେଖି ଛାଡ଼ିଲେ କି ଗାରିମା ।
ଶଲ୍ୟ ତ କର୍ଣ୍ଣର ସାରଥି ହୋଇଥିଲେ
କର୍ଣ୍ଣର ଦୁଃଖେ ବ୍ୟଥୀ ହେଲେ କି ନୋହିଲେ
ଏ ବାହାରେ ଯେତେକ ରାଜା ଥିଲେ ଆଇ
କି ବୋଇଲେ କର୍ଣ୍ଣର ମରିବାର ଶୁଣି ।

ଦ୍ରୋଣ ମଲାପରେ ସେନାଙ୍କ ଆଗଭାଗେ
କେ ରହିଲା କହ ତ ସଞ୍ଜୟ ମୋ ଆଗେ ।
କାହିଁକ ଶଲ୍ୟ ହେଲେ ସୂତପୁତ୍ର ସୂତ
କହ ତ ଶୁଣିବାକୁ ହେଉଅଛି ଚିତ୍ତ ।
କର୍ଣ୍ଣଙ୍କର ସେ ଦୁଇପଖା ପୃଷ୍ଠଦେଶ
କେଉଁମାନେ ଜଗିଲେ ତା ମଧ୍ୟ ପ୍ରକାଶ ।
ପାଣ୍ଡବେ କେମନ୍ତେ କର୍ଣ୍ଣଙ୍କୁ ରଣେ ଯୋଟି
ପକାଇଲେ ଯୁଦ୍ଧ କରିଣ ଶିର କାଟି ।
କର୍ଣ୍ଣ କାଣ୍ଡୁଟିକେ ତ ସାଧ ରହିଥାଏ
ସେ ବ୍ୟର୍ଥ ହେଲା ମୋତେ କହ କି ଉପାୟେ ।
ଦ୍ରୋଣ ମଲା ଉତ୍ତାରୁ କୁରୁ ପାଣ୍ଡୁଙ୍କର
ଯୁଦ୍ଧ ମୋତେ କହ ସଞ୍ଜୟ ମନ୍ତ୍ରୀବର ।

## ସଞ୍ଜୟଙ୍କର ଯୁଦ୍ଧ ବର୍ଣ୍ଣନ

ସଞ୍ଜୟ ବୋଇଲେ ହେ ହସ୍ତିନା ନୃପତି
ଶୁଣ ବସି ଯୁଦ୍ଧଘଟଣା ଦେଇ ମତି ।
ମରନ୍ତେ ଦ୍ରୋଣ ଅର୍ଜ୍ଜୁନ ମହାବୀର
କରି ତୁମ୍ଭର କୁରୁସେନାଙ୍କୁ ସଂହାର ।
ଭାଇଙ୍କ ଭୁଲେ ନିଜ ସୈନ୍ୟ ସଙ୍ଗେ ଧରି
ରହିଲେ ଯୁଦ୍ଧଦାଣ୍ଡେ ଯୁଦ୍ଧ ଇଚ୍ଛା କରି ।
ତୁମ୍ଭ ପୁଅ ଦେଖି ଅର୍ଜ୍ଜୁନ ରହିବାର
ସୈନ୍ୟଙ୍କୁ ବୋଇଲେ ହେ ରହ ଯୁଦ୍ଧକର ।
ତା ଶୁଣି ତୁମ୍ଭ ସେନାମାନେ ପାଲଟିଲେ
ମରାମରି ହୋଇଣ ମହୀରେ ଲୋଟିଲେ ।
ଏହି କାଳରେ ଅସ୍ତ ଗିରି ଶିଖ ସୂର୍ଯ୍ୟ
ଛୁଇଁଅନ୍ତେ ଲେଉଟି ସେନା ଏ ମହାରାଜ ।
ଯେ ଯାହାର ବସାଘରକୁ ଆସିଗଲେ
ଜସ କରିବା ଦ୍ରୋଣ ମଲେ ତ ଭାଷିଲେ ।

## କର୍ଣ୍ଣଙ୍କର ସେନାପତିତ୍ୱ ଗ୍ରହଣ

ଖଟ ପଲଙ୍କରେ ନୃପତିମାନଙ୍କର
ସେ ରାତ୍ର ପ୍ରୀତି ନୋହିଲେ ହେ ନରବର
ଦୁର୍ଯ୍ୟୋଧନ ସେ ରାତି ଉଠାଇ ନୃପଙ୍କୁ
ପୁଚ୍ଛିଲେ କରୁଣେ ଜଣିମା ଜଣାଟିଙ୍କୁ ।
ରାଜାଏ ବୋଇଲେ ନିର୍ଭର ଦୁର୍ଯ୍ୟୋଧନ
କାଲି ଦେଖ କରୁଛୁଁ ପାର୍ଥଙ୍କୁ ନିଧନ ।

ଅଶ୍ୱତ୍ଥାମା ଏଥେ ତାହା ଶୁଣିଣ କହିଲେ
ଶୁଭ ଯୋଗ ଲଗ୍ନରେ କାର୍ଯ୍ୟ ସାଧି ଭଲେ
ଦଇବଟି ଅଟଇ କାର୍ଯ୍ୟକୁ କାରଣ
ମୋ କହିବାରୁ ଆହେ ଦୁର୍ଯ୍ୟୋଧନ ଜାଣ ।
ଦେବତା ପରି ଆମ୍ଭ ମହାରଥିକୁଳ
ଥିଲେ ପାର୍ଥକାଣ୍ଡେ ଦେଖିଲେ ଯମଆଳ ।
ଏକା କର୍ଣ୍ଣ ବିନା ଅଛନ୍ତି ଏବେ ଯାଇ
ତାଙ୍କୁ ସେନାପତି କରିବା କାଲି ଯାଇ ।
ଏହା ଶୁଣିଣ ଦୁର୍ଯ୍ୟୋଧନ ପ୍ରୀତି ବହି
ଡକାଇ କହିଲେ କର୍ଣ୍ଣକୁ ତୋଷ ହୋଇ ।
ଆହେ କର୍ଣ୍ଣ ତୁମ୍ଭ ଦେହରେ ଯେଉଁ ବଳ
ଅଛି ଜାଣି ପାରୁ ତୁମ୍ଭେ ତ ଆଖଣ୍ଡଳ ।
ପୂର୍ବେ ମୋହଠାରେ ଯେ ତୁମ୍ଭର ପୀରତି
ଥାଏ, ଏଣୁ କହୁଛୁ ହୋଇଣ ବିନତି ।
କାଲି ମୋର ସୈନ୍ୟର ସେନାପତି ହୋଇ
ଦିଅ ବେଗେ ପାଣ୍ଡବ ସୈନ୍ୟଙ୍କୁ ବଡ଼ାଇ ।
ଭୀଷ୍ମ ଦ୍ରୋଣ ଦୁହେଁ ପାଣ୍ଡବଙ୍କର ହିତ
ବାଞ୍ଛୁରୁ ବାଞ୍ଛୁରୁ ମୋ ସେନା ହେଲେ ହତ ।
ତୁମ୍ଭେ ଯୁଦ୍ଧ ନ କରିବାରୁ କଷ୍ଟଦଶା
ପାଇଲେ ଜାଣ ଭୀଷ୍ମ ରଥୀ ମହାଯଶା ।
ଭୀଷ୍ମଙ୍କ ମଲା ଉତ୍ତାରୁ ତ ତୁମ୍ଭ ବୋଲେ
ସେନାପତି କଲୁଁ ଗୁରୁଙ୍କୁ ଆମ୍ଭେ ଭଲେ ।
ଦ୍ରୋଣଙ୍କର ପାଣ୍ଡବେ ଅଟନ୍ତି ତ ଶିଷ୍ୟ
ଏଣୁ ତାଙ୍କଠାରେ ସେ ନ ଧରନ୍ତି ରୋଷ ।
ହେଳା କରି ଯୁଦ୍ଧ କରନ୍ତେ ଧୃଷ୍ଟଦ୍ୟୁମ୍ନ
ଖଡ଼ଗରେ ତାହାଙ୍କ ମୁଣ୍ଡ କଲେ ଛିନ୍ନ ।
ସେ ଥିବାରୁ ତୁମ୍ଭଙ୍କୁ ଯୁଦ୍ଧଭାର ଦେଇ
ନ ଥିଲେ ମିତ, ରହିଥିଲ ତୁନି ହୋଇ ।
ଏବେ ତ ସେ ଦୁହେଁ ହେଲେଣି ରଣେ ହତ
ହୁଅ ସେନାପତି ହେ କର୍ଣ୍ଣ ବଳବନ୍ତ ।
ଦେବସେନା ସ୍କନ୍ଦ ପାଳିବାର ପରସ୍ୱେ
ପାଳ ମୋର କୁରୁସେନାକୁ ସାରସ୍ୱେ ।
ତୁମ୍ଭଙ୍କୁ ଦେଖି ଯୁଦ୍ଧେ ପାଣ୍ଡୁ ସେନାଗଣ
ପଳାଇବେ ଯୁଦ୍ଧରୁ ହୋଇ ଛିନ୍ନ ଭିନ୍ନ ।
ତୁମ୍ଭେ ଯେବେ କରରେ ଥିବ ଧନୁ ଧରି
ପାଣ୍ଡବେ ସ୍ଥିର ନ ପାରିବେ ଯୁଦ୍ଧ କରି ।

ସୂର୍ଯ୍ୟ ଯେଉଁରୂପେ ଉଦୟ ହୋଇ ତମ
ନାଶେ ତୁମ୍ଭେ ସେରୂପେ ନାଶ ଶତ୍ରୁ ଗ୍ରାମ ।
ଏ ଅନ୍ତେ ସଞ୍ଜୟ ବୋଇଲେ ଧୃତରାଷ୍ଟ୍ର
ତୁମ୍ଭ ପୁଅ ଦୁର୍ଯ୍ୟୋଧନ ସେ ବଡ଼ ଦୁଷ୍ଟ ।
ଭୀଷ୍ମ ଦ୍ରୋଣଙ୍କ ପରା ଭର୍ଥଙ୍କି ମରାଇ
କର୍ଣ୍ଣ ବଳେ ଭାବିଲା ହେବ ନରସାଇଁ ।
ଦୁର୍ଯ୍ୟୋଧନ ବଚନ ଶୁଣି କର୍ଣ୍ଣ କାନେ
କହିଲେ ସେ ଯାହା ତା ଶୁଣ ଏକମନେ ।
ପୂର୍ବରୁ ତ କହିଛି ମାରି ପାଂଡବଙ୍କୁ
ଦେବି ତୁମ୍ଭଙ୍କୁ ମୁହିଁ ହସ୍ତିନା ପୁରକୁ ।
ଏବେ ତ ତୁମ୍ଭେ ମୋତେ କଲ ସେନାପତି
ଦେଖ ପାଂଡବଙ୍କର ଯୁଦ୍ଧରେ ବିପତ୍ତି ।
ଏହା ଯେଉଁକ୍ଷଣି କହିଲେ ସୂର୍ଯ୍ୟସୁତ
ଉଠିଲେ ଦୁର୍ଯ୍ୟୋଧନ ତୋଷ କରି ଚିତ୍ତ ।
କର୍ଣ୍ଣଙ୍କୁ ଉଦୁମ୍ବର ପିଢ଼ାରେ ବସାଇ
ସୁବର୍ଣ୍ଣ କୁମ୍ଭେ ପାଣି ଇଢ଼ିଲେ ବସାଇ ।
ଯେରୂପେ ଲେଖିଅଛି ଅଭିଷେକ ବିଧି
ସେରୂପେ ଦୁର୍ଯ୍ୟୋଧନ କଲେଟି ସେ ବିଧି ।
ବ୍ରାହ୍ମଣ କ୍ଷତ୍ରିୟ ଯେ ବୈଶ୍ୟ ଶୂଦ୍ର ଜନେ
କର୍ଣ୍ଣଙ୍କର ସ୍ତୁତିକ ଭଣିଲେ ବଚନେ ।
କର୍ଣ୍ଣ ଅଭିଷେକ ସାରିଣ ବ୍ରାହ୍ମଣଙ୍କୁ
ଦେଲେ ଗାଈ ରତନ ସୁବର୍ଣ୍ଣ ବସ୍ତ୍ରକୁ ।
ଦୁଷ୍ଟବନ୍ଦିଜେ ଭାଟଙ୍କ ତୁଲେ ଭାଟପରି
ବୋଇଲେ ମାନ କର୍ଣ୍ଣ ପାର୍ଥ ଧନୁର୍ଦ୍ଧାରୀ ।
ତୁମ୍ଭ କାଂଡମାନଙ୍କୁ ଅର୍ଜୁନ ଗୋବିନ୍ଦ
ପାଇଲେ ପଳାଇବେ ନକରି ସେ ଦ୍ୱନ୍ଦ୍ୱ ।
ପାଂଡବେ ବନେ ରହି ବନକୁ ହଟିବେ
ସୁଖରେ ଦୁର୍ଯ୍ୟୋଧନ ହସ୍ତିନା ଭୁଞ୍ଜିବେ ।
କେକୟ ସୃଞ୍ଜୟ ପାଞ୍ଚାଳ ତୁମ୍ଭ ବଳ
ଦେଖିଲେ ପଳାଇବେ ହୋଇଣ ବିକଳ ।
ଏରୂପେ ଶୁଣି ଲୋକଙ୍କର ମୁଖୁଁ ବାଣୀ
ତେଜେ ସୂତସୁତ ନନ୍ଦିଲେ ଦିନମଣି ।
ତୁମ୍ଭ ପୁଅ କର୍ଣ୍ଣଙ୍କୁ କରି ସେନାପତି
ଭାବିଲେ ହେଲା ମୋ ଆସି ଏ ମହାଭୂତି ।
କର୍ଣ୍ଣ ସେନାପତି ହୋଇଣ କୁରୁଥାଟେ
ରହିଲ ଯୁଝିବାକୁ ବୋଇଲେ ଅତି ଆଣ୍ଟେ ।

କୁରୁସୈନ୍ୟାବୃତ ହୁଅନ୍ତେ କର୍ଣ୍ଣ ବୀର
ଦେବସେନାପତିଙ୍କି କରେ ଧଲେ ସ୍ଥିର ।

—*—

## କୁରୁପାଣ୍ଡବଙ୍କର ବ୍ୟୂହସଜ୍ଜା

ଧୃତରାଷ୍ଟ୍ର ବୋଇଲେ ସେନାପତି ହୋଇ
କି କଲେ କର୍ଣ୍ଣ ମୋତେ କହ ତ ବତାଇ ।
ସଞ୍ଜୟ ବୋଇଲେ କର୍ଣ୍ଣଙ୍କ ମତ ଜାଣି
ବଜା ବାଦ୍ୟ ବୋଲି ବୋଇଲେ ପୁନମଣି ।
ତୁମ୍ଭର ସୈନ୍ୟଯାକ କଲେ ମୁଖେ ଡ଼ଙ୍କା
ମୃତ୍ୟୁକାଳ ହେଲା ନ ଧରି ମନେ ବଙ୍କା ।
କର୍ଣ୍ଣ ଅବା ମାରିବେ ନୋହିଲେ ମରିବେ
ଦୁର୍ଯ୍ୟୋଧନ ମାଉଁସ ବିଲୁଆ ଖାଇବେ ।
କ୍ଷତ୍ରିୟକୁଳେ ଆମେ ହୋଇଥାଉଁ ଜାତ
ଯୁଦ୍ଧକୁ ଆସି ଏବେ ହେବା କି ବିରତ ।
ଏ ସକାଶୁଁ ଆନ ବଳକୁ ଅନୁରୂପ
ଯୁଦ୍ଧ କରି କରିବା ଶରୀରକୁ ଲୋପ ।
ମଲେ ସ୍ୱର୍ଗପୁରେ ପାଇବା ଆମ୍ଭେ ପୂଜା
ପୁତ୍ରଶୋକୀ ହୋଇବେ ଧୃତରାଷ୍ଟ୍ର ରାଜା ।
ଲାଜ ତା ମୁଖରୁ ସେ ଦେଇଛନ୍ତି ଖାଇ
ତାହାଙ୍କୁ ବୋଲିବାରେ ଆଉ କାର୍ଯ୍ୟ ନାହିଁ
ଏରୂପେ କଥାବାର୍ତ୍ତା ହୋଇ ତୁମ୍ଭ ସୈନ୍ୟେ
ବଜାଇଲେ ବୀରବାଜାକୁ ତୋଷମନେ ।
ହାତୀ ଘୋଡ଼ା ରଥ ପାଇକଙ୍କର ଧ୍ୱନି
ପୂରିଲା ଆକାଶରେ ତୁଲରେ ଅବନୀ ।
କର୍ଣ୍ଣ ରଥରେ ଶ୍ୱେତଘୋଡ଼ାକୁ ଯୋଗୁଇ
ଶ୍ୱେତ ପତାକାକୁ ମଣ୍ଡିଲେ ତହିଁ ନେଇ ।
ହସ୍ତି କକ୍ଷାଟାଏ ତ ଅଟେ ତାଙ୍କ ଧ୍ୱଜ
ସେ ପୁଣି ସେହିକାଳେ ପ୍ରକାଶିଲା ତେଜ ।
ସହସ୍ର ସଂଖ୍ୟା ଧନୁ ତୂଣୀ ରଥେ ଥୋଇ
ଯୁଦ୍ଧକୁ ଯିବାକୁ ବସିଲେ ତହିଁ ଯାଇ ।
ଦୁଇହାତରେ ଶଙ୍ଖ ଧରିଣ ଫୁଙ୍କିଲେ
ସେ ଶବଦ ନିଜ ଜନଙ୍କୁ ତୋଷ କଲେ ।
କର୍ଣ୍ଣ ଧନୁର୍ଗୁଣ ଦିଅନ୍ତେ ଟଙ୍କାର
ଦେଲେ ତୁମ୍ଭର ଲୋକେ ଚପଡ଼ି ପାସୋର ।
ମକର ବ୍ୟୂହ କର୍ଣ୍ଣ କରି ଯୁଦ୍ଧ ଦାଣ୍ଡେ
ରହିଲେ ବ୍ୟୂହ ଆଗେ ଧନୁ ସନ୍ଧି କାଣ୍ଡେ ।

ସେହି ମକର ବ୍ୟୂହ ନେତ୍ରରେ ଶକୁନି
ରହିଲେ ସଙ୍ଗେ ପୁଅ ଉଲୁକକୁ ଘେନି ।
ମସ୍ତକଭାଗେ ତା ରହିଲେ ଦ୍ରୋଣସୁତ
ପାଣ୍ଡବଙ୍କ ସେନା ହାତରେ ଦେଇ ଚିତ୍ତ ।
ଗ୍ରୀବାରେ ଦୁର୍ଯ୍ୟୋଧନ ଭାଇଏ ରହିଲେ
ଦୁର୍ଯ୍ୟୋଧନ ସେ ବ୍ୟୂହମଧ୍ୟକୁ ଜଗିଲେ ।
କୃତବର୍ମା ନାରାୟଣ ବଳକୁ ଧରି
ହେଲେ ସେ ବ୍ୟୂହ ବାମଭାଗ ରକ୍ଷାକାରୀ ।
ସେ ବ୍ୟୂହ ଦକ୍ଷିଣପାଦକୁ ଦାକ୍ଷିଣାତ୍ୟ -
ବଳ ଘେନି ରହିଲେ କୃପ ଶାରଦ୍ୱତ ।
ବାମ ପାଦୁଟିକି ଯେ ଶାଲ୍ୱ ମହାବଳୀ
ଜଗିଲେ ରାଜନ ହେ କରେ ଧନୁ ଗୁଳି
ସହସ୍ର ସଂଖ୍ୟା ରଥ ଘେନିଣ ସୁଷେଣ
ଦକ୍ଷିଣପଟେ ସ୍ଥିତ ହୋଇଲେ ସେ ଜାଣ ।
ଚିତ୍ରସେନେ ଚିତ୍ରବ୍ୟୂହର ପୃଷ୍ଠଭାଗେ
ରହିଲେ କରେ ଧନୁଶର ଧରି ବେଗେ ।
କୁରୁଙ୍କର ସେନାଏ ରହିବାର ଜାଣି
ପାର୍ଥଙ୍କୁ କହିଲେ ପାଣ୍ଡବ ନରମଣି ।
ଭୀଷ୍ମ ଦ୍ରୋଣ ଆଦି ବୀରଙ୍କୁ ମାଇଲଇଁ
ଦେଖ କର୍ଣ୍ଣ ଏବେ ଆସିଛି ଯୁଦ୍ଧେ ଧାଇଁ ।
କର୍ଣ୍ଣ ସେନାପତି ମଣିଲେ ଧୃତରାଷ୍ଟ୍ର
ସେନା ରାଣ୍ଡ ହୋଇବେ ପାଇ ଯୁଦ୍ଧ କଷ୍ଟ ।
କର୍ଣ୍ଣର ମୁଣ୍ଡଟିକି ମୋ ବୋଲେ କଷଟି
କାଟିଦିଅ ଯାଉ ମୋ ଦୁଃଖଦଶା ତୁଟି ।
ଅର୍ଜ୍ଜୁନ ଶୁଣି ଯୁଧିଷ୍ଠିରଙ୍କ ବଚନ
ଅର୍ଦ୍ଧଚନ୍ଦ୍ର ବ୍ୟୂହ ରଚିଲେ ସେ ରାଜନ ।
ବ୍ୟୂହ ବାମ ଦକ୍ଷିଣେ ଭୀମ ଧୃଷ୍ଟଦ୍ୟୁମ୍ନ
ରହିଲେ ଧନୁ ଧରି ଯୁଦ୍ଧେ ଦେଇ ମନ ।
ମଧ୍ୟଦେଶେ ତାର ଅର୍ଜ୍ଜୁନ ଯୁଧିଷ୍ଠିର
ଜଗିଲେ ସଜ ଭରି ହୋଇ ଧନୁକର ।
ନକୁଳ ସହଦେବ ରାଜା ପୃଷ୍ଠରକ୍ଷା
ହୋଇଲେ ହେ ରାଜନ କରି ଯୁଦ୍ଧଦୀକ୍ଷା ।
ଯୁଧାମନ୍ୟୁ ଉତ୍ତମଓଜା ଦୁଇଭାଇ
ଚକ୍ର ରକ୍ଷା କଲେ ପାର୍ଥର ନରସାଇଁ ।
ଆଉ ବାକୀ ସରେ ବ୍ୟୂହର ବାକୀ ସ୍ଥାନ
ମାନଙ୍କେ ରହିଲେ ହସ୍ତିନାପତି ଜାଣ ।

କର୍ଣ୍ଣଙ୍କ କଳିବା ବ୍ୟୂହକୁ ଦୁର୍ଯ୍ୟୋଧନ
ଦେଖିଣ ମନେକଲେ ମଲେ ପାଣ୍ଡୁ ସୈନ୍ୟ ।
ଯୁଧିଷ୍ଠିର ରାଜା ଆପଣା ବ୍ୟୂହ ଦେଖି
ମନେବେ କୁ କୁ ବୋଲି ମନ କଲେ ସୁଖୀ ।
ଦୁଇସେନା ଯାକରେ ବାଜିଲା ବାଇଦ
କରାଇଲା ଯୋଦ୍ଧାମାନଙ୍କର ପ୍ରମୋଦ ।
ଘୋଡ଼ା ହାତୀରେ ଗରଜନେ ମେଲି ପଂକ୍ତି
ସେ ଶବଦ ଗଲା ଯେ ଆକାଶକୁ ଫୋଟି ।
ବ୍ୟୂହ-ମୁଖେ ଦେଖି କର୍ଣ୍ଣଙ୍କୁ କୁରୁ ସେନା
ଦ୍ରୋଣ ମଲା କଥାକୁ ନ କରେ ଗଣନା ।
ଦୁଇ ସେନାଯାକ ଅନ୍ୟୋନ୍ୟେ ଯୁଝିବାକୁ
ରହିଲେ ଉତ୍କଣ୍ଠ ଧନୁର୍ଦ୍ଧରମାନଙ୍କୁ ।
କର୍ଣ୍ଣ ଅର୍ଜୁନ ଦୁହେଁ ହୋଇଣ ସଯତ
କରିବା ଯୁଦ୍ଧ ବୋଲି ବଳାଇଲେ ଚିତ୍ତ ।
ପରସ୍ପରେ ଦୁଇ ସେନାଏ ମିଶାମିଶି
ହୋଇ ହେଲେ ଦେହରେ ଶର କଷାକଷି ।
ଦେବାସୁର ଚମୂ ପରାଏ କୁରୁ ଚମୂ
ଯୁଦ୍ଧ କରି ସ୍ୱର୍ଗେ ଧାଇଁଲେ ଦୁମୁ ଦୁମୁ ।
ବୀରମାନଙ୍କ ମୁଖ-ପଙ୍କଜ-ମାଳାଟି
ମଣ୍ଡି ଦେଲା ବସୁଧାଦେବୀ କରି ଗୋଟି ।
ଅର୍ଦ୍ଧଚନ୍ଦ୍ର ମୂଷଳ ପରଘ ପଟ୍ଟିଶ
ବାଜନ୍ତେ ଯୋଦ୍ଧାଏ ଗ୍ଲାହଲେ ପ୍ରାଣ ଆଶ ।
ଆୟୁଧ ଅଙ୍ଗଦ ସହିତେ ବାହୁଭୁଜ
ଚଳେ ପଡ଼ି ଦେଲେ ସର୍ପଙ୍କ ଶୋଭା ଭଜ ।
ହାତୀ ଘୋଡ଼ା ରଥରୁ ପୁଣ୍ୟକ୍ଷୟ ଲୋକ
ଚ୍ୟୁତ ହେଲା ପରି ପଡ଼ିଲେ ବୀରଯାକ ।
ସିପାଇଙ୍କି ସିପାଇ ଯମପୁରେ ବସ
ଦେଇ କେତେ ନେଲେ ଯୁଦ୍ଧରେ ପରଶଂସା
ଗଜାରୋହି ଗଜାରୋହୀଙ୍କୁ ହାଣି ବାଣ
ରଚ ପକାଇଲା କେ କାହାର ମରଣ ।
ରଥମାଡ଼ିବାରେ ପାଇକ କୋଟି କୋଟି
ମଲେ ଯେ ଲେସଡ଼ଣ ଦେଇ ଦୁଇପାଟି ।
ଏହି କାଳେ ଭୀମଙ୍କୁ ଆଗରେ ଚଳାଇ
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଗଲେ ଯୁଦ୍ଧ ପାଇଁ ।
ଦ୍ରୌପଦେୟ ସାତ୍ୟକ ଦ୍ରାବିଡ଼ ଭଦ୍ରକ
ଚେକିତାନ ଆଦି ଥିଲେ ଯେ ବୀରଯାକ ।
ଏ ବାହାରେ ମହତ ସୈନ୍ୟ ଅନୁସରି
ତାହାଙ୍କ ପଛେ ଥିଲେ ଜାଣ ଦଣ୍ଡଧାରୀ ।
ସେ ସୈନ୍ୟ ଅଙ୍ଗରେ ଚନ୍ଦନ ବୋଳି ହୋଇ
ଅଛନ୍ତି ଅଙ୍ଗେ ଦିବ୍ୟାଭରଣ ଲଗାଇ ।
ବଡ଼ ବଡ଼ ଅଛଇ ତାହାଙ୍କର ଆଗି
ମାତଙ୍ଗ-ବ୍ରହ୍ମଙ୍କୁ ପରନ୍ତି ସେ ଯୋଗି ।
କର୍ପୂର ଚୂର୍ଣ୍ଣ ଉର ଦେଶରେ ପକାଇ
ଦେଇଛନ୍ତି ପୁଣି ସେ ତାହାକୁ ଫୁଲାଇ ।
ଏ ବାହାରେ ପାଞ୍ଚାଳ କେକୟ ପୁରୁଷ
ଚେଦି ଆଦି ବୀରେ ଆସିଲେ ବହୁ ଶେଷ ।
ସେ ସୈନ୍ୟଯାକଙ୍କର ଗୁଣଦୋଷରଡ଼
ଶୁଣି ଭୟ ବସ୍ତ ମୋ କର୍ଣ୍ଣ ଦେଲା ଘୋଡ଼ ।

—❋—

## କ୍ଷେମଧୂର୍ତ୍ତି ଓ ଭୀମଙ୍କର ଯୁଦ୍ଧ

କୁରୁ ସେନାମଧ୍ୟେ ମହତ ଗଜ ଚଢ଼ି
ଭୀମସେନ ଯୁଝିଲେ କୁରୁ ଶର କାଢ଼ି ।
କ୍ଷେମଧୂର୍ତ୍ତି ରାଜା ନ ସହି ଭୀମ ଟାଣ
ବାହାରିଲା ଯୁଦ୍ଧକୁ ଧରି ଧନୁବାଣ ।
ସେ ତ ମଧ୍ୟ ହାତୀ ଗୋଟାଏ ଚଢ଼ିଥିଲେ
ଭୀମଙ୍କ ତୁଲେ ଦୁହେଁ ଯୁଦ୍ଧ ଆରମ୍ଭିଲେ ।
ଭୀମ କ୍ଷେମଧୂର୍ତ୍ତି ହୋଇଣ ଲଗାଲଗି
ସାବେଳୀ କରେ ଧରି ହେଲେ ଫିଙ୍ଗାଫିଙ୍ଗି
ପୁଣି ସେ ଦୁହେଁ ଧନୁଶରେ ଧରି ହାତେ
ବିନ୍ଧାବିନ୍ଧି ହୋଇଲେ ନ କାନ ମାଥେ ।
ସେ ଦୁହେଁ ଅନ୍ୟୋନ୍ୟରେ କାଟାକଟି ଧନୁ
ହୋଇ ଯୁଦ୍ଧଦାଣ୍ଡେ କମ୍ପାଇ ବୋଧେ ତନୁ ।
ବରଷା ମେଘପରି ଶକତ ତୋମର
ବୃଷ୍ଟି କଲେ ରାଜ୍ୟେ ସେ ଯୁଦ୍ଧେ ନିରନ୍ତର ।
କ୍ଷେମଧୂର୍ତ୍ତି ଭୀମଙ୍କ ବକ୍ଷକୁ ତୋମର
ସାତୋଟି ଫିଙ୍ଗି କଲେ ଗରଜନ ଘୋର ।
ସେ ତୋମର ଯାତୋଟା ଭୀମ ବୁକୁ ଫୁଟି
ପଡ଼ିଲା ଯାଇ ଖୋଳ ଯୁଦ୍ଧଭୂମି ମାଟି
ସୂର୍ଯ୍ୟ ଜ୍ୱଳନଙ୍କର ସମ ନ ତୋମର
ଫିଙ୍ଗିଲେ କ୍ଷେମଧୂର୍ତ୍ତି ଦେହେ ଭୀମ ବୀର ।
କ୍ଷେମଧୂର୍ତ୍ତି ଦଶକାଣ୍ଡେ ସେ ତୋମରଗୁଡ଼ି
କାଟି କଲା ବନ୍ଧରେ କାଣ୍ଡ ଛାଟିଏଟି ।

ଭୀମଙ୍କର ଦେହକୁ ହୋଇ କ୍ରୋଧମନ
ନ ସହି ଭୀମ ତା ଧଇଲେ ଶରାସନ ।
କ୍ଷେମଧୂର୍ତ୍ତ ହାତୀମୁଣ୍ଡକୁ ଭୀମ ସିଂହ
ଶର ନଖରେ ବିଦାରିଲେ ବହି କୋହ ।
ଭୀମଙ୍କର କାଣ୍ଡ ଆଘାତ ପାଇ ହାତୀ
ପଳାଇଲା ରକତ ମୁଖେ କରି ବାନ୍ତି ।
ଭୀମଙ୍କ ହାତୀ ତା'ର ଭାଗୁଡ଼କ ଦେଖି
ଧାଇଁଲା ତା ଗଣ୍ଡିକ ଦନ୍ତ ଦେଇ ଯୋଖି ।
କୁଳୁତା ଅଧିପତି ହାତୀ ଚଳଉଠାଇ
ଭୀମଙ୍କର ଉପରେ ବିନ୍ଧିଲେ ରୋଷାଇ ।
ଭୀମ କ୍ଷୁରକାଣ୍ଡେ କାଟି ତା ଶରାସନ
ବିନ୍ଧିଲେ ହାତୀକ ନାରାଚ ଅବିଚ୍ଛିନ୍ନ ।
କୁଳୁତାଧିପ ଦେଖି ଥରାଇଣ ମଜ୍ଜା
ଭୀମଙ୍କୁ ବୋଇଲେ ଦେଖିବ ଯମରାଜା ।
ସାନ ସାନ ତୋମରକୁ ସେ ଫିଙ୍ଗିଦେଇ
ଧନୁ ଧରି ଭୀମ ବିନ୍ଧିଲେ ପୁଣି ସେହି ।
ଶୁଣି ଭୀମ ହାତୀକ ବିନ୍ଧିଲେ ନାରାଚ
ସେ ଯେମନ ଗୁଡ଼ିଲା ତା ବୃରଗୋଡ଼ ମଞ୍ଚ ।
ହାତୀ ପଡ଼ୁ ପଡ଼ୁଁ ଭୀମ ଯେ ଡେଇଁପଡ଼
ପିଟିଲେ ତା ହାତୀକ ଟେକ ଗଦାବାଡ଼ ।
କ୍ଷେମଧୂର୍ତ୍ତର ହାତୀ ମରିବାର କାଳେ
ଡେଇଁଲା କରବାଳ ଧରି କରତଳେ ।
ତେଡ଼କ ବେଳେ ଭୀମବୀର ପିଟି ଗଦା
ଦେଲେ ତାହାର ମୁଣ୍ଡଟିକ କରି ଗଦା ।
ସେହି ସକାଶରୁ ଯେ କ୍ଷେମଧୂର୍ତ୍ତ ବୀର
ଧାଇଁଲା ଯମପୁରେ ହୋଇ ତତପର ।
ମରନ୍ତେ କ୍ଷେମଧୂର୍ତ୍ତ କୁଳୁତାଧିପତି
କୁଳୁତାଏ ଯୁଝିଲେ ହୋଇ କୋପମତି ।
କୁଳୁତାମାନଙ୍କର ଦେଖି ଯୁଦ୍ଧଠାଣ
ଭୀମ କାଣ୍ଡ ବିନ୍ଧି ନେଲେ ତାଙ୍କ ପ୍ରାଣ ।
ଏ ସକାଶୁଁ ଗୋଟାହୋଇ ସେ ନ ପାରିଲେ
ମୋଟା ଭୀମ ବଳରେ ଗୋଟି ଗୋଟି ହେଲେ

—*—

## କୌରବ ଓ ପାଣ୍ଡବ ବୀରଙ୍କ ମଧ୍ୟରେ ଯୁଦ୍ଧ

ଏଥୁଅନ୍ତେ କର୍ଣ୍ଣ ପାଣ୍ଡବ ବାହିନୀକ
ବାଛି ପଶି ବିନ୍ଧିଲେ କରେ ଧନୁ ଟେକ ।
ଯେରୂପେ ପାଣ୍ଡବେ ତୁମ୍ଭର ସେନାଗଣ—
ମାନଙ୍କୁ କର୍ଣ୍ଣ ଆଗେ ରଚିଲେ ମରଣ ।
ତାହା ଦେଖି ବିନ୍ଧିଲେ ରାଧାଙ୍କର ବତ୍ସି
କମାର ଶାଳ ମଜା କାଣ୍ଡମାନ ବାଛି ।
କର୍ଣ୍ଣଙ୍କ ସେ କାଣ୍ଡେ ବାଜନ୍ତେ ଗଜକୁଳ
ପାଡ଼ିଲେ ଡକା ଭୟେ ହୋଇଣ ଆକୁଳ ।
କର୍ଣ୍ଣଙ୍କର ବିକ୍ରମ ନ ସହି ନକୁଳ
ବାହାରିଲେ କରି ତାହାଙ୍କ ସଙ୍ଗେ ଗୋଳ ।
ଭୀମ ଦ୍ରୋଣପୁତ୍ର ଭୁଲରେ ବିନ୍ଧାବିନ୍ଧି
ହୋଇଲେ ମାରଗଣ ଧନୁମଧ୍ୟେ ସନ୍ଧି ।
ବିନ୍ଦ ଅନୁବିନ୍ଦକୁ ଶିନିଙ୍କ ପ୍ରବର
ସାତ୍ୟକି ଯୁଦ୍ଧ କଲେ ଧନୁ ଧରି କର ।
ଚିତ୍ରସେନା ରାଜା ଯେ ଶ୍ରୁତବର୍ମା ଭୁଲେ
ଯୁଦ୍ଧ କଲେ ରାଜନ ଡାକହାକ ଭଲେ ।
ପ୍ରତିବିନ୍ଧ୍ୟ ଚିତ୍ରଙ୍କୁ ରଣମଧ୍ୟେ ଯୋଟି
ବିନ୍ଧିଲେ ଆଖି ଦୁଇ ଦେଇଣ ତରାଟି ।
ଦୁର୍ଯ୍ୟୋଧନ ଯେ ଯୁଧିଷ୍ଠିରଙ୍କୁ ସମର
କଲେ ମାରି ହେବ ବୋଲିଣ ନୃପବର ।
ଅର୍ଜ୍ଜୁନ ସଂଶପ୍ତକଗଣେ ନେହେ ଦେଖି
ଧାଇଁଲେ ତାଙ୍କଠାକୁ ଧନୁରେ ଯୋଖି ।
ଧୃଷ୍ଟଦ୍ୟୁମ୍ନ କୃପାଚାର୍ଯ୍ୟଙ୍କୁ ଯୁଝିଲେ
ଶିଖଣ୍ଡି କୃତବର୍ମା ବୀରଙ୍କୁ ଡାକିଲେ ।
ଶ୍ରୁତକୀର୍ତ୍ତି ଭୁଲେ ଯୁଝିଲେ ଶାଲ୍ୟ ରାଜା
ଯେମନପିବା ଯୁଦ୍ଧରେ ଜୟକର ମଜ୍ଜା ।
ସହଦେବ ଦୁଃଶାସନର ଗଣ୍ଡିଟିକ
ତଡ଼ୁସାଇ କାଣ୍ଡକୁ ଯୁଝିଲେ ଧନୁ ଟେକି ।
କେକୟ ଦୁଇଭାଇ ହୋଇ ଏକମନ
ସାତ୍ୟକିଙ୍କର ଭୁଲେ କଲେ ଆୟୋଧନ ।
ସାତ୍ୟକି ସେ ଦୁଇଭାଇଙ୍କ ଧନୁ ଭିଡ଼ି
ବିନ୍ଧିଲେ ଶରଧାରା ଟିକଏ ନ ଛାଡ଼ି ।

ସେ ଦୁଇଭାଇ ପୁଣି ଝିଙ୍କିଣ ଧନୁଟି
ବାନ୍ଧିଲେ ସାତ୍ୟକଙ୍କ ଦେହେ ଶର ଯୋଚି ।
ସେ ଦୁଇଭାଇଙ୍କର ଶର ଧରି ଅଙ୍ଗେ
ନ ପାଇ ବ୍ୟଥା ସେ ଯୁଝିଲେ ତାଙ୍କ ସଙ୍ଗେ
ବିନ୍ଦ ଅନୁବିନ୍ଦଙ୍କୁ ସାତ୍ୟକଙ୍କ ଶର
ଆଚ୍ଛନ୍ନ କରିଦେଲା ଜାଣ ନରବର ।
ସେ ଦୁଇଭାଇଙ୍କୁ ସାତ୍ୟକଙ୍କର ରଥକୁ
ଛାଇଦେଲେ ତୀକ୍ଷଣ ମାର୍ଗଣ ଗଣକୁ ।
ତାହା ଦେଖିକରି ସାତ୍ୟକ ମହାବଳୀ
ସେ ଦୁଇଭାଇଙ୍କୁ କାଟିଲେ ଧନୁ ଚଳି ।
ପୁଣି ସେ ଦୁଇଭାଇ ଧରି ଆନ ଧନୁ
କମ୍ପାଇଲେ ଶରରେ ସାତ୍ୟକଙ୍କ ତନୁ ।
ବିନ୍ଦ ଅନୁବିନ୍ଦଙ୍କ ଧନୁ ଘନେ ବଜୁ
ପରସ୍ପେ ମାର୍ଗଣ ବର୍ଷିଲେ ଅଭଙ୍ଗୁ ।
ପରସ୍ପରେ ସେ ତିନ ବୀରେ ଧନୁ କାଟି
ଗରଜନ କଲେ ମେଳଦେଇ ଚୋଟି ।
ସାତ୍ୟକ ଆନ ଧନୁ କରଦେଶେ ବାନ୍ଧି
କ୍ଷୁରକାଣ୍ଡେ ଗୁଣରେ ସନ୍ଧାଣ ଯୋଷାଇ ।
ଅନୁବିନ୍ଦ ମୁଣ୍ଡ କୁଣ୍ଡଳ ଭୁଲେ କାଟି
ପକାଇ ଦେଲେ ଚଳେ କରି କୋପ ଦୃଷ୍ଟି ।
ଅନୁବିନ୍ଦ ମରଣ ନ ସହିଣ ବିନ୍ଦ
ସାତ୍ୟକଙ୍କ ସଙ୍ଗତେ କଲା ଘୋର ଦ୍ୱନ୍ଦ୍ୱ ।
ସାତ୍ୟକଙ୍କି ଷାଠିଏ କାଣ୍ଡ ଧନୁ ଟାଣି
ବିନ୍ଦ ରହ ରହ ବୋଲି ସେ ଭାରମଣି ।
ସାତ୍ୟକଙ୍କ ଉର ବାହୁକୁ ମାରଗଣ
ବାନ୍ଧିଲା ବାଛି ବାଛି ବନ୍ଧୁ ନରଗଣ ।
ସେ ଶରେ ବିନ୍ଦ ବାହୁବଳରେ ଗମିଲେ
ସାତ୍ୟକଙ୍କ ଦେହରେ ବାଜି ଚଳିଗଲେ
ସାତ୍ୟକ ତା ନ ସହି କ୍ରୋଧେ ହସିଦେଇ
ବାନ୍ଧିଲେ ଦିବ୍ୟଶର ଗୁଣରେ ବସାଇ ।
ସେ ଦୁଇ ରଥୀ ଯୁଦ୍ଧେ ଅତ୍ୟନ୍ତ ସମର୍ଥ
କଟ କଟି ହୋଇଲେ ଧ୍ୱଜ ଧନୁ ରଥ ।
ଏ ବାହାରେ ସାରଥିହୟଙ୍କର ପ୍ରାଣ
ପରସ୍ପରେ ନେଲେ ତୀକ୍ଷଣ ମାରଗଣ ।
ସେ ଦୁହେଁ ଗଜନ ଅତ୍ୟନ୍ତ ରଣରଙ୍କା
ଖଣ୍ଡା ଫରି ଧରିଣ ବାହାରିଲେ ଏକା ।

ଦେବାସୁର ଯୁଦ୍ଧରେ ଜମ୍ଭ ପୁରନ୍ଦର
ଯୁଝିଲା ପରି ଦିଶିଲେ ସେ ଦୁଇବୀର ।
ନାନାକାନ୍ତ ମଣ୍ଡଳମାନଙ୍କୁ ସେ କଲେ
ଫରିକ ଲମ୍ଫ ମାଡ଼ ଆଣ୍ଠୁରେ ପାଞ୍ଚିଲେ ।
ପୁଣି ସେ ଦୁଇବୀର ବାହା ବାହା ଭାଇ
ବୋଲି ଡକାଡକି ହୋଇଲେ ନଠାଇ ।
ସାତ୍ୟକ ସେକାଳେ ପ୍ରହାରି କରବାଳ
ବିନ୍ଦ କର ଫରିକ କଲେ ଦୁଇଫାଳ ।
ସାତ୍ୟକଙ୍କ ଫରିକ ମାରି ବିନ୍ଦ ଖଣ୍ଡା
କାଟି ପକାଇଦେଲେ ସେ ତ ମହାଭେଣ୍ଡା ।
ଯାଆନ୍ତେ ଫରି ଛାଡ଼ି ଖଣ୍ଡା କରେ ବାନ୍ଧି
ଡେଇଁଲେ ଯୁଦ୍ଧଦାଣ୍ଡେ ଗତକ ଦେଖାଇ ।
ବିନ୍ଦଙ୍କର ବେକରେ ମାରି କରବାଳ
କଲେ ସେ ଦୁଇଖଣ୍ଡ ସାତ୍ୟକ ଦୁଲାଳ ।
ଏହା କରି ସାରି ସାତ୍ୟକ ମହାଯଶା
ପାଣ୍ଡବ ସଇନରୁ ପାଇ ପରଶଂସା ।
ଯୁଧାମନ୍ୟୁଙ୍କ ରଥବରରେ ବସିଲେ
ଦୁଇହାତେ କଣକୁ ଆଉଁଷି ହସିଲେ ।
ଏକାଳେ ସାରଥି ଦିଅନ୍ତେ ଆଣି ରଥ
ତହିଁରେ ବସିଲେ ସାତ୍ୟକ ମହାରଥ ।
କଇକେୟମାନଙ୍କୁ ମାର୍ଗଣ ପ୍ରହାରି
ନେଲେ ସେ ତାହାଙ୍କର ଜୀବନକୁ ହରି ।
କଇକେୟ ସେନାଏ ସାତ୍ୟକଙ୍କ ବାଣ
ନ ସହି କରି ଛାଡ଼ି ପଳାଇଲେ ରଣ ।
ଶ୍ରୁତକର୍ମା ଚିତ୍ରସେନଙ୍କୁ କ୍ରୋଧ ହୋଇ
ପଞ୍ଚାଅଶୀ କାଣ୍ଡ ବାନ୍ଧିଲେ ନଠିଆଇ ।
ଚିତ୍ରସେନ ଶ୍ରୁତକର୍ମାଙ୍କୁ ନବ ଶର
ତୀକ୍ଷଣ ଛାଡ଼ି କଲେ ସୁତକୁ ପ୍ରହାର ।
ଶ୍ରୁତକର୍ମା ବୀର ଯୁଦ୍ଧରେ ଅତି ତମେ
କାଣ୍ଡ ଛଟିଏ ବାନ୍ଧିଲେ ଚିତ୍ରସେନ ମର୍ମେ ।
ସେ କାଣ୍ଡର ଘାତରେ ଚିତ୍ରସେନ ବୀର
ମୋହ ଗଲେ ଜାଣ ହସ୍ତିନା ନରବର ।
ଚିତ୍ରସେନ ଉଠିଲେ ଆନ ଧରି ଧନୁ
ଭଲକାଣ୍ଡେ କାଟିଲେ ଶ୍ରୁତକର୍ମା ଧନୁ ।
ସେ ସମସ୍ତେ ଶ୍ରୁତକର୍ମାଙ୍କୁ ଚିତ୍ରସେନ
ନିଜ କାଣ୍ଡ ବାନ୍ଧି କରିଣ କଲା ଛନ୍ନ ।

ଶ୍ରୁତକର୍ମା ପୁଣି ଧରିଣ ଆନ ଧନୁ
ଘୁଞ୍ଚଇଲେ ଶର ବାନ୍ଧି ଚିତ୍ରସେନ ତନୁ ।
ଚିତ୍ରସେନ ଶ୍ରୁତକର୍ମାଙ୍କର କାଣ୍ଡରେ
ବାନ୍ଧିଲେ ଝିଙ୍କରୂପ ସେ ଯୁଦ୍ଧ ଦାଣ୍ଡରେ ।
ପୁଣି ଶ୍ରୁତକର୍ମା ହୃଦକୁ କାଣ୍ଡେ ବାନ୍ଧି
ରହ ରହ ବୋଇଲେ କ୍ରୋଧେ ହୋଇ ରୁନ୍ଧି
ଶ୍ରୁତକର୍ମା ଚିତ୍ରସେନଙ୍କ ମାରଗଣ
ବଳହନ୍ତେ ବୁହାଇଲା ରକ୍ତ ଅପଘନ ।
ଶ୍ରୁତକର୍ମା ଚିତ୍ରସେନଙ୍କ ଧନୁ କାଟି
ଘୋଡ଼ାଇ ଦେଲେ ତାଙ୍କୁ କରି ଶରବୃଷ୍ଟି ।
ଭଲକାଣ୍ଡରେ କାଟି ଚିତ୍ରସେନ ମୁଣ୍ଡ
ଶ୍ରୁତକର୍ମା ଗର୍ଜିଲେ ଫୁଲାଇଣ ପିଣ୍ଡ ।
ଚନ୍ଦ୍ର ବିମ୍ବ ମହୀରେ ପଡ଼ିଲା ପରାୟେ
ସେ ମୁଣ୍ଡ ପଡ଼ିଲା ଦେଖିଲୁଁ ନରରାୟେ ।
ଚିତ୍ରସେନ ମରଣ ଦେଖି ଅଭିସାର—
ମାନେ ଶ୍ରୁତକର୍ମାଙ୍କୁ କଲେଟି ସମର ।
ଶ୍ରୁତକର୍ମା ଅତ୍ୟନ୍ତ ତ ମହାଧାନୁକୀ
କଲେ ଶରେ ଯୋଦ୍ଧାଙ୍କ ଚଣ୍ଡି ଟିକ ଟିକ ।
ତୁମ୍ଭ ନାଥ ଶ୍ରୁତକର୍ମାଙ୍କ ମାରଗଣ
ବାଜନ୍ତେ ସେ ଯୋଦ୍ଧାଏ ଭାଜିଲେଟି ଜାଣ ।
ପ୍ରତିବିନ୍ଧ୍ୟ ଚିତ୍ରରାଜାଙ୍କୁ ପାଞ୍ଚ ବାନ୍ଧି
ସାରଥିକି ଦେଲେ ତିନିକାଣ୍ଡରେ ରୁନ୍ଧି ।
ଧ୍ୱଜକୁ କାଣ୍ଡକରେ ପକାଇ ଛିଣ୍ଡାଇ
ବୋଇଲେ ରହ ଭାଇ ଯିବୁ ଅଜ କାହିଁ ।
ଚିତ୍ର ପ୍ରତିବିନ୍ଧ୍ୟଙ୍କ ବାହୁ ଉରୁଦେଶେ
ନବକାଣ୍ଡ ବାନ୍ଧିଲେ ଜାଣ ଅତି ରୋଷେ ।
ପ୍ରତିବିନ୍ଧ୍ୟ ଚିତ୍ରଙ୍କ ଧନୁନିକି କାଟି
ପାଞ୍ଚକାଣ୍ଡ ବାନ୍ଧିଲେ ଧନୁମଧ୍ୟେ ଯୋଚି ।
ତୁମ୍ଭ ନାଥ ପ୍ରତିବିନ୍ଧ୍ୟଙ୍କୁ ଚିତ୍ରରାଜା
ଶକ୍ତିଟା ଫିଙ୍ଗିଲେ ମାରିବା କରି ମଜ୍ଜା ।
ସେ ଶକ୍ତି ଉଲକାପରି ଯାନ୍ତେ ଯୁଦ୍ଧଦାଣ୍ଡେ
ପ୍ରତିବିନ୍ଧ୍ୟ କାଟିଲେ ତାହା ତିନିକାଣ୍ଡେ ।
ଶକତି ହତ ଦେଖି ଚିତ୍ର ମହାବୀର
ଫିଙ୍ଗିଲେ ସୁନାପଟା ବନ୍ଧା ଗଦାବର ।
ଚିତ୍ର ହାତରୁ ଫିଙ୍ଗି କରି ସେ ଗଦାଟି
ଭାଙ୍ଗି ରଥ କଲା ସାରଥି ପ୍ରାଣ ଲୁଟି ।

ପ୍ରତିବିନ୍ଧ୍ୟ ରଥରୁ ଡେଇଁଣ ପଡ଼ିଲେ
ସୁନାପଘଣ୍ଟା ବନ୍ଧା ଶକତି ଫିଙ୍ଗିଲେ ।
ସେହି ଶକତି ଆସୁଁ ଆସୁଁ ଉଚ୍ଚ ଡେଇଁ
ହାତେ ଧରି ତାହାଙ୍କୁ ଭିଙ୍ଗିଲେ ରୋଷାଇ ।
ଶକତି ପ୍ରତିବିନ୍ଧ୍ୟ ବାହୁତଳେ ଗଲା
ମହୀତଳେ ପଡ଼ିଲା ରକ୍ତ ହୋଇ ବୋଳ ।
ପ୍ରତିବିନ୍ଧ୍ୟ କ୍ରୋଧ ହୋଇଣ ସେ ତୋମର
ଫିଙ୍ଗିଲେ ଚିତ୍ର ପ୍ରାଣ ନେବାକୁ ତାଙ୍କର ।
ସେ ତୋମରଟି ଅତିବିନ୍ଧ୍ୟ ହାତୁ ଫିଟି
ଚିତ୍ର ଦେହ ଫିଟାଇ ଗଲା ମହୀ ଫୁଟି ।
ଚିତ୍ର ସେ ସକାଶୁଁ ପ୍ରସାରି ଦୁଇବାହୁ
ପଡ଼ିଲେ ରଥତଳେ ରଥୀକୁଳସାହୁ ।
ଚିତ୍ରଙ୍କର ମରଣ ଦେଖି ତୁମ୍ଭ ଲୋକେ
ପ୍ରତିବିନ୍ଧ୍ୟ ଭୁଲେ ଯୁଝିଲେ ଅତି ଦକେ ।
ପ୍ରତିବିନ୍ଧ୍ୟ ଦେହକୁ କରି ବାଣବୃଷ୍ଟି
ବଢ଼ାଇଲେ ସଇନଲୋକେ ସୁଖସୃଷ୍ଟି ।
ପ୍ରତିବିନ୍ଧ୍ୟ ତାହା ନ ସହି ମାରଗଣ
ବାନ୍ଧି ନେଲେ ତୁମ୍ଭର ସେନାର ପରାଣ ।

—❋—

## ଭୀମ ଓ ଅଶ୍ୱତ୍ଥାମାଙ୍କ ଯୁଦ୍ଧ

ପ୍ରତିବିନ୍ଧ୍ୟ ଶର ଘାତକୁ ତୁମ୍ଭ ସୈନ୍ୟ
ଦନ ପାଇ କରି ଜଅନ୍ତେ ଛିନ୍ନଭିନ୍ନ ।
ଅଶ୍ୱତ୍ଥାମା ଏକାକୀ ଭୀମଠାକୁ ଯାଇ
ଯୁଦ୍ଧ କଲେ ଭୀଷଣ ଧନୁକୁ କମ୍ପାଇ ।
ସେ ଦୁହିଙ୍କର ଯୁଦ୍ଧହେଲା ଅତି ଟାଣ
ବୃତ୍ର ବାସବଙ୍କ ପରାୟେ ରାୟେ ଜାଣ ।
ଅଶ୍ୱତ୍ଥାମା ଭୀମର ଚଣ୍ଡିକି ଦେଖାଇ
ବାନ୍ଧିଲେ କାଣ୍ଡମାନ ଲଖାଇ ଲଖାଇ ।
ପୁଣି ଭୀମଙ୍କର ମରମ ସ୍ଥାନମାନ
କାଟିଲେ ନଉକାଣ୍ଡେ ଦ୍ରୋଣଙ୍କ ନନ୍ଦନ ।
ଭୀମ ଦ୍ରୋଣଙ୍କର କାଣ୍ଡରେ ମଣ୍ଡି ହୋଇ
ସୂର୍ଯ୍ୟ ପରି ଯୁଦ୍ଧେ ଦିଶିଲେ ନରସାଇଁ ।
ସହସ୍ରେ ଶର ବାନ୍ଧି ଭୀମସେନ ରୋଷେ
ଗରଜନ କଲେ ସେ ସମର ପ୍ରଦେଶେ ।
ଅଶ୍ୱତ୍ଥାମା ଭୀମ କାଣ୍ଡକୁ କାଣ୍ଡେ କାଟି
ଭୀମଙ୍କ କପାଳେ ନାରାଚ କଲେ ବୃଷ୍ଟି ।

ଅଶ୍ୱତ୍ଥାମା ନାରାଚ ଭଳିତଲେ ଭୀମ
ବହ୍ଣ ହେଲେ ଶୃଙ୍ଗ ଥିବା ଗିରି ସମ ।
ଭୀମ ଯେ ସେହିରୂପେ ଅଶ୍ୱତ୍ଥାମାଙ୍କର
ଭାଲକୁ ବିନ୍ଧିଲେ ବଜାଇ ତିନି ଶର ।
ଦ୍ରୌଣି ସେ ତିନିକାଣ୍ଡ ବିନ୍ଧି ତିନି ଶୃଙ୍ଗ—
ଥିବା ଗିରି ତୁଲେ ହୋଇଲେ ଯାଇ ସଙ୍ଗ ।
ଶତ ଶତ କାଣ୍ଡ ବିନ୍ଧିଲେ ହେଲେ ଭୀମ
ଭଙ୍ଗି ନ ପାରିଲେ ଟି ଦ୍ରୌଣିଙ୍କ ବିକ୍ରମ ।
ଅଶ୍ୱତ୍ଥାମା ସେହିରୂପେ ଶତ କାଣ୍ଡେ ବିନ୍ଧି
ନ ପାରିଲେ ଭୀମଙ୍କ ଯିବା ଦାଣ୍ଡ ରୁନ୍ଧି ।
ସେ ଦୁଇ ରଥ-ସୂର୍ଯ୍ୟଶର କିରଣକୁ
ପ୍ରକାଶି ପୀଡ଼ା ଦେଲେ ଅନ୍ୟୋନ୍ୟ ଦେହକୁ
ଦୁହେଁ ବାଘ ପରାଏ ଧନୁ ପାଞ୍ଚି ମେଳ
ଯୁଦ୍ଧକୁ ଗମିଲେ ହେବାକୁ ଗିଳାଗିଳ ।
ଦୁହେଁ ପରସ୍ପରେ ସରଳ ଶର ଘନ
କରିଲେ ଦେହ ଗିରିମାନଙ୍କୁ ଆଚ୍ଛନ୍ନ ।
ପୁଣି ସେ ଦୁଇ ଭାରେ ବିକ୍ରମ ଦେଖାଇ
ଯୁଦ୍ଧ କଲେ କ୍ରୋଧରେ ଦେହକୁ ରୁଷାଇ ।
ଦ୍ରୋଣ ଭୀମଙ୍କର ଦକ୍ଷିଣପାଶେ ଯାଇ
ବିନ୍ଧିଲେ ମାରଗଣ ଅନୁକୁ କମ୍ପାଇ ।
ଭୀମ ତାହା ସହି ନ ପାରି କ୍ରୋଧେ ଅଙ୍ଗ
ଥରାଇ କଲେ ଅଶ୍ୱତ୍ଥାମା ଦେହ ରଙ୍ଗ ।
ସେ ଦୁହେଁ ଅନ୍ୟୋଽନ୍ୟରେ ମଣ୍ଡଳ ଦେଖାଇ
ଦେଲେ ଶରମାନଙ୍କୁ ଦେହରେ ଲଖାଇ ।
ପୁଣି ସେ ବିବିଧ ମାରଣମାନ କଲେ
ଅନ୍ୟୋନ୍ୟ ଜୀବ ନେବାପାଇଁ ଦଉଡ଼ିଲେ ।
ଅଶ୍ୱତ୍ଥାମା ଯେ ଦିବ୍ୟ ଅସ୍ତ୍ରମାନ କରି
ଯୁଦ୍ଧ କଲେ ଭୀମଙ୍କୁ ଦେବାକୁ ସଂହାରି ।
ଭୀମ ଅସ୍ତ୍ର ବଳରେ ଅଶ୍ୱତ୍ଥାମା ଅସ୍ତ୍ର
କାଟିଣ ଥରାଇଲେ ତାହାଙ୍କର ଗାତ୍ର ।
ରଥଯୁଦ୍ଧ ପରି ଦୁହିଙ୍କ ଅସ୍ତ୍ରଯୁଦ୍ଧ
ପ୍ରବର୍ତ୍ତିଲ ରାଜନ ଜପ୍ୟେ କରି ସଧ ।
ଦୁଇ ରଥୀ ବାଣ ବିନ୍ଧନ୍ତେ ବାଛି ବାଛି
ମହାକ ଦେଖ ସୂର୍ଯ୍ୟ କିରଣ ମୁଚ୍ଛିଛି ।
ବାଣରେ ବ୍ରହ୍ମାଣ୍ଡ ଆବୃତ ହୁଅନ୍ତେ
ନ ଦିଶିଲା ରାଜନ ଆକାଶ କା କେଣେ ।

ଅଶ୍ୱତ୍ଥାମା ଭୀମଙ୍କ କାଣ୍ଡେ ବଜାବଜ
ହୁଅନ୍ତେ ଜାତ ହେଲେ ଜାତବେଦରାଜ ।
ଯୁଦ୍ଧ ଦାଣ୍ଡରେ ପଡ଼ି ଭୂମି ତାଙ୍କ ସୈନ୍ୟ
ବନକୁ ପୋଡ଼ି ଦେଲା ଜାଣ ହେ ରାଜନ ।
ଚାରଣ ସିଦ୍ଧ ଆକାଶରେ ଥାଇଁ ଦେଖି
ବୋଇଲେ ଏଡ଼େ ଯୁଦ୍ଧ ନାହିଁ ଆମ୍ଭେ ଦେଖି
ଅଶ୍ୱତ୍ଥାମା ଭୀମଙ୍କ ଅସ୍ତ୍ର ପରାକ୍ରମ
କଥାରେ ଦେଖିଥାଇଁ ଅଟନ୍ତି ଏ ସମ ।
ବାଳଦେବ ପରି ଏ ଦୁହେଁ ଯୁଦ୍ଧଦାଣ୍ଡେ
ସଂହାର କରନ୍ତି ଗଣ୍ଡିକ ମଣ୍ଡି କାଣ୍ଡେ ।
ଏହିରୂପରେ ସିଦ୍ଧମାନେ ମନେ ଭାଳି
ବୋଇଲେ ସେ ଦୁହିଙ୍କି ତୁମ୍ଭେ ଏକା ବଳୀ ।
ସେକାଳେ କ୍ରୋଧେ ଭୀମ ଅଶ୍ୱତ୍ଥାମା ଦୁଇ
କାମୋଡ଼ି ଓଷ୍ଠକୁ ଯୁଝିଲେ ନଠିଆଇ ।
ଅନ୍ୟୋଽନ୍ୟରେ ଧ୍ୱଜକୁ ହୋଇ ବିନ୍ଧାବିନ୍ଧ
ଅନ୍ୟୋଽନ୍ୟ ସାରଥି ପ୍ରାଣକୁ ନେଲେ ରୁନ୍ଧି ।
ପୁଣି ଅନ୍ୟୋଽନ୍ୟରେ ଧନୁକୁ ମଧ୍ୟ ଭିଡ଼ି
ସରଜନା କଲେ ସେ ଦୁହେଁ ଶରଧାଡ଼ି ।
ଏ ପ୍ରକାରେ ରଣ କରି ସେ ଦୁଇ ଜଣ
ପଡ଼ିଲେ ଶୋଇ ରଥେ ମୋହକୁ ପାଇଣ ।
ସାରଥି ଦ୍ରୌଣି ମୋହକୁ ଜାଣିପାରି
ଆଣିଲା ରଥ କୁରୁସୈନ୍ୟ ବାହାକରି ।
ସେ ରୂପେ ଭୀମ ମୋହ ଜାଣିଣ ବିଶୋକ
ଲେଉଟାଇଣ ନେଲା ରଥ କରି ଶୋକ ।



## ଅର୍ଜ୍ଜୁନ ଓ ଅଶ୍ୱତ୍ଥାମାଙ୍କର ଯୁଦ୍ଧ

ଏହା ଶୁଣିଣ ଧୃତରାଷ୍ଟ୍ର ନରମଣି
ସଞ୍ଜୟକୁ ବୁଝି କହିଲେ ଏହି ବାଣୀ ।
ସଂଶପ୍ତକମାନଙ୍କ ତୁଲେ ଅରଜୁନ
କି ରୂପେ ଯୁଦ୍ଧ କଲେ କରତା ବଖାଣ ।
ଏ ବାହାରେ ପୁଣି ଯେ ଅଶ୍ୱତ୍ଥାମା ବଳୀ
ବଳକୁ ଅରଜୁନ ପକାଇଲେ ଦଳି ।
ଏହା ଶୁଣିବାକୁ ହେଉଛି ମୋର ମନ
କହ ଆହେ ସଞ୍ଜୟ ସାରଥିପ୍ରଧାନ ।
ସଞ୍ଜୟ ବୋଇଲେ ହେ ସଂଶପ୍ତକ ତୁଲେ
ଯେରୂପେ ଯୁଝିଲେ ଅର୍ଜ୍ଜୁନ ଶୁଣ ଭଲେ ।

ସଂଶପ୍ତକ ତୃଣବନରେ ପାର୍ଥ ପଶି
ବାଣ ଅନଳରେ ତା ପକାଇଲେ ଧ୍ୱଂସି ।
ଅର୍ଜ୍ଜୁନ ଶରେ ସଂଶପ୍ତକ ମୁଣ୍ଡ କାଟି
ଛାଡ଼ ରଣଧୂଳି ଖାଇଲେ ମେଳ ପାଟି ।
କ୍ଷୁରକାଣ୍ଡେ ସଂଶପ୍ତକର ବାହୁଗଣ
କାଟିଲେ କେତେ ବୀରବର ଅର୍ଜ୍ଜୁନ ।
ଧ୍ୱଜା ଧନୁ ଘୋଡ଼ା ଯେ ସାରଥିଙ୍କି ଛନ
ଶରରେ ପକାଇଲେ କାଟି ପାର୍ଥ ବଳୀ ।
ତେବେ ହେଲେ ଭୂମ୍ବର ସଂଶପ୍ତକବଳ
ନ ଛାଡ଼ି ଯୁଦ୍ଧରେ ଅର୍ଜ୍ଜୁନ ତୁଲେ ମେଳ ।
ଦାନବ ଇନ୍ଦ୍ରଙ୍କର ଯୁଦ୍ଧ ହେଲା ପ୍ରାୟେ
ଅର୍ଜ୍ଜୁନ ସଂଶପ୍ତକେ ଯୁଝିଲେ ହେ ରାୟେ ।
ଅର୍ଜ୍ଜୁନ ଅସ୍ତ୍ରେ ଅସ୍ତ୍ରମାନଙ୍କୁ ନିବାରି
ନେଲେ ସଂଶପ୍ତକର ଦେହୁଁ ପ୍ରାଣ ହରି ।
ସହସ୍ରେ ମହାରଥି ସମ ଆୟୋଧନ
ଏକା ହୋଇ କଲେ ସେକାଳେ ଅର୍ଜ୍ଜୁନ ।
ଚକ୍ର ଯେ ଅକ୍ଷ ଯୋଧ ସାରଥି ତୂଣୀର
ଧ୍ୱଜ ଯୋତା ବରୁଥ ତୁରଗ କୁବର ।
ଅର୍ଜ୍ଜୁନ କାଣ୍ଡରେ ହୋଇ ଖଣ୍ଡି ଖଣ୍ଡି
ପଡ଼ିଲେ ହେ ରାଜନ ମହୀଦେଶ ମଣ୍ଡି ।
ତା ଦେଖି ଦେବତାଏ ବୋଲି ଅଚ୍ଛା ଅଚ୍ଛା
ବୋଇଲେ ବୀରଙ୍କରେ ଅର୍ଜ୍ଜୁନଟି ବଚ୍ଛା ।
ପୁଣି ଦୁନ୍ଦୁଭିକ ବଜାଇ ଆକାଶରେ
ପୁଷ୍ପବୃଷ୍ଟି କଲେ ଅର୍ଜ୍ଜୁନ କୃଷ୍ଣ ଶିରେ ।
ଚନ୍ଦ୍ର ଅର୍କ ଅନଳ ପବନ ପରାୟେ
କାନ୍ତି ଝିପ୍ତି ଦ୍ୟୁତି ବଳରେ ଶୋଭା ପାଏ ।
କୃଷ୍ଣ ଅର୍ଜ୍ଜୁନଙ୍କର କାୟ ଏ ମହୀରେ
ଏହା ବୋଲି ଦେବେ ରହିଲେ ତୋଷଭରେ
ବ୍ରହ୍ମା ରୁଦ୍ର ପରାୟେ ଅଜେୟ ସେ ଦୁଇ
ଜୟ ନେବାରୁ ଟି ବିଜୟ ତାଙ୍କୁ କହି ।
ଅଶ୍ୱତ୍ଥାମା ଦଇବେ ସେକାଳକୁ ମୋହ
ଛାଡ଼ି ଉଠିଥିଲେ ହେ ନରକୁଳସିଂହ ।
ଦେବଙ୍କର ବାଣୀକ କର୍ଣ୍ଣରେ ଶୁଣିଲେ
ଅନ୍ତ ଯତ୍ନେ ପାର୍ଥଙ୍କୁ ଯୁଝିବା ଭାଳିଲେ ।
ପାର୍ଥ ଯୁଦ୍ଧକାଣ୍ଡେ ଗାଣ୍ଡିବ ଶରଧାଡ଼ି
ରଖି ଧାଇଁଥିଲେ ଅଧରେ ଦାନ୍ତ ଭିଡ଼ି ।

ଅଶ୍ୱତ୍ଥାମା କାଣ୍ଡ ଗୋଟାଏ ଧରି ହାତେ
ଡାକିଲେ ଆସ ପାର୍ଥ ଯୁଝ ମୋର ସାଥେ ।
ଅର୍ଜ୍ଜୁନ ତାହା ଶୁଣି ବୋଇଲେ କୃଷ୍ଣଙ୍କୁ
ମୂର୍ଚ୍ଛିତ ଯାଉଅଛୁ ସଂଶପ୍ତକଠାକୁ ।
ଅଶ୍ୱତ୍ଥାମା ଏଣେ ତ ଡାକୁଛନ୍ତି ମୋତେ
କି କରିବା କହ ହେ କୃଷ୍ଣ ମହାମତେ ।
ଏହା ଶୁଣି କୃଷ୍ଣ ଲଗାଇ ପୋତ ମାଥ
ଅଶ୍ୱତ୍ଥାମା ରଥେ ଲଗାଇ ଦେଇ ରଥ ।
ବୋଇଲେ ଅଶ୍ୱତ୍ଥାମା ଯୁଦ୍ଧ କର ସୁଖେ
ନ ମର ପଙ୍ଗ ହୋ ଅର୍ଜ୍ଜୁନ ଶରମୁଖେ ।
ତୁମ୍ଭେ ତ ଦୁର୍ଯ୍ୟୋଧନ ଅନ୍ନ ଅଛ ଖାଇ
ବାପାଙ୍କ ପରି ତାହା ଦିଅ ହେ ଶୁଝାଇ ।
ଇଚ୍ଛା ଯେ କରିଛ ବିଜୟଠାରୁ ଜୟ
ନେବ ବୋଲି ଅଜୟ ହେବଟି ଉଦୟ ।
ଏହା ଶୁଣିଣ ଅଶ୍ୱତ୍ଥାମା ବୀରମଣି
ବିନ୍ଧିଲେ କୃଷ୍ଣଙ୍କୁ ଷାଠିଏ କାଣ୍ଡ ଟାଣି ।
ଅର୍ଜ୍ଜୁନଙ୍କୁ ବିନ୍ଧିଲେ ତିନୋଟି ନାରାଚ
ଭ୍ରୂକୁଣି କରେ ନଷ କରିଦେଲେ ଉଚ୍ଚ ।
ଅର୍ଜ୍ଜୁନ ତିନିକାଣ୍ଡେ ଅଶ୍ୱତ୍ଥାମାଙ୍କର
ଧନୁକୁ ଦୁଇଖଣ୍ଡ କଲେ ନରବର ।
ନିମିଷକ ମାତ୍ରକେ ଦ୍ରୋଣଙ୍କର ବଳା
ଆନ ଧନୁ ଧରି ରଚିଲେ ଶରମାଳା ।
ତିନିଶ ଅର୍ଜ୍ଜୁନଙ୍କୁ ସହସ୍ରେ କୃଷ୍ଣଙ୍କୁ
ଗଣି ଗଣି ବିନ୍ଧିଲେ ଦେଖାଇ ବଳକୁ ।
ସହସ୍ର ଶତାୟୁତ ଅର୍ବୁଦ ସଂଖ୍ୟାରେ
ଅଶ୍ୱତ୍ଥାମା ବିନ୍ଧିଲେ ଅର୍ଜ୍ଜୁନ ଉପରେ ।
ତୂଣ ଧନୁର୍ଗୁଣରେ ବାହୁକର କାନ
ନାକ ଆଖି ଉର ଯେ ନଖର ବାହନ ।
ମସ୍ତକ ଅଙ୍ଗ ଜାନୁ ପାଦ ରୋମ ଧ୍ୱଜ
ଆଦିରୁ ବାହାରିଣ ମାର୍ଗଣ ସମାଜ ।
ଅଶ୍ୱତ୍ଥାମାଙ୍କର ମନ୍ତ୍ରର ପ୍ରତାପରେ
ତାପ ଦେଲେ କୃଷ୍ଣାର୍ଜ୍ଜୁନଙ୍କୁ ନିରନ୍ତରେ ।
ଏହା କରି ସାରିଣ ଦ୍ରୋଣଙ୍କର ବଳା
ଗର୍ଜ୍ଜନଟାଏ ଆରମ୍ଭେ କଲେ ମେଳ ଗଳା ।
ଅର୍ଜ୍ଜୁନ ତା ଦେଖି ବୋଇଲେକ କୃଷ୍ଣଙ୍କୁ
ଦେଖ ହେ କୃଷ୍ଣ ଅଶ୍ୱତ୍ଥାମାଙ୍କ କଥାକୁ ।

ମୋତେ ମାରିବାକୁ ଏ କରିଛନ୍ତି ମନ
କ୍ଷଣକେ ଛଡ଼ାଇବି ଯ୍ୱାଙ୍କ ଆୟୋଧନ ।
ଏହା ବୋଲି ତାଙ୍କର କାଣ୍ଡକୁ କିରୀଟୀ
ପକାଇଲେ ସେ ତିନିଖଣ୍ଡ କରି କାଟି ।
ସଂଶପ୍ତକମାନଙ୍କୁ ବାଛି ସନ୍ଧିଗଣ
ବିନ୍ଧିଲେ ଅର୍ଜୁନ ଘେନିବା'ପାଇଁ ପ୍ରାଣ ।
ଅର୍ଜୁନଙ୍କୁ ଦେଖେ ଯାହାର ନୟନ
ଶରରେ ପୂର୍ଣ୍ଣ କରି ଦିଏ ଅପଘନ ।
ଗାଣ୍ଡୀବଧନୁରୁ ବାହାରି ଶରଧାଡ଼ି
କୋଶକେ ପରିଯନ୍ତେ ଯାଇଣ ଦଉଡ଼ି ।
ହାତୀ ଘୋଡ଼ା ସେ ନରମାନଙ୍କର ପ୍ରାଣ
ଘେନିଗଲେ ଦେଖାଇ ପାର୍ଥ ବାହୁଟାଣ ।
ପରଶୁହଣା ଡାଳ ପ୍ରାୟେ ହାତୀଶୁଣ୍ଢ
ଗୁଡ଼ିବେ ସଜନ ସେକାଳେ ଗଣ୍ଡା ଗଣ୍ଡା ।
ବଜ୍ରବଜା ପର୍ବତ ପ୍ରାୟେ ହାତୀକୁଳ
ପଡ଼ିବାରେ ସେ ପୂରାଇଲେ ଯୁଦ୍ଧସ୍ଥଳ ।
ରଥେ ଘୋଡ଼ା ଯୋଚି ରଥୀଏ ଥିଲେ ବସି
ବାଜନ୍ତେ ପାପି ଶର ହେଲେ ଯମବାସୀ ।
ପ୍ରଳୟ ସୂର୍ଯ୍ୟପରି ଅର୍ଜୁନଙ୍କ ଶର
ସଂଶପ୍ତକ ସିନ୍ଧୁ ଶୋଷିଲେ ପ୍ରାଣ ନୀର ।
ପୁଣି ଅଶ୍ୱତ୍ଥାମାଙ୍କୁ ବିନ୍ଧିଲେ ଗରଜି
ଅର୍ଜୁନ ଯୁଦ୍ଧ ସୁଖ ରସରେ ମଜ୍ଜି ।
ଅଶ୍ୱତ୍ଥାମା ଯେତେକ ବିନ୍ଧିଲେଟି କାଣ୍ଡ
ଅର୍ଜୁନ ତା ନିବାରୁ କଲେ ଦୁଇଖଣ୍ଡ ।
ଅଶ୍ୱତ୍ଥାମା ତାହାକୁ ନ ସହି ଦରାଣ୍ଡି
ହୋଇକରି ବିନ୍ଧିଲେ ଝିଙ୍କି ଧନୁଖଣ୍ଡି ।
ଅର୍ଜୁନ ଅଶ୍ୱତ୍ଥାମା ଯୁଦ୍ଧ ଧନଦାତା
ପଣ ଦେଖି ଆସିଲେ ନ କରିଣ ଚିନ୍ତା ।
ମନେ କଲେ ସେ ସଂଶପ୍ତକୁ ପଛେ ମାରି
ଯିବି ଆଗେ ଦେବିଟି ଏହାକୁ ସଂହାରି ।
ଶୁକ୍ର ବୃହସ୍ପତିଙ୍କ ଯୁଦ୍ଧ ହେଲା ପ୍ରାଏ
ଯୁଝିଲେ ସେ ଦୁହେଁ ଥରଇ କ୍ରୋଧେ କାୟେ
ଅନ୍ୟୋନ୍ୟରେ ଦୁହେଁ ସରଜି ଶରମାଳା
ଯୁଝିଲେ କଟାକଟି ହେବାପାଇଁ ଗଳା
ଅର୍ଜୁନ ନାରାଚ ବସାଇ ଧନୁର୍ଗୁଣେ
ବିନ୍ଧିଲେ ଅଶ୍ୱତ୍ଥାମା ଭ୍ରୂମଧ୍ୟେ ଟାଣେ ।

ସେ କାଣ୍ଡରେ ଦ୍ରୋଣ ନନ୍ଦନ ପାଇଁ ଶୋଭା
ଭାଙ୍ଗିଲେ ଦୁଇପହରଆ ସୂର୍ଯ୍ୟପ୍ରଭା ।
କୃଷ୍ଣ ଅର୍ଜୁନଙ୍କ ହଳ ସେ ମହାବଳୀ
ସର୍ଜିଲେ ଶରଜାଳ ଦେବାପାଇଁ ଜାଳି ।
ଅର୍ଜୁନ ନ ସହି ସର୍ବତୋଧାର ଅସ୍ତ୍ର
ପ୍ରହାରିଲେ ଯୁଦ୍ଧେ ଥରାଇ କ୍ରୋଧ ଗାତ୍ର ।
ଯମଦଣ୍ଡ ପରାଏ ଦ୍ରୋଣ ପୁତ୍ର ଦେହେ
କାଣ୍ଡକୁ ଅରଜୁନ ବିନ୍ଧିଲେ ଅସନ୍ଦେହେ ।
ଅଶ୍ୱତ୍ଥାମା ସେ ମୁନିଘଷା ବାଇଗଣ
ବିନ୍ଧିଲେ କୃଷ୍ଣାର୍ଜୁନ ଦେହେ କରି ଟାଣ ।
ଅର୍ଜୁନ ତାହା ଦେଖି ଗାଣ୍ଡୀବଧନୁଟି
ମଧ୍ୟରେ ଶର ଯୋଖି ପକାଇଲେ କାଟି ।
ଏ ପରେ ସଂଶପ୍ତକବଳ ଦେବରାଜ—
ନନ୍ଦନ ନାଶ କଲେ ପେଷିଣ ନାରାଜ ।
ଧନୁର୍ବାଣ ଇଷୁଧି ପାଣି ଭୁଜ ବର୍ମ
ଛତ୍ର କେତୁ ଅଶ୍ୱ ଭୂଷଣ ଶିର ଚର୍ମ ।
ଏମନ୍ତ କାଟି ଯୋଦ୍ଧାଙ୍କ ମନୋରଥ—
ରଣିକ ପାର୍ଥ ଯୁଦ୍ଧେ କରିଦେଲେ ବ୍ୟର୍ଥ ।
କାଣ୍ଡମାନଙ୍କରେ ସେ ହାତୀ ଘୋଡ଼ାଗଣ୍ଡି
ଖୋଳାଇ ପଲପଲ ପଡ଼ିଲେ ଦରାଣ୍ଡି ।
ଯେଉଁମାନେ ତାଙ୍କ ଉପରେ ବସିଥିଲେ
ଜଙ୍ଘ ଉରୁ ହାଡ଼କୁ ଭଙ୍ଗାଇ ଗଡ଼ିଲେ ।
ଯୋଦ୍ଧାମାନେ ଚୁମ୍ବନ ନେବା ବୋଲି ଭାବି
ମୁଖପଦ୍ମେ ମଣ୍ଡି ଦେଲେ କି ମହୀଦେବୀ ।
କଳିଙ୍ଗ ଅଙ୍ଗ ବଙ୍ଗ ନିଷାଦ ବୀରମାନେ
ଚଢ଼ି ହାତୀ ଆସିଲେ ପାର୍ଥ ସନ୍ନିଧାନେ ।
ସେ ହାତୀମାନଙ୍କ କବଚ ଭୁଲେ ମୁଣ୍ଡ
କାଟିଲେ ଅର୍ଜୁନ ବିନ୍ଧି ତୀକ୍ଷ୍ଣ କାଣ୍ଡ ।
କିରୀଟୀର କାଣ୍ଡରେ ଯାଆନ୍ତେ ମୁଣ୍ଡଟି
କେତେ ହାତୀ ଗଡ଼ିଲେ ଧୂଳି ଦେହେ ଲୋଟି
କେତେ ହାତୀ ଦେହରେ ବାଜନ୍ତେ ମାର୍ଗଣ
ପଳାଇଲେ ଯୁଦ୍ଧରୁ ହେବାରେ ମରଣ ।
ତାହାକୁ ଦେଖି କଳି ବୀରଶିରୋମଣି
ଅରଜୁନ ଗାଣ୍ଡୀବ ଧନୁଟିକି ଟାଣି ।
ଦ୍ରୋଣିଙ୍କର ଦେହକୁ ବିନ୍ଧି ଅବିଚ୍ଛିନ୍ନ
କରିଦେଲେ ତାଙ୍କ ମନକୁ ଛିନ ଛନ ।

ଅଶ୍ୱତ୍ଥାମା ପୁଣି ଧଇର୍ଯ୍ୟମନ ହୋଇ
ଅର୍ଜୁନ କାଣ୍ଡଯାକ କାଣ୍ଡେ ଦେଲେ ଦହି ।
ଶର ଘନେ କୃଷ୍ଣ ଅର୍ଜୁନ ଚନ୍ଦ୍ର ସୂର୍ଯ୍ୟ
ଘୋଡ଼ାଇ ପକାଇଲେ ସେ ଦ୍ୱିଜ ଆଶ୍ଚର୍ଯ୍ୟ ।
ପାର୍ଥ ଅଶ୍ୱତ୍ଥାମା କାଣ୍ଡକୁ କାଣ୍ଡେ କାଟି
ଭୂମିର ଲୋକଙ୍କୁ ମାଇଲେ ଶରେ ଘୋଟି ।
ଅର୍ଜୁନଙ୍କ ଶର ଆଦାନ ସନ୍ଧାନ
ନ ଦେଖିଲା ପର୍ଯ୍ୟନ୍ତେ କାହାର ନୟନ ।
ହାତି ଘୋଡ଼ା ପଦାତି ମୁଣ୍ଡ ଛୁଡ଼ିବାରେ
ଜାଣିଲୁଁ ଏ ହେଉଛି ଅର୍ଜୁନ ବଳରେ ।
ସେକାଳେ ଅଶ୍ୱତ୍ଥାମା ଦଶୋଟି ନାରାଚ
ଛାଡ଼ିଲେ ଭୁଲିଲେ ସେ ହୋଇ ଏକଘଞ୍ଚ ।
ବାଣି ହୋଇଣ କୃଷ୍ଣ ଅର୍ଜୁନର ଦେହେ
ବହିଯାଇ ରକତ ପିଇଲେ ସେ କୋହେ ।
କୃଷ୍ଣ ଅର୍ଜୁନଙ୍କର ଏ ଦଶାଟି ଦେଖି
ମଲେ ବୋଲି ଭୂମି ଯୋଦ୍ଧାଏ ହେଲେ ସୁଖୀ
ଶ୍ରୀକୃଷ୍ଣ ତା ଦେଖି ବୋଇଲେ ଅର୍ଜୁନ
ବେଗେ ନଅ ହେ ଅଶ୍ୱତ୍ଥାମାଙ୍କ ଜୀବନ ।
ଏ ପାପୀ ଜୀଇଥିଲେ ସର୍ଜି ଶରଭଡ଼ା
ଦେଖ ଭୂମି ଆମ୍ଭର ରଚୁଅଛି ପୀଡ଼ା ।
ଅର୍ଜୁନ ବୋଇଲେ ନିବର୍ତ୍ତି ଗୋବିନ୍ଦ
କହିବାରୁ ଦେଖ ନୟନେ ମୋର ଦ୍ୱନ୍ଦ୍ୱ ।
ଏତେ କହିଣ ଗାଣ୍ଡୀବରେ ଶର ଯୋଡି
ଛାଡ଼ିଲେ ଅଶ୍ୱତ୍ଥାମା ଦେହେ କୋଟି କୋଟି
ଉର ବାହୁ ମସ୍ତକ ମୁଖେ ନାକେ କାନେ
ସେ ଶର ବାଜି ଗଲା ଗଲେ ଛିନ୍ନଭିନ୍ନେ ।
ଘୋଡ଼ାମାନଙ୍କର ଯୁଆଳୀ ଖଣ୍ଡି ଖଣ୍ଡି
କରି ଶରେ ଗଳାଇଲେ ସେ ଘୋଡ଼ା ଗଣ୍ଡି
ସେ ହେତୁଁ ଘୋଡ଼ା ସାରଥି ଆୟୁତରେ
ନ ରହି ପଳାଇଲେ ଯୁଦ୍ଧୁ ତରତରେ ।
ଅଶ୍ୱତ୍ଥାମା ଦେଖି ଭାବିଲେ ଆଛା ହେଲା
ପଳାଇବା ଦୋଷ ମୋ ଘୋଡାଙ୍କର ଗଲା ।
ପୁଣି ଘୋଡ଼ାମାନଙ୍କୁ କରି ଆଶ୍ୱାସନା
କର୍ଣ୍ଣଠାକୁ ଗଲେ ଦ୍ରୋଣି ମହାମନା ।

—✽—

## ସଂଶପ୍ତମାନଙ୍କ ସହ ଯୁଦ୍ଧ

ଅଶ୍ୱତ୍ଥାମା ଯାଆନ୍ତେ ଯୁଦ୍ଧଭୂମି ଛାଡ଼ି
ମାଇଲେ ପାର୍ଥ ସଂଶପ୍ତକଙ୍କୁ ଘଉଡ଼ି ।
ଦଣ୍ଡଧାର ରଜା ମାରନ୍ତେ ପାଣ୍ଡୁସୈନ୍ୟ
ଉତ୍ତରଦିଗରେ ଶୁଭିଲା ଆର୍ତ୍ତସ୍ୱନ ।
ଶ୍ରୀକୃଷ୍ଣ ତା ଶୁଣି କହିଲେ ଅର୍ଜୁନଙ୍କୁ
ଚାଲ ଏବେ ଯିବା ହେ ଉତ୍ତର ଆଡ଼କୁ ।
ବଳଲେ ଆମ୍ଭ ସୈନ୍ୟେ ପାଡ଼ୁଛନ୍ତି ଡାକ
ମାଗଧ ଦଣ୍ଡଧାର ମାରେ ତାଙ୍କୁ ଏକା ।
ତାଙ୍କୁ ମାରି ପଛେ ମାରିବା ସଂଶପ୍ତକ—
ଯାହାଙ୍କୁ ହେ ଅର୍ଜୁନ ନରକ ନାୟକ ।
ଏହା ଶୁଣି ଅର୍ଜୁନ ବୋଇଲେ ଯା ଇଛା
ହେଉଛି ତାହା କର ମୋହର ସେ ବାଞ୍ଛା ।
ଶ୍ରୀକୃଷ୍ଣ ଅର୍ଜୁନଙ୍କ ସନମତ ପାଇ
ଦଣ୍ଡଧାର ପାଶରେ ରଥ କଲେ ନେଇ ।
ଦଣ୍ଡଧାର ମହତ ହାତୀ ପରେ ବସି
ଦେଇ ଦୁଇନଖକୁ ଉପରକୁ ଠେସି ।
ଅଙ୍କୁଶ ହାତେ ଧରି କେତୁଗ୍ରହ ପ୍ରାୟେ
ପ୍ରକାଶିଛି ତେଜ ଥରଇ ହୋଧେ କାୟେ ।
ଶତ ଶତ ସହସ୍ର ସହସ୍ର ପାଇକ
ହାତୀ ଘୋଡ଼ା ମାରୁଛି ବନ୍ଧଣି ସାୟକ ।
କାଳଚକ୍ର ପରିସ୍ୟେ ତା ହାତୀ ଚହଟି
ଦେଉଛି ଗୋଡେ ପାଣ୍ଡୁସଇନ ଚକଟି ।
ଅର୍ଜୁନ ତା ଦେଖି କରି ଧନୁରଡ଼ି
ବାହାରିଲେ ସେ ହାତୀ ପାଶେ ମାଡ଼ି ମାଡ଼ି ।
ଦଣ୍ଡଧାର ତା ଦେଖି ଅର୍ଜୁନଙ୍କୁ ବାର
ବନ୍ଧ କୃଷ୍ଣ ଦେହେ ବନ୍ଧିଲେ ଷୋଳ ଶର ।
ଅର୍ଜୁନଙ୍କ ଚାରି ଘୋଡାଙ୍କୁ ତିନ ତିନ
ବନ୍ଧ ପୁରାଇଲେ ସେ ଗର୍ଜନେ ଅବନୀ ।
ଅର୍ଜୁନ ତାହା ହେ ସହି ନ ପାରିଲେ
ଭଲ ଭଲ କାଣ୍ଡରେ ଧନୁକୁ କାଟିଲେ ।
ଏହା ବାହାରେ ହସ୍ତିପକ ପାଦରକ୍ଷା
ମାଇଲେ ଅର୍ଜୁନ କରି ମହାକକ୍ଷା ।
ଦଣ୍ଡଧାର ରଜା ଶ୍ରୀକୃଷ୍ଣ ଅର୍ଜୁନଙ୍କୁ
ଫିଙ୍ଗିଲେ ବାଜ କରି ତୋମରମାନଙ୍କୁ ।

ଅରଜୁନ ଦଣ୍ଡଧାରର ବାହୁ ଦୁଇ
କାଟିଲେ କ୍ଷୁରକାଣ୍ଡ ଦୁଇ ବନ୍ଧଦେଇ ।
ପୁଣି କ୍ଷୁରକାଣ୍ଡ ଗୋଟିକେ ତା'ର ମୁଣ୍ଡ
ଛିଣ୍ଡାଇ ପକାଇଦ ଦେଲେ ରଣଦାଣ୍ଡ ।
ଦଣ୍ଡଧାର ହାତୀ ଶରୀରର କବଚ
କାଟି ପକାଇଲେ ସେ ବନ୍ଧଣ ନାରାଚ ।
ସେ ହାତୀ ଅରଜୁନ କାଣ୍ଡ ବଜ୍ରପାଇ
ମର ଗିର ପର ପଡ଼ିଲା ଜାଣ ଶୋଇ ।
ଏରୂପେ ଦଣ୍ଡଧାର ମୃତ୍ୟୁ ଦେଖି ଦଣ୍ଡ
ପ୍ରବେଶ ହେଲେ ହାତୀ ଚଢ଼ି ରଣଦାଣ୍ଡ ।
କୃଷ୍ଣ ଅରଜୁନଙ୍କ ଆଠୋଟା ତୋମର
ଫିଙ୍ଗି ଗରଜନ କଲା ସେ ମହାବୀର ।
ଅର୍ଜୁନ ତା ତୋମର ଫିଙ୍ଗିବାର କାଳେ
ତୋମର କାଟି ବାହୁ କାଟିଲେ ତା ହେଲେ
ହସ୍ତ ଗିର ଦଣ୍ଡ ବୃକ୍ଷରୁ କ ଭୁଜଙ୍ଗ
ଦୁଇ ଭୁଜ ବ୍ୟାଜେ ପଡ଼ିଲେ ହୋଇ ସଙ୍ଗ ।
ଏହା କର ସାରଣ ଅର୍ଦ୍ଧଚନ୍ଦ୍ର କାଣ୍ଡ
ବନ୍ଧ ଅରଜୁନ କାଟିଲେ ତା'ର ମୁଣ୍ଡ ।
ହିମାଳୟର ଶୃଙ୍ଗ ପଡ଼ିବା ପରାୟେ
କାଣ୍ଡକେ ଦଣ୍ଡ ହାତୀ ପଡ଼ିଲା ହେ ରାୟେ ।
ଏହା ଦେଖି ଯେତେ ଆସିଲେ ହାତୀ ଯୁଝି
ଅର୍ଜୁନ କାଣ୍ଡରେ ଶୋଇଲେ ରଣମଝି ।
ସେହି କାଳେ ସଙ୍କୁଳ ହୋଇଲା ସମର
ମରାମରି ହୋଇ ବହୁତ ମଲେ ନର ।
ଦଣ୍ଡଧାର ଦଣ୍ଡ ମରଣକୁ ଯେ ଦେଖି
ପାଣ୍ଡୁ ସେନାଯାକ ହୋଇଣ ଅତି ସୁଖୀ ।
ବୋଇଲେ ଅରଜୁନ ଦଣ୍ଡ ଯେନ ଯିବ
ଯାଇଥିଲା ତାକୁ ହୃଦରେ ଦେଲେ ଠାବ ।
ଏହା ଶୁଣି ଅର୍ଜୁନ ଅତି ତୋଷ ହୋଇ
ଧାଇଁଲେ ସଂଶପ୍ତକ ନାଶେ କ୍ରୋଧ ବହି ।
ଅର୍ଜୁନ ବାଣେ ସଂଶପ୍ତକମାନେ ପୀଡ଼ା
ପାଇ ପ୍ରାଣ ଛାଡ଼ିଲେ ଯୁଦ୍ଧେ ହୋଇ ଛିଡ଼ା ।
ବଜ୍ରଦନ୍ତ ଭଲ୍ଲି କ୍ଷୁରକାଣ୍ଡକୁ ବନ୍ଧି
ଦେଲେ ସଂଶପ୍ତକମାନଙ୍କ ପ୍ରାଣ ରୁନ୍ଧି ।
ସଂଶପ୍ତକମାନେ ସହସ୍ର ସତ କୋଟି
ହୋଇ ଯୁଦ୍ଧ କଲେ ଉଡ଼ିଣ ଧନୁମୁଷ୍ଟି ।

ଇନ୍ଦ୍ର ବୈଚିତ୍ର୍ୟ ପରାୟେ ହୋଇଲା ସେ ରଣ
ତମୋ କହିବାରୁ ଜାଣ ଆହେ ନରଗଣ ।
ଅରଜୁନ ଗଣିଙ୍କ ବାଣ ଧାରା ବୃଷ୍ଟି
ମରକଲେ ଅରଜବାକୁ ଜୟ ସୃଷ୍ଟି ।
ଅର୍ଜୁନ ସେ ଶରକୁ ନିବାରଣ ଶରେ
ବସାଇଲେ ତାହାଙ୍କୁ ଯମଙ୍କ ନଗରେ ।
ଏ ବାହାରେ ଯେ ଯୋଦ୍ଧା ରଥୀ ହାତୀ ଯାନ
ଯେନ ଅଶ୍ୱଯୋଗ୍ୟ କରିଲେ ଛିନ୍ନ ଭିନ୍ନ ।
ହାତୀଙ୍କ ମରମ ଯାଆନ୍ତେ କାଣ୍ଡେ ଫାଟି
ପଡ଼ିଲେ ସେ ଧ ନ କରଣ ମେଲି ପାଟି ।
ସିପାଇଙ୍କ ଭୂଲରେ କାଟି ଅନ୍ତ ପୃଷ୍ଠ
ଘୋଡ଼ାମାନେ ଯେ ହେଲେ ଧୂଳିରେ ସାଉଁଟା
ଶିଳାଘଷିତ ବାଣମାନଙ୍କର ଠାଣ
ଦେଖାଇ ସେନା ପ୍ରାଣ ସୁଭଦ୍ରା ରମଣ ।
ଯେନ ଗଲେ ଆପଣା କାର୍ତ୍ତିକ ବନ୍ଧାର
କେହି ତାହାଙ୍କୁ ନ ପାରିଲୁ କଛି କର ।
ପୁଣି ତ୍ରିଗର୍ତ୍ତର ଲୋକମାନେ ବହାଇ ଗୋଟି
ବନ୍ଧିଲେ ଅର୍ଜୁନଙ୍କୁ ଯୁଦ୍ଧଦାଣ୍ଡେ ଯୋଟି ।
ଯୋଦ୍ଧା ଘନ ମଧ୍ୟୁ ବାହାର ଶର ଧାରା
କରିଥିଲା ପାର୍ଥ ଗିଣିକ ଅନ୍ତ ନୋହା ।
ଅର୍ଜୁନ ଶରବ୍ରାତ ବାତ ସେହିକାଳେ
ଉଡ଼ାଇ ଯେନଗଲା ସେ ବୃଷ୍ଟିକ ହେଲେ ।
କୃଷ୍ଣ ବୋଇଲେ ହେ ଅର୍ଜୁନ କଉତୁକ—
କାଳ ନୋହେ ଏ ବନ୍ଧ ଉତ୍ତମ ସାୟକ ।
ସଂଶପ୍ତକମାନଙ୍କ ଜୀବନକୁ ଯେନ
କଣ୍ଠକୁ କର ବେଗେ ଯମଙ୍କର ସ୍ଥାନ ।
ଅର୍ଜୁନ ସେ କଥାକୁ କରି ଅଙ୍ଗୀକାର
ମାଇଲେ ସଂଶପ୍ତକବଳକୁ ତ୍ରିଗର୍ତ୍ତର ।
ଅରଜୁନ ଶର ସନ୍ଧିବା ବନ୍ଧିବାର
ନ ଦେଖିଲା ସେକାଳେ କେହ ନରବର ।
କୃଷ୍ଣ ସେ ଯୁଦ୍ଧ ଦେଖି ମହାସୁଖୀ ହୋଇ
ତ୍ରିଗର୍ତ୍ତ ସୈନ୍ୟ ସରସୀ ମଧ୍ୟରେ ପଶାଇ ।
ରଥ ଯେହ୍ନେଣ ହଂସ ପରାୟେ ପଶିଣ
ଗତିରେ ଯୁଦ୍ଧଭୂମି କମଳେ ଖେଳିଲେ ।
ଯୁଦ୍ଧଭୂମିକ ଦେଖି କରିଣ ଗୋବିନ୍ଦ
କହିଲେ ଅର୍ଜୁନଙ୍କୁ ହୋଇଣ ଆନନ୍ଦ ।

ସୁଯୋଧନ ହେତୁଁ ଭରତବଂଶ କ୍ଷୟ
ହେଉଛି ଆହେ ପାର୍ଥ କର ତ ହୃଦୟ ।
ଦେଖ ହେ ସୁନାଲଗା ଧନୁ କାଣ୍ଡରାଜି
ପଡ଼ି ଯୁଦ୍ଧ ଦାଣ୍ଡେ ମହୀରେ ଛିନ୍ନ ମଜ୍ଜି ।
ଏ ବାହାରେ ଯେ ସୁନାମଣ୍ଡା ଗଦା ଶକ୍ତି
ପରିଘ ପଡ଼ିଅଛି ହୋଇ ଅଗଣନ୍ତି ।
ସୁନା ରୁପା ନକସ କାନ୍ତି ଛୁରି ଖଣ୍ଡା
ଅଣ୍ଟାରେ ବନ୍ଧି ମରିଛନ୍ତି କେତେ ଭେଣ୍ଡା ।
କାହାର ମୁଣ୍ଡ ଗଦା ମୁଷଳେ ଭାଜିଛି
ଦେଖ କାହା ବେକ ବା ଖଡ଼ଗେ ଛିଡ଼ିଛି ।
ଗଜ ବାଜି ମାଡ଼ି ଯିବାରେ ଯୋଦ୍ଧାଗଣ
ବିକଳ ହୋଇ ଗଡ଼ୁଛନ୍ତି ପାର୍ଥ ଶୁଣ ।
ମନୁଷ୍ୟ ବାଜି ଗଜ ଅଙ୍ଗେ କାଣ୍ଡ ମଣ୍ଡି
ହୋଇ ସୂର୍ଯ୍ୟ ପ୍ରଭାକୁ ଦେଉଛନ୍ତି ଭଣ୍ଡି ।
ଚନ୍ଦନରେ ଭୂଷିତ ବାହୁଏ ତଳର
କେୟୂର ମଣ୍ଡି ହୋଇ ଗଡ଼ନ୍ତି ନିରତ ।
କୁଣ୍ଡଳଲଗା ଜୁଡ଼ାବନ୍ଧା ମୁଣ୍ଡ ଯେତେ
ପଡ଼ିଛନ୍ତି ତା ମୁଁ କହିବି ଗଣି କେତେ ।
ରଥମାନେ ଯେ ଧଜ ଅଖଚକ ଭୁଲେ
ଭାଜି ଯାଇଛନ୍ତି ହେ ଦେଖ ପାର୍ଥ ଭଲେ ।
ଚାମର ଶଙ୍ଖ ଚର୍ମ ପଡ଼ି ଯୁଦ୍ଧସ୍ଥାନ
କରୁଅଛନ୍ତି ମନ ନୟନ ମଣ୍ଡନ ।
ହାତୀମାନେ ଜଉମାନଙ୍କୁ କାଟି ଦେଇ
ପଡ଼ିଛନ୍ତି ପର୍ବତ ପ୍ରାୟେ ବୀର ଶୋଇ ।
ଗଜଯୋଧୀ ଅଶ୍ୱଯୋଧୀ ଯେ ଅଗଣିତ
ମରିଛନ୍ତି ଅର୍ଜ୍ଜୁନ ବହୁଛି ରକତ ।
ହାତୀମାନଙ୍କର ଟି କୁଅ ଘଣ୍ଟ କୋଟି
ପଡ଼ି ଏ ଯୁଦ୍ଧଭୂମି ହୁରିଛି କବାଟି ।
ବଇଡ଼ୂର୍ଯ୍ୟ ଦଣ୍ଡ ଯେ ଅଙ୍କୁଶ ଅନେକ
ପଡ଼ିଛନ୍ତି ଦେଖ ହେ ବୀରଙ୍କ ନାୟକ ।
ଘୋଡ଼ାମାନଙ୍କର କବଚ ଅଳଙ୍କାର
ଛିଡ଼ି ପଡ଼ି ମହୀରେ କରୁଛି ସୁନ୍ଦର ।
ସିପାଇମାନଙ୍କ କୋରଡ଼ାହାତ କୋଟି
ଛିଡ଼ି ପଡ଼ି ମଣ୍ଡୁଛି ଏ ଯୁଦ୍ଧ ଭୂମିଟି ।
ରାଜାମାନଙ୍କର ସୁବର୍ଣ୍ଣ ମଣ୍ଡା ଜୁଡ଼ା
ପଡ଼ିଅଛି କାଣ୍ଡରେ ଛିଡ଼ି ବଡ଼ା ବଡ଼ା ।
ପୂର୍ଣ୍ଣଚନ୍ଦ୍ର ପରାଏ ବଦନ ମଣ୍ଡଳ
ପଡ଼ି ଶୋଭା କରୁଅଛି ଏ ଯୁଦ୍ଧସ୍ଥଳ ।
ଯୁଦ୍ଧଭୂମି ଆକାଶେ ନକ୍ଷତ୍ର ପରାୟେ
ନୃପଙ୍କର ମସ୍ତକ ପଡ଼ି ଶୋଭା ପାଏ ।
ଏ କର୍ମ ପୁରନ୍ଦର ବିନା ଆନଠାରେ
ସମ୍ଭବ ବୋଲି କହିବ କେ ବାଣୀରେ ।

—※—

## ଅଶ୍ୱତ୍ଥାମା କର୍ତ୍ତୃକ ପାଣ୍ଡ୍ୟଙ୍କର ନିଧନ

ଏରୂପେ କୃଷ୍ଣ ଅର୍ଜ୍ଜୁନଙ୍କୁ ଯୁଦ୍ଧଦେଶ
ଦେଖାଇ କହୁଥିଲେ ହୋଇ ହସ ହସ ।
ସେହିକାଳେ ଦୁର୍ଯ୍ୟୋଧନର ସଇନରେ
ମହତ ଧ୍ୱନି କୃଷ୍ଣ ଶୁଣିଲେ କାନରେ ।
ଦେଖିଲେ ବାଣ ଯୋଡ଼ି ବନ୍ଧୁ ପାଣ୍ଡ୍ୟରାଜା
କୁରୁଙ୍କୁ ଦେଉଛନ୍ତି ଯମ ପୁରେ ପୂଜା ।
ଗଜ ବାଜି ପାଣ୍ଡ୍ୟଙ୍କ ବାଣେ ହୋଇ କୋଟି
ଦେଉଅଛନ୍ତି ଆଖି ଦୁଇଟି ତରାଟି ।
ଧୃତରାଷ୍ଟ୍ର ବୋଇଲେ ପାଣ୍ଡ୍ୟ ମହାବଳୀ
ବୋଲଣ ହେ ସଞ୍ଜୟ ବସୁଥାଅ ଭାଳ ।
ଏବେ ତ ସେ କୁରୁଙ୍କ ସଙ୍ଗେ ଯୁଝୁଛନ୍ତି
କହ ମୋତେ ହେ ତାହାଙ୍କର କରାମତି ।
ସଞ୍ଜୟ ବୋଇଲେ ହେ କର୍ଣ୍ଣ ଶ୍ରେଷ୍ଠ ସମ
ବୋଇଲେ ଯେଉଁ ପାଣ୍ଡ୍ୟ କରୁଥାନ୍ତି ତମ ।
ସେ ତୁମ୍ଭର ସୈନ୍ୟ ସଂହାରି ଅଶ୍ୱତ୍ଥାମା
ଶରଘାତେ ଲଭିଲେ ଶୀଘ୍ର ଯମସୀମା ।
ପାଣ୍ଡ୍ୟରାଜା ତୁମ୍ଭ ବଳକୁ ମାର କରି
କୁରାଳଚନ୍ଦ ପରି ବୁଲି ଦଣ୍ଡଧାରୀ ।
ଅଶ୍ୱସୂତ ପାଣ୍ଡ୍ୟରାଜାଙ୍କ ବାଣଗଣେ
ମଲେ କେତେ ମଲେ ଗମିଲେ ରଣଭଣେ ।
ଅଶ୍ୱ ଗଜାରୋହୀଙ୍କ ହସ୍ତ ମୁଣ୍ଡ କାଟି
ପକାଇଲେ ମହୀତଳରେ କୋଟି କୋଟି ।
ପୁଳିନ୍ଦ ଦାକ୍ଷିଣାତ୍ୟ ଟଙ୍କଣ ଭୋଜର
ପ୍ରାଣକୁ ହେନିଗଲେ ପାଣ୍ଡ୍ୟ ମହାବୀର ।
ଅଶ୍ୱତ୍ଥାମା ପାଣ୍ଡ୍ୟଙ୍କ ଦେଖି ପରାକ୍ରମ
ବୋଇଲେ ମୋ ଭୁଜରେ କର ହେ ସଂଗ୍ରାମ

ମୋ ଧନା ତୁମ୍ଭର ତୁଲରେ ଯୋଝିବାକୁ
ଆର ନାହିଁ କସ କହିବ ମୁଁ ତୁମ୍ଭଙ୍କୁ ।
ବହୁ ନରଙ୍କୁ ତ ଦେଲେଣି କାଣ୍ଡେ ଦଣ୍ଡ
ଏବେ ମୋ ତୁଲେ ଯୁଝି ଯାଅ ଯମଦାଣ୍ଡ ।
ଶିବ ଅନ୍ଧକକୁ ଯେ ସଂହାରିଲ ପରି
ଆଜ ଦେଖ ଦେବ ତୁମ୍ଭଙ୍କୁ ଶରେ ମାରି ।
ଏହା ଶୁଣିଣ ପାଣ୍ଡ୍ୟନୃପ କର୍ଣ୍ଣିକାଣ୍ଡ
କର୍ଣ୍ଣ ଯାଏ ଟାଣି ବିନ୍ଧିଲେ ସେ କୋଦଣ୍ଡ ।
ଅଶ୍ୱତ୍ଥାମା ତାହା ନ ସହି ଅଗ୍ନି ପରି
ଜ୍ୟୋତି ଶରମାନ ବିନ୍ଧିଲେ କରେ ଧରି ।
ପୁଣି ମର୍ମଭେଦୀ ନାରାଚ ଅଶ୍ୱତ୍ଥାମା
ବିନ୍ଧିଲେ ଭାଙ୍ଗିବାକୁ ପାଣ୍ଡ୍ୟଙ୍କ ଗରିମା ।
ନ କାଣ୍ଡରେ ପାଣ୍ଡ୍ୟରାଜା ଯେ ନାରାଚକୁ
କାଟି ପକାଇଲେ ଦେଖାଇ ବିକ୍ରମକୁ ।
ଖରକାଣ୍ଡେ ଅଶ୍ୱତ୍ଥାମାଙ୍କ ଘୋଡ଼ା ପ୍ରାଣ
ପ୍ରେତଙ୍କ ରମଣକୁ କଲେ ସମର୍ପଣ ।
ଧନୁର୍ଗୁଣେ ଯେ କାଣ୍ଡମାନଙ୍କରେ କାଟି
ବୋଇଲେ ମଲ ଆଜ ଦ୍ରୋଣଙ୍କ ବେଟାଟି
ଅଶ୍ୱତ୍ଥାମା ଧନୁରେ ଚଢ଼ାଇଣ ଗୁଣ
ରଥରେ ଯୋଗୁଇଣ ଅଶ୍ୱକୁ ଆପଣ ।
ସହସ୍ର ସଂଖ୍ୟା ଶର କରି ସରଜନା
ଯୁଦ୍ଧ କଲେ ଗର୍ଜନ ହୋଇ କୋପମନା ।
ଅଶ୍ୱତ୍ଥାମା କାଟେ ଆକାଶ ଖଡ୍ଗ
ଘୋଡ଼ ହୋଇଗଲ ଗର୍ଜନ ମହାଭାଗ ।
ପାଣ୍ଡ୍ୟତ ବୀରଙ୍କେ ଅତ୍ୟନ୍ତ ଶିରୋମଣି
ନ ଡରି ଶରକୁ ଯୁଝିଲେ ଧନୁ ଟାଣି ।
ଅଶ୍ୱତ୍ଥାମାଙ୍କର ଯେ ଚକ୍ର ରକ୍ଷା ଦୁଇ
ରଥୀଙ୍କି ପାଣ୍ଡ୍ୟ ଦେଲେ ଶରରେ ପକାଇ ।
ଅଶ୍ୱତ୍ଥାମା ଯେ ତାହା ସହି ନ ପାରିଲେ
ଶର ଧାର ପାଣ୍ଡ୍ୟ ଶିରରେ ବରଷିଲେ ।
ଆଠ ଆଠ ବଳଦ ଶଗଡ଼ ଆଠକୁ
ବହିଥିଲେ ତହିଁର ମାର୍ଗଣ ଯାକକୁ ।
ଦିବସର ଅଷ୍ଟମଭାଗେ ଅଶ୍ୱତ୍ଥାମା
ଲକ୍ଷଣ ଦେଖାଇଲେ ତାଙ୍କର ମହିମା ।
ଅନ୍ତକର ଅନ୍ତକ ପ୍ରାୟେ କରି ମୂର୍ତ୍ତି
ବିହରନ୍ତେ ଯୁଦ୍ଧରେ ଦ୍ରୋଣଙ୍କ ସନ୍ତତି ।

ଦେଖି ପାଣ୍ଡ୍ୟ ଯୋଦ୍ଧାଏ ହୋଇଣ ବିକଳ
ମଲୁଇଁ ବୋଲି କରି ନିନ୍ଦିଲେ କପାଳ ।
ଶ୍ରାବଣମାସେ ମେଘ ବୃଷ୍ଟି କଲା ପରି
ଅଶ୍ୱତ୍ଥାମା ଯେ ଶର ଶରଜନା କରି ।
ପାଣ୍ଡବ ସେନାଙ୍କର ବଢ଼ାଇଣ ଦୁଃଖ
ରଥୀମାନଙ୍କର ଘୋଡାଇ ଦେଲେ ମୁଖ ।
ବାୟୁବ୍ୟାସ୍ତ୍ରେ ପାଣ୍ଡ୍ୟ ଦ୍ରୋଣିଙ୍କ ଶରବୃଷ୍ଟି
ନାଶିଣ ଗରଜିଲେ ମେଲି ଦେଇ ପାଟି ।
ପାଣ୍ଡ୍ୟଙ୍କର ଖର ଘୋଡ଼ାଙ୍କର ପରାଣ
ଘେନି ଗଲେ ଦ୍ରୋଣ ନନ୍ଦନ ବିନ୍ଧି ବାଣ ।
କାଣ୍ଡକରେ ସୂତକୁ ଯମକୁ ଦେଖାଇ
ଅର୍ଦ୍ଧ ଚନ୍ଦ୍ରେ ଧନୁ ଛେଦିଲେ କ୍ରୋଧହୋଇ
କାଣ୍ଡମାନଙ୍କରେ ଯେ ପାଣ୍ଡ୍ୟଙ୍କର ରଥ
କାଟନ୍ତେ ଧ୍ୱଜ ଆଦି ହେଲେ ମହୀ ସାଥ ।
ପାଣ୍ଡ୍ୟ ଯେତେକ ଅସ୍ତ୍ର କଲେ ଦଣ୍ଡଧାରୀ
ଅଶ୍ୱତ୍ଥାମା ତା ଦେଖି ଅସ୍ତ୍ରରେ ନିବାରି ।
ଯୁଦ୍ଧରେ ଖେଳ ହୋଇ ବ୍ରାହ୍ମଣ ସିହାଣ
ରଖିଲେ ମାତ୍ର ପାଣ୍ଡ୍ୟ ନୃପତିଙ୍କ ପ୍ରାଣ ।
ଏକାଳେ କର୍ଣ୍ଣ ପାଣ୍ଡୁ ସଇନ ଚନ୍ଦ୍ରକୁ
ଗରାସିଲେ ଦେଖାଇ ବିକ୍ରମ ରାହୁଙ୍କୁ ।
ଗଜ ଅଶ୍ୱମାନଙ୍କ ଘେନିଣ ପରାଣ
ରଥୀଙ୍କି ବିରଥ ସେ କଲେ ନରଗଣ ।
ପାଣ୍ଡବଙ୍କ ସଇନୁ ଆସି ହାଣ୍ଡାଟାଏ
ପାଣ୍ଡ୍ୟ ରାଜା ସମୀପେ ମିଳିଲା ହେ ରାୟେ ।
ଅଶ୍ୱତ୍ଥାମା ଯେ ବିନ୍ଧୁଥିଲେ ମାରଗଣ
ତେବେ ହେଲେ ସେ ହାଣ୍ଡି ନ ମାନିଲା ଜାଣ
ପାଣ୍ଡ୍ୟରାଜା ସିଂହ ପରାୟେ ପରବତ
ପରି ହାଣ୍ଡି ଉପରକୁ ହୋଇଲେ ଗତ ।
ଅଶ୍ୱତ୍ଥାମା ଦେହକୁ ସୁବର୍ଣ୍ଣରେ ମଣ୍ଡା
ତୋମରକୁ ଫିଙ୍ଗିଲେ ପାଣ୍ଡ୍ୟନୃପ ଭେଣ୍ଡା
ମଲ ମଲ ବୋଲି କରିଣ ଉଚ୍ଚେ ରଡ଼ି
ରହିଲେ ଯୁଦ୍ଧଦାଣ୍ଡେ ଓଷ୍ଠେ ଦନ୍ତ ଭିଡ଼ି ।
ପାଣ୍ଡ୍ୟ ହାତୁଁ ତୋମର ଫିଟି ଅନ୍ତ ଖଣ୍ଡେ
ଧାଇଁଲା ବିଦ୍ୟୁପରି ଚହଟି ସେ ଦାଣ୍ଡେ ।
ଅଶ୍ୱତ୍ଥାମାଙ୍କର ଯେ ମୁକୁଟକୁ କାଟି
ମହୀମଧ୍ୟେ ପଡିଲା ମେଲି ମୁନ ପାଟି ।

ଆକାଶ ମଧ୍ୟୁଁ ଗ୍ରହ ପଡ଼ିଲା ପରାଏ
ଅଶ୍ୱତ୍ଥାମା ମୁକୁଟ ପଡ଼ିଲା ହେ ରାଏ ।
ପାଦହତ ନାଗ ପରାଏ ଅଶ୍ୱତ୍ଥାମା
କ୍ରୋଧରେ କମ୍ପାଇ ଆପଣ ହୃଦସୀମା ।
ଚଉଦଟି କାଣ୍ଡକୁ ଯମଦଣ୍ଡ ପର
ଯୋଖିଣ ଧନୁରେ ବନ୍ଧିଲେ ଟାଣକର ।
ସେ ଚଉଦକାଣ୍ଡେ ଯେ ଗମି ଯୁଦ୍ଧଦାଣ୍ଡେ
ପଡ଼ିଲେ ବାଣ୍ଟିହୋଇ ପାଣ୍ଡ୍ୟ ହସ୍ତପିଣ୍ଡେ ।
ହାତୀର ଶୁଣ୍ଡାଦଣ୍ଡ ଗୋଡ଼େ ପାଞ୍ଚ କାଣ୍ଡ
ବାଜ ସେ ରଣଦାଣ୍ଡ କଲେ ଦୁଇଖଣ୍ଡ ।
ପାଣ୍ଡ୍ୟଙ୍କର ସେ ଗ୍ରୀବ ଦୁଇ ବାହୁଟିକ
ଛଅଗୋଟି କାଣ୍ଡଙ୍କରେ କଲେ ଟିକ ଟିକ ।
ଅନୁସନ୍ଧ ଛଅରଥୀଙ୍କି ବାଜାକାଣ୍ଡେ
ବସାଇଲେ ନେଇ କରି ସେ ଯମଦାଦେ ।
ରତନମଣ୍ଡା ବାହୁ ପାଣ୍ଡ୍ୟଙ୍କର ଛୁଡ଼ି
ଗରୁଡ଼ହତ ସର୍ପ ପ୍ରାଏ ଗଲେ ଗଡ଼ି ।
କୁଣ୍ଡଳ ଭୁଲେ ମୁଣ୍ଡ ଛୁଡ଼ି ତ ପଡ଼ିଲା
ଦେଖିବା ଲୋକଙ୍କ ମନକୁ ଏ ଆସିଲା ।
ବିଶାଖା ନକ୍ଷତ୍ରଙ୍କ ମଧ୍ୟଗତ ଶଶୀ
ହେଲେ କି ଯୁଦ୍ଧଭୂମି ଆକାଶରେ ଆସି ।
ଅଶ୍ୱତ୍ଥାମାବୀରଙ୍କ ପରାକ୍ରମ ପୁଷ୍ଟ
ଦେଖିଣ ଭୂପ ଦୁର୍ଯ୍ୟୋଧନ ହୋଇ ହୃଷ୍ଟ ।
ଅଶ୍ୱତ୍ଥାମା ପାଶକୁ ଆନନ୍ଦେ ଆସିଲେ
ପରଶଂସା ବଚନେ ତାହାଙ୍କୁ ତୋଷିଲେ ।
ଧୃତରାଷ୍ଟ୍ର ବୋଇଲେ ପାଣ୍ଡ୍ୟ ନରବର
ମରନ୍ତେ ଧନଞ୍ଜୟ କି କଲେ ବଖାଣ ।
ସଞ୍ଜୟ ବୋଇଲେ ପାଣ୍ଡ୍ୟର ମୃତ୍ୟୁ ଦେଖି
ଅର୍ଜୁନଙ୍କୁ କୃଷ୍ଣ କହିଲେ ପଦ୍ମ ଆଖି ।
ଦେଖ ହେ ପାଣ୍ଡ୍ୟନୃପ ପାଆନ୍ତେ ନିଧନ
ଭଗ୍ନ ସେନାସାକ ଭଜନ୍ତି ଅରଜୁନ ।
ଅଶ୍ୱତ୍ଥାମା ପାଞ୍ଚାଳଗଣେ ମୃତ୍ୟୁ ଦେଲେ
ସେରୂପେ ସଞ୍ଜୟଙ୍କୁ ରଣେ କର୍ଣ୍ଣ କଲେ ।
ରଥ ଅଶ୍ୱ ନର ଯେ ନାଗଙ୍କର ପୀଡ଼ା
ସର୍ଜିଲେ କୁରୁଏ ସରଜ ଶରଭିଡ଼ା ।
ଏହା ଦେଖିଣ ଭୟକାଳ ଉପସ୍ଥିତ
ହେଲାପରି ଅର୍ଜୁନ ପାଉଛନ୍ତି ଚିତ୍ତ ।

ଅରଜୁନ ବୋଇଲେ ବାହା ମୋ ରଥକୁ
କହିବା ହେଉଅଛି କସ ଚଢ଼େ ଅମ୍ଭଙ୍କୁ ।
କୃଷ୍ଣ ଶୁଣିଣ ଅରଜୁନଙ୍କ ବଚନ
ପବନକୁ ଖରେ ବାହିଲେ ତାଙ୍କ ଯାନ ।
ଭୀମଙ୍କୁ ଯେବେ ପାଣ୍ଡୁସୁତେ ଶରଧାଡ଼ି
ସରଜିଲେ ଅଧର ପୃଷ୍ଠକୁ କାମୋଡ଼ି ।
କୁରୁମାନେ ସୈନ୍ୟକୁ ଆଗରେ ଚଳାଇ
ଯୁଝିଲେ ଜୟ ପାଇଁ ମାନସ ବଳାଇ ।
ପାଣ୍ଡ୍ୟବଙ୍କ ଭୂଲରେ କର୍ଣ୍ଣଙ୍କର ରଣ
ପ୍ରବର୍ତ୍ତିନ୍ତେ ସନ୍ତୋଷ ହେଲେ ପ୍ରେତଗଣ ।
ଧନୁ ବାଣ ପରଶ ତୋମର ମୁଷଳ
ଅସି କୁନ୍ତ ଅଙ୍କୁଶ ପଟ୍ଟିଶ ଭିନ୍ଦପାଳ ।
ଭୁଷଣ୍ଡି ଶକ୍ତି ରୁଷ୍ଟି ପରଶ୍ୱଧ ଗଦା
ମାରିଣ ପରସ୍ପରେ ମଲେ ଗଦା ଗଦା ।
ତଳ ଶବଦରେ ବ୍ରହ୍ମାଣ୍ଡ ହାଣ୍ଡି ଫାଟି
ଗଲା ପ୍ରାଏ ମଣିଲା ମୋ କର୍ଣ୍ଣ ଦର୍ଭଟି ।
ବୀରମାନେ ଶୁଣିଣ ଧନୁର ଶବଦ
ଯୁଦ୍ଧ କଲେ ହୃଦୟରେ ବହି ଅତି ମୋଦ ।
ହାତୀ ଘୋଡ଼ା ଶୂରମାନଙ୍କ ଗରଜନ
କରିଦେଲା ସବୁରି ମନ ଛନ ଛନ ।
ଦୁଇ ସେନାସାକରେ ପଡ଼ିଲା ଭିଗୁଡ଼ି
କେତେ ଲୋକ ମରିଗଲେଟି ଜିଭ କାଢ଼ି ।
କର୍ଣ୍ଣଙ୍କର କାଣ୍ଡେ ପାଣ୍ଡବେ ସେନାଗଣ
ସେ ସମୟେ ବହୁତ ପାଇଲେ ମରଣ ।
କର୍ଣ୍ଣ କରି ପାଞ୍ଚାଳବୀର ଶରେ କ୍ଷୟ
ପୂରାଇଲେ ଯେ ଯମରାଜାଙ୍କର ଷଣ୍ଢ ।
ଏହା ଦେଖି ପାଣ୍ଡବ ଯୋଦ୍ଧାଏ କର୍ଣ୍ଣଙ୍କୁ
ବେଢ଼ିଲେ କର୍ଣ୍ଣଯାଏ ଓଟାରି ଧନୁକୁ ।
କର୍ଣ୍ଣ ଶର ଶରଭେ ପାଣ୍ଡୁସେନା ସିଂହ—
ମାନଙ୍କୁ ନାଶକଲେ ବହି ଅତି କୋହ ।
ପାଣ୍ଡବସେନା ତାଳବୃକ୍ଷ ମୁଣ୍ଡଫଳ
ପକାଇଦେଲା କର୍ଣ୍ଣଶର ବାତ ତଳ ।
ଚର୍ମ ଭୁଲେ ଚର୍ମ ଯେ ଯୋଦ୍ଧାଙ୍କର ଛୁଡ଼ି
ଯାଆନ୍ତେ ବହିଗଲା ରକ୍ତ ହୋଇ ଧାଡ଼ି ।
ଗୁଣ ଯେ ବାଜ ବାଜ କର୍ଣ୍ଣଙ୍କ ଗୁଟେଣି
ଛୁଡ଼ି ଛୁଡ଼ି ସରିଗଲା ହେ ନରମଣି ।

ପାଣ୍ଡୁସୈନ୍ୟ କମଳବନେ ହସ୍ତୀପରି
ସଂହାର କଲେ ଏକା କର୍ଣ୍ଣ ଶସ୍ତ୍ରଧାରୀ ।
ନକୁଳ ସହଦେବ ସାତ୍ୟକି ଦ୍ରୌପଦେୟ
ଏହା ଦେଖି କ୍ରୋଧ ଯେ ଧରିଲେ ହୃଦୟ ।
କର୍ଣ୍ଣ ସମୀପକୁ ଆସିଲେ ରଥ ଚଳି
ସନ୍ଧିଲେ ହବ୍ୟକାଣ୍ଡ ତୂଣୀମଧ୍ୟୁ କାଢ଼ି ।
କୁରୁସେନା ପାଞ୍ଚାଳସେନା ପରସ୍ପରରେ
ମରାମରି ଯେ ହେଲେ ମରିବା ପଥରେ ।
ପରିଘ ଗଦା ଶୂଳ ଶକ୍ତି ତୋମର
ଧରିଣ ଯୋଦ୍ଧା କଲେ କର୍ଣ୍ଣକୁ ସମର ।
କାହାର ଦୁଇଆଖି ଯୁଦ୍ଧେ ଗଲା ଫୁଟି
କାହାର ଗୁଣ୍ଡଗଲା କର୍ଣ୍ଣର ମୁଦ୍ଗରଟି ।
କାହାର କପାଳରେ ବାଜି ମାର୍ଗଣ
ବୁହାଇଲା ଯେ ମହାରକ୍ତ-ଝରଣ ।
କାହାର ଭ୍ରୁରୁ ଦୁଇ କାଣ୍ଡେ କାଟି ହୋଇ
ଯାଆନ୍ତେ କାହାକୁ ସେ ନ ପାରଇ ଚିହ୍ନି ।
କାହାର ପାଟି ମଧ୍ୟେ ବାଜିଅଛି ଶର
କାହାର ଗଳା ଯାଇଅଛି ସ୍ଥାନାନ୍ତର ।
କାହାର ପୋଟାଭେଦିଣ କାଣ୍ଡ ପୋଲ ହୋଇ
ରହନ୍ତେ ଗୋଡ଼ ଗୋଟି ରହେ ନ ପଳାଇ ।
ଏହିରୂପେ କର୍ଣ୍ଣ ଘେନିଣ ପାଣ୍ଡୁସୈନ୍ୟ
ପାଇଲେ ମହା କଷ୍ଟଦଶା ହେ ରାଜନ ।
ପରଶୁ ଧରି କେତେ ହର୍ଷମନ ହୋଇ
ଯୁଦ୍ଧ କଲେ ଆହେ ହସ୍ତିନା ନରସାଇଁ ।
ଖଣ୍ଡା ଧରି ଭୂମିର ତାହାଙ୍କର ଭେଣ୍ଡା
ଯୁଝିଲେ ରଣଦାଣ୍ଡେ ହୋଇ ଗଣ୍ଡାଗଣ୍ଡା ।
ଧରି କେଉଁମାନେ ବା କରରେ ପଟ୍ଟିଶ
ଯୁଦ୍ଧ ଆସ ବୋଲି ଡାକିଲେ ମୋଡ଼ି ନିଶ ।
ଶକ୍ତି ଭିନ୍ଦିପାଳ ତୋମର ପ୍ରାସ ତ୍ରିଶୂଳ
ଧରି କେତେ ଲୋକ ହୋଇଲେ ମରାମରି ।
କେତେ ଲୋକ ଯୁଦ୍ଧେ ହୁଅନ୍ତେ ଜନ୍ତାଜନ୍ତ
ମାଇଲେ ଟେକିଣ କଟିରେ ଥିବା କାତି ।
କ୍ଷୁର ଅର୍ଦ୍ଧଚନ୍ଦ୍ରରେ ଧ୍ୱଜ ଛତ୍ର ପନ୍ତି
ଛିଣ୍ଡିଣ ରାଜନ ମଣ୍ଡିଲେ ଯୁଦ୍ଧ କ୍ଷିତି ।
ହାତୀ ଘୋଡ଼ା ଅଙ୍ଗେ ବହନ୍ତେ ବାଣ ଧାଡ଼ି
ପଳାଇଲେ ପଦାତି ସଇନକୁ ମାଡ଼ି ।

କେତେ ତହିଁ ସିପାଇ ହାତୀଙ୍କର ଶୁଣ୍ଢ
କାଟି ପକାଇଲେ ପ୍ରହାର କରି ଖଣ୍ଡ ।
ପାଇକମାନେ ସେହିରୂପେ ଚରିମାରି
ମାଇଲେ ସିପାଇଙ୍କି କରବାଳ ଧରି ।
ଭୂମିଷ୍ଠ ପୁଅଙ୍କରେ ପ୍ରେରିତ ହସ୍ତିପକେ
ହୁଅନ୍ତେ ଧୃଷ୍ଟଦ୍ୟୁମ୍ନ ଠାକୁ ଚଳେ ଥୋକେ ।
ପ୍ରାଚ୍ୟ ଦାକ୍ଷିଣାତ୍ୟ ଯେ ନିଷଧ ମେକଳ
ମାଗଧ ତାମ୍ରଲିପ୍ତ ଦଶାର୍ଣ୍ଣ କୋଶଳ ।
ଅଙ୍ଗ ବଙ୍ଗ କଳିଙ୍ଗ ପୁଣ୍ଡ୍ରକାଦି ଯାରେ
ନିପୁଣ ତ ଅଟନ୍ତି ଏ ଗଜ ଯୁଦ୍ଧରେ ।
ପାଞ୍ଚାଳବଳକୁ ତୋମର ଶକ୍ତି ବୃଷ୍ଟି
କଲେ ଅଙ୍କୁଶରେ କରି ଏ କୋପଦୃଷ୍ଟି ।
ଧୃଷ୍ଟଦ୍ୟୁମ୍ନ ସେ ହାତୀକୁଳକୁ ନାରାଚ
ସନ୍ଧିଲେ ଜଡ଼ାଇବା ପାଇଁ ରଯ୍ୟେ ମଞ୍ଚ ।
ହାତୀ ଗୋଟିଗୋଟିକେ ଦଶ ଆଠ ଶର
ଗଣି ଗଣି ସନ୍ଧିଲେ ଦ୍ରୁପଦ କୁମର ।
ଧୃଷ୍ଟଦ୍ୟୁମ୍ନ ହସ୍ତିକୁଳରେ ଆଚ୍ଛନ୍ନ
ହୋଇବାରେ ଦେଖି ପାଣ୍ଡବ ଯୋଦ୍ଧାଜନ ।
ଧନୁମାନ ଟଙ୍କାରି ହାତୀଙ୍କ ମାର୍ଗଣ—
ଗଣକୁ ସନ୍ଧିଲେ ସେ ନେବାକୁ ପରାଣ ।
ନକୁଳ ସହଦେବ ସାତ୍ୟକି ଚେକିତାନ
କଲେ ଆସି ହାତୀକୁଳକୁ ଆୟୋଧନ ।
ଯେତେବେଳେ ସେ ହାତୀକୁଳ କରି ରଡ଼ି
ରଥରୁ ପକାଇଲା ରଥୀଙ୍କି ଅଜାଡ଼ି ।
ପଦାତିଙ୍କି ଯେ ଶୁଣ୍ଢାଦଣ୍ଡରେ ବୁଲାଇ
ଛେଚିଲେ ମହୀତଳେ ଗେଲାଇ ଗେଲାଇ ।
ଦାନ୍ତମାନଙ୍କରେ ଲୋକଙ୍କ ପେଟ ଅନ୍ତ
କାଢିଲେ ଯେତେ ଥିଲେ ଦନ୍ତୀ ବଳବନ୍ତ ।
ସାତ୍ୟକି ବଙ୍ଗରାଜ ହାତୀକି କାଣ୍ଡୁଟାଏ
ସନ୍ଧିଣ ଦେଖାଇଲେ ପ୍ରେତପୁର ରାସ୍ତେ ।
ବଙ୍ଗରାଜା ହାତୀରୁ ଡେଇଁବା କାଳ ଜାଣି
ତାକୁ କାଣ୍ଡରେ ସେ ପକାଇଲେ ହାଣି ।
ପୁଣ୍ଡ୍ର ନାଗ ଉପରେ ସହଦେବ ବୀର
ଧନୁକୁ ଓଟାରି ସନ୍ଧିଲେ ତିନି ଶର ।
ସେ ସକାଶୁଁ ସେ ହାତୀ କରି ମହାରଡ଼ି
ମହୀତଳେ ପଡ଼ି ପରାଣ ଦେଲା ଛାଡ଼ି ।

ହାଣ୍ଟିକ ମାର ସାର ମାଦ୍ରୀଙ୍କ କୁମର
କରିଲେ ଅଙ୍ଗରାଜା ଭୁଲରେ ସମର ।
ନକୁଳ ତା ଦେଖି ବୋଇଲେ ସହଦେବ
ଏହା ଭୁଲେ ଯୁଝିବାକୁ ମୋ ବଳେ ଲାବ ।
ତୁମ୍ଭେ ରହ ଏ ଯୁଦ୍ଧ ଦେଖୁଥାଅ ଭାଇ
ଦେଖ ଏହାକୁ ମୁହିଁ ଦେଉଛୁ ବଡ଼ାଇ ।
ଏହିରୂପେ ନକୁଳ ସହଦେବ ଆଗେ
କହି ଅଙ୍ଗନୃପେ ବନ୍ଧିଲେ କାଣ୍ଡ ରାଗେ ।
ଅଙ୍ଗର ହାଣ୍ଟିକି ଶଏଗୋଟି କାଣ୍ଡ
ବନ୍ଧିଲେ ସେ ନକୁଳ କମ୍ପାଇ କୋଦଣ୍ଡ ।
ଅଙ୍ଗ ହେ ଶଏ ଅଷ୍ଟଉତ୍ତର ତୋମର
କଲ ନକୁଳଙ୍କୁ ସେ ଯୁଦ୍ଧରେ ପ୍ରହାର ।
ନକୁଳ ତହୁଁ ତୋମରକୁ ଛେଦଖଣ୍ଡି
କରି ଦେଲେ ସମର ଅବନୀକି ମଣ୍ଡି ।
ପୁଣି ଅର୍ଦ୍ଧଚନ୍ଦ୍ର ବାଣକୁ ଯେ ନକୁଳ
ବନ୍ଧିଣ କାଟିଦେଲେ ରାଗେ ତାହା ଗଳ ।
ହାଣ୍ଡି ଭୁଲରେ ଅଙ୍ଗ ମଣ୍ଡପନ୍ତ କ୍ଷିତି—
ଆଶ୍ରେ କରି ଯାଇ ବସିଲେ ଯମକନ୍ତ ।
ମରନ୍ତେ ଅଙ୍ଗରାଜା ଅଙ୍ଗ ଲ୍ଲେକ ଗୋଟି
ହୋଇ ନକୁଳଙ୍କୁ ବନ୍ଧିଲେ ବାଣ କୋଟି ।
ମେକଳ ଉତ୍କଳ କଳିଙ୍ଗ ନିଷଧ
ତାମ୍ରଲିପିତକ ଆଦି ଏ ବୀର କ୍ରୋଧ ।
ହୋଇ ନକୁଳଙ୍କୁ କରିଲେ ଶରବୃଷ୍ଟି
ପାଇବା ପାଇଁ ରାଜ୍ୟେ ଯୁଦ୍ଧେ ଜୟସୃଷ୍ଟି ।
ତା ଦେଖିଣ ପାଣ୍ଡବ ପାଞ୍ଚାଳେ ଧାଇଁଲେ
ନକୁଳ ଚୌପଟ ବେଢ଼ିଣ ରହିଲେ ।
ଗଜାରୋହୀ ରଥାରୋହୀଙ୍କ ମହାରୋଳ
ସେହିକାଳେ ହେଲା ହେ ହସ୍ତିନା ଭୂପାଳ ।
ଚଉଷଠୀ କାଣ୍ଡରେ ମତ୍ତହାଣ୍ଟି ଆଠ
ମାରି ସହଦେବ ତୋଷିଲେ ନିଜ ଆଠ ।
ନକୁଳ ଧନୁ ଧରି ସର୍ଜି ଶରଶ୍ରେଣୀ
ପକାଇଲେ ହାଣ୍ଟିଙ୍କ ଶୁଣ୍ଢ ଦଣ୍ଡ ହାଣି ।
ସାତ୍ୟକି ଦ୍ରୌପଦେୟ ଶିଖଣ୍ଡୀ ପ୍ରଭଦ୍ରକ
ନାଶିଲେ ପ୍ରତ୍ୟକ୍ଷ ବନ୍ଧିଣ ସାୟକ ।
ବଜ୍ରାହତ ଗିରି ପରାଏ ହାଣ୍ଟିସଜ
ଲୋଟିଲେ ମହୀଦେଶ ଗରଜି ଗରଜ ।
ଏରୂପେ ପାଣ୍ଡୁ ସୈନ୍ୟ ମାରନ୍ତେ ମାର୍ଗଣ
କର୍ଣ୍ଣଙ୍କୁ ଆଶ୍ରେ କଲେ ତୁମ୍ଭର ସଇନ ।
ତା ଦେଖି ସହଦେବ ସଙ୍ଗେ ଯୁଝିବାକୁ
ଦୁଃଶାସନ ଚଳିଲେ ବହିଣ ରାଗକୁ ।
ଦୁଃଶାସନ ସହଦେବଙ୍କର ଭୀଷଣ
ରଣ ଜାଣି ହୃଷ୍ଟ ହୋଇଲେ ନରଗଣ ।
ତୁମ୍ଭର ପୁଅ ଦୁଃଶାସନ କ୍ରୋଧହେଲେ
ସହଦେବ ଉପରକୁ ମାର୍ଗଣ ବନ୍ଧିଲେ ।
ସହଦେବ ଯେ ତୁମ୍ଭ ପୁଅକୁ ତେସ୍ତର
ବନ୍ଧିଣ ସାରଥିଙ୍କି ଦେଲେ ତିନ ମାର ।
ଦୁଃଶାସନ ତାହା ନ ସହି ବନ୍ଧି କାଣ୍ଡ
କାଟିଦେଲେ ସହଦେବଙ୍କର କୋଦଣ୍ଡ ।
ପୁଣି ବାହୁ ଉରେ ତେସ୍ତର କାଣ୍ଡବନ୍ଧି
ଦେଲେ ତାହାଙ୍କ ପ୍ରିୟ ପ୍ରାଣୁଟିକ ରୁନ୍ଧି ।
ସହଦେବ ଛାଡ଼ିବା ଧନୁ ଥୋଇ ରଥେ
ଫିଙ୍ଗିଲେ ଖଣ୍ଡାଟାଏ ଧରିକରି ହାତେ ।
ସେ ଖଣ୍ଡାଟି ଦୁଃଶାସନର ଧନୁର୍ଗୁଣ
କାଟିକରି ତଳେ ପଡ଼ିଲା ଆହେ ରାଣ ।
ଆନ ଧନୁ ଧରିଣ ମାଦ୍ରୀଙ୍କର ବେଟା
ମାଳ ଦେଇଣ ଆଣ୍ଠ କରି ସେ ଗୁଣଟା ।
ଦୁଃଶାସନ ମରଣ ହେବାପାଇଁ ଖଳ
ବନ୍ଧିଲେ ବାଛି କାଣ୍ଡ କାଣ୍ଡମୁନଝଳ ।
ସେହି ଶରକୁ ଦୁଃଶାସନ କ୍ରୋଧ ହୋଇ
ଦୁଇଖଣ୍ଡ କଲେ ଖଣ୍ଡାରେ ହାଣିଦେଇ ।
ତଦନ୍ତେ ପୁଣି ବୁଲାଇ ସେ ଖଣ୍ଡାକୁ
ଫିଙ୍ଗିଲେ ସହଦେବ ହୃଦୟ ସ୍ଥଳକୁ ।
ସହଦେବ ଯେ ଆନ ଧନୁ ଆଣ୍ଟେ ଧରି
ସେ ଖଣ୍ଡାଟିର ବନ୍ଧମକୁ ଦେଲେ ସାରି ।
ଚଉଷଠି କାଣ୍ଡ ତୁମ୍ଭର ଦୁଃଶାସନ
ବନ୍ଧିଲେ ନେବାପାଇଁ ତାଙ୍କର ଜୀବନ ।
ସେହି କାଣ୍ଡଙ୍କ ବଳ ମାଦ୍ରୀଙ୍କ ତନୟ
ପାଞ୍ଚକାଣ୍ଡ ବନ୍ଧିଣ କରିଦେଲେ କ୍ଷୟ ।
ପୁଣି ତୁମ୍ଭ ପୁଅକୁ ଦଶ ମାରଗଣ
ବନ୍ଧିଲେ ସହଦେବ ରଥିକୁଳ ରାଣ ।
ତୁମ୍ଭର ପୁଅ ସେ କାଣ୍ଡକୁ ଖଣ୍ଡି ଖଣ୍ଡି
କରି ଗରଜିଲେ ଫୁଲାଇ ଦେଇ ଗଣ୍ଡି ।

ସହଦେବଙ୍କ ସାରଥିକ ଦୁଃଶାସନ
ବିନ୍ଧିଲେ ନବ କାଣ୍ଡ ନେବାକୁ ଜୀବନ ।
ସହଦେବ ସେ ତାହା ନ ପାରିଣ ସହି
ବିନ୍ଧିଲେ କାଣ୍ଡେ ଦୁଃଶାସନେ କ୍ରୋଧ ହୋଇ
ସେ କାଣ୍ଡେ ବୃଣ୍ଡେ ଯୁଦ୍ଧଦାଣ୍ଡରେ ଆସିଲା
ଦୁଃଶାସନ ହୃଦୟେ ଦେଶେ ନିକଳିଲା ।
ସେ କାଣ୍ଡ ସର୍ପ ପରି ଭୂମି ବିଳେ ପଶି
କଲା ସହଦେବଙ୍କ ପୂର୍ଣ୍ଣ ଜୟରାଶି ।
ସେ ଆଘାତରେ ଦୁଃଶାସନ ଢ଼ୁଲୁହୋଇ
ପଡ଼ିଲା ରଥଦାଣ୍ଡ ମୁଣ୍ଡକୁ ଢ଼ୁଲାଇ ।
ସାରଥି ଦେଖି ଦୁଃଶାସନଙ୍କ ମୋହକୁ
ବୁହାଇଲା ରଥ ସେଠାରୁ ଆନଠାକୁ ।
ଦୁଃଶାସନସୁତକୁ ଜିଣି ସହଦେବ
ଭଙ୍ଗିଲେ ଭୂମନ୍ତ ଯୋଦ୍ଧାମାନଙ୍କ ଗରବ ।
ନକୁଳ ଯୁଦ୍ଧଦାଣ୍ଡେ କର୍ଣ୍ଣେ ଦେଖି ହସି
ବୋଇଲେ ଆସ ହେବା ବଳ କଷାକଷି ।
ଭୂମନ୍ତ ସକାଶରୁ କୁରୁ ପାଣ୍ଡୁକୁଳ
ଯୁଦ୍ଧକରନ୍ତି ହୋଇଅଛନ୍ତି ନିର୍ମୂଳ ।
ଭୂମନ୍ତଙ୍କୁ ଆଜ ଦେଲେ ଯୁଦ୍ଧରେ ବଢ଼ାଇ
ବଂଶରକ୍ଷକାଶ ହୋଇବ ଜାଣ ମୂର୍ଖି ।
କର୍ଣ୍ଣ ବୋଇଲେ ଆହେ ପାଣ୍ଡୁରାଜପୁତ୍ର
ମୂର୍ଖି ତ ରହିଅଛୁ ହୋଇଣ ଅମିତ୍ର ।
ମୋତେ ଏବେ ହେ ଶରମାନଙ୍କୁ ପ୍ରହାରି
ପାରିଲେ ଯାଅ ଯୁଦ୍ଧ ବାରିଧିକ ତରି ।
ଆପଣା ସାମର୍ଥ୍ୟକୁ ଦେଖାଇ ମୋ ତୁଲେ
ଯୁଦ୍ଧକଲେ ଜାଣିବ ମୋ ବଳକି ଭଲେ ।
ଏହା କହି ସେ କର୍ଣ୍ଣ ତେସ୍ତରଟି କାଣ୍ଡ
ବିନ୍ଧିଣ ଥୁଇଦେଲେ ନକୁଳଙ୍କ ପିଣ୍ଡ ।
ନକୁଳ ଅଶୀ କାଣ୍ଡ ସୁତପୁତ୍ର ଦେହେ
ବିନ୍ଧିଲେ ହେ ରାଜନ ଧନୁ ଧରି କୋହେ ।
କର୍ଣ୍ଣ ନକୁଳଙ୍କର ଧନୁଟିକ କାଟି
ବିନ୍ଧିଲେ ନକୁଳଙ୍କୁ ଶର ତିରିଶିଟି ।
ଶରେ ଆଶୀବିଷ ସଦୃଶ ଫଣୀ ଦୃଶେ
ପଶିଲେ ନକୁଳ କବଚ ବିଳେ ବିଶେଷେ ।
ନକୁଳ ସେ ଘାତରେ ନ ଛାଡ଼ି ଧୈର୍ଯ୍ୟ
ଧଇଲେ ଆନ ଧନୁଗୁଣେ କରି ସଜ ।

କର୍ଣ୍ଣଙ୍କୁ କୋଡ଼ିଏ ମାର୍ଗଣ ବାଛି ବାଛି
ବିନ୍ଧିଲେ ଯୁଦ୍ଧଦାଣ୍ଡେ ପ୍ରାଣ ନେବା ଇଚ୍ଛି ।
କର୍ଣ୍ଣଙ୍କୁ ସାରଥିକ ବିନ୍ଧି ତିନକାଣ୍ଡ
କାଟି ପକାଇ ଦେଲେ କର୍ଣ୍ଣଙ୍କ କୋଦଣ୍ଡ ।
କର୍ଣ୍ଣଙ୍କର ଯୁଦ୍ଧରେ କରିବାକୁ ପୀଡ଼ା
ବିନ୍ଧିଲେ ଗଣି ଗଣି ତିନଶତ ଶର ଭିଡ଼ା ।
କର୍ଣ୍ଣଙ୍କର ଦେଖିଣ ବଳହୀନ ଦଶା
କଲେ ସେ ଦେବେ ନକୁଳଙ୍କ ପରଶଂସା ।
ଆନ ଧନୁକୁ ଧରି ସାରଥି ତନୁଜ
ବିନ୍ଧିଲେ ପାଞ୍ଚକାଣ୍ଡ ଦେଖାଇ ବଳ ଓଜ ।
ସେ କାଣ୍ଡମାନେ ନକୁଳଙ୍କ ଦେହ ମଣ୍ଡି
ଦେଲେ ସେ ସୂର୍ଯ୍ୟରଶ୍ମି ପ୍ରଭାଟିକ ଦଣ୍ଡି ।
ନକୁଳ କର୍ଣ୍ଣଦେହେ ବିନ୍ଧି ସାତକାଣ୍ଡ
କାଟିଲେ କର୍ଣ୍ଣଙ୍କ କୋଦଣ୍ଡ ଦୁଇଖଣ୍ଡ ।
ଆନ ଧନୁ ଧରିଣ ଅଧିରଥସୁତ—
କର୍ଣ୍ଣ ବିନ୍ଧିଲେ ହେ ରାଜନ ଅଗଣିତ ।
କର୍ଣ୍ଣଙ୍କର କାଣ୍ଡପନ୍ତିକ ସେ ନକୁଳ
କାଟିଲେ ଯୁଦ୍ଧଦାଣ୍ଡେ ହୋଇ ଅବିକଳ ।
ପୁଣି ଏ କର୍ଣ୍ଣ ପରି ସଜ ଶରାବଳୀ
ଘୋଡ଼ାଇଲେ ସୂର୍ଯ୍ୟଦେବଙ୍କ ରଶ୍ମିମାଳୀ ।
ଏ ସକାଶୁଁ ଆକାଶେ ପକ୍ଷୀଙ୍କ ସଞ୍ଚାର
ଊଣା ହୋଇଗଲା ହେ ଜାଣ ନରବର ।
କର୍ଣ୍ଣ ସେହିରୂପେ ବିନ୍ଧିଣ ମାରଗଣ
ଘେନିଲେ ସେ ସୋମକମାନଙ୍କ ପରାଣ ।
ନକୁଳଙ୍କ କାଣ୍ଡେ କୁରୁଏ ମୁହଁ ମୋଡ଼ି
ଚଳାଇଲେ ରାୟେ ଯୁଦ୍ଧଦାଣ୍ଡକୁ ଛାଡ଼ି ।
ଦୁଇ ସେନାୟକ ଯେ କାଣ୍ଡ ଅପାଉତ୍ତ
ସ୍ଥାନେ ରହି ଦେଖିଲେ ଯୁଦ୍ଧେ ହୋଇମତ୍ତ ।
ନକୁଳ କର୍ଣ୍ଣ ଦୁହେଁ ପରସ୍ପର ବଧ
ବିଚାରି ଧନୁ ଧରି ଆରମ୍ଭିଲେ ଯୁଦ୍ଧ ।
ନକୁଳ ମାର୍ଗଣଗଣଙ୍କୁ ପ୍ରହାରି
କର୍ଣ୍ଣଙ୍କୁ ଦେଲେ ଯୁଦ୍ଧମଧ୍ୟେ ଅସ୍ତ କରି ।
କର୍ଣ୍ଣ ସେହିରୂପେ ଉରିଣ ନକୁଳଙ୍କୁ
ଦେଖାଇଲେ ଯୁଦ୍ଧରେ ନିଜ ବିକ୍ରମକୁ ।
ସେ ଦୁହେଁ ଶର ମେଘ ସୂର୍ଯ୍ୟଚନ୍ଦ୍ର ପରି
ଅଚ୍ଛନ୍ନ ହୋଇଲେ ହେ ଗାନ୍ଧାରୀ ବହାର ।

କର୍ଣ୍ଣ ତାହା ସହି ନ ପାରି କ୍ରୋଧ ହେଲେ
ବେଳକୁ ବେଳ ବିକ୍ରମରେ ସେ ବଢ଼ିଲେ ।
ନକୁଳ ତ ଅତ୍ୟନ୍ତ ମହାବଳୀୟାର
କର୍ଣ୍ଣର ବିକ୍ରମକୁ ମଣିଲେ ସେ ଛାର ।
ସପ୍ତ ଶତ ସଂଖ୍ୟା ମାର୍ଗଣ କର୍ଣ୍ଣ ବିନ୍ଧ
କର୍ଣ୍ଣ ନକୁଳେ ଯୁଦ୍ଧଦାଣ୍ଡେ ହେଲେ ରୁନ୍ଧ ।
ଶର ମେଘ ଛାଇଲେ ସୂର୍ଯ୍ୟଙ୍କ କିରଣ
ଛାଡ଼ିଗଲା ମହାଭାଗ ହେ ନରରାଣ ।
କର୍ଣ୍ଣ ନକୁଳଙ୍କ ସାରଥି ମୁଣ୍ଡ କାଟି
ବୋଇଲେ ଯାଅ ବେଗେ ଯମଙ୍କୁ ତୁ ଭେଟି
ପୁଣି ତାଙ୍କ ଧନୁକୁ କରି ଦୁଇ ଗଡ଼
କାଟିଲେ ଚାରି ଘୋଡ଼ାଙ୍କର ଷୋଳ ଗୋଡ଼
ରଥକୁ ଶର ମୁଥ ମାରି ଭାଙ୍ଗି ଦେଇ
ଯୁଦ୍ଧସାମଗ୍ରୀ ନାଶିଲେ କ୍ରୋଧ ବହି ।
ରଥୁଁ ଅବତରି ନକୁଳ ମହାବୀର
ଛିଡ଼ା ହେଲେ ପରିଘୁଟାଏ ଧରି କର ।
ନକୁଳଙ୍କ କରରେ ଦେଖିଣ ପରିଘ
କାଟିଲେ କର୍ଣ୍ଣ ବିନ୍ଧି ତା ସାୟକ ସଂଘ ।
ନିରାୟୁଧ ହୋଇଯାନ୍ତେ ନକୁଳ ବଳୀ
ପଳାଇଲେ ମରିବା ଭୟ ହୃଦେ ଭାଳି ।
କର୍ଣ୍ଣ ନକୁଳଙ୍କର ପଛେ ଗୋଡ଼ାଇଲେ
ରହ ବୋଲି ବେକରେ ଧନୁ ଲମ୍ବାଇଲେ ।
ନକୁଳ କଣ୍ଠଦେଶେ ବହି ସେ ଧନୁକୁ
ଜିଣିଲେ ସପରିଧି ଚନ୍ଦ୍ର ମଣ୍ଡଳକୁ ।
କର୍ଣ୍ଣ ବୋଇଲେ ହେ ନକୁଳ କହିବାର
ପ୍ରକୃତ ବଳ ଜଣା ପଡ଼ିଲା ତୁମ୍ଭର ।
ଏବେ ମୁଁ କହୁଛି ବଳକୁ ଅନୁରୂପ
ରଥୀଙ୍କ ଦେଖୁଥିଲେ କରୁଥିବେ କୋପ ।
ଆମ୍ଭ ପରି ରଥୀମାନଙ୍କ ତୁଲେ ଯୁଝି
ଆସିଲେ ଶୋଇବଟି ବାଣ ରଣମଝି ।
ନ ପାଇ ଲାଜ ଏବେ ଗୃହେ ସୁଖେ ଯାଅ
ଦ୍ରୌପଦୀଙ୍କି ମାଗି ପଖାଳଭାତ ଖାଅ ।
ମୁଁ ତୁମ୍ଭ ମରଣକୁ ରଣେ କଦାଚିତେ
କରିବ ନାହିଁ ଛାଡ଼ ଭୟ ଥିଲେ ଚିତ୍ତେ ।
ଏରୂପେ ନକୁଳଙ୍କୁ କର୍ଣ୍ଣ ହସି ହସି
କହିଣ ନିଶ ତେଢ଼ିଲ ଦୁଇହାତେ ଘଷି ।

ହେ ଧୃତରାଷ୍ଟ୍ର ତହୁଁ କୁନ୍ତୀଙ୍କ ବଚନ
ମାନି ନକୁଳଙ୍କ ନ ନେଲେ ସେ ଜୀବନ ।
ନକୁଳ ଯୁଧିଷ୍ଠିର ରଥର ଉପରେ
ବସିଲେ ତର ଦେଇ ଆପଣା ମଥାରେ ।
ମନେକଲେ ଏପରି ହୋଇବା ଗଞ୍ଜନ
ମରିଥିଲେ ପାଆନ୍ତି ଉତ୍ତମ ଗତିକ ।
କର୍ଣ୍ଣ ନକୁଳଙ୍କୁ ସମରଦେଶେ ଜିଣି
ପାଞ୍ଚାଳଙ୍କଠାକୁ ଧାଇଁଲେ ଧନୁ ଟାଣି ।
କର୍ଣ୍ଣଙ୍କର ଯିବାର ଦେଖି ପାଣ୍ଡୁ ସେନା
ମରିବା ବୋଲିକରି କଲେ ସେ ଭାବନା ।
ସେ କାଳକୁ ଦିନରୁ ଆଠଘଡ଼ି ଭୋଗ
କରିଅଛନ୍ତି ଛାୟାପତି ମହାଭାଗ ।
କର୍ଣ୍ଣଙ୍କର ଶରରେ ମରନ୍ତେ ସାରଥି
ପଳାଇଲେ ଘୋଡ଼ାଏ ରଣେ ହୋଇ ବ୍ୟଥୀ
କର୍ଣ୍ଣ ଶର ଅଗ୍ନି ଲାଗନ୍ତେ ହସ୍ତୀବଳ
ଭୟତୃଷାରେ ସେ ଯେ ହୋଇଲେ ଆକୁଳ
କେତେ ହାତୀଙ୍କର ଯାଆନ୍ତେ ମୁଣ୍ଡଫାଟି
ଯୁଦ୍ଧସ୍ଥଳେ ହେଲା ମୁକୁତା ଧାର ବୃଷ୍ଟି ।
ଦେହହାଣ ଯାଆନ୍ତେ ପ୍ରାଣ ପରିହାଣ
ହେବାପାଇଁ ଭାଜିଲେ ବହୁତ ବାରଣ ।
କେତେ ହାତୀ କର୍ଣ୍ଣଙ୍କ ଶରକୁ ନ ମାନି
କର୍ଣ୍ଣେ ମାରିବାକୁ ଧାଇଁଲେ ରୋଷ ଘେନି ।
କର୍ଣ୍ଣ ତାଙ୍କୁ ଶର ସିଂହରେ ବିଦାରଣ
କଲେ ଜାଣ ଆହେ ହସ୍ତିନା ନରରାଣ ।
ଘୋଡ଼ାଙ୍କର ବେଗ କର୍ଣ୍ଣଙ୍କ କାଣ୍ଡେ ନାଶ
ହୁଅନ୍ତେ ବୁଲିଲେ ସେ ଯୁଦ୍ଧ ମହୀଦେଶ ।
ବାହାରି କର୍ଣ୍ଣ ଧନୁ ମଧ୍ୟୁଁ ଶରଧାଡ଼ି
କରିଲେ ହାତୀଘୋଡ଼ାଙ୍କର ଯେ ମରୁଡ଼ି ।
ବୀରମାନଙ୍କର ଯେ ବାହୁ ଉର ଶିର
କର୍ଣ୍ଣ କାଣ୍ଡେ ଛିଡ଼ିଗଲା ହେ ନରବର ।
ସଞ୍ଜୟମାନେ କର୍ଣ୍ଣ ଅଗ୍ରମୁଖେ ଥାଇ
ଏମନ୍ତ ହେଲେ ହେଲେ ନ ଗଲେ ପଳାଇ ।
ଯୁଗାନ୍ତ ଅଗ୍ନି ପରି ଦେଖି କର୍ଣ୍ଣ ରୂପ
ଭାଜିଲେ ପାଣ୍ଡୁସେନା ଜ୍ଞାନ କରି ଲୋପ ।
କର୍ଣ୍ଣ ତ ଯୁଦ୍ଧ ତୁଅ ତରକ ଜାଣନ୍ତୁ
ପଳାଇଲେ ହେଲେ ବିନ୍ଧିଲେ ଶର ଅଣ୍ଟ ।

ଭୂମ୍ବ ପୁଅ ଯୁଯୁତ୍ସୁ ଭୁଲରେ ଉଲୂକ
ଯୁଝିଲେ ବିନ୍ଧି ବିନ୍ଧି ଉତ୍ତମ ସାୟକ ।
ଯୁଯୁତ୍ସୁ ଉଲୂକଙ୍କୁ ତୀକ୍ଷ୍ଣ କାଣ୍ଡ ମାରି
ରହିଲେ ତାଙ୍କ ଆଗେ କରେ ଧନୁ ଧରି ।
ଉଲୂକ କ୍ରୋଧ ହୋଇ ଯୁଯୁତ୍ସୁ କୋଦଣ୍ଡ
କାଟି କରି ପୁଣି ବିନ୍ଧିଲେ କର୍ଣ୍ଣିକାଣ୍ଡ ।
ଯୁଯୁତ୍ସୁ ସେ ଛିଡ଼ା ଧନୁକୁ ରଥେ ଥୋଇ
ଆନ ଧନୁ ଧରି ଯୁଝିଲେ ରୋଷ ବହି ।
ଉଲୂକକୁ ଷାଠିଏ ସାରଥିକ ତିନି
ବିନ୍ଧିଲେ ଭୂମ୍ବ ସୁତ ହୋଇ ଯୁଦ୍ଧେ ମାନି ।
ଉଲୂକ ଯୁଯୁତ୍ସୁଙ୍କୁ କୋଡ଼ିଏ ମାର୍ଗଣ
ବିନ୍ଧି ତାଙ୍କ ଧ୍ୱଜକୁ କଲେ ଛିନ୍ନଭିନ୍ନ ।
ଧ୍ୱଜ ଛିଡ଼ିବାରୁ ନ ସହି ଭୂମ୍ବ ସୁତ
ଉଲୂକ-ଦେହେ କଲେ ପୁଣି ଶରଘାତ ।
ଉଲୂକ ଯୁଯୁତ୍ସୁଙ୍କୁ ସାରଥି ମୁଣ୍ଡୁଟି
କାଣ୍ଡୁଟିଏ ବିନ୍ଧିଣ ପକାଇଲେ କାଟି ।
ଚାରି କାଣ୍ଡେ ଚାରି ଅଶ୍ୱକୁ ଯମବାସ
ଲେଖାଇଣ ଉଲୂକ ଆଉଁସିଲେ ନଶ ।
ଯୁଯୁତ୍ସୁ ଉଲୂକଙ୍କ ଶରେ ପୀଡ଼ା ପାଇ
ପଳାଇଲେ ଯୁଦ୍ଧ ଛାଡ଼ି ହେ ନରସାଇଁ ।
ଉଲୂକ ଯୁଯୁତ୍ସୁଙ୍କୁ ଜିଣିଣ ପାଞ୍ଚାଳ
ସୃଞ୍ଜୟଙ୍କୁ ମାଇଲେ ଦେଖାଇଣ ବଳ ।
ଭୂମ୍ବର ସୁତ ଶ୍ରୁତବର୍ମା ଶତାନୀକ
ଭୁଲରେ ଯୁଦ୍ଧ କଲେ ବିନ୍ଧିଣ ସାୟକ ।
ଶ୍ରୁତବର୍ମା ଶରରେ ଶତାନୀକ ବୀର
ବିରଥ ହୋଇଲେ ହେ ଜାଣ ନରବର ।
ଶତାନୀକ ବିରଥ ହୋଇନ୍ତେ ଗଦା ଧରି
ଭୂମ୍ବ ପୁଅ ରଥ ଫିଙ୍ଗିଲେ କ୍ରୋଧ କରି ।
ସେ ଗଦା ଉଲ୍କା ପରି ଆସି ଆକାଶରେ
ଭସ୍ମ କରିଲା ରଥ ସୂତ ସହିତରେ ।
ଶତାନୀକ ଶ୍ରୁତବରମ ଦୁଇ ରଥୀ
ଅନ୍ୟୋନ୍ୟରେ ଯୁଦ୍ଧରେ ହୋଇଣ ବିରଥୀ ।
ତାହାଁତହୁଁ ହୋଇଣ ନିଜ ସଇନରେ
ପଶିଲେ ଆନ ରଥ ଚଢ଼ିବା ମନରେ ।
ଭୂମ୍ବ ପୁଅ ବିକସ୍ରୁ ରଥରେ ବସିଲେ
ଯୁଝିବାକୁ ମାନସ କରିଣ ହସିଲେ ।

ପ୍ରତିବିନ୍ଧ୍ୟ ରଥରେ ଶତାନୀକ ବୀର
ବସି ସୁସ୍ଥ ହୋଇ ଧରିଲେ ଧନୁଶର ।
ଶ୍ରୁତସୋମ ଶକୁନି ଦେଲେ ଶରଧାଡ଼ି
ସରଜିଲେ ରାଜନ ପଡ଼ିଣ ଅଜାଡ଼ି ।
ଶକୁନି ଶ୍ରୁତସୋମ ମାରଗଣ ଗଣ
କାଟି ପକାଇଲେ ବିନ୍ଧିଣ ତୀକ୍ଷ୍ଣ ବାଣ ।
ପୁଣି ଶ୍ରୁତସୋମଙ୍କ ଗଣ୍ଡିକ ଲକ୍ଷାଇ
ତିନିକାଣ୍ଡ ବିନ୍ଧିଲେ ଶକୁନି ରୋଷାଇ ।
ଶ୍ରୁତସୋମଙ୍କର ସେ ସାରଥିର ପ୍ରାଣ
ହରିକରି ଧଜକୁ କାଟିଲେ ବିନ୍ଧିଣ ।
ଶ୍ରୁତସୋମ ବିରଥ ହୋଇ ଧନୁ ଧରି
ତଳରେ ଛିଡ଼ା ହେଲେ ରାଜନ ନ ଡରି ।
ଭୂମ୍ବ ଶଳା ରଥକୁ ବିନ୍ଧି ମାରଗଣ
ଆଚ୍ଛାଦି ଦେଲେ ହେ ହସ୍ତିନାପୁ ଜାଣ
ଶକୁନି ଶ୍ରୁତସୋମ କାଣ୍ଡଟିମାନଙ୍କୁ
କାଟି ପକାଇଲେ ସେ ବିନ୍ଧିଣ କାଣ୍ଡକୁ ।
ଶକୁନିଙ୍କର ଯୁଦ୍ଧେ ଶୂରପଣ ଦେଖି
ଭୂମ୍ବ ଯୋଦ୍ଧାମାନେ ହୋଇଲେ ମହାସୁଖୀ ।
ଗଦାନ୍ତ ହୋଇ ଶ୍ରୁତସୋମ ବୀରଙ୍କଣ
ଯୁଦ୍ଧନ୍ତେ ସେ ଧନୁ ଶକୁନି କଲେ ନାଶ ।
ଶ୍ରୁତସୋମ ଖଡ଼୍ଗ ଭୁଜୁଣି କରେ ଟେକ
ଧାଇଁଗଲେ ସେ ହାଣିବାକୁ ଶକୁନିକ ।
ଶ୍ରୁତସୋମ କରରେ ଖଡ଼୍ଗକୁ ଦେଖି
ମଲି ତ ବୋଲି ଭୂମ୍ବ ଶଳା ହେଲେ ଦୁଃଖୀ
ଭ୍ରାନ୍ତ ଉଦଭ୍ରାନ୍ତ ଯେ ଆଧୂତ ଆପ୍ଲୁତ
ନିଃସୃତ ପ୍ଲୁତ ସମୁଦୀର୍ଣ୍ଣ ସୁନିର୍ଘାତ ।
ଏ ମଣ୍ଡଳମାନ ଦେଖାଇ ଶ୍ରୁତସୋମ
ଶକୁନିକି ମାରିବାପାଇଁ କଲେ ଶ୍ରମ ।
ଶକୁନି ନ ସହି ବିନ୍ଧିଲେ କାଣ୍ଡରାଜି
ଶ୍ରୁତସୋମ ଖଣ୍ଡାରେ କାଟିଲେ ଗରଜି ।
ପୁଣି ଭୂମ୍ବ ଶଳା ନ କରି ଯୁଦ୍ଧ ହେଳା
ସରଜିଲେ ଶ୍ରୁତସୋମଙ୍କୁ ଶରମାଳା ।
ଶିକ୍ଷାବଳ ଦେଖାଇ ଶକୁନି କାଣ୍ଡକୁ
କାଟିଣ ଶ୍ରୁତସୋମ ମଣ୍ଡିଲେ ଦାଣ୍ଡକୁ ।
ଶକୁନି କ୍ଷୁରକାଣ୍ଡ ଗୋଟିଏ ପ୍ରହାରି
ଖଣ୍ଡାଟି ମଧ୍ୟ ଦେଲେ ଦୁଇଭାଗ କରି ।

ଖଣ୍ଡି ଆ ଖଣ୍ଡ ଖଣ୍ଡ ଧରି ଶ୍ରୁତସୋମ
ଫିଙ୍ଗିଲେ ଶକୁନି ଦେହକୁ କରି ତମ ।
ସେ ଖଣ୍ଡାଖଣ୍ଡି ଖଣ୍ଡ ଅନ୍ଧ ପରି ଗଲା
ଶକୁନିର ଧନୁକୁ କାଟି ପକାଇଲା ।
ଶ୍ରୁତସୋମ ସେ ଶ୍ରୁତକୀର୍ତ୍ତିଙ୍କର ରଥେ
ବସି ଆଉଁଷିଲେ ନଶକୁ ଦୁଇହାତେ ।
ଶକୁନି ଆନ ଧନୁଟାଏ କରେ ଧରି
ପାଣ୍ଡବ ସେନାଙ୍କୁ ମାଇଲେ ଖୋଜ କରି ।
ପାଣ୍ଡବ ସେନାଏ ଶକୁନି ଶରେ ପୀଡ଼ା
ପାଇ ଡକା ପାଡ଼ିଲେ ଗୁଡ଼ ଦେଇ ବ୍ରୀଡ଼ା ।
ଇନ୍ଦ୍ର ଦୈତ୍ୟ ସେନାକୁ ନାଶିଲା ପରାଏ
ପାଣ୍ଡବେ ନାଶିଲେ ଶକୁନି କାଣ୍ଡଘାଏ ।
କୃପାଧୃଷ୍ଟଦ୍ୟୁମନ ହୋଇ ଭେଟାଭେଟି
ଧନୁମଧ୍ୟେ ହୋଇଲେ ଶର ଯୋଟାଯୋଟି ।
କୃପ ବୀର୍ଯ୍ୟ ଶରରେ ପାଇ ପୀଡ଼ା
ହେଲେ ଧୃଷ୍ଟଦ୍ୟୁମ୍ନ ସ୍ତକିତ ହୋଇ ଛନ୍ଦା ।
ଧୃଷ୍ଟଦ୍ୟୁମନ କୃପାଚାର୍ଯ୍ୟଙ୍କର ଯୁଦ୍ଧ
ଦେଖି ଲୋକେ ଭାବିଲେ ହେଲାଇଁଟି ବଧ ।
ପାଣ୍ଡବ ସିପାଇ ଧୂପାଇଥିଲେ ଘୋଡ଼ା
ଦେଖି ସେ ଦୁଇରଥୀ ଯୁଦ୍ଧଘୋଡ଼ା ଛୁଡ଼ା ।
ଯୁଦ୍ଧଦାଣ୍ଡେ ଆସିଣ ବିଚାରିଣ ମନେ
ଯିବେ ଧୃଷ୍ଟଦ୍ୟୁମନ ଯମଙ୍କ ସଦନେ ।
ଜୂଆଇଁ ମରଣରେ ହୋଇବାରୁ ଦୁଃଖୀ
ଦେଖ କୃପ କ୍ରୋଧେ ତରାଟିଛନ୍ତି ଆଖି ।
ଧୃଷ୍ଟଦ୍ୟୁମ୍ନ ଚନ୍ଦ୍ରକୁ କୃପା ରାହୁପ୍ରାୟେ
ଘୋଟିଛନ୍ତି କରିବା କହ କି ଉପାୟେ ।
ସବୁ ଅସ୍ତ୍ର ଶସ୍ତ୍ରର ପଣ୍ଡିତ ତ କୃପ
କେ କରି ପାରିବଟି ତାଙ୍କ ବଳ ଲୋପ ।
ଧୃଷ୍ଟଦ୍ୟୁମନଙ୍କୁ ସେ କାଳେ କାଣ୍ଡ ରାଜ
ବିନ୍ଧିଲେ କୃପାଚାର୍ଯ୍ୟ ଯୁଦ୍ଧରେ ଗରଜ ।
କୃପାଚାର୍ଯ୍ୟଙ୍କର ଶରରେ ଧୃଷ୍ଟଦ୍ୟୁମ୍ନ
ଯୁଦ୍ଧଦାଣ୍ଡରେ ରାୟେ ହୋଇଲେ ଅଜ୍ଞାନ ।
ସାରଥି ତାହା ଦେଖି ଦ୍ରୁପଦସୁତଙ୍କୁ
ବୋଇଲା ଯୁଦ୍ଧକରି ବହୁଣ ଧୈର୍ଯ୍ୟକୁ ।
ଯେବେ କୃପାଚାର୍ଯ୍ୟଙ୍କୁ ନ ପାରିବ ଯୋଟି
କହ ବାହୁଟନେବ ମୁଁ ଏଠାରୁ ରଥଟି ।

ସାରଥିର ବଚନ ଶୁଣି ଧୃଷ୍ଟଦ୍ୟୁମ୍ନ
ବୋଇଲେ ଯାହା ଇଚ୍ଛା କର ତୋର ମନ
ସାରଥି ଧୃଷ୍ଟଦ୍ୟୁମ୍ନ ବଚନକୁ ଶୁଣି
ଭୀମଙ୍କ ପାଖେ କଲା ରଥକୁ ସେକ୍ଷଣି ।
ଧୃଷ୍ଟଦ୍ୟୁମ୍ନଙ୍କର ପଳାଇବାର ଦେଖି
କୃପ ଶଙ୍ଖ ଫୁଙ୍କିଲେ ହୋଇ ଅତି ସୁଖୀ ।
ଶିଖଣ୍ଡୀକି ଯେ କୃତବର୍ମା ମହାବୀର
କାହିଁ ଯିବୁ ବୋଲି ବିନ୍ଧିଲେ ବାଛି ଶର ।
ଶିଖଣ୍ଡୀ କୃତବର୍ମା ଭଣ୍ଡିକ ପାଞ୍ଚକଣ୍ଡ
ବିନ୍ଧିଲେ କମ୍ପ ଇଣ କରରେ କୋଦଣ୍ଡ ।
କୃତବରମା ପାଞ୍ଚ କାଣ୍ଡରେ ଶିଖଣ୍ଡୀ
ଧନୁଟିକି ରାଜନ କଲେ ଦୁଇ ଖଣ୍ଡି ।
ରନ ଧନୁ ଧରି ଦ୍ରୁପଦଙ୍କ ବେଟା
ରହ ରହ ବୋଇଲେ ମେଲଣ ଗଲାଟା ।
ଶିଖଣ୍ଡୀ କୃତବର୍ମା ଦେହେ ନଅ କାଣ୍ଡି
ବିନ୍ଧିଲେ ମୋଡ଼ିଦେଲା ତାଙ୍କ ମୁନଗଣ୍ଡି ।
କ୍ଷୁରକାଣ୍ଡେ ଶିଖଣ୍ଡୀ କୃତବର୍ମ ଧନୁ
କାଟିଣ ଆନନ୍ଦରେ ଫୁଲାଇଲେ ତନୁ ।
କୃତବର୍ମାଙ୍କର ଯେ ଉର ବାହୁ ଦେଶେ
ଅଶୀଟି କାଣ୍ଡ ବିନ୍ଧିଲେ ଶିଖଣ୍ଡୀ ରୋଷେ ।
କୃତବର୍ମା ଗଣ୍ଡିରୁ ବାହାରି ରକତ
କଲା ତାଙ୍କୁ କିଂଶୁକଫୁଲର ସମିତ ।
ଆନ ଧନୁ ଧରିଣ କୃତବର୍ମା ବୀର
ଶିଖଣ୍ଡୀ କାନ୍ଧକୁ ବିନ୍ଧିଲେ ଯୋଖି ଶର ।
ଅନ୍ୟୋନ୍ୟେ ସେ ଦୁଇରଥୀଏ ମରାମରି
ହୋଇଲେ ଜୟ ଶିରି ନେବା ଇଚ୍ଛାକରି ।
ନାନା ଜାତି ମଣ୍ଡଳକୁ ସେ ଦୁହେଁ କଲେ
ମାର୍ଗଣ ଗୁଣେ ଯୋଟି ବନ୍ଧାବନ୍ଧ ହେଲେ ।
କୃତବର୍ମା ଶିଖଣ୍ଡୀ ଦେହକୁ ସଭୁର
ମାର୍ଗଣ ବିନ୍ଧିଲେ ମାରିବା ଇଚ୍ଛା କରି ।
ଏ ବାହାରେ କାଣ୍ଡେ ବସାଇ ଧନୁ ମଧ୍ୟେ
ବିନ୍ଧିଲେ ଶିଖଣ୍ଡୀ ଗଣ୍ଡୀକି ଅତି କ୍ରୋଧେ ।
ସେ କାଣ୍ଡ ଶିଖଣ୍ଡୀ ହୃଦରେ ଗଲା ବୁଡ଼ି
ମୋହ ଗଲେ ଶିଖଣ୍ଡୀ ଧ୍ଵଜଯଷ୍ଟି ଭିଡ଼ି ।
ସାରଥି ଦେଖି ଶିଖଣ୍ଡୀଙ୍କ ଏ ଦଶାକୁ
ବାହୁଡ଼ି ନେଲେ ରଥ ସେଠାରୁ ଆନଠାକୁ ।

ଶିଖଣ୍ଡୀ ପରାସ୍ତ ହେବାରୁ ପାଣ୍ଡୁସେନା
ପଳାଇଲେ ଜାଣ ରାଜନ ମହାମନା ।
ଅରଜୁନ କ୍ରୁଦ୍ଧ ହଇନ ଘନରାଶି
ଶରବ୍ରାତ ବାତର ପକାଇଲେ ଧ୍ୱଂସି ।
କୌରବ ଶିବ ମିତ୍ରବର୍ମା ସତ୍ୟସେନ
ଶଲ୍ୟ ସୃଞ୍ଜୟ ସଂଶପ୍ତକ ଚିତ୍ରସେନ ।
ନାରାୟଣବଳ ସୌସୃଷ୍ଟ ଚନ୍ଦ୍ରଦେବ
ମିତ୍ରଦେବ ଆଦି ଯୁଦ୍ଧରେ ବହ୍ନି ଗର୍ବ ।
ପାର୍ଥ ରଥ ଚକ୍ରପଟରେ ବେଢ଼ି କରି
ବର୍ଷିଲେ କାଟି କାଣ୍ଡ ଧନୁକୁ ଓଟାରି ।
ଏ ବାହାରେ ସୁଶର୍ମା ପୁତ୍ର ଭାଇ ତୁଲେ
ଘେନ ଅର୍ଜୁନଙ୍କ ତୁଳରେ ଯୁଦ୍ଧ କଲେ ।
କ୍ରୁଦ୍ଧ ଯୋଦ୍ଧା ସର୍ପ ଅର୍ଜୁନ କାଣ୍ଡ ଖଗ
ରାଜକୁ ଦେଖିଣ ବର୍ଷିଲେ ନଭଭାଗ ।
ସତ୍ୟସେନ ତିନି ତେଷଠି ମିତ୍ରଦେବ
ତେସ୍ତର ମିତ୍ରବର୍ମା ସପ୍ତ ଚନ୍ଦ୍ରଦେବ ।
ବଂଶଜ ଶତ୍ରୁଞ୍ଜୟ ସଉସୃଷ୍ଟ ସାତ
ସୁଶର୍ମା ନବକାଣ୍ଡ ବାଣ୍ଟିଣ ନିଶିତ ।
ଅର୍ଜୁନଙ୍କ ଚକ୍ରପଟରେ ରହି କରି
ବର୍ଷିଲେ କରେ ଧନୁମାନଙ୍କୁ ଓଟାରି ।
ଅର୍ଜୁନ ସଉସୃଷ୍ଟ ଉପରକୁ ସାତ
ବର୍ଷି ସତ୍ୟସେନଙ୍କୁ ବର୍ଷିଲେ ବହୁତ ।
ଶତ୍ରୁଞ୍ଜୟ ଦେହକୁ କୋଡ଼ିଏଟି ବର୍ଷି
ଆଠକାଣ୍ଡେ ଚନ୍ଦ୍ରଦେବଙ୍କୁ ଦେଲେ ରୁନ୍ଧି ।
ମିତ୍ରଦେବ ଯେ ଉପରକୁ ଶଏ କାଣ୍ଡ
ବର୍ଷିଲେ ଅରଜୁନ କମ୍ପାଇ ବ୍ରହ୍ମାଣ୍ଡ ।
ଚିତ୍ରସେନ ଦେହକୁ ମାରି ତିନିଶର
ନବକାଣ୍ଡ ବର୍ଷିଲେ ମିତ୍ରବର୍ମା ଉର ।
ସୁଶର୍ମାକୁ ଅର୍ଜୁନ ଆଠକାଣ୍ଡ ବର୍ଷି
ଶତ୍ରୁଞ୍ଜୟ ରାଜାର ଶିର ଦେଲେ ଛେଦ ।
ସଉସୃଷ୍ଟ ଚନ୍ଦ୍ରଦେବଙ୍କୁ ଯମକ୍ଷୟ
ନେଲେ ଯେ କୁନ୍ତୀଙ୍କର କନିଷ୍ଠ ତନୟ ।
ବାକି ମହାରଥୀଙ୍କି କ୍ରୁଦ୍ଧ ପାଞ୍ଚ ପାଞ୍ଚ
ବର୍ଷିଲେ ଅରଜୁନ ବାଛିଣ ନାରାଚ ।
କ୍ରୋଧ ହୋଇଣ ସତ୍ୟସେନ ତୋମରକୁ
ଫିଙ୍ଗିଲେ କରି ଟେକ କୃଷ୍ଣ ଉପରକୁ ।

ସେ ତୋମର ଶ୍ରୀକୃଷ୍ଣ ସବ୍ୟଭୁଜେ ମଜ୍ଜି
ପଡ଼ିଲା ଯୁଦ୍ଧଦାଣ୍ଡ ମଧ୍ୟରେ ଗରଜି ।
ଅର୍ଜୁନ ଦେଖି କୃଷ୍ଣ ବାହୁମୂଳେ କ୍ଷତ
କ୍ରୋଧାନଳେ ପିଣ୍ଡକୁ ଜାଳିଣ ତୁରିତ ।
ତୀକ୍ଷ୍ଣ କାଣ୍ଡୁଟିରେ ସତ୍ୟସେନ ମୁଣ୍ଡ
କାଟି ତହୁଁ ପକାଇ ଦେଲେ ରଣଦାଣ୍ଡ ।
ଏ ବାହାରେ ବର୍ଷିଣ ମିତ୍ରବର୍ମା ଉରେ
ବସାଇଲେ ତା ସାରଥିକ ଯମପୁରେ ।
ଶତ ଶତ ସହସ୍ର ସଂଖ୍ୟା ସଂଶପ୍ତକ
ମାଇଲେ ଶର ବର୍ଷି ସୁଭଦ୍ରା ନାୟକ ।
କ୍ଷୁରକାଣ୍ଡେ ଚିତ୍ରଦେବଙ୍କର ମୁଣ୍ଡୁଟି
କାଟିଣ ପକାଇଲେ ରଣରେ କରଟି ।
କ୍ରୋଧ ହୋଇ ସୁଶର୍ମାଙ୍କର ଜଙ୍ଘଦେଶେ
ବର୍ଷିଲେ କାଣ୍ଡ ବାଛି ଅର୍ଜୁନ ନରେଶେ ।
ଅର୍ଜୁନଙ୍କୁ ଯୁଦ୍ଧରେ ବେଢି ସଂଶପ୍ତକେ
ବର୍ଷିଲେ ମାରଣଟଣକୁ ନିଃଶଙ୍କେ ।
ଅରଜୁନ ଇନ୍ଦ୍ରଙ୍କ ଅସ୍ତ୍ରକୁ ପ୍ରୟୋଗ
କଲେ ରଣେ ତାହାଙ୍କୁ କରିବାକୁ ଭଙ୍ଗ ।
ଅରଜୁନଙ୍କ ଇନ୍ଦ୍ର ଅସ୍ତ୍ରରୁ ଅସ୍ତ୍ରଗଣ
ଉପୁଜିଣ ମଣ୍ଡିଲେ ସେ ଯୁଦ୍ଧଅଙ୍ଗଣ ।
ଶତଘ୍ନୀ କାର୍ମୁକ ପରଶୁ ଗଦା ଶୂଳ
ତୋମର ଧ୍ୱଜ ଛତ୍ର ପଟ୍ଟିଶ ମୁଷଳ ।
ଏମାନଙ୍କୁ ଶରେ କାଟନ୍ତେ ରଣେ ଯାଇ
ପୂରିଲା ତହିଁ ଯୁଦ୍ଧଭୂମି ନରସାଇଁ ।
କୁଣ୍ଡଳାଭୁଲେ ମୁଣ୍ଡ ଅଙ୍ଗଦ ଭୁଲେ ଭୁଜ
ଏ ବାହାରେ ଅନେକ ଛିଡ଼ ମହାରାଜ ।
ଗଜ ଅଶ୍ୱଙ୍କ ମରିବାରେ ସେ ଭୂମିଟି
ଅଗମ୍ୟ ହେଲା ଲୋକେ ପଡ଼ିଲେଟି ଝୁଣ୍ଟି ।
ମଡ଼ା ପଡ଼ାରେ ଆଉ ନ ଚଳିଲା ରଥ
ପର୍ବତକୁ ସମ ନହେଲା ସେ ଯୁଦ୍ଧପଥ ।
ସେ ମଡ଼ା ପର୍ବତରୁ ରକ୍ତ ନଦୀଟାଏ
ବହି ରଥକୁଳକୁ ଭସାଇଲା ବେଗେ ।
କ୍ରୁଦ୍ଧ ଲୋକମାନେ ତା ଦେଖି ହାହା ରଡ଼ି
କରି ସେ ଯୁଦ୍ଧଭୂମିଦାଣ୍ଡ ଗଲେ ଛାଡ଼ି ।
ନିର୍ଧୂମ ଅଗ୍ନି ପରି ପାଣ୍ଡବ ମଧ୍ୟମ
ପ୍ରକାଶିଲେ ତେଜ ସେ କରନ୍ତେ ସଂଗ୍ରାମ ।

ଯୁଧିଷ୍ଠିର ସଙ୍ଗେ ଭୂମ୍ଭର ଦୁର୍ଯ୍ୟୋଧନ
ଧୁଆଁଇ ରଥବର କଲେ ଆଯୋଧନ ।
ଯୁଧିଷ୍ଠିର ଯେ ଭୂମ୍ଭ ସୁତ ସଙ୍ଗେ ଯୁଝି
ବୋଇଲେ ଭାଇ ଆଜ ମୋ ବଳ ଯା ବୁଝି ।
ଦୁର୍ଯ୍ୟୋଧନ ସେହିକାଳରେ ଯୁଧିଷ୍ଠିର
ସାରଥିକ ବିନ୍ଧିଲେ ବାଛୁ ନବ ଶର ।
ଯୁଧିଷ୍ଠିର ତେରଟି ବାଣ କରେ ଧରି
ବିନ୍ଧିଲେ ଦୁର୍ଯ୍ୟୋଧନ ପ୍ରତି ଆଣ୍ଟକରି ।
ସେ ତେର କାଣ୍ଡେ ବାଣ୍ଟି ହୋଇ ଚାରିକାଣ୍ଡେ
ଘୋଡ଼ାଙ୍କୁ ବସାଇଲେ ନେଇ ଯମଦାଣ୍ଡେ ।
କାଣ୍ଡେ ସାରଥିର ହରିଲା ଯେ ପରାଣ
ଦୁଇକାଣ୍ଡେ କାଟିଲେ ଧଜ ଧନୁ ଜାଣ ।
କାଣ୍ଡେ ଯେ ଖଣ୍ଡାଟିକ ପକାଇଲା ଛେଦି
ପାଞ୍ଚକାଣ୍ଡ ଦୁର୍ଯ୍ୟୋଧନଙ୍କ ହୃଦ ଭେଦି ।
ହୃଅନ୍ତେ ରଥବରୁ ପଡ଼ନ୍ତେ ଓହ୍ଲାଇ
ସିଂହପ୍ରାୟେ ତଳେ ରହିଲେ ଛିଡ଼ା ହୋଇ ।
କର୍ଣ୍ଣ ଅଶ୍ୱତ୍‌ଥାମା କୃପ ଯେ ତାହା ଦେଖି
ଆସି ଯୁଧିଷ୍ଠିର ଯୁଝିଲେ ହୋଇ ସୁଖୀ ।
ପାଣ୍ଡବେ ତାହା ଦେଖି ଯୁଧିଷ୍ଠିର ପାଶେ
ରହିଲେ ଜଗି ଧନୁ ବହି କରଦେଶେ ।
ସହସ୍ର ସଂଖ୍ୟା ଭେରୀ ସେ କାଳେ ବାଜିଲା
ସବୁଙ୍କର କର୍ଣ୍ଣକୁ ସ୍ତବ୍‌ଧ କରାଇଲା ।
ପାଞ୍ଚାଳ କଉରବେ ହୋଇ ମିଶାମିଶି
ଦ୍ୱନ୍ଦ୍ୱଯୁଦ୍ଧ କଲେ ରାଜନ ହୋଇ ରୋଷୀ ।
ପାଇକେ ପାଇକ ରଥିକ ରଥୀ ଡ଼ାକ
ମରାମରି ହୋଇଲେ କରେ ଅସ୍ତ୍ର ଟେକ ।
ସେକାଳରେ କେହି ପଛକୁ ମୁହଁ ମୋଡ଼ା
ନ କରି ଯୁଦ୍ଧେ ହେଲେ ସ୍ତମ୍ଭ ଡ଼େରି ଛିଡ଼ା ।
ପୁଣି ନମର୍ଯ୍ୟାଦାରେ ପ୍ରବର୍ତ୍ତିଲା ଯୁଦ୍ଧ
ହେଲେ ଯେ ଦୁଇକୁଳ ବୀରମାନେ ବଧ ।
ସିପାଇକ ସିପାଇ ପାଇକକୁ ରଥୀ
ମାଇଲେ ସେ ଯୁଦ୍ଧରେ ନୋହି କିଛି ବ୍ୟର୍ଥୀ
ପଳାଉଥିବା ହାତୀ ଘୋଡ଼ାଙ୍କ ପଛକୁ
ବିନ୍ଧିଲେ ସିପାଇଏ ମାର୍ଗଣ ଗଣକୁ ।
ହସ୍ତୀଆରୋହମାନେ ଯେ ଗଜାରୋହ ଭୂଲେ
ଢୂଣରୁ ବାଣ ବାଛି କରି ଯୁଦ୍ଧ କଲେ ।
ଯୋଦ୍ଧାମାନେ ଯୋଦ୍ଧାମାନଙ୍କୁ ମିଶାମିଶି
ହୋଇ ଯୁଦ୍ଧ କରି ଭୂମିରେ ଗଲେ ମିଶି ।
କେ କାହାକୁ ତଳେ ପକାଇ କାଟି ମୁଣ୍ଡ
ଗୋଇଠା ମାରି ମାରି ମେଞ୍ଚା କଲେ ପିଣ୍ଡ ।
କେଉଁ ଲୋକେ ମଲା ବେଳକୁ ଗୋଡ଼ ଘୁଞ୍ଚି
ମଲେ ଦୁଇଆଖିକି ଦେଇ ସେ ତରାଟି ।
କେ କାହାର ଭୂଲେ କରେଣ ବାହୁ ଯୁଦ୍ଧ
ମାଇଲେ ମୁଖଦେଶେ ମୁଥ ବହି କ୍ରୋଧ ।
କେତେ ଲୋକ ଯେ ବାଳ ଧରାଧରି ହେଲେ
କାହିଁଯିବୁ ବୋଲି ରାଇରେ ଗରଜିଲେ ।
ଜଣେ ଟି ଜଣକକୁ କରୁଥାଏ ରଣ
ପଛୁଁ ଜଣେ ଯାଇ ନେଉଛି ତା ପରାଣ ।
ଶତ ଶତ ସହସ୍ର ସଂଖ୍ୟାରେ କବନ୍ଧ
ନାଚିଲେ ସେ ଯୁଦ୍ଧରେ ଜାଣ ନୃପ ଅନ୍ଧ ।
ବାଜିବାରେ ଶସ୍ତ୍ର କବଚେ ଯେ ରକତ
ହୋଇ ନନ୍ଦ କଲେ ଅମୂଲ୍ୟ ରଙ୍ଗବସ୍ତ୍ର ।
ଯେ ଯୁଦ୍ଧେ ପିତାପୁତ୍ରେ ନୋହି ଚିହ୍ନାଚିହ୍ନି
ହଣାହଣି ହୋଇ ଯେ ପଡ଼ିଲେ ଅବନୀ ।
ରଥ ହାତୀ ଘୋଡ଼ା ମନୁଷ୍ୟର ମାଉଁସ
ହେଲା ସେ ଯୁଦ୍ଧଭୂମି ପଙ୍କର ସଦୃଶ ।
ରକତଜଳେ ପରିପୂର୍ଣ୍ଣ ହୋଇ କରି
କ୍ଷତ୍ରିୟଙ୍କ ଯୁଦ୍ଧତୃଷ୍ଣାକୁ ନେଲା ହରି ।
କର୍ଣ୍ଣ ପାଞ୍ଚାଳଙ୍କୁ କଲେ ଯେ ରଣେ ହତ
ସେହିମତେ ଅରଜୁନ ତ୍ରିଗର୍ତ୍ତ ଗଣବତ ।
ଭୀମ କୁରୁସୈନ୍ୟ ପର୍ବତେ ଟେକି ଗଦା
ପ୍ରହାର କରି ଚୂର୍ଣ୍ଣ କରିଦେଲେ ପଦା ।
ଏରୂପେ କୁରୁ ପାଣ୍ଡୁକ୍ଷତ୍ର ଅପରାହ୍ନ—
କାଳରେ ସେ ଯୁଦ୍ଧ ହେଇଲା ଚୂର୍ଣ୍ଣ ଚିହ୍ନ ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟ ଯେ ରୂପେ
କହୁଛ ମୁଁ ଶୁଣି ହେଉଛି ସେହିରୂପେ ।
ପାଣ୍ଡୁସୁତମାନଙ୍କେ ବଳେ ମୋର ବଳ
କହୁଛି ମୁଁ ନଷ୍ଟେ ଯିବେଟି ଯମଆଳ ।
ପ୍ରହର ଊଣା ବେଳ ସରିକି ଯେରୂପେ
ଯୁଦ୍ଧ ହେଲା ତାହା କହିବା ହେଉ ଆପେ ।
ମୋ ପୁଅ ତ ଯୁଧିଷ୍ଠିରଙ୍କ ଶରେ ଡରି
ରହିଲା ରଥଧ୍ୱଜ ଧନୁଃଗୁଡ଼ କରି ।

ପୁଣି ଯୁଧିଷ୍ଠିର କଲ କି ନାହିଁ ରଣ
ଏହା ମୋର ଆଗେ ହେ ସଞ୍ଜୟ ବଖାଣ ।
ସଞ୍ଜୟ ବୋଇଲେ ହେ ଦୁର୍ଯ୍ୟୋଧନ ରାଜା
ଆନ ରଥ ଚଢ଼ି ଯୁଦ୍ଧରେ କରି ମଜ୍ଜା ।
ସାରଥିକି ବୋଇଲେ ଯୁଧିଷ୍ଠିର ଠାକୁ
ମୋ ରଥ ନଅ ମୁହିଁ ମାରିବି ତାହାଙ୍କୁ ।
ଦୁର୍ଯ୍ୟୋଧନ ବାକ୍ୟେ ସାରଥି ନୋହି ବ୍ୟଥୀ
ବାହିଲା ଥିଲେ ଯହିଁ ନୃପ ମହାରଥୀ ।
ସାରଥିକି ବୋଇଲେ ନୃପ ଯୁଧିଷ୍ଠିର
ବାହ ରଥ ମାରିବି ସୁଯୋଧନ ବୀର ।
ଅନ୍ୟୋନ୍ୟେ ଦୁଇ ରାଜା ହୋଇ ମିଶାମିଶି
ହେଲେ ଶରମାନ ଦେହରେ କଷାକଷି ।
ଭଲ୍ଲି ଭଲକାଣ୍ଡେ ଯେ ହାଣି ଦୁର୍ଯ୍ୟୋଧନ
ଯୁଧିଷ୍ଠିରଙ୍କର ଧନୁକୁ କଲେ ଛିନ୍ନ ।
ଯୁଧିଷ୍ଠିର ସେ ଧନୁଛିଡ଼ାକୁ ନ ସହି
ଆନ ଧନୁ ଧଇଲେ ଅତି କ୍ରୋଧ ହୋଇ ।
ଦୁର୍ଯ୍ୟୋଧନ ରାଜା ସେ ଧନୁ ଧଜ ଦୁଲେ
କାଟି ପକାଇଲେ ସମସ୍ତେ ଦେଖୁଥିଲେ ।
ଆନ ଧନୁ ଧରି ରାଜନ ଯୁଧିଷ୍ଠିର
ହାଣିଲେ ଦୁର୍ଯ୍ୟୋଧନ ପ୍ରତି ଯୋଖି ଶର ।
ଦୁର୍ଯ୍ୟୋଧନ ଯୁଧିଷ୍ଠିର ସେ ଦୁଇଦନ୍ତୀ
ଦେଖାଇ ଶର-ଦନ୍ତ ଯୁଦ୍ଧ କଲେ ଅତି ।
ସେ ସକାଶୁଁ ଦୁହିଁଙ୍କ ଦେହ କଂଶୁକକୁ
ଭାଣିଗଲା କସ ହେ କହିବି ତୁମ୍ଭଙ୍କୁ ।
ତଳ ଧନୁ ଶଙ୍ଖ ଶବଦେ ସେ ଦୁହିଙ୍କ
ଲଭିଲା ଯୋଦ୍ଧାଙ୍କର ହୃଦୟୁ ଆତଙ୍କ ।
ବଜ୍ରପରି ଯେ ଯୁଧିଷ୍ଠିର ତିନି କାଣ୍ଡ
ହାଣିଲେ କାଟିବାକୁ ଦୁର୍ଯ୍ୟୋଧନ ପିଣ୍ଡ ।
ଦୁର୍ଯ୍ୟୋଧନ ଯେ ପଞ୍ଚଶର ହାଣି ଦେଇ
ଶକତିଟା ପୁଣି ଫିଙ୍ଗିଲେ କ୍ରୋଧ ହୋଇ ।
ଯୁଧିଷ୍ଠିର ରାଜା ଶକତି ତିନିକାଣ୍ଡେ
କାଟିକରି ପକାଇ ଦେଲେ ରଣ ଦାଣ୍ଡେ ।
ଧନୁର୍ଗୁଣ ମଧ୍ୟରେ ପାଞ୍ଚକାଣ୍ଡ ସନ୍ଧି
ପୁଣି ଦୁର୍ଯ୍ୟୋଧନ ଦେହକୁ ଦେଲେ ହାଣି ।
ଶକତି ହତ ଦେଖି ତୁମ୍ଭର ନନ୍ଦନ
ହାଣିଲେ ନବକାଣ୍ଡ ହୋଇ କ୍ରୋଧମନ ।

ସେ କାଣ୍ଡରେ ଯୁଧିଷ୍ଠିର ଯେ ପୀଡ଼ା ପାଇ
ଧଇଲେ ମହାଶର ଗୋଟିଏ ରୋଷାଇ ।
ସେ କାଣ୍ଡ ଯୁଧିଷ୍ଠିର ମନମଧ୍ୟୁଁ ଫିଟି
ତୁମ୍ଭ ବେଟାଟିର ଉରକୁ ଗଲା ଫୁଟି ।
ଦୁର୍ଯ୍ୟୋଧନ ଟେକି ମହନ୍ତ ଗଦାବର
ଧାଇଁଲେ କରିବାକୁ ନୃପଙ୍କୁ ସଂହାର ।
ଦୁର୍ଯ୍ୟୋଧନ ହସ୍ତରେ ଗଦାବର ଦେଖି
ଫିଙ୍ଗିଲେ ଯୁଧିଷ୍ଠିର ଶକତି ନୋହି ଦୁଃଖୀ ।
ସେ ଶକତି ଦୁର୍ଯ୍ୟୋଧନଙ୍କର ମର୍ମରେ
ବାଜନ୍ତେ ପଡ଼ିଲେ ସେ ମୋହରେ ରଥରେ ।
କୃତକର୍ମା ଦୁର୍ଯ୍ୟୋଧନର ମୋହ ଦେଖି
କି ହେଲା ବୋଲି ସେ ଧାଇଁଲେ ବୁଜ ଆଖି ।
ଭୀମ କୃତବର୍ମାଙ୍କ ଦେଖି ଧାଇଁବାର
ଧାଇଁଲେ ତାଙ୍କଠାରୁ ଧରି ଗଦାବର ।
ଏ ରୂପେ ଅପରାହ୍ନ ବେଳେ ଦୁଇ ସେନା
ଯୁଦ୍ଧ କଲେ ଜାଣ ହେ ନୃପ ମହାମନା ।
ତୁମ୍ଭ ଲୋକମାନେ କର୍ଣ୍ଣକୁ ଆଗ କରି
ଯୁଦ୍ଧ କରିଲେ ବାଛି ଶସ୍ତ୍ରକୁ ପ୍ରହାରି ।
ଶଙ୍ଖମାନ ବଜାଇ ଦୁଇକୂଳ ରଥୀ
ହାତୀ ଘୋଡ଼ା ସେନା ଯୁଝିଲେ ନୋହି ବ୍ୟଥି
ପରଶୁ ଅସିପ୍ରାସ ପଟ୍ଟିଶ ମୁଷଳ
ମାରି ସିପାଇଏ ମାଇଲେ ପଡ଼ିବଳ ।
ମହାବୀରଙ୍କର ବଦନ-କମଳରେ
ପୂରିଗଲା ଧରଣୀ ନୃପ ସେକାଳରେ ।
ପରିଘ ଶକ୍ତି ଗଦା ଭୁଷଣ୍ଡି ତୋମର
ବାଜନ୍ତେ ଦନ୍ତାବଳ ଗଲେ ଯମପୁର ।
ଯମରାଜା ରାଜ୍ୟ ପରି ସେ ଯୁଦ୍ଧଭୂମି
ଦିଶିଲା ବୀରମାନେ ହୋଇନ୍ତେ ଯୁଦ୍ଧେ ଭ୍ରମି ।
ଭୀମ ପୁଅମାନେ ବହୁତ ବଳ ଭୁଲେ
ସେନ ଯୁଦ୍ଧ କଲେ ଯେ ସାତ୍ୟକିଙ୍କି ଭଲେ ।
କର୍ଣ୍ଣ ମଧ୍ୟ ସାତ୍ୟକି ଦେହେ ସୂର୍ଯ୍ୟ ପରି
ଶରମାନ ହାଣିଲେ ରାପ୍ତେ ବାଛି କରି ।
ସାତ୍ୟକି ସେହିରୂପେ ହାଣି ତୀକ୍ଷ୍ଣ ଶର
ଘୋଡ଼ାଇଲେ ଯେ ସୂତକୁମର ଶରୀର ।
ସାତ୍ୟକିଙ୍କ କାଣ୍ଡରେ କର୍ଣ୍ଣ ପୀଡ଼ା ଦେଖି
ଧାଇଁଲେ ତୁମ୍ଭ ଲୋକେ କର୍ଣ୍ଣେ ଯୁଦ୍ଧେ ରଖି ।

ସାତ୍ୟକି ମାର୍ଗଣଗଣକୁ ପ୍ରହାରଣ
ଭୂମ୍ବର ସେ ସୈନ୍ୟଙ୍କୁ କଲେ ଛିନ୍ନଭିନ୍ନ ।
ଅର୍ଜୁନ କୃଷ୍ଣ ଦୁହେଁ ଶିବ କରି ପୂଜା
ଭୂମ୍ବ ବଳ ନାଶରେ ବଳାଇଲେ ମଜ୍ଜା ।
କପିଧ୍ୱଜ ରଥ ସୂର୍ଯ୍ୟର ପ୍ରଭା ଦେଖି
ସୈନ୍ୟମାନେ ମଳିନ ହୋଇଗଲେ ଶୁଖି ।
ସେହିକାଳେ ଗାଣ୍ଡୀବ ଧନୁକୁ ଉଠାଇ
ଛାଇଲେ ଆକାଶକୁ ପାର୍ଥ ଶର ମାରି ।
ଭୂମ୍ବ ରଥଗଜ ଘନକୁ ଅରଜୁନ
ବାଣବ୍ରାତ ବାତେ କଲେ ସେ ଛିନ୍ନଭିନ୍ନ ।
ଏ ପ୍ରକାରେ ସିପାଇ ପାଇକଙ୍କ ମଧ୍ୟେ
ମାରି ପକାଇଲେ ସେ ଯୁଦ୍ଧେ ତହିଁ କ୍ରୋଧେ ।
ସେ ସମୟରେ ଦୁର୍ଯ୍ୟୋଧନ ଯେ ଅର୍ଜୁନଙ୍କୁ
ବିନ୍ଧିଲେ ବାଛି କାଣ୍ଡ ଉଠାଇ ଧନୁକୁ ।
ପାର୍ଥ ଦୁର୍ଯ୍ୟୋଧନ ସାରଥି ଧ୍ୱଜ ଅଶ୍ୱ
ସାତ କାଣ୍ଡ ବିନ୍ଧିଣ କରିଦେଲେ ନାଶ ।
ଏ ପ୍ରକାରେ ଯେ କ୍ଷୁରକାଣ୍ଡ ଛତ୍ର କାଟି
ନେବାପାଇଁ ପ୍ରାଣ ବିନ୍ଧିଲେ କାଣ୍ଡ ଗୋଟି ।
ତା ଦେଖି ଅଶ୍ୱତ୍ଥାମା ବିନ୍ଧି ମାରଗଣ
କାଟିଦେଲେ ଗଅଲୁ ବୋଲି ଦୁର୍ଯ୍ୟୋଧନ ।
ଅର୍ଜୁନ କାଣ୍ଡ ହତ ଅଶ୍ୱତ୍ଥାମା ସେନ
ହେବାର ଦେଖି ହୃଦ କରି କ୍ରୋଧସ୍ୱାମୀ ।
ଅଶ୍ୱତ୍ଥାମାଙ୍କର ଧନୁକୁ ସେ କାଟିଲେ
ପୁଣି ତାଙ୍କ ଚାରି ଘୋଡ଼ାଙ୍କୁ ସେ ମାଇଲେ ।
କୃପଙ୍କ ଧନୁ କାଟି କୃତବର୍ମାଙ୍କର
ଧନୁଧ୍ୱଜ କାଟିଲେ ପାର୍ଥ ମହାବୀର ।
ଦୁଃଶାସନ ଥିଲେ ତ କୃତବର୍ମା ପାଖେ
ତାଙ୍କ ଧନୁ ମଧ୍ୟ କାଟିଲେ ଶରମୁଖେ ।
କର୍ଣ୍ଣ ତାହା ଦେଖି ପାର୍ଥଙ୍କୁ ଛଅ କାଣ୍ଡ
ବିନ୍ଧିଲେ କମ୍ପାଇଣ କରରେ କୋଦଣ୍ଡ ।
ଶ୍ରୀକୃଷ୍ଣଙ୍କୁ ସତୁରି ମାରଗଣ ମାରି
ରହିଲେ ଯୁଦ୍ଧଦାଣ୍ଡେ ଗୁଣ୍ଡ ଡେରି କରି ।
ସାତ୍ୟକି ତ ଆଗ କର୍ଣ୍ଣଙ୍କୁ ଯୁଝୁଥିଲେ
ଧାଇଁ ଆସି ପୁଣି ସେ କର୍ଣ୍ଣଙ୍କୁ ବିନ୍ଧିଲେ ।
ଯୁଧାମନ୍ୟୁ ଶିଖଣ୍ଡୀ ଯୁଯୁତ୍ସୁ ଦ୍ରୌପଦେୟ
ଉତ୍ତମଓଜା ପ୍ରଭଦ୍ରକ କେକୟ ।
ଧର୍ମରାଜ ଚେଦି କାରୁଷ ଧୃଷ୍ଟଦ୍ୟୁମ୍ନ
ନକୁଳ ସହଦେବ ମତ୍ସ୍ୟ ଚେକିତାନ ।
ଏ ସମସ୍ତ ରଥ ଅଶ୍ୱ ପଦାତି ଧରି
ହେଲେ ଅଧେ ରଥୀ ଭୂଲରେ ମର୍ମମରି ।
ତହୁଁ ଭୂମ୍ବ କର୍ଣ୍ଣ ଦେଖାଇ ଦେହଠାଣ
କାଟି ପକାଇଲେ ସେ ସବୁଙ୍କର ବାଣ ।
ଏ ପ୍ରକାରେ ରଥ ଅଶ୍ୱ ଯେ ଗଜକୁଳ
କଲେ କର୍ଣ୍ଣ ଶରଜାଳରେ ସେ ନିର୍ମୂଳ ।
ପାଣ୍ଡବ ବଳଯାକ କର୍ଣ୍ଣ ବଳ ଦେଖି
ମଲୁଁ ତ ବୋଲି ଭାଜିଲେ ହୋଇ ଦୁଃଖୀ ।
ତାହା ଦେଖି ଅର୍ଜୁନ ହୋଇ ହସ ହସ
କର୍ଣ୍ଣଙ୍କୁ ମାରିବାକୁ ଟେକି ଦେଇ ନଣ ।
ଗାଣ୍ଡିବ ଧନୁ ଧରି ମାର୍ଗଣ ପ୍ରହାରି
ଦଶଦିଗଯାକ ଆଛନ୍ନ ଦେଲେ କରି ।
ଅରଜୁନ ଧନୁରୁ ପରିଘ ମୂଷଳ
ଶତାଘ୍ନି ପରି ବାହାରିଲେ ବାଣଜାଳ ।
ସେ ସକାଶୁଁ ଭୂମ୍ବର ସୈନ୍ୟ ପାଇ ପୀଡ଼ା
ଆଖି ବୁଜି ଦେଇ ଭାଜିଲେ ଛାଡ଼ି ବ୍ରୀଡ଼ା ।
ସୂର୍ଯ୍ୟ ସେ ସମୟେ ହୁଅନ୍ତେ ଅସ୍ତଗିରି
ରହିଲେ ଦୁଇ ସେନା ଯୁଦ୍ଧ ସାରି କରି ।
ପାଣ୍ଡୁସୁତେ ଜୟ ଲକ୍ଷ୍ମୀକି କଣ୍ଠେ ବାନ୍ଧି
ବାହୁଡ଼ିଲେ ବସାକୁ ଗେଲାଇ ଗେଲାଇ ।
କୁରୁମାନେ ଅଜୟ ଲକ୍ଷ୍ମୀ କରି ଆଗେ
ମୁଣ୍ଡ ପୋତି ଦେଇଣ ଗଲେ ବସାଭାଗେ ।
ଦୁଇଆଠ ନୃପେ ହଇନ ସଖା ଯେନି
ବସାମଧ୍ୟେ ଯାଇ ଶୋଇଲେ ହୋଇ ଭୂମି ।
ରୁଦ୍ରଙ୍କ କ୍ରୀଡ଼ାସ୍ଥାନ ପରି ଯୁଦ୍ଧଦେଶ
ହୁଅନ୍ତେ ବିଲୁଆ ଖାଇଲେ ଅସି ମାଂସ ।
ଯକ୍ଷ ରକ୍ଷ ପିଶାଚମାନେ ନାଚି ନାଚି
ଖାଇଲେ ହେଉଥିଲା ରକ୍ତ ସହୁଁ ପିଚ ।
ଏହିଠାରେ କର୍ଣ୍ଣ ପ୍ରଥମଦିନ ଯୁଦ୍ଧ
ଶେଷକଲେ ଯେ ବ୍ୟାସ ଋଷିକୁଳବୃଦ୍ଧ ।
ତାହାଙ୍କ ପାଦ କମଳକୁ ମନେ ଧ୍ୟାୟି
କୃଷ୍ଣସିଂହ ନରେଶ ଏ ଗୀତ କହଇ ।

—※—

## ଦ୍ୱିତୀୟ ଦିନ ଯୁଦ୍ଧ

ଏଥିଅନ୍ତେ ଧୃତରାଷ୍ଟ୍ର ସେ ନରମଣି
ସଞ୍ଜୟଙ୍କୁ ପୁଚ୍ଛି କହିଲେ ଏହି ବାଣୀ ।
ଅନ୍ଧକ ପର ବୀରମାନେ ଅନ୍ତ କରି
ନେଲେ ଜୟ ଲକ୍ଷ୍ମୀ ତ ସୁଭଦ୍ରା ବିହାରି ।
ଆମ୍ଭ ସେନାସଂକରେ ଥିଲେ ଯେତେ ରାଜା
ଦେଖିଲେ ତ ତାହାଙ୍କ ହରାଇଲେ ମଜା ।
ଏକା ହୋଇ ଅର୍ଜ୍ଜୁନ ସୁଭଦ୍ରାଙ୍କୁ ନେଇ
ବାହା ହେଲେ ଏହା ସମସ୍ତେ ଦେଖିଥାଇଁ ।
କୃଷ୍ଣଙ୍କୁ ସଙ୍ଗେ ଘେନି ଯୋଡ଼ ପାଣ୍ଡବଙ୍କୁ
ତୃପତ କଲେ ଅଗ୍ନି ଜିଣି ଇନ୍ଦ୍ରଙ୍କୁ ।
ଏକାକୀ ହୋଇ ମହାଲୋକଙ୍କୁ ସେ ଜିଣି
ଆଣିଲେ ଇନ୍ଦ୍ରପ୍ରସ୍ଥପୁର ଧନୁଶ୍ରେଣୀ ।
ଏକା ହୋଇ କିରାତରୂପେ ହର ତୁଲେ
ଶସ୍ତ୍ରଯୁଦ୍ଧ କରି ସେ ବାହୁଯୁଦ୍ଧ କଲେ ।
ଏକା ହୋଇ ନିବାତକବଚଙ୍କ ପ୍ରାଣ
ଘେନି ପଳାଇଲେ ସେ ବନ୍ଧି ତୀକ୍ଷ୍ଣ ବାଣ ।
ପୁଣି ତ ସେ ଏବେ ପାଇଲେ ସହାୟକୁ
କେତେକର ତାଙ୍କୁ ମା ଲୋକ ମାରିବାକୁ ।
ଅରଜୁନ ବିକ୍ରମ କଥାରେ ଜଗତ
ଲୋକଙ୍କର ସଞ୍ଜୟ ଅଟନ୍ତି ମଣ୍ଡିତ ।
ମୋ ପୁଅମାନେ ମୂର୍ଖପଣେ ଯୁଦ୍ଧ କଲେ
କହ ଏବେ ତହିଁ ଏ କିସ ବିଚାରିଲେ ।
ସଞ୍ଜୟ ବୋଇଲେ ହେ ଯୁଦ୍ଧରୁ ବାହୁଡ଼ି
ବସିଲେ ନୃପେ ବସାମଧ୍ୟେ ମୁଣ୍ଡମାଡ଼ି ।
କର୍ଣ୍ଣ ତାହା ଦେଖିଣ ଦୁର୍ଯ୍ୟୋଧନ ଆଗେ
ଦୁଇକଣ ମୋଡ଼ି ସେ ଠିଆ କଲେ ରାଗେ ।
ବୋଇଲେ ଅରଜୁନ ଅସ୍ତ୍ର ଆଜି କରି
ମୁଁ ଯୁଝୁଁ ଯୁଝୁଁ ତୁମ ସୈନ୍ୟ ଗଲେ ମରି
କାଲି ତାଙ୍କ ଅସ୍ତ୍ରକୁ ଅସ୍ତ୍ରେ କରି ନାଶ
କରାଇବି ତୁମ୍ଭର ପାଦତଳେ ଦାସ ।
ଦୁର୍ଯ୍ୟୋଧନ ବୋଇଲେ ବୋଲ କର୍ଣ୍ଣ ଯାହା
ଶୁଣି ମୋର ବଢ଼ିଲା ଯୁଦ୍ଧରେ ଉତ୍ସାହ ।
ତୁମ୍ଭେ ମନେ କଲେ ଜିଣିବ ପୁରନ୍ଦର
ଅରଜୁନ ସ୍ଥିର ଅଟଇ କେତେକର ।

ଏହା ଶୁଣି ସବୁ ରାଜାଏ ତୋଷୀ ହୋଇ
ବସାଟିଂ ମାନଙ୍କରେ ଗଲେ ସୁଖେ ଶୋଇ ।
ରାତ୍ରିଶେଷେ ସମସ୍ତେ ହୋଇଣ ତିଆର
ବୋଇଲେ ଚାଲ ମାତେଦେବା ଯୁଧିଷ୍ଠିର ।
କୁରୁମାନେ ଯେ ଯୁଧିଷ୍ଠିରଙ୍କ ଦୁର୍ଜୟ
ବ୍ୟୂହ ଦେଖି ଭୟରେ ଥରାଇ ହୃଦୟ ।
ଭାବିଲେ ଆଜି ଅର୍ଜ୍ଜୁନଙ୍କ ଶରଧାଡ଼ି
ପାଇ ଆମ୍ଭେ ବସିବା ଯମପୁର ମାଡ଼ି ।
ଦୁର୍ଯ୍ୟୋଧନ ବ୍ୟୂହକୁ ଦେଖି ବିଚାରିଲେ
ଏ ବ୍ୟୂହ ନାଟ ଯିବ କର୍ଣ୍ଣ ମନ କଲେ ।
ଆମ୍ଭମାନଙ୍କର ଏ ସୈନ୍ୟ ନୋହେ ଜିତ
ଯୁଝୁଥାଇଁ ହେବାରୁ କ୍ଷତ୍ରିୟର ସୁତ ।
ଧୃତରାଷ୍ଟ୍ର ବୋଇଲେ କର୍ଣ୍ଣ ବ୍ୟୂହ ଦେଖି
ଯୁଦ୍ଧ କଲେ ଠିକ ହୋଇ ସେ ଅତି ସୁଖୀ ।
କର୍ଣ୍ଣଠ ଏକା ହୋଇ ପାଣ୍ଡବଙ୍କୁ ଜିଣି—
ପାରନ୍ତି ତାଙ୍କୁ କଲେ କେହି ସେ ଆରଣି ।
ପାଣ୍ଡବଙ୍କୁ କର୍ଣ୍ଣ ଯା ଜିଣି ନ ପାରିଲେ
ନ ଶୁଣି ଏହା ମଲେ ଲେଖନ୍ତି ତା ଭଲେ ।
ଜୁଆ ଖେଳିବାର ଫଳ ଯେ ହେ ସଞ୍ଜୟ
ହେଲା କି କର୍ଣ୍ଣ ମଲା ଦିନରେ ଉଦୟ ।
ପ୍ରତିଯୁଦ୍ଧେ ଶୁଣେ ମରନ୍ତି ମୋର ପୋଏ
ପାଣ୍ଡୁସୁତେ ଫୁଲନ୍ତି ଆନନ୍ଦରେ କାୟେ ।
ଏ ସକାଶୁଁ ଦଇବ ଅଟେ ବଳୟାର
ସେ ଯା କରିଥିବ କରିବ କେ ଅନ୍ତର ।
ସଞ୍ଜୟ ବୋଇଲେ ହେ ଗଲା କଥା ଗଲା
ଏଣିକି କୁଳ ରଖ ଭାବିକରି ଭଲା ।
ଯେବେ କୁଳ ରଖିବା ଶତ୍ରୁ ହେଉନାହିଁ
ତେବେ ଶୁଣ ଯୁଦ୍ଧ ବସିଣ କହୁଥାଇଁ ।
କର୍ଣ୍ଣ ଦୁର୍ଯ୍ୟୋଧନକୁ କହିଲେ ବଚନ
ଆଜି କର୍ଣ୍ଣାର୍ଜ୍ଜୁନଁ ମରିବ ଜଣେ ଜାଣ ।
ଏ ଦୁଇକଥାରୁ ମୁଁ କଥାଟିଏ କରି
ମଲେ ସ୍ୱର୍ଗ ଭୁଞ୍ଜିବି ଥିଲେ ଜୟ ଶିରୀ ।
ଲାଘବ ଦୂରପାତ ସଉଷ୍ଠବ ଶର
ଶୌର୍ଯ୍ୟ ଜ୍ଞାନ ବିକ୍ରମ ଅଧିକ ମୋହର ।
ଅର୍ଜ୍ଜୁନକୁ ପ୍ରଭୁ ଜାଣ ହେ କୁରୁରାୟେ
ନ ପରୁର ମୋତେ ଯେ ବସି ହେ ଗୁଡ଼ାଏ ।

ବିଶ୍ୱକର୍ମା ବିଜୟଧନୁ ସଜାଡ଼ିଲେ
ଦାନବ ମାରିବାକୁ ଇନ୍ଦ୍ରେ ନେଇ ଦେଲେ ।
ଇନ୍ଦ୍ର ଦାନବଙ୍କୁ କରିଣ ସେ ସଂହାର
ବୋଇଲେ ରାମଙ୍କୁ ମୋ ଧନୁ ତୁମ୍ଭେ ଧର ।
ରାମ ସେ ଧନୁ ଧରି କ୍ଷତ୍ରିୟ ସଂହାରି
ମୋତେ ସମର୍ପିଲେ ଯେ ଅତି ସ୍ନେହ କରି
ଗାଣ୍ଡୀବ ଧନୁକୁ ସେ ସହସ୍ର ଗୁଣରେ
ଅଧିକ ଅଟଇ ହେ ସମସ୍ତ ପ୍ରକାରେ ।
ଆଜ ସେ ଧନୁ ଧରି ଅର୍ଜୁନଙ୍କୁ ମାରି
କରିବି ହସ୍ତିନା ନଗରେ ଦଣ୍ଡଧାରୀ ।
ଏକା କଥା ଗୋଟିଏ ଅର୍ଜୁନକୁ ଊଣା
ହେବାରୁ ଯଦ୍ଧ ଦାମ୍ଭେ କରେ ବୁଦ୍ଧି ବଣା
ଅଗ୍ନି ଦତ୍ତ ରଥରେ ଶ୍ରୀକୃଷ୍ଣ ସାରଥି
ହେବାରୁ ଅର୍ଜୁନ ବୋଲାଉଛନ୍ତି ରଥୀ ।
ମନ ପବନ ବେଗ ଶ୍ୱେତଗୋଟି ଘୋଡ଼ା
ହୋଇଥାଏ ପୁଣି ତାଙ୍କର ରଥେ ଯୋଡ଼ା ।
ବଳିଷ୍ଠାର କପି ଗୋଟାଏ ଧ୍ୱଜ ହୋଇ
ରଡ଼ି ଛାଡ଼ୁଥାଏ ଯେ ଯୁଦ୍ଧକାଳେ ରହି ।
କୃଷ୍ଣ ତ ତିନଲୋକ ସଂହାର ପାଳକ
କାରଣ ଆହେ ଜାଣ ହସ୍ତିନା ନାୟକ ।
ସେ ତହିଁ ଅଛନ୍ତି ନେ ଅର୍ଜୁନ ରଥକୁ
ଜଗିଛନ୍ତି କରି ଆପଣା ବିକ୍ରମକୁ ।
ଏହି ସକାଶରୁ ଯେ ଯୁଦ୍ଧକାଳେ ଘୋଟି
ପାରଇ ନାହିଁ ମୁହିଁ ଜଣଇଁ କପଟୀ ।
ଶଲ୍ୟ ଯେବେ ସାରଥି ହୋଇବେମୋହର
ଆଜ ଜୟ ହେଲଟି ବୋଲି ମନେ କର ।
ଶକଟମାନଙ୍କେ ବୁହାଇ କାଣ୍ଡରାଜ
ବାହାରନ୍ତୁ ଯୋଦ୍ଧାଏ ଯୁଦ୍ଧକୁ ଗରଜ ।
ରଥୀମାନେ ରଥମାନଙ୍କେ ଘୋଡ଼ା ଯୋଚ
ବାହାରନ୍ତୁ ମୋ ପଛେ ଧନୁକୁ ଆମଞ୍ଚ ।
ଆଜ ଯୁଦ୍ଧେ ହୁଏ ହେ ଅର୍ଜୁନଙ୍କ ଟାଣ
ଦେଖିବ ଭାଙ୍ଗି ଏକାଇବ ମୋର ବାଣ ।
କୃଷ୍ଣଙ୍କ ପ୍ରତି ଅଶ୍ୱହୃଦୟଙ୍କନରେ
ଅଧିକ ଶଲ୍ୟରାଜା ସବୁରି ମତରେ ।
ବଳରେ ଶଲ୍ୟ ପରି ଲୋକ କେହି ନାହିଁ
ଧନୁରେ ତିନଲୋକ ପାଟରେ ଜଣି ମୁହିଁ ।

କେବଳ କହୁଛି ଶଲ୍ୟଙ୍କୁ ନରବର
ଜୟ ଇଚ୍ଛା ଥିଲେ ସାରଥି ମୋର କର ।
ନୋହିଲେ ପାଣ୍ଡୁସୁତେ ଗୃହପଟୁଁ ଘୋଟି
ଖାଇବେ ଶସ୍ତ୍ରାଣ ସାଯ୍ୟକମୁନ ଟାଟି ।
ଶଲ୍ୟ ରଥେ ସାରଥି ନୋହିବେ ମୋଯେବେ
ଜିଣି ନ ପାରିବ କହୁଛି ଜାଣ ତେବେ ।
ଦୁର୍ଯ୍ୟୋଧନ ବୋଇଲେ ବୋଲ କର୍ଣ୍ଣଯାହା
ଏହିକ୍ଷଣି ଯେ କରିଦେବି ମୁହିଁ ତାହା ।
ଏହା କହି କର୍ଣ୍ଣ ଶଲ୍ୟ ପାଶେ ଗଲେ
ପ୍ରୀତିପୂର୍ବ କରିଣ ତାହାଙ୍କୁ କହିଲେ ।
କର୍ଣ୍ଣ ଯାହା କଲେ ହେ ମାମୁଁ ତ ଶୁଣିଲ
କର ହେବ ମୋହର ଯେଉଁ କଥା ଭଲ ।
ଅର୍ଜୁନଙ୍କ ଅଜୟ କର୍ଣ୍ଣଙ୍କର ଜୟ
ଭାବନା କର ଏବେ ତୁମ୍ଭର ହୃଦୟ ।
କର୍ଣ୍ଣଙ୍କର ରଥେ ହେ ଯନ୍ତା ହୋଇ ବସି
ଦିଅଅ ତାଙ୍କ ଶରେ ରିପୁବଳ ନାଶି ।
ତୁମ୍ଭ ପରି ସାରଥି ନାହିଁ ମହୀଲୋକ
ସ ରଥି ହୋଇ ନାଶ କର ହୃଦଶୋକ ।
କୃଷ୍ଣ ଅର୍ଜୁନଙ୍କୁ ଯେ ରଖିବା ପରାଏ
ରଖ ଏବେ କର୍ଣ୍ଣଙ୍କୁ ଶଲ୍ୟ ଖାରଗାଏ ।
ଭୀଷ୍ମ ଦ୍ରୋଣ ଦୁହେଁ ଉତ୍ତମ କର୍ମ କରି
ପାଇଲେ ତ ଦେଖିଲ ଯାଇ ସ୍ୱର୍ଗପୁରୀ ।
ଏ ବାହାରେ ମୋହର ମହାରଥିବୃନ୍ଦ
ମୋ ପାଇଁ ପ୍ରାଣ ଦେଲେ କରି ମହାଦ୍ୱନ୍ଦ୍ୱ ।
ପାଣ୍ଡୁସୁତମାନେ ଅଟନ୍ତି ବଳିଷ୍ଠାର
ବାକି ବଳଯାକକୁ ଦେବେ ଯମପୁର ।
ଏଥିକ ପ୍ରତିକାର କାଳ ଥାଉଁ ତୁମ୍ଭେ
କର ଆହେ ଶଲ୍ୟ ଯେ ବୋଲୁଅଛୁଁ ଆମ୍ଭେ
କର୍ଣ୍ଣ ତ ଅର୍ଜୁନର ନାଶ ଇଚ୍ଛା କରେ
ଅଛନ୍ତି ହୁଅ ତୁମ୍ଭେ ସାରଥି ତାଙ୍କର ।
ଅର୍ଜୁନ କେଉଁ କର୍ମ ଯୁଦ୍ଧେ କରୁଛନ୍ତି
ତାହା ତ ଜାଣୁଅଛ ଶଲ୍ୟ ମହାମତି ।
ପ୍ରତି ଯୁଦ୍ଧେ ମୋହର ଯୋଦ୍ଧାଟିମାନଙ୍କୁ
ନେଉଛି ଅରଜୁନ ଯମ ନଗରକୁ ।
କୃଷ୍ଣ ଅରଜୁନ ହୋଇଲେ ତୁମ୍ଭ ଜଗ
କର୍ଣ୍ଣଙ୍କ ସଙ୍ଗୀ ହୋଇ ଭାଙ୍ଗ ତାଙ୍କ ରାଗ ।

ଅରୁଣରେ ସହିତ ହୋଇଣ ମିହିର
କରି ତେଜଛନ୍ତି ତ ଅନ୍ଧାରକୁ ଦୂର ।
ସେହିରୂପରେ ମୋ କର୍ଣ୍ଣ ତୁମ୍ଭ ସାହା ପାଇ
ଦେବ ପାଣ୍ଡୁ ସଇନଯାକକୁ ବଢ଼ାଇ ।
ତୁମ୍ଭଙ୍କୁ କର୍ଣ୍ଣରଥେ ଦେଖି ପାଣ୍ଡୁ ସେନା
ଭାଜିଲେ ପାଣ୍ଡୁସୁତ କରୁଥିଲେ ମନା ।
ରଥୀମାନଙ୍କରେ ତ ଶ୍ରେଷ୍ଠ ଅଟେ କର୍ଣ୍ଣ
ସାରଥିମାନଙ୍କରେ ଅଟ ତୁମ୍ଭେ ଧନ୍ୟ ।
ଯେ ରୂପେ କୃଷ୍ଣ ରଖୁଛନ୍ତି ଅର୍ଜ୍ଜୁନଙ୍କୁ
ସେରୂପେ ଏବେ ତୁମ୍ଭେ ରଖ ହେ କର୍ଣ୍ଣଙ୍କୁ ।
ସାରଥି ହୋଇ ତୁମ୍ଭେ କର୍ଣ୍ଣରଥେ ଛିଡ଼ା
ହୁଅନ୍ତେ ପଳାଇବେ ପାଣ୍ଡୁ ସୈନ୍ୟ ଭିଡ଼ା ।
ଏରୂପେ ଦୁର୍ଯ୍ୟୋଧନ କଥା କର୍ଣ୍ଣେ ଶୁଣି
କ୍ରୋଧାନଳେ ଜଳିଲେ ଶଲ୍ୟ ନୃପମଣି ।
ଦୁଇ ନୟନକୁ ସେ କରିଣ ରକତ
ଭ୍ରୂକୁଟି କଲେ ତିନଶାଖାରେ ସେ ଯୁତ ।
ଦୁର୍ଯ୍ୟୋଧନ ମୁଖକୁ ଚାହିଁଣ କହିଲେ
ମୋ ବଳ ତୁମ୍ଭେ କିଛି ନ ଜାଣ ହେ ଭଲେ
କର୍ଣ୍ଣଙ୍କୁ ତ ଯୁଦ୍ଧେ ନ କରେ ମୁଁ ନଜର
କରୁଣରେ ରଅଛି ବାହିବ ତାହାର ।
ମୋହ ଭ୍ରମରେ ତୁମ୍ଭେ ଦିଅ ରଥୀଟାଏ
ଦେଖ ତାହାଙ୍କୁ ମୁଁ ମାରୁଛି କାଣ୍ଡ ଘାଏ ।
ନୋହିଲେ ଏକା ମୁଁ ଯୁଝିବି ପାଣ୍ଡବଙ୍କୁ
ଥାଅ ତୁମ୍ଭେ ଘରେ ହେ ଘେନ ସଇନଙ୍କୁ ।
ବଢ଼ାଇ କର ଏହା କହୁନାହିଁ ରାଜ୍ୟେ
ଯଥାର୍ଥରେ ଏପରି ବଳ ବହେ କାର୍ଯ୍ୟେ ।
ଦେଖ ମୋ ଗଦା ଖଣ୍ଡା ଧନୁ ନରବର
ବାଜିଲେ ନ ଯିବ କେ ଅବା ଯମପୁର ।
ପୃଥିବୀ ଉଠାଇ ମୁଁ ପାରେ ଦୁଇହାତେ
ସାରଥି ହେବ କାହିଁ କହ କର୍ଣ୍ଣରଥେ ।
ଏତେ ପାପ କଥାରେ ମୋତେ ନିୟୁକତ
ନ କର ହେ ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠସୁତ ।
ବଡ଼ଲୋକ ମର୍ଯ୍ୟାଦା ନ ରଖଇ ଯେହି
ଜାଣିମ ତାହାଠାରୁ ପାପୀ ଆଉ ନାହିଁ ।
ବ୍ରହ୍ମା ବ୍ରାହ୍ମଣଙ୍କୁ ମୁଖରୁ ଜାତ କଲେ
ସେରୂପରେ କ୍ଷତ୍ରିୟେ ବାହୁରୁ ଜନ୍ମିଲେ ।
ଉରୁରୁ ବୈଶ୍ୟ ଜାଣ ହେଲେ ଉତପତ୍ତି
ପାଦରୁ ଶୂଦ୍ର ଜନ୍ମ ବୋଲିଛି କହନ୍ତି ।
ଏହି ଚାରିବର୍ଣ୍ଣରୁ ନାନାଜାତି ବର୍ଣ୍ଣ
ପ୍ରବର୍ତ୍ତିଲ ପୁଣି ଜାଣ ହେ ଦୁର୍ଯ୍ୟୋଧନ ।
କ୍ଷତ୍ରିୟଠାରେ ଦାନ ରକ୍ଷଣ ଦୁଇ ଗୁଣ
ଲେହିଲ ସବୁଦିନେ ଆହେ ନରଗଣ ।
ଦ୍ୱିଜ ଅଧ୍ୟାପନ ଯାଜନ ପ୍ରତିଗ୍ରହ
ଉତ୍ତମ କର୍ମ ବୋଲି କଲେ ବହି ସ୍ନେହ ।
କୃଷି ପାଶୁପାଲ୍ୟ ଦାନ ଏ ତିନିକଥା
କରି ବୈଶ୍ୟଜନେ ତ ଗୁଡ଼ିଛନ୍ତି ବ୍ୟଥା ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଙ୍କୁ ଶୂଦ୍ର ଜାତି
କରୁଥିବ ସେବା ହେ କହିଛନ୍ତି ଯତି ।
କ୍ଷତ୍ରିୟଙ୍କୁ ସେରୂପେ ସେବେ ନିତ ସୂତେ
ସୂତଙ୍କୁ ନ ସେବିବେ କ୍ଷତ୍ରି କଦାଚିତେ ।
ମୂର୍ଦ୍ଧାଭିଷେକ ତ ନୃପତି ମୁଁ ଅଟଇ
କିରୂପେ କର୍ଣ୍ଣରଥ ବାହିବି ହେ ଯାଇ ।
ଏବେ ତୁମ୍ଭଠାରେ ମୁଁ ହୋଇଣ ମେଲାଣି
ଯାଉଛି ମୋ ଘରକୁ ହୋଇ ମୁହିଁ ତୁମ୍ଭ ।
କର୍ଣ୍ଣରଥେ ସାରଥି ମୋହୋ ପରି ରଥୀ ।
କଲେ ଲାଜରେ କେ ନୋହିବ ହୃଦେ ବ୍ୟଥୀ
ଏହା କହି ଶଲ୍ୟ ସେ ଆସନୁ ଉଠିଲେ
ଯିବା ବୋଲି ସୈନ୍ୟ ତିଆରି କରାଇଲେ ।
ତୁମ୍ଭ ପୁଅ ସେକାଳେ ପୋଟାଳି ସୈନ୍ୟଙ୍କୁ
ବୋଇଲେ ବସ ମାମୁଁ ନ ଯାଅ ଘରକୁ ।
ତୁମ୍ଭେ ଯାହା କହିଲ ଘେନିଲି ତା ମୁହିଁ
ମୁଁ ଯାହା କହିବି ହେ ଶୁଣ ସ୍ଥିର ହୋଇ ।
କର୍ଣ୍ଣ ପ୍ରତି ତୁମ୍ଭେ ଆହବେ ବଳସାର
ଅଟ ସାରଗ୍ରାହୀ ହେ ସତ୍ୟବ୍ରତୀ ନର ।
ମଦ୍ର ଦେଶେ ଯେତେକ ରାଜା ହୋଇଛନ୍ତି
କହିବା କଥା ଅଛି ବୃଥା ନ କରନ୍ତି ।
ସତ୍ୟ କହିବାରୁ ସେ ଆର୍ତ୍ତାୟନ ନାମ
କହିଅଛନ୍ତି ତ ହେ ପୁରୁଷ ଉତ୍ତମ ।
ଶତ୍ରୁଙ୍କର ଶଲ୍ୟ ହେବାରୁ ଶଲ୍ୟ ବୋଲି
ତୁମ୍ଭଙ୍କୁ ବୋଲୁଛନ୍ତି କ୍ଷତ୍ରିୟେ ନ ଭୋଳି ।
ପୂର୍ବରୁ ମୋତେ କହିଅଛ ନରରାଣ
ଏବେ ସତ୍ୟ କର ତା କରି ଆଚରଣ ।

ତୁମ୍ଭଙ୍କୁ ମୁଁ ବଡ଼ ବୁଝଇ ଆହେ ଗାଙ୍ଗେୟ
ହୁଅ କର୍ଣ୍ଣ-ସାରଥି ସଦୟ ହୃଦୟେ ।
କର୍ଣ୍ଣ ଯେ ଅର୍ଜୁନଙ୍କୁ ବଳୀୟାର ପର
ସାରଥିରେ ବଡ଼ ତୁମ୍ଭଙ୍କୁ ବୋଲି ପାରି ।
କୃଷ୍ଣଙ୍କ ପ୍ରତିକ ହେ ମଦ୍ରଦେଶ ରାଣ
ମୋ କହିବାରୁ ଏହା ଭଲ କରି ଜାଣ ।
ଶଲ୍ୟ ବୋଇଲେ ହେ ନୃପଙ୍କ ମଧ୍ୟେ ବସି
ବୋଧିଲ ଯା ରାଜନ ମୋତେ ରୁଷ୍ଟୁଭାଷି ।
ଏ ବାହାରେ କୃଷ୍ଣ ପ୍ରତିକ ତୁମ୍ଭେ ବର
ବୋଇଲେ ଏଣୁ ହେବ ସାରଥି କର୍ଣ୍ଣର ।
କେବଳ କହୁଅଛୁ କଥାଟିଏ ମୁହିଁ
ଧେନଥାଅ ମନେ ହସ୍ତିନା ନରସାଇଁ ।
କର୍ଣ୍ଣରଥେ ସାରଥି ହୋଇ ମୁଁ କର୍ଣ୍ଣଙ୍କୁ
ଗାଳି ଦେଇଥିବି ଟି ଦେଖାଇ ବଳକୁ ।
ଏହା ଶୁଣି କର୍ଣ୍ଣଙ୍କ ଭୁଲେ ତୁମ୍ଭ ସୁତ
ହେଉ ବୋଲି କରି ଯେ କଲେ ସନମତ ।
ଏଥୁଅନ୍ତେ ଦୁର୍ଯ୍ୟୋଧନ ହେ ନରସାଇଁ
ଶଲ୍ୟଙ୍କରଠାରେ ଯେ ମହାତୋଷ ବହି ।
ବୋଇଲେ ହାହା ହେଲା ଦେବାସୁର ଯୁଦ୍ଧେ
ଶୁଣ ଏବେ କହିବି ତାହା ତୁମ୍ଭ ବୋଧେ ।
ଧୃତରାଷ୍ଟ୍ର ଆଗରେ ମାର୍କଣ୍ଡେୟ ଋଷି
କହିଥିଲେ ଶୁଣିଅଛି ମୁଁ ପାଶେ ବସି ।
ଏହି ସକାଶରୁ ମୁଁ କହୁଛି ତୁମ୍ଭଙ୍କୁ
ନ ଗଡ଼ାଇବ ମୋର କଥାଟି ବୃଥାକୁ ।
ତାରକାସୁର ନାଶକଲେ ପରସ୍ପର
ଜୟେ ଇଚ୍ଛା କରି ଯୁଝିଲେ ଦେବାସୁର ।
ଦେବତାଏ ଦାନବମାନଙ୍କୁ ଜିଣିଲେ
ଏହା ମଧ୍ୟ ମୁହିଁ ଯେ ଶୁଣିଅଛି ଭଲେ ।
ତାରକା ଅସୁରର ତିନୋଟି ତନୟ
ହେଲେ କହୁଅଛି ମୁଁ ତାଙ୍କ ନାମଚୟ ।
ତାରାକ୍ଷ କମଳାକ୍ଷ ବିଦ୍ୟୁନ୍ମାଳୀ ଭଳି
ନାମ ଦେଲେ ତାରକାସୁର ମହାବଳୀ ।
ସେ ତିନହେଁ ଯେବେ ପାଇଲେ ଯୁବାକାଳ
ତପରେ କରିଦେଲେ ଦେହକୁ ଦୁର୍ବଳ ।
ବ୍ରହ୍ମା ତାଙ୍କ ତପସ୍ୟା ଦେଖି ତୋଷ ହୋଇ
ବୋଇଲେ ବରମାଗ ଯା ଇଚ୍ଛା ଦେବଇଁ ।
ସେ ତିନହେଁ ବୋଇଲେ ସବୁ ପ୍ରାଣୀଙ୍କରେ
ମୃତ୍ୟୁ ନ ପାଇବୁ ଜିଣିବୁ ନିଃଶଙ୍କରେ ।
ବ୍ରହ୍ମା ବୋଇଲେ ଆହେ ହେବାଙ୍କୁ ଧମର
ବର ଛାଡ଼ିଣ ଆନବର ଏବେ ବର ।
ଏହା ଶୁଣି ସେ ତିନ ଭାଇଏ ବିଚାରି
ପୁଣି ବର ମାଗିଲେ ବ୍ରହ୍ମା ପାଦ ଧରି ।
ତିନ ପୁର ଆମ୍ଭ ତିନଙ୍କୁ ଦେବା ହେବ
ତହିଁ ଆମ୍ଭେ ବସି ବୁଲିବୁଁ ବହୁ ଭାବ ।
ସେ ତିନପୁର ଏକା ହେବ ଯେଉଁକାଳେ
ଶରେ ଫୁଟାଇବ ଯେ ତାହାକୁ ବଳରେ ।
ସେହି ଏକା ଆମ୍ଭର ହେବ ବ୍ରହ୍ମା ମୃତ୍ୟୁ
ଏହି ବର ଦିଅ ହେ ସର୍ବଲୋକ ଭର୍ତ୍ତୁ ।
ବ୍ରହ୍ମା ସେ କଥାଟିକି ସନମତ କରି
ମରାଳ ବାହନରେ ଗଲେ ତିନପୁରୀ ।
ତଦଅନ୍ତେ ସେ ତିନଭାଇ ଏ ମୟଙ୍କୁ
ଆଜ୍ଞା କରେ ପୁର ନିର୍ବାହ କରିବାକୁ ।
ମୟ ତାଙ୍କ ବୋଲରେ ତିନଗୋଟି ପୁର
ସୁନା ରୂପା ଲୁହାରେ କଲେ ଶଲ୍ୟଧାର ।
ସ୍ୱର୍ଗପୁରେ ସୁବର୍ଣ୍ଣ ପୁରଟି ରହିଲା
ଆପୃସ ତଳେ ରୂପା ବ୍ୟୋମସ୍ଥାମୀ ହେଲା ।
ପୁର ଗୋଟିକରେ ଯୋଜନ ଶତ ଯାଏ
ଦୀର୍ଘ ପ୍ରସ୍ଥ ସମାନ ଜାଣ ନର ରାୟେ ।
ସେ ପୁରଟି ମାନଙ୍କେ ପ୍ରସାଦ ଅଟ୍ଟାଳି
ପ୍ରାକାରର ପାଶରେ ବେଢ଼ିଅଛି ଜଳି ।
ତାରକାକ୍ଷ ସୁବର୍ଣ୍ଣ ରୂପା କମଳାକ୍ଷ
ବିଦ୍ୟୁନ୍ମାଳୀ ପାଇଲା ଲୁହାପୁର ମୋକ୍ଷ ।
ତିନପୁରେ ତିନ ଭାଇଏ ହୋଇ ରାଜା
ଆନନ୍ଦ ସଲିଳରେ ବୁଡ଼ାଇଲେ ମଜା ।
ତିନହେଁ ତିନଲୋକ ଆକ୍ରମି ରହିଲେ
ଆମ୍ଭେ ଏକା ବ୍ରହ୍ମା ବୋଲି ସେ ମନେକଲେ
ତା ଶୁଣି ଅଦ୍ଭୁତ ଅର୍ବୁଦ ସଂଖ୍ୟା ହୋଇ
ଆସିଲେ ଲେଖାକରି ଦାନ୍ଦପୁଅ ଭାଇ ।
ଯେ ଯହିଁପାଇଁ ଇଚ୍ଛା କରୁଥାଏ ରାୟେ
ମୟ ତାହାକୁ ସେହିକ୍ଷଣି କରିଦିଏ ।
ତାରକାକ୍ଷ ପୁଅ ହୁଅନ୍ତେ ନାମହରି
ବୋଲି କରି ହେ ଦେଲା ତା ମାତା ବିଚାରି

ସେ ହର ତପ କରି ଶୀର୍ଣ୍ଣ କଲା କାୟେ
ବର ଦେଲେ ଆସି ତାହାକୁ ଦେବରାୟେ ।
ବର ଦେବା କାଳେ ସେ ଦାନବ ବ୍ରହ୍ମାଙ୍କୁ
ମାଗିଲା ବାମ୍ପୀଟାଏ ଦିଅ ମୁଁ ଶବକୁ ।
ପକାଇଲେ ଜୀଇଁବ ଉଠି ବଳ ପାଇ
ନିର୍ମୂଳ କରିଦେବ ଶତ୍ରୁକୁଳ ଯାଇ ।
ବ୍ରହ୍ମା ହେଉ ବୋଲିଣ ବୋଲନ୍ତେ ତାହାକୁ
ସନ୍ତୋଷ ହୋଇ ଗଲା ହରି ଭବନକୁ ।
ଆପଣା ଘରେ ବାମ୍ପୀ ଗୋଟିଏ ଖୋଳାଇ
ରହିଲା ହରି ମନେ ମହାସୁଖ ବହି ।
ସେହିଦିନୁ ଦାନବେ ମରନ୍ତି ଯେତେକ
ସେ ବାମ୍ପୀରେ ପଡ଼ିଲେ ଜୀଅନ୍ତି ତେତେକ ।
ମହୁ ଦେବା ତ୍ରିପୁରରେ ଥିବା ଦୈତ୍ୟ
ସେ ବାମ୍ପୀ ବଳେ ମୃତ୍ୟୁ ନ ମାନିଲା ଚିତ୍ତେ
ତ୍ରିପୁର ଯାକକୁ ଗଲେ ତାହାଙ୍କର
ହେଲେ ଭୟଙ୍କର ସେ ଦେବମାନଙ୍କର ।
ଦେବାରଣ୍ୟରେ ଋଷିମାନଙ୍କ ଆଶ୍ରମ
ନାଶି କରି ନାଶିଲେ ବହୁପୁର ଗ୍ରାମ ।
ଇନ୍ଦ୍ର ପ୍ରାଣୀଙ୍କର ଯେ ପୀଡ଼ା ନେତେ ଦେଖି
ବାହାରିଲେ ତାଙ୍କୁ ସେ ମାରି ହୋଇ ଦୁଃଖୀ
ତ୍ରିପୁରରେ ଥିବା ଅସୁରଙ୍କ ଭୁଲେ
ଯୁଦ୍ଧ କରି ବଜ୍ର ସେ ପୁରକୁ ଫିଙ୍ଗିଲେ ।
ତେବେ ହେଲେ ପୁରବଳର କିଛି କ୍ଷୟ
ନ ଦେଖିଣ ବାସବ ଅଦିତି ତନୟ ।
ଦେବଙ୍କୁ ଘେନିକରି ବ୍ରହ୍ମାଙ୍କୁ କହିଲେ
ତ୍ରିପୁରେ ଥାଇ ଦୈତ୍ୟେ ତ୍ରିପୁର ନାଶିଲେ
ଏଥିକି ଯେ ଉଚିତ ସେ କଥା ବିଚାର
ବେଦପତି ଆଉ ଆମ୍ଭଙ୍କୁ ନ ପଚାର ।
ବ୍ରହ୍ମା ବୋଇଲେ ଆହେ ଜାଣିଅଛି ମୁହିଁ
ତୁମ୍ଭେ ଦୁଃଖ ପାଇଲେ ସେ କି ମୋ ନୁହଇ
ସବୁ ପ୍ରାଣୀମାନଙ୍କ ଦୁଃଖର କାରଣ
ହୋଇଛି ତାଙ୍କୁ ବର ଦେଲେ ଇନ୍ଦ୍ର ଜାଣ ।
ଶିବଙ୍କ ବିନା ତ୍ରିପୁର ଭେଦିବାକୁ
ଏକା କାଣ୍ଡକରେ ନ ଦେଖୁଛି କାହାକୁ ।
ଏବେ ତୁମ୍ଭେ ଯାଇ ଶିବଙ୍କୁ ଏହା କହ
ତାଙ୍କ ଶରେ କରିଅ ସେ ପୁରକୁ ଦାହ ।

ବ୍ରହ୍ମାଙ୍କ ବଚନେ ସକଳ ଦେବତାଏ
ଗଲେ ଶିବସ୍ଥାନକୁ ଆନନ୍ଦ ହୃଦୟେ ।
ଋଷିଙ୍କ ସଙ୍ଗେ ଧରି ଶିବଙ୍କୁ ଉଦ୍ଦେଶି
ତପସ୍ୟା କଲେ ଦେବେ ହୋଇଣ ଲାଳସୀ
ପୁଣି କର ଯୋଡ଼ି ସକଳ ଦେବଗଣ
ପ୍ରକାଶିଲେ ଶିବଙ୍କୁ ସ୍ତୁତିରେ ବଚନ ।
ସେକାଳେ ଉମାପତି ରୂପେ ଦେବପନ୍ତ
ଦେଖିଲେ ଧରିଛନ୍ତି ସେ ନାନା ମୂରତି ।
ଶିବଙ୍କ ପାଦପଦ୍ମେ ନମ୍ର ହୋଇ ଶୋଇ
ମସ୍ତକ ଶିଖେ ଦେଲେ ଯୋଡ଼ି କର ନେଇ
ଶିବ ଏହା ଦେଖି ହୋଇଲେ ହସ ହସ
ବୋଇଲେ କାହିଁପାଇଁ ଶୋଇଛ ତା ଭାଷ ।
ଶିବଙ୍କର ଆଜ୍ଞାରେ ଉଠି ସବୁ ସୁର
ନମୋନମଃ ବୋଲିଣ କହିଲେ ଉତ୍ତର ।
ପୁଣି ସକଳ ଦେବେ ରହି ଏକ ଭାବେ
ଶିବଙ୍କୁ ମୁଖେ ସ୍ତୁତି କଲେ ନଗରବେ ।
ହେ ଦେବଦେବ ପ୍ରଜାପତି ଯାଗଭଙ୍ଗା
ଦୈତ୍ୟଙ୍କ ନାଶେ କରିଥାଅ ଚକ୍ଷୁ ରଙ୍ଗା ।
ସ୍ତୁତିସ୍ତୁତ୍ୟ ସ୍ତୁତ୍ୟମାନ ଯେ ଅଟ ତୁମ୍ଭେ
ତୁମ୍ଭଙ୍କୁ କିସ ସ୍ତୁତି କରିବୁଟି ଆମ୍ଭେ ।
ଉଗ୍ର ନୀଳଗ୍ରୀବ ଶୂଳୀଟି ଲୋହିତାକ୍ଷ
ପ୍ରବର ଉଗ୍ରଯୋଧୀ ଅରହ ଗୃଗାକ୍ଷ ।
ଫିଙ୍ଗି ବ୍ରହ୍ମଗୃଷ ଅମୋଘ ଦୁର୍ବାରଣ
ଶୁକ୍ଳ ବ୍ରହ୍ମ ନିୟନ୍ତା ବିଶୁଦ୍ଧ ଈଶାନ ।
ଗୋପତି ଯଜ୍ଞପତି ସେନ୍ୟ ଶରବାସା
ତପୋନିତ୍ୟ ସଥନ ବ୍ରଷ କୃତ୍ତି ବାସା ।
କୁମାରପିତା ତ୍ର୍ୟମ୍ବକ ବ୍ରହ୍ମଦ୍ୱିଜଘାଣ୍ଡି
ପ୍ରପନ୍ନାର୍ତ୍ତିନାଶନ ଧ୍ୟୁନରପତି ।
ପ୍ରବରାୟୁଧପାଣି ବନସ୍ପତି ପତି
ପ୍ରସନ୍ନ ହୁଅ ହେ ଆମ୍ଭଙ୍କୁ ବହି ପ୍ରୀତି ।
ଶିବ ବୋଇଲେ ମୁହିଁ ହୋଇଲି ପ୍ରସନ୍ନ
କି ମାଗୁଛ ମାଗି ତା ନୁହ ହେ ବିମନ ।
ବ୍ରହ୍ମା ତ ଦେବଙ୍କର ସଙ୍ଗେ ଆସିଥିଲେ
ସେକାଳେ ଶିବଙ୍କୁ ସେ ଜଣାମଣା କଲେ ।
ତୁମ୍ଭ ପ୍ରସାଦୁଁ ମୁଁ ବ୍ରହ୍ମାଣ୍ଡେ ବ୍ରହ୍ମା ହୋଇ
ଭଲ ମନ୍ଦ ସବୁକୁ ଅଛି ମୁଁ ଭିଆଇ ।

ନ ଜାଣି ଦାନବଙ୍କୁ ଦେଲ ମୂର୍ଖି ବର
କଲେ ଏବେ ସେ ସବୁ ପ୍ରାଣୀଙ୍କୁ ସଂହାର ।
ଏ ସକାଶୁଁ ତାହାଙ୍କୁ ତୁମ୍ଭ ବିନା ଆନ
ମାର ନ ପାରଇ ହେ ଅନ୍ଧକ ମର୍ଦ୍ଦନ ।
ଏବେ ହେ ଆମ୍ଭର କହିବା ବାଣୀ ଘେନ
କର ଦାନବଗଣେ ଯମରାଜସ୍ଥାନ ।
ତୁମ୍ଭ ସକାଶରୁ ଜଗତଜନ ସୁଖ
ପାଇ କର ପ ସୋରନ୍ତୁ ଏ ମହାଦୁଃଖ ।
ଶିବ ବୋଇଲେ ମୁର୍ଖି ଏକା ହୋଇ ତାକୁ
ମାରିବ ବୋଲି ପ ଜନାହିଁ ମୋ ମନକୁ ।
ଏବେ ମୋଠାରୁ ତୁମ୍ଭେ ଅଧେ ତେଜ ନେଇ
ଦିଅ ହେ ତ୍ରିପୁରକୁ ସମରେ ବଢ଼ାଇ ।
ଦେବେ ବୋଇଲେ ସେ ତ ଆମ୍ଭଙ୍କୁ ଦ୍ୱିଗୁଣ
ଅଟନ୍ତି ବଳୀୟାର ଆହେ ରୁଦ୍ର ଜାଣ ।
ପୁଣି ତ ତୁମ୍ଭ ତେଜ ଧରିବାକୁ ମନ୍ତ
ହେଉନାହିଁ ଟି ନ ଥିବ ତୁ ହେ ଶଙ୍କର ।
ଏଥିକ କହୁଅଛୁଁ ଆମ୍ଭ ତେଜ ନେଇ
ତ୍ରିପୁର ତୁଳେ ତୁମ୍ଭେ କର ହେ ଲଢାଇ ।
ରୁଦ୍ର ବୋଇଲେ ହେ ବୋଲୁଛଯେବେଦେବେ
ଦିଅ ମୋତେ ତେଜ ମାରିବ ତାଙ୍କୁ ତେବେ ।
ଏହା ଯେଉଁକ୍ଷଣି ବୋଇଲେ ଉମାପତ
ଦେବେ ଦେଲେ ତେଜ ହୋଇଣ ତୋଷମନ୍ତ
ଦେବତାମାନଙ୍କର ତେଜ ଅଙ୍ଗେ ବହି
ମହାଦେବ ଯେ ବୋଲାଇଲେ ଉମାସାଇଁ ।
ଦେବଙ୍କୁ ବୋଇଲେ ମୋ ପାଇଁ ଧନୁର୍ବାଣ
ରଥକୁ ତୁମ୍ଭେ ଏବେ କର ହେ ଭିଆଣ ।
ଦେବେ ତାହା ଶୁଣି ବୋଇଲେ ତ୍ରିଜଗତ
ମୂର୍ତ୍ତି ଆଣି କରିବୁ ରଥ ଉମାକାନ୍ତ ।
ଏହା କହିଣ ବିଶ୍ୱକର୍ମାଙ୍କୁ ବୋଇଲେ
ତାଙ୍କ ହାତେ ରଥ ନିର୍ବାହ କରାଇଲେ ।
ଧରାଧର ନଗର ଦ୍ୱୀପ ତୁଳେ ମହୀ
ରଥ କଲେ ଜାଣ ହେ ମଦ୍ର ନରସାଇଁ ।
ମନ୍ଦର ଶୈଳକୁ କରି ସେ ରଥ ଅଖ
ଚନ୍ଦ୍ର ସୂର୍ଯ୍ୟ ଦୁହେଁ ଚକକୁ ହେଲେ ଯୋଖ
ସାତ ଗ୍ରହଯାକ ଯେ ଅନୁକର୍ଷ କଲେ
ତାରକାଏ ରଥ ବରୁଥ ବୋଲାଇଲେ ।
ଧର୍ମ ଅର୍ଥ କାମ ଯେ ହୋଇଲେ ତ୍ରିବେଣୁ
ଔଷଧି ଘଣ୍ଟ ହୋଇ ବାଜ ଝୁଣୁ ଝୁଣୁ ।
ଇନ୍ଦ୍ର ଯମ କୁବେର ବରୁଣଙ୍କ ଘୋଡ଼ା
ତାହା ଦେଖି ବାତ ହୋଇଲା ବେଗଛଡ଼ା ।
ସିନୀବାଳୀ ଅନୁମତି ଯେ କୁହୂ ରାକା
ଯୋଗ୍ୟ ହୋଇଲେ ଜାଣ ସେ ରଥର ଏକା ।
ଦଶ ନାଗପତି ସେ ରଥ ଈଶା ହୋଇ
ଦେଲେ ଶଙ୍କର ପୃଷ୍ଠଭାଗକୁ ଦିଶାଇ ।
ସ୍ୱର୍ଗ ସେ ଅଶ୍ୱଙ୍କର ହୋଇଲା ଯୁଆଳି
ଇଚ୍ଛାସୁଖେ ରାଜନ ହୋଇକରି ବଳୀ ।
ସମ୍ବତ୍ସର ଧନୁ ବିଷ୍ଣୁ ହୋଇଲେ ବାଣ
ନେବାପାଇଁ ତ୍ରିପୁରେ ଥିବା ଦୈତ୍ୟ ପ୍ରାଣ ।
ସେ କାଣ୍ଡମୁନେ ଅଗ୍ନି ଦେବତା ରହିଲେ
ଦହିବ ତ୍ରିପୁରକୁ ବୋଲି ମନେ କଲେ ।
କାଳବହ୍ନି ଦେବତା ହେଲେ ଧନୁର୍ଗୁଣ
ନ ଗୁଡ଼ିବ ବୋଲି ବାଜଲେ ଦୈତ୍ୟବାଣ ।
ଅଥର୍ବ ଅଙ୍ଗିରସ ଚକ୍ରରକ୍ଷା ହୋଇ
ରହିଲେ ସେ ରଥର ଜାଣ ନରସାଇଁ ।
ପୃଷ୍ଠରକ୍ଷା ହୋଇଣ ଇତିହାସ ଯଜୁ—
ବେଦ ଦୁହେଁ ରହିଲେ ବନ୍ଧି ଦେହେ ସାଞ୍ଜୁ
ଋଗ୍ ବେଦ ସାମ ପୁରାଣ ଆଗଥାଟ
ହୋଇ ବାହାରେଲେ ଯୁଦ୍ଧକୁ କରି ଆଣ୍ଟ ।
ବଷଟ୍‌କାର ଦ୍ରବ୍ୟାଦ୍ରବ୍ୟା ଯେ ଦ୍ରବ୍ୟ ସ୍ତୋତ୍ର
ପାରିଷଦ ହୋଇଲେ କରେ ବହି ଅସ୍ତ୍ର ।
ପ୍ରଣବ ରଥମୁଖେ ରହିଲେ ଟି ଯାଇ
କମ୍ପାଇବାକୁ ଗର୍ଜି ଦାନବଙ୍କ ଦେହି ।
ବ୍ରହ୍ମଦଣ୍ଡ କାଳଦଣ୍ଡ ଯେ ରୁଦ୍ରଦଣ୍ଡ
ରହିଲେ ରଥେ ଖୋଳିବାକୁ ଶତ୍ରୁପିଣ୍ଡ ।
ଆୟୁଧରେ ଯୁତ ସେ ରଥବର ଦେଖି
ହସିଲେ ଶିବ ଧନୁ ଧରି ହୋଇ ସୁଖୀ ।
ଦେବ ଯକ୍ଷ କିନ୍ନର ଗନ୍ଧର୍ବ ଅପ୍‌ସରା
ବଖାଣିଲେ ସ୍ତୁତି ମୁଖରେ ହୋଇ ତୋରା ।
ମହାଦେବ ହସି ବୋଇଲେ ଦେବତାଙ୍କୁ
ସାରଥି କରି ଜଣେ ଆଣ ଏ ରଥକୁ ।
ଦେବେ ବୋଇଲେ ତୁମ୍ଭେ ବୋଲିବ ଯାହାକୁ
ସାରଥି କରି ଆମ୍ଭେ ଦେବୁ ଟି ତାହାକୁ ।

ଶିବ ବୋଇଲେ ଯେ ହୋଇବ ମୋତେ ବଡ଼
ସାରଥି କର ତାଙ୍କୁ ସ୍ଥଳୁ ଯୋନ୍ତାଗୋଡ଼ ।
ଦେବେ ଏହା ଶୁଣି ବ୍ରହ୍ମାଙ୍କ ପାଶେ ଗଲେ
ସାରଥି କଏ ହେବ ବୋଲି ପଚାରିଲେ ।
ତୁମ୍ଭେ ଯାଇ ସାରଥି ହେଲେ ରୁଦ୍ରଙ୍କର
ଚଳିବ ରଥ ଜୟ ହୋଇବ ତ୍ରିପୁର ।
ବ୍ରହ୍ମାବୋଇଲେହେ ବୋଲୁଅଛଦେବେଯେବେ
ଶିବଙ୍କର ରଥ ବାହିବ ମୁହିଁ ତେବେ ।
ଏହା କହି ବ୍ରହ୍ମା ଶିବଙ୍କ ରଥେ ଯାଇ
ସାରଥି ହୋଇଲେ ହେ ମଦ୍ର ନରସାଇଁ ।
ବ୍ରହ୍ମାଙ୍କର ବସିବାକ୍ଷଣି ସେ ଘୋଡ଼ାଏ
ତଳେ ଲାଗିଗଲେ ଜଡ଼ାଇ ଦେଇ କାୟେ ।
ପ୍ରତୋଦ ଧରି କରି ବ୍ରହ୍ମା କରପୁଟେ
ଚାଳିଲେ ସେ ଘୋଡ଼ାଙ୍କୁ ପିଟି ଅତି ଆଣ୍ଟେ ।
ଶିବ ତ୍ରିପୁରକୁ ଯେ ଅଭିମୁଖ ହୋଇ
ବାହାରନ୍ତେ ବୃଷଭ ଗର୍ଜିଲେ ରୋଷାଇ ।
ସବୁ ପ୍ରାଣୀମାନେ ବୃଷଭ ଗର୍ଜନରେ
ମହାଭୟ ଗୋଟାଏ ଧଇଲେ ମନରେ ।
ବିଷ୍ଣୁ ରୂପ ଶର ଧରନ୍ତେ ଶିବ କରେ
ଜାତ ହୋଇଲେ ଉତପାତ ଆକାଶରେ ।
ନ ସହି ଶିବ ବିଷ୍ଣୁ ଦୁହିଙ୍କର ଭାର
ପଶିଗଲେ ସେ ମହାରଥବର ଧରା ।
ବିଷ୍ଣୁ ତା ଜାଣିପାରି ବୃଷଭ ରୂପରେ
ଟେକିଣ ଦେଲେ ରଥବରକୁ ସତ୍ୱରେ ।
ସେକାଳେ କ୍ରୋଧ ହୋଇ ଅସ୍ତ୍ର ପାଶୁପତ
ଯୋଖିଲେ ଧନୁମଧ୍ୟେ ଉମାଦେବୀ କାନ୍ତ ।
ସେ ତ୍ରିପୁର ଏକା ନୋହିବା ହେତୁରୁ
ରହିଲେ ସେହିପରି କାର୍ତ୍ତିକେୟଗୁରୁ ।
ଏରୂପେ କେତେକାଳ ଅନ୍ତରେ ତ୍ରିପୁର
ଏକଠା ହୋଇଲେ ହେ ଶଲ୍ୟ ନରବର ।
ସେ ତ୍ରିପୁର ଏକ ହେବା ଶିବ ଜାଣି
ପାଶୁପତ ଅସ୍ତ୍ର ବିନ୍ଧିଲେ ଧନୁ ଟାଣି ।
ବାହାରନ୍ତେ ସେ ଅସ୍ତ୍ର ଶିବଧନୁ ଛାଡ଼ି
ତ୍ରିପୁରଯାକ ପାଡ଼ିଲେ ଘୋର ରଡ଼ି ।
ତ୍ରିପୁରେ ଯେତେ ଦଇତ ରହିଥିଲେ
ସେ ଅସ୍ତ୍ର ପୁରି ତୁଲେ ତାହାଙ୍କୁ ନାଶିଲେ ।
ତ୍ରିଲୋକକଣ୍ଟତୈଷୀ ହୋଇ ରୁଦ୍ର ଦେବ
ଏରୂପରେ କଲେଟି ତ୍ରିପୁର ଅଭାବ ।
ଦେବର୍ଷି ଗନ୍ଧର୍ବ ଦକ୍ଷ ତାହା ଦେଖି
ଶିବଙ୍କୁ ସ୍ତୁତି କଲେ ହୋଇ ଅତି ସୁଖୀ ।
ଶିବଙ୍କର ଆଜ୍ଞାରେ ଯେ ଯାହା ଘରକୁ
ବେଗେ ଗଲେ ଆନନ୍ଦ ଆଣିଣ ମନକୁ ।
ରୁଦ୍ର ମଧ୍ୟ ନିଜ ଗଣଙ୍କୁ ସଙ୍ଗେ ଧରି
ବସିଲେ ଯାଇ ସୁଖେ କଇଳାସଗିରି ।
ଆହେ ଶଲ୍ୟ ବ୍ରହ୍ମା ସାରଥି ରୁଦ୍ରଙ୍କର
ହେଲେ ପରାଏ ତୁମ୍ଭେ ହୋଇ କର୍ଣ୍ଣଙ୍କର ।
ତ୍ରିପୁର ବିଜୟୀ ପାଣ୍ଡବ ବଳକୁ
କର୍ଣ୍ଣ ହସ୍ତେ ପଠାଅ ଯମଙ୍କ ପୁରକୁ ।
କୃଷ୍ଣ ଅର୍ଜ୍ଜୁନଙ୍କୁ ସହସ୍ରେ ଗୁଣେ ତୁମ୍ଭେ
ଅଧିକ ଅଟ ବୋଲି ଜାଣିଅଛୁ ଆମ୍ଭେ ।
ଯୁଦ୍ଧରେ କର୍ଣ୍ଣ ରୁଦ୍ର ପରାୟେ ଅଟନ୍ତି
ସାରଥିରେ ସମ ତୁମ୍ଭଙ୍କୁ ପ୍ରଜାପତି ।
ଯେରୂପେ କର୍ଣ୍ଣ ନେବେ ଅର୍ଜ୍ଜୁନ ପରାଣ
ସେରୂପେ କର ବେଗେ ମଦ୍ରଦେଶରାଣ ।
ଅଦ୍ଭୁତ କଥାଟିଏ କହିବି ତୁମ୍ଭଙ୍କୁ
ତାହା ଶୁଣ ହେ ଏବେ ଦେଇଣ ମନକୁ ।
ଭାର୍ଗବ କୁଳେ ଯମଦଗ୍ନି ଋଷି ହେଲେ
ତାହାଙ୍କର ପୁଅ ଯେ ରାମ ବୋଲାଇଲେ ।
ଅସ୍ତ୍ର ଶିଖିବାକୁ ଶିବଙ୍କୁ ପରସନ୍ନ
କରାଇଲେ ସେ ରାମ ଦ୍ୱିଜଙ୍କ ମଣ୍ଡନ ।
ମହାଦେବ ରାଜାଙ୍କ ଭକତିକି ଜାଣି
ଆଗରେ ଛିଡ଼ା ହୋଇ କହିଲେ ଏ ବାଣୀ ।
ଏବେ ତୁମ୍ଭେ ଦେହକୁ ଶୁଦ୍ଧ କର ରାମ
ଦେବି ମୁହିଁ ତୁମ୍ଭଙ୍କୁ ସବୁ ଅସ୍ତ୍ରଗ୍ରାମ ।
ରାମ ବୋଇଲେ,ମୁଁ ଅସ୍ତ୍ରକୁ ଯୋଗ୍ୟ ଯେବେ
ହୋଇବି ଅସ୍ତ୍ର ମୋତେ ଦେବାହେବେ ତେବେ ।
ଏହା ଶୁଣି ଶିବ ହୋଇଲେ ଅନ୍ତର୍ଦ୍ଧାନ
ସେ ବନେ ସେବିଲେ ଶିବଙ୍କୁ ପ୍ରତିଦିନ ।
ରାମଙ୍କର ସେବାରେ ହର ତୋଷ ମତି
ହୋଇ ପାର୍ବତୀଙ୍କି କହିଲେ ତାଙ୍କ ରୀତି ।
ଏହିକାଳେ ଦୈତ୍ୟ ହୋଇଣ ବଳୀୟାର
ବିନାଶ କଲେ ବଳେ ଆଖଣ୍ଡଳ ପୁର ।

ଦେବେ ଏକ ହୋଇଣ ଦାନବଙ୍କୁ ନାଶ
ବର୍ତ୍ତିଲେ ହେଲେ ତା ଦୈତ୍ୟ କଲେ ଧ୍ୱଂସ
ତାହା ଦେଖି ଦେବେ ଶିବଙ୍କ ପାଶେ ଯାଇ
କହିଲେ ଦାନବଙ୍କୁ ମାର ଉମାସାଇଁ ।
ଦାନବଙ୍କ ଉପରେ ହେବାକୁ ଆକୁଳ
ଦେହ ଆମ୍ଭର ଦେଖ ହୋଇଛୁ ଦୁର୍ବଳ ।
ରୁଦ୍ର ତା ଶୁଣି ପର୍ଶୁରାମଙ୍କୁ ଡକାଇ
ବୋଇଲେ ମାର ତୁମ୍ଭେ ଦାନବଙ୍କୁ ଯାଇ ।
ପର୍ଶୁରାମ ବୋଇଲେ ଅସ୍ତ୍ର ନାହିଁ ମୋର
କେଉଁରୂପେ କରିବି ମୁଁ ଦାନବ ସଂହାର ।
ରୁଦ୍ର ବୋଇଲେ ମୋ ଆଜ୍ଞାରେ ବେଗେଯାଅ
ଦାନବଙ୍କୁ ଯୁଦ୍ଧେ ବଢ଼ାଇ ଆଗ ଦିଅ ।
ପଛରେ ସବୁ ଗୁଣଯାକକୁ କହିବି
ଏ କଥାରେ ଶଙ୍କାଟି ନ ଧର ହେ ଲବ ।
ଏହା ଶୁଣିଣ ପର୍ଶୁରାମ ତୋଷ ହୋଇ
ବାହାରିଲେ ଦାନବଙ୍କର ନାଶ ପାଇଁ ।
ଦାନବଙ୍କୁ ଦେଖି କହିଲେ ପର୍ଶୁରାମ
ପେଷିଛନ୍ତି ଶିବ ମୁଁ କରିବି ସଂଗ୍ରାମ ।
ପର୍ଶୁରାମଙ୍କର ବଚନ କର୍ଣ୍ଣେ ଶୁଣି
ଦୈତ୍ୟମାନେ ଗର୍ଜିଲେ କ୍ରୋଧେ ଶିର ଟାଣି
ବଜ୍ର ପରି କାଣ୍ଡ ପ୍ରହାରି ପର୍ଶୁରାମ
ଦେଲେ ଦାନବଗଣେ ନେଇ ଯମଗ୍ରାମ ।
ସେହିକ୍ଷଣି ଶିବଙ୍କ ସମୀପେ ଆସିଲେ
ମାଇଲି ଦାନବଙ୍କୁ ବୋଲିଣ ଭାଷିଲେ ।
ଶିବ ରାମ ଦେହରେ କାଣ୍ଡଚିହ୍ନ ଦେଖି
ଆଉଁଷି ଦେବା ମାତ୍ରକେ ସେ ହେଲେ ସୁଖୀ
ମହାଦେବ ପର୍ଶୁରାମଙ୍କ ବିକ୍ରମରେ
ପ୍ରୀତ ବହି ବର ଦେଇଣ ସୁମନରେ ।
ବୋଇଲେ ତୁମ୍ଭ ଦେହେ ଶସ୍ତ୍ର ଯା ବାଜିଲା
ମାନୁଷକର୍ମ ଥିଲା ଯେତେ ତାହା ଗଲା ।
ଏବେ ମୋଠାରୁ ଦିବ୍ୟ ଅସ୍ତ୍ରଯାକ ନେଇ
କରିବାକୁ ଶତ୍ରୁ କୁଳକୁ ମରଦନ ।
ଏତେ କହି ସମସ୍ତ ଅସ୍ତ୍ରକୁ ପାର୍ବତୀ—
ହାତୀ କହିଲେ ରାମକୁ ବହି ପ୍ରୀତି ।
ପର୍ଶୁରାମ ସକଳ ଅସ୍ତ୍ର ବିଦ୍ୟା ପାଇ
ବାହାରିଲେ ଘରକୁ ବାହା ହୋଇଲାଇ ।

ପର୍ଶୁରାମଠାରୁ ଟି କର୍ଣ୍ଣ ମହାମଲ୍ଲ
ଶିଖିଛନ୍ତି ସେ ବିଦ୍ୟାଯାକେ ଯେତେ ଭଲ ।
ଏଥୁଅନ୍ତରେ ଦୁର୍ଯ୍ୟୋଧନ ନରସାଇଁ
ବୋଇଲେ କର୍ଣ୍ଣ ଘୋଡ଼ା ଧର ଶଲ୍ୟ ଯାଇ ।
କର୍ଣ୍ଣ ସବୁପ୍ରତି ଅଟନ୍ତି ଶତଗୁଣ
କର୍ଣ୍ଣଙ୍କ ପ୍ରତି ତୁମ୍ଭେ ଅଟ ହେ ଦ୍ୱିଗୁଣ ।
ଏହା ଶୁଣି ଶଲ୍ୟ ହୋଇଣ ହସହସ
କହିଲେ ଦୁର୍ଯ୍ୟୋଧନ ଆଗେ ବହି ତୋଷ ।
ବୋଲିବ ତୁମ୍ଭେ ଯାହା କରିବି ମୁଁ ତାହା
ନାହିଁ ଏଥି ମିଥ୍ୟା ହେ ଜାଣ ନରନାହା ।
କର୍ଣ୍ଣ ହିତକାମ ହୋଇଣ ମୁଁ ଅପ୍ରିୟ
ଅବଶ୍ୟ ବଚନରେ କରିବି ଉଦୟ ।
ତାହା ଦୋଷ କରି ନ ଘେନମାଟି ତୁମ୍ଭେ
ଏତିକ ବେଳୁଁ ଜାଣ ମାଗୁଅଛୁଁ ଆମ୍ଭେ ।
କର୍ଣ୍ଣଙ୍କୁ କହିଥିବ ମୋ ବଚନ ଘେନ
ନୋହିବେ ମୋହଠାରେ କ୍ରୋଧେ ଅଭିମାନୀ
କର୍ଣ୍ଣ ବୋଇଲେ ଆହେ ବ୍ରହ୍ମା ରୁଦ୍ରଙ୍କର
ଯଦୁପତି କୃଷ୍ଣ ଯେରୂପେ ଅର୍ଜ୍ଜୁନର ।
ସାରଥି ହେଲେ ସେରୂପେ ମୋ ରଥେ ଆପେ
ସାରଥି ହୋଇ ବସ ଯୁଦ୍ଧେ ଯିବା ଧାପେ ।
ଶଲ୍ୟ ତାହା ଶୁଣି ବୋଇଲେ ଆହେ କର୍ଣ୍ଣ
ମୁଁ ଯାହା କହୁଅଛି ଶୁଣ ଦେଇ କର୍ଣ୍ଣ ।
ଆପଣାର ପରର ନିନ୍ଦା ସ୍ତୁତି ବାଣୀ
ଜାଣିବା ମନୁଷ୍ୟେ ନୁହନ୍ତି କେବେ ଭଣି ।
ଯେବେ କର୍ଣ୍ଣ ଦେହରେ ପାପ ଥାନ୍ତା ରହି
ପର୍ଶୁରାମ ଅସ୍ତ୍ର ଦିଅନ୍ତେ କାହିଁପାଇଁ ।
ଏ ସକାଶୁଁ ମଣୁଛି ଋଷି ସୂର ସୁତ
କର୍ଣ୍ଣ ହେବାରୁ ଟି କହିଲେ ଶୁଦ୍ଧଗାତ ।
କବଚ କୁଣ୍ଡଳକୁ ବହି ଅଙ୍ଗଦେଶେ
କର୍ଣ୍ଣ ହିନା ମଧ୍ୟରେ ଜନ୍ମିବ କିଏ ସେ ।
ବଡ଼ ଲୋକ ନୋହିଲେ ଏଡ଼େ ମହାବଳୀ
ହୋଇ କି ପାରେ ଲୋକ ଶତ୍ରୁ ବଳ ଦଳି ।
ଏହିଠାରେ ତ୍ରିପୁରବଧ ଉପଖ୍ୟାନ
ଶେଷ କରିବେ ବ୍ୟାସଋଷିଙ୍କ ନନ୍ଦନ ।
ତାଙ୍କ ପ୍ରସାଦରୁ ଜାଣିଲି ଯାହା ମୁହିଁ
ହୋଇଲି ଏ ଗୀତ ପ୍ରବନ୍ଧେ ତାହା କହି ।

ଏଥିରେ ଥିଲେ ଦୋଷ ମୋହର ପଣ୍ଡିତେ
ନ ଘେନିବ ତାହା ମୁଁ ମାଗୁଛି ନିରତେ ।
ଗୋପ ବଧୂ ନେତ୍ର ଚକୋର କଳାକର
ଚନ୍ଦ୍ର କହଇ କୃଷ୍ଣ ସିଂହ ନରବର ।
ଏ ଗୀତକୁ ରଜନୀ ଦିବସରେ ବସି
ଦେବାପାଇଁ ଫହାର ବନ୍ଧନକୁ ନାଶି ।

—❋—

## ରଥ ମଧ୍ୟରେ କର୍ଣ୍ଣ ସହିତ ସାରଥି ଶଲ୍ୟଙ୍କର ବିବାଦ

ତୁମ୍ଭେ ପରତେ ଯିବାପାଇଁ ମୁଁ ଗର୍ବିତ
ବଚନ ଯା କହିବ ଶୁଣ ସୁତ ସୁତ ।
ଇନ୍ଦ୍ରଙ୍କ ସାରଥି ହେବାକୁ ଯୋଗ୍ୟ ମୁହିଁ
ଯାଉଛି ଅଭାଗ୍ୟରୁ ତୁମ୍ଭ ରଥ ବାହି ।
ଅର୍ଜୁନ ତୁଲେ ତ କରିବ ଯୁଦ୍ଧ ତୁମ୍ଭେ
ବାହିବୁ ତୁମ୍ଭ ଝୁରି ଘୋଡ଼ାଙ୍କୁଟି ଆମ୍ଭେ ।
ସେ କାଳରେ କର୍ଣ୍ଣ ଡକାଇ ସାରଥିକ
ବୋଇଲେ ଆଣ ସଜାଇ ମୋ ରଥୁଟିକ ।
କର୍ଣ୍ଣଙ୍କ ବଚନ ସାରଥି ଶୁଣି କାନେ
ସଜ କରି ରଥକୁ ଆଣିଲା ବହନେ ।
କର୍ଣ୍ଣ ସେ ରଥ ପୂଜା ସାରି ପ୍ରଦକ୍ଷିଣ
କରି ବୋଇଲେ ଆହେ ଶଲ୍ୟ ନରଗଣ ।
ରଥରେ ଆଗ ତୁମ୍ଭେ ବସ ରଜ୍ଜୁ ଧରି
ପଛରେ ଯାଇ ମୁହିଁ ବସିବି ତୁମ୍ଭରି ।
କର୍ଣ୍ଣଙ୍କର ବଚନେ ମଦ୍ରଦେଶ ରାଜା
କର୍ଣ୍ଣରଥେ ବସିଲେ ଛାଡ଼ିଦେଇ ଲଜ୍ଜା ।
ଯେ ରୂପେ ସିଂହ ଗିରି ଶିଖରେ ବସଇ
ସେ ରୂପେ ଶଲ୍ୟ ଟି ଦିଶିଲେ ନରସାଇଁ ।
ତଦଅନ୍ତେ କର୍ଣ୍ଣ ଧନୁକୁ ଧରି ହାତେ
ବସିଲେ ରଥରେ ମୁକୁଟ ବାନ୍ଧି ରଥେ
ସୂର୍ଯ୍ୟ ଅଗ୍ନି ପରିଏ ଶଲ୍ୟ କର୍ଣ୍ଣ ଦୁଇ
ସବୁରି ନେତ୍ରକୁ ଦିଶିଲେ ମହୀସାଇଁ ।
କର୍ଣ୍ଣ ଓଟାରନ୍ତେ କରରେ ନିଜ ଧନୁ
ପରିଧିଯୁକ୍ତ ସୂର୍ଯ୍ୟ ଜିଣିଲା ସେ ତନୁ ।
ଦୁର୍ଯ୍ୟୋଧନ ତା ଦେଖି କହିଲେ କର୍ଣ୍ଣକୁ
ମାରି ଆଣ ଯଶ ହେ ଆଜ ଅର୍ଜୁନଙ୍କୁ ।
ଭୀଷ୍ମ ଦ୍ରୋଣ ପରି ରଥୀଏ ଲାଜ ପାଇ
ଯୁଦ୍ଧରେ ତ ମଲେ ଏମନ୍ତେ ଦେଖିଥାଇଁ ।
ତୁମ୍ଭେ ତାଙ୍କପ୍ରନ୍ତ ଅଟ ତ ସମରଥ
ଅର୍ଜିଆଣ ଜୟ ମଡ଼ୁଛି ଯୁଦ୍ଧପଥ ।
ଏହା ଶୁଣି ତୁମ୍ଭ ସେନ ଏ ହେଷାରଡ଼
କରନ୍ତେ ସେ ଶବ୍ଦ ସ୍ୱର୍ଗକୁ ଗଲା ମାଡ଼ ।
କର୍ଣ୍ଣ ବୋଇଲେ ଆହେ ଶଲ୍ୟ ନରଗଣ
ବାହ ରଥ ଘେନିବ ପାର୍ଥର ମୁଁ ପ୍ରାଣ ।
ଆଜ ଅର୍ଜୁନ ମୋ ବାହୁବୀର୍ଯ୍ୟ ଦେଖି
ବୁଝିବ ଦୁଇଆଖି ଯୁଦ୍ଧେ ହୋଇ ଦୁଃଖୀ ।
ପାଣ୍ଡବଙ୍କ ବିନାଶ ଦୁର୍ଯ୍ୟୋଧନ ଜୟ
ଭାବନା ତ କରିଛି ମୋହର ହୃଦୟ ।
ଶଲ୍ୟ ବୋଇଲେ ଆହେ କର୍ଣ୍ଣ ହେଲ ବାଇ
ଅର୍ଜୁନଙ୍କୁ ଜିଣିବ ତୁମ୍ଭ ବଳ କାହିଁ ।
ଯେ କାଳେ ଶୁଣିବ ଗାଣ୍ଡୀବର ଗର୍ଜନ
ଛାଡ଼ିଦେବ ସେକାଳେ ନିଶ୍ଚେ ଏ ବଚନ ।
ଭୀମ ହାତଙ୍କୁ ପିଟିବା ବେଳରେ ଗଦା
କହିବ ଏ କହିବା କଥା ତୁମ୍ଭେ ମୁଦା ।
ଯୁଧିଷ୍ଠିର ନକୁଳ ସହଦେବ କାଣ୍ଡ
ବିନ୍ଧା ଦେଖିଲେ ଏହି କଥା ହେବ ଭଣ୍ଡ ।
କର୍ଣ୍ଣ ତାହା ଶୁଣି ବୋଇଲେ ବାହ ରଥ
କେତେ ତାଙ୍କୁ ଟେକୁଛ ହୋଇ ଆମ୍ଭ ସାଥ ।
ତୁମ୍ଭ ସେନାମାନେ ଯେ ମରଣ ବରଣ
କରି ବାହାରିଲେ ଓଟାରି ଧନୁର୍ଗୁଣ ।
କର୍ଣ୍ଣ ରଥଚକ ଘାତ ପାଇଣ ମହୀ
କମ୍ପିଗଲେ ଯେ ରଥେ ଥରି ହୋଇ ।
ନଦୀ କୂଳରେ ବନ ପର୍ବତ କମ୍ପିଲେ
ସୂର୍ଯ୍ୟଦେବ ଷଡ ଗ୍ରହରେ ଯୁତ ହେଲେ ।
ଉଲ୍କାଏ ଆକାଶୁଁ ପଡ଼ିଲେ କୋଟି କୋଟି
ହୋଇଲା ଦଶଦିଗଙ୍କରେ ଅଗ୍ନି ବୃଷ୍ଟି ।
ମେଘ ବିନା ଆକାଶେ ହେଲା ବଜ୍ରଧ୍ୱନି
କରିଦେଲା ସବୁରି ସ୍ତବ୍ଧ କର୍ଣ୍ଣ ବେନି ।
ମୃଗ ପକ୍ଷୀମାନେ ବୋବାଇ ତୁମ୍ଭ ସେନା—
ଭୟ ଜାତ କଲେ ରାଜନ ମହାମନା ।
କର୍ଣ୍ଣଙ୍କର ଝୁରି ଘୋଡାଏ ଆଣ୍ଠୁ ମାଡ଼ି
ପଡ଼ି ନୟନରୁ ଛାଡ଼ିଲେ ଅଶ୍ରୁଧାଡ଼ି ।

ଆକାଶୁଁ ଦେଖୁଁ ଅଗ୍ନି କର୍ଣ୍ଣଙ୍କର ମୁଣ୍ଡେ
ସେକାଳେ ଗର୍ଜନ ପଡ଼ିଲା ଅଷ୍ଟ ବୃଣ୍ଡେ ।
ଶସ୍ତ୍ରମାନେ ତେଜେ ଜ୍ୱଳନ ଜ୍ୟୋତି ନନ୍ଦା
କରି କଲେ ସବୁର ନୟନକୁ ଧନ୍ଦା ।
ଏରୂପେ ମହାଉତପାତ ଜାତ ହୋଇ
ଥୋଇଲା ଭୟ କୁରୁଯୋଦ୍ଧା ହୃଦେ ନେଇ ।
କୁରୁଏ କାଳରେ ପ୍ରେରିତ ହୋଇଥିଲେ
ତେବେ ହେଲେ ଯୁଦ୍ଧ କରି ସେ ବାହାରିଲେ
ରାଜାମାନେ ଯେତେ ରଟନ୍ତି ଭୂମି ପଟ
କର୍ଣ୍ଣ ସ୍ତୁତି ହେଲେ ମୁଖରେ ଭଟ ଭଟ ।
ମନେ କରିଲେ ସୂତ ନନ୍ଦନ ଲଢ଼ାଇ
କରି ଦେବେ ଆମ୍ଭର ଭୟକୁ ଛଡ଼ାଇ ।
ପାଣ୍ଡୁସୁତମାନେ ଟି ହୋଇଣ ଅନାଥ
କରିବେ ଯାଇ ବନମଧ୍ୟକୁ ସେ ନାଥ ।
ଯୁଧିଷ୍ଠିର ରାଜା ଯେ ମୁଣ୍ଡକୁ ଆଉଁସି
ତୁମି ହୋଇ ବସିବେ କଥାକୁ ନ ଭାଷି ।
ଅରଜୁନ ଗାଣ୍ଡୀବ ଧନୁହସ୍ତ ଗୁଣ
କାଢ଼ି ପକାଇବେ ନନ୍ଦଣ ଦେହଟାଣ ।
କର୍ଣ୍ଣଙ୍କର ଖଣ୍ଡାରେ ଭୀମହାତ ଗଦା
ଆଜ ହେବ ଯୁଦ୍ଧେ ଆଣି ନପଟ ବୋଦା ।
ନକୁଳ ସହଦେବ ଦେବ ଧରି ମୂର୍ତ୍ତି
ତା ଦେଖି ଛାଡ଼ିଣ ଭଜ ସେ କଳାକାନ୍ତି ।
କର୍ଣ୍ଣ ସେକାଳେ ରଥପରେ ସୁଖେ ବସି
ଶଲ୍ୟ ମୁଖ ଚାହିଁ କହିଲେ ନିଶ ଘଷି ।
ଚନ୍ଦ୍ର ବଜ୍ର ଧରି ଆସିଲେ ଯୁଝିବାକୁ
ନଜର ନାହିଁ ମୋର ଜାଣ ହେ ତାହାଙ୍କୁ ।
ପାଣ୍ଡୁସୁତମାନଙ୍କ ବଳ ତ ଅଳପ
କେତେ ତାହାଙ୍କ ବଳ କର ହେ ଜଳପ ।
ଆଜ ଯୁଦ୍ଧେ ମୋ ଦେହବଳକୁ ସେ ପାଇ
ଶର ତଳ୍ପ କରି ଶୋଇବେ ରଣ ଭୂଇଁ ।
ଅବଧ୍ୟ ଭୀଷ୍ମ ଦ୍ରୋଣ ହୋଇବାରୁ ବଧ
ଯୁଦ୍ଧରେ ଡରୁଅଛ ହୋଇ ମୁଁ ଅବୋଧ ।
ସଖା ହୋଇବାରୁ ଟି କହିଲି ଫିଟାଇ
କାହାକୁ ଏହା ତୁମ୍ଭେ କହିବଟି ନାହିଁ ।
ମୋହରୁ ଆନ ଲୋକ ଅର୍ଜ୍ଜୁନକୁ ରଣେ
ନିବାରଣ କରି ନ ପାରଇ ଟି ବାଣେ ।

ଶିକ୍ଷା ଅପ୍ରମାଦେ ମୋ ବଳଧୃତ ଅସ୍ତ୍ର
ହୋଇ ତ ଥିଲେ ଦ୍ରୋଣ ଏମାନଙ୍କ ପାଶ ।
ତେଡ଼େ ଲୋକଟାକୁ ଯେ ଧୃଷ୍ଟଦ୍ୟୁମ୍ନ ରଥୀ
ମାରିଲେ ଯୁଦ୍ଧଦାଣ୍ଡେ କାଣ୍ଡେ କରି ବ୍ୟଥୀ ।
ଦ୍ରୋଣ ମଲା ଉତ୍ତାରୁ ପାଉଛି କି ବଳ
ଆମ୍ଭର ପାଣ୍ଡବଙ୍କୁ କରିବାକୁ ଗୋଳ ।
ଅସ୍ତ୍ରବଳ ପରାକ୍ରମ ଏହି ଲୋକରୁ
ରଖି ନ ପାରଇ ଆଣୁଛି ମୋ ମନକୁ ।
ଇନ୍ଦ୍ର ବିଷ୍ଣୁ ଶୁକ୍ର ଯେ ବୃହସ୍ପତି ସମ
ହୋଇ ଦ୍ରୋଣ ହାରିଲେ କରିଣ ସଂଗ୍ରାମ ।
ଏ ସକାଶୁଁ ମୁହିଁ ଜାଣୁଛି ଶଲ୍ୟ ଭାଇ
ମରିବା ମାତ୍ର ଯୁଝି ଦୁର୍ଯ୍ୟୋଧନ ପାଇଁ ।
ଏବେ ମୋ ବୋଲ କରି ବାହା ତୁମ୍ଭେ ରଥ
ଦେଖ ଛେଦିବି ମୁଁ ପାଣ୍ଡବସେନା ମାଥ ।
ନୋହିଲେ ଭୀଷ୍ମଙ୍କର ପରି ଶରଶଯ୍ୟା
କରିଣ ଚଢ଼ାଇବ ଶୂରଙ୍କର ଲଜ୍ଜା ।
ଅର୍ଜ୍ଜୁନ ଶର କାଳପାଶକୁ ମୋ ବେକ
ପାଡ଼ୁଛି ହେବାପାଇଁ ଜାଣ ସ୍ୱର୍ଗଲୋକ ।
କହୁଛି ତ ଦୁର୍ଯ୍ୟୋଧନଙ୍କ କାର୍ଯ୍ୟ ପାଇଁ
ପ୍ରିୟ ପ୍ରାଣୁଟିକ ଛାଡ଼ିଣ ମୁଁ ଦେବଇଁ ।
ଏତେବେଳରେ ଶଲ୍ୟ ହୋଇଲେ ନସତ
କରିବେ ନିନ୍ଦା ଶୁଣି ସାଧୁଏ ବହୁତ ।
ପରଶୁରାମ ଯେଉଁ ରଥ ଦେଇଛନ୍ତି
ତହିଁ ବସି ମାରିବ ଯୁଦ୍ଧେ ଶତ୍ରୁଭୂତ ।
ମୃତ୍ୟୁ ଅରଜୁନଙ୍କ ପାଇଁ କଲେ ରଣ
ତାଙ୍କୁ ମଧ୍ୟ ମୁଁ ମାରିଦେବି ବନ୍ଧ ବାଣ ।
ଇନ୍ଦ୍ର ଯମ କୁବେର ବରୁଣ ଏ ଗୋଟି
ହେଲେ ମଧ୍ୟ ତାଙ୍କୁ ମାରିବି ଯୁଦ୍ଧେ ଯୋଟି ।
ଶଲ୍ୟ ଶୁଣିଣ କର୍ଣ୍ଣଙ୍କର ଏ ବଚନ
ବୋଇଲେ ହୁଅ ତୁମି ହେ ରାଧାନନ୍ଦନ ।
ତୁମ୍ଭର କଥାକୁ ମୋ ପେଟ ଦୁହିଁ ହୋଇ
ହସ ବାହାରୁଛି ନ ପାରେ ଘୋଡ଼ା ବାହି ।
ତୁଚ୍ଛା ତୁମ୍ଭେ ମୋ ଆଗେ ନୁହ ଭଟଭଟ
ନୁହ ତ ତୁମ୍ଭେ ଅର୍ଜ୍ଜୁନଙ୍କୁ ପ୍ରତିଭଟ ।
ଅର୍ଜ୍ଜୁନତ ତୁମ୍ଭର ବହୁତ ଅନ୍ତର
ବଚନରେ ଅଛି ହେ କର୍ଣ୍ଣ ମନେ କର ।

ଯଦୁକୁଳମଣି ଶ୍ରୀକୃଷ୍ଣଙ୍କୁ ନ ଗଣି
ସୁଭଦ୍ରା ଆଣିଲେ ଗାଣ୍ଡିବ ଧନୁଷ୍ପାଣି ।
ଏ କଥା ତାଙ୍କ ବିନା ଆନ ଲୋକ ହାତେ
କରିବା ଥାଉ ତୁମ୍ଭେ ବୋଇଲେ ମା'ର ମୁଖେ
ଅର୍ଜୁନ ବିନା କେ ରୁଦ୍ରଙ୍କ ବାହୁରଣ
ଦେବାକୁ ଅଛି ଆହେ କର ତା ବଖାଣ ।
ଏକା ହୋଇ ଇନ୍ଦ୍ରଙ୍କୁ ଯୁଦ୍ଧଦାଣ୍ଡେ ଜିଣି
ଖାଣ୍ଡବ ପୋଡିଲେ ପାଣ୍ଡବ-ବୀରମଣି ।
ଧୃତରାଷ୍ଟ୍ରେ ପୁତ୍ରେ ଯେବେ ନେଲେ ବାନ୍ଧି
ଆଣିଲେ କି ଅର୍ଜୁନ ତାଙ୍କୁ ଯୁଦ୍ଧ ରୁନ୍ଧି ।
ଶୁଣି ତ ଥାଇଁ ଆମ୍ଭେ ସେ ଯୁଦ୍ଧରେ ଆଗ
ପଳାଇଲ ତୁମ୍ଭେ ବୋଲାଇ ମହାଭାଗ ।
ଗୋଗ୍ରହବେଳେ ସବୁ ରଥୀ ହୋଇ ଗୋଟି
ଭାଜିଲ ପାଇ କରି ଅର୍ଜୁନ କାଣ୍ଡଟି ।
ତୁମ୍ଭ ମରିବାକୁ ହୋଇଛୁ ଆଛା ବାଳ
କରି ଯୁଦ୍ଧ ପୂଜା କରିବେ ଆଖଣ୍ଡଳ ।
ଏରୂପେ ଶୁଣି ଶଲ୍ୟ ନୃପଙ୍କ ବାଣୀ
କହିଲେ ତାଙ୍କୁ ଅଧିରଥ ସୁତ ପୁଣି ।
ଅର୍ଜୁନ ଅଙ୍ଗରେ ଜିଣିଲେ ମୋତେ ଆଜ
କହିବ ଆହେ ଶଲ୍ୟ ଏରୂପେ ଗରଜ ।
ଶଲ୍ୟ ବୋଇଲେ ହେ ତୁମ୍ଭର ବେଳବାହା
ଛାଡ଼ିବ ଯେତେବେଳେ ବୋଲିବ ମୁଁ ଆହା ।
ତେତେବେଳେ ତୁମ୍ଭଙ୍କୁ କହିଲେ ଏରୂପେ
ପଡ଼ିବ ମୁଁ ଜାଣ ନରକେ ସେହି ପାପେ ।
କର୍ଣ୍ଣ ବୋଇଲେ ଆହେ ବାହ ଏବେ ରଥ
ନ କହ ଆଉ କଥା ଶଲ୍ୟ ଲାଜ ମାଥ ।
ତା ଶୁଣି କର୍ଣ୍ଣଙ୍କର ଶ୍ୱେତ ସ୍ୱରଘୋଡ଼ା
କଲେ ଶଲ୍ୟ ସମରଦାଣ୍ଡେ ନେଇ ଛାଡ଼ା ।
ପାଣ୍ଡୁ ସେନାଯାକଙ୍କୁ ସେହେ କର୍ଣ୍ଣ ପୁଚ୍ଛି
ବୋଇଲେ କାହିଁ ଅଛି ପାର୍ଥ ହେଅ କହି ।
ଆଜ ପାର୍ଥଙ୍କୁ ଯେ ଦେଖାଇ ଦେବ ମୋତେ
ଶଗଡ଼େ ରତ୍ନ ଦେବ ତାଙ୍କୁ ତୋଷ ଚିତ୍ତେ ।
ଏ ବାହାରେ ସୁବର୍ଣ୍ଣ ଗାଈ ଶଏ ହାତୀ
ଶଏ ଅଶ୍ୱ ପାଞ୍ଚଶ ଶୁକଳ ସୁପାତି ।
ଦେଇ କୃଷ୍ଣ ଅର୍ଜୁନଙ୍କର ଯେତେ ଧନ
ଥିବ ତାହା ଦେବ ତାଙ୍କର ନେଲେ ପ୍ରାଣ ।

ଏହିରୂପରେ କର୍ଣ୍ଣ ବଚନ ଉଚ୍ଚାରି
ବଜାଇଲେ ଶଙ୍ଖ ଗୋଟିଏ କରେ ଧରି ।
ଦୁର୍ଯ୍ୟୋଧନ ଶୁଣି କର୍ଣ୍ଣର ଶଙ୍ଖରଡ଼ି
ବାହାରିଲେ ଯୁଦ୍ଧକୁ ରଥ ମୋଡ଼ି ମୋଡ଼ି ।
ମୃଦଙ୍ଗ ଭେରୀ ଶବ୍ଦ ତୁମ୍ବର ସଇନେ
ସେକାଳେ ଗଗନ ପୂରିଲା ଅବିଚ୍ଛିନ୍ନେ ।
ହାତୀ ଘୋଡ଼ାଙ୍କର ଯେ ଗରଜନ ଘାତ
ଶୁଣି ଭୟେ ଧରିଲା ଶତ୍ରୁଜନ ଚିତ୍ତ ।
ଶଲ୍ୟ କର୍ଣ୍ଣଙ୍କର କଥା କର୍ଣ୍ଣରେ ଶୁଣି
ବୋଇଲେ କର୍ଣ୍ଣ ବାଇ ହେଲ ତୁମ୍ଭେ ପୁଣି ।
କହିବା କଥାଟିକ କ୍ଷଣକେ ଅନ୍ତର
କରୁଛ ମନେ ମନେ ହୋଇ ମହାବୀର ।
ଧନବସ୍ତ୍ର ଲୋକଙ୍କୁ ଯାଚୁଛ କପାଇଁ
ଅର୍ଜୁନ ତ ଆସିବ ତୁମଠାକୁ ଧାଇଁ ।
ବଳ ଯେତେକ ଥିବ ଅର୍ଜୁନଙ୍କୁ ଦେଖି
ଯୁଦ୍ଧ କରି ବସିବ ସ୍ୱର୍ଗେ ହୋଇ ସୁଖୀ ।
ଯେତେ ଦ୍ରବ୍ୟ ପରକୁ ଦେବାକୁ ବୋଲୁଛ
ତାହାଦେଇ ଯଜ୍ଞ ଆରମ୍ଭ ସୁତବତ୍ସ ।
ବିଲୁଆ ହୋଇ ସିଂହମାଂସ ଖାଇବାକୁ
କାହିଁ ପାଇଁ ବଳାଉଛ ହେ ଆଶାକୁ ।
ବନ୍ଧୁ ନ ଥିବାରୁ ପତଙ୍ଗ ପରା ହୋଇ
ପାର୍ଥ ଅଗ୍ନି ମୁଖେ ପଡ଼ୁଛ ଆସି ଧାଇଁ ।
କାଳ ରହିଲାଣି ତ ଆସି ଦେହେ ଘୋଟି
ଯା ଇଚ୍ଛା ହେଉଛି କହୁଛ ଏଣୁ ପାଟି ।
ସମୁଦ୍ରର ପଥରେ ବାନ୍ଧ କେ କଣ୍ଠରେ
ପଶିବ ତରିଯିବ ବୋଲିଣ ଆଣ୍ଠରେ ।
କର୍ଣ୍ଣ ବୋଇଲେ ମୋ ଦେହେ ତ ଅଛି ବଳ
ପାର୍ଥଙ୍କୁ ମାରିବାକୁ ଶଲ୍ୟ ମହୀପାଳ ।
ତୁମ୍ଭେ କମ୍ପାଇଁ ତାହା କରୁଅଛ ଊଣା
ବଚନ ମାତ୍ରକରେ ବୃଦ୍ଧି କରି ବଣା ।
ଯା ବୋଲୁଅଛ ତାହା ନବର୍ତ୍ତାଇବାକୁ
ତହିଁରୁ ମର୍ତ୍ତ୍ୟେ ମୁହିଁ ନ ଦେଖେ କାହାକୁ ।
ଶଲ୍ୟ ବୋଇଲେ ଆହେ ଅର୍ଜୁନଙ୍କ କାଣ୍ଡ
ଯେଉଁକାଳେ ଆସି ଖୋଜିବେ ତୁମ୍ଭ ପିଣ୍ଡ ।
ସେ କାଳେ ମୋ କହିବା ବଚନ ସୁମରି
ବସିବ ହେ କର୍ଣ୍ଣ ମୁଣ୍ଡକୁ କରେ ଧରି ।

ଆକାଶ-ଚନ୍ଦ୍ର କରେ ଧରିବାକୁ ଲୋଡ଼ା
କରୁଅଛ କର୍ଣ୍ଣ ହେ ଛାଡ଼ ଦେଇ ବ୍ରୀଡ଼ା ।
ଶୂଳରେ ନେଇଣ ମାଡ଼ୁଛ ଗୁହ୍ୟଦ୍ୱାର
କରତ ବସାଉଛ ଶଙ୍ଗିରେ ତୁମ୍ଭର ।
ଆଶୀବିଷ ମୁଖେ ଦେଉଛ ହାତ ଭରି
ମରିବାର ଉପୁଟି ମନୁଁ ଦୁର କରି ।
ବିଲୁଆ ହୋଇ କରି ଅର୍ଜ୍ଜୁନ ସିଂହକୁ
ଡାକୁଛ କମ୍ପା କର୍ଣ୍ଣ ଯୁଦ୍ଧ କରିବାକୁ ।
ମରଣକୁ ଲୋଡ଼ାଇ ଗରୁଡ଼ଙ୍କ ତୁଲେ
ଯେଉଁରୂପେ ସର୍ପ ଲଢ଼ାଇ କରେ ଭଲେ ।
ସେହିରୂପେ ହୋ ତୁମ୍ଭେ ଅର୍ଜ୍ଜୁନଙ୍କୁ ଡାକ
ଯୁଝିବାକୁ ଅଛ କରରେ ଧନୁ ଟେକ ।
ଅରଜୁନ ସମୁଦ୍ର କୃଷ୍ଣ ଚନ୍ଦ୍ରୋଦୟ
ସକାଶରୁ ହୋଇଛି ମହାଟିର ଉଦୟ ।
ଅଳ୍ପ ବଳ ଭେଳା କରି ତା ତରିବାକୁ
ମନ କରିଅଛ କ ବୋଳିବା ତୁମ୍ଭଙ୍କୁ ।
ବାତୁଳ ହୋଇ ତୁମ୍ଭେ ବୃଷଭ ପାର୍ଥଙ୍କୁ
ଡାକୁଛ କରୁପେ କହ ତ ଯୁଝିବାକୁ ।
ଅରଜୁନ ମେଘକୁ ବେଙ୍ଗ ପରି ତୁମ୍ଭେ
ଗୃହିଁ ଗରଜୁଛଟି ଜାଣିଅଛୁଁ ଆମ୍ଭେ ।
ରଥରେ ଅରଜୁନ ବାଘକୁ ଦେଖିଲେ
ଛେଳି ପରି ତ ହୋଇଯିବ କର୍ଣ୍ଣ ଭଲେ ।
ଗାଣ୍ଡୀବ ଧନୁଟିଏ ଶବଦ କାନକୁ
ନ ଶୁଭିବା ଯାଏ କରୁଛ ଗୁମାନକୁ ।
କୁକୁର ବାଘ ଶଶ କୁଞ୍ଜର ଶୃଗାଳ
ସିଂହ ବିଷ ଅମୃତ ମୂଷିକ ବିଡ଼ାଳ ।
ଯେତେ ଯେତେ ଅନ୍ତର ତୁମ୍ଭ ଅର୍ଜ୍ଜୁନର
ତେତେ ତେତେ ଅନ୍ତର କର୍ଣ୍ଣ ମନେକର ।
ଏହା ଶୁଣିଣ କର୍ଣ୍ଣ ଶରୀର ଫୁଲାଇ
କ୍ରୋଧରେ ବୋଇଲେ କ ବୋଲ ମଦ୍ରସାଇଁ
ଗୁଣବନ୍ତ ଲୋକ ଗୁଣକୁ ଗୁଣବନ୍ତ
ଜାଣଇ ନ ଜାଣଇ ଯେ ଅଗୁଣବନ୍ତ ।
ସବୁ ଗୁଣଯାକରେ ଅଟ ହୀନ ତୁମ୍ଭେ
ଜାଣିବ କେହି ଗୁଣ ବୋଲୁଅଛୁଁ ଆମ୍ଭେ ।
ଅର୍ଜ୍ଜୁନ କୃଷ୍ଣଙ୍କର ବଳ ପରାକ୍ରମ
ମୁଁ ଏକା ଜାଣଇ ହେ ପୁରୁଷ ଅଧମ ।

ତୁମ୍ଭଙ୍କୁ ସେ କଥା ଗୋଚର ନୋହିଅଛି
ତେଣୁ ଏରୂପେ କଥା ତୁଣ୍ଡରୁ ବାହାରୁଛି ।
ଶମ୍ପାକୃତି ଶର ମୋ ତୂଣୀରେ ରହିଛି
ବହୁତକାଳୁ ତାକୁ ପୂଜା ମୁଁ କରୁଛି ।
ଅରଜୁନ ପ୍ରାଣ ନେବା ପାଇଁ ଶଲ୍ୟ
ନ ଘାଣ୍ଟ ମୋର ପ୍ରାଣ ମାରି ବାଣୀ ଶଲ୍ୟ ।
ଅର୍ଜ୍ଜୁନ କୃଷ୍ଣ ବିନା ସେ କାଣ୍ଡ ଆନକୁ
ନ ମାରିବ ଶଲ୍ୟ ହେ କହୁଛି ତୁମ୍ଭଙ୍କୁ ।
ସବୁ ଋଷିମାନଙ୍କ ଜୟଶିରିଯାକ
ବହି ଅଛନ୍ତି ଏକା ରୁକ୍ମଣୀ ନାୟକ ।
ସେହିରୂପେ ପାଣ୍ଡବଙ୍କର ଜୟଶିରି
ଦାସୀ କରିଅଛି ଗାଣ୍ଡୀବ ଧନୁଧାରୀ ।
କୃଷ୍ଣ ଅରଜୁନ ମୋ କାଣ୍ଡରେ ନିହତ
ହେବେ ତା ନିକଟେ ଦେଖିବ ତୁମ୍ଭ ନେତ୍ର ।
ଅର୍ଜ୍ଜୁନଙ୍କୁ ଗାଣ୍ଡୀବ କୃଷ୍ଣଙ୍କର ଚକ୍ର
ଦେଖିଲେ ମୋର ମୁଖ ନୁହେ ଭୟେ ବକ୍ର ।
ଭୟାକ୍ତ ହୋଇବାରୁ ବସି ଭୟକଥା
କହୁଛ ହୃଦୟରୁ ଛାଡ଼ି ଲଜ୍ଜା ବ୍ୟଥା ।
ସେ ଦୁହିଙ୍କି ଆଜ ଦେଇ ମୁଁ ବଢ଼ାଇ
ବନ୍ଧୁ ତୁଲେ ପଛେ ତୁମ୍ଭଙ୍କୁ ମାରିବଇଁ ।
ମିତ୍ର ହୋଇଣ ଶତ୍ରୁ ପରି ଭୟଙ୍କର
ହବାକୁ ତୁମ୍ଭ ବିନା ଆଉ ନାହିଁ ନର ।
ସେ ଦୁହେଁ ଅବା ମୋତେ କରିବେ ବିନାଶ
ମୁଁ ଅବା ତାଙ୍କ ବଳ କରିଦେବି ଧଂସ ।
ଏ କଥାରେ ମୋର ଭୟ ତ ହେଉ ନାହିଁ
ଶଲ୍ୟ ମୋତେ ନ କହ କଥାରେ ଡରାଇ ।
ମହସ୍ରେ ବାସୁଦେବ ସହସ୍ରେ ଅର୍ଜ୍ଜୁନ
ହେଲେ ଜୀବ ନେଇପାରେ ମୋ କାଣ୍ଡମୂନ ।
ତୁମ୍ଭ ଦେଶ ସ୍ତ୍ରୀଏ ବାଳକ ବୃଦ୍ଧେ ଯାହା
କହୁଥାନ୍ତି ଶୁଣ ହେ ଶଲ୍ୟ ବସି ତାହା ।
ବ୍ରାହ୍ମଣଙ୍କଠାରୁ ମୁଁ ପୂର୍ବରୁ ତ ଶୁଣିଛି
ତେଣୁକରି ତୁମ୍ଭଙ୍କୁ କହିବି ବୋଲୁଛି ।
ମଦ୍ରଦେଶ ଲୋକରେ ପୀରତି ଯେ କରେ
ଅବଶ୍ୟ ସେହୁ ଯାଇ ପଡ଼ଇ ଶୋକରେ ।
ସବୁକାଳେ ତାଙ୍କର ମିଥ୍ୟାରେ ବଚନ
ବାହାରୁଥାଏ ଆଚରଣ ହୀନମାନ ।

ମଦ୍ରଦେଶେ ସ୍ତ୍ରୀଙ୍କ ଆବୃତ୍ତ କିଛି ନାହିଁ
ବିହାର କରନ୍ତି ସେ ମନ ହୁଏ ଯହିଁ ।
ଗୋ ମାଉଁସ ମଦରେ ବୁଡ଼ାଇ ଭୋଜନ
କରନ୍ତି ସେ ଦେଶରେ ଛନ୍ତି ଯେତେ ଜନ ।
ମଦ୍ରକଙ୍କରଠାରେ ବଇର ଯେମନ୍ତ
ହୁଇ ନ କରିବ ଟି ବନ୍ଧୁ କରି ମୋହ ।
ଦେଶଯାକରେ ତ ମଦ୍ରକଦେଶ ମଳ
ଏଣୁ ଜଣା କରି କହୁଛି ମୋର ବଳ ।
ମଦ୍ରକ ଦେଶେ ଶୁଦ୍ଧ କଥା ବିବର୍ଜିତ
ଅଶୁଦ୍ଧରେ କାଳ ନିଅନ୍ତି ହୋଇ ରତ ।
ମଦ୍ରକ ଦେଶ ସ୍ତ୍ରୀ ଗ୍ରୀ ହୋଇଣ ଲଙ୍ଗଳା
ନାଚୁଥାଆନ୍ତି ଧଗଧଗ ହୋଇ ଗଳା ।
ସେ ସ୍ତ୍ରୀଗଣଟିମାନଙ୍କ ପୁଅମାନଙ୍କର—
ଠାରେ ଧର୍ମ ଅଛି ବୋଲିବ କେଉଁ ନର ।
ଏ ବାହାରେ ସେ ଛିଡ଼ା ହୋଇଣ ମୁତନ୍ତି
ପାଣି ଘେନିବାର କଥାଟି ନ ଜାଣନ୍ତି ।
ସେ ଦେଶ ସ୍ତ୍ରୀଗଣଙ୍କର ତୁମ୍ଭେ ତ କୁମର
ଲୋଡ଼ିବାକୁ ଥିବ ହେ କି ଗୁଣ ତୁମ୍ଭର ।
ମଦ୍ରଦେଶେ ଯେବେ ଭିଖାରି ଭିଖ ମାଗେ
ଉଠିଣ ରଡ଼ପୋଡ଼ ମାରନ୍ତି ତାକୁ ଆଗେ ।
ତୁମ୍ଭ ଦେଶ ସ୍ତ୍ରୀଗଣ ଗୁଡ଼ାଏ ଖାଆନ୍ତି
କମ୍ବଳଟାଏ ଟାଏ ଘୋଡ଼ି ହୋଇଥାନ୍ତି ।
ନଖାଗ୍ରରୁ କେଶଯାଏ ଟି ତୁମ୍ଭ ଦୋଷ
କହିଲେ କହି ସରିଯିବ ଏ ଦିବସ ।
ମଦ୍ରକ ସିନ୍ଧୁ ସଉବୀର ପାପଦେଶ
ବୋଲି ସବୁ ମୁଖରେ ହେଉଛି ପ୍ରକାଶ ।
ଯୁଦ୍ଧରେ ମରି ଶୋଇବା ଟି କ୍ଷତ୍ରିୟର
ମୁଖ୍ୟ ଧର୍ମ ଅଟେ ହେ ଶଲ୍ୟ ମନେକର ।
ପ୍ରାଣ ଧନ ମୋର ତ ଦୁର୍ଯ୍ୟୋଧନ ପାଇଁ
ଛାଡ଼ିଦେବି ଜାଣ ହେ ଶଲ୍ୟ ନରସାଇଁ ।
ପାଣ୍ଡୁ ସୁତଙ୍କଠାରୁ ପାଇ ସିନା ଶିକ୍ଷା
ଇଚ୍ଛୁ ଅଛ ମୋହର ତୁମ୍ଭେ ଯୁଦ୍ଧକକ୍ଷା ।
ତୁମ୍ଭର ପରି ଶଏ କହିଲେ ଡରାଇ
ନ ଡରଇ କର୍ଣ୍ଣ ହେ ଶଲ୍ୟ ନରସାଇଁ ।
କ୍ଷତ୍ରିୟ ବୃତ୍ତିକି ତ ଆଶା ମୁଁ କରୁଛି
ଏଣୁ ଯୁଦ୍ଧ ମରଣ ମୋର ଲୋଡ଼ା ଅଛି ।

ଯେଉଁ ଶିକ୍ଷାକୁ ରାମ ଦେଇଛନ୍ତି ମୋତେ
ତାହା ମୁଁ କରୁଅଛି ଟି ଅନୁବରତେ ।
ଯୁଦ୍ଧରୁ ମୋତେ ନିବର୍ତ୍ତାଇବାକୁ ନର
ନାହିଁ ଏ ମହୀଲୋକେ କେହି ମନେକର ।
ଏବେ ମୁଁ କହୁଅଛି ରହ ତୁନି ହୋଇ
ନ କହ ମୋତେ କଥାଗୁଡ଼ାଏ ଡରାଇ ।
ଥିବାରୁ ପଡ଼ି ଦୁର୍ଯ୍ୟୋଧନ ରାଜା କାର୍ଯ୍ୟ
ଜୀଇଅଛି ତୁମ୍ଭେ ହେ ଶଲ୍ୟ ଜାଣ ଆଜ ।
ଆଉ ଥରେ ଯେବେ ବୋଲିବ ମୋତେ ଏହା
ଭାଙ୍ଗିବ ଗଦାରେ ମୋହର ବେନି ବାହା ।
ଦୁଇ କୃଷ୍ଣ କର୍ଣ୍ଣ ଯେ ହେଲେ ରଣେ ହତ
ହୋଇବ ଆଜ ଦେଖିବ ତ ତୁମ୍ଭ ନେତ୍ର ।
ଏ ଅନ୍ତେ ଶଲ୍ୟଙ୍କୁ ବୋଇଲେ ବାହ ରଥ
ଦେଖିବ ପରା ଯୁଦ୍ଧେ ମୋର ସାମରଥ ।
ଶଲ୍ୟ ବୋଇଲେ ହେ ପ୍ରମାଦ ମଦ ପିଇ
ହୋଇଅଛ ତ କର୍ଣ୍ଣ ତୁମ୍ଭେ ଏବେ ବାଇ ।
ଏହା ଜାଣି ହିତବଚନ ଅଉଷଧି
ମିତ ହୋଇଥିବାରୁ ଦେବା ଆମ୍ଭ ବିଧି ।
ହଂସ କାକଙ୍କର ପୂର୍ବରେ ଯେଉଁ କଥା
ପଡ଼ିଛି ତାହା ଶୁଣ କର୍ଣ୍ଣ ଅଧିରଥା ।
ଏହା ଶୁଣିବାର ଉତ୍ତାରୁ ଯାହା ଇଷ୍ଟ
ହେବ ତାହା କରିବ ଆହେ କର୍ଣ୍ଣ ଦୁଷ୍ଟ ।
ମୁଁ ତ ତୁମ୍ଭଠାରେ ଅପ୍ରାଧ କରିନାହିଁ
ମୋତେ ମାରି ଲୋଡ଼ୁଛ କହ ତ କମ୍ପାଇଁ ।
ବିଶେଷେ ସାରଥି ରଥୀର ହିତଭାବ
କହୁଥିବ ଧର୍ମରେ ଛାଡ଼ି ଦେଇ ରାଗ ।
ବଳାବଳ ସେ ସମ ବିଷମ ଆୟୁଧ
ଜ୍ଞାନ ଅସ୍ତ୍ରଯୋଗର ଶ୍ରମ ଖେଦ ଯୁଦ୍ଧ ।
ମୃଗ ପକ୍ଷିରୁତ ଟି ଶଲ୍ୟପ୍ରତିକାର
ସାରଥିର କଥା ଏ କଥା ଜାଣିବାର ।
ଏହି ସକାଶୁଁ ଜାଣ ତୁମ୍ଭଙ୍କୁ ଦୃଷ୍ଟାନ୍ତ
କହିବାର କର୍ଣ୍ଣ ହେ ହୋଇଲା ଉଚିତ ।
ସମୁଦ୍ର ପାଖେ ବୈଶ୍ୟ ଜଣେ ଥିଲା ରହି
ଧାନ୍ୟକା ଶାନ୍ତ୍ୟପୂର୍ଣ ଦେହରେ ତା ବହି ।
ସେ ବୈଶ୍ୟ ପୁଅଙ୍କ ଅଇଣ୍ଠା କାକ ଆସି
ନିତ ଖାଇ ବସେ ଡାଳରେ ହୋଇ ତୋଷି ।

ସେ ବୈଶ୍ୟର ପିଲ୍ଲମାନେ ଯେ ତାହା ଖାନ୍ତି
ମାଂସ ଦଧି ଘିଅ ଅଅନ୍ନ ସେ ନ୍ଦ ବନ୍ତି ।
ବଳଭୁଜ ଅଇଣ୍ଠାଗିଳ ବଳୀ ହୋଇ
ଭାବଇ ମୋହ ପରି ବଳ ଆଉ ନାହିଁ ।
ଏବେ ସେ ସେହିଠାକୁ ଗଲେ ହଂସମାନେ
ଦେଖିଣ ବୈଶ୍ୟପିଲ୍ଲମାନେ ତା ନୟନେ ।
କୁଆକୁ ବୋଇଲେ ଏ କ ହଂସମାନଙ୍କୁ
ଅଧିକ ହେବା ପରି ଆସୁଛୁ ମନକୁ ।
କୁଆ ତାହା ଶୁଣିଣ ଗ୍ରୀବକ ଫୁଲାଇ
ମନେ କଲା ହଂସକୁ ବଳୀୟାର ମୁହିଁ ।
ହଂସଯାକଙ୍କରେ ଟି ବଡ଼ ଯେଉଁ ହଂସ
ତାହାକୁ କହିଲା ସେ କୁଆ କରି ରୋଷ ।
ଆସ ତୁମ୍ଭେ ଆମ୍ଭେ ହେ ବିବାଦ କରିବା
ଯେ ଯେତେଦୂର ଯାଇ ପାରିବା ଉଡ଼ିବା ।
ହଂସମାନେ ତା ଶୁଣି ଟହ ଟହ ହସି
ବୋଇଲେରେ କୁଆ ତୁ ଅଟୁ ବଡ଼ ଦୋଷୀ
ମାନସ ସରେ ଥାଇ ବୁଲନ୍ତୁ ଟି ମହି
ଆମ୍ଭଙ୍କୁ ଜିଣିବାକୁ ଶକତ ତୋ ନାହିଁ ।
ସେ କୁଆ ଶୁଣିକରି ହଂସଙ୍କର ବଚନ
ମୂର୍ଖପଣେ କହିଲା ନୋହିଣ ମଉନ ।
ଶଏ ଗତି ମୋର ଦେହରେ ଅଛି ରହି
ଗତିକ ଯିବ ଶଏ ଯୋଜନ ଟି ମୁହିଁ ।
ଉଡ଼ୀନ ଅବଡ଼ୀନ ପ୍ରଡୀନ ନଡ଼ୀନ
କୁଡ଼ୀନ ପରାଡ଼ୀନ ପରିଡ଼ୀନ ଡୀନ ।
ସୁଡ଼ୀନ ଅଭିଡୀନ ସଡୀନ ବିଡୀନ
ମହାଡୀନ ନିଡ଼ୀନଡ଼ୀନ ଯେ ଡ଼ୀନୋଡ଼ୀଂ ।
ସୂନଡୀନାବଡ଼ୀନ ଦୁଡ଼ୀନ ସମ୍ପାତ
ସମୁଦାୟ ବ୍ୟତିରେକ ସେ ଗତ ଗତ ।
ପ୍ରତିମତ ନକୁଳଗତି ଆଦ୍ଧ ଗତି
ମୋହରଠାରେ ଜାଣ କରିଛନ୍ତି ସ୍ଥିତି ।
କହ ଏଥିରୁ କେଉଁ ଗତି କରି ମୁହିଁ
ଆକାଶରେ ଯିବ ତ ଥିବ ତ ତୁମ୍ଭେ ଚାହିଁ
ତୁମ୍ଭଠାରେ ଯେଉଁ ଗତିଟିମ ନ ଅଛି
ତାହା ମଧ ମୋତେ ଦେଖାଅ ମୁଁ ବୋଲୁଛି
ଏହା ଶୁଣି ହଂସ ଗୋଟିଏ ହସି ଦେଇ
କୁଆକୁ ବୋଇଲାରେ ହେଲୁକ ତୁ ବାଇ ।

ଶଏକ ପାତ ତ ଜଣାଅଛି ତୋତେ
ଗୋଟିଏ ପାତ ପକ୍ଷୀ ଜାଣନ୍ତି ଜଗତେ ।
ଆକାଶେ ଯିବି ମୁଁ ଗୋଟିଏ ପାତ କରି
ଉଡ଼ ଯେଉଁ ପାତରେ ଇଚ୍ଛା ଅଛି ତୋର ।
କୁଆମାନେ ତା ଶୁଣି ହୋଇ ହସ ହସ
ବୋଇଲେ ଏକ ପାତ ଜାଣି କରି ହଂସ ।
କୁଆକୁ ଜିଣିବାକୁ କରିଛି ସାହସ
ବଳ୍ପୁରିଲେ ଏଥିରୁ ନାହିଁ ବଡ ଦୋଷ ।
ଏହି କାଳେ ସେ ଦୁଇ ପକ୍ଷୀ କ୍ରୋଧ ବହି
ଉଡ଼ିଲେ ଆକାଶରେ ଗତିକ ଦେଖାଇ ।
ହଂସ ଏକ ପାତ ଯେ କୁଆ ଶଏ ପାତ
କରି ଆକାଶରେ ଉଡ଼ିଲେ ଅବିରତ ।
କାକଗତି ବିଚିତ୍ର ଦେଖି କୁଆପନ୍ତି
ପରଶଂସା କରିଲେ ରଡ଼ି କରି ଅତି ।
ଏ ବାହାରେ ଯେ ହଂସମାନଙ୍କୁ ଅନାଇଁ
ଉଡ଼ିବା କୁଆ ଜୟବାଞ୍ଛା କଲେ ସେହି ।
ନାନାଗତି ଯାକର ଦେଖାଇ ଉଡ଼ିଲେ
ଡ଼ାଳେ ବସି ଦେହ ଫୁଲାଇ ଝାଡ଼ିଦେଲେ ।
ଉଡ଼ା ହଂସ ମନ୍ଦ କରନ୍ତେ ଗତି ଭଳି
କାକ ଗତିବଳେ ସେକାଳେ ଚଲ୍ଲ ଚଳି ।
ତା ଦେଖି କୁଆମାନେ କହିଲେ ହଂସକୁ
ଆମ୍ଭ କୁଆ ବଳାଲ ତୁମ୍ଭର ହଂସକୁ ।
ଉଡ଼ିବା ହଂସ ଶୁଣି କୁଆଙ୍କ ବଚନ
ପଶ୍ଚିମ ସମୁଦ୍ରକୁ କଲା ସେ ଗମନ ।
କୁଆ ଦ୍ୱୀପ ଦ୍ରୁମନ ଦେଖି ସେ ସମୁଦ୍ରେ
ଭାବିଲା ପଡ଼ିଲି ମୁଁ ଉଡ଼ିବା ଅଭଦ୍ରେ ।
ମନେ କଲା ବଡ ଶ୍ରାନ୍ତ ତ ହୋଇଲିଣି
କି କରି ଯିବ ଏବେ ମୋର ପ୍ରାଣ ଘେନି ।
ଏ ସମୁଦ୍ରେ ବହୁତ ଛନ୍ତି ଦୁଷ୍ଟଜନ୍ତୁ
ପଡ଼ିବାକ୍ଷଣି କରିଦେବେ ମୋର ମୃତ୍ୟୁ ।
ଏହିରୂପେ ସେ କୁଆ କରିଣ ଭାବନା
ହୋଇଲା ଉଡ଼ିବାରେ ଅତି ଦୁଃଖମନା ।
ହଂସ କୁଆର ମନ ଜାଣି କରି ଚାହିଁ
ରହିଲା ଆଉ ଆନଠାକୁ ସେ ନ ଯାଇ ।
କୁଆତ ବଡ଼ ଶ୍ରାନ୍ତ ଉଡ଼ ହୋଇଥିଲା
ମନ୍ଦ ମନ୍ଦ ହୋଇ ସେ ହଂସ ପାଶେ ଗଲା

କୁଆର ଶ୍ରମ ଜାଣି ସାଧୁମାର୍ଗ ଧରି
କହିଲା ସେହି ହଂସ ବଚନ ସଗର୍ବ ।
ଶଏ ଏକ ଉତ୍ତର ପାତ ମୋ'ର ଆଗେ
କହୁତ ଥିଲୁ ବସ ଡ଼ାକେ ଅନ୍ତ ରାଗେ ।
ଏବେ କେଉଁ ପାତ କରିଣ ଦୁଇ ଡେଣା
ପାଣିରେ ବୁଡ଼ାଇଲୁ ବୁଦ୍ଧି କରି ବଣା ।
ଏ ବାହାରେ ତୁଣ୍ଡରେ ଧରିଅଛୁ ପାଣି
ଏ ଗତି ତ ତୋର ମୁଁ ପାରୁନାହିଁ ଜାଣି ।
ଜୀବନରେ ଯେବେ ତୁ କରିଅଛୁ ଆଶ
ମୋ ଦୁଇ ପାଦ ଧରି ଶରଣଟି ପଶ ।
କାକ ବୋଇଲା ମୁଁ ତ ବସ୍ତାଖିଅ ଜାତି
ହେଲେ ଦୋଷ ତା କ୍ଷମାକର ମହାମତି ।
ଆଜଠାରୁ ମୋହର ଗରବ ବୁଦ୍ଧିଟି
ଛାଡ଼ିଲି ପାଇଲି ତ ନବମ ଦଶାଟି ।
ଏବେ ମୋତେ ହେ ତୁମ୍ଭେ ପିଠିରେ ବସାଇ
ସମୁଦ୍ର ଦ୍ୱୀପୁଟିକେ ଛାଡ଼ିଦିଅ ନେଇ ।
ଏହା ଶୁଣି ହଂସ କୁଆକୁ ପୃଷ୍ଠ ଦେଶେ
ବସାଇ ଆକାଶରେ ଉଡ଼ିଲା ହରଷେ ।
ଯେଉଁଠାରେ ପୂର୍ବେ ଦୁହେଁ ଗୋଳ କଲେ
ସେଠାରେ ଆଣି ହଂସ କୁଆକୁ ଛାଡ଼ିଲେ ।
କୁଆକୁ ସାନ୍ତ୍ୱନା କରି ସେ ମହାହଂସ
ହସ ହସ ହୋଇଣ ଚଳିଲା ନିଜ ଦେଶ ।
ଅଇଣ୍ଠିଖିଆ କାକ ଗୀଇଲା ସଗର୍ବ
ରହିଲା ସେ ସ୍ଥାନରେ ଦେହଶ୍ରାନ୍ତ ମାରି ।
ଆପଣ କୁଆ ପରି ଧୃତରାଷ୍ଟ୍ର ସୁତ—
ମାନଙ୍କ ଅଇଣ୍ଠାରେ କଲ ପୃଷ୍ଟ ଗାତ୍ର ।
ଏହି ସକାଶୁ ଭଲ ମନ୍ଦକୁ ନ ଜାଣି
ଅର୍ଜୁନ ମାରିବ ବୋଲୁଛ ହୋଇ ଠାଣି ।
ଭୀଷ୍ମ ଦ୍ରୋଣ ତୁଲେ ତୁମ୍ଭଙ୍କୁ ଛାଡ଼ ଦକା
ଅର୍ଜୁନ ଜିଣିଲେ ବିରାଟପୁରେ ଏକା ।
ଅରଜୁନ ତୁମ୍ଭର ଭାଇର ମୁଣ୍ଡକୁ
କାଟିବାଦନ କାହିଁ ଥୋଇଲ ବଳକୁ ।
ଦଇତବନେ ଚିତ୍ରସେନ ଭୟେ ତୁମ୍ଭେ
ଆଗ ପଳାଇଲ ତା ଶୁଣିଅଛୁ ଆମ୍ଭେ ।
ଦୁର୍ଯ୍ୟୋଧନ ରାଜାଙ୍କୁ ବାନ୍ଧି ଚିତ୍ରସେନ
କରୁଥିଲା ସ୍ୱରଗପୁରକୁ ଗମନ ।
ଅରଜୁନ ଚିତ୍ରସେନଙ୍କୁ ରଣେ ଜିଣି
ଆଣିଲେ ଫେଇ ଦୁର୍ଯ୍ୟୋଧନ ନରମଣି ।
ଭୀଷ୍ମ ଗୁରୁ ରାମ ଶ୍ରୀକୃଷ୍ଣ ଅର୍ଜୁନର
ମହିମା କହିଛନ୍ତି ଯା ଯା ମନେ କର ।
ଯେରୂପେ ଦ୍ୱିପଦରେ ଦ୍ୱିଜ ଅଟେ ବର
ସେରୂପରେ ତୁମ୍ଭଙ୍କୁ ଅରଜୁନ ସାର ।
ଏହିକ୍ଷଣି ଶ୍ରୀକୃଷ୍ଣ ଅର୍ଜୁନ ଦୁହିଙ୍କି
ଦେଖିବ ତ ଭୟେ ଏତେ ହୁଅ କାହିଁକି ।
ଅର୍ଜୁନ କାଣ୍ଡେ ମଣ୍ଡି ହେବ ଯେବେ ଖଣ୍ଡି
ଛାଡ଼ିଦେବେ ତେବେ କହିବା ଘରିଖଣ୍ଡି ।
ଦେବ ନର ପକ୍ଷରେ ଖ୍ୟାତ କୃଷ୍ଣାର୍ଜୁନ
ତାଙ୍କୁ ଦୋଷ କରି ନ ଯାଅ ଯମସ୍ଥାନ ।
କୃଷ୍ଣ ଅର୍ଜୁନ ତ ଅଟନ୍ତି ଚନ୍ଦ୍ର ସୂର୍ଯ୍ୟ
ଜନୁଜନୁଲା ପୋକ ତୁମ୍ଭେ ହେ ସୁତାମ୍ବଜ ।
ଏହି କଥା ଜାଣିଣ କୃଷ୍ଣ ଅର୍ଜୁନଙ୍କୁ
ଅବଜ୍ଞା ନକର ହେ କହୁଛି ତୁମ୍ଭଙ୍କୁ ।
ଏହିଠାରେ ହଂସ କାକାସୁ ଉପାଖ୍ୟାନ
ଶେଷ କଲେ ସତ୍ୟବତୀଙ୍କ ନନ୍ଦନ ।
ସେ ବ୍ୟାସଙ୍କର ପାଦପଦ୍ମ ବନ୍ଦି ଚିତ୍ତ
କହଇ ଗୀତେ କୃଷ୍ଣସିଂହ ନରପତି ।

## କର୍ଣ୍ଣ, ପର୍ଶୁରାମ ଓ ଦ୍ୱିଜଅଭିଶାପକୁ ଭୟ କରିବା

କର୍ଣ୍ଣ ବୋଇଲେ ଆହେ କୃଷ୍ଣ ଅରଜୁନ—
ବଳ ବୀର୍ଯ୍ୟ ଯେତେ ମୁଁ ଜାଣଇଁ ରାଜନ
ସବୁ ଶସ୍ତ୍ରଭୃତ୍ୟମାନଙ୍କେ ଅପ୍ରଧୃଷ୍ୟ
ହେଲେ ତାହାଙ୍କୁ ମୁଁ କରିବ ଯେ ଧୃଷ୍ୟ ।
କେବଳ ପର୍ଶୁରାମ ଶାପକୁ ଡରୁଛି
ନୋହିଲେ ମାରନ୍ତି ମୁଁ ଅର୍ଜୁନ ଶ୍ରୀହରି ।
ପୂର୍ବେ ମୁଁ ଦ୍ୱିଜରୂପେ ରାମଠାକୁ ଗଲି
ବ୍ରହ୍ମାସ୍ତ୍ର ତାଙ୍କଠାରୁ ଶିକ୍ଷା କରୁଥିଲି ।
ଦିନେ ରାମ ଶ୍ରାନ୍ତ ହୋଇ ମୋର ଉରୁରେ
ମୁଣ୍ଡଦେଇ ଶୋଇଲେ ଅତ୍ୟନ୍ତ ସୁଖରେ
ଇନ୍ଦ୍ର ବଜ୍ରକୀଟ ହୋଇ ମୋ ଦେହ କାଟି
ଟେବାଇ ଦେଲେ ଯାଇ ରାମଙ୍କ କାନୁଟି ।
ଗୁରୁଙ୍କ ନିଦ୍ରା ଭାଙ୍ଗିବ ବୋଲି ମୁହିଁ
ପାଇଲେ ଦୁଃଖ ସୁଖ ଲେଉଟାକଲି ନାହିଁ ।

ଦେହକୁ କଣଦେଇ ପଥର ପରସ୍ତେ
ବସିଥିଲି ବୋହ୍ଲଲା ରକ୍ତ ଅନ୍ତଃସ୍ତେ ।
ଏହିକାଳରେ ପର୍ଶୁରାମ ଚେତା ପାଇ
ଦେଖିଲେ ରକତ ମୋ ଜଙ୍ଘୁ ଯାଏ ବହି ।
ବୋଇଲେ ମୋତେ ତୁମ୍ଭେ ନୁହଁ ତ ଦ୍ୱିଜାତି
ସତ କରି କହ ତ ମୋ ଆଗରେ ଜାତି ।
ମୁଁ ବୋଇଲି ମୁହିଁ ଅଟଇ ସୁତସୁତ
ମୋଠାରେ ନୁହ ଆହେ ଗୁରୁ କ୍ରୋଧଚିତ୍ତ
ରାମ ବୋଇଲେ ଆହେ ଶସ୍ତ୍ରରେ ଲାଳସୀ
ହୋଇଣ ବଞ୍ଚାଇଲ ଦ୍ୱିଜରୂପେ ଆସି ।
ଏ ଯେବେ ଅସ୍ତ୍ର ସବୁଦିନେ ନ ଆସିବ
କେବଳ ମନ୍ତ୍ରବନ କହୁଛି ଆସିବ ।
ବ୍ରାହ୍ମଣ କ୍ଷତ୍ରିୟରୁ ତୁମ୍ଭେ ତ ବାହାର
କେହି ବ୍ରହ୍ମଅସ୍ତ୍ର ସ୍ପର୍ଶିବ ନିରନ୍ତର ।
ସେହି ଅସ୍ତ୍ର ଆଜି କରି ମୁଁ ଆହେ ଶଲ୍ୟ
ହୋଇବ ଅରଜୁନ ହୃଦୟର ଶଲ୍ୟ ।
ଅରଜୁନ କାଣ୍ଡକୁ ମୋ ବ୍ରହ୍ମାସ୍ତ୍ର କାଣ୍ଡେ
ନିବାରିବ ନଷ୍ଟେ ଦେଖିବ ଯୁଦ୍ଧଦାଣ୍ଡେ ।
ପାର୍ଥ ଚନ୍ଦ୍ର ବଳେ ପାଣ୍ଡବ ସିନ୍ଧୁ ଘୋଟି
ଆସୁଥିବେ ମୋ ଶର ଦେଖିବେ ରାହୁପାଟି ।
ସୁରାସୁର ବିଜେତା ପାର୍ଥ ଅମ୍ବରେଣ
ମୋର କାଣ୍ଡଘାତେ ବସିବେ କରି ଚିନ୍ତା ।
ମୋ ଅସ୍ତ୍ରରେ ତାହାଙ୍କ ଅସ୍ତ୍ରକୁ ବିନାଶି
ତାଙ୍କ ମାଂସେ କରିବି ବଳୁଆଙ୍କୁ ତୋଷି ।
ଅରଜୁନ ସୂର୍ଯ୍ୟଙ୍କୁ ମୋର ଶର ସଙ୍ଘ
ଘୋଡ଼ାଇ ଦେବ ଯୁଦ୍ଧାକାଶେ ହୋଇ ମେଘ
ଯୁଦ୍ଧରେ ତ ଅର୍ଜୁନ ଅଗ୍ନି ହେବ ଘୋର
ପକାଇବ ନାଶି ତା ମୋର ଶର ଧାର ।
ଅର୍ଜୁନ ଶରବ୍ରାତ ବାତ ହୋଇ କରି
ଆସିଲେ ଆଡ଼ିବ ମୋ ରୁଣ୍ଡ ଗିରି ପରି ।
ଖାଣ୍ଡବବନେ ଦେବତାଙ୍କୁ ଯେ ଜିଣିଲେ
ମୋ ବିନା ଆନ ତାଙ୍କୁ କେ ଯୁଝିବ ଭଲେ
ଆଶୀବିଷ ସଦୃଶ ଯେଉଁ ବାଣଜାଳ
କରାଇବ ଅର୍ଜୁନ ଦେହଙ୍କୁ କବଳ ।
ମୋ ଶର ଅନ୍ତକର ମୁଖେ ଅର୍ଜୁନଙ୍କୁ
ବଳି ଦେବ ଶଲ୍ୟ ହେ କହୁଛି ତୁମ୍ଭଙ୍କୁ ।

ଅର୍ଜୁନ ପରାକ୍ରମ ମୁଁ କି ନ ଜାଣଇଁ
ମୂର୍ଖପଣେ ମୋତେ କହୁଛ ତାହା ତାହା ।
ତୁମ୍ଭର ପରି ଶତସଂଖ୍ୟା ଲୋକଙ୍କର
ପ୍ରାଣ ନେଇ ପାରେ ହେ ଶଲ୍ୟ ମନେ କର
କାଳବଶରେ ସବୁ ସହୁଅଛି ମୁହିଁ
ଏଥିକି କେତେ କହ ଲାଜ ଛାଡ଼ି ଦେଇ ।
ସାରଥି ହୋଇ ମୋର ରଥରେ ବସିଛ
ଅର୍ଜୁନ ପରାକ୍ରମ କହି ଡ଼ରାଉଛ ।
ଏ ସକାଶୁଁ ଜାଣୁଛି ମିତ୍ରଦ୍ରୋହୀ ହୋଇ
ତୁମ୍ଭଠାରୁ ଅଧିକ ମହୀରେ କେ ନାହିଁ
ତୁମ୍ଭଙ୍କୁ ବୋଲିବାରୁ ଦୁର୍ଯ୍ୟୋଧନ କାର୍ଯ୍ୟ
ନାଶ ହୋଇ ଯିବାକୁ ଡରୁଛି ମୁଁ ଆଜ ।
ହିତାକାଂକ୍ଷୀ ଲୋକକୁ ମିତ୍ର ବୋଲି କହି
ଅହିତାକାଂକ୍ଷୀ ଲୋକ ଶତ୍ରୁ ଟି ବୋଲାଇ ।
ଦୁର୍ଯ୍ୟୋଧନଠାରେ ମୋ ଯେତେ ମିତ୍ରଗଣ
ଆଜି ଦେଖାଇବ ପାର୍ଥକୁ ବିନ୍ଧ ବାଣ ।
ଆଜି ମୋ ବ୍ରହ୍ମାସ୍ତ୍ରେ ଅର୍ଜୁନ ଯମ ଭେଟି—
ଯିବ, ନ ଲାଗିଲେ ମୋ ରଥର ଚକୁଟି ।
ଇନ୍ଦ୍ର ଯମ ବରୁଣ କୁବେର ହେଉରୁ
ନୁହଇ ମୁଁ ଶଲ୍ୟ ହେ ଯୁଦ୍ଧଦାଣ୍ଡେ ଖାରୁ ।
ଅର୍ଜୁନ କୃଷ୍ଣ ସକାଶରୁ ମୋର ଭୟ
କହ କାହିଁପାଇଁ ବା ହେବଟି ଉଦୟ ।
ପୂର୍ବେ ମୁଁ ଭୁଲୁ ଭୁଲୁ ଦ୍ୱିଜ ଜଣକର
ମାଇଲି ବାଛୁରୀ ନ ଜାଣି ବିନ୍ଧ ଶର ।
ସେ ଦ୍ୱିଜ ବୋଇଲେ ଅସାବଧାନ ହୋଇ
ବାଛୁରୀକି ମୋ କହ ମାଇଲୁ କିମ୍ପାଇଁ ।
ଏହି ସକାଶରୁ ଟି ଯୁଦ୍ଧକାଳେ ରଥ—
ଚକ ତେ ବୁଡ଼ି ରହି ଯିବ ମହୀପଥ ।
ଏବେ ସେ ଦ୍ୱିଜର ବଚନ ମନେ ଗୁଣି
କି ହେବ ଟି ବୋଲି ଭାବୁଛି ପୁଣି ପୁଣି ।
ବ୍ରାହ୍ମଣ ଶାପ ଦେବାକାଳେ ବ୍ରାହ୍ମଣଙ୍କୁ
ଯାଚିଲି ଗାଈ ହାତୀ ଅଶ୍ୱ, ରତନକୁ ।
ତେବେହେଁ ବ୍ରାହ୍ମଣ ତା ନ କଲେ ସମ୍ମତ
ବୋଇଲେ ମିଥ୍ୟା ନୋହେ ମୋହର ଭାଷିତ
ଶୁଣିଣ ତ ମୋର ଗୁପତ କଥାଯାକ
ଶୁଣ ଶଲ୍ୟ ଯୁଝିବା ବାଞ୍ଛି ସ୍ୱର୍ଗଲୋକ ।

ବଚନରେ ଡରାଇଲେ ମୁଁ ନ ଡରଇ
ରହ ଶଲ୍ୟ କଥା ନ କହ ତୁମ୍ଭ ହୋଇ ।
ମୋହର ତ ତୁମ୍ଭେ ହେ ନୃପ ବଳୀୟାର
ଏଣୁ ଯେ କହୁଅଛ ଭୟରେ ଉତ୍ତର ।
ପରାକ୍ରମ କରିବା ପାଇଁ ଏ ମହ୍ୟରେ
ଜନମିଛୁ ମୁହିଁ କି ପଡ଼ିବ ଭୟରେ ।
ପୂର୍ବରୁ ତ କହୁଛ ଅପ୍ରିୟ ବଚନ
କହିଲେ ତା ସୁହଇବ ମୋହ ଅପଘନ ।
ସେ କଥା ମାନ ଧୃତରାଷ୍ଟ୍ର କାର୍ଯ୍ୟ ଯେନ
ନ ହୋଇବ ତୁମ୍ଭେ ମୋ ହାତେ ଯମସ୍ଥାମ
ପଣ୍ଡିତ ହୋଇଅଛ ସାରଥି ମୋ ରଥେ
ଏହା ଜାଣି କରୁପେ ମାରିବ ମୋ ହାତେ ।
ଶଲ୍ୟ ବୋଇଲେ କର୍ଣ୍ଣ ହେଲ କି ହେ ବାଇ
ତୁମ୍ଭ ପରି ସହସ୍ରେ ମାରି ମୁଁ ପାରଇ ।
କର୍ଣ୍ଣ ବୋଇଲେ ହେ ତୁମ୍ଭର ଦେଶ ଗୁଣ
ଯା ଶୁଣୁଛି ତାହା କହିବି ଶଲ୍ୟ ଶୁଣ ।
ବ୍ରାହ୍ମଣେ ତ ଘରଆଡ଼ରେ ବୁଲୁଥାନ୍ତି
ଶୁଣନ୍ତି ଯାହା ପେଟ ରଖି ନ ପାରନ୍ତି ।
ତାହାଙ୍କଠାରୁ ମୁହିଁ ଧୃତରାଷ୍ଟ୍ର ଆଗେ
ଶୁଣିଛି ଯାହା ସେ କହିଲେ କଥା ବାଗେ ।
କହିବି ସିନା ତାହା ଶଲ୍ୟ ମୁଁ ତୁମ୍ଭଙ୍କୁ
ମୋଠାରେ ନ କରିବ କେବେ ହେ ରାଗକୁ
ହିମାଳୟ ଗଙ୍ଗା ଯମୁନା ସରସ୍ୱତୀ
କୁରୁକ୍ଷେତ୍ର ଆଦି ତୀର୍ଥଙ୍କୁ ତହିଁ ସ୍ଥିତି ।
ନୋହିବାରୁ ବାହ୍ଲିକ ଦେଶରେ ଯେ ନର
କରଇ ସେ ହୁଅଇ ଯମଙ୍କ କିଙ୍କର ।
ବାହ୍ଲିକ ଦେଶେ ଅଛି ଗୋବର୍ଦ୍ଧନ ବଟ
ସୁଭଦ୍ର ନାମେ ଦେଖା ତା ମୂଳେ ପ୍ରକଟ ।
କାର୍ଯ୍ୟ ଥିବାରୁ ମୁଁ ବାହ୍ଲିକଦେଶେ ଯାଇ
ଦିନାକେତେ ରହିଥିଲି ହେ ନରସାଇଁ ।
ସେଠାରେ ଥିବା ଲୋକମାନଙ୍କ ଆଚାର
ଯା ଦେଖିଛି ତାହା ଶୁଣ ହେ ନରବର ।
ଏ ବାହାରେ ଯେ ଦେଶେ ଶାକଳ ନଗର
ଅପଗା ନାମେ ନଦୀ ବହେ ନିରନ୍ତର ।
କାର୍ତ୍ତିକ ନାମେ ତହିଁ ବାହ୍ଲିକ ଅଛନ୍ତି
ଦୁର୍ବୃତ୍ତି କଥାଯାକ ଯୋଡ଼ କରୁଥାନ୍ତି ।
ଗୋ ମାଉଁସ ମଦରେ ବୁଡ଼ାଇ ଭୋଜନ
କରୁଥାନ୍ତି ମୁଖ ହେବାକୁ ପ୍ରତିଦିନ
କୁସୁମ ଚନ୍ଦନକୁ ଦେହରେ ଲଗାଇ
ବୁଲୁଥାନ୍ତି କଟିରେ ଲୁଗାକୁ ନ ବାନ୍ଧି ।
ସ୍ତ୍ରୀମାନେ ମଧ୍ୟ ତାଙ୍କର ସେହି ବେଶ
ହୋଇ ତୋଷୁଥାନ୍ତି ସେ ପୁଂସଙ୍କ ମାନସ ।
ମଦିରା ଭାଣ୍ଡରେ ପଶୁ ପରାୟେ ସୁରତ
କରୁଅନ୍ତି ଦିବସେ ଲାଜ ଛାଡ଼ି ମତ୍ତ ।
ଗାଇଲେ ଗୀତ ଗଧସ୍ୱରକୁ ନିନ୍ଦନ
କହିବେ ଏ ସ୍ୱର ବାହାରେ ଅବଛିନ୍ନ ।
ସ୍ତ୍ରୀମାନଙ୍କର ଯାହାକୁ ମନ ପ୍ରବର୍ତ୍ତଇ
ଯାଆନ୍ତି ତାଠାକୁ ବଲ୍ଲଭ ଥାଏ ରହିଁ ।
ଅଲେ ରଣ୍ଡି ଅଲେ ଭୁମୁଣ୍ଡପୋଡ଼ିବୋଲି
ସେ ଦେଶେ ସ୍ତ୍ରୀଏ ହୁଅନ୍ତି ବୋଲବୋଲି ।
ସେ ଦେଶ ଶର୍ମାବନେ ବସି ପୁରୁଷକୁ
ଜଗିଥାନ୍ତି ସ୍ତ୍ରୀଏ ସୁରତ ଦେବାକୁ ।
ପୁରୁଷ କେବେ ତୀଙ୍କୁ ଦେଖି କଲେ ନାହିଁ
ବଳେ ବଳେ ମିଳିତ ହୁଅନ୍ତି ସେ ଯାଇ ।
ପୁରୁଷେ ସେହିରୂପେ ଜଗି ଶର୍ମାବନ
କରନ୍ତି ସ୍ତ୍ରୀ ରତିଭୋଗ ହେ ରାଜନ ।
ଏ ବାହାରେ ଯେ ଥେଣ୍ଟ ଖଣ୍ଟ ହୋଇଗୋଷ୍ଠି
କରନ୍ତି ସେ ସ୍ଥାନରେ ଧନ ବସ୍ତ୍ର ଲୁଟି ।
ଏହି ରୂପେ ତ ଗୁଣ ତୁମ୍ଭର ଦେଶରେ
କମ୍ପା ଶଲ୍ୟ ଲୋକେ କହିବେ ତହିଁ ଘର ।
ତୁମ୍ଭେ ସେ ଦେଶେ ରାଜା ହୋଇ ଲୋକଙ୍କର
ପାପ ପୁଣ୍ୟ ଷଡ଼ଭାଗକୁ ଭୋଗ କର ।
ଏଥିକି ଅନୁରୂପ ତୁମ୍ଭର କପାଳେ
ଲେଖା ହୋଇଛି ସେ ଫଳିବ ଅନ୍ତଃକାଳେ
ସେ ଦେଶରେ ପୁଣି ରାକ୍ଷସୀଟାଏ ଅଛି
ସ୍ତ୍ରୀ ଯେନ ଗୀତ ଗାଏ ସେ ଲାଜ ମୁର୍ଚ୍ଛି ।
ଗଧ ଉଟ ଗାଈ ମାଉଁସ ସେ ଦେଶର
ଯେ ନ ଖାଏ ନ ବସେ ସେ କାହାମାଶରେ
ମାତା ପିତା ଯେ ଶାଶୁ ଶ୍ୱଶୁର ଭଗିନୀ
ଅତିକ୍ରମ କରନ୍ତି ମର୍ଯ୍ୟାଦା ନ ମାନି ।
ପିତୃ ଦେବତାଏ ସେ ଦେଶ ଲୋକଙ୍କର
ଛୁଇଁଲେ ପାଣି କରନ୍ତି ନର୍କରେ ଘର ।

କୁକ୍କୁର ହଗିଥାଏ ଯେଉଁ ଅଟ୍ଟିକାରେ
ଘୃତ ଗନ୍ଧ ଖାନ୍ତି ତହିଁରେ ନିଃଶଙ୍କରେ ।
ମେଣ୍ଢା ଉଷ୍ଟ୍ର ଗଧ ଯେ ଦୁଧ ତାହାଙ୍କର
ଅବିଚ୍ଛିନ୍ନେ ଅଟଇ ଭୋଜନ ଆହାର ।
ସେହି ଦେଶରେ ବର୍ଣ୍ଣସଙ୍କର ଦୋଷ ତ୍ରୁଟି
ସବୁ ଆଡ଼ରୁ ଯାଇ ରହିଅଛି ଘୋଟି ।
ତୁମ୍ଭ ଦେଶେ ପାଣି ପିଅଇ ଯେଉଁ ଜନ
ସ୍ୱର୍ଗ ଦେଖି ନ ପାରେ କେବେ ତା ନୟନ
ତୁମ୍ଭ ଦେଶ ତିନି ଗୋଟିକୁ ପାଞ୍ଚନଦୀ
ବହୁଅଛନ୍ତି ଶଲ୍ୟ ମହୀତଳ ଭେଦି ।
ସେ ପାଞ୍ଚ ନଦୀରେ ବିପାଶା ନଦୀ ଯେହି
ପିଶାଚ ମିଥୁନ ଟି ଛନ୍ତି ତହିଁ ରହି ।
ବହି ହୀକ ଅଟେ ସେ ଦୁହିଙ୍କର ନାମ
ଶୁଣ ଏବେ ହେ ଶଲ୍ୟ ପୁରୁଷ ଅଧମ ।
ସେ ଦୁହେଁ ତ ସେ ଦେଶ ଲୋକଙ୍କୁ ସର୍ଜିଲେ
ଏ ହେତୁ ଦେଶ ନାମ ବାହ୍ଲିକ ବୋଇଲେ ।
ଏଣୁ ସ୍ୱନକନ୍ୟା ଲେଖାରେ ଯାଅ ତୁମ୍ଭେ
ଧର୍ମ ଜାଣ ବୋଲି ବୋଲିବୁଁ କେହି ଆମ୍ଭେ
ତୁମ୍ଭ ଦେଶେ ରାକ୍ଷସୀ ଉଲୁଖଳ ମାନେ
ଅଣ୍ଟାରେ ବାନ୍ଧି ବୁଲୁଥାଏ ସବୁବେଳେ ।
ବୋଲଇ ବାହ୍ଲିକ କାଳଙ୍ଗ କାରସ୍କର
ମାହିଷକ ଦେଶେ ନ ଯିବ ସାଧୁନର ।
ବେଦ ଯଜ୍ଞ ଦେବ ପୂଜାକୁ ମନୁଁ ଛାଡ଼ି
ଅଛନ୍ତି ସେ ଦେଶେ ବ୍ରାହ୍ମଣ ଧାଡ଼ି ଧାଡ଼ି ।
ବସାନ୍ତି ସଉବୀର ପ୍ରସ୍ଥଳ ଆରଟ୍ଟ
ମୁଦ୍ରାବ ଦେଶଲୋକେ ଆଚାର ବିଭ୍ରଷ୍ଟ ।
ଏ ବାହାରେ ବ୍ରାହ୍ମଣ ଜଣେ ଆସି ମୋତେ
କହିଅଛନ୍ତି ତୁମ୍ଭ ଦେଶ କଥା ଯେତେ ।
ତାହା କହିବି ଏକମନ ହୋଇ ଶୁଣ
ଛାଡ଼ିବ କେହି ତୁମ୍ଭେ ହିଜାଡ଼ିର ଗୁଣ ।
ସବୁ ଦେଶ ଧର୍ମ ରହିଛି ପୂର୍ଣ୍ଣ ହୋଇ
ବାହ୍ଲିକଦେଶେ ଧର୍ମ ଲେଶକରେ ନାହିଁ ।
ଦ୍ୱିଜଙ୍କଠାରୁ ଶୂଦ୍ର ଯାଏ ପରସ୍ପରେ
ଏକଜାତି ହୁଅନ୍ତି କାଳର ବଶରେ ।
ପଞ୍ଚ ସ୍ତ୍ରୀଟିକୁ ବାହ୍ଲିକ ଲୋକେ ନେଇ
ଭୋଗ କଲେ ତାଠାରୁ ରତିସୁଖ ପାଇ ।

ସେ ସକାଶୁଁ ଯେ ସ୍ତ୍ରୀ ବିମୁଖ ହୋଇଲା
କ୍ରୋଧରେ ବାହ୍ଲିକଯାକଙ୍କୁ ଶାପ ଦେଲା ।
ବୋଇଲା ଆଜଠାରୁ ତୁମ୍ଭ ସ୍ତ୍ରୀଯାକ
ହେବେ ବ୍ୟଭିଚାରିଣୀ ଛାଡ଼ି ମନୁ ଦକ ।
ଭାଇ ଯେ ଭଉଣୀକ କରାଇ ସୁରତି
ଭଣଜା ଭାଗ ନଏ ହୋଇଲେ ଅପ୍ରୀତି ।
ବାହ୍ଲିକ ଦେଶେ ବିନା ଆଉ ସବୁ ଦେଶ
ଯାକରେ ହୋଇଅଛି ଧରମ ପ୍ରକାଶ ।
ଏ ସକାଶୁଁ ଶଲ୍ୟ ମୁଁ କହୁଛି ତୁମ୍ଭଙ୍କୁ
ତୁମ୍ଭେ ନ କହିବଟି ଧର୍ମରେ ଆମ୍ଭଙ୍କୁ ।
ବ୍ରହ୍ମା ମଧ୍ୟ ତୁମ୍ଭର ଧର୍ମଟିକ ଜାଣି
ପୂର୍ବେ ଧିକ ବୋଲି ଉଚ୍ଚାରିଛନ୍ତି ବାଣୀ ।
ସବୁ ଦେଶଯାକ ବାହ୍ଲିକ ଦେଶ ମଳ
ନୃପଙ୍କେ ମଳ ପୃଥ୍ୱୀ ତହିଁର ଭୂପାଳ ।
ସ୍ତ୍ରୀମାନଙ୍କରେ ଯେ ମଦ୍ରସ୍ତ୍ରୀଯାକ
ମଳ ଅଟନ୍ତି ହେ ନ କର ମନେ ଶୋକ ।
ତୁମ୍ଭ ଦେଶେ ଧର୍ମ ହୋଇ ତ କଥା ନାହିଁ
କେଉଁ ଧର୍ମ ତୁମ୍ଭଙ୍କୁ କହିବ ଟି ମୁହିଁ ।
ଏବେ ତ ତୁମ୍ଭ ଦେଶ ଗୁଣ ମୋହଠାରୁ
ଶୁଣିଲ ତୁମ୍ଭ ହୁଅ ତେବେ କହିବାରୁ ।
କୃଷ୍ଣ ଅର୍ଜ୍ଜୁନଙ୍କୁ ମାରିବ ମୁହିଁ ଯେବେ
ତୁମ୍ଭଙ୍କୁ ଏ ଦୋଷ ମାରିବ ଜାଣ ତେବେ ।
ଶଲ୍ୟ ବୋଇଲେ ଆହେ ଅଙ୍ଗଦେଶ ଲୋକ
ରୋଗୀ ହେଲେ ଛାଡ଼ନ୍ତି ନ କରନ୍ତି ଶୋକ ।
ପୁଅ ମାଇପକୁ ଯେ ପାଇଲେ କଉଡ଼ି
କାହିଁ ନ ବିଚାର ଦିଅନ୍ତି ଟି ଛାଡ଼ି ।
ତୁମ୍ଭେ ତ ସେ ଦେଶରେ ହୋଇଅଛ ରାଜା
ଆମ୍ଭଙ୍କୁ ନିନ୍ଦୁଅଛ ଛାଡ଼ି ସବୁ ଲଜ୍ଜା ।
ଖ୍ୟାତ ଅର୍ଦ୍ଧରଥ କରଣ ତୁମ୍ଭଙ୍କୁ
କହିଛନ୍ତି ନକର ଏତେ ଗୁମାନକୁ ।
ସବୁଠାରେ ସମସ୍ତେ ଗୁଣବନ୍ତ ହୋଇ
ଥାଇ ପରାପବାଦ ହେଉଥାନ୍ତି କହି ।
ଆପଣା ଅପବାଦ କହିବାର ମୁଖେ
ଥିବା ଲୋକ ନୟନ ମଧ୍ୟରେ ନ ଦେଖେ ।
ସ୍ୱଭାବକୁ ଗୃହିଁ ଲୋକର ଆଚରଣ
ହୁଏ ଦେଶ ନିନ୍ଦା ନ କର ନିସ୍ତାରଣ ।

ସେ କାଳେ କୁମ୍ଭ ଦୁର୍ଯ୍ୟୋଧନ ତାଙ୍କ ପାଶେ
ଆସି ନିବାରିଲେ ଦୁଷ୍ଟଙ୍କ କଥାରସେ ।
କର୍ଣ୍ଣ ତାଙ୍କୁ ନିଷ୍ଠୁର ଉତ୍ତର ନ ଦେଇ
ବୋଇଲେ ରଥ ବାହ ଯୁଝିବ ମୁଁ ଯାଇ ।
ସଞ୍ଜୟ ବୋଇଲେ ହେ ପାଣ୍ଡୁସେନା ବ୍ୟୂହ
ଦେଖି କରି କର୍ଣ୍ଣ ହୃଦରେ ଧରି କୋହ ।
ରଥଘୋଷରେ ମହୀତଳକୁ କମ୍ପାଇ
ବାହାରିଲେ ଭେରୀ ମୃଦଙ୍ଗକୁ ବଜାଇ ।
କର୍ଣ୍ଣ ସେହିରୂପେ ଯେ ଯୁଦ୍ଧଦାଣ୍ଡେ ବ୍ୟୂହ
କଲେ କରାଇବାକୁ ପାଣ୍ଡବଙ୍କୁ ମୋହ ।

—⁂—

## କର୍ଣ୍ଣ ଓ ପାଣ୍ଡବଙ୍କର ବ୍ୟୂହ ରଚନା

ଧୃତରାଷ୍ଟ୍ର ବୋଇଲେ କର୍ଣ୍ଣ ଯେଉଁରୂପେ
ବ୍ୟୂହ କଲେ ତାହା କହ ତ ସେହିରୂପେ ।
ଶୁଣିବାକୁ ମୋହର ହେଉଅଛି ମନ
ନ ସାରି ହଅ କହି ଅଳ୍ପକେ ବଚନ ।
ଅର୍ଜ୍ଜୁନଙ୍କୁ ସ୍ମରଣ ଯୁଧିଷ୍ଠିରଠାକୁ
କାହିଁକି ଗଲେ କର୍ଣ୍ଣ କହ ଯୁଝିବାକୁ ।
ସଞ୍ଜୟ ବୋଇଲେ ହେ ବ୍ୟୂହର ରଚନା
କହିବା ଶୁଣ ରାଜେ ହୁଅ ଏକମନା ।
ମାଗଧ କୃପ କୃତବର୍ମା ସେ ବ୍ୟୂହର
ଦକ୍ଷିଣ ପାଶକୁ ଜଗିଲେ ନରବର ।
ଶକୁନି ଉଲୂକଙ୍କୁ ଘେନକରି ସାଥେ
ବ୍ୟୂହ ଆଗେ ରହିଲେ ଧନୁଧରି ହାତେ ।
ସଂଶପ୍ତକ ଗୌନିଶିସସ୍ତ୍ର ବ୍ୟୂହ ବାମ
ପାଖ ଜଗି ରହିଲେ ହୃଦେ ବହି ତମ ।
ମନରେ କଲେ କୃଷ୍ଣ ଅରଜୁନ ଦୁଇ
ଆସିଲେ ଯୁଝି ଆଜ ଦେବାକି ବଡ଼ାଇ ।
କାମ୍ବୋଜ ଯେ ଯବନ ଶକ ଆଦି ବୀରେ
ରହିଲେ ସେ ସଂଶପ୍ତକଙ୍କ ଆଗରେ ।
ସେନାମୁଖେ କର୍ଣ୍ଣ ରହିଲେ ଧନୁ ଧରି
କୃଷ୍ଣ ଅର୍ଜ୍ଜୁନଙ୍କୁ ଯୁଝିବା ଇଚ୍ଛା କରି ।
ବ୍ୟୂହ ପୃଷ୍ଠଦେଶେ ହସ୍ତୀକି ଆରୋହି
ରହିଲେ ଦୁଃଶାସନ ଯୁଦ୍ଧେ ମନ ଦେଇ ।
ଦୁର୍ଯ୍ୟୋଧନ ଭାଇମାନଙ୍କୁ ସଙ୍ଗେ ଧରି
ରହିଲେ ଦୁଃଶାସନ ପୃଷ୍ଠକୁ ଆବୋରି ।

ଅଶ୍ୱତ୍ଥାମା ମ୍ଳେଚ୍ଛମାନଙ୍କୁ ଧରି ସଙ୍ଗେ
ବାହାରିଲେ ରାଜନ ଜାଣ ରଣରଙ୍ଗେ ।
ଧ୍ୱଜ ବଇଜୟନ୍ତୀ ଥିବାରୁ ହାତୀଏ
ନିଢଲେ ବୃଷ ଥିବା ଅଚଳକୁ ରାଜେ ।
ସେ ହ ସ୍ତିମାନଙ୍କ ପାଦକୁ ଯୁଦ୍ଧେ କଷ
କରି ଉତପତ୍ତି ହରିଲେ ରାଜେ ରକ୍ଷା ।
ଏରୂପେ କର୍ଣ୍ଣ ବ୍ୟୂହ କରି ଯୁଦ୍ଧଦାଣ୍ଡେ
ରହିଲେ ଯୁଦ୍ଧ ଅଭିମାନ ବହି ପିଣ୍ଡେ ।
ଯେଉଁ ବ୍ୟୂହକୁ କର୍ଣ୍ଣ କଲେଟି ରାଜନ
ଅର୍ଙ୍ଗିରାସୁତ ବିନା ନ ଜାଣେ ତା ଆନ ।
ସେ ବ୍ୟୂହ ପକ୍ଷ ପ୍ରପକ୍ଷରୁ ହାତୀ ଘୋଡ଼ା
ଯୁଝିବାକୁ ରାଜେ ଗମିଲେ ଯୋଡ଼ା ଯୋଡ଼ା
ଯୁଧିଷ୍ଠିର କର୍ଣ୍ଣଙ୍କୁ ସେନାମୁଖେ ଦେଖି
ଅର୍ଜ୍ଜୁନଙ୍କୁ କହିଲେ ହୋଇ ଅତି ଦୁଃଖୀ ।
କର୍ଣ୍ଣ କରିବାର ବ୍ୟୂହ ତ ଦେଖୁଅଛ
ବ୍ୟୂହ କର ଏଥିକି ହୋଇବ ଯେ କଚ୍ଛ ।
ତା ଶୁଣି ଅର୍ଜ୍ଜୁନ ଯୋଡ଼ି କର ଦୁଇ
କହିଲେ ଦେଖ ବ୍ୟୂହ କରୁଅଛି ମୁହିଁ ।
ମୋର ବ୍ୟୂହରେ ବଳେ କର୍ଣ୍ଣଙ୍କର ବ୍ୟୂହ
ନାଶ ଯିବ ରାଜନ ନ କର ସନ୍ଦେହ ।
ଯୁଧିଷ୍ଠିର ବୋଇଲେ କର୍ଣ୍ଣେ ତୁମ୍ଭେ ଆଜ
ମାରି ଆଣ ହେ ଜୟଲକ୍ଷ୍ମୀକି ଅରଜି ।
ଭୀମ ଦୁର୍ଯ୍ୟୋଧନେ କରନ୍ତୁ ଯାଇ ଗୋଳ
ବୃଷସେନ ତୁଲରେ ଯୁଝନ୍ତୁ ନକୁଳ ।
ସହଦେବ ସୁବଳ ସୁତେ ରଣେ ଭେଟି
ଦିଅନ୍ତୁ ତାର କାଟି ସଳଖେ ବେକୁଟି ।
ଶତାନୀକ ଦୁଃଶାସନକୁ କରୁ ରଣ
କୃତବର୍ମାଙ୍କ ତୁଲେ ଯୁଝନ୍ତୁ ଆପଣ ।
ସାତ୍ୟକ ଧନୁଶର ଦୁଇହାତେ ବହି
ତାଙ୍କ ପରି ବଳୀ ତ ଆମ୍ଭର କେ ନାହିଁ ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣିଙ୍କି ନିବାରନ୍ତୁ ରାଗେ
ନାନା ଶରମାନ ବିନ୍ଧିଣ ନାନା ବାଗେ ।
କୃପଙ୍କ ତୁଲେ ମୁଁ କରିବି ଯାଇ ରଣ
ଦେଖାଇ ଯୁଦ୍ଧଦାଣ୍ଡେ ମୋର ଦେହତ୍ରାଣ ।
ଦ୍ରୌପଦେୟମାନେ ଯେ ଶିଖଣ୍ଡୀକି ଘେନି
କରନ୍ତୁ ଧୃତରାଷ୍ଟ୍ର ସୁତେ ଯମସ୍ଥାନୀ ।

ଯେରୂପେ ଯୁଧିଷ୍ଠିର କହିଲେ ଅର୍ଜ୍ଜୁନ
ସେହିରୂପେ ସେ କଲେ ଯୁଦ୍ଧର ବିଧାନ ।
ଅଗ୍ନିରୁ ଜାତ ବ୍ରହ୍ମା ରୁଦ୍ର ପୁରୋହିତ
ବରୁଣଙ୍କୁ ଟି ବହିଥିଲା ସେ ବହୁତ ।
ସେ ରଥ ତ ଅଗ୍ନି ପାର୍ଥଙ୍କୁ ଦେଇଥିଲେ
ପାର୍ଥ ସେ ରଥ ଚଢ଼ି ଯୁଦ୍ଧେ ବାହାରିଲେ ।
କୃଷ୍ଣ ଅର୍ଜ୍ଜୁନଙ୍କୁ ରଥରେ ଶଲ୍ୟ ଦେଖି
କହିଲେ କର୍ଣ୍ଣ ମୁଖ ଶୁଖି ହୋଇ ଦୁଃଖୀ ।
ଦେଖି ତ ବେନି କୃଷ୍ଣ ଆସନ୍ତି ଯୁଦ୍ଧକୁ
ରଥ ଚଢ଼ି ଦେଖାଅ ଭୁମ୍ଭ ବିକ୍ରମକୁ ।
ଏତେବେଳେ ପଚ୍ଛଆଡ଼ରେ ବୃଦ୍ଧକଥା
କହିବା ଥୋଇଲେ ପାଇବ ଲାଜ ବ୍ୟଥା ।
ଦେଖ କୃଷ୍ଣ ଅର୍ଜ୍ଜୁନ ଆସିବାରେ ଧୂଳି
ଉଡ଼ି ଲୁଚିଇଛି ସୂର୍ଯ୍ୟଙ୍କ ରଶ୍ମିମାଳୀ ।
ମେଘ ପରି ଗମ୍ଭୀରେ କରେ ଚକ ଘୋଷ
ଥୋଇ ଭୟ ଶତ୍ରୁଜନଙ୍କ ହୃଦଦେଶ ।
ଭୁମ୍ଭ ସେନଙ୍କ ମୁଖ ଆଡ଼ରୁ ପବନ
ବହୁଛି ଶିଳୁଆ କରନ୍ତି ଗରଜନ ।
କବନ୍ଧରେ ସୂର୍ଯ୍ୟ ଆବୃତ ହୋଇଛନ୍ତି
କୁରୁଙ୍କର ନାଶରେ ଦେଇକରି ମତି ।
ସହସ୍ର ସଂଖ୍ୟା କାକ ଗୃଧ୍ର ହୋଇ ଗୋଟି
ବୋବାଉଛନ୍ତି ମେଳ ହୋଇଣ ଅଣ୍ଟୁଟି ।
ଭୁମ୍ଭ ରଥ ଧ୍ଵଜର ପବନେ କଦଳୀ—
ପରି ମନ କମ୍ପୁଛି ଶୁଣ ଏହା ଭଲି ।
ଏ ସକାଶୁଁ ଜାଣୁଛି ଭୁମ୍ଭ ଭଲେ ନୃପେ
ଶୋଇବେ ରଣେ ଆଜ ପଡ଼ି ଶର ତାପେ ।
ମୃଦଙ୍ଗ ଶୃଙ୍ଗାନକ ବାଣ ଗଜ ବାଜ
ଶବଦେ କର୍ଣ୍ଣ ହୋଇ ଯାଉଅଛୁ ବୁଜ ।
ସୁବର୍ଣ୍ଣମଣ୍ଡା ରଥେ ବସି କୃଷ୍ଣାର୍ଜ୍ଜୁନ
କରୁଛନ୍ତି ତେଜରେ ଅଗ୍ନିଙ୍କି ନିନ୍ଦନ ।
ସେ ରଥରେ ପତାକାମାନ ବାତେ ଉଡ଼ି
ଦେଖ ଯାଉଛନ୍ତି ତ ଆକାଶକୁ ମାଡ଼ି ।
ଧଜ କରୁଅଛି ଯେ କଣ କଣ ଧନି
ଏ ହେନି ଜାଣୁଛି ହେବ ସେ ଜୟସ୍ଥାମୀ ।
ପାଞ୍ଚାଳମାନଙ୍କର ପତାକା ସହିତ
ରଥ ମଧ୍ୟ ଆସୁଛି ଦେଖ ହେ ବହୁତ ।

ଅର୍ଜ୍ଜୁନ ଧ୍ଵଜେ ଯେଉଁ ମାଙ୍କଡ଼ ବସିଛି
ତା ଗର୍ଜ୍ଜନ ଶୁଣିଲେ ମୋ ହାଡ଼ ଫାଟୁଛି ।
ଶଙ୍ଖ ଚକ୍ର ଗଦା କୌସ୍ତୁଭମଣି ଭୁଲେ
ଶାରଙ୍ଗ ଧରିଛନ୍ତି ଶୁଣି କୃଷ୍ଣ ଭଲେ ।
ଅର୍ଜ୍ଜୁନଙ୍କ ସାରଥି ରଥେ ହୋଇଛନ୍ତି
ପବନୁ ବେଗେ ତାଙ୍କ ଘୋଡ଼ାକୁ ବାହାନ୍ତି ।
ଗାଣ୍ଡୀବକୁ ଓଟାରି କଟକଟ କରି
ମାରନ୍ତି କୁରୁଥାଟ ପାର୍ଥ ଶର ମାରି ।
କୁଣ୍ଡଳଲଗା ମୁଣ୍ଡ ପଡ଼ୁଛନ୍ତି ଲୋଟି
ମହୀ ସରସିରେ କି ପଦ୍ମେ ଛନ୍ତି ଫୁଟି ।
ଯୋଧମାନଙ୍କର ହେନବୋଲା ବାହା
ପଡ଼ି ନିନ୍ଦା କରୁଅଛନ୍ତି ସର୍ପନାହା ।
ଘୋଡ଼ାମାନେ ଜଭ କାଢ଼ିଣ ପ୍ରାଣ ଛାଡ଼ି
ଦେଖ ପାର୍ଥ ବାଣରେ ଯାଉଛନ୍ତି ଗଡ଼ି ।
ସିପାଇମାନେ ହୋଡ଼ା ଛାଡ଼ି ହୋଇ ଛିଡ଼ା
ବହିଛନ୍ତି କର୍ଣ୍ଣ ଅର୍ଜ୍ଜୁନ ଶରଭିଡ଼ା ।
ଗିରିକୂଳ ପରି ପଡ଼ନ୍ତେ ହାତୀକୂଳ
ହୋଇଛି ଉଣା ପଦାତିଙ୍କର ପ୍ରବଳ ।
ରଥୀମାନେ ମରନ୍ତେ ବାଜ କାଣ୍ଡରାଜ
ରଥମାନେ ଅନେକ ପଡ଼ିଲେନି ଭାଜ ।
କୁରୁସୈନ୍ୟ ଶିଳୁଆ ମଧ୍ୟେ ସିଂହପରି
ସଞ୍ଚାର କରୁଛି ଗାଣ୍ଡୀବ ଧନୁର୍ଦ୍ଧାରୀ ।
ଅର୍ଜ୍ଜୁନ ପୃଷ୍ଠଭାଗେ ଥାଇଣ ପାଣ୍ଡବେ
ମାରୁଛନ୍ତି ଭୁମ୍ଭ ସେନାକୁ ଦେଖ ସବେ ।
ଭୁମ୍ଭ ସେନା ଜଳଧାରରେ ଅରଜୁନ
ଗିରି ନେହି ଦୁଇ କି ହୋଇଛି ଆଚ୍ଛନ୍ନ ।
ଅର୍ଜ୍ଜୁନଙ୍କୁ ଯୁଦ୍ଧେ ମାରିବ ଯେବେ ଭୁମ୍ଭେ
କହୁଛୁ ରାଜା କରି ମାନିବୁଁ ତ ଆମ୍ଭେ ।
ସଂଶପ୍ତକମାନଙ୍କ ଦଶା ଦିଅ ଶୁଣି
ତା ଦେଖିଲେ ଯୁଝିବ ତାଙ୍କୁ କେହି କେଣି ।
କର୍ଣ୍ଣ ଏହା ଶୁଣି ବୋଇଲେ ଯେ ଶଲ୍ୟଙ୍କୁ
ଆସିଛି ଅରଜୁନ ଯୁଦ୍ଧେ ମରିବାକୁ ।
ଶଲ୍ୟ ବୋଇଲେ ଆହେ ଜଳରେ ବରୁଣ
ନାଶ ହୋଇବେ କି ହେ କର୍ଣ୍ଣ ରଥିଗଣ ।
କାଠ ପକାଇ କେ ଅଗ୍ନିକି ଲିଭାଇଛି
ଏହା ତ ଆଜଯାଏ ମୋ ଦେଖା ନୋହିଛି ।

ସୂର୍ଯ୍ୟ ଚନ୍ଦ୍ର ଦୁହିଁଙ୍କି ଧରିବ ଯେ ହାତେ
ସେହି ଏକା ଯୁଝିବ ଯାଇଁ ପାର୍ଥ ସାଥେ ।
ଅବଧ ତ ଅଟନ୍ତି ତ କୃଷ୍ଣ ଅରଜୁନ
ପାରନ୍ତି ଭାଙ୍ଗି ଇନ୍ଦ୍ରାଦିଙ୍କ ସେ ଗୁମାନ ।
ବଚନରେ କହିଲ କର୍ଣ୍ଣ ମନୋରଥ
କଥାଯାକ ତ ସବୁ କରୁଅଛ ସାର୍ଥ ।
କହିବା ପରି ଯୁଦ୍ଧେ ପାରି ଯେବେ କରି
ଜାଣିବ ତୁମ୍ଭେ ଏକା ଅଟ ଧନୁର୍ଦ୍ଧାରୀ ।
ବାହୁ ଦୁଇରେ ଯେହୁ ଟେକିବ ମନ୍ଦାର
ସେ ଏକା ଯୋଝିପାରେ ସାର କିରୀଟୀଙ୍କି ।
ରଥ ଭୂମି ମଧ୍ୟେ ଅର୍ଜୁନ ହନୁକାରୁ
ରହିଅଛି ଦେଖ ରହିଲ ପରି ମେରୁ ।
ଦେଖ ଭୀମ ରହିଅଛନ୍ତି ଯୁଦ୍ଧଦାଣ୍ଡେ
କେ ତାଙ୍କୁ ମାରିବ ଆମ୍ଭର ଅଛି କାଣ୍ଡେ ।
ଧାର୍ମିକମାନଙ୍କର ଶ୍ରେଷ୍ଠ ଯୁଧିଷ୍ଠିର
ତାଙ୍କ ତୁଲେ କରି କେ ପାରିବ ସମର ।
ନକୁଳ ସହଦେବ ଜଳି ଅଛି କ୍ରୋଧେ
ଆହେ କର୍ଣ୍ଣ ଦେଖ ଯେ ଆସୁଛନ୍ତି ଯୁଦ୍ଧେ ।
ଦ୍ରୌପଦୀ ତନୟମାନଙ୍କୁ ବାଣ ବିନ୍ଧ
କେଉଁଲୋକ ନୋହିବ କହ ଯୁଦ୍ଧେ ରୁନ୍ଧ ।
ଅର୍ଜୁନଙ୍କ ଠାରୁ ତ ଅଟନ୍ତି ସେମାନେ
କେ ଅଛି ଯୋଝିବାକୁ ତାଙ୍କୁ ରଣସ୍ଥାନେ ।
ଦ୍ରୁପଦଙ୍କ ପୋଏ ଯେ ସାତ୍ୟକିଙ୍କି ଘେନ
ଯୁଦ୍ଧରେ ହୋଇଛନ୍ତି ମହାସାବଧାନ ।
ଏହିକାଳେ ସମୁଦ୍ର ଯୋଡ଼ା ପରି ହୋଇ
ଦୁଇସେନା ମିଶିଗଲେ ହେ ନରସାଇଁ ।



## ସଂଶପ୍ତକଙ୍କ ସହ ଯୁଦ୍ଧ

ଧୃତରାଷ୍ଟ୍ର ବୋଇଲେ ପାଣ୍ଡବ ସଇନ
ସଙ୍ଗେ କଲେ କିରୂପେ କର୍ମ ଆୟୋଧନ ।
ଧନଞ୍ଜୟ ସଂଶପ୍ତକଙ୍କୁ ଜିଣିକରି
କିରୂପେ ଆଣିଲେ କହ ତ ଜୟଶିରୀ ।
ସଞ୍ଜୟ ବୋଇଲେ ହେ ପାର୍ଥ ବ୍ୟୂହ କଲେ
ଧୃଷ୍ଟଦ୍ୟୁମ୍ନଙ୍କୁ ଆଗରେ ରଖାଇଲେ ।
ପାରାବତ ପରି ସେ ଅଶ୍ୱେ ରଥ ଯୋଚି
ବସିଥିଲେ ଧୃଷ୍ଟଦ୍ୟୁମ୍ନ ତେଜ ମୁଞ୍ଚି ।

ଧୃଷ୍ଟଦ୍ୟୁମ୍ନ ତ ସହଜେ ତେଜସ୍କର
ସେ ଦିନ ଦେହ ପ୍ରଭା ବଳିଲା ତାଙ୍କର ।
ଧୃଷ୍ଟଦ୍ୟୁମ୍ନ ସ୍ୱରପାଖରେ ଦ୍ରୌପଦେୟ
ରହିଲେ ଧନୁଶର ଖଣ୍ଡା ବହି କାୟ ।
ସଂଶପ୍ତକମାନଙ୍କୁ ଏକା ଅରଜୁନ
ବିନ୍ଧିଲେ ଓଟାରି ଗାଣ୍ଡୀବ ଶରାସନ ।
ସଂଶପ୍ତକମାନେ ତ ମୃତ୍ୟୁକୁ ନ ଡରି
ବିନ୍ଧିଲେ ଧାପେ ସ୍ତୂପେ ଶରମାନ ଭରି ।
ସଂଶପ୍ତକମାନଙ୍କ ଅର୍ଜୁନଙ୍କ ରଣ
ହୋଇଲା ସେ କାଳରେ ହୋଇ ଅତି ଟାଣ ।
ରଥ ଧ୍ୱଜ ଅଶ୍ୱ ପତାକା ଚକ ଅଖ
ଆୟୁଧାଦି କାଟିଲା ପାର୍ଥଙ୍କ ବିଶିଖ ।
ମଡ଼ାରେ ଅର୍ଜୁନଙ୍କ ରଥ ନୟନକୁ
ଆବୃତ ହେଲା ରାଜେ କହିବ ତୁମ୍ଭକୁ ।
ରୁଦ୍ର ପରି ଗାଣ୍ଡୀବ ଧନୁ ଶୂଳ ଧରି
ହିଂସିଲେ ଯୁଦ୍ଧରେ ସୁଭଦ୍ରା ବିହାରୀ ।
ପାଞ୍ଚାଳ ଚେଦି ସଞ୍ଜୟଙ୍କୁ ତୁମ୍ଭଲୋକେ
ବାଛି ବାଣମାନ ବିନ୍ଧିଲେ ଯେ ନିଃଶଙ୍କେ ।
କୃପ କୃତବର୍ମା ତ ଶକୁନିଙ୍କି ଘେନ
ଯୁଦ୍ଧ କଲେ ମୃତ୍ୟୁଦେବକୁ ବରି ଆଣି ।
କୋଶଳ ମତ୍ସ୍ୟ କାଶୀ କେକୟଙ୍କ ତୁଲେ
ମୋ କହିବାର ରାଜେ ଜାଣ ଏହା ଭଲେ ।
ଗୃହଜାତଯାକ ତ କ୍ଷତ୍ରି ବୃତ୍ତି କରି
ଆସିଥିଲେ ଯୁଦ୍ଧକୁ ଟଳେ ରାଜେ ମରି ।
ଭାଇଙ୍କି ସଙ୍ଗେ ଘେନ ଦୁର୍ଯ୍ୟୋଧନ ରାଜା
କର୍ଣ୍ଣଙ୍କର ବଳକୁ ମୁଖେ କରି ପୂଜା ।
କର୍ଣ୍ଣଙ୍କର ପୃଷ୍ଠଦେଶରେ ଧନୁବାଣ
ଧରିକରି ରହିଲେ ସେ ଯାଇ ଆପଣ ।
କର୍ଣ୍ଣ ମହାବଳୀ ସରଜ ଶରାବଳୀ
ହେଲେ ଯୁଧିଷ୍ଠିରଙ୍କ ବଳ ରାଜେ ଦଳି ।
ସହସ୍ରସଂଖ୍ୟା ଶତ୍ରୁମାନଙ୍କ କବଚ
କାଟି ପକାଇଲା ତ କର୍ଣ୍ଣଙ୍କ ନାରାଚ ।
ଏରୂପରେ ଜନଙ୍କ କ୍ଷୟ ହେବା ପାଇଁ
ଯୁଦ୍ଧ ପ୍ରବର୍ତ୍ତିଲା ହସ୍ତିନା ନରସାଇଁ ।



## କର୍ଣ୍ଣ ଯୁଧିଷ୍ଠିର ଯୁଦ୍ଧ

ଧୃତରାଷ୍ଟ୍ର ବୋଇଲେ ଯୁଧିଷ୍ଠିର କର୍ଣ୍ଣ
କରୂପେ ଯୁଝିଲେ କହ ମୋ ସନ୍ନିଧାନ ।
ପାଣ୍ଡବଙ୍କ ରଥୀଏ ରାଜାଙ୍କୁ ଆବୋରି
ଯୁଝିଲେ ନାହିଁକ ହେ ଶସ୍ତ୍ରମାନ ଧରି ।
ସଞ୍ଜୟ ବୋଇଲେ ପାଣ୍ଡବ ମହାରଥୀ
ମାନେ ଧୃଷ୍ଟଦ୍ୟୁମ୍ନ ବୀରଙ୍କୁ କରି ସାଥି ।
ଯୁଦ୍ଧ ଦାଣ୍ଡେ ଯେ ରଥ ଚଢ଼ି ଧୂଆଁଇଲେ
ଯାହାକୁ ଦେଖିଲେ ତା ଜୀବନ ଘେନଗଲେ ।
ସେହିରୂପେ ତୁମ୍ଭର କର୍ଣ୍ଣ ରଣଧୂଆଁ
ଦେଖି ହେଲେ କ୍ରୋଧେ ଦ୍ରୁପଦସୁତେ ନିଆଁ
ସେହିକାଳେ ଦୁଇ ସେନାରେ ଭେରୀ ଶଙ୍ଖ
ବାଜବାରେ କର୍ଣ୍ଣ ପାଇଲା ମହାଦୁଃଖ ।
ବୀରମାନଙ୍କର ବିନ୍ଧିବା କାଣ୍ଡରାଜ
ଧାଡ଼ି ହୋଇ ଗମିଲା ଆକାଶେ ଗରଜ ।
ଦୁଇ ସେନାଙ୍କ ଯୁଦ୍ଧ ଦେଖି ଜନଲୋକ
କମ୍ପିଲା ଆହେ ଶୁଣ ଅବନୀ ନାୟକ ।
ଅଳ୍ପସତ୍ତ୍ୱ ଲୋକେ ତା ଶୁଣି ଜୀବ ଛାଡ଼ି
ଯମରାଜପୁରେ ବସିଲେ ଯାଇ ମାଡ଼ି ।
କର୍ଣ୍ଣ ସେକାଳେ କ୍ରୋଧ ହୋଇ ଅସ୍ତ୍ର କଲେ
ବହୁ ପାଣ୍ଡୁସେନା ସଂହାରି ପକାଇଲେ ।
ଏ ବାହାରେ ଯେ ପ୍ରଭଦ୍ରକଙ୍କ ଜୀବନ
ଘେନଗଲେ ତାଙ୍କୁ ବିଞ୍ଚାଇ କାଣ୍ଡମାନ ।
ପଚିଶ କାଣ୍ଡ ବିନ୍ଧି କୋଡ଼ିଏ ପାଞ୍ଚାଳ
ମାରି କରି ଦେଲେ ଯେ ସ୍ଥାନ ଯମଆଳ ।
ସୁବର୍ଣ୍ଣପୁଙ୍ଖ ଲଗା କାଣ୍ଡମାନ ବାଛି
ଚେଦିଙ୍କ ପ୍ରାଣ ନେଲେ ଅଧିରଥ ବସି ।
କର୍ଣ୍ଣଙ୍କର ଏ କର୍ମ ନ ପାରଣ ସହି
ପାଞ୍ଚାଳ ରଥୀରେ ବିନ୍ଧିଲେ କ୍ରୋଧବହ୍ନି ।
ଭାନୁଦେବ ଯେ ସେନାବିନ୍ଦୁ ଶୂରସେନ
ଚିତ୍ରସେନ ତପନ ପ୍ରାଣ ପାଞ୍ଚବାଣ ।
ବିନ୍ଧିକରି କର୍ଣ୍ଣ ସେ ରଣଦାଣ୍ଡେ ନେଇ
ବାହାରିଲେ ଯୁଦ୍ଧକୁ ବାହା ଦୋହଲାଇ ।
ପାଞ୍ଚାଳେ ପ୍ରଧାନ ପାଞ୍ଚେ ତ ଯୁଦ୍ଧେ ମଲେ
ତାହା ଦେଖି ପାଞ୍ଚାଳେ ହାହାକାର କଲେ
ତାହା ଶୁଣି କର୍ଣ୍ଣ ବିନ୍ଧିବା ବାଣ ଧାଡ଼ି
ପାଟିବାଟେ ଢେଲେ ତାଙ୍କର ଗ୍ରୀବା ମୋଡ଼ି
କର୍ଣ୍ଣସୁତ ସୁଷେଣ ସତ୍ୟବାନ ଦୁଇ
ଯୁଝିଲେ କର୍ଣ୍ଣଙ୍କର ଚକ୍ରରକ୍ଷା ହୋଇ ।
ବୃଷସେନ କର୍ଣ୍ଣଙ୍କ ହୋଇ ପୃଷ୍ଠରକ୍ଷା
ଯୁଦ୍ଧ କଲେ ରାଜନ କରି ଅତି କକ୍ଷା ।
ଧୃଷ୍ଟଦ୍ୟୁମ୍ନ ସାତ୍ୟକ ଚେଦି ଦ୍ରୌପଦେୟ
ନକୁଳ ସହଦେବ ମତ୍ସ୍ୟ ଜନ୍ମେଜୟ ।
ଶିଖଣ୍ଡି ପ୍ରଭଦ୍ରକ କେକୟାଦି ବୀରେ
କର୍ଣ୍ଣ ଉପରେ ଶର ବରଷିଲେ ଖରେ ।
କର୍ଣ୍ଣଙ୍କର ଯୁଦ୍ଧରେ ଦେଖି ହୀନଦଶା
କର୍ଣ୍ଣପୁଏ ଯୁଝିଣ ଗଲେ ମୃତ୍ୟୁବଶ ।
କର୍ଣ୍ଣସୁତ ସୁଷେଣ ଭୀମ ଧନୁ କାଟି
ଭୀମ ହୃଦୟକୁ ବିନ୍ଧିଲେ ସେ ସାତୋଟି ।
ଭୀମ ଯେ ଆନ ଧନୁ ଧରିଣ ସୁଷେଣ
ଧନୁଟିକ ବାଣେ ହେ କରିଦେଲେ ଛିନ୍ନ ।
ପୁଣି ଦଶକାଣ୍ଡେ ଯେ ସୁଷେଣକୁ ବିନ୍ଧି
ହୋଇଲା ବୃକୋଦର ମହାକ୍ରୋଧେ ରୁନ୍ଧି ।
ତେସ୍ତରୀଟି କାଣ୍ଡ କର୍ଣ୍ଣର ସେ ଦେହକୁ
ବିନ୍ଧିଲେ ଭୀମସେନ ଜୀବନ ନେବାକୁ ।
କର୍ଣ୍ଣସୁତ ଭାନୁସେନକୁ ଦଶକାଣ୍ଡ
ବିନ୍ଧି ଭୀମ ଗର୍ଜିଲେ ହଣାଇଣ ମୁଣ୍ଡ ।
କର୍ଣ୍ଣ ରଥ ଉପରେ ବସି ଦେଖୁଥିଲେ
ତାଙ୍କ ପୁତ୍ର ମୁଣ୍ଡ ଭୀମ ଯେ କାଟିଦେଲେ ।
ଏହା କରି ସାରିଣ ତୁମ୍ଭର ଲୋକଙ୍କୁ
ମାଇଲେ ବିନ୍ଧି ଉତ୍ତମ ବଣିଙ୍କୁ ।
କୃତ କୃପବର୍ମା ସେ ଦୁହିଁଙ୍କ ଧନୁଟି
କାଟିଣ ପକାଇଲେ ପବନ ବେଗାଟି ।
ଦୁଃଶାସନ ଦେହକୁ ବିନ୍ଧି ତିନିକାଣ୍ଡ
ଶକୁନି ରଥ ଧ୍ୱଜ କଲେ ଖଣ୍ଡ ଖଣ୍ଡ ।
ସୁଷେଣ ମଲୁ ବୋଲି ପୁଣି ଭୀମକାଣ୍ଡେ
ଧନୁରେ ବସାଇ ବିନ୍ଧିଲେ ଯୁଦ୍ଧଦାଣ୍ଡେ ।
କର୍ଣ୍ଣ ଯେ କାଣ୍ଡଟିକ ପକାଇଣ କାଟି
ଗରଜନ କଲେ ସେ ମେଲିଦେଇ ପାଟି ।
ପୁଣି ସୁଷେଣଙ୍କୁ ବିନ୍ଧିଲେ ଭୀମ ଶର
କାଟିଦେଲା ଆସି ତା କର୍ଣ୍ଣଙ୍କର ଶର ।

ତେସ୍ତରି କାଣ୍ଡ କର୍ଣ୍ଣ ଭୀମଙ୍କ ଦେହକୁ
ବିନ୍ଧିଲେ ସୁଷେଣଙ୍କୁ ଯୁଦ୍ଧେ ରଖିବାକୁ ।
ସୁଷେଣ ଧନୁରେ ନକୁଳ ବାହୁ ଉର—
ଦେଶକୁ ବିନ୍ଧିଲେ ସେ ବାହୁ ପାଞ୍ଚଶର ।
ନକୁଳ ସୁଷେଣଙ୍କ ଦେହକୁ କୋଡ଼ିଏ
ବିନ୍ଧି ଭସ୍ମ ଥୋଇଲେ କର୍ଣ୍ଣଙ୍କ ହୃଦୟେ ।
ସୁଷେଣ ନକୁଳଙ୍କୁ ଦଶକାଣ୍ଡ ବିନ୍ଧି
କ୍ଷୁରକାଣ୍ଡେ ନକୁଳଧନୁ ଦେଲେ ଛେଦି ।
ଆନ ଧନୁ ଧରି ନକୁଳ ମହାବଳୀ
ସୁଷେଣକୁ ବିନ୍ଧିଲେ ନବ କାଣ୍ଡ ଚଳି ।
ନକୁଳ କାଣ୍ଡରେ ଆଚ୍ଛାଦି ସର୍ବଦିଗ
ସୁଷେଣ ସାରଥିକି ଦେଲେ ଯମବାସ ।
ସୁଷେଣଙ୍କ ଧନୁକୁ ତିନି କାଣ୍ଡେ କାଟି
ଗର୍ଜିଲେ ଯେ ମାଦ୍ରୀଦେବୀଙ୍କ ସୁତଟି ।
ଆନ ଧନୁ ଧରି ସୁଷେଣ ନକୁଳଙ୍କୁ
ଷାଠିଏଟି ବାହୁ ବିନ୍ଧିଲେ ମାର୍ଗଣକୁ ।
ଏରୂପେ ଦୁଇସେନା ଯୁଦ୍ଧ ଦେବାସୁର
ଯୁଦ୍ଧକୁ ସମ ହେଲା ଜାଣ ନରବର ।
ସାତ୍ୟକି ବୃଷସେନ ସାରଥିକି ମାରି
ଭଲ୍ଲଶରେ ଦେଲେ ତା ଧନୁକୁ କଚୁରି ।
ସାତ କାଣ୍ଡ ବିନ୍ଧି ତା ଅଶ୍ୱଙ୍କର ପ୍ରାଣ
କରାଇଲେ ଯମରାଜାଙ୍କ ବଶ ଜାଣ ।
କାଣ୍ଡେକରେ ଧ୍ୱଜକୁ କାଟି ପକାଇଲେ
ହୃଦୟରେ ତିନିକାଣ୍ଡ ଯେ ସେ ବିନ୍ଧିଲେ ।
ବୃଷସେନ ରଥେ ଟିକିଏ ଯାଏ ବସି
ଧାଇଁଲେ ଖଣ୍ଡା ଫରି ଧରି ହୋଇ ରୋଷୀ ।
ସାତ୍ୟକି ଦଶକାଣ୍ଡେ ବୃଷସେନ ଖଣ୍ଡା
ଫରିକି କାଟି ନିଜ କାର୍ତ୍ତି କଲେ ମଣ୍ଡା ।
ଦୁଃଶାସନ ବୃଷସେନକୁ ନିଜ ରଥେ
ବସାଇଲେ ନେଇ ଧରିଣ ଦୁଇହାତେ ।
ପୁଣି ବୃଷସେନ ଯେ ବସି ଆନ ରଥେ
ବାହାରିଲେ ଯୁଦ୍ଧକୁ ଧନୁ ଧରି ହାତେ ।
ତେସ୍ତରି କାଣ୍ଡ ଦ୍ରୌପଦୀଙ୍କର ସୁତଙ୍କୁ
ବିନ୍ଧିଲା ଓଟାରି ସେ ଧନୁର ଗୁଣକୁ ।
ସାତ୍ୟକିଙ୍କି ପାଞ୍ଚ ଭୀମକୁ ସେ ତେଷଠି
ସହଦେବ ଦେହକୁ ବିନ୍ଧିଲା ପାଞ୍ଚୋଟି ।
ଶିଖଣ୍ଡୀକି ଦଶଟି, ଶହେ ଯୁଧିଷ୍ଠିର
ଉପରକୁ ବିନ୍ଧିଲା ବୃଷସେନ ବୀର ।
ବିରଥ କରି ଦୁଃଶାସନକୁ ସାତ୍ୟକି
ତିନି କାଣ୍ଡ ବିନ୍ଧିଲେ କପାଳ ପାଟିକି ।
ଦୁଃଶାସନ ଆଉ ଯେ ରଥୁଟାଏ ଚଢ଼ି
ଯୁଦ୍ଧ କଲେ ତୂଣରୁ ଶରମାନ କାଢ଼ି ।
କର୍ଣ୍ଣଙ୍କୁ ଧୃଷ୍ଟଦ୍ୟୁମ୍ନ ବିନ୍ଧେ ଦଶଶର
ଆଜ ମୃତ୍ୟୁ ଦେବି ବୋଲି ଯେ ମୁଁ ତୁମ୍ଭର ।
ଦ୍ରୌପଦୀସୁତମାନେ ବିନ୍ଧିଲେ ତେସ୍ତରି
ଯେ ଯାହାର ବୃପୁଟିମାନଙ୍କୁ ଓଟାରି ।
ଯୁଯୁଧାନ ସାତୋଟି କର୍ଣ୍ଣଙ୍କର ଦେହେ
ବିନ୍ଧିଲେ ଧନୁ ଧରି ନୃପ ଅତି କୋହେ ।
ସହଦେବ ସାତଟି ନକୁଳ ତିରିଶି
ଶିଖଣ୍ଡୀ ଦଶକାଣ୍ଡି ବିନ୍ଧେ ହୋଇ ରୋଷୀ
ଯୁଧିଷ୍ଠିର ରାଜା ଶଏଟି ମାରଗଣ
ବିନ୍ଧିଲେ କର୍ଣ୍ଣ ଦେହେ ଧନୁକୁ ଟଙ୍କାଣି ।
କର୍ଣ୍ଣ ରଥିକୂଳଯାକକୁ ଦଶଦଶ
ବିନ୍ଧି କରି ଥରେ ଯେ ଆଉଁସିଲେ ଦିଶ ।
କର୍ଣ୍ଣଙ୍କ ସନ୍ଧିବାର ବିନ୍ଧିବାର କେହି
ନ ଦେଖିଲେ ଜାଣ ହସ୍ତିନା ନରସାଇଁ ।
କର୍ଣ୍ଣଙ୍କର କାଣ୍ଡରେ ବ୍ୟୋମ ଭୁଲେ ଦିଶ
ଦେଖି ନ ପଶିଲା ଯେ କାହାରିଟି ତୃଣ ।
କର୍ଣ୍ଣଙ୍କୁ ବିନ୍ଧିଥିଲେ ରଥୀ ଯେତେ ଶର
ତିନିଗୁଣ କରି ତା କଲେ ସେ ପ୍ରହାର ।
ତେବଙ୍କରେ ତିରିଶି ମହାରଥୀ ମାରି
କର୍ଣ୍ଣ ଯୁଧିଷ୍ଠିରେ ଯୁଝିଲେ ରାଗ ଧରି ।
ଶିଖଣ୍ଡୀ ସାତ୍ୟକିଙ୍କି ଯେଜଣ ପାଣ୍ଡବେ
ରଖିଲେ ଯୁଧିଷ୍ଠି ରାଜାଙ୍କୁ ଯାଇ ସବେ ।
ତୁମ୍ଭ ଲୋକମାନେ ଯେ ହୋଇ ଏକଗୋଟି
ବଜାଇଲେ ସୂତବେଟାର ବହମୂଠି ।
ନାନାବାଦ୍ୟ ଭୂଲେ ବୀରଙ୍କ ସିଂହନାଦ
ଶବଦ ଜାତ ହୋଇ କଲା ଯୁଦ୍ଧେ ମୋଦ ।
ଯୁଧିଷ୍ଠିର କର୍ଣ୍ଣଙ୍କ ତୁମ୍ଭ ତାଙ୍କ ସେନା
ଆଗକରି ଯୁଦ୍ଧରେ ହେଲେ ରୋଷମନା ।
ରଥ ହସ୍ତୀ ଅଶ୍ୱ ପାଇକ ଯେଜନ ଭୁଲେ
ଯୁଧିଷ୍ଠିର ରାଜା ଯେ କର୍ଣ୍ଣଙ୍କୁ ଯୁଝିଲେ ।

ପାଣ୍ଡବ ରଥୀଏ ବିନ୍ଧିଲେ ଯେତେ ବାଣ
କର୍ଣ୍ଣ ତା' କରିଦେଲେ ଶରେ ଭିନ୍ନ ଭିନ୍ନ ।
ପାଣ୍ଡବରଥୀଙ୍କର ମୁଣ୍ଡମାନ କାଟି
ପୂରାଇ ଦେଲେ କର୍ଣ୍ଣ ଯୁଦ୍ଧ ବସୁଧାଟି ।
ସାତ୍ୟକିଙ୍କ ବୋଲରେ ଦ୍ରାବିଡ଼ ନିଷାଦେ
କର୍ଣ୍ଣ ପୀଡ଼ା ରଚି ଜିଣିଲେ ଅତି ମୋଦେ ।
କର୍ଣ୍ଣ କାଣ୍ଡକରେ ଯୋଦ୍ଧାଙ୍କ ବାହୁ ମୁଣ୍ଡ
ଛିଣ୍ଡି କୋଟି କୋଟି ଗଡ଼ିଲେ ଯୁଦ୍ଧଦାଣ୍ଡ ।
ଅସୂତସଂଖ୍ୟା ଯୋଦ୍ଧା କର୍ଣ୍ଣ ହାତେ ମରି
ମର୍ତ୍ତ୍ୟେ ଯଶ ରଖି ଅର୍ଜିଲେ ସ୍ୱର୍ଗ-ଶିରୀ ।
ବ୍ୟାଧିକି ଅଉଷଧି ନିବାରିଲା ପ୍ରାୟେ
କର୍ଣ୍ଣଙ୍କୁ ନିବାରିଲେ ପାଣ୍ଡୁପୁଏ ରାୟେ ।
କର୍ଣ୍ଣ ଚଳ ଉତ୍କୃଷ୍ଟ ବ୍ୟାଧି ହୋଇ ବଳି
ଯୁଧିଷ୍ଠିର ସୈନ୍ୟ ଔଷଧି ହେଲା ଦଳି ।
କେକୟ ପାଣ୍ଡୁ ପାଞ୍ଚାଳକେ କର୍ଣ୍ଣ ମାରି
ରୁଦ୍ଧ ହୋଇଗଲେ ଯେ ବିନ୍ଧୁ ବିନ୍ଧୁ ଶର ।
ଯୁଧିଷ୍ଠି ସେକାଳେ ବୋଇଲେ ଆହେ କର୍ଣ୍ଣ
ଶୁଣି କାନେ ମୋହର କହିବା ବଚନ ।
ଧୃତରାଷ୍ଟ୍ରଙ୍କର ମତରେ ସ୍ଥିତ ହୋଇ
ଅର୍ଜୁନଙ୍କୁ ଯୁଝିବା ଇଚ୍ଛାଥାଅ ବହି ।
ବଳବୀର୍ଯ୍ୟ ଯେତେ ବହିଛୁ ତୁମ୍ଭ ଦେହ
ଦେଖ ତ ତାହା ଆଜ ନ ବହିଣ ମୋହ ।
ଯୁଦ୍ଧଶ୍ରଦ୍ଧା ଯାହାଟି କରିଅଛ ତୁମ୍ଭେ
ତାହା ନାଶ କରିବୁଁ ଜାଣ ଆଜ ଅମ୍ଭେ ।
ଏହା କହି ସୁବର୍ଣ୍ଣପୁଙ୍ଖ କାଣ୍ଡରାଜ
କର୍ଣ୍ଣଙ୍କୁ ଯୁଧିଷ୍ଠିର ବିନ୍ଧିଲେ ଗରଜ ।
କର୍ଣ୍ଣ ହସିକରି ଯେ ଯୁଧିଷ୍ଠିର ଦେହେ
ବତ୍ସଦନ୍ତ ଦଶ ବିନ୍ଧିଲେ ଅତି କୋହେ ।
ଯୁଧିଷ୍ଠିର କର୍ଣ୍ଣଙ୍କ କାଣ୍ଡକୁ ନ ମାନି
ହୋଇଲେ ସେ ଏକା କ୍ରୋଧରେ ଅଗ୍ନିସ୍ୱାମୀ
ଯମଦଣ୍ଡ ପରି ସେ କାଣ୍ଡକୁ କୋଦଣ୍ଡେ
ସନ୍ଧି ଯୁଧିଷ୍ଠିର ବିନ୍ଧିଲେ ଅତି ଚଣ୍ଡେ ।
ସେ କାଣ୍ଡେ ସର୍ପ କର୍ଣ୍ଣ ସବ୍ୟପାର୍ଶ୍ୱ ଭେଦି
ଗଳିଲା ମହୀତଳେ-ବଳକୁ ସମ୍ପାଦି ।
କର୍ଣ୍ଣ ସେ କାଣ୍ଡ ଘାତେ ଆଖିକି ତରାଟି
ମୋହ ଗଲେ ଥୋଇଣ ରଥରେ ଧନୁଟି ।

କର୍ଣ୍ଣଙ୍କର ମୋହ ଯେ ଦେଖି କୁମ୍ଭ ବଳ
ମଲେ ବୋଲି ରାୟେ ସେ ହୋଇଲେ ବିକଳ
ପାଣ୍ଡୁସୁତେ ତ ସିଂହନାଦମାନ୍ କରି
ମଲ୍ କର୍ଣ୍ଣ ବୋଲି ବୋଇଲେ ଆଣ୍ଠେକରି ।
କର୍ଣ୍ଣ ଚେତା ପାଇ ଉଠିଣ ସେହିକାଳେ
ଧଇଲେ ଧନୁବର ଟଙ୍କ କରନ୍ତେ ।
ଯୁଧିଷ୍ଠି ରାଜାଙ୍କ ଗଣ୍ଡି କରି ଲକ୍ଷ
ବିନ୍ଧିଲେ ବଜାଇଣ ଉତ୍ତମ ବିଶିଖ ।
ଯୁଧିଷ୍ଠିର ଚକ୍ରରକ୍ଷା ଯେ ଦଣ୍ଡଧାର
ଚନ୍ଦ୍ରଦେବ ଜୀବନ କଲେ ସେ ତାଙ୍କର ।
ଯୁଧିଷ୍ଠିର କର୍ଣ୍ଣଙ୍କୁ ବିନ୍ଧଣ ତରଣି
ହୋଇଲେ ସେ ଯୁଦ୍ଧରେ ଅତ୍ୟନ୍ତ ଆଳସୀ ।
ସୁଷେଣ ସତ୍ୟସେନ ହସ୍ତେ ତିନ ତିନ
ଭାଲଶର ବିନ୍ଧିଲେ ନୃପ କ୍ରୋଧ ଘେନ ।
ସୁତ ସୁତ ଦେହେ ତେସ୍ତର କାଣ୍ଡ ସନ୍ଧି
ଶଲ୍ୟଙ୍କୁ ନଉକାଣ୍ଡେ ହେଲେ ପୁଣି ରୁନ୍ଧି ।
କର୍ଣ୍ଣ ଜାଗିଥିବା ଲୋକଙ୍କୁ ତିନ ଶର
ଲେଖାରେ ବିନ୍ଧିଗଲେ ଯୁଧିଷ୍ଠିର ବୀର ।
କର୍ଣ୍ଣ ଯେ ହସି ଯୁଧିଷ୍ଠିରଙ୍କୁ ଷାଠିଏ
କାଣ୍ଡ ବିନ୍ଧି କାଟିଲେ କାଣ୍ଡେ ଧନୁରାୟେ ।
ଯୁଧିଷ୍ଠିରଙ୍କର ସେ ଧନୁ ଛିଣ୍ଡା ଦେଖି
ପାଣ୍ଡୁ ସେନା ଧାଇଁଲେ ହୋଇ ଦୁଃଖୀ ।
ସାତ୍ୟକି ଚେକିତାନ ଯୁଯୁତ୍ସୁ ଧୃଷ୍ଟଦ୍ୟୁମ୍ନ
ଏ ଆଦି କର୍ଣ୍ଣ ସଙ୍ଗେ କଲେ ଆୟୋଧନ ।
ଜନ୍ମେଜୟ ନାଳିକ ବରିକର୍ଣ୍ଣ କାଣ୍ଡ
ବିନ୍ଧିଣ ଗ୍ରାଇଦେଲେ ସୂତପୁତ୍ର ପିଣ୍ଡ ।
କର୍ଣ୍ଣ ସେ କାଣ୍ଡଘାଏ ହୃଦେ ଭୟ ଧରି
ବ୍ରହ୍ମଅସ୍ତ୍ର କଲେ ରାଜନ ନ ବିସ୍ମରି ।
ସେ ଅସ୍ତ୍ରରେ ସବୁରି ରଥୀଙ୍କ ଶରକୁ
କାଟି କରି କାଟିଲେ ରାଜାଙ୍କ ଧନୁକୁ ।
ପୁଣି ନବତିକାଣ୍ଡ ସନ୍ଧି କର୍ଣ୍ଣ ବୀର
କଲେ ଯୁଧିଷ୍ଠିରଙ୍କ କବଚକୁ ଦୂର ।
ଛିନ୍ନବର୍ମା ହୋଇ ଯେ ଯୁଧିଷ୍ଠିର ରାଜା
ଫିଙ୍ଗିଲେ ଶକ୍ତିକି କମ୍ପାଇ କ୍ରୋଧେ ମଜ୍ଜା
ସେ ଶକ୍ତି ଦେଖିଣ କର୍ଣ୍ଣ ହୋଇ ଦୁଃଖୀ
ସାତକାଣ୍ଡ କାଟିଲେ ହେବାକୁ ସେ ସୁଖୀ ।

କର୍ଣ୍ଣ ବାହୁ ଶିର ହୃଦକୁ ଯୁଧିଷ୍ଠିର
ଫିଙ୍ଗିଲେ କରେ ଟେକି ବୃବେଗେ ତୋମର
ସେହି ତୋମର ଯୁଦ୍ଧଦାଣ୍ଡରେ ଚହଟି
ଆସି ଚଳଗଲେ ସେ କର୍ଣ୍ଣଙ୍କ ଗଣ୍ଡି ଟେ ।
କର୍ଣ୍ଣ ସେ ଆକାଶରୁ ପୀଡ଼ା ତ ପାଇଲେ
ଭଲି କାଣ୍ଡେ ରାଜାଙ୍କ ଧ୍ୱଜଟି କାଟିଲେ ।
ପୁଣି ତନକାଣ୍ଡେ ସେ ସାରଥିକ କାଟି
ଟିକି ଟିକି କରିଲେ କାଣ୍ଡରେ ରଥଟି ।
ଯୁଧିଷ୍ଠି ବିରଥ ହେବାରୁ ଦେଇ ପୃଷ୍ଠ
ପଳାଇଲେ ସେନାଙ୍କୁ ବୋଲି ଉଠ ଉଠ
କର୍ଣ୍ଣ ଯେ ସଙ୍ଗେ ସଙ୍ଗେ ରଥକୁ ଧାଇଁ
ଯୁଧିଷ୍ଠିର କାନ୍ଧରେ ହାତ ଦେଲେ ନେଇ
ବୋଇଲେ ତୁମ୍ଭ ବିନା କୁଳଜାତ ହୋଇ ।
ଏରୂପେ ପଳାଇବ ଲୋକ ହସୁନାହିଁ
ଆଜଠୁଁ କହୁଛି ସଭାରେ ବସିଥିବ
ଅନ୍ୟ ପର ଲୋକକୁ ଯୁକ୍ତି ନ ଆସିବ ।
ଏତେ ବୋଲି ଯୁଧିଷ୍ଠିରଙ୍କୁ କର୍ଣ୍ଣ ରଥୀ
ଦେଲେ ପାଣ୍ଡୁସେନା ସାମ୍ମୁକମୁନେ ମଣ୍ଡି ।
ସାତ୍ୟକି ଦ୍ରୌପଦେୟ ନକୁଳ ସହଦେବ
ଯୁଧିଷ୍ଠି ସଙ୍ଗତେ ଗମିଲେ ବହୁ ଭାବ ।
କର୍ଣ୍ଣ କୁ ତୁମାନଙ୍କୁ ସଙ୍ଗତରେ ଧରି
ଚଳିଲେ ସୈନ୍ୟ ପୃଷ୍ଠଦେଶେ ଲକ୍ଷ କରି ।
ଭେରୀ ଶଙ୍ଖ ଆନକ ପଣବ ଗୋମୁଖ
ବଜାଇଲେ ତୁମ୍ଭ ସେନାଏ ପାଇ ସୁଖ ।
ଯୁଧିଷ୍ଠିର ଯେ ଖଣ୍ଡ ଦୂରଯାଏ ଯାଇ
ରଥ ଚଢ଼ି ରହିଲେ ତହିଁ ଧୈର୍ଯ୍ୟ ବହି ।
ନିଜବଳ ଭାଗୁଡ଼ ନ ସହି ରାଜନ
ବୋଇଲେ ଯୁଦ୍ଧକର ନୃହ ହେ ଶମନ ।
ଯୁଧିଷ୍ଠିରଙ୍କର ଆଜ୍ଞାରେ ପାଣ୍ଡୁସେନା
ଫାଲ୍‌ଟିଲେ ଯୁଦ୍ଧକୁ ହୋଇ କୋପମନା ।
ସେହିକାଳେ ଯେ ହାଣ ମାର ଧର ରଡ଼ି
ଶବଦ ବସନେ ଆକାଶ ଦେଲା ଘୋଡ଼ି ।
କ୍ଷୀଣ ପୁଣ୍ୟଲୋକର ପରାଏ ମସ୍ତକ
ଦେହ ଆକାଶରୁ ପଡ଼ଣ ମର୍ତ୍ତ୍ୟଲୋକ ।
ପର୍ବତଶୃଙ୍ଗ ପରି ହାତୀକୁଳ ପଡ଼ି
ଛାଡ଼ିଲେ ପ୍ରାଣ କରି ଘେଉଁକାଣ ରଡ଼ି ।
ସିପାଇଙ୍କ ତୁଳରେ ସସ୍ରସଂଖ୍ୟା ଘୋଡ଼ା
ମଲେ କାଣ୍ଡରେ ଚର୍ଣ୍ଣି ମୁଣ୍ଡ ବେକ ଛାଡ଼ା ।
ସହସ୍ରସଂଖ୍ୟା ପଡ଼ି ଯୁଦ୍ଧରେ ଝପଟି
ପାଇ କରି ବସିଲେ ଯାଇ ଯମକଣ୍ଡ ।
ଯୁଦ୍ଧରେ ଅଭିମୁଖ ହୋଇ ଯେତେ ମଲେ
ବିମାନ ଚଢ଼ି ସ୍ୱର୍ଗପୁରକୁ ସେ ଗଲେ ।
ବାକି ଯେତେ ଶୂର ଯୁଦ୍ଧରେ ଥିଲେ ଜୀଇ
ତା ଦେଖି ଯୁଦ୍ଧ କଲେ ଅତି କ୍ରୋଧ ହୋଇ
ଭାବିଲେ ଏମାନଙ୍କ ପରି ଆମ୍ଭେମାନେ
ମଲେ ଯାଇ ବସିବା ଇନ୍ଦ୍ରଙ୍କ ଭବନେ ।
ଗଜକୁ ଗଜ ଘୋଡ଼ାଙ୍କର ତୁଲେ ଘୋଡ଼ା
ଯୁଦ୍ଧ କଲେ ଦୁଇଗୋଡ଼ରେ ହୋଇ ଛିଡ଼ା
ଏହି ସକାଶରୁ ଯେ ମହା ଧୂଳି ଉଡ଼ି
ରହିଲା ଦୁଇସୈନ୍ୟ ନୟନକୁ ମାଡ଼ି ।
ସେ ଘେନ ପର ଆପଣାକୁ ନ ଚିହ୍ନିଣ
ହାଣିଲେ ଅଣ୍ଟାଦେଶୁଁ କାଢ଼ିଣ କୃପାଣ ।
କେତେକାଳ ଧରିଣ ତହିଁ ଯୁଦ୍ଧ କଲେ
କେ ବଧା ଖୁନ୍ଦା ଆଣ୍ଠ କରିଣ ମାଇଲେ ।
କେତେ ଲୋକ କୁକୁର ପରାୟେ କାମୋଡ଼ା
କାମୋଡ଼ି ହୋଇ ଯୁଦ୍ଧ କଲେ ଛାଡ଼ି ବ୍ରୀଡ଼ା
ନର ଅଶ୍ୱ ଗଜର ଦେହରୁ ରକତ
ବହିଲା ନଦୀଟାଏ ହେଲା ତହିଁ ଜାତ ।
ଅଶ୍ୱ ଗଜ ନର ମଡ଼ାକୁ କାଷ୍ଠ ପରି
ଭସାଇଲା ସେ ନଦୀ ହୋଇ ଭୟଙ୍କରୀ ।
ବୀରମାନେ କେବଳ ବାହୁ କରି ଭେଳା
ତରିଲେ ସେ ମହାନଦୀକି କରି ହେଳା ।
ପହଁରି ନ ଜାଣିମା ଯେ ଯୋଦ୍ଧା ଯେ ପଶିଲେ
ସ୍ରୋତମଧ୍ୟରେ ପଡ଼ିକରି ଭାସିଗଲେ ।
ଦୁଇ ସେନାଯାକ ଯେ ପାଟବସ୍ତ୍ର ପିନ୍ଧା
ପିନ୍ଧିଲା ପରାଏ ହଣିଲା ହୋଇ ଧନ୍ଦା ।

—*—

## ଭୀମ ଓ କର୍ଣ୍ଣଙ୍କ ଯୁଦ୍ଧ

ତୁମ୍ଭପୁଅସୈନ୍ୟ ଭୀମରେ ପାଇ ପୀଡ଼ା
ପଳାଇଲେ ପଛକୁ ଛାଡ଼ିଦେଇ ବ୍ରୀଡ଼ା ।
ସେମାନଙ୍କ ଭାଗୁଡ଼ ଦେଖି ଦୁର୍ଯ୍ୟୋଧନ
ବୋଇଲେ ନ ଲେଅ କରି ଅଯୋଧନ

ତୁମ୍ଭ ପୁଅ ବଚନ ନ ଶୁଣି ସେନାଏ
ଆବା ଆବା ବୋଲି ଡାକିଲେ ଅନ୍ତରେ ।
କୁରୁଙ୍କୁ ସଙ୍ଗେ ଘେନି ଭୀମସେନଠାକୁ
ଧାଇଁଲେ ସୁବଳଙ୍କ ସୁତ ଯୁଝିବାକୁ ।
କର୍ଣ୍ଣ ବୋଇଲେ ଆହେ ଶଲ୍ୟ କସ ଦେଖ
ବାହ ରଥ ମାରିବ ବାତବେଷ୍ଟା ମୂର୍ଖ ।
କର୍ଣ୍ଣଙ୍କର ମୁଖୁଁ ଶୁଣି ଏ ବଚନକୁ
ବାହିଲେ ରଥ ଶଲ୍ୟ ଭୀମସେନଠାକୁ ।
କର୍ଣ୍ଣର ଆସିବାର ଦେଖି ଭୀମ ବଳୀ
ବାହାରିଲେ କର୍ଣ୍ଣକୁ ମାରି ବାହା ବଳି ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଦୁହିଁଙ୍କି ବୋଇଲେ
ଜଗିଥାଅ ରାଜାଙ୍କୁ ଯୁଦ୍ଧେ ତୁମ୍ଭେ ଭଲେ ।
କର୍ଣ୍ଣ ମୋ ଆଗେ ଯୁଧିଷ୍ଠିରଙ୍କ ବର୍ମ କାଟି
ଦେଲା ଯୁଦ୍ଧ ଦାଣ୍ଡେ ଯେ ନବମଦଶାଟି ।
ସେ କଥା ବଥା ହୋଇଅଛି ମୋର ହିୟା
କି କହିବ କ୍ରୋଧେ ମୁଁ ହୋଇଛି ତ ନିଆଁ ।
ଏ ସକାଶୁ କର୍ଣ୍ଣର ତୁଟିଲା କରି ରଣ
ମାରିବ ମରିବ ବା ଦେଖ ରଥିଗଣ ।
ଏରୂପେ କହି ଭୀମ କରି ସିଂହନାଦ
ହେଲେ ଯୁଦ୍ଧଦାଣ୍ଡେ କର୍ଣ୍ଣର ଭୟପ୍ରଦ ।
ଭୀମଙ୍କୁ ଦେଖି ଶଲ୍ୟ କହିଲେ କର୍ଣ୍ଣଙ୍କୁ
ଦେଖ ଆସୁଅଛି ହେ ଭୀମ ତୁମ୍ଭଠାକୁ ।
କାଳ ପରି ଭୀମସେନ ଯେ ଧରି ରୂପ
ବଢ଼ାଇବେ ଆଜ ଆଜରେ ତୁମ୍ଭ ତାପ ।
ତିନଲୋକଯାକ ହୋଇଲେ ଆଜ ଗୋଟି
ଭୀମଙ୍କୁ ନ ପାରିବେ ଯୁଦ୍ଧଦାଣ୍ଡେ ଯୋଟି ।
ଏହିକାଳେ ଭୀମ ଯେ କର୍ଣ୍ଣଙ୍କ ସମୀପେ
ରୂପ ସେ ଧରି ପାଇଗଲେ ସେହିଧାପେ ।
କର୍ଣ୍ଣ ବୋଇଲେ ହେ କହିଲ ଶଲ୍ୟ ଯାହା
ମାନୁଅଛି ସତ୍ୟ କରି ଯେ ମୁହିଁ ତାହା ।
ସାରରେ ଭୀମ ପରି ଯୁଦ୍ଧେ କେହି ନାହିଁ
କ୍ରୋଧନରେ ଯେ ଅଗ୍ରଗାର ତାଙ୍କୁ କହି ।
ବଳେ ତାଙ୍କପରି ତାଙ୍କୁ ସେ ଅନୁରୂପ
ପାରନ୍ତି ସେ ପରଜନଙ୍କୁ ଦେଇ ତାପ ।
ଭୀମ ଏକା ବିରାଟନଗ୍ରେ କୀଚକକୁ
ଲୁଚି କରି ମାରିବ ନ ଦେଖି କାହାକୁ ।
ଆଜ ଭୀମ ଯେବେଁ କ୍ରୋଧନ ହୋଇଛନ୍ତି
ମୃତ୍ୟୁଦେବ ମୃତ୍ୟୁକୁ ଦେଇ ସେ ପାରନ୍ତି ।
ମୁଁ ତ ମନେ କରିଛି ଯୁଝି ଅର୍ଜୁନଙ୍କୁ
ଜିଣିଲେ ଜଶ ମଲେ ପାଇବି ସ୍ୱର୍ଗକୁ ।
ଭୀମଙ୍କ ତୁଟିଲେ କରୁ କରୁ ମୁଁ ସମର
ଆସିବ ବା ଯୁଝି ଗାଣ୍ଡୀବ ଧନୁର୍ଦ୍ଧର ।
ଏଥିକି ଯେ ଉଚିତ ହେବ ତା ବିଚାର
ଶଲ୍ୟ ମୋତେ ହେ ଆଉ ବସି ନ ପଚାର ।
କର୍ଣ୍ଣଙ୍କର ବଚନ ଶୁଣି ଶଲ୍ୟ ବଳୀ
କହିଲେ ସେ କର୍ଣ୍ଣଙ୍କୁ ପୁଣି ନେହ ଢାଳି ।
ବୋଇଲେ ଆହେ କର୍ଣ୍ଣ ତୁମ୍ଭ ମନୋରଥ
ଯା କରନ୍ତି ତାହା କରିବ ବିହି ପାର୍ଥ ।
କର୍ଣ୍ଣ ବୋଇଲେ ହେ ଭୀମଙ୍କଠାକୁ ବେଗି
ବାହ ରଥ ଯୁଦ୍ଧେ ସେ ହୋଇଛନ୍ତି ରାଗୀ ।
ଶଲ୍ୟ ସେହିକ୍ଷଣ ବାହିଣ କର୍ଣ୍ଣରଥ
କଲେ ଯହିଁ ଥିଲେ ସେ ଭୀମ ମହାରଥୀ ।
କର୍ଣ୍ଣ ଭୀମ ଦୁହିଙ୍କ ସମାଗମ ବୁଝି
ଫୁଙ୍କିଲେ ଦୁଇସେନା ଶଙ୍ଖକୁ ନଠାଇ ।
ଭୀମ କ୍ରୋଧ ହୋଇ ତୁମ୍ଭର ସଇନକୁ
ଘୋଡ଼ାଇ ଦେଲେ ରାପେ ଖଣ୍ଡ ମାର୍ଗଣକୁ ।
ପୁଣି କର୍ଣ୍ଣ ସମୀପେ ହୋଇ ପରବେଶ
ବୋଇଲେ ରାଧାସୁତ ଯୁଝିବା ତ ଆସ ।
କର୍ଣ୍ଣ ଭୀମ ହୃଦଦେଶକୁ କାଣ୍ଡ ବିନ୍ଧି
ମାରଗଣଗଣରେ ଦେଲେ ପୁଣି ରୁନ୍ଧି ।
ଭୀମ କର୍ଣ୍ଣଦେହେ ବଜାଇ ନବକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
କର୍ଣ୍ଣ ଭୀମଙ୍କର କୋଦଣ୍ଡଟିକୁ କାଟି
ବିନ୍ଧିଲେ ତାଙ୍କ ହୃଦଦେଶେ ନାରାଚଟି ।
ଆନ ଧନୁଟାଏ ଧରିଣ ବାତବେଷ୍ଟା
କର୍ଣ୍ଣର ମରମକୁ ଶରେ କଲେ ଫଟା ।
ପଚାଶଟି କାଣ୍ଡ ସେ କର୍ଣ୍ଣଯାଏ ଟାଣି
ବିନ୍ଧିଲେ କର୍ଣ୍ଣ ଭୀମ ମରଣକୁ ଜାଣି ।
ଭୀମ ସେ କାଣ୍ଡେ କ୍ରୋଧେ ଥରାଇ ଦେହକୁ
ଧନୁ ମଧ୍ୟେ ଯୋଖିଲେ ଉତ୍ତମ ଶରକୁ ।
ସେ ଶରୁଟି ବାଜିଲେ ପାରେ ଗିରି ଭେଦି
କର୍ଣ୍ଣେ ଜାଣି ଭୀମ ହେବାକୁ ନିର୍ବାଧ ।

ବିନ୍ଧିଲେ ତାହା ସହ୍ୟେ ଯୁଦ୍ଧଦାଣ୍ଡେ ବୃନ୍ଦେ
ଚଳିଲା ସେ ଜ୍ୟୋଷ୍ଠରେ ଜଳିଲା ପ୍ରଚଣ୍ଡେ ।
ବଜ୍ର ପରାଏ ଯୁଦ୍ଧଦାଣ୍ଡରେ ଗରଜି
ନିକଳିଲା କର୍ଣ୍ଣଙ୍କ ହୃଦୟରେ ମଜ୍ଜି ।
ସେ ସକାଶୁଁ କର୍ଣ୍ଣ ରଥରେ ଚଷ୍ଟ ହୋଇ
ଶୋଇଲେ ଧନୁଟି କରକୁ ପକାଇ ।
ଶଲ୍ୟ ତାହା ଦେଖିଣ ଆନଠାକୁ ରଥ
ବାହୁନେଲେ ଭୀମ ଛେଦନ୍ତି ବୋଲି ମାଥ ।
କର୍ଣ୍ଣଙ୍କୁ ଜିଣି ଭୀମ ଦୁର୍ଯ୍ୟୋଧନ ସେନା
ମାଇଲେ ଯୁଦ୍ଧଦାଣ୍ଡେ ହୋଇ କ୍ରୋଧମନ ।
ଧୃତରାଷ୍ଟ୍ର ବୋଇଲେ ଦୁର୍ଯ୍ୟୋଧନ ମୋର
ଟେକୁଥାଏ କର୍ଣ୍ଣକୁ ବୋଲି ବଳୟାର ।
ସେହି କର୍ଣ୍ଣ ତ ଆଜି ଭୀମସେନ କାଣ୍ଡେ
ପଡ଼ିଲେ ମୋହ ଯାଇ ରଥେ ରଣ ଦାଣ୍ଡେ ।
ତାହା ଦେଖି ମୋହର ଦୁର୍ଯ୍ୟୋଧନ ସୁତ
କି କଲା କହ ସଞ୍ଜୟ ମୋ ଆଗେ କହ ତ ।
ସଞ୍ଜୟ ବୋଇଲେ କର୍ଣ୍ଣର ମୋହ ଦେଖି
ଦୁର୍ଯ୍ୟୋଧନ ରାଜା ହୋଇଣ ଅତି ଦୁଃଖୀ ।
ଭାଇଙ୍କି ବୋଇଲେ କର୍ଣ୍ଣକୁ ଜଗ ଯାଇ
ନୋହିଲେ ପାଣ୍ଡୁପୋଏ ଦେବେଟି ବଡ଼ାଇ ।
ଏହା ଶୁଣି ସମ ବିକଟ ଧନୁର୍ଗ୍ରାହ
ଦୁର୍ମ୍ମଦ ଜଳସନ୍ଧ ବିବତ୍ସୁ ପାଶୀ ସହ ।
ନିଷଙ୍ଗୀ ଦୁଷ୍ପ୍ରଧର୍ଷ କ୍ରଥ ଉପନନ୍ଦ
ଶ୍ରୁତବର୍ମା ସୁବର୍ଚ୍ଚା କବଚୀ ଶଳ ନନ୍ଦ ।
ବାତବେଗ ସୁବାହୁ ଦୁର୍ଦ୍ଧର୍ଷ ବୀରେ
ଧାଇଁ ସମର କଲେ ଭୀମଙ୍କ ସଙ୍ଗରେ ।
ଏହାଙ୍କର ସଙ୍ଗରେ ଚୂମ୍ନ ରଥିମନ୍ତି
ଗୋଡ଼ାଇଲେ ଯୁଦ୍ଧରେ ଦେଇକରି ମନ୍ତ ।
ଚୂମ୍ନ ମହାରଥରୁ ପଚିଶ ରଥିଙ୍କି
ଭୀମ ଦେଲେ ଯେ ପ୍ରେତପତିଙ୍କ କଟକ ।
ଭଲ୍ଲକାଣ୍ଡେ ବିବତ୍ସୁ ମୁଣ୍ଡୁଟିକ ଭୀମ
କୁଣ୍ଡଳ ଭୁଲେ ଦେଲେ କାଟି ବହ୍ନି ତମ ।
ବିବତ୍ସୁର ମୃତ୍ୟୁ ଦେଖିଣ ସବୁ ସୁତେ
ଚୂମ୍ନର ଯୁଝିଲେ ଭୀମଙ୍କ କ୍ରୋଧଚିତ୍ତେ ।
ବିକଟ ସହଙ୍କର ଭଲ୍ଲକାଣ୍ଡେ ଗଳ
ଦୁଇଖଣ୍ଡ କରିଲେ ପବନଙ୍କ ବାଳ ।

ପବନରେ ବୃକ୍ଷ ପଡ଼ିବା ପରି ସହ୍ୟେ
ପଡ଼ିଲା ତଳେ ଅସି ସେ ଦୁର୍ମ୍ମୁଖଙ୍କ କାୟେ ।
କ୍ରଥକୁ ନାରାଚକେ ତଳେ ଶୁଆଇଲେ
ଆଉ ବାକି ଯେ ଥାଇଥିଲେ ଯୁଦ୍ଧକଲେ ।
ଚୂମ୍ନ ପୁଅମାନଙ୍କ ଦେଖିଣ ମରଣ
କାନ୍ଦିଲେ ସେନାଯାକ ତେଜି ଅଶ୍ରୁବଣ ।
ଏଥୁଅନ୍ତେ ଭୀମ ଯେ ନନ୍ଦ ଉପନନ୍ଦ
ଦୁହିଁଙ୍କି ନାଶ କଲେ ଶିର କାଟି କନ୍ଧ ।
ଆଉ ଯେ ଥାଇଥିଲେ ମଲୁ ବେଳ ରଡ଼ି
କରି ଯୁଦ୍ଧଦାଣ୍ଡୁ ଭାଜିଲେ ଲଜ୍ଜା ଛାଡ଼ି ।
କର୍ଣ୍ଣ ଚୂମ୍ନ ପୁଅଙ୍କ ନିଧନକୁ ଦେଖି
ଭୀମଠାକୁ ଆସିଲେ ଧନୁ ଶର ଯୋଖି ।
ସେ ଦୁଇ ରଥ ଏକ ହୋଇ ମିଶାମିଶି
ଯ ସ୍ୱକମ୍ପନ ହେଲେ ଦେହେ କଷାକଷି ।
ତାହା ଦେଖିଣ ମୁହିଁ ଭାବିଲି ମାନସେ
ଆଜି ଦୁହେଁଟି ମରିଯିବେ ଯୁଦ୍ଧ ଶେଷେ ।
ଛାଡ଼ଣ ମାରଗଣ ଭୀମ ଶରାସନ
କରିଦେଲେ କର୍ଣ୍ଣକୁ ସମରେ ଆଚ୍ଛନ୍ନ ।
କର୍ଣ୍ଣ ତୋରା ହୋଇ ଭୀମଙ୍କୁ ଭଲ୍ଲକାଣ୍ଡ
ବିନ୍ଧିଲେ କ୍ରୋଧେ ଜାଳ କରି ନିଜ ପିଣ୍ଡ ।
କର୍ଣ୍ଣ କାଣ୍ଡ ବାଜନ୍ତେ ଭୀମ ମହାବଳୀ
ବିନ୍ଧିଲେ ସାତକାଣ୍ଡ କର୍ଣ୍ଣକୁ ସେ ତଳି ।
ସର୍ପ ପରାୟେ କର୍ଣ୍ଣ ପକାଇ ନିଶ୍ୱାସ
ବିନ୍ଧିଲେ ଶର ଆଶୀବିଷର ସଦୃଶ ।
ଭୀମ ଶରେ କର୍ଣ୍ଣେ ଆଚ୍ଛନ୍ନ କରି ଦେଇ
ଗରଜନ କରିଲେ ଅତି କ୍ରୋଧ ବହି ।
କର୍ଣ୍ଣ ଭୀମ ଦେହକୁ ଶର କଙ୍କପତ୍ର
ବିନ୍ଧି କମ୍ପାଇ ଦେଲେ ତାହାଙ୍କର ଗାତ୍ର ।
ଏ ବାହାରେ ଯେ ଭଲ୍ଲ ଭଲ କାଣ୍ଡ ବିନ୍ଧି
ଭୀମ ହାତ ଧନୁକୁ ପକାଇଲେ ଛେଦି ।
ମୃତ୍ୟୁ ଦଣ୍ଡ ପରି ପରିଘ ଭୀମସେନ
ଫିଙ୍ଗିଲେ ଘେନିବାକୁ କର୍ଣ୍ଣର ଜୀବନ ।
କର୍ଣ୍ଣ ତାହା ଦେଖିଣ ବିନ୍ଧି ମାରଗଣ
କାଟି ପକାଇଲେଟି ନ ନେଉଁ ପରାଣ ।
ପୁଣି ଭୀମ ଧନୁକୁ ଧରି କରିତଦେଶେ
ବିନ୍ଧିଲେ ନାନାଜାତି କାଣ୍ଡମାନ ଶେଷେ ।

ହରି ଇନ୍ଦ୍ର ପରାଏ କର୍ଣ୍ଣ ବୃକୋଦର
ଯୁଦ୍ଧ କରିଲେ ସରଜନା କରି ଶର ।
କର୍ଣ୍ଣର ପରଯନ୍ତେ କର୍ଣ୍ଣ ଧନୁ ଟାଣି
ଭୀମ କର୍ଣ୍ଣମୂଳକୁ ବାନ୍ଧିଲେ ନ ମଣି ।
ଭୀମ ତା ନ ସହି କର୍ଣ୍ଣର ପ୍ରାଣହର
ଶର ଯୋଖି ଧନୁରେ କଲେ ସେ ପ୍ରହାର ।
ସେ ଶର ସର୍ପ ପରି ଗମି ଯୁଦ୍ଧଦାଣ୍ଡେ
କର୍ଣ୍ଣ ଦେହ ଭଳକୁ ଗଳିଗଲା ଝୁଣ୍ଡେ ।
କର୍ଣ୍ଣ ସେ ପ୍ରହାରରେ ହୃଦୟ କମ୍ପାଇ
ଭାବିଲେ ଆଜ ବା ଭେଟିବା ପ୍ରେତସାଇଁ ।
ପୁଣି କର୍ଣ୍ଣ ଦେଖାଇ ନିଜ ବିକ୍ରମକୁ
ବାନ୍ଧିଲେ ପଚାଶଟି ନାରାଚ ଭୀମଙ୍କୁ ।
ପୁଣି କାଣ୍ଡକରେ ଭୀମଙ୍କ ଧନୁ କାଟି
ବୋଇଲେ ମଲୁ ଆଜ ପବନ ଚେଟାଟି ।
ଭୀମ ତାଙ୍କ ସେ ଭାଷା ସହି ନ ପାରିଲେ
ଗଦା ଧରି ରଥରୁ ଡେଇଁଣ ପଡ଼ିଲେ ।
ସିଂହପରି ଗର୍ଜ୍ଜ କରି ସେ ବୀରରାଜ
ପିଟି ଗଦା ନାଶିଲେ ଭ୍ରମନ୍ତ ନରଗଜ ।
ଭୀମ ଗଦା ଘାତରେ ଦନ୍ତ କୁମ୍ଭ ପିଟି
ଭାଙ୍ଗନ୍ତେ ହାତୀମାନେ ଶୋଇଲେ ନ ଉଠି ।
ଏ ରୂପେ ସାତଶ ହାତୀଙ୍କ ପ୍ରାଣ ବଳ
ଦଳି ପକାଇଲେ ସେ ଭୀମ ମହାବଳ ।
ସୁବଳ ପୁତ୍ରଙ୍କର ବାଆନଟି ହାତୀ
ଯୁଝୁଥିଲେ ତାହାଙ୍କୁ ମାଇଲେ ମାରୁତି ।
ଶତ ରଥୀ ଶଏ ପାଇକଙ୍କର ପ୍ରାଣ
ନେଲେ ଭୀମ ଯୁଦ୍ଧେ ଦେଖାଇଣ ଟାଣ ।
ଭୀମଙ୍କରେ ସନ୍ତାପୀ ହୋଇ ସୈନ୍ୟ ନର
ସାଙ୍କୋଚ ଗଲେ ଭୟେ ସେ ଯୁଦ୍ଧଦାଣ୍ଡର ।
ତା ଦେଖି ଭ୍ରମନ୍ତ ପାଞ୍ଚଶ ମହାରଥୀ
ଭୀମଙ୍କୁ ଯୁଝିବାକୁ ଆସି ନୋହି ବ୍ୟର୍ଥୀ ।
ସେ ପାଞ୍ଚଶଯୋଧଙ୍କ ରଥଧ୍ୱଜଯାକ
ଭାଙ୍ଗିଲେ ଗଦା ପିଟି ଭୀମ ଗୁଡ଼ ଦକ ।
ଶକୁନିରେ ପ୍ରେରିତ ହୋଇଣ ସିପାଇ
ସପ୍ତ ଶତ ଆସି ଯୁଝିଲେ ରୋଷ ବହି ।
ଭୀମ ସେ ସିପାଇଙ୍କି ନ କରି ଗଣନା
ଗଦା ପିଟି ଡାକିଲେ ଯମ ନିଅ ଜନା ।

ଏରୂପେ କର୍ମ କରି ସାରି ଭୀମସେନ
ନିଜ ରଥବର ଆରୋହି ବହନ ।
କର୍ଣ୍ଣେ ଯୁଝିବାକୁ ଧାଇଁଲେ ଉଗ୍ର ହୋଇ
ବଚନରେ ବୋଲେ ରହ ଯିବୁ କାହିଁ ।
କର୍ଣ୍ଣ ଯୁଧିଷ୍ଠିରଙ୍କୁ ଆଚ୍ଛାଦନ କାଣ୍ଡେ
ତାଙ୍କ ସାରଥିକ ପେଷିଲେ ଯମଦାଣ୍ଡେ ।
ସାରଥି ମଲାକ୍ଷଣି ଯୁଧିଷ୍ଠିରଙ୍କର
ମନକୁ ଘୋଟକେ ଗମିଲେ ଖରତର ।
କର୍ଣ୍ଣ ତାହା ଦେଖିଣ ଧାଇଁ ତାଙ୍କ ପଛେ
ବୋଇଲେ ରହ ଯୁଝିବା ହେ ପାଣ୍ଡୁ ବଚ୍ଛେ
ଭୀମ ତାହା ନ ସହିପାରି ଶରାସନ
ଓଟାରି ଶର କଲେ କର୍ଣ୍ଣକୁ ଆଚ୍ଛନ୍ନ ।
କର୍ଣ୍ଣ ଯୁଧିଷ୍ଠିରଙ୍କଠାରୁ ନିବର୍ତ୍ତିଲେ
ଭୀମଙ୍କୁ ଯୋଖି ଶର ସଳଖେ ବାନ୍ଧିଲେ ।
ସାତ୍ୟକି ସେକାଳେ ଭୀମଙ୍କ ପୃଷ୍ଠସାହା
ହୋଇଲେ ଆସି ଭୟେ ଧନୁ ଧରି ବାହା ।
କର୍ଣ୍ଣ ଭୀମଙ୍କ ଶରେ ଆକାଶ ପ୍ରବେଶୀ
ଦେଖି ନ ପାରିଲାଟି ଭୟେ ଆମ୍ଭ ଦୃଶି ।

—※—

## ଅର୍ଜ୍ଜୁନଙ୍କ ସହ ବିପକ୍ଷସେନାରଯୁଦ୍ଧ

ଶକୁନି କୃତବର୍ମା ଦ୍ରୌଣି କର୍ଣ୍ଣ କୃପ
ଯୁଦ୍ଧ କଲେ ଭୂପରେ ପୁରାଇଣ କୋପ ।
କୁରୁଏ ତା ଦେଖି ରହିଲେ ଗୋଟି ହୋଇ
ଯୁଝିଲେ ଯେ ଯାହାର ଧନୁକୁ କମ୍ପାଇ ।
ଯେଉଁରୂପେ ସେ ଦିନ ମଧ୍ୟାହ୍ନେ ସମର
ହୋଇଲା ଦେଖା ଶୁଣା ନାହିଁ କେବେ ମୋର ।
ଜଳରେ ଜଳ ମିଶି ଗଲା ପ୍ରାୟେ ହୋଇ
ଦୁଇସେନା ମିଶି ଯୁଝିଲେ ନରସାଇଁ ।
ଯେ ଯାହା ନାମମାନ ବଚନେ ଉଚ୍ଚାର
ହଣାହଣି ହୋଇଲେ ଖଣ୍ଡା ଟେକି କରି ।
ଭ୍ରମନ୍ତ ତାଙ୍କ ଷଣ୍ଢିଏ ପରସ୍ପରେ ଜୟ
ଇଚ୍ଛା କରିଣ ଯୁଦ୍ଧ ଟିରରେ ଉଦୟ ।
ହୋଇ ସୂର୍ଯ୍ୟପରି ତେଜକୁ ପରକାଶି
ଗ୍ଲାନିଲେ ଶର କରଣରେ ହିଗରାଶି ।
ମୁଷଳ ଗଦା ପ୍ରାସ ଭୃଷଣ୍ଡି ତୋମର
ଅବଚ୍ଛିନ୍ନେ ମାଇଲେ ଦୁଇ ଯୋଦ୍ଧା ନର ।

ଶଲଭ ପରି ସବୁଆଡ଼େ ଶରବୃଷ୍ଟି
ହୁଅନ୍ତେ ଘୋଡ଼ହେଲା ଭୟ ତମେ ଦୃଷ୍ଟି ।
ଅନ୍ୟୋନ୍ୟରେ ପାଇକ ରଥୀ ମହାମରି
ହୋଇ ରଣଦାଣ୍ଡରେ ଶୋଇଲେ ସେ ମରି ।
ଭୟାକ୍ରାନ୍ତ ଅଙ୍ଗେ ବାଜନ୍ତେ କାଣ୍ଡ ଖଣ୍ଡା
ଛନ୍ଦା କଲେ ବକଳେ ବାଡ଼ବଜା ଧଣ୍ଡା ।
ରକତ ମାଉଁସେ ସେ ଯୁଦ୍ଧଦାଣ୍ଡେ ବୃଷ୍ଟି
ହୋଇଣ ଜଣିଲେ ପାଟପୋକ ସୃଷ୍ଟି ।
ବୀରଙ୍କୁ ଘେନ ଶୋଇବାକୁ ବସୁନ୍ଧରା
ପହଡ଼ିଲା କି ପାଟବସ୍ତ୍ର ଥିଲା ତୋରା ।
ବାହୁ ଉରୁ କବଚ ଯୋଦ୍ଧାଙ୍କର ଛିଡ଼ି
ଯୁଦ୍ଧଦାଣ୍ଡେ ରାଶ୍ୟେ ହୋଇଲେ ଗଡ଼ାଗଡ଼ି ।
ଗଜାରୋହେ ଗଜାରୋହଙ୍କୁ ଯେ ମାଇଲେ
ସିପାଇଙ୍କି ସିପାଇମାନେ ସଂହାରିଲେ ।
ତୋମରଷ୍ଟିମାନଙ୍କୁ ଦେଖି ଯୁଦ୍ଧଦାଣ୍ଡେ
ହସ୍ତିମାନେ ଶୁଣ୍ଢାରେ ଗର୍ଜିଲେ ତା ଖଣ୍ଡେ
ଛିଡ଼ନ୍ତେ ନାରାଚରେ ହାତୀଙ୍କର ବର୍ମ
ମେଘ ବନା ପର୍ବତଙ୍କୁ ସେ ହେଲେ ସମ ।
କାଣ୍ଡମାନେ ହାତୀଙ୍କ ଦେହରେ ବାଜନ୍ତେ
ଶୈଳ ଉଲ୍‌କା ପରି ବଶିଲେ ମହାମତେ ।
କେତେ ହାତୀ ହାତୀଙ୍କି ମାରନ୍ତେ ଟି ରଡ଼ି
ନ ସହି ତା କେତେ ପଳାଇଲେ ଛାଡ଼ି ।
କେତେ ହାତୀ ମାର୍ଗଣ ଯୋଗୁଁ ପାଇ ବ୍ୟଥା
ପଳାଇଲେ ପଛକୁ ପୋତିଦେଇ ମଥା ।
ଘୋଡ଼ମାନେ କାଣ୍ଡମାନଙ୍କେ ଶୀର୍ଣ୍ଣ ହୋଇ
ପଳାଇଲେ ଯୁଦ୍ଧଦାଣ୍ଡରୁ ନରସାଇଁ ।
ପାଇକମାନେ ତଳେ ପଡ଼ି ଦାଦ ଭାଇ
ଘେନ ଯାଅ ବୋଲି ଡାକଲେ ତୋଷ ହୋଇ
ବୀରଙ୍କ ବାହୁ କାଣ୍ଡ ବାଜି ଛିଡ଼ି ପଡ଼ି
ନାନା ଜାତି ଚେଷ୍ଟାକରିଲେ ତଳେ ଗଡ଼ି ।
ଶସ୍ତ୍ର ପଡ଼ିବାରେ ଉଡ଼ନ୍ତେ ଚହୁଁ ଧୂଳି
ନୋହିଲା ଯୋଦ୍ଧାଙ୍କ ନୟନେ କିଛି କଳି ।
ଏ ସକାଶୁଁ ପର ଆପଣା ନୋହି ଜଣା
ଯୁଦ୍ଧ କଲେ ଯୋଦ୍ଧାଏ ହୋଇ କରି ବଣା ।
ଭୟଙ୍କର ହୋଇ ରକତ ନଦୀଟାଏ
ବହିଲା ସେକାଳେ ହେ ଅଗଣେୟ ରାଶ୍ୟେ ।

ଶୂରମାନେ ତା ଦେଖି ବାହୁ ଭେଳା କରି
ପାରି ହେଲେ ଟି ହେ ଯୁଝିବା ମନ ଧରି ।
ଭୟାକ୍ରାନ୍ତମାନଙ୍କ ହୁଅନ୍ତେ ଭୟ ଜାତ
ବୋଇଲେ ମଲେ ପୋଷିବ କେ ଆମ୍ଭ ସୁତ ।
ଅଗଣା ହୋଇ ଯୁଦ୍ଧଦାଣ୍ଡରେ କବନ୍ଧ
ନୃତ୍ୟ କରି ଯୋଦ୍ଧାଙ୍କ ନେତ୍ର କଲେ ବନ୍ଧ ।
ଭୂତ ପ୍ରେତ ପିଶାଚ ରକ୍ତ ମାଂସ ଖାଇ
ନାଚିଲେ ରଣଦାଣ୍ଡେ ବୋଲି ଆଇ ଆଇ ।
କାକ ଗୃଧ୍ରମାନେ ଖାଇଣ ମାଂସ ବସା
ହୋଇଛୁ ଆଗୁ ବୋଲି କଲେ ପରଶଂସା ।
ଅନ୍ୟୋନ୍ୟରେ ଶୂରେ ଯେ ନାମ ଗୋତ୍ର କହି
ଯୁଦ୍ଧ କଲେ ରାଜନ ଛାଡ଼ିବାକୁ ମହୀ ।
ଏ ରୂପେ ଯୁଦ୍ଧ ଯହୁଁ ହୋଇଲା ରାଜନ
ଭୂମ୍ବର ସୈନ୍ୟପାଳ ହୋଇଗଲେ ଶୀର୍ଣ୍ଣ ।
ସେକାଳେ ଅର୍ଜ୍ଜୁନ ଗାଣ୍ଡୀବଧନୁର୍ଘୋଷ
ଶୁଣିଲା ସବୁଜନ କର୍ଣ୍ଣକୁ ନରେଶ ।
ସଂଶପ୍ତକମାନେ ଅର୍ଜ୍ଜୁନଙ୍କ ମସ୍ତକେ
ଶରବୃଷ୍ଟି ସର୍ଜନା କଲେଟି ନିଃଶଙ୍କେ ।
ଅର୍ଜ୍ଜୁନ ସେ ଶରବୃଷ୍ଟି କି ଦେହେ ସହି
ସୁଶର୍ମାଙ୍କୁ ପାଇଣ ଯୁଝିଲେ ରୋଷାଇ ।
ସୁଶର୍ମା ମଧ୍ୟ ଅର୍ଜ୍ଜୁନଙ୍କୁ କାଣ୍ଡମାନ
ବନ୍ଧିଲେ ବଛି ବାଛି ହସ୍ତିନା ରାଜନ ।
ସୁଶର୍ମା ଅର୍ଜ୍ଜୁନଙ୍କୁ ଦଶକାଣ୍ଡ ବନ୍ଧି
ତିନିକାଣ୍ଡରେ ଦେଲେ ଶ୍ରୀକୃଷ୍ଣଙ୍କୁ ରୁନ୍ଧି ।
କାଣ୍ଡକରେ ଅର୍ଜ୍ଜୁନ ଧ୍ୱଜକୁ ନରେଶ
କାଟିବି ବୋଲିଣ ବନ୍ଧିଲେ ବହି ରୋଷ ।
ବାଜନ୍ତେ ଶର ଯାଇ ବାନର ଧ୍ୱଜଟି
ଗରଜନ କରିଲା ମେଲିଣ ପାଟିଟି ।
ସେ ବାନର ଗର୍ଜନ ଶୁଣି ଭୂମ୍ବ ସେନା
ମଲୁଁ ବୋଲି କରି ହେଲେ ଭୟମନା ।
ପୁଣି ଧୈର୍ଯ୍ୟ ଧରି ଭୂମ୍ବର ସୈନ୍ୟଧାଡ଼ି
ଅର୍ଜ୍ଜୁନଙ୍କ ଶର ବନ୍ଧିଲେ ହରଘଡ଼ି ।
ସଂଶପ୍ତକମାନେ ନ ମାନି ଅର୍ଜ୍ଜୁନଙ୍କୁ
ବେଢ଼ି କରି ଧଇଲେ ଅର୍ଜ୍ଜୁନ ରଥକୁ ।
ବଚନେ ବୋଇଲେ ଅର୍ଜ୍ଜୁନ ଆଜ ମଲ
ବୋଲଉଥାଅ ପରା ବୀରବର ମଲି ।

ଏ ବାହାରେ କୃଷ୍ଣଙ୍କ ଅର୍ଜୁନଙ୍କ ହାତ
ଧଇଲେ ସଂଶପ୍ତକେ ଗୁଡ଼ ଭୟପଥ ।
ଏହା ଦେଖି କୃଷ୍ଣ ବାହୁକୁ ଦେଲେ ଝାଡ଼
ପଡ଼ିଲେ ସଂଶପ୍ତକମାନେ ତଳେ ଝଡ଼ ।
ଅର୍ଜୁନ ତାହା ଦେଖି ଜଳି କ୍ରୋଧାନଳେ
ରଥେ ଥିବା ଲୋକଙ୍କୁ ପକାଇଲେ ତଳେ ।
ଏ ବାହାରେ ମାର୍ଗଣଗଣକୁ ପ୍ରହାର
ସଂଶପ୍ତକମାନଙ୍କ ପ୍ରାଣ ନେଲେ ହରି ।
ବୋଇଲେ ଆହେ କୃଷ୍ଣ ମୋ ବିନା ଏହାଙ୍କୁ
ଯୁଝିବ କେ ମହୀରେ ନ ଦେଖେ ବୀରଙ୍କୁ ।
ଗାଣ୍ଡୀବଧନୁ କାଣ୍ଡ ମୁନ ବଳଆଇ
ଆସିବ ରଥ ଧରି ଏମନ୍ତେ କେ ନାହିଁ ।
ଏରୂପେ ଅରଜୁନ କହିଣ କୃଷ୍ଣଙ୍କୁ
ଫୁଙ୍କିଲେ ଦେବଦତ୍ତ ଶଙ୍ଖ ଉତ୍ତମକୁ ।
କୃଷ୍ଣ ମଧ୍ୟ ପାଞ୍ଚଜନ୍ୟକୁ କରେ ଧରି
ବଜାଇଲେ ମହାରେ ଅତି ସୁଖ କରି ।
ସେ ବେନି ଶଙ୍ଖ ଧ୍ୱନି ଶୁଣି ସଂଶପ୍ତକେ
ପଡ଼ିଲେ ହୋଇ ଗଜନ ଯାଇ ଭୟ ଶୋକେ ।
ଅରଜୁନ ସେ ନାଗପାଶ ଅସ୍ତ୍ର କଲେ
ସଂଶପ୍ତକମାନଙ୍କ ପାଦକୁ ବାନ୍ଧିଲେ ।
ସେ ସକାଶୁଁ ଭୂମିରେ ସଂଶପ୍ତକଗଣ
ଚଳିନ ପାରିଲେ ଆଗକୁ ଚରଣ ।
ଅରଜୁନ ପୁଣି ସରଳ କାଣ୍ଡ ଧାଡ଼ି
ଦେଲେ ସଂଶପ୍ତକ ଗଣ୍ଡିରୁ ମୁଣ୍ଡ କାଢ଼ି ।
ସଂଶପ୍ତମାନେ ଧରିଣ କାଣ୍ଡ ଖଣ୍ଡା
ମାରିବା ମନ କଲେ ଅରଜୁନ ଦେଣ୍ଡା ।
ସୁଶର୍ମା ଗରୁଡ଼ାସ୍ତ୍ର ଧନୁରେ ବସାଇ
ଅର୍ଜୁନ ନାଗାସ୍ତ୍ର ନାଶିଲେ ନରସାଇଁ ।
ଯାଆନ୍ତେ ପାଦଦେଶୁ ଅର୍ଜୁନ ନାଗାସ୍ତ୍ର
ଯୁଝିଲେ ସଂଶପ୍ତକେ ଧରି କ୍ରୋଧେ ଗାତ୍ର
ପାର୍ଥ ସଂଶପ୍ତକ ଶିରକୁ ଶରେ କାଟି
ଭେଟାଇଦେଲେ ନେଇ ସୂର୍ଯ୍ୟଙ୍କ ବେଢ଼ାଟି
ସୁଶର୍ମା ଅର୍ଜୁନଙ୍କ ହୃଦୟକୁ କାଣ୍ଡେ
ବିନ୍ଧି ତିନକାଣ୍ଡ ବିନ୍ଧିଲେ ତାଙ୍କ ପିଣ୍ଡେ ।
ଅର୍ଜୁନ ସେ କାଣ୍ଡ ଘାତରେ ବ୍ୟଥା ପାଇ
ପଡ଼ିଲେ ବସି ରଥପରେ ନରସାଇଁ ।
ଭୂମି ଲୋକମାନେ ତା ଦେଖି ଅରଜୁନ
ମଲେ ବୋଲି ଉଚ୍ଚରେ କଲେ ଗରଜନ ।
ଅରଜୁନ କ୍ଷଣକେ ହୃଦେ ଜ୍ଞାନ ପାଇ
ଛିଡ଼ା ହେଲେ ଗାଣ୍ଡୀବ ଧନୁ କରେ ବହି ।
ଇନ୍ଦ୍ର ଦେବା ଅସ୍ତ୍ର ବସାଇ ଗୁଣେ ବୀର
ବିନ୍ଧିଲେ କରିବାକୁ ଶତ୍ରୁଙ୍କୁ ସଂହାର ।
ସେ ଅସ୍ତ୍ରରୁ ଶର ବାହାରି କୋଟି କୋଟି
ନିହାକରି ଅନ୍ତକଦେବ ମେଲ୍ଲପାଟି ।
ସଂଶପ୍ତକମାନଙ୍କର ସେ ମୁଣ୍ଡ କୋଟି
କାଟିଣ ବଢ଼ାଇଲା କଷ୍ଟୀ ଯଶଟି ।
ନିର୍ଧୂମ ଅଗ୍ନିପରି ଅର୍ଜୁନଙ୍କ ତେଜ
ସେହିକାଳେ ପ୍ରକାଶିଲା ହେ ମହାରାଜ ।
ଚତୁର୍ଦ୍ଦଶ ସହସ୍ର ସଂଶପ୍ତକଗଣ
ଅଯୁତେ ରଥ ଘେନି ପାର୍ଥେ କଲେ ରଣ ।
ଏ ବାହାରେ ସହସ୍ର ତିନି ଦନ୍ତାବଳ
ଅରଜୁନ ଭୂଇରେ ଆରମ୍ଭିଲେ ଗୋଳ ।
ନିଜର ସେନା ଦଶା ଦେଖି ଦୁର୍ଯ୍ୟୋଧନ
ଘେନିଣ ଦ୍ରୌଣୀ କୃପ କୃତବର୍ମା କର୍ଣ୍ଣ ।
ଅରଜୁନଠାକୁ ଆସିଲେ ବେଗେ ଧାଇଁ
ଯୁଝିବା କଥାଟିରେ ମାନସକୁ ଦେଇ ।
ଭୂମି ଶଳା ଶକୁନି ଉଲୂକ ପୁଅ ଭୁଲେ
ଧାଇଁ ଆସି ମଧ୍ୟ ପାର୍ଥଙ୍କୁ ଯୁଦ୍ଧ କଲେ ।

—※—

## କୃପ ଓ ଶିଖଣ୍ଡୀଙ୍କ ଯୁଦ୍ଧ

ମୁହୂର୍ତ୍ତେ ପରଯନ୍ତେ ଘୋର ଭୟଙ୍କର
ଶୁରସନ୍ତୋଷକାରୀ ହୋଇଲା ସମର ।
କୃପାଚାର୍ଯ୍ୟ ସେକାଳେ ଶରବୃଷ୍ଟି କରି
ଘୋଡ଼ାଇଲେ ବେଗେ ସୃଞ୍ଜୟ ବଳଗିରି ।
ଶିଖଣ୍ଡୀ ତାହା ଦେଖି ସହି ନ ପାରିଲେ
କୃପଙ୍କ ଶର ବିନ୍ଧି ସମରେ ଛିନ୍ଦିଲେ ।
କୃପ ଯେ ଶିଖଣ୍ଡୀର ଶରକୁ ସଂହାରି
ଶିଖଣ୍ଡୀଙ୍କ ବିନ୍ଧିଲେ ଦଶକାଣ୍ଡ ଧରି ।
ଶିଖଣ୍ଡୀ କ୍ରୋଧ ହୋଇ କୃପଙ୍କ ଦେହକୁ
ବିନ୍ଧିଲେ ସାତଗୋଟି ଉତ୍ତମ ଶରକୁ ।
କୃପ ତା ନ ସହି ଦେଖାଇ ସାମରଥ
କରିଲେ ଶିଖଣ୍ଡୀଙ୍କ ଯୁଦ୍ଧରେ ବିରଥ ।

ଘୋଡ଼ାଏ ମରନ୍ତେ ଶିଖଣ୍ଡୀ କ୍ରୋଧ ହୋଇ
ଖଣ୍ଡାଫଳ ଧରି ଧାଇଁଲେ ଚୋଟ ବହି ।
ଶିଖଣ୍ଡୀ ହାତେ ଦେଖିକରି ଫଳଖଣ୍ଡା
ବିନ୍ଧିଲେ କୃପ ତାଙ୍କୁ ଶର ଚଣ୍ଡା ଚଣ୍ଡା ।
ଶିଖଣ୍ଡୀର ଏ ଦଶା ଧୃଷ୍ଟଦ୍ୟୁମ୍ନ ଦେଖି
ବାହାରିଲେ କୃପଙ୍କୁ ଯୁଝି ହୋଇ ଦୁଃଖୀ ।
କୃତବର୍ମା ଜାଣିଣ ଧୃଷ୍ଟଦ୍ୟୁମ୍ନ ମନ
ନିବାରି ବାଟ ତାଙ୍କୁ କଲେ ଆୟୋଧନ ।
ଭେଟା ଭେଟି ହୋଇଣ ଯୁଧିଷ୍ଠିର ଦ୍ରୌଣି
ବିନ୍ଧିଲେ ଶରମାନ ଧନୁ କରେ ଟାଣି ।
ନକୁଳ ସହଦେବ ଯୁଦ୍ଧେ ଧାଇଁଥିଲେ
କୁନ୍ତ ପୁଅ ଦୁର୍ଯ୍ୟୋଧନ ତା ନିବାରିଲେ ।
କରୁଷ କଇକେୟ ସୃଞ୍ଜୟମାନଙ୍କୁ
କର୍ଣ୍ଣ ନିବାରିଲେ ଦେଖାଇ ବିକ୍ରମକୁ ।
କୃପ ଚୋଟ ହୋଇଣ ଶିଖଣ୍ଡୀର ଗଣ୍ଡି
ପୋଡ଼ିବାକୁ ବିନ୍ଧିଲେ ଟାଣି ଧନୁ ଖଣ୍ଡି ।
ସେ କାଣ୍ଡଟିମାନଙ୍କୁ ଖଡ଼୍ଗେ ଦ୍ରୁପଦ
ସୁତ କାଟି କରିଟି ଲଭିଲେ ପ୍ରମୋଦ ।
ପୁଣି କୃପ କାଣ୍ଡରେ ଶତଚନ୍ଦ୍ର ଫଳ
ଦେଲେ ଯୁଦ୍ଧଦାଣ୍ଡରେ ଟିକି ଟିକି କରି ।
ଯାଆନ୍ତେ ଫଳ ଛାଡ଼ି ଶିଖଣ୍ଡୀ କୃପାଣ
ଧରି ଏକା କୃପଙ୍କୁ ଆରମ୍ଭିଲେ ରଣ ।

—❋—

## ବିପକ୍ଷ ସୈନ୍ୟଙ୍କ ମଧ୍ୟରେ ଯୁଦ୍ଧ

ସୁକେତୁ ସେହିକାଳେ କୃପ ପାଶେ ଆସି
ବିନ୍ଧିଲେ ନାନା ଜାତି କାଣ୍ଡ ହୋଇ ରୋଷୀ ।
ସେହି ଛିଦ୍ରକୁ ପାଇ ଦ୍ରୁପଦକୁମର
ପଳାଇଲେ ପଛକୁ ଛାଡ଼ିଣ ସମର ।
ସୁକେତୁ କୃପ ଦେହେ ଓଟାରିଣ ଚାପ
ନବଶର ବିନ୍ଧିଲେ ବହି ଅତି କୋପ ।
ପୁଣି କୃପଙ୍କର ଧନୁକୁ ଶରେ କାଟି
ପକାଇଦେଲେ ତଳେ ସାରଥି ମୁଣ୍ଡଟି ।
କୃପ କ୍ରୋଧ ହୋଇଣ ଧରି ଆନ ଧନୁ
ଛାଇଦେଲେ ଶରରେ ସୁକେତୁଙ୍କ ତନୁ ।
ସୁକେତୁ କୃପଙ୍କ କାଣ୍ଡକୁ ବହି ଅଙ୍ଗେ
କମ୍ପିଲେ ହେ ରାଜେ ଏରେ ଯୁଦ୍ଧରଙ୍ଗେ ।
ସେହି ଛିଦ୍ରେ ଶରରେ ସୁକେତୁର ମୁଣ୍ଡ
କାଟି କୃପ ପକାଇ ଦେଲେ ରଣଦାଣ୍ଡ ।
ସୁକେତୁଙ୍କ ମରଣ ଦେଖି ସେନାଗଣ
ପଳାଇଲେ କୃପଙ୍କୁ ନ କରି ଟି ରଣ ।
ଏହି ସମୟେ କୃତବର୍ମା ଧୃଷ୍ଟଦ୍ୟୁମ୍ନ
ରହ ରହ ବୋଲି କରିଲେ ଆୟୋଧନ ।
କ୍ରୋଧ ହୋଇ ଧୃଷ୍ଟଦ୍ୟୁମନ ନବକାଣ୍ଡ
ବିନ୍ଧି କୃତବର୍ମାଙ୍କ ଅଗାଇଲେ ପିଣ୍ଡ ।
କୃତବରମା ଧୃଷ୍ଟଦ୍ୟୁମନଙ୍କୁ କ୍ରୋଧେ
ମାରଗଣ ବିନ୍ଧିଣ ଘୋଡ଼ାଇଲେ ଯୁଦ୍ଧେ ।
ଧୃଷ୍ଟଦ୍ୟୁମ୍ନ ତା ଦେଖି ଉଡ଼ିଣ ଧନୁଟି
ବିନ୍ଧି ଶର କୃତବର୍ମାଙ୍କ କାଣ୍ଡ କାଟି ।
ପୁଣି ଶରବୃଷ୍ଟି କରିଣ ସେ ତାହାଙ୍କୁ
ଘୋଡ଼ାଇଦେଲେ ରଥ ତୁଲରେ ଅଶ୍ୱଙ୍କୁ ।
କୃତବର୍ମା ଧୃଷ୍ଟଦ୍ୟୁମନ ଶରବୃଷ୍ଟି
କାଟି ପକାଇଲେ ସରଜ ଶରସୃଷ୍ଟି ।
ସେହିକାଳେ ଧୃଷ୍ଟଦ୍ୟୁମନ ହୋଇ କ୍ରୋଧ
କଲେ କୃତବର୍ମାଙ୍କ ସାରଥିଙ୍କ ବଧ ।
ଏରୂପେ କୃତବର୍ମା ଆର ରଣେ ଜିଣି
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ କୁରୁଙ୍କୁ କାଣ୍ଡଶ୍ରେଣୀ ।
ତୁମ୍ଭର ଯୋଦ୍ଧମାନେ କରି ସିଂହନାଦ
କଲେ ଯୁଦ୍ଧେ ଧୃଷ୍ଟଦ୍ୟୁମନ ଭୁଲେ ବାଦ ।
ଅଶ୍ୱତ୍ଥାମା ଯୁଧିଷ୍ଠିରଙ୍କୁ ନେଦେ ଦେଖି
ଧାଇଁଲେ ହେ ଯୁଝିବାପାଇଁ ବୁଜ ଆଖି ।
ଅଶ୍ୱତ୍ଥାମା ଦିବ୍ୟାସ୍ତ୍ର ବଳେ ଦଶଦିଶ
ଦେଖି ନ ପାରିଲା ହେ ସେ କାଳରେ ଦୃଶ ।
ଅଶ୍ୱତ୍ଥାମା କାଣ୍ଡ ବୃନ୍ଦୁଆ ଆକାଶରେ
ହେଲା ପରି ମଣିଲେ ଯୋଦ୍ଧାଏ ମନରେ ।
ଶୂନ୍ୟେ ଥିବା ପକ୍ଷୀ ନ ପାଇ ମହୀ ତଳ
ମଲୁଁ ବୋଲି କରି ହୋଇଲେ ବିକଳ ।
ସାତ୍ୟକି ଯୁଧିଷ୍ଠିର ଆଦି ପରାକ୍ରମ
ଭାଙ୍ଗିଲେ ଦ୍ରୌଣି ଏକା ଦ୍ୱିଜଙ୍କ ଉତ୍ତମ ।
ସବୁ ମହାରଥୀଏ ଅଶ୍ୱତ୍ଥାମା ବଳ
ପରଶଂସା ସେକାଳେ କଲେ ହୋଇ ଠୂଳ ।
ଅଶ୍ୱତ୍ଥାମା ଦେହକୁ ନ ପାରି ଚାହିଁ
ବିଚାରିଲେ ଆଜ ଶୋଇବା ରଣଭୂଇଁ ।

ସାତ୍ୟକି ଯୁଧିଷ୍ଠିର ପାଞ୍ଚାଳ ଦ୍ରୌପଦେୟ
ଯୁଦ୍ଧ କଲେ ବେଢ଼ିଣ ଦ୍ରୋଣଙ୍କ ତନୟ ।
ସାତ୍ୟକି ଅଶ୍ୱତ୍ଥାମା ଦେହକୁ ପଚାଶି
ସାତ କାଣ୍ଡ ବିନ୍ଧିଲେ ହୋଇ ଅତି ରୋଷୀ ।
ଯୁଧିଷ୍ଠିର ତେସ୍ତରି ସାତ ପ୍ରତିବିନ୍ଧ୍ୟ
ବିନ୍ଧିଲେ ଶର ଯୁଦ୍ଧ ଦାଣ୍ଡେ ହୋଇ କ୍ରୋଧ ।
ଶ୍ରୁତବର୍ମା ତିନ ଯେ ଶ୍ରୁତକୀର୍ତ୍ତି ସାତ
ସୁତସୋମ ନବ ମାରଗଣ ନିଶିତ ।
ବିନ୍ଧି ଅଶ୍ୱତ୍ଥାମାଙ୍କୁ ଯୁଦ୍ଧଦାଣ୍ଡେ ଘୋଟି
ରହିଲେ ନେବାପାଇଁ ତାଙ୍କର ଜୀବୁଟି ।
ଅଶ୍ୱତ୍ଥାମା ତାହା ଯେ ସହି ନ ପାରିଲେ
ସେ ବିନ୍ଧିଥିଲେ ପରି ଏ ଶର ବିନ୍ଧିଲେ ।
ଶ୍ରୁତକୀର୍ତ୍ତି ରୂପେ ନିଶିତ କାଣ୍ଡେ କାଟି
ଗରଜିଲେ ଦ୍ରୋଣି ମେଲଦେଇ ପାଟି ।
ଶ୍ରୁତକୀର୍ତ୍ତି ପୁନଶ୍ଚ ଧରି ଆନ ଧନୁ
ବିନ୍ଧିଲେ ତିନକାଣ୍ଡ ଦ୍ରୋଣସୁତ ତନୁ ।
ଅଶ୍ୱତ୍ଥାମା ଶରେ ପାଣ୍ଡବସୈନ୍ୟଯାକ
ଘୋଡ଼ି ଦେଲେ ଜାଣ ଯେ ହସ୍ତିନା ନାୟକ
ପୁଣି ଅଶ୍ୱତ୍ଥାମା ଯେ ଯୁଧିଷ୍ଠିର ଧନୁ
କାଟି ହରଷରେ ଫୁଲାଇଦେଲେ ତନୁ ।
ଯୁଧିଷ୍ଠିର ରାଜନ ଆନ ଧନୁ ଧରି
ବିନ୍ଧିଲେ ଅଶ୍ୱତ୍ଥାମା ଉପରେ ସତୁରି ।
ସାତ୍ୟକି ଅଶ୍ୱତ୍ଥାମା ଧନୁ ଅର୍ଦ୍ଧଚନ୍ଦ୍ରେ
କାଟି କରି ରାଜନ ଗର୍ଜିଲେ ସାନ୍ଦ୍ରେ ।
ଅଶ୍ୱତ୍ଥାମା ଶକତି ଫିଙ୍ଗି ସାତ୍ୟକିଙ୍କ
ସାରଥିଙ୍କ ଦେଲେ ନେଇଣ ଯମ ଲୋକ ।
ଆନ ଧନୁ ଧରିଣ ସରଜ ଶରଭିଡ଼ା
ଦ୍ରୋଣି କଲେ ସାତ୍ୟକିଙ୍କର ମହାପୀଡ଼ା ।
ସାତ୍ୟକିଙ୍କ ସାରଥି ହାତରୁ ଘୋଡ଼ାଏ
ପଳାଇଲେ ଏ ଆଡ଼େ ସେ ଆଡ଼େ ହେ ରାୟେ
ଆଉ ରଥୀଯାକ ଯେ ଧାଇଁ କରି ଆଗେ
ଦ୍ରୋଣ ସୁତ ଦେହେ ବିନ୍ଧିଲେ ଶର ରାଗେ ।
ଏକା ଦ୍ରୋଣି ପାଣ୍ଡୁ ସେନ ଯାକକୁ ରଣ
ଆରମ୍ଭିଲେ ପ୍ରହାର କରି ଟାଣେ ବାଣ ।
ପାଣ୍ଡବ ବଳଯାକ ଅଶ୍ୱତ୍ଥାମା ସେହି
ନ ପାରି ଯୁଦ୍ଧ କରି ହୋଇଲେ ମଉନୀ ।
ତୁମ୍ଭ ଲୋକେ ଦେଖିଣ ଦ୍ରୋଣିଙ୍କର ବଳ
ଭାବିଲେ ମଲେ ଆଜ ପାଣ୍ଡବଙ୍କ ଦଳ ।
ଯୁଧିଷ୍ଠିର ଯେ ଅଶ୍ୱତ୍ଥାମାଙ୍କ ରଥକୁ
ଲଗାଇ ଦେଇ ରଥ କହିଲେ କଥାକୁ ।
ପ୍ରୀତି ହୋଇ ତୁମ୍ଭଠାରେ କଥା ନାହିଁ
ଥିଲେ ପଡ଼େ ଯୁଦ୍ଧ କରନ୍ତ କାହିଁପାଇଁ ।
ବ୍ରାହ୍ମଣ କୁଳରେ ତ ହୋଇଅଛ ଜାତ
ତପ କର ଯାଇ ସୁମରି କୁଳ ଗୋତ ।
କ୍ଷତ୍ରିୟ ତ ତୁମ୍ଭେ ନୁହ ଆହେ ତାତରେ
ଧରନ୍ତ କ୍ଷମା କ୍ରୋଧଗୋଟାକୁ ମନରେ ।
ତୁମ୍ଭେ ଯେ ରହିଁଥିବ କୁରୁଙ୍କର ବଳ
ଏହିକ୍ଷଣି ଟି କରି ଦେବି ମୁଁ ନିର୍ମୂଳ ।
ଅଶ୍ୱତ୍ଥାମା ଯୁଧିଷ୍ଠିରଙ୍କ ବଚନକୁ
ମାନିଣ ପୋତିଦେଲେ ମସ୍ତକ ତଳକୁ ।
ପୁଣି ଶରବୃଷ୍ଟି କରିଣ ଅଶ୍ୱତ୍ଥାମା
ପୁଛିଲେ ଭାଙ୍ଗିବାକୁ ରାଜାଙ୍କ ଗାରିମା ।
ଯୁଧିଷ୍ଠିରରାଜା ଅଶ୍ୱତ୍ଥାମାଙ୍କ ଶରେ
ପାଇ ପୀଡ଼ା ପଛକୁ ପଳାଇଲେ ଖରେ ।
ପୁଣି କ୍ଷତ୍ରିୟଙ୍କର ଅଭିମାନ ବହି
ତୁମ୍ଭ ସୈନ୍ୟ ସଙ୍ଗତରେ କଲେ ସେ ଲଢ଼ାଇ
କୈକେୟ ଚେଦି ଭୀମ ସଞ୍ଜୟ ପାଞ୍ଚାଳ—
ମାନଙ୍କୁ ଘାଇ ଦେଲେ କର୍ଣ୍ଣ ଶରଜାଳ ।
ଭୀମ ରହିଁଥିଲେ କରୁଷ ଚେଦି ପ୍ରାଣ
ଘେନଗଲା ହେ ରାଜେ କର୍ଣ୍ଣଙ୍କର ବାଣ ।
ଭୀମ କର୍ଣ୍ଣବଳକୁ ଦେଖିଣ ଓହରି
ଗଲେ ସେହିକ୍ଷଣି ହେ ଜାଣ ଦଣ୍ଡଧାରୀ ।
ସହସ୍ର ସହସ୍ର ଯେ ସଞ୍ଜୟ ପାଞ୍ଚାଳ—
ମାନଙ୍କ ପ୍ରାଣ ନେଲେ ଅଧିରଥବାଳ ।
ସଂଶପ୍ତକମାନଙ୍କୁ ପାର୍ଥ ବୀରମଣି
ମାଇଲେ ଯୁଦ୍ଧଦାଣ୍ଡେ ଗାଣ୍ଡୀବକୁ ଘାଣି ।
ଭୀମ କୁରୁମାନଙ୍କୁ କରିଣ ସଂହାର
କୀର୍ତ୍ତି ମେଣ୍ଡମାଳାକୁ କଲେ ହୃଦେ ହାର ।
କର୍ଣ୍ଣ ପାଞ୍ଚାଳଙ୍କୁ ହୋଇଣ କୋପମୂର୍ତ୍ତି
ମାରି ବଢ଼ାଇଦେଲେ ମୃତ୍ୟୁଦେବ ପ୍ରୀତି ।
ତୁମ୍ଭ ଦୁର୍ମନ୍ତ୍ରଣରୁ କୁରୁ ପାଣ୍ଡୁ ବଳ
ମରୁଛନ୍ତି ଜାଣ ଟି ରାଜେ କରି ଗୋଳ ।

ସଙ୍ଗରେ ବୃଦ୍ଧାନ୍ତି ହୋଇ ଅଛ ଭୂମେନ୍ଦ୍ର ରହି
ପୁଅଙ୍କୁ ନିବର୍ତ୍ତାଇ ନ ପାରିଲ କହି ।
ଏଥିକ ଅନୁରୂପ ଫଳୁଅଛି ଫଳ
ସୁମରୁଥାଅ ରାଜେନ୍ଦ୍ର ବସିଣ କପାଳ ।
ଏ ଅନ୍ତରେ ଯେ ଦୁର୍ଯ୍ୟୋଧନ ରାଜା କୋପେ
ନବକାଣ୍ଡ ବିନ୍ଧିଲେ ନକୁଳଙ୍କ ଦେହେ ।
ନକୁଳଙ୍କ ଚାରିଘୋଡ଼ାଙ୍କୁ ଚାରିକାଣ୍ଡ
ବିନ୍ଧିଲେ ବସାଇବା ପାଇଁ ଯମଦାଣ୍ଡ ।
କ୍ଷୁରକାଣ୍ଡ ବିନ୍ଧିଣ ଦୁର୍ଯ୍ୟୋଧନ ରାଜ
କାଟିଲେ ସହଦେବଙ୍କର ରଥଧ୍ୱଜ ।
ନକୁଳ ସେହିକାଳେ ଏକବିଂଶ କାଣ୍ଡ
ବିନ୍ଧିଲେ ଲକ୍ଷ କରି ଦୁର୍ଯ୍ୟୋଧନ ପିଣ୍ଡ ।
ସହଦେବ ତହୁଁ ପଞ୍ଚ ବିନ୍ଧି ନାରାଚ
ଧରଜନରେ ପୂରାଇଲେ ଯୁଦ୍ଧମଞ୍ଚ ।
ଦୁର୍ଯ୍ୟୋଧନ ରାଜନ ବହିକରି ରୋଷ
ବାଣ୍ଡିଣ ବିନ୍ଧିଲେ ଦୁହିଁଙ୍କ କାଣ୍ଡ ଦଶ ।
ଦୁଇଭାଇ କାଣ୍ଡରେ ଦୁହିଙ୍କର ଧନୁ
କାଟିଲେ ଭୂମନ୍ତ ସୁତ ମନେ ଧରି ମନ୍ୟୁ ।
ଭୂମନ୍ତ ପୁଅ ପରାକ୍ରମରେ ପାଣ୍ଡୁ ଲୋକେ
ମଲେ ବୋଲି ତାଙ୍କୁ କାଢଲେ ଶକଣକେ ।
ସେ ସମୟରେ ଧୃଷ୍ଟଦ୍ୟୁମ୍ନ ରଥ ଚଢ଼ି
ଆସି ଦୁର୍ଯ୍ୟୋଧନ ବିନ୍ଧିଲେ ବାଣଧାଡ଼ି ।
ଭୂମନ୍ତର ପୁଅ ଧୃଷ୍ଟଦ୍ୟୁମ୍ନଙ୍କ ଦେହକୁ
ବିନ୍ଧିଲେ ଗଣି ଗଣି ପଚିଶ ଶରକୁ ।
ପୁଣି ଦୁର୍ଯ୍ୟୋଧନ ଭିଡ଼ିଣ ଧନୁମୁଠି
ବିନ୍ଧିଲେ ଅତିକ୍ରୋଧ ବାଣ ପଞ୍ଚଷଠି ।
କ୍ଷୁରକାଣ୍ଡ ଧନୁହାତକୁ ଦୁର୍ଯ୍ୟୋଧନ
ଧୃଷ୍ଟଦ୍ୟୁମ୍ନଙ୍କର କାଟିଲେ ରାଜନ ।
ଧୃଷ୍ଟଦ୍ୟୁମ୍ନ ଆପଣା ଧନୁ ଛିଡ଼ା ଦେଖି
ଆନ ଧନୁ କରେ ଧଇଲେ ନୋହିଲ ଦୁଃଖୀ
ପନ୍ଦର ଶର ପୁଣି ଦୁର୍ଯ୍ୟୋଧନ ଅଙ୍ଗେ
ବିନ୍ଧି କରି ପ୍ରବର୍ତ୍ତିଲେ ସେ ରଣଅଙ୍ଗେ ।
ସେ ଶରେ ଧୃଷ୍ଟଦ୍ୟୁମ୍ନ ଧନୁମଧ୍ୟୁ ଫିଟି
ବାହାରିଲେ ବଜ୍ରକ ପରାୟେ ଚହଟି ।
ଭୂମନ୍ତର ବେଣ୍ଟାଟିରି ବୁକୁଟିକ ଫୁଟି
ମହୀତଳେ ପଶିଲେ ଦେଖାଇ ବରଟି ।

ସେହି ଘାତରେ ଦୁର୍ଯ୍ୟୋଧନଙ୍କର ଅଙ୍ଗ
ରକତ ବସନକୁ କଲା ତହିଁ ସଙ୍ଗ ।
କ୍ରୋଧ ହୋଇଣ ଧୃଷ୍ଟଦ୍ୟୁମନଙ୍କ ଧନୁ
କାଟିଲେ ଭଲକାଣ୍ଡେ ଯୁଦ୍ଧେ ଭୂମନ୍ତ ସୂନୁ ।
ପୁଣି ଧୃଷ୍ଟଦ୍ୟୁମ୍ନ ଉରକୁ ଦଶକାଣ୍ଡ
ବିନ୍ଧିଲେ ଦୁର୍ଯ୍ୟୋଧନ କମ୍ପାଇ କୋଦଣ୍ଡ ।
ଧୃଷ୍ଟଦ୍ୟୁମ୍ନ ଛିଡ଼ିବ ଧନୁ ରଥେ ଥୋଇ
ଆନ ଧନୁକୁ ଧରି ବିନ୍ଧିଲେ ଭିଡ଼ାଇ ।
ଷୋଳଟି ଭଲକାଣ୍ଡ ବିନ୍ଧି ଧୃଷ୍ଟଦ୍ୟୁମ୍ନ
କାଟିଲେ ଧଜ ଛତ୍ର ଅଶ୍ୱ ଶରାସନ ।
ଭୂମନ୍ତ ରାଜାମାନେ ନୟନେ ଚାହିଁଥିଲେ
ପ୍ରତିକାର କରି କେହି ତ ନ ପାରିଲେ ।
ଦୁର୍ଯ୍ୟୋଧନଙ୍କର ନବମ ଦଶା ଦେଖି
ଭାଇଏ ଜଗିଲେ ଧନୁରେ ଶର ଯୋଖି ।
ସେକାଳେ ଦଣ୍ଡଧାର ରାଜା ନିଜ ରଥେ
ବସାଇଲେ ଦୁର୍ଯ୍ୟୋଧନଙ୍କୁ ଧଇହାତେ ।
କର୍ଣ୍ଣ ସାତ୍ୟକିଙ୍କି ପକାଇ ରଣେ ଜିଣି
ଧୃଷ୍ଟଦ୍ୟୁମନଙ୍କୁ ଯେ ରଚିଲେ ଆରଣି ।
ସାତ୍ୟକି କର୍ଣ୍ଣଙ୍କ ପଛରେ ଗୋଡ଼ାଇଲେ
ପାଲଟ ଭାଇ ଯୁଦ୍ଧ କରିବା ବୋଇଲେ ।
କର୍ଣ୍ଣ ଧୃଷ୍ଟଦ୍ୟୁମନ ଦୁହିଁଙ୍କ ମଧ୍ୟରେ
ଭୂମନ୍ତ ତାଙ୍କ ଲୋକେ ଯୁଝିଲେ ନିଃଶଙ୍କରେ
ସେହି ଯୁଦ୍ଧରେ ନରବାଜିଙ୍କର କ୍ଷୟ
ହୋଇଲା ହେ କେବଳ ରାଜନ ଉଦୟ ।
ଘୋର ହୋଇ ପାଞ୍ଚାଳ କରେ ଶରବୃଷ୍ଟି
କଲେ କରିବା ପାଇଁ ଜୟ ଧନ ଲୁଟି ।
କର୍ଣ୍ଣ କ୍ରୋଧ ହୋଇଣ ପାଞ୍ଚାଳମାନଙ୍କୁ
ଯୁଦ୍ଧ କରିଲେ ଭୟ ନ ଆଣି ମନକୁ ।
ବ୍ୟାଘ୍ରକେତୁ ସୁଶର୍ମ ଚିତ୍ର ରୋଚମାନ
ଉଗ୍ରାୟୁଧ ଜୟ ଶୁକଳ ସିଂହସେନ ।
ଏ ଆଠରଥୀ ରଥମାନଙ୍କୁ ଆରୋହି
ବେଢ଼ିଲେ ବିନ୍ଧ କର୍ଣ୍ଣଙ୍କୁ ହେ ନରସାଇଁ ।
କର୍ଣ୍ଣ ଆଠକାଣ୍ଡେ ସେ ଆଠ ରଥୀ ପ୍ରାଣ
ବିମର୍ଦ୍ଦନ କଲେ ହସ୍ତିନା ରାଜେନ୍ଦ୍ର ଜାଣ ।
ସହସ୍ର ସଂଖ୍ୟା ଯୋଦ୍ଧାଗଣେ କର୍ଣ୍ଣ ବଳୀ
ମାଇଲେ ଯୁଦ୍ଧକାଣ୍ଡେ ଯୁଦ୍ଧେ ତାଙ୍କୁ ବଳୀ

ଦେବାପି ଜଷ୍ଣୁଭଦ୍ର ଦଣ୍ଡ ଜଷ୍ଣୁକର୍ମା
ଚିତ୍ର ଚିତ୍ରାୟୁଧ ଯେ ହରି ମହାକର୍ମା ।
ସିଂହକେତୁ ଶଲ୍ୟର ରୋଚମାନ ଚେଦ୍ଧ
ମହାରଥୀମାନଙ୍କୁ ମାରଣ ସମ୍ବାଦ ।
କର୍ଣ୍ଣ ମହାରଥୀ ହୋଇଣ ଯୁଦ୍ଧକାମା
ଶଲ୍ୟଙ୍କୁ ଢୋଇଲେ ହେ ଦେଖ ମୋ ମହିମା ।
ଏହା କହି କର୍ଣ୍ଣ ବିନ୍ଧନ୍ତେ ମାରଗଣ
ଲୋଟିଗଲେ ତଳେ ପାଣ୍ଡବ କଷ୍ଟଗଣ ।
କେତେ ହାତୀଙ୍କର ଯାଆନ୍ତେ ଗଣ୍ଡ ଫାଟି
ଜଳବିନ୍ଦୁ ପରି ମୁକୁତା ହେଲା ବୃଷ୍ଟି ।
ହାତୀ ଘୋଡ଼ା ମନୁଷ୍ୟ ପଡ଼ିବାରେ ମହୀ
ନୟନକୁ କାହାର ଦିଶିଲା ହେ ନାହିଁ ।
ସେ ଯୁଦ୍ଧ କର୍ଣ୍ଣ ଯେଉଁ ପରାକ୍ରମ କଲେ
ଦେବ ସିଦ୍ଧଙ୍କର ସେ ସାଧ୍ୟ ନୋହେ ଭଲେ ।
ମୃଗ ମଧ୍ୟେ ସିଂହ ବିହାର କଲା ପରି
ବିହରିଲେ ସୈନ୍ୟରେ କର୍ଣ୍ଣ ଶସ୍ତ୍ରଧାରୀ ।
କର୍ଣ୍ଣ ଶରାଗ୍ନିରେ ସୃଞ୍ଜୟ ତୃଣବନ
ଜଳିଗଲା ଜାଣ ହେ ହସ୍ତିନା ରାଜନ ।
ଚେଦି ପାଞ୍ଚାଳଙ୍କୁ ଯେ ଶୁଣାଇ ନାମଟି
କାଟିଲେ କର୍ଣ୍ଣ ରଣେ ମୁଣ୍ଡ କୋଟି କୋଟି ।
କର୍ଣ୍ଣ ବିକ୍ରମ ଦେଖି ଅଜ ମୁଁ ଭାକଲ
କର୍ଣ୍ଣ ତେବେ ଜିବା ପାଣ୍ଡବସୈନ୍ୟ ଦଳ ।
ଏମନ୍ତ ସମୟରେ କର୍ଣ୍ଣେ ଯୁଧିଷ୍ଠିର
ଉପରେ ଧନୁରେ ବିନ୍ଧିଲେ ବାଛି ଶର ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ସାତ୍ୟକି ଦ୍ରୌପଦେୟ
ନକୁଳ ସହଦେବ ପ୍ରଭଦ୍ର ଜନ୍ମେଜୟ ।
ଯୁଧିଷ୍ଠିର ରାଜାଙ୍କ ରଥପଟେ ବେଢ଼ି
ଯୁଝିଲେ ଅଧିରଥପୁତ୍ରେ ହରବଡ଼ି ।
ଏକା ହୋଇ କର୍ଣ୍ଣ ଦେଖାଇ ବାହୁଟାଣ
ପାଣ୍ଡବଙ୍କ ସୈନ୍ୟ ସଙ୍ଗତେ କଲେ ରଣ ।
ସୂର୍ଯ୍ୟ ଅନ୍ଧକାରକୁ ନାଶ କଲା ପରି
ପାଣ୍ଡବସୈନ୍ୟ ନାଶ କଲେ ଦଣ୍ଡଧାରୀ ।
ଭୀମ କ୍ରୋଧ ହୋଇ କମ୍ପାଇ କୋଦଣ୍ଡ
ବିନ୍ଧିଲେ କାଣ୍ଡ ବାଛି ଯେହ୍ନେ ଯମଦଣ୍ଡ ।
ବାହ୍ଲୀକ କଇକେୟ ସୈନ୍ଧବ ମଦ୍ରକ —
ମାନଙ୍କ କୁଳେ ଯୁଦ୍ଧ ବିହିଲେ ଏକକ ।
ଭୀମ ମହାବଳୀ ମାନସେ କ୍ରୋଧ ବହି
ସାତ୍ୟକି ମୁନାଗ୍ନିରେ ଶତ୍ରୁ ତୃଣ ଦହି ।
ଭୀମଙ୍କ କାଣ୍ଡରେ ପଡ଼ନ୍ତେ ହାତୀମାନେ
ଖାଲ ଖଣା ବହୁତ ହେଲା ଯୁଦ୍ଧସ୍ଥାନେ ।
ସିପାଇମାନଙ୍କ କୂଳରେ ଘୋଡ଼ାଗଣ
ଭୀମ କାଣ୍ଡ ଯେହ୍ନ ଭେଟିଲେ ଜନ୍ତୁଗଣ ।
ସହସ୍ର ସଂଖ୍ୟା ରଥୀ ଭୀମ ଶରେ ମନ୍ଥି
ହୋଇ ଯମ ପଥେ ଚାଲିଲେ ହୋଇ ବ୍ୟଥୀ ।
ମହୀଦେବୀ ସେକାଳେ ନର ଅଶ୍ୱ ମଡ଼ା
ବହନ୍ତେ ରାଜନ ପାଇଲେ ଅତି ପୀଡ଼ା ।
ଦରସ୍ଥରେ ସର୍ବେ ହୁଅନ୍ତେ ମରାମରି
ଶୋଇଲେ ରଣଦାଣ୍ଡେ ରକ୍ତଧାରା ଧରି ।
କର୍ଣ୍ଣ କ୍ରୋଧ ହୋଇଣ ପାଣ୍ଡବସେନାକୁ
ବାଣେ ବରଗିଲେ ଯମଙ୍କ ଆଳୟକୁ ।
ଏହିରୂପେ ସମର ପ୍ରବର୍ତ୍ତିବା ଦେଖି
ସହସ୍ର ଆସି ପୁନ କହିଲେଟି ସୁଖୀ ।
ଦେଖ କୃଷ୍ଣ ମୋ ବାଣଗଣେ ପାଇ ପୀଡ଼ା
ସଂଶପ୍ତକମାନେ ତେଜନ୍ତି ଯୁଦ୍ଧ କ୍ରୀଡ଼ା ।
ଏବେ କର୍ଣ୍ଣରଥକୁ ବାହା ମୋର ରଥ
ବସାଇବି ତାହାଙ୍କୁ ନେଇ ଯମ ସାଥ ।
ଅର୍ଜ୍ଜୁନ ବଚନ ଏରୂପେ କୃଷ୍ଣ ଶୁଣି
ବୋଇଲେ ମାରି କୁଚ୍ଛଗଣେ ଧନୁ ଟାଣି ।
ଶ୍ୱେତ ରଥଘୋଡ଼ାକୁ ଅଡ଼ାଇ ଗୋବିନ୍ଦ
ଯୁଦ୍ଧରେ ବହାଇଲେ ଅର୍ଜ୍ଜୁନ ଆନନ୍ଦ ।
ତୁମ୍ଭ ବଳଯାକ ଅର୍ଜ୍ଜୁନ କାଣ୍ଡ ଘାଏ
ପଳାଇଲେ ରାଜନ ଡରି ଅତିଶୟେ ।
କାଳଦଣ୍ଡ ଧରି ବୁଲିଲା ପରି ଯମ
ସେରୂପେ ଶସ୍ତ୍ର ଧରି କଲେ ସେ ସଂଗ୍ରାମ ।
ତୁମ୍ଭ ପୁଅ ବୋଲରେ ସଂଶପ୍ତକମାନେ
ଯେ ଥିଲେ ଯୁଝିଗଲେ ପାର୍ଥ ସନ୍ନିଧାନେ ।
କୃଷ୍ଣ ଅରଜୁନଙ୍କୁ ଶରରେ ଆଚ୍ଛନ୍ନ
କଲେ ସଙ୍ଗତେ ଯେହ୍ନ ମହତସଇନ ।
ଅରଜୁନ କାଣ୍ଡରେ ରଥଦ୍ୱିଗଯାକ
ଆଚ୍ଛନ୍ନ ହୋଇଲା ହେ ଅବନୀ ନାୟକ ।
ମହୀ ଗିରି ଆକାଶ ଫାଟିଗଲା ପ୍ରାୟେ
ଅର୍ଜୁନ ଧନୁଶବ୍ଦ ଶୁଣିଲେ ଯୋଦ୍ଧାଏ ।

ଅରଜୁନ ଦଶସହସ୍ର ସଂଶପ୍ତକ—
ମାନଙ୍କୁ ନାଶ କଲେ ବନ୍ଧଣ ସାୟକ ।
ଏ ବାହାରେ ଯେ ବ୍ୟୂହ ପ୍ରତ୍ୟକ୍ଷରେ ରହି
କାମ୍ବୋଜଙ୍କୁ ଶର ଅଗ୍ନିରେ ଦେଲେ ଦହି ।
ଯୁଦ୍ଧଆତତାୟୀ ଯେ ଶତ୍ରୁ କୁଳଯାକ
ବାହୁ ଶିର କାଟିଲେ ବନ୍ଧଣ ସାୟକ ।
ବହୁଶାଖା ପାଦପ ଭାଙ୍ଗିଲା ପରାଏ
ଲୋଟିଲେ ମହୀତଳେ ତୁମ୍ଭର ଯୋଦ୍ଧାଏ ।
ସୁଦକ୍ଷିଣର ହାନଭାଇ ଅର୍ଜୁନଙ୍କୁ
ଯୁଦ୍ଧ କଲେ ସେକାଳେ ଦେଖାଇ ବଳକୁ ।
ଅର୍ଜୁନ ବାହୁ ମୁଣ୍ଡ ଅର୍ଦ୍ଧ ଚନ୍ଦ୍ର କ୍ଷୁର
କାଣ୍ଡରେ କାଟି ପକାଇଲେ ତାହାଙ୍କର ।
ବୀରମାନେ ଯେ ଅସ୍ତବ୍ୟସ୍ତ ହୋଇ ଯୁଝି
ଶୋଇଲେ ପ୍ରାଣ ଛାଡ଼ି ଦେଇ ରଣମଝି ।
ସମର ଭୂମିଯାକ ପୂରିଲା ରକତ
ହୋଇବାରୁ ତୁମ୍ଭ ସଇନଜନେ ହତ ।
ଗଜାରୋହୀ ଅଶ୍ୱାରୋହୀ ଏ ପ୍ରାଣ ଛାଡ଼ି
ସାଞ୍ଜୁମାନ ବହି ତଳରେ ଗଲେ ଗଡ଼ି ।
ଏହା ଦେଖିଣ ଅଶ୍ୱତ୍ଥାମା ଧନୁ ଟିଙ୍କି
ଡାକିଲେ ଅର୍ଜୁନଙ୍କୁ ଯୁଝିବା ପାଇଁକି ।
ଅନ୍ତକର ଅନ୍ତକ ଦେବତା ପରାଏ
ଦିଶିଲେ ଯୁଦ୍ଧଦାଣ୍ଡେ ଅଶ୍ୱତ୍ଥାମା ରାଏ ।
ଅଶ୍ୱତ୍ଥାମା ଶର ନ ସହି ପାଣ୍ଡୁସେନା
ହୋଇଲେ ଯୁଦ୍ଧଦାଣ୍ଡେ ରାଜନ ବିମନା ।
କୃଷ୍ଣଙ୍କର ଦେହକୁ ଲକ୍ଷ କରି ଦ୍ରୋଣି
ସେହିକାଳେ ସର୍ଜନା କଲେ ଶରଶ୍ରେଣୀ ।
ପୁଣି ଅର୍ଜୁନଙ୍କୁ ବିନ୍ଧି ମାରଗଣ
ଘୋଡ଼ାଇଦେଲେ ଅଶ୍ୱତ୍ଥାମା ରଥୀରାଣ ।
ତାହା ଦେଖି ଯେ ତ୍ରିଭୁବନ ଲୋକମାନେ
ଭାବିଲେ ପଡ଼ିଲେଁ ବିପତ୍ତି ବଦନେ ।
ଶ୍ରୀକୃଷ୍ଣ ଅର୍ଜୁନଙ୍କ ଦେଖିଣ ଏ ଦଶା
କରୁପେ ପ୍ରାଣେ ଆମ୍ଭେ କରିବା ପ୍ରତ୍ୟାଶା ।
ଅଶ୍ୱତ୍ଥାମା ଧନୁରୁ ଅବଚ୍ଛିନ୍ନେ ବାଣ
ବାହାରିଲା ଦେଖିଲା ସବୁରି ନୟନ ।
ଦୁଇହାତରେ ବନ୍ଧବ କରି ଦ୍ରୋଣ ବେଟା
ଧନୁ ନନ୍ଦା କଲା ସେକାଳେ ବିଦ୍ୟୁତ୍ପୃଷ୍ଠା ।

ଅର୍ଜୁନ ପରି ବଳୀ ଅଶ୍ୱତ୍ଥାମା ବଳେ
ଦଳ ହୋଇ ତାଙ୍କୁ ରହିଲେ ଚାହିଁ ଡୋଳେ
ପୁଣି ବିଚାରିଲେ ମୋ ପରାକ୍ରମଯାକ
ଆଜ ତ ଘେନଗଲା ଦ୍ରୌଣିଙ୍କ ସାୟକ ।
ଅଶ୍ୱତ୍ଥାମା ଦେହକୁ ଯୁଦ୍ଧଦାଣ୍ଡେ ରାଜା
ଚାହିଁଲେ ଯୋଦ୍ଧାମାନେ ଥରାଇଲେ ମଜ୍ଜା ।
ଅଶ୍ୱତ୍ଥାମା ଅଧିକ ଅର୍ଜୁନ ନଜନ
ବଳ ଦେଖି କ୍ରୋଧେ ଯୁଦ୍ଧରେ ଜନାର୍ଦ୍ଦନ ।
ଅର୍ଜୁନ ମୁଖକୁ ଅନାଇଁ ବୋଇଲେ
ତୁମ୍ଭ ଖତ ଅଦ୍ଭୁତ ଆଜ ଲାଗେ ଭଲେ ।
ଗାଣ୍ଡୀବ ରହିଥିଲା ପରି ତୁମ୍ଭ ବାହା
ଦିଶୁନାହିଁ ଆହେ ଅର୍ଜୁନ ବୀରନାହା ।
ଏହା ଶୁଣି ଅର୍ଜୁନ ଅତି କ୍ରୋଧ ବହି
ଚୌଦ ଭଲ୍ଲକାଣ୍ଡ ବିନ୍ଧିଲେ ତ୍ୱରା ହୋଇ ।
ଅଶ୍ୱତ୍ଥାମାଙ୍କର ଯେ ଧନୁ ଧ୍ୱଜ ରଥ
ଭଙ୍ଗି ଅଶ୍ୱତ୍ଥାମାଙ୍କ ଭାଙ୍ଗିଲେ ସାମର୍ଥ୍ୟ ।
ବତ୍ସଦନ୍ତ କାଣ୍ଡମାନଙ୍କୁ ଯେ କସାଟି
ବିନ୍ଧିଲେ ଗଲା ଦ୍ରୋଣି କାନ୍ଧସନ୍ଧି ଫୁଟି ।
ଅଶ୍ୱତ୍ଥାମା ସେ ଘାଏ ଧରିଣ ଧ୍ୱଜଯଷ୍ଟି
ମୋହ ଯାଇ ରହିଲେ ବୁଜିଣ ଆଖିଟି ।
ସାରଥି ତାହା ଜାଣି ଆନଠାକୁ ରଥ
ବାହିନେଲା ନ ମାରିବାକୁ ରଣେ ପାର୍ଥ ।
ଏକାଳେ ଅର୍ଜୁନ ସହସ୍ର ଶତ ସଂଖ୍ୟା
ଶତ୍ରୁଙ୍କୁ ନାଶ କଲେ ସାୟକେ ଅଲେଖା ।
ତୁମ୍ଭ ଦୁର୍ମନ୍ତ୍ରଣାକୁ ଏତେ ସର ଯୁଦ୍ଧ
ପ୍ରବର୍ତ୍ତିଲାଠାରେ ଦେଉଛୁ ରାଜ୍ୟ ଲବ୍ଧ ।
ଆଉ କସ ଗୁଡ଼ାଏ କରିବା ପ୍ରକାଶ
ଆମ୍ଭେ ତ ହୋଇଅଛୁଁ ତୁମ୍ଭଠାରେ ଦାସ ।
ସେହିକାଳେ କବନ୍ଧ ନାଚି କୋଟି କୋଟି
କଲା ଯୋଦ୍ଧାଙ୍କର ଦେବତ ପରି ବୃଷ୍ଟି ।
ଯୁଧିଷ୍ଠିର ରାଜା କାଣ୍ଡରେ ପାଇ ପୀଡ଼ା
କୋଣେଯାଏ ଭାଜିଲେ ଛାଡ଼ିଦେଇ ବ୍ରୀଡ଼ା ।
ଦୁର୍ଯ୍ୟୋଧନ କର୍ଣ୍ଣଙ୍କଠାକୁ ଧାଇଁ ଆସି
ଭୟ ଘେନ ଯୁଦ୍ଧେ ହୋଇଲେ ବୃଦ୍ଧଭାଷୀ ।
ସ୍ୱଇଚ୍ଛାରେ ଦେଖ ଫିଟିଛି ସ୍ୱର୍ଗଦ୍ୱାର
ଏହା ଜାଣି ଯୁଦ୍ଧରେ ମରିବା ବିଚାର ।

ମାଇଲେ ଜୟ ମଲେ ଦେବତା ହୋଇବା
କହ ତ ଏହା ଛାଡ଼ି କି କଥା କରିବା ।
ଦୁର୍ଯୋଧନର ବଚନ ଶୁଣି ରାଜାମାନେ
ବଜାଇଲେ ଶଙ୍ଖ ମୃଦଙ୍ଗ ତୋଷମନେ ।
ସେକାଳେ ଅଶ୍ୱତ୍ଥାମା କହିଲେ ବଚନ
ବୋଇଲେ ଯୋଦ୍ଧାମାନେ ଶୁଣ ଦେଇ ମନ ।
ସର୍ବେ ଦେଖୁଥିଲ ଶସ୍ତ୍ରକୁ ଛାଡ଼ିଦେଇ
ମୋ ବାପୁ ଥିଲେ ଧୃଷ୍ଟଦ୍ୟୁମନ ବଢ଼ାଇ ।
ଦେଲା ରଣେ ତାହାଙ୍କୁ ହୋଇ କୋପଚିତ୍ତ
କରିବାକୁ ପାଣ୍ଡବ ସୈନ୍ୟ ଉଲ୍ଲସିତ ।
ଏହି ସକାଶରୁ ମୁଁ ଧୃଷ୍ଟଦ୍ୟୁମ୍ନ ପ୍ରାଣ
ନେବି ପକାଇବି କରିଣ ଘୋର ରଣ ।
କହିବା କଥା ମୋର ମିଥ୍ୟା ହେବ ଯେବେ
ସୁକୃତଫଳ ମୁହିଁ ନ ପାଇବି ତେବେ ।
ତା ପାଇଁ ଭୀମାର୍ଜ୍ଜୁନ ଆସିଲେଟି ଯୁଝି
ମୋ କାଣ୍ଡ ବାଜନ୍ତେ ଶୋଇଲେ ରଣମଝି ।
ଏରୂପେ ଅଶ୍ୱତ୍ଥାମା ବାଣୀ ଶୁଣି ସେନା-
ମାନେ ଶୁଣି ଯୁଝିଲେ ହୋଇ କୋପମନା ।
ସେହିକ୍ଷଣରେ କୁରୁ ସୃଞ୍ଜୟଙ୍କ ରଣ
ହୋଇଲା ହେ ରାଜନ ହୋଇ ଅତି ଟାଣ ।
ଦେବତାମାନେ ଅପ୍‌ସରାଙ୍କର ତୁଲେ
ଆଚ୍ଛା ଯୁଦ୍ଧ ହୋଇଲା ବୋଲିଣ ଦେଖିଲେ ।
ମାଲ୍ୟ ଗନ୍ଧ ପୁଷ୍ପ ରତନ କରେ ଧରି
ବରଷିଲେ ଯୁଦ୍ଧଦାଣ୍ଡରେ ଅପ୍‌ସରୀ ।
ଶୀତ ଗନ୍ଧ ସହିତ ମନ୍ଦ ଗନ୍ଧବାହ
ହୋଇ ବହି ତୋଷିଲା ପ୍ରାଣୀଙ୍କର ଦେହ ।
ସୁନାମୁଣ୍ଡା ପୁଙ୍ଖ କାଣ୍ଡରେ ଯେ ମହୀଟି
ନାଗିଲା ଯୋଦ୍ଧେଷପଦର ଫୁଲସୃଷ୍ଟି ।
ଦୁଇସେନାଯାକର ଘଣ୍ଟେଣି ଶବଦ
କରାଇଦେଲା କର୍ଣ୍ଣମାନଙ୍କୁ ସ୍ତବଧ ।
ଏରୂପେ ଯୁଦ୍ଧ ଦେଖି ଶ୍ରୀକୃଷ୍ଣଙ୍କୁ ଚାହିଁ
କହିଲେ ଅର୍ଜ୍ଜୁନ ସୁଭଦ୍ରା ଦେଖାସାଇଁ ।
ଦେଖ ହେ କୃଷ୍ଣ କର୍ଣ୍ଣ ବିକ୍ରମ ଦେଖ ଇ
ମୋ ସୈନ୍ୟ ଶରାଗ୍ନିରେ ହେଉଅଛି ଦହି ।
ଯୁଧିଷ୍ଠିର ରାଜାଙ୍କୁ ମୋ ନେତ୍ର ଯୁଗଳ
ଦେଖୁନାହିଁ ତ ଆହେ ନନ୍ଦଗୋପବାଳ ।
ଦିବସର ତିନି ପହର ଆସି ଯୋଗ
ହେଲାଣି ଏତେବେଳକୁ ହେ ମହାଭାଗ ।
ମୋର ସଙ୍ଗତେ ଯୁଝିବାକୁ ଯୋଦ୍ଧା କେହି
ନ ଆସିଲେ ଏଠାରେ ନ ପାରେ ମୁଁ ରହି ।
ଚାଲ ଯୁଧିଷ୍ଠିର ପାଶକୁ ଜନାର୍ଦ୍ଦନ
ଦେଖିବାକୁ ତାଙ୍କୁ ମୋ ହେଉଅଛି ମନ ।
ଏହା ଶୁଣି କୃଷ୍ଣ ଅତ୍ୟନ୍ତ ହରଷେ
ବାହିଲେ ଯୁଧିଷ୍ଠିର ପାଶେ ଘୋଡ଼ାଙ୍କୁ ସେ
ବୋଇଲେ ଆହେ ଅରଜୁନ ଦେଖ ଦେଖ
ଦୁର୍ଯୋଧନ ହେତୁ କ୍ଷତ୍ରିୟେ ପାଇ ଦୁଃଖ ।
ଶୋଇଛନ୍ତି ଯୁଦ୍ଧକାଣ୍ଡକୁ ଶେଯ କରି
ପ୍ରିୟ ପ୍ରାଣୁଟିକ ଯେ ହୃଦରେ ନ ଧରି ।
ସୁବର୍ଣ୍ଣମଣ୍ଡା କାଣ୍ଡ ଧନୁ କୋଟି କୋଟି
ପଡ଼ିଅଛନ୍ତି ଛାଡ଼ି ଦେଖ ହେ କଂସାରି ।
ହାତୀଦାନ୍ତମୂଠିଲଗା ଯେତେକ ଖଣ୍ଡା
ମଲେ ହେଲେ ଉରୁଛନ୍ତି ଯୋଦ୍ଧା କର ମଣ୍ଡା ।
ଦେଖ ସୁନାଲଗା କବଚ କୋଟି କୋଟି
ପଡ଼ି ନନ୍ଦୁଅଛନ୍ତି ବିଦ୍ୟୁର ପ୍ରଭାଟି ।
ତୋମର ଶକ୍ତି ଗଦା କନକେ ଭୂଷଣ
ହୋଇ ପଡ଼ିଛନ୍ତି ବୀରଙ୍କ ନେଇ ପ୍ରାଣ ।
ପଟ୍ଟୀଶ ରୁଷ୍ଟି ପ୍ରାସ ପର୍ଶୁ ଶତଘ୍ନୀ
ପରିଘ ଚକ୍ର ଶୂଳ ଫାଶ ଏ ଅବନୀ ।
ମଣ୍ଡଳରେ ପଡ଼ିଣ ମୋହୁଛନ୍ତି ମନ
ଲାଗିଛି ତ ଯତନେ ସୁବର୍ଣ୍ଣ ରତନ ।
ଗଦାରେ କାହା ମୁଣ୍ଡ ଯାଇଅଛି ଫାଟି
ଲାଗିଛି କାହା ଦେହେ ଗଜର ଦାନ୍ତଟି ।
ଘୋଡ଼ା ଯାଇଅଛି ବା ଚକଟି କାହାକୁ
ଦେଖ ଦେଖ ଅର୍ଜ୍ଜୁନ ଅନ୍ତବୁଜୁଳାକୁ ।
ଖଣ୍ଡା ବାଜ କାର ଛାଡ଼ିଛି ପିଠି ହାଡ଼
ଉଠିଲେ ଅଣ୍ଟା ହେଉଅଛି ଲଡ଼ଲଡ଼ ।
ହାତୀ ଘୋଡ଼ା ନରଙ୍କ ପଡ଼ିବାରେ ମହୀ
ବ୍ୟକ୍ତ ହୋଇ ଅର୍ଜ୍ଜୁନ ନେତ୍ରେ ଦିଶୁନାହିଁ ।
ଚନ୍ଦନଟୋକା ବାହୁ ହେମରେ ଭୂଷିତ
ହୋଇଣ ଜନେ ଗଡ଼ୁଅଛନ୍ତି ବହୁତ ।
ଜୁଡ଼ାମୁଣ୍ଡା ମୁଣ୍ଡ ବୀରଙ୍କ ଗଣ୍ଡି ଛାଡ଼ି
ଡେଉଁଛନ୍ତି ଦେଖ ହେ ପାଟି ମାଡ଼ ଫାଡ଼ି ।

ହେମକଙ୍କିଣୀରେ ଭୂଷିତ ରଥଗଣ
ଦେଖ ବାଣେ ହୋଇଅଛ ଛିନ୍ନଭିନ୍ନ ।
ପତାକା ଧ୍ୱଜ ଶଙ୍ଖ ଚାମର ଛତ୍ରଟି
ପଡ଼ିଛନ୍ତି ଯୁଦ୍ଧେ କୋଟି କୋଟି କଷଣି ।
ଜଳ କାଳି ହାଣ୍ଡିଏ ପର୍ବତ ପରାୟେ
ଶୋଇଣ ପଡ଼ନ୍ତି ଛଳକଳେ ଅନ୍ତଶଯେ ।
କମ୍ବଳ ଘଣ୍ଟା କକ୍ଷା କୁଥ ହାତୀଙ୍କର
ପଡ଼ିବାରେ ଭୂମି ହୋଇଅଛି ଭୟଙ୍କର ।
ବୈଡ଼ୂର୍ଯ୍ୟ ଦଣ୍ଡ ମଣ୍ଡା ଅଙ୍କୁଶ ଅନେକ
ପଡ଼ିଛନ୍ତି ଦେଖ ହେ ବୀରଙ୍କ ନାୟକ ।
ସିପାଇମାନଙ୍କ କୋରଡ଼ା ଧରି ହାତ
ଛୁଡ଼ କରିଛନ୍ତି ଏ ଯୁଦ୍ଧଭୂମି ସାଥ ।
କବଚ ମଣିଙ୍କରେ ଖଚିତ କାଖରେ
ପଡ଼ିଅଛନ୍ତି ମଲା ଘୋଡ଼ାଙ୍କ ପାଖରେ ।
ବୀରଙ୍କର କବା କୁଣ୍ଡଳମଣ୍ଡା ମୁଖ
ମହୀ ମହିଳାକୁ ଚୁମ୍ବନ୍ତି ପାଇ ସୁଖ ।
ଏରୂପେ ହେଲେ ଯୋଦ୍ଧାମାନେ ଯୁଦ୍ଧଦାଣ୍ଡେ
ଆସୁଅଛନ୍ତି ଧାଇଁ ବାନ୍ଧ କାଣ୍ଡେ କାଣ୍ଡେ ।
ଆଉ ହୋଇ ବା କେତେ ପାଡ଼ୁଛନ୍ତି ରଡ଼
ପାଣି ଦିଅ ବୋଲି କେ ଯାଉଛନ୍ତି ଗଡ଼ ।
ଏରୂପେ ଅର୍ଜୁନଙ୍କୁ କହି ଜନାର୍ଦ୍ଦନ
କଲେ ରଥ ଯୁଧିଷ୍ଠିରଙ୍କ ସନ୍ନିଧାନ ।
କୃଷ୍ଣ ବୋଇଲେ ଆହେ ଅରଜୁନ ଦେଖ
ରହିଛି ଯୁଦ୍ଧଦାଣ୍ଡେ କର୍ଣ୍ଣ ମହାମୂର୍ଖ ।
ଭୀମ ଯୁଦ୍ଧଦାଣ୍ଡରୁ ଆସନ୍ତି ଲେଉଟି
ଦେଖ ତାଙ୍କ ସଙ୍ଗତେ ଛନ୍ତି ରଥୀ କୋଟି ।
ପଳାଇବା କୁ ରୁକ୍କୁ ଆଜ କର୍ଣ୍ଣବୀର
ଧାଇଁଛି କରିବାକୁ ଆମ୍ଭଙ୍କୁ ସମର ।
ଅଶ୍ୱତ୍ଥାମା ପାଖକୁ ଦ୍ରୁପଦଙ୍କ ବେଟା
ଉଦେଶି ଯାଉଛି ନ କର ମନ ଫଟା ।
ଏହି କାଳରେ ଦୁଇ ସେନାଙ୍କର ରଣ
ପ୍ରବର୍ତ୍ତିଗଲା ବାନ୍ଧାବାନ୍ଧି ହୋଇ ବାଣ ।
ଭୂମ ଦୁର୍ନିରୀକ୍ଷଣାରୁ ବୀରଙ୍କର କ୍ଷୟ
ଏହିରୂପେ ମଧ୍ୟରେ ହୋଇଲା ଉଦୟ ।
ଅନ୍ୟେମାନେ କର୍ଣ୍ଣଙ୍କୁ ଆଗରେ ଚଳାଇ
ବାହାରିଲୁଁ ଯୁଦ୍ଧଦାଣ୍ଡରେ ତୋରା ହୋଇ ।

ମାଣ୍ଡବ ନୈ ନ୍ୟଙ୍କ ଯୁଧିଷ୍ଠିର ପଛେ
ଧାଇଁଲେ ଯୁଦ୍ଧ କରିବାକୁ ହୃଦସ୍ୱଚ୍ଛେ ।
ଉଭୟଙ୍କର ହୋଇଣ କର୍ଣ୍ଣ ପାଣ୍ଡବଙ୍କ
ପ୍ରବଳରେ ସମର ହୋଇଲା ଆତଙ୍କ ।
ଧୃଷ୍ଟଦ୍ୟୁମ୍ନମନ ସବୁ ନୃପତିଙ୍କି ଘେନି
କର୍ଣ୍ଣ ଭୁଜରେ ଆସି ରଚିଲେ ଆରଣି ।
ପର୍ବତ ଜଳଧାରା ମହିଲା ପରାୟେ
ବହିଲା ସବୁ ଶରଯାକ କର୍ଣ୍ଣ କାୟେ ।
କର୍ଣ୍ଣଙ୍କୁ ପାଇ ପଣ୍ଡୁ ମହାରଥୀବୃନ୍ଦ
ମଲାଇଁ ବୋଲିକରି ଗ୍ରହିଲେ ଆନନ୍ଦ ।
ଧୃଷ୍ଟଦ୍ୟୁମ୍ନ କର୍ଣ୍ଣଙ୍କୁ ବାନ୍ଧ ଶରଶ୍ରେଣୀ
ବୋଇଲେ କେଣେ ଯିବୁ ଦୁର୍ଜ୍ଜନ ଅଗ୍ରଣୀ ।
କର୍ଣ୍ଣ ଧୃଷ୍ଟଦ୍ୟୁମ୍ନ ଧନୁକୁ ଶରେ କାଟି
ଗଣି ଗଣି ବାନ୍ଧଲେ ଦେହକୁ ନଅଟି ।
ସେ କାଣ୍ଡେ ଧୃଷ୍ଟଦ୍ୟୁମ୍ନ କବଚେ ନିକଳ
ଦେହେ ଫୁଟି ମହୀତଳକୁ ଗଲେ ଚଳ ।
ଧୃଷ୍ଟଦ୍ୟୁମ୍ନମନ ଧରି ଆନ ଧନୁଟାଏ
ଯୁଝିଲେ ବାଛି ଶର ବାନ୍ଧ ଅନ୍ତଶୟେ ।
କର୍ଣ୍ଣ ମଧ୍ୟ ସେ ଧୃଷ୍ଟଦ୍ୟୁମ୍ନମନଙ୍କୁ ବାନ୍ଧ
ଦେଲେ ତାହାଙ୍କ ଯିବା ଯୁଦ୍ଧଦାଣ୍ଡ ରୁନ୍ଧ ।
ଦ୍ରୋଣହନ୍ତା ଧୃଷ୍ଟଦ୍ୟୁମ୍ନମନ ତୀକ୍ଷ୍ଣ ଶରେ
ବାନ୍ଧ କଲେ କର୍ଣ୍ଣ ଦେହକୁ ଡରଡରେ ।
ସୁନାଭୂଷା କାଣ୍ଡରେ କର୍ଣ୍ଣ ମହାଯଶା
ବାନ୍ଧିଲେ ଯୁଦ୍ଧେ ପାଇବାକୁ ପରଶଂସା ।
ସେ କାଣ୍ଡ ଆସୁଁ ଆସୁଁ ଶିନିଙ୍କ ପ୍ରବର
ସାତ୍ୟକି କାଟିଦେଲେ ବାନ୍ଧକରି ଶର ।
କର୍ଣ୍ଣ ସାତ୍ୟକିଙ୍କର ପରାକ୍ରମ ଦେଖି
ଶାୟକମୁନେ ତାକୁ କଲେ ଅତି ଦୁଃଖୀ ।
ପୁଣି ସାତକାଣ୍ଡ ସେ ସାତ୍ୟକିଙ୍କି ଗୁଣ୍ଡେ
ବାନ୍ଧିଲେ କର୍ଣ୍ଣବୀର ବସାଇ କୋଦଣ୍ଡେ ।
ସାତ୍ୟକି କର୍ଣ୍ଣଙ୍କର ଦେହକୁ ସୁବର୍ଣ୍ଣ—
ଭୂଷିତ କାଣ୍ଡମାନ ବାନ୍ଧଲେ ଗର୍ଜନ ।
କର୍ଣ୍ଣ ସାତ୍ୟକିଙ୍କ ଯୁଦ୍ଧକୁଟି ଅନାଇଁ
ନ ପାରିଲା ତାହା ନୟନ ନରସାଇଁ ।
ଏହି ସମୟରେ ଯେ ଧୃଷ୍ଟଦ୍ୟୁମ୍ନମନକୁ
ବୋଇଲେ ଦ୍ରୌଣି ଆସ ମୋତେ ଯୁଝିବାକୁ

ମୋ ବାବୁକୁ ମାରିବା ପ୍ରାୟେ ନୋହୁ ଆଜ
ଯାଅ ଥରେ ମୋ ବଳ ବୁଝିକରି ଆଜ ।
ଏହା କହି ତୀକ୍ଷ୍ଣ କାଣ୍ଡରେ ଅଶ୍ୱତ୍ଥାମା
ଛାଡ଼ି ଦେଲେ ଧୃଷ୍ଟଦ୍ୟୁମ୍ନ ଯିବା ସୀମା ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣିଙ୍କ ଶରେ ଦୁଃଖୀ ହୋଇ
ମନେ କରିଲେ ମୋତେ ବଳୀୟାର ଏହି ।
ପୁଣି ଧୈର୍ଯ୍ୟ ଧରିଣ ଧୃଷ୍ଟଦ୍ୟୁମ୍ନ ବୀର
ଅବଧ ମୁଁ ଅସ୍ତ୍ରରେ କଲେ ଏ ବଗୁର ।
ଅଶ୍ୱତ୍ଥାମା ଯେ ଧୃଷ୍ଟଦ୍ୟୁମ୍ନଙ୍କୁ ଦେଖି
ଧାଇଁଲେ ତାଙ୍କଠାରୁ କ୍ରୋଧେ ବୁଜ ଆଖି ।
ଅନ୍ୟୋନ୍ୟରେ ସେଦୁହେଁ ଚୂର୍ଣ୍ଣାଚୂର୍ଣ୍ଣି ହେଲେ
ସାୟକ ବଡ଼ ମୁଣ୍ଡ କାନ୍ଧରେ ବସିଲେ ।
ଅଶ୍ୱତ୍ଥାମା ବୋଇଲେ ଆରେ ଧୃଷ୍ଟଦ୍ୟୁମ୍ନ
ଆଜ ତୋର କାଣ୍ଡେ ମୁଁ ଘେନିବି ଜୀବନ
ମୋ ବାବୁକୁ ମାରିବା ଫଳ ଆଜ ତୋତେ
ନ ଦେଲେ ଲୋକେ ନିନ୍ଦା କରିବେଟି ମୋତେ
ଏକା ଅର୍ଜ୍ଜୁନଙ୍କୁ ମୋ ହେଉଅଛି ଡର
ରଖିବ ତୋତେ ସେହି ମୋ'ତେ ବିନ୍ଧି ଶର
ଧୃଷ୍ଟଦ୍ୟୁମ୍ନ ବୋଲେ ବାପାଙ୍କ ମୁଣ୍ଡକଟା
କଥା ଖଣ୍ଡାଠାରୁ ଶୁଣିବ ଦ୍ରୋଣ ବେଟା ।
ଦ୍ରୋଣଙ୍କୁ ମୁହିଁ କରିଅଛି ସଂହାର
କଷ୍ଟ ନୁହେଁ ମୋତେ ତୁମ୍ଭଙ୍କୁ ମାରିବାର ।
ବ୍ରହ୍ମହତ୍ୟାକୁ ତ ମୋହର ଭୟ ନାହିଁ
ଗୋଟିଏ ନେବେ ହେଲା ତେବେ ହେଉ ଦୁଇ
ତୁମ୍ଭେ ତ ବ୍ରାହ୍ମଣେ ଗଣନା ନୁହ ଦ୍ରୋଣି
ଯେଣୁ ମାରୁଅଛ ବାଣରେ ନୃପଶ୍ରେଣୀ ।
ଏଣୁ ମୁଁ କହୁଛି ତୁମ୍ଭଙ୍କୁ ମାରି ଯଶ
ଥୋଇ ମହୀଦେଶେ କରିବି ଅଟ୍ଟହାସ ।
ଏହା କହି ଧୃଷ୍ଟଦ୍ୟୁମ୍ନ ଧନୁଖଣ୍ଡି
ଓଟାରି କାଣ୍ଡେ ଫୁଟାଇଲେ ଦ୍ରୋଣି ଗଣ୍ଡି
ଦ୍ରୋଣି ମଧ ହୃଦଦେଶରେ ବସି ରାଗ
ଗରଜନା କରିଲେ ଉତ୍ତମ ଆଶୁଗ ।
ଆକାଶ ଢଗ କଟ୍ଟି ଦ୍ରୋଣିଙ୍କର ଶରେ
ନ ଦିଶିଲା ରାଜନ କାହାରି ଦୃଶ୍ୟରେ ।
ଧୃଷ୍ଟଦ୍ୟୁମ୍ନ ସେରୂପେ ବିନ୍ଧି କାଣ୍ଡଶ୍ରେଣୀ
ଘୋଡ଼ାଇଲେ ଦ୍ରୋଣସୁତଙ୍କୁ ନରମଣି ।

କର୍ଣ୍ଣ ପାଞ୍ଚାଳଙ୍କୁ ବିନ୍ଧିଣ ମାରଗଣ
ଘେନ ମକାଇଲେ ହେ ନରବରେ ପ୍ରାଣ ।
ଧୃଷ୍ଟଦ୍ୟୁମ୍ନ ଅଶ୍ୱତ୍ଥାମାଙ୍କ ଧନୁ କାଟି
ଗରଜନ କଲେ ମେଲଦେଇ ପାଟି ।
ଆନ ଧନୁ ଧରି ଯେ ଦ୍ରୋଣଙ୍କର ବେଟା
ବିନ୍ଧିଲେ କାଣ୍ଡ ନ କରିଣ ମନ ଫଟା ।
ଧୃଷ୍ଟଦ୍ୟୁମ୍ନଙ୍କର ଧନୁ ଧ୍ୱଜ ରଥ
କାଟିଲେ କାଣ୍ଡକରେ ସେ ତ ସମରଥ ।
ଧୃଷ୍ଟଦ୍ୟୁମ୍ନ ଖଣ୍ଡା ଫରିକ କରେ ଧରି
ହଣାହଣି ହେବାକୁ ପଡ଼ିଲେ ବାହାରି ।
ଅଶ୍ୱତ୍ଥାମା ତା ଦେଖି ବିନ୍ଧି ଭଲକାଣ୍ଡ
ଖଣ୍ଡା ଫରି ତାଙ୍କର କଲେ ଖଣ୍ଡ ଖଣ୍ଡ ।
ଧୃଷ୍ଟଦ୍ୟୁମ୍ନଙ୍କୁ ପେଷିଣ ବହୁ ଶର
ହତ କରି ନ ପାରି ତହୁଁ ଦ୍ରୋଣି ବୀର ।
ରଥେ ଥୋଇ ନିଜ ଧନୁକୁ ସେହୁ ବେଗେ
ଧାଇଁଲେ ଭୁଜା ହାତେ ପୁଣି ତାଙ୍କ ପାଶେ ।
କୃଷ୍ଣ ବୋଇଲେ ହେ କି ଦେଖ ଅରଜୁନ
ଦେଖୁଁ ଦେଖୁଁ ତ ଧୃଷ୍ଟଦ୍ୟୁମ୍ନ ଜୀବନ ।
ଦ୍ରୋଣସୁତ ସମରେ ଦେବ ହେ ବଢ଼ାଇ
ମୁହିଁ ବୋଲୁଛି ଏବେ ଯୁଝ ତାଙ୍କୁ ଯାଇ ।
ଏହା ବୋଲି ଘୋଡ଼ାଙ୍କୁ ବାହିଲେ କେଶବ
ଦ୍ରୋଣିଙ୍କରଥଠାରେ ଯେ କହିଲେ ଅଭବ ।
ସେ ଘୋଡ଼ାଏ କୃଷ୍ଣ ବାହିବା ସକାଶରେ
ମିଳିଲେ କ୍ଷଣକରେ ଦ୍ରୋଣିଙ୍କ ପାଶରେ ।
କୃଷ୍ଣ ଅର୍ଜ୍ଜୁନଙ୍କର ଆସିବାର ଜାଣି
ଧୃଷ୍ଟଦ୍ୟୁମ୍ନ ବଧ ଭାବିଲେ ମନେ ଦ୍ରୋଣି ।
ଧୃଷ୍ଟଦ୍ୟୁମ୍ନଙ୍କର ଧରି ଦୁଇ ହାତ
ଝିଙ୍କିଲେ ଦ୍ରୋଣଙ୍କ ନନ୍ଦନ ମହାରଥ ।
ଏହି ସମୟରେ ଗାଣ୍ଡୀବଧନୁର୍ଦ୍ଧାରୀ
ବିନ୍ଧିଲେ ଶରକୁ ଦ୍ରୋଣିଙ୍କି ଲକ୍ଷ କରି ।
ଆଶୀବିଷ ପରାୟେ ଅରଜୁନ କାଣ୍ଡେ
ପଶିଲେ ଦ୍ରୋଣିଙ୍କର ପିଣ୍ଡ ବଳେ ଚଣ୍ଡେ ।
ଦ୍ରୋଣି ସେ ଘାତେ ପାଇକରି ମହାବ୍ୟଥା
ବସିଲେ ନିଜରଥେ ଆଉଁଶିଣ ମଥା ।
ପୁଣି ଧନୁ ଧରିଣ ବୀର ଅର୍ଜ୍ଜୁନଙ୍କୁ
ବିନ୍ଧିଲେ ସେ ଯୋଖି ଉତ୍ତମ ମାର୍ଗଣକୁ ।

ଧୃଷ୍ଟଦ୍ୟୁମ୍ନଙ୍କୁ ସେ ସହଦେବ ରଥେ
ବସାଇ ଯୁଦ୍ଧ କଲେ କୁରୁଙ୍କର ସାଥେ ।
ଅର୍ଜୁନ ଅଶ୍ୱତ୍ଥାମା ଦେହକୁ ତୀକ୍ଷ୍ଣ
ଶରଗଣେ ବିନ୍ଧିଲେ ନରଗଣ ।
କ୍ରୋଧ ହୋଇକରି ଟି ଦ୍ରୋଣଙ୍କ ବେଟାଟି
ଅର୍ଜୁନ ବାହୁ ଉର ଶରେ ଭେଦିଲେଟି ।
କାଳଦଣ୍ଡ ପରି ସେ ଅରଜୁନ କାଣ୍ଡେ
ମିଳିଲେ ଯାଇକରି ଦ୍ରୋଣପୁତ୍ର-ପିଣ୍ଡେ ।
ଅଶ୍ୱତ୍ଥାମା ସେ ଘାଏ ପାଇ ମହାମୋହ
ପଡିଲେ ଶୋଇ ରଥ ଛୁଡ଼ ଦେଇ କୋହ
କର୍ଣ୍ଣ ଅରଜୁନଙ୍କୁ ଦେଖି ତା ଧନୁକୁ
ଟଙ୍କାରିଲେ ଗୁଣ ହେ ରାଜେ ଯୁଝିବାକୁ ।
ସାରଥି ଅଶ୍ୱତ୍ଥାମା ମୋହ ଦେଖି ନେଲେ
ବାହୁ ଦେଲ ରଥ ପଶ୍ଚାତକୁ ତୁରିତେ ।
ପାଞ୍ଚାଳମାନେ ଦେଖି ବିଜୟଙ୍କ ଜୟ
ଗରଜିଲେ ଆନନ୍ଦେ ପୂରାଇ ହୃଦୟ ।
ବଜାଇ ବାଦ୍ୟ ସିଂହନାଦ ମଧ୍ୟ କଲେ
ତୁମ୍ଭ ସୈନ୍ୟ ଜନଙ୍କ ପ୍ରମୋଦ ନାଶିଲେ ।
ଏରୂପେ ଯୁଦ୍ଧେ ଜିଣି ଅରଜୁନ ବୀର
କୃଷ୍ଣଙ୍କୁ ବୋଇଲେ ହେ ବାହ ରଥବର ।
ଯେଉଁଠାରେ ସଂଶପ୍ତକେ ଅଛନ୍ତି ରହି
ସେଠାକୁ ନିଅ ଆଉ କି କହିବି ମୁହିଁ ।
କୃଷ୍ଣ ତାହା ଶୁଣିଣ ବାତ ପରି ବେଗ
ଘୋଡ଼ାଙ୍କ ପିଠିରେ ପିଟିଲେ ବାହୁଆଗ ।
କୃଷ୍ଣ ବୋଇଲେ ଆହେ ଇନ୍ଦ୍ରଙ୍କ ସନ୍ତତି
ଗୃହଁ ଯୁଧିଷ୍ଠିରଙ୍କୁ କୁରୁ ବେଢ଼ିଛନ୍ତି ।
ପାଞ୍ଚାଳମାନେ ମଧ୍ୟ ଯୁଧିଷ୍ଠିର ରକ୍ଷା
କରିବାକୁ ଧାଇଁଅଛନ୍ତି କରି କକ୍ଷା ।
ସୁଯୋଧନ ରଥଗୁଡ଼ାଏ ସଙ୍ଗେ ଧରି
ଧାଇଁଛି ମାରିବାକୁ ପାଣ୍ଡବ-କେଶରୀ ।
ଯୁଧିଷ୍ଠିର-କୁଞ୍ଜଳସେରକୁ କୁରୁଏ—
ଦ୍ୱିଜେ ଧାଇଁଛନ୍ତି ନେବାକୁ ଅତିଶୟେ ।
ବରଷାର ଜଳ ପ୍ରବାହ ହେଲା ପରି
ସୁଯୋଧନରେ ସେନା ଅଛନ୍ତି ବାହାରି ।
ବୀରମାନେ ଧନୁକୁ କରିଣ ଟଙ୍କାର
ଧରିଅଛନ୍ତି କରେ କେ ପ୍ରାସ ତୋମର ।

ଏହି ସକାଶରୁ ବରଜୁଅଛୁ ମୁହିଁ
ମୃତ୍ୟୁମୁଖେ ଅଛନ୍ତି ଯୁଧିଷ୍ଠିର ରହି ।
ସୁଯୋଧନ ଭେଣ୍ଡା ଛାଡ଼ିବ ଯେବେ କାଣ୍ଡ
କହ ତ ଅର୍ଜୁନ ସହି କି ପାରେ ପିଣ୍ଡ ।
କର୍ଣ୍ଣ ଅଶ୍ୱତ୍ଥାମା ଗୁଟେଣି ରଡି ଶୁଣି
ଫାଟିବ ଧରାଧର ଭୁଲରେ ଧରଣୀ ।
କର୍ଣ୍ଣ ଯୁଧିଷ୍ଠିରଙ୍କୁ କରିଣ ବିମୁଖ
କରିଛନ୍ତି ପ୍ରସନ୍ନ ଆପଣାର ମୁଖ ।
ପୁଣି ଧୃତରାଷ୍ଟ୍ର ପୋଏ ପଛେ ଅଛନ୍ତି
କର୍ଣ୍ଣହାତେ କି ହୋଇ ନ ପାରେ ଝଟତି ।
ଯୁଧିଷ୍ଠିରଙ୍କର କବଚ ଚୂର୍ଣ୍ଣି କର୍ଣ୍ଣ
କରିଦେଲେ କାଣ୍ଡମୂନରେ ପାର୍ଥ ଛିନ୍ନ ।
ଯୁଧିଷ୍ଠିର ତ ଉପାସରେ ଅତି କ୍ଷୀଣ
ନୁହନ୍ତି ନିଷ୍ଠୁର ସେ ମହାପରାୟଣ ।
ତୁମ୍ଭ ରାଜ୍ୟ ଧନ ନେବାକୁ ଏକା କର୍ଣ୍ଣ
କାରଣ ବୋଲିକରି ଜାଣ ଅରଜୁନ ।
ଯୁଧିଷ୍ଠିର ପ୍ରାଣ ସଂଶୟ ନ ହୋଇଲେ
କୁରୁସିଂହନାଦ ସହେ କି ଭୀମ ଭଲେ ।
କର୍ଣ୍ଣ ଡାକିଣ କହୁଅଛନ୍ତି ଯୋଦ୍ଧାଙ୍କୁ
ପକାଅ ମାରି ବୋଲି ପାଣ୍ଡବ-ରାଜାଙ୍କୁ ।
କୁରୁମାନେ ଯେ ସ୍ଥୂଣାକର୍ଣ୍ଣ ପାଶୁପତ
ଅସ୍ତ୍ରେ କରିଛନ୍ତି ରାଜାଙ୍କୁ ଆଚ୍ଛାଦିତ ।
ଯୁଧିଷ୍ଠିର ରାଜା ହୋଇଲେ କି ବାଉଳ
ଯୁଦ୍ଧକଲେ ମରିବା ବୋଲି ମନେ ଭଲ ।
ଯୁଧିଷ୍ଠିର ରାଜାଙ୍କର ଯେ ରଥଧ୍ୱଜ
ହଣୁନାହିଁ ନେଇକୁ ଗୃହଁ ବୀରରାଜ ।
ଭୀମ ଆଦି ରଥୀଏ ଗୃହଁାନ୍ତି ନୟନେ
କର୍ଣ୍ଣ ତୁମ୍ଭ ସୈନ୍ୟେ ବସାନ୍ତି ଯମସ୍ଥାନେ ।
ଯେଉଁରୂପେ ହାତୀ ମନ୍ଥଇ ନଳିନ
ସେରୂପେ ସେନା-ପଦ୍ମ ମନେ କର୍ଣ୍ଣ ଜାଣ ।
କର୍ଣ୍ଣ କାଣ୍ଡଘାଏ ହାତୀଏ କରି ରଡି
ପଳାନ୍ତି ଦେଖ ହେ ପଦାତିବଳ ମୋଡ଼ି ।
ରଥୀମାନେ ରଥକୁ ଛୁଡ଼ି କର୍ଣ୍ଣଶରେ
ଧାଉଁଛନ୍ତି ବାହାରି ଦେଖ ତରତରେ ।
କର୍ଣ୍ଣଙ୍କର ଧ୍ୱଜ ହୋଉଛି ହସ୍ତୀ କକ୍ଷା
ବଢ଼ାଇଛି ଅର୍ଜୁନ ଯୁଦ୍ଧେ ତାଙ୍କ କକ୍ଷା ।

ଭୀମଠାରୁ ତ କର୍ଣ୍ଣ ଧାଇଁଛନ୍ତି ଦେଖ
ଯୁପରେ ସନ୍ଧକରି ଉତ୍ତମ ବିଶିଖ ।
ଇନ୍ଦ୍ର ଦୈତ୍ୟବଳକୁ ମାରିବା ପରାୟେ
ପାଞ୍ଚାଳଙ୍କୁ ମାରନ୍ତି କର୍ଣ୍ଣ କାଣ୍ଡଘାଏ ।
ପାଞ୍ଚାଳ ସଞ୍ଜୟଙ୍କୁ ଜିଣି କରି କର୍ଣ୍ଣ
ଭୀମଙ୍କୁ ବୋଲୁଛନ୍ତି ଜାଣ ହେ ଅର୍ଜୁନ ।
ଇନ୍ଦ୍ର ପରାୟେ କୁରୁବଳ ମଧ୍ୟେ ଥାଇ
ଝଅନ୍ତି ସାୟକେ ଶତ୍ରୁଙ୍କୁ କର୍ଣ୍ଣ ଦହି ।
କର୍ଣ୍ଣଙ୍କ ପରାକ୍ରମ ଦେଖି କୁରୁଗଣ
ଅରଜୁନ କରୁଅଛନ୍ତି ସିନା ଟାଣ ।
ସଂଯତ ହୋଇ କୁରୁସେନ ଧାଇଁଛନ୍ତି
ଦେବାପାଇଁ ଭୀମର ସୈନ୍ୟଙ୍କୁ ବିପତ୍ତି ।
ଦେଖ କର୍ଣ୍ଣ ମୁଣ୍ଡରେ ଶ୍ୱେତଛତ୍ର ଟେକା
ହେବାରୁ ମହାଶୋଭା ପାଉଛି ସେ ଏକା ।
ବର୍ଣ୍ଣ ବଧ କରି ଟି ବୃଦ୍ଧାନ୍ତି ଭୀମଙ୍କୁ
ବାନ୍ଧବେ ପରି ଏହିକ୍ଷଣି ମାର୍ଗଣକୁ ।
ଶଲଭ ପରି ଭୀମ ବାଣ ଅଗ୍ନି ମୁଖେ
ଏଇକ୍ଷଣି କର୍ଣ୍ଣ ପଡ଼ିବେ ଇଚ୍ଛା ସୁଖେ ।
ଧୃତରାଷ୍ଟ୍ରପୋଏ ପାଇଣ କର୍ଣ୍ଣ ସଙ୍ଗ
କରୁଅଛନ୍ତି ମହାସୁଖେ ରଣରଙ୍ଗ ।
ଏ ସକାଶୁ କହୁଛି ଏ ଦୁଷ୍ଟ କର୍ଣ୍ଣଙ୍କୁ
ଦେଖାଅ ହାବୁ ନେଇ ଯମ ନଗରକୁ ।
ଯୁଧିଷ୍ଠିର ରାଜାଙ୍କୁ ଜିଣିଛନ୍ତି କର୍ଣ୍ଣ
ତାଙ୍କୁ ଏବେ ଜିଣ ହେ ବୀର ଅରଜୁନ ।
ଯୁଦ୍ଧରେ ଭଲ ଯୁଦ୍ଧ କରି ଅରଜୁନ
ଅରଜୁନ କରୁଥାଇ ଏବେ ଯଶ ଧନ ।
ପଞ୍ଚାଶ ମହାରଥୀ ଛ ଅଯୁତ ପତ୍ତି
ସହସ୍ର ଦଶ ଘୋଡ଼ା ସପ୍ତ ପାଞ୍ଚ ଦନ୍ତୀ ।
ଧାଇଁଛନ୍ତି ଭୀମଙ୍କୁ କରିବାକୁ ଯୁଦ୍ଧ
କରି ଭୀମେ ତାହାଙ୍କୁ କାଣ୍ଡମୂନେ ବଧ
ଭୀମ ପରାକ୍ରମ ଦେଖିଣ କୁରୁମାନେ
ଆଜ ଗୁଡ଼ି ପଳାନ୍ତି ଯୁଦ୍ଧୁଁ ଭୟମନ ।
କର୍ଣ୍ଣ ତ ଧୃଷ୍ଟଦ୍ୟୁମ୍ନ ରଥ ଆଗେ ରଥ
କରିଛନ୍ତି ତାଙ୍କୁ ବା ଦେବେ ଯମପଥ ।
ସାତ୍ୟକ ଭୀମ ଯେ ସୃଞ୍ଜୟସୈନ୍ୟ ଘେନ
ଟଳିଉଠିବାରୁ ମୁହିଁ ଭାବୁଅଛି ପୁଣି ।

ଯୁଧିଷ୍ଠିର ରାଜା ବା ଅଛନ୍ତି ଜୀବନେ
ନୋହିଲେ କ ବାହୁଡ଼ି ଆସନ୍ତେ ଏମାନେ ।
ଭୀମଙ୍କର କାଣ୍ଡରେ ଧୃତରାଷ୍ଟ୍ରସେନା
ହେଲେଣି ଯୁଦ୍ଧଦାଣ୍ଡେ ଅର୍ଜୁନ ବିମନା ।
ଭୀମଙ୍କର ରଥଘୋଷକୁ ଶୁଣି ଆନେ
କୁରୁସେନାପାକ ପଳାନ୍ତି ଛନ୍ନଭିନ୍ନେ ।
ରଥଧ୍ୱଜ ପତାକା ଭୀମ କାଣ୍ଡେ କାଟି
ହୋଇ ଯାଉଅଛି ଟି ମହୀତଦେଶ ଲେଟି ।
ରଥ ଗଜ ଅଶ୍ୱରେ ମନୁଷ୍ୟ ଗୋଟିଏ
ନାହାନ୍ତି ହେ ପାର୍ଥ ଭୀମଙ୍କ କାଣ୍ଡଘାଏ ।
ଧୃତରାଷ୍ଟ୍ରପୋଏ ଯେ ପାଞ୍ଚାଳମାନଙ୍କୁ
ମାରୁଅଛନ୍ତି ମଧ୍ୟ ବନ୍ଧ ମାର୍ଗକୁ ।
ପାଞ୍ଚାଳମାନେ ମଧ୍ୟ ସୁଯୋଧନ ସେନା—
ମାନଙ୍କୁ ଯୁଝୁଛନ୍ତି ନୋହିଣ ବିମନା ।
ନରାୟୁଧ ହୋଇବା ଲେଲେ ତନ୍ତୁଁ ଅସ୍ତ୍ର-
ଧରି ନାଶୁଅଛନ୍ତି ଶତ୍ରୁଙ୍କର ଗାତ୍ର ।
ବାହୁର ଭୁଲେ ଶୀର ଛୁଡ଼ି କୋଟି କୋଟି
ମଣୁଛନ୍ତି ବୀରମାନେ ଏ ଯୁଦ୍ଧକୁଟି ।
କୃପ କର୍ଣ୍ଣ ଆଦି ରଥୀଏ ପରାକ୍ରମ
ଦେଖାଇ କରୁଛନ୍ତି ଦେଖ ହେ ସଂଗ୍ରାମ ।
ପାଞ୍ଚାଳଙ୍କ ବିମୁଖ ଦେଖିଣ ପବନ
ନନ୍ଦନ ଘେନୁଛନ୍ତି ଶତ୍ରୁଙ୍କ ଜୀବନ ।
ଭୀମକାନ୍ତ୍ରେ, ବଜ୍ରେ, କୁରୁଙ୍କ ହସ୍ତୀ ଗିରି
ଉଡ଼ୁଛନ୍ତି ଦେହରୁ ଗୁଡ଼ିପ୍ରାଣ-ଶିଖୀ!
ଜୟକାମୀ ହେବାରୁ ଭୀମ ମହାମଲ୍ଲ
ଗରଜନ କରୁଅଛନ୍ତି ଶୁଣ ଭଲ ।
ନଇଷାଦ ହାଣି ଚଢ଼ିଣ ତୋମରକୁ
ଫିଙ୍ଗୁଅଛି ହେ ପାର୍ଥ ଭୀମଙ୍କ ଦେହକୁ ।
ଭୀମ ଦଣ୍ଡକାଣ୍ଡରେ ନିଷାଦର ଭୁଜ
କାଟି ପ୍ରାଣ ନେଲେଣ ପାଧ ବୀରରାଜ ।
ଗଜ ଅଶ୍ୱ ନରମାନଙ୍କୁ ଭୀମ କାଣ୍ଡେ
ବସାଉଛନ୍ତି କୋଧ ବହ୍ନି ଯମଦାଣ୍ଡେ ।
ହାଣିଟିକ ବନ୍ଧିଣ ଦଶ ଦଶ କାଣ୍ଡି
ମାରି ହାଣି ହାକୁଣୀ କରୁଛନ୍ତି ରଣ୍ଡ ।
ତିନି ଅକ୍ଷୌହିଣୀ ଯେ ଧୃତରାଷ୍ଟ୍ର ସେନା
ନିବାରନ୍ତି ଏକା ଭୀମ ମହାମନା ।

ଅରଜୁନ ଶୁଣି ସେ କୃଷ୍ଣଙ୍କ ବଚନ
ଟିଙ୍କି କରେ ଦିବ୍ୟ ଗାଣ୍ଡୀବ ଶରାସନ ।
ପାଖରେ ଥିବା ଶତ୍ରୁମାନଙ୍କୁ ସହାରେ
ବାହାର ଗଲେ ଯୁଦ୍ଧଦାଣ୍ଡେ ହସିକରି ।
ଧୃତରାଷ୍ଟ୍ର ବୋଇଲେ ବାହୁଡ଼ନ୍ତେ ଭୀମ
କିରୂପେ କଲ କହ କୁରୁଏ ସଂଗ୍ରାମ ।
ସଞ୍ଜୟ ବୋଇଲେ ହେ ଭୀମଙ୍କୁ ଗୋଡ଼ାଇ
ଯୁଦ୍ଧ କରିଲେ କର୍ଣ୍ଣ ଅଙ୍ଗଦେଶ ସାଇଁ ।
ପାଣ୍ଡବଙ୍କ ମହାରଥୀଏ କର୍ଣ୍ଣଙ୍କର
ଯୁଦ୍ଧ ଦେଖିଣ କଲେ କର୍ଣ୍ଣଙ୍କୁ ପ୍ରହାର ।
ପାଞ୍ଚାଳ ଜନ୍ମେଜୟ ଶିଖଣ୍ଡୀ ଭୀମସେନ
ପ୍ରଭଦ୍ରକ ସାତ୍ୟକସୁତ ଧୃଷ୍ଟଦ୍ୟୁମ୍ନ ।
କ୍ରୁଦ୍ଧ ହୋଇଣ ତୁମ୍ଭ ସେନାଙ୍କର ମୁଣ୍ଡ
କାଟି ଗଡ଼ାଇ ଦେଲେ ଯୁଦ୍ଧଭୂମି ଦାଣ୍ଡ ।
ତୁମ୍ଭ ମହାରଥୀମାନେ ତ ମହାମନା
ସେରୂପେ ମାଇଲେ ସେ ଯୁଦ୍ଧେ ପାଣ୍ଡୁସେନା ।
ଶିଖଣ୍ଡୀ କର୍ଣ୍ଣଙ୍କ ରଥକୁ ରଥ ଯୋଚି
ବିନ୍ଧିଲେ ବାଛି କାଣ୍ଡ କାଟି ଟାଣିଣ ଧନୁଟି ।
ଧୃଷ୍ଟଦ୍ୟୁମନ ଦୁଃଶାସନ ଦୁଇ ଭେଣ୍ଡା
ଯୁଦ୍ଧ କଲେ ଧରିଣ କରେ କାଣ୍ଡ ଖଣ୍ଡା ।
ନକୁଳ ବୃଷସେନ ପାଣ୍ଡବ ରାଜନ
ଚିତ୍ରସେନଙ୍କ ତୁଲେ କଲେ ଆୟୋଧନ ।
ସହଦେବ ଉଲୂକ ହୋଇ ଭେଟାଭେଟି
ଯୁଦ୍ଧ କଲେ ଗର୍ଜନ କରି ମେଳ ପାଟି ।
ସାତ୍ୟକିଙ୍କ ଶକୁନି କୁରୁଙ୍କୁ ଦ୍ରୌପଦେୟ
ଯୁଦ୍ଧ ଆରମ୍ଭିଲେ ବିନ୍ଧିଣ ବାଣଚୟ ।
ଅର୍ଜୁନ ଅଶ୍ୱତ୍ଥାମା କୃପ ଯୁଧାମନ୍ୟୁ
ଯୁଦ୍ଧ କଲେ ରାଜନ ହୃଦେ ଧରି ମନ୍ୟୁ ।
କୃତବର୍ମା ଉତ୍ତମଓଜାଙ୍କର ରଣ
ଉତ୍ତମ ହୋଇ ପ୍ରବର୍ତ୍ତିଲା ନରରାଣ ।
ଭୀମ ତୁମ୍ଭ ପୁଅଯାକଙ୍କୁ ଏକା ଯୋଚି
ଧନୁ ଧରି ବିନ୍ଧିଲେ ଶର କୋଟି କୋଟି ।
ଶିଖଣ୍ଡୀକାଣ୍ଡେ କର୍ଣ୍ଣ ଗଣ୍ଡିକ କମ୍ପାଇ
ଶିଖଣ୍ଡୀକି ବିନ୍ଧିଲେ ତିନ ବେଗ ବଢ଼ା ।
ସେ କାଣ୍ଡେ ଶିଖଣ୍ଡୀର ଭ୍ରୂଦେଶେ ବାଜି
ରହିଲେ ହେ ରାଜନ ଫାଳଯାଏ ମଜ୍ଜି ।

ତିନିଶୃଙ୍ଗ ପର୍ବତ ଶୋଭିଲୁ ଶିଖଣ୍ଡୀ
ସେ କାଣ୍ଡ ତିନ ଯେହ୍ନ ଦେଲେ ସାଏ ଦଣ୍ଡି ।
ଶିଖଣ୍ଡୀ-ପୁଣି କର୍ଣ୍ଣ ଦେହେ ନଉକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
କର୍ଣ୍ଣ ଶିଖଣ୍ଡୀର ସାରଥି ଘୋଡ଼ା ପ୍ରାଣ
ନେଇ ଧ୍ୱଜ କ୍ଷୁରକାଣ୍ଡରେ କଲେ ଛିନ୍ନ ।
ଏ ବାହାରେ ଯେ ଶୂର ଘୋଡ଼ାଙ୍କୁ ମାଇଲେ
କାହିଁ ଯିବ ଶିଖଣ୍ଡୀ ଆଜକି ବୋଇଲେ ।
ରଥୁଁ ଡେଇଁପଡ଼ି ଶିଖଣ୍ଡୀ ସାରମଣି
କର୍ଣ୍ଣଙ୍କୁ ଶକ୍ତିଟାଏ ଫିଙ୍ଗିଲେ ସେକ୍ଷଣି ।
କର୍ଣ୍ଣ ତିନକାଣ୍ଡେ କାଟିଣ ଶକତିକି
ନବକାଣ୍ଡ ବିନ୍ଧିଲେ ଶିଖଣ୍ଡୀ ଗଣ୍ଡିକି ।
ଶିଖଣ୍ଡୀ କର୍ଣ୍ଣବାଣେ ପାଇ ମହାବ୍ୟଥା
ପଳାଇଲେ କାହାକୁ ନ କହିଣ କଥା ।
କର୍ଣ୍ଣ ପାଣ୍ଡୁସେନାଙ୍କୁ ଶରରେ ନବାରି
ବାହାରିଲେ ହାତକେ ନଶପଟ୍ଟେ ଧରି ।
ଧୃଷ୍ଟଦ୍ୟୁମ୍ନ ଦୁଃଶାସନକୁ ତିନକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
ଦୁଃଶାସନ ଧୃଷ୍ଟଦ୍ୟୁମ୍ନ ବାମବାହୁ-
ଚନ୍ଦ୍ରେ ତିନକାଣ୍ଡେ ଯୋଚିଲେ ହୋଇ ରାହୁ
ଧୃଷ୍ଟଦ୍ୟୁମନ ମହାବୀର ଆଶୀବିଷ
ସଦୃଶ ବାଣ ଯେ ବିନ୍ଧିଲେ ହୋଇ ରୋଷ
ତୁମ୍ଭର ପୁଅ ଧୃଷ୍ଟଦ୍ୟୁମନ କାଣ୍ଡକୁ
ତିନକାଣ୍ଡେ ଛେଦିଲେ ଦେଖାଇ ବଳକୁ ।
ଏ ବାହାରେ ସତର ଭଲକାଣ୍ଡ ଧରି
ଧୃଷ୍ଟଦ୍ୟୁମନ ଉପରେ ବିନ୍ଧିଲେ କ୍ରୋଧେ ଥରି
ସେ ଭଲି ଘାତକୁ ନ ସହି ମାରି ଅସ୍ତ୍ର
କଲେ ଦୁଃଶାସନର ଧନୁଟିକି ହତ ।
ଆନ ଧନୁକୁ ଧରି ଦୁଃଶାସନ ସାର
ସିଂହପରି ଗରଜି ମାଇଲେଟି ଶର ।
ଦିବ୍ୟବାଣମାନଙ୍କୁ ବାଛି ଗୁଣେ ସନ୍ଧି
ଦେଲେ ଦ୍ରୁପଦଙ୍କର ନନ୍ଦନଙ୍କୁ ବିନ୍ଧି ।
ତୁମ୍ଭ ପୁଅ ପରାକ୍ରମରେ ଯୋଦ୍ଧାଗଣ
ତୋଷ ହୋଇ ବୋଇଲେ ଭଲ ଦୁଃଶାସନ
ରଥ ନାଗ ଘୋଟକ ସଙ୍ଗତରେ ଧରି
ପାଞ୍ଚାଳେ ହୋଇ ଧୃଷ୍ଟଦ୍ୟୁମ୍ନ ରକ୍ଷାକାରୀ ।

କୁମ୍ଭ ପୁଅ ସଙ୍ଗତେ ଆରମ୍ଭିଲେ ରଣ
ନାନା ପ୍ରକାରରେ ଯେ ବର୍ଷିକରି ବାଣ ।
ବୃଷସେନ ତହୁଁ ନକୁଳ ପାଞ୍ଚକାଣ୍ଡ
ବର୍ଷି ଫୁଟାଇଲେ ଆନନ୍ଦେ ନିଜ ପିଣ୍ଡ ।
ନକୁଳ ବୃଷସେନ ହୃଦେ ତୀକ୍ଷ୍ଣବାଣ
ନାରାଚ ପ୍ରହାରିଲେ ଟାଣି ଧନୁର୍ଗୁଣ ।
ବୃଷସେନ ନକୁଳ ଦେହକୁ ପରିଶି
ନାରାଚ ବାଛି ବର୍ଷିଲେଟି ହୋଇ ରୋଷୀ ।
ଏରୂପେ ଅନ୍ୟୋନ୍ୟେ ନକୁଳ ବୃଷସେନ
ଯୁଦ୍ଧକଲେ ନେବାକୁ ବିଜୟଶ୍ରୀ ରତନ ।
କୁରୁଙ୍କର ପଳାଇବାର କର୍ଣ୍ଣ ଦେଖି
ବୋଇଲେ ରହ ସୁଖେ ମୋ ଯୁଦ୍ଧ ନିରେଖି
ନକୁଳଙ୍କୁ ଛାଡ଼କରିଟି ବୃଷସେନ
ଜଗିଲେ କର୍ଣ୍ଣ ରଥଚକ୍ରକୁ ବହନ ।
କ୍ରୋଧ ହୋଇ ଉଲୁକ ସହଦେବ ସଙ୍ଗେ
ଯୁଦ୍ଧ କରିଲେ ମାତିକରି ରଣରଙ୍ଗେ ।
ସହଦେବ ଉଲୁକ ଚାରିଘୋଡ଼ା ପ୍ରାଣ
ନେଇ ସାରଥିକ ଯେ ଦେଲେ ଜନ୍ତୁରାଣ ।
ଉଲୁକ ସଂସ୍ଥାନୁ ପଳାଇ ତ୍ରିଗର୍ତ୍ତଙ୍କୁ
ବୋଇଲେ ରଖ ରଖ ଭୟ ଲାଗୁଛି ଆମ୍ଭାକୁ
ସାତ୍ୟକ ଶକୁନିଙ୍କି କୋଡ଼ିଏ ମାର୍ଗଣ
ବର୍ଷି ଭଲ୍ଲକାଣ୍ଡରେ ଧ୍ୱଜ କଲେ ଛିନ୍ନ ।
ଶକୁନି କ୍ରୋଧ ହୋଇ ସାତ୍ୟକି କବଚ
ଧ୍ୱଜକୁ କାଟିଦେଲେ ବର୍ଷି ନାରାଚ ।
ଶକୁନିକ ତିନି ଯେ ସାରଥିକ ତିନି
ମାର୍ଗଣ ବର୍ଷିଣ ସାତ୍ୟକି କ୍ରୋଧ ଘେନି ।
ଶୁଣି ତାହାଙ୍କ ଚାରି ଘୋଡ଼ାଙ୍କ ପ୍ରାଣ
କରାଇଲେଟି ଯମରାଜାଙ୍କ ଅଧୀନ ।
ବିରଥ ହୋଇକରି କୁମ୍ଭର ଶଳାଟି
ଚଢ଼ିଲା ନିଜପୁତ୍ର ଉଲୁକ ରଥିଟି ।
ସାତ୍ୟକ ବାଣେ କୁମ୍ଭ ସେନା ପାଇ ପୀଡ଼ା
ପଳାଇଲେ ରାଜନ ଘେନି ମନେ ବ୍ରୀଡ଼ା ।
କୁମ୍ଭର ପୁଅ ଦୁର୍ଯ୍ୟୋଧନ ଭୀମ ରଣ
କଲେ ଦେଖାଇଣ ଆପଣା ବାହୁଟାଣ ।
ମୁହୂର୍ତ୍ତେ ଭୀମ ଦୁର୍ଯ୍ୟୋଧନ ସଙ୍ଗେ ଯୁଝି
ଧ୍ୱଜ କାଟି ଶୁଆଇଦେଲେ ରଣ ମଝି ।

ଏ ବାହାରେ ରଥକୁ କରି ଛିନ୍ନଭିନ୍ନ
ସାରଥି ଅଶ୍ୱଙ୍କର ଘେନିଲେ ଜୀବନ ।
ଭୀମଙ୍କ ଶର ବଜ୍ର ଦୁର୍ଯ୍ୟୋଧନ ଗିରି
ନ ସହିକରି ଆଡ଼ ହେଲେ ଭୟ ଧରି ।
ତାହା ଦେଖି କୁରୁସଇନ ଗୋଟି ହେଲେ
ମୋଟାଦେହେ ଭୀମେ ନାରାଚ ବୃଷ୍ଟି କଲେ
ମାରି ହାଣ କାଟ ପିଟରେ ଏହି ରଡ଼ି
କୁରୁସୈନ୍ୟମାନଙ୍କରେ ରହିଲାଟି ମାଡ଼ି ।
ଯୁଧାମନ୍ୟୁ କୃପଙ୍କ ଭୁଲେ କରି ରଣ
କାଟିଲେ ତାହାଙ୍କର ଧନୁ ବର୍ଷି ବାଣ ।
କୃପ ଆନ ଧନୁ ଧରିଣ ଯୁଧାମନ୍ୟୁ
ଧ୍ୱଜ ଛତ୍ରକୁ କାଟିଦେଲେ ଧରି ମନ୍ୟୁ ।
ଏ ବାହାରେ ସାରଥି ପ୍ରାଣଙ୍କୁ ଘେନିଲେ
କୃପାଚାର୍ଯ୍ୟ ଆଶ୍ଚର୍ଯ୍ୟ ପରାକ୍ରମ କଲେ ।
ଉତ୍ତମୌଜା କାଣ୍ଡରେ କୃତବର୍ମା ବୀର
ନିହାଇଲେ ଯୁଦ୍ଧରେ ଆକ୍ରନ୍ଦ ନରବର ।
କୃତବର୍ମା ଉତ୍ତମୌଜାଙ୍କ ହୃଦୟକୁ
ବିନ୍ଧନ୍ତେ ରାଜନ ସେ ପାଇଲେ ମୋହକୁ ।
ସାରଥି ତାହା ଜାଣି ଆନଠାକୁ ରଥ
ବାହିନେଲା କପାଳେ ମାରିକରି ହାତ ।
ଦୁଃଶାସନ ଶକୁନି ଦୁହେଁ ଏକ ହୋଇ
ବର୍ଷିଲେ ମାରଗଣ ଭୀମଙ୍କୁ ରୋଷାଇ ।
ଭୀମ ଶରେ ଦୁଇ ରଥୀଙ୍କି ଦେଇ ଦୁଃଖ
ବର୍ଷିଲେ ଗଜାମାନଙ୍କ ଉପରେ ବିଶିଖ ।
ଗଜଙ୍କ ଦେହ ଗିରିଙ୍କି ଯେ ଭୀମସେନ
ବଜ୍ର ପରି ସାୟକେ କଲେ ଛିନ୍ନଭିନ୍ନ ।
ଭୀମ କାଣ୍ଡଘାତେ ହାତୀଏ ରଡ଼ି ପାଡ଼ି
ଛାଡ଼ିଦେଲେ ପ୍ରିୟପ୍ରାଣକୁ ଗଡ଼ି ଗଡ଼ି ।
କର କୁମ୍ଭ ଚରଣ ଗଣ୍ଡ ଅନୁକ୍ରମେ
ଗଜଙ୍କର ଛାଡ଼ିଲା ଭୀମ କାଣ୍ଡଘାତେ ।
କେତେ ହାତୀ ଭୟରେ ହୋଇଣ ତ୍ରସ୍ତ
ପଳାଇଲେ ପଛକୁ ହୋଇନ୍ତେ ବଳ ଅସ୍ତ ।
ଭୀମଙ୍କର ଘୋର ଶବଦକୁ ଶୁଣି
ହସ୍ତୀମାନେ ତେଜିଲେ ମଳମୂତ୍ରଶ୍ରେଣୀ ।
ରୁଦ୍ର ପରାୟେ ଭୀମ ହାତୀମାଣ୍ଡ ମଧ୍ୟେ
ବିହାର କଲେ ଧନୁ ଧରି ମହାସଧେ ।

ଶୁକ୍ଳଅଶ୍ୱଯୋଗ୍ୟ ରଥେ ପାର୍ଥ ବସି
ଆସିଲେ ସେଠାକୁ ଧନୁକୁ କରେ କଷି ।
ଭୂମ୍ପ ବଳଯାକର ଏକା ଅର୍ଜୁନ
ଯୁଦ୍ଧଦାଣ୍ଡେ ସନ୍ତାପ ବଢ଼ାଇଲେ ଜାଣ ।
ଏହିକାଳରେ ସୈନ୍ୟ ଘେନି ଦୁର୍ଯ୍ୟୋଧନ
ଯୁଧିଷ୍ଠିର ରାଜାଙ୍କୁ କଲେ ଆୟୋଧନ ।
ତେସ୍ତରି କ୍ଷୁରକାଣ୍ଡ ଯୁଧିଷ୍ଠିର ଦେହେ
ବାନ୍ଧିଲେ ଭୂମ୍ପ ସୁତ ଯୁଦ୍ଧ ଅତି କୋହେ ।
ଯୁଧିଷ୍ଠିର ରାଜା ସେ ଛତିଶଟି ଭଲ୍ଲ
ଭଲ୍ଲି ବାଛିକରି ବାନ୍ଧିଲେ ମହୀପାଳ ।
କୁରୁମାନେ ଏକାଠି ହୋଇଣ ଧାଇଁଲେ
ଧରିବା ଆଜ ଯୁଧିଷ୍ଠିରଙ୍କୁ ବୋଇଲେ ।
ନକୁଳ ସହଦେବ ଧୃଷ୍ଟଦ୍ୟୁମ୍ନ ବୀର
ତାହା ଶୁଣି ଧାଇଁଲେ ଧରି ଧନୁଶର ।
ଭୀମ ଭୂମ୍ପର ମହାରଥୀଙ୍କି ସଂହାରି
ଆସି ହେଲେ ଯୁଧିଷ୍ଠିରଙ୍କ ରକ୍ଷାକାରୀ ।
କର୍ଣ୍ଣ ସେହିକାଳେ କରିଣ ଶର ବୃଷ୍ଟି
ସର୍ଜିଲେ ସେ ରଥମାନଙ୍କ ଦୁଃଖସୃଷ୍ଟି ।
କର୍ଣ୍ଣେ ରୁନ୍ଧିବାକୁ ପାଣ୍ଡବ ରଥୀକୁଳ
ନୋହିଲେ ଥାଉ ତାଙ୍କୁ କରିବାକୁ ଗୋଳ ।
ସହଦେବ ସେ ଦୁର୍ଯ୍ୟୋଧନକୁ କୋଡ଼ିଏ
ଶର ବାନ୍ଧିଲେଟି କମ୍ପାଇ କ୍ରୋଧ କାୟେ ।
ସହଦେବ କାଣ୍ଡକୁ ଅଙ୍ଗଦେଶେ ମଣ୍ଡି
ଦୁର୍ଯ୍ୟୋଧନଙ୍କର ଅଶିଲ୍ମ ମଜ୍ଜାଖଣ୍ଡି ।
କର୍ଣ୍ଣ କ୍ରୋଧ ହୋଇଣ ସହଦେବ ସଙ୍ଗେ
ଯୁଦ୍ଧକଲେ ଆଶୁଗମାନ ବାନ୍ଧି ରଙ୍ଗେ ।
ଯୁଧିଷ୍ଠିରଙ୍କର ସୈନ୍ୟକୁ ସୂଚପୂର
ଶର ବାନ୍ଧିଣ ପୋଡ଼ଦେଲେ ତାଙ୍କ ଗାତ୍ର ।
କର୍ଣ୍ଣଙ୍କର କାଣ୍ଡରେ ପାଣ୍ଡବ ସଇନ
ପୀଡ଼ା ପାଇ ସଜନ ହେଲେ ଛିନ୍ନଭିନ୍ନ ।
କର୍ଣ୍ଣ ସେହିକାଳରେ ବାଣକୁ ସରଜ
ଆକାଶ ଘୋଡ଼ାଇଣ ଉଠିଲେ ଗରଜ ।
ଦଣ୍ଡେଗଯାକରେ କର୍ଣ୍ଣଙ୍କର ବାଣ
ଶଲଭ ପରି ଘୋଟି ରହିଲେଟି ଜାଣ ।
ଏ ବାହାରେ, ଯୁଧିଷ୍ଠିରଙ୍କୁ ଶରବଡ଼ା
ଖଣ୍ଡ କର୍ଣ୍ଣ ସମ୍ପାଦିଲେ ତାଙ୍କ ପୀଡ଼ା ।

ଯୁଧିଷ୍ଠିର କ୍ରୋଧ ହୋଇ ତହୁଁ କର୍ଣ୍ଣଙ୍କୁ
ବାନ୍ଧିଲେ ପାଞ୍ଚ ଶୂନ ବାଛି ମାର୍ଗଣକୁ ।
ତା ଦେଖି ଭୂମ୍ପ ଲୋକେ ହାହାକାର ରଡ଼
କରି କର୍ଣ୍ଣ ପାଶରୁ ପଳାଇଲେ ଛାଡ଼ ।
ଯୁଧିଷ୍ଠିରଙ୍କର କାଣ୍ଡରେ ଭୂମ୍ପ ଲୋକେ
କଲେ ମୁଖ ପଛକୁ କାଢ଼ ସକସକେ ।
କର୍ଣ୍ଣ କ୍ରୋଧ ହୋଇଣ ନାନାଜାତି ବାଣ
ବାନ୍ଧି ଯୁଧିଷ୍ଠିରଙ୍କୁ ଆରମ୍ଭିଲେ ରଣ ।
ଯୁଧିଷ୍ଠିର କର୍ଣ୍ଣେ ଘୋରରୂପେ କାଣ୍ଡ ବାନ୍ଧି
କର୍ଣ୍ଣଙ୍କର ଯିବା ବାଟକୁ ଦେଲେ ରୁନ୍ଧି ।
କର୍ଣ୍ଣ କର୍ଣ୍ଣ ଯାଏ ଓଟାରି କଙ୍କପତ୍ର
ବାନ୍ଧିଲେ ନାଶିବାକୁ ଯୁଧିଷ୍ଠିର ଗାତ୍ର ।
ଯୁଧିଷ୍ଠିର କର୍ଣ୍ଣ ଶରେ ପୀଡ଼ାପାଇ
ଆନଠାକୁ ଗମିଲେ ହୃଦେ ଭୟ ବହି ।
ଭୂମ୍ପ ଲୋକମାନେ ତା ଦେଖିଣ ଧାଇଁଲେ
ଧରିବା ଆସ ଯୁଧିଷ୍ଠିରଙ୍କୁ ବୋଇଲେ ।
ଭୂମ୍ପ ପୁଅମାନଙ୍କୁ କୈକେୟ ପାଞ୍ଚାଳ
ନିବାରିଲେ ଯୁଦ୍ଧରେ ବାନ୍ଧି ଶରଜାଳ
ଏହିକାଳରେ ଦୁର୍ଯ୍ୟୋଧନ ଭୀମ ଦୁହେଁ
ଶାୟକ କଷାକଷି ହେଲେ ରୋଷେ ଦେହେ
କର୍ଣ୍ଣ ଶରଜାଳେ କୈକେୟ ରଥୀକୁଳ
ମରଣ ପୁରାଇଲେ ଯମଙ୍କର ଆଳ ।
ଯତ୍ନ କରି ଯୁଝିଲେ ହେଲେ ପାଣ୍ଡୁ-ସେନା
ଜୀବନ ଘେନି ଗଲେ କର୍ଣ୍ଣ ମହାମନା ।
ପାଞ୍ଚଶ ମହାରଥୀ ପାଣ୍ଡବଗଣର
କର୍ଣ୍ଣହାତେ ମରି ବସିଲେ ସ୍ୱର୍ଗପୁର ।
ପାଣ୍ଡୁସେନା କର୍ଣ୍ଣଙ୍କ ବାଣେ ଦୁଃଖୀ ହୋଇ
ଭୀମଠାରେ ଶରଣ ନେଲେ ରାୟେ ଯାଇ ।
ଏକା ରଥକରେ ସେ ଯୁଧିଷ୍ଠିର ପାଶେ
କର୍ଣ୍ଣ ଧନୁ ଧରି ପ୍ରବେଶ ହେଲେ ରୋଷେ ।
ଯୁଧିଷ୍ଠିର ରାଜା ଯୁଦ୍ଧରେ ଅଶକତ
ହୋଇଣ ରହିଥିଲେ ଭୟ ଧରି ଚିତ୍ତ ।
ତେବେ ହେଲେ କର୍ଣ୍ଣ ବାନ୍ଧିଲେଟି ତାହାଙ୍କୁ
କରିବାପାଇଁ ଭୂମ୍ପ ପୁଅର ହିତକୁ ।
ଯୁଧିଷ୍ଠିର ପାଲଟି କର୍ଣ୍ଣ ସାରଥିଙ୍କ
ଖଣ୍ଡକାଣ୍ଡ ବାନ୍ଧିଲେ ଗଣି ଧନୁଷ୍ଟିକ ।

ନକୁଳ ସହଦେବ ତା ଦେଖି କର୍ଣ୍ଣଙ୍କୁ
ବିନ୍ଧିଲେ ଧନୁମଧ୍ୟେ ବସାଇ ଶରକୁ ।
ଭଲ୍ଲ କାଣ୍ଡକୁ ବିନ୍ଧିକରି ସୂତପୁତ୍ର
ପୋଡ଼ିଲେ ସହଦେବ ନକୁଳଙ୍କ ଗାତ୍ର ।
କର୍ଣ୍ଣ ଯୁଧିଷ୍ଠିରଙ୍କ ଚାରିଘୋଡ଼ା ମାରି
ଶିର କବଚକୁ କାଣ୍ଡରେ ନେଲେ ହରି ।
ନକୁଳଙ୍କର ଘୋଡ଼ା ଧନୁ ଅଖ ଈଷା
କାଟିଲେ ଯୁଦ୍ଧଦାଣ୍ଡେ କର୍ଣ୍ଣ ମହାଯଶା ।
ଯୁଧିଷ୍ଠିର ନକୁଳ ହୋଇଣ ବିରଥ
ଚଢ଼ିଲେ ସେ ଯାଇଣ ସହଦେବ ରଥ ।
ଶଲ୍ୟ ବୋଇଲେ ଆହେ ଯୁଧିଷ୍ଠିର ଭୁଲେ
କାହିଁକି ଯୁଝୁଛ କହ ତ କର୍ଣ୍ଣ ଭଲେ ।
ଅର୍ଜ୍ଜୁନଙ୍କୁ ମାଇଲେ ସିନା ବୀରପଣ
ଦେଖାଇବ ବୁଝିବେ ତହୁଁ ଯୋଦ୍ଧାଗଣ ।
କର୍ଣ୍ଣ ହେ ଶଲ୍ୟଙ୍କର କଥାକୁ ନ ମାନି
ଛାଡ଼ିଲେ କାଣ୍ଡେ ଯୁଧିଷ୍ଠିରେ କ୍ରୋଧ ଘେନି
ନକୁଳ ସହଦେବ ଦେହକୁ ତୀକ୍ଷ୍ଣ
ମାରଗଣେଗଣ ବିନ୍ଧିଲେ ରଣେ କର୍ଣ୍ଣ ।
ଶଲ୍ୟ ପୁଣି କର୍ଣ୍ଣଙ୍କୁ କହିଲେ ପାର୍ଥଙ୍କୁ
ନ ପାରି ଯୁଝୁଛ କି କହ ସେ ରାଜାଙ୍କୁ ।
ଶୁଣି ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ଶଙ୍ଖରଡ଼
ପଳାଉଛନ୍ତି ଦେଖ ତୁମ୍ଭ ଯୋଦ୍ଧା ଗୁଡ଼ ।
ଅର୍ଜ୍ଜୁନ ତ ଆସୁଅଛନ୍ତି ରଣଦାଣ୍ଡେ
ପାରିଲେ ତାଙ୍କୁ ଯାଇ ନିବାରି ହେ କାଣ୍ଡେ ।
ଉତ୍ତମଔଜା ସୁଧାମନ୍ୟୁ ଧୃଷ୍ଟଦ୍ୟୁମ୍ନ
ସାତ୍ୟକ ଆଦି ବୀରେ କରେ ଶରାସନ ।
ଧରିଣ ଅର୍ଜ୍ଜୁନଙ୍କୁ ଜଗି ରହିଛନ୍ତି
ସେଠାକୁ ଭୁଲି ଯିବା ସୁତଙ୍କ ସନ୍ତତି ।
ଭୀମ ଦୁର୍ଯ୍ୟୋଧନଙ୍କୁ କରୁଛନ୍ତି ଯୁଦ୍ଧ
ପାରିଲେ ତାଙ୍କଠାରେ ଯାଇ ତୁମ୍ଭ କ୍ରୋଧ ।
ନକୁଳ ସହଦେବ ଯୁଧିଷ୍ଠିର ମାରି
ପ୍ରଶଂସା ପାଇବ କି କର୍ଣ୍ଣ ଦଣ୍ଡଧାରୀ ।
ଦୁର୍ଯ୍ୟୋଧନ ରାଜା ଭୀମଙ୍କ ହାତେ ପ୍ରାଣ
ଛାଡ଼ିବେ ତୁମ୍ଭ ବଳ ହେବ ଅକାରଣ ।
କର୍ଣ୍ଣ ଶଲ୍ୟଙ୍କଠାରୁ ଶୁଣି ଏ ବଚନ
ଧାଇଁଲେ କରିବାକୁ ଭୀମେ ଆୟୋଧନ ।
ଯୁଧିଷ୍ଠିର ରାଜା ଯେ ଲାଜ ଲାଜ ହୋଇ
ନିଜ ସୈନ୍ୟେ ପଶିଲେ ଘେନି ଦୁଇଭାଇ ।
ସେନାମଧ୍ୟେ ନ ରହି ଲାଜରେ ରାଜନ
ଶିବିରକୁ ଯାଇଣ କଲେ ସେ ଶୟନ ।
ନକୁଳ ସହଦେବ ଦୁହିଙ୍କି ବୋଇଲେ
ଭୀମକୁ ତୁମ୍ଭେ ଯାଇ ଯୁଦ୍ଧେ ଜଗ ଭଲେ ।
ନକୁଳ ଆନ ରଥବରକୁ ଆରୋହି
ଯୁଦ୍ଧଦାଣ୍ଡେ ପଶିଲେ ଘେନି ସାନ ଭାଇ ।
ଏହିକାଳରେ ଅଶ୍ୱତ୍ଥାମା ରଥୀବୃନ୍ଦ
ଘେନି ଅର୍ଜ୍ଜୁନଙ୍କୁ ଓଗାଳି କଲେ ହନ୍ଦ ।
ଅଶ୍ୱତ୍ଥାମାଙ୍କର ବିକ୍ରମ ଜାଣିପାରି
ବିନ୍ଧିଲେ ତାହାଙ୍କୁ ଗାଣ୍ଡୀବଧନୁଧାରୀ ।
ଯେରୂପରେ ବେଳା ରଖଇ ସମୁଦ୍ରକୁ
ସେରୂପରେ ଅର୍ଜ୍ଜୁନ ବାରିଲେ ତାହାଙ୍କୁ ।
କ୍ରୋଧ ହୋଇଣ ଅଶ୍ୱତ୍ଥାମା ବୀରମଣି
ବିନ୍ଧିଲେ କୃଷ୍ଣ ଅର୍ଜ୍ଜୁନଙ୍କୁ ଶରଶ୍ରେଣୀ ।
କୃଷ୍ଣାର୍ଜ୍ଜୁନ ତାହାଙ୍କ ଶରରେ ଆଚ୍ଛନ୍ନ,
ଦେଖି ପାଣ୍ଡୁ ରଥୀଏ ହେଲେ ଛନ୍ନଛନ୍ନ ।
ଅର୍ଜ୍ଜୁନ ହସିଣ କରନ୍ତେ ଦିବ୍ୟ ଅସ୍ତ୍ର
କାଟିଲେ ତାହା କ୍ରୋଧେ ଦ୍ରୋଣଙ୍କର ପୁତ୍ର
ଅର୍ଜ୍ଜୁନ ଯେତେ ଅସ୍ତ୍ର କଲେ ଯୁଦ୍ଧେ କୋହେ
ଅଶ୍ୱତ୍ଥାମା କାଟିଲେ ନ ପଡ଼ି ତା ମୋହେ
ବିସ୍ତାରି ପାଟି ରହିଥିବା ଅନ୍ତରକୁ
ସମ କରିଲେ ଲୋକେ ଦ୍ରୋଣିଙ୍କ ବପୁକୁ ।
କାଣ୍ଡମାନଙ୍କରେ ଘୋଡାର ଚାରିଦିଗ
ଯୁଦ୍ଧ କରିଲେ ଅଶ୍ୱତ୍ଥାମା ବହି ରାଗ ।
ଅର୍ଜ୍ଜୁନ ଅଶ୍ୱତ୍ଥାମା ଘୋଡ଼ାଙ୍କର ପିଣ୍ଡ
ଖୋଳି ପକାଇଲେ ଯେ ବିନ୍ଧିକରି କାଣ୍ଡ ।
ଅର୍ଜ୍ଜୁନ ଦ୍ରୋଣସୁତ କରନ୍ତେ ସମର
ହୋଇଲା ଯୁଦ୍ଧଭୂମି ମହାଭୟଙ୍କର ।
ଅମର୍ଯ୍ୟାଦା ହୋଇଣ ତୁମ୍ଭ ତାଙ୍କ ଲୋକେ
ଯୁଦ୍ଧ କରି ରାଜନ ବସିଲେ ସ୍ୱର୍ଗଲୋକେ ।
ଅର୍ଜ୍ଜୁନ ରଥ ହାଣି ପଦାତିବଳକୁ
ମାଇଲେ ବରଗିଣ ଗାଣ୍ଡୀବ ବାଣକୁ ।
ଅଶ୍ୱତ୍ଥାମା ସେ କର୍ମ ସହି ନ ପାରିଲେ
ଚାପରେ ଥାପେ ରୋପ ଯୋଖିଣ ବିନ୍ଧିଲେ ।

ଏ ବାହାରେ ବକ୍ଷସ୍ଥଳକୁ ଅର୍ଜୁନଙ୍କ
ବିନ୍ଧିଲେ ହୋଇବାରୁ ଯୁଦ୍ଧରେ ଆତଙ୍କ ।
ଅର୍ଜୁନ ଅଶ୍ୱତ୍ଥାମା କାଣ୍ଡେ ପୀଡ଼ା ପାଇ
କାଟିଲେ ତାଙ୍କ ଧନୁ କାଣ୍ଡେ କ୍ରୋଧ ହୋଇ
ଛୁଡ଼ଯାନ୍ତେ ଧନୁ ପରଘ କରେ ଧରି
ଫିଙ୍ଗିଲେ ଦ୍ରୌଣି ଅର୍ଜୁନଙ୍କୁ ରାଗ କରି ।
ଅରଜୁନ ଅଶ୍ୱତ୍ଥାମାଙ୍କ ପରଘକୁ
ହସି କରି କାଟିଲେ ବିନ୍ଧି ଆଶୁଗକୁ ।
ଅଶ୍ୱତ୍ଥାମା ହେ ଶର୍ବୀପତି ଅସ୍ତ୍ର ବିନ୍ଧି
ଦେଲେ ଅରଜୁନଙ୍କୁ ଯୁଦ୍ଧକାଣ୍ଡେ ରୁନ୍ଧି ।
ଅର୍ଜୁନ ଅଶ୍ୱତ୍ଥାମା ଅସ୍ତ୍ରକୁ ଅସ୍ତ୍ରରେ
ସଂହାରିଲେ ଗଗନ କମ୍ପିତ ମାତ୍ରରେ ।
ପୁଣି ଅଶ୍ୱତ୍ଥାମାଙ୍କ ରଥକୁ ଅର୍ଜୁନ
କରିଦେଲେ ମାର୍ଗଣଗଣରେ ଆଚ୍ଛନ୍ନ ।
ଶ୍ରୀକୃଷ୍ଣଙ୍କୁ ଶଏ ଅରଜୁନଙ୍କୁ ତିନ
ଅଶ୍ୱତ୍ଥାମା ଶର ବିନ୍ଧିଲେ କ୍ରୋଧ ଘେନ ।
ଅଶ୍ୱତ୍ଥାମା ଘୋଟକ ସାରଥିଗଣଙ୍କୁ
ବିନ୍ଧିଲେ ଅରଜୁନ ବାଛୁଣି ଶରକୁ ।
ପୁଣି ଅଶ୍ୱତ୍ଥାମାଙ୍କ ମର୍ମେ ବିନ୍ଧି ଶର
ଭଲିକାଣ୍ଡରେ ନେଲେ ପ୍ରାଣ ସାରଥିର ।
ସାରଥି ହତ ଦେଖି ସାରଥ୍ୟକୁ କରି
ବିନ୍ଧିଲେ ଅଶ୍ୱତ୍ଥାମା ଯୁଦ୍ଧରେ ନ ଡରି ।
ତାହା ଦେଖି ସବୁ ଯୋଦ୍ଧାଏ ଆଚ୍ଛା ଆଚ୍ଛା
ବୋଲି ପ୍ରଶଂସନ୍ତେ ଫୁଲିଲେ ଦ୍ରୋଣବତ୍ସ ।
ଅର୍ଜୁନ ତା ନ ସହି ଘୋଡ଼ା ବେକରଜ୍ଜୁ
କ୍ଷୁରକାଣ୍ଡେ କାଟି କାଟିଲେ ମଧ ସାଙ୍ଗୁ ।
ଅର୍ଜୁନ କାଣ୍ଡରେ ଘୋଡ଼ାଏ ପାଇ ପୀଡ଼ା
ରଥ ଘେନି ପଛକୁ ପକାଇଲେ ଭିଡ଼ା ।
ଅଶ୍ୱତ୍ଥାମାଙ୍କର ଏ ଦୁର୍ଦ୍ଦଶାକୁ ଦେଖି
ମଲାଇଁ ବୋଲି କୁରୁମାନେ ହେଲେ ଦୁଃଖୀ ।
ପାଣ୍ଡବେ ଜୟଶିରୀ ଯୁଦ୍ଧୁଁ କରି ଲୁଟି
ବିନ୍ଧିଲେ କୁରୁ ସେନା ବକ୍ଷେ ଶର କୋଟି ।
କୁରୁ ବଳ ଭଙ୍ଗିବା ଦେଖିକରି କର୍ଣ୍ଣ
ରହ ବୋଲି ଡାକିଲେ ଟେକି ଶରାସନ ।
ତେବେ ହେଲେ ତ କୁରୁ ଲୋକେ ନ ରହିଲେ
ପାଣ୍ଡବଙ୍କୁ କାଣ୍ଡ ଖଣ୍ଡକୁ ଡରିଲେ ।
କୁରୁ ସୈନ୍ୟମାନ ପଳାଇବା ଦେଖି
ପାଣ୍ଡବେ ଗରଜିଲେ ହୋଇ ଅତି ସୁଖୀ ।
ଦୁର୍ଯ୍ୟୋଧନ ବୋଇଲେ ଆହେ କର୍ଣ୍ଣବୀର
ଦେଖ ପଳାଇଗଲେ ସେନାଏ ମୋହର ।
ଏଥି ଯେ ଉଚିତ ବିଚାରି ତା କରି
କର ଯୁଦ୍ଧକାଣ୍ଡେ ହେ କର୍ଣ୍ଣ ଦଣ୍ଡଧାରୀ ।
କର୍ଣ୍ଣ ତାହା ଶୁଣି ବୋଇଲେ ଶଲ୍ୟ ରଥ
ବାହ କ ଦେଖୁଛ ଦେଖ ମୋ ସାମରଥ ।
ଆଜ ସବୁ ପାଣ୍ଡବମାନଙ୍କୁ ମୁଁ ମାରି
କରାଇବି ଦୁର୍ଯ୍ୟୋଧନଙ୍କୁ ଦଣ୍ଡଧାରୀ ।
ଏହା କହି ଜୟ ଧନୁରେ ଭାର୍ଗବାସ୍ତ୍ର
ଯୋଖି କରି ବିନ୍ଧିଲେ ଯୁଦ୍ଧେ ସୂତପୁତ୍ର ।
ଏଣୁ ଯେ ଅଯୁତ ଅଯୁତ ଅସ୍ତ୍ରପନ୍ତି
ବାହାରିଲେ ଆକାଶେ ଜାଣ ହେ ନୃପତି ।
ପାଣ୍ଡୁସେନ ଏ କର୍ଣ୍ଣ ଶରରେ ଆଚ୍ଛନ୍ନ
ହେବାରୁ ଯୁଦ୍ଧକାଣ୍ଡେ ହେଲେ ଅତି ଛନ୍ନ ।
ପାଞ୍ଚାଳମାନେ ତାହା ଦେଖି ସୁଖୀ ନୋହି
କୁହା କୁହି ହେଲେ ମଲୁଁ ଆଜ ଭାଇ ।
ହାତୀ ଘୋଡ଼ା ପଦାତି ପଡ଼ି ଭଡ଼ଭଡ଼
ନ ରଖିଲେ କେହି ଗୋଟିଏ ପଖାହାଡ଼ ।
ଏକା ହୋଇ କର୍ଣ୍ଣ ପାଣ୍ଡବସୈନ୍ୟ ଦହି
ବାହାରିଲେ ବାହା ବେନିକ ଦୋହଲାଇ ।
ତେଣିକି ପାଞ୍ଚାଳରେ କର୍ଣ୍ଣ କାଣ୍ଡେ ମୋହ
ହୁଅନ୍ତେ ଛାଡ଼ି ଦେହେ ଯୁଦ୍ଧରୁ ସେ କୋହ ।
ମଲାଇଁ ବୋଲି ସବୁ ସେନାଏ ହୋଇ ଗୋଟି
ପାଡ଼ିଲେ ଡକା ଉଚ୍ଚସ୍ୱରେ ମେଲି ପାଟି ।
ଏହିରୂପେ କର୍ଣ୍ଣଙ୍କ ବୀରପଣ ଦେଖି
ପଳାଇଲେ ଯୋଦ୍ଧାଏ ବୁଜିଦେଇ ଆଖି
କର୍ଣ୍ଣଙ୍କ ବିକ୍ରମ ନ ସହି ପାଣ୍ଡୁବଳ
ରଖ ପାର୍ଥ ବୋଲି କଲେ ସେ ମୁଖଗୋଳ ।

—❋—

## କୃଷ୍ଣାର୍ଜୁନଙ୍କର ଯୁଧିଷ୍ଠିରଙ୍କ ବସାକୁ ଗମନ

ଅର୍ଜୁନ ତାହା ଶୁଣି କହିଲେ କୃଷ୍ଣଙ୍କୁ
ଦେଖ କର୍ଣ୍ଣ ଭାର୍ଗବ ଅସ୍ତ୍ର ପ୍ରଭାବକୁ ।

ଅନ୍ତକ ପରି କର୍ଣ୍ଣ କରି ଯୁଦ୍ଧେ ମୂର୍ତ୍ତି
ମୋର ସୈନ୍ୟଯାକକୁ ଦେଉଛନ୍ତି ଖପନ୍ତି ।
କର୍ଣ୍ଣରଠାରୁ ଜୟ ପରାଜୟ ଆଜ
କି ହେବ ମୋର ମନ ପାରୁନାହିଁ ହେଜ ।
ଶ୍ରୀକୃଷ୍ଣ ବୋଇଲେ ହେ ଯୁଧିଷ୍ଠିରଠାକୁ
ଆଗ ଭଲ କଥାରେ ବୋଧିବ ତାହାଙ୍କୁ ।
ପଛରେ କର୍ଣ୍ଣ ଭୁଲେ କରିଣ ସମର
ବସାଇବା ନେଇ କୃତାନ୍ତ ରାଜପୁର ।
ଅରଜୁନ ବୋଇଲେ ବେ ଲୁଛ ଯା ହରି
ତାହା କର ହେ ମୋତେ ଆଉ ନ ପଚାର ।
ଏହା ଶୁଣିଣ କୃଷ୍ଣ ବାହିଲେ ରଥକୁ
ଯୁଧିଷ୍ଠିର ରାଜାଙ୍କ ଥିବାର ସ୍ଥାନକୁ ।
ଅର୍ଜୁନ ସୈନ୍ୟରେ ନ ଦେଖି ଯୁଧିଷ୍ଠିର
ମଣିଲେ ମଲେ କି ପାଣ୍ଡବ ନୃପବର ।
ଭୀମଙ୍କୁ ବୋଇଲେ ହେ ଯୁଧିଷ୍ଠିର କାହିଁ
ଅଛନ୍ତି ଜାଣିଥିଲେ ଦିଅ ତା ଦେଖାଇ ।
ଭୀମ ବୋଇଲେ ହେ କର୍ଣ୍ଣଙ୍କ କାଣ୍ଡ ବାଜ
ଯୁଧିଷ୍ଠିର ରାଜା ପଳାଇଲେ ଭାଜ ।
ଜୀଇଥିଲେ ଆମ୍ଭର ହେବ ବଡ଼ ଭାଗ୍ୟ
ନୋହିଲେ ତ ହେଲାନ ଆମ୍ଭର ଅଭାଗ୍ୟ ।
ଅର୍ଜୁନ ବୋଇଲେ ବସାକୁ ତୁମ୍ଭେ ଯାଅ
ତହିଁ ଥିବେ ସେ ଅବା ଧର୍ମଙ୍କର ପୁଅ ।
ମୁଁ ଏକା ହୋଇ କୁରୁମାନଙ୍କୁ ଯୁଝୁଛି
ଏଥିରେ ଥିଲେ ଶଙ୍କା ଦିଅ ତା ମୁ ରୁଛି ।
ଭୀମ ବୋଇଲେ ହେ ଅର୍ଜୁନ ଯାଅ ତୁମ୍ଭେ
କୁରୁଙ୍କୁ ଏକା ହୋଇ ଯୁଝୁଅଛୁ ଆମ୍ଭେ ।
ମୁଁ ଗଲେ କୁରୁଏ ବୋଲିବେ ଭୟ ପାଇ
ପଳାଇଲେ ତ ଭୀମ ବଡ଼ ଭେଣ୍ଡା ହୋଇ
ଅରଜୁନ ବୋଇଲେ ସଂଶପ୍ତକଗଣ
ନ ମାଇଲେ କେଣେ ମୁଁ ଯାଇନାହିଁ ଜାଣ ।
ଭୀମ ବୋଇଲେ ମୁହିଁ ସଂଶପ୍ତକ ଦଳ
ଦେଉଛି ଯୁଦ୍ଧେ ଯାଅ ପାର୍ଥେ ଯୁଦ୍ଧଶାଳ ।
ଅର୍ଜୁନ ଭୀମଙ୍କ ବଚନେ ହୋଇ ତୋଷ
ବୋଇଲେ ରଥ ମୋର ବାହ ହୃଷୀକେଶ ।
ଯୁଧିଷ୍ଠିର ନୃପେ ଦେଖିବ ଥରେ ମୁହିଁ
ଭୀମ ଜି ଯୁଦ୍ଧରୁ ଫିବାକୁ କଲେ ନାହିଁ ।
ଅର୍ଜୁନଙ୍କ ବଚନେ କୃଷ୍ଣ ତୁରଙ୍ଗକୁ
ବାହିଲେ ଯୁଧିଷ୍ଠିର ରାଜାଙ୍କ ବସାକୁ ।
ବସାଦ୍ୱାରରେ ରଥବରରୁ ଓହ୍ଲାଇ
ପଶିଲେ ଯୁଧିଷ୍ଠିର ବସାକୁ ଝସାଇ ।
ଦେଖିଲେ ଶୋଇଛନ୍ତି ଯୁଧିଷ୍ଠିର ରାଜା
କର୍ଣ୍ଣଙ୍କ କାଣ୍ଡଘାତେ ଧରି ପୀଡ଼ା ଲଜ୍ଜା ।
ଦୁହେଁ ଯୁଧିଷ୍ଠିରଙ୍କ ଦୁଇପାଦ ଧରି
ଛିଡ଼ା ହୋଇ ରହିଲେ ନମସ୍କାର କରି ।

—※—

## କର୍ଣ୍ଣର ମୃତ୍ୟୁ ଭାବ ଯୁଧିଷ୍ଠିରଙ୍କର କୃଷ୍ଣାର୍ଜୁନଙ୍କୁ ପ୍ରଶ୍ନ

ଯୁଧିଷ୍ଠିର ଦେଖିଣ କୃଷ୍ଣ ଅର୍ଜୁନଙ୍କୁ
ଭାବିଲେ ମାଇଲେ ଏ ନିଶ୍ଚୟେ କର୍ଣ୍ଣଙ୍କୁ ।
ବୋଇଲେ ହେ କୃଷ୍ଣ ଅର୍ଜୁନ ଦୁଇଜଣ
ଆସିଛନ୍ତି କି ଭଲେ ଯୁଦ୍ଧରୁ ବଖାଣ ।
ନ ପାଇ ପୀଡ଼ା ଯୁଦ୍ଧେ କର୍ଣ୍ଣର ମୁଣ୍ଡଟି
କାଟିଲେଟି କି ଆହେ କହନ କରିଟି ।
ସବୁ ଶସ୍ତ୍ରମାନଙ୍କେ କର୍ଣ୍ଣ ବିଶାରଦ
ଦୁର୍ଯ୍ୟୋଧନ ରାଜାର ବଡ଼ାନ୍ତ ପ୍ରମୋଦ ।
ଆଶୀବିଷ ସଦୃଶ ତାଙ୍କ ଶରଧାରା
ଭାଙ୍ଗି ପାରଇ ଯୋଦ୍ଧା ଗିରିଙ୍କର ତୋରା ।
ବୃଷସେନ ସୁଷେଣ ଦୁଇରେ ରକ୍ଷିତ
ହୋଇଥାନ୍ତି ଯୁଦ୍ଧଦାଣ୍ଡେ ସେ ଅନୁବ୍ରତ ।
ଧୃତରାଷ୍ଟ୍ର ବାହିନୀଙ୍କର ସଞ୍ଜୁ ହୋଇ
ମୋ ସଙ୍ଗତେ ଯୁଝୁଥାନ୍ତି ସେ କ୍ରୋଧବହ୍ନି
ଦେବ ଦାନବରେ ଅଟନ୍ତି ଅପ୍ରଧୃଷ୍ୟ
ଅନଳାନିଳ ତେଜ ବେଗର ସଦୃଶ ।
ଅନ୍ତକର ଅନ୍ତ ପାରନ୍ତି ସେହି କରି
ତାଙ୍କୁ ଯାହା ମାଇଲ ଏ ଭାଗ୍ୟ ମୋହରି ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ସାତ୍ୟକି ବୃନ୍ଦେଁ ଥିଲେ
ମୋତେ କର୍ଣ୍ଣ ଯୁଦ୍ଧ ବିରଥ କଲେ ଭଲେ ।
ଏ ବାହାରେ ମୋହର ପଛରେ ଗୋଡ଼ାଇ
ବୋଇଲେ ଯାହା ତାହା ନ ପାରିବି କହି ।
ଭୀମ ଥିବ ସକାଶୁଁ ଜୀଇଲି ଏଥର
ନୋହିଲେ ଦେଖିଥାନ୍ତି ଯମରାଜ ଘର ।

ବନବାସଯାକ କର୍ଣ୍ଣଙ୍କୁ ଯେବେ ମୁହିଁ
ବର୍ଷ ଦିବସ ହୋଇ ନିଦ୍ରା ଯାଇ ନାହିଁ ।
ଶୋଇଥିଲେ ବା ବସିଥିଲେ କର୍ଣ୍ଣ ମୋତେ
ଦିଶୁଥାଏ ଏକା ଜାଣେ ହେ ମହାମତେ ।
ଯେଉଁ ଆଡ଼କୁ ଯାଏ ସେ ଆଡରେ କର୍ଣ୍ଣ
ରହଇ ମୋ ଆଗେ କୁଣ୍ଡଳ ଭର କର୍ଣ୍ଣ ।
କର୍ଣ୍ଣଙ୍କର ଧିକ୍କାର ବଚନକୁ ଶୁଣି
ଭୁଲୁଛି ଖାଇଥିଲେ କାର୍ଯ୍ୟ ନାହିଁ ପୁଣି ।
ଦ୍ରୋଣ ଭୀଷ୍ମ ପ୍ରଭୃତିକ ଦର୍ଣ୍ଣଙ୍କର ଯୁଦ୍ଧ
ବଳିବାରୁ ଭାଜିଲା ମୋର ରାଜ୍ୟସଧ ।
ତତ୍ତ୍ୱ କରିଣ ଏବେ କହ ମୋର ଆଗେ
କର୍ଣ୍ଣଙ୍କୁ ଆଜ ଯୁଦ୍ଧେ ମାଇଲେ କି ବାଗେ ।
ଶଚ ପରାଏ ବଳ ବଜ୍ର ସୂତଧ୍ୱଜ
ଶିଖିଥିଲେ ରାମଙ୍କଠାରୁ ସବୁ ଶସ୍ତ୍ର ।
ମହାରଥୀଙ୍କର ଅଟନ୍ତି ଶିରୋମଣି
କର୍ଣ୍ଣ ମୁଣ୍ଡ କିରୂପେ ପକାଇଲ ହାଣି ।
ଯେଉଁ କର୍ଣ୍ଣ ଯୁଝିଲେ ଦଣ୍ଡେକ ଘୋଟି
ରହନ୍ତି ବସ୍ତ୍ରାରଣ ଶରମୂନ ପାଟି ।
ସେ କର୍ଣ୍ଣଙ୍କୁ ଆଜ ମହୀରେ ଶୁଆଇଲ
ଆଜ ଏଥୁଁ କି ଅଛି ଲୋଡ଼ିବାକୁ ଭଲ ।
ତୁମ୍ଭଙ୍କୁ ଯୁଦ୍ଧଦାଣ୍ଡ ମାରିବାକୁ ଆଜ
ଦେଇଥିଲେ ଦ୍ୱିଜଙ୍କୁ ଧନ ରତ୍ନ ବାଜ ।
ଯେଉଁ କର୍ଣ୍ଣ, ତାଙ୍କୁ ଆଜ ସ୍ୱା କଲ ନାଶ
ଜାଣୁଛି ଏଣୁ ଆଜଦେଲ ମହାଦେଶ ।
ଅରଜୁନଙ୍କୁ ନ ମାଇଲେ ମୁଁ ଗୋଡ଼କୁ
ନ ଧୋଇବି ବୋଲିଣ କର୍ଣ୍ଣ ପ୍ରତିଜ୍ଞାକୁ ।
କରିଥିଲେ, ତାଙ୍କର କର୍ଣ୍ଣମୂଳ କେଉଁ
କର୍ଣ୍ଣିକାଣ୍ଡେ ଖୋଳିଲ କହତ ହେ ଭାଇ ।
କୃଷ୍ଣଙ୍କୁ ସଭାମଧ୍ୟେ ନିଷ୍ଠୁର ବଚନ
ବୋଲିଛି ଯେ କର୍ଣ୍ଣ କି ନେଲ ତା ଜୀବନ ।
କର୍ଣ୍ଣଙ୍କୁ ମାରି ମୋର ମାନସକୁ ତୋଷ
କରୁଛ ଅସିତିକ ସୁଭଦ୍ରା ପ୍ରାଣେଶ ।
କର୍ଣ୍ଣ ବାହାବଳକୁ ସୁଯୋଧନ ପାଇ
ବୋଇଲ ହେବି ମୁଁ ହସ୍ତିନା ନରସାଇଁ ।
କର୍ଣ୍ଣ ଆମ୍ଭମାନଙ୍କୁ କୁରୁସଭା ମଧ୍ୟେ
ଷଣ୍ଢକ ବୋଲିଣ ଗାଳିଦେଲେ କ୍ରୋଧେ ।
ସେ କଥା ମନେ ଯେବେ ତାର ମୁଖଖଣ୍ଡ
କାଟି ଫିଙ୍ଗିଦେଲେ ଠିକ ହେ ରଣଦାଣ୍ଡ ।
ବୃତ୍ରକୁ ଇନ୍ଦ୍ର ହତ କଲା ପରି ତୁମ୍ଭେ
କର୍ଣ୍ଣଙ୍କୁ ରଣେ ହତକଲ ଠିକ ଦମ୍ଭେ ।
ମୁଁ ପୁଚ୍ଛିଲେ ମୋତେ ତ କର୍ଣ୍ଣ ମରିବାର
କହୁନାହଁ କିଆଁ ଗାଣ୍ଡୀବ ଧନୁର୍ଦ୍ଧର ।

—※—

## ଅର୍ଜ୍ଜୁନଙ୍କର ଯୁଦ୍ଧ ବୃତ୍ତାନ୍ତ ବର୍ଣ୍ଣନ

ଅରଜୁନ ବୋଇଲେ ସଂଶପ୍ତକ କୁଳେ
ଯୁଦ୍ଧ କରୁଥିଲେ ରାଜନ ମୁହିଁ ଭଲେ ।
ଏକାଳେ ଆଶୀବିଷ ସମ ବିନ୍ଧ ଶର
ଧାଇଗଲେ ମୋ ପାଶେ ଦ୍ରୋଣଙ୍କ କୁମର ।
କହତସୈନ୍ୟ ତାଙ୍କ ପଛରେ ଗୋଡ଼ାଇ—
ଥିଲେ କରିବାକୁ ସେ ମୋ ସଙ୍ଗେ ଲଢ଼ାଇ ।
ତହିଁରୁ ପଞ୍ଚଶ ରଥୀଙ୍କ ପ୍ରାଣ ନେଇ
ଅଶ୍ୱତ୍ଥାମାକୁ ବିନ୍ଧିଲି ମୁଁ ଶର ଯାଇ ।
ସିଂହଠାକୁ ମାତଙ୍ଗ ଆସିଲା ପରାୟେ
ଆସିଲେ ଅଶ୍ୱତ୍ଥାମା ମୋହଠାକୁ ବ୍ୟେ ।
କୃଷ୍ଣଙ୍କୁ ବିଷଅଗ୍ନି ପରାୟେ ମାର୍ଗଣ
ବିନ୍ଧିଲେ ଅଶ୍ୱତ୍ଥାମା ଟାଣି ଧନୁର୍ଗୁଣ ।
ଆଠଟି ଶଗଡ଼ରେ ଆଣିଥିବା କାଣ୍ଡ—
ଯାକ ବିନ୍ଧି ଗୁଡ଼ାଇଦେଲେ ସେ ମୋର ପିଣ୍ଡ ।
ମୁଁ ତାହା ଦେଖିକରି ନୟନେ ନ ଡରି
ନାଶିଲି କାଣ୍ଡମାନ ଗାଣ୍ଡୀବ ଉଭାରି ।
ବରଷାକାଳ ମେଘପରି ଶରଧାରା
ସରଜିଲେ ଦ୍ରୋଣନନ୍ଦନ ହୋଇ ଉଗ୍ର ।
ବାମ ଦକ୍ଷିଣରେ ଧରିଣ ଧନୁବର
ଅଶ୍ୱତ୍ଥାମା ବିନ୍ଧିଲେ ଶାୟକ ଅପାର ।
କେତେବେଳେ ସନ୍ଧି ବିନ୍ଧିଲେ କେତେବେଳେ
ଜାଣି ନ ପାରିଲୁଁ ତା ଦେଖିଲେହେଁ ଡୋଳେ
ସବୁବେଳେ ମଣ୍ଡଳାକାର ହୋଇ ଧନୁ
ଦ୍ରୌଣିଙ୍କର ଦିଶିଲା ଜାଣ ଧର୍ମସୂନୁ ।
କୃଷ୍ଣକୁ ମୋତେ ବିନ୍ଧିଲେ ଦଶକାଣ୍ଡ
ନସ ଘାଏ କର୍ମ କଲା ରାଜନ ମୋ ପିଣ୍ଡ ।
ବଜ୍ର ପରି ତରଣୀ କାଣ୍ଡ ମୁହିଁ ବିନ୍ଧି
ଦେଲି ଅଶ୍ୱତ୍ଥାମାଙ୍କ ଦେହଯାକ ଛିନ୍ଦି ।

ଏହି ସକାଶୁଁ ଅଶ୍ୱତ୍ଥାମା ପାଇ ପୀଡ଼ା
ବୁହାଇଲେ ରଥ ପଛକୁ ଛାଡ଼ି କ୍ରୀଡ଼ା ।
ଏହି ଛିଦ୍ରରେ କୁରୁସଇନକୁ କାଣ୍ଡ
ଛନ୍ଦି କାଟି ପକାଇଲି ମୁଁ ତାଙ୍କ ପିଣ୍ଡ ।
ପଞ୍ଚାଶ ରଥ ସେନ କର୍ଣ୍ଣ ସ୍କନ୍ଧ ହୋଇ
ଯୁଝିବାକୁ ଆସିଲେ ମୋ ପାଶକୁ ଧାଇଁ ।
ପାଞ୍ଚଶ ରଥୀଙ୍କର ସେନ ମୁଁ ପଶିଣ
ତୁମ୍ଭଙ୍କୁ ଦେଖିବାକୁ ଆସିଅଛି ଜାଣ ।
ଏକା ସେ କର୍ଣ୍ଣ ମାତ୍ର ଅଛି ସମ୍ପେ ଜୀଇ
ଏଣୁ ଗଲେ ତାହାକୁ ଦେଉଛି ବଢ଼ାଇ ।
ପାଞ୍ଚାଳମାନେ କର୍ଣ୍ଣ ସୈନ୍ୟୁଁ ପାଇ ଭୟ
ଥରାଉଛନ୍ତି ସମ୍ପେ ଯୁଦ୍ଧରେ ହୃଦୟ ।
ସାତଶ ମହାରଥୀ-ପ୍ରାଣକର୍ଣ୍ଣ ହର
ଆମ୍ଭର ସୈନ୍ୟ ସଂହରିଲେ ଧନୁ ଧରି ।
ତୁମ୍ଭଙ୍କୁ ଦେଖିବାକୁ ଲାଳସ ତ ଥିଲା
ଏଣୁ କଉ ତୁଳରେ ଯୁଦ୍ଧ ମୋ ନୋହିଲା !
ଆଜ ପରି କଉ ଅସ୍ତ୍ର ମୁହିଁ ନୟନେ
ଦେଖିବା ଥାଉ, ନ ଦେଖିଛି ଟି ସ୍ୱପନେ ।
କର୍ଣ୍ଣଙ୍କୁ ଜିଣିବାକୁ ଏ ତିନିଭୁବନ—
ମଧ୍ୟରେ ଯୋଦ୍ଧା ନାହିଁ ଜାଣ ହେ ରାଜନ ।
ଏବେ ଆସ ଦେଖିବ କର୍ଣ୍ଣ ତୁଲେ ଯାଇ
କରିବ ମୁହିଁ ମହାଦାରୁଣ ଲଢ଼ାଇ ।
ଯୁଧାମନ୍ୟୁ ଉତ୍ତମଉଜା ଧୃଷ୍ଟଦ୍ୟୁମ୍ନ
ସାତ୍ୟକ ମଧ ଥାନ୍ତୁ ମୋହ ସନ୍ନିଧାନ ।
ଏ ବାହାରେ ଯେ ପ୍ରଭଦ୍ରକମାନେ ସଙ୍ଗେ
ଥାଆନ୍ତୁ ମରିଲେ ବସିବେ ସୁଖେ ସ୍ୱର୍ଗେ ।
ଆଜ ଯେବେ କର୍ଣ୍ଣଙ୍କୁ ନ ମାରିବ ମୁହିଁ
ପ୍ରତିଜ୍ଞାଭଙ୍ଗ ଲୋକ ସ୍ଥାନ ପାଇବଇଁ ।
ଏବେ ତୁମ୍ଭେ ମୋର ଜୟକୁ ପ୍ରଶଂସା
କର ଛାଡ଼ି ମୁଖରୁ କର୍ଣ୍ଣର ପ୍ରଶଂସା ।
ସ୍ୱଗୁଣ ତୁଲେ ତାକୁ ମାର୍ଗଣଗଣରେ
ଦେଖିବ ଆଜ ସୁଖେ ଜିଣିବ ରଣରେ ।

—❋—

## କର୍ଣ୍ଣଙ୍କ ଜୀବିତଶୁଣି ଯୁଧିଷ୍ଠିରଙ୍କର ଅର୍ଜୁନଙ୍କୁ ଧିକ୍କାର

ଯୁଧିଷ୍ଠିର କର୍ଣ୍ଣଙ୍କ ଜୀଇବାର ଶୁଣି
କ୍ରୋଧ ହୋଇ କହିଲେ ହୋଇ ଝାଣିଚୁଣ୍ଡି ।
କର୍ଣ୍ଣଙ୍କୁ ମାରିବାକୁ ତୁମ୍ଭଠାରେ ବାଣ
ନାହିଁ ତୁଚ୍ଛା ଗୁଡ଼ାଏ ମୋତେ ନ ବଖାଣ ।
ଭୀମଙ୍କ ଅପେକ୍ଷା ବଳରେ ଊଣା ତୁମ୍ଭେ
ତୁମ୍ଭଙ୍କୁ ଆଉ ପାଖେ ନ ରଖିବୁଁ ଆମ୍ଭେ
କୁନ୍ତୀଙ୍କି କ୍ଲେଶ ଦେବାପାଇଁ ହେଲ ଜନ୍ମ
ନୋହିଲେ କିବା ଛାଡ଼ି ଆସନ୍ତ ସଂଗ୍ରାମ ।
ଦ୍ୱୈତବନେ ତୁମ୍ଭେ କର୍ଣ୍ଣଙ୍କୁ ମାରିବାକୁ
ଏକା ହୋଇଣ କରିଥିଲ ପ୍ରତିଜ୍ଞାକୁ ।
ଏବେ ସେ କଥା ମନୁ କରିଦେଇ ଦୂର
କହୁଛ ଗୃହୀକରି ଗୁଡ଼ାଏ ଉତ୍ତର ।
କର୍ଣ୍ଣଙ୍କୁ ନ ପାରିବ ବୋଲି ମୋତେ କହି
ପୂର୍ବରୁ ଥିଲେ ଯୁଝି ଆସନ୍ତି ମୁଁ ନାହିଁ ।
ଏବେ ଶତ୍ରୁ ମଧ୍ୟେ କରାଇ ଲୋକହସା
ବୋଲାଇବ କହେ ଅର୍ଜୁନ ମହାଯଶା ।
ଫଳାର୍ଥୀ ହୋଇ ମୁହିଁ ଯୁଦ୍ଧ କରୁଥିଲି ।
ଏବେ ତା ଜାଣିପାରି ମନୁଁ ଛାଡ଼ିଦେଲି
ଯାହା ତୁମ୍ଭ ବାହୁକୁ କରିଥିଲୁ ଆଶ
ବୁଝିଲେ ଏଥୁଁ ନାହିଁ ଆମ୍ଭ ବଡ଼ ଦୋଷ ।
ତୁମ୍ଭର ଜନ୍ମକାଳେ ଅଶରୀରୀ-ବାଣୀ
ଆମ୍ଭର ମାତା କୁନ୍ତୀଦେବୀ ଛନ୍ତି ଶୁଣି ।
ଏ ପୁତ୍ରଟି ତୁମ୍ଭର ଜିଣିବେ ଜଗତ
ଇନ୍ଦ୍ରପରି ପରାକ୍ରମରେ ହୋଇ ଖ୍ୟାତ ।
ଏ ବାହାର ଖାଣ୍ଡବ ବନକୁ ପୋଡ଼ିବେ
ଇନ୍ଦ୍ରାଦିଦେବତାଙ୍କର ଗରବ ଗଞ୍ଜିବେ ।
କେକୟ ମଦ୍ର କୁରୁଗଣେ ରଣେ ଜିଣି
ବୋଲାଇବେ ଏକା ମହୀରେ ବୀରମଣି ।
ସବୁ ବିଦ୍ୟାରେ ଏହୁ ହେବେ ପାରଙ୍ଗମ
ଜିଣି ପାରିବେ ଏ ଯୁଝିଲେ ସ୍ୱର୍ଗଧାମ ।
କାନ୍ତିରେ ଚନ୍ଦ୍ର, ମେରୁ ସ୍ଥୈର୍ଯ୍ୟେ, ଜବେ ବାତ
କ୍ଷମାରେ ମହୀ, ଶଉର୍ଯ୍ୟରେ ପୁରୁହୂତ ।

ବଳରେ ବଶିଷ୍ଠ ସୂର୍ଯ୍ୟ ତୁଲ୍ୟରେ ଧନଦ
ଲକ୍ଷ୍ମୀର ହୋଇ ହେବେ ଏ ତୁମ୍ଭ ଆନନ୍ଦ ।
ଏବେ ତ ସେ ଶୂନ୍ୟ ବଚନ ମିଥ୍ୟା ହୋଇ
ଗଲା ତୁମ୍ଭଠାରୁ ହେ ଅରଜୁନ ଭାଇ ।
କୃଷ୍ଣ ପରା ଲୋକେ ସାରଥି କରି ପାଇ
କପିଧ୍ୱଜ ରଥବରକୁ ଯେ ଆରୋହି ।
ଗାଣ୍ଡୀବ ଧନୁଟିକି ହାତେ ଧରିଥିଲ
କହ ତ କର୍ଣ୍ଣଠାରୁ କପାଇଁ ଆସିଲ ।
ତୁମ୍ଭେ ଯେବେ ସାରଥି ହୋଇଣ ଧନୁକୁ
ଦେଇଥାଆନ୍ତେ କୃଷ୍ଣ ମାରନ୍ତେ କର୍ଣ୍ଣଙ୍କୁ ।
ଏ ବାହାରେ ମୋର ଧୈର୍ଯ୍ୟରେ ବଳୀୟାର
ହୋଇ ତ ଅଛନ୍ତି ହେ ବହୁ ନରବର ।
ମନ ଯାହାଠାରେ ହେ ଯାଇଛୁ ତୁମ୍ଭର
ତାକୁ ନେଇ ଦିଅ ଗାଣ୍ଡୀବ ଧନୁବର ।
ପାଞ୍ଚମାସ ଗର୍ଭେ ଥାଇଣ ଗର୍ଭସ୍ରାବ
ହୋଇଥିଲେ ପାଇଥାଆନ୍ତି ସୁମହାଭବ ।
ଜନମ ହୋଇ ଆର କରେ ଧନୁ ଧରି
ଆଇଅଛ ଯାହା କର୍ଣ୍ଣଙ୍କୁ ଯୁଦ୍ଧେ ହାରି ।
ଏଥୁଁ ବଡ଼ ହୋଇ ହେବାକୁ ଅପମାନ
ଖୋଜିଲେ ଏ ମହୀରେ ନ ଦିଶେ ଅର୍ଜୁନ ।

—*—

## ଯୁଧିଷ୍ଠିରଙ୍କୁ ମାରିବା ପାଇଁ ଅର୍ଜୁନଙ୍କର ଖଡ୍ଗଧାରଣ

ଯୁଧିଷ୍ଠିର ମୁଖରୁ ଏ ବଚନ ଶୁଣି
ଧଇଲେ କରେ ଖଣ୍ଡା ପାର୍ଥ ଆରମଣି ।
ଶ୍ରୀକୃଷ୍ଣ ବୋଇଲେ ହେ ଅର୍ଜୁନ ନ କହ
ଖଣ୍ଡା କିମ୍ପା କରେ ବହିଲ କ୍ରୋଧ ବହି ।
ଭୀମ ତୁମ୍ଭ ଶତ୍ରୁମାନଙ୍କୁ କଲେ ହତ
ତୁମ୍ଭେ କିମ୍ପା ଏବେ ହେଉଛ ଖଡ଼ଗହସ୍ତ ।
ଯୁଧିଷ୍ଠିର ନୃପେ ଦେଖିବାପାଇଁ ଆସି
ଉଚିତ ନୁହେଁ ତୁମ୍ଭେ ହୋଇବାର ରୋଷୀ
ଯୁଧିଷ୍ଠିର ରାଜା ତ ଅଛନ୍ତି ଭଲ ହୋଇ
ଏହାଙ୍କୁ ଦେଖିଲେ ତ ଯାଅ ତୋଷ ବହି
ଏକା ଭୀମ ଯୁଦ୍ଧରେ କରୁଛନ୍ତି ରଣ
ତୁମ୍ଭେ ତାହାଙ୍କୁ ସାହା ହୁଅ ବନ୍ଧି ବାଣ ।

ତୁମ୍ଭର ଶତ୍ରୁ ହୋଇ ଏଠାରେ ତ କେହି
ଥିଲା ପରି ମୋହ ନେତ୍ରକୁ ଦିଶୁନାହିଁ ।
ଚିତ୍ତର ଭ୍ରମ ଅବା ହୋଇଲା ତୁମ୍ଭର
କହ ତ ମୋତେ ଆହେ ଇନ୍ଦ୍ର କୁମର ।
ଏହା ଶୁଣି ଅର୍ଜୁନ ଅତି କ୍ରୋଧ ହୋଇ
କହିଲେ ସର୍ପପରି ନିଃଶ୍ୱାସ ପକାଇ ।
ଗାଣ୍ଡୀବ ଧନୁ ଆନ ଲୋକେ ଦିଅ ବୋଲି
ଯେ ବୋଲିବ ତାକୁ ମୁଁ ମାରିବି ନ ଭଳି
ଏହିରୂପେ ବ୍ରତ ତ କରିଅଛୁ ମୁହିଁ
ଏଣୁ ଯୁଧିଷ୍ଠିରଙ୍କୁ ଖଡ଼ଗେ ହାଣିବଇଁ ।
ତୁମ୍ଭେ ତ ଶୁଣିଅଛ ଯୁଧିଷ୍ଠିରଙ୍କର
କହିବା ଉତ୍ତର ମୁଁ କହିବି କି ଗିର ।
ଯୁଧିଷ୍ଠିର ରାଜାଙ୍କୁ ନ ମାଇଲେ ମୁହିଁ
ପ୍ରତିଜ୍ଞାଭଗ୍ନ ହେବ ଜାଣ ଯଦୁସାଇଁ ।
ଏହି ସକାଶରୁ ଯେ ପ୍ରହାରି ଖଡ଼ଗ
ଯୁଧିଷ୍ଠିର ଅଙ୍ଗରେ ସାରିବି ମୋ ରାଗ ।
ଏ କାଳକୁ ଉଚିତ ହେବ ଯେଉଁ କଥା
କହ ମୋର ଆଗେ ହେ କୃଷ୍ଣ ମହାରଥା ।
ତୁମ୍ଭେ ତ ଜଗତରେ ଧର୍ମାଧର୍ମ ଜାଣ
ଏଥିକି ଚାହିଁ କରି ବଚନ ବଖାଣ ।

—*—

## କୃଷ୍ଣଙ୍କର ଅର୍ଜୁନଙ୍କୁ ନିବର୍ତ୍ତିବା ପାଇଁ ଉପଦେଶ

ଶ୍ରୀକୃଷ୍ଣ ବୋଇଲେ ହେ କି କହୁଛ ତୁମ୍ଭେ
କି କଥାଟାଏଟି ଶୁଣିଲୁ କାନେ ଆମ୍ଭେ ।
ବୃଦ୍ଧଙ୍କୁ ତ ତୁମ୍ଭେ ହେ ସେବା ନାହିଁ କରି
ଏଣୁ କହୁଅଛ ଏ ବଚନ ଉଚ୍ଚାରି ।
ଅକାଳରେ କ୍ରୋଧ ହୋଇଲେ ଅରଜୁନ
ଏ ସକାଶୁଁ ବୋଲୁଛି ଧର୍ମ କି ନ ଜାଣ ।
ଅପଣ୍ଡିତ ହେବାରୁ ଅକାର୍ଯ୍ୟକୁ କାର୍ଯ୍ୟ
କରି ମଣୁଅଛ ହେ ଛାଡ଼ିଦେଇ ଲାଜ ।
ଲୁଚ୍ଛା ବସି ଘରେ ପ୍ରାଣୀଙ୍କି ନାଶ କଲେ
ସବୁ ଧର୍ମ ନାଶ ଯାଏଟି ତହିଁ ଭଲେ ।
ପ୍ରାଣୀଙ୍କଠାରେ କରଇ ଯେହୁ ଦୟା
ତାହାକୁ ବାଧି ନ ପାରଇ ଯୋଗମାୟା ।

ଅନୃତକୁ ପ୍ରଭୃତି ପ୍ରାଣୀ ହିଂସା ବଡ଼
ଏହା ଜାଣ ତା ଶୁଣି ବଥାଉଛୁ ହାଡ଼ ।
ଜାଣିବାପଣେ ଅଗ୍ରଗାରେ ଲେଖା ହୋଇ
ନ ଜାଣିବା କଥା ତ ଆଣୁଛ ଗୁଣ୍ଡାଇ ।
ବାଳକ ସମୟରେ କରିଛ ଏ ବ୍ରତ
ନୋହିଲେ କମ୍ପା ଆଚରନ୍ତ ଅନୁଚିତ ।
ଗୁରୁଙ୍କୁ ମାରିକରି ପାଇବ କି ପୂଜା
ନ ଜାଣିବାରୁ ଧର୍ମ ପ୍ରବର୍ତ୍ତିଛୁ ମଜ୍ଜା ।
ବିଦୁର ଭୀମ କୁନ୍ତୀ ଦେବୀ ଯୁଧିଷ୍ଠିର
ପୂର୍ବେ ଅବା ତୁମ୍ଭଙ୍କୁ କହିଥିବେ ସାର ।
ନ ଥିଲେ କହି ଏବେ କହୁଛି ତୁମ୍ଭଙ୍କୁ
ଯେଉଁ କଥା ତା ଶୁଣ ଦେଇଣ ମନକୁ ।
ସତ୍ୟୁଁ ବଡ଼ ହୋଇ ଜଗତେ କଥା ନାହିଁ
ସତ୍ୟ ଜାଣିବା ପାଇଁ କେହି ନ ଦିଶଇ ।
ସତ୍ୟୁଁ କେତେବେଳେ ଯେ ହୋଉଛି ଅହିତ
ଅସତ୍ୟ କେତେବେଳେ ହୋଉଛି ହିତ ।
ଯେବେ ଅର୍ଜ୍ଜୁନ ତା ତୁମ୍ଭଙ୍କୁ ଜଣା ନାହିଁ
ତେବେ ତାହା ତୁମ୍ଭଙ୍କୁ କହିବା ବତାଇ ।
ବିବାହ ପ୍ରାଣଯିବାକାଳେ ମିଥ୍ୟାବାଣୀ
ଦୋଷ ନୁହେଁ ବୋଲନ୍ତି ଯେ ପଣ୍ଡିତମଣି ।
ପୁଣି ରଣକାଳେ କହିବା ଗୁଠୁକଥା
ସତ୍ୟଭଗ୍ନ ନୁହେଁ ହୁଅଇ ଯେବେ ମିଥ୍ୟା ।
ସବୁ ଧନ ଯେ ଅପହାର ହେଉଥିଲେ
ମିଥ୍ୟା କହି ତାହା ରଖିବ ଜାଣ ଭଲେ ।
ବ୍ରାହ୍ମଣ ପାଇଁ ମିଥ୍ୟା କହେ ଯେଉଁ ନର
ସବୁ ଧର୍ମଲକ୍ଷଣ ଫଳ ହୋଏ ତାର ।
ବୁଦ୍ଧିମନ୍ତ ଲୋକେ ଦାରୁଣ ପଣ କଲେ
ଧର୍ମ ତ କୁ ଜଗିଥାଏଟି ଜାଣ ଭଲେ ।
ଯେଉଁରୂପେ ବଳାକ ଅନ୍ଧକ ମହାର
ଧର୍ମ ଅରଜିଲ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ସେହିରୂପେ ଏ କଥା ଅଟଇ ପ୍ରମାଣ
ମୋ କହିବାରୁ ଏହା ଅରଜୁନ ଜାଣ ।
ମୂଢ଼ଲୋକ ଧରମକାମୀ ଯେବେ ହୁଏ
କୌଶିକ ଦ୍ୱିଜ ପରି ପାପକୁ ସେ ପାଏ ।
ଅର୍ଜ୍ଜୁନ ବୋଇଲେ ବଳାକ କଉଶିକ
ଅଛି କଥା କହ ତ ଯଦୂଙ୍କ ନାୟକ ।

ଶ୍ରୀକୃଷ୍ଣ ବୋଇଲେ ବଳାକ ନାମେ ବ୍ୟାଧ
ଜଣେ ଥିଲା ପୂର୍ବେ ସେ କରେ ମୃଗ ବଧ ।
ମୃଗମାଂସ ବିକି ପୋଷଇ ମାତା ପିତା
ସର୍ବଦା ଥାଏ ମୃଗମାନଙ୍କ ବାରତା ।
ଏରୂପେ କେତେଦିନ ଅନ୍ତରେ ବଳାକ
ନ ପାଇ ମାରି ମୃଗ କରୁଥିଲା ଶୋକ ।
ଏହିକାଳେ ଯେ ଅନ୍ଧ ବାଘଟାଏ ଆସି
ପିଇଲା ପାଣି ଘାଟେ ପାଣି ହୋଇ ଶୋଷୀ ।
ବ୍ୟାଧ ତା ପାଣି ପିଇବାର ଶବଦକୁ
ବାଣ କରି ବିନ୍ଧିଲା କାଣ୍ଡେ ତା ଦେହକୁ ।
ସେହି ଘାତେ ବାଘ ଗୁଳ୍ପନ୍ତ ପଡ଼ିଣ
ତାର ପିଣ୍ଡୁଟି ହୋଇଗଲା ଅକାରଣ ।
ଅନ୍ଧ ବାଘ ମରଣ ଦେଖି ଦେବତାଏ
ପୁଷ୍ପବୃଷ୍ଟି କରିଲେ ବଳାକାର କାୟେ ।
ଏ ବାହାରେ ସ୍ୱର୍ଗରୁ ବିମାନ ଅଣାଇ
ବଳାକାକୁ ଘେନିଣ ବସିଲେ ହେ ଯାଇ ।
ବାଘ ତ ପାଇଥିଲା ତପକରି ବର
କରିବା ପାଇଁ ସବୁ ଜନ୍ତୁଙ୍କୁ ଆହାର ।
ବଳାକ ତାହାକୁ ତ ମାଇଲା ଆଗୁତେ
ଏଣୁ ଜାଣ ନେଲେ ଦେବେଟି ସ୍ୱର୍ଗଭାଗେ ।
ଏହି ସକାଶକୁ ଧର୍ମର ସୂକ୍ଷ୍ମ ଗତି
ନ ଜାଣଇ ଅର୍ଜ୍ଜୁନ ଜାଣ କାହା ମତି ।
ଏବେ ଯେ କହୁଥାଇ କଉଶିକ କଥା
ଶୁଣ ପାର୍ଥ ମହାରଥଙ୍କ ମହାରଥୀ ।
କଉଶିକ ବ୍ରାହ୍ମଣ ନଦୀଟିକି ପାଖେ
ଥାଇଣ ନିତ୍ୟ ସତ୍ୟ କହୁଥିଲେ ମୁଖେ ।
ଖଣ୍ଟି ଭୟେ କେଉଁ ଦେଶର ଲୋକ ଯାଇ
କୌଶିକ ଥିବା ସ୍ଥାନେ ବନେ ଥିଲେ ରହି ।
ଖଣ୍ଟିମାନେ ସେ ଲୋକଙ୍କୁ ଯେ ଖୋଜୁଥିଲେ
ଦଇବେ କଉଶିକ ଦ୍ୱିଜଙ୍କୁ ଦେଖିଲେ ।
ବୋଇଲେ ଏ ବାଟେ କି ଗଲେ ଲୋକଶ୍ରେଣୀ
ଦେଖିଥିଲେ ତାହା କହ ହେ ଦ୍ୱିଜମଣି ।
କଉଶିକ ତ ସତ୍ୟବ୍ରତ କରିଥିଲେ
ଏଣୁ ସେ ଲୋକେ ଥିବା ସ୍ଥାନ କହିଦେଲେ ।
ଖଣ୍ଟେ ତାହା ଶୁଣି ହୋଇଣ ମହାତୋଷ
କଲେ ସେ ବନେ ଥିବା ଲୋକଙ୍କୁ ବିନାଶ ।

ଯେହ୍ନୁ ଅଧର୍ମରୁ ଯେ କଉଶିକ ଯତି
ଆଜଯାଏ ପାର୍ଥ ନରକେ ପଡ଼ିଛନ୍ତି ।
ଧରମ ସୂକ୍ଷ୍ମ ଜାଣିବାର ବଡ଼ କଷ୍ଟ
ଉତ୍ତମଲୋକ ବୁଦ୍ଧି ହେଉଛି ତ ଭ୍ରଷ୍ଟ ।
ଅହିଂସା କର୍ମ ଧର୍ମ ଏକା ହେ ଅଟଇ
ତହିଁରେ ବାଛିବାକୁ କଥା କିଛି ନାହିଁ ।
ଧରିବାରୁ ପ୍ରଜାଙ୍କୁ ବୋଲାଉଛି ଧର୍ମ
ଧର୍ମରୁ ବଳିକରି ନାହିଁ ଆଉ ଧର୍ମ ।
ଏହିକଥା ମୋହର ମନେକରି ବୀର
ଯୁଧିଷ୍ଠିରଙ୍କଠାରୁ ରାଗ କର ଦୂର ।

—❋—

## ଖଡ୍‌ଗ ତ୍ୟାଗ ପୂର୍ବକ ଭ୍ରାତୃଚରଣରେ ଅର୍ଜୁନଙ୍କର ଶରଣ ଭିକ୍ଷା

ଅର୍ଜୁନ ବୋଇଲେ ତୁମ୍ଭେ ମୋ ମାତା ପିତା
ତୁମ୍ଭେ ଏକା ମୋହର କୁଳର ଦେବତା ।
ତୁମ୍ଭେ ଯାହା ବୋଲିବ କରିବି ତା ମୁହିଁ
ତୁମ୍ଭ ବୋଲୁ ବାହାର ହୋଇ କଥା ନାହିଁ ।
ତିନିଲୋକ ଧର୍ମ ତ ଗୋଚର ତୁମ୍ଭଙ୍କୁ
କି କରିବି ଏବେ ମୁଁ କହ ତ ଆମ୍ଭଙ୍କୁ ।
ଜାଣିଅଛ ତ ତୁମ୍ଭେ ପ୍ରତିଜ୍ଞା କେଶବ
ଗାଣ୍ଡୀବକୁ ଆନକୁ ଦିଅ ଯେ ବୋଲିବ ।
ତାକୁ ସଂହାରିବି ସନ୍ଦେହ ଏଥି ନାହିଁ
ଯୁଧିଷ୍ଠିର ତା ତ ବୋଇଲେ ଯଦୁସାଇଁ ।
ତହିଁକି ସିନା ହେଉଛି ମୁଁ ସନ୍ତାପିତ
ଏଥିକି କୃଷ୍ଣ ଦିଅ ଯେ ଧରମ ମନ୍ତ୍ର ।
ଭୀମ ମଧ ମୋପରି ପଣ କରିଛନ୍ତି
ଯେ ବୋଲିବ ମାଖୂନା ପେଷିବ ଯମକତି ।
ଯୁଧିଷ୍ଠିରରାଜାଙ୍କୁ ମାଇଲେ ମୁଁ ମହୀ
ଲୋକରେ କେତେକାଳ ରହିବଟି ଜୀଇ ।
ଯୁଧିଷ୍ଠିର ରାଜାଙ୍କ ଜୀବନ ମୋ ସତ୍ୟ
ଯେଉଁରୂପେ ରହିବ ସେରୂପେ କହ ତ ।
ଶ୍ରୀକୃଷ୍ଣ ବୋଇଲେ ଯେ ମାନସାପାଷକୁ
ଅପମାନ କଲେ ମାରିବା ପରି ତାକୁ ।
ତୁ ତା କରି ତାହାଙ୍କୁ ବୋଲ ତୁମ୍ଭେ ବାଣୀ
ମଲାପରି ହୋଇବେ ପାଣ୍ଡବ ନୃମଣି ।

ପଛେ ତୁମ୍ଭେ ଗୋଡ଼ ଧରିଣ ତାହାଙ୍କର
ସମାଧାନ କରିବ ଅରଜୁନ ବୀର ।
ଯୁଧିଷ୍ଠିରରାଜାଙ୍କୁ ହୋଧୁ ମୁକ୍ତ ହୋଇ
କର୍ଣ୍ଣଠାରେ ରାଗ ସାରିବ ବେଗେ ଯାଇ ।
ଏହା ଶୁଣିକରି ଅର୍ଜୁନ ମହାଯଶା
କରି ଯଦୁକୁଳନାଥଙ୍କୁ ପରଶଂସା ।
ଯୁଧିଷ୍ଠିର ରାଜାଙ୍କୁ ବୋଇଲେ ତୁ ବାଇ
ହୋଇଣ ଏହା ଆଜ କହୁଛୁ କି ଭାଇ ।
ଯୁଦ୍ଧୁଁ ତ ପଳାଇ ଆସିଲୁ କୋଣେ ଯାଏ
ତୁଚ୍ଛା ବୋଲଉଛୁ ପାଣ୍ଡବକୁଳ ରାଏ ।
ଭୀମ ପରି ତୁହି ନୋହୁ ସାମରଥ
ବ୍ୟର୍ଥେ ଦାଣ୍ଡେ ବୋଲାଉ ଆଉ ମହାରଥ ।
କମ୍ବୋଜ ପାର୍ବତୀୟ ନିଷାଦ କଳିଙ୍ଗ
ବର୍ଣ୍ଣାନ୍ତ ଶିବି ଶକ ଯବନ ଅଙ୍ଗ ବଙ୍ଗ ।
ଏହିମାନଙ୍କୁ ଚତୁରଙ୍ଗ ତୁଲେ ଏକା
ଭୀମସେନ ମାଇଲେ ଯୁଦ୍ଧେ ଗୁଡ଼ ଦକା ।
ତୁ ତ ଏହିପରି କଥାଏ କରିନାହୁ
ବୀର ହୋଇଟି ତୁଚ୍ଛା ମୋଡ଼ୁଥାଉ ବାହୁ ।
ଭୀମସେନ ବୋଲେ ସମରରେ ପାରିବା
ନ ପାରିବା କଥାକୁ ବୋଲନ୍ତି ଅବା ।
ନ ପାରି ତୁ ବଚନ ଖଣ୍ଡାରେ ମୋ ପିଣ୍ଡ
କାଟୁଛୁ କହ ତ ଏ ଅଟେ କେଉଁ ଖଣ୍ଡ ।
କ୍ଷତ୍ରିୟ ହୋଇ ଦ୍ୱିଜ ପ୍ରାୟେ ତୁଣ୍ଡବଳ
କରି ତୁ ବୋଲାଉଛୁ ଆମ୍ଭ ମହୀପାଳ ।
ତୋ ପାଇଁ ମୁଁ ଯୋଡ଼ାଏ ପୁଅକୁ ମରାଇ
ଯୁଝୁଅଛି ମୁଁ ମଧ ମରିବାର ପାଇଁ ।
ଏ ଗୁଣକୁ ମୋର ପକାଇ ପୃଷ୍ଠଦେଶେ
ମୋତେ ବୋଲୁଅଛୁ ବସି ତୁ କଥା ରୋଷେ
ଏବେ ଦେଖୁଥିବ ତୋ ପାଇଁ ମହାରଥୀ
କୁଳକୁ ଯୁଦ୍ଧଦାଣ୍ଡେ କରିବି ମୁଁ ବ୍ୟର୍ଥୀ ।
ଭୀଷ୍ମ ପରି ଲୋକକୁ ତୋ ପାଇଁ ମୁଁ ବାଣେ
ମାଇଲି ଶିଖଣ୍ଡୀକି ଦେଖାକରି ରଣେ ।
ତୁ ରାଜ୍ୟରେ ରାଜା ହୋଇଲେ ଅମର୍ଯ୍ୟାଦା
ଅର୍ଜି ଜନ ବନା କରିବୁ ରାଜ୍ୟ ପଦା ।
ତୋହ ବୁଦ୍ଧିରେ ପଡ଼ି କରି ଜ୍ଞାତିକୁଳ
କରୁଅଛୁ ତ ଆମ୍ଭେ ଯୁଦ୍ଧରେ ନିର୍ମୂଳ ।

ସହଦେବ ଅକ୍ଷ ଦୋଷକୁ କରୁଥିଲେ
ତେବେ ହେଲେ ଅକ୍ଷ ଖେଳିଲୁ ତୁମ୍ଭେ ଭଲେ
ତେଣୁ ସକାଶୁଁ ବାରବରଷ ଦୁଃଖ ପାଇ
ବନେ ଆମ୍ଭେ ବୁଲିଲୁ ଅନାଥଟି ହୋଇ ।
ତୋହର ପାଇଁ ଗୁରୁ ବିରାଟ ରାଜାଙ୍କୁ
ବାଇଲୁ ଅକାରଣେ ବନ୍ଧଣ ତାଙ୍କୁ ।
ଏ ରୂପେ ଅରଜୁନ ଯୁଧିଷ୍ଠିର ଆଗେ
ଗାଳି ଦେଇ ଖଡ୍ଗ କାଢ଼ିଲେ ସେ ବେଗେ
ଭାବିଲେ ଯୁଧିଷ୍ଠି ରାଜାଙ୍କୁ ଗାଳି ଦେଇ
ଜୀଇବାର ଆଉ ମୋହରେ କାର୍ଯ୍ୟ ନାହିଁ ।
କୃଷ୍ଣ ବୋଇଲେ ହେ ଖାପରୁ ଅରଜୁନ
କାହିଁ ପାଇଁ ଖଣ୍ଡାକୁ କାଢ଼ିଲ ବଦନ ।
ଏହା ଶୁଣିବାକୁ ଇଚ୍ଛା ମୋ ହେଉଅଛି
କହ ନିଃସନ୍ଦେହ କରି ହେ କୁନ୍ତୀବନ୍ଧି ।
ଅର୍ଜୁନ ବୋଇଲେ ତ ଯୁଧିଷ୍ଠିରଙ୍କର
ଅପ୍ରିୟ କଲିଣି ମରିବ ଯଦୁବୀର ।
ଶ୍ରୀକୃଷ୍ଣ ବୋଇଲେ ହେ ଦେଲନି ତ ଗାଳି
ରାଜାଙ୍କୁ ଆଉ କମ୍ପା ବସିଅଛ ଭାଳି ।
ସାଧୁଲୋକେ ଏ କଥା ଅଟଇ ଗରହିତ
ସୁଇଚ୍ଛାରେ ହରାଇବାର ଜୀବନ ତ ।
ଆଜ ଯୁଧିଷ୍ଠିରଙ୍କୁ ହାଣିଥିଲେ ତୁମ୍ଭେ
କି କରନ୍ତ କହ ତ ପଚାରୁଛୁଁ ଆମ୍ଭେ ।
ଆପଣେ ଯେ ଲୋଡ଼ୁଛ ଇଚ୍ଛାରେ ମୃତ୍ୟୁକୁ
ଏଥି ଦୋଷେ ପାଇବ ଯାଇ ନରକକୁ ।
ଆପଣାର ଗୁଣକୁ କହି ହତଆତ୍ମା
ହୁଅ ଏବେ ହେ ଅରଜୁନ ମହାଆତ୍ମା ।
ଏହା ଶୁଣି ଅର୍ଜୁନ ଯୁଧିଷ୍ଠିର ଆଗେ
କହିଲେ ନିଜଗୁଣମାନଙ୍କୁ ସରାଗେ ।
ମୋପରି ଧନୁର୍ଦ୍ଧର ଏକା ଉମାକାନ୍ତ
ମୁଁ ମନ କଲେ ଜିଣିପାରେ ତ୍ରିଜଗତ ।
ମୋ ବଳରେ ସବୁ ରାଜାଙ୍କୁ ବଶ କରି
ରାଜସୂୟ କରି ପାଇଲ ଯଶ ଶିରୀ ।
ମୁହିଁ ଟି ମର୍ତ୍ତ୍ୟଠାରୁ ଚିଆଇଲି ସଭା
ତହିଁଟି ବସିଥାଅ ହୋଇ ତୁମ୍ଭେ ଶୋଭା ।
ଧନୁଶରକୁ ଧରିଥିଲେ ମୋର ବାହୁ
ଜାଣ ସୁରଚନ୍ଦ୍ରମାକୁଳକୁ ସେ ରାହୁ ।

ଏବେ ସଂଶପ୍ତକମାନଙ୍କୁ ନୃପ ତୁଳେ
ମାଇଲି ମୁଁ ମହାଭାରତ ଯୁଦ୍ଧେ ଭଲେ ।
ଦେବବରମ୍ଭ ପରାଏ ସୁଯୋଧନ ସୈନ୍ୟ
ସେ ମୋର କାଣ୍ଡମୁନେ କଲେ ମହାପ୍ରାଣ ।
ତ୍ରିଜଗତ ସାରି ହୋଇଲେ ଏକ ଗୋଟି
ନାଶି ପାରଇ ମୋ ଗାଣ୍ଡୀବ ସାୟକୁଟି ।
ଏଅନ୍ତେ କୃଷ୍ଣଙ୍କୁ ବୋଇଲେ ଆସ ଆସ
ରଥ ଛାଡ଼ି ଏବେ କରିବା କର୍ଣ୍ଣ ନାଶ ।
ସତ୍ୟ କରି ତ ଏବେ କହୁଅଛି ମୁହିଁ
କର୍ଣ୍ଣ ନ ମାଇଲେ କବଚ ଫେଇ ନାହିଁ ।
ପୁଣି ଯୁଧିଷ୍ଠିରଙ୍କୁ ବୋଇଲେ ଅର୍ଜୁନ
ଆଜ କର୍ଣ୍ଣାର୍ଜୁନରୁ ଜଣେ ହେବ ଆନ ।
ଏଥୁଅନ୍ତେ ଧନୁ ଖଣ୍ଡାକୁ ତଳେ ଥୋଇ
ପଡ଼ିଲେ ଯୁଧିଷ୍ଠିର ପାଦତଳେ ଶୋଇ ।
ଉଠିଣ କର ବେନି ଯୋଡ଼ି ଅରଜୁନ
ବୋଇଲେ ଆହେ ନୃପ ହୁଅ ପରସନ୍ନ ।
ଏବେ ମୁଁ ଯାଉଛି ଯୁଦ୍ଧକୁ କ୍ରୋଧ ହୋଇ
ସାମେ ସାହା ହୋଇ କର୍ଣ୍ଣକୁ ମାରିବଇଁ ।
ତୁମ୍ଭ ପ୍ରିୟପାଇଁ ରଖିଛି ମୋ ଜୀବନ
ନୋହିଲେ ତହିଁରେ ମୋ ନାହିଁ ପ୍ରୟୋଜନ ।
ଯୁଧିଷ୍ଠିର ରାଜା ଅର୍ଜୁନ ବାଣୀ ଶୁଣି
ଶୟନାସନ ଛାଡ଼ି କହିଲେଟି ପୁଣି ।
ଆହେ ଅରଜୁନ ମୁଁ କୁଳର ଅନ୍ତକ
ପାପକାରୀ ଦୁର୍ବୁଦ୍ଧି ମୋହ ବୁଦ୍ଧି ଯାକ ।
ଏ ସକାଶୁଁ ମୋହର ମୁଣ୍ଡଟିକି କାଟି
କହୁଅଛି ଏବେ ହେ ପକାଅ କଷାଟି ।
ନୋହିଲେ ମୁଁ ଯାଉଛି ବନକୁ ବାହାରି
କରି ହସ୍ତିନାରେ ଭୀମକୁ ଦଣ୍ଡଧାରୀ ।
ତୁମ୍ଭେ ଯେଉଁ ନିଷ୍ଠୁର ବଚନ ବୋଇଲ
ମୋହ ପ୍ରାଣକୁ ସେ କରୁଛି କଲବଲ ।
ଏରୂପେ କହି ଯୁଧିଷ୍ଠିର ରାଜା ଉଠି
ବାହାରିଲେ ବନକୁ ପାର୍ଥେ କରି ପିଠି ।
ଶ୍ରୀକୃଷ୍ଣ ବୋଇଲେ ହେ ଶୁଣ ଯୁଧିଷ୍ଠିର
ପ୍ରତିଜ୍ଞା ଅଛିର କି ଜାଣନ୍ତା ପାର୍ଥର ।
ଗାଣ୍ଡୀବ ଏହାଙ୍କୁ ଆନକୁ ଦିଅ ବୋଲି
ଯେ ବୋଲିବ ତାକୁ ଏ ମାରିବେ ନ ଭାଳି

ତୁମ୍ଭେ ତ ସେହିକଥା ବୋଇଲ ରାଜନ
ଏଣୁ ଏତେ କଥାକୁ ନୋହିଲ ଭାଜନ ।
ପ୍ରତିଜ୍ଞା ରଖିବାକୁ ଦେଲେ ପାର୍ଥ ଗାଳି
ଏଥିକି କିମ୍ପା ଶାସ୍ତ୍ରେ ବସିଅଛ ଭାଳି ।
ଗୁରୁଙ୍କୁ ତାଳି ଦେଲେ ମାରିବା ସେ ଶାସ୍ତ୍ରେ
କହିଅଛନ୍ତି ଏହା ସମସ୍ତ ଋଷି ଏ ।
ଏକଥା ଜାଣି ସିନା ଶିକ୍ଷା ତାଙ୍କୁ ଦେଲି
ତାଙ୍କ ତୁଣ୍ଡେ ନୃବର ତୁମ୍ଭଙ୍କୁ ବୋଇଲି ।
ଏବେ ତୁମ୍ଭ ପାଦେ କରୁଛି ନମସ୍କାର
ହେବ ଆମ୍ଭ ଦୁହିଁଙ୍କ ସବନସ୍ତ ଗିର ।
କର୍ଣ୍ଣଙ୍କ ରକତ ଖାଇବ ଆଜ ମହୀ
ତା ଦେଖି ଦୁଃଖୀ ହେବ ସୁଯୋଧନ ଭାଇ ।
ଭୀମ ସୁଯୋଧନକୁ କରିବେ ବିନାଶ
ତୁମ୍ଭେ ହେବ ହସ୍ତିନାମହୀରେ ନରେଶ ।
ଏହା ଶୁଣିଣ ଯୁଧିଷ୍ଠିର ରାଜା ରହି
ବୋଇଲେ ଶୁଣ ହେ ରୁକ୍ମଣୀ ପ୍ରାଣସାଇଁ ।
ଆପଣ ଯା କହିଲ ମାନିଲି ମୁଁ ତାହା
ଏବେ ମୁଁ ଯା କହୁଛି ଶୁଣ ଚକ୍ରବାହା ।
ଅର୍ଜୁନ ମୋ ହୃଦ ଗିରିରେ ଜ୍ଞାନ ଚନ୍ଦ୍ର
ଉଦୟ କରି କଲ ତାଙ୍କ ଆମ୍ଭ ଭଦ୍ର ।
ନୋହିଲେ ଏକ୍ଷଣି ମରନ୍ତୁ ଦୁଇଭାଇ
ଏଥିରେ ହେ କୃଷ୍ଣ ସନ୍ଦେହ କିଛି ନାହିଁ ।
କୃଷ୍ଣ ବୋଇଲେ ହେ ଅର୍ଜୁନ ଯୁଧିଷ୍ଠିର
ପ୍ରସନ୍ନ କରାଇଣ ଚଢ଼ ରଥବର ।
କର୍ଣ୍ଣଙ୍କୁ ରଣେ ଜିଣି ଜୟଶିରୀ ବହି
ଦାକ୍ଷେ କର ଯୁଧିଷ୍ଠିରଙ୍କୁ ନରସାଇଁ ।
ଏହି କଥା ଏବା ଅର୍ଜ୍ଜୁନ ମୋର ମତ
ହୋଇଅଛି ତହିଁରେ କାଳ ପରାପତ ।
ଅର୍ଜ୍ଜୁନ କୃଷ୍ଣଙ୍କ ବଚନେ ଲଜ ପାଇ
ପଡ଼ିଲେ ଯୁଧିଷ୍ଠିର ପାଦଦେଶେ ଯାଇ ।
ବୋଇଲେ ହେ ନୃପ ମୋ ଦୋଷ କ୍ଷମାକର
ନୋହିଲେ ଯାଇବାର କଷ୍ଟ ହେବ ମୋର ।
ଯୁଧିଷ୍ଠିରରାଜା ପୋଛାଇ ଅର୍ଜ୍ଜୁନଙ୍କୁ
ପାଡ଼ିଲେ ତାଙ୍କ ମୁଖ ନୟନୁଁ ଜଳକୁ ।
ଏହିରୂପେ ବହୁତ କାଳଯାଏ ଦୁଇ—
ଭାଇ ହିକା ପାଡ଼ିଲେ ହୃଦେ ସ୍ନେହ ବହି ।
ପୁଣି ଧୈର୍ଯ୍ୟ ଧରି ସେ ଶୋକକୁ ଛାଡ଼ିଲେ
ଆଚମନ କରି ଦେହକୁ ଶୁଦ୍ଧ କଲେ ।
ଏଥିଅନ୍ତରେ ଯୁଧିଷ୍ଠିର ନରମଣି
ଅର୍ଜ୍ଜୁନକୁ ବୁଝିଣ କହିଲେ ଏ ବାଣୀ ।
କର୍ଣ୍ଣ ମୋ ଘୋଡ଼ା ରଥଧ୍ୱଜ କବଚକୁ
କାଟିଲା ଯୁଦ୍ଧଦାଣ୍ଡେ ବରଗି ବାଣକୁ ।
ତୁମ୍ଭେ ଯେବେ ଆଜ କର୍ଣ୍ଣକୁ ନ ମାରିବ
ତେବେ ମୁହିଁ ନିଶ୍ଚୟେ ମରିବ ଦେଖିବ ।
ଅରଜୁନ ବୋଇଲେ ମୋତେ ତୁମ୍ଭ ରାଣ
ଆଜ ମୁଁ କର୍ଣ୍ଣଙ୍କର ନେବଇ ପରାଣ ।

—❋—

## କର୍ଣ୍ଣ ବଧନକୁ ଯିବା ପୂର୍ବରୁ
## ଅର୍ଜ୍ଜୁନଙ୍କ ପ୍ରତି କୃଷ୍ଣଙ୍କ ବାକ୍ୟ

ପୁଣି ଅରଜୁନ କହିଲେ ଶ୍ରୀକୃଷ୍ଣଙ୍କୁ
ମାରିବି ଆଜ ତୁମ୍ଭ ସାହାରେ କର୍ଣ୍ଣଙ୍କୁ ।
କୃଷ୍ଣ ବୋଇଲେ ମୁଁ ବଞ୍ଛୁଥାଏ ଏହା
କର୍ଣ୍ଣଙ୍କୁ ମାର ହେ ଗାଣ୍ଡୀବଧନୁ ବାହା ।
ଯୁଧିଷ୍ଠିର ନୃପେ ବୋଇଲେ ଯଦୁବର
ବୋଲ ଅର୍ଜ୍ଜୁନଙ୍କୁ ଏ କର୍ଣ୍ଣଙ୍କୁ ସଂହାର ।
କରନ୍ତୁ ରଣଦାଣ୍ଡେ ଶତ୍ରେ କ୍ରୋଧ ବହି
ବିଳମ୍ବ କରିବାର କାଳ ଏ ନୁହଇ ।
ଏବେ ଅରଜୁନଙ୍କ ଜୟକୁ କର ବାଞ୍ଛା
ମାରନ୍ତୁ ଏ ଯାଇ ରଣରେ ସୂତବତ୍ସା ।
ଯୁଧିଷ୍ଠିର ବୋଇଲେ ପାର୍ଥ ବେଗେ ଯାଅ
ଯୁଦ୍ଧରେ କର୍ଣ୍ଣଙ୍କର ପ୍ରାଣକୁ ବଢ଼ାଅ ।
ଏହା ଶୁଣି ପାର୍ଥ ରାଜାଙ୍କ ପାଦ ଧରି
ପଡ଼ିଲେ ଦୋଷ କ୍ଷମା କର ବୋଲିକରି ।
ଯୁଧିଷ୍ଠିର ରାଜା ଉଠାଇ ଅରଜୁନଙ୍କୁ
ମୂର୍ଦ୍ଧା ଶୁଙ୍ଘି କହିଲେ ସ୍ନେହ ବଚନକୁ ।
ତୁମ୍ଭ ମାନନାରେ ହୁଡ଼ିଲ ସବୁ ଶୋକ
ମାର ଏବେ କର୍ଣ୍ଣଙ୍କୁ ଶରଙ୍କ ନାୟକ ।
ଅରଜୁନ ବୋଇଲେ କର୍ଣ୍ଣଙ୍କୁ ଆଜ ରଣେ
ଦେଖିବ ହେ ରାଜନ ମାରିଦେବି ବାଣେ ।
କର୍ଣ୍ଣ ଯୁଦ୍ଧେ ତୁମ୍ଭଙ୍କୁ ଦେଲେ ଯେତେ ଦୁଃଖ
ତା ଆଜ ଶୁଝାଇବ ମୋହର ବିଶିଖ ।

କର୍ଣ୍ଣଙ୍କୁ ମାରଣ ଆସିଲେ ତୁମ୍ଭଠାକୁ
ତେବେ ସିନା ରାଜନ ଦେଖିବ ଆମ୍ଭଙ୍କୁ ।
ତୁମ୍ଭ ଦୁଇପାଦକୁ ଛୁଇଁଅଛୁ ମୁହିଁ
କର୍ଣ୍ଣେ ନ ମାଇଲେ ମୁଁ ଆସିବଟି ନାହିଁ
ଯୁଧିଷ୍ଠିର ଶୁଣି ଅର୍ଜୁନଙ୍କ ବଚନ
ବୋଇଲେ ବାବୁ ଯୁଦ୍ଧେ ଜିଣ ଯାଇ କର୍ଣ୍ଣ ।
ଦେବତାଏ ତୁମ୍ଭଙ୍କୁ ହୋଇଥାନ୍ତୁ ସାହା
ମାରିବା ଯାଏ ତୁମ୍ଭେ କର୍ଣ୍ଣ ବୀରନାହା ।
ଯୁଧିଷ୍ଠିରଙ୍କର ଶୁଣିଣ ଏ ବଚନ
କୃଷ୍ଣଙ୍କୁ ଚାହିଁ କରି ବୋଇଲେ ଅର୍ଜୁନ ।
ବେଗେ ମୋର ରଥ ତିଆରି କର ହରି
ଯୁଦ୍ଧ ଉପକରଣ ସାମଗ୍ରୀକ ଭରି ।
ଆଜ ମୁଁ କର୍ଣ୍ଣ ତୁଲେ କରି ମହାରଣ
ଦେଖାଇବି ତାହାକୁ ଜନ୍ତୁଙ୍କର ସ୍ଥାନ ।
ଦାରୁକ ତ କୃଷ୍ଣଙ୍କ ପାଖେ ରହିଥିଲେ
ତାହାଙ୍କୁ ଚାହିଁକରି କୃଷ୍ଣ ଆଜ୍ଞା ଦେଲେ ।
ଅର୍ଜୁନଙ୍କ ବୋଲିବା ପ୍ରାୟେ ତାଙ୍କ ରଥ
ସଜ କର ସେ ଯିବେ କର୍ଣ୍ଣର ସାଥ ।
କୃଷ୍ଣଙ୍କ ଆଜ୍ଞାରେ ଦାରୁକ ବେଗେ ଗଲେ
ଅର୍ଜୁନଙ୍କ ରଥକୁ ନିଜେ ସଜ କଲେ ।
ଅର୍ଜୁନେ ବୋଇଲେ ତିଆରି କଲି ରଥ
ବାହାର ଯୁଦ୍ଧକୁ ହେ ପାର୍ଥ ମହାରଥ ।
ଅର୍ଜୁନ ସେ ଯୁଧିଷ୍ଠିରଙ୍କ ଆଜ୍ଞାରେ
କରାଇ ସ୍ୱସ୍ତି ବାଚ ଦ୍ୱିଜଙ୍କ ମୁଖରେ ।
କପିଧ୍ୱଜ ରଥକୁ ପ୍ରଦକ୍ଷିଣ କରି
ବସିଲେ ତା ମଧ୍ୟେ ଗାଣ୍ଡୀବ ଧନୁଧାରୀ ।
ଯୁଧିଷ୍ଠିର ରାଜା ସେ ଅର୍ଜୁନ ଆଶିଷ
ହୃଦରେ ବାଞ୍ଛା କଲେ ଲଭି ମହାତୋଷ ।
ଅର୍ଜୁନ ଯିବାର ଦେଖି ପାଣ୍ଡୁ ସେନା
ଭାବିଲେ ଆଜ ମଲେ କର୍ଣ୍ଣ ମହାମନା ।
ସବୁ ଦିଗଯାକ ସେ ନିର୍ମଳ ଦିଶିଲେ
କ୍ରୌଞ୍ଚ ହଂସ ପାର୍ଥଙ୍କୁ ପ୍ରଦକ୍ଷିଣ କଲେ ।
କଙ୍କ ଗୃଧ୍ର ବିଲୁଆ ଅର୍ଜୁନଙ୍କ ଆଗେ
ବାହାରିଲେ ମାଉଁସ ଖାଇବା ସରାଗେ ।
ଏ ନିମିତ୍ତମାନରୁ ପାର୍ଥ ହାତେ ବଧ
ହେବେ କର୍ଣ୍ଣ ବୋଲି ସବୁରି ହେଲା ବୋଧ ।

ପାର୍ଥ ମନେ କଲେ ଏହରେ ଜନ ଅଛି
କି ରୂପେ ମାରିବି ଆଜ ମୁଁ ସୂତବଂଶି ।
କର୍ଣ୍ଣ ତ ସବୁଅସ୍ତ୍ରମାନଙ୍କରେ ବେତ୍ତା
ଏତେ ଭାବି ଅର୍ଜୁନ କଲେ କିଛି ଚିନ୍ତା ।
କୃଷ୍ଣ ତା ଜାଣିପାରି କହିଲେ ପାର୍ଥଙ୍କୁ
କାହିଁ ପାଇଁ ହେ ଚିନ୍ତା ଆଣୁଛ ମନକୁ ।
ବହୁତ ରଥୀଙ୍କି ତ କରିଛ ସଂହାର
ଏବେ ଯତନ କରି ଜିଣ କର୍ଣ୍ଣବୀର ।
ତୁମ୍ଭେ ଯେଉଁମାନଙ୍କୁ ମାରିଅଛ ରଣେ
ଆନ ତାହାକୁ ରୁନ୍ଧ ନ ପାରଇ ବାଣେ ।
ବିନ୍ଦ ଅନୁବିନ୍ଦ ସେ ଭଗଦତ୍ତ ଦ୍ରୋଣ
ଭୀଷ୍ମ ଅଚ୍ୟୁତାୟୁ ଶ୍ରୁତାୟୁ ସୁଦକ୍ଷିଣ ।
ଏହାଙ୍କୁ ଯୁଝିଲେ ନ ଆସେ ଲୋକ ଯାଇ
ତୁମ୍ଭେ ତାହାଙ୍କୁ ଦେଖାଇଛ ପ୍ରେତସାଇଁ ।
ଲାଘବ ବଳ ଅସ୍ତ୍ର ଲକ୍ଷ୍ୟ ଯୁଦ୍ଧଜ୍ଞାନ
ଅମୋଘ ଯୋଗ ଦୂରପତନ ବେଧନ ।
ଏମାନଙ୍କେ ତୁମ୍ଭେ ତ ନିପୁଣ ଅର୍ଜୁନ
ଏ ହେତୁ ଜାଣୁଛି ଘେନିବ କର୍ଣ୍ଣପ୍ରାଣ ।
ଗନ୍ଧର୍ବ ଦେବ ଯକ୍ଷ ଦାନବ ଅସୁର
ଏମାନଙ୍କ ପରାଣ ତୁମ୍ଭେ ହରି ପାର ।
ଏ ମହୀମଣ୍ଡଳରେ ତୁମ୍ଭ ପରି ହୋଇ
ଯୋଦ୍ଧା ଥିଲ ପରି ତ ମୋତେ ଦିଶୁନାହିଁ ।
ବ୍ରହ୍ମାଙ୍କରେ ସର୍ଜନା ଗାଣ୍ଡୀବ ଧନୁଟି ;
ତା ଧରିଛି ତୁମ୍ଭର କରର ମୁଠିଟି ।
କେବଳ କହୁଅଛି କର୍ଣ୍ଣଠାରେ ହେଳା
ଯୁଦ୍ଧ କଲେ କାଟି ନ ପାର ତାର ଗଳା ।
କର୍ଣ୍ଣ ମଧ୍ୟ ବାଳାଙ୍କ ମଧ୍ୟେ ବଳୀଆର
ମନ କଲେ ଜିଣି ପାରନ୍ତି ସବୁ ବୀର ।
କର୍ଣ୍ଣ ତୁମ୍ଭ ସମାନ ଅଟନ୍ତି ଟି ରଣେ
ଜାଗରୂକ ହେଲେ ମାରିବ ତାଙ୍କୁ ବାଣେ ।
ତେଜ ଜବ କୋପରେ ଅଗ୍ନି ବାତ ଯମ
ସମାନ ଅଟନ୍ତି ଟି କର୍ଣ୍ଣ ସଂଗ୍ରାମ ।
ତୁମ୍ଭର ବିନା କର୍ଣ୍ଣଙ୍କର ଟି ଅଭେଦ୍ୟ
କରିଣ ନ ପାରନ୍ତି ବଜ୍ରଧର ଇନ୍ଦ୍ର ।
ଏବେ ମୋ ବୋଲ ଘେନ ଦୁରାତ୍ମା ଦୁର୍ମଣ୍ଡ
କର୍ଣ୍ଣଙ୍କୁ ନେଇ କରି ଦଣ୍ଡ ଯମ କଣ୍ଡ ।

କର୍ଣ୍ଣ ବଳକୁ ପାଇ ସୁଯୋଧନ ରାଜା
ତୁମ୍ଭର ସଙ୍ଗତରେ କଲେ ଯୁଦ୍ଧ ସଜ୍ଜା ।
ଏବେ ସେ କର୍ଣ୍ଣ ମଲେ ପ୍ରାଣ ପ୍ରତିଆଶେ
ଖଡ୍ଗ ପଶିବ ରାଜାଙ୍କ ପାଦଦେଶେ ।
ସତରଦିନ ଯୁଦ୍ଧ ହୋଇଲାଣି ଶେଷ
ବାକି ଥିବା ଯୋଦ୍ଧାଙ୍କୁ ଦେଇ ଯମବାସ ।
ଯୁଧିଷ୍ଠିର ନୃପେ ହସ୍ତିନା ରାଜ୍ୟ ଦେଇ
ଇନ୍ଦ୍ରପରେ କୀର୍ତ୍ତିକ ଭବେ ଦିଅ ରହି ।
ତୁମ୍ଭେ ଯେଉଁ ସେନା ପାଳନ କରିଥିବ
ଇନ୍ଦ୍ର ପର ଲୋକରେ ଜାତ ସେ ନୋହିବ ।
ତୁମ୍ଭ ବଳେ ରକ୍ଷିତ ହୋଇ ଧୃଷ୍ଟଦ୍ୟୁମ୍ନ
ଶିଖଣ୍ଡୀ ଘେନଲେଟି ଦ୍ରୋଣ ଭୀଷ୍ମ ପ୍ରାଣ ।
ଭୂରିଶ୍ରବା କୃତବରମା କୃପ କର୍ଣ୍ଣ
ଜୟଦ୍ରଥ ଶଲ୍ୟ ଯେ ଦ୍ରୌଣି ଦୁର୍ଯ୍ୟୋଧନ ।
ଏମାନଙ୍କୁ ତୁମ୍ଭ ବିନାଟି ଆନ ଲୋକ
ଯୁଝି ନ ପାରଇ ହେ ବନ୍ଧଣ ସାତ୍ୟକ ।
ଗୋଦାସ ଦାସର୍ମୀୟ ସେଜ ବାଟଧାନ
ବଶୀତ ପ୍ରାଚ୍ୟଙ୍କର ଦେଲ ତୁମ୍ଭେ ପ୍ରାଣ ।
ତୁଷାର ଖଶ ଦବାଭିଷାର ତଙ୍ଗନ
ମ୍ଳେଚ୍ଛ ଶକ ଦରଦ ପୁଳିନ୍ଦ ଯବନ୍ତ ।
ଅନ୍ଧ୍ରକ ରମଠାମାନଙ୍କୁ ତୁମ୍ଭ ବିନା
ଯୁଦ୍ଧରେ କରି ନ ପାରଇ କେ ଦମନା ।
ତୁମ୍ଭ ବାହା ସାହାରେ ଯୁଧିଷ୍ଠିର ରାଜା
ଧୃତରାଷ୍ଟ୍ର ପୁତ୍ରେ ଯୁଝିବା କଲେ ମଜ୍ଜା ।
ତୁମ୍ଭ ବଳେ ରକ୍ଷିତ ହୋଇ ତୁମ୍ଭ ଭାଇ—
ମାନେ ନେଲେ ଯୁଦ୍ଧରେ କୁରୁଙ୍କ ଶୁଆଇ ।
ମଗଧ ଅଧିପତି ଜୟସେନ ବୀର
ପ୍ରାଣକୁ ଯୁଦ୍ଧେ ନେଲେ ଭଣଜା ଆମ୍ଭର ।
ଭୀମ ଜୟସେନଙ୍କ ଦଶସହସ୍ର ହାତୀ
ଏକାଳେ ଗଦାଘାତେ ନେଲେ ଯୁଦ୍ଧେ ମନ୍ଥି
ଏହିରୂପେ କୁରୁଙ୍କ ଅନେକ ସଇନ
ତୁମ୍ଭର ଭାଇମାନେ କଲେଟି ନିଧନ ।
ଭୀଷ୍ମ ମଧ୍ୟ ପାଞ୍ଚାଳ କେକୟ କାପୁ ରୁଷ
ମତ୍ସ୍ୟ ଅନ୍ଧ ବୀରଙ୍କୁ କଲେ ରଣେ ନାଶ ।
ସହସ୍ର ଦଶ ରଥୀ ନିତ୍ୟ ଭୀଷ୍ମ ମାରି
ତୁମ୍ଭ ସୈନ୍ୟଯାକକୁ ଦେଲେ ତୁଚ୍ଛ କରି ।
ତାହାଙ୍କୁ ତୁମ୍ଭ ଲୋକେ ନ ପାରିଲେ ରୁନ୍ଧି
ଧନୁ ଧରିଣ ଯୁଦ୍ଧ କରନ୍ତେ ବା କେହି ।
ସେ ଭୀଷ୍ମେ ତୁମ୍ଭରେ ରକ୍ଷିତ ହେବାକ୍ଷଣି
ଶିଖଣ୍ଡୀ ମୃତ୍ୟୁଦାଣ୍ଡେ ପକାଇଲେ ଜିଣି ।
ତୁମ୍ଭ ଶରେ ପୀଡ଼ା ପାଇଣ ଭୀଷ୍ମବୀର
ଶୋଇଛନ୍ତି ଶେଯ ମୁଚୁଳା କରି ଶର ।
ଦ୍ରୋଣ ପାଞ୍ଚଦିନ କରିଣ ମହାଯୁଦ୍ଧ
ଅଲଭ୍ୟେ ଧୃଷ୍ଟଦ୍ୟୁମ୍ନ ହାତେ ହେଲେ ବଧ
ତୁମ୍ଭେ ହେ ନ ରଖିଲେ ରଥୀଙ୍କି ନିବାରି
ଧୃଷ୍ଟଦ୍ୟୁମ୍ନ ତାହାଙ୍କୁ ନ ପାରନ୍ତି ମାରି ।
ତୁମ୍ଭ ବିନା ଜୟଦ୍ରଥକୁ ଦିନକରେ
ପାରନ୍ତା ମାରି ଆନ କିଏ ଏ ଲୋକରେ ।
କ୍ଷତ୍ରିୟ କୁଳ ଯେବେ ତୁମ୍ଭ ତୁଲେ ବୈର
କରିବେ ମୋ ମତେ ସେ ଭେଟିବେଟି କାଳ
ଭୀଷ୍ମ ଦ୍ରୋଣ ମଲା ଦିନରୁ ସୁଯୋଧନ
ସେନାଯାକ ମଲେଣି ଜାଣ ହେ ଅର୍ଜ୍ଜୁନ ।
ଶଲ୍ୟ କୃପ ଯେ କୃତବର୍ମା ଅଶ୍ବତ୍ଥାମା
ଏମାନଙ୍କୁ ଆଜ ଦିଅ ଯେ ଯମସୀମା ।
ତୁମ୍ଭରେ ଆଜ ଶତ୍ରୁ କୁଳ ହେଲେ ନାଶ
ପାଞ୍ଚଜେ ସୁଖରେ ବସନ୍ତୁ ଧରି ନିଶ ।
ତୁମ୍ଭେ ଅବା ବୋଲିବ କୃପ ଅଶ୍ବତ୍ଥାମା
ଗୁରୁ ଗୁରୁପୁତ୍ର ଭକ୍ତି ବକ ଗାରିମା ।
ଶଲ୍ୟ ମାମୁଁ କୃତବରମା ବନ୍ଧୁ ବୋଲି
ଭାବିଲେ ମୋର ସୂତପୁତ୍ରକୁ ନ ଭାଳ ।
କର୍ଣ୍ଣ ତୁମ୍ଭ ତାଙ୍କର ଦ୍ବନ୍ଦ୍ବକୁ କାରଣ
କର୍ଣ୍ଣଙ୍କର ଏକା ଟି ରଚ ହେ ମରଣ ।
କର୍ଣ୍ଣ ବଳରେ ସୁଯୋଧନ ମୋତେ ରୁନ୍ଧି
ବସିଥିଲା ଗୃହରେ ରଖିବାକୁ ବାନ୍ଧି ।
ତୁମ୍ଭ ବଳ ଜାଣିଲେ ହେଲେ ସୁଯୋଧନ
କର୍ଣ୍ଣବଳ ତାହାକୁ କରଇ ମୋହନ ।
କର୍ଣ୍ଣ ନିତ୍ୟ ତ କହୁଥାଏ ଟାଣି ଟୁଣି
ପକାଇବ ସେ କୃଷ୍ଣ ଅର୍ଜ୍ଜୁନଙ୍କୁ ହାଣି ।
ତୁଚ୍ଛ ତୁଣ୍ଡେ ଗୁଡ଼ା ବଢ଼ାଇ କହୁଥାଏ
ବାଙ୍କା କରି ନ ପାରେ ଆମ୍ଭ ବାଳୁଟିଏ ।
ଛଅଟା ରଥୀ ଘେନ ଅଭିମନ୍ୟୁ ବଧ
କରାଇଲା ଯୁଦ୍ଧରେ କର୍ଣ୍ଣ ଦୁରୁବୋଧ ।

କର୍ଣ୍ଣ ଅଭିମନ୍ୟୁଙ୍କୁ ଯୁଦ୍ଧରେ ନ ପାରି
ରହିଲେ ଭୟରେ ପଛକୁ ମୁହଁ କରି ।
ଦ୍ରୋଣଙ୍କର ବଚନେ ଅଭିମନ୍ୟୁ ଧନୁ
କାଟିଲେ ପୁଣି ଯୁଦ୍ଧଦାଣ୍ଡେ ସୂତସୂନୁ ।
ସେହି ସକାଶୁଁ ଭୀମ ନନ୍ଦନ ଦୁର୍ବଳ
ହେଲେ, ସବୁ ରଥୀ ବନ୍ଦିଲେ ପାଇ ବଳ
ଅଭିମନ୍ୟୁ ତାଙ୍କ କାଣ୍ଡରେ ବ୍ୟଥା ପାଇ
ହେଟିଲେ ହେ ଅର୍ଜୁନ ଯାଇ ପ୍ରେତସାଇଁ ।
ତା ଦେଖି କୁରୁମାନେ କଲେ ହାହାକାର
କର୍ଣ୍ଣ ସୁଯୋଧନ ଲଭିଲେ ତୋଷଭର ।
ସଭାରେ ଭୀମ ଆଗେ କୃଷ୍ଣାକୁ ଯେ ଗାଳି
ଦେଇଛି ଦେଉଛି ସେ ବାଣୀ ହୃଦ ଜାଳି ।
ଏ ବାହାରେ ବୋଇଲେ ତୋ ମନ ଯାହାକୁ
ହେଉଛି ଦ୍ରୌପଦୀ ଗୋ ବର ତୁ ତାହାକୁ ।
ଯାଇଥିଲେ ତ ମଲେଣି ଟି ପାଣ୍ଡୁସୁତେ
ସୋଇଲା ସେବା କର ନ ଘୃଣାଣ ଚିତ୍ତେ ।
ଏରୁପେ ବୋଲବାର ଶୁଣିଛ ତ ତୁମ୍ଭେ
ପାସୋରିଥିବ ବୋଲି ଚେତାଇଲୁ ଆମ୍ଭେ ।
କର୍ଣ୍ଣଙ୍କୁ ମାରି ଆଜ ହୃଦୟ ଶଲ୍ୟକୁ
କାଢ଼ି କରି ହେ ଫିଙ୍ଗିଦିଅ ବାହାରକୁ ।
ଗାଣ୍ଡୀବକାଣ୍ଡ ବଜାବେଳେ କର୍ଣ୍ଣବୀର
ସ୍ମରିକ ଭୀଷ୍ମ ଦ୍ରୋଣବୀରଙ୍କ ଉତ୍ତର
ଭୀମର ଭୁଣକାଣ୍ଡେ କର୍ଣ୍ଣ ରକ୍ତ ପିଇ ।
ପଶନ୍ତୁ ମହୀତଳେ ସର୍ପ ପରି ହୋଇ ।
ଆଜ ନୃପତିମାନେ କର୍ଣ୍ଣ ପଡ଼ିବାର
ଦେଖି କରି ମୁଖେ କରନ୍ତୁ ହାହାକାର ।
ବନ୍ଧୁମାନେ ଆଜ କର୍ଣ୍ଣର ହତ ଦେଖି
ଦୁଃଖୀ ହୋଇ ଢଳନ୍ତୁ ବୁଜ ଦୁଇଆଖି ।
ହସ୍ତିମୃଷାଧ୍ୱଜ ଯେ ଭଲକାଣ୍ଡେ ଛିଡ଼ି
ଆଜ ହେ ଗଡ଼ଯାଉ ରଣଦାଣ୍ଡେ ପଡ଼ି ।
ଆଜ ଭୀମ କାଣ୍ଡରେ କର୍ଣ୍ଣ ଗଣ୍ଡି ମଣ୍ଡି
ପଳାଅନ୍ତୁ ରଥ ଛାଡ଼ିଣ ଧୈର୍ଯ୍ୟ ଖଣ୍ଡି ।
ସୁଯୋଧନ ରାଜାର୍ଟି ଜୀବନେ ନିରାଶ
ହୋଇ କରି ଅର୍ଜୁନ ଲଭୁ ଆଜ ନାଶ ।
ଦେଖ ଏବେ କର୍ଣ୍ଣଙ୍କ କାଣ୍ଡେ ପୀଡ଼ା ପାଇ
ଭାଜୁଛନ୍ତି ପାଞ୍ଚାଳେ ପଛକୁ ନ ଚାହିଁ ।

ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଦୁର୍ମୁଖ ନକୁଳ
ସହଦେବ ସୁଧର୍ମା ସାତ୍ୟକି ପାଞ୍ଚାଳ ।
ଶତାନିକ ଜନମେଜୟ ଦ୍ରୌପଦେୟ
ଦ୍ରୁପଦନାତି ଆଦି ଭୀମ ରଥିଚୟ ।
କର୍ଣ୍ଣଙ୍କର ବାଣରେ ପାଇ କରି ପୀଡ଼ା
ପୋଡିଲା ଖମ୍ଭ ପରି ହୋଇଛନ୍ତି ଛିଡ଼ା ।
କର୍ଣ୍ଣଙ୍କୁ ମାରିବାରେ ପାଞ୍ଚାଳେ ସେ ରଣ
ପାଡ଼ୁଛନ୍ତି ଭୟ ବସନ ହୋଇ ଯୋଡ଼ ।
ପାଞ୍ଚାଳେ କାହାକୁଟି ନ ଡରନ୍ତି ରଣେ
ଏବେ ତ ଡରିଗଲେ ଦେଖ କର୍ଣ୍ଣବାଣେ ।
ଭୀଷ୍ମ ଦ୍ରୋଣ ପରି ଲୋକଙ୍କୁ କରି ରଣ
ପାଞ୍ଚାଳେ ନେଇଗଲେ ତାହାଙ୍କର ପ୍ରାଣ ।
ଏବେ ତୁମ୍ଭେ ସରଜ ଗାଣ୍ଡୀବ ବିଶିଖ
ଦ୍ରୁପଦରାଜାଙ୍କ ବଳକୁ ଯୁଦ୍ଧେ ରଖ ।
କର୍ଣ୍ଣ ପର୍ଶୁରାମଙ୍କ ଅସ୍ତ୍ରକୁ ପ୍ରକାଶି
ଦେଉଅଛନ୍ତି ଶତ୍ରୁବଳକୁ ବିନାଶି ।
କର୍ଣ୍ଣଶର ଭ୍ରମର ସୈନ୍ୟରେ ବିହରନ୍ତି
ଦେହ ପୂଜ ରକତ ମଧୁକୁ ପିଅନ୍ତି ।
ଭୀମ ଦେଖାଯୁଦ୍ଧରେ ପାଇ କାଣ୍ଡଘାଆ
ବ୍ୟସ୍ତ ହୋଇ ଅଛନ୍ତି ଧୈର୍ଯ୍ୟ ଧରି ହୃଆ ।
ଭୀମ ବିନା କର୍ଣ୍ଣଙ୍କୁ ଯୁଝିକରି ଆଜ
ଆସିବ କିଏ ଦୁଃଖ ସାଗରେ ନ ମଜ୍ଜି ।
ଆଜ ତୀକ୍ଷ୍ଣକାଣ୍ଡରେ କର୍ଣ୍ଣଙ୍କର ପ୍ରାଣ
ନିଅ ଆହେ ଅର୍ଜୁନ ବୀରକୂଳ ରଣ ।
କର୍ଣ୍ଣଙ୍କୁ ମାରି ମହୀମଧ୍ୟେ କୀର୍ତ୍ତି ରଖି
ଦିଅ ହେ ସବୁ ଦୁଃଖଯାକକୁ ଉପେକ୍ଷି ।

—✵—

## କର୍ଣ୍ଣବଧ ନିମନ୍ତେ ଅର୍ଜୁନଙ୍କର ଯୁଦ୍ଧଯାତ୍ରା

ଏରୂପରେ ଶ୍ରୀକୃଷ୍ଣ ବଚନକୁ ଶୁଣି
ହସି ହସି ଗାଣ୍ଡୀବଧର ବୀରମଣି ।
ଗାଣ୍ଡୀବଧନୁଙ୍କ ଗୁଣକୁ ମାଜଦେଇ
ଟଙ୍କାର ଦେଲେ ଥରେ ମନେ ବୋଧ କରି ।
କର୍ଣ୍ଣ ବିନାଶରେ ଦେଇକରି ମନ
ବୋଇଲେ ଶୁଣ ଆହେ ଜଗତ ପାବନ ।

ତୁମ୍ଭେ ମୋତେ ଯେବେ ହୋଇଛ ପରସନ୍ନ
ଯୁଦ୍ଧରେ କରିବି ମୁଁ କର୍ଣ୍ଣଙ୍କୁ ନିଧନ ।
ତୁମ୍ଭ ସହାୟରେ ମୁଁ ଅନେକ ଜିଣି
ପାରେ ଏ କର୍ଣ୍ଣ କେତେକର ଚକ୍ରପାଣି ।
କର୍ଣ୍ଣ ଗର୍ବବାକ୍ୟ କରନ୍ତି ସରଜନା
ଏହା ମଧ୍ୟ ମୁହିଁ ଦେଖୁଛୁ ମହାମନା ।
ଆଜ ଯେଉଁ ଯୁଦ୍ଧ ମୁଁ କରିଣ କର୍ଣ୍ଣଙ୍କୁ
ମାରିବି କେହୁ ଆଣି ନ ଥିବେ ଏ କର୍ଣ୍ଣଙ୍କୁ ।
ଭୂମି ଥିବା ଯାକେ ମୋ ଏ କୀରତି ଖଣ୍ଡ
ମଣ୍ଡି ହୋଇଥିବ ଟିଏ ଭରତ ଖଣ୍ଡ ।
ଏକଣ ନାରାଚରେ କର୍ଣ୍ଣଙ୍କ କଣ୍ଠକୁ
ଖୋଳିବ ହେ କେଶବ ଦେଖାଇ ବଳକୁ ।
ଆଜ ଧୃତରାଷ୍ଟ୍ର ମୋ ବଳେ ଦୁଃଖୀ ହୋଇ
ପୁଅକୁ ନିଧନ ଶୋଇବେ ଭୁଞ୍ଜା ଭୂଇଁ ।
ଆଜ ସେ ସୁଯୋଧନ ଦୃଢ଼ ଜୀବଆଶା
ଅହର୍ଣ୍ଣି ବହିବ ଲଭି ଭସ୍ମ ତୃଷା ।
ଧୃତରାଷ୍ଟ୍ର ରାଜା ତୁମ୍ଭର ବାଣୀଖଣ୍ଡି
ସୁମରିବେ କର୍ଣ୍ଣ ମୋ କଣ୍ଡେ ହେଲେ ମଣ୍ଡି
କର୍ଣ୍ଣକୁ ମାରି ଯୁଧିଷ୍ଠିର ଉଜାଗର
ଆଜ ଦୂର କରାଇବ ହେ ଯଦୁବୀର ।
ମରନ୍ତେ କର୍ଣ୍ଣ ଯୁଧିଷ୍ଠିର ଅନ୍ନଗ୍ରାସେ
ସୁଖ କରି ଖାଇ ବସିବେ କୃଷ୍ଣ ତୋଷେ ।
ଆଜ କର୍ଣ୍ଣ ଦେହକୁ ଛନ୍ଦିବ ଯେ କାଣ୍ଡ
ବାଜଲେ ଦେଖିବ ସେ ଯାଇ ଯମଦାଣ୍ଡ ।
ମୋତେ ମାରିବାକୁ କରିଛି ବ୍ରତ କର୍ଣ୍ଣ
ତାହା ଆଜ କରିଦେବି ମୁଁ କୃଷ୍ଣ ଚୂର୍ଣ୍ଣ ।
କର୍ଣ୍ଣଙ୍କର ରକତ ଆଜ ମହୀ ଖାଇ
ସର୍ବ ଉଷ୍ମାସିଣ ରହିବ ସୁଖୀ ହୋଇ ।
ପଣ ନାହିଁ କୃଷ୍ଣଙ୍କୁ ବୋଲୁଛି ତ କର୍ଣ୍ଣ
ଏ ସକାଶୁଁ ମୋ ବାଣେ ପୋଡ଼ିବେ ତା କର୍ଣ୍ଣ
ଗାଣ୍ଡୀବ ନାରାଚରେ ଅଙ୍ଗ ନରପତି
କର୍ଣ୍ଣ ଯାଇ ବସିବେ ଇନ୍ଦ୍ରଙ୍କର କତି ।
ଷଣ୍ଢଜଳ ବୋଲିତ କର୍ଣ୍ଣ ବୋଲୁଥିଲେ
ଆଜ ତହିଁ ଫଳ ସେ ଘେନି ଯିବେ ଭଲେ ।
ଧୃତରାଷ୍ଟ୍ର ପୁଅଙ୍କୁ କହୁଥାନ୍ତି କର୍ଣ୍ଣ
କରିବି ମୁଁ ଯୁଦ୍ଧେ ପାଣ୍ଡବ ବଳ ଚୂର୍ଣ୍ଣ ।

ସେ କଥା ଆଜ ମୋ କର୍ଣ୍ଣରେ ବ୍ୟଥା ପାଇ
ବୃଥା କରିଦେବେ ରୁକ୍ମିଣୀ ପ୍ରାଣସାଇଁ ।
କର୍ଣ୍ଣଙ୍କର ଶନ୍ଦେ ସୁଯୋଧନ ମୂଢ଼
କହୁଥାଏ ବସି ମଧ୍ୟରେ କଥା ଗୌଢ଼ ।
କର୍ଣ୍ଣ ମୁଣ୍ଡଟିକ ସେ କାଟିବାର ଦେଖି
ତାହା ଉପେକ୍ଷିଣ ହୋଇବେ ସେହୁ ଦୁଃଖୀ ।
କର୍ଣ୍ଣଙ୍କୁ ମାରି ମୋ ସାୟକ ସିଂହମନେ
ଛନ୍ଦାଇବେଟି ଧୃତରାଷ୍ଟ୍ର ମୃଗସୈନ୍ୟେ ।
ଆଜ ନଷ୍ଟେ କର୍ଣ୍ଣଙ୍କ ଶୁଣିଣ ମରଣ
ବୋଲିବେ ସୁଯୋଧନ ମୋତେ ବୀରଗଣ ।
କର୍ଣ୍ଣ ମୋର ଶରେ ଯାଆନ୍ତେ ଯମପୁର
ମୁଣ୍ଡ ଧରି ବସିବେ ଜ୍ୟେଷ୍ଠପିତା ମୋର ।
ଆଜ କର୍ଣ୍ଣ ଅଙ୍ଗେ ଶଲୁଅ ମେଲି ପାଟି
ଖାଇବେ ଶରମାନ ଦନ୍ତରେ ରେକଟି ।
ସକଳ ଧନୁର୍ଦ୍ଧରମାନଙ୍କ ମଧ୍ୟରେ
କର୍ଣ୍ଣର ମୁଣ୍ଡଟିକ କାଟିବ ଯୋଧରେ ।
ବିପାଠ କ୍ଷୁର ଭଲ୍ଲକାଣ୍ଡେ କର୍ଣ୍ଣ ଗଣ୍ଡି
କରି ପକାଇବି ମୁଁ ଯୁଦ୍ଧେ ଖଣ୍ଡି ଖଣ୍ଡି ।
ଆଜ ମୁଁ କର୍ଣ୍ଣଙ୍କର କାଟି କରି ମୁଣ୍ଡ
ମଣ୍ଡିବି ଯଶ କୁଣ୍ଡଳରେ ନୃପଗଣ୍ଡ ।
କର୍ଣ୍ଣଙ୍କ ଅନୁଚର ତୃଣବନ ମୂର୍ତ୍ତି
କାଣ୍ଡ ଅନଳରେ ଦହିବି ଯଦୁସାଇଁ ।
ଆଜ ରାଜାମାନଙ୍କ ବଚନ କମଳ
ମାଳ କରି ମଣ୍ଡିବ ମସ୍ତକ ମୋ ବଳ ।
ମୋ ପୁଅକୁ ଯୁଦ୍ଧରେ ଯେ ଏ ମାରିଛନ୍ତି
ବସିବେ ସେ ଯାଇଟି ଯମଙ୍କର କତି ।
କର୍ଣ୍ଣାର୍ତ୍ତିଗ୍ରସ୍ତ ନିରର୍ଜୁନ ଅବା ସ୍ୱସ୍ଥି
ହୋଇବ, ଏଥିରେ ସନ୍ଦେହ କିଛି ନାହିଁ ।
ତ୍ରୟୋଦଶ ବରଷ ଦୁଃଖ ଆଜ ନାଶ
କରିବ ଦେଇ ସୁତପୁତ୍ରେ ଯମବାସ ।
ଦର୍ଣ୍ଣ ମାରି ମିତ୍ରମାନଙ୍କ କାର୍ଯ୍ୟ ମୁହିଁ
ଯୁଦ୍ଧଭୂମି ଦାଣ୍ଡେ ସଫଳ କରିବଇଁ ।
ଭୀମ ଯମ ସାତ୍ୟକୀ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ
ନୟନ ଆଜ ସୁଖେ ଦେଖନ୍ତୁ ଆୟୋଧନ ।
ଧନୁର୍ବେଦ ଉଦ୍ୟମ ପୁଣି କ୍ଷମାଗୁଣେ
ମୋ ପରି ମହୀରେ ଖୋଜିଲେ ନାହିଁ ଜଣେ ।

ସୁର ଅସୁରଙ୍କୁ ମୋ ବାହୁ ପାରେ ଦଳି
କର୍ଣ୍ଣ ଛାର ଅଟଇ କେତେକର ବଳୀ ।
ଏକା ହୋଇ ଗାଣ୍ଡୀବ ଧନୁବଳେ ମୁହିଁ
ତ୍ରୈଲୋକ୍ୟଯାକଙ୍କୁ ଯୁଦ୍ଧେ ଜିଣିବଇଁ ।
ଗାଣ୍ଡୀବଧନୁ ଧରି ରଣେ ବସିଥିଲେ
ମୋତେ ଯୁଝି ନ ପାରେ କେହୁ କୃଷ୍ଣହେଲେ
ଏହା କହି କୃଷ୍ଣଙ୍କୁ ପାର୍ଥ ବୀରମଣି
ଗାଣ୍ଡୀବ ଧନୁବର ଦୁଇ ହାତେ ଟାଣି ।
ସ୍ୱାମୀଙ୍କୁ ରକ୍ଷି କର୍ଣ୍ଣମୁଣ୍ଡ କାଟିବାକୁ
ବାହାରିଲେ ସେଠାରୁ ବହୁଣ ଯୋଧଙ୍କୁ ।
ଦୁଇଆଖି ତାଙ୍କର ହୋଇଗଲା ରଙ୍ଗ
ବଚନ ମଧ୍ୟ ହୋଇଗଲା ଥଙ୍ଗ ଥଙ୍ଗ ।
ଧୃତରାଷ୍ଟ୍ର ବୋଇଲେ ଆହେ ମନ୍ତ୍ରୀବର
ଅରଜୁନ କହୁଣ ପ୍ରତିଜ୍ଞା ଉତ୍ତର ।
ଯୁଦ୍ଧ ଦାଣ୍ଡରେ ଆସି ପ୍ରବେଶ ହୋଇଲେ
କହ କେଉଁରୂପେ ସେ କୁରୁଙ୍କୁ ଯୁଝିଲେ ।
ସଞ୍ଜୟ ବୋଇଲେ ଅର୍ଜୁନ ଆସିବାର
ସମୟରେ ସଇନ ଭୁମ୍ଭର ତାଙ୍କର ।
ବହୁ ଶଙ୍ଖ ଭେରୀ ମୃଦଙ୍ଗ ବଜାଇଲେ
ଯୁଦ୍ଧ କରି ସ୍ୱର୍ଗକୁ ଯିବା ମନେକଲେ ।
ରଥୀଙ୍କୁ ଯେ ପାଞ୍ଚ ସାତ ରଥୀ ବେଢ଼ି
ମାରିଲେ ଦେଖାଇଣ ଅଧରମ ପ୍ରୌଢ଼ି ।
ଦୁଇଥର ଯୁଦ୍ଧ କରିଣ କେତେ ରଥୀ
ସ୍ୱର୍ଗ ଦାଣ୍ଡକୁ ବାହାରିଲେ ନୋହୁ ବ୍ୟଥୀ
ଜରି ଯୋଦ୍ଧାମାନେ ପଦାତି ରଥୀ ପ୍ରାଣ
ସେକାଳରେ ଘେନିଲେ ଝଣ୍ଟ ମାରଗଣ ।
ପାର୍ଥ ଶରଘାଏ ଭଜନ ଭୁମ୍ଭ ବଳ
ଯୁଦ୍ଧଦାଣ୍ଡେ ହୋଇଲେ ମହାକଲବଲ ।
କୃପ ଶିଖଣ୍ଡୀକି ଦେଖିଣ ଧନୁଖଣ୍ଡି
କରେ ନେଇ ଦେଲେ କାଣ୍ଡରେ ଗଣ୍ଡି ମଣ୍ଡି
ସାତ୍ୟକି ଦୁର୍ଯ୍ୟୋଧନ ଆରମ୍ଭିଲେ ରଣ
ସ୍ୱର୍ଗକୁ କରିବାକୁ ସୁଖରେ ପ୍ରୟାଣ ।
ଶ୍ରୁତଶ୍ରବା ଯେ ଦ୍ରୋଣସୁତଙ୍କୁ ଆଗୁଳି
ବିନ୍ଧିଲେ ଗୁଣେ ଯୋଖି ମାରଗଣାବଳୀ ।
ଯୁଧାମନ୍ୟୁ ଚିତ୍ରସେନଙ୍କୁ ବିନ୍ଧି ଶର
ବୋଇଲେ ଭଡ ଭଳି କରିବା ସମର ।

ସୁଷେଣଙ୍କୁ ଉତ୍ତମୌଜା ଯୁଦ୍ଧରେ ଭେଟି
ବନ୍ଧାବନ୍ଧ ହେଲେ ସାୟକ କୋଟି କୋଟି ।
ସହଦେବ ଶକୁନି ଅନ୍ୟୋନ୍ୟରେ ଦାଣ୍ଡେ
ସାୟକ ସରଜା କଲେ ଅନ୍ତରୀକ୍ଷେ ।
ଶତାନୀକ ବୃଷସେନ ଏ ଦୁଇଜଣ
ଉକାଉକି ହୋଇଲେ କରିବାକୁ ରଣ ।
କର୍ଣ୍ଣପୁତ୍ର ସୁଷେଣ ପାଞ୍ଚାଳଙ୍କ ପ୍ରାଣ
ବାଣେ ଘେନିଗଲେ ଦେଖାଇ ବୀରପଣ ।
ନକୁଳ କୃତବର୍ମା ଦୁଇ ରଥୀ ରାଗେ
ରକ୍ଷିଲେ ନେଇ ଶର ଧନୁ ମଧ୍ୟଭାବେ ।
କର୍ଣ୍ଣ ଧୃଷ୍ଟଦ୍ୟୁମ୍ନ ଦୁହେଁ କୋପମନ
ହୋଇ ସେ ଯୁଦ୍ଧଦାଣ୍ଡେ କଲେ ଆୟୋଧନ
ସଂଶପ୍ତକସେନାଙ୍କୁ ଘେନି ଦୁଃଶାସନ
ଯୁଦ୍ଧ କରିଲେ ଡାକ ହାକ ଭୀମସେନ
ଉତ୍ତମୌଜା ବାଣରେ କର୍ଣ୍ଣଙ୍କ ପୁଅଟି
ସୁଷେଣ ଗଲେ ଧର୍ମରାଜନଙ୍କୁ ଭେଟି ।
କର୍ଣ୍ଣ ସୁଷେଣର ହତକୁ ନେତ୍ରେ ଦେଖି
ଯୁଦ୍ଧେ କଲେ ଉତ୍ତମଓଜାଙ୍କୁ ସେ ଦେଖି ।
ରଥଧ୍ୱଜ କାଟିଣ ଘୋଡ଼ାମାନଙ୍କର
ପରାଣ ଘେନିଗଲେ ଭୁମ୍ଭ କର୍ଣ୍ଣବୀର ।
ଉତ୍ତମୌଜା କର୍ଣ୍ଣଙ୍କ ବାହୁଟାଣ ବୁଝି
ମରିବା ବୋଲି ଭାବି ଗଲେ ଆଡ ହୋଇ ।
ଖଡ଼ଗ ପ୍ରହାରି କୃପଙ୍କ ରଥଘୋଡା
ଯାକଙ୍କୁ କଲେ ନେଇ ଯମ-ପୁରେ ଛଡ଼ା ।
ଉତ୍ତମଓଜା ମହାରଥ ତ ବିରଥ
ହୋଇଲେ ଚଢ଼ିଲେ ସେ ଶିଖଣ୍ଡୀଙ୍କର ରଥ
କୃପଙ୍କର ବିରଥ ଶିଖଣ୍ଡୀ ଦେଖିଲେ
ଦୟାକରି ତାହାଙ୍କ ଯୁଦ୍ଧ ସେ ନ କଲେ ।
ଅଶ୍ୱତ୍ଥାମା ସେକାଳେ କୃପେ ନିଜ ରଥେ
ବସାଇଣ ଯୁଝିଲେ ଶିଖଣ୍ଡୀଙ୍କ ସାଥେ ।
ମଧ୍ୟାହ୍ନସୂର୍ଯ୍ୟ ପରି ଭୀମ ତେଜେ ଜଳି
ଦେଲେ ଭୁମ୍ଭ ସୈନ୍ୟଙ୍କୁ ଶର ମୁଖେ ଗିଳି
ଏହା କରି ସାରିଣ ଭୀମ ମହାବୀର
ସାରଥିକି ବୋଇଲେ ବାହ ରଥବର ।
କୁରୁସେନା ମଧ୍ୟକୁ କାହାକୁ ନ କହି
ଦେଖାଇବ ଆଜ ଟି ପରାକ୍ରମ ମୁହିଁ ।

ଭୀମଙ୍କର ବଚନ ସାରଥି ଘେନିଲା
କୁରୁସେନା ମଧ୍ୟରେ ରଥ ନେଇ ଗଲା ।
କୁରୁମାନେ ଭୀମକୁ ଦେଖି ଯୁଦ୍ଧଦାଣ୍ଡେ
ଧନୁ ଧରି ସାୟକ ପ୍ରହାରିଲେ ଚଣ୍ଡେ ।
ଭୀମ କୁରୁଙ୍କର କାଣ୍ଡକୁ କାଣ୍ଡେ କାଟି
ଗରଜନ କରିଲେ ମେଲିଦେଇ ପାଟି ।
ହାତୀ ରଥୀ ଘୋଡ଼ା ଭୀମଙ୍କ କାଣ୍ଡଘାଏ
ମହୀତଳେ ଲୋଟିଲେ ଜାଣ ନରସମୂହେ ।
ଭୀମ ବୃକ୍ଷ ମସ୍ତକ ଫଳେ ଲୋଭ ବହି
ଧାଇଁଲେ ଭୀଷ୍ମ ଯୋଦ୍ଧାମାନେ ଚୋର ହୋଇ
ଭୀମ ସେକାଳେ ଧରି ହୃଦେ ମହାରାଗ
କଲେ ଭୀଷ୍ମ ସେନା ମଧ୍ୟରେ ମହାବେଗ ।
ଭୀମଙ୍କ ଗର୍ଜନ ଅନାଇଁ ଭୀଷ୍ମ ସେନା
ମଲିଇଁ ବୋଲି ଡାକ ଦେଲେ ଭାଇ ନନା ।
ପବନ ବେଗେ ମେଘ ଉଡ଼ିବା ପରାୟେ
ଭୀଷ୍ମର ସେନାଯାକ ପଳାଇଲେ ସମୂହେ ।
ଭୀମ ସେହିକାଳରେ ସାରଥିକି ଚାହିଁ
ବୋଇଲେ ଦେଖ ପର ଆପଣା ଚିହ୍ନାଇ ।
ଯୁଦ୍ଧରେ ତ ମୂର୍ଚ୍ଛି ହେ ହୋଇଅଛୁ ମତ୍ତ
ଏଣୁ ତା ଜାଣି ପାରୁନାହିଁ ମୋର ଚିତ୍ତ ।
ଅର୍ଜୁନ ଯୁଧିଷ୍ଠିର ପାଶେ ଯାଇଛନ୍ତି
ଏବେଯାଏ ନ ଆସିଲେ କି ମୋର କତ ।
କେଉଁ କଥା ଅବା ହେ ପଡ଼ିଥିବ ତହିଁ
ଏହା ଭାବିବାରେ ମୋ ମନ ସୁଖ ନାହିଁ ।
ଯୁଧିଷ୍ଠିର ରାଜା ତ ଛାଡ଼ିଗଲେ ମୋତେ
ନ ଆସନ୍ତେ ଯୁଦ୍ଧକୁ ଥିଲେ କି ଜୀବତେ ।
ଶତ୍ରୁ ସୈନ୍ୟମାନଙ୍କୁ କଲେ ମୁଁ ବିନାଶ
ତେବେ ଅବା ହୋଇବ ମୋ ମାନସ ତୋଷ
ମୋର ରଥରେ କେତେ କାଣ୍ଡ ଏବେ ଛନ୍ତି
କହ ଏବେ ମୋତେ ବତାଇ ବହି ପ୍ରୀତି ।
ବିଶୋକ ବୋଇଲେ ହେ ଭୀମସେନ ଶୁଣ
କହିବି ଯେତେ ଛନ୍ତି ତୁମ୍ଭ ଶସ୍ତ୍ରଗଣ ।
ଛ ଅୟୁତ ଶର ଅୟୁତାୟୁତ କ୍ଷୁର
ଭଲ୍ଲ ଦୁଇସହସ୍ର ନାରାଚ ଛନ୍ତି ସାର ।
ଏ ବାହାରେ ତିନି ସହସ୍ର ଯେ ପ୍ରବର
ଆୟୁଧ ଅଛନ୍ତି ହେ ବୀରଙ୍କ ଶିଖର ।

ପ୍ରାସ ଖଡ୍‌ଗ ଶକ୍ତି ତୋମର ଅଗଣନା
ଅଛନ୍ତି ଜାଣ ଆହେ ଭୀମ ମହାମନା ।
ଆୟୁଧମାନେ ସରିଗଲେ ବୋଲି ଡରି
ନ ରହ ଆହେ ଭୀମ ଯୁଦ୍ଧରେ ଓହରି ।
ଭୀମ ବୋଇଲେ ହେ ମୋହର ପରାକ୍ରମ
ଦେଖ ଆଜ ମାରିବି ଯୁଦ୍ଧେ ନୃପଗ୍ରାମ ।
ଆଜ ଭୀମ ଯୁଦ୍ଧରେ ହୋଇବ ବା ହତ
ନୋହିଲେ ବା ଘେନିବେ ସବୁରି ଜୀବତ ।
ଏହି କଥାକୁ ମନେ ଭାବିଣ ସାରଥି
ବାହ ମୋହର ରଥ ନୋହି କରୁ ବ୍ୟଥୀ ।
ଅରଜୁନ ଯେବେ ଆସିବେ ଏହିକାଳେ
ଜୟ ହୋଇ ନ ପାରିବ ମୋ ବାହୁବଳେ ।
ପୁଣି ବୋଇଲେ ହେ ବିଶୋକ ଦେଖ ଦେଖ
ଅର୍ଜୁନ ଆସୁଛି କି ବନ୍ଧଣ ବିଶିଖ ।
ନୋହିଲେ କିମ୍ପା କୁରୁରଥୀଏ ପଳାଇ—
ଅଛନ୍ତି ଯୁଦ୍ଧଦାଣ୍ଡେ ପଛକୁ ନ ଚାହିଁ ।
ଶୁଣ ତ ହାହାକାର ଶୁଭୁଅଛି ରଡ଼
ନନ୍ଦା କରି ବ୍ରହ୍ମପ୍ରଳୟ ଘଡ଼ଘଡ଼ ।
ସାରଥି ବୋଇଲେ ଗାଣ୍ଡୀବଧନୁ ଘୋଷ
ଶୁଭୁଅଛି ହୋଇଣ ବଜ୍ରର ସଦୃଶ ।
ଅନେକ ଶର ପାଟି ବିସ୍ତାରି ଦେଇଛି
ଅର୍ଜୁନ ରଥଧ୍ୱଜ କପି ଦିଶୁଅଛି ।
ଅର୍ଜୁନ ଧ୍ୱଜ କପି ଗର୍ଜିବା ଭଙ୍ଗିରେ
ଧରନ୍ତି ସବୁ ପ୍ରାଣୀ ଭୟକୁ ଅଙ୍ଗରେ ।
ଅର୍ଜୁନଙ୍କ କିରୀଟମଣି ଝଟମଟ
ହୋଇ ଚହଟୁଅଛି ଯୁଦ୍ଧଭୂମି ବାଟ ।
ଦେଖ କୃଷ୍ଣଙ୍କ ପାଖେ ଚକ୍ର ରହିଛନ୍ତି
କୋଟି ସୂର୍ଯ୍ୟଙ୍କର କାନ୍ତିକି ସେ ଗଞ୍ଜନ୍ତି ।
ଅରଜୁନ ବାଣରେ ଛିଡ଼ି ହାତୀଶୁଣ୍ଢା
ମହୀତଳେ ପଡ଼ିଅଛନ୍ତି ଗଣ୍ଡା ଗଣ୍ଡା ।
ବିଜୟମାଳା ଭୁଲେ କଉସ୍ତୁଭମଣି
କୃଷ୍ଣଙ୍କର ବଢ଼ାଇଅଛି ଶୋଭାଶ୍ରେଣୀ ।
ଅରଜୁନ ମନ ପବନ ପରି ଗତି
କରି ଆସୁଛନ୍ତି ଯୁଦ୍ଧରେ ହେଇ ମତ୍ତ ।
ଚାରିଶ ରଥୀ ସପ୍ତଶତ ଦନ୍ତୀ ଅଶ୍ୱ
ପଦାତି ଅନେକଙ୍କୁ କଲାଣି ନାଶ ।

ଅରଜୁନ ଆସୁଅଛନ୍ତି ତୋଷ ବହି
ମାର ଶତ୍ରୁକୁଳ ତାଙ୍କ ସାହା ପାଇ ।
ଭୀମ ବୋଇଲେ ମୁହିଁ ତୁମ୍ଭର ବଚନେ
ମହାସନ୍ତୋଷକୁ ତ ଧଇଲଣି ମନେ ।
ଏ ଯୁଦ୍ଧର ଅନ୍ତେ ଚଉଦଗ୍ରାମ ତୁଲେ
ଶତ ଦାସୀ ତୁମ୍ଭଙ୍କୁ ଦେବ ମୁହିଁ ଭଲେ ।
ଏହା କହି ଉଚ୍ଚରେ କଲେ ଗରଜନ
କଣ୍ଠକୁ ଅନ୍ତ ମୋହ କରି ଭୀମସେନ ।
ଭୀମଙ୍କ ସିଂହନାଦ ଶୁଣି ଇନ୍ଦ୍ରସୁତ
ବୋଇଲେ ମୋର ରଥ ବାହା ହେ ଅଚ୍ୟୁତ
କୃଷ୍ଣ ବୋଇଲେ ହେ ଭୀମଙ୍କ ସମୀପକୁ
ବହୁଅଛି ଅର୍ଜୁନ ତୁମ୍ଭର ରଥକୁ ।
ଏହା କହି କୃଷ୍ଣ ବାହାନ୍ତେ ରଥବର
କୁରୁଏ କଲେ ଆସି ପାର୍ଥକୁ ସମର ।
ତୁମ୍ଭ ଲୋକ ତୁଲରେ ଅର୍ଜୁନଙ୍କ ରଣ
ସେହିକାଳେ ହୋଇଲା ହୋଇ ଅନ୍ତ ଠାଣ ।
କ୍ଷୁର ଅର୍ଦ୍ଧଚନ୍ଦ୍ର ଯେ ଭଲ୍ଲିକାଣ୍ଡ ବନ୍ଧ
ଦେଲେ ପାର୍ଥ ତୁମ୍ଭ ସେନାକୁ ଲଣେ ରୁନ୍ଧ ।
ବାହୁ ମସ୍ତକ ଉର ରଥ ଗଜ ଅଶ୍ୱ,
ଅରଜୁନ ଗାଣ୍ଡୀବ କାଣ୍ଡେ କଲେ ନାଶ ।
ମହାବ ତବଜା ପାଦପ ପ୍ରାୟେ ହୋଇ
ତୁମ୍ଭ ସୈନ୍ୟଯାକ ପଡ଼ିଲେ ଯୁଦ୍ଧେ ଶୋଇ
ଏରୂପେ ତୁମ୍ଭ ବଳ ମରଦ୍ଦ ଅର୍ଜୁନ
ବାହାରିଲେ କର୍ଣ୍ଣ ନିଧନେ ଦେଇ ମନ ।
ମଗର ସମୁଦ୍ରରେ ପଶିଲା ପରାଏ
ତୁମ୍ଭ ସୈନ୍ୟ-ସମୁଦ୍ରେ ପଶିଲେ ହେ ରାଏ
ତୁମ୍ଭ ଲୋକମାନେ ହୋଇଣ ଏକଗୋଟି
ପୁଣି ପାର୍ଥ ଦେଲେ ବିନ୍ଧିଲେ କୋଟି କୋଟି
ପ୍ରଳୟ ହେବାକାଳ ସିନ୍ଧୁ ଗରଜନ
ଗୋଟାକୁ ଜିଣିଗଲା ତୂଣ୍ଡ-ଶବ୍ଦ ଜାଣ ।
ଅର୍ଜୁନରେ ପୀଡ଼ା ପାଇଲେ ହେଲେ ସେନା
ଯୁଦ୍ଧ କଲେ ମାନସେ ନୋହିଣ ବିମନା ।
ବହୁସଂଖ୍ୟା ବାଣ ବିନ୍ଧିଣ ଅର୍ଜୁନ
ତୁମ୍ଭ ଲୋକଯକକୁ ଦେଲେ ଯମ ସ୍ଥାନ ।
ମହାରଥୀମାନେ ଅର୍ଜୁନ କାଣ୍ଡେ ଭୟ
ପାଇ ପଳାଇଲେ ଲଭିଣ ଦୁଃଖଚୟ ।

ତୁମ୍ଭ ରଥୀଙ୍କୁଁ ଘେଣିଣ ମହାରଥୀ
ଅରଜୁନ ମାଇଲେ ନୋହିକରି ବ୍ୟଥୀ ।
ତୁମ୍ଭ ସେନାଯାକ ପଳାନ୍ତେ ଧପଧାପ
ଶବ୍ଦ ଜାତ ହୋଇ କର୍ଣ୍ଣର କଲା ତାପ ।
ଏରୂପେ ସେନାଙ୍କୁ ଅର୍ଜୁନ ଶରେ ଜୀଳ
ବାହାରିଲେ କର୍ଣ୍ଣର ନିଧନକୁ ଭଳ ।
ଅରଜୁନଙ୍କ ଯିବା ଶବଦ ଗଜନ
ଶୁଣି ହେଲା ଆମ୍ଭମାନଙ୍କ ହୃଦ କମ୍ପ ।
ଭୀମ ଅର୍ଜୁନଙ୍କର ଆସିବାର ଜାଣି
ଆନନ୍ଦରେ ଫୁଲଇ ହେଲେ ସୋମଶ୍ରେଣୀ
ଅର୍ଜୁନଙ୍କର ପୃଷ୍ଠ ସାହା ପାଇ ଭୀମ
କଲେ କୁରୁମାନଙ୍କୁ ଉତ୍ତମ ସଂଗ୍ରାମ ।
ବାୟୁ ପରାଏ ଗଞ୍ଜକରି ବାୟୁପୁଅ
ଉଦ୍ଧ୍ୱରେ ଥରାଇଲେ କୁରୁଙ୍କର ଗାତ୍ର ।
ତୁମ୍ଭ ସେନ ଯାକ ପବନବଜା ନାବ
ପରାଏ ହେଲେ ଘୁଡ଼ ହୁଦୁଁ ପ୍ରାଣ ଭାବ ।
ଭୀମ ହସ୍ତଲାଘବ ଦେଖାଇ ସେକାଳେ
ଧୈଥ ଇଲେ ଶର ଜାଣି ଶତ୍ରୁକୁଳ ଗଲେ ।
ଭୀମଙ୍କ ଅମାନୁଷ ବଳ ନେତ୍ରେ ଦେଖି
କୁରୁମାନେ ଭୟରେ ବୁଜିଦେଲେ ଆଖି ।
କୁରୁଙ୍କ ପୀଡ଼ା ଜାଣି ଦୁର୍ଯ୍ୟୋଧନ ବୀର
ବୋଇଲେ ବେଢ଼ି କରି ଭୀମକୁ ସଂହାର ।
ଭୀମ ମଲେ ଯେ ପାଣ୍ଡୁସେନାଏ ମରିବେ ।
ହସ୍ତିନାରେ ଯାଇ ବସିବା ସୁଖେ ସର୍ବେ ।
ଏରୂପେ ଶୁଣି ଦୁର୍ଯ୍ୟୋଧନଙ୍କ ବଚନ
ତୁମ୍ଭ ଲୋକେ କଲେ ଭୀମଙ୍କୁ ଆୟୋଧନ ।
ରଥୀ ହାତୀ ପଦାତି ବେଢ଼ିଣ ଭୀମଙ୍କୁ
ବିନ୍ଧିଲେ ବାଛି ବାଛି ଉତ୍ତମ ଶରକୁ ।
ମାଛ ଜାଲ ବଦାରି ବାହାରିବା ପ୍ରାୟେ
ବାହାରି ସେନାମଧ୍ୟୁ ଭୀମ ବୀରରାଏ ।
ଶଏ ରଥ ଦୁଇଶ ଦୁଇଲକ୍ଷ ପତ୍ତି
ସହସ୍ର ପାଞ୍ଚ ଅଶ୍ୱ ସହସ୍ରଦଶ ହାତୀ ।
ମାରିଣ ଯୁଦ୍ଧଦାଣ୍ଡେ ଭୀମ ମହାମନା
ରକତ ନଦୀଟାଏ କଲେ ସରଜନା ।
ହସ୍ତୀ ଗ୍ରାହ ରଥ ଆବର୍ତ୍ତ ଯେ ଚକ୍ରର
ଶୈବାଳ ପାଗ ଫେନ ମସ୍ତକ ପଥର ।

ଛିନ୍ନଧ୍ୱଜ, ତୁରଗ, ମଜ୍ଜା ପଙ୍କ, ଶର
ଭେଳା, ଛତ୍ର ଫେଣ, ହଂସ ଚକ୍ର ନର ।
ଏରୂପେ ସେ ନଦୀ ପ୍ରବର୍ତ୍ତି ରଣଦାଣ୍ଡେ
ଭୟକୁ ଯୁଆଇଲ ଯୋଦ୍ଧାଜନ ପିଣ୍ଡେ ।
ଯେଉଁ ଯେଉଁ ଦେଶେ ହୁଅନ୍ତି ଭୀମ ଛୁଡ଼ା
ପୁଡ଼ଯାଏ ଗଜନ କୁଡ଼ କୁଡ଼ ମଡ଼ା ।
ଦୁର୍ଯ୍ୟୋଧନ ବୋଇଲେ ଶକୁନିକ ଗୁହିଁ
ଭୀମକୁ ଯାଇ ମାର ମୋ ପାଖେ ନ ରହି ।
ଶକୁନି ସଙ୍କଟରେ ଯେନ ଭାଇକୁଳ
ବାହାରିଲେ ଭୀମଙ୍କୁ କରିବାକୁ ଗେଳ ।
ବେଳା ପ୍ଲାବିବାରକୁ ଜିବାରଲ୍ତ ପର
ଶକୁନି ଦେଲେ ଯୁଦ୍ଧେ ଭୀମଙ୍କୁ ନିବାର ।
ଭୀମ ଶକୁନିକ ଟି ବଳିବାକୁ ରଣେ
ମୋହିଲେ ହେ ରାଜନ ଜାଣ ବାଡ଼ିଠାଣେ ।
ଶକୁନି ଭୀମଙ୍କର ହୃଦୟ ମଧ୍ୟକୁ
ବିନ୍ଧିଲେ କାଣ୍ଡମାନ ଦେଖାଇ ଶକ୍ତିକୁ ।
ସେ କାଣ୍ଡେ ସର୍ପପରି ଭୀମଙ୍କ କବଚ
କାଟି ହୃଦ ପେଡ଼ାରେ ରହିଲେ ସେ ସଞ୍ଚ ।
ଭୀମ ଯେ ଶକୁନିଙ୍କ ସୁନାଭିଷା କାଣ୍ଡ
ବିନ୍ଧିଲେ କମ୍ପାଇଣ କରର ଢୋଦଣ୍ଡ ।
ଶକୁନି ଭୀମଙ୍କର କାଣ୍ଡଟିକ ଦେଖି
ସାତଖଣ୍ଡ କଲେ କାଣ୍ଡରେ ହୋଇ ସୁଖୀ ।
ଭୀମ ତାହା ନ ସହି ଭଲକାଣ୍ଡେ ଧନୁ
ଶକୁନିର କାଟିଲେ ଧରି ହୃଦେ ମନୁ ।
ଶକୁନି ଆନ ଧନୁଟାଏ କରେ ବହି
ଷୋଳ ଭଲକାଣ୍ଡ ବିନ୍ଧିଲେ ନରସାଇଁ ।
ଷୋଳ କାଣ୍ଡେ ଫିଟି ଶକୁନି ହାତୁଁ ସୃଣ୍ଡେ
ଗମିଲେ ନିର୍ବିବାଦ ହୋଇ ଯୁଦ୍ଧଦାଣ୍ଡେ ।
ଧ୍ୱଜ ଛତ୍ର କାଟି ସାରଥି ଅଶ୍ୱପୀଡ଼ା
ଭଲ ଦେଖାଇଲେ ଯୁଦ୍ଧରେ ଭୀମ କ୍ରୀଡ଼ା ।
ଭୀମ କ୍ରୋଧ ହୋଇଣ ସୁନା ମଣ୍ଡା ଶକ୍ତି
ଫିଙ୍ଗିଲେ ଶକୁନି ଯିବାକୁ ଯମ ଭଣ୍ଡ ।
ସେ ଶକତ ପଡ଼ିଲା ଶକୁନିର ରଥେ
ଶକୁନି ତା ପୁଣି ଫିଙ୍ଗିଲେ ଧରି ହାତେ ।
ଭୀମଙ୍କର ବାହୁଭୂଜକ ଯେ କନକ
ରତ୍ନ ମେଶକତ ମହୀତଳେ ଗଳ ।
ଧୃତରାଷ୍ଟ୍ର ସେନାଏ ତା ଦେଖି ହସିଲେ
ଭଲ ଛନ୍ତି ଶକୁନି ବୋଲି ପ୍ରଶଂସିଲେ ।
ଭୀମ କୋପ ହୋଇ ଧନୁକୁ କରେ ବହି
ସାତ୍ୟକମୁନେ ଦେଲେ ଶକୁନିଙ୍କି ଗୁହି ।
ଶକୁନିର ଧ୍ୱଜ ଛତ୍ରକୁ ଯେ କାଟିଲେ
ଘୋଡ଼ା ସାରଥିଙ୍କର ଜୀବନକୁ ନେଲେ ।
ଶକୁନି ସତ୍ୱରେ ରଥ ଛାଡ଼ି ତଳେ ଉଭା
ହୋଇଣ ହେଲେ ଧନୁ ପରଧିରେ ଶୋଭା ।
ଶର କିରଣକୁ କରିଣ ପରକାଶ
ବାଡ଼ିଲେ ସେ ହୃଦ ମଧ୍ୟରେ ଭୀମ ନାଶ ।
ଭୀମ ଶକୁନିଙ୍କର ଧନୁକୁ କାଟିକରି
ବିନ୍ଧିଲେ ଶକୁନିକ ଧନୁକୁ ଓଁଠାର ।
ଭୀମ କାଣ୍ଡେ ବ୍ୟଥା ପାଇଣ ଭୂମ ଶଳା
ପଡ଼ିଲେ ସ୍ୱପ୍ନେ ଜୀବନରେ କରି ହେଳା ।
ଭୂମ ରଥ ଦେଖି ମାମୁଁଙ୍କୁ ରଥେ ଥୋଇ
ପଳାଇଲେ ସୈନ୍ୟ ମଧ୍ୟକୁ ନରସାଇଁ ।
ତା ଦେଖି ଭୂମ ସୈନ୍ୟମାନେ ଯୁଦ୍ଧମୁଖ
ଛାଡ଼ି ଦେଇ ଭାଙ୍ଗିଲେ ପୋଡଦେଇ ମୁଖ ।
ଭୀମ ଭୂମର ସୈନ୍ୟମାନଙ୍କୁ ଗୋଡ଼ାଇ
ବୋଇଲେ ରହ ରହ କରିବା ଲଢ଼ାଇ ।
ଭୂମ ସଇନ୍ୟଯାକ ଭୀମଙ୍କର ଭୟେ
ରଖ ବୋଲି ପଡ଼ିଲେ କର୍ଣ୍ଣଙ୍କର ପୋଏ ।
କର୍ଣ୍ଣ ବୋଇଲେ ହେ ନ ଡ଼ର ଭୂମେକେହି
ଭୀମ ଅର୍ଜୁନଙ୍କୁ ମାରିବ ଆଜ ମୁହିଁ ।
ଏ ବଚନ ଚନ୍ଦ୍ର ହୋଇଣ ଉଦେ ହେଲା
ଯୋଦ୍ଧାଙ୍କ ଆନନ୍ଦ କୁମୁଦ ପ୍ରକାଶିଲା ।
ଧୃତରାଷ୍ଟ୍ର ବୋଇଲେ ମୋର ସୈନ୍ୟଯାକ
ଭାଙ୍ଗିଲେ ତ ବାଜନ୍ତେ ଭୀମଙ୍କ ସାୟକ ।
ଦୁର୍ଯ୍ୟୋଧନ ଶକୁନି କର୍ଣ୍ଣ ଦେଖିକରି
କ ଉତ୍ତର କଲେ ତା କହ ତ ବିସ୍ତରି ।
ଏକାହୋଇ ଭୀମ ମୋ ସୈନ୍ୟ ସିନ୍ଧୁ ମଧ୍ୟେ
ଚହଟିଲେ ମଗର ପ୍ରାୟେ ହୋଇ କ୍ରୋଧେ ।
ଏହି କଥା ମୁହିଁ ମଣୁଛି ଚମତ୍କାର
ନାହାନ୍ତି କ ମୋ ସୈନ୍ୟେ ତାଙ୍କପରି ବୀର ।
କର୍ଣ୍ଣ ବୋଲୁଥିଲେ ମାରିବ ପାଣ୍ଡବଙ୍କୁ
ଏତେବେଳେ କମ୍ପା ଲାଗିଲେ ମନକୁ ।

ସଞ୍ଜୟ ବୋଇଲେ ପହର ଖଣ୍ଡ ବେଳ
ହୋଇଥିଲା ସଂଗ୍ରାମ କରିବା କାଳେ ଶୈଳ ।
କର୍ଣ୍ଣ ମଧ୍ୟ ସେକାଳେ ଦେଖାଇ ବଳକୁ
ସୁହୃଁ ଥିଲେ ସଂଗ୍ରାମ ମାଇଲେ ସେମାନଙ୍କୁ ।
ଭୀମ ଯେ ସେତ୍ବରୂପେ କର୍ଣ୍ଣଙ୍କର ଆଗେ
ମାଇଲେ କୁରୁସୈନ୍ୟ ଯାକକୁ ଅଶୁଭେ ।
କର୍ଣ୍ଣ ତା ଦେଖିକରି ବୋଇଲେ ଶଲ୍ୟଙ୍କୁ
ବାହ ତ ମୋ ରଥ ପାଞ୍ଚାଳ ସଇନକୁ ।
ଶଲ୍ୟ ତାହା ଶୁଣି ଶୁକଳ ଶ୍ବେତଘୋଡ଼ା
ପାଞ୍ଚାଳସୈନ୍ୟ ମଧ୍ୟେ ଯାଇ କଲେ ଛଡ଼ା ।
ପାଞ୍ଚାଳମାନେ କର୍ଣ୍ଣ ଆସିବାର ଦେଖି
ଭୟ ଜଳେ ବୁଡ଼ିଲେ ବୁଜ ବେନି ଆଖି ।
ପର୍ବତ ଫାଟିଲା ପରାୟେ ରଥ ଘୋଷ
ଶୁଭିଲା କର୍ଣ୍ଣଙ୍କ ସୈନ୍ୟରେ ନିରନ୍ତର ।
ତୀକ୍ଷ୍ଣକାଣ୍ଡଙ୍କରେ କର୍ଣ୍ଣ ମହାମନା
କଲେ ପାଣ୍ଡୁସୈନ୍ୟଙ୍କୁ ଯୁଦ୍ଧରେ ଦମନା ।
ନକୁଳ ସହଦେବ ଭୀମ ଧୃଷ୍ଟଦ୍ୟୁମ୍ନ
ସାତ୍ୟକ ଦ୍ରୌପଦେୟ ଶିଖଣ୍ଡୀ ଅଯୋଧନ
ଦଣ୍ଡେ ରଥ ଧ୍ବଜ ଆଉ କର୍ଣ୍ଣ ପାଶେ ଆସି
ବିନ୍ଧିଲେ କାଣ୍ଡମାନ ହୋଇ ଅତି ରୋଷୀ ।
ସାତ୍ୟକ କର୍ଣ୍ଣଙ୍କ କାନ୍ଧକୁ କୋଡ଼ିଏଟି
ମାରଗଣ ବିନ୍ଧିଲେ ଭିଡ଼ି ଧନୁ ମୁଷ୍ଟି ।
ଧୃଷ୍ଟଦ୍ୟୁମ୍ନ ତିନି ସାତ ପଚିଶି ଶିଖଣ୍ଡୀ
ନକୁଳ ଶଏ ବାଣ ବିନ୍ଧିଲେ ଦଣ୍ଡି ।
ଭୀମ କ୍ରୋଧ ହୋଇ କର୍ଣ୍ଣକୁ ନଉକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
କର୍ଣ୍ଣ ଏ ରଥୀଙ୍କର ଦେଖି ଶରମାଳା
ବିନ୍ଧିଲେ ପାଞ୍ଚ ପାଞ୍ଚ କାଣ୍ଡ କରି ହେଳା ।
ସାତ୍ୟକଙ୍କର ଧ୍ବଜ ଧନୁକୁ କାଟିଲେ
ସୂତବେଟା ଆନନ୍ଦେ ଦେହ ମୋଟା କଲେ ।
ପାଞ୍ଚାଳ ଚେଦି ମହାରଥୀଙ୍କି ବାହାରେ
ମାଇଲେ କର୍ଣ୍ଣଙ୍କର ନ ଡ଼ର କାହାରେ ।
ତା ଦେଖି ମତ୍ସ୍ୟମାନେ ହୋଇସାଇ ଗୋଟି
ବିନ୍ଧିଲେ କର୍ଣ୍ଣ ଦେହେ ଶର କୋଟି କୋଟି ।
କର୍ଣ୍ଣ ସେ ମତ୍ସ୍ୟଙ୍କର ବେଢ଼ଣା ଘଗଣ
ଗର୍ଜ୍ଜିଲୁଟାଏ କଲେ କରି ଅଣ୍ଡ ଖାଣ ।

ଏକା ହୋଇଣ କର୍ଣ୍ଣ ପାଣ୍ଡବ ବଳକୁ
ଯୁଝିଲେ ଛାଡ଼ିଦେଇ ମରଣ ଭୟକୁ ।
ଧୃତରାଷ୍ଟ୍ରପୁଏ କର୍ଣ୍ଣଙ୍କ ବଳ ଦେଖି
ଆଛାଛନ୍ତି ବୋଲି ବୁଜିଲେ ସୁଖେ ଆଖି ।
ଜଳନ୍ତା ଅଗ୍ନିପରି କାଣ୍ଡ ଶରଗଣ
ପୋଡ଼ିଦେଲେ ପାଣ୍ଡବସୈନ୍ୟ ତୃଣବନ ।
କର୍ଣ୍ଣକୁ ଦେଖିକରି ପାଣ୍ଡବସେନାଏ
ନ ରହିଲେ ସେ ଯୁଦ୍ଧଦାଣ୍ଡରେ ଗୋଟାଏ ।
କର୍ଣ୍ଣଙ୍କୁ ସେହିକାଳେ ସୁହୃଁବାର ନର
ମାନଙ୍କର ନୟନ କରିଦେଲା ଦୂର ।
ପାଣ୍ଡବ ସୈନ୍ୟଯ କ କର୍ଣ୍ଣ ବାଣଘାଏ
ତରସ୍ତ ହୋଇଗଲେ ଯୁଦ୍ଧରେ ହେ ରାୟେ ।
ମହାରଥୀମାନଙ୍କ କାଟିକରି ମୁଣ୍ଡ
ଗଡ଼ାଇ ଦେଲେ କର୍ଣ୍ଣ ଯୁଦ୍ଧଭୂମି ଦାଣ୍ଡ ।
ରଥ ଧ୍ବଜ ପତାକା ଟିକ ଟିକ କରି
କାଟିଲେ ମଧ୍ୟ ଯୁଦ୍ଧେ କର୍ଣ୍ଣ ଶର ମାରି ।
ଏ ବାହାରେ ଯେ ହାତୀ ଘୋଡ଼ାଙ୍କର ପ୍ରାଣ
ନେଇ ପଳାଇଲେ ସେ ବିନ୍ଧ ବିନ୍ଧ ବାଣ ।
ହାତୀ ଘୋଡ଼ା ମଡ଼ାରେ ମହୀ ଛାଇ ହୋଇ
ବୁହି ଇଲା ରକ୍ତ ନଦ ଏ ମହୀଯାଇ ।
କର୍ଣ୍ଣଙ୍କର ଅସ୍ତ୍ରରେ ହୁଅନ୍ତେ ଅନ୍ଧ ରଙ୍କ
ପର ଆପଣାକୁ ସେ ନ ଚହ୍ନିଲେ ନର ।
କର୍ଣ୍ଣ କାଣ୍ଡ ସିଂହ ପାଣ୍ଡବସୈନ୍ୟ କରି—
ଦ୍ବୟା କମ୍ପାଇଲା ହେ ଜାଣ ଦଣ୍ଡଧାରୀ ।
ପଶୁଙ୍କୁ ବାଘ ବନେ ଖେଦିଦବା ପ୍ରାୟେ ।
କ୍ଷେଦିଲେ କର୍ଣ୍ଣ ପାଣ୍ଡୁସୈନ୍ୟେ କାଣ୍ଡଘାଏ
ଅର୍ଜ୍ଜୁନ ବାଘ ନ ଥିବାରୁ କର୍ଣ୍ଣ ମୃଗ
ନାଶ କଲେ ନଗ୍ନଇ କରି ବାଣ ଶୃଙ୍ଗ ।
ଭୁମ୍ବର ସେନାମାନେ କର୍ଣ୍ଣରେ ବିମୁଖ
ପାଣ୍ଡବ ସେନା ଦେଖି ଲଭିଲେ କ ସୁଖ ।
ଦୁର୍ଯ୍ୟୋଧନ ଆନନ୍ଦ ହୋଇ ଗୁଡ଼ ତୁରେ
ବାହାରିଲେ ବାହା ବେନକ ସୁହୃଁକରି ।
ଲୋକଙ୍କୁ ବୋଇଲେ ରେ ବଜା ବାଇଦକୁ
ଦେଖୁଛ ତ ଆଖିରେ କର୍ଣ୍ଣ ବିଜୟକୁ ।
ପାଞ୍ଚାଳମାନେ କର୍ଣ୍ଣ ଯୋଗୁ ଭାଜିଥିଲେ
ନୁହଇ ଏହୁ ଧର୍ମ ବୋଲି ପାଳଟିଲେ ।

କର୍ଣ୍ଣ ପାଞ୍ଚାଳଙ୍କର ଲେଉଟିବା ଜାଣି
ଧନୁ ମଧ୍ୟେ ସନ୍ଧି ବିନ୍ଧିଲେ ଶରଶ୍ରେଣୀ ।
କର୍ଣ୍ଣ କ୍ରୋଧ ହୋଇ ପାଞ୍ଚାଳ ମହାରଥ
କୋଡ଼ିଏ କରିଦେଲେ ଯମଙ୍କର ସାଥ ।
ସୁଶର୍ମ ଚେଦିଙ୍କର ପରାଣକୁ ଘେନ
ଗରଜନ କଲେ ଯୁଦ୍ଧରେ ନୋହି ଭିନ୍ନ ।
ମଧ୍ୟାହ୍ନ ସୂର୍ଯ୍ୟ ପରି ପ୍ରକାଶିଣ ତେଜ
ଭଙ୍ଗିଲେ ପାଣ୍ଡୁସଇନଙ୍କ ତେଜ ଓଜ
କାଳଦେବ ପରି ସେ ସେମାନଙ୍କୁ ମାରି ।
ରହିଲେ ଯୁଦ୍ଧଦାଣ୍ଡେ କର୍ଣ୍ଣ ଅସ୍ତ୍ର ଧରି ।
ପାଞ୍ଚାଳମାନେ ବଡ଼ ପରାକ୍ରମ କଲେ
ମଲେ ହେଲେ କର୍ଣ୍ଣକାଣ୍ଡରେ ଯେ ଯୁଝିଲେ
ଶକୁନି ଦୁର୍ଯ୍ୟୋଧନ କୃପ ଅଶ୍ୱତ୍ଥାମା
ପାଣ୍ଡବସେନାଙ୍କର ଭଙ୍ଗିଲେ ଗରିମା ।
କର୍ଣ୍ଣଙ୍କର ଦୁଇପୁଅ ଯେ ପାଞ୍ଚାଳଙ୍କୁ
ମାଇଲେ ହେ ବହୁ ଉତ୍ତମ ମାର୍ଗଣକୁ ।
ଦ୍ରୌପଦେୟ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ବୀର
କଲେ କୁରୁଙ୍କର ବଳଯାକଙ୍କୁ ସଂହାର ।
ଏରୂପେ କୁରୁ ପାଣ୍ଡୁ ସଇନର କ୍ଷୟ
ହୋଇଲା ସେହିକାଳେ ରାଜନ ଉଦୟ ।
ଅର୍ଜୁନ ଗାଣ୍ଡୀବଧନୁକୁ କରେ ଧରି
ଦେଲେ କୁରୁଙ୍କର ଚତୁରଙ୍ଗକୁ ସଂହାରି ।
ଏହି ସକାଶୁଁ ମହାନଦୀଟିଏ ଜାତ
ହୋଇଲା ରକତରେ ରଣ ମଧ୍ୟଗତ ।
ମାଂସ ମଜ୍ଜା ପଙ୍କଟି ହାର, ପଦ୍ମାକର
ପାଗ, ଫେନ ଛତ୍ର, ହଂସ ମୀନ ଯେ ଶର
ଏମାନଙ୍କେ ସେ ନଦୀ ମହତ ଆକୁଳ
ହୋଇଣ ଭସାଇଲା ମଡ଼ା କାଠକୁଳ ।
ଏହା କରି ସାରିଣ ଧାନୁକୀ ଚୂଡ଼ାମଣି
ଅରଜୁନ କହିଲେ ଶ୍ରୀକୃଷ୍ଣଙ୍କୁ ବାଣୀ ।
ଦେଖ କର୍ଣ୍ଣ ଧ୍ୱଜ ଦିଶୁଛି ମୋ ନେତ୍ରକୁ
ଭୀମ ଯୁଦ୍ଧ କରୁଅଛନ୍ତି ଟି ତାହାଙ୍କୁ ।
ପାଞ୍ଚାଳମାନେ କର୍ଣ୍ଣ କାଣ୍ଡକୁ ନ ସହି
ପଳାଇ ଆସୁଛନ୍ତି ଯୁଦ୍ଧୁଁ ଚୋର ହୋଇ ।
ଶ୍ୱେତଛତ୍ର ଟେକାଇ ସୁଯୋଧନ ନନ୍ଦା
ଧାଇଁଛନ୍ତି ଯୁଦ୍ଧରେ ନୋହିଣ ବିମନା ।

କୃପ କୃତବରମା ଦ୍ରୋଣଙ୍କ ନନ୍ଦନ
ଅଛନ୍ତି ରହି ସୁଯୋଧନ ସନ୍ନିଧାନ ।
ଏହିକ୍ଷଣି ଯେବେ ମୁଁ ଏହାଙ୍କୁ ସଂହାର
ନ କରିବି ତେବେ ମରିବେ ସୈନ୍ୟମୋର
ଶଲ୍ୟ ରଥରେ ବସି କର୍ଣ୍ଣଙ୍କ ରଥକୁ
ବାହୁଛନ୍ତି ଦେଖାଇ ନିଜ ଲାଘବକୁ ।
କର୍ଣ୍ଣଙ୍କୁ ନ ମାଇଲେ ଆଜ ମୁହିଁ ରଣ
ଛାଡ଼ ନାହିଁ ଜାଣ ହେ ଯଦୁକୁଳ ରାଣ ।
କର୍ଣ୍ଣଠାକୁ ମୋହର ରଥ ନିଅ ବାହି
ତା ସଙ୍ଗେ କରିବି ମୁଁ ମହତ ଲଢ଼ାଇ ।
ଏହା ଶୁଣିଣ କୃଷ୍ଣ ବାହିଲେ ରଥକୁ
ହେ ନୃପବର ଭୀମ ସଇନ ମଧ୍ୟକୁ ।
ଯିବାବେଳେ ପାଣ୍ଡବସୈନ୍ୟଙ୍କୁ ଗୋବିନ୍ଦ
କହିବାରେ ତାଙ୍କର ହୋଇଲା ଆନନ୍ଦ ।
କସଟି ବାଣକୋଟି ପାଇ ମୁଣ୍ଡ କୋଟି
ମହୀତଳେ ଗଡ଼ିଲେ ମେଳଦେଇ ପାଟି ।
ଶଲ୍ୟ ବୋଇଲେ ଆହେ ଦେଖ କର୍ଣ୍ଣବୀର
ଆସୁଛି ତୁମ୍ଭଠାକୁ ପାର୍ଥ ଧନୁର୍ଦ୍ଧର ।
ତୁମ୍ଭେ ତ ଯୁଦ୍ଧ କରି ଯାଙ୍କୁ କର ଲୋଡ଼ା
ସେ ଅର୍ଜୁନ ଏବେ ହେଉଛି ଆଗେ ଛିଡ଼ା ।
ଆଜ ଯେବେ ତୁମ୍ଭେ ପାରିବ ତାଙ୍କୁ ମାରି
ତେବେ ବୋଲାଇବ ଟି ମର୍ତ୍ତ୍ୟେ ଦଣ୍ଡଧାରୀ ।
ଅର୍ଜୁନ ବାଣ ପାଇ ତୁମ୍ଭ ସେନାଗଣ
ପଳାଉଛନ୍ତି କର୍ଣ୍ଣ ହୋଇ ରଣଭଙ୍ଗ ।
ଅରଜୁନ ତୁମ୍ଭଙ୍କୁ ଦେବାକୁ ବଢ଼ାଇ
ଜାଣୁଛି ଆଜଟି ଆସୁଛି ଚୋର ହୋଇ ।
ତୁମ୍ଭ ବିନା ଆଜ କାହାକୁ ସମର
ନ କରିବା ପରି ପାଉଛି ମନ ମୋର ।
ଯୁଧିଷ୍ଠିର ନୃପେ ଦେଇଛ ଯେତେ ଦୁଃଖ
ପାର୍ଥ ତା ଶୁଝାଇବ ବିନ୍ଧିଣ ବିଶିଖ ।
ତୁମ୍ଭର ବିନା ଅର୍ଜୁନଙ୍କୁ ଆନ ଲୋକ
ଯୁଝିଲେ ଜାଣୁଛି ପାଇବ ପରଲୋକ ।
ଅସହାୟ ହୋଇ ଆସୁଛି ପାର୍ଥ ଧାଇଁ
ପାରିଲେ ମାରି ହାତସୁଖେ କହୁଥାଇ ।
ଭୀଷ୍ମ ଦ୍ରୋଣ ସମାନ ତୁହିଲେ ଧନୁର୍ଦ୍ଧର
ଏବେ ଯୁଦ୍ଧ କରି ଦୁର୍ବ୍ବିଜ ସଂହାର ।

ରାଜାମାନଙ୍କର ଭୟହରନାଶ କାରୀ
ହେବାକୁ ତୁମ୍ଭ ବିନା ଆନକୁ ନ ହେରି ।
ଦୁର୍ଯ୍ୟୋଧନ ତୁମ୍ଭ ବାହାକୁ କରି ଆଶା
ବୋଲୁଅଛି ଭୋଗ କରିବ ମୁହିଁ ରସା ।
ନଗ୍ନଜିତ କାମ୍ବୋଜ ଅମ୍ବଷ୍ଠ ଗାନ୍ଧାର
ବୈଦେହ ଆଦି ଶୂରମାନଙ୍କୁ ସଂହାର ।
କରିଅଛ ତୁମ୍ଭେ ପୂର୍ବରେ ଯେଉଁରୂପେ
ଏବେ ଅର୍ଜ୍ଜୁନଙ୍କୁ ମାରି ହେ ସେହିରୂପେ ।
କର୍ଣ୍ଣ ବୋଇଲେ ଆହେ ଶଲ୍ୟ ମୋର ହିତ
ଏତେବେଳସରିକି ଆସି କହିଲ ତ ।
ଅର୍ଜ୍ଜୁନଠାରେ ତୁମ୍ଭ ଯେଉଁ ଭୟ ଥିଲା
କହ ତ ଏବେ କି ସେ ମଙ୍କା ଛାଡ଼ି ଗଲା ।
ଆଜି ଦେଖ ମୋହର ଏ ବାହୁଯୁଗଳ
ଭାଙ୍ଗିବେ ଯୁଦ୍ଧେ ଦୁଇ କୃଷ୍ଣଙ୍କର ବଳ ।
ସେ ଦୁହେଁ ଅବା ଆଜି ଯୁଦ୍ଧେ ମୋତେମାରି
ଯେଉଁ ପିଇବେ ମହାସୁଖରେ ଜୟ ଶିରୀ ।
ଶଲ୍ୟ ବୋଇଲେ ଆହେ କୃଷ୍ଣଙ୍କରେ ରକ୍ଷିତ
ହେଉଛି ଅରଜୁନ ଜଣିବ ଜଗତ ।
ତୁମ୍ଭେ ତାଙ୍କୁ କିରୂପେ ପାରିବଟି ମାରି
ତୁଚ୍ଛା କଥାଗୁଡ଼ା କହୁଛ ନ ବିଚାରି ।
କର୍ଣ୍ଣ ତାହା ଶୁଣି ବୋଇଲେ ଶଲ୍ୟରଥୀ
ଦେଖ ମୋ ଯୁଦ୍ଧ ପଛେ ହେବ ତୁମ୍ଭେବ୍ୟଥୀ
କୁରୁରାଜପୁତ୍ର ଅର୍ଜ୍ଜୁନକାଣ୍ଡେ ମୁହିଁ
ମରେ ତୁମ୍ଭେମାନେ ମରିବ କହୁଥାଇଁ ।
ମୁଁ ଥିବାଯାକ ତୁମ୍ଭ ଦମ୍ଭ ରହିଅଛି
ଜାଣ ଏବେ ହେ ଶଲ୍ୟ ମଦ୍ରନୃପ ବରି ।
ବାନ୍ଧିଲାବେଳେ ଅରଜୁନ ଶରଧାଡ଼ି
ହସ୍ତ ଯେ ଦେଇଥାଏ କମ୍ପ ସ୍ୱେଦ ଛାଡ଼ି ।
ବାନ୍ଧିଲେ ଶତକାଣ୍ଡ ଏକ କାଣ୍ଡ ପରି
ମଣନ୍ତି ବୀରମାନେ ନୟନରେ ହେରି ।
କୋଟିଶ ପରିଯନ୍ତେ ତାଙ୍କର କାଣ୍ଡ ଯାଏ
ଗଜ ଅଶ୍ୱ ନରଙ୍କ ମୁଣ୍ଡ କାଟିଦିଏ ।
ଯେଉଁ ଅରଜୁନ ହେ ଦହିଣ ଖାଣ୍ଡବ
ଭାଙ୍ଗି ପକାଇଦେଲେ ଇନ୍ଦ୍ରଙ୍କ ଗରବ ।
ତାହାଙ୍କୁ ଜିଣିବାକୁ ଏ ମହୀରେ ମୁହିଁ
ବୀର ଥିଲି ପରି କାହାକୁ ଦେଖୁ ନାହିଁ ।

କାଳକେୟ ନିବାତକବଚଙ୍କ ପ୍ରାଣ
ଯେ ହରିଲେ ତାଙ୍କୁ ପାରେ କେ କରି ରଣ
ପାଶୁପତ ଆଦି ଦେବଙ୍କ ଅସ୍ତ୍ରଗଣ
ଅର୍ଜ୍ଜୁନଠାରେ ରହିଛନ୍ତି ଶଲ୍ୟ ଜାଣ ।
ବିରାଟ ନଗରେ ଆମ୍ଭଙ୍କୁ ରଣେ ଜିଣି
ନେଇଗଲେ ବସ୍ତ୍ର ତୁଳରେ ଗାଣ୍ଡିବୀ ।
କ୍ଷତ୍ରି ସ୍ୱଧର୍ମ ଆଶ୍ରେ କରିବାରୁ ତାଙ୍କୁ
ଯୁଝିବି ବୋଲୁଅଛି ଧରିଣ ରାଗକୁ ।
ଶଙ୍ଖ ଚକ୍ରଧାରୀ ସେ ବସୁଦେବ ସୁତ
ଦେବଙ୍କ ଉପରେ ଅତ୍ୟନ୍ତ ଦଇବତ ।
ତାହାଙ୍କୁ ଜିଣିବାକୁ ଏ ତ୍ରିଲୋକରେ
ବୀର ଅଛି ବୋଲିବ କେ ଅବା ମୁଖରେ ।
ଧନୁର୍ଦ୍ଧରମାନଙ୍କେ ଅର୍ଜ୍ଜୁନ ଗରିଷ୍ଠ
ଅସ୍ତ୍ର ଯୋଦ୍ଧାଙ୍କରେ ଅତ୍ୟନ୍ତ କୃଷ୍ଣ ଶ୍ରେଷ୍ଠ ।
ଏ ଦୁହେଁ ତ ଏକା ରଥରେ ବସିଛନ୍ତି
ଏଣୁ ଡରୁଅଛି ଯୁଦ୍ଧରେ ମୋର ମତି ।
ହିମାଳୟ ହେଲେ ତ ଉପାଡ଼ି ହୋଇବ
କୃଷ୍ଣ ଅର୍ଜ୍ଜୁନଙ୍କୁ ଜିଣିବା କଷ୍ଟ ହେବ ।
ପାର୍ଥ ତୁଳେ ଯୁଝିବି ଯାହା ମନୋରଥ
କରୁଥିଲି ସେ ଟି ହେଉଛି ଆସି ସାର୍ଥ ।
ଏହା କହି ଶଲ୍ୟଙ୍କୁ ଜୟଧନୁବାହା
ଗର୍ଜ୍ଜିଲେ ଯୁଝିବାକୁ କରିଣ ଉତ୍ସାହ ।
ଦୁର୍ଯ୍ୟୋଧନ ରାଜାଙ୍କୁ ବୋଇଲେ ସୈନ୍ୟଙ୍କୁ
ଆଜ୍ଞା ଦିଅ ମାରନ୍ତୁ ଯାଇ ଅର୍ଜ୍ଜୁନଙ୍କୁ ।
ଏ ବାହାରେ ତୁମ୍ଭର ମହାରଥିକୁଳ
ଯେ ଅଛନ୍ତି ବୋଲି କରନ୍ତୁ ଯାଇ ରୋଳ ।
ଅରଜୁନ ଶ୍ରମରେ ଯୁକ୍ତ ହୋଇଥିଲେ
ନିଃଶ୍ରମେ ତାହାଙ୍କୁ ମାରିବ ଯାଇଁ ଭଲେ ।
ସବୁ ବୀରମାନେ ତା ଶୁଣି ସୁଖୀ ହୋଇ
ଅର୍ଜ୍ଜୁନଙ୍କୁ ବେଢ଼ି ଯୁଝିଲେ କରସାଇଁ ।
ସମୁଦ୍ର ଯେଉଁରୂପେ ଗ୍ରାସେ ନଦ ନଦୀ
ସେହିରୂପେ ଅର୍ଜ୍ଜୁନ ହେବାକୁ ନିର୍ବିବାଦ ।
ତୁମ୍ଭ ଯୋଦ୍ଧାମାନଙ୍କୁ କାଣ୍ଡମୁଖେ ଗ୍ରାସ
କରି ବଢ଼ାଇଲେ ଆପଣା ସୈନ୍ୟ ତୋଷ ।
ନର ବାଜି ଗଜ ଅର୍ଜ୍ଜୁନ ବାଣେ ଛିଡ଼ି
ମହୀ ତଳେ ପଡ଼ି ଦେଲେ ହେ ପ୍ରାଣ ଛାଡ଼ି ।

ଚକ୍ଷୁରୋଗୀକୁ ସୂର୍ଯ୍ୟଦେବଙ୍କ ଆଲୋକ
ନ କଲା ପରି ହେଲେ ପାର୍ଥେ ଭୂମ୍ପ ଲୋକ
କୃପ କୃତବର୍ମା ଯେ ଦ୍ରୋଣି ଦୁଃଶାସନ
ଅର୍ଜୁନଙ୍କୁ କଲେ ହେ ମହାଆଯୋଧନ ।
ଅରଜୁନ ଗିରିଶିଖରେ ଶରଧାରା
ମୁଖ୍ଯ ଭାଙ୍ଗି ପକାଇଲେ ଟି ତାଙ୍କ ତୋରା ।
ମହାରଥୀମାଙ୍କ କାଣ୍ଡ କାଣ୍ଡେ କାଟି
ତିନି ତିନି ପ୍ରତ୍ୟେକେ ବିନ୍ଧଲେ କଷଟି ।
ଅରଜୁନ ସୂର୍ଯ୍ୟ ଗାଣ୍ଡୀବ ମଣ୍ଡଳରେ
ମଣ୍ଡି ଶର କିରଣ ଯୁଦ୍ଧ ଆକାଶରେ ।
ରହି କୁରୁସେନା ନେତ୍ରକୁ ଦେଇ ପୀଡ଼ା
ହେଲେ ଜ୍ୟେଷ୍ଠାଷାଢ଼ରେ ରବି ପରି ଛୁଡ଼ା
ଅଶ୍ବତ୍ଥାମା ଅର୍ଜୁନ ଅଙ୍ଗେ କ୍ଷୁରକାଣ୍ଡ
ବିନ୍ଧ ଶରେ ଖୋଳିଲେ ଧ୍ବଜକପି ପିଣ୍ଡ ।
ଅର୍ଜୁନଙ୍କୁ ଦଶ ଯେ ଶ୍ରୀକୃଷ୍ଣଙ୍କୁ ତିନି
ବିନ୍ଧଲେ ଯୁଦ୍ଧେ ଦ୍ରୋଣି ହୋଇ ଅଭିମାନୀ ।
ଅରଜୁନ ଅଶ୍ବତ୍ଥାମାଙ୍କର ଧନୁଟି
ତିନି ବାଣ ବିନ୍ଧିଣ ପକାଇଲେ କାଟି ।
କ୍ଷୁରକାଣ୍ଡେ ସାରଥି ମୁଣ୍ଡ ଦୁଇଖଣ୍ଡ
କରି ଉଡ଼ାଇଣ ଦେଲେ ସେ ରଣଦାଣ୍ଡ ।
କ୍ଷୁରକାଣ୍ଡେ ଚାରି ଘୋଡ଼ାଙ୍କ ପ୍ରାଣ ନେଲେ
ତିନି କାଣ୍ଡେ ଧ୍ବଜକୁ ତଳେ ପକାଇଲେ ।
ଅଶ୍ବତ୍ଥାମା ତାହା ତ ନ ପାରିଣ ସହି
ମହାଧନୁଟାଏ ଧଇଲେ ରୋଷ ବହି ।
ଉତ୍ତମଶରମାନ ସେ ନରଉତ୍ତମ
ଦେହକୁ ସରଜିଲେ ଦ୍ରୋଣ ବୀରୋତ୍ତମ ।
କୃପା କୃତବର୍ମା ସେ ଦୁର୍ଯ୍ୟୋଧନ ବୀର
ଏ ମଧ୍ୟ ପାର୍ଥଙ୍କୁ ବିନ୍ଧଲେ ବାଛି ଶର ।
ଅର୍ଜୁନ କୃପଙ୍କ ସାରଥି ଧ୍ବଜ ଧନୁ
କାଟିବାକୁ ବିନ୍ଧଲେ ହୃଦେ ଧରି ମନୁ ।
କୃଷ୍ଣ ଅର୍ଜୁନଙ୍କ କାଣ୍ଡରେ ପୀଡ଼ା ପାଇ
କି କରିବା ବୋଲି ରହିଲେ ଚିନ୍ତା ବହି ।
ଭୂମ୍ପ ପୁଅଙ୍କର ଯେ ଧ୍ବଜ ଧନୁ ଛତ୍ର
କାଟିଲେ କାଣ୍ଡ ବିନ୍ଧ ଇନ୍ଦ୍ରଙ୍କର ପୁତ୍ର ।
କୃତବର୍ମାଙ୍କର ଯେ ଚାରିଘୋଡ଼ା ମାରି
ଧ୍ବଜ କାଟିଦେଲେ ଗାଣ୍ଡୀବଧନୁଧାରୀ ।

ଗଜ ଘୋଡ଼ା ନରମାନଙ୍କର ଜୀବନ
ନେଇଗଲେ ବିନ୍ଧ ଉତ୍ତମ ମାରଗଣ ।
ଭୂମ୍ପ ବଳଯାକ ଅର୍ଜୁନ ଯୁଦ୍ଧକାଣ୍ଡେ
ପଳାଇଲେ ନ ରହି କରି ଯୁଦ୍ଧଦାଣ୍ଡେ ।
ପୁଣି ଭୂମ୍ପର ଯୋଦ୍ଧାକୁଳ ହୋଇ ଗୋଟି
ବିନ୍ଧଲେ ଅର୍ଜୁନଙ୍କୁ ଶର କୋଟି କୋଟି ।
ଶିଖଣ୍ଡୀ ସାତ୍ୟକି ନକୁଳ ସହଦେବ
ଭାଙ୍ଗିଲେ ଭୂମ୍ପ ଯୋଦ୍ଧାମାନଙ୍କ ପ୍ରଭାବ ।
କୁରୁମାନେ ଯେ ପାଣ୍ଡୁ ସୃଞ୍ଜୟଙ୍କ ଭୁଲେ
ପରସ୍ପରରେ ଯୁଦ୍ଧ ଆରମ୍ଭିଲେ ଭଲେ ।
ଜୟ ଇଚ୍ଛା କରିଣ ଦୁଇସେନାଗଣ
ବୋଲିବୋଲି ହୋଇଣ ହାଣ ବିନ୍ଧବାଣ ।
ସେକାଳେ ଶରରେ ଆକାଶ ହୋଇ ଘୋଡ଼
ଦେଲା ସବୁ ନେତ୍ରମାନଙ୍କେ ତମ ମାଡ଼ ।
ଅରଜୁନ ଭୀମଙ୍କ ହାତ ବାଛିଁ କରି
ପକାଇଲେଟି କୁରୁମାନଙ୍କୁ ସଂହାରି ।
ଅର୍ଜୁନଙ୍କ କାଣ୍ଡରେ ଆକାଶ ଆଚ୍ଛନ୍ନ
ହୋଇଲା ଆହେ ଜାଣ ହସ୍ତିନା ରାଜନ ।
ଭଲ୍ଲକାଣ୍ଡରେ ଭଲଯୋଦ୍ଧାଙ୍କ ମୁଣ୍ଡଟି
ପକାଇଲେ କାଟିଣ ଯୁଦ୍ଧରେ କଷଟି ।
କବଚ ମୁଣ୍ଡ ଭୁଜ ପଡ଼ନ୍ତେ ସେ ଭୂମି
ଦାଣ୍ଡରେ ଯୋଦ୍ଧାମାନେ ନ ପାରିଲେ ଗମି
ରଥଙ୍କର ଯେ ଇଷ ଚକ ଅଶ୍ବ ସୂତ
ନାଶ ହୋଇ ଯୁଦ୍ଧଭୂମିକି ହେଲେ ଗତ ।
ଅରଜୁନ ଶରେ କ୍ଷରିଣ ମତ୍ତହସ୍ତୀ
ମରି ମାଡ଼ ପଡ଼ିଲେ ଅନେକ ପଦାନ୍ତି ।
ହାଣ୍ଡି ଘନ ଭେଦି ସେ ଅର୍ଜୁନ ସବିତା
ପ୍ରକାଶିଲେ ବାଣ କିରଣ ଗୁଡ଼ ଚନ୍ତା ।
ଗାଣ୍ଡୀବ ଧନୁଘୋଷ ବଜ୍ରରୁ ଅଧିକ
ଶବଦ କରି କରାଇଲେ ଜକ ଜକ ।
ପାର୍ଥ ବାଣ ବାତ ବାଜନ୍ତେ ସୈନ୍ୟବ୍ରାତ
ବୃକ୍ଷ ଶୋଇ ପଡ଼ିଲେ ରଣେ ହୋଇ ହତ ।
ଉଲ୍କା ପରି ଚହଟି ପାର୍ଥବାଣ କୋଟି
ଭୂମ୍ପ ଯୋଦ୍ଧା ପ୍ରାଣ ଧନକୁ କଲେ ଲୁଟି ।
ଯୋଦ୍ଧାଙ୍କ ମୁଣ୍ଡ ଛିଡ଼ ପଡ଼ିବା ଶବଦ
କରାଇଲା କର୍ଣ୍ଣବେଦନକ ସେ ସ୍ତବଧ ।

ଅରଜୁନ କାଣ୍ଡ ଦାବାଗ୍ନିକି ନ ସହି
କୁରୁ ବନଗାବେ ଯେ ଭାଜିଲେ ନ ରହି ।
ଭୀମଙ୍କୁ ତ ଦ୍ୟୁମ୍ନ ଯୋଦ୍ଧାଏ ବେଢ଼ି ଥିଲେ
ଅର୍ଜୁନ କାଣ୍ଡେ ବାଜ ଏବେ ପଳାଇଲେ ।
ଅର୍ଜୁନ ଭୀମଙ୍କୁ ରଥକୁ ରଥ ନେଇ
ଲଗାଇ ଦେଇ ବୋଇଲେ ହେ ଭୀମ ଭାଇ ।
ଯୁଧିଷ୍ଠିର ରାଜା ତ ରହିଛନ୍ତି ସୁଖେ
ମାରି ଶତ୍ରୁ କୁଳକୁ ତୁମ୍ଭେ ଶରମୁଖେ ।
ଭୀମ ବୋଇଲେ ହେ ମାରୁଛି ମୁଁ କୁରୁଙ୍କୁ
ତୁମ୍ଭେ ମଧ୍ୟ ମାରି ଭକ୍ଷଣ ମାର୍ଗଣକୁ ।
ଅରଜୁନ ତା ଶୁଣି ହୋଇ ମହାତୋଷ
ବାହାରିଲେ ଯୁଦ୍ଧକୁ କରେ ଧରି ଦଶ ।
ସେକାଳେ ଦୁଃଶାସନ କନିଷ୍ଠ ଭାଇଏ
ଅର୍ଜୁନଙ୍କୁ ଯୁଝିଲେ କ୍ରୋଧ ଧରି କାୟେ ।
ମଣ୍ଡଳାକାର କରି କରେ ଶରାସନ
ଅର୍ଜୁନଙ୍କୁ କଲେ ଯେ ଶର ସରଜନ ।
କୃଷ୍ଣ ତାଙ୍କ କୂଳେ ପାର୍ଥକୁ ନ ଯୁଝାଇ
ଆନଠାକୁ ରଥ ଘେନିଣ ଗଲେ ବାହି ।
ଭୀମ ଦ୍ୟୁମ୍ନ ଦଶସୁତଙ୍କ ଧ୍ୱଜ ଧନୁ
କାଟି ଶରେ ଖୋଳିଲେ ତାହାଙ୍କର ତନୁ ।
ଦଶ ଭଲ୍ଲକାଣ୍ଡେ ଦଶୋଟି ଯାକ ମୁଣ୍ଡ
ଗଡ଼ାଇ ଦେଲେ ଭୀମସେନ ରଣଦାଣ୍ଡ ।
ଏରୂପେ ଦ୍ୟୁମ୍ନ ଦଶସୁତ ପ୍ରାଣ ହରି
ଭୀମ ରଣେ ତହୁଁ ଯୁଝିବା ଇଚ୍ଛା କରି ।
ମୁକୁତା ସୁନାମୁଣ୍ଡ ଶ୍ୱେତ ରଙ୍ଗ ଘୋଡ଼ା
କୃଷ୍ଣ କଲେ କର୍ଣ୍ଣଙ୍କ ରଥ ପାଖେ ଛାଡ଼ା ।
ସେହିକାଳେ ସଂଶପ୍ତକ ଯେ ନଉ ରଥୀ
ଆସି ହୋଇଲେ କର୍ଣ୍ଣ ରଥୀଙ୍କର ସାଥୀ ।
ଅର୍ଜୁନ ଉପରକୁ ସର୍ଜି ଶରରାଜି
ଯୁଦ୍ଧ କଲେ ସମସ୍ତେ ଗରଜି ଗରଜି ।
ଅରଜୁନ ସେ ଷଡରଥୀଙ୍କର ପ୍ରାଣ
ଘେନିଲେ ବରଗି ଗାଣ୍ଡୀବ ଧନୁବାଣ ।
ପୁଣ୍ୟକ୍ଷୟେ ସ୍ୱର୍ଗ ପଡ଼ନ୍ତି ପରି ଶୀଘ୍ରେ
ପଡ଼ିଲେ ସେ ନଉରଥୀ ରଥୁଁ ଯୁଧେ ।
କୁରୁମାନେ ଯେ ରଥ ଗଜ ଅଶ୍ୱ ସୈନ୍ୟ
ସଙ୍ଗେ ଘେନି ପାର୍ଥଙ୍କୁ କଲେ ଆୟୋଧନ ।

ଶର ଶକ୍ତି ଗଦା ମୁଷଳ ପରଶରେ
ନ ଦିଶିଲେ କୃଷ୍ଣ ଅର୍ଜୁନ ନୟନରେ ।
ସୂର୍ଯ୍ୟ ଅନ୍ଧକାରକୁ ନେଲାପରି ହରି
ଅର୍ଜୁନ ଦେଲେ ଶରମାନ ନାଶ କରି ।
ଦ୍ୟୁମ୍ନ ପୁହାଙ୍କରେ ତେରଶ ଗଜ କୂଳେ
ଘେନ ମ୍ଳେଚ୍ଛସୈନ୍ୟ ପାର୍ଥଙ୍କୁ ଯୁଦ୍ଧ କଲେ ।
ନାରାଚ ଭିନ୍ଦିପାଳ ତୋମର କମ୍ପନ
ମାରି ଅର୍ଜୁନଙ୍କୁ ଟି କଲେ ଆୟୋଧନ ।
ଅର୍ଜୁନ ଭଲ୍ଲଶରେ ମ୍ଳେଚ୍ଛ ଶର କାଟି
ବୋଇଲେ ଆଇଁଥିବ ମୋତେ ଯୁଦ୍ଧେ ଭେଟି
ତୀକ୍ଷ୍ଣ କାଣ୍ଡକରେ କଷ୍ଟଙ୍କର ପ୍ରାଣ
ଘେନିଗଲେ ପାର୍ଥ ହେ ବୀରକୁଳ ରାଣ ।
ହାତୀକୁଳ ପଡ଼ିଲେ ପର୍ବତ ପରାୟେ
ସୁନାମାଳା ଦାବାଗ୍ନି ଧରିଣ ହେ ରାୟେ
ସିପାଇମାନଙ୍କର ଯିବାରୁ ପରାଣ
ଘୋଡ଼ାମାନେ ହେଲେ ଯୁଦ୍ଧରେ ରଣଭଣ ।
ରଥ ମାନେ ରଥ ଘୋଡ଼ାରେ ହୀନ ହୋଇ
ରହିଲେ ଖମ୍ଭଧରି ନ ଚଳି ନ ଯାଇଁ ।
ଅରଜୁନ କାଣ୍ଡରେ ପାଇ ମହାପୀଡ଼ା
ମରିଗଲେ ଦ୍ୟୁମ୍ନର ବନ୍ଧୁ ପରିଭଡ଼ା ।
ଭୀମ ଦ୍ୟୁମ୍ନ ମହାରଥୀଙ୍କ କୂଳେ ଯୁଦ୍ଧ
କରୁ ତ ଥିଲେ ରାୟେ ହୋଇ ଅତି କ୍ରୋଧ ।
ଅରଜୁନ ଉତ୍ତମ ନୟନେ ଅନାଇଁ
ଆସିଲେ ତାଙ୍କ ଠାକୁ ଯୁଦ୍ଧ ଛାଡ଼ି ଦେଇ ।
ଭୀମ ଅରଜୁନଙ୍କୁ ଦେଖି ଦ୍ୟୁମ୍ନ ସୈନ୍ୟ
ଯୁଦ୍ଧରୁ ପଳାଇଲେ ହୋଇ ଛିନ୍ନଭିନ୍ନ ।
ବାକି ଅବଶିଷ୍ଟ ଯୋଦ୍ଧାଙ୍କୁ ଭୀମବଳୀ
ଗଦା ପିଟି ପିଟି ଯେ ପକାଇଲେ ଦଳି ।
କାଳରାଜ ପରି ଭୀମଙ୍କ ଗଦା ଉଗ୍ର
ହୋଇ ଖାଇଦେଲା ନରଙ୍କ ଦେହଭାଗ ।
ଗଦାଘାତେ ଲୋକେ କାମୋଡ଼ି ଓଷ୍ଠ ଫାଟି
ମହୀ ମଧ୍ୟରେ ଲୋଟି ପଡ଼ିଲେ ପ୍ରାଣଛୁଟି ।
ଭୀମ ମହାବୀର ଯେ କରେ ଧରି ଗଦା
ସହସ୍ର ଶହ ଘୋଡ଼ା କରିଦେଲା ପଦା ।
ଦ୍ୟୁମ୍ନ ଲୋକେ ଭୀମର ମୂର୍ତ୍ତିକି ଅନାଇଁ
ଯମଘର ମଣିଲେ ଜାଣ ନରସାଇଁ ।

ଅଧାଙ୍ଗ ସର୍ପ ପରି ଭୀମ ହୋଇ କ୍ରୋଧ
କରିଦେଲେ କୁରୁଙ୍କ ବରବଳ ବଧ ।
ପୁଣି ନିଜର ରଥ ବରକୁ ଆରୋହି
ରହିଲେ ଅର୍ଜୁନଙ୍କ ପୃଷ୍ଠସାହା ହୋଇ ।
ଭୁମ୍ଭ ବାଣଘାକ ଯେ ଶ୍ରୀମାର୍ଜୁନ ଶରେ
ପଳାଇଲେ ପଛ ନ ଚାହିଁ କେହି ଖରେ ।
ସୈନ୍ୟ ନିରୁତ୍ସାହ ଦେଖିଣ ଅରଜୁନ
କଲେ ଭୁମ୍ଭ ଯୋଦ୍ଧାଙ୍କୁ ଶରରେ ଆଚ୍ଛନ୍ନ ।
ଅରଜୁନ କାଣ୍ଡରେ ମହାପୀଡ଼ା ପାଇ
କୁରୁମାନେ ଡାକ ପାଡ଼ିଲେ ନିରପାଇଁ ।
ସେ କାଳରେ କାହାକୁ ଯୁଦ୍ଧରେ ଧାରଣା
ନ ପାଇ କୁରୁମାନେ ହୋଇଲେ ବିମନା ।
ପୁଷ୍ପିତା ଅଶୋକବନକୁ ଭୁମ୍ଭ ସୈନ୍ୟ
ପଟାନ୍ତର ହେଲେ ହସ୍ତିନା ସପ୍ନେ ଜାଣ ।
ଅର୍ଜୁନ ପରାକ୍ରମ ଦେଖିଣ କୁରୁଏ
ମନେ କଲେ କର୍ଣ୍ଣ ହାରିବେ ଯୁଦ୍ଧେ ସତ୍ୟେ ।
କର୍ଣ୍ଣ ରହ ରହ ବୋଇଲେ ହେଲେ କେହି
ନ ରହି ପଳାଇଲେ ଯୁଦ୍ଧ ଭୟ ପାଇ ।
ଏ ସକାଶୁ କର୍ଣ୍ଣ ହୋଇଣ ଏକୁଟିଆ
ଧୈର୍ଯ୍ୟ ଧରି ହେଲେ ଅର୍ଜୁନ ଆଗେ ଠିଆ ।
କର୍ଣ୍ଣଙ୍କୁ ଏକା ଦେଖି ଭୁମ୍ଭ ପୁଅଶ୍ରେଣୀ
କର୍ଣ୍ଣ ପାଶେ ରହିଲେ ଧନୁମାନ ଟାଣି ।
ଅର୍ଜୁନଙ୍କ ଭୟରେ କୁରୁଏ ପଳାଇ
ରଖ ବୋଲି ଧଇଲେ କର୍ଣ୍ଣ ପାଦ ଯାଇ ।
କର୍ଣ୍ଣ ବୋଇଲେ ହେ ନ ଡର କେହି ରଣେ
ଦେଖ ଅର୍ଜୁନଙ୍କୁ ମୁଁ ମାରୁଅଛି ବାଣେ ।
ଏହା କହିଣ ଧନୁର୍ଗୁଣକୁ ଟଙ୍କାରି
ବିନ୍ଧିଲେ କର୍ଣ୍ଣ ବୀର ବାଣକୁ ହୁଙ୍କାରି ।
ଅର୍ଜୁନଙ୍କ ବଧରେ ବଳାଇ ମାନସ
ଟେକିଦେଲେ ନିଜ ହାତରେ ଦୁଇନିଶ ।
ଅର୍ଜୁନ ଚାହିଁ ଚାହିଁ ପାଞ୍ଚାଳମାନଙ୍କୁ
ଯୁଝିଲେ କର୍ଣ୍ଣ ଯେ ଦେଖାଇ ବିକ୍ରମକୁ ।
ଶତ ଶତ ସହସ୍ର ଅସ୍ତ୍ର କାଣ୍ଡ ବିନ୍ଧି
ପାଞ୍ଚାଳଙ୍କୁ କର୍ଣ୍ଣ ଯୁଦ୍ଧରେ ଦେଲେ ରୁନ୍ଧି ।
କର୍ଣ୍ଣ ବିନ୍ଧିବାରେ ପାଞ୍ଚାଳ ରଥୀଗଣ
ଭେଟିଲେ ଯାଇକରି ଜମଙ୍କର ସ୍ଥାନ ।

କର୍ଣ୍ଣ ଦ୍ରୁପଦଙ୍କ ପୁଅକୁ କାଣ୍ଡଶ୍ରେଣୀ
ସରଜନା କଲେ ବିଜୟ ଧନୁ ଟାଣି ।
ଅଞ୍ଜଳିଶର ପେଷି ଜନ୍ମେଜୟଙ୍କର
ହରିଲେ କର୍ଣ୍ଣ ପ୍ରାଣ ସାରଥି ଅଶ୍ୱର ।
ଶତାନୀକ ସୁତସୋମଙ୍କ ଦୁଇଧନୁ
ଭଲ୍ଲ କାଣ୍ଡେ କାଟିଲେ ଅଧିରଥସୁନୁ ।
ଧୃଷ୍ଟଦ୍ୟୁମ୍ନ ଘୋଡ଼ାଙ୍କୁ ବିନ୍ଧି ଛଅ କାଣ୍ଡ
ଖୋଳି ପକାଇଲେ ଯେ ରଣେ ତାଙ୍କ ପିଣ୍ଡ ।
ସାତ୍ୟକଙ୍କ ଚାରି ଘୋଡ଼ାଙ୍କୁ ସେ ସଂହାରି
ନେଲେ କର୍ଣ୍ଣ କୈକେୟପୁତ୍ର ପ୍ରାଣ ହରି ।
ବିଶୋକ ହତରେ କୈକେୟ ସେନାପତି
କର୍ଣ୍ଣଙ୍କର ପୁଅକୁ ଯୁଦ୍ଧେ ଦେଲେ ବ୍ୟଥୀ ।
ଅର୍ଦ୍ଧଚନ୍ଦ୍ର କାଣ୍ଡକେ ଦୁଇ ବାହୁ ଶିର
କାଟିଲେ ସେନାପତିଙ୍କର କର୍ଣ୍ଣ ବୀର ।
ପ୍ରା ଗୁଡ଼ ପରଶୁହଣା ଶାଳତରୁ
ପରି ସେ ଧରଣୀତଳେ ପଡ଼ିଲେ ରଥରୁ ।
କର୍ଣ୍ଣଙ୍କର ପୁଅ ପ୍ରସବନ୍ନ ବୀର ଧମ
ସାତ୍ୟକଙ୍କ ସଙ୍ଗେ ରଚିଲେ ଉସ ସଂଗ୍ରାମ ।
ତାହା ଦେଖି ସାତ୍ୟକ ବିନ୍ଧି ଚଣ୍ଡେ କାଣ୍ଡେ
ପକାଇଲେ ପ୍ରସେନଙ୍କୁ ରଣଦାଣ୍ଡେ ।
କର୍ଣ୍ଣ ତାହା ଦେଖି ବୋଇଲେ ସାତ୍ୟକ
ଆଜ ଯେ ଯିବ ପ୍ରେତପତିଙ୍କ କଟକ ।
ଏତେ ବୋଲି କାଣ୍ଡ ଗୋଟିଏ ଗୁଣେ ସନ୍ଧି
ଶୈନ ପ୍ରବୀରଙ୍କ ଦେହକୁ ଦେଲେ ବିନ୍ଧି ।
ଶିଖଣ୍ଡୀ କର୍ଣ୍ଣଙ୍କ ସେ କାଣ୍ଡ ଟିକ ଚଣ୍ଡେ
କାଟି ପକାଇଲେ ସହନ ତିନିକାଣ୍ଡେ ।
କର୍ଣ୍ଣଙ୍କ ଦେହକୁ ଲଗାଇ ତିନିକାଣ୍ଡ
ବିନ୍ଧିଲେ ସେ ଶିଖଣ୍ଡୀ କମ୍ପାଇ କୋଦଣ୍ଡ ।
କର୍ଣ୍ଣ ତା ନ ସହି ଶିଖଣ୍ଡୀ ଧ୍ୱଜ ଧନୁ
କାଟି ପକାଇଲେ ହେ ବହ୍ନି ଅତି ମନ୍ୟୁ ।
ଶିଖଣ୍ଡୀ ଗଣ୍ଡିକ ଲଗାଇ ଛଅଶର
ପ୍ରହାରିଲେ ସୂତନନ୍ଦନ କର୍ଣ୍ଣ ବୀର ।
ଧୃଷ୍ଟଦ୍ୟୁମ୍ନଙ୍କ ପୁଅର ମୁଣ୍ଡକାଟି
ସୁତ ସୋମ ପ୍ରତି ବିନ୍ଧିଲେ କୋଟି କୋଟି ।
କୃଷ୍ଣ ଦେଖିଣ କର୍ଣ୍ଣଙ୍କର ପରାକ୍ରମ
ବୋଇଲେ ଅରଜୁନ କର ହେ ସଂଗ୍ରାମ ।

ନୋହିଲେ କର୍ଣ୍ଣ ଆଜ ତୁମ୍ଭ ସୈନ୍ୟସାକ
କାଣ୍ଡେ ମାରି ଦେଖାଇବେଟି ପ୍ରେତଲୋକ ।
ଅର୍ଜୁନ ତାହା ଶୁଣି ଗାଣ୍ଡୀବ ଟଙ୍କାରି
ନେଲେ ନର ନାଗ ଅଶ୍ୱଙ୍କ ପ୍ରାଣ ହରି ।
ଭୀମ ଅର୍ଜୁନଙ୍କର ହୋଇ ପୃଷ୍ଠରକ୍ଷା
ବିନ୍ଧିଲେ ବାଛି ଶର କରି ଯୁଦ୍ଧେ କକ୍ଷା ।
କର୍ଣ୍ଣ ସୋମକଙ୍କୁ ଯେ କରି ଯମବାସୀ
ଘୁଇଲେ ଦଗ ବନ୍ଧ ମାରଗଣରାଶି ।
ଉତ୍ତମୌଜା ଜନମେଜୟ ଧୃଷ୍ଟଦ୍ୟୁମ୍ନ
ଯୁଧାମନ୍ୟୁ ଶିଖଣ୍ଡୀ ଧରି ଶରାସନ ।
କର୍ଣ୍ଣଙ୍କର ଗଣ୍ଡିଟି ଫୁଟାଇବା ପାଇଁ
ଟାଣି ଧନୁ ଟାଣେ ବିନ୍ଧିଲେ ରୋଷ ହୋଇ ।
ତୁମ୍ଭ କର୍ଣ୍ଣଙ୍କର ଅଟନ୍ତି ମହାରଥୀ
ସେ ପାଞ୍ଚରଥୀ ବାଣେ ନ ପାଇଲେ ବ୍ୟଥା ।
ପଞ୍ଚାଳ ପାଞ୍ଚରଥୀଙ୍କର ଧ୍ୱଜ ଧନୁ
କାଟି ପକାଇଲେ କାଣ୍ଡରେ ସୂତସୂନୁ ।
କର୍ଣ୍ଣଙ୍କର ସେ ଧନୁ ଶବଦକୁ ଶୁଣି
ଆଜ ତ ମରିବା ବୋଇଲେ ଲୋକଶ୍ରେଣୀ ।
ଶିଖଣ୍ଡୀକି ବୀର ଉତ୍ତମଉଜାଙ୍କର
ଦେହକୁ ଛଅ ଯୁଧାମନ୍ୟୁ ତିନଗୋଟି ।
ଜନମେଜୟ ଧୃଷ୍ଟଦ୍ୟୁମ୍ନଙ୍କୁ ତିନ
ତିନି କାଣ୍ଡ ବିନ୍ଧିଲେ କର୍ଣ୍ଣ କ୍ରୋଧ ଘେନ ।
ଏ ସକାଶୁଁ ଏ ପାଞ୍ଚରଥୀ ପାଇ ପୀଡ଼ା
ଯୁଦ୍ଧରୁ ନିବର୍ତ୍ତିଲେ ମନେ ଧରି ବ୍ରୀଡ଼ା ।
କର୍ଣ୍ଣ ସମୁଦ୍ରରେ ଏ ପାଞ୍ଚରଥୀ ମଗ୍ନ
ହୋଇଥିଲେ, ଦ୍ରୌପଦୀଦେବୀଙ୍କ ନନ୍ଦନ
ମାନେ ସେକାଳେ ତାଙ୍କୁ ରଥ ବୋଇତରେ
ତାରି ଘେନଗଲେ ହେ ରାଜନ ସତ୍ୱରେ ।
ସାତ୍ୟକି କର୍ଣ୍ଣଙ୍କ କାଣ୍ଡକୁ କାଣ୍ଡେ କାଟି
ଦୁର୍ଯ୍ୟୋଧନ ଦେହକୁ ବିନ୍ଧିଲେ ଆଠୋଟି ।
କୃପ କର୍ଣ୍ଣ କୃତବର୍ମା ଦୁର୍ଯ୍ୟୋଧନ
କଲେ ହେ ସାତ୍ୟକି ଭୁଲେ ଆୟୋଧନ ।
ସାତ୍ୟକି ସୂର୍ଯ୍ୟ ଧନୁ ବମେ ଶର କରି
ପ୍ରକାଶ କରି କଲେ ତାହାଙ୍କୁ ସମର ।
ପାଞ୍ଚାଳ ପାଞ୍ଚ ରଥୀ ପରାଭବ ପାଇ
ଲଜ୍ଜିତ ଥିଲେ ପୁଣି ଯୁଦ୍ଧେ ଆସି ଧାଇଁ ।
ସାତ୍ୟକିଙ୍କ ପୃଷ୍ଠପଟରେ ସେ ରହିଲେ
ତୁମ୍ଭ ରଥୀମାନଙ୍କ ପୀଡ଼ା ବିସ୍ତାରିଲେ ।

—✽—

## ଦୁଃଶାସନ ବଧ

ଏରୂପରେ ଯୁଦ୍ଧ ହୁଅନ୍ତେ ହେ ରାଜନ
ମହାମତ ବଳି ତୁମ୍ଭର ଦୁଃଶାସନ ।
ଭୀମେ ମାରିବାକୁ ଧାଇଁଲେ ଯୁଦ୍ଧଦାଣ୍ଡେ
ଧନୁମଧ୍ୟେ ସନ୍ଧି କରି ତୀକ୍ଷ୍ଣକାଣ୍ଡେ ।
ଭୀମସେନ ତାହା ସହି ନ ପାରିଲେ
ଯୁଦ୍ଧରେ ଦୁଃଶାସନ ପାରକୁ ଭେଟିଲେ ।
ପ୍ରାଣ ହୁଡ଼ି କରି ସେ ଦୁହେଁ ଶରେ ପଣା
କାଠିକି ପକାଇଲେ ଦେହ ପାଲ ଭସା ।
କାରନ୍ତ ହାତୁଣୀକି ନେବାକୁ ସେ ଦୁହେଁ
ମତ୍ତହସ୍ତୀ ପରାଏ ଯୁଦ୍ଧ କଲେ କ୍ରୋଧେ ।
ଭୀମ ଭୀମ ପରାକ୍ରମକୁ ଦେଖାଇଲେ
ଦୁଃଶାସନର ଧ୍ୱଜ ଧନୁକୁ କାଟିଲେ ।
ଏ ବାହାରେ ସାରଥି ମୁଣ୍ଡଟିକି କାଟି
କପାଳ ବଜାଇ ବିନ୍ଧିଲେ ବାଣ ଗୋଟି ।
ତୁମ୍ଭ ପୁଅ ସାରଥିକର୍ମ କରି ଯୁଦ୍ଧେ
ବିନ୍ଧିଲେ ବୀର କାଣ୍ଡ ଭୀମେ ମହାକ୍ରୋଧେ ।
ଭୀମଙ୍କ ହାତ ଧନୁଟିକି ଶରେ କାଟି
ତାଙ୍କ ସାରଥିକି ବିନ୍ଧିଲେ ସେ ଛଅଟି ।
ପୁଣି ଭୀମ ଦେହ ବିନ୍ଧିଲେ ନବ କାଣ୍ଡ
କାହିଁ ଯିବ ଭାଇ ବୋଇଲେ ଲଢ଼ ମୁଣ୍ଡ ।
ଭୀମ ଦୁଃଶାସନର ମୁଣ୍ଡକୁ ଦେଖାଇ
ମହାଗଦାବର ଫିଙ୍ଗିଲେ ରୋଷ ବଳି ।
ସେ ଗଦା ଦୁଃଶାସନ ପାରେ କରି ମୋହ
ରଥ ଭାଙ୍ଗି ସେ ମାରିଦେଲା ଘୋରବାହ ।
ଦ୍ରୌପଦୀଙ୍କି ଦୁଃଶାସନର ଦେବା କ୍ଳେଶ
ସେ କାଳେ ସୁମରିଣ ଭୀମ ପାରଣଣ ।
ଭାବିଲେ ଦ୍ରୁପଦକୁମାରୀ ନବବାଳା
ହୋଇଥିଲେ ଯେ ଦଇବରେ ରଜସ୍ୱଳା ।
ପୁଣି ଏକବସ୍ତ୍ରା ହୋଇଣ ବସିଥିଲେ
ଏହିଟି ତାଙ୍କୁ ଝିଙ୍କି ଘେନଗଲା ବଳେ ।
ଆଜ ଏହାକୁ ମୁହିଁ ଯୁଦ୍ଧଦାଣ୍ଡେ ମାରି
ହେବି ମୋର ପ୍ରିୟା ଦ୍ରୌପଦୀ ସୁଖକାରୀ ।

ଏରୂପେ ମନେ କରି ଭୀମ ମହାବୀର
ଡାକିଲେ ଆହେ ଅଧିରଥଙ୍କ କୁମର ।
କର୍ଣ୍ଣ ସାବଧାନ ହେ ହୁଅ ଯୁଦ୍ଧ ଦାଣ୍ଡେ
ମାରୁଅଛି ଦୁଃଶାସନକୁ ମୁହିଁ କାଣ୍ଡେ ।
ଏ ବାହାରେ କୃପ ଦ୍ରୋଣି ସେ ଦୁର୍ଯ୍ୟୋଧନ
ନୃପଙ୍କୁ ଗର୍ଜ୍ଜିକରି କହିଲେ ବଚନ ।
ଦେହରେ ବଳ ଥିଲେ ଦୁଃଶାସନ ପ୍ରାଣ
ରଖ ନୋହିଲେ ମୁଁ ଘେନିଲି ବୋଲି ଜାଣ ।
ଏହିରୂପେ ପବନସୁତ ଭୀମ କହି
ରଥ ଗୁଡ଼ି ଧାଇଁଲେ ଖଡ଼୍‌ଗ କରେ ବହି ।
ଦୁଃଶାସନ ଚଣ୍ଡି କି ପାଦେ ଚପିଧରି
ଦେଲେ ତୀକ୍ଷ୍ଣଖଡ଼ଗେ ହୃଦକୁ ବିଦାରି ।
ବାଘ ପରି ଦୁଃଶାସନର ସେ ରକତ
ପିଇଲେ ରଣଦାଣ୍ଡେ ଭୀମ ବଳବନ୍ତ ।
କୁରୁ ରଥୀମାନେ ନୟନେ ଚାହିଁ ଥିଲେ
ତଦନ୍ତେ ଦୁଃଶାସନ ମୁଣ୍ଡକୁ କାଟିଲେ ।
ପୁଣି ଆଜଥରେ ତା ରକତ ସେ ପିଇ
ଆଉଁସିଲେ ପେଟକୁ ବୋଲି ଆଈ ଆଈ ।
ବୋଇଲେ ଦୁଃଶାସନ ରକତକୁ ବିଧୁ-
ମଣ୍ଡଳ ସୁଧା ମାତୃସ୍ତନକ୍ଷୀର ମଧୁ ।
ଦଧି ଦୁଧ ଘିଅ ନୋହିବ ଯେ ସମାନ
ଆଜ ଧନ୍ୟ ହେଲା ପିଇଣ ମୋ ଜୀବନ ।
ହେ ଧୃତରାଷ୍ଟ୍ର ଶୁଣ ନରପତି ଭୀମ
ଏରୂପେ ଦୁଃଶାସନ ପରେ ସାରି ତମ ।
ପୁଣି ବୋଇଲେ ଆରେ ଦୁଃଶାସନ ମୃତ୍ୟୁ
ପାଦେ ତ ଗଡ଼ିଲୁ ତୁ ଜାଣି କଥା ହେତୁ ।
ଆଜ ତୋତେ କରି ନ ପାରେ ହେଇ ଶୋକ
ହେଲୁଣି ତ ମୃତ୍ୟୁଦେବଙ୍କର ଲୋକ ।
ଏରୂପେ ବୋଲି ରାଜନୃପ ରଣଦାଣ୍ଡେ
ଭୀମ ମହାବୀର ଯେ ନୃତ୍ୟ କଲେ ଖଣ୍ଡେ ।
ତାହା ଦେଖି କୁରୁ ସେନାଏ ମୋହ ଯାଇ
ପଡ଼ିଲେ ରଣଭୂମି ମଧ୍ୟଦେଶେ ଶୋଇ ।
ଧୈର୍ଯ୍ୟବନ୍ତ ହୋଇ ଯେ ମୋହେ ନ ପଡ଼ିଲେ
ସେହି ମଧ୍ୟ ଭୀମଙ୍କୁ ଡରି ପଳାଇଲେ ।
ବୋଇଲେ ପାଣ୍ଡୁ ନରପତିଙ୍କ କୁଳରେ
ରାକ୍ଷସ ଜନ୍ମି ଥିଲା ଭୀମଙ୍କ ରୂପରେ ।
ନୋହିଲେ କି ରକତ ପିଇ ମତ୍ତ ହୋଇ
ରଣଦାଣ୍ଡେ ନାଚଇ ମହାସୁଖ ପାଇ ।
ଚିତ୍ରସେନ ପଳାଇବାର ଦେଖି ନେତେ
ବିନ୍ଧିଲେ ଯୁଧାମନ୍ୟୁ ଶର ତାଙ୍କ ଗାତେ ।
ଚିତ୍ରସେନ ବୀର ତ ଅତ୍ୟନ୍ତ ମନୁଆଁ
ପାଲଟି ଯୁଦ୍ଧ କଲେ କରି ଧନୁ ନୁଆଁ ।
ଯୁଧାମନ୍ୟୁ ଦେହକୁ ତିନି କାଣ୍ଡ ବିନ୍ଧି
ଛଅକାଣ୍ଡରେ ଦେଲେ ସାରଥିକି ରୁନ୍ଧି ।
ଯୁଧାମନ୍ୟୁ ଉତ୍ତମକାଣ୍ଡେ ଚିତ୍ରସେନ
ଗଣ୍ଡିରୁ ମୁଣ୍ଡଟିକି କରିଦେଲେ ଭିନ୍ନ ।
କର୍ଣ୍ଣଙ୍କୁ ବୋଇଲେ ହେ ମଲ୍ଲ ତୁମ୍ଭ ଭାଇ
ପାଇଲେ ଆସ ତୁମ୍ଭେ କରିବ ଲଢ଼ାଇ ।
କର୍ଣ୍ଣ ତାହା ନ ସହି ପାଣ୍ଡବ ସେନାଙ୍କୁ
ମାରି ମାରି ଗଲେ ଅର୍ଜ୍ଜୁନ ସମୀପକୁ ।
ଭୀମ ଦୁଃଶାସନ ରକତ କରେ ଧରି
କହିଲେ ଦୁଃଶାସନ ଶବ ଗର୍ଜ୍ଜିକରି ।
ତୋ ରକତ ଆଜ ତ ପିଇଅଛି ମୁହିଁ
ଆଈ ଆଈ ଆମ୍ଭଙ୍କୁ ନ ବୋଲ କହାଇ ।
ପ୍ରମାଣକୋଟିରେ ତୁ କାଳକୂଟ ଦେଇ
ଶୁଆଇଲୁ ମୋତେ ରେ ଦୁଃଶାସନ ବାଇ ।
ଏବେ ତୋର ସେ ବୁଦ୍ଧିମାନ ଦୁଃଶାସନ
କେଣେ ଗଲା କହ ତ ଫିଟାଇ ବଚନ ।
ଜତୁଘରେ ଆମ୍ଭଙ୍କୁ ରଖି ପୋଡ଼ିଦେଇ
ମରାଇଥିଲୁ ପରା ରାଜ୍ୟଲୋଭୀ ହୋଇ ।
ଦ୍ୟୁତରେ ଆମ୍ଭରାଜ୍ୟ ହରି ଘେନିଗଲୁ
ଦ୍ରୌପଦୀଙ୍କର ବାଳ ଝିଙ୍କି ତୁ ଆଣିଲୁ ।
ତୋହର ସକାଶୁଁ ଆମ୍ଭେ ପାଇ ମହାଦୁଃଖ
ବନମଧ୍ୟେ ବୁଲିଲୁ ହୋଇଣ ନିରେଖ ।
ବିରାଟଙ୍କ ପୁରରେ ପରିଜନ ପରି
ବର୍ଷେ କାଳ ନେଲୁଁ ତୋ ଘେନି ଛପିକରି
ଏବେ ତୁ ଆଜ ହେଲୁ ମୋର ହାତେ ହତ
ଘେନିବି ମୁଁ କାଲି ତୋ ଭାଇଙ୍କ ଜୀବତ ।
ଯୁଧିଷ୍ଠିର ରାଜାଙ୍କୁ ହସ୍ତିନାରାଜ୍ୟ ଦେଇ
ବିହରିବି ମହୀରେ ଇନ୍ଦ୍ରପରି ମୁହିଁ ।
ଏହିରୂପେ ସେ ଦୁଃଶାସନ ଶବ ଆଗେ
କହି ଭୀମସେନ ଚଢ଼ିଣ ରଥ ବେଗେ ।

କୃଷ୍ଣ ଅର୍ଜୁନଙ୍କ ପାଶକୁ ଆସିଲେ
ମାଇଲି ମୁଁ ଦୁଃଶାସନକୁ ସେ ଭାଷିଲେ ।
ସୁଯୋଧନ ଭୁଲେ ଅଛନ୍ତି ଯେତେ ଭାଇ
ପଢ଼ିଲେ ତାଙ୍କୁ ଯୁଦ୍ଧେ ଦେଉଛି ବଢାଇ ।

—※—

## କର୍ଣ୍ଣାର୍ଜୁନ ଯୁଦ୍ଧପୂର୍ବରୁ ଉଭୟପକ୍ଷ ସେନାଙ୍କର ଯୁଦ୍ଧଭୂମିରେ ଦେହପାତ

ପୂର୍ବପର ମେ କୃଷ୍ଣ ଅର୍ଜୁନଙ୍କ ଆଗେ
ଭୀମ ମହାବୀରଟି ନୃତ୍ୟ କଲେ ରାଗେ ।
ସୁବର୍ଚ୍ଚା କବଚୀ ନିଷଙ୍ଗୀ ଧନୁଗ୍ରହ
ଦଣ୍ଡଧାର ଯେ ପ୍ରାଣୀ ଆଲୋକୁପ ସହ ।
ବାନବେଗ ଷଣ୍ଡ ମିଶାଇ ଦଶସୁତେ
ନ ସହିଲେ ଭୀମଙ୍କ ଗାତ୍ର ଦେଖି ନେତ୍ରେ ।
ଧନୁର୍ଗୁଣ ମାଜ ସେ ସାୟକ ସରଜ
ଭୀମଭୁଲେ ଆସିଣ ଆରମ୍ଭିଲେ ଆଜ ।
ଭୀମ କ୍ରୋଧ ହୋଇ ଦଶଟି ଭଲକାଣ୍ଡ
ବିନ୍ଧିଣ କାଟି ପକାଇଲେ ତାଙ୍କ ମୁଣ୍ଡ ।
ଭୀଷ୍ମ ଦଶ ପୁଏ ଯହୁଁ ସେ ଯୁଦ୍ଧ କଲେ
ଭୀଷ୍ମ ସୈନ୍ୟଯାକ ଲଘୁରେ ପଳାଇଲେ ।
କର୍ଣ୍ଣ ଭୀମଙ୍କର ପରାକ୍ରମକୁ ଦେଖି
କ କରିବା ବୋଲି ସେ ହେଲେ ମନେଦୁଃଖୀ
ଶଲ୍ୟ ବୋଇଲେ ଆହେ କର୍ଣ୍ଣ ସାରଶିଖ
ନ ଧର ଭୟ ମନେ ବନ୍ଧ ହେ ବଶିଖ ।
ଦୁର୍ଯ୍ୟୋଧନ ରାଜା ତ ଦୁଃଶାସନ ମୃତ୍ୟୁ
ଦେଖିକରି ଗ୍ଲାଡ଼ଅଛନ୍ତି ଦେହ ହେତୁ ।
କୃପଙ୍କ ଆଦ୍ଧ ଭୀଷ୍ମ ମହାରଥୀବୃନ୍ଦ
ଗ୍ଲାଡ଼ଛନ୍ତି ହୃଦୟ ମଧରୁ ଆନନ୍ଦ ।
ଦୁର୍ଯ୍ୟୋଧନ ମୁଖକୁ ଚାହିଁଛନ୍ତି ରହି
ସମର ଉତ୍ସାହକୁ ଦୂର କରିଦେଇ ।
ପାଣ୍ଡବମାନେ ଅର୍ଜୁନଙ୍କୁ ଧରି ସଙ୍ଗେ
ଆସନ୍ତି ମାରିବେ ଭୀଷ୍ମଙ୍କୁ ରଣରଙ୍ଗେ ।
ଏବେ ଭୀଷ୍ମେ କ୍ଷତ୍ରିୟଧର୍ମ ଆଶ୍ରେକରି
ଯୁଦ୍ଧ ଯାଇ ଡ଼ାକ ଗାଣ୍ଡୀବ ଧନୁଧାରୀ ।

ଦୁର୍ଯ୍ୟୋଧନରାଜା ତ ଭୀଷ୍ମଠାରେ ଭାର
ଦେଇଛନ୍ତି ତାଙ୍କୁଟି ଯୁଦ୍ଧରୁ ଉଦ୍ଧାର ।
ଜିଣିଲେ ତ ଲୋକେ ପାଇବ ବଡ଼ କୀର୍ତ୍ତି
ମଲେ ପୂଜା କରିବେ ସ୍ୱର୍ଗେ ଶଚୀପତି ।
ଭୀଷ୍ମର ଏ ଗାତ୍ର ଜାଣିଣ ବୃଷସେନ
ଯାଇଛନ୍ତି ପାଣ୍ଡୁସେନାଙ୍କୁ କରି ରଣ ।
ଶଲ୍ୟଙ୍କର ଏ ବାଣୀ ଚନ୍ଦ୍ରମା ହୋଇଲା
କର୍ଣ୍ଣ ଯୁଦ୍ଧଉତ୍ସାହ ସମୁଦ୍ର ବଢ଼ିଲା ।
ବୃଷସେନ ଭୀମସେନଙ୍କୁ ରଣ ଯୋଡି
ବିନ୍ଧିଲେ ଧନୁ ଧରି ଶର କୋଟି କୋଟି ।
ନକୁଳ ତା ନ ସହି ବୃଷସେନ ସଙ୍ଗେ
ଯୁଝିବାକୁ ଧାଇଁଲେ ରଣଦାଣ୍ଡେ ରାଗେ ।
ବୃଷସେନଙ୍କ କର ଧନୁ ଧ୍ୱଜା କାଟି
ଗରଜିଲେ ନକୁଳ ମେଲଦେଇ ପାଟି ।
ଆନ ଧନୁ ଧରିଣ କର୍ଣ୍ଣଙ୍କ ନନ୍ଦନ
ବୃଷସେନ କଲେ ଉତ୍ତମ ଆୟୋଧନ ।
ନକୁଳ କ୍ରୋଧ ହୋଇ ରଚି ଶରମାଳା
ଜାତ କଲେ ଯୁଦ୍ଧଦାଣ୍ଡରେ ଅଗ୍ନିଜ୍ୱାଳା ।
କର୍ଣ୍ଣଙ୍କ ପୁଅ ବୃଷସେନ ତା ନ ସହି
ନକୁଳଙ୍କୁ ଶସ୍ତ୍ର ବିନ୍ଧିଲେ ରୋଷ ବହି ।
ସେକାଳେ ବୃଷସେନ ସୂର୍ଯ୍ୟ ଅଗ୍ନି ପରି
ରହିଲେ ଯୁଦ୍ଧଦାଣ୍ଡେ ତେଜ ଅଙ୍ଗେ ଭରି ।
ଦିବ୍ୟଶସ୍ତ୍ରେ ନକୁଳଙ୍କର ଚାରି ଘୋଡ଼ା
ବୃଷସେନ କଲେ ଯମଙ୍କ ଦାଣ୍ଡେ ଛାଡ଼ା ।
ଘୋଡ଼ାଙ୍କର ମରଣ ଦେଖିଣ ନକୁଳ
ବାହାରିଲେ ସେ ଧରି ଫଳ୍ପ କରବାଳ ।
ରଥ ଗଜ ଅଶ୍ୱ ଯେ ପତ୍ତି ପ୍ରାଣକୁଳ
ହେନିଲେ ଖଡ଼ଗରେ ହୋଇଣ ବିକଳ ।
ବାଛି ବାଛି ସହସ୍ର ଦୁଇସେନା ମାରି
ଡ଼େଇଁଲେ ଯୁଦ୍ଧରେ ନକୁଳ ଚଗ୍ରମାରି ।
ବୃଷସେନ ନକୁଳ ପାଶେ ଧାଇଁଗଲେ
ତୀକ୍ଷ୍ଣ ମାରଗଣେଗଣଙ୍କୁ ବିନ୍ଧିଲେ ।
ଭୀମ ଯେ ସେହିକାଳେ ନକୁଳଙ୍କୁ ସାହା
ହୋଇଲେ ହେ ରାଜନ ଗଦା ଧରି ବାହା ।
ଭୀମଙ୍କୁ ଦେଖିଣ ନକୁଳ ବଳ ପାଇ
ବିକ୍ରମଙ୍କୁ ଦେଲେ ସେ ଦ୍ୱିଗୁଣ ବଢ଼ାଇ ।

କର୍ଣ୍ଣପୁତ୍ର ବୃଷସେନ ସେ ନକୁଳଙ୍କୁ
ବିନ୍ଧିଲେ ଗଣି ସେ ଅଠର ମାର୍ଗଣକୁ ।
ଫରି ଖଣ୍ଡା ଧରି ନକୁଳ ମହାରଥୀ
ଧାଇଁଲେ ଛେଦିବାକୁ ବୃଷସେନ ମଥା ।
ବୃଷସେନ ତୀକ୍ଷ୍ଣକାଣ୍ଡରେ ନକୁଳ
ଫରିଟିକ କାଟିଦେଲେ ହେ ମହୀପାଳ ।
ଫରିହତ ଦେଖି ସେ ଖଡ଼ଗକୁ ବେଗେ
ବୁଲାଇଲେ ନକୁଳ ବୀର ନାନା ବାଗେ ।
ଛଅଟି କାଣ୍ଡକରେ ନକୁଳ ଖଡ଼ଗ
କଲେ ବୃଷସେନ ଯେ ରଣେ ଦୁଇଭାଗ ।
ଏ ବାହାରେ ନକୁଳ ହୃଦୟ ମଧ୍ୟକୁ
ବିନ୍ଧିଲେ ଦାଢ଼ ମୁନ ଥିବା ମାର୍ଗଣକୁ ।
ନକୁଳ ବୃଷସେନ କାଣ୍ଡେ ପୀଡ଼ା ପାଇ
ଭୀମଙ୍କର ରଥରେ ବସିଲେ ସେ ଯାଇ ।
ଭୀମ ନକୁଳଙ୍କୁ ଦେଖିଣ ଏକା ରଥେ
ସାୟକ ବୃଷ୍ଟି କଲେ ନେଇ ତାଙ୍କ ମାଥେ ।
ନକୁଳଙ୍କ ବିରଥ ଦେଖି ଭୀମାର୍ଜୁନ
କଲେ ଶରରେ ବୃଷସେନଙ୍କୁ ସମ୍ମାନ ।
ଭୀମ ବୋଇଲେ ଆହେ ଅରଜୁନ ବୀର
ବେଗେ ବୃଷସେନର ମସ୍ତକକୁ ହର ।
ଭୀମଙ୍କର ବଚନ ଘେନି ଅରଜୁନ
ବୃଷସେନ ଭୁଲରେ କଲେ ଆୟୋଧନ ।
ଦ୍ରୁପଦ ପାଞ୍ଚସୁତେ ଦ୍ରୌପଦୀ ପାଞ୍ଚସୁତ
ସଙ୍ଗେ ଘେନି ହେଲେ ସେଠାକୁ ଉପଗତ ।
ସେମାନଙ୍କ ଆଗେ ସାତ୍ୟକି ବୀରମଣି
ବାହୁରିଥିଲେ ଦୁଇ ହାତେ ଧନୁ ଟାଣି ।
ତା ଦେଖି ଦୁର୍ଯ୍ୟୋଧନ ଦ୍ରୌଣି ବୃକ ସାଥ
କୃତବର୍ମା କୃପ ଉଲୁକ ମହାରଥ ।
ଆରଧ ଆଦି ରଥୀମାନେ ଗୋଟି ହୋଇ
ବୃଷସେନ ପୃଷ୍ଠସାହାକୁ ହେଲେ ଯାଇ ।
ଯୁଧିଷ୍ଠିର ରଥୀମାନଙ୍କୁ ବିନ୍ଧି କାଣ୍ଡ
ଘୁଞ୍ଚାଇଦେଲେ ରାଜନ ଯୁଦ୍ଧଭୂମି ଦାଣ୍ଡ ।
ତାହା ଦେଖି କଳିନ୍ଦବୃନ୍ଦ ରାଗ କରି
ଯୁଦ୍ଧକଟରେ ଗଜ ସୈନ୍ୟକୁ ସଙ୍ଗେ ଧରି ।
ଶବ ଦାନ୍ତ ସୁବର୍ଣ୍ଣ ମାଳା ଗଣ୍ଡା ଗଣ୍ଡା
ହୋଇ ତ ଥିଲା ଚିତ୍ରେ ସେ ହାତୀଙ୍କ ମଣ୍ଡା ।

ଏ ସକାଶୁଁ ତାଙ୍କୁ ବଜୁଳ ଯୁଦ୍ଧ ଘନ
ଉପରେ ମଣିଲନ୍ତି ସବୁରି ନୟନ ।
ବଖର୍ଦ୍ଦିପୁତ୍ର କୃପ ଦେହେ କାଣ୍ଡଦଶ
ବିନ୍ଧିଲେ ହୃଦମଧ୍ୟେ ଧରି ମହାରୋଷ ।
କୃପଙ୍କ କାଣ୍ଡରେ ବଖର୍ଦ୍ଦିପୁତ୍ର ପ୍ରାଣ
ଘୁଞ୍ଚିଲା ତା ଚଢ଼ିବା ହାତୀ ଭୁଲେ ଜାଣ ।
ବଖର୍ଦ୍ଦିପୁତ୍ର ସାନଭାଇ ତା ନ ସହି
ଫିଙ୍ଗିଲା ତୋମରକୁ କୃପଙ୍କୁ ଦେଖାଇ ।
ଶକୁନି ତାହା ଦେଖି ହୃଦେ ଧରି ରାଗ
ବେକଠାରୁ ତାହାକୁ କଲେ ଦୁଇଭାଗ ।
ଏହା ଦେଖିଣ ଦ୍ୟୁମ୍ନ ମହାରଥୀବୃନ୍ଦ
ବଜାଇଲେ ଶଙ୍ଖକୁ ହୋଇଣ ଆନନ୍ଦ ।
କୁରୁ ପାଣ୍ଡବ ଦୁଇ ସୈନ୍ୟଙ୍କର ରଣ
ପୁଣି ପ୍ରବର୍ତ୍ତିଲା ହୋଇଣ ଅତି ଟାଣ ।
ହାତୀକ ହାତୀ ମରାମରି ଯୁଦ୍ଧ ହୋଇ
ଯୁଦ୍ଧଭୂମି ମଧ୍ୟେ ପଡ଼ିଲେ ଦୁଃଖେ ଶୋଇ ।
କୃତବର୍ମା ବହୁ ପଦାତି ହାତୀ ସୈନ୍ୟ
ସେ ଯୁଦ୍ଧରେ ମାଇଲେ କରି ଆୟୋଧନ ।
ବଙ୍ଗରାଜା ଗିରି ଉପରେ ଦ୍ରୋଣସୁତ
କଲେ ତାଙ୍କ ହାତୀକୁଳକୁ ମହୀଗତ ।
କୁଳିନ୍ଦଦେଶରାଜା ଯାନ ଭାଇ ଆସି
ଦ୍ୟୁମ୍ନ ପୁଅ ବୃକୁ ବିନ୍ଧିଲେ ହୋଇ ରୋଷୀ ।
କୁଳିନ୍ଦ ଦେଶରାଜା ଭାଇର ହାତୀକ
ଦ୍ୟୁମ୍ନ ପୁଅ ବିନ୍ଧିଲେ ଟାଣି ଧନୁଟିକ ।
ସେ ହାତୀ ଦ୍ୟୁମ୍ନ ପୁଅ କାଣ୍ଡେ ଛାଡ଼ି ପ୍ରାଣ
ଭେଟିଲା ଯାଇ କରି ପ୍ରେତକୁଳ ଗଣ ।
କୁଳିନ୍ଦରାଜା ଭାଇ ଆନ ହାତୀ ଚଢି
ଦେଖାଇଲା ନାଥକୁ ଯାଉ ଯୁଦ୍ଧପ୍ରୌଢ଼ି ।
ନାଥ ଶରେ କୁଳିନ୍ଦରାଜା ଭାଇ ଗଜ
ମରି କରି ପୁଣି ଦେଖିଲା ଯମରାଜ ।
କୁଳିନ୍ଦରାଜା ଭାଇ କାଣ୍ଡେ ବ୍ୟଥା ପାଇ
ନାଥ ମଧ୍ୟ ପଡ଼ିଲା ରଣଦାଣ୍ଡେ ଶୋଇ ।
ବୃକ ତାହା ଦେଖି କୁଳିନ୍ଦ ରାଜାଭ୍ରାତ
ସଙ୍ଗତରେ ଯୁଝିଲା ହୋଇ କ୍ରୋଧଚିତ୍ତ ।
କୁଳିନ୍ଦରାଜାଭ୍ରାତା ଦେଖାଇ ବାହୁଟାଣ
ବୃକର ଘେନିଗଲା ମାର୍ଗଣରେ ପ୍ରାଣ ।

ତାହା ଦେଖିଣ ବଭ୍ରୁ ସୁତ ଟାଣବାଣେ
କୁଳନ୍ଦ ରାଜା ହାଇ-ପ୍ରାଣ ନେଲା ରଣେ ।
ସହଦେବ ସୁତ ଯେ ଅଙ୍ଗଦକୁ ରଣେ
ମାରି ଗରଜନ ହେ କଲେ ଅତି ଟାଣେ ।
ଦ୍ରୁପଦ ନୃପତନୟ ଶତାନୀକ ଭୁଲେ
ଯୁଦ୍ଧ କରି ଯମ ରାଜାଙ୍କୁ ଭେଟି ଗଲେ ।
କର୍ଣ୍ଣ ପୁଅ ବୃଷସେନଟି ବଳି ଶ୍ରେଷ୍ଠ
ବିନ୍ଧିଲା ତିନ ତୋମରେ ଧରି ଜଣ ।
ଅରଜୁନ ଭୀମଙ୍କୁ ତିନ ତିନ ବିନ୍ଧି
କୃଷ୍ଣଙ୍କୁ ବାରକାଣ୍ଡେ ପକାଇଲା ରୁନ୍ଧି ।
ବୃଷସେନ ବିକ୍ରମ ଦେଖି କୁରୁରାଣ
ସ୍ତୁତି କରିବାରେ ରହିଲେ ଛାଡ଼ି ରଣ ।
ଅର୍ଜୁନ ପରାକ୍ରମ ଜାଣନ୍ତି ଯେତେକ
ବୋଇଲେ ମଲା କର୍ଣ୍ଣପୁତ୍ର ଅବିବେକ ।
ଅରଜୁନ ବୃଷସେନର ବିକ୍ରମକୁ
ନ ସହି ହୃଦମଧ୍ୟେ ଧଇଲେ ରାଗକୁ ।
କର୍ଣ୍ଣ ଆଗରେ ବୃଷସେନ ରହିଥିଲେ
ତାଙ୍କଠାକୁ ବୋଲି ସେ ରଥ ଧୂଆଁଇଲେ
କର୍ଣ୍ଣସୁତ କାଳବଶରେ ହୋଇ ବାଇ
ଅରଜୁନଠାକୁ ଆସିଲା ମଧ୍ୟ ଧାଇଁ ।
ଅରଜୁନଙ୍କୁ ବିନ୍ଧି ମାରଗଣଗଣ
ଗର୍ଜ୍ଜନ କଲା ବୃଷସେନ ନରରାଣ ।
ପୁଣି ଅରଜୁନଙ୍କ ସବ୍ୟ ଭୁଜଦେଶେ
ବୃଷସେନ କାଣ୍ଡ ବିନ୍ଧିଲା ଦଶ ଶେଷେ ।
କୃଷ୍ଣଙ୍କର ଦେହକୁ ନବକାଣ୍ଡ ବିନ୍ଧି
ରହିଲା ଯୁଦ୍ଧଦାଣ୍ଡେ ଧନୁବାଣ ସନ୍ଧି ।
ଅରଜୁନ ଯେ ତାହା ନ ପାରିଣ ସହି
ଭ୍ରୁକୁଟିକ କପାଳ ମଧ୍ୟରେ ରଖାଇ ।
ଗାଣ୍ଡୀବରେ ବାଡକୁ କରି ସରଜନା
ବୃଷସେନ ବଧରେ ହେଲେ ଉଗ୍ରମନା ।
ସ୍ୱର କ୍ଷୁର କାଣ୍ଡରେ ଧନୁ ଭୁଜ ଶୀର
କାଟିଣ ପକାଇଲେ ବୃଷସେନଙ୍କର ।
ଅର୍ଜୁନ କାଣ୍ଡରେ ଛିଣ୍ଡାଇ ମୁଣ୍ଡ ଭୁଜ
ପଡ଼ିଲା ରଥ ତଳେ କର୍ଣ୍ଣଙ୍କ ଆତ୍ମଜ ।

—❀—

## କର୍ଣ୍ଣାର୍ଜ୍ଜୁନ ଯୁଦ୍ଧ

ରଥରୁ ପୁଅ ପଡ଼ିବାର କର୍ଣ୍ଣ ଦେଖି
ଅର୍ଜୁନଙ୍କୁ ବିଶିଖ ବିନ୍ଧିଲେ ସଳଖି ।
ଅର୍ଜୁନଙ୍କ ରଥ ପାଖରେ ନିଜ ରଥ
ରଖାଇଲେ କର୍ଣ୍ଣ ତ ଅତ୍ୟନ୍ତ ସମର୍ଥ ।
କୃଷ୍ଣ ବୋଇଲେ ହେ ଅର୍ଜୁନ ଦେଖ ଦେଖ
ଆସିଗଲା ଟି କର୍ଣ୍ଣ ବିନ୍ଧିଣ ବିଶିଖ ।
ସ୍ଥିର ହୋଇଣ ତୁମ୍ଭେ ରହି ଯୁଦ୍ଧଦାଣ୍ଡେ
ପଠାଅ କର୍ଣ୍ଣଙ୍କୁ ଯମପୁର ଖଣ୍ଡେ ।
କର୍ଣ୍ଣଙ୍କର ରଥକୁ ଚାହଁ ହେ ଲାଗିଛି
ହୋଇଛି ମଣ୍ଡା ସୁନାମାଳ କୋଟି କୋଟି ।
କର୍ଣ୍ଣଙ୍କର ଧ୍ୱଜ ହେ ଦେଖ ଆକାଶକୁ
ବ୍ୟାପି କରାଉଅଛି ଯୋଦ୍ଧାଙ୍କ ଭୟକୁ ।
ମେଘ ଜଳଧାରକୁ ବରଷିବା ପ୍ରାୟ
ଶରଧାରା ସର୍ଜନ୍ତି କର୍ଣ୍ଣ ବୀର ରାୟେ ।
ଶଲ୍ୟ ଦେଖ ରଥ ଆଗରେ ବସିଛନ୍ତି
କର୍ଣ୍ଣଙ୍କର ଶ୍ୱେତଘୋଡ଼ାଙ୍କୁ ଯେ ବାହାନ୍ତି ।
ଦୁନ୍ଦୁଭି ଶଙ୍ଖଙ୍କର ଶୁଣ ହେ ଶବଦ
କରାଉଅଛି କର୍ଣ୍ଣ ବେନକ ପ୍ରବଧ ।
କର୍ଣ୍ଣଙ୍କର ଧନୁଷ୍ଟଙ୍କାର ସବୁ ଶବ୍ଦ
ଜିଣି ବଢ଼ାଉଅଛି କୁରୁଙ୍କ ପ୍ରମାଦ ।
ପାଞ୍ଚାଳ ରଥୀଏ କର୍ଣ୍ଣଙ୍କୁ ଦେଖିକରି
ପଳାଉଛନ୍ତି ଯୁଦ୍ଧଦାଣ୍ଡେ ଭୟ ଧରି ।
ଏ ସବାଶୁଁ ମୁହିଁ କହୁଛି ଅରଜୁନ
ଯତନ କରି ନେବ କର୍ଣ୍ଣର ଜୀବନ ।
ତୁମ୍ଭର ଆନ ଲୋକେ ଯୁଦ୍ଧେ ଯେବେ ତାଙ୍କୁ
ଦେଖିବ ଯାଇକରି ଯମଙ୍କ ପୁରକୁ ।
ଦେବ ଅସୁରଙ୍କୁ ତ ତୁମ୍ଭେ ଜିଣିପାର
କର୍ଣ୍ଣ କେତେକର ବା କରିବ ସମର ।
ଶିବଙ୍କୁ ତ ତୁମ୍ଭେ ହେ ଯୁଦ୍ଧରେ ସନ୍ତୋଷ
କରିଛ ଏବେ ମାର କର୍ଣ୍ଣଙ୍କୁ ବୀରେଶ ।
ଶିବଙ୍କ ବରରେ ଯୁଦ୍ଧରେ ତୁମ୍ଭ କାୟ
ସବୁ ବୀରଙ୍କର ଟି ଅଟଇ ଅଜୟ ।
ଅରଜୁନ ବୋଇଲେ ତିନି ଲୋକ ଗୁରୁ
ତୁମ୍ଭ ସନ୍ତୋଷରୁ ମୁଁ ଯୁଦ୍ଧେ ହନ୍ତକାରୁ ।

କର୍ଣ୍ଣଙ୍କୁ ଆଜ ମୁଁ ମାରିବ ଯୁଦ୍ଧବାଣ୍ଡେ
ବାହ ମୋର ରଥବରଙ୍କୁ କୃଷ୍ଣ ଖଣ୍ଡେ ।
ଆଜ ମୋର କାଣ୍ଡରେ ମରିବେ ବା କର୍ଣ୍ଣ
ନୋହିଲେ ବା କରିବେ ମୋତେ ସେହଧନ
ଏ ଦୁଇ କଥାଟିରୁ କଥାଟିଏ ସାର
ହୋଇବ ତ ଯୁଦ୍ଧରେ ଜାଣ ଯଦୁସାର ।
ଯେ ଯୁଦ୍ଧ ଆଜ ମୁଁ କରିବ କର୍ଣ୍ଣ ଭୁଲେ
ପୃଥ୍ୱୀ ଥିବାଯାକ ସେ କଥା ଥିବ ଭଲେ ।
ଏହା କହି କୃଷ୍ଣଙ୍କୁ ପାର୍ଥସାର ରାଜ
ଧାଇଁଲେ କର୍ଣ୍ଣ ଠାକୁ ଧନୁ କରି ସଜ ।
ପୁଣି ଅରଜୁନ ବୋଇଲେ ମୋର ଘୋଡ଼ା
କରି କୃଷ୍ଣ ବେଗେ କର୍ଣ୍ଣଙ୍କ ଆଗେ ଛାଡ଼ା ।
ଏହା ଶୁଣି କୃଷ୍ଣ କର୍ଣ୍ଣଙ୍କ ସମୀପକୁ
ବାହିଲେ ଅର୍ଜ୍ଜୁନଙ୍କ ଶୁକଳ ଘୋଡାଙ୍କୁ ।
କର୍ଣ୍ଣ ବୃଷସେନ ମରଣେ ଦୁଃଖୀ ହୋଇ
ଅର୍ଜ୍ଜୁନ ଆଗେ ରଥ ରଖାଇଲେ ନେଇ ।
ସେ ଦୁଇ ରଥ ବାଘଚମଘୋଡ଼ା ରଥେ
ବସି ଦିବ୍ୟଧନୁ ଯୋଡ଼ାଏ ଧରି ହାତେ ।
ଚନ୍ଦ୍ରାଦିତ୍ୟ ପରି ପ୍ରକାଶି ଦୁହେଁ ତେଜ
ଯୁଦ୍ଧ କରିବାକୁ ଯେ ବଢ଼ାଇଲେ ଓଜ ।
ଇନ୍ଦ୍ର ବଳୀ ପରି ଦୁହିଙ୍କି ଲୋକେ ଦେଖି
କ ହେବ ଆଜ ବୋଲି ହେଲେ ମହାଦୁଃଖୀ
କର୍ଣ୍ଣଙ୍କର ଅର୍ଜ୍ଜୁନଙ୍କର ଦୁଇ ଧ୍ୱଜ
ମିଶାମିଶି ହୋଇଗଲେ ହେ ମହାରାଜ ।
ରାଜାମାନେ ତା ଦେଖି କରି ସିଂହନାଦ
ପୂରଇଲେ ଆକାଶ କରି ସାଧୁବାଦ ।
ଦୁଇସେନାଯାକ ଯେ ଉଡ଼ାଇଣ ଲୁଗା
ଦେଖିବା ଯୁଦ୍ଧ ବୋଲି ହୋଇଲେ ଅଲଗା
କର୍ଣ୍ଣଙ୍କ ଆନନ୍ଦ ହେବାକୁ କୁରୁଜନ
ବଜାଇଲେ ଧରିଣ ଭେଷ୍ଟ ଶଙ୍ଖମାନ ।
ସେରୂପେ ପାଣ୍ଡବସଇନେ ଶଙ୍ଖଘୋଷ
ଅର୍ଜ୍ଜୁନ ତୋଷପାଇଁ ପୂରିଲେ ନରେଶ ।
କବଚ ଖଣ୍ଡା ଶ୍ୱେତଛତ୍ର ତୂଣ ଧନୁ
ଦୁହେଁ ବହିଛନ୍ତି ହୃଦରେ ଧରି ମନ୍ୟୁ ।
ଦେବଗନ୍ଧର୍ବ ଦେବସମ ଯେ ଦେବରୂପ
ଶୋଭାକୁ ପାଇଛନ୍ତି ସେ ଦୁହେଁ ଅମାପ ।
ଅନ୍ତକ ଯମପରି ସବୁରି ଅଦୃଶ୍ୟ
ହୋଇଛନ୍ତି ଦେଖି ନ ପାରେ ତାଙ୍କୁ ଦୃଶ୍ୟ ।
ଯୁଗାନ୍ତକାଳେ ଦୁଇ ଗ୍ରହ କ୍ରୋଧ ହୋଇ
ବାହାରିଲା ପରି ସେ ଛନ୍ତି ଯୁଦ୍ଧେ ଧାଇଁ ।
ବାଘ ପରି ଦୁହେଁ ପ୍ରକାଶିଛନ୍ତି ବେଗ
ପରକାଶ କରିଣ ଦଶନ ଆଶୁଗ ।
କର୍ଣ୍ଣ ଅର୍ଜ୍ଜୁନଙ୍କର ସମାଗମ ଦେଖି
କେ ଜିଣିବ ବୋଲିଣ ଲୋକ ହେଲେ ଦୁଃଖୀ
ଦୁହେଁ ତ ବାରପୁତେ ହୋଇଛନ୍ତି ଯୁତ
ଜାଣନ୍ତି ତ ସେ ଦୁହେଁ ସବୁ ଯୁଦ୍ଧମତ ।
ଦୁହେଁ ତ ବଳପଉରୁଷ ଖ୍ୟାତ କରି
ଜଗତ ମଧରେ ବୋଲନ୍ତି କୀର୍ତ୍ତିକାରୀ ।
ଏହି ସକାଶୁ କୁରୁ ପାଣ୍ଡବ ସଇନ
ଜୟରେ ହେଲେ ଅତି ସଂଶୟିତ ମନ ।
କାର୍ତ୍ତିବୀର୍ଯ୍ୟ ରାମ ଯେ ବିଷ୍ଣୁ ମହାଦେବ
ସମାନ ତ କର୍ଣ୍ଣ ଅର୍ଜ୍ଜୁନଙ୍କ ପ୍ରଭାବ ।
ଦୁହିଙ୍କ ରଥରେ ସାରଥି ଶ୍ରେଷ୍ଠ ଦୁଇ
ବାହାନ୍ତି ଘୋଡ଼ା ଅତି ଯତ୍ନମନ୍ତ ହୋଇ ।
ଏହା ଦେଖି ସିଦ୍ଧ ଚାରଣେ ଠୋଇ ଗୋଟି
ଭାବିଲେ କ ହୋଇବ ବୋଲି ମେଲ ପାଟି ।
ଭୂମି ପୁଏ ବଳ ଧରିଣ କର୍ଣ୍ଣ ପାଶେ
ସାହାଯ୍ୟେ ରହିଲେ ଦେଖିବା ଯୁଦ୍ଧଆଶେ
ପାଣ୍ଡବେ ଧୃଷ୍ଟଦ୍ୟୁମ୍ନଙ୍କୁ ଆଗେ କରି
ଅର୍ଜ୍ଜୁନଙ୍କୁ ଜଗିଲେ କରେ ଶସ୍ତ୍ର ଧରି ।
ଦୁଇଥାଟର ଲୋକେ କର୍ଣ୍ଣ ଅର୍ଜ୍ଜୁନଙ୍କୁ
ଯୁଦ୍ଧରେ ଦୃଢ଼ କରି ଭାବିଲେ ଜୟକୁ
ଦେଖଣାହାରି ସାକ୍ଷୀ କୁରୁପାଣ୍ଡୁ ସେନା ।
ହୋଇଲେ ହେ ଜାଣ ରାଜନ ମହାମନା ।
ଆକାଶଦେଶେ ଥାଇ ଦେବେ କଲେ ଗୋଳ
ଦେଖିକରିଟି କର୍ଣ୍ଣ ଅର୍ଜ୍ଜୁନଙ୍କ ବଳ ।
କେ ବୋଇଲେ କର୍ଣ୍ଣ ଜିଣିବେ ଆଜ ରଣେ
କେ ହୋଇଲେ ମରିବେ ଅର୍ଜ୍ଜୁନଙ୍କ ବାଣେ ।
କର୍ଣ୍ଣଙ୍କର ପକ୍ଷରେ ନକ୍ଷତ୍ର ଆକାଶ
ରହିଲେ ଜାଣ ଆହେ ନରକୁଳଈଶ ।
ମହାଦେବୀ କହିଲେ ପାର୍ଥପକ୍ଷେ ଥାଇ
କର୍ଣ୍ଣ ଭକ୍ତ ପିଇବ ନକ୍ଷେତ୍ର ଆଜ ମୁହିଁ ।

ନକ୍ଷ ଗିରି ସମୁଦ୍ର ଅଉଷଧିକୁଳ
ଅର୍ଜ୍ଜୁନଙ୍କୁ ଆଶ୍ରା କଲେ ହୋଇ ଭୁଳ ।
ଅସୁର ଯାତୁଧାନ ଗୁହ୍ୟକ ଖେଚର
ପକ୍ଷୀମାନେ ହୋଇଲେ ପକ୍ଷ କର୍ଣ୍ଣଙ୍କର ।
ରଚନଦ୍ଧି ଦେବ ରହସ୍ୟ ଆଖ୍ୟାନ
ରହିଲେ ଯାଇଣ ଅର୍ଜ୍ଜୁନ ସନ୍ନିଧାନ ।
ବାସୁକୀ ଚକ୍ରସେନ ତକ୍ଷକ କାଦ୍ରବେୟ
ରହିଲେ ସର୍ପେ ରହିଗଲେ ଧନଞ୍ଜୟ ।
ପାଣିହୁଳା ଧଣ୍ଡା ଚଣ୍ଡ ଆଦ ଏ ସାପେ
ରହିଲେ ପକ୍ଷ ଧରି କର୍ଣ୍ଣଙ୍କ ସମୀପେ ।
ମଙ୍ଗଳକର ମୃଗ ମଙ୍ଗଳକର ପକ୍ଷୀ
ଅର୍ଜ୍ଜୁନ ପକ୍ଷରେ ରହିଲେ ଜୟ ଲକ୍ଷି ।
ମରୁତ ବସୁ ସାଧ୍ୟ ରୁଦ୍ର ବିଶ୍ୱଦେବ
ଅଗ୍ନି ଚନ୍ଦ୍ର ଅଶ୍ୱିନୀକୁମାର ବାସବ ।
ଏମାନେ ଅର୍ଜ୍ଜୁନଙ୍କ ଜୟଶିରୀ ବାଞ୍ଛି
ରହିଲେ କର୍ଣ୍ଣଠାରୁ ଉପ୍ରୋଧ ମୁ ଛୁଞ୍ଚି ।
ଦ୍ୱାଦଶ ସୂର୍ଯ୍ୟଯାକ କର୍ଣ୍ଣଙ୍କର ଜୟ
ବିଚାରିଲେ ବିଚାରି ବିଜୟାବିଜୟ ।
ବୈଶ୍ୟ ଶୂଦ୍ର ସୂତ କର୍ଣ୍ଣଙ୍କ ପକ୍ଷେ ରହି
ଜଣିବେ କର୍ଣ୍ଣ ବୋଲି ଗର୍ଜିଲେଟି ତହିଁ ।
ପିତୃମାନେ ଅର୍ଜ୍ଜୁନଙ୍କର ପରଶଂସା
ମୁଖେ ବାଢ଼ି ତାଙ୍କ ଜୟକୁ କଲେ ଆଶା ।
ବରୁଣ ଯମ ଯାଗ ଦକ୍ଷିଣକୁ ଘେନି
ଅର୍ଜ୍ଜୁନଙ୍କ ପକ୍ଷେ ରହିଲେ ହୋଇ ଭୂମି ।
କୁମ୍ଭୀର ବାଘ ଶ୍ୱାନ ଶିବା କର୍ଣ୍ଣପକ୍ଷେ
ରହି ଗରଜିଲେ ପାଳିକ ମେଲି ଅକ୍ଷେ ।
ଦେବତାଏ ବ୍ରହ୍ମର୍ଷି ଭୂମ୍ବୁର ଗନ୍ଧର୍ବ
ଅର୍ଜ୍ଜୁନଙ୍କ ଜୟ ଭାବିଲେ ବହି ଗର୍ବ ।
ଏରୂପେ ଦେବତାଏ ନାନା ବାହନରେ
ରହିଲେ ସଜନ ହେ ଆସି ଗଗନରେ ।
ଦେବେ ଯେ ଯାହାର ସ୍ୱରୂପକୁ ବିସ୍ତାରି
ହେଲେ କର୍ଣ୍ଣାର୍ଜ୍ଜୁନଙ୍କର ଜୟବାଞ୍ଛାକାରୀ ।
ବ୍ରହ୍ମା ଯେ ସଙ୍ଗତରେ ବ୍ରହ୍ମର୍ଷିକୁଳ
ଘେନି ଦେଖି ଆସିଲେ କର୍ଣ୍ଣାର୍ଜ୍ଜୁନ ଖେଳ ।
ରୁଦ୍ର ଯେ କଇଳାସ ବାସୀଙ୍କର କୁଳେ
ଅର୍ଜ୍ଜୁନ କର୍ଣ୍ଣ ଯୁଦ୍ଧ ଦେଖିଣ ଆସିଲେ ।

ସେକାଳରେ ଇନ୍ଦ୍ର ବୋଇଲେ ମୋର ସୁତ
ଜଣିବ ଆଜ ଯୁଦ୍ଧଦାଣ୍ଡେ କର୍ଣ୍ଣହତ ।
ସୂର୍ଯ୍ୟ ବୋଇଲେ ଆହେ ଇନ୍ଦ୍ର ହେଲ ବାଇ
କର୍ଣ୍ଣ ଦେବ ଅରଜୁନଙ୍କୁଟି ବଡ଼ାଇ ।
ଏରୂପେ ଇନ୍ଦ୍ର ସୂର୍ଯ୍ୟ ହୋଇକରି ଗୋଳ
ଅନ୍ୟୋନ୍ୟେ ପ୍ରଶଂସିଲେ ଯେ ଯାହାର ବାଳ
କର୍ଣ୍ଣ ଅର୍ଜ୍ଜୁନଙ୍କର ସମାଗମ ଦେଖି
ତ୍ରିଲୋକଯାକ ହୋଇଲେ ସଂଶୟେ ଦୁଃଖୀ ।
କର୍ଣ୍ଣଙ୍କର ପକ୍ଷରେ ରହିଲେ ଅସୁରେ
ଅର୍ଜ୍ଜୁନଙ୍କପକ୍ଷେ ରହିଲେ ଜାଣ ସୁରେ ।
ଦେବତା ବ୍ରହ୍ମାଙ୍କୁ ବୋଇଲେ କର୍ଣ୍ଣାର୍ଜ୍ଜୁନ
ସମାନ ଯୁଦ୍ଧ ହେଉ ବଖାଣ ବଚନ ।
ଇନ୍ଦ୍ର ସେହିକାଳେ ବ୍ରହ୍ମାଙ୍କ ପାଦେ ପଡ଼ି
ଜଣାଇଲେ ତାହାଙ୍କୁ କର ଦୁଇ ଯୋଡ଼ି ।
ପୂର୍ବୁ ତ କହିବା ହୋଇଛୁ କୃଷ୍ଣାର୍ଜ୍ଜୁନ
ଜଣିବେ ଜଗତଯାକର ସାରଜନ ।
ଏବେ ସେହିରୂପେ ହେ ବୋଲ ପିତାମହ
ଗୁଡ଼ ଯାଉ ମୋହର ହୃଦୟରୁ ମୋହ ।
ବ୍ରହ୍ମା ରୁଦ୍ର ବୋଇଲେ ବାସବ ନ ଡର
ପାର୍ଥ ସଙ୍ଗେ ଯୁଝି ମରିବ କର୍ଣ୍ଣବୀର ।
ଅରଜୁନଙ୍କଠାରେ ସବୁ ଧନୁର୍ବେଦ
ରହିଛି, କରିବେ ସେ ଯୁଦ୍ଧେ ଭୂମ୍ଭ ମୋଦ ।
ଦୁଇ କୃଷ୍ଣ ଯେବେ ଧରିବେ କ୍ରୋଧ ଚିତ୍ତେ
ସାରା ଜଗତ ନାଶ ଯିବଟି କ୍ଷଣିତେ ।
ଅମ୍ଭମାନଙ୍କୁଟି ଶ୍ରୀକୃଷ୍ଣ ଅରଜୁନ
ସରଜନା କରିଅଛନ୍ତି ମନେ ଘେନ ।
କୃଷ୍ଣାର୍ଜ୍ଜୁନଙ୍କର ହୋଇବ ଆଜ ଜୟ
କର୍ଣ୍ଣ ସ୍ୱର୍ଗ ଯିବେ ଯୁଦ୍ଧରେ ପାଇ କ୍ଷୟ ।
ଏହିରୂପରେ ବ୍ରହ୍ମା ଈଶାନ ଇନ୍ଦ୍ରଙ୍କୁ
କହିକରି ରହିଲେ ଭଜି ମଣ୍ଡନକୁ ।
ଇନ୍ଦ୍ର ବୋଇଲେ ଆହେ ବ୍ରହ୍ମା ରୁଦ୍ର ବାଣୀ
ଶୁଣିଲ ତ ବସି ସକଳ ଦେବ ଶ୍ରେଣୀ ।
ସୂର୍ଯ୍ୟେ ଯେ କରୁଥାନ୍ତି ମୋହଠାରେ ଗୋଳ
ଆଜ ତାଙ୍କ ପୁତ୍ରର ପୂରିବଟି କାଳ ।
ତୁମ୍ଭେମାନେ ହେ ଏବେ ଗତମନ୍ୟୁ ହୋଇ
ରହ ଅର୍ଜ୍ଜୁନଙ୍କ ଜୟରେ ମନ ଦେଇ ।

ଇନ୍ଦ୍ରଙ୍କର ବଚନ ଶୁଣି ଦେବଚୟ
ବୋଇଲେ ହେବ ଯୁଦ୍ଧେ ବିଜୟ-ଅଜୟ ।
ଏହିରୂପେ ଯେ କଥା ଦେବତାଏ ହୋଇ
ପୁଷ୍ପବୃଷ୍ଟି କଲେ ଅର୍ଜୁନ ଶିରେ ନେଇ ।
ଦେବେ ଦୁନ୍ଦୁଭିକି ବଜାଇଣ ଆକାଶେ
ଯେଝା ଯାନେ ବସି ଦେଖିଲେ ଯୁଦ୍ଧ ତୋଷେ
କର୍ଣ୍ଣ ଅରଜୁନ ଯୁଦ୍ଧରେ ମନ ଦେଇ
ହୃଷ୍ଟରେ ଦେହ ପୁଷ୍ଟ କଲେ ନରସାଇଁ ।
ବାସୁଦେବ ଅର୍ଜୁନ କର୍ଣ୍ଣ ମଦ୍ରେଶ୍ୱର
ଶଙ୍ଖମାନ ମୁଖରେ ଭରି କଲେ ଘୋଷ ।
ଅର୍ଜୁନ କର୍ଣ୍ଣଙ୍କର ଧ୍ୱଜ ସେ କାଳରେ
ଆରମ୍ଭିଲେ ମହାଯୁଦ୍ଧକୁ ବଳାତ୍କାରେ ।
କର୍ଣ୍ଣଙ୍କ ହସ୍ତି କକ୍ଷା ଇନ୍ଦ୍ରଧନୁ ପରି
ସବୁରି ନେତ୍ରକୁ ଦିଶିଲା ଦଣ୍ଡଧାରୀ ।
ଅର୍ଜୁନଙ୍କ ଧ୍ୱଜ ମର୍କଟ ଦନ୍ତପନ୍ତି
ଦେଖିଲେ ହୋଇଲା ଲୋକମାନଙ୍କର ଭ୍ରାନ୍ତି ।
ସେ ବାନରଧ୍ୱଜ ଦେଖାଇ ବିକ୍ରମକୁ
ମାଇଲା ଆଗେ ଡେଇଁ କର୍ଣ୍ଣଙ୍କ ଧ୍ୱଜକୁ ।
କର୍ଣ୍ଣଙ୍କର ଯେ ମହାନାଗକକ୍ଷା କ୍ରୋଧ
ହୋଇ ସେ କପି ଭିଲେ କଲା ମଲ୍ଲଯୁଦ୍ଧ ।
କର୍ଣ୍ଣ ଅର୍ଜୁନଙ୍କ ଆଠଟି ଶ୍ୱେତଘୋଡ଼ା
ଗରଜନ କଲେ ନ କାଢ଼ି ଟିପେ ଭିଡ଼ା ।
କୃଷ୍ଣ ଶଲ୍ୟ ଦୁହେଁ ନୟନ ଶାସ୍ତକରେ
ମରମର ହେଲେ ରାଜନ ନିଃଶଙ୍କରେ ।
କୃଷ୍ଣଙ୍କ ଚାହିଁବା ଭଙ୍ଗିରେ ଶଲ୍ୟରାଜା
ମଜ୍ଜାଇଲେ ଭୟ-ଜଳରେ ନିଜ ମଜ୍ଜା ।
ଅରଜୁନ କର୍ଣ୍ଣଙ୍କୁ ବଧ କରି ହେରି
ନେଲେ ଯେ ତାହାଙ୍କର ଧୈର୍ଯ୍ୟକୁ ହରି ।
ଏ ଅନ୍ତରେ କର୍ଣ୍ଣ ଯେ କହିଲେ ଶଲ୍ୟଙ୍କୁ
ତୁମ୍ଭେ ମଲେ ମାରିବ କୃଷ୍ଣ ଅର୍ଜୁନଙ୍କୁ ।
ମୁଁ ମଲେ ତୁମ୍ଭେ କିସ କରିବ ହେ ଶଲ୍ୟ
ତାହା କହ କାଢ଼ ମୋ ହୃଦୟର ଶଲ୍ୟ ।
ଶଲ୍ୟ ବୋଇଲେ ହେ ଅର୍ଜୁନ ବାଣେ ତୁମ୍ଭେ
ମଲେ କୃଷ୍ଣାର୍ଜୁନ ମାରିବୁଁ ଜାଣ ଆମ୍ଭେ ।
ଏହିରୂପେ କୃଷ୍ଣ ଅର୍ଜୁନ କୁହାକୁହି
ହୋଇଲେ ଜାଣ ହେ ହସ୍ତିନା ନରସାଇଁ ।

କୃଷ୍ଣ ହସିକରି କହିଲେ ଅର୍ଜୁନଙ୍କୁ
ଦିବାକର ପଛକେ ଆସିବେ ତଳକୁ ।
ମହୀ ପଛକେ ଶତଖଣ୍ଡ ହୋଇଯିବ
କର୍ଣ୍ଣ ଯେବେ ଅଜୟ ତୁମ୍ଭର ନୋହିବ ।
ଯେବେ ବା କଦାଚିତେ ହାରିବ କର୍ଣ୍ଣଙ୍କୁ
ତେବେ ମୁଁ କହୁଅଛି ମାରିବି ତାହାଙ୍କୁ ।
ଅରଜୁନ ତା ଶୁଣି ହୋଇ ହସ ହସ
ବୋଇଲେ କରିବି କର୍ଣ୍ଣଙ୍କୁ ରଣେ ନାଶ ।
ତୁମ୍ଭ ପର୍ଯ୍ୟନ୍ତେ ନକ ଏହି ଗୁରୁ କଥା
ରହିବ ହେ ନ ଭାଳ କୃଷ୍ଣ ମହାରଥୀ ।
ପତାକା ଧ୍ୱଜ ଛତ୍ର ସୂତ ଅଶ୍ୱ ଭଲେ
ଆଜ କର୍ଣ୍ଣ ମୋ ହାତେ ମରିବଟି ଭଲେ ।
ଆଜ କର୍ଣ୍ଣ ବୃଷ ମୋ ଶର ହାଣ୍ଡି ଲାଗି
ପଡ଼ିବ ଭୂତଳେ ହେ କୃଷ୍ଣଚନ୍ଦ୍ର ଭାଙ୍ଗି ।
ମୋ ର ଶର ପବନ ଉଡ଼ାଇ କର୍ଣ୍ଣ ଘନ
କରିଦେବ ଯୁଦ୍ଧ ଆକାଶେ ଛିନ୍ନଭିନ୍ନ ।
କର୍ଣ୍ଣଙ୍କର ଭାରିଯା ଛେଚି ଚୂଡ଼ବାହି
ତଳେ ପଡ଼ି କାନ୍ଦିବ ଆଜ ଯଦୁସାଇଁ ।
କର୍ଣ୍ଣଙ୍କୁ ନ ମାଇଲେ ଦ୍ରୌପଦୀଙ୍କ କ୍ଲେଶ
ପାସୋରି ପାରିବି କି ମୁହିଁ ଯଦୁ ଈଶ ।
ମରନ୍ତେ କର୍ଣ୍ଣ ଆଜ ସାଧୁ ସାଧୁ ବାଣୀ
ଅମୃତକୁ ପିଇବ ମୋର କର୍ଣ୍ଣ ବେନି ।
ସୁଭଦ୍ରା ଅଭିମନ୍ୟୁ ମରିବାର କଥା
ବ୍ୟଥା ଆଜ ଛାଡ଼ିବେ ଯଦୁ ମହାରଥୀ ।
ଯୁଧିଷ୍ଠିରରାଜା ହେ ମୋହଠାରୁ ଦୁଃଖ
ଆଜ ଛାଡ଼ିଦେଇ କରିବେ ମହାସୁଖ ।
ଏହିକାଳେ ଆକାଶେ ରହି ଦେବସୃଷ୍ଟି
ନିବେଶିଲେ କର୍ଣ୍ଣ ଅର୍ଜୁନ ଯୁଦ୍ଧେ ଦୃଷ୍ଟି ।
ନର ମଧ୍ୟ ଦେଖିଲେ ଦେବତାମାନଙ୍କୁ
ଇହଛନ୍ଦ ଚଢ଼ି ଯେ ଯାହା ବିମାନକୁ ।
କୁରୁ ପାଣ୍ଡୁ ଯୋଦ୍ଧାଏ କରି ସିଂହନାଦ
ହୃଦୟର ମଧ୍ୟରେ ବହିଲେ ପ୍ରମୋଦ ।
ଏ ବାହାରେ ମୃଦଙ୍ଗ ଭେରୀ ବଜାଇଲେ
ସୁର ଅସୁରଙ୍କର ପରସ୍ପେ ଯୁଝିଲେ ।
ଅରଜୁନ କର୍ଣ୍ଣ ଦୁହେଁ ଯେ ଧନୁ ଟେକି
ଛାଡ଼ିଲେ ଶରଜାଳେ ଶୂନ୍ୟମାର୍ଗ ଢାକି ।

ଏ ସକାଶୁଁ ଯୋଦ୍ଧାମାନଙ୍କ ନେତ୍ରଭାଗ
ବାରି ନ ପାରିଲେ ସେକାଳେ ସ୍ଥିରଦୃଗ ।
ପରସ୍ପରେ କର୍ଣ୍ଣ ଅର୍ଜୁନ ଦୁହେଁ ଅସ୍ତ୍ର
ପରକାଶ କଲେ ଥରାଇ କ୍ରୋଧ ଗାତ୍ର ।
ଶର ଅନ୍ଧକାରକୁ ସରଜନା କରି
ଚନ୍ଦ୍ର ସୂର୍ଯ୍ୟ ପରିଷ୍ଟି ପଡ଼ିଲେ ବାହାରି ।
ଭୂମ୍ଭ ତାଙ୍କ ଲୋକ ଯେ ଯୁଝିବା ମାନସେ
ରହିଲେ ବନ୍ଧି ଶରାସନ କରଦେଶେ ।
କର୍ଣ୍ଣ ଅରଜୁନ କରିଣ ସିଂହନାଦ
ଅନ୍ୟାନ୍ୟେ ଜୟ ନେବାପାଇଁ କଲେ ବାଦ ।
ଦୁହିଁଙ୍କର ଶାସ୍ତ୍ରକ ମଣ୍ଡଳରୁ ବାଣ-
କିରଣ ଜାତ ହେଲା ହସ୍ତିନା ରାଜନ ।
ଯୁଗାନ୍ତ ସୂର୍ଯ୍ୟପରି ତେଜକୁ ପ୍ରକାଶି
କର୍ଣ୍ଣ ଅରଜୁନ ହୋଇଲେ ମିଶାମିଶି ।
ଦୁହେଁ ତ ଧନୁର୍ଦ୍ଧରମାନଙ୍କ ମଣ୍ଡନ
ମାଇଲେ ଖୋଜି ଖୋଜି ଗଜ ଅଶ୍ୱ ଜନ ।
କର୍ଣ୍ଣ ଅରଜୁନଙ୍କ କାଣ୍ଡ ସିଂହ ହୋଇ
ଦୁଇ ସୈନ୍ୟ ମୃଗ ଖାଇଲେ ନରସାଇଁ ।
କୃତବର୍ମା ଶକୁନି କୃପ ଦୁର୍ଯ୍ୟୋଧନ
ଅର୍ଜୁନଙ୍କୁ ବିନ୍ଧିଲେ ବାଛି କାଣ୍ଡମାନ ।
ଧନୁ ଧ୍ୱଜ କାଟି ସାରଥି ଅଶ୍ୱ ପ୍ରାଣ
ସେମାନଙ୍କୁ ନେଲେ ଅର୍ଜୁନ ବିନ୍ଧି ବାଣ ।
ଏ ବାହାରେ କର୍ଣ୍ଣେ ବିନ୍ଧିଲେ ବାରକାଣ୍ଡ
କ୍ରୋଧ ଅନଳରେ ଜାଳିଣ ନିଜ ପିଣ୍ଡ ।
ଶଏ ରଥୀ ଶଏ ହାତି ଯେ ସେନ ସଙ୍ଗେ
ଧାଇଁଚଲେ ଶକ ତୁଖାରମାନେ ରଙ୍ଗେ ।
ଅର୍ଜୁନ ତା ନ ସହି କ୍ଷୁରକାଣ୍ଡ ବିନ୍ଧି
ପକାଇଲେ ଶସ୍ତ୍ର ସହିତେ ହାତ ଛେଦି ।
ପୁଣି ତାହାଙ୍କର ମୁଣ୍ଡଟି କାଟିଦେଲେ
ଗଜହସ୍ତଙ୍କ ପ୍ରିୟ ପରାଣ ଲୁଟିଲେ ।
ଦେବତାଏ ଶୂନ୍ୟେ ତା ଦେଖି ହୋଇ ସୁଖୀ
ଅର୍ଜୁନେ ପ୍ରଶଂସିଲେ ବୁଜ ଦେଇ ଆଖି ।
ରାଜାମାନେ ଦେଖି ଅର୍ଜୁନ ଶାରପଣ
ବୋଇଲେ ଆଜ କର୍ଣ୍ଣ ମଲା ନିଶ୍ଚେ ଜାଣ ।
ଦୁର୍ଯ୍ୟୋଧନ କର୍ଣ୍ଣେ ତ ମୃତ୍ୟୁ ଲେଖେ ଗଣନା
ତାହା ଦେଖି ହେଲେ ସେ ଅତି କ୍ରୋଧମନା ।

ଅଶ୍ୱତ୍ଥାମା ଦୁର୍ଯ୍ୟୋଧନଙ୍କ ପାଶେ ଆସି
କହିଲେ ତୁମ୍ଭ ହିତେ ହୋଇଣ ଲାଳସୀ ।
ଆହେ ଦୁର୍ଯ୍ୟୋଧନ ନ କର ଆଉ ଯୁଦ୍ଧ
କଲେ ଏଣିକତି ହୋଇବ ତୁମ୍ଭେ ବଧ ।
ଭୀଷ୍ମ ଦ୍ରୋଣ ପରି ରଥୀଏ ମଲେଣି
କାହିଁପାଇଁ ହେ ରତ୍ନନାହିଁ ହୋଇ ତୁମ୍ଭ ।
ମାମୁଁ ତୁଲେ ମୋତେ ଘେନିଣ ରାଜ୍ୟ କର
ଦିଅ ଯାଚ ଭାଗ ପାଣ୍ଡବମାନଙ୍କର ।
ମୁଁ ଯେବେ ଅର୍ଜୁନଙ୍କୁ କହିବ ବୁଝାଇ
ସେ ଛାଡ଼ିଦେବେ ଯୁଦ୍ଧ ଜାଣ ନରସାଇଁ ।
କୃଷ୍ଣଙ୍କ ମନ ତ ନକଲେ ଯୁଦ୍ଧ ଇଚ୍ଛା
ତୁଚ୍ଛା ଭୁଲ ନ ଯୁଝ ଗାନ୍ଧାରୀଙ୍କ ବତ୍ସା ।
ଯୁଧିଷ୍ଠିର ଯେ ପ୍ରାଣୀମାନଙ୍କର ହିତ
ବାଞ୍ଛୁଥାନ୍ତି ସେ ନୋହିବେ କୋପଚିତ୍ତ ।
ନକୁଳ ସହଦେବ ଭୀମ ଯୁଧିଷ୍ଠିର
ବୋଲରୁ କଦାଚିତେ ନୋହିବେ ବାହାର ।
ତୁମ୍ଭେ ପ୍ରୀତି କରିଲେ ପାଣ୍ଡବଙ୍କ ତୁଲେ
ସଂସାର ପ୍ରାଣୀଏ ରହିବେ ପ୍ରାଣେ ଭଲେ ।
ବୋଲ ଏବେ ରାଜାମାନଙ୍କୁ ଡକାଇ
ଯେ ଯାହା ଘରକୁ ଯାଆନ୍ତୁ ତୋଷ ବହି ।
ନ ଘେନିବ ଯେବେ ମୋ ବଚନକୁ ତୁମ୍ଭେ
ଦୁଃଖଭୋଗେ ପଡ଼ିବ ଜାଣୁଅଛୁଁ ଆମ୍ଭେ ।
ଅର୍ଜୁନ ବିକ୍ରମ ପରାକ୍ରମେ ଇନ୍ଦ୍ର ସମ
କରି ନ ପାରନ୍ତି ହେ କଲେଟି ସଂଗ୍ରାମ ।
ଅରଜୁନ ସବୁ ଗୁଣକୁ ସ୍ଥାନ ଅଟେ
ମୁଁ ଯା ବୋଲିବି ସେ ଘେନିବ ହୃଦ ତଟେ ।
ପ୍ରୀତି ହେଲେ ସବୁ କାଳରେ ଅରଜୁନ
ତୁମ୍ଭଙ୍କୁ ଭଜି କରି ସାରୁଥିବେ ଧନ ।
ତୁମ୍ଭର ଅନ୍ନ ଖାଇଥିବାରୁଟି ମୁହିଁ
କହୁଅଛୁ ଏ ରୂପେ ଧର୍ମକୁ ଅନାଇଁ ।
ତୁମ୍ଭେ ଯେବେ ବୋଲିବ କହି ମୁଁ କର୍ଣ୍ଣଙ୍କୁ
ଛଡ଼ାଇଦେବି ମନୁଁ ଯୁଦ୍ଧ ମାରଗକୁ ।
ସ୍ୱର୍ଗ ପ୍ରକରେ ତ ହୁଅନ୍ତି ଲୋକ ମିତ୍ର
ତୁମ୍ଭର ତ ଭାଇ ଅଟଇ ଇନ୍ଦ୍ରପୁତ୍ର ।
ଅରଜୁନଙ୍କଠାରୁ ଛାଡ଼ ଦେବ ତୃଷା
ଘେନି ଯାଅ ଜଗତ ମଧ୍ୟେ ପରଶଂସା ।

ପାଣ୍ଡୁ ସୁତମାନଙ୍କ ଭୁଲେ ପ୍ରୀତି କର
ସୁଖେ ବସି ଭୁଞ୍ଜ ହସ୍ତିନା ମହୀ ଶିର ।
ଏହା ଶୁଣି ଭୂମ୍ଭ କୁମର ଦୁର୍ଯ୍ୟୋଧନ
କହିଲେ ଅଶ୍ୱତ୍ଥାମା ଆଗରେ ବଚନ ।
କହୁଅଛ ଆପଣ ଯେଉଁରୂପେ ମୋତେ
ହିତକର ଏହା ହେଉଛୁ ମୂର୍ଖି ଚିତ୍ତେ ।
ଏବେ ଭୂମ୍ଭ ଆଗରେ କହୁଛୁ ଯା ମୂର୍ଖି
ଶୁଣ ମୋହଠାରୁ ହେ ତା ଭାଇ-ଗୋସାଇଁ ।
ଦୁଃଶାସନ ଜୀବନ ଯେବେ ଭୀମସେନ
ବୋଲିବା କଥା ମୋ ଦହୁଛି ଅପଘନ ।
ଏହି ସକାଶରୁ କହୁଛି ମୁଁ ଭୂମ୍ଭଙ୍କୁ
ପ୍ରୀତି କଲେ ପାଇବ ଆଉ କ ଲଭକୁ ।
ଅରଜୁନ କର୍ଣ୍ଣଙ୍କୁ ନ ପାରନ୍ତି ମାରି
ଜାଣିଥାଅ ଏକଥା ମୋର ସତ୍ୟ କରି ।
ପାଣ୍ଡୁସୁତେ ମୋଠାରେ କରିଛନ୍ତି ରାଗ
ପ୍ରୀତି ନ କରିବେ ପାଇଲେ ମଧ୍ୟ ଭାଗ ।
ଯୁଦ୍ଧରୁ ନିରବତ ବୋଲିଣ କର୍ଣ୍ଣଙ୍କୁ
ନ ବୋଲ ଏତେକ ମୁଁ ମାଗୁଛି ଭୂମ୍ଭଙ୍କୁ ।
ଅରଜୁନ ଶ୍ରମରେ ହୋଇଲେଣି ଯୁତ
କରିବେ ଏହିକ୍ଷଣି ତାଙ୍କୁ କର୍ଣ୍ଣ ହତ ।
ଏରୂପେ ଭୂମ୍ଭ ପୁଅ ଦ୍ରୌଣି ଆଗେ କହି
ଯୁଦ୍ଧ ବୋଲି ସୈନ୍ୟଙ୍କୁ କହିଲେ ରୋଷାଇ ।
ଭୂମ୍ଭ ଲୋକେ ଶୁଣିଣ ବଜାଇଣ ଶଙ୍ଖ
ଧାଇଁଲେ ଯୁଦ୍ଧଦାଣ୍ଡେ ବାନ୍ଧିଣ ତୂଣୀଖ ।
ମତ୍ତହସ୍ତୀ ପରାୟେ ଅରଜୁନ କର୍ଣ୍ଣ
ସାୟକ ଦନ୍ତ ପାତି କଲେ ଆୟୋଧନ ।
ପର୍ବତକୁ ପର୍ବତ ଯୁଝିଲା ପରାୟେ
ଯୁଝିଲେକି ସେ ବେନି ନରସିଂହ ରାୟେ ।
ଇନ୍ଦ୍ର ବଳୀ ପରି ସେ ଦୁହିଙ୍କର ରଣ
ହୋଇଲା ସେହି ରଣଦାଣ୍ଡେ ଅତି ଟାଣ ।
ଦୁହେଁ ତ ଇନ୍ଦ୍ର ପରି ବଳବନ୍ତ ବୀର,
ଏଣୁ ଶର ବଜ୍ରରେ କଲେ ସେ ସଂଗ୍ରାମ ।
ଅର୍ଜୁନ କର୍ଣ୍ଣ ଯୁଦ୍ଧ ଦେଖି ଦୁଇସୈନ୍ୟ
ମଲାଇଁ ବୋଲିକରି ହେଲେ ଛନ୍ନ ଛନ୍ନ ।
କ ହେବ ଆଜ ବୋଲି ଭାବି ସବୁଜନେ
ଭାବିଲେ ନେତ୍ର ବେନି ରଖି ଭ୍ରୂସ୍ଥାନେ ।

ସେହିକାଳେ ସୋମକେ ବୋଇଲେ ହେ ପାର୍ଥ
ପକାଅ ବେଗେ କାଟି କର୍ଣ୍ଣଙ୍କର ମାଥ ।
ସୁଯୋଧନ ରଜା କାମୁକା ଯା ହୋଇଛୁ
ତାହା ଆଜ ମନରୁ ଦେଉ ସେ ମୁ ଛୁଟୁ ।
ଭୂମ୍ଭର ସେନାମାନେ ବୋଇଲେ କର୍ଣ୍ଣଙ୍କୁ
ମାର ବେଗେ ବାଣରେ ଅର୍ଜୁନ ବୀରଙ୍କୁ ।
ଅରଜୁନ ମଲେ ପାଣ୍ଡବେ ଦୁଃଖୀ ହୋଇ
ବନମଧ୍ୟେ ଘର କରନ୍ତୁ ପୁଣି ଯାଇ ।
କର୍ଣ୍ଣ ବିଜୟୀଙ୍କୁ ବାନ୍ଧିଲେ ଦଶବାଣ
ପାର୍ଥ ଦଶବାଣେ ଫୋଡ଼ିଲେ ତାଙ୍କ ପିଣ୍ଡ ।
ପରସ୍ପରେ ଯେ ଛିଦ୍ର ଝକାଝକ ହୋଇ
ବାନ୍ଧାବାନ୍ଧି ହେଲେ ସେ ଦୁହେଁ ରୋଷ ବହି ।
କ୍ଷୁର ଅର୍ଦ୍ଧଚନ୍ଦ୍ର ନାରାଚ ଯେ ନାଳିକ
ବାନ୍ଧିଲେ ଅରଜୁନ ବୀରଙ୍କ ନାୟକ ।
ସାୟଂକାଳେ ପକ୍ଷୀଏ ବୃକ୍ଷେ ଗଲାପରି
ଅର୍ଜୁନ ଶର କର୍ଣ୍ଣ ରଥେ ଗଲେ ପୂରି ।
କର୍ଣ୍ଣ କର୍ଣ୍ଣ ଯାଏ ଟଙ୍କାରିଣ ଧନୁକୁ
କାଟି ସେ ପକାଇଲେ ଅର୍ଜୁନ ଶରକୁ ।
କର୍ଣ୍ଣ ପର୍ଶୁରାମଙ୍କ ଦେବା ବ୍ରହ୍ମଅସ୍ତ୍ର
କଲେ ନାଶ କରିବା ପାଇଁ ପାର୍ଥ ଗାତ୍ର ।
ସେ ଅସ୍ତ୍ର କର୍ଣ୍ଣ ବଳେ ଚହଟିଣ ଦାଣ୍ଡେ
ପୀଡ଼ା ଦେଲା ଗଜ ଘୋଟକ ନର ପିଣ୍ଡେ ।
ପୁଣି କର୍ଣ୍ଣ ହସି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ
ବାନ୍ଧିଲେ ବାଛି ବାଛି ଉତ୍ତମ ଶରକୁ ।
କର୍ଣ୍ଣଙ୍କର କାଣ୍ଡରେ ସୋମକ ପାଞ୍ଚାଳ
ପୀଡ଼ା ପାଇ କର୍ଣ୍ଣେ ବାନ୍ଧିଲେ ଶରଜାଳ ।
କର୍ଣ୍ଣ ସେ କାଣ୍ଡମାନ କାଣ୍ଡକରେ କାଟି
ବାନ୍ଧିଲେ ପାଞ୍ଚାଳ ସୈନ୍ୟଙ୍କୁ ଶର କୋଟି ।
କର୍ଣ୍ଣକାଣ୍ଡ ସିଂହରେ ପାଞ୍ଚାଳ ସଇନ
ପ୍ରମତ୍ତ ହସ୍ତୀମାନେ ହୋଇଲେ ନିଧନ ।
କର୍ଣ୍ଣଙ୍କ ବାହୁଟାଣ ଦେଖି ଭୂମ୍ଭ ସେନା
ଗରଜନ କରିଲେ ହୋଇ ତୋଷ ମନା ।
ଭୀମ ତାହା ଦେଖିଣ ରଥ ମଧ୍ୟେ ନାଚି
କହିଲେ ଅର୍ଜୁନଙ୍କୁ ଅଟ୍ଟହାସ ମୁଞ୍ଚି ।
ମହାଦେବଦେବଙ୍କୁ ପୂଜେ କରି ତୋଷ
କାଳକେୟମାନଙ୍କୁ କରିଅଛ ନାଶ ।

ଏବେ ସେ ବଳ କାହିଁ ରଖିଅଛ ଗାଇ
କର୍ଣ୍ଣ ଦଶକାଣ୍ଡ ଗଣ୍ଡି ମଧରେ ବନ୍ଧ ।
ତୁମ୍ଭେ ଯେତେକ କାଣ୍ଡ ଛାଡୁଛ କର୍ଣ୍ଣକୁ
କର୍ଣ୍ଣ ତ କାଟୁଛି ଦେଖାଇ ବିକ୍ରମକୁ ।
ଆଜଯାଏ ଏ କଥା ନଥିଲା ତ ଜଣା
କହ ହେ ଅର୍ଜୁନ ହେଲ ବୁଦ୍ଧି ବଣା ।
ଦ୍ରୌପଦୀଙ୍କ ଯାତନା ମନରୁ ତୁମ୍ଭର
ଗଲା ପରି ତ ମନ ପାଉଅଛି ମୋର ।
କର୍ଣ୍ଣ ଯେତେରୂପେ ହେ ଦେଇଅଛି ଗାଳି
ଯୁଦ୍ଧ କର ପାର୍ଥ ଥରେ ତା ହୃଦେ ଭାଳି ।
କର୍ଣ୍ଣଠାରେ କରୁଣା ନ କରି କାହିଁକେ
କହୁଛି ତାକୁ ରଖ ଯମଙ୍କ ପୁରତେ ।
ଯେଉଁ ଧଇର୍ଯ୍ୟରେ ପୋଡିଲ ଖାଣ୍ଡବକୁ
ଏବେ ସେ ଧଇର୍ଯ୍ୟରେ ମାର ହେ କର୍ଣ୍ଣଙ୍କୁ ।
ନୋହିଲେ ମୋତେ କହ କର୍ଣ୍ଣ ମୁଣ୍ଡେ ଗଦା
ପ୍ରହାର କରି ଖଣ୍ଡେ କରିଦେବ ମେଦା ।
କୃପ ବୋଇଲେ ଆହେ ଅରଜୁନ ବୀର
ଭଲ କରି କର ହେ କର୍ଣ୍ଣଙ୍କୁ ସମର ।
କର୍ଣ୍ଣ ତ ଦେଖୁଅଛ ତୁମ୍ଭ ଶର କାଟି
ଗରଜନ କରୁଛି ମେଲି ଦୁଇ ପାଟି ।
କର୍ଣ୍ଣଙ୍କୁ ପୁରସ୍କୃତ କରି କୁରୁବଳ
ଦେଖ ଆମ୍ଭ ସଙ୍ଗତେ କରୁଛନ୍ତି ଗୋଳ ।
ଅସୁରମାନଙ୍କ ତାମସମାୟା ଧ୍ୱଂସି
ପକାଇଛ ତୁମ୍ଭେ ତାହାଙ୍କୁ ରଣେ ନାଶି ।
ଏବେ ସେ କଥା କେଣେ ଗଲା ଅରଜୁନ
ପଚାରିଲେ କିମ୍ପାଇଁ ନ କହ ବଚନ ।
ଯେବେ ହେ ତୁମ୍ଭଠାରେ ଅସ୍ତ୍ର ନାହିଁ କିଛି
ମୋତେ ମାଗ ସୁଦର୍ଶନ ମୁଁ ଦେଉଛି ।
ପ୍ରହାର କରି ତାହା କର୍ଣ୍ଣଙ୍କର ମୁଣ୍ଡ
କାଟି ନେଇଯାଅ ଯୁଦ୍ଧରେ ଯଶଖଣ୍ଡ ।
କର୍ଣ୍ଣଙ୍କୁ ମାରି ଗଜାହ୍ୱୟକୁ ଅରଜ
ଯୁଧିଷ୍ଠିର ରାଜାଙ୍କୁ ଦେଇ ସୁଖ ଭଜ ।
ଏହାଶୁଣି ଅର୍ଜୁନ ହୋଇ କୋପମୂର୍ତ୍ତି
ଦେଲେ କର୍ଣ୍ଣଙ୍କର ବଧରେ ନିଜମତି ।
ମନେକଲେ ମନୁଷ୍ୟ ଅଟଇ ତ ମୁହିଁ
ମୋତେ ବଳୀୟାର ହୋଇ ତ ଯାଉ ନାହିଁ
ମୁଁ ତ ଜନମିଛି ନାଶିବ ମହାବୀର
କର୍ଣ୍ଣ ଛାର ଅବା ଅଟଇ କେତେକର ।
ଏହିରୂପେ ଭାବନା ଅରଜୁନ କରି
ବୋଇଲେ ଶୁଣ ଆହେ ରୁକ୍ମିଣୀ ବିହାରୀ
ଅସ୍ତ୍ରକୁ ବରଜିବ କର୍ଣ୍ଣ ନାଶପାଇଁ
ଅନୁଜ୍ଞା ମୋତେ ଦିଅ ତୁମ୍ଭେ ତୋଷ ବହି ।
ବ୍ରହ୍ମାଦି ଦେବତାଏ ଅଛନ୍ତି ଆକାଶେ
ସେହି ମଧ୍ୟ ଅନୁଜ୍ଞା ଦିଅନ୍ତୁ ହରଷେ ।
ଏହା କହି ପାର୍ଥ କୃଷ୍ଣଙ୍କୁ ବ୍ରହ୍ମଅସ୍ତ୍ର
ପରକାଶ କଲେ ଯୁଦ୍ଧରେ ପଢ଼ି ମନ୍ତ୍ର ।
କର୍ଣ୍ଣ ଯେ ବ୍ରହ୍ମାସ୍ତ୍ରକୁ ବ୍ରହ୍ମାସ୍ତ୍ରେ ସଂହାରି
ଛାଡିଲେ କାଣ୍ଡମାନ ଗରଜନ କରି ।
କର୍ଣ୍ଣକରେ ବ୍ରହ୍ମାସ୍ତ୍ର ହୋଇନ୍ତେ ରଣେ ହତ
କହିଲେ ପୁଣି ଭୀମ ହୋଇ କ୍ରୋଧଚିତ୍ତ ।
ଏବେ ଆନ ଅସ୍ତ୍ର କରିଣ ଅରଜୁନ
ଘେନ ବେଗେ ଯୁଦ୍ଧରେ କର୍ଣ୍ଣର ଜୀବନ ।
ବ୍ରହ୍ମାସ୍ତ୍ରକୁ କର୍ଣ୍ଣ ତ ସଂହରିଲା କାଣ୍ଡେ
କିସ ତୁମ୍ଭେ ଭାଳୁଛ ବସି ରଣ-ଦାଣ୍ଡେ ।
ଏହା ଶୁଣି ଅର୍ଜୁନ ଦିବ୍ୟଅସ୍ତ୍ର ମାରି
ଦେଲେ ଦଶଦିଗକୁ ଶରେ ପୂର୍ଣ୍ଣ କରି ।
ସହସ୍ରସଂଖ୍ୟା କାଣ୍ଡ ଛାଡିଲେ ଅର୍ଜୁନ
କାଣ୍ଡେ ପରି ତାହାକୁ ମଣିଲା ନୟନ ।
କର୍ଣ୍ଣ ହାତରୁ ଶରେ ଫିଟି କେତି କୋଟି
ରହିଲେ କପିଟିର ରଥୁଟିକ ଘୋଟି ।
କର୍ଣ୍ଣ ଭୀମ ଅର୍ଜୁନ କୃଷ୍ଣେ ତିନ ତିନ
କାଣ୍ଡ ଛାଡି ଗର୍ଜିଲେ ମନେ କ୍ରୋଧଘେନ
ଭୀମ କୃଷ୍ଣଙ୍କର ପୀଡ଼ାକୁ ଦେଖି ପାର୍ଥ
ମହାକ୍ରୋଧ ଗୋଟାକୁ କରି ହୃଦେ ସାର୍ଥ ।
ହାତରେ ଅଠରଟି କାଣ୍ଡ ବାଛି ଧରି
ଛାଡିଲେ ଯୁଦ୍ଧଦାଣ୍ଡେ ଜୟ ଇଚ୍ଛାକରି ।
ଏ ସକାଶରୁ ଏଗାରଟି କାଣ୍ଡ ପାଇ
ସୁଷେଣ ଦେଖିଗଲେ ପ୍ରେତପୁର ସାଇଁ ।
ଶଲ୍ୟ ବୃଶକାଣ୍ଡରେ ମଣ୍ଡି ନିଜ ଗଣ୍ଡି
ଛାଡ଼ିଦେଲେ ହୃଦ ମଧ୍ୟରୁ ଧୈର୍ଯ୍ୟ ଖଣ୍ଡି ।
କର୍ଣ୍ଣ ତିନ କାଣ୍ଡରେ ପାଇ ମହାପୀଡ଼ା
ଭାବିଲେ ଦେବ ପାର୍ଥ ଯୁଦ୍ଧେ ମୋତେ କ୍ରୀଡ଼ା ।

ଏ ବାହାରେ କଟଙ୍କୁ ବନ୍ଧ ବାଣଗଣ
ଛୁଞ୍ଚଲେ ଅରଜୁନ ତାଙ୍କର ପରାଣ ।
ଅଷ୍ଟଶତ ରଥ ସହସ୍ରେ ଘୋଟକକୁ
ସ୍ବରେଶ ହାତୀ ଆଠସସ୍ର ପାଇକକୁ ।
ମାରି ଅରଜୁନ ବନ୍ଧଣ ତୀକ୍ଷ୍ଣକାଣ୍ଡ
ଛୁଞ୍ଚଦେଲେ ସେ କର୍ଣ୍ଣଙ୍କର ରଥଦାଣ୍ଡ ।
ଏ ବାହାରେ କର୍ଣ୍ଣସାରଥି ରଥ ଅଶ୍ବ
କାଣ୍ଡରେ ଘୋଡାଇଲେ ସୁଭଦ୍ରା ବିଳାସ ।
ଭୂମ୍ଭ ସୈନ୍ୟଯାକ ହୋଇଣ ଏକଗୋଟି
ବୋଇଲେ ମାଇଲଟି ଆମ୍ଭଙ୍କୁ କଷଟୀ ।
ପାଉଲେ ରକ୍ଷାକର ଅର୍ଜ୍ଜୁନ ପରାଣ
ଯୁଦ୍ଧରେ ଯେନ ଆହେ କର୍ଣ୍ଣ ବୀରଗଣ ।
ଏହା ଶୁଣି କର୍ଣ୍ଣ ଅତ୍ୟନ୍ତ ଯତ୍ନ ହୋଇ
ଅର୍ଜ୍ଜୁନଙ୍କୁ କାଣ୍ଡ ବନ୍ଧଲେ ନରସାଇଁ ।
ସେ କାଣ୍ଡେ କଟ ହାଗୁଁ ଫିଟି ଯାନ୍ତେଖଣ୍ଡେ
ଶୂନ୍ୟଦାଣ୍ଡେ କାଟିଲେ ତାହା ପାର୍ଥ କାଣ୍ଡେ ।
ସେ ଦୁହେଁ ତ ରଥୀମାନଙ୍କରେ ଗରିଷ୍ଠ
ଏ ସକାଶୁଁ ଯୁଝିଲେ ହୋଇ ଅତି ରୁଷ୍ଟ ।
ଅନ୍ୟୋନ୍ୟରେ ସେ ଦିବ୍ୟ ଅସ୍ତ୍ରମାନ କରି
ଦେଲେ ଶତ୍ରୁ ସଇନଯାକଙ୍କୁ ସଂହାରି ।
ଯୁଧିଷ୍ଠିର ବୈଦ୍ୟଙ୍କ ଔଷଧେ ଭଲ ହୋଇ
ଧାଇଁଲେ ସେ ଯୁଦ୍ଧକୁ ଦେଖିବାର ପାଇଁ ।
ଯୁଧିଷ୍ଠିର ସୂର୍ଯ୍ୟଙ୍କୁ ଦେଖି ସବୁ ଜନ
ବଦନ ନଳିନକୁ କଲେ ପରସନ୍ନ ।
ଅନ୍ୟୋନ୍ୟରେ ଦୁହେଁ ବନ୍ଧଲେ ଧନୁ ଟାଣି
ସେ ଶବଦରେ ଉଠିଗଲେ ସବୁପ୍ରାଣୀ ।
ବନ୍ଧବାରେ ଅର୍ଜ୍ଜୁନ ଧନୁର୍ଗୁଣ ଖାଇ
ଖାଇ ଛିଡ଼ିଗଲା ହେ ଜାଣ ନରସାଇଁ ।
କର୍ଣ୍ଣ ସେହି ଛିଦ୍ରରେ ଅର୍ଜ୍ଜୁନ ଦେହକୁ
ଗଣି ଗଣି ବନ୍ଧଲେ ଶଏଟି କାଣ୍ଡକୁ ।
ଷାଠିଏଟି କାଣ୍ଡ ଶ୍ରୀକୃଷ୍ଣଙ୍କର ଦେହେ
ସଜନ ଭୂମ୍ଭ କର୍ଣ୍ଣ ବନ୍ଧଲେ ଟି କୋହେ ।
ସେହି ସମୟରେ ସେମାନେ ବନ୍ଧ ବାଣ
କରିଦେଲେ କର୍ଣ୍ଣଙ୍କୁ ଯୁଦ୍ଧରେ ଆଚ୍ଛନ୍ନ ।
ସୋମକମାନଙ୍କ କାଣ୍ଡକୁ ଟିକ ଟିକ
କଲେ କର୍ଣ୍ଣ ଶରେ ଓଟାଣ ଧନୁଟିକ ।

ଏ ବାହାରେ ବରଷ ଉତ୍ତମ ମାର୍ଗଣ
ରଥଯୋଗ୍ୟ ଅଶ୍ବଙ୍କ ଘେନଲେ ପରାଣ ।
ସୋମକକୁଳ କର୍ଣ୍ଣବାଣେ ହତ ହୋଇ
ମରି ମହୀଦେଶେ ପଡ଼ିଲେ ନରସାଇଁ ।
ନ ସହି ପାଞ୍ଚାଳେ କର୍ଣ୍ଣଙ୍କୁ ଆସି ରଣ
କରନ୍ତେ କର୍ଣ୍ଣ ଘେନଗଲେ ତାଙ୍କ ପ୍ରାଣ ।
ଭୂମ୍ଭ ଲୋକେ ତା ଦେଖି କରି ଜୟଶବ୍ଦ
ମଲେ ଅର୍ଜ୍ଜୁନ ବୋଲି ଲଭିଲେ ପ୍ରମୋଦ ।
ସେହିକାଳେ ପାର୍ଥ ଧନୁରେ ଗୁଣ ଦେଇ
ଦେଟଲ କର୍ଣ୍ଣ ଦେହକୁ ମାରଗଣେ ଛାଇ ।
ପାର୍ଥଙ୍କ କାଣ୍ଡରେ କର୍ଣ୍ଣଙ୍କୁ ଦଣ୍ଡଦଣ
ନ ଦିଶିଲା ଆହେ ହସ୍ତିନା ନରଗଣ ।
କର୍ଣ୍ଣ ଆଦି କୁରୁରଥୀଙ୍କି ସେ କାଷଟୀ
ଘୋଡ଼ାଇଦେଲେ ଶର କୋଟି କୋଟି ।
ପାର୍ଥ ଶରଛଡ଼ା ଆକାଶେ ସାନ୍ଦ୍ର ହୋଇ
ରହନ୍ତେ ପକ୍ଷୀମାନେ ନ ପାରିଲେ ଯାଇ ।
ଅର୍ଜ୍ଜୁନ ଶଲ୍ୟଙ୍କର କବଚକୁ ଦଶ
ଶର ବନ୍ଧ ବନ୍ଧଲେ କର୍ଣ୍ଣଙ୍କୁ ଦ୍ୱାଦଶ ।
କରି ଅର୍ଜ୍ଜୁନଙ୍କର କାଣ୍ଡରେ ରକତ
ମଣ୍ଡି ହୋଇ ନଇଲେ ଗେରୁ ପରବତ ।
ଅର୍ଜ୍ଜୁନଙ୍କୁ ନଅ କୃଷ୍ଣଙ୍କୁ ପାଞ୍ଚଶର
ବନ୍ଧଲେ କୋଧେ ହୋଇ ଭୂମ୍ଭ କର୍ଣ୍ଣବୀର ।
କୃଷ୍ଣଙ୍କ କବଚକୁ କର୍ଣ୍ଣ କାଣ୍ଡେ ଭେଦ
ପଡ଼ିଲେ ଯାଇ ମହୀତଳକୁ ସମ୍ବାଦ ।
ତକ୍ଷକପୁତ୍ର ସାହାଭୂତ ସର୍ପଶରେ
ଯାଇଣ ଭେଟିଲେ ଟି କୃଷ୍ଣଙ୍କ ଦେହରେ ।
ଅର୍ଜ୍ଜୁନ ତାହା ଜାଣି ସେ ଶରମାନଙ୍କୁ
କାଟିଲେ ସର୍ପ ଭୁଲେ ବନ୍ଧି ମାର୍ଗଣକୁ ।
ଏହା କରିସାରି ସେ ଇନ୍ଦ୍ରଙ୍କର ସୁତ
କର୍ଣ୍ଣଙ୍କ ମରମକୁ ବନ୍ଧିଲେ ବହୁତ ।
କର୍ଣ୍ଣ ସେ କାଣ୍ଡଘାଏ ପାଇ ମହାପୀଡ଼ା ।
ଧୈର୍ଯ୍ୟ ଧରି ମାସ ରଥରେ ହେଲେଛିଡ଼ା
କୁଣ୍ଡଳ ଶ୍ବେଦଗ ଆବୋରିଲା ପ୍ରାୟେ
ପାର୍ଥ ଲୁଚ୍ଛଇଲେ କର୍ଣ୍ଣଙ୍କୁ କାଣ୍ଡଘାଏ ।
ଭୂମ୍ଭ ସୈନ୍ୟମଧ୍ୟ ସହସ୍ର ଦୁଇ ରଥୀ
ମାରିଣ ଅରଜୁନ କଲେ ଯମସାଥି ।

ତାହା ଦେଖି କର୍ଣ୍ଣଙ୍କୁ ଗୁଡ଼ ଭୂମ ପୁଏ
ପଳାଇଲେ ମହାଭୟକୁ ଧରି କାୟେ ।
ଏକା ହୋଇ କର୍ଣ୍ଣ ନ ପାଇ ଯୁଦ୍ଧେ ବ୍ୟଥା
ଯୁଦ୍ଧ କଲେ ପାର୍ଥଙ୍କୁ ଥାଉ ବୋଲି କଥା ।
କୁରୁମାନେ ଅର୍ଜୁନ ଅସ୍ତ୍ରେ ପୀଡ଼ା ପାଇ
ଦେଖିଲେ ତାଙ୍କ ଯୁଦ୍ଧ ଖଣ୍ଡିଦୂରେ ରହି ।
ଅର୍ଜୁନଙ୍କର ଅସ୍ତ୍ର ସାରଙ୍କୁ ଆକାଶ
ଭୂଲରେ ଯୁଦ୍ଧଦାଣ୍ଡେ କରିଦେଲା ଗ୍ରାସ ।
କର୍ଣ୍ଣ ଧନୁ ଟଙ୍କାରି ଅର୍ଜୁନ ଦେହକୁ
ବିନ୍ଧଲେ ନ ଡରି ଉତ୍ତମ ମାର୍ଗଣକୁ ।
ରାମଙ୍କର ଦତ୍ତ ଯେ ଅଥର୍ବଣଅସ୍ତ୍ର
କଲେ ଯୁଦ୍ଧଦାଣ୍ଡରେ କର୍ଣ୍ଣ ସୂତପୁତ୍ର ।
ଅର୍ଜୁନଙ୍କ ଅସ୍ତ୍ରକୁ ସେ ଅସ୍ତ୍ର ଗରାସି—
ଦେଲା, କର୍ଣ୍ଣ ଯୁଝିଲେ ପାର୍ଥେ ହସି ହସି ।
ଏରୂପରେ ଦୁହିଙ୍କ ହୁଅନ୍ତେ ସମର
ମଲେ ଯେ ହାତିଘୋଡ଼ା ସଇନ ଅପାର ।
ଖାଣ୍ଡବଦାହେ ପାର୍ଥ ବାଣ ଭୟେ ପାଇ
ଶୋଇଥିଲା ନାଗଲୋକରେ ସର୍ପ ଯାଇ ।
କର୍ଣ୍ଣ ଅରଜୁନର ଜାଣ ଏ ସମର
ଆସିଲା ଗୁଡ଼ ପାତାଳକୁ ସେ ସତ୍ୱର ।
ଶରରୂପ ଧରିଣ କର୍ଣ୍ଣଙ୍କ ତୂଣରେ
ରହିଲା ଅର୍ଜୁନଙ୍କୁ ମାରିବା ମନରେ ।
କର୍ଣ୍ଣ ଅରଜୁନ ହୁଅନ୍ତେ ବନ୍ଧାବନ୍ଧ
ଆକାଶଦେଶେ କିଛି ନ ରହିଲା ସନ୍ଧି ।
ଏରୂପେ ଯୁଦ୍ଧ ଦୁହେଁ କଲେ ଅବିଚ୍ଛିନ୍ନେ
ଶ୍ରମ ଆଶ୍ରେ କଲା ଆସିଣ ଅପଘନେ ।
କର୍ଣ୍ଣ ଅର୍ଜୁନଙ୍କର ବଧେ ମନ ଦେଲେ
ପୂର୍ବରୁ ସାପ ଥିବା ଶରକୁ କାଢ଼ିଲେ ।
ପାତାଳୁଁ ନାଗ ଆସି ରହିବାର ତହିଁ
କର୍ଣ୍ଣଙ୍କୁ ନରେଶ ଯେ ଜଣା ଥିଲା ନାହିଁ ।
କର୍ଣ୍ଣ କ୍ରୋଧ ହୋଇ ଧନୁରେ ସେ କାଣ୍ଡକୁ
ସନ୍ଧିଲେ ଅର୍ଜୁନଙ୍କ ମୁଣ୍ଡ କାଟିବାକୁ ।
ସେହିକାଳେ ଆକାଶୁଁ ଉଲ୍କା ଅଗଣନ
ପଡ଼ିବାରେ କମ୍ପିଲା ସେ ଯୁଦ୍ଧ ଅବନୀ ।
ତ୍ରିଭୁବନଲୋକଯାକ କରିଣ ହାହାକାର
ମନେ କଲେ ଆଜ ସରିବ ଏ ସଂସାର ।

ଶଲ୍ୟ ସେହିକାଳରେ କହିଲେ କର୍ଣ୍ଣଙ୍କୁ
ବିନ୍ଧ ଏ ଶରକୁ ଯୋଗି ହୃଦୟସ୍ଥଳକୁ ।
ଅର୍ଜୁନଙ୍କ ଶିର ଏ ନ ପାରିବ କାଟି
ନୋହିବଟି ଅନ୍ୟଥା ମୋହର କଥାଟି ।
କର୍ଣ୍ଣ ବୋଇଲେ ଆହେ ଦ୍ୱିଥର ସନ୍ଧାନ
ଶର କରନାହିଁ ତ ଆଜଯାଏ କର୍ଣ୍ଣ ।
ଏହା କହି କର୍ଣ୍ଣ ଶରକୁ କର୍ଣ୍ଣଯାଏ
ଟାଣିଲେ ହେ ରାଜନ କ୍ରୋଧେ ଅନ୍ତଃଶୟେ ।
ମଲୁରେ ବୋଲି ଅର୍ଜୁନଙ୍କୁ ଦେଲେ ଡାକ
ବିନ୍ଧିଲେ ସେ ଶରକୁ ଗୁଞ୍ଜ ମନୁଁ ଦକ ।
କର୍ଣ୍ଣଙ୍କର ଶରକୁ ଶ୍ରୀକୃଷ୍ଣ ଅନାଇଁ
ପାର୍ଥ ରଥ ପାଦେ ମାଡ଼ିଲେ ନରସାଇଁ ।
ସେ ଯୋଗୁଁ ଘୋଡ଼ା ଏ ପକାଇ ଚାରିଗୋଡ଼
ପଡ଼ିଲେ ରଥ ଯେନ ଶୋଇ ଭଡ଼ଭାଡ଼ ।
ତା ଦେଖି ଦେବେ ଆକାଶରେହୋଇ ତୋଷୀ
ପୁଷ୍ପବୃଷ୍ଟି କଲେ କୃଷ୍ଣଙ୍କ ଶିରେ ଆସି ।
କର୍ଣ୍ଣ ସର୍ପଅସ୍ତ୍ର ଗମିଣ ଯୁଦ୍ଧଦାଣ୍ଡେ
ଅର୍ଜୁନ ମୁକୁଟକୁ କାଟିଦେଲା ଚଣ୍ଡେ ।
ସୂର୍ଯ୍ୟ ଚନ୍ଦ୍ରଜ୍ୱଳନ ପ୍ରାୟେ ତେଜ ବହି
ମୁକୁତାଜାଲେ ସେ ଭୂଷିତ ଥାଏ ହୋଇ ।
ସେ ମୁକୁଟ ପୂର୍ବେ ଇନ୍ଦ୍ରଙ୍କ ପାଇଁ ପିତା—
ମୋହ ସର୍ଜିଥିଲେ ବହୁତ କରି ଚିନ୍ତା ।
ଅରଜୁନ ନିବାତକବଚ ଜୀବନ
ଘେନିବା କାଳେ ଇନ୍ଦ୍ର ହୋଇ ପରସନ୍ନ ।
ଅର୍ଜୁନ ମସ୍ତକେ ସେ ମୁକୁଟ ବାନ୍ଧିଲେ
ପୁତ୍ର ବୋଲି ବହୁ ଲାଳନା ତାଙ୍କୁ କଲେ ।
ପିନାକଧାରୀ ହର ସେ ମୁକୁଟ କାଟି
ନ ପାରନ୍ତି ଯୁଦ୍ଧରେ ଅର୍ଜୁନଙ୍କୁ ଯୋଟି ।
କର୍ଣ୍ଣ ସର୍ପ ବଳେ କିରୀଟି-ମୁକୁଟକୁ
ପକାଇଲେ ତଳେ ଦେଖାଇ ବିକ୍ରମକୁ ।
ସୂର୍ଯ୍ୟ ଅସ୍ତଗିରିରୁ ପଡ଼ିବା ପରାୟେ
ପଡ଼ିଲା ସେ ମୁକୁଟ ତଳରେ ହେ ରାୟେ ।
ମୁକୁଟପାତ ଦେଖି ସର୍ବ ପ୍ରାଣୀ ଦୁଃଖୀ
ହୋଇ ହା ହା କରି ବୁଜିଲେ ବେନି ଆଖି ।
ଅରଜୁନ ଶୃଙ୍ଗ ଭାଜିବା ଗିରି ପରି
ସେ କାଳେ ନେହକୁ ଢଗିଲେ ଦଣ୍ଡଧାରୀ ।

ଶୁକଳ ଲୁଗାଟିକେ ନିଜ କେଶପାଶ
ବାନ୍ଧି ନେଇ କର୍ଣ୍ଣଙ୍କୁ କଲେ ମହାରୋଷ ।
ସର୍ପ ତେଜେ ପାର୍ଥ କଷଣ୍ଠୀ ଦେଇ ଜାଳ
କର୍ଣ୍ଣ ତୂଣେ ପଶିଲା ପାର୍ଥ ବଧ ଆଶ ।
କର୍ଣ୍ଣଙ୍କୁ ବୋଇଲା ହେ ମୋତେ ଏବେ ପେଶ
କରିବ ମୁଁ ଦେଖ ଅର୍ଜ୍ଜୁନ ପ୍ରାଣ ନାଶ ।
ତୁମ୍ଭେଟି ସାବଧାନ ନୋହିବାର ମୁହିଁ
ଯୁଦ୍ଧଦାଣ୍ଡରେ ଲଜ ପାଇ ଆସିଲଇଁ ।
କର୍ଣ୍ଣ ବୋଇଲେ ତୁ କଏସେ କାହିଁପାଇଁ
ମୋହ ତୂଣରେ ଅଛୁ କହ ତ ବତାଇ ।
ନାଗ ବୋଇଲା ମୁହିଁ ଅର୍ଜ୍ଜୁନର ଶତ୍ରୁ
ଶେଷ ମୋତେ ଏଥର କରିବ ତା ମୃତ୍ୟୁ ।
ଇନ୍ଦ୍ର ବଜ୍ର ଧରିଣ ଜଗି ଅର୍ଜ୍ଜୁନଙ୍କୁ
ରଖିଲେ ହେଲେ ମୁହିଁ ମାରିବ ତାହାଙ୍କୁ ।
ମୋତେ ତାହାଙ୍କଠାକୁ କାଣ୍ଡମୁଖେ ତୁମ୍ଭେ
ବରତ, କି ପୂଛ କହିବୁ କିବା ଆମ୍ଭେ ।
କର୍ଣ୍ଣ ବୋଇଲେ ଆହେ ପରବଳେ ମୁହିଁ
ଆଜଯାଏ ଶତ୍ରୁ ଗୋଟିଏ ମାରି ନାହିଁ ।
ସହସ୍ର ଅରଜୁନ କଲେ ଯେତେ ଯୁଦ୍ଧ
କରି ପକାଇବି ଜାଣ ମୁଁ ତାଙ୍କୁ ବଧ ।
ସାପ କର୍ଣ୍ଣଙ୍କର ନିଷେଧବାଣୀ ଶୁଣି
ଶରରୂପ ହୋଇ ଧାଇଁଲା ସେହିକ୍ଷଣି ।
ଅର୍ଜ୍ଜୁନଙ୍କ ପ୍ରାଣ ହାରିବା ପାଇଁ ସ୍ୱୟେ
ଯୁଦ୍ଧଦାଣ୍ଡେ ବେଗେ ଦେଖାଏ ଅତିଶୟେ ।
କୃଷ୍ଣ ତାହା ଦେଖି କହିଲେ ଅର୍ଜ୍ଜୁନଙ୍କୁ
ଆସୁଅଛି ତା ସାପ ମାରିବ ତୁମ୍ଭଙ୍କୁ ।
ଶରରୂପେ ଧରି ହେ ବୀର ଅରଜୁନ
ଘେନ ତୁମ୍ଭେ କାଣ୍ଡରେ ତାହାର ଜୀବନ ।
ଅର୍ଜ୍ଜୁନ ବୋଇଲେ ଏ ନାଗ କେ ଅଟଇ
କହ ମୋତେ ବତାଇ ଯଦୁକୁଳସାଇଁ ।
ଶ୍ରୀକୃଷ୍ଣ ବୋଇଲେ ହେ ଖାଣ୍ଡବଦାହ କାଳେ
ଏହା ମାତାର ପ୍ରାଣ ନେଲ ତୁମ୍ଭ ହେଳେ ।
ଏ ପିଲା ହୋଇକରି ମାତା ଗର୍ଭେ ଥିଲା
ଛିଡ଼ନ୍ତେ ମାତାମୁଣ୍ଡ ଜାଇ ପକାଇଲା ।
ସେହି ବଇରକୁ ଏ ହୃଦମଧ୍ୟେ ଥୋଇ
ଏବେ ସେ ଆସୁଅଛି ଶରରୂପେ ଧାଇଁ ।

ତୁମ୍ଭ ପ୍ରାଣକୁ କରିବାକୁ ରଣେ ନାଶ
ଏଥିକି ସେ ଉଚିତ କର ତା ପ୍ରକାଶ ।
ଅର୍ଜ୍ଜୁନ ତା ଶୁଣି ଅଳପ ହସି ଦେଇ
ଛ'କାଣ୍ଡେ ସାତଖଣ୍ଡ କଲେ ସର୍ପଦେହୀ ।
ସର୍ପର ହତ ଦେଖି କରି ପୀତବାସ
ରଥରୁ ଓହ୍ଲାଇଲେ ଲଭି ମହାତୋଷ ।
ଦୁଇହାତେ ରଥକୁ ଧରିଣ ଟେକିଲେ
ଆନ ସ୍ଥାନରେ ରଖି ରଥରେ ବସିଲେ ।
ସେହି ସମୟରେ ପାର୍ଥକୁ ଦଣ୍ଡକାଣ୍ଡ
ବିନ୍ଧିଲେ ତୁମ୍ଭ କର୍ଣ୍ଣ କମ୍ପାଇ କୋଦଣ୍ଡ ।
ଅରଜୁନ ବସହକର୍ଣ୍ଣ ବାର ଶର
ବିନ୍ଧିଲେ କର୍ଣ୍ଣ ପ୍ରାଣ କରିବାକୁ ଦୂର ।
ପୁଣି କର୍ଣ୍ଣ ପର୍ଯ୍ୟନ୍ତେ ଓଟାରି ଧନୁଟି
ବିନ୍ଧିଲେ ତୁନ୍ତ ବାଣ କର୍ଣ୍ଣଙ୍କୁ କଷଟୀ ।
ସେ ନାରାଚ କର୍ଣ୍ଣଙ୍କ ହୃଦୟ ଭେଦିଲା
ସର୍ପ ପରାଏ ମହୀ ବିକଳରେ ପଶିଲା ।
କର୍ଣ୍ଣ ସେ ଘାଏ ଅତି ଆ..କତ ହୋଇ
ନୟନ ଦୁଇ ଥକେ ଦେଲେ ସେ ଘୁମାଇଁ ।
ପୁଣି ଧୈର୍ଯ୍ୟ ଧରି ସେ ଟେକିଣ କୋଦଣ୍ଡ
ଅର୍ଜ୍ଜୁନେ ବିନ୍ଧିଲେ ସହସ୍ର ସଂଖ୍ୟା କାଣ୍ଡ ।
କୃଷ୍ଣଙ୍କୁ ବାର କାଣ୍ଡ ଅର୍ଜ୍ଜୁନଙ୍କୁ ନଉ
ବିନ୍ଧି କର୍ଣ୍ଣ କଲେ ବୁକୁକୁ ଦାଉ ଦାଉ ।
ପୁଣି ଅର୍ଜ୍ଜୁନଙ୍କୁ ଦେଖିଣ ରଥ ଆଗେ
ହସିଲେ ହେ ଧୂର୍ତ୍ତାଏ ଧରି ହୃଦରାଗେ ।
ଅର୍ଜ୍ଜୁନ ତା ସହି ନ ପାରି କର୍ଣ୍ଣଙ୍କର
ମରମକୁ ବିନ୍ଧିଲେ ବଛି ବାଛି ଶର ।
ଅର୍ଜ୍ଜୁନ ଏକ ଉଠା ଶଏକାଣ୍ଡ ବିନ୍ଧି
କର୍ଣ୍ଣଙ୍କ ଯିବା ମାର୍ଗ ଯାକ ଦେଲେ ରୁନ୍ଧି ।
ତୀକ୍ଷଣ କାଣ୍ଡନରେ କଷଟ କୁଣ୍ଡଳ
କର୍ଣ୍ଣଙ୍କର କାଟିଲେ ଆଖଣ୍ଡଳ-ବାଳ ।
କର୍ଣ୍ଣଙ୍କ ଦେହରେ ଥିବାର ସଞ୍ଜୁଡ଼ିକ
ଶର ବିନ୍ଧି ଅର୍ଜ୍ଜୁନ କଲେ ଟିକ ଟିକ ।
ଏ ବାହାରେ କର୍ଣ୍ଣ ଗଣ୍ଡିକ ସ୍ୱର କାଣ୍ଡ
ବିନ୍ଧିଲେ କରିବାକୁ ରଣେ ଖଣ୍ଡ ଖଣ୍ଡ ।
କର୍ଣ୍ଣ ସେ ଶରକାଣ୍ଡେ ମହାବ୍ୟଥା ପାଇ
ଭ୍ରମିଗଲେ ଆହେ ହସ୍ତିନା ନରସାଇଁ ।

କର୍ଣ୍ଣଙ୍କର ମର୍ମସ୍ଥାନକୁ ମାରଗଣ—
ଗଣ ବାଛିକରି ବିନ୍ଧିଲେ ଅରଜୁନ ।
କର୍ଣ୍ଣ ଅର୍ଜ୍ଜୁନଙ୍କର କାଣ୍ଡରେ ରକତ
ଦେହରୁ ଜାତ କଲେ ରାଜନ ବହୁତ ।
ଅଗ୍ନି ଯମଦଣ୍ଡ ପରାୟେ ଅତି ଚଣ୍ଡ
ବିନ୍ଧିଲେ କର୍ଣ୍ଣଙ୍କ ଉରେ ପାର୍ଥ ନବକାଣ୍ଡ ।
କର୍ଣ୍ଣ ସେ କାଣ୍ଡକରେ ପାଇ ମହାପୀଡ଼ା
ପଡ଼ିଲେ ରଥେ ଶୋଇ ଛାଡ଼ିଦେଇ କ୍ରୀଡ଼ା ।
ଧନୁ ଶର ମୁଷ୍ଟି ନ ରହିଲା ହାତେ
ମାଇଲେ ହିକଳରେ କର ନେଇ ମାଥେ ।
ଅର୍ଜ୍ଜୁନ ତାହା ଦେଖି ନ ବିନ୍ଧ ଶରକୁ
ରହିଲେ ଧନୁ ଧରି ଚାହିଁଣ କର୍ଣ୍ଣକୁ ।
ଭାବିଲେ ମନେ ମଲ୍ଲପରି ଏ ହୋଇଛି
ମାଇଲେ ଏତେବେଳେ ନୁହେଁ ଯଶ କିଛି ।
କୃଷ୍ଣ ବୋଇଲେ ଆଉ କି ଦେଖ ଅର୍ଜ୍ଜୁନ
ଯେନ ଏତେକବେଳେ କର୍ଣ୍ଣର ଜୀବନ ।
ଜାଣିବା ଲୋକେ ଶତ୍ରୁ ଛିଦ୍ର ଚାହିଁଥାନ୍ତି
ପାଇବା କ୍ଷଣି ଛିଦ୍ର ଜୀବନ ଘେନନ୍ତି ।
ବିପତ୍ତିକାଳ ଖୋଜି ଶତ୍ରୁ ଯେ ମାରଇ
ଧର୍ମକୀର୍ତ୍ତି ତାହାର ଅଧିକେ ଚଢ଼ଇ ।
କର୍ଣ୍ଣ ସବୁକାଳେ ଅଟଇ ତୁମ୍ଭ ଶତ୍ରୁ
ନ ବରଜ ତାକୁ ଭେଟାଅ ନେଇ ମୃତ୍ୟୁ ।
ବାସବ ନମୁଚିକି ମାରିବା ପରାୟେ
ମାର ଏତେବେଳେ କର୍ଣ୍ଣଙ୍କୁ ବୀର ରାୟେ ।

—*—

## କର୍ଣ୍ଣ ବଧ

ପାର୍ଥ ଏହା ଶୁଣି ବୋଇଲେ ଯଦୁସାଇଁ
ତୁମ୍ଭେ ଯାହା ବୋଲୁଛ କରିବି କି ନାହିଁ ।
ଏହା କହି ପାର୍ଥ ଧନୁରେ ସନ୍ଧି ବାଣ
ଆଚ୍ଛାଦିଦେଲେ ଢଗ ଭୁଲରେ ଗଗନ ।
କର୍ଣ୍ଣ ଅର୍ଜ୍ଜୁନଙ୍କ କାଣ୍ଡରେ ବର୍ଣ୍ଣି ମର୍ଣ୍ଣି
ଫୁଟିଲା ପଲାଶ ଶୋଭାକୁ ଦେଲେ ଖର୍ଣ୍ଣି ।
କର୍ଣ୍ଣ ଚେତା ପାଇଣ କରେ ଧରି ଧନୁ
ବିନ୍ଧିଲେ ଶର ଯହିଁ ଥିଲେ ଇନ୍ଦ୍ର ସୂନୁ ।
କର୍ଣ୍ଣଙ୍କର ସେ କାଣ୍ଡମାନଙ୍କୁ ବିଜୟ—
କାଣ୍ଡି ଯେ କରି ଦେଲା ଯୁଦ୍ଧଦାଣ୍ଡେ କ୍ଷୟ ।

ଇନ୍ଦ୍ରଙ୍କର କରି ଅଣିମା ସମ ସ୍ୱନ
ବିଷଅଗ୍ନି ପରାୟେ ତେଜରେ ମଣ୍ଡନ ।
ମହାଭୟଙ୍କର ମହତଅସ୍ତ୍ର ସରି
କାଣ୍ଡକୁ ଅର୍ଜ୍ଜୁନ ଧଇଲେ ବାଛି କରି ।
କର୍ଣ୍ଣଙ୍କର ନିଧନେ ଦେଇକରି ମନ
ସନ୍ଧିଲେ ଗୁଣ ମଧ୍ୟେ ତା ନେଇ ଅର୍ଜ୍ଜୁନ ।
ଯେତିକିକାଳେ କାଳ ଆସିଣ ଦ୍ୱିଜରୂପେ
କହିଲେ ଏ ବଚନ କର୍ଣ୍ଣଙ୍କ ସମୀପେ ।
ତୁମ୍ଭ ରଥ ଚକ ତ ଗ୍ରାସିଲାନି ଭୂମି
ମରିବ ତ ତୁମ୍ଭେ ହେଉଛ କମ୍ପା ତମୀ ।
କର୍ଣ୍ଣଙ୍କର ମନରୁ ବ୍ରହ୍ମଅସ୍ତ୍ର ମନ୍ତ୍ର
ଛାଡ଼ିଗଲା ଜାଣ ଅମ୍ବିକା ଦେବୀ-ପୁତ୍ର ।
ସେହି ସମୟରେ କର୍ଣ୍ଣଙ୍କ ରଥଚକ
ଭୂମିରେ ପଶିଗଲା ହସ୍ତିନା ନାୟକ ।
ବ୍ରାହ୍ମଣ ଶାପେ ରଥଚକ ଗଲା ବୁଡ଼ି
ତା ଦେଖି କର୍ଣ୍ଣ ହେଲେ ମନୁ ଧୈର୍ଯ୍ୟ ଛାଡ଼ି
ପରଶୁରାମ ଦେବା ବ୍ରହ୍ମଅସ୍ତ୍ର ଚଭେ
ଯୋଷି ହେଲେହେଁ ନ ସ୍ଫୁରିଲା କଦାଚରେ
ଭେଦ କରିଥିଲେ ତ ଶାପ କାଣ୍ଡୁ ଟିକି
ତାହା ତ ଅରଜୁନ କଲେ ଟିକି ଟିକି ।
ତୁମ୍ଭ କର୍ଣ୍ଣ ଏ ଯେନ ଲଭି ଭୟ ଦୁଃଖ
ଶୁଖାଇଦେଲେ ଯୁଦ୍ଧଦାଣ୍ଡେ ରାୟେ ମୁଖ ।
ବୋଇଲେ ଧର୍ମ ମାତ୍ର କରୁଥିଲି ମୁହିଁ
ସେ ଧରମ ତ ମୋତେ ସାହା ହେଲା ନାହିଁ ।
ଅର୍ଜ୍ଜୁନଙ୍କ କାଣ୍ଡରେ ଦେହ କରି ଶୀର୍ଣ୍ଣ
ଥରକୁ ଥର ଧର୍ମ ନିନ୍ଦା କଲେ କର୍ଣ୍ଣ ।
ଅର୍ଜ୍ଜୁନ ସନ୍ଧିବା କାଣ୍ଡକୁ ତୂଣେ ଥୋଇ
ଆନ କାଣ୍ଡମାନ ବିନ୍ଧିଲେ ରୋଷ ବହି ।
କର୍ଣ୍ଣ ବଳର ଅନୁରୂପେ ବ୍ରହ୍ମଅସ୍ତ୍ର
କଲେ ନାଶିବା ପାଇଁ ଅର୍ଜ୍ଜୁନଙ୍କ ଗାତ୍ର ।
ଅର୍ଜ୍ଜୁନ କର୍ଣ୍ଣଙ୍କର ବ୍ରହ୍ମଅସ୍ତ୍ର ଦେଖି
ଇନ୍ଦ୍ରଅସ୍ତ୍ର କଲେ ହୋଇଣ ଅତି ସୁଖୀ ।
ଗାଣ୍ଡୀବ ଗୁଣ ତ୍ରୁଣ ମନ୍ତ୍ରି ଅରଜୁନ
ଶରରେ କଲେ ଆଧିରଥିଙ୍କି ଆଚ୍ଛନ୍ନ ।
କର୍ଣ୍ଣ ଅର୍ଜ୍ଜୁନଙ୍କର ଦେଖି ବାଣରାଶି
ଉତ୍ତମ ଶରେ ତାଙ୍କ ବଳ ଦେଲେ ଧ୍ୱଂସି ।

କୃଷ୍ଣ ବୋଇଲେ ହେ କି ଅସ୍ତ୍ର ଅରଜୁନ
ଷଣ୍ଢ ତ କର୍ଣ୍ଣ କରୁଛି ତା ଅସ୍ତ୍ରେ ଛିନ୍ନ ।
ଅର୍ଜୁନ ତାହା ଶୁଣି ବ୍ରହ୍ମାସ୍ତ୍ର ପେଷି
ଦେଲେ ଦଶଦଶ ପ୍ରକାଶକୁ ଝକାଶି ।
କର୍ଣ୍ଣ କ୍ରୋଧ ହୋଇଣ ବାନ୍ଧି କ୍ଷୁରକାଣ୍ଡ
କଲେ ଗାଣ୍ଡୀବର ଗୁଣକୁ ଦୁଇଖଣ୍ଡ ।
ଅର୍ଜୁନ ନିମିଷ ମାତ୍ରକେ ପୁଣ ଦେଇ
ଧନୁରେ କର୍ଣ୍ଣ ଦେଇ ବାନ୍ଧିଲେ ଶେଷ ଇ ।
ଅର୍ଜୁନ ଯେତେ ଅସ୍ତ୍ର ଲେଉଟି କର୍ଣ୍ଣଙ୍କୁ
କର୍ଣ୍ଣ ତା ସଂହାରିଲେ ପ୍ରକାଶି ଅସ୍ତ୍ରକୁ ।
କୃଷ୍ଣ ବୋଇଲେ ହେ ଅର୍ଜୁନ ଅସ୍ତ୍ର କର
ବୀଅ ତୁମ୍ଭର ଶତ୍ରୁ କର୍ଣ୍ଣଙ୍କୁ ସଂହାର ।
ଅର୍ଜୁନ ଅଗ୍ନି ପର କାଣ୍ଡେ ସନ୍ଧି ଗୁଣ୍ଡେ
ରୁଦ୍ରଅସ୍ତ୍ରେ ମନ୍ତ୍ର ବାନ୍ଧିଲେ କର୍ଣ୍ଣପିଣ୍ଡେ ।
ଏହିକାଳେ ରଥଟି ଲାଗିଲା ତଳେରେ
ଅର୍ଜୁନଙ୍କୁ କହିଲେ କର୍ଣ୍ଣ ବିକଳରେ ।
ଦେଖ ମୋହର ରଥ ତଳରେ ଲାଗିଛି
ନ ମାର ତୁମ୍ଭଙ୍କୁ ବୋଲୁଛି କୁନ୍ତୀବନ୍ଧି ।
ଶତ୍ରୁ ଯେବେ ଶରଣ ପଶେ ଆସି ପାଦେ
ନ ପକାନ୍ତି ତାହାକୁ କ୍ଷତ୍ରିୟେ ବିପଦେ ।
ଧନୁ ରଥ ଭଗନ ହୁଅଇ ଯାହାର
ନ କରିବ ତାହାର ତୁଳରେ ସମର ।
ମୋହ ରଥ ତ ଭୂମି ତଳରେ ଲାଗିଛି
ଏଥିକି ରୁହିଁ ଧର୍ମ ଭାବ କୁନ୍ତୀବନ୍ଧି ।
ତୁମ୍ଭ ଦୁହିଁଙ୍କର ସବାଶୁଁ ମୋର ଭୟ
ଦେଖୁ ନାହିଁ ଅର୍ଜୁନ ଜାଣ ହେ ହୃଦୟ ।
କ୍ଷତ୍ରିୟକୁଳେ ତ ହୋଇଛ ତୁମ୍ଭେ ଜାତ
ତୁମ୍ଭଙ୍କୁ କହିବାର ଏ ମୋ ଅନୁଚିତ ।
କର୍ଣ୍ଣଙ୍କର ବଚନ କୃଷ୍ଣ କାନେ ଶୁଣି
ବୋଇଲେ କି ଗୁଡାଏ ବୋଲ ବୀରମଣି ।
ତୁମ୍ଭେ ଯେ ବୋଲୁଥିଅ ପରାଜୟ ମୋର
ନୋହିବ ଯୁଦ୍ଧ କଲେ ମୋତେ ପୁରନ୍ଦର ।
ଅରଜୁନ ତ ଏବେ ରହିଅଛି ଆଗେ
ମାର ଏବେ ଏହାକୁ ଉତ୍ତମ ଆଶୁଗେ ।
ବିପତ୍ତିକାଳେ ମର ଲୋକ ଦଇବକୁ
ନିନ୍ଦନ୍ତି, ନ ନିନ୍ଦନ୍ତି ଆପଣା କର୍ମକୁ ।

ଦ୍ରୌପଦୀଙ୍କୁ ସଭାକୁ ଆଣି ବିବସନ
କଲାବେଳେ ଧର୍ମ କି ନ ଥିଲା ହେ କର୍ଣ୍ଣ ।
ଯୁଧିଷ୍ଠିର ନୃପେ କପଟ ଜୁଆଖେଳେ
ଜିଣି ରାଜ୍ୟ ନେଲେ ଧର୍ମକୁ ଲଙ୍ଘି ଭଲେ ।
ଭୀମଙ୍କୁ ବିଷଖଜା ଖୋଇ ଗଙ୍ଗାଜଳ—
ମଧ୍ୟେ ପେଲିଦେଲ, ତ ଧର୍ମ ନ ଭଜିଲ ।
ପାଣ୍ଡୁ ପୁତ୍ରଙ୍କୁ ଜତୁଘରରେ ପୂରାଇ
ପୋଡ଼ିଦେଇ, ଧର୍ମଙ୍କୁ ରହିଁଲ ତ ନାହିଁ ।
ଦ୍ରୁପଦୀଙ୍କି ଆନ ପତି ବର କର୍ଣ୍ଣ
ବୋଲିବାବେଳେ ଧର୍ମ ହୋଇଲା କି ଆନ ।
ଅଭିମନ୍ୟୁ ପିଲାଗୋଟିକୁ ତ ଛଅଟି
ରଥୀ ବେଢ଼ି ମାଇଲ ଛାଡ଼ି ଧରମଟି ।
ବନବାସ ସରିଲା ପରେ ପାଣ୍ଡବଙ୍କୁ
ନ ଦେଇ ରାଜ୍ୟ ଯୁଝିଲ କି ଧରମକୁ ।
ଏରୂପେ କର୍ଣ୍ଣ ଆଗେ କହନ୍ତେ ଗୋବିନ୍ଦ
ପୂରିଲା ଅର୍ଜୁନଙ୍କ ହୃଦେ କ୍ରୋଧବୃନ୍ଦ ।
ନେତ୍ର କର୍ଣ୍ଣ ନାସା ଛିଦ୍ରରୁ କ୍ରୋଧାନଳ
ବାହାରିଲା ସେକାଳେ ହୋଇଣ ପ୍ରବଳ ।
କର୍ଣ୍ଣ ଅର୍ଜୁନଙ୍କର କ୍ରୋଧକୁ ଅନାଇଁ
ବ୍ରହ୍ମଅସ୍ତ୍ର କରି ଯୁଝିଲେ ଭୟ ହୋଇ ।
ରଥକୁ ଟେକିବାରେ କଲେ ମହାଯତ୍ନ
କାଳ ତ ଲୁଟିଛି କର୍ଣ୍ଣଙ୍କ ବଳ-ରତ୍ନ ।
ଏଣୁ ଯେତେ ଉପାୟ କଲେ ହେଲେ ସେହି
ବ୍ୟର୍ଥ ହୋଇଲା ହେ ହସ୍ତିନା ନରସାଇଁ ।
ଅରଜୁନ ବ୍ରହ୍ମାସ୍ତ୍ର କରିଣ କର୍ଣ୍ଣଙ୍କୁ
ଆଚ୍ଛାଦିଲେ ସେକାଳେ ଦେଖାଇ ବଳକୁ ।
କର୍ଣ୍ଣଙ୍କୁ ରଥ ଛୁଲେ ପୋଡିବ ଭାବିଲେ
ଅଗ୍ନିଅସ୍ତ୍ର ଗାଣ୍ଡୀବେ ସନ୍ଧିଣ ବାନ୍ଧିଲେ ।
ବରୁଣଅସ୍ତ୍ର କରି କର୍ଣ୍ଣ ଅତି ଗୃଣ୍ଡେ
ସେ ଅଗ୍ନିଅସ୍ତ୍ର ଶାନ୍ତ କଲେ ରଣଦାଣ୍ଡେ ।
ବରୁଣଅସ୍ତ୍ର କର୍ଣ୍ଣ କରିଣ ପ୍ରକାଶ
ମେଘରେ ଘୋଡ଼ାଇଣ ନେଲେ ଦଶ ଦିଶ ।
ଅରଜୁନ ବାୟୁବଅସ୍ତ୍ରକୁ ପ୍ରକାଶି
ଦେଲେ ସେ କର୍ଣ୍ଣଙ୍କର ଘନରାଶି ନାଶି ।
କର୍ଣ୍ଣ ମନ ଦେଇଣ ଅର୍ଜୁନଙ୍କ ବଧେ
ବାଛି ଶର ବାନ୍ଧିଲେ ସନ୍ଧି ଧନୁମଧ୍ୟେ ।

ତାହା ଦେଖି ସବୁ ପ୍ରାଣୀଏ ହାହା ରଡ଼ି
କରି ଦେଲେ ଭୟେ ବସନ ଅଙ୍ଗେ ଘୋଡ଼ି ।
ମହାଦେବୀ ସେ ହୋଇଗଲେ ଥରଥର
ସୂର୍ଯ୍ୟ କଲେ ରଜରେ ଆବୃତ ଶରୀର ।
ପାଣ୍ଡବେ ଦେଖିଣ କର୍ଣ୍ଣଙ୍କ ସେ କାଣ୍ଡକୁ
କରିଦେଲେ ଦୁକୁଦୁକୁ ହୃଦୟେ ବୁକୁକୁ ।
କର୍ଣ୍ଣ ହାତୁଁ ସେ କାଣ୍ଡ ଫିଟି ସର୍ପ ପରି
ଅର୍ଜୁନଉର ସ୍ଥଳେ ପଶିଗଲା ଗଳି ।
ଅରଜୁନ ସେ କାଣ୍ଡେ ପାଇ ମହାବ୍ୟଥା
ମୋହ ହୋଇ କହିଟି ନ ପାରିଲେ କଥା ।
ସେହି ଛିଦ୍ରେ କର୍ଣ୍ଣ ରଥରୁ ଓହ୍ଲାଇଲେ
ଦୁଇହାତରେ ରଥ ଚକକୁ ଟେକିଲେ ।
କେବେହେଲେ ଚକକୁ ନ ପାରିଲେ ଟେକି
ରହିଲେ ଅଧିରଥଙ୍କର ସୁତ ଥକି ।
ଚେତା ପାଇ ପାର୍ଥ ପାଞ୍ଚଜନ୍ୟ କାଣ୍ଡ ଗୁଣେ
ସନ୍ଧି ଗାଣ୍ଡିବକୁ ଝିଙ୍କିଲେ ଅନ୍ତ ଟାଣେ ।
ସେହିକାଳେ କୃଷ୍ଣ କହିଲେ ଅର୍ଜୁନଙ୍କୁ
କାଟ ଏ ଶରେ କର୍ଣ୍ଣ ଗଣ୍ଡିରୁ ମୁଣ୍ଡକୁ ।
ଅର୍ଜୁନ ସେ କଥାକୁ କରି ସନମତ
କଲେ କ୍ଷୁରପାସ୍ତରେ ହସ୍ତିକକ୍ଷାଚ୍ୟୁତ ।
ହସ୍ତିକକ୍ଷା କାଟି କର୍ଣ୍ଣଙ୍କ ଧୈର୍ଯ୍ୟ କୀର୍ତ୍ତି
ହରି ନେଇଗଲେ ସେ ଇନ୍ଦ୍ରଙ୍କ ସନ୍ତତି ।
ତା ଦେଖି କୁରୁମାନେ କରି ହାହାକାର
ମଲେ ବୋଲିଣ ମନେକଲେ କର୍ଣ୍ଣ ବୀର ।
ପୁଣି ସେ ଅରଜୁନ ଅଞ୍ଜଳିକ ଶର
ସନ୍ଧିଲେ ଧନୁମଧ୍ୟେ ହୋଇ ତତପର ।
ସେ ଶରରେ ଛଅଟା ପକ୍ଷୀ ଲାଗିଅଛି
ରକତ ମାଉଁସକୁ ବହୁତ ଖାଇଛି ।
ପ୍ରଳୟ ଅଗ୍ନି ସୂର୍ଯ୍ୟ ପରାୟେ ତା ତେଜ
ପିନାକ ନାରାୟଣ ଚକ୍ରପରି ଓଜ ।
ସେ ଶରକୁ ଅର୍ଜୁନ ଉତ୍ତମ ଅସ୍ତ୍ରରେ
ମନ୍ତ୍ରିଲେ କର୍ଣ୍ଣ ପ୍ରାଣନେବାର ମତରେ ।
କହିଲେ ମୁହିଁ ଯେବେ କରିଥିବି ତପ
ତୋଷିଥିବି ଗୁରୁଙ୍କୁ ନ ଦେଇ ସନ୍ତାପ ।
ତେବେ ଏ ଶର ମୋର କର୍ଣ୍ଣଙ୍କ ମୁଣ୍ଡଟି
କାଟି ବଢ଼ାଇବ ଯୁଦ୍ଧେ ମୋ କୀର୍ତ୍ତି ପୁଷ୍ଟି ।

ବୋଲି ହେ ଧୃତରାଷ୍ଟ୍ର ଏରୂପେ ଅର୍ଜୁନ
ଆଣ୍ଠେ ମୋଡ଼ିଦେଲେ ଗାଣ୍ଡୀବ ଶରାସନ ।
କର୍ଣ୍ଣଙ୍କ ବଧ ପାଇଁ କର୍ଣ୍ଣ ଯାଏ ଟାଣି
ଗାଣ୍ଡୀବଧନୁର୍ଗୁଣ ଆଣିଲେ ସେକ୍ଷଣି ।
ସେ ଅସ୍ତ୍ର ଅର୍ଜୁନ ହାତରୁ ଫିଟି ରଣ୍ଡେ
ବଜ୍ରପରି ଗର୍ଜନ କରି ଯୁଦ୍ଧଦାଣ୍ଡେ ।
କର୍ଣ୍ଣଙ୍କର ପିଣ୍ଡରୁ ମୁଣ୍ଡ ଦୁଇ ଖଣ୍ଡ
କରି ସେ ପକାଇଣ ଦେଲା ରଣଦାଣ୍ଡ ।
ଯେରୂପେ ବୃତ୍ର ଶିର ବଜ୍ରେ ପୁରନ୍ଦର
ନାଶିଲେ ସେହିରୂପେ ଅରଜୁନ ବୀର ।
କର୍ଣ୍ଣଙ୍କର ମୁଣ୍ଡକୁ ରଣଦାଣ୍ଡେ କାଟି
ଜୟ ଲକ୍ଷ୍ମୀଙ୍କି ନେଲେ ଯୁଦ୍ଧଦାଣ୍ଡୁ ଲୁଟି ।
କର୍ଣ୍ଣଙ୍କ ଦେହରୁ ବାହାରି ତେଜୁଟାଏ
ମିଶିଗଲା ଯାଇଣ ସୂର୍ଯ୍ୟଙ୍କର କାୟେ ।
ପାର୍ଥ କାଣ୍ଡ ଅସ୍ତଗିରିରେ କର୍ଣ୍ଣ ସୂର୍ଯ୍ୟ
ନଘୋଡ଼ ହୋଇ ରହିଲେ ଜାଣ ମହାରାଜ ।
ତା ଦେଖି କୃପାର୍ଜୁନ ସୋମକଙ୍କ ଭୁଲେ
ଶଙ୍ଖକୁ ଧରି ବଜାଇଲେ ଅନ୍ତ ଗେଲେ ।
ପାଣ୍ଡବ ଲୋକେ ତରା ମାରିଣ ପାତାକା
ବଢ଼ାଇଲେ ମନରୁ ଗୁଡ଼ିଦେଇ ଦକା ।
ଯୁଧିଷ୍ଠିର ପକ୍ଷ ନୃପେ ଯେ ଗୋଟି ହୋଇ
ଅରଜୁନଙ୍କୁ ପ୍ରଶଂସିଲେ ତୋଷବହି ।
କର୍ଣ୍ଣ ଦେହ ଅର୍ଜୁନ କାଣ୍ଡେ ହୋଇ ମଣ୍ଡି
ଦେଲେ ଦୁଇପହର ସୂର୍ଯ୍ୟଙ୍କର ଖଣ୍ଡି ।
କର୍ଣ୍ଣ ଶସ୍ତ୍ରସେନାଙ୍କୁ କରି ପରାଭବ
ଅର୍ଜୁନ କାଳମୁଖେ ଲଭିଲେ ଅଗ୍ରବ ।
ଭୀମ ହାତକୁ ଖାଇ ଅଧିରଥ ବେଟା
କରିଥିଲେ ତ ଗଣ୍ଡି ଠିକ ଅନ୍ତ ମୋଟା ।
ପାର୍ଥ କାଣ୍ଡେ ହୁଅନ୍ତେ ତାର ମୁଣ୍ଡ କଟା
ସେହିକ୍ଷଣି ଗୁଡ଼ିଲା ହୃଦରୁ ପ୍ରାଣୁଟା ।
କଦମ୍ବ ପୁଷ୍ପ ପରି କରି କର୍ଣ୍ଣ ଶିର
ଶରେ ଉଡ଼ାଇଲେ ଆକାଶ ପାର୍ଥ ବୀର ।
ଅପରାହ୍ନ କାଳେ ଅର୍ଜୁନ ଭୁଲେ ରଣ
କର୍ଣ୍ଣ କରି ସେହି କାଳରେ ମଲେ ଜାଣ ।
କର୍ଣ୍ଣ ପଡ଼ିବାର ମଦ୍ର ରାଜା ଦେଖି
ରଥ ସହିତେ ପଳାଇଲେ ହୋଇ ଦୁଃଖୀ ।

କୁରୁଏ କର୍ଣ୍ଣଙ୍କର ମରିବାର ଜାଣି
ପଳାଇଲେ ନେତ୍ର ବେନିରୁ ମୁଞ୍ଚି ପାଣି ।
ଏହିଠାରେ କର୍ଣ୍ଣବଧ ସମାପତ
ହେଲା କହଇ କୃଷ୍ଣସିଂହ ନରପତି ।

—*—

## ଦୁର୍ଯ୍ୟୋଧନଙ୍କର ଶୋକ

କର୍ଣ୍ଣଙ୍କ ମରିବାର ଦେଖି ଦୁର୍ଯ୍ୟୋଧନ
ନେତ୍ର ବେନି ଲୋତକ କରି ଥନ ଥନ ।
ଆହା କର୍ଣ୍ଣ ବୋଲି ଛାଡ଼ିଲେ ଉଚେ ରଡି
ରଥତଳେ ପଡ଼ି ବେଢ଼ାଏ ଗଲେ ଗଡ଼ି ।
ତା ଦେଖି କୁମ୍ଭ ସେନାମାନ ପାଡ଼ି ଡକା
କର୍ଣ୍ଣ ଶରୀରକୁ ବେଢ଼ିଲେ ଯାଇ ଏକା ।
ବୃଷଭ ମଲେ ଗାଈ ପଳାନ୍ତି ଯେରୂପେ
ପଳାଇଲେ କୁମ୍ଭ ସଇନ ସେହିରୂପେ ।
କର୍ଣ୍ଣଙ୍କ ମୃତ୍ୟୁ ଦେଖି ଭୀମ ଭୟଙ୍କର
ରଡ଼ି ଛାଡ଼ି ଡେଇଁଲେ ରଥରେ ଅପାର ।
ପାଞ୍ଚାଳଙ୍କ କୁଳରେ ସୋମକ ସୃଞ୍ଜୟ
ଦେଖି ଯୁଦ୍ଧଦାଣ୍ଡରେ ବିଜୟ ବିଜୟ ।
ଜୟ ଲକ୍ଷ୍ମୀଟିକା ତାଙ୍କର କରି ଜାଣି
ବଜାଇଲେ କରେ ଧରିଣ ଶଙ୍ଖଶ୍ରେଣୀ ।
ପ୍ରତିକାର ଅନ୍ତକୁ ପାଇ ଅରଜୁନ
ଆନନ୍ଦ ସାଗରରେ ହୋଇଲେ ମଗନ ।
ଶଲ୍ୟ କାନ୍ଦି କାନ୍ଦି ଦୁର୍ଯ୍ୟୋଧନଙ୍କ ଆଗେ
କହିଲେ ଯାଇ ହେ ରାଜନ କଥା ବାଗେ ।
ବଡ଼ ଯୁଦ୍ଧ କରନ୍ତି ଆଜ ଅରଜୁନ
ଘେନିଗଲେ ଶେଷରେ କର୍ଣ୍ଣର ଜୀବନ ।
କର୍ଣ୍ଣ ଅଗ୍ନି ପାର୍ଥ ଜଳରେ ଶାନ୍ତ ହୋଇ
ରହିଲା ଜାଣ ଆହେ କୁରୁକୁଳ ସାଇଁ ।
କର୍ଣ୍ଣ ରାହୁ ଶ୍ରୀକୃଷ୍ଣ ଅର୍ଜୁନ ଚନ୍ଦ୍ରକୁ
ଘୋଟି ରହିଥିଲେ ଯାଇଣ ଖାଇବାକୁ ।
ଦଇବ ସେ ଦୁହିଁଙ୍କି ହୋଇକରି ସାହା
ଭାଙ୍ଗିଦେଲା ହେ ରାଜେ ଆମ୍ଭର ଉତ୍ସାହା ।
ଇନ୍ଦ୍ର ଯମ କୁବେର ପ୍ରାୟେ କୁମ୍ଭ ରଥୀ
କ୍ଷୀଣହେଲେ ପାର୍ଥ ବାଣରେ ଜାଣ ମନ୍ତ୍ରି ।
ଏଣୁ ମୁଁ ବୋଲୁଅଛି କାଳ ବଳୀୟାର
କାଳକୁ କେବେ ବଳି ନ ପାରଇ ନର ।

ତୁମ୍ଭେ ଏବେ ଶୋକ ନକର ନରସାଇଁ
କାଳକୁ ଚାହିଁ ଯୁଦ୍ଧ କର ଧୈର୍ଯ୍ୟ ହୋଇ ।
ଦୁର୍ଯ୍ୟୋଧନ ଶଲ୍ୟଙ୍କ କଥା କାନେ ଶୁଣି
ଆପଣାର ଦୁର୍ନୀତି ମନେ ମନେ ଗୁଣି ।
ଦୁଃଖରେ ହୃଦୟକୁ କରିଣ ଆକୁଳ
ପକାଇଲେ ନିଃଶ୍ୱାସ ହୋଇଣ ବିକଳ ।

—*—

## ସୈନ୍ୟଙ୍କର ପୃଷ୍ଠଭଙ୍ଗ ଦେଖି ଦୁର୍ଯ୍ୟୋଧନଙ୍କର ଯୁଦ୍ଧ

ଧୃତରାଷ୍ଟ୍ର ବୋଇଲେ ମଲେ କର୍ଣ୍ଣବୀର
କି କଲେ କୁରୁ ପାଣ୍ଡୁ କହ ମନ୍ତ୍ରିବର ।
ସଞ୍ଜୟ ବୋଇଲେ ମରନ୍ତେ ରଣେ କର୍ଣ୍ଣ
ସିଂହପରି ଗର୍ଜନ କଲେ ଅରଜୁନ ।
ତାହାକୁ ଶୁଣି କୁମ୍ଭ ପୁଏ ଭୟ କରି
ନ ପାରିଲେ କରମାନଙ୍କେ ଶସ୍ତ୍ର ଧରି ।
କର୍ଣ୍ଣ ହତ ହୁଅନ୍ତେ ହୋଇ ନିରୁତ୍ସାହା
କୁମ୍ଭ ଲୋକେ ରହିଲେ ଛାଡ଼ି ବେନି ବାହା
ପାଣ୍ଡୁ ସୈନ୍ୟ ସମୁଦ୍ରେ କର୍ଣ୍ଣଙ୍କ ବୋଇତ
କରି କୁରୁ ବଣିଜାରୁଏ ତୋଷଚିତ୍ତ ।
ହୋଇଣ ବାହୁଥିଲେ ଜୟ ବିତ୍ତ ପାଇଁ
ଅର୍ଜୁନ ଶର ବାତ ଭାଙ୍ଗିଲା ତା ଯାଇ ।
ଏହି ସକାଶୁଁ ଆମ୍ଭେ ସଂରି ଆଶା କୂଳ
ଆଦରି ରହିଅଛୁଁ ଆପଣା କପାଳ ।
କୁମ୍ଭ ପୁଅମାନେ କର୍ଣ୍ଣଙ୍କ ମୃତ୍ୟୁ ଚାହିଁ
ଭାଗିଲେ ବଚନେ ମଲୁଁ ବୋଲି ଭାଇ ।
ସବୁଆଡ଼େ ପାର୍ଥ ଭୀମଙ୍କୁ ଦେଖି ଲୋକେ
କୁମ୍ଭର ପଳାଇଲେ କାନ୍ଦି ସକସକେ ।
ପଳାଇବା ଘାତରେ ହୋଇ ଜନ୍ତାଜନ୍ତ
ମଲେ କୁମ୍ଭ ପାଇକ ହାତୀ ଘୋଡ଼ା ପନ୍ତ ।
ବାଘ ଖଣ୍ଡେ ଚହଟେ ବନରେ ପଥିକ
ଆକୁଳ ହେଲାପରି ହେଲେ ସବୁ ଲୋକ ।
ଦୁର୍ଯ୍ୟୋଧନ ସୈନ୍ୟ ପଳାଇବାର ଦେଖି
ସାରଥିକି ବୋଇଲେ କମା ରଥ ରଖି—
ଅଛୁ ମୋ ଏଠାରେ ପଛକୁ ନିଅ ବାହି
ସୈନ୍ୟଙ୍କୁ ଫେରାଇ ଆଣିବି ଯାଇ ମୁହିଁ

ଧନୁ ଧରଣ ମୂର୍ଚ୍ଛା କରୁଥିଲେ ରଣ
ବଳ ନ ପାରବଟି ମୋତେ ଅରଜୁନ ।
ଆଜ ଭୀମ ଅର୍ଜୁନ ଦୁହିଁଙ୍କି ସଂହାର
କର୍ଣ୍ଣ ପ୍ରୀତ ଋଣରୁ ହୋଇବ ମୁଁ ପାର ।
କୁରୁରାଜା ବାଣୀ ସାରଥି ଶୁଣି କାନେ
ବାହିଲା ତାଙ୍କ ରଥ ଘୋଡ଼ାଙ୍କୁ ବହନେ ।
ରଥ ଘୋଟକ ଗଜ ବାହାରେ ପଚଶି
ସହସ୍ର ପଡ଼ି ଗୋଟି ହେଲେ ରାସ୍ତେ ଆସି ।
ଜର୍ଜ୍ଜର କର ତୁମ୍ଭ ଜ୍ୟେଷ୍ଠପୁତ୍ର ହତ
ଯୁଦ୍ଧ କରବାରେଟି ବଳାଇଲେ ଶତ୍ରୁ ।
ଭୀମ ଧୃଷ୍ଟଦ୍ୟୁମ୍ନ ତା ଦେଖି କ୍ରୋଧ ହୋଇ
ରଥ ଧୂଆଁଇଲେ ସେ ଦୁହେଁ ଯୁଦ୍ଧପାଇଁ ।
ତୁମ୍ଭର ସେନାଯାଇ ଧନୁକୁ ଓଟାର
ବିନ୍ଧିଲେ ଶର ସେ ଦୁହିଙ୍କି ରାଗ ଧର
ଭୀମ ତୁମ୍ଭ ଲୋକଯାକକୁ ତଳେ ଦେଖି
ଧାଇଁଲା ଗଦା ଧର ରଥକୁ ଉପେକ୍ଷି ।
ମନେ କଲେ ରଥ ନଢ଼ି ମୁଁ ପଦାତିଙ୍କି
ନାଶ କଲେଟି ନାଶ କରବ ଜାତିକ ।
ତାହା ଦେଖି ତୁମ୍ଭ ପାଇକେ ଫରି ଖଣ୍ଡା
ମାନ ଧରଣ ଓଗାଳିଲେ ଭୀମଭେଣ୍ଡା ।
ଗଦାକୁ ଧର ଭୀମସେନ ଗଜପତି
କର ଦେଲେ ତୁମ୍ଭର ସଇନ ନିପାତି ।
ପଚଶି ସହସ୍ର ସେ ଏକା ଗଣତିରେ
ବସିଲେ ଯାଇକର ଯମଙ୍କ କତିରେ ।
ପୁଣି ମୋ ଭୀମ ଧୃଷ୍ଟଦ୍ୟୁମ୍ନଙ୍କ ଆଗେ
କର ଯୁଦ୍ଧ ଦାଣ୍ଡେ ଧାଇଁଲେ ଅତିରାଗେ ।
ଧନୁକୁ ଧର ଧୃଷ୍ଟଦ୍ୟୁମ୍ନ ମହାମତି
ମାଇଲେ ପଞ୍ଚବିଂଶସହସ୍ର ପଦାତି ।
ଧୃଷ୍ଟଦ୍ୟୁମ୍ନଙ୍କୁ ଦେଖିଣ ତୁମ୍ଭ ସେନା
ପଳାଇଲେ ଯୁଦ୍ଧରେ ହୋଇଣ ବିମନା ।
ନକୁଳ ସହଦେବ ବେଢ଼ି ଶକୁନିକି
ଶରେ କଲେ ତୁମ୍ଭ ସୈନ୍ୟଙ୍କୁ ଟିକି ଟିକି ।
ଶକୁନି ସଙ୍ଗତେ ସିପାଇ ଯେତେ ଥିଲେ
ନକୁଳ ସହଦେବ ତାଙ୍କୁ ମାରଦେଲେ ।
ଚେକିତାନ ଶିଖଣ୍ଡୀ ଦ୍ରୌପଦେୟମାନେ
ହେନଲେ କୁରୁପ୍ରାଣ ବାଣେ ଅବଚ୍ଛିନ୍ନେ ।

ଅରଜୁନ ଗାଣ୍ଡୀବ ଧନୁକୁ ଟଙ୍କାର
ଦେଲେ ତୁମ୍ଭ ଯେ ଥିଲେ ସେନା ନାଶ କରି
ଯେ ଯାଇଥିଲେ, ପାର୍ଥ କାଣ୍ଡେ ପାଇ ପୀଡ଼ା
ହୋଇ ନ ପାରଲେ ସେ ଯୁଦ୍ଧଦାଣ୍ଡେ ଛିଡ଼ା ।
ଦୁର୍ଯ୍ୟୋଧନ ରାଜନ ପାଣ୍ଡବମାନଙ୍କୁ
ଡାକିଲେ ଆସ ମୋର ସଙ୍ଗେ ଯୁଝିବାକୁ ।
ତା ଶୁଣି ପାଣ୍ଡବେ ଧିକ୍କାର ଦୁର୍ଯ୍ୟୋଧନ—
ରାଜାଙ୍କୁ କଲେ ତାଙ୍କ ସଙ୍ଗେ ଅସ୍ତ୍ରୋଧନ ।
ଦୁର୍ଯ୍ୟୋଧନରାଜା ଭୟକୁ ଦୂର କର
ପାଣ୍ଡବଙ୍କୁ ଶର ବିନ୍ଧିଲେ ରାଗ ଧର ।
ତୁମ୍ଭ ପୁଅ ଦେଖାଇ ସେକାଳେ ବିକ୍ରମ
କଲେ ପାଣ୍ଡୁସୁତଙ୍କ ତୁଲରେ ସଂଗ୍ରାମ ।
ନିଜ ସୈନ୍ୟ ଭାଗୁଡ଼ି ଦୁର୍ଯ୍ୟୋଧନ ଦେଖି
କହିଲେ ଏ ବଚନ ତାଙ୍କୁ ହୋଇ ଦୁଃଖୀ ।
ଯୁଦ୍ଧ ଛାଡ଼ି ପଳାଇଗଲେ କି ପାଣ୍ଡବେ
କହ ଯୋଦ୍ଧାମାନେ ତୁମ୍ଭଙ୍କୁ ନ ମାରବେ ।
କୃଷ୍ଣ ଅରଜୁନ ହେଲେନି ଅଣକତ
ଆସ ଆମ୍ଭେ ବେଢ଼ି କରବା ତାଙ୍କୁ ହତ ।
ପଳାଇଲେ ପାଣ୍ଡବେ ଗୋଡ଼ାଇ ଗୋଡ଼ାଇ
ହେବେ ଯୁଦ୍ଧଦାଣ୍ଡରେ ତୁମ୍ଭଙ୍କୁ ବଡ଼ାଇ ।
କ୍ଷତ୍ରିସ୍ୱଧର୍ମେ ଯୁଦ୍ଧ କର ଯେ ମରଇ
ମଲା ଦୁଃଖ ନ ଜାଣି ସ୍ୱର୍ଗ ସେ ଭୁଞ୍ଜଇ ।
ଯୁଦ୍ଧ କର କରବା କଥାଟି ଉତ୍ତମ
ଅବଶ୍ୟ ତ ଥରେ ହେ ଯିବା ଯମ ଗ୍ରାମ ।
ଭୀମ ପାର୍ଥ ଆଜ ତ କ୍ରୋଧ ହୋଇଛନ୍ତି
ତାହାଙ୍କ ଆଗୁଁ ଆଜ ଯିବ କେ ବଞ୍ଚି ।
ପିତୃ ପିତାମହରେ ଆଚରିତ କର୍ମ
ଆଚର ଅରଜ ହେ ଯୁଦ୍ଧେ ମହାଧର୍ମ ।
ଯୁଦ୍ଧେ ମଲା ଲୋକ ପାଇଣ ଦେବଲୋକ
ଛାଡ଼ିଦିଏ ହୃଦେ ଯେ ରହିଥାଏ ଶୋକ ।
ଏରୂପେ ଦୁର୍ଯ୍ୟୋଧନ କହୁଁ କହୁଁ ବାଣୀ
ପଳାଇଲେ ରାଜନ ଶୁଣି ସୈନ୍ୟଶ୍ରେଣୀ ।
ସୈନ୍ୟଙ୍କର ଭାଗୁଡ଼ି ଦେଖି ଶଲ୍ୟରାଜା
କହିଲେ ଏ କଥା ଥରାଇ ଭୟେ ମଜ୍ଜା ।
ତୁମ୍ଭର ପୁତ୍ର ଦୁର୍ଯ୍ୟୋଧନର ଆଗରେ
ବଚନ ଥଙ୍ଗ ଥଙ୍ଗ କରିଣ ବେଗରେ ।

ଦେଖ ହାତୀମାନେ ଫଟାଇ ଚର୍ମସ୍ଥଳ
ଅର୍ଜୁନ କାଣ୍ଡେ ମରି ଚଡ଼ୁଛନ୍ତି ତଳ ।
କଦଳ ଧ୍ୱଜଛତ୍ର ଛିଡ଼ି କୋଟି କୋଟି
ଯୁଦ୍ଧଭୂମିସ୍ଥଳରେ ହୋଇଅଛି ଲୋଟି ।
ଶୂରଙ୍କର ଶିରସ୍ତ୍ରାଣର ତଳେ ଶିର
ଦେଖ ହେ ଗଡ଼ୁଅଛି ମହୀରେ ଅପାର ।
ହାତୀ ନର ଅଶ୍ୱ ମଢ଼ାରେ ଏହି ଭୂମି
ମଧ୍ୟରେ ଲୋକମାନେ ନ ପାରନ୍ତି ଗମି—
ତୂଣୀର ଧନୁ ଖୁପି ଚାମର ପତାକା
ପଡ଼ିଣ ଥୋଉଛନ୍ତି ହୃଦୟରେ ଦକା ।
କର୍ଣ୍ଣ ଅରଜୁନର ହାତ ଶରପନ୍ତି
ପଡ଼ିଛନ୍ତି ସର୍ପ ପରାୟେ ଧରି କାନ୍ତି ।
କେତେ କାଣ୍ଡ ବା ଗଳି ରହିଛନ୍ତି ତଳେ
ଗଜାଶ୍ୱ ନରଙ୍କୁ ନକଟ ବାହୁବଳେ ।
ଅଖ ଚକ ଯୁଆଳି ଛିଣ୍ଡାଇ ରଥଗଣ
ପଡ଼ିଅଛନ୍ତି ଦେଖ ହୋଇ ରଣଭଣ ।
ଖଣ୍ଡା ଶକତି ଗଦା ମୁଷଳ ପରଘ
ପଡ଼ିଛନ୍ତି ରାଜନ ହୋଇ ଏକସଙ୍ଗ ।
କଣ୍ଠ ହାର ଶଙ୍ଖ କେୟୂର କୁଥମାଳ
ଯୋଦ୍ଧାଙ୍କର ଅପାର ପଡ଼ିଛି ଭୂପାଳ ।
ବୀରମାନେ ଯେ ଓଷ୍ଠପୃଷ୍ଠକୁ କାମୁଡ଼ି
ଦେଖ ଦେଖ ପଡ଼ି ଅଛନ୍ତି ପ୍ରାଣ ଛାଡ଼ି ।
ସୂର୍ଯ୍ୟ ଆସି ଏବେ ତ ହୋଇଲାଣି ଅସ୍ତ
କହ ହେ ନୃପ ଚନ୍ଦ୍ର କ୍ରୋଧ ରାହୁଗ୍ରସ୍ତ ।
ଦୁର୍ଯ୍ୟୋଧନ ତା ଶୁଣି ପାଡ଼ି ଉଚ୍ଚେ ଡକା
ବୋଇଲେ କର୍ଣ୍ଣ ମୋତେ କରିଗଲୁ ଏକା ।
ତୋ ବଳରେ ସିନା ପାଣ୍ଡବଙ୍କୁ ମାରି
ହେବ ବୋଲି ଭାବୁଥିଲି ମୁଁ ଦଣ୍ଡଧାରୀ ।
ଏବେ ସେ କଥା ଗୋଟି କରି ଦେଇ ନାଶ
ଆହା ମୋ ବୀର କର୍ଣ୍ଣ ଗଲୁ ଯମପାଶ ।
କଷ୍ଟି ମୁଣ୍ଡଟିକ ଦେଇଥିଲେ କାଟି
ହୁଅନ୍ତା ମୋତେ ଭୋଗ ଏ ହସ୍ତିନାମାଟି ।
ଦଇବବଶେ ଅରଜୁନ କାଳ ଗୋଟି
ଖୋଇଲା ତୁମ୍ଭଙ୍କୁ ମେଲାଇ ପାଟି ମାଟି ।
ତୁମ୍ଭ ଭରସା ଯେ ହୋଇ ଆଜ ରାଣ୍ଡ
ହେଳିବେ କରତଳ ସ୍ୱର୍ଗ ଚୂଡ଼ଖଣ୍ଡ ।

ଏହା ଦେଖି ମୋହର ଏ ଆଖି ଦଉଛି
ଯା ରହିବ ନ ଯାଉଅଛି କଳ୍ପା ଫୁଟି ।
ଜାଣିଥିଲେ ପୂର୍ବରୁଁ ଏରୂପେ ବହମୂଢ଼ା
କହିଥାନ୍ତି ପାର୍ଥଙ୍କୁ ବାକ୍ୟେ ସଠାବଠା ।
ସହସ୍ର ସଂଖ୍ୟା ହାତୀ ପରାକ୍ରମ ବହି
ତୁମ୍ଭ ହାତ ଏବେ ଲୋଟିଲା ପଡ଼ି ମହୀ ।
ମୋହ ମାଥରେ ଲୋଟିଥିଲା ଚଉମଥ
ତୁମ୍ଭେ ମରିଲେ ହେବି ବୋଲିଣ ଅନାଥ ।
ପାଣ୍ଡବେ ବସୁଦେବସୁତେ ଭେଳା କରି
ତରିଲେ ଦୁସ୍ତର ମୋ ସୈନ୍ୟ ସିନ୍ଧୁବାରି
ମୁଁ ଏବେ ଶୋକସିନ୍ଧୁ ମଧ୍ୟେ ଗଲି ବୁଡ଼ି
ଭେଳା ହୋଇ ତୁମ୍ଭେ ତ ଗଲ ମୋତେ ଛାଡ଼ି
ଆଜ ଯେଉଁ କଥାଟି ଅଛି କହିବାକୁ
ଛାଡ଼ିବ ତୁମ୍ଭ ପାଇଁ ଯୁଦ୍ଧେ ମୁଁ ପ୍ରାଣକୁ ।
ଏରୂପେ ଦୁର୍ଯ୍ୟୋଧନ କାନ୍ଦିବାର ଦେଖି
ଦ୍ରୋଣି ଆଦି ରଥୀଏ ହୋଇ ଅତି ଦୁଃଖୀ ।
ବୋଇଲେ ହେ ନୃପନନ୍ଦନ ଦୁର୍ଯ୍ୟୋଧନ
ଘେନ ଆମ୍ଭମାନଙ୍କ କହିବା ବଚନ ।
ଜାଣିବା ଲୋକେ ମଲା ଲୋକଙ୍କୁ ଶୋଚନା
ନ କରନ୍ତି ଏହାଟି ପଣ୍ଡିତଙ୍କ ମନା ।
ଭରତବଂଶେ ତୁମ୍ଭେ ହେଇଛ ତ ଜାତ
ପୁଣି ତ ବୋଲାଉଛ ମହାବଳବନ୍ତ ।
କର୍ଣ୍ଣ ମଲା ବୋଲି ଦେହକୁ କ୍ଷୀଣ କରି
ଦେଲେ ଶୋକେ ହସିବେ ଶତ୍ରୁ ଏ ତୁମ୍ଭରି
ଆମ୍ଭମାନଙ୍କର ଏ ପରାକ୍ରମ ଜାଣ
ବ୍ୟର୍ଥ ହୋଇଗଲା ହେ ସେକାଳେ ରାଜନ ।
ଯେ ହେବାର ସେ ହେଲା, ଏବେ ଆସ ଯିବା
କାଲି ଆସି ପାଣ୍ଡବମାନଙ୍କୁ ମାରିବା ।
ଏରୂପେ କହି ଦୁର୍ଯ୍ୟୋଧନ ତୁମ୍ଭରଥୀ—
ମାନେ ମାନସରେ ହୋଇଣ ମହାବ୍ୟଥୀ ।
ଦୁର୍ଯ୍ୟୋଧନ ରାଜାଙ୍କୁ ନେଲାଇ ଆଗରେ
ବାହାରି ଗଲେ ବାସ ମାନଙ୍କୁ ବେଗରେ ।
ରବି ଦେଖିଣ ନିଜପୁତ୍ର କର୍ଣ୍ଣ ହତ
ଅସ୍ତଗିରି ପୋଖରୀକ ହେଲେ କି ଗତ ।
ସେକାଳେ ରବିକର ଆରକ୍ତ ଦିଶିଲା
ଛୁଇଁବାରେ କର୍ଣ୍ଣରକ୍ତ କି ଲାଗିଥିଲା ।

ଏହିରୂପେ ମନରେ କରି ଋଷିକୁଳ
ପୁଣି ପ୍ରଶଂସିଲେ ଅରଜୁନଙ୍କ ବଳ ।
କର୍ଣ୍ଣ ପ୍ରେତଲୋକ ଯିବାର ଦେଖି ନଦେବେ
ଇନ୍ଦ୍ର ସଙ୍ଗେ ଗଲେ ସ୍ୱର୍ଗକୁ ମହାଭାବେ ।
ଋଷିମାନେ ମଣି ତାଙ୍କର ଯିବା ଜାଣି
ଯେ ଯାହା ଆଶ୍ରମକୁ ଗଲେ ସେହିକ୍ଷଣି ।
ବାସୁକୀ ମନେ କଲେ କର୍ଣ୍ଣାର୍ଜ୍ଜୁନ କାଣ୍ଡ
ମହୀ ଗଳ କଟିଥିବ ମୋ ପୁରଖଣ୍ଡ ।
ଏହା ଭାବି ସେ ନାଗ ବେଗ ହୋଇ ଗଲେ
ଭାଙ୍ଗି ନାହିଁ ଘର ଦେଖିଣ ତୋଷହେଲେ ।
ମଲେ ହେଲେ କର୍ଣ୍ଣଙ୍କୁ ବିଲୁଆ ଶାଗୁଣା
ନ ଖାଇଲେ ଯେଣୁ ସୁକୃତ ତାଙ୍କ ଉଣା ।
ଅରଜୁନ ତ ନରସ୍ୱରୂପୀ ଅଟନ୍ତି
ସେ ଯୁଦ୍ଧେ ମାରିବାରୁ ପାଇଲେ ମୁକତି ।
ଏ ସକାଶୁଁ ଦେହୁଁ ଛାଡ଼ିଗଲା ହେଲେ ପ୍ରାଣ
ହୋଇଥିଲା କର୍ଣ୍ଣଙ୍କ ପ୍ରଭାବ ଦ୍ୱିଗୁଣ ।
କର୍ଣ୍ଣ ତ ସୂର୍ଯ୍ୟଙ୍କ ଅଟନ୍ତି ପ୍ରିୟସୁତ
ମରିବା ଦେଖି ତହୁଁ ହେଲେ ସେ ଦୁଃଖିତ
ଏ ହେତୁ ଆହେ ନୃପ ନଦୀଏ ନ ବହି
ରହିଗଲେ ସେକାଳେ ସ୍ତମ୍ଭୀଭୂତ ହୋଇ ।
ଗିରି ତୁଲେ ମହୀ ହୋଇଲା ଥରହର
ଜାଣିପାରି ସେ ଦୁଃଖ ସୂର୍ଯ୍ୟ ଦେବଙ୍କର ।
କୋଟିକୋଟି ଉଲ୍କା ଆକାଶେହୋଇଗୋଟି
ବାହାରିଲେ ହସ୍ତିନା ଭୂମିରେ ଚହଟି ।
ଶତସଂଖ୍ୟା ହୋଇ ପଡ଼ିଲା ବଜ୍ରପାତ
ମରିବାରୁ ତୁମ୍ଭର କର୍ଣ୍ଣ ସୁତାସୁତ ।

—*—

## ଯୁଦ୍ଧ ଶେଷରେ ସେମାନଙ୍କର ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ

ଦେବ ଗନ୍ଧର୍ବରେ ଅର୍ଜ୍ଜୁନ ପୂଜା ପାଇ
କୀର୍ତ୍ତି ଛତ୍ର ମସ୍ତକଦେଶରେ ଟେକାଇ ।
ପ୍ରତାପ ତେଜଟିକ ବଢ଼ାଇଣ ଆପେ
ତୁମ୍ଭ ଯୋଦ୍ଧାକୁଳକୁ ପକାଇଲେ ତପେ ।
ମହତ ଆନନ୍ଦକୁ ହୃଦଦେଶେ ଥୋଇ
ବାହାରିଲେ ବସାକୁ ବାହା ଦୋହଲାଇ ।
ବହାନ୍ତେ ରଦ୍ୟୁସାର କପିଧ୍ୱଜ ରଥ
ଗର୍ଜନେ ପୂରାଇଦେଲେ ସେ ମହୀପଥ ।
କୃଷ୍ଣ ଅର୍ଜ୍ଜୁନ ଦୁହେଁ ଇନ୍ଦ୍ର ବଷ୍ଣୁ ପରି
ନେଲେ ସବୁ ଜନଙ୍କ ମନ ନେତ୍ର ହରି ।
ପାଞ୍ଚଜନ୍ୟ ଦେବଦତ୍ତକୁ ଧରି କରେ
ବଜାଇଲେ ପୁଣି ସେ ଭରିଣ ମୁଖରେ ।
ସେ ଶବଦ ଜଗତ ହୋଇ ବାହାରିଲା
ଅର୍ଜ୍ଜୁନଙ୍କର ଜୟ ଇନ୍ଦ୍ରଙ୍କୁ କହିଲା ।
ତୁମ୍ଭର ଯୋଦ୍ଧାମାନେ ଶୁଣି ସେ ଶବଦ
ପଳାଇଲେ ହୃଦକୁ ନେଇ ଭୟପ୍ରଦ ।
ଯୁଧିଷ୍ଠିର ରାଜା କର୍ଣ୍ଣରେ ତାହା ଶୁଣି
କର୍ଣ୍ଣ ମଲା ବୋଲି ଭାବିଲେ ପୁଣି ପୁଣି ।
କର୍ଣ୍ଣ ଶର କୁହୁଡ଼ି ବିଦାରି ଅର୍ଜ୍ଜୁନ
ସୂର୍ଯ୍ୟ ପରାଏ ମଣ୍ଡି ଯୁଦ୍ଧ ଭୂ ଗଗନ ।
ଯୁଧିଷ୍ଠିର ରାଜାଙ୍କ ମନ କମଳକୁ
ଉଲ୍ଲାସିଲେ ବଢ଼ାଇ ପ୍ରତାପ କରକୁ ।
ତୁମ୍ଭ ପୁଅ ଯୁଝିବା ମନ କରିଥିଲେ
ତେବେହେଁ ତୁମ୍ଭ ଯୋଦ୍ଧାଏ ନ ରହିଲେ
ସେ ଯାହାର ବସାକୁ ଆସିଲେ ପଳାଇ
ଦୁର୍ଯ୍ୟୋଧନ ବାଣୀକି କାନେ ନ ଶୁଣାଇ ।
ଏହା ଦେଖି ଶଲ୍ୟଙ୍କ ତୁଲେ ତୁମ୍ଭ ସୁତ
ରଥ ଚଢ଼ି ବସାକୁ ହେଲେ ଉପଗତ ।
ସହଦେ, ଗାନ୍ଧାରଙ୍କୁ ଶକୁନ ଯେ ଘେନ
ଶିବିରକୁ ଆସିଲେ ହୋଇକରି ତୁମି ।
କୃପ ନାନାସୂତ ଘେନିଣ ସଙ୍ଗତରେ
ମୁଣ୍ଡ ଧରି ପଶିଲେ ବସାର ଭିତରେ ।
ଅଶ୍ୱତ୍ଥାମା ନିଃଶ୍ୱାସ ଗୋଟାଏ ପକାଇ
ଯାଇଁ ବସା ଘରରେ ପଡ଼ିଲେ ରାତ୍ରେ ଶୋଇ
ସୁଶର୍ମା ସଂଶପ୍ତକବଳ ଘେନ ତୁଲେ
ବସାକୁ ଯାଇ କାଲି ମାରିବା ବୋଇଲେ ।
ଏ ବାହାରେ ତୁମ୍ଭଲୋକେ ଯେ ଯାଇଁଥିଲେ
ବସାକୁ ଯାଇ ଦୁଃଖ ଜଳରେ ମଜ୍ଜିଲେ ।
ଅରଜୁନ କୃଷ୍ଣଙ୍କୁ କରି ପରଶଂସା
ଛାଡ଼ି ଦେଲେ କୁରୁଏ ମନୁଁ ଜୟ ଆଶା ।
ଜୀବନ ଧନ ପୁତ୍ର ଭରସାରେ ମତି
ନ ଦେଇ ବୋଇଲେ ବସିବା ଯମକଣ୍ଠ ।

ବାକି ଯେଉଁ ଯୋଦ୍ଧାଏ ଘରକୁ ପଳାଇ
ଯାଇଥିଲେ ଆଣିଲେ ତାହାଙ୍କୁ ଡକାଇ ।
ତୁମ୍ଭ ସୁତ ଯେ ଦୁର୍ଯ୍ୟୋଧନ ନରଗଣ
କହିଲେ ବୋଧି ତାଙ୍କୁ ଦେଖାଇ ପୁରାଣ ।
ତୁମ୍ଭ ପୁଅ ବୋଲେ ସେ ମରିବା କଥାଟି
ମୂଳ କରି ଧଇଲେ ନ ମେଲଣ ପାଟି ।
କର୍ଣ୍ଣର ମୃତ୍ୟୁ ଦେଖି ତୁମ୍ଭର ସଇନ
ଯୁଦ୍ଧଦାଣ୍ଡରୁ ହୋଇଗଲେ ଛିନ୍ନ ଭିନ୍ନ ।
ତା ଦେଖି ଶ୍ରୀକୃଷ୍ଣ ପାର୍ଥଙ୍କୁ କୁଣ୍ଢାଇ
ବୋଇଲେ ଆଜ ମନ ତୋଷ ହେଲା ଭାଇ ।
ଇନ୍ଦ୍ର ବୃତ୍ରାସୁରକୁ ମାରିବା ପରାଏ
ଆଜ ତୁମ୍ଭେ ମାଇଲ କର୍ଣ୍ଣେ ବାଣଘାଏ ।
ଆଜ ତୁମ୍ଭର ଏହି କୀର୍ତ୍ତି ଖଣ୍ଡି ଖଣ୍ଡି
ଜଗତେ ହୋଇ ଦେବ ଚନ୍ଦ୍ର ଶୋଭା ଦଣ୍ଡି ।
ଯୁଧିଷ୍ଠିର ରାଜା ତ କର୍ଣ୍ଣ ପାଇଁ ଚିନ୍ତା
କରୁଥିଲେ ହେବ ଆଜ ଯେ ଧୈର୍ଯ୍ୟବନ୍ତା ।
ତୁମ କର୍ଣ୍ଣ ଯୁଦ୍ଧ ହୋଇବା କାଳେ ରାଏ ।
ଅସିଥିଲେ ପୁଣି ହଜିଲେ କାଣ୍ଡଘାଏ ।
ଏବେ ଅସ ଆସ ହେ ତୁମ୍ଭେ ଆମ୍ଭେ ଯିବା
କର୍ଣ୍ଣଙ୍କୁ ମାରିବାର ରାଜାଙ୍କୁ କହିବା ।
ଅରଜୁନ ବୋଇଲେ ରୁକ୍ମଣୀ ବହାରି
କହିଲ ଯା ଇଚ୍ଛା ହୋଇଛି ସେ ମୋହର ।
ଧୃଷ୍ଟଦ୍ୟୁମ୍ନ ଭୀମାଦି ରଥିଙ୍କି ଅନାଇଁ
କହିଲେ ଏ ବଚନ ଯଦୁକୁଳ ସାଇଁ ।
ତୁମ୍ଭେ ଜଗିଥାଅ ଟି ଆମ୍ଭର ସଇନ
ପାଇଲେ ଛିଦ୍ର ମାରି ଯିବ ସୁଯୋଧନ ।
ଅମ୍ଭେ ଦୁହେଁ ଯାଉଛୁଁ ଯୁଧିଷ୍ଠିର ପାଶେ
କର୍ଣ୍ଣ ମାରିବା କଥା କହିବୁ ହରଷେ ।
ଭୀମ ଏହା ଶୁଣିଣ ବୋଇଲେ ଗୋବିନ୍ଦ
କହି କରି ତ ଯୁଧିଷ୍ଠିରଙ୍କ ଆନନ୍ଦ ।
ଆମ୍ଭେମାନେ ଟି ଅଛୁଁ ସୈନ୍ୟ ଜଗିକରି
ଆସିଲେ ସୁଯୋଧନ ଦେବୁଁ ତାଙ୍କୁ ମାରି ।
ଶ୍ରୀକୃଷ୍ଣ ଅରଜୁନ ଯୁଧିଷ୍ଠିର ପାଶେ
ପରବେଶ ହୋଇଲେ ଅତ୍ୟନ୍ତ ହରଷେ ।
ଦେଖିଲେ ଶୋଇଛନ୍ତି ଯୁଧିଷ୍ଠିର ରାଏ
ସୁନା ଖଟୁଳିକରେ ଦୁଃଖେ କଷଣଏ ।

ଯୁଧିଷ୍ଠିର ରାଜାଙ୍କ ପାଦ ଦୁଇ ଧରି
ନମସ୍କାର କଲେ ଅର୍ଜୁନ ନରହରି ।
କୃଷ୍ଣ ଅର୍ଜୁନଙ୍କର ଜାଣି ମନ କଥା
ଉଠିଲେ ଯୁଧିଷ୍ଠିର ଛାଡ଼ି ମନବ୍ୟଥା ।
କୃଷ୍ଣ ଅରଜୁନଙ୍କୁ ପୁନଃପୁନଃ କରି
ଆଲିଙ୍ଗନ କଲେ ପାଣ୍ଡବ ଦଣ୍ଡଧାରୀ ।
କୃଷ୍ଣ ଯୁଧିଷ୍ଠିରଙ୍କୁ ବୋଇଲେ ରାଜନ
ଘେନିଲୁ ଆଜ ରଣେ କର୍ଣ୍ଣର ଜୀବନ ।
ଭାଇଙ୍କ ତୁଲେ ତୁମ୍ଭେ ଯୁଦ୍ଧରୁ ମୁକତ
ହୋଇଲ ତ କର ପାଉଛ ଯାହା ଚିତ୍ତ ।
କର୍ଣ୍ଣ ରକ୍ତ ଆଜ ଖାଇଲା ସୁଖେ ମହୀ
ଦେଖ ଆଜ ଯାଇ ହେ ରାଏ ତୋଷ ବହି ।
ଯୁଧିଷ୍ଠିର ବୋଇଲେ ତୁମ୍ଭେ ସାହା ହୋଇ
ଅଛ ତ କର୍ଣ୍ଣ ନ ମାରନ୍ତା କାହିଁପାଇଁ ।
ତୁମ୍ଭ ପ୍ରଭାବରୁ ମୋ ଭାଇ ଅରଜୁନ
ଘେନୁଅଛି ବୀରମାନଙ୍କର ଜୀବନ ।
ନାରଦ କହିଛନ୍ତି ଶୁଣିଅଛୁଁ ଆମ୍ଭେ
ନରନାରାୟଣ ଅଟ ଯେ ଦୁହେଁ ତୁମ୍ଭେ ।
ଆପଣ ଥିବାରେ ପରାଜୟ ପଦ
କର୍ଣ୍ଣ ଶୁଣିବାର ଏ ଅତି କଷ୍ଟପ୍ରଦ ।
ଏହା କହି ରାଜନ ରଥରେ ବସିଲେ
କୁରୁପେ ମଲା କର୍ଣ୍ଣ ଦେଖିବା ଭାଷିଲେ ।
ଶ୍ରୀକୃଷ୍ଣ ଅରଜୁନ ଘେନିଣ ସଇନ
କଲେ ଯୁଧିଷ୍ଠିରଙ୍କ ପଛରେ ଗମନ ।
ପୁଣ ତୁଲେ କର୍ଣ୍ଣ ଗାଣ୍ଡୀବ କାଣ୍ଡ ମଣ୍ଡି
ଗଣ୍ଡିରେ ହୋଇଛନ୍ତି ହୋଇ ଦୁଇଖଣ୍ଡି ।
ଦେଖି ଯୁଧିଷ୍ଠିର ଶ୍ରୀକୃଷ୍ଣ ଅର୍ଜୁନଙ୍କୁ
ବହୁତ ପ୍ରଶଂସିଲେ ଲଭିଣ ତୋଷକୁ ।
ବୋଇଲେ ହେ ହରି ତୁମ୍ଭଙ୍କୁ ନାଥ କରି
ପାଇ ଏବେ ହେଲି ହସ୍ତିନା ଦଣ୍ଡଧାରୀ ।
ସୁଯୋଧନ ରାଜା କର୍ଣ୍ଣଙ୍କ ମରିବାର
ଦେଖିଣ ରାଜ୍ୟଲୋଭେ କରିଦେବେ ଦୂର ।
ତୁମ୍ଭର ପ୍ରସାଦରୁ ଆହେ ହରସାଇଁ
କୃତକାର୍ଯ୍ୟ ହୋଇଲୁଁ ଆମ୍ଭେ ପାଞ୍ଚ ଭାଇ ।
ଆହେ ଧୃତରାଷ୍ଟ୍ର କର୍ଣ୍ଣର ଦେଖି ଶବ
ଯୁଧିଷ୍ଠିର ଭାବିଲେ ରହିଲା ମୋ ଜୀବ ।

ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ନକୁଳ
ସହଦେବ ଭୀମ ଯେ ସୃଞ୍ଜୟ ପାଞ୍ଚାଳ ।
ଯୁଧିଷ୍ଠିର ରାଜାଙ୍କୁ କରି ମହାପୂଜା
ଆନନ୍ଦରେ ସେ ସର୍ବେ ମଜ୍ଜାଇଲେ ମଜ୍ଜା ।
କୃଷ୍ଣ ଅର୍ଜୁନଙ୍କୁ ବହୁତ ସ୍ତୁତି କରି
ବାହାରିଲେ ସର୍ବେ ବସାକୁ ମୋଦ ଧରି ।
ତୁମ୍ଭ ଦୁର୍ମନ୍ତ୍ରଣାରୁ ଏରୂପରେ କ୍ଷୟ
ବଂଶର ହୋଇଲା ଆହେ ଅମ୍ବିକା ତନୟ ।
ଯାଇଅଛ ତ, ବସି ଶୁଣୁଥାଅ ତୁମ୍ଭେ
ଯାହା ପଚାରିବ ତା କହୁଅଛୁ ଆମ୍ଭେ ।
ଧୃତରାଷ୍ଟ୍ର ରାଜା ଯେ କର୍ଣ୍ଣ ବଧ ଶୁଣି
ହା କର୍ଣ୍ଣ ବୋଲିକରି ପଡ଼ିଲେ ଧରଣୀ ।
ଗାନ୍ଧାରୀ ମଧ କର୍ଣ୍ଣ ବୋଲିକରି ଡାକ
ତଳେ ପଡ଼ି କର୍ଣ୍ଣ ହୋଇଣ ଚାଟକା ।
ବିଦୁର ସଞ୍ଜୟ ତା ଦେଖି ଦୁଃଖୀ ହୋଇ
ଧୃତରାଷ୍ଟ୍ରରାଜାଙ୍କୁ ଉଠାଇଲେ ଯାଇ ।
କୁଳସ୍ତ୍ରୀମାନେ ଧରିଣ ଗାନ୍ଧାରୀଙ୍କି
ବୋଇଲେ କାନ୍ଦୁଛ ତ ମରିବା ପାଇଁକି ।
ପୂର୍ବରୁ ତ ଏ କଥା ନ କଲ ବିଚାର
ଏତେବେଳରେ ଶୋଇ ବ୍ୟର୍ଥଟି ତୁମ୍ଭର ।
ବିଦୁର ସଞ୍ଜୟ ବଚନେ ଧୃତରାଷ୍ଟ୍ର
ମନେ କଲେ ମୁଁ ଏକା କଲି କୁଳନଷ୍ଟ ।

—※—

## ଉପସଂହାର

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଏହିରୂପେ ପାଣ୍ଡବେ ପାଇଲେ ବିଜୟ ।
କର୍ଣ୍ଣାର୍ଜୁନଙ୍କ ଯୁଦ୍ଧଯାଗ ସେ ଶୁଣଇ
ଯାଗ କଲା ଫଳ ସେ ଅଳକ୍ଷ୍ୟେ ଲଭଇ ।
ଯାଗ ସ୍ୱରୂପ ତ ଅଟନ୍ତି ଲକ୍ଷ୍ମୀସାଇଁ
ତାଙ୍କୁ ତ ଏ ପୂର୍ବେ କୀର୍ତ୍ତନ କରିଥାଇଁ ।
ଏହି ସକାଶରୁ ଶୁଣଇ ଯେତୁ ଏହା
ତାହାଙ୍କୁ ଉଦ୍ଧାରନ୍ତି ଜାଣ ଚକ୍ରବାହା ।
ବେଦବ୍ୟାସ ଗୋସାଇଁ କହିଛନ୍ତି ତେଷେ
କହିଲି ମୁଁ ଏହା ତୁମ୍ଭଙ୍କୁ କଥାରସେ ।

ଏଠାରେ କର୍ଣ୍ଣପର୍ବ ଦୁର୍ଯ୍ୟୋଧନ ଆଶା
ଭେଳାକୁ ଦେଇ ଭସ୍ମ ସମୁଦ୍ରରେ ବସା ।
ଶେଷ ଅସ୍ତଗିରଙ୍କ ଚନ୍ଦ୍ରମା ପରାଜୟେ
ଆରୋହିଲା ଜାଣ ହେ ଜନ୍ମେଜୟ ରାଜ୍ୟେ ।
ଏକାଳକୁ ଶକାବ୍ଦ ଛଅ ଶତରଣ
ଗଣକମାନେ କରୁଅଛନ୍ତି ପ୍ରକାଶ ।
ଋଷିକୁଲ୍ୟା କୂଳରେ ଧରାକୋଟ-ମହୀ
ତହିଁରେ ରାମଚନ୍ଦ୍ର ସିଂହ ନରସାଇଁ ।
ହୋଇଣ ଧରମରେ ବଳାଇଲେ ମଜ୍ଜା
ସାଧୁଜନେ ତା ଦେଖି ମୁଖେ କଲେ ପୂଜା ।
ତାହାଙ୍କ ତନୟ ତନୟ ହୋଇ ମୁହିଁ
ଧରାକୋଟ ମଣ୍ଡଳେ ହୋଇ ନରସାଇଁ
ବିଷୟ ମଦ କର୍ଣ୍ଣ ମୁଖେ କରି ପାନ
ହୋଇଲି ମୁହିଁ ଅନୁବରତେ ଅଜ୍ଞାନ ।
ବିଜୁଳି ପରି ଧନ ଅସ୍ଥିର ଜାଣୁଛୁ
ତେବେହେଲେ ତହିଁରେ ଲୋଭେ ପ୍ରବର୍ତ୍ତୁଛୁ ।
କଳସ ପୂର୍ବ ଜ୍ଞାନ ବନ୍ଧୁ ମିତ୍ର ମୁଖ
ମଣି ହରି କଥାରେ ହେଉଛୁ ବିମୁଖ ।
ଅତି ଦୁସ୍ତର ଏ ସଂସାର ଅକୂପାର
ଏହା ପାର ହେବାକୁ ଭେଳା ନାହିଁ ମୋର ।
ମୋହମତରେ ମୁହିଁ ହରି ଭଜନକୁ
ଭେଳା କଲେ ମନ ନ ଆସେ ତା ପାଶକୁ ।
ପଣ୍ଡିତ ଯଣେ ଗର୍ବବୁଦ୍ଧି ସବୁବେଳେ
ସମ୍ପାଦୁଛୁ ମୋହର ହୃଦୟଟି ବଳେ ।
ହେ ନବଘନ କାନ୍ତି ତମାଳ ବରନ
କଳାପି ପିଚ୍ଛ ଚୂଡ଼ା ମଦନ ମୋହନ ।
କାଳନ୍ଦୀ କେଳି କରି ଜଗତ ଜୀବନ
କଂସ କେଶୀ ମଲ୍ଲ ମୁର ଅଘା ଧ୍ୱଂସନ ।
ନନ୍ଦାନନ୍ଦ ବର୍ଦ୍ଧନ ଯଶୋଦାନନ୍ଦନ
ଦୀନଜନ ଶରଣ ଅନାଥ ତାରଣ ।
ରାସ ନଟ କରି ଗୋପିକା ପ୍ରାଣ ଧନ
ସନାତନ ହେ ଯୋଗୀ ହୃଦୟ ସଦନ ।
ହେ ଅନନ୍ତ ଅନନ୍ତ ତଳପ ଶୟନ
ବରେଣ୍ୟ ବାଣାସୁର ଗରବ ଗଞ୍ଜନ ।
କାଳୀୟ ଘାଉଡ଼ିଆ କାଳୀୟ ମର୍ଦ୍ଦନ
ଶ୍ରୀରାଧା ଚନ୍ଦ୍ରମୁଖୀ ହୃଦୟ ମଣ୍ଡନ ।

ଅରୁଣାନୁଜାସନ ହାଟକ ବସନ
ମୁଚୁକୁନ୍ଦ ତାରକ ହେ ମଧୁସୂଦନ ।
ଯବନ ଦେହେ ଡୋଡ଼ା ପ୍ରଭୁ ଜନାର୍ଦ୍ଦନ
ତୁମ୍ଭେ ଏକା ପତିତ ଜନଙ୍କ ପାବନ ।
ମୋ ମତରେ ମୁହିଁ ତୁମ୍ଭଙ୍କୁ କରି ଗୁରୁ
ପାଇବ ଆଦ୍ୟ ପ୍ରାନ୍ତ ଏ ଭାରତ ମେରୁ ।
ମନେ ଯା କରୁଅଛି ମୁଁ ରାତ୍ର ଦିବସ
ଏଥିରୁ ବଡ଼ ଦୋଷ ନାହିଁ ହୃଷୀକେଶ ।

ଯେବେ ମେ ତେ ତୁମ୍ଭେ କରୁଣା କଟାକ୍ଷରେ
ରହିଁବ ଲେଖା ହୋଇ ମୁଁ ପ୍ରାଣିମୁଖରେ ।
ଶ୍ରୀ ମହାଭାରତକୁ ଆଦ୍ୟ ପ୍ରାନ୍ତ ଗୀତ
କରିବ ପୁଣି ତୋଷ ହୋଇବେ ପଣ୍ଡିତ ।
ଆନ ଉପାୟରେ ଟି ନୁହଇ ଏ କଥା
କଲେ ଉପହାସରୁ ଉପୁଜିବ ବ୍ୟଥା ।
ଏ ହେନ ଜଣାଉଛି ନିତ୍ୟ ମୁଁ ଶଉସା
ହୁଅ କୃଷ୍ଣସିଂହ ଅରକ୍ଷ ରକ୍ଷାକାଂକ୍ଷୀ ।

ସ ମା ପ୍ତ



ମୁଦ୍ରଣ ଧର୍ମ୍ମବିଦ୍ୟା ପ୍ରେସ, ଅଲିଶାବଜାର, କଟକ-୨

ରାଜା କୃଷ୍ଣସିଂହ କୃତ




# ଶଲ୍ୟାଦି ସପ୍ତ ପର୍ବ

ନୂତନ ମୁଦ୍ରଣ
୧୯୯୨

ପ୍ରକାଶକ—ଧର୍ମଗ୍ରନ୍ଥ ଭଣ୍ଡାର

ପ୍ରାପ୍ତିସ୍ଥାନ

ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବଦ୍ୟାଧର ସାହୁ

ଅଲିଶା ବଜାର
କଟକ-୨
ଫୋନ ନମ୍ବର—୨୪୭୯୬

## ରାଜା କୃଷ୍ଣସିଂହ କୃତ ଶଲ୍ୟାଦ ଚତୁଷ୍ଟ ପର୍ବ

# ସୂଚୀ

### ଶଲ୍ୟ ଓ ଗଦାପର୍ବ



### ସୌପ୍ତିକ ଓ ଐଷିକ ପର୍ବ



### ସ୍ତ୍ରୀପର୍ବ



ସୂଚୀପତ୍ର ସମାପ୍ତ

—):o:(—

৺ ରାଜା କୃଷ୍ଣସିଂହ କୃତ

# ମ ହା ଭା ର ତ

## ଶଲ୍ୟ ଓ ଗଦାପର୍ବ



ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା ।
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ॥
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ କୈବର୍ତ୍ତକଃ କେଶବଃ ॥

### ମଙ୍ଗଳାଚରଣ

ଜୟ କୃଷ୍ଣ ଯଶୋଦା-ଆନନ୍ଦ-ବର୍ଦ୍ଧନ
ନୀଳ-ଇନ୍ଦୀବର-ବିଦଳନ-ନୟନ ।
ମନ୍ଦର-ମହାଅଦ୍ରି-ମହୀ-ଗୋବର୍ଦ୍ଧନ—
ଧର ବକ-ଅଘ-ଗରବ-ବିନାଶନ ।
ନର୍କ-ସୁର-ପର ଅରୁଣାନୁଜାସନ
ବରୁଣାଳୟବାସୀ କରୁଣା-ନିଧାନ ।
ନରକ ହର ନରମାନଙ୍କ ଜନକ
ସ୍ଥିତି-କ୍ଷୟ-କରତା-ହାଟକ-ବସନ ।
ଦୀନ-ଜନ-ଶରଣ ଶୌରି ଜନାର୍ଦ୍ଦନ
ଭକତ-ଜନ-ଦୁଃଖ-ଭୟ-ମରଦନ ।
ଭଗବାନ ସକଳ ପ୍ରାଣି ହୃଦେ ସ୍ଥାନ
ସନାତନ ଋଷି-ମସ୍ତକ-ବିମଣ୍ଡନ ।
ମଦନମୋହନ ହେ ମୁରଲୀବଦନ
ଶ୍ରୀବୃନ୍ଦାବନ-ବନ-ନିକୁଞ୍ଜ ସଦନ ।
ଗୋପୀକେଳିକାରୀ ରାଧିକା ପ୍ରାଣଧନ
ପରାଶର ତନୟ ବଚନ ବନ୍ଦନ ।
ଉତକଟ-ସଙ୍କଟ ମତଙ୍ଗଜ ହର
କମଳ-ଦୃଗ୍‌ଗୋପତା କମଳ ବିହାରୀ ।
ଜବନ-ଘୋଡ଼ା ଷଣ୍ଢ-ମୋଡ଼ା ଶଙ୍ଖ-ଅର
ଶ୍ରୀବତ୍ସବୁହା ଗୀତା ଶ୍ଳୋକ-ଲୁହା ହର ।
ଅରଜୁନ-ରଥେ ସାରଥି-କର୍ମକାରୀ
ଅର୍ଜ୍ଜୁନ-ଯୁଦ୍ଧ-ବୁଦ୍ଧି ଦାତା ଦଇତ୍ୟାରି ।
ମହାମହିମା ହେ ମହତ-ସୁଖକାରୀ
ପୁଣ୍ୟ ପୁରନନ୍ଦ ବ୍ରହ୍ମସ୍ୱରୂପଧାରୀ ।
ସତ୍ୟାଦି ଚାରିଯୁଗ-ଚାରି ଅବତାରୀ
ଶ୍ୱେତ-ରକ୍ତ ପୀତ-ଅସିତ-କାନ୍ତିଧାରୀ ।
ଗଜାର୍ତ୍ତି-ନାଶନ ରାବଣ-ଶିରହାରୀ
ସୀତାବିନୋଦିଆ ଯମୁନା-ତଟ-ଚାରୀ ।
ତ୍ରିଲୋକ-ଲୋକ-ଶୁଭ-ସମ୍ପତ୍ତି-ବିସ୍ତାରୀ
ଶିବ-ପିନାକ-ଭଙ୍ଗା ଅହଲ୍ୟା ନିସ୍ତାରୀ ।
ହର-ବ୍ରହ୍ମା-ଇନ୍ଦ୍ରାଦି ଦେବଙ୍କ ପ୍ରତାରୀ
ପ୍ରତାପ-ପ୍ରଭାକର-ଉଦୟ-ଶିଖରୀ ।
ସୁର-ଶିର-ମୁକୁଟ ଲୁଟା ଯେଉଁ ପଦ
ସେ ପଦ ହୃଦେ ମୋ ରଖାଅ ବହି ମୋଦ ।
ମୁଁ ତ ମହା ପାତକୀ ଅଟେ ପ୍ରତିଦିନେ
କି ରୂପେ ତୁମ୍ଭ ନାମ ଧରିବି ବଦନେ ।
କାମିନୀ-ରତି ରାଜ-ବିଭବେ କରି ହିତ
ଅହର୍ନିଶି ବସି ବଳାଏ ଚହ୍ନିଁ ଚିତ୍ତ ।
ଶ୍ରୀମହାଭାରତକୁ ଗୀତ କରିବାକୁ
ଯୋଗ୍ୟ ହେବି କି ରୂପେ ନ ଆସେ ମନକୁ ।

ଆହେ ଘନ-ଶ୍ୟାମଳ ବରନ ଗୋବିନ୍ଦ
ଛଡ଼ାଇଦିଅ ମୋର ହୃଦୁଁ ମୋହ-ମଦ ।
ଆଦି, ସଭା, ବନ, ବିରାଟ, ଉଦ୍‌ଯୋଗ
ଭୀଷ୍ମ, କର୍ଣ୍ଣପର୍ବକୁ ବର୍ଣ୍ଣିଣ ସରାଗ ।
ଗୀତ କରି ସାରି, ଶଲ୍ୟାଦି ପର୍ବଚୟ
ଗୀତ କରିବାକୁ ବଳୁଛି ମୋ ହୃଦୟ ।
ଏଥିକି ତୁମ୍ଭ ପାଦେ କହୁଛି ଦଇନ
କରି କୃପା ଥରେ ସେବାକୁ ମୋର ଘେନ ।

—o—

## ନିହତ ବୀରଙ୍କର ଯୁଦ୍ଧ-ବର୍ଣ୍ଣନା

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କର୍ଣ୍ଣ ତ ହେଲେ ପାର୍ଥ ହାତରେ ନିଧନ ।
କୁରୁମାନେ ଯୁଦ୍ଧରୁ ଅଳ୍ପ ତ ବଞ୍ଚିଲେ
କହ ଏଥୁ ଅନ୍ତେ ସେ କେଉଁ କଥା କଲେ ।
କୁରୁସୈନ୍ୟ-ମେଘ ପାଣ୍ଡବ-ଶର-ବାତ—
ଘାତ ପାଇଣ ପଳାଇଲେ ହୋଇ ସ୍ତବ୍ଧ ।
ଦୁର୍ଯ୍ୟୋଧନରାଜା ତ ସାକ୍ଷାତେ ଦେଖିଲେ
ତହିଁର ଧୈର୍ଯ୍ୟ ରଖି କି କଥା ଯୋଜିଲେ ।
ଏହି କଥା ଶୁଣିବା ପାଇଁ ମୋର ମନ
ହେଉଛି, କହ ଆହେ ବଇଶମ୍ପାୟନ ।
ବଇଶମ୍ପାୟନ ବୋଇଲେ ନରପତି
ମରନ୍ତେ ଯୁଦ୍ଧଭାଣ୍ଡେ କର୍ଣ୍ଣ ସେନାପତି ।
ଦୁର୍ଯ୍ୟୋଧନ ଶୋକ-ସମୁଦ୍ର ମଧ୍ୟେ ବୁଡ଼ି
ହେଲେ ହୃଦ-ତଟରୁ ଆଶା-ଭେଳା ଛୁଡ଼ି ।
ହା କର୍ଣ୍ଣ ମଲୁ ବୋଲି କରି ଉଚ୍ଚେ ଡକା
ଧୃତରାଷ୍ଟ୍ର-ତନୟ ହୋଇଣ ତାଟକା ।
ଯେ ଯାହା ବସାଟିମାନଙ୍କୁ ଯାଇକରି
ପଡ଼ିଲେ ଶୋଇ ନୀର ନୟନରେ ଧରି ।
ପୁଣି ରାତ୍ରଶେଷରେ ଉଠି କୁରୁମାନେ
କର୍ଣ୍ଣ ମଲ କଥାକୁ ରଖି ପୃଷ୍ଠସ୍ଥାନେ ।
ଦଇବ ଯା କରୁଛି, ତା ହେଉଛି ଭାବି
ଯୁଝିବାକୁ ସମସ୍ତେ ହେଲେ ହୃଦେ ଗର୍ବୀ ।
ଶଲ୍ୟଙ୍କୁ ସେନାପତି କରି ଦୁର୍ଯୋଧନ
ବାହାରିଲେ ସମର ଭାଣ୍ଡକୁ ବହନ ।
ବାକି ଯେଉଁ ନୃପତିମାନେ ଜୀଇଥିଲେ
ଦୁର୍ଯ୍ୟୋଧନ ବଚନ କାନରେ ଭୁଲିଲେ ।

ପାଣ୍ଡବଙ୍କ ସଙ୍ଗତେ କରିବାକୁ ଯୁଦ୍ଧ
ନିଶ ମୋଡ଼ି କଥା କହିଲେ କରି କ୍ରୋଧ ।
ଶଲ୍ୟ ତ ସେନାପତି ହୋଇ ଆଗେ ଥିଲେ
ଯୁଧିଷ୍ଠିର କାଣ୍ଡେ ସେ ଯମକୁ ଦେଖିଲେ ।
ଶଲ୍ୟ ମଲ୍ଲ ବେଳକୁ ଦିପହର ବେଳ
ହୋଇଥିଲା ଜାଣ ହେ ପରୀକ୍ଷିତ ବାଳ ।
ତା ଦେଖି ଦୁର୍ଯ୍ୟୋଧନ ପଳାଇ ହ୍ରଦରେ
ପଶିଲେ ଯାଇକରି ଅତି ବିଷାଦରେ ।
ହେଳ ତିନିପ୍ରହର ସରିକି ଜାଣିଲେ
ପାଣ୍ଡବେ ଦୁର୍ଯ୍ୟୋଧନ ରାଜାଙ୍କୁ ବେଢ଼ିଲେ ।
ଭୀମ ସଙ୍ଗେ ତାଙ୍କୁ କରାଇ ଗଦାଯୁଦ୍ଧ
ଭଙ୍ଗାଇଲେ ଜଙ୍ଘ ଦୁଇକି ବହି କ୍ରୋଧ ।
ଦୁର୍ଯ୍ୟୋଧନ ମରନ୍ତେ ଅଶ୍ୱତ୍ଥାମା କୃପ
କୃତବର୍ମା ମନରେ ବହି ଅତି ତାପ ।
ରାତ୍ରରେ ପାଣ୍ଡବଙ୍କ ଶିବିରେ ପଶିଲେ
ପାଞ୍ଚାଳ ସୃଞ୍ଜୟଙ୍କ ଜୀବନ ହରିଲେ ।
ସେହି ରାତ୍ର ଶେଷେ ସଞ୍ଜୟ ମନ୍ତ୍ରିବର
ଆସି ଧୃତରାଷ୍ଟ୍ରଙ୍କୁ କରି ନମସ୍କାର ।
କହିଲେ ଡକା ପାଡ଼ି ଆହେ ନରସାଇଁ
କାଳକୁ ବଶ ତ ମନୁଷ୍ୟ ଯାଇ ନାହିଁ ।
ଇନ୍ଦ୍ର ପରି ବିକ୍ରମ ତୁମ୍ଭ ର୍‌କୁଳ
ଯୁଦ୍ଧ କରିଣ ହେଲେ ସମସ୍ତେ ନିର୍ମୂଳ ।
ସଞ୍ଜୟଙ୍କ ମୁଖରୁ ଏ ବଚନ ଶୁଣି
କହିଲେ କମ୍ପିଣ ହସ୍ତିନା ଲୋକଶ୍ରେଣୀ ।
ଏ ବାହାରେ ସ୍ତ୍ରୀ ପୁରୁଷ ଯେତେ ଥିଲେ
ଆହା ଆହା ବୋଲି ସେ ଧାଇଁଣ ଆସିଲେ ।
ଧୃତରାଷ୍ଟ୍ର ରାଜାଙ୍କର ଯେତେ ବଧୂକୁଳ
ଥିଲେ ସେ ହୃଦୟରେ ହୋଇଣ ଆକୁଳ ।
ଧୃତରାଷ୍ଟ୍ର ରାଜାଙ୍କ ଚଉପଟେ ରହି
ହା କର୍ଣ୍ଣ ମଲୁ ବୋଲି ଉଠିଲେ ବୋବାଇ ।
ସେହି ସମୟରେ ସଞ୍ଜୟ ମନ୍ତ୍ରିବର
ଜଣା ମଣା କରିଲେ ଯୋଡ଼ି ବେନି କର ।
ମଦ୍ର ଅଧିପତି ଯେ ଶଲ୍ୟ ମହୀପତି
ଯୁଝି ତୁଲେ ତୁମ୍ଭର ଶଳା ଦୁଷ୍ଟମତି ।
କାମ୍ବୋଜ ପାର୍ବତୀୟ ଯବନଙ୍କ ପ୍ରାଚ୍ୟ
ମ୍ଲେଚ୍ଛ ଦାକ୍ଷିଣାତ୍ୟ ଉଦୀଚ୍ୟ ଯେ ପ୍ରାଚୀଚ୍ୟ ।

ଏମାନଙ୍କୁ ଯୁଦ୍ଧରେ କାଲି ଦୁର୍ଯ୍ୟୋଧନ
କରାଇଲେ ପାଣ୍ଡବମାନଙ୍କେ ନିଧନ ।
ସେହି ମଧ୍ୟ ନିଜର ଜାନୁକୁ ଭଙ୍ଗାଇ
ଶୋଇଛନ୍ତି ମହୀରେ ଆସନ୍ନ ନରସାଇଁ ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ପାଞ୍ଚାଳ ଚେଦିକୁଳ
ପାଣ୍ଡବଙ୍କର ସୈନ୍ୟ ମଲେ କରି ଗୋଳ ।
ତୁମ୍ଭର ପୁଅପାକ ଦ୍ରୌପଦେୟ ଭୁଲେ
ଏକାଦଶ ଦିବସ ବଳେ ନାଶ ଗଲେ ।
କର୍ଣ୍ଣଙ୍କର ପୁଅ ସେ ବୃଷସେନ ବଳୀ
ଶୋଇଲେ ସେ ପାଇ ସମର-ମହୀ-ଆଳୀ ।
ପାଣ୍ଡବେ ପାଞ୍ଚଭାଇ ସାତ୍ୟକ ବାସୁଦେବ
ଜୀଇଛନ୍ତି ଜଣ ହେ ହସ୍ତିନା ନୃଦେବ ।
କୃପ କୃତବରମା ଦ୍ରୋଣଙ୍କର ବେଟା
ରହିଲେ ଯୁଦ୍ଧେ ଜୀଇ ନୋହି ମୁଣ୍ଡକଟା ।
ଦୁର୍ଯ୍ୟୋଧନ ଅପ୍ରାଧ ସକାଶରୁ ମହୀ
ପୁରୁଷ ଛାଡ଼ି ସ୍ତ୍ରୀ ବହିଲା ନରସାଇଁ ।
ଏରୂପେ ଧୃତରାଷ୍ଟ୍ର ସଞ୍ଜୟ ବଚନ
ଶୁଣି ଲୋତକ ପୂର୍ଣ୍ଣ କରିଣ ନୟନ ।
ମହାବୃକ୍ଷ ବିବେକ ହୃଦୁ ଛାଡ଼ିଦେଇ
ଅରକ୍ଷିତ ପରି ପଡ଼ିଲେ ତଳେ ଶୋଇ ।
ବିଦୁର ଧୃତରାଷ୍ଟ୍ର ଦୁଃଖେ ହୋଇ ଦୁଃଖୀ
ତଳେ ପଡ଼ି ଅଶ୍ରୁରେ ପୂର୍ଣ୍ଣ କରି ଆଖି ।
ଗାନ୍ଧାରୀ ଆଦି କୁରୁସ୍ତିରୀଏ ସେ ଥିଲେ
ବେକକୁ ଧରାଧରି ହୋଇଣ କାନ୍ଦିଲେ ।
କଷ୍ଟକଷ୍ଟେ ଚେତା ଆପଣା ଅଙ୍ଗେ ବହି
ଉଠି ଧୈର୍ଯ୍ୟ ଧରି ଗାନ୍ଧାରୀ ଦେବୀ ସାଇଁ ।
ବିଦୁରଙ୍କୁ ବୋଇଲେ ପୁତ୍ରରେ ଅନାଥ
ହୋଇଛି ମୁଁ, ହୁଅ ମୋହର ତୁମ୍ଭେ ନାଥ ।
ଶୁଣ ଆହେ ଜନମେଜୟ ନରମଣି
ଏରୂପେ ବୋଲି ପୁଣି ଲୋଟିଲେ ଧରଣୀ ।
ପାଖରେ ତାହାଙ୍କର ଥିଲେ ବନ୍ଧୁଜନ
ସିଞ୍ଚି ମୁଖେ ପାଣି ବିଞ୍ଚିଲେ ଅନୁକ୍ଷଣ ।
ଏହି ସକାଶୁଁ ଚେତା ପାଇ ନରପତି
ଉଠିଣ ବସିଲେ ମଉନ କରି ମତି ।
ସଞ୍ଜୟ ତା ଦେଖି କାନ୍ଦିଲେ ସକସକ
ଧୃତରାଷ୍ଟ୍ର ରାଜାଙ୍କୁ ବୋଲି ଧିକ ଧିକ ।

ଧୃତରାଷ୍ଟ୍ର ରାଜା ପୁଚ୍ଛିଲେ ବିଦୁରଙ୍କୁ
ବୋଇଲେ ଘେନିଯାଅ ତୁମ୍ଭର ବଧୂଙ୍କୁ ।
ମୋହର ତ ମନ ହେଉଅଛି ବିକଳ
ଏ ଥିଲେ ହୋଇବଟି ବହୁତ ଆକୁଳ ।
ବିଦୁର ଏହା ଶୁଣି ବୋଧିଲେ ବଧୂଙ୍କୁ
ବୋଇଲେ ଯାଅ ଏବେ ସେ ଯାହା ଘରକୁ ।
ଧୃତରାଷ୍ଟ୍ର ନୃପଙ୍କ ଦେହେ ଜ୍ଞାନ ନାହିଁ
ତୁମ୍ଭେ ଥିଲେ ସନ୍ତାପେ ପଡ଼ିଯିବେ ସେହି ।
ଏହା ଶୁଣି ସବୁ ସ୍ତିରୀଏ ହୋଇ ଗୋଟି
ବାହାରିଲେ ଆଖିମି ନିଜ କପାଳକଟି ।
ଧୃତରାଷ୍ଟ୍ର ନୟନ ଯୁଗଳ ଭ୍ରମର
ସଞ୍ଜୟମୁଖ କମଳରେ କଲେ ଘର ।
ମଲ କଥା ଶୁଣିବାକୁ ସେ ହୋଇ ଦୁଇ
ପୂର୍ବଁ ମଲ ଭଙ୍ଗୀ ଶୋଭାକୁ ଅଛି ବହି ।
ଏଥିରେ କହିବାକୁ କିବା ଅଛି କଥା
ବସିଲେ ବାଡ଼ି ତା ପୂରିବ ସିନା ପୋଥା ।
ବିଦୁର ତା ମଧ୍ୟରେ କହି ବାଣୀ
ବୋଇଲେ ବିଦୁରଙ୍କୁ ପୁଚ୍ଛିକରି ପୁଣି ।
ଯାହା ଲେଖିଥିଲା ଦଇବ ହେଲା ତାହା
ସାର ମାସ ଅଛୁଟି ବୋଲିବାକୁ ଆହା ।
ଧୃତରାଷ୍ଟ୍ର ରାଜନ ଯାଆନ୍ତେ ସ୍ତିରୀଏ
ପୁତ୍ର ସ୍ନେହେ ପୁଣି କାନ୍ଦିଲେ ଅତିଶୟେ ।
ବୋଇଲେ ପୁତ୍ରଙ୍କର ଶୁଣି ମୁଁ ମରଣ
ବସିଛି ଯାହା ଏହାର କେଉଁ କାରଣ ।
ବଜ୍ରରୁ ନିଷ୍ଠୁରତା ହୃଦୟ ଶିଖିଛି
ନୋହିଲେ କାହାଁ ଫାଟି ନ ଯାଇ ରହିଛି ।
ଜନ୍ମକାଳରୁ ପୁତ୍ରମାନଙ୍କର ଦେହ
ଦେଖି ନାହିଁ ବଡ଼ୁଛି ତେବେ ହେଲେ ସ୍ନେହ
ପୁତ୍ର ବୋଲିବାର ଶବଦୁଟିକ ମୁହିଁ
ହୃଦରେ ଧରି ସୁଖାମକୁ ନ ଡରଇ ।
ଏବେ ସେ କଥା ମୋର ଦୈବ କଲା ଭଙ୍ଗ
ଜାଣୁଛି ପୁଣ୍ୟାମେ ହେବ ମୋ ଦେହ ସଙ୍ଗ ।
ବାଳକ ହୋଇ ଯୁବା ପୁଏ ହୋଇଥିଲେ
ବୃଦ୍ଧ ହୋଇଣ ଯମରାଜାକୁ ଭେଟିଲେ ।
ମୁଁ ବୁଢ଼ା ହୋଇଣ ଯା ଅଛି ଘରେ ରହି
ଏଥିରୁ ବଡ଼ମୂଣ କଥା ଆଉ ନାହିଁ ।

ଆହେ ଦୁର୍ଯ୍ୟୋଧନ ଆସିଣ ମୋ ପାଶକୁ
ନ କହୁ କାହିଁପାଇଁ ହସିଣ ଭାଷକୁ ।
ତୋହରେ ମୁଁ ଅନାଥ ହୋଇଅଛୁ ଏବେ
ମୋ ନାଥ ହୋଇ ମୋତେ ଶାନ୍ତକରଇବେ ।
ସୁହୃଦମାନଙ୍କ ବଢ଼ାଇଥିଲୁ ପ୍ରୀତି
ମୋତେ କପାଇଁ ଦେଉଅଛୁ ତୁ ବିପତ୍ତି ।
ମୋହର ତୋହଠାରେ ଯେଉଁରୂପେ ସ୍ନେହ
ସେ ସ୍ନେହ କମ୍ପା ଏବେ ଛଡ଼ାଉଛୁ କହ ।
ତୋ କହିବା ବାଣୀ ମୋ ହୃଦୟହାରଣୀ
ହୋଇଥିଲା ମରୁଛୁ ଏବେ ତା ନ ଶୁଣି ।
କୁରୁପରେ ପାଣ୍ଡବମାନଙ୍କର ବାଣେ
ତୋ ପର ବଳୀ ମରି ଶୋଇଲେଣି ରଣେ ।
ସକାଳୁ ଉଠି ମୋର ପାଦେ ନମସ୍କାର
ତୋ ବିନା କେ କରିବ ଆରେ ମୋ କୁମର ।
ମୋହର କଣ୍ଠେ ତୋର ବାହୁ ବେନି ଛନ୍ଦ
ବସ ମୋ କୋଳେ ମୁହିଁ ମରୁଅଛୁ କାନ୍ଦ ।
କୃପ ଭୂରିଶ୍ରବା ବାହ୍ଲିକ ସୋମଦତ୍ତ
ଶଲ୍ୟ ଆବନ୍ତ୍ୟ ଜୟଦ୍ରଥ ଭଗଦତ୍ତ ।
ମାଗଧ ବୃହଦ୍ବଳ ଶକୁନି ଅଶ୍ୱତ୍ଥାମା
ଭୀଷ୍ମ ମ୍ଳେଚ୍ଛ ଯବନ ଶଳ କୃତବର୍ମା ।
ଶ୍ରୁତାୟୁ ଅଚ୍ୟୁତାୟୁ ଶତାୟୁ ଜରାସନ୍ଧ
ଅଳମ୍ବୁଷ ସୁବାହୁ ଶୃଙ୍ଗୀ ବୃଦ୍ଧସନ୍ଧ ।
ସୁଦକ୍ଷିଣ ଆଦି ଯାରେ ମୋ ପକ୍ଷେ ଗୋଟି
ହୋଇ କରିଣ ନ ପାରିଲେ ମୋ କାର୍ଯ୍ୟଟି ।
ବିରାଟ କେକୟ ସାତ୍ୟକ ଚେକିତାନ
କୁନ୍ତୀଭୋଜ ଆଦି ଯେତେ ପାଣ୍ଡବ ସୈନ୍ୟ ।
ଥିଲେ ମୋର ଏ ରଥୀମାନେ କାଣ୍ଡମୁନେ
ବସାଇଣ ପାରନ୍ତେ ଯମଙ୍କ ସଦନେ ।
ଦଇବ ବାମ ଜାଣି ମାନିଣ କପାଳ
ଆଶ୍ରା କରିଲେ ଯାଇ ପ୍ରାଣ ଛାଡ଼ି ତଳ ।
ଭୀଷ୍ମ ଦ୍ରୋଣ ଦୁଇ ଅକୃତକାର୍ଯ୍ୟ ହୋଇ
ଶୋଇଲେ ଯୁଦ୍ଧଦାଣ୍ଡେ ମରି ଲାଜପାଇ ।
ପୁଅ ନାତି ସଖାମାନେ ମୋ ଯାହା ମଲେ
ଶୋକ-ସିନ୍ଧୁରେ ମୋତେ ପକାଇଣ ଦେଲେ
ଏଣୁ ସକାଶରୁ ଭାବୁଛି ଭାଗ୍ୟବନ୍ତ—
ତୁଲେ ସର ନୁହେ ଯେ ଲୋକ ମହୀପତି ।

ବୁଢ଼ା ସମୟରେ ଶତ୍ରୁର ବଶ ହୋଇ
କୁରୁପତେ ପାଳିବ ଦେହେ ଜୀବ ବହି ।
ବନକୁ ଗଲେ ମୋର ହୋଇବ କାରଣ
ଘରେ ଥିଲେ ସିନା ମୋ ହୋଇବ କାରୁଣ୍ୟ ।
ମୋ ପୁତ୍ରହନ୍ତା ଭୀମ ହୋଇ ଟାଣିଟୁଣି
ମୋ ଆଗରେ ବସି କହିବ ଏବେ ବାଣୀ ।
ଏହାକୁ ଶୁଣିବାର ପ୍ରତିକ ମରଣ
ହୋଇଲେ ମୋର ଭଲ ହୋଇବାଟି ଜାଣ ।
ଆହାରେ ଦଇବ ତୁ ଖଞ୍ଜିଲୁ କି ଆଣି
ଏତେ ବୋଲି କପାଳେ ମାରି ଦୁଇ ପାଣି ।
ଧୃତରାଷ୍ଟ୍ର ରାଜନ ନୟନଯୁଗଳ—
କମଳରେ ପୂରଣ କରିଣ କମଳ ।
ପୁନଃପୁନଃ କରିଣ ଉଠିଲେ ବୋବାଇ
କାହିଁ ଛାଡ଼ି ଗଲୁ ରେ ବୋଲି ବାବୁ ଭାଇ ।
ସଞ୍ଜୟଙ୍କୁଁ ବୋଇଲେ ପୂର୍ବରୁ ବିଦୁର
କହିଥିଲେ ସେ ଯାହା ହେଲା ମନ୍ତ୍ରିବର ।
ଭୀଷ୍ମ ଦ୍ରୋଣ ଦୁହେଁ ତ ଯୁଝି ଆମ୍ଭ ପାଇଁ
କହିଲ ଭେଟିଗଲେ ବୋଲି ପ୍ରେତସାଇଁ ।
ଏ ବାହାରେ ସମର ଜୟଦ୍ରଥ କର୍ଣ୍ଣ
ପାର୍ଥ ତୁଲେ କରିଣ ହୋଇଲେ ନିଧନ ।
ଶଲ୍ୟ ତ ସେନାପତି ଏ ଅନ୍ତେ ହୋଇଲେ
ତାଙ୍କ ବାମ ଦକ୍ଷିଣ ପୃଷ୍ଠ କେ ଜଗିଲେ ।
କୁରୁପତେ ପାଣ୍ଡବେ ଦୁର୍ଯ୍ୟୋଧନ ତୁଲେ
କହ ତ ଶଲ୍ୟଙ୍କର ଜୀବନ ଘେନିଲେ ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଦ୍ରୁପଦଙ୍କ ପୁଏ
କୁରୁପତେ ମଲେ ସଞ୍ଜୟ ମନ୍ତ୍ରିରାୟେ ।
ପାଣ୍ଡବଙ୍କର ସାତ ଆମ୍ଭ ଲୋକେ ତିନି
କୁରୁପତେ ନୋହିଲେ ଯମଲୋକଗାମୀ ।
ଏ କଥାମାନ ଶୁଣିବାକୁ ମୋର ମନ
ହେଉଛି ଭଲକରି ତା ବଚନେ ଭଣ ।
ସଞ୍ଜୟ ବୋଇଲେ ହେ କୁରୁ ପାଣ୍ଡୁ କ୍ଷୟ
କହିବା ଶୁଣ ନୃପ ଦେଇଣ ହୃଦୟ ।
ମରନ୍ତେ କର୍ଣ୍ଣ ପାର୍ଥ କଲେ ସିଂହରଡ଼ି
ତୁମ୍ଭର ସୈନ୍ୟଯାକ ପଳାଇଲେ ଛାଡ଼ି ।
ତୁମ୍ଭ ପୁଏ ଭାବିଲେ ସରିବ ଏଥର
ପାର୍ଥ ଶର-ବଜ୍ରରେ ଏ ଦେହ-ପଥର ।

ପରାକ୍ରମ କରିବାପାଇଁ ମ୍ଲେଚ୍ଛଜାତେ
ଭଗ୍ନ ସୈନ୍ୟ କାହାକୁ ନ ଦେଖିଲୁ ଜୋତେ
ନାବଟି ଭାଙ୍ଗି ଗଲେ ବଣିଜାରୁକୁଳେ
ଯେରୂପେ ପାର ଇଚ୍ଛା କରନ୍ତି ଆକୁଳେ ।
ସେରୂପେ ଭଗ୍ନ ସେନା କର୍ଣ୍ଣ ହତ ଦେଖି
କେ ନାଥ ହେବ ବୋଲି ଭାବିଲେକ ଦୁଃଖୀ ।
ସିଂହପୀଡ଼ା-ହରଣ ଶିଙ୍ଗଭଙ୍ଗା ବୃଷ—
ପରାୟେ ଭଗ୍ନ ସୈନ୍ୟ ହୋଇଲେ ନରେଶ ।
ଭଗ୍ନର ପୁଅମାନେ ଧନୁକୁ ଉଭାରି
ନ ପାରିଲେ ସେକାଳେ ସୈନ୍ୟ ରକ୍ଷା କରି
ଭୀମ ଅରଜୁନଙ୍କୁ ଯୁଦ୍ଧରେ ବିକଳେ
ସ୍ୱରଆଡ଼େ ଦେଖିଲେ ଭଗ୍ନ ନରେ ଜୋଳେ
ହାତୀ ଘୋଡ଼ାଚଢ଼ାଏ ଧୂଆଁଇ ହାତୀ ଘୋଡ଼ା
ହେଲେ ଯୁଦ୍ଧଭାଣ୍ଡୁ ଅଲଗା ହୋଇ ଛାଡ଼ା ।
ରଥୀମାନଙ୍କ ଯିବା ରଥଚକଘାତେ
ପଦାତିସୈନ୍ୟ ଭଗ୍ନ ମଲେ ମହାମତେ ।
ଅର୍ଜୁନମାୟା କରି ସେକାଳେ ଜଗତ
ମଣିଲେ ଯେତେ ଥିଲେ କୁରୁଙ୍କର ମିତ୍ର ।
ଦୁର୍ଯ୍ୟୋଧନ ତା ଦେଖି ହାହାକାର କରି
କହିଲେ ସାରଥିକି ବଚନ ଉଚ୍ଚାରି ।
ସାରଥିକି ବୋଇଲେ ଭୀମଠାକୁ ରଥ
ମୋର ବାହ ମୁଁ ତ ତାହାକୁ ସମରଥ ।
ପାର୍ଥ-ହାତ- କାଣ୍ଡକୁ ପାରେ ମୁହିଁ କାଟି
ମୁଁ ମନ କରିଲେ ସେ ଯିବେ ଯମ ଭେଟି ।
ଆଜ ଦେଖାଇବ ସମରେ ବୀରପଣ
ଭାଙ୍ଗି ପକାଇବ ପାଣ୍ଡବ ଗୁମାନ ।
ଭଗ୍ନ ସୁତ-ବାକ୍ୟେ ସାରଥି ତୋଷ ହୋଇ
ଭୀମଠାକୁ ରଥ ବାହିଲ ନରସାଇଁ ।
ସେକାଳେ ପଞ୍ଚବିଂଶସସ୍ର ଭଗ୍ନ ସେନ
ପଳାଇଲେ ଯୁଦ୍ଧରୁ ହୋଇଣ ବିମନା ।
ତା ଦେଖି ଧୃଷ୍ଟଦ୍ୟୁମ୍ନ ଭୀମ ଏକ ହୋଇ
ବିନ୍ଧିଲେ ମାରଗଣଗଣକୁ ଦେଖାଇ ।
ଭଗ୍ନର ସେନାମାନେ ପାଇକିଣ ରଣ
ଭୀମ ଧୃଷ୍ଟଦ୍ୟୁମ୍ନ ଭୁଲରେ କଲେ ଜାଣ ।
ଭୀମ ତାହା ନ ସହି ଧରି କରେ ଗଦା
ବୋଇଲେ ଏ ସୈନ୍ୟ ମୁଁ କରିଦେବ ପଦା ।

ରଥରୁ ଅବତରି ଭୀମ ବଳଶାଳୀ
କାହିଁ ଯିବ ବୋଲି ଆଗକୁ ଗଲେ ପେଲି ।
ଅନ୍ତକ କାଳଦଣ୍ଡ ପରି ଗଦାଧର
ଭୀମ କରପୁଟେ ସେ ଦିଶିଲା ସୁନ୍ଦର ।
ପିଟନ୍ତେ ଭୀମ ରାଗେ ଗଦା ଅତି ଗୁଣ୍ଡେ
ଭଗ୍ନ ସେନାଯାକ ପଶିଲେ ଯମଦାଣ୍ଡେ ।
ସେ ପଚିଶି ସହସ୍ର ଗୋଟିଏ ଜନକୁ
ନ ଦେଖିଲା ମୁହିଁ ଯେ ବସାକୁ ଯିବାକୁ ।
ଧୃଷ୍ଟଦ୍ୟୁମନଙ୍କୁ ରଖାଇଣ ଆଗରେ
ଭୀମସେନ ରହିଲେ ସେଠାରେ ସଗରେ ।
ଅରଜୁନ ଭଗ୍ନର ରଥ ଗଜକୁଳ
ମହାଶରଜାଳରେ କଲେଟି ଆକୁଳ ।
ମାଦ୍ରୀଙ୍କ ପୁତ୍ର ଦୁହେଁ ଶକୁନିଙ୍କି ବେଢ଼ି
ବିନ୍ଧିଲେ ବାଛି ବାଛି ଚୂର୍ଣ୍ଣ ଶର କାଢ଼ି ।
ପାର୍ଥ ରଥୀ କୃଷ୍ଣ ସାରଥି ଶ୍ୱେତ ହୟ
ଦେଖି ପଳାଇଲେ ଭଗ୍ନର ଯୋଦ୍ଧାଚୟ ।
ଧୃଷ୍ଟଦ୍ୟୁମ୍ନଙ୍କର କୋଦଣ୍ଡର ଧ୍ୱଜ
ଦେଖିଣ ଯୋଦ୍ଧାଯାକ ଛାଡ଼ିଦେଲେ ଓଜ ।
ଚେକିତାନ ଶିଖଣ୍ଡୀ ସାତ୍ୟକ ଧନୁ ଟାଣି
ଭଗ୍ନ ସେନାଯାକ ଶରରେ ଦେଲେ ହାଣି ।
ଭଗ୍ନ ସେନାଯାକଙ୍କୁ ପଳାଇବା ଦେଖି
ପାଣ୍ଡୁସେନାଏ ଗୋଡ଼ାଇଲେ ହୋଇ ସୁଖୀ ।
ଅର୍ଜୁନ ବାଣଘାତେ ନୟନଯୁଗଳ
ନ ଦେଖିଲା ନୟନ ସେ ଯୁଦ୍ଧମଣ୍ଡଳ ।
ଦୁର୍ଯ୍ୟୋଧନ ତା ଦେଖି କହିଣ ରୋଷକୁ
ଯୁଝ ଆସ ବୋଲି ଡାକିଲେ ପାଣ୍ଡବଙ୍କୁ ।
ପାଣ୍ଡବେ ତାହା ଶୁଣି ଧନୁ କରେ ଟାଣି
ଦୁର୍ଯ୍ୟୋଧନ-ମରମେ ଦେଲେ ଶର ହାଣି ।
ଭଗ୍ନର ପୁତ୍ର ମଧ୍ୟ ଓଟାରି ଧନୁକୁ
ଶକତି ଅନୁରୂପେ କଲେ ବିକ୍ରମକୁ ।
ସବୁ ପାଣ୍ଡବଙ୍କରେ ଏକା ଦୁର୍ଯ୍ୟୋଧନ
ଯୁଝିଲେ ଯାହା ରାଜା ଏହା ବଡ଼ ଘେନ ।
ନିଜ ସେନ୍ୟ ଭାଗୁଡ଼ ଶୁଣି ଦୁର୍ଯ୍ୟୋଧନ
ବୋଇଲେ ଗଲେ ରଖି ପାରି କି ଜୀବନ ।
ତିନ ଲୋକକୁ ଜିଣି ପାରଇ କିରୀଟୀ
ପଛିକି ଯିବ ତହିଁ କାଟିବ ମୁଣ୍ଡଟି ।

କୃଷ୍ଣ ଅରଜୁନଙ୍କି ହୋଇଲେ ଘାଉଆ
କାଣ୍ଡରେ ଆସ ପୋଡ଼ଦେବା ତାଙ୍କ ହୁଆ ।
ଯୁଦ୍ଧରେ ଯେଉଁ ଲୋକ ମରଣ ଲଭଇ
ମର୍ତ୍ତ୍ୟଲୋକକୁ ସେହୁ ଜାଣି ନ ପାରଇ ।
ମଲେ ସ୍ୱର୍ଗପୁରେ କରଇ ଯାଇ ବସା
ଜୀଇଲେ ଇହଲୋକେ ଲଭଇ ପ୍ରଶଂସା ।
ବାପ ଅଜା କରିବା ଧର୍ମକୁ ଅନାଇଁ
ରହ ହେ କ୍ଷତ୍ରିୟେ ଯୁଦ୍ଧରୁ ନ ପଳାଇ ।
ଯୁଦ୍ଧୁଁ ପଳାଇବା କଥାରୁ କ୍ଷତ୍ରିୟର
ଲାଜ ହୋଇ ତ କଥା ନାହିଁ ମନେ କର ।
ଏରୂପେ ଶୁଣି ଦୁର୍ଯ୍ୟୋଧନ ବଚନକୁ
ଲେଉଟିଲେ ତୁମ୍ଭ ସଇନ ଯୁଝିବାକୁ ।
ସେକାଳେ ଦେବାସୁର ପ୍ରାୟେ ମହାରଣ
ପ୍ରବର୍ତ୍ତିଲା ତାଙ୍କର ତୁମ୍ଭର ରାଜନ ।
ଯୁଧିଷ୍ଠିରଠାକୁ ସଇନ ଘେନ ତୁଲେ
ଯୁଝିବା ଇଚ୍ଛା କରି ଦୁର୍ଯୋଧନ ଗଲେ ।
ରଥୀ ହାତୀ ରଥ ପାଇକ ଅଶ୍ୱଯନ୍ତ
ଅରଜୁନବାଣେ ବସିଲେ ଯମକନ୍ତ ।
ତୁମ୍ଭର ସେନାମାନେ ଅର୍ଜ୍ଜୁନ ବିକ୍ରମ
ଦେଖିକରି ହୃଦୟୁ ଛାଡ଼ିଦେଲେ ତମ ।
କୃପ ସେହି କାଳରେ କୃପାବିଷ୍ଟ ହୋଇ
କହିଲେ ଦୁର୍ଯ୍ୟୋଧନ ମୁଖକୁ ଅନାଇଁ ।
ମୁଁ କହିବା କଥାକୁ ଶୁଣି କରି ରାୟେ
କର ହେ ଯେଉଁ କଥା ମନକୁ ଯୋଗାଏ ।
କ୍ଷତ୍ରିୟର ଯୁଦ୍ଧରୁ ଧର୍ମ ହୋଇ କଥା
ତିନଲୋକ ନାହିଁ ରାଜନ ମହାରଥା ।
ପୁଅ ଭାଇ ଭଣଜା ସମ୍ବନ୍ଧୀ ମାମୁକୁ
ଯୁଝିବ ସେ କ୍ଷତ୍ରିୟ ଛାଡ଼ି ଉପ୍ରୋଧକୁ ।
ଯୁଦ୍ଧେ ମଲେ ସ୍ୱର୍ଗେ ବସିବ ସୁଖେ ଯାଇ
ପଳାଇଲେ ଜୀଇଣ କାର୍ଯ୍ୟ କିଛି ନାହିଁ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ ଲକ୍ଷ୍ମଣ କୁମର
ମରନ୍ତେ କେଉଁ ସୁଖ ଅଛନ୍ତି ତୁମ୍ଭର ।
ଯାନଲୋକ ପରି ତ ରହିଅଛୁଁ ଆମ୍ଭେ
କ କହିବ ରାଜନ ପୁଚ୍ଛିଲେ ବା ତୁମ୍ଭେ ।
ଆମ୍ଭେ ସବୁ ରଥୀଏ ହେଲେ ସୁଦ୍ଧା ଗୋଟି
କାଟି ନ ପାରିବାଟି କାହିଁଟି ମୁଣ୍ଡଟି ।

ଇନ୍ଦ୍ର ପରାଏ ବଳ ବହି ଅରଜୁନ
ଧରିଥାଏ କରେ ଗାଣ୍ଡୀବ ଶରାସନ ।
ଛୁଡ଼ା ହୋଇଥାଏ ସେ କପିଧ୍ୱଜ ରଥେ
ବୀର ଯୁଝି ନ ପାରେ ଏଣେ ତାର ସାଥେ ।
ପୁଣି ତ ତାଙ୍କ ଶ୍ୱେତଘୋଡ଼ା ବାତ ଗତି—
କରିବାରେ ଜିଣିଛନ୍ତି ହେ ନରପତି ।
କୃଷ୍ଣ ତ ସାରଥିରେ ଅତ୍ୟନ୍ତ ଦୁର୍ଲ୍ଲଭ
ଯୁଦ୍ଧରେ କେଉଁ କଥା ନେ ହବ ସୁଲଭ ।
ପାଞ୍ଚଜନ୍ୟ ଗାଣ୍ଡୀବଧନୁ କରି ରଡ଼
ଶୁଣି ଆମ୍ଭର ଧୈର୍ଯ୍ୟ ଯାଉଅଛୁ ଛାଡ଼ି ।
ଅଲାତଚକ୍ର ପରି ସେ ଧନୁବର
ଅର୍ଜ୍ଜୁନ ହସ୍ତେ ଭ୍ରମୁଥାଏ ନରବର ।
ପୁଣି ତ ସେ ସୁନାରେ ହୋଇଛି ମଣ୍ଡନ
ଶତହ୍ରଦା ପ୍ରଭାକୁ କରଇ ଖଣ୍ଡନ ।
ତୁମ୍ଭ ସୈନ୍ୟତୃଣେ ଅର୍ଜ୍ଜୁନ ଶରାନଳ
ଦହି ପକାଇଲା ଜାଣ ହେ ମହୀପାଳ ।
ଅର୍ଜ୍ଜୁନହସ୍ତୀ ତୁମ୍ଭ ସଇନ ନଳନ
ମନ୍ଥିଥିଲା ଦେଖିଛୁ ଆମ୍ଭର ନୟନ ।
ଆମ୍ଭେମାନେ ତେବେ ହେଲେ ତ ପ୍ରତିକାର
ନ ପାରିଲୁଁ କେବେହେଁ କରିଣ ସମର
ସତର ଦିନ ଆଜ ସରିକ ହୋଇଲା
ଆମ୍ଭର ଯୁଦ୍ଧରେ ତ ବଳ ନ ଦିଶିଲା ।
ପବନରେ ନାବଟି ଭ୍ରମିବା ପରାୟେ
ଅର୍ଜ୍ଜୁନ ଶରେ ଆମ୍ଭେ ଭ୍ରମିଲୁ ହେ ରାୟେ ।
ଗାଙ୍ଗେୟ ଦ୍ରୋଣ ଦ୍ରୌଣୀ କର୍ଣ୍ଣ କୃତବର୍ମା
ଅର୍ଜ୍ଜୁନ ମୁଖେ ପଡ଼ି ଭାଙ୍ଗିଲେ ଗାରିମା ।
ତୁମ୍ଭେ ତୁଚ୍ଛା ହେ ରାୟେ ହରବର ହୋଇ
ଯୁଦ୍ଧହାଣ୍ଡେ ନ ମର ବଞ୍ଚାଇ କହଇ ।
ଏ ଜଗତେ ଅର୍ଜ୍ଜୁନ କ ଜମୁଖେ ପଡ଼ି
କେ ଜୀଇ ରହିବଟି ପ୍ରାଣକୁ ନ ଛାଡ଼ି ।
ଗାଣ୍ଡୀବ ଧନୁଘୋଷ ଆମ୍ଭ ଧୈର୍ଯ୍ୟ ବଳ
ଯେ ଥିଲା କରୁଛି ତାହାକୁ କଳବଳ
ପଞ୍ଚସ୍ଥାନ ସ୍ତ୍ରିୟା ପରାୟେ ତୁମ୍ଭ ସେନା
ହୋଇଛନ୍ତି ଜାଣ ରାଜନ ମହାମନା ।
ସାତ୍ୟକ ଭୀମଙ୍କ ବେଗକୁ ସହିବାକୁ
ମେରୁଗିରିବରକୁ ନ ଆଣି ମନକୁ ।

ଗ୍ରାମ ସଭାମଧ୍ୟରେ କହିଥିଲେ ଯାହା ।
ସାକ୍ଷାତରେ ତାହାଟି କଲେ ନରନାହା ॥
ପାଣ୍ଡବଙ୍କର ସାଧୁ ବୁଦ୍ଧ ନରନ୍ତରେ ।
ହିଂସା ଯା କଲ ତୁମ୍ଭେ ଅସାଧୁ ବୁଦ୍ଧିରେ ॥
ଏଥିକ ଅନୁରୂପ ପଡୁଅଛି ଫଳ ।
ନବଭି ହେ ରାଜନ ଆଉଁଷି କପାଳ ॥
ଆମ୍ଭା ଥିଲେ ସୁଖ ଦୁଃଖକୁ ଦେଖୁଥାଇଁ ।
ଆମ୍ଭା ଗଲେ ଦୁଇ କଥାରେ କାର୍ଯ୍ୟନାହିଁ ॥
ବୃହସ୍ପତି କହିଛନ୍ତି ଏକା ଦୁର୍ବଳ ।
ପୀରତି କରିବ, ଯେ ବେଳ ତାକୁ ବଳ ॥
ପାଣ୍ଡବଙ୍କ ପ୍ରତିକେ ବଳେ ଆମ୍ଭେ ଊଣା ।
ପ୍ରୀତି କରିବା ହେ ନ କର ବୁଦ୍ଧି ବଣା ॥
କେଉଁ ଲୋକ ଶ୍ରେୟ ନ ଜାଣଇଟି ଚୟେ ।
ରାଜ୍ୟଭ୍ରଷ୍ଟ ସେ ଲୋକ ହୁଅନ୍ତି ନଷ୍ଟଯେ ॥
ଯୁଧିଷ୍ଠିରରାଜାଙ୍କୁ ନମ୍ର ହୋଇ ରାଜ୍ୟ ।
ଅରପିଲେ ସୁଖ ପାଇବ ମହାରାଜ ॥
ଧୃତରାଷ୍ଟ୍ର ଶ୍ରୀକୃଷ୍ଣ କହିଲେ ଯେନାଇଁ ।
ଯୁଧିଷ୍ଠିର ତୁମ୍ଭଙ୍କୁ କ୍ରୋଧେ ହେବେ ନାହିଁ ॥
ଅର୍ଜୁନ କୃଷ୍ଣ ଧୃତରାଷ୍ଟ୍ରଙ୍କ ବଚନ ।
ନ ଲଙ୍ଘିବେ କେବେ ଜାଣ ହେ ଦୁର୍ଯ୍ୟୋଧନ
ଯୁଦ୍ଧକୁ ଡର ମୁଁ ତ କହୁ ନାହିଁ ରୟେ ।
ହିତରଲେ ହିତ ସେ ସମସ୍ତ ଉପାୟେ ॥
ଏରୂପେ କହି କୃପ ନେହେ ଧରି ଆପ ।
ପାଡ଼ିଲେ ଡକା କୁହୁ ହେଲେ ବୋଲ ଲୋପ
ଦୁର୍ଯ୍ୟୋଧନ କୃପଙ୍କ ବଚନକୁ ଶୁଣି ।
ନ କହିଲେ କିଛି ରାଜନ ତାଙ୍କୁ ବାଣୀ ॥
ମୁହୂର୍ତ୍ତେ ଚିନ୍ତା କରି ତୁମ୍ଭର କୁମର ।
କହିଲେ କୃପମୁଖ ଚାହିଁ ଏ ଉତ୍ତର ॥
ମୋ ପାଇଁ ପ୍ରାଣ ଛାଡ଼ି ଯୁଦ୍ଧ କରି ତୁମ୍ଭେ ।
ଯା କହୁଛ ହିତେ ଶୁଣୁଛୁଁ ବସି ଆମ୍ଭେ ॥
ମଲ୍ଲ ଲୋକ ଔଷଧ ନ ପିଇଲ୍ଲ ପରି ।
ତୁମ୍ଭ ବାଣୀ ହେଉଛୁ ହୃଦକୁ ମୋହରି ॥
ପାଣ୍ଡବଙ୍କଠାରେ ଅନେକ ଅପରାଧ ।
କରିଛୁ ମୋଠାରେ ହେବେ ସେ କେହ୍ନେ ବୋଧ
ଯୁଆଖେଳରେ ତ ଛଡ଼ାଇ ରାଇଜକୁ ।
ଘଉଡ଼ି ଦେଇଛୁ ମୁଁ ବନକୁ ତାହାଙ୍କୁ ॥

ଦୂତ ହୋଇ କୃଷ୍ଣ ମୋଠାକୁ ଆସିଥିଲେ ।
ଉପହାସ କରନ୍ତେ ଲାଜ ପାଇ ଗଲେ ॥
ଦ୍ରୌପଦୀଙ୍କ କାନ୍ଦଣି କୃଷ୍ଣଙ୍କ ହୃଦକୁ ।
ଘାଣ୍ଟି ନେଉଅଛୁ କ କହିବ ତୁମ୍ଭଙ୍କୁ ॥
କୃଷ୍ଣ ଅର୍ଜୁନ ତ ଅତ୍ୟନ୍ତ ଏକପ୍ରାଣ ।
କୃଷ୍ଣ କମ୍ପା ମୋ ପାଇଁ କହିବେ ବଚନ ॥
ଭଣଜା ମରିବାରେ ମହାଦୁଃଖୀ ହୋଇ ।
ମୋତେ ମାରିବାକୁ ପ୍ରତିଜ୍ଞା ଛନ୍ତି ବହି ॥
ଅଭିମନ୍ୟୁ ମରଣେ ପାର୍ଥ ବୁଦ୍ଧି-ସର୍ପ ।
ଦଂଶିବ ବୋଲି ମୋତେ କରୁଅଛୁ କୋପ ॥
ଭୀମ ତ ନମ୍ରରେ କହିବା ଲୋକ ନୁହେ ।
ଅବଜ୍ଞିଲେ ସେ ମାଡିଥାଏ ଅତି କୋହେ ॥
ସହଦେବ ନକୁଳ ଦୁହେଁ ମହାଭେଣ୍ଡା ।
ସାରିବେ କ୍ରୋଧ ମୋର ଦେହେ ମାର ଖଣ୍ଡା
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଦୁଇ ମହାବୀର ।
ମୋର ତ ବଇରୀ ଅତ୍ୟନ୍ତ ନିରନ୍ତର ॥
ଦ୍ରୌପଦୀ ଏକବସ୍ତ୍ରା ହୋଇ ସଭା ଛାଡ଼ା ।
ସୁମରି ପାଣ୍ଡବେ ତ ପାଉଛନ୍ତି ବ୍ରୀଡ଼ା ॥
ଏହା ତାଙ୍କ ହୃଦୁ ଛଡ଼ାଇବାକୁ ଲୋକ ।
ଏ ମହୀରେ ନାହିଁ ହେ ଦ୍ୱିଜଙ୍କ ତିଳକ ॥
ଦ୍ରୌପଦୀ ମୋ ନାଶ ବାଞ୍ଛି ଭୂମିଶଯ୍ୟା ।
କରୁଛନ୍ତି ନ ହେ କ୍ରୋଧ କରି ମଜ୍ଜା ॥
ଏ ସକାଶୁଁ ତାଙ୍କର ଆମ୍ଭର ପୀରତି
କେବେ ଟି ନୁହଇ ହେ ଜାଣ ମହାମତି ।
ସାଗରାନ୍ତ ପୃଥ୍ୱୀକି ଭୋଗ କଲି ମୁହିଁ
ଅଧେ ରାଜ୍ୟ ଖାଇ ରହିବି ଏବେ କେହ୍ନେ ।
ତୋଡ଼ାଣିଆ କରିଣ ଏବେ ଦୁଇ ଦିନ
କରୂପେ ହେବି ମୁହିଁ ଯୁଧିଷ୍ଠିର ଦାସ ।
ତୁମ୍ଭର ବଚନକୁ କରି ନାହିଁ ରିଷା
ପ୍ରୀତିକାଳ ଏ ନୋହେ ଜାଣ ମହାଯଶା ।
ଯୁଝିବାଠାରୁ ମହାସୁଖ ଆଉ ନାହିଁ
ମଲେ ସ୍ୱର୍ଗପୁରେ ବସିବା ସୁଖେ ଯାଇ ।
ଯାଗ ଦାନ ଦକ୍ଷିଣା ଦେଇ ବନ୍ଧୁଜନ
ଜାଣିବାରେ ତ ଆଜ ଯାଏ ଗଲି ଦିନ ।
ଏବେ ଯେ ପାଣ୍ଡବଙ୍କ ଦୀନ ହୋଇ ମୁହିଁ
କହିବାକୁ ତୁଣ୍ଡେ ବଚନ ଆସୁନାହିଁ ।

ସୁଖ ଆଜଯାଏ ବଳଇଁ ଆମ୍ଭେ ଭୋଗ
ଏବେ ଯୁଦ୍ଧେ ମଲେ ବସିବା ସ୍ୱର୍ଗଭୋଗ ।
ଘରେ ଯେଉଁ କ୍ଷତ୍ରିୟ ମରଣକୁ ପାଏ
ତାହାକୁଟି ବର୍ମିଣ ଧର୍ମମନ୍ତ ସଭେଁ ।
ତପ କରି ବନରେ ଛାଡ଼ଇ ଯେ ଦେହ
ଇନ୍ଦ୍ର ତାକୁ ଦେଖି କରନ୍ତି ମହାସ୍ନେହ ।
ଆଜ ମହାସମର କରି ମୁଁ ସ୍ୱର୍ଗକୁ
ପାଇବି ନିଶ୍ଚେ ଜାଣ କହୁଛି ତୁମ୍ଭଙ୍କୁ ।
ଭୀଷ୍ମ ଦ୍ରୋଣ କର୍ଣ୍ଣଙ୍କ ଯିବା ମାର୍ଗେ ମୁହିଁ
ଯିବାକୁ ଭାବୁଛି ହୃଦରେ ତାପ ବହି ।
ମୋ ପାଇଁ ରାଜାମାନେ ପୁତ୍ର ଭାର୍ଯ୍ୟା ସୁଖ
ଛାଡ଼ ପଡ଼ିଅଛନ୍ତି ହୋଇଣ ନିରେଖ ।
ଏହା ଦେଖି କେମନ୍ତେ ମୋ ହଉଛି ଆଖି
ଜୀବନକୁ ହେ କୃପ ପାରିବଇଁ ରଖି ।
ମରଇ ବନ୍ଧୁକୁଳ ହେବ ମହୀପାଳ
ଶୁଣିଲେ ମୋତେ ନିନ୍ଦା କରିବେ ସକଳ ।
ଏରୂପେ ଦୁର୍ଯ୍ୟୋଧନ ବଚନ କ୍ଷତ୍ରିୟେ
ଶୁଣି ପ୍ରଶଂସିଲେ ରାଜନ ଅତିଶୟେ ।
ପରାଜୟକୁ ଛାଡ଼ ପରାକ୍ରମ ଚିନ୍ତା
ମୋଡ଼ିଲେ ନିଶ ଯୁଦ୍ଧ ପାଇଁ ସୈନ୍ୟପନ୍ତି ।
ସେ ଦିନ ଦୁର୍ଯ୍ୟୋଧନ ପଛକୁ ଘୁଞ୍ଚିଲେ
ତୁମ୍ଭ ସୈନ୍ୟ ସରସ୍ୱତୀରେ ସ୍ନାନ କଲେ ।
ହିମବନ୍ତ ଶିଖରେ ପୁହାଇ ରାତିକ
କର୍ଣ୍ଣ ମରିଯାଇଁ ଛାଡ଼ିଣ ଉକାଠିକ ।
ଶଲ୍ୟ ଅଶ୍ୱତ୍ଥାମା ଶକୁନି ଚିତ୍ରସେନ
କୃପ କୃତବର୍ମା ସୁଷେଣ ଜୟତ୍ସେନ ।
ଧୃତସେନ ପ୍ରଭୃତି ମହାରଥୀମାନେ
ଦୁର୍ଯ୍ୟୋଧନରାଜାଙ୍କୁ କହିଲେ ସୁମନେ ।
ସେନାପତି ଏବେ ଗୋଟିଏ ତୁମ୍ଭେ କର
କରିବୁଁ ଆମ୍ଭେ ପାଣ୍ଡୁ ସୈନ୍ୟଙ୍କ ସଂହାର ।
ସର୍ବଗୁଣ-ସମ୍ପନ୍ନ ଯୋଦ୍ଧାଙ୍କର ଶିଖ
ଦ୍ରୌଣିଙ୍କି ଚାହିଁ ସେ କହିଲେ ଛାଡ଼ି ଦୁଃଖ ।
କହିବା ହେଉ ମୋତେ ବିଚାରି ସୁମତି
ମୋ ସୈନ୍ୟ କାହାକୁ କରିବେ ସେନାପତି ।
ଅଶ୍ୱତ୍ଥାମା ବୋଇଲେ କୁଳ ଗୁଣ ଦୁଇ
ଶଲ୍ୟ ନୃପତିଙ୍କଠାରେ ଅଛନ୍ତି ରହି ।
ତାହାଙ୍କୁ ସେନାପତି କରି ଆହେ ରାୟେ
ମାରିବା ପାଣ୍ଡୁ ସୈନ୍ୟ ଆଜ ଶରଘାଏ ।
ଭଣଜାଙ୍କ ସଙ୍ଗେ ଆମ୍ଭର ହିତ ଭାବ
ସେ ଯୁଦ୍ଧ କରୁଛନ୍ତି ହୋଇଣ ଗରବୀ ।
ସେ ଥାଉଁ ଆନ ଲୋକ ସେନାପତି କଲେ
ନିନ୍ଦା କରିବେ ଏକା ସମସ୍ତେ ଶୁଣିଲେ ।

— ଃ —

## ଶଲ୍ୟଙ୍କର ଯୁଦ୍ଧଯାତ୍ରା

ଦ୍ରୌଣିଙ୍କର ବଚନ ଶୁଣି ନୃପଗଣ
ଶଲ୍ୟଙ୍କୁ ପ୍ରଶଂସାରେ କହିଲେ ବଚନ ।
ଶଲ୍ୟଙ୍କର ଶିରପଟରେ ଯେ ରହିଲେ
ତୁଅ ଆମ୍ଭର ସୈନ୍ୟ-ପାଳକ ବୋଇଲେ ।
ହୃଦପଦ୍ମ ମଧ୍ୟରେ ଧରି ମହାରାଗ
ଯୁଦ୍ଧପାଇଁ ସମସ୍ତେ ହୋଇଲେ ଉଦ୍‌ବେଗ ।
ଦୁର୍ଯ୍ୟୋଧନ ଶଲ୍ୟଙ୍କ ରଥତଳେ ରହି
ଅଞ୍ଜଳି କରରେ କହିଲେ ନରସାଇଁ ।
ମିତ୍ରକୁ ଉପକାର କରିବାର କାଳ
ହୋଇଛି, କି କହିବି ତୁମ୍ଭଙ୍କୁ ମାତୁଳ ।
ତୁମ୍ଭେ ମୋ ସୈନ୍ୟେ ସେନାପତି ହୋଇ ଏବେ
ମାର ପାଣ୍ଡବେ ସେ ମରନ୍ତୁ ଯୁଦ୍ଧରଙ୍ଗେ ।
ପାଞ୍ଚାଳମାନେ ତୁମ୍ଭ ହାତେ ଧନୁ ଦେଖି
ଚଳାଇବେ ଘରକୁ ଯୁଦ୍ଧକୁ ଉପେକ୍ଷି ।
ଶଲ୍ୟ ବୋଇଲେ ଆହେ ତୁମ୍ଭ ପାଇଁ ପ୍ରାଣ
ରଖିଅଛୁ ଜାଣ ହେ ଦୁର୍ଯ୍ୟୋଧନରାଣ ।
ବୋଲିବ ଯାହା ତାହା କରିବଇଁ ମୁହିଁ
ନାହିଁ କରିବାକୁ ତ ଆୟତ୍ତ ମୋର ନାହିଁ ।
ଦୁର୍ଯ୍ୟୋଧନ ବୋଇଲେ କାର୍ତ୍ତିକେୟ ଦେବ
ସଇନେ ସେନାପତି ପ୍ରାଏ ବହି ଭାବ ।
ମୋର ସୈନ୍ୟରେ ତୁମ୍ଭେ ସେନାପତି ହୋଇ
ହିଅ ମୋହର ଶତ୍ରୁକୁଳକୁ ବଡ଼ାଇ ।
ଶଲ୍ୟ ବୋଇଲେ ଆହେ କୃଷ୍ଣ ଅରଜୁନ
ମୋ ପ୍ରତି ବଳରେ ଅଟନ୍ତି ଅତି ହୀନ ।
ସୁରାସୁର ନର ବୁଝିବେ ଯେବେ ମୋତେ
ଜିଣି ପାରଇ ମୁହିଁ ତାହାଙ୍କୁ କହୁଛି ।
ପାଣ୍ଡୁ ତନୟଙ୍କୁ ଜିଣିବା ମହାରଥୀ
କହିଲେ ବଡ଼ କରି ଏ ମୋ ଲାଜକଥା ।

ଯେବେ ବୋଲୁଅଛ ହୋଇଣ ମୁଁ ନାୟକ
ପାଳିବ ଯୁଦ୍ଧେ ଆଜ ତୁମ୍ଭ ସେନାଯାକ ।
ଯେଉଁ ବ୍ୟୂହ ମୁହିଁ କରିବି ନରସାଇଁ
ପାଣ୍ଡବେ ସ୍ୱପ୍ନେ ତାହା ଦେଖିଥିବେ ନାହିଁ ।
ଏରୂପେ ଶଲ୍ୟଙ୍କର ବଚନକୁ ଶୁଣି
ଦୁର୍ଯ୍ୟୋଧନ ତୁମ୍ଭର ପୁତ୍ର-ଶିରୋମଣି ।
ସେନାମୁଖେ ତାହାଙ୍କୁ ବସାଇ ଆସନେ
ଅଭିଷିକ୍ତ କଲେ ରାଜନ ତୋଷମନେ ।
ଶଲ୍ୟଙ୍କ ଅଭିଷେକ ଦେଖି ତୁମ୍ଭ ଜନ—
ମାନେ ଆନନ୍ଦରେ ହୋଇଣ ପରିପୂର୍ଣ୍ଣ ।
ଶଙ୍ଖ ଭେରି ମୃଦଙ୍ଗମାନ ବଜାଇଲେ
ପାଣ୍ଡବେ ନଷ୍ଟେ ମଲେ ବୋଲି ମନେ କଲେ
ମଦ୍ରକମାନେ ଯେ ନୃପଙ୍କ ଅଭିଷେକ
ଦେଖିଣ ହୃଦୟରୁ ଛାଡ଼ିଦେଇ ଦୁଃଖ ।
ରଣ ସ୍ଥଳରେ ଦୁଇ ବାହୁକୁ ମୋଡ଼ିଲେ
ସିଂହ ପରିଏ ଉଡ଼ମାନଙ୍କୁ ଛାଡ଼ିଲେ ।
ବଚନରେ ବୋଇଲେ ମାଦ୍ରି ପାଣ୍ଡବଙ୍କୁ
ଶୁଣ ଧରଣୀ ଧୃତରାଷ୍ଟ୍ରଙ୍କ ପୁତ୍ରଙ୍କୁ ।
ତୁମ୍ଭ ବାହୁ ଆଶ୍ରୟ କରିଛନ୍ତି ଏହି
ଏ ସକାଶୁଁ ସୁଖେ ବସନ୍ତୁ ଭୁଞ୍ଜି ମହୀ ।
ସୁର ଅସୁରଙ୍କୁ ଜିଣି ତ ତୁମ୍ଭେ ପାର
ସୋମକ ସୃଞ୍ଜୟ ବା ଚର୍ହିଁ କେତେକର ।
ସ୍ୱାଙ୍କୁ ଜିଣିବାକୁ ତୁମ୍ଭଙ୍କୁ ପ୍ରଶଂସିଲେ
ଏଥିରେ ଉପହାସ କଥା ନାହିଁ ଭଲେ ।
ଏହାଶୁଣିଣ ଶଲ୍ୟ ଆନନ୍ଦକୁ ବହି
ଦେଲେ ଦେହର ତୁଲେ ଗ୍ଳାନିକ ଫୁଲାଇ ।
ବୋଇଲେ ଆହେ ଦୁର୍ଯ୍ୟୋଧନ ତୁମ୍ଭପାଇଁ
ଆଜ ପାଣ୍ଡବଙ୍କର ହାତେ ମରିବଇଁ ।
ନୋହିଲେ ତାଙ୍କୁ ମାରି ତୁମ୍ଭଙ୍କୁ ଏ ରାଜ୍ୟ
କରାଇବି ଭୋଗ ଜାଣ ହେ ମହାରାଜ ।
ସାତ୍ୟକ ଦ୍ରୌପଦେୟ ଶିଖଣ୍ଡୀ ଅର୍ଜ୍ଜୁନ
ନକୁଳ ସହଦେବ କୃଷ୍ଣ ଧୃଷ୍ଟଦ୍ୟୁମ୍ନ ।
ଭୀମ ଯୁଧିଷ୍ଠିର ପ୍ରଭୃତି ରଥୀମାନେ
ମୋର ପରାକ୍ରମକୁ ଦେଖିବେ ନୟନେ ।
ପାଣ୍ଡବଙ୍କରେ ଯେତେ ଛନ୍ତି ମହାରଥୀ
ଆଜ ମୋ କାଣ୍ଡ-ମୁନେ ହେବେ ମହାବ୍ୟଥୀ

ପାଣ୍ଡବ-ସୈନ୍ୟ କଷ୍ଟକ ମୋ ବାଣ-ସିଂହ
ବିଦାରିବ ଟି ଜାଣ ଆହେ ନରସିଂହ ।
ଏରୂପେ କହି ଶଲ୍ୟ ସୈନ୍ୟରେ ନାୟକ
ହୁଅନ୍ତେ ତୁମ ଲୋକ ଛାଡ଼ି ହୃଦୁଁ ଦୁଃଖ ।
ମନେ କଲେ ଏହା କର୍ଣ୍ଣ ଅଛନ୍ତି ଜୀଇ
ଦେବେ ଆମ୍ଭ ଶତ୍ରୁଙ୍କୁ ସମରେ ବଢ଼ାଇ ।
ଯୁଧିଷ୍ଠିର ରାଜା ଯେ ପାଇଲେ ବାରତା
କହିଲେ ଶ୍ରୀକୃଷ୍ଣଙ୍କ ମନେ କରି ଚିନ୍ତା ।
ଦୁର୍ଯ୍ୟୋଧନ ଶଲ୍ୟଙ୍କୁ କଲେ ସେନାପତି
ଆମ୍ଭେ କିସ କରିବା କହ ହେ ଶ୍ରୀପତି ।
ଆମ୍ଭମାନଙ୍କର ତ ବୁଦ୍ଧିଦାତା ତୁମ୍ଭେ
ତୁମ୍ଭେ ଯାହା ବୋଲିବ କରିବୁ ତା ଆମ୍ଭେ ।
ଶ୍ରୀକୃଷ୍ଣ ବୋଇଲେ ହେ ଭୀଷ୍ମ ଦ୍ରୋଣ କର୍ଣ୍ଣ
ସମାନଟି ବଳରେ ଶଲ୍ୟ ମନେ ଘେନ ।
ଶଲ୍ୟ ଧନୁ ଧରିଣ ଯୁଦ୍ଧ କରୁଥିଲେ
ତାଙ୍କୁ କେହି କାଟି ନ ପାରେ ଯୁଦ୍ଧେ ଭଲେ ।
ପାର୍ଥ ଧୃଷ୍ଟଦ୍ୟୁମ୍ନ ସାତ୍ୟକ ଭୀମସେନ
ଏହାଙ୍କ ବଳରେ ଅଧିକ ଶଲ୍ୟ ଜାଣ ।
ତୁମ୍ଭର ବିନା ଆନ ପୁରୁଷ ଶଲ୍ୟଙ୍କୁ
ମାରିବାକୁ କ୍ଷମ ନ ଆସଇ ମନକୁ ।
ଇନ୍ଦ୍ର ଶମ୍ବରକୁ ମାରିବାର ପରାୟେ
ମାରି ଶଲ୍ୟଙ୍କୁ ହେ ପାଣ୍ଡବ କୁଳରାୟେ ।
ଶଲ୍ୟ ମରିଲେ ଦୁର୍ଯ୍ୟୋଧନଙ୍କର ବଳ
ସବୁ ନାଶଯିବ, ହେ ଜାଣ ମହୀପାଳ ।
ମାମୁ ବୋଲି ତାଙ୍କୁ କରିବ ଯେବେ ଦୟା
କାଟିଦେବଟି କରେ ସେ ତୁମ୍ଭ ଲୋକ-କାୟା ।
ଭୀଷ୍ମ ଦ୍ରୋଣଙ୍କର ତ ସମୁଦ୍ର ତରିଛ
ଶଲ୍ୟ-ଗୋଷ୍ପଦରେ ତ ବୁଡ଼ି କୁନ୍ତୀ-ତନୟ ।
ତପ-ବଳ କ୍ଷତ୍ରି-ବଳ ତ ତୁମ୍ଭଠାରେ
ରହିଅଛି ତାହା ଦେଖାଅ ଶଲ୍ୟଠାରେ ।
ଏରୂପେ ଯୁଧିଷ୍ଠିର ଆଗେ କୃଷ୍ଣ କହି
ଗଲେ ନିଜ ବସାକୁ ଗହଣ ଲଗାଇ ।
ଯୁଧିଷ୍ଠିର ଦେଇଣ ରାଇଙ୍କି ମେଲାଣି
ପୁହାଇଲେ ସୁଖରେ ସେଦିନ ରଜନୀ ।
ଆରଦିନ ସକାଳୁଁ ଉଠି ଦୁର୍ଯ୍ୟୋଧନ
ତିଆରି କରାଇଲେ ଆପଣା ସଇନ ।

ରଥୀ, ହାତୀ-ଘୋଡ଼ା-ଚଢ଼ାଏ ଭରି ସଜ
ବାହାରିଲେ ଯୁଦ୍ଧକୁ ହୃଦେ ବହି ତେଜ ।
ତା ଦେଖି ଲୋକମାନେ ବଜାଇଣ ବାଦ୍ୟ
କଲେ ତୁମ୍ଭ ସଇନପାକର ପ୍ରମୋଦ ।
କୃପ କୃତବର୍ମା ସେ ଶଲ୍ୟ ସଉବଳ
ଦ୍ରୌଣି ଆଦି ଯେତେ କୁମର ରଥିକୁଳ ।
ଥିଲେ, ଏ କଥାବାର୍ତ୍ତା ହୋଇ ପରସ୍ପରରେ
ଯୁଝିବା ପାଣ୍ଡବଙ୍କୁ ରହି ଏକଠାରେ ।
ଏକା ହୋଇ ପାଣ୍ଡବସୈନ୍ୟେ ଯେ ଯୁଝିବ
ପଞ୍ଚମହାପାତକ ଫଳ ସେ ପାଇବ ।
ଆମ୍ଭର ତ ସଇନ ଊଣା ହୋଇଲେନ
ଯୁଝିଲେ ଏକା ହୋଇ ହେବା ସମସ୍ଥାମା ।
ଏହା ଶୁଣି ସମସ୍ତେ ବୋଇଲେ ଏ କଥା
ଅନ୍ୟଥା କଲେ ଆମ୍ଭେ ପାଇବାକ ବ୍ୟଥା ।
ଏରୂପେ ବହୁର ଛିଣ୍ଡାଇ ତୁମ୍ଭ ସୈନ୍ୟ
ବାହାରିଲେ କରିବାପାଇଁ ଆୟୋଧନ ।
ଶଲ୍ୟ ତୁମ୍ଭ ସେନା ଆଗରେ ରଥ ଚଢ଼ି
ଗମିଲେ ଦୁଇ କରେ ଶର ଦୁଇ ମୋଡ଼ି ।
ପାଣ୍ଡବେ ଏହିରୂପେ ସୈନ୍ୟ ସଜ କରି
ବାହାରିଲେ ଯୁଦ୍ଧକୁ ହୃଦେ ରାଗ ଧରି ।

———

## ଯୁଦ୍ଧାରମ୍ଭ

ଧୃତରାଷ୍ଟ୍ର ବୋଇଲେ ଶଲ୍ୟେ ଯୁଧିଷ୍ଠିର
ଦୁର୍ଯ୍ୟୋଧନ ସୁତକୁ ଭୀମ ମହାବୀର ।
କିରୂପେ ଯୁଦ୍ଧରେ ମାରିଲେ ମନ୍ତ୍ରିବର
ଏହା ମୋର ଆଗରେ କର ତ ପ୍ରଚୁର ।
ସଞ୍ଜୟ ବୋଇଲେ ହେ ତୁମ୍ଭ ସୈନ୍ୟ କ୍ଷୟ
କହିବା ଶୁଣ ସ୍ଥିର କରିଣ ହୃଦୟ ।
ତୁମ୍ଭପୁଅ ନିଜ ଆଶାକୁ ହୃଦେ ଭରି
ଛିଡ଼ା ହେଲେ ଯୁଦ୍ଧଭାଣ୍ଡରେ ଶସ୍ତ୍ରଧରି
ଶଲ୍ୟଙ୍କର ଗର୍ବରେ ହୋଇଣ ଗର୍ବିତ
ମରିବା କଥାରେ ନିର୍ଭୟ କଲେ ଚିତ୍ତ ।
ଶଲ୍ୟ ଯୁଦ୍ଧଭାଣ୍ଡେ ସର୍ବତୋଭଦ୍ର ବ୍ୟୂହ
କଲେ ତୁମ୍ଭର ପୁଅଠାରେ ବହି ସ୍ନେହ ।
ସ୍ୱର୍ଗଙ୍କା ପରି ଶଲ୍ୟଧ୍ୱଜ ସେ କାଳରେ
ମହାଶୋଭା ଧରିଲା ଦେଖିଲୁଁ ଡୋଳାରେ ।
ମଦ୍ରକ କର୍ଣ୍ଣପୁତ୍ରେ ସଙ୍ଗରେ ଧଇଲେ
ଶଲ୍ୟ ସେ ବ୍ୟୂହବର ମୁଖରେ ରହିଲେ ।
ତ୍ରିଗର୍ତ୍ତଙ୍କୁ ଘେନିଣ କୃତବର୍ମା ବୀର
ବ୍ୟୂହ ବାମପାଶେ ରହିଲେ ନରବର ।
କୃପ ସଙ୍ଗେ ଘେନିଣ ଶକ ଯବନଙ୍କୁ
ଜଗିଲେ ସେ ବ୍ୟୂହର ଦକ୍ଷିଣପାଶକୁ ।
କାମ୍ବୋଜମାନଙ୍କର ତୁଲେ ଅଶ୍ୱତ୍ଥାମା
ବ୍ୟୂହପୃଷ୍ଠେ ଜଗିଲେ କରିଣ ଗାରିମା ।
କୁରୁମାନଙ୍କର ତୁଲରେ ଦୁର୍ଯ୍ୟୋଧନ
ବ୍ୟୂହ ମଧ୍ୟଦେଶରେ କଲେ ଯାଇ ସ୍ଥାନ ।
ସହସ୍ର ସଂଖ୍ୟା ଘୋଡ଼ା ଆଗେ ସଉବଳ
ଚଳାଇ ବାହାରିଲେ କରିବାକୁ ରୋଳ ।
ଅନ୍ୟ ସେନାମାନଙ୍କୁ ଘେନିଣ ଉଲୂକ
ନିରତେ ଯୁଦ୍ଧଯାତ୍ରା ହୋଇଣ ଉତ୍ସୁକ ।
ପାଣ୍ଡବସୈନ୍ୟ ବ୍ୟୂହ କରି ତ୍ରିପ୍ରକାରେ
ବାହାରିଲେ ରାଜନ ଯୁଝିବା ଇଚ୍ଛାରେ ।
ଧୃଷ୍ଟଦ୍ୟୁମ୍ନ ସାତ୍ୟକି ଶିଖଣ୍ଡୀ ଶଲ୍ୟ ସେନା
ମାରିବାପାଇଁ ଗଲେ ସେ ତ ମହାମନା ।
ଯୁଧିଷ୍ଠିର ଶଲ୍ୟଙ୍କ ଆଗେ କଲେ ଗତି
ଅର୍ଜୁନ କୃତବର୍ମା ସଂଶପ୍ତକ ପ୍ରତି ।
ସୋମକବଳ ଘେନି ଭୀମ ମହାବଳୀ
ବାହାରିଲେ କୃପଙ୍କୁ ଯୁଝି ଧନୁ ଟୋଳ ।
ନକୁଳ ସହଦେବ ଉଲୂକ ଶକୁନିଙ୍କୁ
ମାରିବାକୁ ଗମିଲେ ବହିଣ ରାଗକୁ ।
ତୁମ୍ଭର ଯେତେ ଯୋଦ୍ଧା ଅବଶେଷ ଥିଲେ
ପାଣ୍ଡବଙ୍କ ତୁଲେ ସେ ଯୁଦ୍ଧ ଆରମ୍ଭିଲେ ।
ଧୃତରାଷ୍ଟ୍ର ବୋଇଲେ ଭୀଷ୍ମ ଦ୍ରୋଣ କର୍ଣ୍ଣ
ମଲେ ତ ସଙ୍ଗେ ଘେନି ମହତ ସଇନ ।
ଅଠର ଅକ୍ଷୌହିଣୀ ବଳୁଁ ଯେତେ ଜୀଇ—
ଥିଲେ, କହ ତାହାଙ୍କୁ ମୋତେ ହେ ବତାଇ
ସଞ୍ଜୟ ବୋଇଲେ ହେ ଶୁଣ ନରବର
ଯେତେକ ଥିଲେ ଜୀଇ ସଇନ ତୁମ୍ଭର ।
ଦୁଇ ଲକ୍ଷ ଘୋଟକ ତିନ କୋଟି ପତ୍ତି
ସହସ୍ରଦଶ ସପ୍ତଦଶ ସଂଖ୍ୟା ହାତୀ ।
ଏକାଦଶସହସ୍ର ରଥ ଅଶ୍ୱ ଧ୍ୱଜ
ରହିଣ ମଣ୍ଡିଥିଲେ ସଇନ-ସମାଜ ।

ସହସ୍ର ଦଶ ଘୋଡ଼ା ଛ ସହସ୍ର ହାତୀ
ପାଇକ ଏକକୋଟି ଛ ସହସ୍ର ରଥୀ ।
ପାଣ୍ଡବମାନଙ୍କର ଅବଶେଷ ବଳ
ଥିଲେ ଏତେକ ଆହେ ଜାଣ ମହୀପାଳ ।
କର୍ଣ୍ଣ ମଲ ଉତ୍ତାରୁ କୁରୁ ତାଙ୍କ ସୈନ୍ୟ
ଏତେ ବାହାରିଟି କଲେ ଆୟୋଧନ ।
ରଥୀ ହାତୀ ପାଇକ ହୋଇ ମିଶାମିଶି
ହେଲେ ଦେହମାନଙ୍କେ ଟଣ୍ଡା କଷାକଷି ।
ବାହାର ଯୁଦ୍ଧରେ ଦୁର୍ବିଙ୍କ ହାତୀକୁଳ
ଗର୍ଜନେ କଲେ ଯୋଦ୍ଧାମାନଙ୍କୁ ଆକୁଳ ।
ରଥଙ୍କରେ ସଜ୍ଜିତ ହୋଇ ରଥୀମାନେ
ଭଜିଲେ ଅସ୍ତ୍ରଦଣ୍ଡ ହାତୀ-ଦାନ୍ତମୂନେ ।
ରଥୀମାନେ ହସ୍ତୀରୋହୀଙ୍କି ମାରି ଶର
କରିଲେ ପ୍ରେତପୁରପତିଙ୍କ କୋପ୍ପର ।
ପ୍ରାସ ଶକ୍ତି ପରଶୁ ଧରି ସିପାଇଏ
ରଥୀଙ୍କର ପୀଡ଼ା ରଚିଲେ ଅତିଶୟେ ।
ପାଇକଙ୍କର ପ୍ରାଣ କରି ଅପହାର
ଦେଲେ ତାଙ୍କୁ ଯମ ପୁରରେ କରିଘର ।
ହାତୀ ଗୋଟିକକୁ ହେ ମହାରଥୀପନ୍ତ
ବେଢ଼ିଣ ବସାଇଲେ ଯମରାଜା-କା ।
ସେରୂପରେ ଦାନ୍ତୀ ହୋଇଣ ଦୁଇ ଜୁଝି
ପକାଇଲେ ଯେ ରଥୀମାନଙ୍କୁ ସଂହାରି ।
ଗଜାରୋହେ ଗଜଙ୍କୁ ଗଜ ଯୋଟାଇଲେ
ଅଣ୍ଟାରୁ ଖଣ୍ଡା କାଢ଼ି ଦେହେ ଫୁଟାଇଲେ ।
ରଥୀମାନେ ରଥୀମାନଙ୍କୁ ବିନ୍ଧି ବାଣ
ଖୋଳା ଖୋଳ ହେଲେ ମରମ ନଚିରାଣ ।
ରଥି ହାତୀ ଘୋଟକ ଯିବାରେ ପାଇକେ
ତଳେ ପଡ଼ି ଗଲେ କେତେକ ପ୍ରେତଲୋକେ ।
ଭ୍ରମରମାନଙ୍କେ ଶୋଭିତ ଅଶ୍ୱପନ୍ତ
ସିପାଇଙ୍କ ଘାତେ କମ୍ପିଲେ ସ୍ତବ୍ଧକାନ୍ତ ।
ଘୋଡ଼ାଙ୍କର ଖୁରରେ ଖୋଳି ହୋଇ ମହୀ
ଆଳୀ ଶୋଭା ପାଇଲା ଜାଣ ନରସାଇଁ ।
କରଜ-ଦନ୍ତ-କ୍ଷତ କାମିନୀ-ଦେହକୁ
ଉପମେୟ ହେଲା କି କହିବି କୁରୁଙ୍କୁ ।
ଘୋଡ଼ା-ହାତୀ-ରଥ ଗରଜନରେ ମହୀ
ଥରିଗଲା ସେକାଳେ ଅତିଶୟ ହୋଇ ।

ସୈନ୍ୟ ଘାତେ ଖଡ୍ଗ ବିଜୁଳି ପରିୟେ
ଚହଟିଲା ସେକାଳେ ଜାଣ ନରବରେ ।
ଏ ସକାଶୁଁ ସବୁରି ନୟନ ଯୁଗଳ
ଜାଣି ନ ପାରିଲା କେ ବଳୀ କେ ଦୁର୍ବଳ ।
ଚନ୍ଦନଭୂଷା ବାହୁମାନେ ଖଡ୍ଗ ଭୁଲେ
ଛିଡ଼ିଣ ସର୍ପ ପରି ମହୀରେ ପଡ଼ିଲେ ।
ବୀରଙ୍କ ମୁଖ-ପଦ୍ମମାଳା ବସୁନ୍ଧରା
ମଣ୍ଡି ହୋଇ ସେକାଳେ ଦିଶିଲାଟି ଗୋରା ।
ହସ୍ତୀଶୁଣ୍ଡା ପରି ନୃପଙ୍କ ଜାନୁ ଦୁଇ
ଛିଡ଼ି ମହୀଦେଶେ ପଡ଼ିଲେ ନରସାଇଁ ।
କୁରୁ ସୈନ୍ୟ-ବନୁଁ ଭ୍ରମର-ଛପ-ଫୁଲ
ଛିଡ଼ିବାରେ ହେଲେ ସେ ଶୋଭାରେ ଅତୁଳ ।
ସମସ୍ତଙ୍କ ଦେହୁଁ ବହନ୍ତେ ରକ୍ତ-ବାରି
ଫୁଟିଲା ପଲାଶବୃକ୍ଷକୁ ହେଲେ ସରି ।
ଛିନ୍ନମେଘ ପରାଏ ପଡ଼ି ହାତୀକୁଳ
ଭାଙ୍ଗିଲେ ପଦାତିଙ୍କ ହାଦେଯିବା ବଳ ।
ହାତୀ ଘନ ଯୋଦ୍ଧାଙ୍କ ଶର-ବାତ ପାଇ
ଭାଜିଲେ ଛିନ୍ନଭିନ୍ନ ହୋଇ ନରସାଇଁ ।
ଯୋଦ୍ଧାଙ୍କ କଣ୍ଠ-ବଜ୍ରଦସ୍ତି କୁଳ-ଗିରି—
ମାନଙ୍କୁ ଯୁଦ୍ଧ ଦାଣ୍ଡେ ପକାଇଲେ ଚୂରି ।
କୁଢ଼ କୁଢ଼ ହୋଇଣ ଦୁଇ କୁଳ ଘୋଡ଼ା
ମରିପଡ଼ି ଲୋକେ ଭାଜିଲେ ନୋଳ୍ପ ଛିଡ଼ା ।
ଏ ସକାଶୁ ଦୁଇ ସଇନ ତଟ ଭେଦି
ବହିଲା ଯୁଦ୍ଧ ଦାଣ୍ଡେ ଜାଣ ରକ୍ତ-ନଦୀ ।
ଧ୍ୱଜ ବୃକ୍ଷ ରଥ ଆବର୍ତ୍ତରେ ଶୋଭିତ
ମଡ଼ା-କାଠରେ ସେ ଯେ ହୋଇକରି ଯୁତ ।
ମଲା ହାତୀ-ଶଇଳୀ ଅଶ୍ୱ-ଶିଳା ମାଡ଼ି
ବାହାରିଲା ସଜନ ଜଳ ଖଳ ବଢ଼ି ।
ଗଦା-କୁମ୍ଭୀରରେ ହୋଇଣ ସମାବୃତ
ପାଗ-ଫେନ ପୂର୍ଣ୍ଣ ହୋଇ ସୁଶୋଭିତ ।
ଶଙ୍ଖ-ଶକ୍ତିମାନଙ୍କୁ ସମ୍ବାଦ ସେ ସରିୟେ
ଅନ୍ତ ପଙ୍କେ ଆବିଳ ହେଲା ଅତିଶୟେ ।
ଭ୍ରମର ଛପ ହଂସ ପ୍ରାୟେ ପନ୍ତ ପନ୍ତ
ଭାସି ଯୋଦ୍ଧାଙ୍କର ସନ୍ତୋଷ କଲା ମତି ।
ଏରୂପେ ରକ୍ତ-ନଦୀ ଦେଖି ଥିବୁଥାଏ
ତରି ନ ପାରିବାଟି ଭାବଣ ହୃଦୟେ ।

ବାବୁ ଭାଇ ବୋଲିଣ କରି ଉଗ୍ରେ ଡକା
ଛାଡ଼ିଲେ ଦେହୁଁ ପ୍ରାଣ ହୋଇଣ ଚାଟକା ।
ଅମର୍ଯ୍ୟାଦା ହୋଇଣ ହୁଅନ୍ତେ ସମର
ଆପ୍ତ ନ ରହିଲା ଯୋଦ୍ଧାମାନଙ୍କର ।
ଅର୍ଜୁନ ଭୀମ ସେହିକାଳେ ଧନୁ ଧରି
ଭୂମ୍ନ ସେନା-ଫଉଡ଼ା ରଚଲେ ଦଣ୍ଡଧାରୀ ।
ପୁଣି ସେ ଦୁଇ ବୀରେ ବଜାଇଲେ ଶଙ୍ଖ
କଲେ ଭୂମ୍ନ ସଇନଙ୍କର ମହାଦୁଃଖ ।
ଭୀମ ଅର୍ଜୁନଙ୍କର ଶଙ୍ଖ-ଶବ୍ଦ ଶୁଣି
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଦୁହେଁ ଧନୁ ଟାଣି ।
ଯୁଧିଷ୍ଠିର ରାଜାଙ୍କୁ ଚଳାଇ ଆଗରେ
ବାହାରିଲେ ଯୁଦ୍ଧଦାଣ୍ଡରେ ସେ ରାଗରେ
ନକୁଳ ସହଦେବ ହୋଇ ଶସ୍ତ୍ରପାଣି
ରହିଲେ ଯୁଦ୍ଧ ପାଇଁ ଆହେ ନରମଣି ।
ପାଣ୍ଡବଙ୍କ ବଳରେ ଭୂମ୍ନ ବଳ ପୀଡ଼ା
ପାଇ ପଳାଇଗଲେ ଛାଡ଼ି ଦେଇ ବ୍ରୀଡ଼ା ।
ରହ ରହ ବୋଇଲେ ନ ରହିଲେ କେହି
ଭାଜିଲେ ଡକାପାଡ଼ ବୋଲି ବାବୁ ଭାଇ ।
ପୁତୁର ଦାଦ ମାମୁ ଭଣଜା ଭଣେଇ
ଭାଗିଲେ ସେ ଯୁଦ୍ଧରେ ଛଡ଼ାଛଡ଼ି ହୋଇ ।
ସାରଥିକି ବୋଇଲେ ଶଲ୍ୟ ନରପତି
ବାହା ମୋର ରଥବରକୁ ତୁ ଝଟତି ।
ଯୁଧିଷ୍ଠିର ଛତ୍ର ଟେକଇ ଯେଉଁଠାରେ
ଅଛନ୍ତି ଯୁଝିବି ମୁଁ ଜାଣ ସେହିଠାରେ ।
ଯୁଧିଷ୍ଠିର ବିନା ମୋ ଆଗେ ଆନ ଲୋକ
ଯୁଦ୍ଧ କଲେ ଦେଖିବ ଯମଙ୍କର ଲୋକ ।
ଏହା ଶୁଣି ଶଲ୍ୟ-ସାରଥି ତୋଷ ହୋଇ
ଯୁଧିଷ୍ଠିରଙ୍କଠାକୁ ରଥ ନେଲା ବାହି ।
ପାଣ୍ଡବ-ଦଳଯାକ ତା ଦେଖି ଧାଇଁଲେ
ଯୁଧିଷ୍ଠିରଙ୍କ ଚାରି ପଟରେ ରହିଲେ ।
ଶଲ୍ୟ ହେଲା ହୋଇଣ ଯୁଧିଷ୍ଠିର ସୈନ୍ୟ—
ସମୁଦ୍ରକୁ ବାଣ୍ଟିଲେ ଜାଣ ହେ ସଜନ ।
ପାଣ୍ଡବ-ଦଳଯାକ ଶଲ୍ୟଙ୍କୁ ନ ବଳି
ଗଲେ,ତାହାଙ୍କ ବଳେ ହୋଇଲେ ତ ଦଳି ।
ଶଲ୍ୟ ଯୁଦ୍ଧଦାଣ୍ଡରେ ରହିବାର ଦେଖି
ପାଲଟିଲେ ଭୂମ୍ନ ସଇନ ହୋଇ ସୁଖୀ ।

ସଙ୍କାଳେ ଭୂମ୍ନ ସୈନ୍ୟ ଶତ୍ରୁ ସୈନ୍ୟଭୁଲେ
ଯେରୂପେ ଯୁଦ୍ଧ କଲେ ଶୁଣ ରାୟେ ଭଲେ ।
ଚିତ୍ରସେନ ନକୁଳ ହୋଇ ମିଶାମିଶି ।
ହୋଇଲେ ସେ ମାର୍ଗଣ-ମୁନେ କଷାକଷି ।
ସେ ଦୁହିଁଙ୍କ ଅସର ସେକାଳେ ରଜନ
ଦେଖି ଟି ନ ପାରିଲା କାହାର ନୟନ ।
ପରସ୍ପରେ ଯୁଦ୍ଧେ ମଜ୍ଜା ତ ଦେଇଥିଲେ
ଜଳଧାର ପରି ଶରକୁ ସରଜିଲେ ।
ବଚନେ ବୋଲାବୋଲି ହୋଇଲେ ଏପରି
ଯେ ପାରିବ ବୋଲାଇବ ସେ ଦଣ୍ଡଧାରୀ ।
ଚିତ୍ରସେନ ନକୁଳ କାର୍ମୁକକୁ କାଣ୍ଡେ
ବିନ୍ଧି କାଟିଲେ ସେ ସମୟେ ଅତି ଚଣ୍ଡେ ।
ପୁଣି ନକୁଳଙ୍କର ଲଲାଟ ମଧ୍ୟକୁ
ବିନ୍ଧିଲେ ତିନିକାଣ୍ଡ ଦେଖାଇ ବଳକୁ ।
ଏ ବାହାରେ ନକୁଳଙ୍କର ଚାରି ଘୋଡ଼ା
ଚିତ୍ରସେନ କଲେ ଯମଙ୍କ ପୁରେ ଛାଡ଼ା ।
ଧ୍ୱଜ ସାରଥିକି ବିନ୍ଧିଲେ ତିନି ତିନି
ଗର୍ଜିଲେ ଚିତ୍ରସେନ ଯୁଦ୍ଧ ନୋହି ଭୂମି ।
ଚିତ୍ରସେନ ସେ ତିନିକାଣ୍ଡକୁ ଲଲାଟେ
ବହିଣ ମଦ୍ରୀପୁତ୍ର ଗରଜିଲେ ଆଣ୍ଠେ ।
ତିନି ଶୃଙ୍ଗ ଗିରି ଶୋଭାକୁ ଭାଙ୍ଗି ଦେଇ
ଧଇଲେ ଫରି ଖଣ୍ଡା ଅତି କ୍ରୋଧ ହୋଇ ।
ଆପଣା ରଥବରୁଁ ଓହ୍ଲାଇ ନକୁଳ
କଲେ ଗତି ଚଳେ, ଦେଖାଇ ଦେହବଳ ।
ଚିତ୍ରସେନ ତାହା ନ ସହି ଶରବୃଷ୍ଟି
କଲେ ଯେହ୍ନ ଯିବା ବଗିର ଜପୁ ସୃଷ୍ଟି ।
ନକୁଳ ଅଟନ୍ତି ତ ମହାବଳୀ ଆର
ଛେଲ ବାଡ଼ ଚର୍ମେ କାଟିଲେ ତାଙ୍କ ଶର ।
ଭୂମ୍ନ ସୈନ୍ୟଯାକ ନୟନେ ଚାହୁଁଥିଲେ
ଚିତ୍ରସେନର ରଥ ଉପରେ ଚଢ଼ିଲେ ।
କୁଣ୍ଡଳ ଭୁଲେ ଚିତ୍ରସେନର ମୁଣ୍ଡଟି
କାଟି ପକାଇଦେଲେ ମାଦ୍ରୀଙ୍କ ବେଟାଟି ।
ହିବାକର ପରି ଅଙ୍ଗରେ ବହି ତେଜ
ଶୋଇଲେ ଚିତ୍ରସେନ କରି ଭୂମି-ଶେଯ ।
ଚିତ୍ରସେନ ମରଣ ଦେଖିଣ ପାଣ୍ଡବେ
ପ୍ରଶଂସିଲେ ନକୁଳ-ବଳକୁ ସରବେ ।

ଚିତ୍ରସେନ ମରଣ ଦେଖିଣ ସୁଷେଣ
ସତ୍ୟସେନ ଦୁହେଁ ଧାଇଁଲେ ନରଗଣ ।
ନକୁଳଙ୍କ ଦୁଇ ପାର୍ଶ୍ୱରେ ମେଘ ପରି
ରହି ଶରଧାରା ସର୍ଜିଲେ ଦଣ୍ଡଧାରୀ ।
ନକୁଳ ତା ନ ସହି ଚଢ଼ି ଆନ ରଥେ
ମହାଧନୁଟାଏ ଧଇଲେ ଟେକ ହାତେ ।
ସୁଷେଣ ସତ୍ୟସେନ ଦୁହେଁ ସମରଥ
ବିନ୍ଧିଲେ ଭାଙ୍ଗିବାକୁ ନକୁଳଙ୍କ ରଥ ।
ନକୁଳ ତାହାଙ୍କର ପରାକ୍ରମ ଦେଖି
ମାନସରେ ନୋହିଣ କିଞ୍ଚି ହେଁ ଦୁଃଖୀ ।
ହସି ହସି ସତ୍ୟସେନଙ୍କ ରଥ ଘୋଡ଼ା—
ମାନଙ୍କୁ କଲେ ଶରେ ଯମ-ପୁରେ ଛଡ଼ା ।
ଏହା ବାହାରେ ସତ୍ୟସେନଙ୍କର ଧନୁ
ନାରାଚରେ କାଟିଲେ ମାଦ୍ରୀଦେବୀ-ସୁନୁ ।
ଆନ ରଥରେ ବସି ଧରି ଶରାସନ
ରହିଲେ ଯୁଦ୍ଧେ କର୍ଣ୍ଣସୁତ ସତ୍ୟସେନ ।
ମାଦ୍ରୀସୁତ ନକୁଳ ହୋଇ ଅସମ୍ଭ୍ରାନ୍ତ
ସେ ଦୁହିଁଙ୍କ ଯୁଝିଲେ ଅତି କ୍ରୋଧଚିତ୍ତ ।
ସୁଷେଣ ନକୁଳଙ୍କ ଧନୁଟିକି କାଟି
ଘଣ୍ଟା ତୋଳି ପରି ଗର୍ଜିଲେ ମେଳ ପାଟି ।
ଆନ ଧନୁ ଧରିଣ ମାଦ୍ରୀଙ୍କ ତନୟ
ସୁଷେଣ-ଧ୍ୱଜକୁ କାଣ୍ଡକେ କଲେ କ୍ଷୟ ।
ସୁଷେଣଙ୍କ ଦେହକୁ ପାଞ୍ଚ କାଣ୍ଡ ବିନ୍ଧି
ଦେଲେ ତାହାଙ୍କ ପ୍ରିୟ ପ୍ରାଣଟିକି ରୁନ୍ଧି ।
ସତ୍ୟସେନଙ୍କର ସେ ହାତ ଚାପ ଭୁଲେ
ଚାହୁଁ ଚାହୁଁ ନକୁଳ ଧନୁକୁ କାଟିଲେ ।
ସତ୍ୟସେନ କରେ ଧରିଣ ଆନ ଚାପ
ବଢ଼ାଇଲେ ଯୁଦ୍ଧହାଣ୍ଡରେ ପରତାପ ।
ନକୁଳ ସେ ଦୁହିଁଙ୍କ କାଣ୍ଡକୁ ନିବାରି
ଦୁଇ ଦୁଇ ଦୁହିଁଙ୍କି ବିନ୍ଧିଲେ ପ୍ରହାରି ।
ସୁଷେଣ ସତ୍ୟସେନ ନକୁଳଙ୍କୁ ବାଣ
ବିନ୍ଧିଲେ ଦେଖାଇ ଆପଣା ବାହୁତ୍ରାଣ ।
ସତ୍ୟସେନ ନକୁଳଙ୍କର ଶୋଭା ଧନୁ
କାଟିଲେ ମହାବୀର ହୃଦେ ଧରି ମନ୍ୟୁ ।
ଛିଣ୍ଡା ଧନୁ ରଥରେ ହୋଇଣ ନକୁଳ
ସୁନାମୁଣ୍ଡା ଶକ୍ତି ଧଇଲେ କରତଳ ।

ନକୁଳଙ୍କ ହସ୍ତୁଁ ଫିଟିଲା ସେ ଶକ୍ତିଟି
ଧାଇଁଲା ବିଦ୍ୟୁତପରି ଆକାଶେ ଚହଟି ।
ଆଶୀବିଷ ସଦୃଶ ଦଂଶିଲା ଦେହକୁ
ଭେଦିଲା ସତ୍ୟସେନ ହୃଦୟ-ଦଳକୁ ।
ସତ୍ୟସେନ ଘାଏ ସେ ପରାଣକୁ ରଖି
ନ ପାରିଲା ଚଳିଟି ଦେଇ ଦୁଇ ଆଖି ।
ଭାଇର ମରିବାର ଦେଖିଣ ସୁଷେଣ
ନକୁଳଙ୍କୁ ବିନ୍ଧିଲେ ସେ ମାର୍ଗଣଗଣ ।
ଦ୍ରୌପଦୀ ପୁତ୍ର ସୁତସୋମ ପାଶେ ଥିଲେ
ନକୁଳଙ୍କୁ ଆସି ଯୁଦ୍ଧେ ସେ ରକ୍ଷା କଲେ ।
ନକୁଳ ସୁତସେନ ରଥପରେ ବସି
ଗିରଗ୍ରିତ ହରି ଶୋଭାକୁ ଦେଲେ ନାଶି ।
ଆନ ଧନୁ ଧରି କରରେ ମାଦ୍ରୀବେଟା
କଲେ ଶରେ ସୁଷେଣ ଦେହଟିକି ଫଟା ।
ମରସ୍ଥଳେ ଦୁହେଁ ଯେ ଯୁଦ୍ଧ ଇଚ୍ଛା କରି
ଅସ୍ତ୍ର ଶସ୍ତ୍ର ବାହୁ ହୋଇଲେ ମରାମରି ।
ସୁଷେଣ କ୍ରୋଧ ହୋଇ ଦାଦି ପୁତ୍ରଙ୍କୁ
ବିନ୍ଧିଲେ ଧନୁ ଟାଣି ତେଇଶି କାଣ୍ଡକୁ ।
ନକୁଳ ତା ସହି ନ ପାରି ନରସାଇଁ
ଶରରେ ଆଚ୍ଛାଦିଲେ ଯୁଦ୍ଧଦାଣ୍ଡ ସେହି ।
ଅର୍ଦ୍ଧଚନ୍ଦ୍ର କାଣ୍ଡ ବସାଇ ଧନୁ ମଧ୍ୟେ
ସୁଷେଣ ମୁଣ୍ଡକୁ କାଟିଲେ ମହାକ୍ରୋଧେ ।
ଏହିରୂପେ ନକୁଳ ପରାକ୍ରମ କରି
କର୍ଣ୍ଣଙ୍କ ତିନି ପୁତ୍ର ପକାଇଲେ ମାରି ।
ସୁଷେଣ ଚିତ୍ରସେନ ସତ୍ୟସେନ ନାଶ
ଦେଖି କୁରୁ ସେନାଏ ଉଡ଼ାଇ ସାହସ ।
ସବୁଆଡ଼େ ନକୁଳ ରୂପ ଦେଖି ଭୟେ
ପଳାଇଲେ କୁରୁର ସଇନ ସଭିଏ ।
ଶଲ୍ୟ ସେନା ପଳାଇବାର ନେତ୍ରେ ଦେଖି
ନ ପଳାଅ ବୋଲି ଧାଇଁଲେ ଶର ଯୋଖି ।
ଭୀମାଦି ତା ସହି ନ ପାରି ସିଂହନାଦ
କରି ଶର ବିନ୍ଧିଲେ ବଳି ଅତି କ୍ରୋଧ ।
ଶଲ୍ୟ ଭୀମ ବଳରେ କୁରୁ ତାଙ୍କ ସେନା
ପୁଣି ଯୁଦ୍ଧ କଲେ ରାଜନ ମହାମନା ।
ସେକାଳେ ଯୁଧିଷ୍ଠିର ରାଜାଙ୍କ ପାଣ୍ଡବେ
ଆଗ କରି ସର୍ବେ ଗର୍ଜିଲେ ମହାରବେ ।

ଭୀଷ୍ମର ଲୋକମାନେ ଶଲ୍ୟଙ୍କୁ ଆବୋରି
ବର୍ଷିଲେ ଶରମାନ ଧନୁକୁ ଉଭାରି ।
ଯାହୁ ଉଭୟଙ୍କର ଯେ ଶୂରଙ୍କ ହରଷ
ବଢ଼ାଇବା ଯୁଦ୍ଧ ହୋଇଲା ନରଈଶ ।
ସଂଶପ୍ତକଗଣଙ୍କୁ ପାର୍ଥ ନବାଶହି
ଆସିଲେ ସେଠାକୁ ଧନୁରେ ଶର ଯୋଡ଼ି ।
ପାଣ୍ଡବଙ୍କ କାଣ୍ଡେ ଫଟାଇ ଗଣ୍ଡ ହାଂଡ଼
ଭୀଷ୍ମ ସୈନ୍ୟ ଶୋଇଲେ ଯୁଦ୍ଧଭୂମିଖଂଡ଼ ।
ଯେ ଜୀଇଥିଲେ ତାଙ୍କମାନଙ୍କ ନୟନ
ପୀତବର୍ଣ୍ଣ ଦେଖିଲା ଯୁଦ୍ଧଭୂମି ସ୍ଥାନ ।
ହେ ନୃପ ଭୀଷ୍ମ ଅବଶେଷ ପୁତ୍ରମାନେ
ରମି ଯୁଦ୍ଧ କଲେ ସେ ପାଣ୍ଡବ-ସଇନେ ।
ସେ ସକାଶୁଁ ପାଣ୍ଡବ-ସଚେନ ଆକୁଳ
ହୋଇଲେ ଜାଣ ହେ ହସ୍ତିନା-ମହୀପାଳ ।
ପରସ୍ପରେ ଦୁଇ ସେନାଏ ପୀଡ଼ା ପାଇ
ଝଞ୍ଜାବଜା ଲତିକା ପ୍ରାୟେ ଗଲେ ହୋଇ ।
ଅଶ୍ୱ ଗଜ ରଡ଼ କରି ସେ ଯୁଦ୍ଧଦାଣ୍ଡେ
ପଳାଇଲେ ଯୋଦ୍ଧାଙ୍କ ସଙ୍ଗେ ଅନ୍ତଭ୍ରଣ୍ଡେ ।
ଏରୂପେ ଦୁଇ ସୈନ୍ୟ ଯୁଦ୍ଧଦାଣ୍ଡେ ମଝି
ବସିଲେ ଯମରାଜା ପାଶେ ବେଢ଼ି କରି ।
ପୂର୍ବାହ୍ଣରେ ପାଣ୍ଡବ ରଖି ନିଜ ବଳ
କଲେ ଭୀଷ୍ମ ବଳକୁ ଶରେ କଲବଲ ।

—o—

## ଶଲ୍ୟ ବଧ

ପାଣ୍ଡବଙ୍କର ଶର ଅଗ୍ନିପାତ ପାଇ
ଭୀଷ୍ମ ସୈନ୍ୟ ବନ ଜଳିଲେ ଝଠାଆଇଁ ।
ଗାଈ ଜଗି ରହିନ ପରାପ୍ରେ ପଙ୍କରେ
ଭୀଷ୍ମ ସୈନ୍ୟ ରହିଲେ ପାଣ୍ଡବଙ୍କ ଶରେ ।
ଶଲ୍ୟ ତାହା ଦେଖିଣ ଧନୁ କରେ କମ୍ପି
ବାହାରିଲେ ଯୁଦ୍ଧକୁ ନିଶକୁ ଆଉଁସି ।
ଡାକିଲେ ହେ ବାବୁ ଭଣଜାମାନେ ଶୁଣ
ନ ମରି ସୈନ୍ୟ ମୋତେ ଦେଖା ବାହୁଟାଣ
ମୂର୍ଖ ତ ବୁଢ଼ାଟାଏ ଆସିଛି ଯୁଦ୍ଧକୁ
ପାରିଲେ ମତେ ମାର ନ କର ହେଳାକୁ ।
ମାଣ୍ଡବେ ଆଗୁଁ ଜୟକାମୀ ହୋଇଥିଲେ
ଶଲ୍ୟଙ୍କର ଦେହକୁ ନାରାଚ ବର୍ଷିଲେ ।
ଶଲ୍ୟ ତା ନ ସହିଣ ତୀକ୍ଷ୍ଣ ମାରଗଣ—
ଗଣ ବର୍ଷି ନେଲେ ପାଣ୍ଡବ ସୈନ୍ୟ-ପ୍ରାଣ ।
ସେକାଳେ ହେ ନର-ନାୟକ ଉତପାତ
ହୁଅନ୍ତେ ହେଲା ପାଣୀଙ୍କର ଭୟ ଜାତ ।
ନଗ ଭୂଲେ ନଗର ଥରଥର ହେଲେ
ପଡ଼ିଲା ପରି ମହୀ ପ୍ରତେ ହେଲା ଚଳେ ।
ସୂର୍ଯ୍ୟମଣ୍ଡଳକୁ ଯେ ବାଜନ୍ତି ଉଲ୍କା
ଚଳେ ପଡ଼ ହେଲା ସବୁରି ହୃଦେ ଧକା ।
ମନୁଷ ମୃଗ ପକ୍ଷୀ ଦକ୍ଷିଣକୁ ଯାଇ
ରହିଲେ ଭୀଷ୍ମ ସୈନ୍ୟଙ୍କର ବାଡ଼ ହୋଇ ।
ଏଣୁ ଭୀଷ୍ମ ସେନାଏ ସୁମରି କପାଳ
ମରିବା ଆଜ ବୋଲି ହୋଇଲେ ବିକଳ ।
ପୁଣି ଭୀଷ୍ମର ସୈନ୍ୟଧାଳ ଧୈର୍ଯ୍ୟ ହୋଇ
ପାଣ୍ଡବ-ସୈନ୍ୟ ସଙ୍ଗେ ଯୁଝିଲେ ହେଷାଇ ।
ଶଲ୍ୟଙ୍କର କାଣ୍ଡ-ଭ୍ରମର ଯୋଦ୍ଧାଦେହ—
ପଦ୍ମ-ରକ୍ତ-ମଧୁ ପିଇଲେ କରି ସ୍ନେହ ।
ଶରଭ ପରି ପୁଣି ନଭେ କରି ଗତି
ରଚିଲେ ପାଣ୍ଡୁ ସୈନ୍ୟ-ସିଂହର ବିପତ୍ତି ।
ଶଲ୍ୟଙ୍କ ବାଣେ ନଥୀ ହାଣ୍ଡି ପାଇ ପୀଡ଼ା
ପଳାଇଲେ ଯୁଦ୍ଧ ଦାଣ୍ଡରେ ନୋହି ଛିଡ଼ା ।
ଏରୂପେ ଶଲ୍ୟ ବଳେ ହୋଇ ସୈନ୍ୟ ଦଗ୍ଧ
ଆଶ୍ରେ କଲେ ଯାଇ ପାଣ୍ଡବ-ନରସାଇଁ ।
ଯୁଧିଷ୍ଠିର-ବାଣ-ଅଙ୍କୁଶେ ଶଲ୍ୟ-ଦ୍ୱିପ
ହୃଦେ ବଢ଼ିଥିବା ପ୍ରତାପ କଲେ ଲୋପ ।
ଶଲ୍ୟ ତାହା ନ ସହି ବର୍ଷି କାଣ୍ଡ ତିଏ
ଫଟାଇଲେ ଯୁଧିଷ୍ଠିରଙ୍କ ଗଣ୍ଡ ଦ୍ୱୟେ ।
ସେ ଘାଏ ପାଣ୍ଡବଙ୍କ ରାଜା ପାଇ ଲଜ୍ଜା
ବର୍ଷିଲ ଆଜ୍ଞା ମାମୁ ବୋଲି କଲେ ପୂଜା ।
ତାହା ଦେଖି ଭୀମ ବର୍ଷିଲେ ସପ୍ତ ଶର
ସହଦେବ ନକୁଳ ବର୍ଷିଲେ ପଦର ।
ଦ୍ରୁପଦଙ୍କ ପୁଏ ଉଡ଼ଣ ଧନୁମୁଠି
ବର୍ଷିଲେ ଶଲ୍ୟ-ଦେହେ ଯୋଧେ ଜଳଜଠି ।
କୃତବର୍ମା କୃପ ଶଲ୍ୟଙ୍କ ହୀନବଳ
ଦେଖି ଯୁଦ୍ଧେ ଧାଇଁଲେ କରିବାକୁ ମେଳ ।

ଉଲୂକଙ୍କୁ ଘେନ ଶକୁନି ଅଶ୍ୱତ୍ଥାମା
ଯୁଝିବାକୁ ଧାଇଁଲେ କରଣ ଗାରମା ।
କୃତବର୍ମା ଭୀମଙ୍କୁ ବନ୍ଧ ଛନ କାଣ୍ଡ
ଗରଜନରେ ମଣ୍ଡିଦେଲେ ଯୁଦ୍ଧଦାଣ୍ଡ ।
କୃପ କ୍ରୋଧ ହୋଇଣ ଧୃଷ୍ଟଦ୍ୟୁମ୍ନଙ୍କୁ
ମାରଗଲେ ରଚ ଯୁଦ୍ଧରେ ଆଚଙ୍କୁ ।
ଦ୍ରୌପଦେୟଙ୍କର ଭୁଲରେ ଯେ ଶକୁନି
ଯୁଦ୍ଧ କଲେ ଧନୁଶର କରରେ ଘେନ ।
ନକୁଳ ସହଦେବ ଭୁଲେ ଦ୍ରୋଣ ବେଟା।
ଯୁଦ୍ଧ କରିବାପାଇଁ କଲେ ରଥ ଯୋଟା ।
ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଡାକ
କାଛି ଶର ବନ୍ଧଲେ କରେ ଧନୁ ଟେକ
ଏହିରୂପେ ପାଣ୍ଡବ ସୈନ୍ୟର ଭୂମ୍ବର
ଦ୍ୱନ୍ଦଯୁଦ୍ଧ ହେଲା ଜାଣ ହେ ନରବର ।
କୃତବର୍ମା ଭୀମଙ୍କ ସ୍ୱର ଘୋଡ଼ା ମାର
କାହିଁ ଯିବ ବୋଲି ଧଇଲେ ନଣ ମୋଡ଼ି ।
ଭୀମ ଗଦାଧର ଗଦାକୁ ଧର ସ୍ୱଚ୍ଛନ୍ଦେ
କାଳଦେବ ପର ଧାଇଁଲେ ଯୁଦ୍ଧଦାଣ୍ଡେ ।
ଶଲ୍ୟ ସହଦେବଙ୍କ ସ୍ୱରେତ ଘୋଡ଼ାକୁ
ଦେଖାଇଲେ ନେଇ ଯମଙ୍କ ନଗରକୁ ।
ଘୋଡ଼ା ହତ ଦେଖିଣ ଧରି ଖଣ୍ଡା ଫଳା
କାଟିଲେ ସହଦେବ ଶଲ୍ୟପୁତ୍ର-ଗଳା ।
ଅସମ୍ଭ୍ରାନ୍ତ ହୋଇଣ କୃପ ଧୃଷ୍ଟଦ୍ୟୁମ୍ନ
କଲେ ଆହେ ନୃପ-ମଣ୍ଡନ ଆୟୋଧନ ।
ଦ୍ରୌପଦେୟ ଗଣେ ଜଣକେ ଦଶ ଦଶ
ବନ୍ଧିଲେ ଅଶ୍ୱତ୍ଥାମା ଦ୍ୱିଜକୁଳ-ଈଶ ।
ଭୀମଙ୍କର ସ୍ୱର ଘୋଡ଼ାକୁ ସ୍ୱରକାଣ୍ଡେ
ଅଶ୍ୱତ୍ଥାମା ବଗିଦେଲେ ଯମ-ଦାଣ୍ଡେ ।
ଭୀମଙ୍କ ଗଦାଘାତେ କୃତବର୍ମାଙ୍କର
ସ୍ୱରଘୋଡ଼ା ଦେଖିଲେ ଯମଙ୍କ ନଗର ।
ରଥରୁ ଡେଇଁ ପଡ଼ି କୃତବର୍ମା ବଳୀ
ପଳାଇଲେ ଡରି ସେ ଲାଜକୁ ନ ଭାଳି ।
ଶଲ୍ୟ କ୍ରୋଧେ ନେତ୍ରକୁ ତଙ୍ଗ କରିଦେଲେ
ପାଣ୍ଡବ-ଦଣ୍ଡଧାରି-ପୀଡ଼ାକୁ ରଚିଲେ ।
ଭୀମ କ୍ରୋଧ ହୋଇ କାମୋଡ଼ ଦନ୍ତପାଟି
କରତଳେ ଟେକିଣ ଧଇଲେ ଗଦାଟି ।

ଯମଦାଣ୍ଡ ଯେ କାଳରାତ୍ରିର ପରାଏ ।
ନୟନକୁ ଦିଶିଲା ସେ ଗଦାଟି ସପ୍ରେ ।
ସହଜେ ତ ସୁନାରେ ହୋଇଛି ମଣ୍ଡନ
ଏଣୁ ବଧ୍ୟ-ପ୍ରଭାକରୁ କରୁଛି ଖଣ୍ଡନ ।
ମେରୁ ପରି ଗରବ, ବଜ୍ର ପରି ଆଣ୍ଠ
ଦେଖି ମନେ କଲା ତା ପର-ଜନ-ଆଣ୍ଠ ।
ରକତ-ବାସକୁ-ତ ବୋଳ ହୋଇଅଛି
ସବୁରି ନୟନକୁ ଭୟ ଦେଖାଉଛି ।
ଯମ ସିଂହ ପରାୟେ ବନ୍ଧଣ ବରନ
କଲା ମହାରଥୀଙ୍କ ମନକୁ ଦମନ ।
କାତଛଡ଼ା ସର୍ପ ପରାୟେ ଶୋଭା ବହି
ଭୀମ-କର-ପଦ୍ମରେ ଗଦାବର ରହି ।
ପାଣ୍ଡୁ ସୈନ୍ୟସାଗର ବଢ଼ାଇ ଆନନ୍ଦ
ଭୂମ୍ବ ସୈନ୍ୟସାଗର କର୍ମ କଲା ବନ୍ଦ୍ୟ ।
ପୂର୍ବେ ଭୀମ ଗୁହ୍ୟଳବକ ସେ ଗଦାରେ
ପଦା ତ କରିଥିଲେ ସମର-ଦାଣ୍ଡରେ ।
ଆହେ ନୃପବର ସେ ଗଦାବାଡ଼ି ପାଇ
ଶଲ୍ୟଙ୍କ ସ୍ୱରଘୋଡ଼ା ଶୋଇଗଲେ ଭୂଇଁ ।
ଶଲ୍ୟ ଘୋଡ଼ାଙ୍କ ହତ ଦେଖିଣ ଭୀମଙ୍କୁ
ତୋମରଟିଏ ଫିଙ୍ଗି କଲେ ଗର୍ଜନକୁ ।
ଶଲ୍ୟ-ହାତୁ ଫଟି ତୋମର ଭୀମ-ଉରେ
ଗଳକରି ରହିଲା ଦେଖିଲୁଁ ନେତ୍ରରେ ।
ଭୀମ ସେ ତୋମରକୁ ଦେହରୁ କାଢ଼ିଲେ
ଶଲ୍ୟଙ୍କ ସାରଥିକ ଉଞ୍ଚାଇ ଫିଙ୍ଗିଲେ ।
ସେହି ଘାତରେ ଶଲ୍ୟ ସାରଥି ରକତ
ବାନ୍ତ କରି ମହୀମଧ୍ୟକୁ ହେଲା ଗତ ।
ଶଲ୍ୟ ଭୀମସେନଙ୍କ ପରାକ୍ରମ ଦେଖି
ଦୁଃଖିତ ହୋଇ ବୁଜି ଦେଲେ ବେନି ଆଖି ।
ଗଦା କରେ ଧରିଣ ପ୍ରାଣର ବଳକେ
ରଥୁଁ ଡେଇଁ ଛିଡ଼ା ହୋଇଲେ ଆସି ତଳେ
ପାଣ୍ଡବ ଭୀମଙ୍କର ଦେଖି ପରାକ୍ରମ
ପ୍ରଶଂସିଲେ ସ୍ତୁତି ଦେଇଣ ସେ ସଂଗ୍ରାମ ।
ପୁଣି ଧୈର୍ଯ୍ୟ ହୋଇଣ ଶଲ୍ୟ ମହାବଳୀ
ଅଚଳ ପରି ରହି ଦୁଇ ନେତ୍ର ଡାଳି ।
ଭୀମଙ୍କୁ ଅନାଇଣ ଚଉରେ ବଗଗ
ବନ୍ଧଣ ବୋଇଲେ ଲଙ୍ଘିବ ଭୂମ୍ବ ଉଦ୍ଧ ।

କାଳଅଗ୍ନି ପରି ତେଜରେ ସେହି କାଳେ
ଜଳନ୍ତେ ଶଲ୍ୟ ହେ ଦେଖିଲୁଁ ସମସ୍ତଲୋକେ ।
ପାଶହସ୍ତେ ଅନ୍ତକ ସଶୃଙ୍ଗ କୈଳାସ
ଶୂଳ ଧରିଥିବା ମହେଶ୍ୱର ସଦୃଶ ।
ହୋଇ ଯୁଦ୍ଧଦାଣ୍ଡେରେ ଶଲ୍ୟ ରହିଥିଲେ
ତେବେହେଲେ ଭୀମ ତାହାଙ୍କୁ ଯୁଦ୍ଧ କଲେ ।
ସେଉଁରୂପେ ସମସ୍ତେ ତା କହିବ ବତାଇ
ଶୁଣ ମୋହଠାରୁ ହୃଦୟ ଲଗେ ଦେଇ ।
ଯମଦଣ୍ଡପରି ଟେକିଣ ଗଦାବର
ଶଲ୍ୟଙ୍କ ଉପରେ ପିଟିଲେ ବୃକୋଦର ।
ଭୀମ ଶଲ୍ୟ-ଦେହେ ପିଟନ୍ତି ଗଦା ନେଇ
ପାଣ୍ଡବ-ସେନାଯାକ ଗରଜି ନରସାଇଁ ।
ଶଙ୍ଖ ଭେରୀ ମୃଦଙ୍ଗମାନ ବଜାଇଲେ
ମରିଲେ ଆଜ ଶଲ୍ୟ ବୋଲି ମନେ କଲେ ।
କୁରୁଏ ଭାଳିଲେ ଶଲ୍ୟ ତ ବଳୀୟାର ।
କରିବେ ଯୁଦ୍ଧେ ଭୀମସେନଙ୍କୁ ସଂହାର ।
ଶଲ୍ୟ ବିନା ଆନ ଭୀମଙ୍କ ଗଦାବେଗ
ସହି ନ ପାରିବେ ରାଜନ ମହାଭାଗ ।
ସେରୂପରେ ଶଲ୍ୟଙ୍କ ଗଦା ଘାତ ଭୀମ
ବିନା ଆନ ପାଇଲେ ଛାଡ଼ିବ ସଂଗ୍ରାମ ।
ବୃଷଭ ପରି ଭୀମ ଶଲ୍ୟ ଗରଜିଲେ
କରିବାକୁ ଯୁଦ୍ଧ ମଣ୍ଡଳ ସରଜିଲେ ।
ଶଲ୍ୟ ଭୀମ ଦୁହିଙ୍କ ଗଦା ପିଟାପିଟି
ସମାନ ହୋଇ ହେଲା ଦେଖିଲା ନେତ୍ରଟି ।
ଶଲ୍ୟ ଭୀମ ଦୁହିଙ୍କ ଗଦାରେଟି ସୁନା—
ଭୂଷଣ ହୋଇଥିଲା ଆହେ ମହାମନା ।
ଏଣୁ ବିଦ୍ୟୁ ପରି ଚହଟି ରଣ-ଦାଣ୍ଡେ
ବଜୁଳିର ପ୍ରଭାକୁ ଲଭାଇଲା ଖଣ୍ଡେ ।
ଭୀମ ଶଲ୍ୟଙ୍କ ଗଦା ବଜାବଜି ହୋଇ
ଅଗ୍ନିକଣା ଜାତ କରିଲା ନରସାଇଁ ।
ମତ୍ତହସ୍ତୀ ଯୋଡ଼ାଏ ଯୁଝିଲା ପରାଏ
ଗଦାଯୁଦ୍ଧ କଲେ ସେ ଦୁହେଁ ଅତିଶୟେ ।
ଗଦାଘାତେ ଦୁହେଁ ଘାଉଆ ହୋଇଥିଲେ
ଫୁଟିଥିଲା କିଂଶୁକ ଶୋଭାକୁ ବହିଲେ ।
ଅଚଳ ପରି ସେ ବଳିଷ୍ଠ ଯୁଦ୍ଧେ ହୋଇ
ନ ଟଳିଲେ ତିଳେହେଁ ଜାଣ ନରସାଇଁ ।
ବଜ୍ରପରି ଦୁହିଙ୍କ ଗଦା ଗରଜନ
ଶବ୍ଦ କରି ସ୍ତବ୍ଧ କଲା ସବୁ କର୍ଣ୍ଣ ।
ଗଦା ଧରି ମାରଣ କଲାବେଳେ ସମସ୍ତେ
ଦେଖି ନ ପାରିଲୁଁ ଟି ସେ ଦୁହିଙ୍କ କାୟେ ।
ପୁଣି ଯେ ଆଗକୁ ପଛଣ୍ଡ ଆଠ ଆସି
ପିଟାପିଟି ହୋଇଲେ ହୋଇ ମିଶାମିଶି ।
ଇନ୍ଦ୍ରଧ୍ୱଜ ପରି ତ ଦୁଇ ମହାରଥୀ
ରହି ଯୁଦ୍ଧ କଲେ ନ ଧରି ହୃଦେ ବ୍ୟଥା ।
ଦୁହିଙ୍କ ମର୍ମେ ତ କାଟିଲା ଗଦାବାଡ଼ି
ଏଣୁ ଦୁହେଁ ପଡ଼ିଲେ ତଳରେ ଅଜାଡ଼ି ।
ତାହା ଦେଖିଣ ତୁମ୍ଭ ସଙ୍ଗର ସେନାଏ
କି ହେଲା ବୋଲି ଡକା ଦେଲେ ଅତିଶୟେ
କୃପ ସେ ସମୟେ ଶଲ୍ୟଙ୍କ ରଥ ଦେଇ
ବସାଇ ଆନଠାକୁ ନେଲେ ରଥ ବାହି ।
ଭୀମ ଚେତା ପାଇଣ ଡାକିଲେ ଶଲ୍ୟଙ୍କୁ
ନ ପଳାଇ ମାମୁଁ ହେ ଆସ ଯୁଝିବାକୁ ।
ତୁମ୍ଭର ବେଳେ ନାନା ବାଦ୍ୟ ବଜାଇଲେ
ପାଣ୍ଡବସେନା ଭୁଲେ ଯୁଦ୍ଧ ଆରମ୍ଭିଲେ ।
ଦୁର୍ଯ୍ୟୋଧନରାଜଙ୍କୁ ଆଗରେ ଚଳାଇ
ବାହାରିଲେ ସେନାଏ ଯୁଦ୍ଧରେ ମେଳାଇ ।
ପାଣ୍ଡବେ ଦୁର୍ଯ୍ୟୋଧନ ଆସିବାର ଜାଣି
ଦୁର୍ଯ୍ୟୋଧନଠାକୁ ଧାଇଁଲେ ଧନୁ ଟାଣି ।
ତୁମ୍ଭର ସୁତ ଦୁର୍ଯ୍ୟୋଧନ ଧରି ପ୍ରାସ
ପ୍ରହାରିଲେ ଚେକିତାନ ହୃଦୟ-ଦେଶ ।
ସେ ଘାଏ ଚେକିତାନ ପ୍ରାଣଟିକ ଛାଡ଼ି
ରଥତଳରେ ପଡ଼ି ଥରେ ଗଲେ ଗଡ଼ି ।
ଚେକିତାନ ମରଣ ଦେଖିଣ ପାଣ୍ଡବେ
ବାରମ୍ବାର ଶର ବନ୍ଧିଲେ କ୍ରୋଧେ ସର୍ବେ ।
କୃପ, କୃତବରମା, ଶକୁନି, ଶଲ୍ୟଙ୍କୁ
ଆଗେ କରି ବନ୍ଧିଲେ ପାଣ୍ଡବରାଜାଙ୍କୁ ।
ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନ ଭୁଲେ ଯୁଦ୍ଧ
କଲେ ହୃଦ ମଧ୍ୟରେ ବହି ଅତି କ୍ରୋଧ ।
ସହସ୍ର ତିନି ରଥୀ ଦ୍ରୋଣସୁତ ସଙ୍ଗେ
ଥାଇ ପାଣ୍ଡବଙ୍କୁ ଯୁଝିଲେ ନାନା ରଙ୍ଗେ ।
ପାଣ୍ଡବସୈନ୍ୟ ସରେ ହଂସ ପରି ହୋଇ
ତୁମ୍ଭର ରଥୀମାନେ ପଶିଲେ ଧସାଇ ।

ଏହି ସକାଶରୁ ପ୍ରବର୍ତ୍ତି ମହାଯୁଦ୍ଧ
ଅନ୍ୟୋନ୍ୟରେ ଯାଇଣ କରାଇଲେ ବଧ ।
ଦୁଇ ସଇନ ପାଦଘାତେ ଉଡ଼ି ଧୂଳି
ରହିଲେ ମାଡ଼ିକରି ସୂର୍ଯ୍ୟଙ୍କମଣ୍ଡଳୀ ।
ଏହି ସକାଶୁଁ ନାମ ଗୋତ୍ର ଉଚ୍ଚାରଣ
ଦୁଇସୈନ୍ୟ ହଣାହଣି ହୋଇଲେ ଦାରୁଣ ।
ପୁଣି ଯୋଦ୍ଧାଙ୍କର ରକତେ ସେହି ଧୂଳି
ରହିଲା ମହୀରେ କାଦୁଅ ହୋଇ ଦଳି ।
ଭୂମି ତାଙ୍କ ଲୋକେ ସେ ଯୁଦ୍ଧେ ମୋଡ଼ି ମୁଖ
ନ ଭାଜିଲେ କେହି ହେ ଜାଣ ନରଶିଖ ।
ସ୍ୱର୍ଗକାମୀ ହୋଇ ଯୋଦ୍ଧାଏ ଅବଜ୍ଞିଲେ
ହାଣ ମାର ଧର ରେ ବୋଇଲେ ବଚନେ ।
ସେକାଳେ ମହୀପତି ଶଲ୍ୟ ମହାଯଶା
ଯୁଧିଷ୍ଠିର ଦେହେ ପେଷିଲେ ମୂନଘସା ।
ଯୁଧିଷ୍ଠିରରାଜା ଶଲ୍ୟଙ୍କ ମରମକୁ
ଦେଖାଇ ବିନ୍ଧିଲେ ଚଉଦ ନାରାଚକୁ ।
ଶଲ୍ୟ ଯୁଧିଷ୍ଠିରଙ୍କ ଦେହକୁ ଅନେକ
ବାଣ ବିନ୍ଧିଲେ ଶୁଣ ହସ୍ତିନା-ନାୟକ ।
ଯୁଧିଷ୍ଠିର କ୍ରୋଧରେ ଶଲ୍ୟଙ୍କୁ ବିନ୍ଧିଲେ
ନବ ଶରେ ସାରଥି-ପ୍ରାଣ ଘେନଗଲେ ।
ଚଉଷଠି ଏତୁର ବିନ୍ଧିଣ ମାର୍ଗଣ
ଦ୍ରୁମସେନ ଚନ୍ଦ୍ରସେନଙ୍କ ନେଲେ ପ୍ରାଣ ।
ଶଲ୍ୟ ତା ନ ସହି ପଚିଶି ଚେଦି-ପ୍ରାଣ
ଘେନଗଲେ ବିନ୍ଧି ଉତ୍ତମ ମାରଗଣ ।
ଏ ବାହାରେ ଭୀମଙ୍କୁ ସାତ, ସାତ୍ୟକିଙ୍କି
ପଚିଶି ବିନ୍ଧିଲେ ଓଷ୍ଠାର ଧନୁଟିକ ।
ନକୁଳ-ସହଦେବ-ଦେହେ ଶଏ ଶର
ଧନୁରେ ଯୋଖିଣ ବିନ୍ଧିଲେ ଶଲ୍ୟବୀର ।
ଏରୂପେ ବାଣ ବିନ୍ଧି ଯୁଦ୍ଧଭାଣ୍ଡ ଗୋଟି
ପୂରାଇଦେଲେ ମଦ୍ର-ନରେଶ ଚହଟି ।
ଯୁଧିଷ୍ଠିର ତାହା ସେ ସହି ନ ପାରିଲେ ।
ଭଲ୍ଲକାଣ୍ଡେ ଶଲ୍ୟଙ୍କ ଧନୁକୁ କାଟିଲେ ।
ଧ୍ୱଜକଟା ଦେଖିଣ ମଦ୍ରନୃପ-ବେଟା
ଯୁଝିଲେ ଗ୍ରୁଡ଼ଦେଇ କରି ଓକ୍ରୋଧଟା ।
ସାତ୍ୟକି ଭୀମ ନକୁଳଙ୍କୁ ପାଞ୍ଚ ପାଞ୍ଚ
ବିନ୍ଧି ଯୁଧିଷ୍ଠିରଙ୍କୁ ବିନ୍ଧିଲେ ନାରାଚ ।

ଶଲ୍ୟ ଯୁଧିଷ୍ଠିରଙ୍କ ରଥ ଯିବା ଦାଣ୍ଡ
ବାନ୍ଧିଦେଲେ ରଜନ ବରଗିଣ କାଣ୍ଡ ।
ଯୁଧିଷ୍ଠିର ବାଣରେ ମହାପୀଡ଼ା ପାଇ
ହୀନବଳ ହୋଇ ରହିଲେ ନରସାଇଁ ।
ଭୀମ ଶଲ୍ୟ ଦେହକୁ ଆଠୋଟି ମାର୍ଗଣ
ବାଛିକରି ବିନ୍ଧିଲେ ନେବାକୁ ପରାଣ ।
ଶତକାଣ୍ଡ ବିନ୍ଧିଣ ସାତ୍ୟକି ଶଲ୍ୟଙ୍କୁ
ଗରଜି ପୂରାଇଲେ ଆକାଶ-ମାର୍ଗକୁ ।
ନକୁଳ ପାଞ୍ଚ ସହଦେବ ବିନ୍ଧି ବାର
ବୋଇଲେ ଆଜ ମାମୁ ଯାଅ ଯମପୁର ।
ଶଲ୍ୟଙ୍କ ସାରଥିକ ପୁଣ ତିନ କାଣ୍ଡ
ବିନ୍ଧିଣ ସହଦେବ ଗଳାଇଲେ ପିଣ୍ଡ ।
ଭୀମ ଯେ ତେସ୍ତର; ଷାଠିଏ ଯୁଧିଷ୍ଠିର
ସାତ୍ୟକି ନବ ଶର କରିଣ ପ୍ରହାର ।
ବୋଇଲେ ଆହେ ଶଲ୍ୟ ଆମ୍ଭ ମାମୁ ହୋଇ
ପରପାଇଁ ମରି ଶୋଇବ ରଣ-ଭୂଇଁ ।
ଶଲ୍ୟ ସେ କାଣ୍ଡରେ ମୂର୍ଚ୍ଛାହୋଇ ରଥେ
ବସିଲେ ମେରୁ-ନଦୀ-ମଣ୍ଡା ଗିରି ପ୍ରାୟେ ।
ଶଲ୍ୟ ପାଣ୍ଡୁସୁତଙ୍କୁ ପାଞ୍ଚ ପାଞ୍ଚ ପାଞ୍ଚ
ବିନ୍ଧିଲେ ଧନୁର୍ଗୁଣ ମଧ୍ୟକୁ ଆମଞ୍ଚି ।
ଏ ବାହାରେ ଭଲ୍ଲକାଣ୍ଡରେ ଯୁଧିଷ୍ଠିର
ଧନୁକୁ କାଟିଦେଲେ ମଦ୍ରଦେଶେଶ୍ୱର ।
ଯୁଧିଷ୍ଠିରରାଜା ଧରିଣ ଆନ ଧନୁ
ଆଚ୍ଛାଦିଲେ ଶରରେ ଶଲ୍ୟଙ୍କର ତନୁ ।
ଶଲ୍ୟ ଯୁଧିଷ୍ଠିରେ ଦଶୋଟି କାଣ୍ଡ ବାଛି
ବିନ୍ଧିଦେଲେ ରଜନ ଓକ୍ରୋଧ ମୂରୁଛି ।
ସାତ୍ୟକି କ୍ରୋଧ ହୋଇ ଶଲ୍ୟଙ୍କୁ ମାର୍ଗଣ
ଗଣରେ ଘୋଡ଼ାଇଲେ ଜାଣ ନରରାଣ ।
ଶଲ୍ୟ କ୍ଷୁରକାଣ୍ଡେ ସାତ୍ୟକି ଧନୁଟିକ
ମୁଠିଠାରୁ କରିଦେଲେ ଯେ ଦୁଇ ଟିକ ।
ଭୀମ ଆଦି ବୀରମାନଙ୍କୁ ତିନି ତିନି
ବିନ୍ଧିଲେ ଯୁଦ୍ଧଭାଣ୍ଡେ କ୍ରୋଧ ଶଲ୍ୟ ମାମା ।
ମନେ ଭାବିଣ ଶଲ୍ୟନୃପଙ୍କ ଅଭାବ
ତୋମର ଫିଙ୍ଗିଦେଲେ ସମରେ ମାଧବ ।
ଭୀମସେନ ନକୁଳ ନାରାଚ ଶକତି
ସହଦେବ ଗଦାକୁ ଫିଙ୍ଗିଲେ ଝଟତି ।

ଯୁଧିଷ୍ଠିର ଶତଘ୍ନୀ ବିନ୍ଧିଣ ଶଲ୍ୟଙ୍କୁ
ଡାକିଲେ ଆହେ ମାମୁ ଦେଖା ବିକ୍ରମକୁ ।
ଶଲ୍ୟ ସାତ୍ୟକିଙ୍କର ତୋମରକୁ ଭଲ—
କାଣ୍ଡରେ ଦୁଇଖଣ୍ଡ କଲେ, ସେ ତ ବଳୀ ।
ଭୀମଙ୍କ ପେଷିବାର ନାରାଚକୁ କାଣ୍ଡ
ଦୁଇଖଣ୍ଡ କଲେ, ଦେଖିଲୁଁ ଯୁଦ୍ଧଦାଣ୍ଡେ ।
ନକୁଳ ସହଦେବ ଶକତି ଗଦାକୁ
ନିବାରି ପକାଇଲେ ବିନ୍ଧି ମାର୍ଗଣକୁ ।
କୋଡ଼ିଏ ଶରେ ଯୁଧିଷ୍ଠିରଙ୍କ ଶତଘ୍ନୀକି
କାଟିଣ ପକାଇଲେ ଫୁଲଇ ନେତ୍ରିକ ।
ଆନ ଧନୁକୁ ଧରି ମଧ୍‌ବଂଶସୂନୁ
ଦୁଇକାଣ୍ଡ ବିନ୍ଧିଲେ ହୃଦେ ଧରି ମନ୍ୟୁ ।
ଶଲ୍ୟ ସମସ୍ତ ପାଣ୍ଡବଙ୍କୁ ଦଶ ଦଶ
ଶର ବିନ୍ଧିଣ ଆଉଁଟିଲେ ଦୁଇ ନିଶ ।
ଶଲ୍ୟଙ୍କ ଆଗେ ଯୁଦ୍ଧ-ଦାଣ୍ଡରେ ପାଣ୍ଡବେ
ଯୋଡି ନ ପାରିଲେଟି ଗୋଟିହୋଇ ସର୍ବେ ।
ଦୁର୍ଯ୍ୟୋଧନ ଶଲ୍ୟଙ୍କ ପରାକ୍ରମ ଦେଖି
ଆନନ୍ଦ-ରସେ ମଜ୍ଜି ବୁଜିଲେଟି ଆଖି ।
ତାହା ସହି ନ ପାରି ମହାବାହୁ ଭୀମ
ପ୍ରାଣ ଛାଡ଼ିଣ କଲେ ଶଲ୍ୟଙ୍କୁ ସଂଗ୍ରାମ ।
ନକୁଳ ସହଦେବ ଶଲ୍ୟ ଦୁଇପାଖେ
ରହି ପୀଡ଼ା ଦେଲେ ତାହାଙ୍କୁ ଶର-ମୁଖେ ।
ପୂର୍ବୁଁ ଚକ୍ରରକ୍ଷା ଦୁହିଁଙ୍କି ଶଲ୍ୟଙ୍କର
ଯୁଧିଷ୍ଠିର ତ କରିଥିଲେ ହେ ସଂହାର ।
ସେ ମଲ ଉତ୍ତାରୁ ତ ଆନ ଚକ୍ରରକ୍ଷା
କଲେ ଯୁଦ୍ଧଦାଣ୍ଡରେ ଶଲ୍ୟ କରି କକ୍ଷା ।
ତାହାଙ୍କୁ ମଧ୍ୟ ଯୁଧିଷ୍ଠିର ନରମଣି
କ୍ଷୁରକାଣ୍ଡ ପେଷିଣ ପକାଇଲେ ହାଣି ।
ଚକ୍ରରକ୍ଷା କରନ୍ତେ କ୍ରୋଧେ ମଦ୍ରରାଜ
ସରଜିଲେ ଯେ ମହାମାର୍ଗଣ-ସମାଜ ।
ଯୁଧିଷ୍ଠିର ନିଜ ସୈନ୍ୟଙ୍କ ପୀଡ଼ା ଦେଖି
ଶଲ୍ୟେ ମାରିବାକୁ ଭାବିଲେ ହୋଇ ଦୁଃଖୀ ।
ପାଣ୍ଡୁ-ତନୟେ ଘେନକରି ରଥ ନାଗ
ଶଲ୍ୟଙ୍କର ରଚିଲେ ଯୁଦ୍ଧେ ପୀଡ଼ାଭାର ।
ପାଣ୍ଡବେ ତ ବାଣ ବିନ୍ଧିଲେ କୋଟି କୋଟି
ଶଲ୍ୟ ତାହାକୁ ବାଣେ ପକାଇଲେ କାଟି ।

ଶଲଭପନ୍ତି ପରି ଶଲ୍ୟ-ଶରରାଜି
ବାହାରିଲେ ସମର-ଦାଣ୍ଡରେ ଗରଜି ।
ଶଲ୍ୟଙ୍କର କାଣ୍ଡରେ ସୂର୍ଯ୍ୟଙ୍କ ମଣ୍ଡଳ
ଦେଖିଣ ନ ପାରିଲା କାହାରିଟି ଡୋଳ ।
ଶଲ୍ୟ ଶର ବିନ୍ଧିବା ଲାଘବକୁ ଦେଖି
ଦେବେ ମଧ୍ୟ ଆଶ୍ଚର୍ଯ୍ୟ ପାଇ ହେଲେ ଦୁଃଖୀ ।
ଶରେ କରି ଆଚ୍ଛନ୍ନ ପାଣ୍ଡବ ନୃବର
ସିଂହ ପରି ସଞ୍ଚାରି କଲେ ମଦ୍ରେଶ୍ୱର ।
ପାଣ୍ଡବଙ୍କର ଯେତେ ଥିଲେ ମହାରଥୀ
ଶଲ୍ୟଙ୍କର ଶରେ ସେକାଳେ ହେଲେ ବ୍ୟଥୀ ।
ତେବେ ହେଲେ ପାଣ୍ଡବେ ନ ଛାଡ଼ି ଶଲ୍ୟଙ୍କୁ
ବିନ୍ଧିଲେ ବାଛି ବାଛି ଉତ୍ତମ ବାଣକୁ ।
ଏହିକାଳେ ଅର୍ଜ୍ଜୁନ ଅଶ୍ୱତ୍ଥାମା-ରଣ
ହୋଇଲା ହେ ରାଜନ ହୋଇ ଅତି ଟାଣ ।
ପାର୍ଥ ଅଶ୍ୱତ୍ଥାମାକୁ ତିନି ବିନ୍ଧି ଦେଇ
ଆଉ ରଥୀଙ୍କୁ ବିନ୍ଧିଲେ ଯେ ଦୁଇ ଦୁଇ ।
ବାଙ୍କୁଳ ହେଲେ କାଣ୍ଡ ଭୂମ୍ନ ସୈନ୍ୟହେଣ୍ଡା
ଧାଇଁଲେ ପାର୍ଥଠାକୁ ଖୋର୍ପ୍ପ କାଢ଼ି ଖଣ୍ଡା ।
ଦ୍ରୋଣଙ୍କ ନନ୍ଦନକୁ ଆଗରେ ଚଳାଇ
ଅର୍ଜ୍ଜୁନଙ୍କୁ ବିନ୍ଧିଲେ ସମରେ ରୋଷାଇ ।
ପାର୍ଥ-ରଥାନଳ ଉଦ୍ଦେଶି ଭୂମ୍ନ ସୈନ୍ୟ
ଶର-ଶଲଭଟି ଧାଇଁଲେ ହେ ରାଜନ ।
ଏ ସକାଶୁଁ ଅର୍ଜ୍ଜୁନ କୃଷ୍ଣ ରଥ ଭୁଲେ
କାହାରି ନେତ୍ରକୁ ସେକାଳେ ନ ଦର୍ଶିଲେ ।
ଯେରୂପେ ଭୂମ୍ନ ଲୋକେ ଅର୍ଜ୍ଜୁନଙ୍କ ରଥ
ଘୋଡ଼ାଇ ନ ପାରେ କେ ତା ନରନାଥ ।
ଶର-ଉଲୁକାରେ ଅର୍ଜ୍ଜୁନ-ରଥାକାଶ
ମହାଶୋଭା ପାଇଲା ଜାଣ ହେ ନରେଶ ।
ପାର୍ଥ ତା ନ ସହି ଦେଖାଇ ବିକ୍ରମଟି
ସୈନ୍ୟଙ୍କ ଶରଯାକ ପକାଇଲେ କାଟି ।
ଭୂମ୍ନ ସନାଯାକର ନେତ୍ରାକୁ ଜୀବନ
ବିନ୍ଧିଲେ ଟାଣି ସେ ଗାଣ୍ଡିବ-ଶରାସନ ।
ସେ ସକାଶୁଁ ଝରିଆଉଛୁ ଶରବୃଷ୍ଟି
ହୋଇ ବୁଜାଇଲା ଭୂମ୍ନର ଯୋଦ୍ଧାଦୃଷ୍ଟି ।
ଅର୍ଜ୍ଜୁନଶର-ଜ୍ୱାଳା ଭୂମ୍ନ ସୈନ୍ୟ-ତୃଣ
ପୋଡ଼ି ପକାଇଲେ ଦେଖାଇ ବାହୁ-ଟାଣ ।

ଅନୁକର୍ଷ ଈଷା କବଚ ଧନୁ ଧ୍ୱଜ
ଅକ୍ଷ ଯୋକ୍ତ୍ର ପ୍ରତୋଦ କୁଣ୍ଡଳ ମୁଣ୍ଡ ଭୁଜ ।
ଅରଜୁନ କାଣ୍ଡରେ ଛୁଟନ୍ତି କୋଟି କୋଟି
ପୂରିଗଲା ଜାଣ ଭାରତଯୁଦ୍ଧ ସୃଷ୍ଟି ।
ରୁଦ୍ରଙ୍କ କ୍ରୀଡ଼ା ସ୍ଥାନ ପ୍ରାୟେ ଯୁଦ୍ଧସ୍ଥାନ
ହୋଇଲା କୁରୁ ସେନା ହୁଅନ୍ତେ ନିଧନ ।
ସହସ୍ର ଦୁଇ ରଥୀ ଅରଜୁନ ମାରି
ବସିଲେ ସେ ଦାଣ୍ଡେ ନିର୍ଧୂମ ଅଗ୍ନି ପରି ।
ଅଶ୍ୱତ୍ଥାମା ଦେଖି ଅର୍ଜ୍ଜୁନ ପରାକ୍ରମ
କଲେ ପୁଣି ଅର୍ଜ୍ଜୁନ ତୁଲରେ ସଂଗ୍ରାମ ।
ବରଷାକାଳ-ମେଘ ପ୍ରାୟେ ଶର-ଧାର
ରଚିଲେ ସେ ଦୁହେଁ ସମର-ଦାଣ୍ଡେ ଭୟ ।
ଅନ୍ୟୋନ୍ୟରେ ବୃଷଭ ପରି କାଣ୍ଡ-ଶୃଙ୍ଗେ
ମରାମରି ହେଲେ ସେ ମାତି ରଣରଙ୍ଗେ ।
ଅସ୍ତ୍ରଯୁଦ୍ଧ କଲେ ଅର୍ଜ୍ଜୁନ ଅଶ୍ୱତ୍ଥାମା
ଦେବାକୁ ନ ଦିଶିଲା କାହାକୁ ଉପମା ।
ଅରଜୁନଙ୍କୁ ବୀର ଶ୍ରୀକୃଷ୍ଣଙ୍କୁ ଦଶ
ବିନ୍ଧିଲେ ଧନୁ ଧରି ଦ୍ରୋଣଙ୍କର ଶିଷ୍ୟ ।
ଅରଜୁନ ତାହା ଦେଖିଣ ଧନୁ ଧରି
ଗୁରୁପୁତ୍ର ବୋଲିଣ କ୍ଷଣେ କ୍ଷମା କରି ।
ଅଶ୍ୱତ୍ଥାମା ସୂତ ଯେ ଅଶ୍ୱଙ୍କର ପ୍ରାଣ
ଛେଦି ପକାଇଲେ ବରଗି ମାରଗଣ ।
ଅଶ୍ୱତ୍ଥାମା-ଦେହକୁ ଅତି ମୃଦୁ କରି
ତିନିକାଣ୍ଡ ବିନ୍ଧ ଗାଣ୍ଡୀବ-ଧନୁଧାରୀ ।
ଅଶ୍ୱତ୍ଥାମା କ୍ରୋଧେ ତା ଜାଣି ନ ପାରିଲେ
ଅର୍ଜ୍ଜୁନଙ୍କୁ ମୁଷଳ ବେନି ଫିଙ୍ଗିଲେ ।
ଅର୍ଜ୍ଜୁନ ସେ ମୁଷଳ ଶରେ ସାତକାଣ୍ଡ
କରି ପକାଇଣ ଦେଲେ ସମର-ଦାଣ୍ଡ ।
ମୁଷଳ ଛିଡ଼ା ଦେଖି ପରିଘଟା ଧରି
ଫିଙ୍ଗିଲେ ଅଶ୍ୱତ୍ଥାମା ଯୁଦ୍ଧେ ରାଗ କରି ।
ଅର୍ଜ୍ଜୁନ ପାଞ୍ଚକାଣ୍ଡେ ପରିଘକୁ ନାଶ
କଲେ ଏବେ ଜାଣ ହେ ଗାନ୍ଧାରୀ-ବଳାଧ ।
ଅଶ୍ୱତ୍ଥାମା-ଦେହେ ଗାଣ୍ଡୀବଧନୁ ଟାଣି
ତିନିକାଣ୍ଡ ବିନ୍ଧିଲେ ପାର୍ଥ ବୀରମଣି ।
ଅର୍ଜ୍ଜୁନଙ୍କ କାଣ୍ଡକୁ ବହୁ ଚିଣ୍ଡି ବେଗେ
ରହିଲେ ଅଶ୍ୱତ୍ଥାମା ଯୁଦ୍ଧ ମହାବେଗେ ।

ସୁରଥ ସେକାଳେ ଶଙ୍ଖକୁ ଧରି ହାତେ
ଅଶ୍ୱତ୍ଥାମା ରଥ ରୁନ୍ଧିଲେ ଶରପଥେ ।
ସୁରଥର ବିକ୍ରମ ଦେଖି ଦ୍ରୋଣସୁତ
ଧନୁର୍ଗୁଣ ମାଜିଲେ ହୋଇ କ୍ରୋଧଚିତ୍ତ ।
ଭ୍ରୂକୁଟିକ ଯେ ଜିହ୍ୱାଗ୍ର କରି ଦେଇ
ବହେ ଗୁହାଁ ନାରାଚ ବିନ୍ଧିଲେ ରୋଷାଇ ।
ସେହି କାଣ୍ଡଟି ସର୍ପ ପରାୟେ ସୁରଥ—
ହୃଦ ବନେ ପଶିଣ ଗଲା ମହୀପଥ ।
ଯେରୂପେ ବଜ୍ର ବାଜି ଶୈଳ ପଡ଼େ ତଳେ
ରଥତଳେ ସେରୂପେ ସୁରଥ ପଡ଼ିଲେ ।
ସୁରଥକୁ ମାରିଣ ଅଶ୍ୱତ୍ଥାମା ବୀର
ଆରୋହିଲେ ସୁରଥଙ୍କ ରଥବର ।
ପୁଣି ଅର୍ଜ୍ଜୁନଙ୍କୁ ଓଗାଳି ଦ୍ରୋଣସୁତ
ଦେଖାଇଲେ ତାଙ୍କର ଯେତେ ଥିଲା ଅସ୍ତ୍ର ।
ସେହି ସମୟକୁ ଯେ ମସ୍ତକ ଉପର
ଆକାଶରେ ଆସି ରହିଲେ ଦିବାକର ।
ଇନ୍ଦ୍ର ପରି ଅର୍ଜ୍ଜୁନ ବିକ୍ରମ ଦେଖାଇ
ବାଣାଗ୍ନିରେ ସୈନ୍ୟଙ୍କୁ ପକାଇଲେ ଦହି ।
ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନ ହୋଇ ଭେଟ
ଶରେ ଗଳାଗଳି ହୋଇଲେ ରାୟେ ପେଟ ।
ସହସଙ୍ଖ୍ୟା ଦୁହେଁ ସର୍ଜି ଶରଧାର
ଦୁଇ ସେନା ଦେହକୁ ରକ୍ତେ କଲେ ଚୋର ।
ଦ୍ରୋଣଙ୍କୁ ମାରିଛନ୍ତି ଏ ଧୃଷ୍ଟଦ୍ୟୁମ୍ନ
ଭାବି ଦୁର୍ଯ୍ୟୋଧନ ବିନ୍ଧିଲେ ଦଶବାଣ ।
ସତୁରି କାଣ୍ଡ ଦୁର୍ଯ୍ୟୋଧନେ ରଣଦାଣ୍ଡେ
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ ଜାଣ ଅତି ଚଣ୍ଡେ ।
କୁରୁର ଅବଶେଷ ପୁତ୍ରେ ତାହା ଦେଖି
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନଙ୍କୁ ଶର ଯୋଖି ।
ଶସ୍ତ୍ର-ଲାଘବକୁ ଦେଖାଇ ଧୃଷ୍ଟଦ୍ୟୁମ୍ନ
କଲେ ଯୁଦ୍ଧ ଦାଣ୍ଡରେ ସୁଖରେ ଗମନ ।
ଶିଖଣ୍ଡୀ ପ୍ରଭଦ୍ରକ ବେନି କୃତବର୍ମା
କୃପ ତୁଳେ ଯୁଝିଲେ କରିଣ ଗରିମା ।
ଶଲ୍ୟ ଶରବୃଷ୍ଟି କରିଣ ପାଣ୍ଡବଙ୍କୁ
ଘୋଡ଼ାଇଲେ ରାଜନ ଦେଖାଇ ବଳକୁ ।
ଶଲ୍ୟ-କାଣ୍ଡରେ ପୀଡ଼ା ପାଇ ପାଣ୍ଡୁ ସୈନ୍ୟ
ପଳାଇବାକୁ ମନ କଲେ ଛନଛନ ।

ଯୁଧିଷ୍ଠିରଙ୍କର ପୀଡ଼ାକୁ ଦୃଷ୍ଟିକରି
ନକୁଳ ଶଲ୍ୟଙ୍କୁ ଯୁଝିଲେ ଧନୁ ଧରି ।
ଶଲ୍ୟଙ୍କର ହୃଦଦେଶକୁ ମୁନଘଷା—
ଦଶ ଶର ବିନ୍ଧିଲେ ନକୁଳ ସୁଯଶା ।
ନକୁଳଙ୍କୁ ଯେ ପାଞ୍ଚକାଣ୍ଡ ଭଲ ଭଲି
ବାଛି କରି ବିନ୍ଧିଲେ ଶଲ୍ୟ ମହାମଲ୍ଲି ।
ଯୁଧିଷ୍ଠିର ଭୀମ ସାତ୍ୟକି ତା ନ ସହି
ବିନ୍ଧିଲେ ଶଲ୍ୟଙ୍କର ଦେହକୁ ରୋଷାଇ ।
ଭୀମଙ୍କୁ ସାତ ଯୁଧିଷ୍ଠିରେ ତିନି ଶର
ସାତ୍ୟକିଙ୍କି ବିନ୍ଧିଣ ଶତ ଶଲ୍ୟ ବୀର ।
ମାଦ୍ରୀଙ୍କର କନିଷ୍ଠ ତନୟ ଦେହଟି
କାଟିବାକୁ ବିନ୍ଧିଲେ ମାର୍ଗଣ ତିନୋଟି ।
କ୍ଷୁରକାଣ୍ଡେ ନକୁଳଙ୍କ କର-ଚାପ
ଛେଦି ପକାଇଲେ ସେ ଶଲ୍ୟ କରି କୋପ ।
ମହାଧନୁର୍ଦ୍ଧର ନକୁଳ କରେ ବହି
ଦେଲେ ଶଲ୍ୟଙ୍କର ରଥକୁ ଶରେ ଛାଇ ।
ଯୁଧିଷ୍ଠିର ସହଦେବ ଏ ଦଶ ଦଶ
ଶଲ୍ୟଙ୍କ ଦେହକୁ ବିନ୍ଧିଲେ ବହି ରୋଷ ।
ଭୀମ ଷାଠିଏ ସାତ୍ୟକି ନବ ଶର
କରିଗଲେ ହେବାକୁ ଶଲ୍ୟଙ୍କ ସଂହାର ।
ଶଲ୍ୟ କ୍ରୋଧ ହୋଇଣ ସାତ୍ୟକି ଦେହକୁ
ବିନ୍ଧିଲେ ବାଛି ଅଣାଅଣି ମାର୍ଗଣକୁ ।
ସାତ୍ୟକିଙ୍କର ଧନୁ ମୁଠାଠାରୁ କାଟି
ଚାରିଘୋଡ଼ାଙ୍କର ପରାଣ କଲେ ଲୁଟି ।
ଏ ବାହାରେ ଯେ ଶଏଗୋଟି ମାରଗଣ
ସାତ୍ୟକିଙ୍କି ବିନ୍ଧିଲେ ମଦ୍ର-ନରଗଣ ।
ସେ କାଳରେ ସେ ଦୁଇରଥୀ ରାଗ ବହି
ଆଗ ହୃଦ-ଦେଶେ ମାଇଲେ ଶର ନେଇ ।
ସାତ୍ୟକି ରହ ରହ ବୋଲିଣ ଶଲ୍ୟଙ୍କୁ
ବିନ୍ଧିଲେ ବାଛି କରି ଦଶଟି ଶରକୁ ।
ଶଲ୍ୟ ସାତ୍ୟକିଙ୍କି ବିନ୍ଧିଣ ଶରଭିଡ଼ା
ଯୁଦ୍ଧରେ ରଚିଲେ ସେ ତାହାଙ୍କର ପୀଡ଼ା ।
ସାତ୍ୟକି ଶଲ୍ୟଙ୍କର ଦେଖିକରି ରଣ
ଗମିଲେ ପାଣ୍ଡବେ ସେଠାକୁ ବିନ୍ଧି ବାଣ ।
ପାଣ୍ଡବଙ୍କ ବାଣଘାତରେ ନରସାଇଁ
ସୂର୍ଯ୍ୟଙ୍କ କର ଛାଡ଼ି ଗଲେ ରଭୂଇଁ ।

ଏକା ହୋଇଣ ଶଲ୍ୟ ଶୂର ପାଣ୍ଡବଙ୍କ
ଯୁଝିଲେ ସ୍ୱପ୍ନେ ଭାବ ଭୂମିର ହିତକୁ ।
ଏ କଥା ଶଲ୍ୟ ବିନା ଆନ ଲୋକ କରି—
ନ ପାରେ କେବେହେଁ ଧ୍ୱଜିନୀ-ଦଣ୍ଡଧାରୀ ।
ଶଲ୍ୟବୀର-ବିସୃଷ୍ଟ କାଣ୍ଡରେ ଗଗନ
ଛନ୍ନ ହେଲା, ଦେଖିଲା ସବୁରି ନୟନ ।
ଅସୁରକ୍ଷୟକାଳେ ଇନ୍ଦ୍ରଙ୍କର ରଥ
ଚଳିଲା ପରି ଯୁଦ୍ଧେ ଶଲ୍ୟ ମହାରଥ ।
ଆପଣାର ରଥବରକୁ ସେ ଚଳାଇ
ଯୁଝିଲେ, ଥିଲା ଧନୁହାତେ ସାଥିହୋଇ ।
ଭୂମି ସୈନ୍ୟଯାକ ଶଲ୍ୟଙ୍କୁ ଆଗ କରି
ପାଣ୍ଡବଙ୍କୁ ଯାଇ ଯୁଝିଲେ ରାଗ ଧରି ।
ପାଣ୍ଡବସେନାଙ୍କ ବଳକୁ ଭୂମି ବଳ
ପ୍ରହାରି ଶର କଲେ ମହା-କଲବଲ ।
କୃଷ୍ଣ ଅର୍ଜୁନ ତା ନୟନେ ଦେଖୁଁଥିଲେ
ପ୍ରତିକାର କିଛି କରିହେଁ ନ ପାରିଲେ ।
ପୁଣି ହୃଦ୍ଧେ କଶାଠୀ ବହି ସେ ରାଗଟି
କୃପ କୃତବର୍ମା ଯୁଝିଲେ ଶର ଯୋଡ଼ି ।
ସହଦେବ ଶକୁନି ଭିଡ଼ିଲେ ମହାରଣ
ଆରମ୍ଭିଲେ ତୂଣୀରୁ ବାଛି ବିନ୍ଧି ବାଣ ।
ନକୁଳ ଶଲ୍ୟରଥୀ ହେଲେ ଭେଟାଭେଟି
ବିନ୍ଧାବିନ୍ଧି ହେଲେ ସାୟକ କୋଟି କୋଟି ।
ଦ୍ରୁପଦଙ୍କ ତନୟମାନେ ଆନଆନ—
ରାଜାଙ୍କୁ ନିବାରିଲେ ବିନ୍ଧି ମାର୍ଗଣ ।
ଶିଖଣ୍ଡୀ ଦ୍ରୋଣପୁତ୍ର ଭିଡ଼ିଲେ ଯୁଦ୍ଧ କରି
କହିଁ ପିବୁ ବୋଲି ବୋଇଲେ ରାଗ ଧରି ।
ଭୀମ ଗଦାପାଣି ହୋଇଣ ଦୁର୍ଯ୍ୟୋଧନ—
ରାଜାଙ୍କୁ ନିବାରିଲେ କରି ଆୟୋଧନ ।
ଯୁଧିଷ୍ଠିର ସୈନ୍ୟଙ୍କୁ ଘେନି ଏକଚିତେ
ବାହାରିଲେ ଶଲ୍ୟଙ୍କୁ ମାରିବା ମତରେ ।
ଭୂମି ଲୋକଙ୍କର ପାଣ୍ଡବଙ୍କର ରଣ
ଏରୂପେ ପୁଣି ପ୍ରବର୍ତ୍ତିଲ ନରଗଣ ।
ଶଲ୍ୟ ଏକାକୀ ହୋଇ ପାଣ୍ଡବସେନାଙ୍କୁ
ଯୁଝିଲେ ସେକାଳେ ଦେଖାଇ ବିକ୍ରମକୁ ।
ଚନ୍ଦ୍ର ପାଖେ ଶନି ପରିପ୍ରାୟେ ଯୁଧିଷ୍ଠିର—
ପାଶରେ ଦିଶିଲେ ରାଜନ ମଦ୍ରେଶ୍ୱର ।

ଶଲ୍ୟ ମହାରଥୀ କ୍ଷେପେ ଶରଭଡ଼ା
ରଚିପଳାଇଲେ ସେ ଯୁଧିଷ୍ଠିର-ପୀଡ଼ା ।
ତୁମ୍ଭ ତାଙ୍କ ଦେଖିକେ ଶଲ୍ୟଙ୍କ ପରାକ୍ରମ
ଦେଖିକରି ବୋଇଲେ ଉତ୍ତମ ଉତ୍ତମ ।
ପାଣ୍ଡବେ ଶଲ୍ୟଙ୍କର ଶରେ ପୀଡ଼ା ପାଇ
ପଳାଇଲେ ରଥ ଘୁଞ୍ଚାଇ ହେ ନରସାଇଁ ।
ଯୁଧିଷ୍ଠିର ରାଜନ ରହ ରହ ବାଣୀ
ବୋଲୁଥିଲେ ଭାଜିଲେ କେହ୍ହେ ତା ନ ଶୁଣି ।
ଯୁଧିଷ୍ଠିର ଭାଇଙ୍କ ଭୁଲରେ କୃଷ୍ଣଙ୍କୁ
ଡାକିଣ କହିଲେ ମଧୁର ବଚନକୁ ।
ଶଲ୍ୟ ତୁଲେ ଆଜ ଯୁଝିବ ଧନୁ ଟାଣି
ମାରିବ ବା ମରିବ ତୁମ୍ଭେ ଥାଅ ଜାଣି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଏ ରଥିକୁଳ—
ମାନଙ୍କୁ ମାରିଲ ତ ହରି ତାଙ୍କ ବଳ ।
ଏବେ ଶଲ୍ୟ ମୋର ଭାଗରେ ପଡ଼ିଛନ୍ତି
ଏହାଙ୍କୁ ନ ମାଇଲେ ମରିବ ମୋ ମତି ।
ଏ ସକାଶୁଁ କହୁଛି ହେ ହରି ଶାହୋଇ
ରହନ୍ତୁ ମୋର ଆଗେ ମାଦ୍ରୀପୁତ୍ର ଦୁଇ ।
ମୋ ରଥରେ ଅଧିକ ଯୁଦ୍ଧ ସାମଗିରି
ରଖାଅ ଆଣି ଆହେ ମଧୁପ୍ରାଣହାରି
ମୋ ପୃଷ୍ଠେ ଗୋପ୍ୟ ହୋଇ ଥାନ୍ତୁ ଅରଜୁନ
ମୋ ଦକ୍ଷିଣପାଖ ଜଗନ୍ତୁ ଯୁଯୁଧାନ ।
ଉତ୍ତରପାଖେ ମୋର ଦ୍ରୁପଦ-ନନ୍ଦନ
ରହନ୍ତୁ ଆଗରେ ମୋହର ଭୀମସେନ ।
ଏମନ୍ତେ ହେଲେ ଯୁଦ୍ଧେ ଶଲ୍ୟ ପତି ମୁହିଁ
ଅଧିକ ହୋଇବି ହେ ଯଦୁକୁଳସାଇଁ ।
କୃଷ୍ଣ ବୋଇଲେ ଆହେ ଏ କଥା ଗୁରୁକୁ
କାହିଁକି ଯୁଧିଷ୍ଠିର ବୋଲୁଛ ଆମ୍ଭଙ୍କୁ ।
ଆପଣଙ୍କ ବୋଲୁଁ ବାହାର ଭାଇମାନେ
ହୋଇ ତ ନାହାନ୍ତି ହେ ସ୍ୱପନରେ ଜନେ ।
ବୋଲାବ ଯେବେ ତହିଁ ଧରି କରେ ମୁହିଁ
ଶଲ୍ୟଙ୍କର ଭୁଲରେ ଯୁଝିବି ଯାଇ ।
ଏହା ଶୁଣିଣ ଯୁଧିଷ୍ଠିର ପାଇ ଲାଜ
ବୋଇଲେ ଭାଇମାନେ ଥିବାରୁ ମୋ ଓଜ ।
ଯୁଦ୍ଧରେ ମୁଁ ବୋଇଲି ପରି ଏହା ଯାଇ
ଦେଖ ଦେଉଅଛି ମୁଁ ଶଲ୍ୟଙ୍କୁ ବଢ଼ାଇ ।

ଶୁଣ ଆହେ ଅମ୍ବିକାଦେବୀଙ୍କ ନନ୍ଦନ
ମନେ ଘେନ ପାଣ୍ଡୁ ରାଜାଙ୍କର ବଚନ ।
ଭାଇମାନେ ତୁଣ୍ଡରେ କଥାବାର୍ତ୍ତା ହୋଇ
ରହିଲେ ସେହିପରି ଧନୁ ହସ୍ତେ ବହି ।
ଏଥିରେ ପାଞ୍ଚାଳ ସୋମକ ମତ୍ସ୍ୟମାନେ
ମଲେ ଶଲ୍ୟ ବୋଲିଣ ବିସ୍ମରିଲେ ମନେ ।
ଶଙ୍ଖ ଭେରି ମୃଦଙ୍ଗମାନ ବଜାଇଲେ
କଣ୍ଠକୁ ମୋଟ କରି ସିଂହନାଦ କଲେ ।
ସେକାଳେ ଦୁର୍ଯ୍ୟୋଧନ ଶଲ୍ୟ ଶରମାଳା
ସରଜ ହେଲେ ସବୁ ସୈନ୍ୟ-ସିନ୍ଧୁ ଭେଳା ।
ଶଲ୍ୟ ଯୁଧିଷ୍ଠିରଙ୍କୁ କଲେ ଶରବୃଷ୍ଟି
ବିସ୍ମରିଲେ ରଖିବାପାଇଁ ଜୟସୃଷ୍ଟି ।
ଦୁର୍ଯ୍ୟୋଧନ ଦ୍ରୋଣଙ୍କଠାରୁ ଯେତେ ଶିକ୍ଷା
କରିଥିଲେ ତା କଲେ ଯୁଦ୍ଧେ କରି କକ୍ଷା ।
ଦୁର୍ଯ୍ୟୋଧନ ଯୁଧିଷ୍ଠିର କ୍ରୋଧକୁ ବହି
ସାମ୍ମୁକ ହନ୍ଦାହନ୍ଦି ହେଲେ ନରସାଇଁ ।
ଭୀମ ଦୁର୍ଯ୍ୟୋଧନର ଦେଖି କରି ବଳ
ଧାଇଁଲେ ତାଙ୍କଠାକୁ କରିବାକୁ ଗୋଳ ।
ନକୁଳ ସହଦେବ ପାଞ୍ଚାଳ ସାତ୍ୟକି
ଶକୁନିଠାକୁ ଚଳେ ଧରି ଧନୁ ଟେକି ।
ତୁମ୍ଭ ଦୁର୍ମନ୍ତ୍ରଣାରୁ ଏତେ ସବୁ କଥା
ପ୍ରବର୍ତ୍ତିଲା ଜାଣ ହେ ରାଜମହାରଥୀ ।
ଦୁର୍ଯ୍ୟୋଧନ କାଣ୍ଡକେ ଭୀମସେନ ଧ୍ୱଜ
କାଟନ୍ତେ ଘଟିଲା ସେ ମହତ ଆଶ୍ଚର୍ଯ୍ୟ ।
କ୍ଷୁରକାଣ୍ଡ ଘେନିଣ ତୁମ୍ଭର ବେଟାଟି
ଦେଲେ ଭୀମସେନଙ୍କ ଧନୁଟିକି କାଟି ।
ଧନୁ ଛାଡ଼ି ଯାଆନ୍ତେ ଶକ୍ତି ଧରି ଭୀମ
ଫିଙ୍ଗିଲେ ଦୁର୍ଯ୍ୟୋଧନପରେ ବଳି ତମ ।
ସେ ଘାଏ ଦୁର୍ଯ୍ୟୋଧନ ହୃଦୟକୁ ଧରି
ଥରି ଥରି ହୋଇ ବସିଲେ ଦଣ୍ଡଧାରୀ ।
ସେହି ଛିଦ୍ରରେ ଭୀମ ସାରଥିର ମୁଣ୍ଡ
କାଟିକରି ଗଡ଼ାଇ ଦେଲେ ରଣଦାଣ୍ଡ ।
ଘଡ଼ିବାରୁ ସାରଥି ପରାଣ ଉପେକ୍ଷି
ଘୋଡ଼ାଏ ଗମିଲେ ଇଚ୍ଛାରେ ହୋଇ ସୁଖୀ ।
ଅଶ୍ୱତ୍ଥାମା କୃପ କୃତବରମା ମିଶି
ହୋଇଲେ ତୁମ୍ଭ ପୁଅ ରକ୍ଷାରେ ଲାଳସୀ ।

ଅରଜୁନ ଟଙ୍କାରି ଗାଣ୍ଡୀବ ଧନୁକୁ
କାଟିଲେ ଭୁମ୍ଭ ଯୋଦ୍ଧା-ମସ୍ତକକୁଳକୁ ।
ଯୁଧିଷ୍ଠିର ଶଲ୍ୟଙ୍କଠାକୁ ଧାଇଁ ଆସି
ବିନ୍ଧିଲେ ମାରଗଣଗଣ ହସି ହସି ।
ଏ ବାହାରେ ଶଲ୍ୟ ସମୀପେ ଯୋଦ୍ଧାଙ୍କର
ପ୍ରାଣକୁ ଘେନିଲେ ପାଣ୍ଡବ-ନରବର ।
ସେହି ସେନାକୁଳେ ପାଣ୍ଡବ କୁଳବର୍ଯ୍ୟେ
ବିନ୍ଧିଲେ, ପଳାଇଲେ ଡରି ଅଙ୍ଗଶୟେ ।
ଅଶ୍ୱ ସୂତ ଈଷା ଧ୍ୱଜ ଯେ ଖଣ୍ଡ ଖଣ୍ଡ
କରିଲେ ଯୁଧିଷ୍ଠିର ବରଗିଣ କାଣ୍ଡ ।
ଶଲ୍ୟଙ୍କୁ ବୋଇଲେ ହେ ମାମୁଁ ରହ ରହ
ଦେଖାଅ ଦୁର୍ଯ୍ୟୋଧନଠାରେ ବଡ଼ ସ୍ନେହ ।
ଶଲ୍ୟ ତାହା ସହି ନ ପାରି ଧନୁ ଟାଣି
ରଚିଲେ ଯୁଧିଷ୍ଠିର ଭୁଲରେ ଆରଣି ।
ଯୁଧିଷ୍ଠିର ଶଲ୍ୟ ବଜାଇ ତହୁଁ ଶଙ୍ଖ
ଗଡଜ ସରଜିଲେ ଉତ୍ତମ ବିଶାଖ ।
ଦୁହେଁ ତ ଅଙ୍ଗେ ରକ୍ତଧାରକୁ ବହିଲେ
ଗେରୁମଣ୍ଡା-ଗିରି ପରାୟେ ସେ ଦିଶିଲେ ।
ସେ ଦୁହିଙ୍କ ଯୁଦ୍ଧେ କାହାର ହେବ ଜୟ
କେହି ତାହା କରି ନ ପାରିଲେ ନିଶ୍ଚୟ ।
ସେ କାଳେ ଯୁଧିଷ୍ଠି ନୃପଙ୍କ ଶୁଭକଥା
ଆଗ୍ରେ କଲ ଜାଣ ରାଜନ ମହାରଥୀ ।
ଶଲ୍ୟ ଯୁଧିଷ୍ଠିରଙ୍କ ଧନୁ କରେ ଛେଦ
ଏ ବାହାରେ ହେଲେ କାହାଙ୍କୁ ଶରେ ଛିନ୍ଦ ।
ଯୁଧିଷ୍ଠିର ରାଜନ ଧରି ଶରାସନ
କ୍ଷୁରକାଣ୍ଡେ ଶଲ୍ୟଙ୍କ ଧନୁ କରି ଛିନ୍ନ ।
ଚାରିକାଣ୍ଡେ ଚାରି ଘୋଡ଼ାଙ୍କ ପ୍ରାଣ ନେଲେ
ଦ୍ୱିକାଣ୍ଡେ ଦୁଇ ପାଶୁଁ ସ ରଥି ମାଇଲେ ।
ଭଲ୍ଲକାଣ୍ଡ ବିନ୍ଧି ଶଲ୍ୟଙ୍କର ଧ୍ୱଜ
କାଟିଲେ ଯୁଧିଷ୍ଠିର ଦେଖାଇଲେ ଓଜ ।
ଅଶ୍ୱତ୍ଥାମା ତା ଦେଖି ଶଲ୍ୟେ ନିଜ ରଥେ
ବସାଇଲେ ତାଙ୍କ ହାତକୁ ଧରି ହାତେ ।
ଏଥିଅନ୍ତେ ଶଲ୍ୟ ନୃପତି ମହାରଥ
ବାହାରିଲେ ଯୁଦ୍ଧକୁ ଚଢ଼ି ଆନ ରଥ ।
ମହତ ଧନୁବର ଗୁଣକୁ ଓଟାରି
ବିନ୍ଧିଲେ ଯୁଧିଷ୍ଠିର ଦେହେ ଲକ୍ଷ କରି ।

ସହସ୍ରେ ସଂଖ୍ୟା କାଣ୍ଡଙ୍କରେ ଯୁଦ୍ଧ ଦାଣ୍ଡ
ପୂରାଇ ଶଲ୍ୟ ତେଜେ ନିନ୍ଦିଲେ ମାର୍ତ୍ତଣ୍ଡ ।
ଭୀମ ସହଦେବ ଛ ଶର ସାତ୍ୟକିଙ୍କି
ଦଶ ବିନ୍ଧି ଗର୍ଜିଲେ ମେଳଣ ପାଟିକି ।
ଏହା ବାହାରେ ଯୁଧିଷ୍ଠିରଙ୍କର ପ୍ରାଣ—
ପୀଡ଼ାକୁ ରଚିଲେ ସେ ବିନ୍ଧି ମାରଗଣ ।
ହାତୀ ଘୋଡ଼ାଚଢ଼ା ପାଣ୍ଡବଙ୍କର ଯେତେ—
ଥିଲେ ତାଙ୍କୁ ମାଇଲେ ଶଲ୍ୟ ମହାମତେ ।
ଆୟୁଧର ମଣ୍ଡଳେ ବାହୁ କୋଟି କୋଟି
ଯୁଦ୍ଧରେ ଶଲ୍ୟରଥୀ ପକାଇଲେ କାଟି ।
କ୍ଷତ୍ରିୟମାନଙ୍କର ହୃଦୟର ସଲ
ହେଲେ ଯୁଦ୍ଧଦାଣ୍ଡରେ ରଥିସିଂହ ଶଲ୍ୟ ।
ନ ସହି ପାଞ୍ଚାଳ ସୃଞ୍ଜୟ ହୋଇ ଗୋଟି
ବିନ୍ଧିଲେ ଶଲ୍ୟେ ନାରାଚକୁ କୋଟି କୋଟି ।
ସାତ୍ୟକି ଭୀମ ଯେ ନକୁଳ ସହଦେବ
ଜଗିଲେ ଯୁଧିଷ୍ଠିର ନୃପେ ବହି ଭାବ ।
ଶଲ୍ୟଙ୍କର ଦେହେ ନାରାଚ ତିନ ତିନ
ବିନ୍ଧିଲେ ଯିବାପାଇଁ ତାଙ୍କ ଜୀବ ଘେନ ।
ଶଲ୍ୟବୀରଙ୍କ ସ୍ତନାନ୍ତରକୁ ଦେଖାଇ
ତିନି କାଣ୍ଡ ବିନ୍ଧିଲେ ଧର୍ମ-ନରସାଇଁ ।
ଏକାଳେ ଦୁର୍ଯ୍ୟୋଧନ ବୋଲେ ରଥିକୁଳ
ଜଗିଲେ ଯୁଦ୍ଧେ ଆସି ଶଲ୍ୟ ମହିପାଳ ।
ଶଲ୍ୟ ଯୁଧିଷ୍ଠିରଙ୍କୁ ବିନ୍ଧିଲେ ସପ୍ତ କାଣ୍ଡ
ମଲ ବୋଲି ଗର୍ଜିଲେ ଫୁଲାଇଣ ପିଣ୍ଡ ।
ଯୁଧିଷ୍ଠିର ତାହାକୁ ସହି ନ ପାରିଲେ
ନବ ଗୋଟି ଶର ଯେ ଶଲ୍ୟଙ୍କୁ ବିନ୍ଧିଲେ ।
ଶଲ୍ୟ ଯୁଧିଷ୍ଠିର ଅନ୍ୟୋନ୍ୟେ ବିନ୍ଧାବିନ୍ଧି
ହୋଇଣ ହେଲେ ଯୁଦ୍ଧ-ଗଗନକୁ ଛୁନ୍ଧି ।
ଏହା ଉତ୍ତାରୁ ତଳ ଉପର ପକ୍ଷୀଏ
ଉଡ଼ି ନ ପାରିଲେ ପାଣ୍ଡବ-କୁଳ ବର୍ଯ୍ୟେ ।
ଶଲ୍ୟ ଯୁଧିଷ୍ଠିରଙ୍କ ହୃଦୟ ଦେଶକୁ
ବିନ୍ଧିଲେ ସୂର୍ଯ୍ୟ ଅଗ୍ନି ପରି ମାର୍ଗଣକୁ ।
ଯୁଧିଷ୍ଠିର ରାଜା ଯେ ବାଛିକରି କାଣ୍ଡେ
ଶଲ୍ୟଙ୍କ ଗଣ୍ଡିକି ବିନ୍ଧିଲେ ଅତି ଚଣ୍ଡେ ।
ସେହି କାଣ୍ଡରେ ଶଲ୍ୟ ପାଇ ମହାବ୍ୟଥା
ମୁହୂର୍ତ୍ତେ ପର୍ଯ୍ୟନ୍ତେ ନ କହିଲେ କଥା ।

ପୁଣି ଧୈର୍ଯ୍ୟ ହୋଇଣ ଶଲ୍ୟ ମହାବଳୀ
ଗର୍ଜିଲେ ଯୁଧିଷ୍ଠିର ନୃପେ ନେଇ ତାଳି ।
ଏକାବେଳକରେ ଯେ ବିନ୍ଧିବା ପରସ୍ତୁ
ଶଏ କାଣ୍ଡ ବିନ୍ଧିଲେ ଶଲ୍ୟ ମହାରଥେ ।
ଯୁଧିଷ୍ଠିର ତାହାକୁ ନ ପାରିଲେ ସହି
ଛଅ କାଣ୍ଡେ କବଚ କାଟି ନରସାଇଁ ।
ପୁଣି ଶଲ୍ୟବୀରଙ୍କ ହୃଦୟ ସ୍ଥଳକୁ
ବିନ୍ଧିଲେ ନବ କାଣ୍ଡ ଦେଖାଇ ବଳକୁ ।
ଶଲ୍ୟ ସେ କ୍ଷୁରକାଣ୍ଡ ଯୋଡ଼ିଏ ବିନ୍ଧିଲେ
ଯୁଧିଷ୍ଠିର ନୃପଙ୍କ ଧନୁକୁ କାଟିଲେ ।
ଆନ ଧନୁ ଧରିଣ ଯୁଧିଷ୍ଠିରରାଜ
ବିନ୍ଧିଲେ ଶଲ୍ୟ-ଦେହେଁ ମାର୍ଗଣ-ସମାଜ ।
ଶଲ୍ୟ ନବ କାଣ୍ଡରେ ଭୀମ ଯୁଧିଷ୍ଠିର
କବଚକୁ ଦେହରୁ କଲେ ଦେଲେ ଦୂର ।
ପୁଣି ସେ ଦୁହିଁଙ୍କର ଭୁଜକୁ ଦେଖାଇ
ମାରଗଣ-ଗଣକୁ ବିନ୍ଧିଲେ ଖେଷାଇ ।
କ୍ଷୁରକାଣ୍ଡରେ ଯୁଧିଷ୍ଠିରଙ୍କର ଧନୁ
କାଟି ପକାଇଲେ ସେ ମଦ୍ରରାଜ ସୁନୁ ।
କୃପା ଛଅ କାଣ୍ଡରେ ଯୁଧିଷ୍ଠିରଙ୍କର
ସାରଥିର ପ୍ରାଣ ନେଲେ ହେ ନରବର ।
ଶଲ୍ୟ ଯୁଧିଷ୍ଠିରଙ୍କ ଗୁଟିକେ ଘୋଡ଼ାକୁ
ନେଇ ଗଲେ ପ୍ରେତପତିଙ୍କ ନଗରକୁ ।
ଏ ବାହାରେ ଯୁଧିଷ୍ଠିରଙ୍କ ପାଖ ଘୋଡ଼ା—
ମାନଙ୍କୁ କାଣ୍ଡେ କଲେ ଯମ ଆଗେ ଛଡ଼ା ।
ଭୀମ ତାହା ଦେଖି ହୃଦୟେ ଧରି ମନ୍ୟୁ
କାଟି ପକାଇଦେଲେ ଶଲ୍ୟଙ୍କର ଧନୁ ।
ଶଲ୍ୟଙ୍କୁ ଦୁଇକାଣ୍ଡ ବିନ୍ଧି ମହାବଳୀ
ସାରଥି ମୁଣ୍ଡ-କାଣ୍ଡ-ମୁଖେ ଦେଲେ ଗିଳି ।
ଶଲ୍ୟଙ୍କର ସେ ଚାରି ଘୋଡ଼ାଙ୍କର ପ୍ରାଣ
ଛେଦି ପକାଇଲେ ଯେ ପବନ-ନନ୍ଦନ ।
ଭୀମ ତ ସବୁ ଧନୁର୍ଦ୍ଧରଙ୍କ ଅଗ୍ରଣୀ
ଶଏ କାଣ୍ଡ ବିନ୍ଧିଲେ ଶଲ୍ୟେ ଧନୁ ଟାଣି ।
ସହଦେବ ମିଶି ବିନ୍ଧିଣ ଶଏ କାଣ୍ଡ
କମ୍ପାଇଦେଲେ ନୃପ-ଶଲ୍ୟଙ୍କର ପିଣ୍ଡ ।
ଶଲ୍ୟ ସେ ଢାଲ ନେଇ ବେନିକ ଘୂମାଇ
ରହିଲେ ଥରେ ବେଳ ତଳକୁ ଲମ୍ବାଇ ।
ଭୀମ ସେହି ଛଳରେ ଶଲ୍ୟଙ୍କ କବଚ
କାଟି ପକାଇଦେଲେ ବିନ୍ଧିଣ ନାରାଚ ।
ଶଲ୍ୟ ଫରି ଖଣ୍ଡାକୁ କରେ ଦେଲେ ବହି
ଧାଇଁଲେ ଯୁଧିଷ୍ଠିରଠାକୁ ନରସାଇଁ ।
ନକୁଳଙ୍କ ରଥ ଈଷାକୁ ମାରି ଖଣ୍ଡା
ଛିଣ୍ଡାଇ ପକାଇଲେ ଶଲ୍ୟ ମହାଭେଣ୍ଡା ।
ତାହା ଦେଖିଣ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ
ଧାଇଁଲେ ଶଲ୍ୟଠାକୁ ହୋଇଣ ଦରାଣ୍ଡି ।
ଶୂରବର ସାତ୍ୟକ ଦ୍ରୌପଦୀକୁମାର
ପ୍ରହାରିଲେ ଶଲ୍ୟଙ୍କୁ ଯୋଖି ଦିବ୍ୟ ଶର ।
ଦଶ କାଣ୍ଡ ଭଲ୍ଲ ବିନ୍ଧିଣ ଭୀମସେନ
କଲେ ଶଲ୍ୟଙ୍କର ଫରି ଏ ଖଣ୍ଡା ଛିନ୍ନ ।
ଭୀମଙ୍କ ସେ କର୍ମେ ପ୍ରଶଂସି ପାଣ୍ଡୁ ରଥୀ—
କୁଳ ଗରଜିଲେ ନୋହି ଯୁଦ୍ଧରେ ବ୍ୟର୍ଥୀ ।
କୁରୁଏ ତା ଶୁଣି ବୋଇଲେ ଶଲ୍ୟରାଜା.
ମରି ବଢ଼ାଇବେ ଆମ୍ଭର ପରାଲଜ୍ଜା ।
ଭୀମ ଦ୍ରୋଣ କର୍ଣ୍ଣ ଆଦିଙ୍କର ଅଭାବ
ହେଲା, ଶଲ୍ୟ ଜିଣିବେ ବୋଲି କେ ବୋଲିବ
ଶଲ୍ୟ ଯୁଧିଷ୍ଠିରଙ୍କ ଅଭିମୁଖେ ରହି
ଡାକିଲେ ହେ ଭଣଜା ଆଜି ଯିବ କାହିଁ ।
ଯେରୂପରେ ମୃଗକୁ ଦେଖି ସିଂହ ରାଗ-
କରି ଝାମ୍ପେ ସେରୂପେ ଶଲ୍ୟ ମହାଭାଗ ।
ଯୁଦ୍ଧଦାଣ୍ଡେ ଜଗିଲେ ଜାଣ ନରସାଇଁ
ଆଜି କହିବାରେ ତ କାର୍ଯ୍ୟ କିଛି ନାହିଁ ।
ଯୁଧିଷ୍ଠିର ତା ଦେଖି କୃଷ୍ଣଙ୍କ କଥାକୁ
ସୁମରି ବିଚାରିଣ ଶଲ୍ୟଙ୍କ ବଧକୁ ।
ମହା ଶକତି ଟାଏ କରେ ଦେଲେ ବହି
ରହିଲେ ଯୁଧିଷ୍ଠିର ଶଲ୍ୟ ମୁଖ ଚାହିଁ ।
ତେତେବେଳେ ଶଲ୍ୟ ଯା ନୋହି ଭସ୍ମଶେଷ
ରହିଲେ, ଏହି ବଡ ଆଶ୍ଚର୍ଯ୍ୟ ନରେଶ ।
ଯୁଧିଷ୍ଠିରଙ୍କ କରେ ଶକ୍ତିବର ରହି
ଯମ କାଳଦଣ୍ଡ ପ୍ରଭାକୁ ଦେଲା ଦହି ।
ପାଣ୍ଡବମାନଙ୍କର ବଢ଼ାଇ ସାହସ
ଥୋଇଲା ପରବଳ ହୃଦୟରେ ତ୍ରାସ ।
କାଳରାତ୍ରି ପରିଏ ପ୍ରକାଶିଣ ପ୍ରଭା
ଭାଙ୍ଗି ପକାଇଲା ସେ କାର୍ଦ୍ଦମ ଶୋଭା ।

ସେ ଶକତି ସୁବର୍ଣ୍ଣଦଣ୍ଡରେ ରତନ
ଲାଗିଛି, ଏଣୁ ବୁଝାଇଲା ସେ ନୟନ ।
ମିତ୍ରଜନ-ମନ-ମୀନକୁ ଜଳ ପରି
ଆହ୍ଲାଦ ଦେଲା ସେ ଜାଣ ଦଣ୍ଡଧାରୀ ।
ଶତ୍ରୁକୁଳ-ବନ-ତୃଣକୁ ଦାବାନଳ
ହୋଇ ବଢ଼ାଇଲା ସେ ଯୁଧିଷ୍ଠିର ବଳ
ତା ଦେଖି ତୁମ୍ଭ ପୁତ୍ରମାନେ ଦୁଃଖୀ ହୋଇ
ବୋଇଲେ ମଲେ ନିଶ୍ଚେ ଶଲ୍ୟ ନରସାଇଁ ।
ସେହି ଶକତି ବିଶ୍ୱକର୍ମା ଶିବ ପାଇଁ
ନିର୍ମାଣ କରିଥିଲେ ପୂର୍ବେ ନରସାଇଁ ।
ଯୁଧିଷ୍ଠିରରାଜା ତା ଧରି କରଯୁଟେ
ଘହଣ୍ଡି କେତେ ଧାଇଁ ଯାଇକରି ଆଣ୍ଟେ ।
ଅଭିମନ୍ତ୍ର କରିଣ ଶଲ୍ୟଙ୍କ ଉରକୁ
ଫିଙ୍ଗିଲେ ନେବା ପାଇଁ ଯୁଦ୍ଧରେ ଯଶକୁ ।
ଯୁଧିଷ୍ଠିର କରରୁ ବେଗେ ସେ ଶକ୍ତିଟି
ଧାଇଁଲା ସର୍ପ ପରି ଶୂନ୍ୟରେ ଚହଟି ।
ଇନ୍ଦ୍ରଙ୍କ ବଜ୍ର ପରି କରି ମହାସ୍ୱନ
ଶଲ୍ୟଙ୍କ ହୃଦ-ବନେ କଲାପାଇ ସ୍ଥାନ ।
ତହିଁ ସେ ନ ରହି ନିକଳି ପୃଷ୍ଠଭାଗେ
ପାତାଳତଳକୁ ସେ ଗମିଲା ସରାଗେ
ସେକାଳେ ଶଲ୍ୟ-ସୂର୍ଯ୍ୟ ବଳ କରି ଅସ୍ତ
କରି-ରଥ-ଗିରି ଅନ୍ତରେ ହେଲେ ଅସ୍ତ ।
ଶଲ୍ୟ ମଲାବେଳେ କରିଲେ ସିଂହରଡ଼ି
ତାହା ଶୁଣି ଇନ୍ଦ୍ର ଆସନ ଦେଲେ ଛାଡ଼ି ।
ଏହି ସମୟରେ ଯେ ଶଲ୍ୟ ନରସାଇଁ
ବସିଲେ ପୁରନ୍ଦର ପାଶେ ତୋଷ ବହି ।
ତା ଦେଖି ତୁମ୍ଭ ଯୋଦ୍ଧାମାନଙ୍କ ନୟନ —
ନଳିନ ମୁଦ୍ରିତକୁ ଭଜିଲା ତକ୍ଷଣ ।
ଭୋଳା-ଭ୍ରମରେ ତହିଁ ମଧୁ-ଲୋଭୀ ହୋଇ
ରହିଥିଲଟି ରହିଲା ସେ ମୁଦ ହୋଇ ।
ତାଙ୍କ ଶୋକରେ କି ଯୋଦ୍ଧାଙ୍କ ନେତ୍ରଯୁଗ
ରହିଲା ଅବିଚ୍ଛିନ୍ନେ ଅଶ୍ରୁଭାଗ ।
ସହଜେ ତ ଶଲ୍ୟ ଅଟନ୍ତି ମହୀସାଇଁ
ଏଣୁ ମହୀ ପୋଟାଳି ରହିଲେ ସେ ଯାଇ ।
ମଲେ ହେଲେ ଶଲ୍ୟଙ୍କ ଦେହଟିରି ଶୋଭା
ଲଙ୍ଘି ପକାଇଲା ନିର୍ଧୂମାନଳ ପ୍ରଭା ।

ଶଲ୍ୟଙ୍କୁ ମାରିକରି ଯୁଧିଷ୍ଠିର ହସ୍ତେ
ମାଇଲେ ତୁମ୍ଭ ସୈନ୍ୟଯାକ କାଣ୍ଡଘାଏ ।
ଶଲ୍ୟଭାଇ ଶଲ୍ୟଙ୍କ ମରଣକୁ ଦେଖି
ଆସିଲେ ଯୁଝିବାକୁ ଧନୁଶର ଯୋଖି ।
ଯୁଧିଷ୍ଠିରରାଜାଙ୍କୁ ବନ୍ଧି ମାରଗଣ
ଡାକିଲେ ତୁମ୍ଭ ମୁଣ୍ଡ କାଟିବି ମୁଁ ଜାଣ ।
କାର୍ତ୍ତିକେୟ-ମୁଖ ସଂଖ୍ୟା ସେ ଶରଗଣ
ବିନ୍ଧିଲେ ଯୁଧିଷ୍ଠି ପାଣ୍ଡବ ନରରାଣ ।
କ୍ଷୁରକାଣ୍ଡ ବିନ୍ଧି କର୍ମୂଳ ଧ୍ୱଜ କାଟି
ଗର୍ଜିଲେ ପାଣ୍ଡବରାଜନ ମେଲି ପାଟି ।
ଭଲ୍ଲକାଣ୍ଡରେ ଶଲ୍ୟଭାଇ ମାମୁଁ ମୁଣ୍ଡ
ଗଡ଼ାଇ ଦେଲେ ଯୁଧିଷ୍ଠିର ରଣଦାଣ୍ଡ ।
କ୍ଷୀଣପୁଣ୍ୟଲୋକ ପଡ଼ିବାରି ପରାୟେ
ପଡ଼ିଲେ ସେହି ରଥ-ଆକାଶରୁ ରାୟେ ।
ତାହା ଦେଖି ତୁମ୍ଭର ସେନା ହାହାକାର
କରି ଯୁଦ୍ଧଦାଣ୍ଡରୁ ହୋଇଲେ ଅନ୍ତର ।
ସାତ୍ୟକି ସେକାଳେ ଅଧରଯୁଟ ଭିଡ଼ି
ସରଜିଲେ ତୁମ୍ଭ ସେନାଙ୍କୁ ଶରଧାଡ଼ି ।
କୃତବର୍ମା ତା ଦେଖି ସାତ୍ୟକିଙ୍କ ତୂଲେ
ବନ୍ଧାବନ୍ଧି ହୋଇଣ ମିଶାମିଶି ହେଲେ ।
ଦୁହେଁ ସିଂହ ପରାଏ ସାୟକ-ନଖରେ
ବିଦାରବିଦାରି ହେଲେ ନିରନ୍ତରେ ।
କୃତବର୍ମା ସାତ୍ୟକି ଦେହେ ଦଶ କାଣ୍ଡ
ବିନ୍ଧି ଘୋଡ଼ାଗଣେ ବିନ୍ଧିଲେ ତିନି କାଣ୍ଡ ।
ଗଣ୍ଡିଯାନ କାଣ୍ଡ ଗୋଟିଏ ସେ ବରଗି
ସାତ୍ୟକିଙ୍କ ଧନୁକୁ କାଟିଲେ ସେ ରାଗି ।
ସାତ୍ୟକି ଆନ ଧନୁ ବହି କରଯୁଟେ
ବିନ୍ଧିଲେ ରାଗ ହୋଇ ଅତି ସେ ନିରାଟେ ।
କୃତବର୍ମା ହୃଦମଧ୍ୟକୁ ଦଶ କାଣ୍ଡ
ବିନ୍ଧିଲେ କମ୍ପାଇଣ କରଲ କୋଦଣ୍ଡ ।
ଦୁଇପାର୍ଶ୍ୱ ସାରଥି ପରାଣକୁ ହରି
କୃତବର୍ମା ଘୋଡ଼ାଙ୍କୁ ପକାଇଲେ ମାରି ।
ରହନ୍ତେ କୃତବର୍ମା ଏରୂପେ ବିରଥ
ଦେଖିଣ କୃପ ଘେନଗଲେ ନିଜ ରଥେ ।
ଧୂଳି ସଙ୍କାଶରୁ ଯେ ପାଣ୍ଡବ ସଇନ
ତୁମ୍ଭ ସୈନ୍ୟ ଭାଜିବା ନ ଜାଣିଲେ ଜାଣ ।

ଚଦନ୍ତେ ଯୋଦ୍ଧାଙ୍କର ରକତରେ ଧୂଳି
କାଦୁଅ ହୋଇଲା ହୁଅନ୍ତେ ପଡେ ଦଳି ।
ନଜ ବଳଭାଜବା ଦେଖି ଦୁର୍ଯ୍ୟୋଧନ
ଏକା ସେ ଯୁଦ୍ଧ କଲେ ଧାଇଁ ଆୟୋଧନ ।
ଧୃଷ୍ଟଦ୍ୟୁମ୍ନ ସାତ୍ୟକ ଆଦି ପାଣ୍ଡବଙ୍କୁ
ଦୁର୍ଯ୍ୟୋଧନ ଯୁଝିଲେ ଦେଖାଇ ବଳକୁ ।
ଆନ ରଥରେ ଗଡ଼ି କୃତବର୍ମା ବୀର
କଲେ ଯୁଦ୍ଧଦାଣ୍ଡକୁ ଶର ବର୍ଷି ଘୋର ।
ଯୁଧିଷ୍ଠିର ତା ଯତ୍ନ ନୟନେ ଦେଖିଲେ
କୃତବର୍ମାଙ୍କ ଚାରି ଘୋଡ଼ାକୁ ମାଇଲେ ।
କୃପ ଆଚାର୍ଯ୍ୟଙ୍କୁ ବର୍ଷିଣ ଛଅ ଶର
ବୋଇଲେ ଦେଖ ଆଜ ଯାଇ ଯମପୁର ।
କୃତବର୍ମା ବିରଥ ଅଶ୍ୱତ୍ଥାମା ଦେଖି
ଘେନିଗଲେ ତାହାଙ୍କୁ ହେବାପାଇଁ ସୁଖୀ ।
ସେ ସମୟରେ କୃପ ଯୁଧିଷ୍ଠିରଙ୍କର
ଦେହ ଘୋଡ଼ା ଦୁହିଁଙ୍କି ବର୍ଷି ଷୋଳ ଶର ।
ତୁମ୍ଭର ଦୁର୍ମନ୍ତ୍ରଣା ବଳେ ହେ ନରେଶ
ଏରୂପେ ହେଲା ଆସି ଯୁଦ୍ଧକାଳ ଶେଷ ।
ଶଲ୍ୟ-ବଧ ଦେଖି ପାଣ୍ଡବ-ରଥିକୁଳ ।
ଲୋକଙ୍କୁ ବୋଇଲେ ରେ ଉଡ଼ାଅ ଚଞ୍ଚଳ ।
ବୃତ୍ରଯୁଦ୍ଧେ ଇନ୍ଦ୍ରଙ୍କୁ ପ୍ରଶଂସିଲା ପ୍ରାୟେ
ଯୁଧିଷ୍ଠିର ରାଜାଙ୍କୁ ପ୍ରଶଂସି ସର୍ବେ ।
ନାନାଜାତି ବାଦ୍ୟମାନଙ୍କୁ ସେ ବଜାଇ
ଗଲେ ଆନନ୍ଦରେ ମଜାକୁ ମଜାଇ ।
ଏହିଠାବରେ ଶଲ୍ୟବଧ ସମାପତ
କଲେ ପରାଶର-ତନୟ ବ୍ୟାସ-ଋଷି ।
ତାହାଙ୍କ ଶ୍ରୀଚରଣ-ଯୁଗଳକୁ ଧ୍ୟାୟି
ଏ ଗୀତେ କୃଷ୍ଣସିଂହ ନରେଶ କହଇ ।

—o—

## କୁରୁବୀର ଓ ସୈନ୍ୟଙ୍କ ବିନାଶ

ଏଥୁଅନ୍ତେ ସଞ୍ଜୟ କହିଲେ ବଚନ
ଶୁଣ ଯୁଦ୍ଧ-ବାରତା ଦେଇକରି ମନ ।
ଶଲ୍ୟଙ୍କର ସଙ୍ଗେ ସାତଶ ରଥୀ ଥିଲେ
ମରନ୍ତେ ଶଲ୍ୟ ରଣଦାଣ୍ଡୁ ପଳାଇଲେ ।
ସେ ସାତଶ ରଥୀଙ୍କି ତୁମ୍ଭ ଦୁର୍ଯ୍ୟୋଧନ
ନ ପଳାଅ ବୋଲିଣ କହିଲେ ବଚନ ।
ଦୁର୍ଯ୍ୟୋଧନ ରାଜାଙ୍କ ବଚନକୁ ମାନି
ପୁଣି ଯୁଝିଲେ ସେ ହୋଇଣ ଅଭିମାନୀ ।
ସେମାନଙ୍କ ଭାଣ୍ଡ ଶବଦେ ଦଶଦିଶ
ପୂର୍ଣ୍ଣ ହୋଇଗଲା ଜାଣ ହେ ନରଈଶ ।
ଅର୍ଜୁନ ଶୁଣି ରଥୀଙ୍କର ବାଣଘାତ
ହେଲେ ସେ ରଥୀଙ୍କ ଆଗରେ ଉପଗତ ।
ଭୀମ ଧୃଷ୍ଟଦ୍ୟୁମ୍ନ ନକୁଳ ସହଦେବ
ଆଦି ମଧ୍ୟ ଆସିଲେ ତହିଁ ବହୁ ଭାବ ।
ପାଣ୍ଡବ ରଥୀଙ୍କ ବାଣରେ ତୁମ୍ଭ ଜନ—
ମାନେ ପୀଡ଼ା ପାଇଣ ହୋଇଲେ ବିମନ ।
ମଦ୍ରକମାନେ ପୁଣି ଧୈର୍ଯ୍ୟବାନ ହୋଇ
ନେଲେ ପାଣ୍ଡବଙ୍କର ସଇନ ଘୁଞ୍ଚାଇଁ ।
ବୋଲାବୋଲି ହେଲେ ପାଣ୍ଡବେ ଛନ୍ତି କାହିଁ
ଦେଖ ତାହାଙ୍କୁ ଦେଖାଇବା ପ୍ରେତସାଇଁ ।
ଦ୍ରୌପଦେୟମାନେ ଶୁଣିଣ ଏ ବଚନ
ବର୍ଷିଲେ ତାଙ୍କୁ ବାଛି ବାଛି କାଣ୍ଡମାନ ।
ଦ୍ରୌପଦୀସୁତଙ୍କର ଶସ୍ତ୍ର ରଥଚକ—
ଘାତେ ତୁମ୍ଭ ଲୋକ ଦେଖିଲେ ଯମଲୋକ ।
ମଦ୍ରକମାନେ ତାହା ସହି ନ ପାରିଲେ
ଦୁର୍ଯ୍ୟୋଧନ ନିବାରୁଁ ନିବାରୁଁ ଭାଜିଲେ ।
ଶକୁନି ବୋଇଲେ କି ଦେଖ ଦୁର୍ଯ୍ୟୋଧନ
ପଣ୍ଡୁସୁତେ ଆମ୍ଭଙ୍କୁ ଦେଖି ବଳହୀନ ।
ଅମ୍ଭ ଆଗେ ମଦ୍ରକଗଣେ ମାରୁଛନ୍ତି
ଆଉ ଆଜି କି କାର୍ଯ୍ୟ କରିବା ନୃପତି ।
ଦୁର୍ଯ୍ୟୋଧନ ବୋଇଲେ ଏହାଙ୍କୁ ପୂର୍ବରୁ
କହିଛି ମୁଁ ଯୁଦ୍ଧରେ ନୁହ କଛି ଭୀରୁ ।
ମୋ ବୋଲକୁ ନ କରି ପାଣ୍ଡବଙ୍କ ପରେ
ପଳାଉଅଛନ୍ତି ହେ ମୁଖ ମୋଡ଼ି ଡରେ ।
ଶକୁନି ବୋଇଲେ ରାଜନ ତୁମ୍ଭେ ଅମ୍ଭେ
ସୈନ୍ୟ ଘେନି ଯୁଦ୍ଧ କରିବା ଚାଲ ଦମ୍ଭେ ।
ଅନ୍ୟୋନ୍ୟରେ ସମସ୍ତେ ହୋଇ ଉକାଉକି
ମାରିବା ପାଣ୍ଡବଙ୍କୁ ବାଣଗଣ ଯୋଖି ।
ଏହା ଶୁଣିଣ ଦୁର୍ଯ୍ୟୋଧନ ହୋଇ ତୋଷ
ଗରଜନ କରି ମୋଡ଼ିଲେ ଦୁଇ ନଶ ।
ବୋଇଲେ ମାମୁଁ ଦେଖ ମୁଁ ତ ଅଛି ଜାଇ
ମୋତେ କିଣି ପାଣ୍ଡବେ ନ ପାରିଲେ ଯାଇ ।

ଏହା ଶୁଣି ମଦ୍ରକେ ହୃଦେ ଚିନ୍ତି ବ୍ରୀଡ଼ା
ପୁଣି ଯୁଦ୍ଧଦାଣ୍ଡରେ ହେଲେ ଯାଇ ଛିଡ଼ା ।
ମାରି ହାଣ କାଟ ଏ ବଚନକୁ ବୋଲି
ଗଲେ ଯୁଦ୍ଧଦାଣ୍ଡେ ଆଗକୁ ଗୋଡ଼ ପେଲି ।
ପାଣ୍ଡବମାନେ ତାହା ଦେଖିଲେ ନୟନେ
ଯୁଝିବାକୁ ତାଙ୍କୁ ଧାଇଁଲେ କ୍ରୋଧମନେ ।
ଧନୁରେ ବାଣ ସନ୍ଧି ମୁହୂର୍ତ୍ତମାତ୍ରରେ
ବସାଇଲେ ମଦ୍ରକଗଣେ ଯମପୁରେ ।
ମଦ୍ରକବଳ ମାରି ପାଣ୍ଡୁରାଜ ପୋଏ
ଫୁଲାଇଲେ ଆନନ୍ଦେ ଦେହକୁ ସଭିଏ ।
ଏକାଳେ ବିବିଧ ଉତ୍ପାତ ହୋଇ ଗୋଟି
ଥୋଇଲା କୁରୁଙ୍କର ହୃଦରେ ଭୟଟି ।
ରଥ ଗଜ ଘୋଟକ ପଡ଼ିବାରେ ମହୀ
ବାରି ନ ପାରିଲୁ ହେ ଜାଣ ନରସାଇଁ ।
କେତେ ହାତୀ ରଥୀ ଘୋଡ଼ା ଏ ପଳାଇଲେ
କେତେ କାଣ୍ଡ ବାଚ୍ଛି ମଧ୍ୟରେ ଲୋଟା ଦେଲେ ।
ଏହା କରି ସାରି ତୁମ୍ଭର ଘୋଡ଼ା ସେନା
ନେଟେ ଦେଖିଣ ପାଣ୍ଡୁସେନା ମହାମନା ।
ମୁନଘଷା ବାଣମାନଙ୍କୁ ମୁଞ୍ଚି ମୁଞ୍ଚି
ଧାଇଁଲେ ଯୁଦ୍ଧଦାଣ୍ଡେ ହୃଦେ କ୍ରୋଧ ସଞ୍ଚି ।
ଶଲ୍ୟ ମହାରଥୀ ପଡ଼ନ୍ତେ ଯୁଦ୍ଧଦାଣ୍ଡେ
ତୁମ୍ଭ ସେନାଯାକ ଭାଜିଲେ ଅତି ପ୍ରଚଣ୍ଡେ ।
ଦୁର୍ଯ୍ୟୋଧନ ବୋଲନ୍ତି ପୁଣି ଗୋଟି ହୋଇ
ଯୁଦ୍ଧ କରିପାରିବା ପାଣ୍ଡବଙ୍କୁ କେହି ।
ବିମୁଖ ହୋଇ ମୁଖ କରି ଅଧୋଦେଶେ
ପଳାଇଲେ ଯୋଦ୍ଧା ଯୁଦ୍ଧରୁ ଅତି ତ୍ରାସେ ।
ଯେରୂପେ ଅଗାଧ ଜଳରେ ବାତଘାତ
ପାଇଲେ ନାବ ହୋଇଯାଏ ଅସ୍ତବ୍ୟସ୍ତ ।
ସେରୂପରେ ଶଲ୍ୟଙ୍କ ମରିବାର ଦେଖି
ତୁମ୍ଭ ସେନା ଭାଜିଲେ ହୋଇ ଅତି ଦୁଃଖୀ ।
ସିଂହପୀଡ଼ା-ହରିଣ ଦନ୍ତଭଙ୍ଗା-ହାତୀ
ପରାୟେ ତୁମ୍ଭ ସେନା ହେଲେ ନିରଗତି ।
ବେଳ ହ'ପ୍ରହର ସରିକ ଯୁଧିଷ୍ଠିର
କଲେ ତ ଶକତିରେ ଶଲ୍ୟଙ୍କୁ ସଂହାର ।
ଏ ସକାଶୁଁ ତୁମ୍ଭ ସେନାଏ ପରାକ୍ରମୀ
ନୋହିଲେ, କେହି ନ ପାରିଲେ ହୋଇ ତମା ।

ଭୀଷ୍ମ ଦ୍ରୋଣ କର୍ଣ୍ଣ ମରନ୍ତେ ଯେଉଁ ଭୟ
ହୋଇଥିଲା, ସେ ଭୟ ହୋଇଲା ଉଦୟ ।
ଅଶ୍ୱତଡ଼ା ହାତୀତଡ଼ାଏ ଭାଜିଗଲେ
ପଦାତିଏ କହ ଯୁଝିବେ କେହ୍ୱ ଭଲେ ।
ପାଣ୍ଡବ ପାଞ୍ଚାଳେ ତା ଦେଖି ସୁଖୀହୋଇ
ବାଣ ବର୍ଷି ପଛେ ଧାଇଁଲେ ନରସାଇଁ ।
ପାଣ୍ଡବଙ୍କର ବାଣ ଶଙ୍ଖର ଶବଦ
ପାଇ ଆମ୍ଭ କର୍ଣ୍ଣ ଯେ ହୋଇଲା ସ୍ତବଧ ।
ତୁମ୍ଭ ସୈନ୍ୟ ପଳାଇବାର ଦେଖି କରି
ପାଞ୍ଚାଳ ନୃପତି ହସିଲେ ତାଳି ମାରି ।
ବୋଇଲେ ଆଜ ଯୁଧିଷ୍ଠିର ହେଲେ ରାଜା
ଦେଖି ଦୁର୍ଯ୍ୟୋଧନ ଭାବୁଛି ଗୁଡ଼ ଲଜ୍ଜା ।
ପୁତ୍ର ହତ ଶୁଣିଣ ଧୃତରାଷ୍ଟ୍ର ରାଏ
ଶୋକରେ ଶୀର୍ଣ୍ଣ କରି ଦେବେ ନିଜ କାଏ ।
ଆଜ ଦୁର୍ଯ୍ୟୋଧନ ତ କରମକୁ ନିନ୍ଦ
ବସିବ ଜାନୁଭାଙ୍ଗି ଯୁଦ୍ଧଦେଶେ କାନ୍ଦ ।
ବିଦୁର-ବଚନ କହିବା କରି ସତ
ରହିବେ ମଉନେ ଅମ୍ବିକାଦେବୀ ସୁତ ।
ଆଜ କୃଷ୍ଣମାହାତ୍ମ୍ୟ ପାର୍ଥ ଧନୁର୍ଯଶ
ଜାଣିବେ ଧୃତରାଷ୍ଟ୍ର ନରକୁଳଈଶ ।
ଭୀମଙ୍କର ପରାକ୍ରମକୁ ଅନ୍ଧ-ଆଖି
ଆଜ କର୍ଣ୍ଣେ ଶୁଣି କରିବେ ଅନ୍ଧ ଆଖି ।
ଜଗତନାଥ କୃଷ୍ଣ ପାଣ୍ଡବଙ୍କ ନାଥ
ହେବାରୁ ଜୟ ଗୋଡ଼ାଇଛି ତାଙ୍କ ସାଥ ।
ଏହିରୂପେ ପାଞ୍ଚାଳେ କୁହା କୁହି ହୋଇ
ପଳାଇବା ଦଳକୁ ମାଇଲେ ନିଠାଇ ।
ଦୁର୍ଯ୍ୟୋଧନ ସେକାଳେ ବୋଇଲେ ସୂତକୁ
ବାହା ମୋର ସୈନ୍ୟ ପଛକୁ ରଥଟିକୁ ।
ସୈନ୍ୟ ଆଗୁଳି ମୁହିଁ ପାଣ୍ଡବଙ୍କ ବାଣ
ବନ୍ଧିବି ଦେଖାଇ ମୋ ବାହୁବେନି ଟାଣ ।
ମୋତେ ବଳଆଇ ଯିବାକୁ ଅର୍ଜୁନର
ଅସ୍ତ୍ରବିଦ୍ୟା ନାହିଁ ସାରଥି ମନେକର ।
ଯେଉଁରୂପେ ବେଳା ଆଗୁଳେ ସମୁଦ୍ରକୁ
ସେରୂପେ ଆଗୁଳିବି ମୁହିଁ ଅର୍ଜୁନକୁ ।
ତୁମ୍ଭ ପୁଅ ବଚନ ଶୁଣି ସେ ସାରଥି
ବାହିଲା ଘୋଡ଼ା ଭୟ ଯୋଗୁଁ ହୋଇ ବ୍ୟଥୀ ।

ଏକୋଇଶ ସହସ୍ର ସେନା ଘେନ ସଙ୍ଗେ
ରହିଲେ ଦୁର୍ଯ୍ୟୋଧନ ଏକା ରଣରଙ୍ଗେ ।
ଭୀମ ଧୃଷ୍ଟଦ୍ୟୁମ୍ନ ହୋଇଣ ଏକମନ
ବଜାଇଲେ ଭୂମ୍ଭ ସୈନ୍ୟଙ୍କୁ କାଣ୍ଡମୂନ ।
ଭୀମଙ୍କୁ ଭୂମ୍ଭ ସେନାମାନେ ବେଢ଼ି କରି
ବାନ୍ଧିଲେ ଦିବ୍ୟ ଅସ୍ତ୍ରମାନ ବାଚ୍ଛିକରି ।
ମଇନାକ ଗିରି ପରାୟେ ଭୀମସେନ
ରହିଲେ ଯୁଦ୍ଧଦାଣ୍ଡେ କ୍ରୋଧ କରିମନ ।
ରଥରୁ ଡେଇଁ ପଡି ଗଦା କରେ ବହି
ଭୀମ ଭୂମ୍ଭ ବଳକୁ ବଳେ ଦେଲେ ଦହି ।
ଏକୋଇଶ ସହସ୍ର ସୈନ୍ୟଙ୍କୁ ଭୂମ୍ଭର
ମାରି ପକାଇଲେ ଏକାଠି ଭୀମବୀର ।
ଆଗେ ପାଣ୍ଡୁସୁତେ ଚଳାଇ ନୃପତିଙ୍କୁ
ଯୁଝିଲେ ଯାଇକରି ଭୂମ୍ଭ ସଇନକୁ ।
ଭୂମ୍ଭ ସୁତ ସେ କାଳେ ଭୟ ଛାଡ଼ିଦେଇ
ଏକା ହୋଇ ରାଜାଙ୍କୁ ଯୁଝିଲେ ରୋଷାଇ ।
ସଇନକୁ ବୋଇଲେ ନ ପଳାଅ କେହି
ମାରିବେ ଗୋଡ଼ାଇ ପାଣ୍ଡବ ନରସାଇଁ ।
କୃଷ୍ଣ ଅର୍ଜୁନ ଯୁଦ୍ଧେ ହେଲେଣି ଆଶକ୍ତ
ଆସ ଆଗ କରିବା ତାହାଙ୍କୁ ନିହତ ।
ସୈନ୍ୟ ବଳ ଭୁଲରେ ଯୁଧିଷ୍ଠିର ରାଜା
ଛନ୍ତି ସିନା ପଛେ କରିବା ଖଣ୍ଡାପୂଜା ।
ଜନମ ହୋଇଲେ ତ ମରଣ ହୁଅଇ
ଯୁଦ୍ଧରେ ମରିବାକୁ ଡରିବା କିପାଇଁ ।
ସଂଗ୍ରାମରେ ମଲେ ପାଇବା ସ୍ୱର୍ଗବାସ
ପୁଣି ଜନ୍ମ ହେଲେ ହୋଇବା ନରଈଶ ।
ଏରୂପେ ଦୁର୍ଯ୍ୟୋଧନ-କଥା କର୍ଣ୍ଣେ ଶୁଣି
ବାହାରିଲେ ଯୁଦ୍ଧକୁ ଭୂମ୍ଭ ସେନାଶ୍ରେଣୀ ।
ଭୂମ୍ଭ ସୈନ୍ୟ ପାଲଟିବାର ନେହେ ଦେଖି
ବାନ୍ଧିଲେ ପାଣ୍ଡବେ ଧନୁରେ ଶର ଯୋଖି ।
ଅରଜୁନ କମ୍ପାଇ ଗାଣ୍ଡୀବଧନୁକୁ
ଛୁଟିଲେ ମାରଟଣେ ଯୁଦ୍ଧ-ଅଙ୍ଗଣକୁ ।
ନକୁଳ ସହଦେବ ସାତ୍ୟକି, ଶକୁନିଙ୍କୁ
ବେଢ଼ି ଶର ବର୍ଷିଲେ ଓଟାରି ଧନୁକୁ ।
ସେ ସମୟେ ଶାଲ୍ୱ ଅମିତ୍ରମର୍ଦ୍ଦନ
ମହାଗଜବରକୁ କଲା ଆରୋହଣ ।
ମ୍ଲେଚ୍ଛବଳ ସଙ୍ଗତେ ପାଣ୍ଡବଙ୍କ ବଳେ
ପ୍ରବେଶ ହେଲେ ଧନୁ ଧରି କରତଳେ ।
ଇନ୍ଦ୍ର ବଜ୍ର ପରି ତା ମାରଟଣଟଣ
ବାହାରିଲେ ଯୁଦ୍ଧଦାଣ୍ଡ ରେ ନରଗଣ ।
ଶାଲ୍ୱ ଛିଦ୍ର ଜାଣିବା ପାଇଁ ପାଣ୍ଡୁସେନା
ସମର୍ଥ ନୋହିଲେ ରାଜନ ମହାମନା ।
ସୋମକ ପାଣ୍ଡବେ ସେ ହାତିଦନ୍ତଘାତେ
ମାରି ଛାଡ଼ି କରିଲେ ଯମଙ୍କ ପୁରତେ ।
ସେ ହାତି ସକାଶରୁ ପାଣ୍ଡବ ସେନା
ମଲୁଁ ବୋଲି କରି ହୋଇଲେ ବିମନା ।
ଭୂମ୍ଭ ଲୋକେ ପାଣ୍ଡବସେନା ଭାଜିବାର
ଦେଖିଣ ପ୍ରଶଂସିଲେ ଶାଲ୍ୱଙ୍କୁ ଅପାର ।
ଧୃଷ୍ଟଦ୍ୟୁମ୍ନ ଶାଲ୍ୱଙ୍କ ପ୍ରଶଂସା ନ ସହି
ବାହାରିଲେ ସମର-ଦାଣ୍ଡରେ ରୋଷାଇ ।
ଶାଲ୍ୱ ଧୃଷ୍ଟଦ୍ୟୁମ୍ନଙ୍କୁ ଦେଖି ବେନି ନେହେ
ଟିପିଲେ ହାତୀ ମାରି ଅଙ୍କୁଶ ତା ଗାହେ ।
ଶାଣଦିଆ କାଣ୍ଡ ତିନିଗୋଟି ବସାଇ
ଧୃଷ୍ଟଦ୍ୟୁମ୍ନ ହାତୀକ ବନ୍ଧ ନରସାଇଁ ।
ପୁଣି ସେ କରିବର କୁମ୍ଭକୁ ନାରାଚ
ତିନି ବିନ୍ଧ ଶେଷେ ବିନ୍ଧିଲେ ଆଉ ପାଞ୍ଚ ।
ଧୃଷ୍ଟଦ୍ୟୁମ୍ନ କାଣ୍ଡ ଆଘାତେ ପୀଡ଼ା ପାଇ
ପଳାଇଲା ହାତୀ ପଛକୁ ଘୁଞ୍ଚାଦେଇ ।
ଶାଲ୍ୱ ହାତୀ ଭାଜିବା ଦେଖିଣ ଅଙ୍କୁଶ
ମାରି ହାତୀ ନେଲେ ପାଞ୍ଚାଳରଥୀ ପାଶ ।
ଧୃଷ୍ଟଦ୍ୟୁମ୍ନ ହାତୀକ ରଥପାଶେ ଦେଖି
ଗଦା ଧରି ତଳେ ଡେଇଁଲେ ହୋଇ ଦୁଃଖୀ ।
ମନେକଲେ ଏ ରଥବରରେ ବସିଲେ
ଏ ହାତୀ ଚକଟିବ ପାଦେ ମୋତେ ଭଲେ ।
ହାତୀ ସେ କାଳରେ ଶୁଣ୍ଢରେ ରଥ ଟେକି
ଚେଚରି ମହୀ ମଧ୍ୟରେ କଲା ଚିକଟିକି ।
ଧୃଷ୍ଟଦ୍ୟୁମ୍ନଙ୍କର ଭୟକୁ ଭୀମ ଜାଣି
ସାତ୍ୟକି ଶିଖଣ୍ଡୀଙ୍କି ସଙ୍ଗତରେ ଘେନି ।
ସେ ହାତୀ ସମୀପକୁ ବୋଲି ଧାଇଁଗଲେ
ଆମ୍ଭେ ଅଛୁଁ ନ ଡର ବୋଲିଣ ଡାକିଲେ ।
ନିଜ ଧନୁବରକୁ ଟେକି କରପୁଟେ
ନିବାରିଲେ ହାତୀକି ବାଣ ବିନ୍ଧି ଆଣ୍ଟେ ।

ଶାଲ୍ୱ ମହାବଳୀ ସେ ଦେଖାଇଣ ବଳ
ଶରେ କଲେ ପାଣ୍ଡବକୁଳକୁ ଆକୁଳ ।
ଶାଲ୍ୱ-ବଳ ଦେଖିଣ ସୃଞ୍ଜୟ ପାଞ୍ଚାଳେ
ମାର ହେ ବୋଲ କର ମାଇଲେ କପାଳେ ।
ଧୃଷ୍ଟଦ୍ୟୁମ୍ନ ଗଦା ଧରି ସେ ହାତୀ ପାଶେ
ଛୁଡ଼ା ହୋଇ ପିଟିଲେ ତାକୁ ଅତି ରୋଷେ ।
ସେ ଘାତରେ ସେ ହାତୀ ଫିଟାଇ କୁମ୍ଭକୁ
ରକତ ବାନ୍ତି କରି ଭଜିଲା ମୃତ୍ୟୁକୁ ।
ସାତ୍ୟକି ସେକାଳେ ବିନ୍ଧିଲେ ଭଲ୍ଲକାଣ୍ଡ
ଶାଲ୍ୱର ମୁଣ୍ଡଟିକି କଲେ ଦୁଇଖଣ୍ଡ ।
ବଜ୍ର ବାଜିଣ ଗିରି ପଡ଼ିବା ପ୍ରାୟେ
ଶାଲ୍ୱ-କାୟ ପଡ଼ିଲା ଦେଖିଲୁଁ ସଭିଏ ।
ମରନ୍ତେ ଶାଲ୍ୱ ତୁମ୍ଭ ସୈନ୍ୟ-ଘନ ଗ୍ରାୟେ
ପଳାଇଗଲେ ଭୟେ ପବନର ଘାଏ ।
ସଇନର ଭାଗୁଡ଼ ଦେଖି କୃତବର୍ମା
ନିବାରିଲେ ତାହାଙ୍କୁ ସେ ତ ମହାକର୍ମା ।
ପବ୍ବତ ପରି ସାତ୍ୟକିଙ୍କି ରଣେ ଦେଖି
କୃତବର୍ମା ବିନ୍ଧିଲେ ଧନୁ ଗୁଣେ ଯୋଖି ।
ଏକା ସେ କୃତବର୍ମା କରନ୍ତେ ସମର
ସେ ମହାଚମତ୍କାର ହେଲା ନରବର ।
ତୁମ୍ଭର ଲୋକମାନେ କୃତବର୍ମା ବଳୀ
ଦେଖି ପଳାଇଗଲେ ଗୃଳକରି ପେଲି ।
ସାତ୍ୟକି ସାତ କାଣ୍ଡେ କ୍ଷେମକୀର୍ତ୍ତି ପ୍ରାଣ
ନେଇ ପଳାଇଲେ ହସ୍ତିନା ନରଗଣ ।
କୃତବର୍ମା ତାହା ଯେ ସହି ନ ପାରିଲେ
ସାତ୍ୟକିଙ୍କ ଆଗରେ ରହି ଯୁଦ୍ଧ କଲେ ।
ସିଂହ ପରି ସେ ଦୁଇ ରଥୀ ଗରଜନ
କରି ବିନ୍ଧାବିନ୍ଧି ହୋଇଲେ ତୀକ୍ଷ୍ଣ ବାଣ ।
ପାଣ୍ଡୁ ସୈନ୍ୟ ପାଞ୍ଚାଳ ସଇନ ତା ଦେଖି
କେଉଁ ଯୁଦ୍ଧ ହେଲା ବୋଇଲେ ବୁଜି ଆଖି ।
ବଛଦନ୍ତ ନାରାଚ ମାରି ଦୁଇ ବୀରେ
ଦେହକୁ ଚୋବା କଲେ ଯୁଦ୍ଧେ ରକତରେ ।
ଦୁହିଁଙ୍କ ଧନୁରୁ ବାହାରି ଶରରାଜି
ସୂର୍ଯ୍ୟକାନ୍ତିଙ୍କର କରିଣ ଦେଲା ଗଞ୍ଜି ।
କୃତବର୍ମା ସାତ୍ୟକି ଙ୍କର ଘୋଡ଼ା ପ୍ରାଣ
ନେବାପାଇଁ ବିନ୍ଧିଲେ ବାଉଶଟି ମାର୍ଗଣ ।

ସାତ୍ୟକି କୃତବର୍ମା ଦେହେ ଆଠକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
କୃତବର୍ମା ସାତ୍ୟକି ଦେହେ ତିନି ବିନ୍ଧି
କାଣ୍ଡକରେ ଦେଲେ ତାହାଙ୍କ ଧନୁ ଛେଦି ।
ସାତ୍ୟକି ଛିଡ଼ିବାରୁ ଧନୁକୁ ରଥରେ
ଥୋଇ ଆନ ଧନୁକୁ ଧରିଣ ହାତରେ ।
କୃତବର୍ମା ଧ୍ୱଜକୁ କରି ଦୁଇଖଣ୍ଡି
ଫୁଟାଇଲେ ଦଶ କାଣ୍ଡରେ ଘୋଡ଼ାଗଣ୍ଡି ।
ଏହା ବାହାରେ ସାରଥିର ମୁଣ୍ଡଖଣ୍ଡ
ଗଡ଼ାଇଦେଲେ ସେହୁ ଯୁଦ୍ଧଭୂମିଦାଣ୍ଡ ।
କୃତବର୍ମା ବିରଥ ହୋଇ ଶୂଳ ଧରି
ଶିନିବୀର ପରେ କ୍ଷେପିଲେ କ୍ରୋଧ କରି ।
ସାତ୍ୟକି ସେ ଶୂଳକୁ ତୀକ୍ଷ୍ଣ କାଣ୍ଡରେ
ଚୂନା କରିଲେ ବଳ ଦେଖାଇ ଲୋକରେ ।
ଭଲ୍ଲକାଣ୍ଡେ କୃତବର୍ମାଙ୍କ ଭଲ ହୃଦ
ବିଦାରି ପକାଇ ବହିଲେ ହୃଦେ ମୋଦ ।
ସେ ଘାଏ କୃତବର୍ମା ବୀର ମୋହ ଯାଇ ।
ତଳ ଧରଣୀରେ ପଡ଼ିଲେ ନରସାଇଁ ।
କୃତବର୍ମା ଏ ଦଶା ଦେଖି ତୁମ୍ଭ ସେନା
ହୋଇଲେ ଅତିଶୟ ସଜନ ବିମନା ।
କୃତବର୍ମା ବିରଥ କୃପଗୁରୁ ଜାଣି
ଘେନିଗଲେ କୃତବର୍ମାଙ୍କୁ ସେହିକ୍ଷଣି ।
ତା ଦେଖି ତୁମ୍ଭ ବଳଯାକରେ ଭାଗୁଡ଼ି
ପଡ଼ିଲା ପଳାଇଲେ ଯୁଦ୍ଧ ଭୂମି ଛାଡ଼ି ।
ଦୁର୍ଯ୍ୟୋଧନ ବିନା ସେକାଳେ ଯୁଝିବାକୁ
ନ ଦେଖିଲୁଁ ତ ଯୁଦ୍ଧଦାଣ୍ଡରେ କାହାକୁ ।
ତୁମ୍ଭ ପୁଅ ସେକାଳେ ତୁମ୍ଭର ସଇନ
ନିବାରିଲେ କରିବା ପାଇଁ ଆୟୋଧନ ।
ପାଣ୍ଡବ ପାଞ୍ଚାଳକୁ ଦିବ୍ୟ ଶର ବିନ୍ଧି
ତୁମ୍ଭ ସୁତ ଯୁଦ୍ଧରେ ପକାଇଲେ ରୁନ୍ଧି ।
ମନ୍ତ୍ରପୂତ ଅନଳ ଜଳିଲା ପରାୟେ
ଯୁଦ୍ଧେ ଶୋଭା ପାଇଲେ ଦୁର୍ଯ୍ୟୋଧନ ରାୟେ ।
ମର୍ତ୍ତ୍ୟମାନଙ୍କର ମରଣ ପରି ହୋଇ
ଦିଶିଲେ ସେ ସବୁରି ନେତ୍ରେ ନରସାଇଁ ।
କୃତବର୍ମା ସେକାଳେ ଚଢ଼ି ଆନ ରଥ
ବାହାରିଲେ ଦେଖାଇ ଯୁଦ୍ଧ-ସାମରଥ ।

ତୁମ୍ଭ ପୁଅ ସଙ୍ଗେ ଯୁଝିବା ଥାଉ କେଉଁ
ଅନାଇଁ ନ ପାରିଲେ ତାଙ୍କ ଆଗେ ରହି ।
ଦୁର୍ଯ୍ୟୋଧନ ଧନୁ-ଘନରୁ ଶର-ବାରି
ବାହାରି ଘୋଡ଼ାଇଲେ ପାଣ୍ଡୁ ସୈନ୍ୟଗିରି ।
ଦୁର୍ଯ୍ୟୋଧନ ବାଣରେ ପାଣ୍ଡବଙ୍କ ଲୋକ
ଘାଉଆ ହୋଇଣ କାନ୍ଦିଲେ ସକସକ ।
ସୈନ୍ୟ ପାଦଘାତରେ ଉଡ଼ି ମହାଧୂଳି
ନକ୍ଷତ୍ରମଣ୍ଡଳ ପ୍ରାନ୍ତକ ଗଲା ବଳି ।
ଦୁର୍ଯ୍ୟୋଧନଙ୍କର ବିନ୍ଧିବା ବାଣେ ଜାଣ
ବାରି ନ ପାରିଲା ସେ ଆକାଶ ନୟନ ।
ତୁମ୍ଭ ତାଙ୍କ ସେନାରେ ପୁରୁଷ ପରସ୍ପେ
ଦୁର୍ଯ୍ୟୋଧନ ପରତେ ହେଲେ ଜାଣ ସର୍ବେ ।
ଯୁଧିଷ୍ଠିର ରାଜାଙ୍କୁ ଶଏଟି ମାର୍ଗଣ
ବିନ୍ଧିଲେ ବାଛିକରି ତୁମ୍ଭର ନନ୍ଦନ ।
ଭୀମ ମହାବଳୀଙ୍କ ଗଣ୍ଠିକି ଦେଖାଇ
ସତୁରିଟି କାଣ୍ଡରେ ବିନ୍ଧିଲେ ରୋଷାଇ ।
ସହଦେବ-ଦେହକୁ ବିନ୍ଧି ସାତ ଶର
ନକୁଳଙ୍କୁ କରିଲେ ଚୌଷଠି ପ୍ରହାର ।
ଧୃଷ୍ଟଦ୍ୟୁମ୍ନଙ୍କୁ ସାତ ଯେ ସାତ୍ୟକିଙ୍କି
ତିନ ଶର ବିନ୍ଧିଲେ ଟାଣି ଧନୁଟିକି ।
ଦ୍ରୌପଦେୟମାନଙ୍କୁ ସାତ ମାରଗଣ
ସହଦେବଙ୍କ ଧନୁ କାଟିଲେ ତକ୍ଷଣ ।
ସହଦେବ ଛାଡ଼ିବା ଧନୁ ରଥେ ଥୋଇ
ଆନ ଧନୁ ଧରି ଯୁଝିଲେ ନରସାଇଁ ।
ନକୁଳ ସେହି କାଳେ ମାତି ରଣରଙ୍ଗେ
ନବକାଣ୍ଡ ବିନ୍ଧିଲେ ଦୁର୍ଯ୍ୟୋଧନ ଅଙ୍ଗେ ।
ଗଣ୍ଠିସାନ ସ୍ୱାତକାଣ୍ଡକୁ ଶିନସାରି
ବିନ୍ଧିଲେ ଭାଙ୍ଗିବାକୁ ଗର୍ବ ତାହାଙ୍କର ।
ତେସ୍ତରି କାଣ୍ଡ ବିନ୍ଧି ଦ୍ରୌପଦୀଙ୍କ ସୁତେ
ବୋଇଲେ ରହ ରହ ରାଜ ମହାମତେ ।
ଯୁଧିଷ୍ଠିର ପାଞ୍ଚ ଯେ ଭୀମସେନ ଅଶୀ
ବିନ୍ଧିଦେଲେ ନଶଦୁଇକ ହାତେ ଘଷି ।
ଏରୂପେ ହେଲେ ହେଲେ ତୁମ୍ଭର ନନ୍ଦନ
ନ ଟଳିଲେ ଟିକେ ହେଁ ନୋହିଣ ବିମନ ।
ତୁମ୍ଭପୁଅ ଲାଘବ ସଉଷ୍ଠବ ଦେଖି
ପ୍ରଶଂସିଲେ ତୁମ୍ଭ ଯୋଦ୍ଧାଏ ହୋଇ ସୁଖୀ ।

ଶକୁନି ଯୁଧିଷ୍ଠିରଙ୍କ ସ୍ୱର ଘୋଡ଼ା
କାଣ୍ଡକେ କଲେ ନେଇ ଯମପୁରେ ଛାଡ଼ା ।
ସହଦେବ ଯୁଧିଷ୍ଠିରଙ୍କୁ ନିଜ ରଥେ
ବସାଇଲେ ହାତ ବେନିକ ଧରି ହାତେ ।
ଆନରଥ ଚଢ଼ିଣ ଯୁଧିଷ୍ଠିର ବୀର
ଶକୁନିଙ୍କି ବିନ୍ଧିଲେ ତଉଦଟି ଶର ।
ସିଦ୍ଧ ଚାରଣେ ସେହି ଯୁଦ୍ଧରେ ଲାଳସୀ
ହୋଇ ଦେଖି ଆସି ହୋଇଲେ ମହାତୋଷୀ ।
ଉଲୂକ ନକୁଳଙ୍କୁ ବିନ୍ଧି କାଣ୍ଡରାଜି
ଧାଇଁଲେ ଗଳାମୋଟା କରିଣ ଗରଜି ।
ନକୁଳ ଶକୁନିଙ୍କ ପୁଏ ବିନ୍ଧି ବାଣ
ନିବାରିଲେ ଯୁଦ୍ଧଭାଣ୍ଡରେ ନରଗଣ ।
ଅନ୍ୟୋନ୍ୟରେ ସେ ଦୁହେଁ ହୋଇ ବିନ୍ଧାବିନ୍ଧି
ଯୁଦ୍ଧଦାଣ୍ଡେ ରାଜନ ହେଲେ ରୁନ୍ଧାରୁନ୍ଧି ।
କୃତବର୍ମା ସାତ୍ୟକି ଦୁହିଁଙ୍କର ରଣ
ସେକାଳେ ପ୍ରବର୍ତ୍ତିଲା ହୋଇ ଅତି ଟାଣ ।
ଦୁର୍ଯ୍ୟୋଧନ ଧୃଷ୍ଟଦ୍ୟୁମ୍ନ ଯେ ଧନୁକୁ
କାଟିକରି ବିନ୍ଧିଲେ ମାର୍ଗଣଗଣକୁ ।
ଧୃଷ୍ଟଦ୍ୟୁମ୍ନ କରେ ଧରିଣ ଆନ ଧନୁ
କମ୍ପାଇଲେ ଶରରେ ଦୁର୍ଯ୍ୟୋଧନ-ତନୁ ।
ଉନ୍ମତ ହସ୍ତୀ ଦୁହେଁ ଯୁଝିବା ପରସ୍ପେ
ସେ ଦୁଇ ରଥୀ ଯୁଦ୍ଧକଲେ ଅତି ଶସ୍ତ୍ରେ ।
କୃପ କୋପ ହୋଇଣ ଦ୍ରୌପଦୀସୁତଙ୍କୁ
ବିନ୍ଧିଲେ ନାନା ଶର ଓଟାରି ଗୁଣକୁ ।
ହାତୀ ହାତୀ ତୁଲରେ କରିଣ ଲଢ଼ାଇ
ନେଲେ କେ କାହାଠାରୁ ଜୟକୁ ଛଡ଼ାଇ ।
ଘୋଡ଼ାସୋହ୍ମମାନେ ଯେ ଘୋଡ଼ାସୋହ୍ମ ତୁଲେ
କରେ ଧରି ବରଛି ଫିଙ୍ଗା ଫିଙ୍ଗି ହେଲେ ।
ପାଇକେ କରପୃଷ୍ଠେ ବନ୍ଧି ଫରି ଖଣ୍ଡା
ପିଟାପିଟି ହୋଇ ଶୋଇଲେ ହୋଇ ଦଣ୍ଡା ।
ଶସ୍ତ୍ରଙ୍କର ଘାତରେ ଉଡ଼ି ମହାରଜ
ବୁଜାଇଲା ସଭିଙ୍କ ନୟନ-ସରୋଜ ।
ହାତୀମାନଙ୍କର ନିଶ୍ୱାସେ ଧୂଳି ଉଡ଼ି
ସୂର୍ଯ୍ୟମଣ୍ଡଳକୁ ରହିଲା ଯାଇ ମାଡ଼ି ।
ବୀରମାନଙ୍କର ବହନ୍ତେ ରକ୍ତସ୍ରୋତ
ତେଣେ ଧୂଳି ଗୋଟି ମହୀକି ହେଲା ଗତ ।

ଏରୂପରେ ଅଢର ଦୁଇ ସମୟରେ
ଯୁଦ୍ଧ କଲେ କୁରୁ ପାଣ୍ଡବ ନିରନ୍ତରେ ।
କବଚମାନଙ୍କ ପ୍ରଭାରେ ଲୋକ ଭ୍ରାନ୍ତି
ନ ପାରିଲେ ଜାଣ ଦିବସ କି ନିଶି ।
ବାଉଁଶବନ ପୋଡ଼ ପରାୟେ ଶବଦ
ଜାତ କଲେ ରଥୀଏ ଶରେ ବଢ଼ି ମୋଦ ।
ଏରୂପେ ଯୁଦ୍ଧ କରି ପଣ୍ଡୁ-ସେନାବଳ
ପାଇ ପଳାଇଲେ ଭୀଷ୍ମର ସେନାକୁଳ ।
ପୁଣି ଭୀଷ୍ମ ପୁଅ ସୈନ୍ୟକୁ ପ୍ରବର୍ତ୍ତାଇ
ରଖିଲେ ଯୁଦ୍ଧଧାଣ୍ଡେ ପଶିବାର ପାଇଁ ।
ଭୀଷ୍ମ ପୁଅ ଜୟକୁ ହେବ ଭୀଷ୍ମ ଯୋଦ୍ଧା—
ମାନେ ହୃଦ ମଧ୍ୟରେ ବଢ଼ି ମହାଶ୍ରଦ୍ଧା ।
ପାଲଟି ପାଣ୍ଡବଙ୍କ ସେନା କାଣ୍ଡ କାଟି
ବିନ୍ଧିଲେ ଧନୁର୍ଗୁଣ ମଧ୍ୟେ ଶର ଯୋଡ଼ି ।
ପର ଆପଣାର ନୋହିଲା କିଛି ଜଣା
ନାମ ଗୋତ୍ର ଡାକ ଯୁଝିଲେ ନୋହି ବଣା ।
ଯୁଧିଷ୍ଠିର ସୁବର୍ଣ୍ଣପୁଂଖ ଶିଳାଘଷା
ସାତବାଣ କାଟିଲେ ନେବାକୁ ପ୍ରଶଂସା ।
ଆଗ ତିନି ସେ କୃତବର୍ମାଙ୍କୁ ବିନ୍ଧିଲେ
ଚାରି କାଣ୍ଡେ ତାହାଙ୍କ ଘୋଡ଼ାକୁ ମାଇଲେ ।
ଅଶ୍ୱତ୍ଥାମା କୃତବର୍ମାଙ୍କୁ ଯେ ଆବୋରି
ଘେନିଗଲେ ଆସି ହସ୍ତିନା-ଦଣ୍ଡଧାରୀ ।
କୃତବର୍ମା ଯୁଧିଷ୍ଠିରଙ୍କୁ ଆଠ ଶର
ବିନ୍ଧିଲେ ସୁମରିଣ ପୂରୁବ ପ୍ରହାର ।
ଦୁର୍ଯ୍ୟୋଧନ ସାତଶ ରଥୀ ବରଗିଲେ
ମାର ବୋଲି ପାଣ୍ଡବନୃପଙ୍କୁ କହିଲେ ।
ସେ ରଥୀଏ ପାଣ୍ଡବନୃପ-ସବତାଙ୍କୁ
ଘୋଡ଼ାଇ ଦେଲେ ଘନ-ଆଶୁଗ-ଧାରକୁ ।
ଶିଖଣ୍ଡୀଙ୍କି ଆଦି ଯେ ମହାରଥୀମାନେ
ଜଗିଲେ ଆସି ଯଧିଷ୍ଠିରଙ୍କୁ ବନ୍ଧନେ ।
ସେକାଳେ ଯମବସ୍ତ୍ରବଭଧନ ହୋଇ
ଯୁଦ୍ଧ ପ୍ରବର୍ତ୍ତିଲା ଶାନ୍ତାଶିଦେବାପାଇଁ ।
ପାଣ୍ଡବେ ପାଞ୍ଚାଳଙ୍କ ଭୁଲରେ ସାତଶ
ରଥୀଙ୍କର ପ୍ରାଣ କାଣ୍ଡରେ କଲେ ନାଶ ।
ଭୀଷ୍ମ ପୁଅ ସେକାଳେ ଧରିଣ ଧନୁଟି
ପଶିଲେ ପାଣ୍ଡବଙ୍କୁ ବିନ୍ଧ ଶରକୋଟି ।

'ଏହି ରୂପରେ ଯୁଦ୍ଧ ହୁଅନ୍ତେ ଗଜନ
ଧରଣୀଦେବୀ କମ୍ପିଗଲେ ହୋଇ ଛନ୍ନ ।
ଯୋଦ୍ଧାଙ୍କ ସିଂହନାଦ ଶଙ୍ଖର ଶବଦ
ଶୁଣିଣ ହେଲୁଁ ଆମ୍ଭେମାନେ ଅପ୍ରମୋଦ ।
ମହାଉତ୍ପାତ ଆକାଶେ ହୋଇ ଗୋଟି
ବୁଜାଇଲା ଦେଖିବା ଲୋକଙ୍କର ଦୃଷ୍ଟି ।
ସୂର୍ଯ୍ୟମଣ୍ଡଳବେ ଯେ ଦାରୁଣ ଉଲ୍କା
ତଳେ ପଡ଼ି କଲା ପ୍ରାଣୀଙ୍କ ହୃଦେ ଦକା ।
ନିଷ୍ଠୁର ହୋଇକରି ବହିଣ ପବନ
ବୁଜାଇଲା ଗଜନ ସବୁରି ନୟନ ।
ହାତୀ ଘୋଡ଼ାଯାକ ଲୋତକ-ଧାର ମୁଞ୍ଚି
ନ ଚଳିଲେ ଭୟେ ମରିବା ସିନା ପାଞ୍ଚି ।
ଭୀଷ୍ମ ତାଙ୍କ ସେନାରେ ଯେ ଯେ ଶୂର ଥିଲେ
ସେ ଉତପାତ ଦେଖି ମହାସୁଖୀ ହେଲେ ।
ବୋଇଲେ ଆଜ ଯୁଦ୍ଧେ ପାଇବୁଁ ମରଣ
ପୂଜିବେ ଆମ୍ଭ ପାଦ ଶଚୀଙ୍କ ରମଣ ।
ଶକୁନି ଭୀଷ୍ମ ସେନାମାନଙ୍କୁ ଡକାଇ
ବୋଇଲେ ମୋର ଆଗେ ରହ ଧୈର୍ଯ୍ୟହୋଇ
ଭୀଷ୍ମ ପଛେ ଥାଇ ପାଣ୍ଡବ ପାଞ୍ଚାଳଙ୍କୁ
ଦେଖାଇବ ବାଣେ ଯମଙ୍କ ନଗରକୁ ।
ମଦ୍ରଯୋଦ୍ଧାମାନେ ବାକି ଯେତେକ ଥିଲେ
ତେତେବେଳେ ଆମ୍ଭ ଆଗରେ ସେ ଧାଇଁଲେ ।
ପାଣ୍ଡବେ ତା ନ ସହି କଲେ ଶରବୃଷ୍ଟି
ସହିବା ପାଇଁ ଆମ୍ଭର ଦୁଃଖସୃଷ୍ଟି ।
ପାଣ୍ଡବଙ୍କ ରଣରେ ମଦ୍ରଦେଶବଳ—
ମାନେ ଯାଇକରି ଭେଟିଲେ ପ୍ରେତପାଳ ।
ଦୁର୍ଯ୍ୟୋଧନ ବଳ ତା ନ ସହି ଭାଗୁଡ଼
ପଛକୁ କଲେ ମୁଖ ଅବା ବୋଲିକରି ।
ଶକୁନି ତାହା ଦେଖି ମୋଡ଼ି ଦୁଇ ନଶ
ବୋଇଲେ ରହି ଦେଖ ଥରେ ମୋ ପୌରୁଷ
ଶକୁନିର ଆଗେ ସହସ୍ରଦଶ ଘୋଡ଼ା—
ଚଢ଼ା ସିପାଇଏ ତ ହୋଇଥିଲେ ଛୁଡ଼ା ।
ସେ ସିପାଇଙ୍କର ବରଛି ଘାତ ପାଇ
ପାଣ୍ଡବସେନା ଗାବଗୁଡ଼ିଲେ ଯେ ତହିଁ ।
ଯୁଧିଷ୍ଠିର ତା ଦେଖି ଡାକି ସହଦେବ
ବାଇଲେ ଦେଖ ଭାଇ ଆମ୍ଭର ଅଭାବ ।

ଶୁଣ ବୋଲେ ସୁବଳନନ୍ଦନ ଶକୁନି
ଯୁଝୁଅଛି ଆମ୍ଭଙ୍କୁ ଘୋଡ଼ାସେନା ଘେନି ।
ସଙ୍ଗତରେ ଘେନ ଦ୍ରୌପଦୀ ପାଞ୍ଚସୁତ
କରି ତୁମ୍ଭେ ଯାଇଣ ଶକୁନିଙ୍କ ହତ ।
ସହସ୍ର ତିନ ପତ୍ତି ସହସ୍ର ପାଞ୍ଚ ଅଶ୍ୱ
ସାତଶ ହସ୍ତୀ ଘେନ ଯାଅ ହେ ଖଗେଶ ।
ସହଦେବ ସେରୂପେ ସଙ୍ଗେ ଦଣ୍ଡ ଧରି
ଶକୁନିଙ୍କି ଯାଇ ଯୁଝିଲେ ଦଣ୍ଡଧାରୀ ।
ଶକୁନି ପାଣ୍ଡବଙ୍କୁ କରି ଅତିଶ୍ରମ
ମାଇଲେ ପାଣ୍ଡୁ ସେନା କରିଣ ସଂଗ୍ରାମ ।
ପାଣ୍ଡବଙ୍କ ସିପାଇମାନେ କ୍ରୋଧ ହୋଇ
ଧୁଆଁଇଲେ ଘୋଡ଼ା ଯୁଦ୍ଧରେ ନରସାଇଁ ।
ତୁମ୍ଭ ଦୁର୍ମନ୍ତ୍ରଣାରୁ ଗଦା-ପ୍ରାସଯୁଦ୍ଧ
ପ୍ରବର୍ତ୍ତିଲା ଯୋଦ୍ଧାଏ ଧରନ୍ତେ କି କ୍ରୋଧ ।
ପର ଆପଣାକୁ ସେହି କାଳରେ ବାରି
ନୋହିଲା ଜାଣି, ହେ ହସ୍ତିନା ଦଣ୍ଡଧାରୀ ।
କେବଳ ଖଣ୍ଡା ଗଦା ମାଡ଼େ ଖଣ୍ଡା ଖଣ୍ଡା
ହୋଇ ମଡ଼ା ପଡ଼ିଲେ ଯେତେ ତୁମ୍ଭ ଭେଣ୍ଡା
କାଣ୍ଡ ବାଜ ସହସ୍ର ସଂଖ୍ୟା ତୁମ୍ଭ ବାଜ ।
ପଡ଼ିଲେ ଭୂଇଁତଳେ ପ୍ରିୟ ପ୍ରାଣ ତେଜ ।
ଅନ୍ୟୋନ୍ୟେ ଘୋଡ଼ାଙ୍କୁ ସିପାଇ ଛାଡ଼ିଦେଇ
ଯୁଝିଲେ ବାକ ବାହ୍ୟେ ଧରାଧରି ହୋଇ ।
ଛିନ୍ନଭୁଜ ଛିନ୍ନମସ୍ତକ ଛିନ୍ନଗଣ୍ଡି
ପଡ଼ିବାରେ ପୂରିଲା ଯୁଦ୍ଧଭୂମିଖଣ୍ଡି ।
ସେ ସକାଶୁଁ ଯୋଦ୍ଧାଙ୍କ ପାଦ ଆଗ ପଛ
ମାର୍ଗକୁ ଯାଇ ନ ପାରିଲା ନୃପବତ୍ସ ।
ସହସ୍ରଏକ ଘୋଡ଼ା ଶକୁନି ଛେଦାଇ
ଭାଜିଲେ ଛ ସହସ୍ର ଘେନି ନରସାଇଁ ।
ପାଣ୍ଡବ ଯୋଦ୍ଧାଏ ବଳକୁ ଅନୁକ୍ରମ
ଯୋଦ୍ଧାଙ୍କୁ ଯୁଦ୍ଧ କଲେ ଦେଖାଇ ପ୍ରତାପ ।
ରହିଲେ ଧୃଷ୍ଟଦ୍ୟୁମ୍ନ ଭଣଜାକୁ ଧରି
ଜଗିଲେ ସହଦେବ ଧର୍ମଦଣ୍ଡଧାରୀ ।
ତୁମ୍ଭ ସେନା ଶକୁନି ଦେଖାଇଣ ତେଜ
ଯୁଝିଲେ ଛାଡ଼ିଦେଇ ପଳାଇବା ଲାଜ ।
ସହସ୍ରସଂଖ୍ୟା ସୈନ୍ୟମାନେ ଚୂହାଁଚୂହିଁ
ହୋଇ ଯୁଦ୍ଧ କଲେ ସଗଳୁ ହୃଦେ ବହି ।

ପକ୍ୱ ତାଳ ମରି ଖଣ୍ଡାରେ ଛିଡ଼ି ମୁଣ୍ଡ
ଗଦାଗଦା ହୋଇ ପଡ଼ିଲା ରଣଦାଣ୍ଡ ।
ଉରୁ ବାହୁ ମଡ଼ିବା ଘାତରେ ଶବଦ
ଜାତ ହୋଇ ହେଲା ଉପ୍ୟାନ୍ତ ଉପ୍ରତ ।
ତୁମ୍ଭ ତାଙ୍କ ଦୁଇ ସେନାମାନେ ସଞ୍ଚାଣ
ପରାଏ ଜୟ ନେବା ପାଇଁ କଲେ ରଣ ।
ଅନ୍ୟୋନ୍ୟେ ଖରେ ହୋଇ ଖଣ୍ଡା କଷାକଷି
ହଣାହଣି ହୋଇଲେ ହୋଇ ମିଶାମିଶି ।
ଶକ୍ତି ପ୍ରାସ ତୋମର ଯୁଦ୍ଧଭାଣ୍ଡେ ବୃଷ୍ଟି
ହୋଇ ବୁଡ଼ାଇଲା ଯୋଦ୍ଧାଙ୍କ ଅଙ୍ଗ ସୃଷ୍ଟି ।
ରକତ ମଦେ ମତ୍ତ ହୋଇଣ ଯୋଦ୍ଧାଏ
ମାଇଲେ ପର ଆପଣାକୁ କାଣ୍ଡଘାଏ ।
ତୁମ୍ଭର ବଳକ୍ଷୟ ଦେଖି ବୃକ ଗୃଧ୍ର
ଶୃଗାଳ ପାଇ ମାଂସ ମନ କଲେ ବୋଧ ।
ରୁଧିରେ ପରିପୂର୍ଣ୍ଣ ହୋଇ ଯୁଦ୍ଧ ଭୂଇଁ
ଉପ୍ୟାନ୍ତଙ୍କୁ ଦେଲା ପାଖରୁ ଖେଦାଇ ।
ସେ ଯୁଦ୍ଧରେ ଆଗକୁ ଯେଉଁ ଲୋକ ଧାଏଁ
ଘେନଯାଏ ତାକୁ ସେକ୍ଷଣି ପ୍ରେତରାଏ ।
ଯୋଦ୍ଧାମାନେ ତୁମ୍ଭର ଯଥାଶକ୍ତି କର୍ମ
କରି ଯୁଦ୍ଧେ ମାଡ଼ି ବସିଲେ ସୁରଗ୍ରାମ ।
କବନ୍ଧ ନାଚିବାରେ ଯୋଦ୍ଧାଙ୍କର ଦୃଷ୍ଟି
ଦୁଇ ନରବର ଦେଖିଣ ଗଲା ଫୁଟି ।
ତୁମ୍ଭର ଶଳା ଅବଶେଷ ଘୋଡ଼ା ବଳ
ଧରିଣ ଆଉ ଥରେ ଆରମ୍ଭିଲେ ଗୋଳ ।
ପାଣ୍ଡବସେନାଏ ତା ଦେଖି ଶସ୍ତ୍ର ଧରି
ଧାଇଁଲେ ଶକୁନି ମରଣ ଇଚ୍ଛା କରି ।
ଶକୁନିର ପୃଷ୍ଠପଟରେ ରହି ଅସ୍ତ୍ର
ବର୍ଷିଲେ ଥରାଇ ଯୋଦ୍ଧାଏ କ୍ରୋଧେ ଗାତ୍ର ।
ତୁମ୍ଭ ଲୋକେ ବାକି ଯେ ପ୍ରାଣେ ଜୀଇଥିଲେ
ସୁବଳପୁତ୍ର ପ୍ରାଣରକ୍ଷାକୁ ଯୁଝିଲେ ।
ମାରନ୍ତେ ଶସ୍ତ୍ର, ବାଧା ଗୋଇଠା ପ୍ରହାରି
ତୁମ୍ଭ ତାଙ୍କ ସେନା ଶୋଇଲେ ସ୍ୱର୍ଗେ ମରି
କ୍ଷୀଣପୁଣ୍ୟେ ସିଦ୍ଧ ପଡ଼ିବାରି ପରାଏ ।
ରଥ ହାତୀ ଉପରୁ ପଡ଼ିଲେ ଯୋଦ୍ଧାଏ ।
ଧୂଆ ଭାଇ ଶଳା ବନ୍ଧୁ କିଛି ନ ଜାଣି
ଦୁଇକୁଳ ଯୋଦ୍ଧାଏ ହେଲେ ହଣାହଣି ।

ଏରୂପେ ଅମର୍ଯ୍ୟାଦ ପ୍ରବର୍ତ୍ତିଲା ରଣ
ମରଣକୁ ଯେ କରିଥିଲେ ସେ ବରଣ ।
ପାଣ୍ଡବଙ୍କେ ଭୀଷ୍ମ ବଳ ହତ ଦେଖି
ଭୀଷ୍ମସୈନ୍ୟ ଶକୁନ ହୋଇ ମହାଦୁଃଖୀ
ସାତଶ ଘୋଡ଼ା ଯେନ ଯୁଦ୍ଧେ ବାହାରିଲେ
କଣ୍ଠକରେ ଟଙ୍କାର ଗୁଣକୁ ମାଜିଲେ ।
କୁରୁସଇନକୁ ସୁହିଁଣ ଭୀଷ୍ମ ଶଳା
କହିଲେ ଆଣେ ମେଲ ଦେଇକରି ଗଳା
ବୋଇଲେ କେଉଁଠାରେ ନନ୍ତ ଦୁର୍ଯ୍ୟୋଧନ
ଦେଖାଇଦିଅ ମୋତେ ଦେଖୁ ମୋ ନୟନ ।
ଭୀଷ୍ମ ଲୋକେ ତା ଶୁଣି କହିଲେ ତାହାଙ୍କୁ
ଦେଖ ଛତ୍ର ଟେକାଇ ଅଛନ୍ତି ରାଜାଙ୍କୁ ।
ତୁମ୍ଭେ ଏବେ ହେ ଏହି ଦାଣ୍ଡେ ଦାଣ୍ଡେ ଯାଅ
ଭେଟ ଯାଇ ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠପୁଅ ।
ଶିକୁନ ଭୀଷ୍ମ ଲୋକଙ୍କର ବାଣୀ ଶୁଣି
ଗମିଲେ ଯହିଁ ଥିଲେ କୁରୁନୃପମଣି ।
ବୋଇଲେ ହୟସୈନ୍ୟଙ୍କୁ ମୁଁ କଲି ଜୟ
ତୁମ୍ଭେ କର ରଥିଗଣଙ୍କୁ ଏବେ କ୍ଷୟ ।
ତାହାହେଲେ ଆନ ସେନାଙ୍କୁ ହେଲେ ମାରି
ଯେଣ ପିବା ଜୟଶିରୀକ ଦଣ୍ଡଧାରି ।
ଏହି ବାଣୀକି ଶୁଣି ଭୀଷ୍ମର ସେନାଏ
ଉତ୍ସାହରେ ଉନ୍ମତ୍ତ ହୋଇଣ ସଭିଏ ।
ପାଣ୍ଡବଙ୍କ ବଳକୁ ଧରି ଶରାସନ
ଧାଇଁଲେ କରିବାକୁ ମହାଆୟୋଧନ ।
ସେକାଳେ ଦୁଇ ସେନାଙ୍କର ଯୁଦ୍ଧରଡ଼ି
ପକାଇଲା ଜଣି ପ୍ରଳୟଘଡ଼ଘଡ଼ି ।
କୁରୁଙ୍କର ଆସିବା ଦେଖି ଅରଜୁନ
କୃଷ୍ଣଙ୍କୁ ଚାହିଁକରି କହିଲେ ବଚନ ।
ଘୋଡ଼ାମାନଙ୍କୁ ମୋର ବାହ ବେଗ କରି
ଦେବ ସବୁ କୁରୁଙ୍କୁ ଆଜ ମୁଁ ସଂହାରି ।
ଅଠରଦିନ ଆଜସରି କି ତ ଯୁଦ୍ଧ
ହୋଇଲା, ଦୁଇଦଳ-ସେନା ହେଲେ ବଧ ।
ବାକି ଅବଶେଷ ବଳ ଯେ ଯାହା ଅଛନ୍ତି
ତାହାଙ୍କୁ ବସାଇବି ଯମଙ୍କର କତି ।
ଭୀଷ୍ମ ପରି ଲୋକ ଯେ ଗୁଆରି କହିଲେ
ସୁଯୋଧନ ତାହାକୁ ନ ଘେନିଲା ଭଲେ ।

ଆମ୍ଭମାନଙ୍କର ସଙ୍ଗତରେ ଯୁଝିଲେ
ଭୀଷ୍ମ ମହାରଥୀ ଯେ ଶରଶଯ୍ୟା କଲେ ।
ତାହା ଦେଖିଣ ଦୁର୍ଯ୍ୟୋଧନ ନରସାଇଁ
ଯୁଦ୍ଧରୁ ଯାହା କହୁ ନିବର୍ତ୍ତିଲା ନାହିଁ ।
ଏଣୁ ମୁଁ ମଣୁଛୁ ମୂଢ଼ ତ ସୁଯୋଧନ
ଅବଶ୍ୟ ଭୀମ ଘେନିପିବେ ତା ଜୀବନ ।
ଦ୍ରୋଣ କର୍ଣ୍ଣ ବିକର୍ଣ୍ଣ ପରି ଲୋକ ମଲେ
ସୁଯୋଧନ ଚିନ୍ତା ନ କଲେ ତେବେ ଭଲେ ।
ଏଥର ସୁଯୋଧନ ହୃଦୟ ପଥର—
ଗୁଣକୁ ଶିକ୍ଷା କଲା କି ହେ ଚକ୍ରଧର ।
ଏବାହାରେ ବାହ୍ଲିକବଳ୍ୟ ସୋମଦତ୍ତ
ଭୂରିଶ୍ରବା ଅଳାୟୁଧ ଯେ ଯେ ଭଗଦତ୍ତ ।
ସୁଦକ୍ଷିଣ ଦୁଃଶାସନ ସେ ଜୟଦ୍ରଥ
ଜରାସନ୍ଧ ଶଲ୍ୟ ପ୍ରଭୃତି ମହାରଥ ।
ଏମାନଙ୍କ ମରଣ ଦେଖିଣ ନୟନେ
ରହିଲେ ହାରି କହ କେହ୍ନିଁ ସେ ଜୀବନେ ।
ନିରର୍ଥକ ବଇରି ସୁଯୋଧନ ପରି
କରିବାକୁ ମହୀରେ ନାହିଁ ଦଣ୍ଡଧାରି ।
କୁଳରେ ଜାତହୋଇ କୁଳବୁଡ଼ା କଥା
ତା ବିନା କେ କରିବ କୃଷ୍ଣ ମହାରଥୀ ।
ଭୀଷ୍ମ ପରି ଲୋକ କହିଲେ ଯାଇ ହିତ
ତା ନ ଘେନି ବର୍ତ୍ତିଲା ଅଧର୍ମରେ ଚିତ୍ତ ।
ମାତା ପିତା ବଚନ ନ ଘେନି ମାନସେ
ମୁଁ ବଳୀ ବୋଲିକରି ଯୁଝିଲା ହରଷେ ।
ଏବେ ତ ଗୋବିନ୍ଦ ଫଳିଲା ତହିଁ ଫଳ
ସ୍ୱକରୁ ସୁଯୋଧନ ବସିଣ କପାଳ ।
କୁରୁବଳ ଅନ୍ତ କରିବା ପାଇଁ ବିହି
କଲେ ସୁଯୋଧନେ ହସ୍ତିନା-ନରସାଇଁ ।
ସୁଯୋଧନ ଜୀବନେ ଥିଲେ ଆମ୍ଭ ଭାଗ
ପଇ ନାହୁଁ ଜାଣ ହେ କୃଷ୍ଣ ମହାଭାଗ ।
ବିଦୁର କହିଛନ୍ତି ବସାଇଣ ମୋତେ
ନ ଯୁଝିଲେ ରାଜ୍ୟ ସେ ନ ଦେବ କଞ୍ଚିତେ ।
ସୁଯୋଧନ ହୃଦୟ କଥା ମୁଁ ଜାଣଇ
ଏଣୁ ତାକୁ ବିଶ୍ୱାସ ମୋର କେବେ ନାହିଁ ।
ପର୍ଶୁରାମ ପରା ଲୋକ ଯା କହୁଥିଲେ
ତାହା କାନଦେଇ ଯା ନ ଶୁଣିଲା ଭଲେ ।

ସୁଯୋଧନ ଜନ୍ମକାଳରେ ସିଦ୍ଧମାନେ
କହିଛନ୍ତି, ଶୁଣିଅଛନ୍ତି କୁରୁଜନେ ।
ଏହାଙ୍କ ସକାଶରୁ ଏ ମହୀକ୍ଷତ୍ରିୟ—
କୁଳ ନାଶ ନିକଟେ ହୋଇବ ଉଭୟ ।
ଏବେ ସେ କଥା ସତ କଲା ସୁଯୋଧନ
ଅଧରମ ପଥରେ ଦେଇକରି ମନ ।
ବାକି ଯୋଦ୍ଧାମାନଙ୍କୁ ଦେଲେ ମୁଁ ସଂହାରି
ସୁଯୋଧନ ମରିବ ଏକା ଯୁଦ୍ଧ କରି ।
ଶ୍ରୀକୃଷ୍ଣ ଶୁଣି ଅରଜୁନଙ୍କ ବଚନ
ବାହିଲେ ସବ୍ୟସାଚୀ ଘୋଡ଼ାଙ୍କୁ ବହନ ।
ଶରାସନ ବନ କଣ୍ଟକ ଯେ ଶକତି
ପରିଘପୂର୍ଣ୍ଣ ବାଟେ ରଥ ଦ୍ରୁମପନ୍ତି ।
ଗଦି ଲତାମାନଙ୍କେ ହୋଇଣ ଅକୀର୍ଣ୍ଣ
ହୋଇଛି ହସ୍ତି ପକ୍ଷୀଙ୍କର ପରିପୂର୍ଣ୍ଣ ।
ଏରୂପେ ଭୂମନ୍ତ ସୈନ୍ୟ-ବନରେ ପାଣ୍ଡବ
ବିହରିଲେ ରଥରେ ଚଢ଼ି ବନ୍ଧୁ ଭାବ ।
ଗାଣ୍ଡୀବ-ଧନୁର୍ଘୋଷ ଗୀତ ଗାନ କରି
ଶର ସନ୍ଧି ତାଳ ମାଇଲେ ଦଣ୍ଡଧାରୀ ।
ସେହି ସକାଶୁଁ ଶତ ଶତ ଯୋଦ୍ଧାଗଣ
ଭୂମନ୍ତର ପଡ଼ି ମଲେ ହାରିଣ ପରାଣ ।
ଗାଣ୍ଡୀବ ଭୂମନ୍ତର ଯୋଦ୍ଧାଏ ଦେହ ମଣ୍ଡି
ଦଣ୍ଡିଲେ ସେ ଶୋଣିରେ ଏକା ଝିଙ୍କି-ଗଣ୍ଡି ।
ଏହା ବାହାରେ ଗଜ ଅଶ୍ୱ ଖଣ୍ଡ ଖଣ୍ଡ
ହୋଇଣ ପଡ଼ିଲେ ସେ ଯୁଦ୍ଧଭୂମିଦାଣ୍ଡ ।
ଗାଣ୍ଡିବରୁ ନିଃସୃତ ହୋଇ ଶରରାଜି
ରହିଲେ ଗରସ୍ତେ ଗୁରୁ ହିଗଯାକ ମର୍ଜି ।
ଅର୍ଜୁନକାଣ୍ଡାଗ୍ନିରେ ପତଙ୍ଗ ପରାୟେ
ଭୂମନ୍ତ ସେନା ଦଗ୍ଧ ହୋଇଲେ ଆହେ ରାୟେ ।
କାଳଦେବ ପରି ଗାଣ୍ଡୀବଧନୁଧାରୀ
ଦେଲେ ଭୂମନ୍ତର ସୈନ୍ୟଯାକକୁ ସଂହାରି ।
ଶୂରମାନେ ଭୂମନ୍ତ ସଂକଳ୍ପ କରି ଯାହା
ଇଚ୍ଛିଲେ, ତାହା ନାଶିଲେ ଗାଣ୍ଡିବ ବାହା ।
ଭୃଙ୍ଗଶ୍ରେଣୀ ପରି ଅର୍ଜୁନ ବାଣରାଜି ।
ଧାଇଁଲେ ଯୁଦ୍ଧଭୂମିଦାଣ୍ଡରେ ଗରଜି ।
ଭୂମନ୍ତର ଯୋଦ୍ଧାଦେହ-ପଦ୍ମରୁ ରକତ—
ମଧୁକୁ ପିଇଲେ ହେବାକୁ ତୋଷଚିତ୍ତ ।

ଏରୂପେ ଅର୍ଜୁନ ହେବାରୁ ଭୂମନ୍ତ ବଳ
ଆକୁଳ ହୋଇଣ ଭାଙ୍ଗିଲେ ମହୀପାଳ ।
ରଥ ଅଖ ଚକ ଭାଙ୍ଗିଯାନ୍ତେ ଅଜାଡ଼ି
ପଡ଼ି ମହୀ ମଧ୍ୟେ ଗରସ୍ତେ ସେ ଗଲେ ଗଡ଼ି ।
ପୁଣି ଭୂମନ୍ତ ରଥୀଏ ଧୈର୍ଯ୍ୟ ମନେ ଧରି
ଅର୍ଜୁନେ ଆଶୁଗ ବନ୍ଧିଲେ ଗଗ ଭରି ।
କେତେ ଯୋଦ୍ଧା କବଚମାନ ଆଉ ଅରେ
ଲଗାଇ ଭଲ କରି ଧନୁକୁ ହସ୍ତରେ ।
ଧରି ପାର୍ଥ ତୁଲରେ ହୋଇ ବନ୍ଧାବନ୍ଧ
ଦେଲେ ଦଶଦଶଯାକକୁ ବାଣେ ରୁନ୍ଧ ।
କେତେ ରଥୀଏ ଧୃଷ୍ଟଦ୍ୟୁମ୍ନଙ୍କୁ ଡାକ
ବିନ୍ଧିଲେ କାଣ୍ଡମାନ ଧନୁ କରେ ଟେକ ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ନକୁଳଙ୍କ ସୁତ
ସଙ୍ଗେ ହେନ କଲେ ଯୋଦ୍ଧାଙ୍କୁ ଭୂମନ୍ତ ହତ ।
ଧୃଷ୍ଟଦ୍ୟୁମ୍ନ ମହତ ସୈନ୍ୟ ସଙ୍ଗେ ଧରି
ଧାଇଁଲେ ଯୁଦ୍ଧଦାଣ୍ଡେ କାଣ୍ଡ ମାରି ମାରି ।
ଭୂମନ୍ତ ପୁଅ ଧୃଷ୍ଟଦ୍ୟୁମନ ଆସିବାର
ଦେଖି କରି ବିନ୍ଧିଲେ ବହୁ ଦିବ୍ୟଶର ।
ଧୃଷ୍ଟଦ୍ୟୁମ୍ନ ଭୂମନ୍ତର ପୁଅର ବାହୁକୁ
ଉରୁକୁ ଦେଖାଇଣ ବିନ୍ଧିଲେ ବାଣକୁ ।
ଭୂମନ୍ତ ପୁଅର ସ୍ୱଚ୍ଛ ଘୋଡ଼ାଙ୍କର ପ୍ରାଣ
ହେନିଲେ ଦ୍ରୁପଦନନ୍ଦନ ତୀକ୍ଷ୍ଣ ବାଣ ।
ଭଲ୍ଲଶରେ ସାରଥି ମୁଣ୍ଡଟିକ କାଟି
ଗରଜିଲେ ଧୃଷ୍ଟଦ୍ୟୁମନ ମେଲି ପାଟି ।
ଦୁର୍ଯ୍ୟୋଧନ ରଥକୁ ଭାଙ୍ଗିବାର ଦେଖି
ଘୋଡ଼ାଟି ପିଠିରେ ବସିଲେ ହୋଇ ଦୁଃଖୀ ।
ଆଗକୁ ନ ଚାହିଁ ପଛକୁ ମୁହଁମୋଡ଼ା
କରି ଗଲେ ଶକୁନି ପାଶେ ଗୁଡ଼କ୍ରୀଡ଼ା ।
ଏହିକାଳେ ସହସ୍ରେକ ଦଳ ଆସି
ପାଣ୍ଡବଙ୍କ ଆଗେ ବସିଲେ ଧନୁ କଷି ।
ମେଘରେ ଗ୍ରହ ବ୍ୟାପ୍ତ ପରାୟେ ପାଣ୍ଡବେ
ଦିଶିଲେଟି ନୟନଯୁଗଳକୁ ସର୍ବେ ।
ଅରଜୁନ ସେ ହାଣି-ବଳରୁ ରଥକୁ
ଅଲଗା ଶରେ ମାଇଲେ ତାହାଙ୍କୁ ।
ସେ କାଳରେ ଅର୍ଜୁନ ଶରରେ ବହୁତ
ହାଣି ହତ ହୋଇ ହୋଇଲେ ଭୂମିଗତ ।

ମହାବଳୀ ଭୀମ ଦେଖିଣ ଗଜଯୂଥେ
ଦଣ୍ଡପାଣି ସମ ପରାସ୍ତେ ଗଦାହସ୍ତେ ।
ଧାଇଁଲେ କୁରୁ ସୈନ୍ୟ ଦେଖିଣ ଏମନ୍ତ
ମହାଭୟେ ତ୍ୟାଗ କରିଲେ ମଳ ମୂତ୍ର ।
ଗଦାଘାତରେ ଗଜେ ଭଗ୍ନକୁମ୍ଭ ହେଲେ
କେତେ ପଡ଼ି ମଲେ କେତେ ବା ପଳାଇଲେ ।
କଲେ ଯୁଧିଷ୍ଠିରାଦି ଯୋଦ୍ଧାଙ୍କରେ ରଣ
ଧୃଷ୍ଟଦ୍ୟୁମ୍ନ ମାଇଲେ ହାତୀଙ୍କି ଟି ବାଣ ।
କୃପଣ କୃତବର୍ମା ଦ୍ରୌଣି ସେହିକାଳରେ
ପୁଚ୍ଛିଲେ କୁରୁ ଲୋକମାନଙ୍କୁ ସ୍ନେହରେ ।
ଦୁର୍ଯୋଧନରାଜା କେଉଁଠାରେ ଅଛନ୍ତି
ଜାଣିଥିଲେ ତା କହ ତୋଷ ଆମ୍ଭ ମତି ।
କୁରୁ ଯୋଦ୍ଧାମାନେ ବୋଇଲେ ଦୁର୍ଯୋଧନ
କରୁଥିଲେ ପାଣ୍ଡବମାନଙ୍କୁ ସୋଧନ ।
ଧୃଷ୍ଟଦ୍ୟୁମନଙ୍କର କାଣ୍ଡରେ ବିରଥୀ
ହୋଇ ପଳାଇଲେ ହୋଇଣ ଅତି ବ୍ୟଥୀ ।
ମାମୁ ସେ ଶକୁନିଙ୍କି ଦେଖକରି ସଙ୍ଗେ
ଏବେ ରହୁଛନ୍ତି ଯିବାକୁ ରଣରଙ୍ଗେ ।
କେତେ ଯୋଦ୍ଧା ବୋଇଲେ- ନୃପେ କପଟର
ମରିବା ସିନା ଭଲ କରିବା ସମର ।
ପାଣ୍ଡବେ ଆମ୍ଭ ସଙ୍ଗେ କରି ମହାଛଳ
ଯାଉଅଛନ୍ତି ମାରିକରି କରିକୁଳ ।
ତାହାଙ୍କୁ ଆମ୍ଭେ ଯେବେ ରଣରେ ମାରିବା
ଜଣଜଣ କରେ ତ ଶାଢ଼ୀ ଖଣ୍ଡୁ ନେବା ।
ଅଶ୍ୱତ୍ଥାମା କୃପ କୃତବରମା ଏହା
ଶୁଣି ଯୁଦ୍ଧ ଦାଣ୍ଡରେ ହୋହଲାଇ ବାହା ।
ବାହାରିଲେ ସ୍ୟନ୍ଦନପୃଷ୍ଠ ସମୀପକୁ
ପଛେ ଆସି ଯୁଝିବା କରି ବସ୍ତରକୁ ।
ପାଣ୍ଡବେ ଧୃଷ୍ଟଦ୍ୟୁମନଙ୍କୁ ଧରି ଆଗେ
ମାଇଲେ କୁରୁ ସେନାମାନଙ୍କୁ ଆଶୁଗେ ।
କୁରୁ ଲୋକେ ଜୀବନେ ହୋଇଣ ନିରାଶ
ଯୁଦ୍ଧ କଲେ ସ୍ୱର୍ଗରେ ପାଇବାକୁ ବାସ ।
କୃପ କୃତବର୍ମା ଶକୁନି ଅଶ୍ୱତ୍ଥାମା
ଏମାନେ ତ ଅଟନ୍ତି ମହତ କରମା ।
ମୋତେ ସଙ୍ଗତେ ଦେଖ ଆରମ୍ଭିଲେ ରଣ
ବର୍ଷିଲେ ପାଣ୍ଡବ-ସୈନ୍ୟଙ୍କୁ ବାଣଗଣ ।

ଧୃଷ୍ଟଦ୍ୟୁମନଙ୍କର କାଣ୍ଡଘାତ ପାଇ
ପାଞ୍ଚରଥୀସାଙ୍ଗ ଭାଜିଲୁ ନରସାଇଁ ।
ମୋର ପଛେ ପଛେ ସାତ୍ୟକି ମହାରଥ
ଗୋଡ଼ାଇଲେ ବେଗ ଘୁରଣ ଦେଖ ରଥ ।
ଦୁଷ୍କୃତ ନରକରେ ପଡ଼ିଲା ପରାସ୍ତେ
ସାତ୍ୟକଙ୍କ ଆଗରେ ପଡ଼ିଲି ମୁଁ ତ୍ରାସେ ।
ମୁହୂର୍ତ୍ତେଯାଏ ମୂର୍ଚ୍ଛି ହୃଦେ ବହି କ୍ରୋଧ
ସାତ୍ୟକଙ୍କ ସଙ୍ଗରେ କଲି ମହାଯୁଦ୍ଧ ।
ସାତ୍ୟକି ମୋର ଧନୁ କବଚ କାଟିଲେ
କାଣ୍ଡ ବିନ୍ଧିଣ ମୋତେ ମୋହେ ପକାଇଲେ ।
ପାଞ୍ଚ ଦଉଡ଼ିରେ ବାନ୍ଧି ମୋର ଦୁଇ ବାହା
ନେଉଥିଲେ ମୋତେ ହେ ଜାଣ ନରନାହା ।
ଗଦାବାଡ଼ି ଭୀମ ଅରଜୁନ ନାରାଚ
ବିନ୍ଧି ଗଜମଣ୍ଡାରେ ମସ୍ତି କଲେ ପାଞ୍ଚ ।
ଭୀମ ସେ ଗଦା ଅଗ୍ରେ ମଲା ହାତୀକୁଳ
ଆଡ଼ଆଇ ପୁଣି ଯୁଝିଲେ ମହୀପାଳ ।
ଅଶ୍ୱତ୍ଥାମା କୃପ କୃତବର୍ମା ଏ ତିନ—
ବୀର ହୃଦପୂରେ ମହାଶୋକକୁ ଦେନ ।
କୁରୁ ଦୁର୍ଯୋଧନ ମଲେ କି ଜୀଇଥିଲେ
ବୋଲିଣ ବଳରେ ସେ ଖୋଜି ବାହାରିଲେ ।
ଦୁର୍ମର୍ଷଣ ଭୂରିବଳ ରବି ଜୟିଷ
ଦୁର୍ବିଷହ ସେ ଦୁର୍ବିମୋଚନ ସୁଜାତ ।
ଦୁଷ୍ପ୍ରଧର୍ଷ ଶ୍ରୁତର୍ବା ଜୟତ୍ସେନ ଆଦି
ଯୁଝେ କୁରୁର ଆହେ ମରଣ ସମ୍ବାଦ ।
ଭୀମ କୁଳେ ସେକାଳେ ଆସି କଲେ ଖେଳ
ଧନୁ ଶର ଦୁହିଁଙ୍କି ବନ୍ଧ କରତଳ ।
ତାହା ଦେଖି କରଣ ଭୀମ ମହାବଳୀ
ତୀକ୍ଷ୍ଣକାଣ୍ଡେ ଆଗ ମରମ ଦେଲେ ଖୋଳି ।
ପଛେ ଦୁର୍ମର୍ଷଣର କାଟିକରି ମୁଣ୍ଡ
ଗଡ଼ାଇଦେଲେ ଭୀମସେନ ରଣଦୋଣ୍ଡ ।
ପୁଣି ଜୟତ୍ସେନଙ୍କୁ ମାରି ବାତ-ବେଟା
ଗରଜନ କଲେ କରଣ ଗଣ୍ଡ ମୋଟା ।
ଶ୍ରୁତର୍ବା ଗୃଧ୍ରପକ୍ଷ-ଲଗା ଶଏ ଶର
ବିନ୍ଧିଲେ ପ୍ରାଣ ନେବାପାଇଁ ଭୀମଙ୍କର ।
ଜୈତ୍ର ଭୂରିବଳ ରବିଙ୍କି ତିନ କାଣ୍ଡ
ବିନ୍ଧିଣ ଭୀମ କାଟି ପକାଇଲେ ମୁଣ୍ଡ ।

ଦୁର୍ବିମୋଚନକୁ ନାରାଚଟିଏ ମୁଞ୍ଚି
ଭୀମ ତାଙ୍କ ମରଣ ପକାଇଲେ ରଚି ।
ଦୁଷ୍ପ୍ରଧର୍ଷ ସୁଜାତ ଯାଙ୍କୁ ଦୁଇ ଦୁଇ
ଶର ବିନ୍ଧି ମାଇଲେ ଜାଣ ନରସାଇଁ ।
ଦୁର୍ବିଷହ ଦେହକୁ ଭଲ ଭଲ୍ଲଶର
ପ୍ରହାର କରିଗଲେ ଯମଙ୍କ ନଗର ।
ଭୀମ ସବୁ ଭାଇଙ୍କ ନେଲେ ଜୀବନ
କୁମ୍ଭ ସୁତ ଶ୍ରୁତର୍ବା ହୋଇ କ୍ରୋଧମନ ।
ତୀକ୍ଷ୍ଣକାଣ୍ଡେ ଭୀମଙ୍କର ଧନୁ କାଟି
ଗଣ୍ଠି ଗଣି ବିନ୍ଧିଲେ ଭୀମେ କୋଡ଼ିଏଟି ।
ଆନ ଧନୁ ଧରିଣ ଭୀମ କ୍ରୋଧ ହୋଇ
ଶ୍ରୁତର୍ବାଙ୍କୁ ବୋଇଲେ ଯିବ ଆଜ କାହିଁ ।
ଜମ୍ଭାସୁର ବାସବ ପରି ଦୁଇ ବୀରେ
ଯୁଦ୍ଧ କଲେ ଗଜନ ସମର ଦାଣ୍ଡରେ ।
ସେ ଦୁହିଙ୍କ କାଣ୍ଡରେ ଆକାଶକୁ ନେଇ
ଦେଖି ନ ପାଇଲା ଅମ୍ବିକାଦେବୀ ପୁତ୍ର ।
ଭୀମସେନଙ୍କ ଉର ବାହୁକୁ ଶ୍ରୁତର୍ବା
ବିନ୍ଧିଲେ ଯେତେବାଣେ ତା କେତେ କହିବା ।
ପୂର୍ବକାଳେ ସମୁଦ୍ର କ୍ଷୁବ୍ଧ ହେଲା ପରି
ସେ କାଳେ ଭୀମ ଯୁଦ୍ଧେ ହେଲେ ଦଣ୍ଡଧାରୀ ।
ପୁଣି ଧୈର୍ଯ୍ୟ ହୋଇଣ ପବନନନ୍ଦନ
ନେଲେ ଶ୍ରୁତର୍ବାଙ୍କ ସାରଥି-ଅଶ୍ବ-ପ୍ରାଣ ।
ହସ୍ତଲାଘବକୁ ଦେଖାଇ ଯୁଦ୍ଧଦାଣ୍ଡେ
ବିନ୍ଧିଲେ ବାଛିବାଛି କାଣ୍ଡ ଅତି ଚଣ୍ଡେ ।
ସାରଥି ଅଶ୍ବଙ୍କର ଦେଖିକରି ହତ
ଫରି ଖଣ୍ଡା ଧରି ରହିଲେ କୁମ୍ଭ ସୁତ ।
ଭୀମ ଯେ ସେହି ଛିଦ୍ରେ କ୍ଷୁଦ୍ରକାଣ୍ଡ ବିନ୍ଧି
ଶ୍ରୁତର୍ବାଙ୍କ ବେକକୁ ପକାଇଲେ ଛେଦି ।
ଶ୍ରୁତର୍ବାଙ୍କ ମରଣ ଦେଖି କୁମ୍ଭ ଲୋକ—
ମାନେ ଭୀମ ଭୁଲେ ଯୁଝିଲେ ଧରି ଦଳ ।
ଭୀମ କୁମ୍ଭ ସେନାକୁ କରିଗିଣ କାଣ୍ଡ
ଦେଖାଇଲେ ନେଇଣ ଯମପୁର-ଦାଣ୍ଡ ।
ପଞ୍ଚଶତ ମହାରଥୀଙ୍କୁ ଭୀମ ମାରି
ସାତଶ ହସ୍ତୀଙ୍କର ପ୍ରାଣ ନେଲେ ହରି ।
ଦଶସହସ୍ର ପାଇକଙ୍କ ମଧ୍ୟ ପ୍ରାଣ
ହେଳ ପକାଇଲେଟି ଭୀମସେନ ଜାଣ ।

ଏ ବାହାରେ କୁମ୍ଭର ଆଠଶତ ଘୋଡ଼ା—
ମାନଙ୍କୁ ଭୀମ ଜାମମୂନେ କଲେ ମଡ଼ା ।
ମାରି କୁମ୍ଭ ପୁଅଙ୍କୁ ଭୀମ ମହାରଥ
ବୋଇଲେ ଆଜ ମୁହିଁ ହୋଇଲି କୃତାର୍ଥ ।
ଭୀମଙ୍କ ବିକ୍ରମ ନ ସହି କୁମ୍ଭ ସେନା
ପଳାଇଲେ ଡରି ହେ ପାଣ୍ଡୁ ନୃପନନ୍ଦନା ।
ଯେତେ ଲୋକେ ଯୁଦ୍ଧୁଁ ପଳାଇ ନ ପାରିଲେ
ଦାନ୍ତରେ କୁଟା ଧରି ଭୀମଙ୍କୁ ନମିଲେ ।
କୁମ୍ଭ ଶଏ ପୁତ୍ରରୁ ଆହେ ନରସାଇଁ
ରହିଲେ ଦୁର୍ଯ୍ୟୋଧନ ସୁଦର୍ଶନ ଯାଇଁ ।
ଭୀମ ତାଙ୍କୁ ନେହେ ନ ଦେଖିବାରୁ ବାସ୍ତେ
ମାରି ନ ପାରିଲେଟି ଜାଣ କାଣ୍ଡଘାଏ ।
କୃଷ୍ଣ ସେହିକାଳେ କହିଲେ ଅର୍ଜ୍ଜୁନଙ୍କୁ
ପାଇଲେ କୁମ୍ଭ ଶତ୍ରୁବଳ ନିଧନକୁ ।
ସାତ୍ୟକି ସୃଞ୍ଜୟଙ୍କୁ ବାନ୍ଧି ଘେନଗଲେ
ଅବଶେଷ ଯୋଦ୍ଧାଙ୍କୁ ଭାଇଏ ନାଶିଲେ ।
ନକୁଳ ସହଦେବ ଯୁଦ୍ଧରେ ହାଲିଆ
ହୋଇ ରହିଅଛନ୍ତି ଦେଖ ହୋଇ ଠିଆ ।
କୃପ କୃତବର୍ମା ଦ୍ରୋଣଙ୍କର ନନ୍ଦନ
ପଳାଇବାକୁ ପାର୍ଥ କଲେଣିଟି ମନ ।
ପ୍ରଭଦ୍ରକଙ୍କର କୂଳରେ ଧୃଷ୍ଟଦ୍ୟୁମ୍ନ
ମାଇଲେ ଶରେ ଖୋଜି ଖୋଜି କୁରୁସୈନ୍ୟ ।
ସୁଯୋଧନ ଘୋଡ଼ା ସଇନ ମଧ୍ୟେ ପଶି
ହୋଇଅଛନ୍ତି ଏକା ଯୁଦ୍ଧରେ ଲାଳସୀ ।
ଏକା ସୁଯୋଧନର ଘେନ କୁମ୍ଭେ ପ୍ରାଣ
କରି ଯୁଧିଷ୍ଠିରଙ୍କୁ ହସ୍ତିନାରାଜନ ।
ସୁଯୋଧନରାଜା ତ ରାଇଜ-ଲୋଭଡ଼ା
ହୋଇଛନ୍ତି, ଏଣୁ ସେ ହୋଇଛନ୍ତି ଛଡ଼ା ।
କୁମ୍ଭ ବଳ ମାରି କୁମ୍ଭଙ୍କୁ ଜିଣିବାକୁ
କହନ୍ତି ମାଡ଼ ମଥା ନିଜ ସଇନକୁ ।
ସୁଯୋଧନରାଜା ପାପୀର ପାପବୁଦ୍ଧି ।
ଛଡ଼ାଇ ଦିଅ ହେ ଗାଣ୍ଡୀବେ ଶର ବିନ୍ଧି ।
ଏହା ଶୁଣି ଅର୍ଜ୍ଜୁନ ବୋଇଲେ ଗୋବିନ୍ଦ
ଧୃତରାଷ୍ଟ୍ରପୁଅଙ୍କୁ ମାରିଣ ଆନନ୍ଦ ।
ହୋଇ ଭୀମ ଧାଇଁଅଛନ୍ତି ରଣଦାଣ୍ଡେ
ମାରିବେ ସୁଯୋଧନଙ୍କୁ ସେ ଦେଖ କାଣ୍ଡେ

ଶଏ ହାଣ୍ଡି, ଦୁଇଶ ରଥ, ତିନ ଶୂନ
ତିନ ପତ୍ତି, ପଞ୍ଚଶତ ଯେ ଅଶ୍ୱସୈନ୍ୟ ।
ଶକୁନିର ଅଛନ୍ତି ତାଙ୍କୁ ଘେନି ସଙ୍ଗ
ସୁଯୋଧନ ଅଛନ୍ତି କରି ରଣରଙ୍ଗ ।
ଅଶ୍ୱତ୍ଥାମା କୃପ ଯେ ସୁଶର୍ମା ଉଲୁକ
ଶକୁନି କୃତବର୍ମା ହାରିଣ ଝଟେକ ।
ଯୁଦ୍ଧଭାଣ୍ଡେ ରହିଅଛନ୍ତି ମଲ୍ଲ ପରି
ବୋଲି କୃଷ୍ଣ ଏହାଙ୍କୁ ଦେବ କାଣ୍ଡେ ମାରି ।
କାଳ ତାହାଙ୍କ ପଛେ ଧରି ଫରି ଖଣ୍ଡା
ରହିଛି ଶୁଆଇବ ଯୁଦ୍ଧେ କରି ଦଣ୍ଡା ।
ଯୁଦ୍ଧରୁ ପଳାଇଲେ ଆଯୁତ ମୋ ନାହିଁ
ଯେ ଯୁଝିବ ତାକୁ ମାରିବି ଜାଣ ମୁହିଁ ।
ଶକୁନିର ପ୍ରାଣ ଘେନାଇ ଯୁଧିଷ୍ଠିର
ଉଦ୍ଧରିବ ଆଜ ଜାଣିବେ ଚକ୍ରଧର ।
କପଟ ଜୁଆ ଖେଳେ ଆମ୍ଭ ଧନ ନାଶି
ବୋଲୁଅଛି ଲୋକମାନଙ୍କେ ଜଗତକାଶୀ ।
ଆଜ କୁରୁପୁରବାସିମାନେ ହିଂସାକୁଳ
ମଲେ ପତି ବୋଲି ସେ ହୋଇବେ ଆକୁଳ ।
ସମ୍ପତ୍ତି ପ୍ରାଣ ଦୁଇ ସୁଯୋଧନ ଛାଡ଼ି
ବସିବେ ଆଜ ଯମ-ସମୀପକୁ ମାଡ଼ି ।
ସୁଯୋଧନ ଯୁଦ୍ଧରୁ ନ ପଳାଇ ଯୁଝି
ବସିବେ ସେ ଜାଣ ଶୋଇବେ ରଣମଝି ।
ଅରଜୁନଙ୍କ ମୁଖରୁଁ ଶୁଣି ଏ ବଚନ
ବାହିଲେ ଅର୍ଜ୍ଜୁନ-ଅଶ୍ୱକୁ ଭଗବାନ ।
ଭୀମ ସହଦେବ ଯେ ସିଂହନାଦ କରି
ବାହାରିଲେ ଦୁର୍ଯ୍ୟୋଧନକୁ ସତ୍ୱେ ମାରି ।
ଶକୁନି ତାହା ଦେଖି କରି ସିଂହନାଦ
ବୋଇଲେ ମୋର ସଙ୍ଗେ କର ଆସି ବାଦ ।
ଭୂମ୍ଭ ପୁଅ ସୁଦରଶନ ଭୀମସେନ
ସଙ୍ଗତେ ଧନୁ ଆଞ୍ଜି କଲେ ଆୟୋଧନ ।
ସୁଶର୍ମା ଶକୁନିଙ୍କି ଡାକିଣ କପଟୀ
ବନ୍ଧିଲେ ଗାଣ୍ଡୀବରେ ବସାଇ ଗୁଣଟି ।
ଦୁର୍ଯ୍ୟୋଧନ ଘୋଡ଼ା ଚଢ଼ିଣ ସହଦେବ
ସଙ୍ଗତେ ଯୁଦ୍ଧ କଲେ ବହି କ୍ରୋଧ ଭାବ ।
ଦୁର୍ଯ୍ୟୋଧନ ସହଦେବଙ୍କ ମସ୍ତକକୁ
କାଟିବାକୁ ସତ୍ୱେ ଫିଙ୍ଗିଲେ ପରଶକୁ ।

ସେ ପ୍ରାସ ଘାତ ପାଇ ସହଦେବ ବୀର
ବସିଲେ ରଥମଧ୍ୟେ ସତ୍ୱେ ଧରି ଶିର ।
ପୁଣି ଧୈର୍ଯ୍ୟ ହୋଇଣ ସହଦେବ ବଳୀ
ବନ୍ଧିଲେ ଦୁର୍ଯ୍ୟୋଧନ-ଦେହେ ଶରମାଳୀ ।
ସିପାଇମାନଙ୍କର ମୁଣ୍ଡକୁ କାଣ୍ଡରେ
କାଟିଲେ ଅରଜୁନ ସେ ଯୁଦ୍ଧଭାଣ୍ଡରେ ।
ତ୍ରିଗର୍ତ୍ତଙ୍କର ଯେତେ ଥିଲେ ମହାରଥୀ
ତା ଦେଖି ଅର୍ଜ୍ଜୁନେ ବନ୍ଧିଲେ ନୋହି ବ୍ୟର୍ଥୀ ।
ସତ୍ୟକର୍ମା ଭୂଲେ ଯୁଝିଲେ ଅରଜୁନ
କ୍ଷୁରକାଣ୍ଡେ ତାହାର ମୁଣ୍ଡ କଲେ ଛିନ୍ନ ।
ମତ୍ତସିଂହ ମୃଗକୁ ଧଇଲା ପରାୟେ
ସତ୍ୟଯୁଗ ଜୀବନ ଘେନିଲେ ସେ ସତ୍ୱେ ।
ସୁଶର୍ମା ତ ଆଗରେ ହୋଇଥିଲେ ଛିଡ଼ା
କ୍ରୋଧେ ପାର୍ଥ ବନ୍ଧିଲେ ତାଙ୍କୁ ଶରଭିଡ଼ା ।
ଯମଦଣ୍ଡ ପରି ବାଛିଣ କାଣ୍ଡ ଟିଏ
ଅରଜୁନ ବନ୍ଧିଲେ ସୁଶର୍ମାର କାୟେ ।
ସୁଶର୍ମା ସେହିକାଳେ ପାଣ୍ଡବ ଆନନ୍ଦ
ବଢ଼ାଇ ତଳେ ପଡ଼ି କଲେ ଭୂମି ମନ୍ଦ ।
ସୁଶର୍ମାକୁ ମାରିଣ ସୁଶର୍ମାପୁତ୍ରଙ୍କୁ
ମାଇଲେ ଅରଜୁନ ବରଗି କାଣ୍ଡକୁ ।
ସୁଶର୍ମାଙ୍କ ସଙ୍ଗତେ ଯେତେ ଥିଲେ ଲୋକ
ଅର୍ଜ୍ଜୁନ କାଣ୍ଡରେ ସେ ଗଲେ ଯମଲୋକ ।
ଭୀମ ଭୂମ୍ଭର ପୁତ୍ର ସୁଦରଶନକୁ ।
ମାରି ଯେ ପକାଇଲେ ବଛିଣ କାଣ୍ଡକୁ ।
ସୁଦରଶନ ହତ ଦେଖି ଭୂମ୍ଭ ସେନା—
ଯାକ ଯୁଦ୍ଧ କଲେ ହେ ନୋହିଣ ବିମନା ।
ଭୀମ ପେଷି ବଜ୍ର ପରାୟେ ମାରଗଣ
ରଚିଲେ ଭୂମ୍ଭ ସେନାଯାକର ମରଣ ।
ତା ଦେଖି ଭୂମ୍ଭ ସେନାପତି ହୋଇ ଗୋଟି
ଭୀମଙ୍କ ଦେହକୁ ବନ୍ଧିଲେ ବାଣ କୋଟି ।
ଏହିରୂପେ ଦୁଇ ସେନାଏ କରି ରଣ
ଯୁଦ୍ଧ କରି ମଲେ ହେ ଜାଣ ନରଗଣ ।
ଶକୁନିଙ୍କର ବେଟା ଉଲୁକ ତ ଥିଲେ
ଯମକୁ ଭେଟିବାକୁ ଭୀମଙ୍କୁ ଭେଟିଲେ ।
ଶକୁନି ଭୀମ ଦେହେ ତିନିକାଣ୍ଡ ବନ୍ଧି
ନଅ କାଣ୍ଡେ ସହଦେବଙ୍କୁ ଦେଲେ ରୁନ୍ଧି ।

ଭୀମ ସହଦେବ ଯେ ସେହିରୂପେ କାଣ୍ଡ
ବିନ୍ଧିଣ ଶକୁନିର ଛାଇଦେଇ ପିଣ୍ଡ ।
ସହଦେବ ଭୀମ ବିନ୍ଧନ୍ତେ ବାଣ କୋଟି
ଦେଖି ନପାରିଲେ ଟି ଆକାଶକୁ ଦୃଷ୍ଟି ।
ଅଙ୍ଗଦ ତୁଲେ ଭୁଜ ଛିଡ଼ିକରି କାଣ୍ଡେ
ପଡ଼ିଲେ ସାପ ପରି ଚେଷ୍ଟା କଲେ ଦାଣ୍ଡେ ।
ଯୋଦ୍ଧାମାନଙ୍କର ଯେ ଗଣ୍ଡି ଟିକ ଚୂଡ଼
କୁଣ୍ଡଳ ତୁଲେ ମୁଣ୍ଡ ପଡ଼ିଗଲେ ଗୁଡ଼ ।
ଏହିକାଳେ ଶକୁନି ସହଦେବ ମୁଣ୍ଡେ
ମାଇଲେ ଧରିଥିବା ପ୍ରାସ ଅତି ଚଣ୍ଡେ ।
ସେ ଘାତେ ସହଦେବ ହୋଇଣ ଅଜ୍ଞାନ
ମନେକଲେ ନିଶ୍ଚୟେ ଗଲା ମୋ ଜୀବନ ।
ସହଦେବଙ୍କର ଏହି ଦଶାକୁ ଦେଖି
କ୍ରୋଧେ ଭୀମ ଯୁଝିଲେ ତରଟିଣ ଆଖି ।
ଏକା ହୋଇ ତୁମ୍ଭର ସଇନକୁଳକୁ
ନିବାରି ପକାଇଲେ ବିନ୍ଧିଣ ବାଣକୁ ।
ଏହା କରିସାରି ଗର୍ଜିଲେ ସିଂହ ପରି
ପଳାଇଲେ ତୁମ୍ଭର ଯୋଦ୍ଧାଜନେ ଡରି ।
ଦୁର୍ଯ୍ୟୋଧନ ତା ଦେଖି ବୋଇଲେ ସୈନ୍ୟଙ୍କୁ
ମନ୍ଦବେଳରେ କପାଁ ଛାଡୁଛ ପଛକୁ ।
ଆଗକୁ ଏବେ ମୋର ବୋଲ ଘେନ ଚାଲ
ବୋଲାଇବଟି ସ୍ୱର୍ଗବାସୀଙ୍କରେ ଭଲ ।
ଜିଣିଲେ ଇହଲୋକେ ଅର୍ଜି ଜୟଶିରୀ
ଭୁଞ୍ଜାଇବ ମୋତେ ହସ୍ତିନାନାମେ ପୁରୀ ।
ତୁମ୍ଭଙ୍କୁ ମରାଇ ମୁଁ ନ ଯିବ ତ ଘର
ଯେ ଉଚିତ ହେଉଛି ତା ବିଚାର କର ।
ସୁଯୋଧନ ବଚନ ଶୁଣି ସୈନ୍ୟଜନ
ପୁଣି ଯୁଝି ଧାଇଁଲେ ଧୈର୍ଯ୍ୟ ଧରି ମନ ।
ପାଣ୍ଡବସୈନ୍ୟ ତୁମ୍ଭ ସୈନ୍ୟ ଦେଖି ନେହେ
ବିନ୍ଧିଲେ ବାଣ ବାଛି ବାଛି ତାଙ୍କ ଗାହେ ।
ଏହି ସମୟେ ସହଦେବ ଚେତା ପାଇ
ଶକୁନି ଧନୁକୁ କାଟିଲେ ନରସାଇଁ ।
ଆନ ଧନୁ ଧରିଣ ସୁବଳବେଟାଟି
ନକୁଳଙ୍କୁ ବିନ୍ଧିଲେ ବାଣ ଷାଠିଏଟି ।
ଏ ବାହାରେ ପୁଣି ଭୀମଙ୍କୁ ସାତ ଶର
ବିନ୍ଧି ବୋଇଲେ ହେ ଭୀମ ଏ ଶରେ ମର ।

ଉଲୂକ ସହଦେବ ଦେହକୁ ସତ୍ୱର
ବିନ୍ଧି ଗରଜିଲେ କଣ୍ଠକୁ ମୋଟକରି ।
ପୁଣି ଗୁଣେ ବସାଇ ସାତ ଶର ଭୀମ
ଦେହେ ପ୍ରହାରିଲେ ଗଜନ ବଜ୍ର ସମ ।
ଭୀମ କ୍ରୋଧ ହୋଇଣ ଉଲୂକକୁ ବିନ୍ଧି
ଚୌଷଠି ଶରେ ଶକୁନିକି ଦେଲେ ରୁନ୍ଧି ।
ଶକୁନି ସୈନ୍ୟ ଭୀମବାଣେ ପୀଡ଼ା ପାଇ
ଶରେ ସହଦେବଙ୍କୁ ପକାଇଲେ ଛାଇ ।
ସହଦେବ ସେ ଶରମାନଙ୍କୁ ଦେହକୁ
ନ ଆସୁଁ ଫହାଇଲେ ଦେଖାଇ ବଳକୁ ।
ଭଲଶରେ ଉଲୂକ ମୁଣ୍ଡକୁ କୁଣ୍ଡଳ—
ତୁଲରେ କାଟି ଗଡ଼ାଇଲେ ମହୀତଳ ।
ପୁଅର ମରିବାର ଦେଖିଣ ଶକୁନି
କାନ୍ଦିଲେ ସେ ଲୋତକ ନୟନରେ ଘେନି ।
ପୁଣିଧୈର୍ଯ୍ୟ ହୋଇଣ ସେ ସହଦେବଙ୍କ
ବିନ୍ଧିଲେ ତିନିକାଣ୍ଡ ମାଜିଣ ଗୁଣକୁ ।
ସେ କାଣ୍ଡଟିମାନଙ୍କୁ ମାଦ୍ରୀଙ୍କ ବେଟାଟି
କାଟିଣ କାଟିଦେଲେ ଶକୁନି ଧନୁଟି ।
ଯାଆନ୍ତେ କରଧନୁ ଛାଡ଼ି ଧରି ଖଣ୍ଡା ।
ଫିଙ୍ଗିଲେ ତୁମ୍ଭ ଶଳା ସେ ତ ମହାଭେଣ୍ଡା ।
ସହଦେବ ସେ ଖଣ୍ଡା ଆସିବାର ଦେଖି
କାଟି ପକାଇଲେ ବିଶିଖ ଗୁଣେ ଯୋଖି ।
ଖଣ୍ଡା ଛାଡ଼ିବାର ଦେଖି ତୁମ୍ଭ ଶଳା
ଫିଙ୍ଗିଲେ ଗଦାଟି ନକରି ଯୁଦ୍ଧେ ହେଳା ।
ସହଦେବ ଗଦା କାଟନ୍ତେ ଯୁଦ୍ଧଦାଣ୍ଡେ
ଶକୁନି ଶକ୍ତିକ ଫିଙ୍ଗିଲେ ଅତି ଚଣ୍ଡେ ।
ଶକୁନି-କର-ମୁକ୍ତ ଶକ୍ତିଟିକ ଦେଖି
ସହଦେବ କାଟିଲେ କାଣ୍ଡେ ନୋହି ଦୁଃଖୀ ।
ଶକୁନି ସେ କାଳରେ ଥରଇଲେ ମଜ୍ଜା
ଯୁଝିଲେ ନ ପଳାଇ ହେବ ବୋଲି ଲଜ୍ଜା ।
ତାହା ଜାଣିପାରି ତୁମ୍ଭରି ଲୋକମାନେ
ଭାଜିଲେ ଶସ୍ତ୍ର କରୁ ପକାଇ ବହନେ ।
ପାଣ୍ଡବ ଲୋକେ ତାହା ଦେଖି ସିଂହନାଦ
କଲେ ହୃଦଦେଶରେ ବହିଣ ପ୍ରମୋଦ ।
ସହଦେବ ସେକାଳେ ଶକୁନି ରଥକୁ
ଲଗାଇଦେଲେ ନେଇ ଆପଣା ରଥକୁ ।

ମନେ କଲେ ମୋ ଭାଗେ ପଡ଼ିଛି ଶକୁନ
ଆଜ ଯିବ ଏହାର ଯୁଦ୍ଧେ ଜୀବ ଘେନ ।
ଶକୁନଙ୍କ ବୋଇଲେ କ୍ଷତ୍ରିଧର୍ମେ ରହ
ଦେଖାଅ ବିକ୍ରମ ଗାନ୍ଧାରଦେଶସାଇଁ ।
ପଶାଖେଳେ ଜିଣିବା ଫଳ ଆଜ ମୁହିଁ
ତୁମ୍ଭଙ୍କୁ ଦେବାପାଇଁ ଆସିଅଛି ଧାଇଁ ।
ଯେତେ ଲୋକ ଆମ୍ଭଙ୍କୁ ଦେଇଥିଲେ ଦୁଃଖ
ସେ ଆମ୍ଭ କାଣ୍ଡରେ ଦେଖିଲେ ଯମଲୋକ ।
ତୁମ୍ଭେ ଏକା ରହିଛ ସୁଯୋଧନ ସଙ୍ଗେ
ଆଜ ତୁମ୍ଭଙ୍କୁ ମୁଁ ମାରିବି ରଣରଙ୍ଗେ ।
ଏରୂପେ ସହଦେବ କହିଣ ଉତ୍ତର
ଶକୁନଙ୍କି ବାଛି ବିନ୍ଧିଲେ ଦଶ ଶର ।
ଦୁଇକାଣ୍ଡେ ଶକୁନ ଛତ୍ର ଶରାସନ
କାଟିଣ ସ୍ୱରକ ଣ୍ଡେ ନେଲେ ହୟ-ପ୍ରାଣ ।
ଏହା କରିସାରି ସେ ମାଦ୍ରୀଙ୍କ ବେଟାଟି
ବିନ୍ଧିଲେ ଶକୁନଙ୍କି ଶର କୋଟି କୋଟି ।
ଶକୁନ ସହଦେବ-ଶରେ ପାଇ ତ୍ରାସ
ଧଇଲେ ବେଗେ କରପୃଷ୍ଠେ ଟେକି ପ୍ରାସ ।
ସହଦେବ ତିନକାଣ୍ଡ ବେଗରେ ବିନ୍ଧି
ପ୍ରାସ ତୁଲେ ଦୁଇ ହାତକୁ ଦେଲେ ଛେଦି ।
ପୁଣି ହୃଦେ ସମ୍ଭାଳି ପୂର୍ବର ବଇର
ଭଲ୍ଲକାଣ୍ଡେ କାଟିଲେ ଶକୁନର ଶିର ।
ନ୍ଦ୍ରବମ୍ଭ ପ୍ରାପ୍ତେ ଶକୁନ ମୁଣ୍ଡଖଣ୍ଡ
ଛିଡ଼ନ୍ତେ ଧୂଳ ବୋଳ ହେଲା ତଳେ ପିଣ୍ଡ ।
ସହଦେବ ଶକୁନବୀରଙ୍କୁ ସଂହାରି
ସିଂହନାଦ କଲେ ହୃଦରେ ମୋଦ ଭରି ।
ଶକୁନ ପଡ଼ିବାର ଦେଖି ତୁମ୍ଭଯୋଦ୍ଧା—
କୁଳ ପଳାଇଗଲେ ଛାଡ଼ି ଯୁଦ୍ଧ-ଶ୍ରଦ୍ଧା ।
କୃଷ୍ଣ ତୁଲରେ ପାଣ୍ଡୁସୁତେ ଅତି ଗର୍ବେ
ଶଙ୍ଖ ମୁଖରେ ଭରି ବଜାଇଲେ ସର୍ବେ ।
ସମସ୍ତେ କରି ସହଦେବଙ୍କୁ ପ୍ରଶଂସା
ବୋଇଲେ ସୁଯୋଧନ ହେଲା ଲୋକହସା ।
ପରାଣକୁ ସେ ମାତ୍ର ବହିଅଛି ଅଙ୍ଗେ
ମାରିବ ଯେବେ ପଡ଼ିବ ସେ ଭୀମ ଆଗେ ।
ଶକୁନଙ୍କ ମରଣ ଦେଖିଣ ଶକୁନ—
ଲୋକେ ପାଣ୍ଡବଙ୍କୁ ଯୁଝିଲେ ଶସ୍ତ୍ର ଘେନ ।

ଭୀମ ଅର୍ଜୁନ ତା ଦେଖି ହୋଇ କ୍ରୋଧ
କଲେ ମୁନସଖା କାଣ୍ଡରେ ତାଙ୍କୁ ବଧ ।
କର୍ଣ୍ଣର୍ଣ୍ଣୀ ବାଣକୋଟି ଶରାସନେ ଯୋଡ଼ି
ବନ୍ଧ ଯୋଦ୍ଧାଙ୍କର ଭୁଜକୁ ଦେଲେ କାଟି ।
ଘୋଡ଼ାମାନଙ୍କର ବେକ ଗଣ୍ଡିକି ଦୁଇ
ଦୁଇ ଗଡ଼ କଲେ କାଣ୍ଡରେ ନରସାଇଁ ।
ଦୁର୍ଯ୍ୟୋଧନ ଆପଣା ବଳକ୍ଷୟ ଦେଖି
ହତଶେଷ ଲୋକେ କହିଲେ ହୋଇ ଦୁଃଖୀ ।
ଚାଲ ହେ ଏବେ ଆମ୍ଭେମାନେ କରି ରଣ
ନେନ ପକାଇବା ପାଣ୍ଡବଙ୍କର ପ୍ରାଣ ।
ଏହା ଶୁଣି ତୁମ୍ଭ ସେନାଏ ଗୋଟି ହୋଇ
ପାଣ୍ଡବଙ୍କୁ ପୁଣି ଯୁଝିଲେ ବେଗେ ଯାଇ ।
ପାଣ୍ଡବେ ତା ନ ସହି ମାରି ତୀକ୍ଷ୍ଣବାଣ
କାଢ଼ି ପକାଇଲେ ତାହାଙ୍କ ଦେହୁଁ ପ୍ରାଣ ।
ଏହିରୂପେ ଏଗାର ଅକ୍ଷୌହିଣୀ ସୈନ୍ୟ
ଅଠରଦିନ ଯୁଦ୍ଧେ ହୋଇଲେ ନିଧନ ।
ମଡ଼ା ଉପରେ ଏକା ଛିଡ଼ା ଦୁର୍ଯ୍ୟୋଧନ
ହୋଇଲେ ହେ ରାଜନ ହୋଇ ବଳହୀନ ।
ଚାରିଆଡ଼େ ତୁମ୍ଭର ସୁତ ଦୃଷ୍ଟି ଦେଲେ
ଆପଣାର କରି କାହାକୁ ନ ଦେଖିଲେ ।
ଆଉ ସୈନ୍ୟ ଆଗରେ ଦେଖି ମହାମୋହ
ଆଶ୍ରୟକଲା ଆସି ଦୁର୍ଯ୍ୟୋଧନ ଦେହ ।
ମନେ କଲେ ଏଠାରେ ଥିଲେ କାର୍ଯ୍ୟ ନାହିଁ
ମରିବି ଯିବା ପାଣ୍ଡବଙ୍କ କାଣ୍ଡ ପାଇ ।

—o—

## ଦୁର୍ଯ୍ୟୋଧନଙ୍କର ହ୍ରଦରେ ଦେହ ଗୋପନ

ଧୃତରାଷ୍ଟ୍ର ବୋଇଲେ ପାଣ୍ଡବଙ୍କ ସେନା
କେତେ ଯୁଦ୍ଧ ବଞ୍ଚିଲେ ତା ମୋତେ କହନା ।
ବଳକ୍ଷୟ ଦେଖିକରିଣ ଦୁର୍ଯ୍ୟୋଧନ
କି କଲା, ଶୁଣିବାକୁ ହେଉଛି ମୋ ମନ ।
ସଞ୍ଜୟ ବୋଇଲେ ହେ ସାତଶତ ହାତୀ
ସହସ୍ର ପାଞ୍ଚ ଘୋଡ଼ା ସହସ୍ରଦୁଇ ରଥୀ ।
ସହସ୍ରଦଶ ପତ୍ତି ଘେନ ଯୁଧିଷ୍ଠିର
ପାଇଲେ ଜାଣ ଯୁଦ୍ଧ-ସମୁଦ୍ରକୁ ପାର ।

ସୁଯୋଧନ ଗଦାଟି ବହି କରପୁଟେ
ପଳାଇଲେ ଯୁଦ୍ଧଦାଣ୍ଡରୁ ଧାଇଁ ଆଣ୍ଟେ ।
ଏକାଦଶ ଅକ୍ଷୌହିଣୀର ଅଧିପତି
ହୋଇ ପାଇଲେଟି ରାଜନ ଏ ବିପତ୍ତି ।
ଯୁଦ୍ଧରେ ସୁଯୋଧନ ପାଇ ନୈକଦଶା
ବଦୁରଙ୍କ ଭାଷାକୁ ହୃଦେ ଦେଇ ବସା ।
ହ୍ରଦରେ ପଶି ଲୁଚିବାକୁ ମନ କଲେ
ପାଣ୍ଡବଙ୍କ ଯୋଗୁଁ ତ କ୍ଷତ ହୋଇଥିଲେ ।
କୃପ, କୃତବର୍ମା, ଅଶ୍ୱତ୍ଥାମା ଏ ତିନି
ଆଗୁଁ ଛ ପଳାଇ ସେ ଥିଲେ ଭୟ ଘେନି ।
ମୁହିଁ ତ ବନ୍ଦୀ ହୋଇ ସାତ୍ୟକି ହାତରେ
ପଡ଼ିଣ ଗଡ଼ୁଥିଲି ମରଣ-ପଥରେ ।
ଯେଉଁ ରୂପରେ ତାହା କହିବି ରାଜନ
ମୋହଠାରୁ ଶୁଣ ହେ ଦେଇ କରି ମନ ।
ଧୃଷ୍ଟଦ୍ୟୁମ୍ନ ମୋତେ ଦେଖି ସାତ୍ୟକିଙ୍କି
ବୋଇଲେ ରଖିଅଛ ଏହାକୁ କାହିଁକି ।
ଏହା ଶୁଣି ଶିନିପ୍ରବର ମହାଭେଣ୍ଡା
ଧରି ମୋର ଚୁଟି କାଢ଼ିଲେ ଖାପୁଁ ଖଣ୍ଡା ।
ସେ କାଳେ ବ୍ୟାସ ବୋଇଲେ ଆସି ସେଠାକୁ
ମାର ନାହିଁ ଆହେ ସାତ୍ୟକି ସଞ୍ଜୟଙ୍କୁ ।
ବେଦବ୍ୟାସ ବଚନ ସାତ୍ୟକି ଘେନିଲେ
ଯାଅ ହେ ବୋଲି ମୋତେ ଫିଟାଇଣ ଦେଲେ
ଏହି ସକାଶୁଁ ପ୍ରାଣ ବଞ୍ଚି ହ୍ରଦଦେଶେ
ଆସିଲି ସେଠାରୁ ବାହାରି ଅତି ତ୍ରାସେ ।
କୋଶକ ଅନ୍ତେ ମୁଁ ଦେଖିଲି ସୁଯୋଧନ
ପାଣିରେ ପଶିବାକୁ କରୁଅଛି ମନ ।
ସେ ଦଶାକୁ ଦେଖି ମୋ ନେତ୍ରେ ଅଶ୍ରୁପୂରି
ଯାଆନ୍ତେ ଆଜ ଥରେ ନ ପାରିଲି ହେରି ।
ସେ ମୋତେ ଦେଖିକରି ହୋଇ ଅତି ଦୀନ
ବୋଇଲେ ସଞ୍ଜୟ ହେ ମୋ କରମ ହୀନ ।
ଏଗାର ଅକ୍ଷୌହିଣୀ ଘେନି ଯୁଦ୍ଧ କଲି
ଅଠର ଦିନ ମଧ୍ୟେ ସବୁ ହରାଇଲି ।
ମୁଁ କହିଲି ତାଙ୍କୁ ସାତ୍ୟକି ବାନ୍ଧିକରି
ହାଣୁଥିଲେ ଫିଟାଇ ଦେଲେ ତପସ୍ୱୀ ।
ବ୍ୟାସ ମହାପତି ଯେ ବହି ଅତି ପ୍ରୀତି
ଏ କଥାରେ ସଂଶୟ ନାହିଁ ହେ ନୃପତି ।

ମୋତେ ପଚାରିଲେ ମେ ହର ଭାଇମାନେ
ସେନା ଘେନି ସଞ୍ଜୟ ଛନ୍ତି କେଉଁସ୍ଥାନେ ।
ମୁହିଁ ବୋଇଲି ସବୁ ଭାଇ ସୈନ୍ୟ ହତ
ଅଛନ୍ତି ତିନିଜଣ ମାତ୍ରକ ଜୀବିତ ।
ଶୁଣିଣ ଦୀର୍ଘଶ୍ୱାସ ଛାଡ଼ି ସୁଯୋଧନ
ପୁନଃପୁନଃ ଚାହିଁ ସେ ବୋଇଲେ ବଚନ ।
କହିବ ପ୍ରଜ୍ଞାଚକ୍ଷୁ ଭୂପତିଙ୍କି ଯାଇ
ଭାଇ ବାନ୍ଧବ ପୁତ୍ର ସୈନ୍ୟଙ୍କୁ ହରାଇ ।
ତୁମ୍ଭର ପୁତ୍ର ହ୍ରଦ ମଧ୍ୟେ ଲୁଚିଛନ୍ତି
ଏହା କହି ହ୍ରଦମଧ୍ୟକୁ କଲେ ଗତି ।
ହ୍ରଦମଧ୍ୟେ ମାୟାରେ ଜଳସ୍ତମ୍ଭ କରି
ରହିଲେ ପୁତ୍ରଶିରୋମଣି ଦଣ୍ଡଧାରୀ ।
ଏମନ୍ତ ବେଳେ କୃପ-କୃତବର୍ମା ଦ୍ରୋଣି
ଆସିମୋତେ ଦେଖିଣ ପଚାରିଲେ ପୁଣି ।
କାହିଁ ଅଛନ୍ତି ଆମ୍ଭ ରାଜା ଦୁର୍ଯ୍ୟୋଧନ
ନ ଦେଖି ତାଙ୍କୁ ଆମ୍ଭେ ହେଲୁଁ ଅତି ଦୀନ ।
ଜାଣିଥିଲେ ସଞ୍ଜୟ ଆମ୍ଭ ସନ୍ନିଧାନେ
ପଚାରୁଅଛୁ ଯାହା କହ ତୋଷମନେ ।
ମୁହିଁ କହିଲି ଏହି ହ୍ରଦର ମଧ୍ୟରେ
ଅଛନ୍ତି ସୁଯୋଧନ ରାଜନ ଭୟରେ ।
ଏ ବାହାରେ ତାହାଙ୍କ ତୁଲେ ଯେଉଁ ରୂପେ
କଥା ହୋଇଥିଲି ତା କହିଲି ସଂକ୍ଷେପେ ।
ଅଶ୍ୱତ୍ଥାମା ଶୁଣି ମୋ ମୁଖ-ବଚନକୁ
କାନ୍ଦିଲେ ଡକାପାଡ଼ି ଚାହିଁ ସେ ହ୍ରଦକୁ ।
ବୋଇଲେ ଆମ୍ଭେ ଜୀଇଁଅଛୁଁ ହେ ରାଜନ
କାହିଁକି କଲ ତୁମ୍ଭେ ଜଳ-ମଧ୍ୟେ ସ୍ଥାନ ।
ଏରୂପେ ତୁମ୍ଭ ତିନି ମହାରଥୀ କାନ୍ଦି
ବସିଲେ ତୁମ୍ଭ ଦେବା ଅନନ୍ତ ଗୁଣ ବନ୍ଦି ।
ପାଣ୍ଡବଙ୍କ ଧ୍ୱଜଚଗଳ ଦେଖି ଡୋଳେ
ପଳାଇଲେ ତିନିହେଁ ପ୍ରାଣରି ବିକଳେ ।
ମୁଁ ମଧ ତାଙ୍କ ରଥେ ବସି ହେ ରାଜନ
ତାହାଙ୍କ ସଙ୍ଗେ କଲି ବସାକୁ ଗମନ ।
ଆମ୍ଭଠାରୁ ତୁମ୍ଭର ପୁତ୍ରଙ୍କର ନାଶ
ଶୁଣି ତୁମ୍ଭ ବଧୂଏ କାନ୍ଦିଲେ ନରେଶ ।
ଯେଉଁରୂପେ କୁରରୀପକ୍ଷୀ ପାଡ଼େ ରଡ଼ି
ସେ ରୂପେ ନାରୀଏ କାନ୍ଦିଲେ ତଳେ ପଡ଼ି ।

ନାରୀଙ୍କର ହାହା ଶବଦରେ ଗଗନ
ଫାଟିଗଲା ପରି ମଣିଲା ନୃପେନ୍ଦ୍ର କାନ ।
ବୃଦ୍ଧମାନେ ସ୍ତ୍ରୀଙ୍କ ସମୀପେ ତ ଥିଲେ
ଏହା ଶୁଣି ତାହାଙ୍କୁ ସଙ୍ଗରେ ଘେନିଲେ ।
ବାହନ ରଥ ଘୋଡାମାନଙ୍କୁ ଆରୋହି
ହସ୍ତିନାକୁ ଚଳି ଆସିଲେ ନରସାଇଁ ।
ଯେଉଁ ସ୍ତ୍ରୀଦେହରେ ସୂର୍ଯ୍ୟଙ୍କର କର
ନ ପଡ଼େ, ସେ ବୁଲିଲେ ପାଦେ ନରବର ।
ଦେଖିଦେଲେ ଭୀମ ମାରିବେ ମନେକରି
ଆସିଲେ ସବୁଲୋକେ ପୁରକୁ ବାହାରି ।
ଗଜଡ଼ରୁ ଗୋଲ୍ଲସାଏ ଯେତେ ଯେ ଥିଲେ
ମାରିବ ଥିଲେ ବୋଲି ସର୍ବେ ପଳାଇଲେ ।
ତୁମ୍ଭର ବଧୂଙ୍କର ପଳାଇବା ଦେଖି
ତୁମ୍ଭର ସୁତ ଯୁଯୁତ୍ସୁ ହୋଇ ଅତିଦୁଃଖୀ ।
ଭାବିଲେ ସୁଯୋଧନ ବୁଦ୍ଧିରେ ଏକାଦଶ
ଅକ୍ଷୌହିଣୀସେନା ପାଣ୍ଡବେ କଲେ ନାଶ ।
ବଧୂଏ ଆମ୍ଭର ପଳାଉଛନ୍ତି ଦାଣ୍ଡେ
ପାଣ୍ଡବେ ଆଶ୍ରା କରି ପ୍ରାଣ ମୋର ପିଣ୍ଡେ ।
ଥିବାରୁ ମୁହିଁ ଏହା ଦେଖିଲଇଁ ଏବେ
ମଲେ ଆମ୍ଭର ଭାଇମାନେ ଯୁଦ୍ଧଗର୍ବେ ।
ଏ ସ୍ତ୍ରୀଗୁଡ଼ାକରେ ଯୁଧିଷ୍ଠିର ରାଜା
ରାଗ ଛାଡ଼ି କରି କରିବେ ଧର୍ମ ପୂଜା ।
ମୁଁ ଏବେ ଯୁଧିଷ୍ଠିର ଛାମୁରେ ଜଣାଇଁ
ଏହାଙ୍କୁ ଛାଡ଼ିଦେବି ହସ୍ତିନାରେ ନେଇ ।
ଏତେ ଭାବି ଯୁଯୁତ୍ସୁ ଯୁଧିଷ୍ଠିର ଆଗେ
ଜଣାମଣା କରିଲେ ମାନସ ସରାଗେ ।
ଯେବେ ତୁମ୍ଭେ ରାଜନ ଆଜ୍ଞା ଦେବ ମୋତେ
ବଧୂଙ୍କୁ ଛାଡ଼ିଦେଇ ଆସିବି ତୁରିତେ ।
ପତି ବିନା ଅନାଥ ହୋଇ ଦାଣ୍ଡେ ପଡ଼ି
ବାହାରିଛନ୍ତି ରାଣ୍ଡୁ ଚଳେ ଗଡ଼ଗଡ଼ି ।
ତୁମ୍ଭ ଆଜ୍ଞା ବିନା ରାଜନ ମହାରଥ
ତାଙ୍କଠାକୁ ଯିବାକୁ ନାହିଁ ମୋ ସାମର୍ଥ୍ୟ ।
ଯୁଧିଷ୍ଠିର ଏହା ଶୁଣିଣ ତୋଷ ବହି
ବୋଇଲେ ହେ ଯୁଯୁତ୍ସୁ ଯାଅ ବେଗ ହୋଇ ।
ଯେଉଁରୂପେ ବୋଲୁଛ ସେହିରୂପେ କରି
ପାଇଣ ମୋହଠାରୁ ସମ୍ପ୍ରତି ଉତ୍ତର ।
ଯୁଯୁତ୍ସୁ ସେହିକ୍ଷଣି ଘେନିଣ ବଧୂଙ୍କୁ
ତୁମ୍ଭର ଆସିଲେ ରାଜନ ଏ ପୁରକୁ ।
ସେହିକାଳକୁ ଅସ୍ତଗିରିଙ୍କର ଶିଖ
ଛୁଇଁ ଅସ୍ତ ହୋଇଲେ ଦିବସ-ନାୟକ ।
ଯୁଯୁତ୍ସୁକୁ ବିଦୁର ହସ୍ତିନା ଦୁଆରେ
ଦେଖିକରି ପୁଚ୍ଛିଲେ ଅତି ସରାଗରେ ।
ଦୁର୍ଯ୍ୟୋଧନରାଜା ନ ଆସୁଣୁଁ ଆପଣେ
ଏକା ହୋଇ ଆସିଲ ଏ କେଉଁ କାରଣେ ।
ଯୁଯୁତ୍ସୁ ବୋଇଲେ ହେ ସେନାଯାକ ମଲେ
ସୁଯୋଧନରାଜା ଯୁଦ୍ଧରୁ ପଳାଇଲେ ।
ବଧୂମାନଙ୍କ ମୁହିଁ ମର୍ଯ୍ୟାଦାକୁ ଭାବି
ସଙ୍ଗେ ଘେନି ଆସିଛି ଛାଡ଼ିଦେଇ ଯିବି ।
ବିଦୁର ବୋଇଲେ ଯା କହିଲ ଟି ତୁମ୍ଭେ
ଏ ବଡ଼ ଭାଗ୍ୟ ବୋଲି ଜାଣିଲୁଁ ତ ଆମ୍ଭେ ।
ଆଜ ନିଶରେ ଏଥିଠାରେ ରହି ବାବୁ
ଯୁଦ୍ଧରୁ ଶ୍ରମଯାକ ହରିକରି ସବୁ ।
କାଲି ସକାଳୁଁ ଯାଇ ଭେଟ ଯୁଧିଷ୍ଠିର
ସୁଯୋଧନ ଛାଡ଼ି ଗଲେତ ରାଜ୍ୟଭାର ।
ଏ ରୂପେ ଯୁଯୁତ୍ସୁ ବିଦୁର କଥା ହୋଇ ।
ଯେ ଯାହା ଘରକୁ ଆସିଲେ ନରସାଇଁ ।
ଶଲ୍ୟପର୍ବ ସାରିଲେ ଏଥିଠାରେ ବ୍ୟାସ
କହଇ କୃଷ୍ଣସିଂହ ଭାବେ ବହି ତୋଷ ।
ଶଲ୍ୟପର୍ବରେ ଗଦାପର୍ବକୁ ମିଶାଇ
କହିଛନ୍ତି ଆଦିପର୍ବେ ସେ ତୋଷ ବହି ।
ଏଥି ସକାଶୁଁ ମୁଁ ସାରି ଶଲ୍ୟପର୍ବ
କହୁଅଛି ସୁଜନେ ଶୁଣ ଗଦାପର୍ବ ।
ଗଦାପର୍ବକୁ ଭିନ୍ନ ବୋଲିବି ମୁଁ ଯେବେ
ଅଠର ପର୍ବ ବଳି ପଡ଼ିବ ସେ ତେବେ ।
ଭାରତ ଶଏ ପର୍ବେ ଏ ଅଠର ସାର
କହିଛନ୍ତି ସତ୍ୟବତୀଙ୍କ କୁମର ।
ଏହି କଥା ଜାଣିମୁଁ ଜଗି ବୋଲୁଅଛି
ସୁଜନେ ମୋ ଦୋଷ ନ ଘେନ ମନେ କଛି ।

*

## ଦୁର୍ଯ୍ୟୋଧନ ଓ ଭୀମଙ୍କ ଗଦାଯୁଦ୍ଧର ଆୟୋଜନ

ଏ ଅନ୍ତେ ସଞ୍ଜୟ ବୋଇଲେ ନରବର
କହିବା ଶୁଣ ଗଦାଯୁଦ୍ଧ ଦୁଅଙ୍କର ।
ମୁହୂର୍ତ୍ତ ମାତ୍ରକରେ ଦୁର୍ଯ୍ୟୋଧନ ଦଳୁ
ମଧ୍ୟରୁ ଶୂନ୍ୟ ହୋଇଗଲା ଜନଭୂଷା ।
ଧୃତରାଷ୍ଟ୍ର ବୋଇଲେ କୃତବର୍ମା କୃପ
ଦ୍ରୌଣି ସୁଯୋଧନ ଏ କରଣ ସନ୍ତାପ ।
ଯେ ଯାହା ମୁଖେ ଭଜି ଲୁଚିଲେ କହୁଛ
କରୁପେ ଗଦାଯୁଦ୍ଧ କଲା ମୋର ବତ୍ସ ।
ସଞ୍ଜୟ ବୋଇଲେ ହେ ପାଣ୍ଡବଙ୍କ ଜୟ
ଦେଖି ତୁମ୍ଭ ତିନ ରଥୀଏ ଲଭି ଭୟ ।
ଦୁର୍ଯ୍ୟୋଧନର ଥିବା ହ୍ରଦକୁ ଆସିଲେ
ମୋଟେ ଦେଖି ସେଠାରେ କଥା ବାର୍ତ୍ତା ହେଲେ
ପୁଣି ଦେଖି ପାଣ୍ଡବଙ୍କର ରଥ ଧ୍ୱଜ
ପଳାଇଲେ ସେଠାରୁ ଛାଡ଼ିଦେଇ ଓଜ ।
ପାଣ୍ଡବେ ତୁମ୍ଭ ସୈନ୍ୟମାନଙ୍କୁ ଚଡ଼ାଇ
ସୁଯୋଧନ ଖୋଜିଲେ ମହାକ୍ରୋଧ ବହି ।
ନ ଦେଖି ଯୁଦ୍ଧଦାଣ୍ଡେ ଦୁର୍ଯ୍ୟୋଧନ ଶବ
ଛାଡ଼ି ପାଣ୍ଡୁସୁତେ ହୃଦରୁ ସୁଖଭାବ ।
ବୋଲାବୋଲି ହୋଇଲେ ସୁଯୋଧନ ବାଇ
ଏକାଦଶକ୍ଷୌହଣୀ ଯୁଦ୍ଧରେ ମରାଇ ।
କେଉଁଠାରେ ଯାଇଣ ଲୁଚିଛି ସେ ପାପ
ଚାଲ ଖୋଜି ତା ପଦ କରିଦେବା ଲୋପ ।
ସୁଯୋଧନ ତା ଜାଣିପାରି ପାଣି ସ୍ତମ୍ଭୀ
ହ୍ରଦ ମଧ୍ୟେ ଲୁଚିଲେ ହୋଇଣ ଅଦମ୍ଭୀ ।
ପାଣ୍ଡୁସୁତେ ତୁମ୍ଭ ପୁତ୍ରଙ୍କୁ ଖୋଜି ଖୋଜି
ରହିଲେ ଯାଇଁ ବସା ମଧ୍ୟେ ଶାନ୍ତି ଭଜି ।
ପାଣ୍ଡବେ ବସା ମଧ୍ୟେ ରହିବା କାଳରେ
ପୁଣି ତୁମ୍ଭ ସେ ତିନ ରଥୀଏ ସତ୍ୱରେ ।
ସୁଯୋଧନ ଥିବା ହ୍ରଦକୁ ଛପି ଛପି
ଆସିଲେ ପ୍ରାଣଭୟେ ନୋହିଣ ପ୍ରତାପୀ ।
ଡାକିଲେ ସ୍ଥିର କରି ଆହେ ସୁଯୋଧନ
ଆସ ପାଣ୍ଡୁସୁତଙ୍କୁ କର ଆୟୋଧନ ।
ହତ ହୋଇଲେ ସ୍ୱର୍ଗ, ଜିଣିଲେ ଏ ମର୍ତ୍ତ୍ୟ
ପାଇବା କଥା କହିଁ ଛାଡ଼ ନରପତି ।

ତୁମ୍ଭେ ତ କୁରୁକୁଳେ ହୋଇଅଛ ଜାତ
ପୁଣି ତ ଅଟ ମହାବିକ୍ରମରେ ଯୁତ ।
ଆଗ କରଣ ଯୁଦ୍ଧଦାଣ୍ଡରେ ଆମ୍ଭଙ୍କୁ
ଯୁଝିଲେ ନ ଜିଣିବେ ଜାଣ ସେ ତୁମ୍ଭଙ୍କୁ ।
ସୁଯୋଧନ ବୋଇଲେ ନ କହ ଗୁଡ଼ାଏ
ତୁମ୍ଭ ସଙ୍ଗେ ଗଲେ ମୁଁ ମରିବି ନିଶ୍ଚୟେ ।
ତୁମ୍ଭେମାନେ ଭାଗ୍ୟକୁ ଯୁଦ୍ଧରୁ ମୁକତ
ହୋଇ ଏବେ ରହ ପ୍ରଶାନ୍ତ କରି ଚିତ୍ତ ।
ତୁମ୍ଭେ ଆମ୍ଭେ ଦୁହେଁ ତ ଶ୍ରାନ୍ତ ହୋଇଥାଇଁ
ଆଜ ଯୁଝିବାର ମନକୁ ପାଉନାହିଁ ।
କାଲି ପଛକେ ଯାଇ କରିବା ସମର
ନିବର୍ତ୍ତି ରହ ଆଜ ଘେନ ମୋ ଉତ୍ତର ।
ଅଶ୍ୱତ୍ଥାମା ବୋଇଲେ ନ ଡର ହେ ରାଜେ
ମାରିବି ତୁମ୍ଭ ଶତ୍ରୁମାନଙ୍କୁ ନିଶ୍ଚୟେ ।
ଯେଉଁ ରୂପେ ବୋଲିବ ସେ ରୂପେ ନିୟମ ।
କରିବି ଉଠ ଆହେ ନରଙ୍କ ଉତ୍ତମ ।
ପାଞ୍ଚାଳରଥୀକୁଳ ଆଜ ନ ମାଇଲେ
ସାଞ୍ଜୁ ଫେଇ ନାହିଁ ସଜନ ଜାଣ ଭଲେ ।
ଏରୂପେ କଥା ହେବା କାଳେ ଭୀମଙ୍କର
ବ୍ୟାଧେ ଶ୍ରାନ୍ତ ହୋଇ ଆସିଥିଲେ ନେଇ ଭାର ।
ସୁଯୋଧନଙ୍କର ତୁମ୍ଭର ରଥିଙ୍କର
କଥାବାର୍ତ୍ତା ଯାକ ଶୁଣିଲେ ନରବର ।
ମନେ ଚିନ୍ତିଲେ ଆଉ ଶିକାରେ କାର୍ଯ୍ୟ ନାହିଁ
ଏ ବାର୍ତ୍ତା ଶୁଣିଲେ ପାଣ୍ଡବ ହରଷାଇଁ ।
ରତନ ବସ୍ତ୍ର ଅଳଙ୍କାର ଧନ ଧାନ୍ୟ
ଦେଇକରି ନିଶ୍ଚେ ତୋଷିବେ ଆମ୍ଭ ମନ ।
ଏଥି ସକାଶୁଁ ଏବେ ବେଗେ ଚାଲି ଯିବା
ଆମ୍ଭ ପ୍ରଭୁ ଭୀମଙ୍କୁ ବେଗେ କହିଦେବା ।
ଏ ରୂପେ ମନେ କରି ଛାଡ଼ି ମାଂସ ଭାର
ଭୀମଙ୍କ ବସାରେ ମିଳିଲେ ନରବର ।
ପାଣ୍ଡବେ ତେଣେ ସୁଯୋଧନକୁ ନ ଦେଖି
ଖୋଜୁଥିଲେ ଲୋକେ ବରଗି ହୋଇ ଦୁଃଖୀ ।
ଏଥି ସମୟରେ ସେ ବ୍ୟାଧେ ଭୀମ ଆଗେ
ପାଦେ ପଡ଼ିଣ କୋଇ କହିଲେ ସତ୍ୱରେ ।
ଆହେ ବଳଶେଖର ପାଣ୍ଡୁନୃପସୁତ
ଆମ୍ଭେ ଯା କହୁଛୁ, ଶୁଣ ତା ଦେଇ ଚିତ୍ତ ।

ହ୍ରଦଜଳ ମଧ୍ୟରେ କୁରୁନରସାଇଁ
ଲୁଚିଛନ୍ତି ଦେଖି ଆସିଲୁ ଆମ୍ଭେ ଯାଇ ।
ଏଥି ଯେ ଉଚିତ ବିଚାର ତା ବିଚାର
କହ ହେ ମିତ୍ରଜନମାନଙ୍କୁ ସତ୍ୱର ।
ଭୀମ ଏହା ଶୁଣିଣ ଛାତିକି ଫୁଲାଇ
ବୋଇଲେ କାହିଁ ଯିବ ସୁଯୋଧନ ଭାଇ ।
ଲୁଚିଲେ ମୋର ଗଦାବାଡ଼ିକି ତା ଜାନୁ
ନ ଭାଙ୍ଗିବ ଜାଣେ ଗାନ୍ଧାରୀଦେବୀସୁନୁ ।
ଏତେ ବୋଲି ବ୍ୟାଧକୁ ବହୁ ଅଳଙ୍କାର
ଦେଇ ଗଲେ ଯହିଁ ଥିଲେ ତ ଯୁଧିଷ୍ଠିର ।
କହିଲେ ଆହେ ନନା ସୁଯୋଧନ ଭାଇ
ହ୍ରଦଜଳେ ପଶିଛି ଦେହକୁ ଲୁଚାଇ ।
ମୋହର ବ୍ୟାଧମାନେ ବେଣ୍ଟ ଯାଇଥିଲେ
ତାହାକୁ ଦେଖି ଆସି ମୋତେ ସେ କହିଲେ ।
ଚାଲ ତ ଏବେ ଯିବା ସୁଯୋଧନଠାକୁ
ଜଳରୁ ଝିଙ୍କି ଆଣି ମାରିବା ତାହାକୁ ।
ଯୁଧିଷ୍ଠିର ତା ଶୁଣି ହୋଇଲେ ଆନନ୍ଦ
ଉଠିକରି ବୋଇଲେ ଉଠ ହେ ଗୋବିନ୍ଦ ।
ସୁଯୋଧନରାଜା ହ୍ରଦରେ ଲୁଚିଅଛି
ଆଜ ତା ପାଞ୍ଜି ପୋଛୁ ସୂର୍ଯ୍ୟଙ୍କର ବର୍ଣ୍ଣି ।
ପାଣ୍ଡବେ ଯିବାରେ ପାଞ୍ଚାଳ ରଥିକୁଳ
ବାହାରିଲେ ତାଙ୍କ ସଙ୍ଗତେ କରି ଗୋଳ ।
ଯୁଧିଷ୍ଠିରଙ୍କର ସଇନପାଦଘାତେ
ମହୀଦେବୀ ଭର୍ଜିଗଲେ ହେ ନରପତେ ।
ନକୁଳ ସହଦେବ ଅରଜୁନ ଭୀମ
ଦ୍ରୌପଦେୟ ସାତ୍ୟକ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ।
ଉତ୍ତମୌଜା ଆଦି ରଥୀଏ ଚଢ଼ି ରଥ
ମଣ୍ଡିଲେ ଯୁଧିଷ୍ଠିର ଯିବା ଭୂମିପଥ ।
ଯୁଧିଷ୍ଠିର ଏ ରୂପେ ସୈନ୍ୟ ସଙ୍ଗେ ଧରି
ବ୍ୟାସବନେ ପ୍ରବେଶ ହେଲେ ଦଣ୍ଡଧାରୀ ।
ସେ ବ୍ୟାସବନେ ହ୍ରଦ ମଧ୍ୟେ ସୁଯୋଧନ
ଜଳ ସ୍ତମ୍ଭକରି ଥିଲେ ତ ସଂଗୋପନ ।
ପାଣ୍ଡବମାନଙ୍କର ମୁଖର ହେଳ
ଶୁଣି ମନକଲେ ଆସିଲେ ପାଣ୍ଡୁ ବାଳ ।
ଯୁଧିଷ୍ଠିର ରଥନେମିର ଗରଜନେ
ବନମହୀକି କମ୍ପାଇଲେ ଅବଚ୍ଛିନ୍ନେ ।

କୃପ କୃତବରମା ଦ୍ରୌଣି ଏହା ଶୁଣି
ସୁଯୋଧନ ଆଗରେ କହିଲେ ଏ ବାଣୀ ।
ଯୁଧିଷ୍ଠିର ସଇନ ସେନ ଆସୁଛନ୍ତି
ପଳାଇବୁଁ, ଥିଲେ ତ ପଡ଼ିବ ବିପତ୍ତି ।
ସୁଯୋଧ ବୋଇଲେ ଆମ୍ଭ ପାଶେ ତୁମ୍ଭେ
ରହିଥାଅ ବୋଲି ବୋଲୁ ନାହିଁଟି ଆମ୍ଭେ ।
ତୁମ୍ଭ ସୁଖରେ ଆସି ଟାଣି ଟୁଣି ହୋଇ ।
କହିଥିଲି ସିନା ଯୁଦ୍ଧକୁ ଯିବା ପାଇଁ ।
ଏବେ ଯେବେ ଡରୁଅଛଇଁ ତୁମ୍ଭେ ତେଉ
ଯାଅ ଧାଅ ମୋ ପାଶେ ନ ରହ ତ୍ୱରିତ ।
ଏହା ଶୁଣି ତୁମ୍ଭର ତିନ ରଥୀଯାକ
ପଳାଇଲେ ହୃଦରେ ଧରି ଭୟ ଦକ ।
ବନ ମଧ୍ୟରେ ବଟଗଛଟାଏ ଦେଖି
ତାହା ତଳେ ବସିଲେ ହୋଇ ମହାଦୁଃଖୀ ।
ସେଠାରେ ସୁଯୋଧନ କଥାଟି ଶ୍ରବନ
କରିବାରେ ଖସିଲା କଟିରୁ ବସନ ।
ଭୟଖାଳ ତାଙ୍କ ଅଙ୍ଗରୁ ଗଳିଯାଇ—
ଥିଲା, ତ ଦେଲା ତା ଲୁଗାକୁ ଭିଜା'ଇ ।
ଏ ଅନ୍ତରେ ରଥରୁ ଘୋଡ଼ାକୁ ଫେଇଲେ
ଅଲଗା ଗଛୁଟିକମାନଙ୍କେ ବାନ୍ଧିଲେ ।
ପାଣ୍ଡବେ ସୁଯୋଧନ ଥିବା ହ୍ରଦତଟ
ସମୀପରେ ରହିଲେ ସଙ୍ଗେ ସେନ ଥାଟ ।
ଯୁଧିଷ୍ଠି କୃଷ୍ଣଙ୍କୁ ବୋଇଲେ ଏ ହ୍ରଦରେ
ଶୋଇଛି ସୁଯୋଧନ ଅତି ପ୍ରମୋଦରେ ।
ତା ମାୟାରେ ଦେଖ ଏ ଜଳ ସ୍ତମ୍ଭି ଦେଇ
ରହିଛି ହେ ଗୋବିନ୍ଦ କି କହିବ ମୁହିଁ ।
ଏ ଜଳରେ ପଶିଲେ ସୁଯୋଧନ-ପ୍ରାଣ
ଆଜ ମୁଁ ଘେନଯିବ ବଣ୍ଡ ମୁନବା'ଣ ।
ଇନ୍ଦ୍ର ବଜ୍ର ଧରି ହୋଇଲେ ତାଙ୍କ ସାହା
ଜିଣି ପକାଇବଟି ତାଙ୍କୁ ମୋର ବାହା ।
କୃଷ୍ଣ ବୋଇଲେ ହେ ରାଜନ ଯୁଧିଷ୍ଠିର
ବଡ଼ ସେ ମାୟାବନ୍ତ ଗାନ୍ଧାରୀ-କୁମର ।
ମାୟାକରି ଆଜ ମାରିବା ତାକୁ ରଣେ
ପଡ଼ ଲଣ୍ଡ ଆମ୍ଭ ଆଗେ ତ ଯିବ କେଣେ ।
ଉପାୟ କରି ଇନ୍ଦ୍ର ଅସୁର କୁଳକୁ
ଦେଲେଟି ନେଇ ସଂପୂ ଯମଙ୍କ ପୁରକୁ ।

ଉପାୟରେ ହରି ହିରଣ୍ୟ ହିରଣ୍ୟାକ୍ଷ
ପରାଣକୁ ଘେନଲେ ସେ ଦାନବମୁଖ୍ୟ ।
ଦଶରଥସୁତ ଉପାୟେ ରାବଣର
ବୁକୁ ପୋଡ଼ଦେଲେଟି ପେଷି ବ୍ରହ୍ମଶର ।
ମୁଁ ମଧ୍ୟ ନାନାଜାତି ଉପାୟ ଆଚରି
ବହୁତ ଦାନବଙ୍କ ପ୍ରାଣ ଅଛି ହରି ।
ତାରକ ବିପ୍ରଚିତ ବାତାପି ଇଲ୍ୱଳ
ତ୍ରିଶିର ସୁନ୍ଦ ଉପସୁନ୍ଦ ମହାବଳ ।
ଉପାୟବଳେ ମରିଅଛନ୍ତି ରାଜନ
ବଳେ ଏହାଙ୍କୁ ତ ନୋହିଲେ କେ ସମାନ ।
ଉପାୟରେ ବାସବ ଭୁଞ୍ଜି ସ୍ୱର୍ଗଶିରୀ
କହୁଥାଆନ୍ତି ନିଶ ମୋଡ଼ି ବଜ୍ର-ଧାରୀ ।
ଏରୂପେ କୃଷ୍ଣଠାରୁ ଶୁଣି ଯୁଧିଷ୍ଠିର
ଡାକ ତୁମ୍ଭ ପୁଅକୁ କହିଲେ ଉତ୍ତର ।
ଆହେ ସୁଯୋଧନ ମରାଇଣ କୁଳକୁ
ଲୁଚିଛ ରଖିବାକୁ ଆପଣା ପ୍ରାଣକୁ ।
ଭରତବଂଶେ ତୁମ୍ଭେ ହୋଇ କରି ଜାତ
ଏଡ଼େ ଉପହାସକଥାରେ ହେଲ ସ୍ଥିତ ।
ଏବେ ଉଠି ଜଳରୁ ଆସ ହେ ବାହାର
ମାଇଲେ ତୁମ୍ଭଙ୍କୁ ମୁଁ ହେବ ଦଣ୍ଡଧାରୀ ।
କହିବାର ଗୁମାନ କଥାଟିକ ଲୋଡ଼ା
କର ହେ ସୁଯୋଧନ ରାଜକୁଳ-ଚୂଡ଼ା ।
ଲାଜ ହେବା କଥାଟି ପକାଇ ପଛକୁ
ଶୂର ହୋଇ ବହିଛ ଅସୁରବୃତ୍ତିକୁ ।
କୁରୁବଂଶରେ ଆଜଯାଏ ଯୁଦ୍ଧଭୟେ
ଲୁଚିଇ ନାହାନ୍ତିଟି ଜଳେ କେହି କାୟେ ।
କ୍ଷତ୍ରିୟର ସମର ନ କରିବା କଥା
ଜାଣିଲେ ସୁଯୋଧନ ଅଟେ ବଡ଼ ବ୍ୟଥା ।
ଦାଦ ଭାଇ ପୁତୁର ବନ୍ଧୁଙ୍କୁ ମରାଇ
ତୁମ୍ଭ ବିନା ନାହିଁ କେ ରଖିବାକୁ ଦେହି ।
ଏରୂପେ ଜୀଇବାର ପ୍ରତକ୍ଷ ମରଣ
ପାଇଲେ ସୁଯୋଧନ ହୋଇବ କାରଣ ।
ଦୁଃଶାସନ କର୍ଣ୍ଣ ଶକୁନି ଆଶ୍ରା ପାଇ
କହୁଥା ନିତ ପରା ତୁଣ୍ଡରେ ବଡ଼ାଇ ।
ଏବେ ସେ ତୁଣ୍ଡ ମେଲ ଆସ ଯୁଝିବାକୁ
ନ ଲଗାଅ କ୍ଷତ୍ରିୟକୁଳ କଳଙ୍କକୁ ।
ବିକ୍ରମ ପଉରୁଷ ଅସ୍ତ୍ର ଜାଣିବାର
ପାସୋରି ଦେଲ କି ହେ ସୁଯୋଧନ ବୀର ।
ଆମ୍ଭଙ୍କୁ ମାରି ଅବା ଭୁଞ୍ଜ ତୁମ୍ଭେ ମହୀ
ତୁମ୍ଭଙ୍କୁ ମାରି ଆମ୍ଭେ ହେଉ ନରସାଇଁ ।
ଏହି କଥା ଆଚରିବାର ମହୀପାଳ
କାଳ ତ ହୋଇଅଛି ନୁହ ହେ ବିକଳ ।
ଏହା ଶୁଣି ତୁମ୍ଭ କୁମର ସୁଯୋଧନ
ବୋଇଲେ ଶୁଣ ଆହେ ପାଣ୍ଡବରାଜନ ।
ରଥ ଅଶ୍ୱ ସାରଥି ସେନାହୀନ ହୋଇ
ଏ ଜଳେ ରହିଛି ଜାଣ ହେ ଶ୍ରମ ପାଇ ।
ତୁମ୍ଭେ ଆଜକ ଶ୍ରମ ସାନ୍ତ୍ୱନାକୁ କର
କାଲିକି ତୁମ୍ଭେ ଆମ୍ଭେ କରିବା ସମର ।
ଯୁଧିଷ୍ଠିର ବୋଇଲେ ଆମ୍ଭ ଯୁଦ୍ଧଶ୍ରାନ୍ତ
ଶାନ୍ତ ହେଲନି ହେ ରାଜନ ବଳବନ୍ତ ।
ତୁମ୍ଭେ ଏବେ ହେ ଦେହଶ୍ରାନ୍ତିଟିକ ସାରି ।
ବାହାରି ଆସ ଜଳ ମଧ୍ୟୁଁ ଇଚ୍ଛା କରି ।
ଆମ୍ଭଙ୍କୁ ମାରି ସୁଖେ ହୋଇ ମହାରାଜ
ହସ୍ତୀନାମଣ୍ଡଳର ଶିରୀ ବସି ଭୁଞ୍ଜ ।
ସୁଯୋଧନ ବୋଇଲେ ଭାଇ ପାଇଁ ମୁହିଁ
ତୁମ୍ଭ ତୁଲେ ଯୁଝି ଅରଜିଥିଲି ମହୀ ।
ସେମାନେ ତ ତୁମ୍ଭର ସକାଶୁ ମରଣ
ପାଇଲେ ମହୀରେ ମୋ ଲୋଡ଼ା ନାହିଁ ଜାଣ ।
ଯେରୂପରେ ବିଧବାସ୍ତିରୀ ଭୋଗଯୋଗ୍ୟ ।
ନୁହଇ ସେରୂପେ ମୋହର ମହୀଭାଗ—
ଭୋଗଯୋଗ୍ୟ ନୁହଇ ଜାଣ ଯୁଧିଷ୍ଠିର
ଆଉ ବସି ଗୁଡ଼ାଏ କଥା ନ ପଚ୍ଛର ।
ପାଞ୍ଚାଳ ପାଣ୍ଡବଙ୍କ ତୁଲରେ ତୁମ୍ଭଙ୍କୁ
ମାରି ପାରଇଁ ମୁହିଁ କଲେ ବିକ୍ରମକୁ ।
ଦ୍ରୋଣ ଭୀଷ୍ମ କର୍ଣ୍ଣ ଏ ନାହାନ୍ତି ତ ଜାଇଁ
ପୃଥ୍ୱୀ ଅର୍ଜିବି ତେବେ ଯୁଝି କାହାପାଇଁ ।
ମହାସୁଖେ ବସି ଏ ମହୀ ଭୋଗ କର
ମୋ ସଙ୍ଗେ ଯୁଦ୍ଧ ହରବରରେ ନ ମର ।
ପୁଅ ଭାଇ ମରାଇ ଅସହାୟ ହୋଇ
ରାଜ୍ୟ ଲୋଡ଼ା ଅବା କରିବି କାହିଁପାଇଁ ।
ତୁମ୍ଭେମାନେ ରାଜ୍ୟକୁ ନେଲେ ତ ଛଡ଼ାଇ
ଘରେ ରହି ମୋ ଜୀଇବାରେ କାର୍ଯ୍ୟ ନାହିଁ ।

ବନକୁ ଯାଉଛୁ ଅଜିନ ପିନ୍ଧି ଏବେ
ପାଳ ତୁମ୍ଭେ ଯାଇଣ ହସ୍ତିନାକୁ ଭାବେ ।
ଯୁଧିଷ୍ଠିର ବୋଇଲେ ପ୍ରାଣ ଯିବା କାଳ
ପରବେଶ ଆସି ହୋଇଛୁ ମହୀପାଳ ।
ଏଣ୍ଡେ ଆର୍ତ୍ତ ହୋଇ କହୁଛ ଯେଉଁ କଥା
ଏତ କେବେ ନୁହେ କ୍ଷତ୍ରିୟଲୋକ ପନ୍ଥା ।
ତୁମ୍ଭେ ଦେଲେ ପୃଥ୍ୱୀ ଏତେବେଳେ ମୁହିଁ
କାହିଁପାଇଁ ନେବ ହେ କହ ତା ବତାଇ ।
କ୍ଷତ୍ରିୟର ଯେ ପ୍ରତିଗ୍ରହ କରିବାର
ଧରମ ନୁହଇ ହେ ଗାନ୍ଧାରୀ-କୁମର ।
ତୁମ୍ଭ ସେବକମାନଙ୍କୁ ଯୁଦ୍ଧ କରି ମୁହିଁ
ଦେଲନ ତ ଯୁଦ୍ଧଦାଣ୍ଡରେ ବତାଇ ।
ଏକା ତୁମ୍ଭେ ଜୀବନେ ଅଛ ସିନା ରହି
ତୁମ୍ଭଙ୍କୁ ମାରି କେଣ୍ଟା ଦେବ ଆଡ଼ଆଇ ।
ଅନୀଶ୍ୱର ହୋଇଣ ଈଶ୍ୱର ପରାୟେ
କାହିଁକି କହୁଅଛ ରାଜନ ଗୁଡ଼ାଏ ।
କୃଷ୍ଣ ମାଗିବାର ବେଳେ ତ ନାହିଁ କଲ
ଏବେ ଦେଲେ ମହୀକି ବୋଲାଇବ ଭଲ ।
ଭୀଷ୍ମ ଦ୍ରୋଣରେ ପର ଲୋକଙ୍କୁ ମରାଇ
ତୁମ୍ଭ ବିନା କେ ଅଛୁ ଜୀଇବ ପଳାଇ ।
ସୂଚ୍ୟଗ୍ରେ ମହୀ ତ ଦେବାକୁ କଲ ନାହିଁ
ଏବେ ସବୁଯାକ ଦେଉଛ କାହିଁପାଇଁ ।
ମୋତେ ଜାଣି ହସ୍ତିନାପୁରେ ନରବର
ହୋଇ ବସି ସୁଖରେ ପାଳନାକୁ କର ।
ଏ ମହୀ ଦେଲେ ହେଲେ ପ୍ରାଣକୁ ତୁମ୍ଭର
ନେବୁଁ ତ ଆମ୍ଭ ସଙ୍ଗେ କର ହେ ସମର ।
ତୁମ୍ଭ ଆମ୍ଭ ଦୁଇରୁ ଗୋଟିଏ ନ ମଲେ
ଏ ମହୀ ସୁଖ ପାଇନାହିଁ ଜାଣ ଭଲେ ।
ବିଷ ଦେଇ ଭୀମେ ପାଣିକି ଫିଙ୍ଗି ଦେଲ
ଜତୁଘରେ ପୂରାଇ ପୋଡ଼ି ମାରୁଥିଲ ।
ଏ ବାହାରେ ପଶାଖେଳରେ ରାଜ୍ୟ ହରି
କୃଷ୍ଣାଙ୍କୁ ସଭାରେ ଲଙ୍ଗଳା କଲ ଧରି ।
ପୁଣି ଅମ୍ଭମାନଙ୍କୁ ବନେ ଖେଦିଦେଲ
ତହିଁ ନାନାଜାତି ଦୁଃଖକୁ ଭୁଆଇଲ ।
ରାଜ୍ୟଚଳରେ ଆମ୍ଭେ ସାରି ବନବାସ
ମାଗିଲୁଁ ଯେବେ ରାଜ୍ୟ ଧଇଲ ତ ନାଶ ।

ତୁମ୍ଭ କଶଧରା ଆମ୍ଭେ ତ ଦଇବରେ
ଛଡ଼ାଇଦେଲୁଁ ଯୁଦ୍ଧଦାଣ୍ଡେ ବନ୍ଧନରେ ।
ଏତେବେଳେ କ୍ଷତ ହୋଇ ମହୀପାଳ
ଦେଲେ ଛାଡ଼ିଦେବୁଁ କି କରୁ ହେ ବିବେକ ।
ଉଠ ଏବେ ଶସ୍ତ୍ରକୁ ଧର ମୁଁ ବୋଲୁଛି
ତୁମ୍ଭ ଆମ୍ଭ ଯୁଝିବା କାଳ ହୋଇଅଛି ।
ଧୃତରାଷ୍ଟ୍ର ବୋଇଲେ ଏରୁପେ ଧିକ୍କାର
ବଚନ ତ ଶୁଣୁଥିଲା ମୋର କୁମର ।
ଯୁଧିଷ୍ଠିର ମୁଖୁଁ ନିଷ୍ଠୁରବାଣୀ ଶୁଣି
କି କଲା କହ ତ ସଞ୍ଜୟ ମନ୍ତ୍ରୀମଣି ।
ସଞ୍ଜୟ ବୋଇଲେ ହେ ଯୁଧିଷ୍ଠିରବାଣୀ
କର୍ଣ୍ଣଦେଶେ ତୁମ୍ଭର ସୁଯୋଧନ ଶୁଣି ।
ହସ୍ତେ ହସ୍ତ ଘଷି ମୋଡ଼ିଣ ଦୁଇନଖ
ବଡ଼ କରୁଣ ଖରେ ମଳାଇଲେ ଶ୍ୱାସ ।
ବୋଇଲେ ଆହେ ଯୁଧିଷ୍ଠିର ମହୀପତି
ରଥ ଶସ୍ତ୍ର ତୁଣ ତ ନାହିଁ ମୋର କତି ।
ବିରଥ ହୋଇ ମୁଁ ତ ରହିଛି ପାଣିରେ
ଯୁଝିବି କିପରି କହ ମୁଁ ପାଣିରେ ।
ଏକା ଗଦାଟିଏ ଧରିଛି ମୁହିଁ ହାତ
ତା ତୁମ୍ଭେ ନାଶିଲେ ମୋବଳ ହେବ ବ୍ୟର୍ଥ ।
ଏଥିପାଇଁ ସିନା ମୁଁ କରୁଛି ଭାବନା
ଧର୍ମ ଭାବି କହ ହେ ଯୁଧିଷ୍ଠିରନନା ।
ତୁମ୍ଭେ ତ ରଥ ଗଜସୈନ୍ୟ ସଙ୍ଗେ ଧରି
ଭାଇଙ୍କ ତୁଲେ ଅଛ ଯୁଦ୍ଧ ଇଚ୍ଛାକରି ।
ଜଗତ ମଧ୍ୟେ ତ ବୋଲାଅ ମହାରଥ
ମୁଁ ଏକା ଯୁଝିଲେ ପଡ଼ିବ ଯମହାତ ।
ଜଣେ ଜଣେ ଯେବେ ମୋ ସଙ୍ଗତେ ଯୁଝିବ
ତେବେ ମୁଁ ଯୁଝିବି ଜାଣ ହେ ନରଦେବ ।
ଭୀମ ଅରଜୁନ ନକୁଳ ସହଦେବ
ତୁମ୍ଭର ବଳକୁ କି ମେ ଡରି ଉରିବ ।'
ମେଳ କରି ଖେଳ କରିବ ବୋଲି ତୁମ୍ଭେ
ଡରି ଏ ଜଳରେ ପଶିଛୁଁ ଆସି ଆମ୍ଭେ ।
ସୂର୍ଯ୍ୟ ତେଜେ ନକ୍ଷତ୍ରେ ନଷ୍ଟ କଲା ପରି
ଯୁଦ୍ଧରେ ତୁମ୍ଭ ବଳ ପାରଇ ମୁଁ ହରି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ବାହ୍ଲିକ ଜୟଦ୍ରଥ
ଶଲ୍ୟ ଭୂରିଶ୍ରବା ସୁଶର୍ମା ମହାରଥ ।

ଭଗଦତ୍ତ ଶକୁନି ଦୁଃଶାସନ ଆଦି
ଭାଇଙ୍କି ତ ମାରିଛ ତୁମ୍ଭେ ହୋଇ ବାଦୀ ।
ତାହା ଶୁଝାଇବି ମୁଁ ଆଜ ଯୁଦ୍ଧଦାଣ୍ଡେ
ପିଟିଣ ଗଦା ତୁମ୍ଭ ପାଞ୍ଚଭାଇ ମୁଣ୍ଡେ ।
ଯୁଧିଷ୍ଠିର ବୋଇଲେ କୁଳ-ଅନୁରୂପ
କଥା ଏବେ କହିଲ ସୁଯୋଧନ ନୃପ ।
ସବୁରି ତୁଲେ ଯୁଝିବାକୁ ଛାଡ଼ିଦେଇ
ଜଣ ଜଣକରେ ଯୁଝ ମୁଁ ବୋଲୁଛଇଁ ।
ଯେଉଁ ଆୟୁଧରେ ଟି ହସିବ କ୍ଷମ
ସେ ଆୟୁଧ ଧରି ହେ ନୃପତି-ଉତ୍ତମ ।
ଅମ୍ଭ ପାଞ୍ଚ ଭାଇଙ୍କ ମଧ୍ୟୁଁ ଜଣେ ମାରି
ହୁଅ ଏ ସଂଗ୍ରାମମଧ୍ୟେ ଏକା ଦଣ୍ଡଧାରୀ ।
ନୋହିଲେ ମରି ଆମ୍ଭ ହସ୍ତେ ସ୍ୱର୍ଗଲୋକ
ଲଭ ହେ ରାଜନ ତ୍ୟଜି କରି ଶୋକ ।
ସୁଯୋଧନ ବୋଇଲେ ଏ ଗଦା ମୋ ପ୍ରିୟ
ତହିଁରେ ଯୁଝିବି ହେ ଧର୍ମଙ୍କ ତନୟ ।
ତୁମ୍ଭ ଭାଇଙ୍କରେ ଯେ ହେବ ବଳଆର
ତାଙ୍କୁ ବୋଲ କରନ୍ତୁ ମୋ ସଙ୍ଗେ ସମର ।
ଯୁଧିଷ୍ଠିର ବୋଇଲେ ଉଠ ସୁଯୋଧନ
ପୁରୁଷ ପରି ହୋଇ କର ଆୟୋଧନ ।
ଇନ୍ଦ୍ର ଆସି ତୁମ୍ଭଙ୍କୁ କଲେ ହେଲେ ରକ୍ଷା
ପକାଇବୁଁ ମାରିଟି କରି ଆମ୍ଭେ କକ୍ଷା ।
ଏହା ଶୁଣିଣ ସୁଯୋଧନ କ୍ରୋଧ ହୋଇ
ବାହାରିଲେ ଜଳଭିତରୁ ନରସାଇଁ ।
ଯମ କାଳଦଣ୍ଡ ସରିଏ ଗଦାବର
କନ୍ଧଦେଶେ ଶୋଭା ପାଉଛି ତାହାଙ୍କର ।
ଦେଖିଲେ ସବୁ ପ୍ରାଣୀମାନଙ୍କୁ ଏମନ୍ତ
ଶୂଳ ଧରି ହର କି ହେଲେ ଉପଗତ ।
ପାଣ୍ଡବ ପାଞ୍ଚାଳେ ତା ଦେଖି ସୁଖୀ ହୋଇ
ବୋଇଲେ ଆଚ୍ଛା ଛନ୍ତି ସୁଯୋଧନ ଭାଇ ।
ଯୁଦ୍ଧ କରିବାକୁ ଯା ଛାଡ଼ି ମନୁଁ ଦକା
ଆସିଲେ ଏକା ଜାଣୁଛୁଁ ଏ ରଣରଙ୍କା ।
ପାଣ୍ଡବଙ୍କ ହସିବା ସୁଯୋଧନ ଜାଣି
କହିଲେ ବଳ କରି ଆହେ ନରମଣି ।
ଏ ବାହାରେ ବୋଇଲେ ହସିବାର ଫଳ
ଭୋଗିବ ଆଜ ପାଇ ମୋହର ବାହୁବଳ ।

ଦୁର୍ଯ୍ୟୋଧନ ଅଙ୍ଗ ରକତ ସଙ୍ଗ ପାଇ
ଥିଲା, ସେ ଗେରୁ ଗିରି ପ୍ରଭା ଦେଲା ଦେଖାଇ ।
ପାଣ୍ଡବେ ତା ଦେଖି ବୋଇଲେ ନିଶ୍ଚେ ଯମ
ଆସୁଅଛନ୍ତି କରିବାକୁ କି ସଂଗ୍ରାମ ।
ସେହିକାଳରେ ସୁଯୋଧନ ରଡ଼ି କରି
ପାଣ୍ଡବେ ଡାକିଲେ ଯୁଝିବା ଇଚ୍ଛା ଧରି ।
ଏ ବାହାରେ ବୋଇଲେ ଗୋଟିଏ ଗୋଟିଏ
ଆସି ଯୁଦ୍ଧ କର ମୁଁ ରହିଛି ନିର୍ଭୟେ ।
ଜଣେକୁ ଦଶଜଣ କରିବେ ସମର
ଧର୍ମ ନ ନୁହଇ ଏ କଥା କ୍ଷତ୍ରିୟର ।
କବଚ ବାହନ ତ ମୋହର ଯାଇଛି
ଏଥିକି ରହିଁ ଯୁଦ୍ଧ କର ମୁଁ ବୋଲୁଛି ।
ଯୁଧିଷ୍ଠିର ବୋଇଲେ ଶୁଣ ସୁଯୋଧନ
କ୍ଷତ୍ରିୟଧର୍ମ କଥା ତୁମ୍ଭେ ଏକା ଜାଣ ।
ଏକା ଅଭିମନ୍ୟୁକୁ ଛଅ ମହାରଥୀ
ବେଢ଼ି କରି ମାଇଲ କରିଣ ବିରଥୀ ।
ବିପତ୍ତି ଯୋଗରୁ ଭାବୁଛ ଏବେ ଧର୍ମ
ତେତେବେଳେ ମାଇଲ କରି ପାପକର୍ମ ।
ତଉଦବରଷିଆ ପିଲାକୁ ମୋହର
ଲାଜ ଭୟ ମନରୁ କରିଦେଇ ଦୂର ।
କବଚ ଶିରସ୍ତ୍ରାଣ ରଥ ମୋହଠାରୁ
ନେଇନଯାଅ ହୃଦରେ ନୋହି କଳୁଷ ଭାରୁ ।
ସୁଯୋଧନ ତା ଶୁଣି ହୋଇ ମହାତୋଷ
କବଚ ଶିରସ୍ତ୍ରାଣ ବନ୍ଧି ଅଙ୍ଗଦେଶ ।
ସୁବର୍ଣ୍ଣଗିରି ପରି ପ୍ରକାଶିଣ ପ୍ରଭା
ହୋଇଲେ ସୁଯୋଧନ ଯୁଦ୍ଧଦାଣ୍ଡେ ଉଭା ।
ବୋଇଲେ ଆହେ ଯୁଧିଷ୍ଠିର ନରସାଇଁ
ଜଣେ ଆସ ମୋ ସଙ୍ଗେ ଯୁଝିବାର ପାଇଁ ।
ତୁମ୍ଭ ପାଞ୍ଚ ଭାଇରୁ ଯାର ହେବ ମନ
ତାହା ସଙ୍ଗେ ମୁହିଁ କରିବି ଆୟୋଧନ ।
ଗଦାଯୁଦ୍ଧ ମୋପରି ଅଟେ ଏକା ମୁହିଁ
ଆଜ ତ ସାକ୍ଷାତେ ଯୁଝିବ ପାଞ୍ଚଭାଇ ।
ହରି ବିନା ମୋ ସଙ୍ଗେ ଗଦାରେ ସମର
ଆନ ଲୋକ କରିଲେ ଯିବ ଯମପୁର ।
ଏହା ଶୁଣିଣ କୃଷ୍ଣ ଯୁଧିଷ୍ଠିର ଆଗେ
କହିଲେ ହେ ରାଜନ ହସି ମହାରାଗେ ।

ସୁଯୋଧନ ରାଜନ ଡାକଲେ ତୁମ୍ଭଙ୍କୁ ।
ତୁମ୍ଭେ ପାରିବଟି କି ଯୁଦ୍ଧରେ ତାହାଙ୍କୁ ।
ନକୁଳ ସହଦେବ ଅଟନ୍ତି ତ ସାନ
କ୍ଷଣେକେ ଘେନିପାରେ ମେ ତାଙ୍କ ଜୀବନ ।
ପୁଣି ତୁମ୍ଭେ ବୋଲୁଛ ଆମ୍ଭ ପାଞ୍ଚଭାଇ—
ମଧ୍ୟରୁ ଜଣେ ମାରି ହୁଅ ନରସାଇଁ ।
ସୁଯୋଧନ ସେ ଲୁହାଭୀମଟାଏ କରି
ତ୍ରୟୋଦଶ ବର୍ଷ ସାଧିଲା ଗଦା ଧରି ।
ଭୀମଙ୍କ ବିନା ଆଉ ନ ଦେଖେଁ କାହାକୁ
ଗଦା ଯୁଦ୍ଧରେ ପ୍ରତିଯୋଦ୍ଧା ହୋଇବାକୁ ।
ଜୁଆରେ ଶିରୀ ହରାଇଲ ପରି ତୁମ୍ଭେ
ହରାଇବ ପ୍ରାଣଟି ବୋଲୁଅଛୁଁ ଆମ୍ଭେ ।
ସୁଯୋଧନ ସେ ଗଦାବିଦ୍ୟାରେ କୁଶଳ
ଭୀମଙ୍କର ଅଟେ ଅଧିକ ଦେହବଳ ।
ତୁମ୍ଭ ପାଞ୍ଚଭାଇ ନ୍ୟାୟ ଯୁଦ୍ଧ କରିଲେ
ସୁଯୋଧନରାଜାଙ୍କୁ ହାରିବଟି ଭଲେ ।
ତାହାଙ୍କୁ ଏକା ହୋଇ ଡାକବାରୁ ରାଜା
ଜାଣୁଛୁ ସମରେ ପାଇବ ତୁମ୍ଭେ ପୂଜା ।
ଆମ୍ଭ ପାଞ୍ଚଭାଇରୁ ଜଣେ ମାରିକରି
ଯାହା ବୋଲୁଛ ତାଙ୍କୁ ହୁଅ ଦଣ୍ଡଧାରୀ ।
ଏଥିରୁ ଜାଣୁଛୁଁ କୁନ୍ତୀଙ୍କ ଗର୍ଭଜାତ
ପୁତ୍ରଙ୍କୁ ନ ରୁଚଇ ପର ରାଜବିତ୍ତ ।
ବନରେ ରହି ଭିକ ମାଗି ଜୀଇବାର
ବୃତ୍ତି କରି ଦେଇଛୁ ସ୍ୱାଙ୍କୁ କୁଣଧର !
ଭୀମ ବୋଇଲେ ହେ ଶ୍ରୀକୃଷ୍ଣ କାହିଁପାଇଁ ।
କହୁଅଛ କଥା ବିଷଣ୍ଣମତି ହୋଇ ।
ଆଜ ସୁଯୋଧନକୁ ମାରି ମୁଁ ବଇର—
ସାଗର ପାର ହେବି କୃଷ୍ଣ ମନେ କର ।
ଯୁଧିଷ୍ଠିରଙ୍କର ବିଜୟ ଚିହ୍ନମାନ
ଦେଖିଅଛି ତ ଅହର୍ନିଶି ମୋ ନୟନ ।
ମୋର ଏ ଗଦାବର ପାରେ ମେରୁ ଚୂରି
ସୁଯୋଧନ ଏହାକୁ ସହିବ କି କରି ।
ତୁମ୍ଭେମାନେ ସମସ୍ତେ ଯୁଦ୍ଧ ଦେଖୁଥାଅ
ମାରୁଛି ମୁଁ ଗଦାରେ ଧୃତରାଷ୍ଟ୍ର ପୁଅ ।
ଇନ୍ଦ୍ରାଦି ଦେବତାଙ୍କୁ ପାରେ ଯୁଦ୍ଧେ ମାରି
ସୁଯୋଧନ ଛାରକୁ ଡରିବି କି କରି ।

ଏରୂପେ କହି ଭୀମ ଫୁଲାଇ ଦେହକି
କାମୁଡ଼ିଲେ କ୍ରୋଧରେ ହୋଇ ଓଷ୍ଠପାଟି ।
ମଲ୍ଲ ରେ ସୁଯୋଧନ ବୋଲି କରି ଡକା
ଡେଇଁଲେ ଭୀମ ତଗ ମାରି ଛାଡ଼ି ଦକା ।
ସିଂହନାଦ କରିଣ ଯୋଦ୍ଧାଙ୍କ ପ୍ରମୋଦ
ବଢ଼ାଇ ବାହୁକୁ ଠୁକିଲେ ବହି ମୋଦ ।
ଶ୍ରୀକୃଷ୍ଣ ବୋଇଲେ ହେ ଭୀମ, ସୁଯୋଧନ—
ବଳ ତୁମ୍ଭ ବଳରୁ ଅଟେ ତ ନିଉନ ।
ମଣିଭଦ୍ରବୀରକୁ ରକ୍ଷୋଗଣ ତୁଲେ
ମାରି ପକାଇଲ ଯୁଦ୍ଧରେ କୁତୁହଳେ ।
ନାଗାୟୁତବଳ ସେ ହିଡ଼ିମ୍ବ ରାକ୍ଷସ
ତୁମ୍ଭ ସଙ୍ଗେ ଯୁଝି ପାଇଲା ଯମବାସ ।
ହିଡ଼ିମ୍ବକୁ ପ୍ରତି ଦ୍ୱିଗୁଣ ବକ ବଳୀ
ଯୁଦ୍ଧଦାଣ୍ଡେ ମାରି ତା ଦେହ ଦେଲ ଦଳି ।
କିର୍ମୀର ଚତୁର୍ଗୁଣ ଅଟେ ହିଡ଼ିମ୍ବକୁ
ସେ ମଧ୍ୟ ମଲା ପାଇ ତୁମ୍ଭ ବିକ୍ରମକୁ ।
ଦେବତାଙ୍କ ପରି ବିରାଟ ଜ୍ୟେଷ୍ଠଶଳା
ଥିଲା ତାକୁ ଯୁଦ୍ଧେ ମାଇଲ ଚପି ଗଳା ।
ଏ ବାହାରେ ତାହାର ଶଏଟି ଭାଇଙ୍କ
ବୃକ୍ଷରେ ପିଟି ଦେଲ ପ୍ରେତଙ୍କ ପତିକେ ।
ଏହି ସକାଶରୁଟି ଜାଣୁଅଛୁଁ ଆମ୍ଭେ
ସୁଯୋଧନକୁ ମାରିଦେବ ଯୁଦ୍ଧେ ତୁମ୍ଭେ ।
ଯୁଧିଷ୍ଠିର ବୋଇଲେ ତୁମ୍ଭର କୃପାରୁ
ମାରିବେ ସୁଯୋଧନ ଭୀମ ହଳକାରୁ ।
ଭୀମଙ୍କର ବିପ୍ରିୟ କରି ଏ ମହୀରେ
ଜୀଇବାକୁ ହରଇ ନାହିଁ କେ ନେତ୍ରରେ ।
ସାତ୍ୟକି ହୋଇଲେ ଗଦାରେ ଭୀମ ପରି
ବୀର ନାହିଁ ଜାଣ ହେ ରୁକ୍ମିଣୀ-ବିହାରୀ ।
ଭୀମ ଗଦା ଲାଗିଲେ କ୍ଷଣେ ଗିରିବର—
ମାନେ ଚୂର୍ଣ୍ଣ ହେବେ ଜାଣ ହେ ଚକ୍ରଧର ।
ଗଜେ ଗଜକୁ ରଥେ ରଥକୁ କଚାଡ଼ି
ମାଇଲେ କୁରୁସେନାଯାକକୁ ଧଉଡ଼ି ।
ନକୁଳ ସହଦେବ ସୋମକ ଅର୍ଜୁନ
ଧୃତରାଷ୍ଟ୍ର ସହିତ ସଭାସଦଜନ—
ମାନେ ଭୀମସେନଙ୍କୁ ବହୁତ ପ୍ରଶଂସି
କଥାବାର୍ତ୍ତା ହୋଇଲେ ହୋଇ ଅତି ତୋଷି ।

ପର୍ବସନ୍ଧି ପରାଏ ବଢ଼ିଲେ ଗର୍ଜନ ।
ସମସ୍ତଙ୍କ ସୂକ୍ତି ବଚନେ ଭୀମସେନ ।
ପୁଣି ଯୁଧିଷ୍ଠିରଙ୍କୁ ଭୀମ ମହାମନା
କରଯୋଡ଼ି କହିଲେ ଶୁଣ ଆହେ ନନା ।
ଆଜ ସୁଯୋଧନର ଦୁଇ ଜାନୁ ଭାଙ୍ଗି
ଦ୍ରୌପଦୀ ପ୍ରିୟା ସଙ୍ଗେ କରି ପ୍ରେମ ସଙ୍ଗୀ ।
ତେରବରଷକି ଦୁଃଖରେ ଅଶ୍ରୁଧାର
ମୁଞ୍ଚିବାର ଆଜ ଛାଡ଼ିବ ନେତ୍ର ମୋର ।
ଧୃତରାଷ୍ଟ୍ର ଆଜ ଶୁଣିଲା ପୁତ୍ର କଷ୍ଟ
କାନ୍ଦିବେ ମୋ କରମ ହେଲା ବୋଲି ଭ୍ରଷ୍ଟ ।
ଏତେ ବୋଲିଣ ଗଦା କରପୃଷ୍ଠେ ବହି
ସୁଯୋଧନଙ୍କୁ ସେ ଡାକିଲେ ଦରସାଇଁ ।
ତୁମ୍ଭର ପୁଅ ତାହା ସହି ନ ପାରିଲେ
ସେହି ମଧ୍ୟ ଆସ ଯୁଝିବାକି ବୋଇଲେ ।
ସୁଯୋଧନ ହାତରେ ଗଦାବର ଦେଖି
ଉସ୍ତାକ୍ରୁ ଲୋକପାଳ ବୁଜିଦେଲେ ଆଖି ।
ସଶୃଙ୍ଗ କଇଳାସ ପ୍ରାୟେ ସୁଯୋଧନ
ପ୍ରଶ୍ନରେ ମଣ୍ଡିଦେଲେ ସବୁରି ନୟନ ।
ସିଂହ ପରି ତୁମ୍ଭର ପୁଅ ଯୁଦ୍ଧକାଣ୍ଡେ
ଗଦା ଧରି ରହିଲେ କ୍ରୋଧବହ୍ନି ପିଣ୍ଡେ ।
ଭୀମ ସେହିକାଳେ ବୋଇଲେ ସୁଯୋଧନ
ଆଜ ଦେଲେ ମୋହର ହସ୍ତରେ ଜୀବନ ।
ତୁମ୍ଭର ମରିବାର ଧୃତରାଷ୍ଟ୍ର ଶୁଣି
ପାଡ଼ିବେ ତତା ନୟନରୁ ମୁଞ୍ଚ ପାଣି ।
ଶକୁନି ବଳେ ଜୁଟେ ଜିଣିଲା ପରାୟେ
ଆଜ ଜିଣିଲେଟି ହୋଇବ ସାରପ୍ରାୟେ ।
ଦ୍ରୌପଦୀଙ୍କି ସଭାରେ କଲ ତ ଲଙ୍ଗଳା
ସେ କଥା ଫାଶ ହୋଇ ଲାଗିଛି ମୋ ଗଳା ।
ତାହାକୁ ଫିଟାଇବ ତୁମ୍ଭଙ୍କୁ ସଂହାରି
ହେବ ମୁଁ ଦ୍ରୁପଦ ନନ୍ଦନୀ-ପ୍ରିୟକାରୀ ।
ତେର ବରଷରେ ପାଇଛୁଁ ଯେତେ ଦୁଃଖ
ସେ ଦୁଃଖ ଆମ୍ଭଠାରୁ ଛାଡ଼ିବଟି ଦେଖ ।
ତୁମ୍ଭର ପାଇଁ ଭୀଷ୍ମ ଦ୍ରୋଣ ପରି ଲୋକ
ଯୁଦ୍ଧ କରି ଯାଇ ଦେଖିଲେ ପରଲୋକ ।
କର୍ଣ୍ଣ ସଜବଳ ତୁଲରେ ତୁମ୍ଭେ ଭାଇ—
ମାନଙ୍କୁ ତ ଯୁଦ୍ଧରେ ଦେଲୁଣି ବଢ଼ାଇ ।
ଏକା ସିନା ତୁମ୍ଭେ ରହିଛ ଆମ୍ଭ ତାପ
ବଢ଼ାଇବାପାଇଁ, ହେବ ତ ଏବେ ଲୋପ ।
ସୁଯୋଧନ ବୋଇଲେ ମରିବାକୁ ମୁହିଁ
ଆହେ ଭୀମବୀର କାହୁହିଁ ଡରେ ନାହିଁ ।
ଧର୍ମ-ଯୁଦ୍ଧରେ ଦେବରାଜ ପୁରନ୍ଦର ।
ମୋ ଆଗରେ ହୋଇବେ ଭୟେ ଥରଥର ।
ଧର୍ମେ ତ ଜିଣି ନ ପାରିବ ମୋତେ ତୁମ୍ଭେ
ଅଧର୍ମରେ ଜିଣିବ ଜାଣୁଅଛୁଁ ଆମ୍ଭେ ।
ଶରଦକାଳ ମେଘ ପରାୟେ ଗରଜ
ନ ଫଟାଅ ତଣ୍ଡିକ ଭୀମ କ୍ରୋଧେ ମଜ ।
ବଳ ଥିଲେ ତା ଯୁଦ୍ଧଦାଣ୍ଡରେ ଦେଖାଅ
ବୋଲାଉଛ ତୁମ୍ଭେ ତ କୁରୁକୁଳପୁଅ ।
ସୁଯୋଧନଙ୍କର ଏ ବଚନକୁ ଶୁଣି
ଆଛା ହେଲା ବୋଲି ବୋଇଲେ ଶତ୍ରୁଶ୍ରେଣୀ ।
ପାଣ୍ଡବସୈନ୍ୟଗଣେ ପୁଣି ବାହାସ୍ଫୋଟ
କଲେ ଆନନ୍ଦରେ ଦେହକୁ କରି ମୋଟ ।
ଯୁଧିଷ୍ଠିରରାଜାଙ୍କ ଜୟ ହେବା ଜାଣି
ଗରଜନ କରିଲେ ହସ୍ତି ଘୋଡ଼ାଶ୍ରେଣୀ ।

—o—

## ବଳଦେବଙ୍କ ଆବିର୍ଭାବ

ଏହି ସମୟରେ ସେ ଧଳାରୁପଧାରୀ
ସେଠାରେ ଉପସ୍ଥିତ ହେଲେ ଦଣ୍ଡଧାରୀ ।
ପାଣ୍ଡବମାନେ ଦେଖି ନୟନେ ରାମଙ୍କୁ
ନମିଲେ ସଙ୍ଗତରେ ଘେନିଣ କୃଷ୍ଣଙ୍କୁ ।
ବୋଇଲେ ଆମ୍ଭ ଭାଗ୍ୟବଶୁଁ ବଳଦେବ
ଏଠାକୁ ବିଜେ କଲେ ହୃଦେ ବହି ଭାବ ।
ଭୀମ ସୁଯୋଧନ ଯେ ଗଦା ଧରି କରେ
ଯୁଝୁଅଛନ୍ତି ଦେଖ ବସି ତା ନେତ୍ରରେ ।
ବଳଦେବ ବୋଇଲେ ଏ ଦୁଇଙ୍କ ଯୁଦ୍ଧ
ଦେଖିବାକୁ ମୋହର ବଳୁଅଛି ସାଧ ।
ବହୁକାଳର ଦିନ ତ ତୀର୍ଥେ ଯାଇଥିଲି
ଏ ଦୁହିଁଙ୍କର ଯୁଦ୍ଧ ଦେଖି ମୁଁ ଆସିଲି ।
ଦୁହେଁ ତ ପ୍ରିୟଶିଷ୍ୟ ଅଟନ୍ତି ମୋହର
ଦେଖିବା କେ ପାଣ୍ଡବ କରନ୍ତୁ ସମର ।
ଭୀମ ସୁଯୋଧନ ରାମଙ୍କୁ ନେତ୍ରେ ଦେଖି
ଯୁଦ୍ଧ ଛାଡ଼ି ନମିଲେ ହୋଇ ଅତି ସୁଖୀ ।

ଏ ଅନ୍ତେ ଯୁଧିଷ୍ଠିର ପୋଛାଳ ରାମଙ୍କୁ
ପଚାରିଲେ ତାଙ୍କର କୁଶଳ କଥାକୁ ।
ରାମ ଯୁଧିଷ୍ଠିରଙ୍କୁ ସେ ରୂପେ କୁଶଳ
ପଚାରିଲେ ହୃଦରୁ ଛାଡ଼ିଣ ଆବଳ ।
ପାଣ୍ଡବଙ୍କ ସଙ୍ଗତେ ଯେତେ ରାଜାଥିଲେ
ରାମଙ୍କ ପାଦେ ନମି କୁଶଳ ପୁଛିଲେ ।
ରାମ ସେ ନୃପତିଙ୍କ କୁଶଳ ପଚାରି
ବସ ବୋଲି ଦୁଇପଟକୁ ଦେଲେ ଠାରି ।
କୃଷ୍ଣ ସାତ୍ୟକଙ୍କି ପ୍ରେମରେ ଆଲିଙ୍ଗନ
କରି ସୁଖ ଭଜିଲେ ରୋହିଣୀ-ନନ୍ଦନ ।
ନୃପତି-ନକ୍ଷତ୍ରରେ ଚନ୍ଦ୍ରମା ପରାଯେ
ଦିଶିଲେ ବଳଦେବ ଶୋଭାରେ ହେ ରାଯେ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହ ହେ ରାମ ତୀର୍ଥଯାତ୍ରାର ବିଧାନ ।
ରାମ ତ ଯୁଦ୍ଧ ନ ଦେଖିବ ବୋଲିଥିଲେ
କାହିଁପାଇଁ ବା ଯୁଦ୍ଧ ଦେଖି ସେ ଆସିଲେ ।
ଏଥିର କାରଣ ତ ଜାଣେ ନାହିଁ ମୁହିଁ
ତୁମ୍ଭଠାରୁ ଶୁଣିବ କହିଲେ ବତାଇ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
କହିବା ତାହା ଶୁଣ ଦେଇ ମନ ଲୟ ।
କୃଷ୍ଣ ଦୂତ ହୋଇଣ ଯେଉଁ ରୂପେ ଗଲେ
ପୂର୍ବରୁ ତ ତାହାକୁ କହିଥାଇଁ ଭଲେ ।
ପାଣ୍ଡବେ କୃଷ୍ଣଠାରୁ ଶୁଣିଣ ବଚନ
ଯେତେବେଳେ ରାଜନ ଯୁଦ୍ଧେ କଲେ ମନ ।
ତେତେବେଳେ ରାମ କହିଲେ ଶ୍ରୀକୃଷ୍ଣଙ୍କୁ
ଆମ୍ଭେ ରହି ସହାୟ ହୋଇବା କୁରୁଙ୍କୁ ।
ସୁଯୋଧନ ତୁମ୍ଭର ସମ୍ବନ୍ଧୀ ଅଟଇ
ତାକୁ ଛାଡ଼ି ଏହାଙ୍କୁ ଯେନ ନ ଯୋଗାଇ ।
ଶ୍ରୀକୃଷ୍ଣ ବୋଇଲେ ହେ କି କହୁଛ ରାମ
ପାଣ୍ଡବେ ତ ମୋହର ପ୍ରାଣରୁ ଉତ୍ତମ ।
ପାଣ୍ଡବଙ୍କ ପାଇଁ ଜୀଇଛି ଜାଣ ମୁହିଁ
ପାଣ୍ଡବଙ୍କ ବିନା ମୁଁ କିଛି ନ ଜାଣଇଁ ।
ପାଣ୍ଡବଙ୍କ ଶତ୍ରୁ ହେବାରୁ ସୁଯୋଧନ—
ରାଜାରେ ଯୁଦ୍ଧେ ଯେନାଇବ ମୁଁ ଜୀବନ ।
ତାହା ଶୁଣିଣ ରାମ ମହାକ୍ରୋଧ ହୋଇ
ସରସ୍ଵତୀ ତୀର୍ଥକୁ ଗଲେ ସ୍ନାନପାଇଁ ।
ତୀର୍ଥଯାତ୍ରା ସାମଗ୍ରୀମାନ ଧରାଇଲେ
ଧନ ରତନ ଗଜ ଘୋଡ଼ା ଗାଈ ନେଲେ ।
ବ୍ରାହ୍ମଣମାନଙ୍କୁ ହେ ଦେବାକୁ ରାଜନ
ମୋ କହିବାରୁ ଏହା ଭଲକରି ଜାଣ ।
ସରସ୍ଵତୀନଦୀରେ ଆଗ ସ୍ନାନ ସାରି
ଦେଲେ ଧନ ରତ୍ନ ଦ୍ଵିଜଙ୍କୁ ଡାକ କରି ।
ଯେଉଁ ଲୋକ ଯାହାଟି କରୁଥିଲା ଇଚ୍ଛା
ତା ଦେଉଥିଲେ ତାଙ୍କୁ ରୋହିଣୀଙ୍କ ବତ୍ସା ।
ରାମଙ୍କ ପ୍ରତାପରେ ଭକ୍ଷ୍ୟ ଭୋଜ୍ୟ ପେୟ
ଖାଇ ସନ୍ତୋଷ କଲେ ପ୍ରାଣୀଏ ହୃଦୟ ।
ଯେଉଁ ଲୋକ ବାଟରେ ଚାଲି ନ ପାରଇ
ନିଅନ୍ତି ରାମ ତାକୁ ଯାନରେ ବସାଇ ।
ବହୁ ପୁଣ୍ୟତୀର୍ଥମାନଙ୍କେ ରହି ରାମ
କଲେ ଦ୍ଵିଜମାନଙ୍କୁ ଧନେ ପୂର୍ଣ୍ଣକାମ ।
ଏହା ବାହାରେ ଗାଈ ଘୋଡ଼ା ହାତୀ ଦେଲେ
ରତ୍ନେ ମଣ୍ଡି ଦାସୀମାନଙ୍କୁ ସମର୍ପିଲେ ।
ଲୁହା ତମ୍ବା ସୁନା ରୁପାର ପାତ୍ରମାନ.
ନିଅ ବୋଲି ଡାକିଣ ଦେଲେ ଦ୍ଵିଜଜନ ।
କ୍ରମେ କୁରୁକ୍ଷେତ୍ରତୀର୍ଥକୁ ହଳାୟୁଧ
ଆସିଲେ ଦେଖିବାକୁ ବନ୍ଧୁ ଅନ୍ତ ସାଧ ।

—୦—

## ବଳଦେବଙ୍କର ତୀର୍ଥଭ୍ରମଣ

ଜନ୍ମେଜୟ ବୋଇଲେ ସରସ୍ଵତୀ ପାଖ
ଲାଗି ରହିଥିଲେ ବହୁତ ତୀର୍ଥମୁଖ୍ୟ ।
ସେ ତୀର୍ଥମାନଙ୍କର ଜନମ ମହିମା
ପ୍ରକାଶ ମୋ ଆଗେ କରି ମହାତମା ।
ବଇଶମ୍ପାୟନ ବୋଇଲେ ହେ ନରପତି
କହିବା ଶୁଣ ଏବେ ତୀର୍ଥଙ୍କ ଉତ୍ପତ୍ତି ।
ପ୍ରଭାସତୀର୍ଥଙ୍କରେ ପ୍ରବେଶିଲେ ରାମ
ଶୁଣ ଆଗ କହିବା ତାଙ୍କ ମହାତ୍ମ୍ୟ ।
ପ୍ରଭାସତୀର୍ଥଙ୍କର ଚନ୍ଦ୍ର ସ୍ନାନ କରି
ଯକ୍ଷ୍ମାରୁ ମୁକ୍ତ ହୋଇଲେଟି ଦଣ୍ଡଧାରୀ ।
ଏହି ସକାଶରୁ ପ୍ରଭାସ ତୀର୍ଥବର
ତୀର୍ଥଙ୍କରେ ଅଟେ ହେ ଜାଣ ନୃପବର ।
ଜନ୍ମେଜୟ ବୋଇଲେ ଯକ୍ଷ୍ମାରୋଗଗ୍ରସ୍ତ
କାହିଁକି ହେଲେ ଇନ୍ଦ୍ର ଔଷଧିଙ୍କ କାନ୍ତ ।

କି ରୂପେ ପ୍ରଭାସତୀର୍ଥକୁ ସ୍ନାନ କରି
ଗଲେ ମୋତେ କହ ହେ ନକ୍ଷତ୍ର-ବିହାରି ।
ଏକଥାମାନ ଯେ ଆଗରେ ତପୋଧନ
କହିଲେ ଯିନା ମୁହିଁ ହେବ ତୋଷମନ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଦକ୍ଷଙ୍କର ହୋଇଲେ ପାଞ୍ଚ ଶତ ଝିଅ ।
ସତାଇଶ ଦକ୍ଷ-ସନ୍ତତିରେ ଚନ୍ଦ୍ରଙ୍କୁ
ବିଭା ହେଲେ ବିଧି ହୃଦରେ ସବିଟଙ୍କୁ ।
କାଳକ୍ରମ ଜଣା ଯିବାକୁ ନକ୍ଷତ୍ର
ହୋଇଣ ଆକାଶରେ ହେଲେ ସେ ଉଦିତ ।
ସେ ସପତବିଂଶତି କନ୍ୟାରେ ରୋହିଣୀ
ହୋଇଲେ ଚନ୍ଦ୍ରଙ୍କର ହୃଦୟ-ହାରିଣୀ
ରୋହିଣୀ ବିନା ଚନ୍ଦ୍ର ଆନ ଭାରିଯାଙ୍କୁ
ନ ଚାହିଁଲେ କେବେହେଁ କରିବେ ବିହାରକୁ ।
ଏହି ସକାଶୁଁ ସେ ସ୍ତ୍ରୀଏ ମେଳ ହୋଇ
ଦକ୍ଷପ୍ରଜାପତିଙ୍କୁ ଗୁହାରିଲେ ଯାଇ ।
ରୋହିଣୀ ବିନା ଚନ୍ଦ୍ର ଆନେ ନ ଚାହିଁଲେ
କି କରିବୁଁ ପିତା କହ ତ ଏବେ ଭଲେ ।
ତପ କରି ପଛକେ ପାରିବୁଁ ଏ ଦିନ
ବ୍ୟର୍ଥ ତ ହୋଇଲାଣି ଆମ୍ଭ ଯଉବନ ।
ଦକ୍ଷପ୍ରଜାପତି ଝିଅଙ୍କ ବାଣୀ ଶୁଣି
କହିଲେ ଡାକିକରି ଚନ୍ଦ୍ରଙ୍କୁ ସେକ୍ଷଣି
ସବୁ ଭାରିଯାଙ୍କର ଠାରେ ସମବୁଦ୍ଧି
କରି ପ୍ରବର୍ତ୍ତ ହେ କହୁଛି କଳାନିଧି ।
ଝିଅଙ୍କୁ ବୋଇଲେ ଗୋ ଯାଅ ତୁମ୍ଭେମାନେ
ଆଜଠାରୁ ଚନ୍ଦ୍ର ସେ ମୋହର ବଚନେ ।
ରୋହିଣୀ ପରି ତୁମ୍ଭଠାରେ ବୁଦ୍ଧି ଧରି
ବିହରିବେ ଚିନ୍ତାକୁ ଦିଅ ଦୂରକରି ।
ସେ ଛବିଶି କନ୍ୟା ତା ଶୁଣି ଲଭି ତୋଷ
ସେ ଯାହାର ଘରେ ହୋଇଲେ ପରବେଶ ।
ଚନ୍ଦ୍ର ଦକ୍ଷପ୍ରଜାପତିଙ୍କ ବଚନକୁ
ନ ଘେନି ନ ଛାଡ଼ିଲେ ରୋହିଣୀ-ପାଖକୁ ।
ଏହା ଦେଖିଣ ଦକ୍ଷଝିଅ ଦୁଃଖୀ ହୋଇ
ପୁଣି ପିତାର ଆଗେ କହିଲେ ସେ ଯାଇ ।
ଚନ୍ଦ୍ର କେବେ ତୁମ୍ଭର ବଚନ ନ କଲେ
ପୂର୍ବପରି ରୋହିଣୀ ସଙ୍ଗେ ପ୍ରବର୍ତ୍ତିଲେ ।
ତୁମ୍ଭ ଘରେ ଥାଇଁ ତୁମ୍ଭର ସେବା ଆମ୍ଭେ
କରିବୁଁ ସନମତ କର ପିତା ତୁମ୍ଭେ ।
ଦକ୍ଷପ୍ରଜାପତି ସେ ପୂରୁବ ପରସ୍ତେ
କହିଲେ ଡାକି ତାଙ୍କୁ ଅମୃତ ଯା କାୟେ ।
ଚନ୍ଦ୍ର ତ ରୋହିଣୀଙ୍କ ଚାରୁମୁଖ ଦେଖି
ଅହର୍ନିଶି ଘେନିଣ ବୁଜଥାନ୍ତି ଆଖି ।
ଏହି ସକାଶରୁ ହିଁ ମଦନ ଆସୃତ
ହୋଇ ସେ ଘେନି ନ ପାରିଲେ କଥା ହିତ ।
ଝିଅମାନେ ତାହା ଯେ ସହି ନ ପାରିଲେ
ରଖ ହେ ପିତା ବୋଲି ପାଦରେ ପଡ଼ିଲେ ।
ଦକ୍ଷପ୍ରଜାପତି ଝିଅଙ୍କ ଦୁଃଖ ଦେଖି
କ୍ରୋଧରେ ରଙ୍ଗ କରିଦେଲେ ବେନି ଆଖି ।
ଯକ୍ଷ୍ମାରୋଗଟିକ କରିଲେ ସେ ରଚନା
ନାଶିବାକୁ ଚନ୍ଦ୍ରଙ୍କ ସରାଗ କାମନା ।
ଯକ୍ଷ୍ମାରୋଗ ଯେ ଚନ୍ଦ୍ରଦେବତାଙ୍କୁ ଘୋଟି
ଦିହନ୍ତେ କ୍ଷୀଣ ହେଲା ତାଙ୍କ ଶରୀରଟି ।
ଯକ୍ଷ୍ମା ନାଶ ପାଇଁ ଔଷଧ ଯାଗ ତପ
କଲେ ହେଲେ ରୋଗେ ସେ ନୋହିଲାଟି ଲୋପ
ଚନ୍ଦ୍ରଙ୍କର କ୍ଷୀଣଦଶାରୁ ଔଷଧି--
କୁଳଙ୍କର ହୋଇଲା ନୀରସତା ବୃଦ୍ଧି ।
ଔଷଧିଏ ମ୍ଳାନ ହେବାରୁ ପ୍ରାଣୀଙ୍କର
ପରାଣ ସଂଶୟ ହୋଇଲା ନରବର ।
ଦେବତାଏ ତା ଜାଣି ଚନ୍ଦ୍ର ପାଶେ ଯାଇ
ପୁଚ୍ଛିଲେ ଦେହ କ୍ଷୀଣ ହୋଇଲା କିପାଇଁ ।
ଏହା ଶୁଣିଣ ଚନ୍ଦ୍ର ଶାପର କାରଣ
ଯକ୍ଷ୍ମାରୋଗ ହେବାର କଲେଟି ବଖାଣ ।
ଦେବେ ତାହା ଶୁଣି ଦକ୍ଷଙ୍କ ପାଶେ ଗଲେ
ଚନ୍ଦ୍ରଙ୍କୁ ଦେବା ଶାପ ନିବାର ବୋଇଲେ ।
ଚନ୍ଦ୍ର କ୍ଷୀଣ ହେବାରୁ ପ୍ରଜାଙ୍କର କ୍ଷୟ
ନିକଟରେ ଘଟିବ, ହେବ ସମଭୟ ।
ଔଷଧିମାନଙ୍କୁ ପ୍ରଭୁ ତ କଳାକର
ସେ କ୍ଷୀଣ ହେଲେ ହେବ କ୍ଷୟ ଔଷଧିର ।
ଔଷଧି ହେଲେ ନାଶ ହେବ ଅନ୍ନ ନାଶ
ଏଥିକି ସେ ଉଚିତ ତା ମୁଖେ ପ୍ରକାଶ ।
ଦକ୍ଷ ବୋଇଲେ ମୁହିଁ ବୋଲିଅଛି ଯାହା
ତିନିଲୋକେ ଅନ୍ୟଥା କରିବ କେ ତାହା ।

ମୋର ତ ଶକତି ଅନ୍ୟଥା କରିବାକୁ
ପାଉ ନାହିଁ କିସ ବା କହିବି ତୁମ୍ଭଙ୍କୁ ।
ତାଙ୍କୁ ଏବେ କହି ମୋ ଝିଅମାନଙ୍କରେ
ସମାନ କରି ପ୍ରୀତି ବଢ଼ା ନିରନ୍ତରେ ।
ପ୍ରଭାସତୀର୍ଥଙ୍କରେ କରନ୍ତୁ ସେ ସ୍ନାନ
ତେବେ ହେବେ ଏ ଶାପଦଶାରୁ ମୋଚନ ।
ପନ୍ଦର ଦିନ କ୍ଷୟ ପନ୍ଦର ଦିନ ବୃଦ୍ଧି
ହୋଇବା କଥା ତାଙ୍କ ହୋଇବ ପ୍ରସିଦ୍ଧି ।
ଚନ୍ଦ୍ର ତାହା ଶୁଣିଣ ପ୍ରଭାସତୀର୍ଥକୁ
ବାହାରିଲେ ରାଜନ ସ୍ନାନ କରିବାକୁ ।
ଅମାବାସ୍ୟାଦିନ ପ୍ରଭାସତୀର୍ଥେ ସ୍ନାନ
କରି ଚନ୍ଦ୍ର ଶାପରୁ ମୁକ୍ତ ହେଲେ ଜାଣ ।
ଦେବେ ଚନ୍ଦ୍ରଦେବଙ୍କୁ ଆଗରେ ଚଳାଇ
ଦକ୍ଷଙ୍କର ସମୀପେ ମିଳିଲେ ସେ ଯାଇ ।
ଦକ୍ଷପରଜାପତି ଦେବଙ୍କୁ ମେଲାଣି
ଦେଇକରି ଚନ୍ଦ୍ରଙ୍କୁ କହିଲେ ଏ ବାଣୀ ।
ଆଜଠାରୁ ଜୁଆଇଁ ମୋ ଝିଅମାନଙ୍କୁ
କରିବଟି ସବଗ ନ କରି ରାଗକୁ ।
ଏବେ ତୁମ୍ଭେ ଘରକୁ ଯାଇ ସୁଖ ଲଭ
ମୋ ଝିଅମାନଙ୍କର ବଢ଼ାଇ ସୁଲଭ ।
ଚନ୍ଦ୍ର ଦକ୍ଷଙ୍କର କଥାକୁ ସହି କଲେ
ସମାନରେ ସବୁ ଭାର୍ଯ୍ୟାରେ ପ୍ରବର୍ତ୍ତିଲେ ।
ଆହେ ଜନ୍ମେଜୟ ପ୍ରଭାସତୀର୍ଥମୁଖ୍ୟ--
ମାହାତ୍ମ୍ୟ ଶୁଣିଲେ ମୋଠାରୁ ମନେ ରଖ ।
ସେହି ଦିନରୁ ପ୍ରତି ଅମାବାସ୍ୟା ଦିନ
ପ୍ରଭାସତୀର୍ଥେ ଚନ୍ଦ୍ର କରନ୍ତି ସ୍ନାନ ।
ଚନ୍ଦ୍ର ସେ ତୀର୍ଥ ସ୍ନାନ କରି ପ୍ରଭାବନ୍ତ
ହେବାରୁଟି ପ୍ରଭାସ ନାମ ତାଙ୍କ ଖ୍ୟାତ ।
କମସୋଦ୍ଭେଦତୀର୍ଥେ ରାମ ସ୍ନାନ କରି
ଦ୍ୱିଜଙ୍କ ମନ ଧନ ବସ୍ତ୍ର ଦେଲେ ହରି ।
ସେଠାରୁ ଉଦାପନତୀର୍ଥ ବାହାରିଲେ
ତହିଁରେ ସ୍ନାନ ଦାନ ବିଧିରେ ସେ କଲେ ।
ସେଥିରେ ସରସ୍ୱତୀ ନଦୀ ରହିଛନ୍ତି
ତରଳ ତା ଜାଣିଲେ ରାମ ମହାମତି ।
ସିଦ୍ଧମାନେ ମଧ୍ୟ ଜାଣିଅଛନ୍ତି ତାହା
ମୋ କହିବାରୁ ଏବେ ଜାଣ ନରନାହା ।

ଉଦପାନତୀର୍ଥରେ ରେବତୀବିହାରୀ
ରହିଲେ ଧର୍ମପରେ ହୋଇ ଦଣ୍ଡଧାରୀ ।
ତ୍ରିତଋଷି ପୂର୍ବରେ କୂପ ମଧ୍ୟେ ରହି
ସୋମ ପିଇଥିଲେ ତ ମହାସୁଖ ପାଇ ।
ଏକତ ଦ୍ୱିତ ଭାଇ ସହି ନ ପାରିଲେ
ତ୍ରିତଙ୍କୁ ଉଦପାନେ ପକାଇଟି ଗଲେ ।
ତ୍ରିତ ଉଦପାନେ ପଡ଼ିଣ କ୍ରୋଧ ହେଲେ
ଏକତ ଦ୍ୱିତ ଦି ଭାଇଙ୍କି ଶାପ ଦେଲେ ।
ଜନ୍ମେଜୟ ବୋଇଲେ ଏ କଥାକୁ ଋଷି
ବିସ୍ତାରି କରି କହ, ମୁଁ ତ ଅଛି ବସି ।
ବଇଶମ୍ପାୟନ ବୋଇଲେ ହେ ରାଜନ
ଯା ପୁଚ୍ଛୁଛ ତାହା କହିବା ଦିଅ ମନ ।
ଏକତ ଦ୍ୱିତ ତ୍ରିତ ସତ୍ୟରେ ଜନ୍ମିଲେ
ପ୍ରଜାପତି ସମ ଜଗତେ ବୋଲାଇଲେ ।
ତାହାଙ୍କର ପିତା ଯେ ଗଉତମଋଷି
ପୁଅଙ୍କ ତପ ଦେଖି ହେଲେ ଅତି ତୋଷି ।
କେତେ କାଳ ଅନ୍ତରେ ଋଷି ଗଉତମ
କଲେ ଦେହଅନ୍ତେ ଆଶ୍ରୟ ସ୍ୱର୍ଗଗ୍ରାମ ।
ଗଉତମଙ୍କ ଅନ୍ତେ ଗଉତମ ପୁତ୍ର
ତିନିଙ୍କି ପୂଜା କଲେ ସର୍ବ ମହୀକ୍ଷିତ ।
କନିଷ୍ଠପୁତ୍ର ତ୍ରିତ କର୍ମ କରିବାରେ
ଗଉତମ ପରାଏ ହୋଇଲେ ସଂସାରେ ।
ମୁନିମାନେ ତା ଦେଖି ମହାସୁଖୀ ହୋଇ
ତ୍ରିତଙ୍କର ପ୍ରଶଂସା କଲେ ମୁଖେ ଗାଇ ।
ଏକତ ଦ୍ୱିତ ଦିନେ ଯାଗ କରିବାକୁ
ଚିନ୍ତିଣ ବସି ନାନା ଦ୍ରବ୍ୟ ସଞ୍ଚୟକୁ ।
ଚିନ୍ତିଭ ସେ ତୁଣ୍ଡାଇଦେଲେ ଯଜମାନ
ଅଛନ୍ତି ତ ଆମ୍ଭର ବହୁତ ରାଜନ ।
ତ୍ରିତ ତ ଜାଣିବାର ଆମ୍ଭର ଅଟନ୍ତି
ତାଙ୍କୁ ଦେନ ଯିବା ସେ ନୃପଙ୍କର କତି ।
ତାହାଙ୍କଠାରୁ ପଶୁରତନ ଆଣିମା
ଯାଗ କରି ଜଗତେ ରହିବା ମହିମା ।
ଏରୂପେ ଦୁଇଭାଇ ତ୍ରିତଙ୍କୁ ଡାକିଲେ
ତାଙ୍କୁ କହି ସବୁ ସମ୍ମତ କରାଇଲେ ।
ନିଜ ଯଜମାନ ରାଜାଙ୍କ ପାଶେ ଯାଇ
ପଶୁଧନ ବହୁ ଆଣିଲେ ତୋଷ ବହି ।

ଯାଆନ୍ତେ ପୂର୍ବଯୁଗେ ଯାଗ ଇଚ୍ଛାକରି
ଘବଲେ ସେ ତିନଭାଇ ସନ୍ତୋଷ ଧରି ।
ତ୍ରିତ ଆଗେ ଏକତ ଦ୍ୱିତ ସଙ୍ଗ ପଛେ
ଥିଲେ ଗାଈଯାକ ମଧ୍ୟରେ ରଖି ସ୍ୱଚ୍ଛେ ।
ଏକତ ଦ୍ୱିତ ମନେ କଲେ ତ୍ରିତଙ୍କର
କରୁପେ ଏଥି ଭାଗ ନୋହିବ ବସ୍ତୁର ।
ତ୍ରିତ ତ ଏ ଗାଈଙ୍କି ଅରଜ ଆଣିଲେ
ଜନସ୍ତୁ ହୋଇ ଜ୍ୟେଷ୍ଠଭାଗ ନେବେ ଭଲେ ।
ଏ ବାହାରେ ବିଦ୍ୟାରେ ସେ ତ ପାରଙ୍ଗମ
ଯହିଁ ଯିବେ ତହିଁ ଅର୍ଜିବେ ପଶୁଗ୍ରାମ ।
ଏହିକାଳେ ଦିବସ ହେଲା ପ୍ରାୟ ଶେଷ
ଦେଖିଲେ ବାଟେ ବ୍ୟାଘ୍ର ତ୍ରିତ ଦ୍ୱିଜଈଶ ।
ସରସ୍ୱତୀ ପାଖରେ ଜଳହୀନ ହୋଇ
କୂପଟିଏ ଥିଲା ହସ୍ତିନା-ନରସାଇଁ ।
ବ୍ୟାଘ୍ର ସକାଶରୁ ସେ ମହାଭୟ ପାଇ
କୂପ ମଧ୍ୟେ ପଡ଼ିଲେ ତ୍ରିତ ନରସାଇଁ ।
ତ୍ରିତ କୂପରେ ପଡ଼ି ଭାଇଙ୍କି ଡାକିଲେ
ଦୁଇଭାଇ ତାହାକୁ ଶୁଣି ନ ଶୁଣିଲେ ।
ଭାଇଙ୍କି ଛାଡ଼ିକରି ଦ୍ରବ୍ୟଲୋଭୀ ହୋଇ
ଏକତ ଦ୍ୱିତ ଦୁହେଁ ଗଲେ ନରସାଇଁ ।
ନରକରେ ଦୁଷ୍କୃତି ମଗ୍ନ ହେଲା ପ୍ରାୟେ
ତୃଣାବୃତ କୂପେ ରହିଲେ ତ୍ରିତ ଭୟେ ।
ତ୍ରିତ ସୋମପାନେ ଲୋଭିତ ହୋଇଥିଲେ
କୂପେ ଥାଇଣ ମାନସିକ ପୂଜା କଲେ ।
ଲତାଟାଏ କୂପେ ମାଡ଼ି ତ ରହିଥିଲା
ତ୍ରିତଙ୍କ କର୍ମବଳେ ସୋମକଳ୍ପ ହେଲା ।
ତିନ ବେଦମାନଙ୍କୁ କଲେ ସୁମରଣା
ନୋହିଲା ତାହାଙ୍କର ବୁଦ୍ଧି ତହିଁ ବଣା ।
କୂପ ଖୋଳି ତହୁଁ ବାହାର କରି ଜଳ
ହୋମ କଲେ ଘିଅ କରି ତା ମୂଳବାଳ ।
ତ୍ରିତ ଯାଗ କରିବା ଶବ୍ଦ ସ୍ୱର୍ଗଲୋକ--
ଯାକରେ ପୂରିଲା ହେ ଅବନୀନାୟକ ।
ତ୍ରିତଙ୍କର ଯାଗ କାରଣକୁ ନ ଜାଣି
ଉଦ୍‌ବେଗ ପାଇଲେ ଇନ୍ଦ୍ରାଦି ଦେବଶ୍ରେଣୀ ।
ବୃହସ୍ପତି ଇନ୍ଦ୍ରାଦି ଦେବତାଙ୍କୁ ଚାହିଁ
କହିଲେ ଯାଗ କରୁଛନ୍ତି ଋଷିସାଇଁ ।
ତ୍ରିତ ମହାଋଷି ପଡ଼ିଣ କୂପମଧ୍ୟେ
ଚାଲ ଆମ୍ଭେ ଭାଗ ଖାଇବା ଅତି ସାଧେ ।
ଯେବେ ଆମ୍ଭେ ତ୍ରିତଙ୍କ ଯାଗକୁ ନ ଯିବା
ତ୍ରିତଙ୍କର କ୍ରୋଧେଟି ଜାଣ ନାଶ ହେବା ।
ବୃହସ୍ପତିଙ୍କର ଏ ବଚନକୁ ଶୁଣି
ତ୍ରିତଙ୍କ ଯାଗଠାକୁ ଗଲେ ସୁରମଣି ।
ଦେଖିଲେ ତ୍ରିତ କୂପେ ଯାଗଦୀକ୍ଷା କରି
ବସିଅଛନ୍ତି ବେଦମାନଙ୍କୁ ଉଚ୍ଚରି ।
ଦେବେ ତ୍ରିତଙ୍କର ଯାଗରେ ହୋଇ ଛିଡ଼ା
କହିଲେ ଭୋଗ ଦିଅ ହୋମ ଘିଅ ପୋଡ଼ା ।
ଦେବଙ୍କ ବାକ୍ୟ ଶୁଣି ତ୍ରିତ ଋଷିଈଶ
ଦେଲେ ସେ ଦେବତାଙ୍କୁ ଭାଗ ବହି ତୋଷ ।
ବୋଇଲେ ଏ କୂପର ପାଣି ଯେ ଛୁଇଁବ
ସୋମପାନ କଲା ଫଳକୁ ସେ ପାଇବ ।
ମୁଁ ଯେ କୂପମଧ୍ୟେ ପଡ଼ିଛି ଭୟ ପାଇ
ମୋତେ ଦିଅ ଏଥୁଁ ଉଦ୍ଧରି ଶଚୀସାଇଁ ।
ତ୍ରିତ ଏହା ବୋଲିବାମାତ୍ରେ ସରସ୍ୱତୀ
ସେ କୂପ ମଧ୍ୟୁଁ ବାହାରିଲେ ହେ ନୃପତି ।
ସେହି ସକାଶୁ ତ୍ରିତଋଷି ଭାସି ଜଳେ
ଲାଗିଲେଟି ସ୍ୱୟେ ଆସି ସେ କୂପ କୂଳେ ।
ତା ଦେଖି ତ୍ରିତ ଦେବତାଙ୍କୁ ପୂଜା କଲେ
ତଥାସ୍ତୁ ବୋଲି ଦେବେ ସ୍ୱର୍ଗପୁରେ ଗଲେ ।
ତ୍ରିତ କ୍ରୋଧ ହୋଇଣ ଘରକୁ ଆସିଲେ
ଦେଖିଣ ସେ ଦୁଇ ଭାଇଙ୍କି ଶାପ ଦେଲେ ।
କୂପେ ପଡ଼ିଥିଲି ପଶୁରେ ଲୋଭୀ ହୋଇ
ଯା ଆସିଲ ବାହାରି ତୁମ୍ଭେ ଦୁଇଭାଇ ।
ଏହି ହେନ ବାଘ ହୋଇଣ ବନଜନ୍ତୁ—
ମାନଙ୍କର ହୋଇବ ତୁମ୍ଭେ ମୃତ୍ୟୁହେତୁ ।
ତ୍ରିତଙ୍କ ବଚନମାତ୍ରକେ ଦୁଇଭାଇ
ବାଘ ହୋଇଗଲେ ହସ୍ତିନା-ନରସାଇଁ ।
ରାମ ତ ଏ ଚରିତ ଜାଣିଲେ ଭଲେ
ସେ ଉଦପାନ ତୀର୍ଥେ ସ୍ନାନ ଦାନ କଲେ ।
ବିନଶନତୀର୍ଥକୁ ସେଠାରୁ ବାହାରି
ଗଲେ ସ୍ନାନ ତହିଁ କରିବା ଇଚ୍ଛା କରି ।
ସରସ୍ୱତୀତୀର୍ଥ ଯିବାରୁ ତହିଁ ନାଶ
ଏହେତୁ ବିନଶନ ନାମ ତା ପ୍ରକାଶ ।

ବିନଶନତୀର୍ଥକୁ କରି ଅତିକ୍ରମ
ସୁଭୂମିକ ତୀର୍ଥରେ ହେଲେ ବଳରାମ ।
ସୁଭୂମିକ ତୀର୍ଥରେ ଅପସରାପନ୍ତି
ନିତି ଜନ୍ମେଜୟ ରହନ୍ତି ବିହରନ୍ତି ।
ସେହି ତୀର୍ଥରେ ରାମ ସ୍ନାନ ଦାନ ଦେଇ
ପରବେଶ ହେଲେ ଗନ୍ଧର୍ବତୀର୍ଥେ ଯାଇଁ ।
ବିଶ୍ୱାବସୁ ଆଦି ଗନ୍ଧର୍ବେ ସେ ଗନ୍ଧର୍ବ—
ତୀର୍ଥରେ ନାଚୁଛନ୍ତି ବହୁ ମହାଭାଗ ।
ସେହି ତୀର୍ଥରେ ରାମ ବିଧିମତ କରି
ସ୍ନାନ ଦାନ ଦ୍ୱିଜଙ୍କି କଲେ ଦଣ୍ଡଧାରୀ ।
ଗାର୍ଗସ୍ରୋତତୀର୍ଥକୁ ଯାଇକରି ରାମ
ଆଚରିଲେ ତହିଁ ବହୁତ ପୁଣ୍ୟ କର୍ମ ।
ଗର୍ଗ ସେ ତୀର୍ଥେ ତପ କରିବାରୁ ରାୟେ
ଗର୍ଗସ୍ରୋତ ତାହାଙ୍କୁ ବୋଲନ୍ତି ସଭିଏ ।
ସେହି ତୀର୍ଥରେ ଥାଇ ଗର୍ଗ ମହାମନା
ଜ୍ୟୋତିଷଶାସ୍ତ୍ରକୁଁ କଲେ ସରଜନା ।
ଋଷିମାନେ ସେ ଶାସ୍ତ୍ର ତାଙ୍କଠାରୁ ପଢ଼ି
ଏ ସଂସାର ଯାକରେ ଅଛନ୍ତି ଯୋଡ଼ି ।
ଗର୍ଗତୀର୍ଥଠାରୁ ବାହାରି ବଳଦେବ
ଶଙ୍ଖତୀର୍ଥେ ଯାଇ ମିଳିଲେ ନରଦେବ ।
ତହିଁରେ ମହାଶଙ୍ଖ ଗୋଟିଏ ଦେଖିଲେ
ଶରଦମେଘ ପରି ଦିଶୁଛି ସେ ଭଲେ ।
ସେ ଶଙ୍ଖତୀର୍ଥ-ପାଖେ ଗଛଟିଏ ଅଛି
ତା ଫଳ ଖାଆନ୍ତି ସକଳ ମୁନିବସ୍ତି ।
ତହିଁ ଦାନ ପୁଣ୍ୟାଦି କରି ବଳଦେବ
ପାବନତୀର୍ଥକୁ ଗମିଲେ ବହି ଭାବ ।
ସେ ତୀର୍ଥରେ ଦାନ ଦେଇଣ ହଳଧର
ଦ୍ୱୈତବନେ ଆସି ମିଳିଲେ ନରବର ।
ସେହିଠାରେ ମୁନିମାନଙ୍କୁ ଦାନ ଦେଇ
ନାଗଧନ୍ୱେ ମିଳିଲେ ରେବତୀଙ୍କ ସାଇଁ ।
ସେ ନାଗଧନ୍ୱେଟି ବାସୁକୀ ସର୍ପରାଜା
ଥାଇ ପାଉଛନ୍ତି ସର୍ପଙ୍କଠାରୁ ପୂଜା ।
ସେ ନାଗଧନ୍ୱତୀର୍ଥେ ସେ ଲୋକ ବୁଡ଼ଇ
ସାପ କେବେ ତାକୁ କାମୁଡ଼ି ନ ପାରଇ ।
ସେଠାରୁ ପୂର୍ବଦିଗତୀର୍ଥକୁ ରେବତୀ—
ପତି ଗଲେ ଦେହର ହୋଇବାକୁ ମୁକ୍ତି ।

ପୂର୍ବଦିଗତୀର୍ଥମାନଙ୍କେ କରି ସ୍ନାନ
ମୁନିଙ୍କର ପାଦରେ କଲେ ସେ ବନ୍ଦନ ।
ପୁଣି ସେ ସରସ୍ୱତୀ ତୀର୍ଥକୁ ଆସିଲେ
ନଇମିଷଋଷିଙ୍କି ଦେଖି ବାହାରିଲେ ।
ସରସ୍ୱତୀନଦୀ ପଶ୍ଚିମମୁଖ ହୋଇ
ସେଠାରେ ବହି ଯାଉଛନ୍ତି ନରସାଇଁ ।
ତାହାକୁ ଦେଖି ରାମ ହୋଇଣ ଆଶ୍ଚର୍ଯ୍ୟ
ବୁଜିଲେ ଆପଣାର ନୟନ ସରୋଜ ।
ଜନ୍ମେଜୟ ବୋଇଲେ ପଶ୍ଚିମ ମୁଖରେ
କାହିଁକି ସେ ନଦୀ ବହନ୍ତି ମୋ ଆଗରେ ।
ଏକଥା ସବିସ୍ତର କରିଣ ପ୍ରକାଶ
କହ ହେ ବଇଶମ୍ପାୟନ ବ୍ୟାସଶିଷ୍ୟ ।
ବଇଶମ୍ପାୟନ ବୋଇଲେ ସତ୍ୟଯୁଗ—
ପ୍ରବେଶେ ତହିଁ ଋଷିମାନେ କଲେ ଯାଗ ।
ତାହା ଶୁଣି ସେଠାକୁ ଆନ ଋଷିମାନେ
ଆସିଲେ ହେ ରାଜନ ବହୁ ତୋଷ ମନେ ।
ମୁନିଙ୍କ ବେଦ-ଅଧ୍ୟୟନେ ନଇମିଷ
ଅରଣ୍ୟ ପୂରିଲା ହେ ଜାଣ ନରଈଶ ।
ହୋମାଗ୍ନିରେ ସ୍ୱର୍ଗଙ୍ଗା ପ୍ରାପ୍ତେ ସରସ୍ୱତୀ
ଦିଶିଲେ ନେତ୍ରକୁ ହେ ଜାଣ ନରପତି ।
ବହୁତ ତହିଁ ପୁରିଗଲେ ତପିଜନ ।
ସରସ୍ୱତୀ ତୀରେ ନ ପାଇଲେଟି ସ୍ଥାନ ।
ଯଜ୍ଞୋପବୀତ ପରମାଣେ ତୀର୍ଥ କରି
ତପ କଲେ ବସି ବହୁତ ତପସ୍ତାରୀ ।
ସରସ୍ୱତୀ ସେ ଋଷିଙ୍କର ମନ ଜାଣି
ପଶ୍ଚିମମୁଖ ହୋଇ ବହିଲେ ନୃମଣି ।
ପଚାରିଲ ସେ କଥା କହିଲି ରାଜନ
ଏବେ ଶୁଣ ହେ ଆନ ତୀର୍ଥଙ୍କ ବିଧାନ ।
ସରସ୍ୱତୀ ତୀର୍ଥରେ ସ୍ନାନ ଦାନ କରି
ସପ୍ତସାରସ୍ୱତକୁ ଗଲେ ହଳଧାରୀ ।
ସେଠାରେ କଶ୍ମର ଇଙ୍ଗୁଦ ବିଭୀତକ
ଚନ୍ଦନ ବିଲ୍ୱ ଅତିମୁକ୍ତ ଆମ୍ରାତକ ।
କଙ୍କୋଳ ପିଲୁ ପ୍ଲକ୍ଷ ଅଶ୍ୱତ୍ଥ କରୁଷ
ପାରିଜାତ କାଶ୍ମରୀ ବଦରି ପଳାଶ—
ଆଦି ବୃକ୍ଷପନ୍ତି ରେବତୀଦେବୀପତି
ଦେଖିଣ ରାଜନ ହେ ହେଲେ ତୁଷ୍ଟମତି ।

ମଙ୍କଣକ ସେଠାରେ ତପସ୍ୟାକୁ କରି
ସିଦ୍ଧ ହୋଇଥିଲେଟି ଜାଣ ଦଣ୍ଡଧାରି ।
ଜନ୍ମେଜୟ ବୋଇଲେ କିଏ ମଙ୍କଣକ
କି ତପ କରି ସେହୁ ହେଲେ ସିଦ୍ଧ ଲୋକ ।
ସପ୍ତସାରସ୍ୱତ ସେ ତୀର୍ଥ ଅଭିଧାନ
କାହିଁକି ହେଲା ତାହା ଶୁଣିବ ମୋ ମନ ।
ହେଉଛନ୍ତି ଏବେ ଆହେ ବ୍ୟାସ ମହର୍ଷି—
ଶିଷ୍ୟ ମୋର ଆଗେ ତା କହ ତ ପ୍ରକାଶି ।
ବଇଶମ୍ପାୟନ ବୋଇଲେ ହେ ରାଜନ
ସାତସରସ୍ୱତୀ ହେବାରୁ ଏକ ସ୍ଥାନ ।
ସପ୍ତସାରସ୍ୱତ ସେ ତୀର୍ଥକୁ କହନ୍ତି
ଶୁଣ ତାହା ବତାଇ କହିବା ନୃପତି ।
ସୁପ୍ରଭା କାଞ୍ଚନାକ୍ଷୀ ସୁରେଣୁ ବିଶାଳା
ଓଘବତୀ ମନୋରମା ଯେ ସ୍ୱଚ୍ଛଜଳା ।
ଋଷିଏ ମନ୍ତ୍ରବଳେ ଏ ସାତୋଟି ନଦୀ
ଥିଲେ ତ ରାଜନ ହେ ସେଠାରେ ସମ୍ପାଦି ।
ଏଣୁ ସପତସାରସ୍ୱତ ସେ ତୀର୍ଥକୁ
ବୋଲୁଥାନ୍ତି, ଏବେ ତା କହିଲି ତୁମ୍ଭଙ୍କୁ ।
ତୁମ୍ଭେ ବା ବୋଲିବ ଏ ସାତ ନଦୀ କାହିଁ
ଥିଲେ, ତାହା ମଧ୍ୟ କହିବା ନରସାଇଁ ।
ବ୍ରହ୍ମା ପୂର୍ବେ ପୁଷ୍କରଦ୍ୱୀପେ ଯାଗ କଲେ
ସବୁ ଋଷିମାନେ ତ ସେଠାକୁ ଆସିଲେ ।
ଋଷିମାନେ ବେଦକୁ ପଢ଼ି କରି ଯାହା
ବିସ୍ତରନ୍ତି, ତାହା ମିଳଇ ନରନାହା ।
ଗନ୍ଧର୍ବମାନେ ଗୀତ, ଅପସରା ନୃତ୍ୟ
କରିବାରେ ତହିଁ ତୋଷିଲେ ସବୁ ଚିତ୍ତ ।
ସରସ୍ୱତୀନଦୀ ନ ଦେଖି ଋଷିଜନ
ଯାଗକୁ ନିନ୍ଦା କଲେ ହୋଇ ଅପ୍ରସନ୍ନ ।
ବ୍ରହ୍ମା ତା ଶୁଣି ସରସ୍ୱତୀ ସରିତକୁ
ଭାବିଲେ ହୃଦୟରେ ବୁଜି ନୟନକୁ ।
ପିତାମହଙ୍କରେ ସେ ହୁଅନ୍ତେ ଆହୂତ
ସୁପ୍ରଭା ସରସ୍ୱତୀ ହେଲେ ଉପଗତ ।
ବ୍ରହ୍ମା ସରସ୍ୱତୀଙ୍କି ଆଣିବାର ଦେଖି
ଦୁଃଖ ଛାଡ଼ି ମୁନିଏ ହେଲେ ଅତି ସୁଖୀ ।
ଏରୂପରେ ପୁଷ୍କରେ ସରସ୍ୱତୀ ଜାତ
ହୋଇଲେଟି ଜାଣ ହେ ପରୀକ୍ଷିତ ସୁତ ।

ପୂର୍ବକାଳରେ ନଇମିଷ ବନସ୍ଥାୟୀ
ହୋଇ କଥାବାର୍ତ୍ତା ହୋଇଲେ ବସି ମୁନି ।
କାଞ୍ଚନାକ୍ଷୀ ସରସ୍ୱତୀଙ୍କି ସୁମରିଲେ
ଋଷିଙ୍କ ବୋଲରେ ସେ ସେଠାକୁ ଆସିଲେ ।
ଗୟମାଳୟ ପାଖରେ ଗୟ ଅଶ୍ୱମେଧ
କରି ସନ୍ତୋଷ କଲେ ଜଗତରେ ବିବୁଧ ।
ସୁମରଣା କରିବା ମାତ୍ରେ ଗୟରାଜା
ବିଶାଳା ସରସ୍ୱତୀ ଜାଣି ତାଙ୍କ ମଜ୍ଜା ।
ସେଠାକୁ ଉପଗତ ହୋଇଲେ ରାଜନ
ମୋ କହିବାରୁ ଏହା ଭଲ କରି ଜାଣ ।
ଉଦ୍ଦାଳକ ସେ ଯାଗ ଉତ୍ତରକୋଶଳେ
କରି ସୁରମ୍ୟ ସରସ୍ୱତୀଙ୍କି ଆଣିଲେ ।
କୁରୁକ୍ଷେତ୍ରରେ କୁରୁରାଜା କଲେ ଯାଗ
ଋତ୍ୱିଜ ହୋଇଲେ ବଶିଷ୍ଠ ମହାଭାଗ ।
ବଶିଷ୍ଠ ବୋଲେ ଓଘବତୀ ସରସ୍ୱତୀ
କୁରୁକ୍ଷେତ୍ରରେ ଆସି ରହିଲେ ନୃପତି ।
ଗଙ୍ଗାଦ୍ୱାରେ ଦକ୍ଷ କରନ୍ତେ ବସି ଯାଗ
ସୁରେଣୁ ସରସ୍ୱତୀ ଆସିଲେ ସେ ବେଗ ।
ସ୍ୱଚ୍ଛୋଦକା ସରସ୍ୱତୀଙ୍କି ବ୍ରହ୍ମା ଧ୍ୟାୟି
ହିମାଦ୍ରିକି ଆଣିଲେ ଯଜ୍ଞକାଳେ ତହିଁ ।
ଏ ସାତେ ଏକ ହୋଇ ରହିବାରୁ ରାୟେ
ସପ୍ତସରସ୍ୱତୀଟି ବୋଲନ୍ତି ସଭିଏ ।
ଏବେ ମଙ୍କଣକଙ୍କ ଚରିତ ରାଜନ
କହିବା, ମୋହଠାରୁ ଶୁଣ ଦେଇ ମନ ।
ସରସ୍ୱତୀନଦୀରେ କାହାରି ସୁକେଶୀ
ସ୍ନାନ କରୁଥିଲା ହୋଇଣ ମହାଳସୀ ।
ମଙ୍କଣକଋଷି ତା ନୟନେ ଦେଖିଲେ
କାମଭରେ ରେତକୁ ଜଳେ ଉତ୍ସର୍ଗିଲେ ।
ଦେଖିଲେ ମହାଭାଗ ହୋଇଅଛି ରେତ
ମଙ୍କଣଙ୍କଋଷି ତା କରି କରଗତ ।
ସାତୋଟି କଳସରେ ରଖିଲେ ତା ନେଇ
ତହିଁରୁ ସେ କାରଣ ଶୁଣ ନରସାଇଁ ।
ସେ ରେତ ସାତଭାଗରୁ ଋଷି ସାତଜଣ
ଜନମ ହୋଇଲେଟି ଜନ୍ମେଜୟ ଜାଣ ।
ବାୟୁବଳତା ବାୟୁବେଗ ସେ ବାୟୁଜାତ
ବାୟୁଚକ୍ର ବାୟୁମଣ୍ଡଳ ବାୟୁବଳ ।

ବାସୁହା ଏ ନାମଟି ଅଟେ ତାହାଙ୍କର
ଜନକ ସେହ୍ନଟି ମରୁତଦେବଙ୍କର ।
ଏ ବାହାରେ ମଙ୍କଣେକଙ୍କ କଥାଟାଏ
ଥିଲା, ତା ଶୁଣିଛ ଅରଣ୍ୟପର୍ବେ ରାଯେ ।
ସପ୍ତସାରସ୍ୱତ ତୀର୍ଥରେ ରାମ ରହି
ତୋଷିଲେ ଦ୍ୱିଜଙ୍କୁ ସେ ଧନ ବସ୍ତ୍ର ଦେଇ ।
କପାଳମୋଚନକୁ ବୋଲି ବାହାରିଲେ
ଯଦୁବୀରେ ଅନେକ ସଙ୍ଗତରେ ଥିଲେ ।
ଜନ୍ମେଜୟ ବୋଇଲେ କପାଳମୋଚନ
ନାମ କପାଁ ହେଲା ସେ ତୀର୍ଥ, ତା ବଖାଣ ।
ବଇଶମ୍ପାୟନ ବୋଇଲେ ନରନାଥ
ଔଶନସତୀର୍ଥଟି ତାହାଙ୍କୁ ବୋଲନ୍ତ ।
ଯେରୂପେ କପାଳମୋଚନ ବୋଲାଇଲେ
ତାହା ଏବେ କହିବା ଶୁଣ ରାଯେ ଭଲେ ।
ଦଶରଥଙ୍କର ସତ୍ୟକୁ ରଖିବାକୁ
ଶ୍ରୀରାମ ତ ଅଇଲେ ଦଣ୍ଡକାରଣ୍ୟକୁ ।
ସେ ବନ ତ ଅଟଇ ରାକ୍ଷସଙ୍କ ବାସ
ରାମ ତାହା ଦେଖି ମାନସେ କଲେ ରୋଷ ।
ରାକ୍ଷସଙ୍କ ମୁଣ୍ଡ କାଟନ୍ତେ କ୍ଷୁରକାଣ୍ଡେ
ତହିଁରୁ ମୁଣ୍ଡଟାଏ ଉଡ଼ି ବନଦାଣ୍ଡେ ।
ମହୋଦରଋଷିଙ୍କ ଜଙ୍ଘ ଭେଦ କରି
ରହିଲା ସେ ରାଜନ ଲାଗି ଅଠା ପରି ।
ସେହି ସକାଶୁଁ ମହୋଦରଋଷି ଛୁଡା
ହୁଅନ୍ତି ସେକାଳେ ପାଆନ୍ତି ମହାପୀଡ଼ା ।
ଋକତ ପୂଯ ବହିବାରେ ଅବୟବ
ତାଙ୍କର ବସିଲା ଜାଣ ହେ ନରଦେବ ।
ସେ ଋଷି ସେ ବେଦନା ନାଶକୁ ଉପାୟ
କଲେ ହେଲେ ନ ଗଲା ବୁଲି ତୀର୍ଥଚୟ ।
ଔଶନସତୀର୍ଥବରକୁ ସେ ଆସିଲେ
ସେ ତୀର୍ଥବରେ ଆସି ସ୍ନାନକୁ ସେ କଲେ ।
ସେ ତୀର୍ଥ-ମହିମା ସକାଶୁଁ ସେ ମୁଣ୍ଡଟି
ଋଷି ଜଙ୍ଘ ଛାଡ଼ିଲା, କ୍ଳେଶ ଗଲା ତୁଟି ।
ସେହିଲୁ କପାଳମୋଚନ ସେ ତୀର୍ଥକୁ
ଋଷିମାନେ ବୋଲନ୍ତି କହିଲି ତୁମ୍ଭଙ୍କୁ ।
ମହୋଦର ଔଶନଧରେ ଏ ମହିମା
ଜାଣି ତପ କରି ନାଶିଲେ ପାପସୀମା ।

କପାଳମୋଚନରେ ରାମ ସ୍ନାନ କରି
ରୁଷଦ୍ଗୁ ଅଶ୍ରମକୁ ଗଲେ ଦଣ୍ଡଧାରୀ ।
ରୁଷଦ୍ଗୁ ଆଶ୍ରମରେ ଆର୍ଷ୍ଟିସେଣ ଋଷି
ତପସ୍ୟା କରି ହୋଇଥିଲେ ସ୍ୱର୍ଗବାସୀ ।
ବିଶ୍ୱାମିତ୍ର ମଧ୍ୟ ସେଠାରେ କରି ତପ
ବ୍ରାହ୍ମଣ-ପଦବୀକୁ ପାଇଲେ ହେ ନୃପ ।
ରାମ ଋଷଦ୍ଗୁଙ୍କ ମହିମା ସ୍ଥାନ ଦେଖି
ଦ୍ୱିଜଙ୍କୁ ଦାନ ଦେଇ ହେଲେ ମହାସୁଖୀ ।
ସେଠାରୁ ସିନ୍ଧୁଦ୍ୱୀପ ଦେବାପି ବ୍ରାହ୍ମଣ୍ୟ
ଲଭିବା ସ୍ଥାନକୁ ହେ ଗଲେ ନରଗଣ ।
ଜନ୍ମେଜୟ ବୋଇଲେ ଆର୍ଷ୍ଟିସେଣ ଋଷି
କିରୂପେ ତପ କଲେ ଆଖି ଥିଲେ ଖୋଷି ।
ସିନ୍ଧୁଦ୍ୱୀପ ଦେବାପି ବିଶ୍ୱାମିତ୍ରରାଜା
କିରୂପେ ପାଇଲେ ବ୍ରାହ୍ମଣ ବୋଲି ପୂଜା ।
ବଇଶମ୍ପାୟନ କହ ତା ମୋ ଆଗରେ
ଶୁଣିବାକୁ ସରାଗ ବଳେ ମୋ ଅନ୍ତରେ ।
ବଇଶମ୍ପାୟନ ବୋଇଲେ ଆର୍ଷ୍ଟିସେଣ
ଗୁରୁଙ୍କ ଘରେ ରହି ବଞ୍ଚିଲେ ଆପଣ ।
ଗୁରୁ ତ ଦିବ୍ୟବିଦ୍ୟା ପାର ପାଇଛନ୍ତି
ପଢ଼ି ନ ପାରିଲେ ତା ଆର୍ଷ୍ଟିସେଣସନ୍ତି ।
ଏହି ପ୍ରକାରରୁ ଗୁରୁ ପାଠପଢ଼ା
ଆର୍ଷ୍ଟିସେଣ ତପସ୍ୟା ମନେ କରି ଲୋଡ଼ା ।
ଏକାନ୍ତ ସ୍ଥାନେ ବସି ତପ ଆରମ୍ଭିଲେ
ତପୋବଳରେ ବେଦସମୂହକୁ ଜାଣିଲେ ।
ଯେଉଁ ତୀର୍ଥେ ତପସ୍ୟା କଲେ ଆର୍ଷ୍ଟିସେଣ
ସେହି ତୀର୍ଥକୁ ବର ଦେଲେ ସେ ଆପଣ ।
ଆଜଠାରୁ ଏ ତୀର୍ଥେ ସ୍ନାନ ଯେ କରିବ
ଅଲଭ୍ୟ ଅଶ୍ୱମେଧ ଫଳ ସେ ପାଇବ ।
ଆଉଁ ଏଥେ ନୋହିବ ଆଉ ବ୍ୟାଳଭୟ
ଅଳପ ଯତ୍ନେ ହେବ ବହୁ ଫଳୋଦୟ ।
ଏରୂପେ ବର ଦେଇ ଆର୍ଷ୍ଟିସେଣଋଷି
ତୀର୍ଥକୁ ହେ ରାଜନ ହେଲେ ସ୍ୱର୍ଗବାସୀ ।
ସିନ୍ଧୁଦ୍ୱୀପ ଦେବାପି ଏରୂପରେ ତପ
କରି ବ୍ରାହ୍ମଣ୍ୟଟି ଲଭିଲେ ଜାଣ ନୃପ ।
ଏବେ ବିଶ୍ୱାମିତ୍ର ବ୍ରାହ୍ମଣ୍ୟ ଲଭିବାର
କହିବା ବିସ୍ତାର ହେ ଶୁଣ ନୃପବର ।

ପୂର୍ବେ ଗାଧି ନାମରେ ଏକ ରାଜା ଥିଲେ
ତାଙ୍କ ପୁତ୍ର ପ୍ରତାପୀ ବିଶ୍ୱାମିତ୍ର ହେଲେ ।
ଗାଧି ବିଶ୍ୱାମିତ୍ରଙ୍କୁ ନିଜ ମନ୍ତ୍ର ଦେଇ
ସ୍ୱର୍ଗକୁ ଯିବାକୁ ଭାବିଲେ ନରସାଇଁ ।
ପ୍ରଜାମାନେ ତା ଜାଣି ବିକଳ ହୋଇଲେ
ଆହେ ଗାଧି ରାଜେ ତ ମରିବୁଁ ବୋଇଲେ ।
ଗାଧି ପ୍ରଜାମାନଙ୍କୁ ବୋଇଲେ ନ ଭାଳ
ମୋର ପୁଅ ପାଳିବ ହୋଇ ମହୀପାଳ ।
ଏହା କହି ନୟନ ଯୁଗଳ ବୁଜିଲେ
ଯୋଗରେ ପ୍ରାଣ ଛାଡ଼ି ସ୍ୱର୍ଗପୁରେ ଗଲେ ।
ବିଶ୍ୱାମିତ୍ର ବାପାଙ୍କ ପରେ ହୋଇ ରାଜା
ପାଳି ନ ପାରିଲେ ରାଜନ ଜନପ୍ରଜା ।
ରାକ୍ଷସମାନେ ବିଶ୍ୱାମିତ୍ରେ କରି କ୍ରୋଧ
ଅହର୍ନିଶି ଆସିଣ ଆରମ୍ଭିଲେ ଯୁଦ୍ଧ ।
ଏହି ସକାଶୁଁ ମହାଭୟକୁ ପାଇଲେ
ଘର ଛାଡ଼ି ଅନ୍ୟ ସ୍ଥାନରେ ସେ ରହିଲେ ।
ଦିନେ ସେ ନୃପବର ଯାଇଥିଲେ ବୁଲି
ବଶିଷ୍ଠଙ୍କର ଆଶ୍ରମକୁ ଗଲେ ଭୁଲି ।
ବିଶ୍ୱାମିତ୍ର ସଙ୍ଗତେ ଥିବା ଲୋକଯାକ
ବଶିଷ୍ଠ-ଆଶ୍ରମେ ବୁଲିଲେ ଛାଡ଼ି ଦକ ।
ଏ ବାହାରେ ନାନା ଅନ୍ୟାୟମାନ କଲେ
ବଶିଷ୍ଠଙ୍କରଠାରେ ନଜର ନ ଦେଲେ ।
ବଶିଷ୍ଠ ତାହା ଦେଖି ମହାକ୍ରୋଧ ହୋଇ
ଗାଈଙ୍କି ବୋଇଲେ ତୁ ମୋର ସୈନ୍ୟ ଯାଇ ।
ସେ ଗାଈ ଶବରଙ୍କୁ ଦେହୁଁ କରି ଜାତ
କଲା ବିଶ୍ୱାମିତ୍ରଙ୍କ ବଳଯାକ ହତ ।
ସୈନ୍ୟ ପଳାଇବାର ବିଶ୍ୱାମିତ୍ର ଦେଖି
ପଳାଇଲେ ସେ ମଧ ହୋଇ ଅତି ଦୁଃଖୀ ।
ତପକୁ ବଡ଼ ବୋଲି ଜାଣି ବିଚାରିଲେ
ତପସ୍ୟା କରି ନିଜ ଦେହ କ୍ଷୀଣ କଲେ ।
ଦେବେ ତାହାଙ୍କ ତପ ନ ପାରିଣ ସହି
ମହାବିଘ୍ନ କଲେ ହେ ଜାଣ ନରସାଇଁ ।
ତେବେ ହେଲେ ତାହାଙ୍କ ତପସ୍ୟାରେ ଭଗ୍ନ
ନୋହିଲା, ତ ସେ ତହିଁ ହୋଇଥିଲେ ମଗ୍ନ ।
ବିଶ୍ୱାମିତ୍ରଙ୍କର ସେ ତପସ୍ୟାକୁ ଦେଖି
ବ୍ରହ୍ମସ୍ୱରୁଁ ଆସି କହିଲେ ଝଷ୍ଟ ଆଖି ।

ଯେ ଇଚ୍ଛା ହୋଇଅଛି ମାଗ ବିଶ୍ୱାମିତ୍ର
ହେଲିନ ତ ତପେ ପବିତ୍ର ତୁମ୍ଭ ଚିତ୍ତ ।
ଗାଧେୟ ବୋଇଲେ ବ୍ରାହ୍ମଣ ହେବି ମୁହିଁ
ଏହି ବର ମୋତେ ଦିଅ ହେ ବେଦସାଇଁ ।
ବ୍ରହ୍ମା ତାହା ଶୁଣି ବୋଇଲେ ନରନାଥ
ହେଉ ତୁମ୍ଭର ପୂର୍ଣ୍ଣ କଲି ମନୋରଥ ।
ବିଶ୍ୱାମିତ୍ର ବର ପାଇଣ ତୋଷ ହେଲେ
ଋଷିଙ୍କି ଘେନି ବ୍ରହ୍ମାପୁର ଗଲେ ।
ସେହି ତୀର୍ଥରେ ରାମ ରହି ଭକ୍ଷ୍ୟ ଭୋଜ୍ୟ
ପେୟ ଦେଇ ତୋଷିଲେ ରାମେ ବହୁ ଦ୍ୱିଜ ।
ତଦଅନ୍ତେ ବକଋଷିଙ୍କ ଆଶ୍ରମକୁ
ଗମିଲେ ହଳଧର ଲଭି ହରଷକୁ ।
ପୂର୍ବେ ସେ ବକ ଧୃତରାଷ୍ଟ୍ରଙ୍କ ରାଜ୍ୟକୁ
ଉଦ୍ଦେଶି ସେହିଠାରେ କଲେଟି ହୋମକୁ ।
ତାହା ତୁମ୍ଭର ଆଗେ କହିବା ରାଜନ
ଶୁଣ ଏବେ ମୋଠାରୁ ଦେଇକରି ମନ ।
ପୂର୍ବେ ନଇମିଷ ଅରଣ୍ୟରେ ଦ୍ୱାଦଶ—
ବାର୍ଷିକୀ ଯାଗ ସାରିଣ ଋଷିବଂଶ ।
ବକଋଷି ସଙ୍ଗେ ପାଞ୍ଚାଳ ଦେଶେ ବେଗି
ଆସି ନେଲେ ବାଛୁରୀ ଏକୋଇଶ ମାଗି ।
ବକ ସେ ବାଛୁରୀଙ୍କି ଋଷିଙ୍କି ଅର୍ପିଲେ
ବିଭାଗ କରୁଥା ମୁଁ ଯାଉଛି ବୋଇଲେ ।
ଋଷିଏ ତାଙ୍କ ବୋଲେ ବାଛୁରୀଙ୍କି ଘେନି
ରହିଲେ ସେହିଠାରେ ଜାଣ ନୃପମଣି ।
ବକ ଧୃତରାଷ୍ଟ୍ରପୁରକୁ ଯେ ଆସିଲେ
ମୋତେ ପଶୁ ଦିଅ ହେ ବୋଲିଣ ମାଗିଲେ ।
ଧୃତରାଷ୍ଟ୍ରରାଜା ତା ଶୁଣି ହସି ହସି
ବୋଇଲେ ମଲା ଗାଈଯାକ ନିଅ ଋଷି ।
ବକଋଷି ତା ଶୁଣି ଧୃତରାଷ୍ଟ୍ର ନାଶ
ଯିବା କଥାଟିରେ ଯେ ଦେଇଣ ମାନସ ।
ମଲା ଗାଈମାନଙ୍କ ମାଂସକୁ ଆଣିଲେ
ଖଇରକାଠେ ଅଗ୍ନି ଜାଳି ହୋମ କଲେ ।
ଏହିରୂପେ ହୋମ କରନ୍ତେ ଋଷିବର ।
ରାଜ୍ୟ କ୍ଷୀଣ ହୋଇଲା ଧୃତରାଷ୍ଟ୍ରଙ୍କର ।
ରାଜ୍ୟର କ୍ଷୀଣଦଶା ଧୃତରାଷ୍ଟ୍ର ଦେଖି
ଚିନ୍ତା କରିଲେ ସବୁବେଳେ ବୁଜି ଆଖି ।

ବ୍ରାହ୍ମଣଙ୍କୁ ଘେନ ବହୁତ ଯତ୍ନ କଲେ
ରାଜ୍ୟର କ୍ଷୟକଥା ଲକ୍ଷି ନ ପାରିଲେ ।
ବ୍ୟାକୁଳ ହୋଇ ପୁଣି ମନେ ନରପତି
ଡକାଇ ନିଜ ସମୀପକୁ ଦ୍ୱିଜପତି ।
ବୋଇଲେ ରାଜ୍ୟ କ୍ଷୟ ହେଲା କାହିଁ ପାଇଁ
ଜାଣିଥିଲେ ତା ମୋତେ କହ ତ ବତାଇ ।
ବ୍ରାହ୍ମଣ ବୋଇଲେ ରାଜନ ବକଠାରେ
ଅପ୍ରାଧ କଲ, ତେଣୁ ପଡ଼ିଲ ମୋହରେ ।
ଏ ହେତୁ ମାଂସରେ ସେ କରୁଛନ୍ତି ହୋମ
ନାଶ ଯିବାପାଇଁ ତୁମ୍ଭର ରାଜ୍ୟ ଗ୍ରାମ ।
ଏବେ ତୁମ୍ଭେ ବକଙ୍କଠାକୁ ଆମ୍ଭ ବୋଲେ
ଯାଇ ତାଙ୍କୁ ପ୍ରସନ୍ନ କର ନୃପ ଭଲେ ।
ରାଜା ତାହା ଶୁଣି ସେ ଦ୍ୱିଜଶ୍ରେଣୀ ଘେନ
କହିଲେ ବକପାଦେ କରିଣ ଦଣ୍ଡିମା ।
ବଚନରେ ବୋଇଲେ ମୋର ଅପରାଧ
କ୍ଷମା କର ମୁହିଁ ତ ଅଟଇ ଦୁର୍ବୋଧ ।
ବକ ଧୃତରାଷ୍ଟ୍ରଙ୍କ ବଚନ ଘେନିଲେ
ମାଂସହୋମ କରିବା କର୍ମ ଛାଡ଼ିଦେଲେ ।
ଧୃତରାଷ୍ଟ୍ରରାଜାଙ୍କଠାରୁ ପଶୁଶ୍ରେଣୀ
ସଙ୍ଗତରେ ଘେନାଇଁ ଗଲେ ବକମୁନି
ଧୃତରାଷ୍ଟ୍ରରାଜା ନ ଦେଖି ରାଜ୍ୟଭ୍ରଷ୍ଟ
ନିଜ ପୁର ଗଲେ ସେ ହୋଇ ଅତି ହୃଷ୍ଟ ।
ପୂର୍ବେ ବକ ଆଶ୍ରମେ ବୃହସ୍ପତିଦେବ
ଦେବତାମାନଙ୍କ ଯେରୂପେ ହିତ ହେବ ।
ସେରୂପେ ମନେକରି କଲେ ମାଂସ ହୋମ
ତେଣୁ ନାଶ ଗଲା ଅସୁର-ପୁରଗ୍ରାମ ।
ସେ ବକଙ୍କ ଆଶ୍ରମ ତେଜି ହଳଧାରୀ
ଯଯାତିତୀର୍ଥକୁ ସେ ଗଲେ ଦଣ୍ଡଧାରୀ ।
ଯଯାତିରାଜା ପୂର୍ବେ ତହିଁ ଯାଗ କଲେ
ସରସ୍ୱତୀ ତାହାଙ୍କୁ ସନ୍ତୋଷ ହୋଇଲେ ।
ଯଜମାନଙ୍କୁ ଘିଅ ଦହି ଦୁଧ କରି
କହିଲେ ସେ ତାଣ ହସ୍ତିନା ଦଣ୍ଡଧାରି ।
ଏ ବାହାରେ ଯେ ଯାହା ଇଚ୍ଛା କରୁଥିଲେ
ସରସ୍ୱତୀ ପ୍ରୀତିରେ ତାଙ୍କୁ ସେ ମିଳିଲେ ।
ଲୋକେ ସରସ୍ୱତୀଙ୍କ ଦେବାର ନ ଜାଣି
ଯଯାତିଙ୍କି ପ୍ରଶଂସା କଲେ ଯାଇ ପୁଣି ।

ସେହିଠାରୁ ବଶିଷ୍ଠ ଅପବାହତୀର୍ଥ
ଦେଖି ବାହାରିଲେ ଶ୍ରୀରାମ ହତହସ୍ତ ।
ଜନ୍ମେଜୟ ବୋଇଲେ ବଶିଷ୍ଠ ଋଷିଙ୍କି
ଘେନିଗଲେ ସେ ନଦୀ କହ ତ କାହିଁକି ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଶୁଣ ତା କହିବା ହେ ଦେଇ ମନ ଲୟ ।
ପୂର୍ବେ ଯେ ସ୍ଥାଣୁଙ୍କର ତୀର୍ଥରେ ବଶିଷ୍ଠ
ସ୍ନାନ କରି ତପ କରନ୍ତେ ହୋଇ ହୃଷ୍ଟ ।
ସେ ବଶିଷ୍ଠ ଆଶ୍ରମ ପୂର୍ବ ପାଶେ ଯାଇ
ବିଶ୍ୱାମିତ୍ର ତପସ୍ୟା କଲେ ରହ୍ୟେ ରହି ।
ତହିଁ ସ୍ଥାଣୁ ସରସ୍ୱତୀଙ୍କି ଇଷ୍ଟି ଯାଗ—
କରିବାରୁ ସ୍ଥାଣୁତୀର୍ଥ ସେ ମହାଭାଗ ।
ବିଶ୍ୱାମିତ୍ର ବଶିଷ୍ଠ ତୀର୍ଥ-ଦୁଇପଟେ
ରହିଲେ ହେ ରାଜନ ତପସ୍ୟା ଲମ୍ପଟେ ।
ବଶିଷ୍ଠ ଋଷିଙ୍କର ଦେଖି ବ୍ରହ୍ମତେଜ
ବିଶ୍ୱାମିତ୍ରଙ୍କର ଭାଜିଲା ମହାତେଜ ।
ମନେ କଲେ ସରସ୍ୱତୀଙ୍କି ବରଗିବ
ତାହାଙ୍କ ହସ୍ତେ ବଶିଷ୍ଠଙ୍କୁ ଅଣାଇବ ।
କପଟରେ ମୁହିଁ ଯେ ତାହାଙ୍କ ପରାଣ
ନେଲେ ମୋର ତପସ୍ୟା ବଢ଼ିବ ଦ୍ୱିଗୁଣ ।
ଏରୂପେ ବିଶ୍ୱାମିତ୍ର ନିଷ୍ଠସ୍ଥକୁ କରି
ସୁମରିଲେ ସରସ୍ୱତୀଙ୍କି ଦଣ୍ଡଧାରୀ ।
ସରସ୍ୱତୀ ବିଶ୍ୱାମିତ୍ରଙ୍କ ସୁମରଣା
ଜାଣିପାରି ହୃଦରୁ ବୁଦ୍ଧି କରି ବଣା ।
ବିଶ୍ୱାମିତ୍ରଋଷିଙ୍କ ସମୀପକୁ ବୋଲି
ସ୍ୱରୂପ ଧରି ରଙ୍ଗେ ଆସିଲେ ସେ ଭଲି ।
ବୋଇଲେ କେଉଁକଥା କରିବ ତୁମ୍ଭର
ଆଜ୍ଞା ଦିଅ ମୋତେ ହେ ମୁନିକୁଳବର ।
ବିଶ୍ୱାମିତ୍ର ବୋଇଲେ ତୁମ୍ଭ ପ୍ରବାହରେ
ବଶିଷ୍ଠଙ୍କୁ ଆଣ ତ ମୋହର ପାଖରେ ।
ମୁହିଁ ତାହାଙ୍କୁ ବାହୁବଳରେ ସଂହାରି
ହୋଇବି ଏ ମହୀରେ ଏକା ତପସ୍ୟାରୀ ।
ବଶିଷ୍ଠ ବିଶ୍ୱାମିତ୍ର ଦୁହିଁଙ୍କ ମହିମା
ସୁମରି ସେ ନଦୀଙ୍କ ଶୁଖିଲା ଆତମା ।
ମନେକଲେ କିରୂପେ ଆଣିବି ତାହାଙ୍କୁ ।
ନ ଆଣିଲେ ତ ଶାପ ଦେବେ ଏ ଆମ୍ଭଙ୍କୁ ।

ଏରୂପେ ଶୁଣି ଯାଇ ବିଶ୍ୱାମିତ୍ର କଥା—
ଯାଇ ବଶିଷ୍ଠଙ୍କୁ କହିଲେ ଗୂଢ଼ ବ୍ୟଥା ।
ବଶିଷ୍ଠ ବୋଇଲେ ନ ଡର ନଦୀ, କହୁଛି
ଘେନ ଯାଅ ମୋତେ ସ୍ରୋତରେ ମୁଁ ବୋଲୁଛି
ଏହା ଶୁଣି ସେ ନଦୀ ବଶିଷ୍ଠ ଅହୃତ
କରିବାକୁ ରାଜନ ହୋଇଲେ ଉଦ୍ୟତ ।
ବିଶ୍ୱାମିତ୍ର ବସି ତପସ୍ୟା କରୁଥିଲେ
ସେ ସମସ୍ତ ଜାଣି ସେ ବଶିଷ୍ଠଙ୍କୁ ନେଲେ ।
ଆପଣା ପ୍ରବାହରେ ପକାଇ ରାଜନ
ହୋଇବାକୁ ସନ୍ତୋଷ ବିଶ୍ୱାମିତ୍ର-ମନ ।
ବଶିଷ୍ଠ ନଦୀଙ୍କର ପ୍ରବାହରେ ପଡ଼ି
ସେ ନଦୀକି ସ୍ତୁତି କଲେ ସେ ହରବଡ଼ି ।
ସେ ନଦୀ ବିଶ୍ୱାମିତ୍ର ଆଗେ ବଶିଷ୍ଠଙ୍କୁ
ନେଲେ ପୂର୍ବେ ଉଦ୍ଧରଣ ବ୍ରାହ୍ମଣବଧକୁ ।
ତା ଦେଖି ବିଶ୍ୱାମିତ୍ର ମହାକ୍ରୋଧ ହେଲେ
ରକ୍ତ ବହ ବୋଲି ନଦୀଙ୍କୁ ଶାପ ଦେଲେ ।
ବଶିଷ୍ଠଙ୍କୁ ବହି ନେବାରୁ ସେ ତୀର୍ଥର
ବଶିଷ୍ଠ ଅପବାହ ନାମ ନରବର ।
ରହେ ସରସ୍ୱତୀ ବହିବା ରକ୍ତ ପିଇ
ଗୀତ ଗାଇ ନୃତ୍ୟ କଲେ ସେ ତୋଷ ବହି ।
ଦଇବରେ ସେଠାକୁ ସ୍ନାନ କରିବାକୁ
ଋଷିକୁଳ ଆସିଲେ ବହି ପ୍ରମୋଦକୁ ।
ସରସ୍ୱତୀଙ୍କର ଜଳକୁ ରକ୍ତ ଦେଖି
କି ପାପ ହେଲା ବୋଲି ହୋଇଲେ ସେ ଦୁଃଖୀ ।
ତାଙ୍କର ସେ ରକ୍ତପ୍ରବାହ ନାଶ ପାଇଁ
ବହୁତ ଉପାୟ ସେ କଲେ ନରସାଇଁ ।
ନଦୀକି ବୋଇଲେ ହେ କାହିଁକି ରକତ
ହୋଇ ବହୁଅଛ ତା ଆମ୍ଭଙ୍କୁ କହ ତ ।
ସେ ନଦୀ ବିଶ୍ୱାମିତ୍ର ଶାପ ଦେବା ରୀତ
ଯାଇ ତାଙ୍କ ଆଗେ କହିଲେ ବହି ପ୍ରୀତି ।
ଋଷିଏ ତା ଶୁଣି ବୋଇଲେ ଏ ଶାପରୁ
ତାରିବୁଁ ତୁମ୍ଭଙ୍କୁ ହେ ନୁହ କିଛି ଭିରୁ ।
ଏରୂପେ ସରସ୍ୱତୀ ଆଗେ ଋଷିଗଣ
କହିଣ ଶିବଙ୍କୁ ସେବିଲେ ଗସ୍ତେ ଜାଣ ।
ଋଷିଙ୍କର ତପଃପ୍ରଭାବରେ ସ୍ୱରସତୀ
ପୂର୍ବପରି ଜଳ ବହିଲେ ନରପତି ।

ରାକ୍ଷସ ଦେଖି ସରସ୍ୱତୀଙ୍କି ନିଷ୍ପାପ
କହିଲେ ସେ ଋଷିଙ୍କି ସନ୍ତୋଷେ ଅମାପ ।
ପାପ କରି ବ୍ରହ୍ମରାକ୍ଷସଯୋନି ପାଇ
ବଞ୍ଚୁ ଅଛୁଁ ଆମ୍ଭେ ରକତ ମାଂସ ଖାଇ ।
ଏହା ଜାଣି ହୋଇ ଧରମ-ପରାୟଣ
ଆମ୍ଭଙ୍କୁ ଉଦ୍ଧର ହେ ସର୍ବ ଋଷିଗଣ ।
ରାକ୍ଷସଙ୍କ ମୁଖରୁ ଶୁଣିଣ ଏ ବାଣୀ
ସ୍ତୁତି କଲେ ସରସ୍ୱତୀଙ୍କି ଋଷିଶ୍ରେଣୀ ।
ସରସ୍ୱତୀ ଜାଣି ସେ ଋଷିଙ୍କର ମତ
ଅରୁଣବର୍ଣ୍ଣ ହୋଇଲେ ହେ ନୃପସୁତ ।
ରାକ୍ଷସେ ଅରୁଣାଜଳେ ସ୍ନାନ କରି
ଦେହକୁ ତ୍ୟଜି କରି ଗଲେ ସ୍ୱର୍ଗପୁରୀ ।
ଇନ୍ଦ୍ର ମଧ୍ୟ କରୁଣାଜଳେ ସ୍ନାନ କଲେ
ବ୍ରହ୍ମହତ୍ୟାରୁ ଟି ରାଜନ ମୁକ୍ତ ହେଲେ ।
ଜନ୍ମେଜୟ ବୋଇଲେ ବ୍ରହ୍ମହତ୍ୟା-ଦୋଷ
କାହିଁପାଇଁ ଅର୍ଜିଲେ କହ ତ ଶଚୀଶ ।
ବଇଶମ୍ପାୟନ ବୋଇଲେ ନରସାଇଁ
ନମୁଚି ଇନ୍ଦ୍ର ସକାଶରୁ ଭୟ ପାଇ ।
ସୂର୍ଯ୍ୟଙ୍କର କିରଣେ ହୋଇଲେ ଗୁପତ
ଜାଣି ନ ପାରିବେ ତା ବୋ'ଲି ପୁରୁହୂତ ।
ପୁଣି କେତେ ଦିନ ଉତ୍ତାରୁ ପ୍ରୀତ କଲେ
ଇନ୍ଦ୍ରଙ୍କୁ ସେ ନମୁଚି ଏ ବର ମାଗିଲେ ।
ଶୁଷ୍କ ଆର୍ଦ୍ର ଦ୍ରବ୍ୟେ କି ଦିବା ରାତ୍ରେ ପ୍ରାଣ
ଘେନ ନ ପାରିବେ ମୋ ତ୍ରିଲୋକେ କେ ଜାଣ
ଏ କଥା ଶୁଣି କରି ଇନ୍ଦ୍ର ମହାବାହୁ
ବୋଇଲେ ଯା ବୋଲୁଛ ଅନ୍ୟଥା ସେ ନୋହୁ
ସନ୍ଧ୍ୟାକାଳେ ଜଳଫେନରେ ନମୁଚିର
ଶିରକୁ ହରିଲେ କପଟରେ ପୁରନ୍ଦର ।
ସେ ଛିନ୍ନମୁଣ୍ଡ ଇନ୍ଦ୍ରଙ୍କର ତୁଲେ ବୁଲେ
ରହି "ହେ ମିତ୍ରଘାତି" ବୋଲେ ସବୁବେଳେ ।
ଇନ୍ଦ୍ର ସେ ସକାଶରୁ ସନ୍ତପତ ହୋଇ
ବ୍ରହ୍ମାଙ୍କ ଆଗରେ ଗୁହାରି କଲେ ଯାଇ ।
ବ୍ରହ୍ମା ତାହାକୁ ଶୁଣି ଲଭିଣ କରୁଣା
ବୋଇଲେ ଯାଇ ସ୍ନାନ କର ହେ ଅରୁଣା ।
ଇନ୍ଦ୍ର ସେହିକ୍ଷଣି ଯେ ଅରୁଣାକୁ ଆସି
ସ୍ନାନ ଦାନକୁ କରି ପାତକ ବିନାଶି ।

ହୃଷ୍ଟମନ ହୋଇଣ ଗଲେ ସ୍ୱର୍ଗପୁର
ଆଦର କଲେ ଦେଖି ତାଙ୍କୁ ସବୁ ସୁର ।
ନମୁଚିର ମୁଣ୍ଡ ତ ସଙ୍ଗତରେ ଥିଲା
ସେ ମଧ୍ୟ ସ୍ନାନ ସାରି ସ୍ୱର୍ଗପୁର ଗଲା ।
ବଳଦେବ ସେ ତୀର୍ଥେ କରି ସ୍ନାନ ଦାନ
ସୋମଙ୍କର ତୀର୍ଥକୁ ଗଲେ ହେ ରାଜନ ।
ଅଗ୍ନିଙ୍କି ହୋତା କରି ତହିଁ ସୋମଦେବ
ପୂର୍ବେ ଯାଗକୁ କରିଥିଲେ ବହୁ ଭାବ ।
ସେ ଯାଗପ୍ରାନ୍ତେ ତହିଁ ତାରକକୁ ବଧ
କରିଲେ ସେନାପତି ସ୍କନ୍ଦ କରି ଯୁଦ୍ଧ ।
ଜନ୍ମେଜୟ ବୋଇଲେ ସ୍କନ୍ଦ ସେନାପତି
କରୂପେ ହୋଇଲେ କହ ତ ମୋତେ ଯତି ।
ବଇଶମ୍ପାୟନ ବୋଇଲେ ନରଈଶ
ପୁଚ୍ଛୁଛ ମୋତେ ଯାହା, କରି ସବିଶେଷ ।
ତୁମ୍ଭଙ୍କୁ ତାହା ଏବେ କହିବା ବତାଇ
ସେ ସ୍କନ୍ଦଙ୍କର ଜନ୍ମ ଅଭିଷେକ ଦୁଇ ।
ମହାଦେବଙ୍କ ରେତ ପଡ଼ିଲା ଅଗ୍ନିରେ
ଅଗ୍ନି ଭକ୍ଷି ନ ପାରିଲେ ତାହା ତେଜରେ ।
ବ୍ରହ୍ମାଙ୍କ ବୋଲେ ଅଗ୍ନି ଶିବ-ବୀର୍ଯ୍ୟ ନେଇ
ଗଙ୍ଗାଜଳେ ପକାଇଲେ ହେ ନରସାଇଁ ।
ଗଙ୍ଗା ଗର୍ଭେ ସେ ବୀର୍ଯ୍ୟ ଧରି ନ ପାରିଲେ
ହିମାଳୟ ପର୍ବତ ମଧ୍ୟରେ ଥୋଇଲେ ।
ହିମାଳୟ ଶରସ୍ତମ୍ଭରେ ସେ ଗର୍ଭଟି
ପଡ଼ି ଲେଖା ହେଲେ ପ୍ରଳୟ ଅଗ୍ନିକତି ।
କୃତ୍ତିକାଏ ତା ଦେଖି ମହାସୁଖୀ ହେଲେ
ଏ ତ ଆମ୍ଭର ପୁତ୍ର ବୋଲି କରି ଗଲେ ।
କୃତ୍ତିକାଙ୍କ ଅଭିପ୍ରାୟ ସେ ବାଳକଟି
ଜାଣିକରିଣ କଲେ ମୁଖ ଛଅ ଗୋଟି ।
ସେ ଛଅ ମୁଖେ ଛଅ ସ୍ତ୍ରୀଙ୍କ ସ୍ତନପାନ
କରି ତୋଷ କଲେ ସେ ତାହାଙ୍କର ମନ ।
ଯେଉଁ ପର୍ବତେ ପଡ଼ିଥିଲେ ସେ ତନୟ
ସେ ପର୍ବତଟି ହୋଇଗଲା ହେମମୟ ।
ଗାଙ୍ଗେୟ କାର୍ତ୍ତିକେୟ ଶିବଙ୍କ ପୁତ୍ରଟି
ବୋଲାଇଲେ ବହିଣ ମୁଖ ଛଅ ଗୋଟି ।
ମୁନିଏ ଗନ୍ଧର୍ବମାନଙ୍କୁ ଘେନି ତୁଲେ
କାର୍ତ୍ତିକେୟ ଜନ୍ମଗିରିକି ପୂଜା କଲେ ।
ଦେବକନ୍ୟାମାନେ ସହସ୍ର ସଂଖ୍ୟା ହୋଇ
ବଜାଇ ବାଦ୍ୟ ନୃତ୍ୟ କଲେ ନରସାଇଁ ।
ଗଙ୍ଗା ମୁହା କାର୍ତ୍ତିକେୟଙ୍କର ଶୋଭାକୁ
ଦେଖିବାକୁ ଆସିଲେ ପୁଣି ସେହିଠାକୁ ।
ବୃହସ୍ପତି କାର୍ତ୍ତିକେୟ ଜାତକର୍ମ
ଯଥାବିଧାନରେ କଲେ ହେ ନୃପୋତ୍ତମ ।
ଚାରିବେଦ ଶାସ୍ତ୍ରର ଧନୁର୍ବେଦ ଯାକ
ରହିଲେ ଆସି ହୃଦେ ଭାବନ୍ତେ ବାଳକ ।
ସରସ୍ୱତୀ ତାହାଙ୍କ କଣ୍ଠଦେଶେ ଆସି
ବସିଲେ ହେ ରାଜନ ମନେ ହୋଇ ତୋଷୀ ।
ଶିବ ତା ଜାଣିପାରି ପାର୍ବତୀଙ୍କ ତୁଲେ
ଦେଖିବା ପୁତ୍ର ବୋଲି ସେଠାକୁ ଆସିଲେ ।
ଶିବତୁଲେ ତ ଭୂତ ପ୍ରେତ ଥିଲେ ଆସି
ସେ ରୂପ ରାଜନ କହିବା କେତେ ବସି ।
ମହାଭୟଙ୍କର ବୋଲନ୍ତି ମନେ ଘେନ
ଦେଖିଲେ ବୁଜ ହେବ ପ୍ରାଣୀଙ୍କ ନୟନ ।
ସପ୍ତମାତୃକାଗଣ କାର୍ତ୍ତିକେୟ ପାଶେ
ପରିବେଶ ହୋଇଲେ ଆସିଣ ହରଷେ ।
ସାଧ୍ୟ ବିଶ୍ୱ ବସୁ ଯେ ମରୁତ ଭୁଜଙ୍ଗ
ଆଦିତ୍ୟ ରୁଦ୍ର ପିତୃ ଦନୁସୁତ ଖଗ ।
ଏମାନେ କାର୍ତ୍ତିକେୟ ପାଶକୁ ଆସିଲେ
ତୁମ୍ଭ ପରି କୁମର ନଥିବ ବୋଇଲେ ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଦେବଙ୍କୁ ଘେନି ତୁଲେ
କାର୍ତ୍ତିକେୟ ଜନମ ଦେଖିଣ ଆସିଲେ ।
ଦେବ ଋଷି ଗନ୍ଧର୍ବ ସିଦ୍ଧ ପିତୃ ଯମ
ଆସିଲେ ଜାଣି ଷଡ଼ମୁଖଙ୍କ ବିକ୍ରମ ।
କାର୍ତ୍ତିକେୟ ଶିବ ପାଶକୁ ଯିବାବେଳେ
ଅଗ୍ନି ଉମା ଗଙ୍ଗା ଭାବିଲେ ହୃଦସ୍ଥଳେ ।
ତାହା ଜାଣି କରି ରୂପକୁ ଚାରିଭାଗ
କଲେ ହେ ରାଜନ ଛମୁଖ ମହାଭାଗ ।
ସ୍କନ୍ଦ ଶାଖ ବିଶାଖ ନୈଗମେୟ ନାମ
ବହିଲେ ସେ ଚାରିଭାଗଟି ନୃପୋତ୍ତମ ।
ରୁଦ୍ରାଙ୍କଠାକୁ ସ୍କନ୍ଦ ଅଗ୍ନିଠାକୁ ଶାଖ
ବାହାରିଲେ ପ୍ରସନ୍ନ କରି ନିଜ ମୁଖ ।
ବିଶାଖ ନୈଗମେୟ ଉମା ଗଙ୍ଗା ଦୁଇ
ସମୀପକୁ ଗମିଲେ ମହାସୁଖ ପାଇ ।

ଶିବ ଅଗ୍ନି ଉମା ଗଙ୍ଗା ଯେ ବ୍ରହ୍ମା ପାଦେ
ନମିଲେ ହେ ରାଜନ ଅତ୍ୟନ୍ତ ପ୍ରମୋଦେ ।
ହୋଇଲେ ଶିବ ବ୍ରହ୍ମା ଆମ୍ଭ ଏ ପୁଅକୁ
ଦେବା ହେଉ ସନ୍ତୋଷେ ମହାଧିକାରକୁ ।
ବ୍ରହ୍ମା ତୋଷେ ମୂହୂର୍ତ୍ତେ ଧ୍ୟାନମଗ୍ନ ହେଲେ
ଐଶ୍ୱର୍ଯ୍ୟଯାକ ଦେଇ ସେନାପତି କଲେ ।
ଯେରୂପେ ଦେବସୈନ୍ୟ କଲେ ଅଭିଷେକ
ତା କହିବା ଶୁଣ ହେ ହସ୍ତିନା-ନାୟକ ।
ଅଭିଷେକ-ସମ୍ଭାର ବୃହସ୍ପତି କଲେ
ହିମାଳୟ-ଆସନେ ସ୍କନ୍ଦେ ବସାଇଲେ ।
ଅଗ୍ନି ଜାଳି କରିଣ ନଉଡ଼ିଲେ ଘିଅ
ହେବାକୁ କାର୍ତ୍ତିକେୟଙ୍କର ଶୁଭଚୟ ।
ବସି ବସୁ ରୁଦ୍ର ଇନ୍ଦ୍ରାଦି ଦିକ୍‌ପାଳକ—
ଯାକ ତହିଁ କଲେ ସ୍କନ୍ଦକୁ ଅଭିଷେକ ।
ପୂର୍ବେ ବରୁଣଙ୍କର ଅଭିଷେକ କରି
ସେ ଅଭିଷେକ ହେଲା ଜାଣ ଦଣ୍ଡଧାରୀ ।
କୁମୁଦମାଳୀ ଘଣ୍ଟାକର୍ଣ୍ଣ ଲୋହିତାକ୍ଷ
ନନ୍ଦୀସେନ ଶୁଣ ଯେ ପାରିଷଦ ମୁଖ୍ୟ ।
ବ୍ରହ୍ମା ସନ୍ତୋଷ ହୋଇ ଦେଲେ କୁମାରଙ୍କୁ
କରିବାକୁ ଦେବତାମାନଙ୍କ କାର୍ଯ୍ୟକୁ ।
ଦେବତାମାନେ ନିଜ ସେନା ସମର୍ପିଲେ
ତୁମ୍ଭଙ୍କୁ ସବୁ ଆଜୁଁ ଲାଗିଲା ବୋଇଲେ ।
ଉନମାଥ ପ୍ରମାଥ ସୁଭ୍ରାଜ ଭାସ୍ୱର
ଏ ପାରିଷଦ ଦେଲେ ଯମ ସ୍ଥାୟୀବର ।
ଚନ୍ଦ୍ରମଣି ସୁମଣି ଚନ୍ଦ୍ରଦେବ ଦେଲେ
ଏ ତୁମ୍ଭ ପାରିଷଦ ହୋଇବେ କହିଲେ ।
ଜ୍ୱାଳାଜିହ୍ୱ ଜ୍ୟୋତି ଦୁହିଁଙ୍କି ଅଗ୍ନି ଦେବ
ପାରିଷଦ କରିଣ ଦେଲେ ବହି ଭାବ ।
ବାୟୁ ଦେଲେ ପରିଘ ଦହତି ବଟ ଭୀମ
ଦହନ ଅଟଇ ଏସ ପଞ୍ଚଙ୍କର ନାମ ।
ଇନ୍ଦ୍ର ଦେଲେ ଉତ୍‌କ୍ରୋଶ ପଞ୍ଚକ ତାଙ୍କର
ନାମ ଅଟେ ସେ ଦୁହେଁ ବଜ୍ରଦଣ୍ଡଧର ।
ବିଷ୍ଣୁ ଦେବ ଯେ ଚକ୍ର ବିକ୍ରମ ସଂକ୍ରମ
ତିନିଙ୍କି ଦେଲେ ପାଳିବାକୁ ସୁରଗ୍ରାମ ।
ବର୍ଦ୍ଧନ ନନ୍ଦନଙ୍କୁ ଅଶ୍ୱିନୀକୁମାରେ
ସମର୍ପିଲେ ସ୍କନ୍ଦଙ୍କୁ ଅତି ତୋଷଭରେ ।

ଆଡ଼ମ୍ବର ଡମ୍ବର କୁମୁଦ କୁସୁମ
କୁନ୍ଦଙ୍କୁ ଦେଲେ ଧାତା ବହି ମନେ ପ୍ରେମ ।
ଚକ୍ର ଅନୁଚକ୍ର ଦୁହିଁଙ୍କି ତ୍ୱଷ୍ଟାଦେବ
ଦେଇଣ କଲେ କାର୍ତ୍ତିକେୟଙ୍କରେ ଭାବ ।
ସୁବ୍ରତ ସତ୍ୟସନ୍ଧେ ମିତ୍ରଦେବ ଦେଇ
ବହୁତ କହିଲେ ସେ ଷଣ୍ମୁଖଙ୍କୁ ଯାଇ ।
ଯମ ଅତିଯମ ଏ ଦୁହିଁଙ୍କି ବରୁଣ
ଦେଲେ କାର୍ତ୍ତିକଙ୍କୁ ହେବାକୁ ବଳ ଜାଣ ।
ସୁବର୍ଚ୍ଚସ ଅତିବର୍ଚ୍ଚସ ଏ ଦୁହିଁଙ୍କି
ହିମବାନ ଦେଲେ ବହିଣ ପୀରତିକି ।
କାଞ୍ଚନ ମେଘମାଳୀ ସ୍ଥିର ଯେ ଅସ୍ଥିର
ଏ ସ୍କନ୍ଦଙ୍କୁ ତ ଦେଲେ ମେରୁ ଗିରି ବର ।
ଉଚ୍ଛୃଙ୍ଗୀ ଅଶ୍ମଶୃଙ୍ଗୀଙ୍କୁ ବିନ୍ଧ୍ୟନଗ
ଦେଲେ ହୃଦମଧ୍ୟରେ ବହିଣ ସରାଗ ।
ସଂଗ୍ରହ ବିଗ୍ରହେ ସମୁଦ୍ର ସମର୍ପିଲେ
ମୁହିଁ ତୁମ୍ଭର ଆଜୁଁ ହୋଇବି ବୋଇଲେ ।
ଉନ୍ମାଦ ପୁଷ୍ପଦନ୍ତ ଶଙ୍କୁକର୍ଣ୍ଣ ବୀର
ତିନିଙ୍କି ଦେଲେ ଉମା ଲଭି ତୋଷଭର ।
ଜୟ ମହାଜୟଙ୍କୁ ଦେଇଣ ବାସୁକି
କହିଲେ କାର୍ତ୍ତିକେୟ ଦେବତାଙ୍କୁ ଟେକି ।
ସାଧ୍ୟ ବସୁ ସାଗର ନଦୀ ରୁଦ୍ର ସୈନ୍ୟ—
ମାନଙ୍କୁ ଦେଇ ଦେଲେ ହୋଇଣ ସୁମନ ।
ସ୍କନ୍ଦଙ୍କ ସୈନିକଙ୍କ ନାମ ଜନ୍ମେଜୟ
କହିବା ଶୁଣ ଏବେ ଦେଇଣ ହୃଦୟ ।
ଶଙ୍କୁକର୍ଣ୍ଣ ଅକ୍ଷ ନିକୁମ୍ଭ ଉପକୃଷ୍ଣ ।
ଧୂର୍ଦ୍ଦଣ୍ଡଭୁଜ ପଦ୍ମ ଘ୍ରାଣଶ୍ରବା କୃଷ୍ଣ ।
ତମୋଭ୍ରକୃତ କପିସ୍କନ୍ଦ କାଞ୍ଚନାକ୍ଷ
କୁମୁଦ ଜଳନ୍ଧମ ଅନନ୍ତ ବ୍ୟାଘ୍ରାକ୍ଷ ।
ଅନନ୍ତ ସନ୍ତଜନ ବିକଟ ଏକାକ୍ଷ
କୁନଦୀକ ସହସ୍ର ବାହୁ ଦ୍ୱାଦଶାକ୍ଷ ।
ଶଇଳ କମ୍ପୀ ଧନୁର୍ବକ୍ତ୍ର ଜ୍ୱାଳାଜିହ୍ୱ
ବୃଷ ଉଦାରାକ୍ଷ ସୁବକ୍ତ୍ର ଉଷ୍ଟ୍ରଜିହ୍ୱ ।
କଳଙ୍କ ସୁପ୍ରଦ ପ୍ରାପ୍ତ ଦରଶନ
ଧୂମ୍ର ଶ୍ୱେତ କ୍ଷେମବାହ ଶତଲୋଚନ ।
ସିଦ୍ଧାର୍ଥ ଜଟୀ ସିଦ୍ଧପାତ୍ର ମେଘନାଦ
ମାରୁତ ଶନ ନନ୍ଦ ଗୋବିନ୍ଦ ବରଦ ।

ଉପନନ୍ଦ ମେଷପ୍ରବାହ ଅଷ୍ଟତାଳୀ
ଗୋବ୍ରଜ ବାଣ ଖଡ୍‌ଗ ପ୍ରହାସ ବୈତାଳୀ ।
ପଙ୍କଦିଗ୍‌ଧ ଶଶିର ସୁନାମା ବାତିକ
ରଣୋତ୍କଟ କପାଳ କଳନ୍ଦ ପ୍ରିୟକ ।
ବିଦ୍ୟୁତାକ୍ଷ ସ୍କନ୍ଦାକ୍ଷ ରଥାକ୍ଷ ଗାୟନ
କନକାପୀଡ଼ ଚତୁର୍ଦ୍ଦଂଷ୍ଟ୍ର ଆନନ୍ଦନ ।
ସମୁଦ୍ର ବେଗ କାଳକାକ୍ଷ ଖରବକ୍ତ୍ର
ଦେବଯାଜୀ ସୋମକ ମାର୍ଜାଳ ପଞ୍ଚବକ୍ତ୍ର ।
ଯଜ୍ଞବାହ ମଧୁର କଣଟି ହସନ
ମୁଣ୍ଡଗ୍ରୀବ ପ୍ରବାହ ଧରଣୀକମ୍ପନ ।
ଭୂତଳଉନ୍ମଥନ ଭୃହର ଭୃହାର
ଶିବଦେବ ବଡ଼ାଳ ମନମଥକର ।
ମଧୁବର୍ଣ୍ଣ କଲ ସୋଦର ସୁପ୍ରସାଦ
ସ୍ୱସ୍ତିବକ୍ତ୍ର ଶିକ୍ଷକ ଜାଠର ଧର୍ମଦ ।
ପାଣିକୂର୍ମ୍ମା ଚନ୍ଦ୍ରଭ ଶମ୍ବୁକ ଦଣ୍ଡବାହୁ
ପାଣ୍ଡୁଗଣ୍ଡ ସୁବକ୍ତ୍ର କୁମ୍ଭକ ସୁବାହୁ ।
ସମୁଦ୍ରସେନ ସଞ୍ଚାରକ କୋକନକ
ପାଣ୍ଡୁର ହଂସବକ୍ତ୍ର ଅଚଳ କୁଞ୍ଜକ ।
କାଳକାଷ୍ଠ କୁମ୍ଭବଦନ ଗୋଧାବକ୍ତ୍ର
କୋକନାଦ ଶଙ୍ଖବକ୍ତ୍ର ଶ୍ୱେତବକ୍ତ୍ର ।
ଜମ୍ବୁକ ଜବନକୃଷ୍ଣଓଜା ପ୍ରମୋଦକ
ବିଷ ଷାଳ ସମୁଦ୍ରୋନ୍ମାଦନ ସ୍ୱସ୍ତିକ ।
ଏ ପାରିଷଦଙ୍କର ନାନାଜାତି ମୁଖ
ଦେଖିବା ଲୋକ ଚିତ୍ତେ ଯୋଗେଇଥାଏ ଦୁଃଖ ।
ସିଂହ ମାତଙ୍ଗ ବ୍ୟାଘ୍ର ଗରୁଡ଼ ମଗର
କୁକୁର ଗାଈ ଛେଳି କୋକିଳ ମୟୂର ।
ତିତିର ପାରା କୁଆ ବଗଡ଼ ଏଣ୍ଡୁଅ
ମୁଖ ପରି ତାଙ୍କ ମୁଖ ହେ ଜନ୍ମେଜୟ ।
କେଉଁମାନଙ୍କର ବା ବାହାରିଛି ପେଟ
ହୋଇବ ସରି କଲେ କଟିକି କାଟୁ ପୋଟ ।
କେଉଁମାନଙ୍କର ବଢ଼ିଛି ଦୁଇବାହା
ପିଠିକି ଯାଇ ପେଟ ହୋଇଅଛି ସାହା ।
କେଉଁମାନଙ୍କର ବଢ଼ିଲା ଗ୍ରୀବା ସାନ
କୁଲା ପରିଏ ଦିଶୁଅଛି ଦୁଇ କାନ ।
ଅସ୍ଥିଧାତୁଙ୍କରେ କରଣ ଆଭରଣ
ମଣ୍ଡି ହୋଇଛନ୍ତି ଯେ ଯାହା ଅଙ୍ଗଘନ ।
ଗଜେନ୍ଦ୍ର ଚର୍ମ କୃଷ୍ଣଅଜିନ-ବସନ
କରିଛନ୍ତି ସେ କଟିଦେଶେ ପରିଧାନ ।
ଆହେ ଜନମେଜୟ ସ୍କନ୍ଧ ପେଟ ବୁକୁ—
ମାନଙ୍କର ତାଙ୍କର ବାହାରିଛି ମୁଖକୁ ।
ଏ ବାହାରେ ଯେ ପିଣ୍ଡ ପିଠି ଜଂଘ ପାଦ—
ମାନଙ୍କେ ମୁଖ ରହିବାରୁ ଭୟପ୍ରଦ ।
ପତଙ୍ଗ କୀଟ ସର୍ପ କରି ମୁଖଶିରି
ଦେଖିଲେ ଖାର ଧୈର୍ଯ୍ୟ ହିଏ ସେ କାତର ।
ପୁଣି ସେ ବାନ୍ଧିଛନ୍ତି ମସ୍ତକେ ମୁକୁଟ
ସେ ଦିଶେ ରତନ ଯୋଗରେ ଝଟ ଝଟ ।
କେତେ ବାନ୍ଧିଅଛନ୍ତି ଛତ୍ରସାହି ପାଗ
ଲୁଟିକରଣ ପୁଣ୍ଡରୀକ-ଶୋଭାଭାଗ ।
ଶତଘ୍ନୀ ପରିଘ ମୁଷଳ ତୋମର
ଚକ୍ର ଗଦା ଖଣ୍ଡା ଯେ ଭୁଷଣ୍ଡି ମୁଦ୍‌ଗର ।
ଏ ଆୟୁଧମାନଙ୍କୁ କରଦେଶେ ବାନ୍ଧି
କାର୍ତ୍ତିକେୟଦେବଙ୍କୁ ସେବା କଲେ ଯାଇ ।
ଏବେ ଶୁଣ ମାତୃକାଗଣଙ୍କର ନାମ
ହେ ଜନ୍ମେଜୟ ନରବରଙ୍କ ଉତ୍ତମ ।
ବିଶାଳାକ୍ଷୀ ପଳିତା ଗୋନସୀ ପ୍ରଭାବତୀ
ବହୁଳା ଅପ୍‌ସୁଜାତା ବିଶୋକା ଶ୍ରୀମତୀ ।
ଗୋପାଳୀ ବହୁପୁତ୍ରମାତା ମାତଲିକା
ଧ୍ରୁବରତ୍ନା ବସୁଦା ବୃହଦମ୍ବୁରିକା ।
ଚକ୍ରନେମିର ଉତ୍କ୍ରେଜୟା ଏକଚୂଡ଼ା
ଗୀତପ୍ରିୟା କଲ୍ୟାଣୀ କମଳା ମହାଚୂଡ଼ା ।
ମାଧବୀ ଶୁଭବକ୍ତ୍ରା ଶ୍ୟାମା ଜୟତ୍ସେନା
କମଳା ଅଚଳା ପ୍ରକ୍ଷାଳିକା ବିରୋଚନା ।
ଶତ୍ରୁଞ୍ଜୟା ଜୟପ୍ରିୟା ଶଲଭି ଶୋଧନା
କନକାବତୀ ସୁଭ୍ରୂ ସୁପ୍ରଭା ଶୋଣନା ।
ଅଲମ୍ବାକ୍ଷୀ ମହାଜବା ବୀର୍ଯ୍ୟବତୀ
ବିଦ୍ୟୁଜିହ୍ୱା ଅମିତଭୋଜନା ପଦ୍ମାବତୀ ।
ସନ୍ତାନିକା ଋଷା କଦମ୍ବ ସୁଦାମା
ଯଶସ୍ୱିନୀ ନୃତ୍ୟପ୍ରିୟା ବସୁଦାମା ।
ଜର୍ଜରାନନା ଶତଘଣ୍ଟା ସ୍ୱସ୍ତିମତୀ
ରମା ବହୁ ଯୋଜନା ଭାବିନୀ ବେଗବତୀ ।
ଦେବମିତ୍ରା ଶତାନନ୍ଦା ଜୟାବତୀ
ଶତଉଲୂଖଳ ମେଖଳା ବପୁଷ୍ମତୀ ।

ଭୂମ୍ୱାସୀ ଶକୁନକା ଭ୍ରମା ନସ୍କୁଟିକା
ମେଘସ୍ୱନା କୋଟବା ସୁଖଦା ସୁମଙ୍ଗଳା
ଖଂାଠା ବହ୍ନା ବୃଦ୍ଧିକାମା ଭଦ୍ରକାଳୀ
ଉବଦା ଜନେଶ୍ୱରୀ କେତକୀ ବୈତାଳୀ ।
ଶିଶୁମାରମୁଖୀ ଶୃଙ୍ଖଳକା କାମସ୍ୱରୀ
ଶୁଭଗା ଧରୀ ଖଣ୍ଡଖଣ୍ଡା ଶିତୋଦରୀ ।
ଏକଭବ ସୁପ୍ରତିଷ୍ଠା ଭୁଦ୍ମୁଣ୍ଡୀ ଯଶକାମା
ଲମ୍ବା ବସୁଚୂଡ଼ା କଙ୍କଣା ଧମଧମା ।
ମନୋଜବା ମୁକୁଟା ପିଙ୍ଗାକ୍ଷୀ କୁଣ୍ଡାଶକା
ଉତ୍କ୍ରୋଧିନୀ ତଡ଼ତ୍ପ୍ରଭା ନସ୍କୁଟିକା ।
ମଧୁକୁମ୍ଭା ବକଥିନୀ ମହାବଳା
ପୃଥୂଳବକତ୍ରା ମହାଧଣା ସୁବଣାଳା ।
ମେଘବାସିନୀ ଖରଜଙ୍ଘା ଉର୍ଦ୍ଧ୍ୱବେଣୀ
ଶତସେନା ବଷିରୀ ମଧୂଳକା ସ୍ୱାମୀ ।
କୃଷ୍ଣା ଦେବମିତ୍ରା ତତ୍ତ୍ୱରନବାସିନୀ
ଚନ୍ଦ୍ରଶୀଳା କାଳକା ବେତାଳଜନନୀ ।
ଶୋଭନା ତୀର୍ଥସେନା ଏଡ଼ୀ ମେଘସ୍ୱନା
ଭଗନନ୍ଦା ଅମ୍ବିକା ମନ୍ତ୍ରଷ-ଆନନା ।
ଜୟସୁ ଦନ୍ତଦହା ଲମ୍ବପୟୋଧରୀ
ଅଷ୍ଟବାମା କଣ୍ଟକୃତ ବେଣୁସ୍ୱାଣାଧରୀ ।
ଲୋହତାକ୍ଷୀ ମଣିକୁଟିକା ବଧ୍ୟାଷଣା
ଏଡ଼ୀ ଭେଡ଼ୀ ଅମୋଘ ଭଗଡା ପୂଷଣା ।
ଶ୍ୱେତା ଲୋହମେଖଳା ପଶୁଦା ବଳୋତ୍କଟା
ମହାବଳା ମକରଆନନା ମୁକୁଟା ।
ସୁକୁନ୍ଦମା କୃଷ୍ଣକର୍ଣ୍ଣା କ୍ଷୁରକର୍ଣ୍ଣୀ
କର୍ଣ୍ଣପ୍ରାବରଣା କାମଦା ଖରକର୍ଣ୍ଣୀ ।
ନୈକର୍ଣ୍ଣୀ ଏକବକତ୍ରା ସୁଗଣା ମହାକର୍ଣ୍ଣୀ
କୋଳେକ୍ଷକା ବାମଳକା ଯେ ଚତୁଷ୍କର୍ଣ୍ଣୀ ।
କଣ୍ଟକମୀ ଅନ୍ତର୍ଦ୍ଧା ସମେଡ଼ୀ ସୁଖଦା
ଚତୁଷ୍ପଥରତା ପୁଣି ଗୋକର୍ଣ୍ଣୀ ପୟୋଦା ।
ମହାକାୟୀ ଭେରୀସ୍ୱନା ଯେ ମହାସ୍ୱନା
ଶଙ୍ଖଶ୍ରବା ଲମ୍ବିନୀ ଗଣା ସୁରୋଚନା ।
ଚତୁଷ୍ପଥନକେତା ଗୋଦା ମନ୍ତ୍ରଷଦା
ଭୂତତୀର୍ଥା ଅନ୍ୟଗୋଚରୀ ସୁବଣଦା ।
ମହୋଦରୀ ହରପିଣ୍ଡା ଯେ କୋକନଦକା
କଦ୍ରୁବେମା ଦାର୍ଘଜହ୍ୱା ପ୍ରଘସା କୁମ୍ଭିକା ।

ଏମାନଙ୍କର ନାକ ଭୁଣ୍ଡ କାନ ବଡ଼
କଉଡ଼ି ପରି ଦଶଇ ଯେ ମେରୁଦାଢ଼ ।
ଗଜର ଶ୍ୱେତ ରକ୍ତ କଳା ଏହାଙ୍କର
ବରନ ଜାଣ ଆହେ ନୃପତି-ଶେଖର ।
ଯମ ରୁଦ୍ର ସୋମ କୁବେର କୁଶଧର
ବରୁଣ ଶଚୀପତି ବାତ ବୈଶ୍ୱାନର—
ଠାରୁ ଏ ମାତୃଗଣମାନେ ଉତ୍ପତ୍ତି
ମୋ କହିବାରୁ ଜାଣ ଆହେ ନରପତି ।
ଏମାନେ ରୁକ୍ଷ ଚତୁଷ୍ପଥ ଗୁହା ଗିରି
ଶ୍ମଶାନ-ଚତ୍ୱରରେ ଥାନ୍ତି ବାସ କରି ।
ଇନ୍ଦ୍ରଙ୍କ ସମ୍ମତେ ଏ ମାତୃଗଣମାନେ
ବାହାରିଲେ କାର୍ତ୍ତିକେୟଙ୍କ ପୃଷ୍ଠସ୍ଥାନେ ।
ଇନ୍ଦ୍ର କୁମାରଙ୍କୁ ଘଣ୍ଟାସ୍ତ ପତାକକୁ
ସମର୍ପି କହିଲେ ବହୁତ ପ୍ରମୋଦକୁ ।
ଶିବ ତିନ ଅଯୁତ ପୁତନ ସେନା ଦେଇ
କହିଲେ ବାବୁ ଶତ୍ରୁକୁଳ ଦଅ ଦହି ।
ବିଷ୍ଣୁ ବୈଜୟନ୍ତୀମାଳାକୁ ସମର୍ପିଲେ
ଏ ମାଳା ଥିଲେ ଜୟ ହୋଇବ ବୋଇଲେ
ଉମା ଅମ୍ଳାନବସ୍ତ୍ର ଦେଲେ କରେ ଧରି
କାର୍ତ୍ତିକେୟଙ୍କର ପିନ୍ଧିବା ଇଚ୍ଛା କରି ।
ଗଙ୍ଗା ଜଳପାନ କରିବେ ଇଚ୍ଛା କଲେ
କମଣ୍ଡଳୁକୁ ଦେଲେ କାର୍ତ୍ତିକେୟ-କରେ ।
ବୃହସ୍ପତି ଦଣ୍ଡକୁ ଦେଇଣ ବ୍ରହ୍ମାଣ୍ଡ
ଜଣ ବୋଲି ବୋଇଲେ ଫୁଲାଇଣ ପିଣ୍ଡ ।
ଗରୁଡ଼ ମୟୂରକୁ, ନାଗକୁ ବରୁଣ
ବ୍ରହ୍ମା କୃଷ୍ଣଅଜନ, କୁକ୍କୁଟ ଅରୁଣ ।
ଦେଇ କାର୍ତ୍ତିକେୟଙ୍କୁ କହି ମହାପ୍ରୀତି
ବୋଇଲେ ଆମ୍ଭ ସୈନ୍ୟତୁମ୍ଭେ ସେନାପତି ।
ସ୍କନ୍ଦ ଏବେ ସୈନ୍ୟର ସେନାପତି ହୋଇ
ପ୍ରଳୟାଗ୍ନି-ପ୍ରଭ ଶୋଭରେ ଦେଇ ଦହି ।
ମାତୃଗଣ ପାରିଷଦଙ୍କୁ ଘେନ ସଙ୍ଗେ ।
ବାହାରିଲେ ଯେ କାର୍ତ୍ତିକେୟ ରଣରଙ୍ଗେ ।
ଭେରୀ ଶଙ୍ଖ ପଣବ ଖଞ୍ଜଣୀ ଝର୍ଝର
ଗୋବିଷାଣ ଗୋମୁଖ ଡିଣ୍ଡିମ ଆଡ଼ମ୍ବର ।
ଏମାନଙ୍କୁ ଯେ ଗଣମାନେ ବଜାଇଲେ
କାର୍ତ୍ତିକେୟଦେବଙ୍କ ମନ ରଞ୍ଜାଇଲେ ।

ଦେବେ ସ୍ତୁତି କରନ୍ତି ଅପସରାପନ୍ତି
ନାଚିଲେ ମାନସଂର ବହୁ ଅତି ପ୍ରୀତି ।
ଗନ୍ଧର୍ବମାନେ ତାହା ଦେଖି ଗାଉ ଗୀତ
ବଜାଇଲେ ମୃଦଙ୍ଗ ପୁଡ଼ାରେ ଦେଇ ହସ୍ତ ।
କାର୍ତ୍ତିକେୟ ଏହା ଶୁଣିଣ ହୋଇ ସୁଖୀ
ବୋଇଲେ ଦେବେ ଆଜୁଁ ନୁହ ତୁମ୍ଭେ ଦୁଃଖୀ
ଦେବେ କାର୍ତ୍ତିକେୟଙ୍କ ଠାରୁ ଏ ବଚନ
ଶୁଣିଣ ମନେ କଲେ ମଲେ ଶତ୍ରୁ ସୈନ୍ୟ ।
ଅଗ୍ରେ ଗଲେ ଜୟ ଧରମ ସିଦ୍ଧି ଧୃତି
ଲକ୍ଷ୍ମୀ ସ୍ତୁତି କାର୍ତ୍ତିକେୟଙ୍କୁ ବହୁ ପ୍ରୀତି ।
କାର୍ତ୍ତିକେୟଙ୍କର ପ୍ରଭାକୁ ଦେଖି ଦୈତ୍ୟେ
ପଳାଇଲେ ଯୁଦ୍ଧଭାଣ୍ଡରେ ଭୟଚିତ୍ତେ ।
ସ୍କନ୍ଦ ଦୈତ୍ୟସେନାମାନଙ୍କୁ ନୋସ ଦେଖି
ଫିଙ୍ଗିଲେ କର ଟେକି ଶକ୍ତି ହୋଇ ସୁଖୀ ।
ଏଥୁଅନନ୍ତରେ କାର୍ତ୍ତିକେୟ ମହାଦେବ
ତାରକକୁ ଦେଲେ ଯମଙ୍କ ପୁରେ ଠାବ ।
ତା କୁଳରେ ଦଶ ଅୟୁତ ପ୍ରାଣ ଘେନ
ହେଲେ ସେ ଦେବତାମାନଙ୍କ ପୂଜାସ୍ଥାନୀ ।
ଅଷ୍ଟପଦ୍ମ ଦୈତ୍ୟ ସଙ୍ଗତେ ମହିଷକୁ
ଦେଖାଇଲେ ମଧ୍ୟ ସେ ଯମ-ନଗରକୁ ।
ଦଶଶତ ଅୟୁତ ସଙ୍ଗତେ ତ୍ରିପାଦ
ଦୈତ୍ୟ ଥିଲା, ତାହାର ହେଲେ ମୃତ୍ୟୁପ୍ରଦ ।
ହ୍ରଦୋଦର ଦଶ ନିଖର୍ବ ଦୈତ୍ୟକୁଳେ
ଯୁଝୁଥିଲା ତାହାକୁ ଯୁଦ୍ଧେ ସେ ମାଇଲେ ।
ଏହା ଦେଖି ଶତସହସ୍ରସଂଖ୍ୟା ଦୈତ୍ୟ
ପଳାଇଲେ ରାଜନ ହୋଇଣ ତ୍ରସ୍ତ ।
କାର୍ତ୍ତିକେୟ ବୀରଙ୍କ ଅନୁଚରମାନେ
ନୃତ୍ୟ କଲେ ରାଜନ ହର୍ଷେ ଯୁଦ୍ଧସ୍ଥାନେ ।
କାର୍ତ୍ତିକେୟଙ୍କର ଯେ ରଥର ପତାକା
ଥୋଇଲା ଦୈତ୍ୟ ଦାନବଙ୍କ ହୃଦେ ଦକା ।
କେତେ ଦଇତ ଶୁଣି ଘଣ୍ଟାର ନିଃସ୍ୱନ
ପ୍ରାଣକୁ କଲେ କାର୍ତ୍ତିକେୟଙ୍କ ଅଧୀନ ।
ବାଣ ସେ ସମୟରେ କ୍ରୌଞ୍ଚପର୍ବତରେ
ଥାଇଣ ଯୁଦ୍ଧ କଲା ସୁରଙ୍କ ସଙ୍ଗରେ ।
କାର୍ତ୍ତିକେୟ ବୀର ଯେ ତାହା ଜାଣିପାରି
ବାହାରିଲେ ସେଠାରୁ ବାଣାସୁର ମାରି ।
କାର୍ତ୍ତିକେୟ ଆସିବା ଜାଣି ବାଣାସୁର
କ୍ରୌଞ୍ଚଗିରି ମଧ୍ୟେ ଲୁଚିଲା ନରବର ।
କାର୍ତ୍ତିକେୟ ତା ଦେଖିଣ କ୍ରୋଧ ହେଲେ
ଅଗ୍ନି ଦେବା ଶକ୍ତିକି କ୍ରୌଞ୍ଚକୁ ଫିଙ୍ଗିଲେ ।
ସେ ଶକତି କ୍ରୌଞ୍ଚକୁ ଆସିବାର ଜାଣି
ପଳାଇଲେ କ୍ରୌଞ୍ଚରେ ଥିବା ପଶୁଶ୍ରେଣୀ ।
ଏ ବାହାରେ ଦୈତ୍ୟ ଦାନବ ଯେତେଥିଲେ
ସେ ଗିରି ଛାଡ଼ି ଆନ ଗିରି ଆଶ୍ରେ କଲେ ।
କାର୍ତ୍ତିକେୟଙ୍କର ସେ ଅନୁଚରଯାକ
ଯୁଦ୍ଧ କରି ତାହାଙ୍କ ରଖିଲେ ଆତଙ୍କ ।
କାର୍ତ୍ତିକେୟଙ୍କ ଶକ୍ତି କ୍ରୌଞ୍ଚଗିରି ଫୁଟି
ବାଣକୁ ବୋଇଲା ତୁ ଯମେ ଯାଅ ଭେଟି ।
ସେହିକାଳେ ଦେବେ ଥାଇଣ ଆକାଶରେ
ପୁଷ୍ପବୃଷ୍ଟି କଲେ ସ୍କନ୍ଦଙ୍କ ମସ୍ତକରେ ।
ମନ୍ଦ ଶୀତ ଗନ୍ଧ ସହିତ ହୋଇ ବାତ
ବହିଣ ତୋଷ କଲା ସ୍କନ୍ଦଙ୍କର ଚିତ୍ତ ।
କାର୍ତ୍ତିକେୟ ଦେବଙ୍କୁ ବ୍ରହ୍ମାଙ୍କ କୁମର
ସନତ୍କୁମାର ବୋଲନ୍ତି ନରବର ।
ଅଗ୍ନି ଗଙ୍ଗା ଉମା କୃତ୍ତିକା ଶିବଙ୍କର
ସୂତ ବୋଲି ବୋଲନ୍ତି ସ୍କନ୍ଦେ ମନେକର ।
ଏଥିରେ ଯେ କାରଣ ବସି ତୁମ୍ଭ ଆଗେ
କହିଲି ହେ ରାଜନ ଶୁଣିଲ ସରାଗେ ।
ଏବେ ଶୁଣ ସରସ୍ୱତୀଙ୍କ ମହାତମ୍ୟ
ଆହେ ଜନମେଜୟ ନରଙ୍କ ଉତ୍ତମ ।
ସରସ୍ୱତୀ ତୀର୍ଥେ କୁମାର ଅଭିଷେକ
ହେବାରୁ ସେ ତୀର୍ଥେ ମାନନ୍ତି ତିନଲୋକ ।
କାର୍ତ୍ତିକେୟ ଯେ ଅଭିଷେକ ହେଲେ ତହିଁ
ହେଲେ ଲୋକେ ତୈଜସତୀର୍ଥ ବୋଲି କହି ।
ବରୁଣଙ୍କୁ ପୂର୍ବେ ଦେବେ ସେ ସରସ୍ୱତୀ
ତୀର୍ଥେ ଅଭିଷେକ କଲେଟି ବହୁ ପ୍ରୀତି ।
ସେହି ତୀର୍ଥରେ ରାମ ସ୍ନାନ ଦାନ ସାରି
କାର୍ତ୍ତିକେୟଦେବେ ମୂହୂର୍ତ୍ତେ ଧ୍ୟାନ କରି ।
ରଜନୀକ ସେଠାରେ ପୁହାଇ ରାଜନ
ଆନ ତୀର୍ଥେ ଯିବାକୁ କଲେ ବସି ମନ ।
ଏଠାରେ ସ୍କନ୍ଦ ଅଭିଷେକ ସମାପତି
ହୋଇଲା କହେ କୃଷ୍ଣସିଂହ ନରପତି ।

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହିଲ ତ କୁମାରଅଭିଷେକ ବିଧାନ ।
ବରୁଣଙ୍କୁ ତହିଁ କରୁପ୍ରେ ଅଭିଷେକ
କଲେ ତାହା କହ ହେ ନୃମିଙ୍କ ନାୟକ ।
ବଇଶମ୍ପାୟନ ବୋଇଲେ ନରପତି
ଶୁଣ ତାହା କହିବା ଦେଇକରି ମତି ।
ସତ୍ୟଯୁଗେ ଦେବେ ବରୁଣ ପାଶେ ଗଲେ
ଜଳପତି ହୁଅ ହେ ବୋଲିଣ ବୋଇଲେ ।
ଯେବେ ତୁମ୍ଭେ ସମୁଦ୍ରେ ହୋଇବ ନାୟକ
ତେବେ ନାଶ ନ ଯିବ ଜାଣ ଜଳଲୋକ ।
ଚନ୍ଦ୍ରଙ୍କୁ ସ୍ପର୍ଶି ସମୁଦ୍ରଙ୍କ ହ୍ରାସ ବୃଦ୍ଧି
କରିବ ତୁମ୍ଭେ ଥାଇଁ କରିଣ ପ୍ରସିଦ୍ଧି ।
ବରୁଣ ତାହା ଶୁଣି ଅଳପ ହସିଲେ
ହୋଇବି ଜଳପତି ବୋଲିଣ ଭାଷିଲେ ।
ଦେବେ ବରୁଣଙ୍କର ଜାଣି ସ୍ୱୀକାର
ଅଭିଷିକ୍ତ କଲେ କରିଣ ଜଳେଶ୍ୱର ।
ବରୁଣଙ୍କୁ ଯେ ଅଭିଷେକ କରି ଦେବେ
ତ୍ରିପିଷ୍ଟପେ ଗମିଲେ ଧାପେ ହୃଦଭାବେ ।
ଅଭିଷେକ ଅନ୍ତେ ବରୁଣ ମହାମନା
କଲେ ଜଳାଶୟମାନଙ୍କୁଟି ପାଳନା ।
ବଳଦେବ ବରୁଣ-ଅଭିଷେକ-ସ୍ଥାନେ
ସ୍ନାନ ଦାନକୁ ସାରିକରି ତୋଷମନେ ।
ଅଗ୍ନିଙ୍କର ତୀର୍ଥକୁ ଗଲେ ବେଗ ହୋଇ
ତହିଁରେ ନିଜ ଦେହ ପୂତ ହେବାପାଇଁ ।
ସେ ଅଗ୍ନିତୀର୍ଥରେଟି ଅଗ୍ନି ଶମୀଗର୍ଭେ
ଆଶ୍ରୟ କରି ହେଲେ ଜନଙ୍କୁ ଦୁର୍ଲ୍ଲଭ ।
ଦେବେ ତା ଜାଣିପାରି ବ୍ରହ୍ମା ପାଶେ ଗଲେ
ଅଗ୍ନିଙ୍କ ପିତାମହ ସମ୍ବାଦ ବୋଇଲେ ।
ଅଗ୍ନି ନାଶ ଗଲେ ତ୍ରିଭୁବନ ବିନାଶ
ଯିବା କଥା ଆସି ହେଲାଟି ପରବେଶ ।
ଜନ୍ମେଜୟ ବୋଇଲେ ଅଗ୍ନି କାହିଁପାଇଁ
ଲୁଚିଲେ ଶମୀଗର୍ଭେ କହ ତ ବତାଇ ।
ବଇଶମ୍ପାୟନ ବୋଇଲେ ଭୃଗୁଶାପ
ପାଇ ଅଗ୍ନିଦେବ ଲଭିଲେ ମହାତାପ ।
ଶମୀର ଗର୍ଭରେ ଲୁଚିଲେ ନରଧାଇଁ
ଏ ସଂସାରଙ୍କର ହୃଦରୁ ଛାଡ଼ିଦେଇ ।

ଦେବତା ଅଗ୍ନି-ନାଶ ଦେଖିଣ ବ୍ରହ୍ମାଙ୍କୁ
ଗୁହାରି କଲେ, ବ୍ରହ୍ମା କହିଲେ ତାହାଙ୍କୁ ।
ଶମୀଗଛ ଗର୍ଭେ ଅଛନ୍ତି ଅଗ୍ନି ରହି
ମୋ ବୋଲେ ଏବେ ତୁମ୍ଭେ ଦେଖ ତାଙ୍କୁ ଯାଇ
ବ୍ରହ୍ମାଙ୍କ ବୋଲେ ଦେବେ ଅଗ୍ନି ତୀର୍ଥେ ଗଲେ
ଶମୀବୃକ୍ଷରେ ଅଗ୍ନି ଅଛନ୍ତି ଦେଖିଲେ ।
ଅଗ୍ନିଙ୍କି ଅଣାଇ ବିଅନ୍ତେ ଦେବେ ବର
ସର୍ବଭକ୍ଷ୍ୟ ହେଲେ ସେଦିନୁଁ ବୈଶ୍ୱାନର ।
ସେ ତୀର୍ଥେ ସ୍ନାନ ଦାନ ଧଳାରୂପଧାରୀ
କରି ଗଲେ କୌବେରତୀର୍ଥକୁ ବାହାରି ।
କୁବେର ସେ ତୀର୍ଥେ ତପସ୍ୟା ପୂର୍ବେ କଲେ
ବର ପାଇ ଧନର ଅଧିପତି ହେଲେ ।
ସେ ତୀର୍ଥରେ ଥାଇଣ ନଳକୁବେରଙ୍କୁ
ପ୍ରାପ୍ତ ହେଲେ କୁବେର କହୁଛି ତୁମ୍ଭଙ୍କୁ ।
ହଂସଯୁକ୍ତ ପୁଷ୍ପକବିମାନଙ୍କୁ ପାଇ
ବିହାରିଲେ କୁବେରଦେବ ତୋଷେ ବହି ।
କୁବେରତୀର୍ଥେ ବଳଦେବ ଦେଇ ଦାନ
ମିଳିଲେ ଯାଇ ତୀର୍ଥ ବଦରପାଚନ ।
ଭରଦ୍ୱାଜଙ୍କର ଝିଅ ଯେ ଶ୍ରୁତାବତୀ
ତହିଁ ତପ କଲେ ହେବାକୁ ଇନ୍ଦ୍ର ପତି ।
ଶ୍ରୁତାବତୀ-ତପସ୍ୟା ଜାଣି ବଜ୍ରଧାରୀ
ଆସିଲେ ସେଠାକୁ ବଶିଷ୍ଠରୂପ ଧରି ।
ଶ୍ରୁତାବତୀ ମାୟା-ବଶିଷ୍ଠେ ଦେଖି ନେହେ
ପୂଜା କଲେ ସଜନ ତରିବା ନିମିତ୍ତେ ।
ବୋଇଲେ କିପାଇଁ ଆସିଛ ମୁନିବର
କହିଲେ ମୁଁ ତାହା କରିବି ତତପର ।
କେବଳ କହୁଛି ଇନ୍ଦ୍ରଙ୍କ ବିନା ମୁହିଁ
ଆନେ କରିବାକୁ ମୋ ମନ ହେଉ ନାହିଁ ।
ଏହା ଛାଡ଼ି ଯାହା ବୋଲିବ ମୁନିବର
ତାହା ମୁହିଁ କରିବି ଏ ସତ୍ୟ ମୋହର ।
ବଶିଷ୍ଠ ବୋଇଲେ କରିଛୁ ମନେ ଯାହା
ଆଗେ ନବନାଗରୀ, ଜାଣିଲି ମୁଁ ତାହା ।
ଇନ୍ଦ୍ର ନିକଟରେ ହୋଇବେ ତୋର ବର
ଏଥିକି ମନେ କିଛି ଶୋଚନା ନ କର ।
ତପସ୍ୟା କଲେ ସବୁକାର୍ଯ୍ୟ ହୋଏ ସିଦ୍ଧି
ଶାସ୍ତ୍ରରେ ଏହା ସବୁ ଲେଖିଛନ୍ତି ବିଧି ।

ବରକୋଳଗଛ ତ ଟୋ ଆଗେ ଉହ୍ନିଛି
ତାହାର ଫଳ ପାକ କର ଟୋ ମୃଗାକ୍ଷି ।
ଇନ୍ଦ୍ରଙ୍କୁ କରିବାକୁ ତୋର ପ୍ରାଣପତି
ଯେତେ ତୁ ଇଚ୍ଛା କରିଅଛୁ ରେ ସୁମତି ।
ତେବେ ମୋର ବୋଲିବା କଥାଟି ଆଚର
କାମବ୍ୟଥା ଯେ ଅଛି ହୃଦୁଁ ହେବ ଦୂର ।
ଏହା କହିଣ ମାୟା-ବଶିଷ୍ଠ ବାହାର
ଗଲେ ସେହିକ୍ଷଣି ସେଠାରୁ ଦଣ୍ଡଧାର ।
ଏଥନ୍ତେ ଶ୍ରୁତାବତୀ କୋଳ କଲେ ପାକ
ଛଦ୍ମ ଆଚରିଲେ ଯେ ଶଚୀଙ୍କ ନାୟକ ।
ସେ ସକାଶୁଁ କାଠଯାକକୁ ତରୁଣୀ
ସେ ବଚନରେ ଜାଳ ହାଳିଯା ହେଲେ ପୁଣି ।
ଧୈର୍ଯ୍ୟମନ ହୋଇଣ ସେ ନବୀନା ବାଳୀ
ଗୋଡ଼କୁ ଚୂଲିରେ ପୂରାଇ ଦେଲେ ଜାଳି ।
ତେବେ ହେଲେ ତାଙ୍କ ମନେ ନୋହିଲା ଦୁଃଖ
ପାରିବ ବୋଲି ମନେ କଲେ ସୁର ଶିଖ ।
ଇନ୍ଦ୍ର ଶ୍ରୁତାବତୀଙ୍କ ଝୂରି କର୍ମ ଦେଖି
ଆସିଲେ ସ୍ୱରୂପେ ସମୀପେ ହୋଇ ସୁଖୀ ।
ବୋଇଲେ ଆଗୋ ଶ୍ରୁତାବତି, ମନୋରଥ
ପାଇ ଛାଡ଼ିଦେଲୁ ତୁ ବ୍ୟଥା ମନମଥ ।
କେବଳ କହୁଥାଇଁ ଏ ଦେହ ପ୍ରାନ୍ତରେ
ମୋ ସଙ୍ଗେ ବିହରିବୁ ସ୍ୱର୍ଗେ ନିରନ୍ତରେ ।
ଏ ତୀର୍ଥର ନାମଟି ବଦରପାଚନ
ଆଜୁଁ ବୋଲାଇବରେ ଯୁବତୀରତନ ।
ପୂର୍ବେ ଏହି ତୀର୍ଥବରରେ ସପ୍ତଋଷି
ଛାଡ଼ି ଅରୁନ୍ଧତୀଙ୍କି ହିମଗିରିବାସୀ ।
ହୋଇଲେଟି ଆହେ ଜନମେଜୟ ଶୁଣ
ମୋ କହିବାରୁ ଏହା ଭଲକରି ଜାଣ ।
ହିମାଳୟଗିରିରେ ରହନ୍ତେ ସପ୍ତର୍ଷି
ଇନ୍ଦ୍ର ନାଶ କଲେ ମହୀକି ନ ବରଷି ।
ଅରୁନ୍ଧତୀ ନାରୀ ସେହି ତୀର୍ଥବରରେ
ତପସ୍ୟା କଲେ ବସି ଶୁଦ୍ଧମାନସରେ ।
ଶିବ ଅରୁନ୍ଧତୀଙ୍କ ତପସ୍ୟାକୁ ଜାଣି
ଦ୍ୱିଜରୂପ ଧରି ଆସିଲେ ନରମଣି ।
ଅରୁନ୍ଧତୀ ଦେବୀଙ୍କୁ ମାଗିଲେ ସେ ଭିକ୍ଷା
କରିବାକୁ ତାହାଙ୍କ ଧରମ ପରୀକ୍ଷା ।

ଅରୁନ୍ଧତୀ ଶୁଣି କପଟଦ୍ୱିଜ ବାଣୀ
ବୋଇଲେ ମୋର କିଛି ନାହିଁ ଦ୍ୱିଜମଣି ।
ଆଗରେ ବରକୋଳଗଛ ମାତ୍ର ଅଛି
ଏ ଫଳ ନେଇ ଖାଅ ତୁମ୍ଭଙ୍କୁ ବୋଲୁଛି ।
ଦ୍ୱିଜ ବୋଇଲେ ଆଗେ ନାରୀଙ୍କ ନାୟକ
ଖାଇବି ମୁହିଁ ବରକୋଳି, କର ପାକ ।
ଅରୁନ୍ଧତୀ ସେ ଦ୍ୱିଜ-ବଚନ ଘେନିଲେ
ବରକୋଳିକି ତୋଳିକରି ପାକକଲେ ।
ବରକୋଳିକି ପାକ କରିବାର କାଳ
ବହୁତ ବିତିଗଲା ଜାଣ ନରପାଳ ।
ଶିବ ଅରୁନ୍ଧତୀଙ୍କ ବ୍ରତ ବାର ଜାଣି
ନିଜ ରୂପରେ ଦେଖାଦେଲେ ସେହିକ୍ଷଣି ।
ଏହି ସମୟରେ ଯେ ସପ୍ତଋଷିକୁଳ
ଆସିଲେ ସେହିଠାକୁ ଘେନି ଫଳ ମୂଳ ।
ଶିବ ତ ଅରୁନ୍ଧତୀ ଆଗେ ରହିଥିଲେ
ଋଷିଙ୍କି ଦେଖି ଅରୁନ୍ଧତୀଙ୍କି ବୋଇଲେ ।
ପୂର୍ବପରି ଏହାଙ୍କୁ ହୁଅ ଉପଗତ
ଛାଡ଼ି ଦିଅ ମୋ ବୋଲି ଘେନି କ୍ରୋଧଚିତ୍ତ ।
ଏଥନ୍ତେ ଋଷିଙ୍କି କହିଲେ ଏହାଙ୍କର
ବଦରୀପାକେ ହେଲା ତପସ୍ୟା ଅପାର ।
ତୁମ୍ଭେ ଯେ ତପ କଲ ହିମାଳୟେ ଥାଇ
ତହିଁରୁ ଅଧିକ ଏ ଆମ୍ଭେ ଜାଣିଥାଇଁ ।
ପୁଣି ତୋଷ ହୋଇଣ ରୁଦ୍ର ମହାଭାଗ
ବୋଇଲେ ଅରୁନ୍ଧତୀ ବର ମୋତେ ମାଗ ।
ଅରୁନ୍ଧତୀ ବୋଇଲେ ମୋତେ ଯେବେ ପ୍ରୀତ
ହୋଇଲେ ଆହେ ଉମାଦେବୀଙ୍କର କାନ୍ତ ।
ତେବେ ମୁହିଁ ବୋଲୁଛି ଏ ତୀର୍ଥଙ୍କ ନାମ ।
ବଦରପାଚନ ହେ ହେଉ ଦେବୋତ୍ତମ
ଏହି ତୀର୍ଥରେ ରାତ୍ର ତିନ ଉପବାସ ।
ଯେ କରିବ ପାତକ ତାର ହେବ ନାଶ ।
ବାରବରଷର ରହିବାର ଫଳକୁ
ପାଇବ ଏହି ବର ଦିଅ ହେ ଆମ୍ଭଙ୍କୁ ।
ଶିବ ଏହା ଶୁଣି ବୋଇଲେ ଅରୁନ୍ଧତୀ
ତୁମ୍ଭେ ଯାହା ବୋଇଲ ହେଲା ମୋ ସମ୍ମତ ।
ଏ ରୂପରେ ବର ଦେଇଣ ଶୂଳହସ୍ତ
ହେଲେ କଇଳାସଗିରିକି ଉପଗତ ।

ଏହା ଶୁଣି ପାଛ ଜନମେଜୟ ରାଜା
ବଇଶମ୍ପାୟନ ଋଷିଙ୍କି କଲ ପ୍ରଜା ।
ବୋଇଲେ ଶ୍ରୁତାବତୀ ନାମର କେ ମାତା
କାହିଁ କରୂପେ ତା ହୋଇଲେ ବର୍ଦ୍ଧିତା ।
ବଇଶମ୍ପାୟନ ବୋଇଲେ ନରପତି
ଘୃତାଚୀ ରୂପ ଦେଖି ଭରଦ୍ୱାଜପତି ।
ମଦନ-ଶରେ ମନ କଲ ଛନ ଛନ
କଲେ ଅସ୍ଥୋତେ ରେତକୁ ସ୍ଖଳନ ।
ସେହି ରେତକୁ ଭରଦ୍ୱାଜ କରେ ଧରି
ପତ୍ରପୁଡ଼ାଟିରେ ରଖିଲେ ଦଣ୍ଡଧାରୀ ।
ସେ ପତ୍ରପୁଡ଼ା-ଗର୍ଭୁ ବାଳକାଏ ଜାତ
ହୋଇଲା ରୂପେ ଗଞ୍ଜି ସୁନାରୀ ଦର୍ପିତ ।
ଛିଅରି ଜାତକର୍ମ ଭରଦ୍ୱାଜ ସାରି
ଶ୍ରୁତାବତୀ ନାମକୁ ଦେଲେ ସେ ବସ୍ୱାର ।
ଆପଣା ଆଶ୍ରମେ ରଖି ସେ ବାଳକାକୁ
ଗମିଲେ ଋଷି ହିମାଳୟ ପର୍ବତକୁ ।
ସେ ଶ୍ରୁତାବତୀ ତପ କରି ଦେହଅନ୍ତେ
ମାଗିଲେ ସୁରପତି-ସୁରତେ ନରତେ ।
ସେହି ତୀର୍ଥରେ ବଳଦେବ ସ୍ନାନ ସାରି
ଦ୍ୱିଜ-କରେ ଦାନ ଦକ୍ଷିଣା ଦେଇ କରି ।
ଇନ୍ଦ୍ରଙ୍କର ତୀର୍ଥେ ହୋଇଣ ପରବେଶ
ତହିଁ ମଧ୍ୟେ ତୋଷିଲେ ଦ୍ୱିଜଙ୍କ ମାନସ ।
ଇନ୍ଦ୍ର ପୂର୍ବେ ସେଠାରେ ଶଏ ଯାଗ କଲେ
ସେ ଶତକ୍ରତୁ, ତୀର୍ଥେ ଇନ୍ଦ୍ର ଯାଇ ହେଲେ ।
ରାମ ସେତ ଇନ୍ଦ୍ରତୀର୍ଥ ଅତିକ୍ରମ କରି
ପଶୁରାମତୀର୍ଥେ ମିଳଲେ ଦଣ୍ଡଧାରୀ ।
ସେ ତୀର୍ଥରେ ପରଶୁରାମ କ୍ଷତ୍ରଜିତ୍ସୁ
ମହୀକ କରି କଲେ ଯାଗ ବାଜପେୟୁ ।
କଶ୍ୟପଙ୍କୁ ପୃଥିବୀ ଦାନ କରି ଦେଲେ
ତେବେହେଁ ଦ୍ୱିଜେ ତାହାହେଗି ନ ପାରଲେ
ଏହେତୁ ରାମତୀର୍ଥ କହନ୍ତି ତାହାକୁ
ରାମ ସେ ତୀର୍ଥେ ଦାନ ଦେଇଛି ଦ୍ୱିଜଙ୍କୁ ।
ଯମୁନାଙ୍କ ତୀର୍ଥକୁ ସେଠାରୁ ବାହାରି
ଗଲେ ଅତି ତ୍ୱରା ହୋଇଣ ହଳଧାରୀ ।
ପୂର୍ବେ ସେ ତୀର୍ଥରେ ବରୁଣ ମହାଦେବ
ରାଜସୂୟ ଯାଗ କଲେଟି ନରଦେବ ।

ବଳଦେବ ସେ ତୀର୍ଥବରେ ସ୍ନାନ କରି
ହୋଇଲେ ସେହି ଆଦିତ୍ୟଙ୍କ ତୀର୍ଥଚାରୀ ।
ପୂର୍ବେ ସେ ତୀର୍ଥରେ ସୂର୍ଯ୍ୟ ଯେ କରି ଯାଗ
ଗ୍ରହରାଜ ହୋଇଲେ ଜାଣ ମହାଭାଗ ।
ଇନ୍ଦ୍ର ବିଶ୍ୱଦେବ ଯେ ମରୁତ ରାକ୍ଷସ
ଗନ୍ଧର୍ବ ଶୁକ କଣ୍ୱ ଯକ୍ଷ ବେଦବ୍ୟାସ ।
ଅପ୍ସରା ପିଶାଚ ଆଦି ଏ ତୀର୍ଥେ ସ୍ନାନ
କରିଣ ଦେହ ଶୁଦ୍ଧି ପାଇଲେ ରାଜନ ।
ବିଷ୍ଣୁ ଦେବ ମଧୁକୈଟଭଙ୍କୁ ସଂହାରି
ଶୁଦ୍ଧ ହେଲେ ସେ ତୀର୍ଥ ଜଳେ ସ୍ନାନ କରି ।
ଜୈଗୀଷବ୍ୟ ମୁନି ସେହି ତୀର୍ଥକୁ ଆସି
ହୋଇଲେଟି ଜାଣ ଦେବଳାଶ୍ରମବାସୀ ।
ଦେବଳ ଜୈଗୀଷବ୍ୟ ମୁନି ପଦଦେଶେ
ପୂଜା କଲେ ଅତ୍ୟନ୍ତ ମାନସ ହରଷେ ।
ଋଷିଙ୍କ ପୂଜା କରିବାରେ ହେ ନରେଶ
ଦେବଳଙ୍କର ହେଲା ବହୁକାଳ ଶେଷ ।
ଭାବିଲେ ବହୁକାଳୁ ସତ୍କାର କରୁଛି
ଏ ଭିକ୍ଷୁକ ଆଳସ୍ୟେ ନ କହିଲେ କିଛି ।
ହୋଇବେ ହନେ ଦେବଳ ଧରିଣ କଳଶ
ନଭୋମାର୍ଗେ ଗଲେ ସମୁଦ୍ରେ ନରଈଶ ।
ଜୈଗୀଷବ୍ୟ ଆଗ ଯାଇ ସେ ସମୁଦ୍ରରେ
ସ୍ନାନ କରୁଛନ୍ତି ସେ ଦେଖିଲେ ନେତ୍ରରେ ।
ଦେବଳ ବିଚାରିଲେ ଆଶ୍ରମେ ଏହାଙ୍କୁ
ରଖି ତ ଆସିଲି ମୁଁ ବାହାରି ସ୍ନାନକୁ ।
ମୁଁ ସ୍ନାନ ନ କରୁ ଏ ସମୁଦ୍ରରେ ସ୍ନାନ
କରୂପରେ କଲେ ତ ଜାଣୁନାହିଁ ମନ ।
ଏରୂପେ ବିଚାରି ଦେବଳ ତପରାଶି
ଆଶ୍ରମକୁ ବାହାରିଗଲେ ସ୍ନାନ ସାରି ।
ଦେଖିଲେ ଆଶ୍ରମେ ଅଛନ୍ତି ଜୈଗୀଷବ୍ୟ
ନିନ୍ଦା କରି ତେଜରେ ସହିତା ପ୍ରଭାବ ।
ଦେବଳ ପୁଣି ବିଚାରିଲେ ସମୁଦ୍ରରେ
ଦେଖିଥିଲି, ଏବେ ଦେଖିଲି ଆଶ୍ରମରେ ।
ଏ କଥା ମୋତେ ଲାଗୁଅଛି ଚମତ୍କାର
ଜାଣିଲି ତ ଘୋର ତପସ୍ୟା ଏହାଙ୍କର ।
ଏହିରୂପେ ବିଚାରି ଜୈଗୀଷବ୍ୟ-ତପ
ଜାଣିବାକୁ ଗମିଲେ ଆକାଶେ ସେ ନୃପ ।

ଦେଖିଲେ ସେ ଆକାଶେ ଜୈଗୀଷବ୍ୟ ଛନ୍ତି
ସିଦ୍ଧମାନେ ବେଢ଼ି ଣ ଚରଣ ପୂଜନ୍ତି ।
ସେଠାରୁ ପିତୃଲୋକେ ଯାଆନ୍ତେ ଦେବଳ
ଦେଖିଲେ ପିତୃ ପୂଜନ୍ତି ସେ ପାଦତଳ ।
ଯମ ଚନ୍ଦ୍ର ବରୁଣ କୁବେରଙ୍କ ଲୋକ
ସବୁଠାରେ ଅଛନ୍ତି ସେ ମୁନି-ତିଳକ ।
ଦେବଳ ଦେଖିକରି ମହାଶ୍ଚର୍ଯ୍ୟ ପାଇ
ଆଉ ସ୍ଥାନ ଦେଖନ୍ତେ ସେ ବସିଲେ ନାହିଁ ।
ହାଲିଆ ହୋଇଣ ଦେବଳ ମୁନିବର
ସିଦ୍ଧଙ୍କ ମୁଖ ଚାହିଁ ବୋଇଲେ ଉତ୍ତର ।
ଜୈଗୀଷବ୍ୟମୁନିଙ୍କି ନ ଦେଖିଲି ମୁହିଁ
ଜାଣିଥିଲେ ମୋତେ ତା କହ ତୁମ୍ଭେ କହି ।
ସିଦ୍ଧମାନେ ବୋଇଲେ ଜୈଗୀଷବ୍ୟ ମୁନି
ହୋଇଅଛନ୍ତି ଏବେ ବ୍ରହ୍ମଲୋକସ୍ଥାୟୀ ।
ସିଦ୍ଧଙ୍କର ବଚନ ଶୁଣିଣ ଦେବଳ
ଗଲେ ବ୍ରହ୍ମଲୋକେ ଦେଖାଇ ଦେହବଳ ।
ଯାଇ ନ ପାରି ସେ ଆକାଶ ମାର୍ଗୁଁ ଖସି
ପୁଣି ସିଦ୍ଧମାନଙ୍କ ପାଶେ ହେଲେ ଆସି ।
ସିଦ୍ଧେ ତାହା ଦେଖିଣ ବୋଇଲେ ଦେବଳ
ବ୍ରହ୍ମଲୋକେ ଯିବାକୁ ତୁମ୍ଭ ନାହିଁ ବଳ ।
ସିଦ୍ଧଙ୍କ ବଚନେ ଦେବଳ ଲଜ୍ଜା ପାଇ
ନିଜ ଆଶ୍ରମକୁ ଆସିଲେ ତ୍ୱରା ହୋଇ ।
ଦେଖିଲେ ନିଜାଶ୍ରମି ଜୈଗୀଷବ୍ୟଋଷି
ବସିଛନ୍ତି ନେତ୍ର ଦୁଇକ ଭଲେ ଖୋସି ।
ଜୈଗୀଷବ୍ୟଙ୍କର ସେ ଯୋଗବଳ ଦେଖି
ଦେବଳ ଜଣାଇଲେ ହୋଇ ଅତି ଦୁଃଖୀ ।
ତୁମ୍ଭଠାରୁ ଯେ ମୋକ୍ଷଧର୍ମକୁ ଗ୍ରହଣ
କରିବାକୁ ମନ ମୋହର ତପୋଧନ ।
ଜୈଗୀଷବ୍ୟ ଋଷି ତାହାଙ୍କୁ ତୋଷ କରି
ମୋକ୍ଷ ଉପଦେଶକୁ ଦେଲେ ନରସାଇଁ ।
ଦେବଳ ଜୈଗୀଷବ୍ୟଠାରୁ ଉପଦେଶ
ପାଇ ମନରେ ଚଳେ କରିବ ସନ୍ନ୍ୟାସ ।
ସେ କଥା ଜାଣିକରି ଭୂତ ପିତୃଗଣ
କେ ଦେବ ଅନ୍ନ ବୋଲି କାନ୍ଦିଲେ ରାଜନ ।
ଗାର୍ହସ୍ଥ୍ୟଧର୍ମ ମୋକ୍ଷଧର୍ମ ଏ ଦୁଇରେ
କେ ବଡ଼ ବୋଲିକରି ଦେବଳ ମନରେ ।

ଭାବନା କଲେ ଭୂତ ପିତୃଙ୍କର ବାଣୀ
ଶୁଣି କରି ହୃଦ ମଧ୍ୟରେ ପୁଣିପୁଣି ।
ଭାବନାରେ ଦେବଳଋଷି ମୋକ୍ଷଧର୍ମ
କରିବା ମୂଳ କଲେ ଛାଡ଼ି ଗୃହଧର୍ମ ।
ମୋକ୍ଷଧର୍ମର ଫଳ ଯୋଗସିଦ୍ଧି ପାଇଁ
ମହାତୁଷ୍ଟ ହେଲେ ଦେବଳ ଋଷିସାଇଁ ।
ଦେବେ ଦେବଳଙ୍କର ଯୋଗସିଦ୍ଧି ଜାଣି
ଆଜ୍ଞା କଲେ ବୋଲି କହିଲେ ଶୂନ୍ୟେ ବାଣୀ
ନାରଦ ସେହିକାଳେ କହିଲେ ଦେବଙ୍କୁ
ଜୈଗୀଷବ୍ୟ ଛାଡ଼ିଲେ ତପସ୍ୟାଧର୍ମକୁ ।
ଦେବେ ବୋଇଲେ ହେ କି କହ ମୁନିବର
ଜୈଗୀଷବ୍ୟ ତପସ୍ୱୀମାନଙ୍କର ପର ।
ଏରୂପେ ଜୈଗୀଷବ୍ୟ ଦେବଳ ପ୍ରଭାବ
ଶୁଣିଲ ତ ମୋହରଠାରୁ ନରଦେବ ।
ସେ ଦୁହେଁ ଆଦିତ୍ୟଙ୍କ ତୀର୍ଥେ ରହିଥିଲେ
ଏଣୁ ସେ ତୀର୍ଥ ଲୋକେ ବଡ଼ ବୋଲାଇଲେ ।
ରାମ ସେ ତୀର୍ଥବରେ ସ୍ନାନ ଦାନ କରି
ଗଲେ ଚନ୍ଦ୍ରତୀର୍ଥକୁ ରାଜନ ବାହାରି ।
ଚନ୍ଦ୍ର ସେ ତୀର୍ଥବରେ କରି ରାଜସୂୟ
ହରିଲେ ବୃହସ୍ପତିଙ୍କର ପ୍ରାଣପ୍ରିୟ ।
ତାରନାମେ ବାଳୀକି ହୋଇ କାମେ ବାଇ
ସେ ଯେନ ମହାଯୁଦ୍ଧ ହେଲା ନରନାହିଁ ।
ରାମ ସେ ଚନ୍ଦ୍ରତୀର୍ଥେ ଦ୍ୱିଜେ ଦାନ ଦେଇ
ଗଲେ ସାରସ୍ୱତ-ତୀର୍ଥକୁ ତ୍ୱରା ହୋଇ ।
ସେ ତୀର୍ଥରେ ପୂର୍ବେ ବରଷ ବାର ଯାଏ
ନ ପଡ଼ିଲା ଜଳ ହସ୍ତିନା-ନରରାୟେ ।
ସାରସ୍ୱତମୁନି ସେ ଦ୍ୱିଜଙ୍କୁ ଡକାଇ
ପଢ଼ାଇଲେ ବେଦ ବରଷା ହେବା ପାଇଁ ।
ଜନ୍ମେଜୟ ବୋଇଲେ ନୋହନ୍ତେ ବରଷା
କରୂପେ ସାରସ୍ୱତ ମୁନି ମହାଯଶା ।
ଦ୍ୱିଜଙ୍କୁ ଡକାଇଣ ବେଦ ପଢ଼ାଇଲେ
ଏହା ମୋତେ କହିବା ନିହିଜନ୍ତୁ ହେ ଭଲେ ।
ବଇଶମ୍ପାୟନ ବୋଇଲେ ନରରାଣ
ଶୁଣ ମୋଠାରୁ ବୃଷ୍ଟି ନୋହିବା କାରଣ ।
ଦଧୀଚିଋଷି ପୂର୍ବେ ବହୁ ତପ କଲେ
ଇନ୍ଦ୍ର ଦେବତାଙ୍କର ଭୟ ସମ୍ଭାଳିଲେ ।

ଇନ୍ଦ୍ର ଅଳମ୍ବୁଷାକୁ କରି ଦିବ୍ୟ ବେଶ
ବୋଇଲେ ତୁମ୍ଭେ ଯାଅ ଦଧୀଚଙ୍କ ପାଶ ।
ଅଳମ୍ବୁଷା ଇନ୍ଦ୍ରଙ୍କ ଆଜ୍ଞାକୁ ପାଇଲା
ଦଧୀଚଋଷିଙ୍କର ସମୀପେ ମିଳିଲା
କାମକଳାରେ ସେ ତ ଅଟଇ ନିପୁଣ
ମୋହିଲା ସେ ତହିଁ ଦଧୀଚଋଷି-ମନ ।
ମଦନ ତାହା ଜାଣିପାରି ଧନୁ ଧରି
ଦଧୀଚ-ଗଣ୍ଡିକ ବିନ୍ଧିଲେ ଲକ୍ଷ କରି ।
ସେହି ସକାଶୁ ଋଷି ହୋଇଣ ଅଜ୍ଞାନ
ନିଜ ଦେହରୁ ରେତ କଲେ ସେ ସ୍ଖଳନ ।
ସେହି ରେତକୁ ସରସ୍ୱତୀନଦୀ ଧରି
ପୁତ୍ର ଜାତ କଲେଟି ଜାଣ ଦଣ୍ଡଧାରି ।
ସେହି ପୁତ୍ରକୁ ସରସ୍ୱତୀ ଧରି କୋଳେ
ପଡ଼ିଲେ ଯାଇ ଦଧୀଚଙ୍କ ପାଦତଳେ ।
ବୋଇଲେ ଏ ପୁତ୍ରଟି ଅଟଇ ତୁମ୍ଭର
ଏବେ ପୋଷ ହେ ତୁମ୍ଭେ ଏହାଙ୍କ ଉଦର ।
ଦଧୀଚଋଷି ପୁତ୍ରହେତୁ ପୃଚ୍ଛିଲେ
ସରସ୍ୱତୀ ସେ ସବୁ ବତାଇ କହିଲେ ।
ସରସ୍ୱତୀ-ବାକ୍ୟେ ଦଧୀଚ ତୋଷମନ
ହୋଇଣ ପ୍ରତିଗ୍ରହ କଲେ ସେ ମଣ୍ଡନ ।
ପ୍ରୀତ ହୋଇ ସରସ୍ୱତୀଙ୍କି ଦେଲେ ବର
ତୁମ୍ଭେ ହେବ ପାବନ ଏ ତିନିଲୋକର ।
ତୁମ୍ଭ ଜଳେ ଯେ ଜନ କରିବେ ତର୍ପଣ
ତୋଷିବେ ବିଶ୍ୱଦେବ ତୁଲେ ପିତୃଗଣ ।
ଏ ପୁତ୍ର ତ ତୁମ୍ଭ ଗର୍ଭରୁ ହେଲା ଜାତ
ଏଣୁ ହେଲା ଏହାଙ୍କ ନାମ ସାରସ୍ୱତ ।
ବରଷ ବାର ଯେବେ ହେବ ଅନାବୃଷ୍ଟି
ତେବେ ସରସ୍ୱତୀ ତୁମ୍ଭର ଏ ପୁଅଟି ।
ଦ୍ୱିଜଙ୍କୁ ଡକାଇଣ ପଢ଼ାଇବେ ବେଦ
ବ୍ରାହ୍ମଣ ମାନସରେ ଅତ୍ୟନ୍ତ ପ୍ରମୋଦ ।
ଏରୂପେ ସରସ୍ୱତୀ ଦଧୀଚଠୁଁ ବର
ପାଇଣ ସଙ୍ଗତରେ ଧରି ସେ କୁମର ।
ଆପଣାର ସ୍ଥାନକୁ ଆସିଲେ ବାହାରି
ହୃଦରେ ଥିବା ସନ୍ତାପକୁ ଦୂରକରି ।
ଏହିକାଳରେ ଇନ୍ଦ୍ର ଦାନବଙ୍କ ବଧ
ନିମନ୍ତେ ଜଗତରେ ଖୋଜିଲେ ଆୟୁଧ ।

ଦାନବଙ୍କ ନାଶ ହେବାକୁ ବଜ୍ରଧାରୀ
ଆୟୁଧେ ନ ଦେଖି ବସିଲେ ଦୁଃଖ କରି ।
ଦେବଙ୍କୁ ବୋଇଲେ ଦଧୀଚ ହାଡ଼ ମୋତେ
ନ ମିଳିଲେ ନ ମରିବେ ଟି ଜାଣ ଦୈତ୍ୟେ ।
ତୁମ୍ଭେ ଯାଇଣ ଦଧୀଚଙ୍କି ହାଡ଼ ମାଗ
ସେ ଦେଲେ ହେଲା ଦୈତ୍ୟ ମାରିବା ମୋ ଭାଗ
ଦେବେ ଇନ୍ଦ୍ର ବୋଲେ ଦଧୀଚ ପାଶେ ଗଲେ
ତୁମ୍ଭ ଅସ୍ଥି ଆମ୍ଭଙ୍କୁ ଦିଅହେ ବୋଇଲେ ।
ଦଧୀଚ ଋଷି ତା'ହା ଜାଣି ପ୍ରାଣତ୍ୟାଗ
କଲେ, ଜାଣ ଆହେ ରାଜନ ମହାଭାଗ ।
ଦେବଙ୍କ ପ୍ରିୟ କରିବାରୁ ଋଷିମଣି
ଅକ୍ଷୟଲୋକେ ଗଲେ ହର୍ଷ ମନେ ଘେନି ।
ତହୁଁ ଇନ୍ଦ୍ର ଆଣି ଦଧୀଚ ଋଷହାଡ଼
କରିଲେ ବଜ୍ର ଅସ୍ତ୍ରମାନଙ୍କରେ ବଡ଼ ।
ଏ ବାହାରେ ଯେ ଦଣ୍ଡ ଚକ୍ର ଗଦା ଶୂଳ
ଆଦି ସରଜନ କରିଲେ ଅସ୍ତ୍ରମାଳ ।
ଇନ୍ଦ୍ର ବଜ୍ର ଧରିଣ ଦଇତ ସଂହାରି
ହେଲେ ତିନି ଲୋକ ମଧ୍ୟରେ ସେ ଜିତାରି
କେତେକାଳ ଅନ୍ତେ ବରଷ ବାରଯାଏ
ଅନା ବୃଷ୍ଟି ହୋଇଲା ଜନ୍ମେଜୟ ରାୟେ ।
ଅନାବୃଷ୍ଟି ହୁଅନ୍ତେ ଋଷିଏ କ୍ଷୁଧାରେ
ଆରତ ହୋଇଣ ବୁଲନ୍ତେ ନିରନ୍ତରେ ।
ଋଷଙ୍କର ବୁଲିବା ଦେଖି ସାରସ୍ୱତ—
ମୁନି ମଧ୍ୟ ବୁଲିବା ପାଇଁ କଲେ ଚିତ୍ତ ।
ସରସ୍ୱତୀ ପୁତ୍ରର ଯିବା ମନ ଜାଣି
ବୋଇଲେ ନ ଯାଅରେ ବୁଲି ପୁତ୍ର ମଣି ।
ମୁଁ ତ ମାତା ହୋଇଣ ଅଛି ତୋର ପାଖେ
ମାଛ ଦେଉଥିବି ମୁଁ, ଖାଉଥିବୁ ସୁଖେ ।
ସାରସ୍ୱତ ମୁନି ତା ଶୁଣି ହୋଇ ତୋଷ
ରହିଲେ ମାତା ଦେବା ମାଛ କରି ଗ୍ରାସ ।
ଋଷିମାନେ ଅନ୍ନ ନ ପାଇଣ ବୁଲିଲେ
ପଢ଼ି ଯେ ଥିଲେ ବେଦ, ସବୁ ପାଶୋରିଲେ ।
ମନେ କଲେ କାହାଠାରେ ବେଦ ଯାଇ
ପଢ଼ିବା, କେ କହିବ ଆମ୍ଭଙ୍କୁ ବତାଇ ।
ଏରୂପେ ମନେ କରି ସାରସ୍ୱତ ପାଶେ
ପରବେଶ ହୋଇଲେ ପଢ଼ିବା ଲାଳସେ ।

ସାରସ୍ୱତ ସେ କଥା ଜାଣି କରି ତାଙ୍କୁ
ବୋଇଲେ ପଢ଼ାଇବି ତୁମ୍ଭଙ୍କୁ ବେଦକୁ
କେବଳ କହୁଅଛି ଦେହକୁ ଅଭ୍ୟାସ
କରିବା ଇଚ୍ଛା ଥିଲେ ହୁଅ ମୋର ଶିଷ୍ୟ ।
ଋଷିମାନେ ବୋଇଲେ ତୁମ୍ଭେ ତ ବାଳକ
କେଉଁରୂପେ ହେବ କହ ଆମ୍ଭ ଅଧ୍ୟାପକ ।
ସାରସ୍ୱତ ବୋଇଲେ ମୋ ଦେହେ ଅଧର୍ମ
ନଥିବାରୁ କରିପାରଇ ଗୁରୁକର୍ମ ।
ସାଙ୍ଗ କରି ବେଦ ତ ପଢ଼ିଅଛି ମୁହିଁ
ଏଣୁ ବୟସ୍କ ବୃଦ୍ଧଙ୍କୁ ଭୟ ମୋର ନାହିଁ ।
ସାରସ୍ୱତ ବାକ୍ୟେ ମୁନିଏ ବହି ତୋଷ
କଲେ ଶିଷ୍ୟ ହୋଇଣ ବେଦକୁ ଅଭ୍ୟାସ ।
ଗଣନାରେ ଷାଠିଏ ସହସ୍ର ସେ ଅନନ୍ତ
ପଢ଼ାଇଲେ ଏକା ତା ସାରସ୍ୱତ ସନ୍ତ ।
ସାରସ୍ୱତଋଷିଙ୍କ ବଶେ ଋଷିଗଣ
ରହି ତାଙ୍କୁ ସମସ୍ତେ ଦେଲେ କୁଶାସନ ।
ସେଠାରେ ବଳଦେବ ବହୁ ଦାନ ଦେଇ
ବୃଦ୍ଧକନ୍ୟା ତୀର୍ଥକୁ ଗଲେ ନରସାଇଁ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ବୃଦ୍ଧକନ୍ୟା ଚରିତ କର ତ ବଖାଣ ।
ବଇଶମ୍ପାୟନ ବୋଇଲେ କୁନି ଗର୍ଗ—
ବଂଶ ଋଷି ତପରେ ହୋଇ ମହାଭାଗ ।
ତପସ୍ୟା ବଳେ କନ୍ୟା ଏକ ଜାତ କଲେ
ଦେହ ଛାଡ଼ିଦେଇଣ ସ୍ୱର୍ଗପୁରେ ଗଲେ ।
ସେ କନ୍ୟା ମୁନିଋଷି ଆଶ୍ରମରେ ରହି
ତପସ୍ୟା କରି କ୍ଷୀଣ କରିଦେଲା ଦେହି ।
ଆପଣ ଅନୁରୂପ ନ ଦେଖିଣ ଭର୍ତ୍ତା
ମନରୁ ଛାଡ଼ିଦେଲା ସଜନ ସେ ଚିନ୍ତା ।
ଏରୂପେ କେତେ କାଳ ଯାନ୍ତେ ସଉବନ
ଅସ୍ତ ହୋଇଣ ବାର୍ଦ୍ଧକ୍ୟକୁ ଅପଘନ ।
କରନ୍ତେ ଆଶ୍ରେ ନିଜ ଶରୀରକୁ ଛାଡ଼ି
ବିଚାରିଲା ସ୍ୱର୍ଗ ବସିବା ପାଇଁ ମାଡ଼ି ।
ତାହା ଜାଣି ନାରଦ ଆସି ସେ କନ୍ୟାକୁ
ବୋଇଲେ କିରୂପେ ଯିବୁ ତୁ ସ୍ୱର୍ଗକୁ ।
ବିଭା ହୋଇଲେ ସିନା ହୁଅନ୍ତୁ ପବିତ୍ର
ମୁକ୍ତ ତ ଅପବିତ୍ର ହୋଇଛୁ ତୋ ଗାତ୍ର ।

କନ୍ୟା ବୋଇଲେ ସେ ନାରଦ ମୁନିବର
ମୋ କର ଧରିବ ମୋ ଧର୍ମ ଅଧେ ତାର ।
ଏହି କଥା ନିୟମ କରି ମୁଁ କହୁଛି
ନ ହେବ ଏଥି ମିଥ୍ୟା ବ୍ରହ୍ମାଙ୍କର ବର୍ତ୍ତି ।
ଶୃଙ୍ଗବାନଋଷି ଶୁଣିଣ ଏ ବଚନ
ଉପଗତ ହୋଇଲେ କନ୍ୟା ସନ୍ନିଧାନ ।
ବୋଇଲେ ସମସ୍ତ କରିବୁ ଯେବେ ନାରୀ
କହୁଅଛି ଭାରଯା ହୋଇବୁ ମୋହରି ।
କନ୍ୟା ବୋଇଲା ମୁଁ କରିବି କି ସମସ୍ତ
ଫିଟାଇ ମୋତେ କହ ମୁନିଙ୍କ ତନୟ ।
ମୁନି ବୋଇଲେ ମୁହିଁ ରାତିଏ ରହିବି
ଆଉ ତୋହଠାକୁ ସ୍ୱପନେ ନ ଆସିବି ।
କନ୍ୟା ବୋଇଲା ଆହେ ଯାହା ମୋର ଇଚ୍ଛା
ହେଉଥିଲା ତା କହିଲ ତ ମୁନିବତ୍ସା ।
ଏତେ ବୋଲି ସେ ଦେଲା କରକୁ ପ୍ରସାରି
ବିଭା ହେଲେ ତାଙ୍କୁ ଗାନ୍ଧର୍ବ ଉପଚାରି ।
ସେ କନ୍ୟା ତପୋବନେ ଛାଡ଼ିବୃଦ୍ଧାବେଶ
ହୋଇଲା ନବନାରୀ-ରୂପରେ ପ୍ରକାଶ ।
ଦିବ୍ୟ-ଆଭରଣ ଲଗାଇ ଦିବ୍ୟ-ବାସ
ପିନ୍ଧି କଲା ଜୁଡ଼ାକୁ ନାନାଫୁଲେ ବେଶ ।
ଗାଲବଙ୍କ ନନ୍ଦନ ଆଗେ ଛିଡ଼ା ହେଲା
ମୁଖେ ଲୁଗା ଦେଇ ବଦନରେ ଅନାଇ ।
ତା ନୟନ-ଶରକୁ ସାହା ପାଇ ମାରି
ଋଷିଙ୍କର ଦେହକୁ କଲା ଜରଜର ।
ସେହି ସକାଶୁଁ ଋଷି ଆସନରୁ ଉଠି
ବୋଇଲେ ଆରେ ନବଅଙ୍ଗନା ବିମ୍ବୋଷ୍ଠି ।
ମୋ କୋଳେ ବସି ରତି-ରସରେ ବିହରି
ମୋ କଲା ତପସ୍ୟା-ଫଳକୁ ସାର୍ଥ କର ।
ତୋ ଅଧର-ବନ୍ଧୁଳୀ-କୁସୁମର ମଧୁ
ପିଇଲେ ଋଷି ମଧ୍ୟେ ହୋଇବି ମୁଁ ସାଧୁ ।
ତୋ ବାହୁ ଚମ୍ପାମାଳ ବେନି ନୃପବାଳା
ଲମ୍ବାଇ କନା ଛନ୍ଦ କରି ମୋର ଗଳା ।
ଏରୂପେ କହି ଋଷି କାମେ ଧକସକ
ହୋଇଲେ ସୁରତରେ ମାତିଲେ ଛାଡ଼ି ଦକ ।
ସେ ଅଙ୍ଗନା-ଅଙ୍ଗବଦନ ଦୂର କରି
ଅଣ୍ଟାରୁ କକପୁମା କାଢ଼ି ତପସ୍ବିଣୀ ।

ନାନାଜାତି ସୁରତ-ରସ-ବନ୍ଧେ ଜଡ଼
ହୋଇଲେ ସେ ତରୁଣୀ ସଙ୍ଗେ ଗଡ଼ାଗଡ଼ ।
ସେ ଦୁହିଙ୍କ ସୁରତ ହୋଇନାହିଁ ଶେଷ
ଏ ସମସ୍ତେ ଉଦୟ ହେଲେ ପୁଷ୍ପା-ଈଶ ।
ଖଗ-ରୋଳ ଦେଖି ସେ ଦୁହେଁ ଲଜ୍ଜାହୋଇ
ମଦନ-ଗରବ ଭଙ୍ଗିଲେ ନରସାଇଁ ।
ସେ ଋଷି କହୀଦେଶେ କଲ୍ପପୁନ ଆସି
ପିଣ୍ଡକରି ପଞ୍ଚଖାଡ଼କୁ ଦେଲେ ଖୋସି ।
ବାଳା ଛାଡ଼ି ଦେଇଣ ସେ ଋଷି ଗଲାକୁ
ପିନ୍ଧିଲା ବାସ ଧରି ବୃଦ୍ଧା-ଅବସ୍ଥାକୁ ।
ଋଷିଙ୍କି ବୋଇଲା ହେ ଯାଅ ତପସ୍ୱୀ
ସମସ୍ତ ତ ସମ୍ପୂର୍ଣ୍ଣ ହୋଇଲା ତୁମ୍ଭରି ।
ଏହା କହିସାରିଣ ସେ କନ୍ୟା କହିଲେ
ସେ ତୀର୍ଥରେ ରାତ୍ରିଏ ରହିବ ଯେ ଭଲେ ।
ବ୍ରହ୍ମଚର୍ଯ୍ୟ ଚୌଷଠି ବର୍ଷ କଲା ଫଳ
ପାଇବ ସତ୍ୟ ଯେବେ ଅଟଇ ମୋର ବୋଲ ।
ଏରୂପେ କହି ଦେହ ଛାଡ଼ି ମହାସତୀ
ବସିଲେ ଯାଇକରି ଅମର-ବସତି ।
ସେ ଋଷିକନ୍ୟାର ସୁରତେ ହୋଇ ବାଇ
ବୋଇଲେ ମୋ ପରି ଭାଗ୍ୟବନ୍ତ ନାହିଁ ।
ମୋର ଇଚ୍ଛାରେ ମୁହିଁ କାଳକୂଟ ବିଷ
ଲୋଡ଼ି ଆଣିକରି ଟି କରିଅଛି ଗ୍ରାସ ।
ଏତେବେଳେ ଭାବିଲେ କଥା ନାହିଁ କିଛି
ଧନ ତ ଅର୍ଦ୍ଧ ତପ ଦେଇ ଗଲା ମୂର୍ଚ୍ଛି ।
ଏତେ ବୋଲି କରି ତପରେ ଦେଲେ ମନ
ବସିବାକୁ ଯାଇ ସେ କନ୍ୟା-ସନ୍ନିଧାନ ।
ତପଃସିଦ୍ଧି ଅନ୍ତେ ଶରୀରକୁ ଛାଡ଼ିଲେ
ସେ ନବ କାମିନୀର ସୁରତେ ଜଡ଼ିଲେ ।
ବୃଦ୍ଧକନ୍ୟା ଚରିତ ବ୍ରହ୍ମଚର୍ଯ୍ୟ ରୀତି
ଶୁଣିଲ ତ ମୋଠାରୁ ହସ୍ତିନା-ନୃପତି ।
ଏବେ ଶୁଣ ହେ ବଳଦେବଙ୍କ ଚରିତ
ସେହି ତୀର୍ଥେ ଶୁଣ କରି ସେ ଶଲ୍ୟ ହତ ।
ବ୍ରାହ୍ମଣଙ୍କୁ ଯଥାବିଧିରେ ଦାନ ଦେଇ
ସମନ୍ତ ପଞ୍ଚକେ ଆସିଲେ ଲଘୁ ହୋଇ ।
ସେଠାରେ ଋଷିଙ୍କି କୁରୁକ୍ଷେତ୍ର ଫଳ
ପଚାରିଲେ ବସିଣ ରାମ ମହୀପାଳ ।

ଋଷିମାନେ ବୋଇଲେ ପ୍ରଜାପତିଙ୍କର
ଉତ୍ତରବେଦି କୁରୁକ୍ଷେତ୍ର ମନୋହର ।
କୁରୁରାଜା ଏଠି ଲଙ୍ଗଳ ଧରି ଚଷ
କଲାରୁ କୁରୁକ୍ଷେତ୍ର ନାମ ଟି ପ୍ରକାଶ ।
ରାମ ବୋଇଲେ ହେ କାହିଁକି କୁରୁପତି
ଚଷୁଥିଲେ ଲଙ୍ଗଳ ଧରି କ୍ଷିତି ।
ଏ କଥା ଯଥା ବିଧିମତେ ମୋତେ କହି
ଦିଅ ମୋହର ହୃଦ-ବ୍ୟଥାକୁ ଛଡ଼ାଇ ।
ଋଷିଏ ବୋଇଲେ ହେ କୁରୁରାଜା ଚଷ
କରିବା ଦେଖି ସ୍ୱର୍ଗୁଁ ଆସି ଶଚୀ ଈଶ ।
ପଚାରିଲେ କାହିଁକି ଏକ୍ଷେତ୍ର ଚଷୁଛ
କହ ତ ମୋତେ ଆହେ ନୃପକୁଳବତ୍ସ ।
କୁରୁ ବୋଇଲେ ଏ କ୍ଷେତ୍ରରେ ଲୋକେ ନାଶ
ଯେ ହୋଇବ, କରିବେ ସ୍ୱର୍ଗରେ ସେ ବାସ ।
ଏଥିପାଇଁ ଲଙ୍ଗଳ ଧରିକରି ମୁହିଁ
ଚଷ କରୁଅଛି ଜାଣ ହେ ଦେବସାଇଁ ।
ଇନ୍ଦ୍ର ତାହା ଶୁଣିଣ କୁରୁରାଜା ବାଇ
ବୋଲି କରି ଗଲେ ସ୍ୱର୍ଗକୁ ଲଘୁ ହୋଇ ।
କୁରୁ ଇନ୍ଦ୍ରଙ୍କର କଥାକୁ ନ ଘେନିଲେ
ଲଙ୍ଗଳ ଧରିଣ ନିତାଇଁ ଚଷ କଲେ ।
ତାହାକୁ ଦେଖି ଇନ୍ଦ୍ର ଆଉ ଥରେ ଆସି
ବୋଇଲେ ରାଜା ବାଇ ହେଲ ହସି ହସି ।
କୁରୁ ତ ଲୋକଙ୍କ ମୁକତି ଇଚ୍ଛା କରି
ଚଷୁଥିଲେ ଯା ନ ଛାଡ଼ିଲେ ହଳଧାରି ।
ଇନ୍ଦ୍ର ଦେବତାଙ୍କୁ ବୋଇଲେ ଦେଖି କୁରୁ
ମୂର୍ଖମାନଙ୍କର ତ ଅଟନ୍ତି ସେ ଗୁରୁ ।
ମୁଁ ନିଷେଧ କଲେ ହେଲେ ସେ ଏ ମହୀକି ।
ଚଷୁଅଛନ୍ତି ସ୍ୱର୍ଗ ପାଇବା ପାଇଁକି ।
ଦେବତାଏ ବୋଇଲେ ତୁମ୍ଭେ ଦେଲେ ବର
ଚଷିବା କଥା ଛାଡ଼ିଦେବେ ନରବର ।
ଦେବତାଙ୍କ ବୋଲେ ସୁରପତି କୁରୁଠାକୁ
ଆସି ବୋଇଲେ ଆହେ ଛାଡ଼ି ଏ ଚଷକୁ ।
ନିରାହାର ହୋଇ ମରିବେ ଯେଉଁ ନର
ଏ ଭୂମିରେ ସ୍ୱର୍ଗ ହୋଇବ ତାହାଙ୍କର ।
ଏ ବାହାରେ ଏଠାରେ ଯୁଦ୍ଧେ ଯେ ମରିବେ ।
ମୋହର ସମୀପରେ ଯାଇ ସେ ବସିବେ ।

କୁରୁ ବୋଇଲେ ଆହେ ସେ ଇଚ୍ଛା ମୋହର
ଥିଲା, ତାହା ତୁମ୍ଭେ ବୋଇଲ ସୁରେଶ୍ୱର ।
ଇନ୍ଦ୍ର କୁରୁଙ୍କର ଏ ବଚନକୁ ଶୁଣି
ସ୍ୱର୍ଗପୁରେ ଗମିଲେ ଯେଣେ ସୁରଶ୍ରେଣୀ ।
ଏହି ପ୍ରକାରରୁଟି ରାମ, କୁରୁକ୍ଷେତ୍ର
ସମସ୍ତ ତୀର୍ଥଙ୍କରେ ଏ କ୍ଷେତ୍ର ପବିତ୍ର ।
ଏଠାରେ ତପ କରି ଦେହ ତ୍ୟାଗକଲେ
ବ୍ରହ୍ମଲୋକରେ ସେ ବସଇ ଯାଇ ଭଲେ ।
ଏଥିରେ ଯେଉଁ ଲୋକ ଦିଅଇଟି ଦାନ
ସହସ୍ରେ ଗୁଣ ଫଳ ହୁଏ ତାର ଜାଣ ।
ନିତ୍ୟରେ ଯେହୁ କୁରୁକ୍ଷେତ୍ରରେ ରହୁଛି
ତାକୁ ତର୍ଣ୍ଣି ନ ପାରେ ସୂର୍ଯ୍ୟଙ୍କର ବହ୍ନି ।
ଯେହୁ କରଇ କୁରୁକ୍ଷେତ୍ରଙ୍କରେ ଯାଗ
ବସଇ ସେହି ଯାଇ ସୁରପତି ଆଗ ।
କୁରୁକ୍ଷେତ୍ର ଧୂଳି ଦୁଷ୍କୃତକର୍ମୀ ଅଙ୍ଗେ
ପଡ଼ିଲେ ରହଇଟି ଯାଇ ସୁର-ସଙ୍ଗେ ।
ତରନ୍ତୁକ ଆରନ୍ତୁକ ସେ ରାମହ୍ରଦ
ମଚକ୍ରକ ହ୍ରଦର ଅଛଇଟି ମଧ୍ୟ ।
ତାହାର କୁରୁକ୍ଷେତ୍ର ଅଟେ ନାରବର
ସମନ୍ତପଞ୍ଚକଟି ଶୁଣି ନାମାନ୍ତର ।
ରାମ କୁରୁକ୍ଷେତ୍ରଙ୍କ ମହାତ୍ମ୍ୟ ଶୁଣି
ଦାନ ଦେଲେ ତାଙ୍କ କରଣ ଦ୍ୱିଜଶ୍ରେଣୀ ।
ଆଶ୍ରମକୁ ଯାଇ ସେ ନାନା ବୃକ୍ଷଯୁକ
ଦେଖିଣ ପଚ୍ଛିଲେ ଯଦୁଙ୍କ ନାୟକ ।
କାହାର ଏ ଆଶ୍ରମ ଅଟେ ଋଷିମାନେ
ସତ କରି କହ ତ ମୋହର ସନ୍ନିଧାନେ ।
ଋଷିମାନେ ବୋଇଲେ ଯାର ଏ ଆଶ୍ରମ
ତାହା କହିବା ଶୁଣ ମନ ଦେଇ ରାମ ।
ପୂର୍ବକାଳରେ ଏଠାରେ ବିଷ୍ଣୁ ତପ କଲେ
ବ୍ରହ୍ମା ଦେବତାଙ୍କୁ ଯେଣଣ ଯାଜୀ ହେଲେ ।
ଶାଣ୍ଡିଲ୍ୟଙ୍କର ଝିଅ ଶ୍ରୀମତୀ ସେ ଥିଲେ
ତପ କରି ଏଠାରେ ସ୍ୱର୍ଗକୁ ସେ ଗଲେ ।
ଏହା ଶୁଣିଣ ରାମ ପାଇ ମହାସୁଖ
ଆରୋହିଲେ ଯାଇ ସେ ହିମଗିରି ଶିଖ ।
ତହିଁରେ ପ୍ଲକ୍ଷପ୍ରସ୍ରବଣକୁ ଦେଖିଲେ
ଆନନ୍ଦରେ କାରିବପନ ତୀର୍ଥେ ଗଲେ ।

ଯେଉଁଠାରେ ସ୍ନାନ ଦାନ ସାରି ହଳଧର
ମିଳିଲେ ଆଶ୍ରମରେ ମିତ୍ରାବରୁଣରେ ।
ସେହିଠାରେ ଯମୁନା ଯାଉଥିଲେ ବହି
ତହିଁ ସ୍ନାନ କରି ରେବତୀ ଦେଖାସାଇଁ ।
ଋଷିମାନଙ୍କର କୂଳରେ କଥାବାର୍ତ୍ତା
ହୁଅନ୍ତେ ଆସିଲେ ନାରଦ ବେଦବେତ୍ତା ।
ଜଟା କମଣ୍ଡଳୁ ବୀଣାକୁ ଧରିଛନ୍ତି
ତେଜରେ ନିନ୍ଦା କରି ସୂର୍ଯ୍ୟଙ୍କର କାନ୍ତି ।
ବଳରାମ ପାଶରେ ହେଲେ ପ୍ରବେଶ
ଦେଖି ରାମ ଉଠିଲେ ହୋଇ ହସ ହସ ।
ନାରଦଙ୍କ ପାଦ ଦୁଇକ ଧରି ବନ୍ଦ
ଛିଡ଼ା ହୋଇ ଆଗରେ ଦୁଇ କର ଛନ୍ଦ ।
ବୋଇଲେ କୁରୁଙ୍କ ଚରିତ ମୁନିବର
ଜାଣିଥିଲେ ମୋ ଆଗେ କର ତ ବିସ୍ତାର ।
ନାରଦ ବୋଇଲେ ହେ ଆଗେ ଭୀଷ୍ମ ମଲେ ।
ପଛରେ ଦ୍ରୋଣ କର୍ଣ୍ଣ ଦୁହେଁ ନାଶ ଗଲେ
ଏ ଅନ୍ତରେ ଶଲ୍ୟ ହୋଇ ସେନାପତି
ବସିଲେ ଯାଇ କରି ଯମଙ୍କର କଣ୍ଠ ।
ରାଜା ରାଜପୁତ୍ର ଯେତେକ ଆସିଥିଲେ
ଦୁର୍ଯ୍ୟୋଧନ ପକ୍ଷରେ ସର୍ବେ ନାଶ ଗଲେ ।
କୃପ କୃତବର୍ମା ଦ୍ରୋଣଙ୍କର ନନ୍ଦନ
କେବଳ ରହିଛନ୍ତି ଯେମଣେ ଜୀବନ ।
ପାଣ୍ଡବଙ୍କ ସକାଶୁଁ ମହାଭୟ ପାଇ
ଯୁଦ୍ଧ ଛାଡ଼ି ପଳାଇ ଲୁଚିଛନ୍ତି ରହି ।
ସୁଯୋଧନ ଦ୍ୱୈପାୟନ-ସରରେ ଯାଇ
ରହିଥିଲେ ରାମ ହେ ଶରୀର ଲୁଚାଇ ।
ସେଠାକୁ ଯାଇ କରି ପାଣ୍ଡବ-ନୃପତି
ଭୀମ ଛଳରେ ସୁଯୋଧନଙ୍କୁ ଯୁଝନ୍ତି ।
ତୁମ୍ଭର ଇଚ୍ଛା ଥିଲେ ଯାଅ ସେହିଠାକୁ
ଦେଖିବ ଭୀମ ଦୁର୍ଯ୍ୟୋଧନଙ୍କ ଯୁଦ୍ଧକୁ ।
ନାରଦଙ୍କ ବଚନ ଶୁଣି ହଳଧର
ସବୁ ଋଷିମାନଙ୍କୁ କରି ନମସ୍କାର ।
ପରିକରଗଣେ ଦ୍ୱାରକା ପଠାଇ
ସିଂହ ପରାଏ ଗିରିବରରୁ ଓହ୍ଲାଇ ।
ଋଷିଙ୍କି ବୋଇଲେ ଏ ସରସ୍ୱତୀ ନଦୀ
ବହି ଯାଉଅଛି ପାତାଳକୁ ଭେଦି ।

ଏଥିରେ ଯେମାନେ କରିବେ ଆସି ସ୍ନାନ
ଇନ୍ଦ୍ରଙ୍କର ହେବେ ସେମାନେ ପୂଜ୍ୟ ଜାଣ ।
ଏହା କହି ଦୁଇ ଶିଷ୍ୟଙ୍କ ଯୁଦ୍ଧ ଦେଖି
ବାହାରିଲେ ରଥେ ଆରୋହି ହୋଇ ସୁଖୀ ।
ଏଠାରେ ରାମ-ତୀର୍ଥଯାତ୍ରା ସମାପତ୍ତି
ହେଲା କହଇ କୃଷ୍ଣସିଂହ ନରପତ୍ତି ।

—୦—

## ଦୁର୍ଯ୍ୟୋଧନ ବଧ

ଏ ଅନନ୍ତରେ ବଇଶମ୍ପାୟନ ଋଷି
ଜନ୍ମେଜୟ ନୃପେ କହିଲେ ହସି ହସି ।
ବୋଇଲେ ଶୁଣ ତୁମ୍ଭ ଦୁଇ ପିତାମହ
ଯୁଦ୍ଧକଲେ କୁରୁକ୍ଷେତ୍ରରେ ବହି ସ୍ନେହ ।
ଧୃତରାଷ୍ଟ୍ର ରାଜନ ସଞ୍ଜୟଙ୍କୁ ପୃଚ୍ଛି
ଯେରୂପରେ ପୁଚ୍ଛିଲେ କହିବ ତା ମୁହିଁ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହ ତାହା ଶୁଣିବାପାଇଁ ଦୃଢ଼ ମନ ।
ବଇଶମ୍ପାୟନ ବୋଇଲେ ହେ ରାଜନ
ଧୃତରାଷ୍ଟ୍ର ପୃଚ୍ଛିଣ ସଞ୍ଜୟ-ବଦନ ।
ବୋଇଲେ ବଳରାମ ଯୁଦ୍ଧ ଦେଖିବାକୁ
ଆସିଲେ ତ, କିରୂପେ ଭୀମ ମୋ ପୁଅକୁ ।
ଯୁଦ୍ଧ କରି ମାରିଲା କହ ତ ସଞ୍ଜୟ
ଭଲବା କି ହୋଇବ ଛର୍ଦିପ୍ସୁ ତନୟ ।
ସଞ୍ଜୟ ବୋଇଲେ ହେ ତୁମ୍ଭର ନନ୍ଦନ
ଦେଖି ବଳଦେବଙ୍କୁ ସ୍ଥିତ କରି ମନ ।
ରାମଙ୍କର ଆଗରେ କରି ନମସ୍କାର
ପଚାରିଲେ ଶୁଭବାରତା ତାହାଙ୍କର ।
ସେହିକାଳରେ ଯୁଧିଷ୍ଠିରଙ୍କୁ ଅନାଇଁ
ସହାସ୍ୟେ କହିଲେ ରେବତୀ-ପ୍ରାଣସାଇଁ ।
ଋଷିଙ୍କରଠାରୁ ଶୁଣିଛି ମୁହିଁ ଯାହା
କହିବ ତା ଶୁଣ ପାଣ୍ଡବ ନରନାହା ।
କୁରୁକ୍ଷେତ୍ରରେ ଯୁଦ୍ଧ କରି ଯେ ମରଇ
ଇନ୍ଦ୍ରଙ୍କର ଆସନ ଯାଇ ସେ ବସଇ ।
ଏ ସକାଶୁଁ ଏଠାରେ କରିବାର ଯୁଦ୍ଧ
ଦେଖିକରି ମୋ ଚିତ୍ତ ହେଉନାହିଁ ବୋଧ ।
ସମନ୍ତପଞ୍ଚକକୁ ଚାଲ ଆମ୍ଭେ ଯିବା
ଭୀମ ଦୁର୍ଯ୍ୟୋଧନଙ୍କ ସଂଗ୍ରାମ ଦେଖିବା ।

ଯୁଧିଷ୍ଠିର ଘେନି ରାମଙ୍କ ବଚନକୁ
ବାହାରିଲେ ସମନ୍ତପଞ୍ଚକ ସ୍ଥାନକୁ ।
ସୁଯୋଧନରାଜା ଧରିଣ ଗଦା କରେ
ସେ ମଧ୍ୟ ଗମିଲେ ତାହାଙ୍କ ସଙ୍ଗତରେ ।
ତା ଦେଖି ଦେବତାଏ ସାଧୁ ସାଧୁ ବାଣୀ
ବୋଇଲେ ତୁମ୍ଭ ପୂର୍ବଜକୁ ଦେ ପୁଣିପୁଣି ।
ପାଣ୍ଡବ-ସୈନ୍ୟେ ଶଙ୍ଖ ଭେରୀ ସିଂହନାଦ
ହୁଅନ୍ତେ ଜାତ ହେଲା ବୀରଙ୍କ ପ୍ରମୋଦ ।
କାଳଦଣ୍ଡ ପରାଏ ଭୀମ ଗଦା ଟେକି
ଗେଲାଇଣ ଚାଳିଲେ ଫୁଲାଇ ଛାତିକି ।
ତୁମ୍ଭର ପୁଅ ମଧ୍ୟ ଭୀମଙ୍କ ପରାୟେ
ଗୋଡ଼ ଟେକି ପକାଇଲେ ହେ ନରରାୟେ ।
କୁରୁକ୍ଷେତ୍ରେ ଦୁହେଁ ହୋଇଲେ ପରବେଶ
ମୋଡ଼ିଲେ କରେ ନଖ ହୋଇ ହସ ହସ ।
ବାହାସ୍ଫୋଟ ମାରି ଅଶୀବ କଡ଼ କରି
ଚଢ଼ାଚଢ଼ି ହୋଇଲେ କରେ ଗଦା ଧରି ।
ମତ୍ତ ସିଂହ ପ୍ରାୟେ ସେ ଦୁଇ ମହାବୀର
ଗତି କଲେ କରିବା ପାଇଁ ଯେ ସମର ।
ଯେରୂପେ ଦିଶଇଟି ଶୃଙ୍ଗବନ୍ତ ଗିରି
ସେରୂପେ ଦିଶିଲେ ସେ ଦୁହେଁ ଦଣ୍ଡଧାରି ।
ଦୁହେଁ ତ ରାମଙ୍କ ଅତ୍ୟନ୍ତ ପ୍ରିୟଶିଷ୍ୟ
ପାଇଅଛନ୍ତି ବିଦ୍ୟାବଳକୁ ସଦୃଶ ।
ମୟ ବାସବଙ୍କର ପରାୟେ ସେ ଦୁହେଁ
ବାହାରିଲେ ଯୁଦ୍ଧ କରିବା ପାଇଁ କୋହେ ।
ମଧୁ କଇଟଭ ଯେ ରାମ ବାସୁଦେବ
ଧନପତି ବରୁଣ ରାଜନ ସୁଗ୍ରୀବ ।
ବାଳୀ ପରି ସେ ଦୁହେଁ ସବୁରି ନେହରେ
ଦିଶିଲେ ଗଦାବର ବହିକରି କରେ ।
ଏକା କୁଳରେ ତ ଜନମ ଛନ୍ତି ପାଇ
ଏଣୁ ଊଣା ଅଧିକ ଜଣା ଯାଉ ନାହିଁ ।
କାଳାନ୍ତକ ଯମ ପରାଏ ଦୁହେଁ ରୂପ
ପ୍ରକାଶି ବଢ଼ାଇଲେ ଯୋଦ୍ଧାଙ୍କର ତାପ ।
ସେ ଦୁହେଁ ସର୍ପ ପରି କ୍ରୋଧ ବିଷ ବାନ୍ତି
ଗରଜି କହିବାରେ ମୁଖରେ କରନ୍ତି ।
ବାଘ ପରାଏ ହୋଇକରି ସେ ଅଦୃଶ୍ୟ
ଦିଶିଲେ ସେ ଅପାର ସମୁଦ୍ର ସଦୃଶ ।

କ୍ରୋଧ ହେବା ସକାଶୁଁ ସେ ଦୁହିଁଙ୍କ ଅଙ୍ଗ
ଦିଶୁଅଛି ରାଜନ ଅତିଶୟେ ରଙ୍ଗ ।
ପବନରେ ପୂର୍ବ ପଶ୍ଚିମ ମେଘବର
ଗର୍ଜନ ପରି ଦୁହେଁ ଗର୍ଜି ନିରନ୍ତର ।
ମଧ୍ୟାହ୍ନ ସୂର୍ଯ୍ୟ ପରି ଦୁହେଁ ତେଜ ଧରି
ହୋଇଲେ ସବୁ ପ୍ରାଣୀଙ୍କର ମୋହକାରୀ ।
ଏହି କାଳରେ ସୁଯୋଧନ ବଳଦେବ
ଆଗରେ ଜଣାମଣା କଲେ ନରଦେବ ।
ପାଣ୍ଡବଙ୍କୁ ଘେନ ବସିଣ ତୁମ୍ଭେ ସୁଖେ
ଦେଖ ଭୀମ ପଡ଼ି ମରିଲା ମୋର ମୁଖେ ।
ରାମ ଦୁର୍ଯ୍ୟୋଧନଙ୍କ ବଚନକୁ ମାନି
ବସିଲେ ସଭା କରି ପାଣ୍ଡବଙ୍କୁ ଘେନି ।
ନକ୍ଷତ୍ର ମଧ୍ୟେ ଚନ୍ଦ୍ରଙ୍କର ଶୋଭାଚୟ
ଜିଣି ପକାଇଲେ ସେ ରୋହିଣୀ-ତନୟ ।
ଅନ୍ୟୋନ୍ୟେ ଅପ୍ରିୟ ବଚନ ଦୁର୍ଯ୍ୟୋଧନ
ଭୀମ ବୋଲାବୋଲି ହୋଇଲେ ହେ ରାଜନ ।
ଧୃତରାଷ୍ଟ୍ର ବୋଇଲେ ଏଗାରକ୍ଷୌହିଣୀ
ସେନାଭର୍ତ୍ତା ହୋଇ ମୋହର ପୁତ୍ରମଣି ।
ପଦାତି ହୋଇ ଭୀମ ସଙ୍ଗେ ଗଦାଯୁଦ୍ଧ
କରୁଛି ଯା ହୃଦ-ଦେଶରେ ବହି କ୍ରୋଧ ।
ଏଥୁଁ ଊଣା ହୋଇ ମହୀରେ କଥା କିଛି
ବୋଲିବାକୁ ସଞ୍ଜୟ ବାକ୍ୟ ନ ଆସୁଛି ।
ସଞ୍ଜୟ ବୋଇଲେ ଛାଡ଼ି ଏ କଥାପଟୁ
ତୁମ୍ଭ ବାଣୀ ମୋତେ ହେ ଶୁଭୁଅଛି କଟୁ ।
ପୁତ୍ର ପୃଭୁରଙ୍କର ଗଦା ଆୟୋଧନ
ଶୁଣ ମୋଠାରୁ ଏବେ ଦେଇକରି ମନ ।
ବୃଷଭ ପରି ସୁଯୋଧନ ରାୟେ ଗର୍ଜି
ଭୀମଙ୍କୁ ବୋଇଲେ ଯୁଝିବା ଆସ ଆଜି ।
ସେହି ସମୟରେ ଯେ ମହାଉତପାତ
ହୋଇଲା ଆହେ ନରବର ଉପଗତ ।
ଆକାଶରୁ ନିର୍ଘାତ ପଡ଼ି କୋଟି କୋଟି
ଉଡ଼ିଣ ଧୂଳି ଘୋଡ଼ାଇଲା ଜନଦୃଷ୍ଟି ।
ପର୍ବ ବିନା ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କଲା
ବନ ତୁଲରେ ମହୀ ଗିରି କମ୍ପିଗଲା ।
ନିଷ୍ଠୁର ହୋଇକରି ବହିଲା ପବନ
ଆକାଶୁଁ ଖପର ପଡ଼ିଲା ଅବଚ୍ଛିନ୍ନ ।

ବିଲୁଆଏ ଘୋର ରାବକୁ ମୁଖେ କଲେ
ମୃଗମାନେ ଗୃହଦ୍ୱାରରେ ସଞ୍ଚରିଲେ ।
କୂପମାନଙ୍କରୁଟି ବାହାରଣ ଜଳ
ଶୁଖିଥିବା ଧରା-ଖାଲରେ ହେବେ ଠୁଳ ।
ଏହା ଦେଖିଣ ଭୀମ ଯୁଧିଷ୍ଠିର ଆଗେ
ହସିକରି ଯେ ଏହା କହିଲେ ସରାଗେ ।
ଆଜି ମୋ ସଙ୍ଗେ ଯୁଝି ସୁଯୋଧନ ପାପ
କରିଦେବ ନିଜର ନାମଟିକ ଲୋପ ।
ଦେଖୁଥାଅ ତୁମ୍ଭେ ସୁଖରେ ସଭା କରି
ହୃଦୟେ ଥିବା ଦୁଃଖ ଛାଡ଼ି ଦଣ୍ଡଧାରି ।
କୁରୁକୁଳାଧମକୁ ଗଦାରେ ମୁଁ ପିଟି
ମର୍ଦ୍ଦିବ କାଢ଼ି ମାଳେ ତୁମ୍ଭର ସଳାଟି ।
ଏ ପାପୀ ପୂର୍ବେ ମୋତେ ବିଷକୁ ଖୁଆଇ
ବାନ୍ଧି ଜଳେ ପକାଇଦେଲା ନରସାଇଁ ।
ଜତୁଘରେ ପୂରାଇ ଦେଉଥିଲା ନିଆଁ
ଦଇବ ରଖିଲା ଆମ୍ଭଙ୍କୁ କରି ଦୟା ।
ସଭାରେ ବସି ପଶାଖେଳେ ଦ୍ରବ୍ୟ ହରି
କହୁଥିଲା ଆମ୍ଭଙ୍କୁ ପରିହାସ କରି ।
ଏବାହାରେ ଯେ ଦ୍ରୌପଦୀଙ୍କି ଦେଲା କ୍ଳେଶ
ସେ ଯେବେ କଲାଇଁ ବହୁତ ବନବାସ ।
ଏ ଦୁଃଖଯାକ ଆଜି ପାଶୋରିବ ମୁହିଁ
ଗଦା ପିଟି ଏହାକୁ ଭୂମିରେ ଶୁଆଇ ।
କାଳି ସୁଯୋଧନର ଚିପିବାରୁ ତୋଟି
ଗଦା ଧରି ଯୁଦ୍ଧରେ ଅଛି ମୋତେ ଘୋଟି ।
ମୋର ଏ କଥାକୁ ନ କର ତୁମ୍ଭେ ଶଙ୍କା
ଶୁଭିବ ଏକ୍ଷଣି ହସ୍ତିନାପୁରେ ଡକା ।
ଏରୂପେ କହି ଭୀମ ଗଦା କରେ ବହି
ବୋଇଲେ ଆସ ଯୁଝି ସୁଯୋଧନ ଭାଇ ।
କରିଥିବା କର୍ମ ଦୁଷ୍କୃତ ସୁମରଣା
କରିବ ଆଜି ଯୁଦ୍ଧେ ବୁଦ୍ଧି କରି ବଣା ।
ଯେତେ ଦୁଃଖ ଦେଇଛ ତୁମ୍ଭେଟି ଆମ୍ଭଙ୍କୁ
ଆଜି ଆମ୍ଭେ ଜାଣ ହେ ତା ଦେବୁଁ ତୁମ୍ଭଙ୍କୁ ।
ତୁମ୍ଭ ପାଇଁ ଇନ୍ଦ୍ର ପରାୟେ ରଥିକୁଳ
ମରିଣ ମଣ୍ଡିଲେଣି ସମରମଣ୍ଡଳ ।
ଏକା ତୁମ୍ଭେ ରହିଛ ସିନା ପ୍ରାଣ ଘେନି
ଏକ୍ଷଣି ତୁମ୍ଭଙ୍କୁ କରିବା ଯମସ୍ଥାନୀ ।

ସୁଯୋଧନ ବୋଇଲେ କି ବୋଲ ହେ ଭୀମ
ଆଜ ମୁଁ ଭାଙ୍ଗିଦେବି ତୁମ୍ଭର ଗୁମାନ ।
ମୋହ ପରି ଲୋକ କି ଏ କଥାମାନଙ୍କୁ
ଡରିକରି ନ ଆସିବ ହେ ଯୁଝିବାକୁ ।
ବଳ ଥିଲେ ତ ବୀରେ କରନ୍ତି ପ୍ରକାଶ
ନ କହନ୍ତି ବଚନେ ନିଜ ପଉରୁଷ ।
ତୁମେ ଯେବେ ବୀର ହେ ବୋଲାଉଛ ଭୀମ
ତେବେ ଗଦା ମାରି ମୋହର ସାରି ତମ ।
ସବୁଦିନେ ତୁମ୍ଭ ସଙ୍ଗତେ ଗଦାଯୁଦ୍ଧ
କରିବାକୁ ମୋହର ଥାଏ ଭୀମ ସାଧ ।
ଏବେ ଦଇବରେ ପଡ଼ିଛ ଭେଟ ତୁମ୍ଭେ
ଆଜ ତୁମ୍ଭ ବଳ ବୁଝିବୁ ଯୁଦ୍ଧେ ଆମ୍ଭେ ।
ଏରୂପେ ବଚନେ କହନ୍ତେ ତୁମ୍ଭ ବତ୍ସା
ପାଣ୍ଡବ-ପକ୍ଷୀୟେ ବୋଇଲେ ଆଚ୍ଛା ଆଚ୍ଛା ।
ଭୀମ ସୁଯୋଧନ ଏ ଦୁହେଁ ଗଦା ଧରି
ମିଶାମିଶି ହୋଇଲେ ଯୁଦ୍ଧ ଇଚ୍ଛା କରି ।
ସେହିକାଳରେ ପାଣ୍ଡବଙ୍କ ଜୟଚିହ୍ନ
ସ୍ୱରଆଡ଼େ ଦେଖିଲେ ସବୁରି ନୟନ ।
ସେ ଦୁହେଁ ଗଦା ଧରି ଟର୍ଣ୍ଣି କରି ମୋଟ
ପିଟାପିଟି ହୋଇନ୍ତେ ଶୁଭିଲା ଚଟଚଟ ।
ଏହେତୁ ଫୁଟିଲା କିଂଶୁକବୃକ୍ଷ-ପ୍ରଭା
ଭାଙ୍ଗି ପକାଇଲା ଦୁହିଁଙ୍କ ଦେହ ଶୋଭା ।
ସେ ଦୁଇ ବୀରେ ଯୁଦ୍ଧେ ପାଇକରି ଶ୍ରାନ୍ତ
ବସୋଇ ଯୁଦ୍ଧେ କଲେ ହୋଇ ଗଦା ହସ୍ତ ।
ଦୁହିଁଙ୍କର ବଳ ତ ଅଟଇ ସମାନ
ମତ୍ତହସ୍ତୀ ପ୍ରାୟେ ସେ କଲେ ଆୟୋଧନ ।
ତାହା ଦେଖିଣ ଦେବ ଗନ୍ଧର୍ବ ଦାନବେ
ବଡ଼ ଯୁଦ୍ଧ ହେଲା ବୋଇଲେ ଶୂନ୍ୟେ ସର୍ବେ
ସକଳ ପ୍ରାଣୀଙ୍କର ଜୟରେ ସଂଶୟ
ହୋଇଲା ହେ ଅମ୍ବିକା ଦେବୀଙ୍କ ତନୟ ।
ଅନ୍ୟୋନ୍ୟରେ ସେ ଦୁହେଁ ଛିଦ୍ର ଟକାଟକ
ହୋଇଣ ହେଲେ ପିଟାପିଟି ଗଦା ଟେକ ।
ଯମଦଣ୍ଡ ପରି ଭୀମଙ୍କ ଗଦାବର
ହେଲା ସବୁ ପ୍ରାଣୀମାନଙ୍କ ଭୟଙ୍କର ।
ଅଡ଼ାଅଡ଼ି ହୁଅନ୍ତେ ଦୁହେଁ ଗଦାବାଡ଼ି
ସେ ଶବଦ ଭେଦିଲା ଆକାଶରେ ମାଡ଼ି ।

ଭୀମଙ୍କ ଗଦା ବୁଲା ଦେଖି ସୁଯୋଧନ
ବୁଝିହେଲେ ଆଶ୍ଚର୍ଯ୍ୟ ପାଇଣ ନୟନ ।
ଭୀମ ନାନାଜାତି ମଣ୍ଡଳକୁ ଦେଖାଇ
ବାହିଲେ ଦୁଇ ହାତେ ଗଦା ନରସାଇଁ ।
ତୁମ୍ଭର ସୁଯୋଧନ ମଣ୍ଡଳ ସେରୂପେ
ଦେଖାଇ ଯୁଦ୍ଧହାଣ୍ଡେ ଯୁଦ୍ଧକଲେ କୋପେ ।
ଦେଖିଣ ସୁଯୋଧନ ସବ୍ୟ ଭୀମସେନ
ମଣ୍ଡଳମାନ କଲେ ଜାଣ ହେ ରାଜନ ।
ଭୀମଙ୍କର ମଣ୍ଡଳ କରିବାର କାଳେ
ଭୀମ ସୁଯୋଧନ ଗଦା ପିଟିଲେ କାଖତଳେ
ଭୀମ ସୁଯୋଧନ ପ୍ରହାରକୁ ନ ମାନି
ବୁଲାଇଲେ ଗଦାବରକୁ କ୍ରୋଧ ଘେନି ।
ଇନ୍ଦ୍ରଙ୍କର ବଜ୍ର ଯମଙ୍କ ଦଣ୍ଡ ପରି
ଭୀମଙ୍କର ଗଦା ଦିଶିଲା ଦଣ୍ଡଧାରି ।
ତୁମ୍ଭର ପୁଅ ମଧ୍ୟ ବୁଲାଇଲେ ଗଦା
ଅଟେ ତ ତାଙ୍କର ବୁଦ୍ଧି ଟି ଯୁଦ୍ଧେ ନିଦା ।
ତୁମ୍ଭର ପୁଅ ଗଦା ବୁଲାଇବା ଧ୍ୱନି
ଶୁଣି କମ୍ପିଗଲେ ପାଖରେ ଥିବା ପ୍ରାଣୀ ।
ସୋମକ ପାଣ୍ଡବଙ୍କୁ ହେଲା ଜାତ ଭୟ
ଧରି ନ ପାରିଲେ ସେ ଧଇର୍ଯ୍ୟ ହୃଦୟ ।
ଏରୂପେ ଯୁଦ୍ଧକ୍ରୀଡ଼ା ଦେଖାଇ ସେ ବୀରେ
ପିଟାପିଟି ହୋଇଲେ ଗଦାକୁ ଦେହରେ ।
ଗଦା-ଦନ୍ତ ପାନ୍ତି ଯେ ସୁଯୋଧନ ଭୀମ
ମତ୍ତ ହସ୍ତୀ ଦୁହେଁ କି ରଚିଲେ ସଂଗ୍ରାମ ।
ଭୀମ ତୁମ୍ଭ ପୁଅର ଗଦାର ମଧ୍ୟକୁ
ପିଟିଲେ ନିଜ ଗଦା ଦେଖାଇ ବଳକୁ ।
ଭୀମଙ୍କ ଗଦାଘାତେ ସୁଯୋଧନ ଗଦା
ଅଗ୍ନିକଣା ଜାତ କରିଲା ଗହା ଗଦା ।
ଭୀମସେନଙ୍କ ଗଦାବରକୁ ନ ସହି
ମହୀଦେବୀ କମ୍ପିଗଲା ହେ ନରସାଇଁ ।
ଧର୍ମମଣ୍ଡଳକୁ ଆଚରି ତୁମ୍ଭ ସୁତ
କଲେ ଭୀମସେନଙ୍କ ମସ୍ତକେ ଗଦାଘାତ ।
ସୁଯୋଧନ ଗଦା ବାଜିଲା ଭୀମମୁଣ୍ଡେ
ନ କମ୍ପି ଯୁଦ୍ଧ କଲେ କ୍ରୋଧେ ସେହି ଖଣ୍ଡେ
ତାହା ଦେଖି ପାଣ୍ଡବସେନାଏ ଭୀମଙ୍କୁ
ପରଶଂସା କରି କହିଲେ ବଚନକୁ ।

ଶୁଣି ଭୀମ ସୁଯୋଧନଙ୍କ ଊରୁ ଦେଶେ
ବୁଲାଇ ଗଦା;ବର ଫିଙ୍ଗିଲେ ନିବେଶେ ।
ସୁଯୋଧନରାଜା ଅତ୍ୟନ୍ତ ବୁଦ୍ଧିଶାଳୀ
ସେ ଗଦା-ପ୍ରହାରକୁ ଦେଲେ କରେ ଟାଳି ।
ତଳେ ପଡ଼ିଣ ଭୀମଙ୍କର ଗଦାବର
ଖୋଳ ପକାଇଲା ମହୀକି ନରେଶ୍ୱର ।
ଏଥିଁ ଅନ୍ତେ ଭୂମ୍ବର ସୁତ ଗଦା ଧରି
ପିଟିଲେ ଭୀମ-ହୃଦଦେଶେ ଆଣ୍ଠ କରି ।
ଭୀମ ସେ ଗଦାଘାତେ ହୋଇଣ ଅଜ୍ଞାନ
ଲେଉଟାଇଦେଲେ ସେ ଆପଣା ନୟନ ।
ତା ଦେଖି ସୋମକ ପାଞ୍ଚାଳେ ହୋଇ ଦୁଃଖୀ
କି କରିବ ବୋଲି ଭାଳିଲେ ନୋହି ସୁଖୀ ।
ଏ ସମୟରେ ଚେତା ପାଇଣ ଭୀମବୀର
ଧାଇଁଲେ ସିଂହ ପରି ଫୁଲାଇ ଶରୀର ।
ବୁଲାଇ ଗଦା ଭୂମ୍ବ ସୁତ ପାର୍ଶ୍ୱ ଦେଶେ
ପ୍ରହାରନ୍ତେ ପଡ଼ିଲେ ଭୂମେ ମୋହବଶେ ।
ସୃଞ୍ଜୟମାନେ ତାହା ଦେଖି ସିଂହରଡ଼ି
କଲେ ହେ ରାଜନ ହୃଦରୁ ଭୟ ଛାଡ଼ି ।
ଏ ବାହାରେ ମଲ ବୋଲିଣ ସୁଯୋଧନ
ବଚନେ କହି ମୁଖ କଲେ ପରସନ୍ନ ।
ସେହି ସମୟେ ଚେତା ପାଇ ସୁଯୋଧନ
ଭୀମଙ୍କୁ ବକ୍ଷକରି ଝୁମ୍ପିଲେ ରାଜନ ।
ଭୀମଙ୍କର ଦେହରେ ଦେହକୁ ମିଶାଇ
ଲଲାଟ ମଧ୍ୟରେ ପିଟିଲେ ଗଦା ନେଇ ।
ଭୀମ ସେ ଗଦାଘାତେ କପାଳେ ରକତ
ଧରି ହୋଇଲେ ବାଳ ଆଦିତ୍ୟ ସମତ ।
ଭୀମ ନିଜ ଗଦାବରକୁ କରଦେଶେ
ବହି ସୁଯୋଧନେ ପିଟିଲେ ଅତି ରୋଷେ ।
ସେ ଗଦା ବେଗେ ଯାଇ ସୁଯୋଧନ-ଶାଳ
ବୃକ୍ଷକୁ ଦେଖାଇଲେ ନେଇ ମହୀତଳ ।
ପାଣ୍ଡବମାନେ ତାହା ଦେଖିଣ ନୟନେ
ପୂରାଇଲେ ସ୍ୱରଦିଗକୁ ଗରଜନେ ।
ସୁଯୋଧନ ହସ୍ତୀ ଅଙ୍ଗରେ ଚେତା ପାଇ
ଯୁଦ୍ଧଭୂମି-ସ୍ଥଳୁ ଉଠିଲେ ନରସାଇଁ ।
ଭୀମବଳ କମଳ-ବନକୁ ମନ୍ଥନ
କରିବାକୁ ଧାଇଁଲେ ହୋଇଣ ଅଜ୍ଞାନ ।

ଭୀମ ସୁଯୋଧନଙ୍କ ସେହି ଗଦାଘାତେ
ମସ୍ତକ ଆଗ୍ରେ କଲେ ଜାଣ ନରପତେ ।
ସେ ଛିଦ୍ରେ ଭୀମଙ୍କ ଦେହର କବଚକୁ
କାଟିଲେ ସୁଯୋଧନ ମାରିଣ ଗଦାକୁ ।
ଦେବତାଏ ତା ଦେଖି ହେଲେ ଉତଫୁଲ୍ଲି
ସୁଯୋଧନ-ମସ୍ତକେ ବରଷିଲେ ଫୁଲ ।
ଭୀମଙ୍କର କବଚ ଛିଡ଼ନ୍ତେ ନୃପାଳ
ହେଲା ପାଣ୍ଡବଙ୍କ ଆସନ ଟଳମଳ ।
ଭୀମ ମୁହୂର୍ତ୍ତିକ ଅନ୍ତରେ ଚେତା ପାଇ
ମୁଖଦେଶୁଁ ରକ୍ତ ପୋଛିଲେ ନରସାଇଁ ।
ଧଇର୍ଯ୍ୟ ଧରି ମନେ ମୋଡ଼ି ଦୁଇ ନିଶ
ବୋଇଲେ ସୁଯୋଧନ ଗଲୁଁ ନିଶ୍ଚେ ନାଶ ।
ଦେଖିଣ ଭୀମ ସୁଯୋଧନର ଯୁଦ୍ଧକୁ
ସମାନ ଅରଜୁନ ପୁଚ୍ଛିଲେ କୃଷ୍ଣଙ୍କୁ ।
ଏ ଦୁହିଁଙ୍କ ମଧ୍ୟେ କେ ଅଟେ ବଳୀଆର
କେ କାହିଁରେ ଅଧିକ କହ ଚକ୍ରଧର ।
ଶ୍ରୀକୃଷ୍ଣ ବୋଇଲେ ହେ ବଳେ ଭୀମସେନ
ଅଧିକ କୃତବିଦ୍ୟ ଅଟେ ସୁଯୋଧନ ।
ଏକା ଗୁରୁଠାରୁ ତ ଦୁହେଁ ଛନ୍ତି ଶିଖି
ଏହି ସକାଶୁଁ ହେଉ ନାହିଁ ବଧ୍ୟ ଲକ୍ଷି ।
ଧର୍ମଯୁଦ୍ଧ କରିଲେ ସୁଯୋଧନଙ୍କର
ପରାଣ ନେଇ ନ ପାରନ୍ତି ଭୀମବର ।
ଏହି କଥାକୁ ଜାଣି ଅନ୍ୟାୟ ଆଚରି
ବଧନ୍ତୁ ଭୀମ ସୁଯୋଧନକୁ ସଂହାରି ।
ଦେବତାଏ ଅସୁରମାନଙ୍କୁ ମାୟାରେ
ଜିଣିଅଛନ୍ତି ଶୁଣିଥିବ ତ କର୍ଣ୍ଣରେ ।
ମାୟାରେ ବଳି ପୃଥ ବିରୋଚନ ଜିଣି
ସ୍ୱର୍ଗ ଭୋଗ କଲେଟି ସୁଖେ ସୁରମଣି ।
ଏହି ସକାଶୁଁ ଭୀମ ଆଚରନ୍ତୁ ମାୟା
କର୍ମା କରୁଛନ୍ତି ଏ ପାପୀଠାରେ ଦୟା ।
ଜୁଆଖେଳ କାଳେ ତ ପ୍ରତିଜ୍ଞା ବଚନ
କହିଛନ୍ତି ଭୀମ "ଭାଙ୍ଗିବି ଊରୁସ୍ଥାନ" ।
ଏବେ ସେ ପ୍ରତିଜ୍ଞାକୁ ସଫଳ କରନ୍ତୁ
ସୁଯୋଧନଙ୍କୁ ସେ ବଧନ୍ତୁ ରଣେ ମୃତ୍ୟୁ ।
ନ୍ୟାୟରେ ଯୁଦ୍ଧ କଲେ ଯୁଧିଷ୍ଠିରଙ୍କର
ଦୁଃଖ ଜାତ ହେବ ଅର୍ଜୁନ ମନେକର ।

ଯୁଧିଷ୍ଠିରରାଜାଙ୍କ ବଚନ ହୁଡ଼ନ୍ତେ ।
ପଡ଼ିଲଇଁ ଆସିଛି ମହତ ଦୁଃଖରେ ।
ସର୍ବେ ହୋଇ ଆମ୍ଭେ ଯୁଝିଲେ ସୁଯୋଧନ—
ରାଜାର ନଅନ୍ତେଇଁ କ୍ଷଣକେ ଜୀବନ ॥
ଏହାକୁ ଏକା ଯୁଦ୍ଧ କରିବାରୁ ଏହା ।
ସ୍ୱେଚ୍ଛାରେ ଅର୍ଜିଲେ ପାଣ୍ଡବ-ନରନାହା ॥
ଭୀଷ୍ମ-ଦ୍ରୋଣ-ଅକୁପାରକୁ ପାର ହୋଇ ।
ସୁଯୋଧନ-ଗୋଷ୍ପଦେ ବୁଡ଼ିବାକୁ ଯାଇ ॥
ଯୋଗ ଥିବ କି ଆହେ ଅରଜୁନ ବୀର ।
ହେଲ ଏହି ମତଟି ଏବେ ଯେ ମୋହର ॥
ଶୁଣ କହିଅଛନ୍ତି ପଳାଇବା ଲୋକ
ପାଲଟିଲେ ଯୁଦ୍ଧ ସେ କରଇ ଅଧିକ ।
ସୁଯୋଧନ ପଳାଇ ହ୍ରଦରେ ଲୁଚିଲେ
ଯୁଧିଷ୍ଠିର ଦ୍ୱନ୍ଦ୍ୱଯୁଦ୍ଧକୁ ଅରଜିଲେ ।
ଏହି ସକାଶୁଁ ଆସି ପଡ଼ିବା ବିପଦ
ଭାଙ୍ଗିତ ଦେଉଛଇ ଆମ୍ଭର ପ୍ରମୋଦ ॥
ଭୀମଙ୍କର ବିନାଶେ ସୁଯୋଧନ ମନ—
ଦେଇ ତେରବର୍ଷ ଶିଖିଲା ଗଦା ଜାଣ ।
ଅନ୍ୟାସେ ଭୀମସେନ ସୁଯୋଧନ ପ୍ରାଣ
ନ ନେଲେ ହେବ ପାର୍ଥ ସେଟି ନରରାଣ ।
ଅରଜୁନ କୃଷ୍ଣଙ୍କ ମୁଖୁଁ ଏହା ଶୁଣି
ଇଙ୍ଗିତେ ଭୀମସେନଙ୍କୁ କଲେ ସେ ସୁହାଣି ॥
ଦୁଇ ଭାଇ ନେତ୍ର ହୁଅନ୍ତେ ଏକଯୋଟ
ଊରୁରେ ମାରିଲେ ସୁପଡ଼ ସ୍ୱରପଟ ।
ଭୀମ ଅରଜୁନଙ୍କ ଚୁପଡ଼-ଠାରରେ
ସୁମରିଦେଲେ ପୂର୍ବକଥାକୁ ମନରେ ।
ବିଚିତ୍ରଗତି ଯୁଦ୍ଧମଣ୍ଡଳ ଦେଖାଇ
ବୁଲାଇଲେ ଗଦାବରକୁ ନଚାଆଇ ।
ଭୁଜଙ୍ଗ ପୁଅ ଗଦାରେ ଅତ୍ୟନ୍ତ ପଣ୍ଡିତ
ସେ ମଧ ଗତି କଲେ ଯୁଦ୍ଧରେ ବହୁତ ।
ଗରୁଡ଼ ଦୁଇ ପରି ସେହି ଦୁଇ ବୀରେ
ଗଦା ବହି ଯୁଝିଲେ ଜାଣ ନିର୍ଭୟରେ ।
ହୁଅନ୍ତେ ଗଦା ଗଦା ଉପରେ ଅଜାଡ଼
ଅଗ୍ନିକଣାମାନ ପଡ଼ନ୍ତି ଚହୁଁ ଝଡ଼ ।
ସୁଯୋଧନ ଭୀମ ଯୁଦ୍ଧରେ ଶ୍ରାନ୍ତ ହୋଇ
ମୁହୂର୍ତ୍ତେ ଝୁମାଇଣ ବସି ନରସାଇଁ ।

ଦୁହେଁ ଦୁଇ କରେ ଯେ ଗଦାମୁଠ ଭିଡ଼ି
ଯୁଦ୍ଧ କରିଲେ ବାଘ ପରି ଝାମ୍ପ ପଡ଼ି ।
ଗଦା ବାଜିବାରେ ସେ ଦୁହିଙ୍କର ଅଙ୍ଗ
ମାଉଁସ ଛେଚ ହୋଇ ହାଡ଼ ହେଲା ଭଙ୍ଗ ।
ସୁଯୋଧନ ଭୀମ ପାଶକୁ ମାଡ଼ି ମାଡ଼ି
ଯାନ୍ତେ ଭୀମ ତାଙ୍କୁ ପିଟିଲେ ଗଦାବାଡ଼ି ।
ସୁଯୋଧନ ଭୀମଙ୍କ ଗଦା ଫିଙ୍ଗିବାର
ଦେଖିଣ ଆଡ଼ କଲେ ଆପଣା ଶରୀର ।
ଭୀମସେନଙ୍କ ଗଦା ସୁଯୋଧନ-ଗଣ୍ଡି
ନ ପାଇଣ ଖୋଜିଲେ ମସ୍ତକ ଦଣ୍ଡି ।
ଭୀମଙ୍କ ପ୍ରହାର ବଞ୍ଚାଇ ସୁଯୋଧନ
ଭୀମଅଙ୍ଗେ ପିଟିଲେ ଗଦାକୁ ବହନ ।
ଭୀମ ବୀର ସୁଯୋଧନଙ୍କ ଗଦା ବାଡ଼ି
ନ ସହି ଦେହରୁ ଜ୍ଞାନକୁ ଦେଲେ ଛାଡ଼ି ।
ଭୀମଙ୍କର ମୋହକୁ ଭୂମ୍ବିକ କୁମର
କିଛି ଜାଣି ନ ପାରିଲେ ହେ ନରବର ।
ମୁହୂର୍ତ୍ତକରେ ଭୀମସେନ ପାଇ ଚେତା
ସୁଯୋଧନ-ବଧରେ କଲେ ମନେ ଚିନ୍ତା ।
ଗଦା ଧରିଣ ସୁଯୋଧନର ଦେହକୁ
ପିଟିବା ସମୟକୁ ଜାଣି ଉପରକୁ ।
ଡ଼ିଅନ୍ତେ ସୁଯୋଧନ ଭୀମ ଗଦାବାଡ଼ି
ପଡ଼ିଲା ଭୂମ ସୁତ ଊରୁରେ କଚାଡ଼ି ।
ସେ ଗଦା ଘାତେ ଦୁଇ ଊରୁ ଭାଜିଯାନ୍ତେ
ଭୂମ୍ବି ସୁତ ମହୀରେ ପଡ଼ିଲେ ନୃପତେ ।
ମୁଖ ଦେଇ ରକ୍ତ ଉଳକା କେତେ ବାନ୍ତି
କଲେ ଯେ ବିକଳେ ବିଚିତ୍ରବୀର୍ଯ୍ୟନାତି ।
ଅସ୍ତବ୍ୟସ୍ତ ହୋଇଣ ଫିଟିଯାଇ କେଶ
ଆଶ୍ରେ କଲା ସୁଯୋଧନଙ୍କ ପୃଷ୍ଠଦେଶ ।
କହିବାର ବଚନ ସ୍ତମ୍ଭ ହୋଇଗଲା
ଛାଟକା-ଝାଳ ଦେହଲୁଗା ତିନ୍ତାଇଲା ।
ନନ୍ଦଣ ସୁଯୋଧନ ଆପଣା କପାଳ
ଊରୁଘାଏ ହୋଇଲେ ମହା କଲବଲ ।
ବୋଇଲେ ପାଣ୍ଡବଙ୍କୁ ଦେବା ଫଳ ମୁହିଁ
ଏତେ କାଳରେ ଆସି ଭୁଞ୍ଜାଇଲା ବିହି ।
ଆଜ ମୋର ମାଉଁସ ଖାଇବେ ଶାଗୁଣା
ବିସ୍ତାର କରି ଦେଇକରି ବେନି ଡେଣା ।

ବଲୁଆଏ ଥାଳଟି ହୋଇକର ଗୋଟି
ମୋହ ଊରୁ-ମାଉଁସ ଖାଇବେ ରେକଟି ।
ଶ୍ୱାନମାନେ ବେଢ଼ି କରବେ ଭୋ ଭୋ ଡକା
ମୋ ଶଙ୍ଖୀ-ନଳୀଟି ଝୁଣିବେ ଆଜ ଏକା ।
ହସ୍ତିନାପୁରେ ମନ୍ତ୍ରୀ ହୋଇ ନରସାଇଁ
ହଂସତୂଳୀ ତୁଳୀଶେଯେ ଶୁଅଇ ଯେ ନାହିଁ ।
ଏବେ ଧୂଳିଶେଯରେ ଶୋଇବାକୁ ଯୋଗ୍ୟ
ଖଞ୍ଜିଥିଲା ମୋତେ ବିଧାତା ମହାଭାଗ ।
ଏରୂପରେ ଅନେକ ଭାବି ସୁଯୋଧନ
ଜାନୁ ଦୁଇ ମଧ୍ୟରେ କରଣ ଗମନ ।
ମରଣ ଅବସ୍ଥାକୁ ଭଜିବେ ରହିଲେ
ତାହା ଜାଣି ଯେ ଉତପାତ ଉପୁଜିଲେ ।
ବଜ୍ର ହୋଇ ନିର୍ଘାତ ଏକ ଶୂନ୍ୟ ପଡ଼ି
ଶବଦେ ହୋଇଲା ସବୁର କର୍ଣ୍ଣ ଘୋଡ଼ି ।
ବିଦ୍ୟୁତପ୍ରଭା ପରାଏ ପଡ଼ଣ ଉଲ୍କା
ଥୋଇଲା ସବୁ ପ୍ରାଣୀଙ୍କର ହୃଦେ ଧକା ।
ରକତ ପାଉଁଶ ବରଷି ଶରୀରର
ଭିଜାଇଲେ ଧୂଳିରେ ନେଇ ଜନଙ୍କର ।
ଯକ୍ଷ ରକ୍ଷ ପିଶାଚ ଆକାଶରେ ରହି
କଳକଳା ଧ୍ୱନି କଲେ ହେ ନରସାଇଁ ।
ସେ ଶବଦକୁ ଶୁଣି ମୃଗ ପକ୍ଷିଗଣ
ଉକାପାଡ଼ି ଭାଜିଲେ ହୋଇ ଛିନ୍ନଭିନ୍ନ ।
ଘୋଡ଼ା ହାତୀ ମନୁଷ୍ୟମାନେ ମେଲି ପାଟି
ଶବ୍ଦେ ପୂରିଇଲେ ଗଗନ ଆକାଶଟି ।
ଭେରୀ ଶଙ୍ଖ ମୃଦଙ୍ଗ ଇଚ୍ଛାରେ ଗର୍ଜିଲେ
ସବୁ ଜନଙ୍କର ଭୟକୁ ସରଜିଲେ ।
ବହୁତ ପାଦ ବହୁ ଭୁଜମାନ ବହି
ଭୀଷଣ କବନ୍ଧେ ନାଚିଲେ ନରସାଇଁ ।
ନଦୀମାନେ ପଶ୍ଚିମମୁଖ ହୋଇଗଲେ
ସବୁ କୂପ-ଜଳରୁ ରକ୍ତ ବାହାରିଲେ ।
ପୁରୁଷ ସ୍ତ୍ରୀ, ସ୍ତ୍ରୀ ହୋଇଲେ ପୁରୁଷ
ସୁଯୋଧନରାଜା ଯାଆନ୍ତେ ଯୁଦ୍ଧେ ନାଶ ।
ପାଣ୍ଡବ ପାଞ୍ଚାଳେ ତା ଦେଖିଣ ଡରିଲେ
ଏଥି କି ଆଜ ପାପ ହୋଇବ ଭାଳିଲେ ।
ଭୀମ ସୁଯୋଧନଙ୍କୁ କରଣ ପ୍ରଶଂସା
ଦେବ ଯକ୍ଷ ଗନ୍ଧର୍ବେ ଗୁଡ଼ି ଶୂନ୍ୟବସା ।

ସେ ଯାହାର ଆବାସେ ହେଲେ ପରବେଶ
ଶୋଇଲେ ଦୁର୍ଯ୍ୟୋଧନ ଗୁଡ଼ି ପ୍ରାଣ ଆଶ ।
ସୁଯୋଧନ ପଡ଼ିବା ଦେଖିଣ ପାଣ୍ଡବେ
ମହାହରଷ ଚିତ୍ତେ ନୃତ୍ୟ କଲେ ସର୍ବେ ।
ସିଂହ ହାରିଥିବା ଜନ୍ତୁତ ହସ୍ତୀ ପରି
ଦିଶୁଥିଲେ ନେଷକୁ କୁରୁଦଣ୍ଡଧାରୀ ।
ଭୀମ ସେ ସମୟରେ ସୁଯୋଧନ ପାଶେ
ଯାଇ କରି ଏହା କହିଲେ ରୋଷେ ବେଷେ ।
ଗାଈ ଗାଈ ବୋଲି ଆମ୍ଭଙ୍କ ଗାଳିଦେଇ
ସଭାରେ ହସୁଥିଲୁ ପରା ଆରେ ବାଇ ।
ସେହି ଫଳ ଆଜ ପାଇଲୁ ଆରେ ଭୁଲି
ଏତେ ବୋଲ ଗୋଇଠାମାର ମୁଣ୍ଡେ ନେଇ ।
ଏ ବାହାରେ ବୋଇଲେ ହୋଇଲୁ କି ବାଇ
ଗାଲୁକଥା କୁହା ଭାଙ୍ଗି ତୋ ଗଲା କାହିଁ ।
ସୁବାହୁବଳ ଆଶ୍ରା କରି ଆମ୍ଭେମାନେ
ତୋର ବଳ ନାଶିଲୁ ଅଠରଟି ଦିନେ ।
ତୋ ହାତେ ଆମ୍ଭର ନୋହିଲା ବଧ କିଛି ।
ନିସ୍ତାରଣେ ତ ମଲୁ ଧୃତରାଷ୍ଟ୍ରବଂଶି ।
ଭାଇଙ୍କ ଭୁଲେ କୃଷ୍ଣ ମୁଖକୁ ଅନାଇଁ
ଭୀମ ତାଙ୍କୁ କହିଲେ ହର୍ଷମନ ହୋଇ ।
ଦ୍ରୌପଦୀଙ୍କି ସଭାରେ କରଣ ଲଙ୍ଗଳା
ଦେଖ ସୁଯୋଧନ କାଳକୁ ଦେଲା ଗଳା ।
ଆମ୍ଭଙ୍କୁ ଷଣ୍ଢତିଳ ବୋଲିବାର ଫଳ
ପାଇଲା ଏବେ ସୁଯୋଧନ ନରପାଳ ।
ସୁଯୋଧନ କାନ୍ଧରୁ ଗଦାଟି ଛଡ଼ାଇ
ଧରଣ କରେ ଭୀମ କ୍ରୋଧଭର ହୋଇ ।
ପୁଣି ତାଙ୍କ ମୁକୁଟେ ମାଇଲେଟି ନାତ
ପୂର୍ବଥିବା ବଇର ହୋଇବାକୁ ହତ ।
ଯୁଧିଷ୍ଠିର ରାଜା ଭୀମଙ୍କ କର୍ମ ଦେଖି
ନୁହେଁ ଏ କଚ୍ଛକଥା ବୋଲି ହେଲେ ଦୁଃଖୀ ।
ଭୀମଙ୍କୁ ବୋଇଲେ ପ୍ରତିଜ୍ଞା କରି ପାର
ପାଇଲତ ଆଜ ହେ ନୁହ ହରବର ।
କୁରୁଦେଶରେ ଦୁର୍ଯ୍ୟୋଧନ ରାଜା ହୋଇ
ପାଳୁଥିଲେ ସମସ୍ତେ ଜାଣୁଥାଇ ମହୀ ।
ଏବାହାରେ ତୁମ୍ଭ ଅଟନ୍ତି ଜ୍ୟେଷ୍ଠଭ୍ରାତ
ପାଦଘାତ ତାହାଙ୍କୁ ନୁହଇ ଉଚିତ ।

ତୁମ୍ଭଙ୍କୁ କହନ୍ତି ଧାର୍ମିକ ସବୁ ଜନ
କାହିଁ ପାଇଁ କଲ ଏ ଅଧର୍ମ-ବିଧାନ ।
ରାମଙ୍କୁ ଏତେ କହି ପାଣ୍ଡବ-ଗୋସାଇଁ
ନୟନରୁ ଲୋଚକ-ଧାରକୁ ବୁହାଇ ।
ସୁଯୋଧନରାଜାଙ୍କ ସମୀପକୁ ଗଲେ
ଘାନଲୋକ ପରି ଏ ବଚନ କହିଲେ ।
ପୂର୍ବରେ ଯେଉଁ ଲୋକ କରିଥାଏ ପାପ
ସେ ଫଳ ଫଳିବାକାଳେ ସେ ହୋଏ ଲୋପ ।
ତୁମ୍ଭ ଆମ୍ଭର ଭାଇ-ଗୋଳରେ ଧରମ
ଭାଗେ ଯାର ହେଲା ସେ ଜିଣିଲା ସଂଗ୍ରାମ ।
ଭୀଷ୍ମ ଦ୍ରୋଣ ଆଦି କୁରୁକୁଳେ ମରାଇ
ଯୁଦ୍ଧେ ମରି ସ୍ୱର୍ଗ ପାଉଛ ତୁମ୍ଭେ ଯାଇ ।
ଆମ୍ଭେମାନେ ପୁତ୍ର ବନ୍ଧୁରେ ହୋଇ ହୀନ
ରାଜା ହୋଇ ଏଣିକି ଦୁଃଖେ ନେବୁଁ ଦିନ ।
ବଧୂଏ ବିଧବା ହୋଇ ତ ଥିବେ ବସି
ତାଙ୍କୁ କରୁପେଟି କହିବୁଁ କଥା ହସି ।
ଏହିରୂପେ କହିଣ ଯୁଧିଷ୍ଠିରରାଜା
ପାଡ଼ିଲେ ଉଚ୍ଚେ ଡକା ଶୋକ ଧରି ମଜ୍ଜା ।
ଧୃତରାଷ୍ଟ୍ର ବୋଇଲେ ଅଧର୍ମେ ପୁତ୍ରକୁ
ମାରନ୍ତେ ଭୀମ ଗଦା ପିଟିଣ ଊରୁକୁ ।
ରାମ ତାହା ଯେ ନୟନରେ ଦେଖିଥିଲେ
କହ ପାଣ୍ଡବଙ୍କୁ ବା କିସ ସେ ବୋଇଲେ ।
ସଞ୍ଜୟ ବୋଇଲେ ହେ ଭୀମଙ୍କ ଅଧର୍ମ—
ଯୁଦ୍ଧ ଦେଖି ରାମ ହୃଦରେ ବହି ତମ ।
ବୋଇଲେ ଧିକ ଧିକ ହେଉ ଭୀମ ବଳ
ମାଇଲା ସୁଯୋଧନଙ୍କୁ କରିଣ ଛଳ ।
ଗଦାଯୁଦ୍ଧରେ ଆଜଯାଏ ପାପକଥା
ନାହାନ୍ତି କରି ଯେତେ ଛନ୍ତି ମହାରଥା ।
ଶାସ୍ତ୍ର ନ ଜାଣିବାରୁ ମୂର୍ଖପଣ କରି
ଅକଥା କଥା କଲା ଭୀମ ଗଦା ଧରି ।
ଏରୂପେ କହିକରି ହୋଇ ତମତମ
ଭୀମଙ୍କୁ ଧାଇଁଲେ ଲଙ୍ଗଳ ଧରି ରାମ ।
ତାହା ଦେଖି କୃଷ୍ଣ ବାହୁକୁ ପ୍ରସାରିଲେ
ଉଚିତ ନୁହେ ବୋଲି ରାମଙ୍କୁ ଧଇଲେ ।
ସେ ଦୁଇଭାଇ ତେଜ ସାନ୍ଧ୍ୟ ଚନ୍ଦ୍ର ସୂର୍ଯ୍ୟ
ତେଜକୁ ବଳାଇଲା ସେକାଳରେ ଲାଜ ।

କୃଷ୍ଣ ବୋଇଲେ ଆହେ ଛ ପ୍ରକାରେ ବୁଦ୍ଧି
ଏ ଜଗତଯାକରେ ହୋଇଛି ପ୍ରସିଦ୍ଧି ।
ପାଣ୍ଡବେ ତ ଆମ୍ଭ ପିଉସୀପୁଅ ଭାଇ
କହ ତ ଏ ରୋଷକୁ ଯୋଗ୍ୟ ହେଲେ କେହି ।
ଭୀମ ତ କହିଥିଲେ ସୁଯୋଧନ-ଊରୁ
ଭାଙ୍ଗିବି ଯୁଦ୍ଧରେ ହେଲେ ସେ ବଳେ ମେରୁ ।
ସେ ସାର ବଚନ ପାଳିଲେ ବୃକୋଦର
ନ ଯୋଗାଏ ଆମ୍ଭର ଦୁଃଖ କରିବାର ।
ମଇତ୍ରେୟ ସୁଯୋଧନଙ୍କୁ ପୂର୍ବକାଳେ
ଶାପ ଦେଇଥିଲେ ହେ ରାମ କ୍ରୋଧବଳେ ।
ଦୁଇରଥ ଯୁଦ୍ଧରେ ତୁମ୍ଭ ଊରୁଦେଶ
ଭାଙ୍ଗିବ ଗଦାଘାତେ ଭୀମ ବୀରକେଶ ।
ଏହା ଜାଣି ଭୀମଙ୍କଠାରେ ଦୋଷ ଧରି
ରୋଷ ନ ବହ ହେ ପ୍ରଳମ୍ବନାଶକାରି ।
ରାମ ବୋଇଲେ ଆହେ ଅଧର୍ମର ଯୁଦ୍ଧ
ଭୀମ କଲେ ହୃଦ-ଦେଶରେ ବହି କ୍ରୋଧ ।
ସାକ୍ଷାତରେ ତୁମ୍ଭେ ଆମ୍ଭେ ତ ଦେଖୁଥାଇଁ
କି କରିବା ଆମ୍ଭେ ତ କହ ନିବାରିଁଇ ।
କୃଷ୍ଣ ବୋଇଲେ ହେ ତୁମ୍ଭେ ତ ଅଗେଷଣ
ରୋଷ କଲେ ତୁମ୍ଭଙ୍କୁ ହୋଇବ ଦୂଷଣ ।
ଏଣୁ ସିନା ଏ ରୂପେ କହୁଅଛୁଁ ଆମ୍ଭେ
କହିବୁଁ ଆଉ କିସ କି ନ ଜାଣ ତୁମ୍ଭେ ।
କଳିଯୁଗ ଆସି ତ ହେଲାଣି ପ୍ରବେଶ
କି ଶୁଣୁଅଛ ରହିବ ନାହିଁ ଧର୍ମ ଲେଶ ।
କୃଷ୍ଣଙ୍କର କପଟ ଧରମ ବଚନ
ଶୁଣିଣ ବଳରାମ କ୍ରୋଧକୁ ଶମନ ।
କରି ବୋଇଲେ ଆହେ ଭୀମ କୂଟଯୋଧୀ
ହୋଇଣ ଜଗତରେ ହୋଇବ ପ୍ରସିଦ୍ଧି ।
ସୁଯୋଧନରାଜା ତ ଧର୍ମେ ଯୁଝିଥିଲେ
ଏଣୁ ମୋକ୍ଷ-ଲୋକ ଲଭନ୍ତୁ ଯାଇ ଭଲେ ।
ଏରୂପେ ସେ ଦୁହିଁଙ୍କି ବୋଲି ହଳଧର
ରଥ ଚଢ଼ି ଗମିଲେ ଦ୍ୱାରବତୀପୁର ।
ରାମ ଦ୍ୱାରବତୀକି ଯାଆନ୍ତେ ବାହାରି
ଦୁଃଖରେ ପାଣ୍ଡବ ପାଞ୍ଚାଳ ଦଣ୍ଡଧାରୀ ।
କୃଷ୍ଣ ଯୁଧିଷ୍ଠିରଙ୍କୁ ଦେଖିଣ ବିମନ
ବୋଇଲେ କାହିଁପାଇଁ ଦୁଃଖ କର ମନ ।

ଭୀମ ସୁଯୋଧନ କଲେ ଯା ଗୋଡ଼ମାଡ଼
ଏକଥା ତାହାର ନୁହଇ କହୁଛ ଦୃଢ଼ ।
ଯୁଧିଷ୍ଠିର ବୋଇଲେ ସୁଯୋଧନ ମଲା—
ଠାରେ ଭୀମ ସେ ଯାହା ଗୋଇଠା ମାଇଲା ।
ଏଥିରୁ ମୋ ଆଜ ଅପ୍ରିୟ ହୋଇ କଥା
ଖୋଜିଲେ ନାହିଁ ଆହେ କୃଷ୍ଣ ମହାରଥୀ ।
ଧର୍ମ ଅଧର୍ମ ଅବା କରି ଭୀମସେନ
କଲେ ବାରବରଷ ଦୁଃଖକୁ ମୋଚନ ।
ମୋର ତାଙ୍କୁ ନିଷ୍ଠୁର କହିବାର ବାଣୀ
ଉଚିତ ନୁହଇ ହେ ଜାଣ ଚକ୍ରପାଣି ।
ଭୀମ ତାହା ଶୁଣି ହୋଇଲେ ହସ ହସ
ନମିଲେ ଆସି ଯୁଧିଷ୍ଠିର ପାଦଦେଶ ।
ହୋଇଲେ ନିଷ୍କଣ୍ଟକ ହୋଇ କର ମହୀ
ହୋଇଲା ସୁଖଭୋଗ କର ମହୀସାଇଁ ।
ପାପୀ ସୁଯୋଧନ ଯେ ପାଇଲା ମରଣ
ଦେଖିଣ ନେତ୍ରସୁଖ କର ହେ ଆପଣ ।
ଯୁଧିଷ୍ଠିରଙ୍କ ବୋଇଲେ ମାରି ସୁଯୋଧନ
ବଇର ପାରକୁ ପାଇଲା ଭୀମସେନ ।
କୃଷ୍ଣଙ୍କ ମତରେ ଆମ୍ଭର ହେଲା ଜୟ
ଯେତେ ଥିଲେ ସେ ଶତ୍ରୁମାନେ ହେଲେ କ୍ଷୟ
ଏଥୁ ଅନ୍ତେ ପାଣ୍ଡବସୈନ୍ୟ ସିଂହରଡ଼ି
କରିଲେ ହୃଦୟରୁ ଭୟ ଶୋକ ଛାଡ଼ି ।
ଦୁନ୍ଦୁଭି ଭେରି ଶଙ୍ଖ ବାଦ୍ୟ ମୃଦଙ୍ଗ
ବଜାଇଣ ନାଚିଲେ କରି ନାନାରଙ୍ଗ ।
ଭୀମଙ୍କୁ ପ୍ରଶଂସା-ବଚନ ଉଚ୍ଚାରିଲେ
ରହିଲା ଆଜି ପ୍ରାଣ ବୋଲି ମନେକଲେ ।
ବୋଇଲେ ସୁଯୋଧନ ମରିବା କଥାଟି
ଆଜହୁଁ ବଖାଣିବ ସବୁରି ପାଟିଟି ।
ତୁମ୍ଭର ବ୍ୟତିରେକେ ସୁଯୋଧନ-ପ୍ରାଣ
ନେଇଟି ନ ପାରନ୍ତେ ଆନ କଲେ ରଣ ।
ଦୁଃଶାସନ ରକତ ପିଇ ଅପ୍ରମାଦେ
ସୁଯୋଧନ ଗିରିକି ମରହଲ ପାଦେ ।
ସବୁରି ମୁଣ୍ଡେ ତୁମ୍ଭେ ଦେଇକରି ଗୋଡ଼
ଭାଙ୍ଗି ପକାଇଲ ଶତ୍ରୁଙ୍କ ପିଠିହାଡ଼ ।
ସୁଯୋଧନ ମରନ୍ତେ ଆମ୍ଭ ହୃଦ ଯାହା
ତୋଷ ହେଉଛି ଭୀମ କି କହିବ ତାହା ।

କୃଷ୍ଣ ବୋଇଲେ ଆହେ ଏରୂପେ ବଚନ
ନ ବୋଲ ମଲଣି ତ ପାପୀ ସୁଯୋଧନ ।
ବିଦୁର କୃପ ଦ୍ରୋଣି ସଞ୍ଜୟଙ୍କ ବାଣୀ
ଯେଉଁଦିନରୁ ନ ଘେନିଲା କୁରୁମଣି ।
ସେହି ଦିନରୁ ଆମ୍ଭେ କଲୁଣିଟି ମନେ
ସୁଯୋଧନ ଯିବେ ଶମନଙ୍କ ସଦନେ ।
ଏବେ ତ ପଡ଼ିଅଛି କାଠଖଣ୍ଡି ପରି
କାହିଁ ପାଇଁ ବୋଲୁଛ ନିଷ୍ଠୁର ଉଚ୍ଚାରି ।
ଆସ ଏବେ ସେ ଯାହା ରଥରେ ବସିବା
ଶିବିରକୁ ଯାଇଣ ସୁଖରେ ଶୋଇବା ।
ସୁଯୋଧନ ଶୁଣି କୃଷ୍ଣଙ୍କ ବଚନକୁ
ଦୁଇବାହୁକୁ ମାଡ଼ି ଉଠାଇ ପିଣ୍ଡକୁ ।
ବକ୍ର କରି କୃଷ୍ଣଙ୍କ ମୁଖକୁ ଅନାଇଁ
କହିଲେ ଏ ବଚନ ଭୂରୁକୁ ଚଳାଇ ।
ଅଧରମରେ ମୋତେ ମାରି ରଣଦାଣ୍ଡେ
କିରୂପେ କହୁଛ ଗୁମାନ ବହି ପିଣ୍ଡେ ।
କଂସଙ୍କ ଲେଙ୍କ ତ ଅଟଇ ତୁମ୍ଭ ବାବୁ
ଏଣୁ ତୁମ୍ଭ ହସ୍ତେ ହୁଅଇ କଥା ସବୁ ।
ଅର୍ଜୁନଙ୍କୁ ଯେବେ ହେ କହିଲ ବଚନ
ତେବେ ଜାଣିଅଛି ମୁଁ ଆହେ ଜନାର୍ଦ୍ଦନ ।
ତୁମ୍ଭ ବୋଲେ ପାର୍ଥ ଭୀମଙ୍କୁ ଦେଲେ ଠାରି
ଭୀମ ମୋ ଊରୁକୁ ଭାଙ୍ଗିଲେ ଗଦା ଧରି ।
କପଟରେ ବହୁତ ରଜାଙ୍କର ପ୍ରାଣ
ଏରୂପେ ଘେନିଅଛ କରି ତୁମ୍ଭେ ରଣ ।
ଶିଖଣ୍ଡୀକି ଆଗରେ କରି ଭୀଷ୍ମଙ୍କର
ପରାଣ ନେଲେ ପାର୍ଥ-କାଣ୍ଡେ ଗଦାଧର ।
ଅଶ୍ୱତ୍ଥାମା ହସ୍ତୀକି ମାରି ଭୀମହାତ
ଛଡ଼ାଇ ଶସ୍ତ୍ର କଟାଇଲ ଦ୍ରୋଣ ମାଥ ।
ଅର୍ଜୁନ ନାଶକୁ ଶକତି କର୍ଣ୍ଣ ରଖି—
ଥିଲେ ତାହା ତୁମ୍ଭେ ନୋହିଣ କହୁ ଦୁଃଖୀ ।
ଘୋରଯୁଦ୍ଧେ ଘଟୋତ୍କଚକୁ କରଗିଲେ
ତେଣେ ଶକ୍ତିଟାରେ ତାହାକୁ ମରାଇଲେ ।
ଛିନ୍ନବାହୁ ହୋଇ ଯେ ଭୂରିଶ୍ରବା ଥିଲେ
ତୁମ୍ଭ ଆଗେ ସାତ୍ୟକି ତାହାକୁ ମାଇଲେ ।
କର୍ଣ୍ଣ-ରଥଚକ୍ର ଗ୍ରାସନ୍ତେ ମହୀଦେବୀ
ମରାଇଲେ ତାହାଙ୍କୁ ଅଧର୍ମ ନ ଭାବି ।

ଧର୍ମେ ଯୁଦ୍ଧ ଯେବେ କରିଥାନ୍ତ ତୁମ୍ଭେ
ନିଶ୍ଚୟ କହୁଅଛୁ ଜିଣିଥାନ୍ତୁ ଆମ୍ଭେ ।
କୃଷ୍ଣ ବୋଇଲେ ଆହେ ସୁଯୋଧନ ଭାଇ
ମହୀ-ଲୋଭରେ ନିଜ ବଂଶକୁ ମରାଇ ।
ଏତେବେଳେ ଯାହା ହେ କହୁଛ ବଚନ
ଜାଣୁଅଛୁଁ ତୁମ୍ଭର ନିର୍ଲଜ ଜୀବନ ।
ଭୀମକୁ ବିଷ ଦେଇ ଜଳେ ପକାଇଲ
ଏ ବାହାରେ ଜତୁଘରରେ ପୋଡ଼ୁଥିଲ ।
ଦ୍ରୁପଦଙ୍କ ଦୁହିତା ରଜସ୍ୱଳା ହୋଇ—
ଥିଲେ, ତାଙ୍କୁ ସଭାକୁ ନେଲଟି ଝିଙ୍କାଇ ।
ପାଣ୍ଡବଙ୍କ ନ ଥିବା କାଳେ ଜୟଦ୍ରଥ—
ରାଜାଙ୍କୁ ପଠିଆଇ ଦ୍ରୌପଦୀଙ୍କ ହାତ ।
ହାତରେ ଧରାଇ ଝିଙ୍କାଇ ନେଉଥିଲେ
ଏତେ ଅଧରମ କଥାକୁ ମଣି ଭଲ ।
ଅକୃତ-ଅସ୍ତ୍ର ହୋଇଥିଲେ ଅଭିମନ୍ୟୁ ।
ତାହାଙ୍କୁ ମରାଇଲ ହୃଦେ ଧରି ମନ୍ୟୁ ।
ସୁଯୋଧନ ବୋଇଲେ ବେଦ ଅଧ୍ୟୟନ
କରି ମୁହିଁ କରିଛୁ ବହୁ ଯାଗ ଦାନ ।
ଏହା ବାହାରେ ଶତ୍ରୁକୁଳକୁ ମରନ୍ଦି
ଭୋଗକଲା ମହୀକ ହୋଇ ନିର୍ବିବାଦୀ ।
ମୋହଠାରୁ ବଡ଼ ହୋଇଣ ଏ ମହୀରେ
କହ ତ କିଏ ଅଛୁ ମୋହର ଆଗରେ ।
କ୍ଷତ୍ରିୟ ଧର୍ମେ ଏବେ ତେଜୁଛୁ ପରାଣ
କରିବେ ପୂଜା ମୋତେ ଶଚୀଙ୍କ ରମଣ ।
ତୁମ୍ଭେମାନେ ଏବେ ବିଧବା ସ୍ତ୍ରୀଗଣଙ୍କରେ
ରାଜା ହୋଇଣ କରି ପଡ଼ିବ ଶୋକରେ ।
ସିଦ୍ଧ ସାଧ୍ୟ ଦେବେଟି ସୁଯୋଧନ-ବାଣୀ
ଶୁଣି ପରଶଂସା କରିଲେ ବୀରମଣି ।
ଏ ବାହାରେ କୁସୁମ ସୁଯୋଧନ ଶିରେ
ବରଷିଲେ ଦେବେ ଥାଇଣ ଆକାଶରେ ।
ଏହା ଦେଖି କୃଷ୍ଣ ସହିତେ ପାଣ୍ଡୁ ସୁତେ
ଏକି ମହାପାପ ଭାବିଲେ ଦୁଃଖଚିତ୍ତେ ।
ଖିଦ୍ରଙ୍କ ବାଣୀ ଭୁବିଶ୍ରବାଙ୍କୁ ସୁମରି
ଦୁଃଖ କଲେ ବସି ପାଣ୍ଡବ-ଦଣ୍ଡଧାରୀ ।
ଶ୍ରୀକୃଷ୍ଣ ବୋଇଲେ ରାସ୍ତେ ନ କର ଦୁଃଖ
ଆଜ୍ଞା ହେଲା ସେ ମଲା ସୁଯୋଧନ ମୂର୍ଖ ।

ଧର୍ମରେ ଯୁଦ୍ଧ କଲେ କୁରୁଙ୍କର କ୍ଷୟ
କେବେହେଁ ରାଜନ ହେ ନୁହଇ ଉଦୟ ।
ତୁମ୍ଭ ହିତ ଇଚ୍ଛାରେ କପଟ ଆଚରି
ବିଆଇଲି ମୁଁ କୁରୁକୁଳକୁ ସଂହାରି ।
ମୁଁ ଯେବେ କରନ୍ତି ହିଁ ନିଷ୍କପଟ ଯୁଦ୍ଧ
କଦାଚିତେ କୁରୁଏ ନୁହେନ୍ତି ବଧ ।
ଦେବତାମାନେ ଦେଖ କପଟ ଆଚରି
ପାଇଅଛନ୍ତି ସ୍ୱର୍ଗ ଦଇତଙ୍କୁ ମାରି ।
କୃଷ୍ଣଙ୍କ ବଚନ ଶରଦ ଶଶୀ ହେଲା
ପାଣ୍ଡବଙ୍କ ହୃଦ-କୁମୁଦ ପ୍ରକାଶିଲା ।
ଭୀମ କୃଷ୍ଣ ଆଦି ରଥୀଏ ଶଙ୍ଖ ଧରି
ବଜାଇଲେ ରାଜନ ମୁଖଦେଶେ ଭରି ।
ପାଣ୍ଡବେ ସଙ୍ଗେ ଘେନି କୃଷ୍ଣ ସାତ୍ୟକିଙ୍କି
ଚଢ଼ିଲେ ରଥମାନ ଫୁଲାଇ ଛାତିକି ।
ଯୁଧିଷ୍ଠିର ଯେ ଶ୍ୱେତଛତ୍ରକୁ ମସ୍ତକେ
ଟେକାଇ ବାହାରିଲେ ହୃଦୟ-ନିଃଶଙ୍କେ ।
ଯେ ଯାହାର ବସାରେ ହୋଇଲେ ପ୍ରବେଶ
ମୋଡ଼ ମୋଡ଼ କରି ପାଞ୍ଚାଳମାନେ ନିଶ ।
ପାଣ୍ଡୁସୁତେ କୃଷ୍ଣ ସାତ୍ୟକ ଭିଗ ହୋଇ
ସୁଯୋଧନ ବସାକୁ ଗଲେ ନରସାଇଁ ।
ସୁଯୋଧନ-କମଳ ବନ ସେ ଶିବିର—
ସର ଦିଶଇ ନାହିଁ ନେତ୍ରକୁ ସୁନ୍ଦର ।
ପାଇକରିଟି ମତ୍ତହସ୍ତୀ ଶତ୍ରୁବଳ
ହୋଇଛୁ ରାଜନ ଆବିଳ ହର୍ଷ-ଜଳ ।
ବସାରେ ବର୍ଣ୍ଣିବାକୁ କେଉଁ କଥା ଅଛୁ
ହସ୍ତିନା-ଲକ୍ଷ୍ମୀ ସଙ୍ଗେ ନେଲେ ତୁମ୍ଭ ବହି ।।
ନ ପାରି ଯାଇ ଯେତେ ବୃଦ୍ଧ ସେ ବସାରେ
ଥିଲେ ତ ପଡ଼ିକରି ସେ ଭୟଦଶାରେ ।
ପାଣ୍ଡବମାନଙ୍କର ଆସିବାର ଜାଣି
ଦ୍ୱାରକୁ ଆସି ପାଦେ ପଡ଼ିଲେ ସେକ୍ଷଣି ।
ସୁଯୋଧନ ବସା ଦ୍ୱାରରେ ରଖି ରଥ
ଓହ୍ଲାଇଲେ ପାଣ୍ଡବ ପାଞ୍ଚ ମହାରଥ ।
ଅରଜୁନ ରଥରୁ ଓହ୍ଲାଇବା କାଳେ
କୃଷ୍ଣ ତାଙ୍କୁ ଏହା କହିଲେ ଗୁହିଁ ତୋଳେ ।
ଅକ୍ଷୟତୂଣ ଯେ ଗାଣ୍ଡୀବ ଧନୁଶିଖ
ଗାଣ୍ଡୀବ, ଏ ରଥୁଁ ଅଲଗା କର ରଥ ।

ଆଗ ତୁମ୍ଭେ ରଥୁଁ ଓହ୍ଲାଇଯାଅ ବୀର
ପଛରେ ମୁହିଁ ଓହ୍ଲାଇବ ନ ପଚ୍ଛର ।
ଶ୍ରୀକୃଷ୍ଣଙ୍କ ବୋଲକୁ ଅର୍ଜୁନ ମାନିଲେ
ନ କହି କଥା କିଛି ରଥୁଁ ଓହ୍ଲାଇଲେ ।
ଅର୍ଜୁନ କୃଷ୍ଣ ପଛେ ରଜ୍ଜୁ ଟିକ ଛାଡ଼ି
ଛୁଡ଼ାହେଲେ ତଳରେ ରଥୁଁ ଡେଇଁପଡ଼ି ।
ସେହିକାଳରେ ପାଇ କପୀଙ୍କ ଈଶ୍ୱର
ହନୁ ହେଲେ ସେ ରଥଧ୍ୱଜର ଅନ୍ତର ।
କପିଧ୍ୱଜରଥରୁ ଅଗ୍ନି ଜାତ ହେଲା
ଅଶ୍ୱ ରଥ ଶବଙ୍କ ଦେହଯୋଗ୍ୟ କଲା ।
ପାଣ୍ଡବେ ତା ଦେଖି ପାଇଲେ ଚମତ୍କାର
ପୁଚ୍ଛିଲେ କୃଷ୍ଣଙ୍କୁ ଅର୍ଜୁନ ଯୋଡ଼ି କର ।
କପାଇଁ ମୋ ରଥ ଅଗ୍ନିରେ ହେଲା ଦହି
କହ ମୋତେ ଏ କଥା ଯଦୁକୁଳସାଇଁ ।
କୃଷ୍ଣ ବୋଇଲେ ହେ ପୂର୍ବରୁ ବ୍ରହ୍ମାଙ୍କର
ଅସ୍ତ୍ରରେ ଦଗ୍‌ଧ ହୋଇଥିଲା ମନେକର ।
ମୋ ଯୋଗବଳେ ରହିଥିଲା ଆଜଯାଏ
ଏବେ ପୋଡ଼ିଗଲା ସେ ତାହାର ଇଚ୍ଛାଏ ।
ଏହା କହି ପାର୍ଥକୁ ଜଗତ-ନିବାସ
ଅଧର-ଦେଶେ ଧରିକରି ମନ୍ଦହାସ ।
ଯୁଧିଷ୍ଠିରରାଜାଙ୍କୁ ପୋଟାଳି ପକାଇ
ବୋଇଲେ ମୋର ଏଥୁଁ ସୁଖ ଆଉ ନାହିଁ ।
ପାଞ୍ଚଭାଇ ତୁଲେ ଯୁଦ୍ଧରୁ ତୁମ୍ଭେ ମୁକ୍ତ
ହୋଇଲେ ଯାହା ଭାଗ୍ୟ ଅଟେ ଅପ୍ରମିତ ।
ଏବେ ଯେଉଁ କଥାଟି ପାଉଛି ମନକୁ
ତାହା କର ହେ ନ ପଚାରଣ ଆମ୍ଭଙ୍କୁ ।
ଅର୍ଜୁନେ ମୋତେ ଯେ ସମର୍ପିଥିଲ ତୁମ୍ଭେ
ଜାଣିଲ ତ ଏବେ ରଖିଲୁଁ ଯୁଦ୍ଧେଁ ଆମ୍ଭେ ।
ଯୁଧିଷ୍ଠିର ବୋଇଲେ ଭୀଷ୍ମ ଦ୍ରୋଣ ଅସ୍ତ୍ର
ତୁମ୍ଭ ବିନା ସହିପାରନ୍ତା କାର ଗାତ୍ର ।
ତୁମ୍ଭ ପ୍ରସାଦରୁ ଅର୍ଜୁନ ଯୁଦ୍ଧ ଜିଣି
ବୋଲାଇଲା ଯୁଦ୍ଧରେ ମହାବୀରମଣି ।
ଉପପ୍ଲବ ଗଡ଼ରେ କହିଥିଲେ ବ୍ୟାସ
କୃଷ୍ଣଙ୍କ ଥିବାଠାରେ ଧରମ ପ୍ରକାଶ ।
ଧରମ ଥିବାଠାରେ ଅଜୟ କଥାଟି
ହୋଇବ ବୋଲି ବୋଲି ନ ପାରଇ ପାଟି ।

ଏଣୁତେ କୃଷ୍ଣ ତୁଲେ କଥାବାର୍ତ୍ତା ହୋଇ
ପାଣ୍ଡବେ ସୁଯୋଧନ ଭଣ୍ଡାରକୁ ଯାଇ ।
ମଣି ରତନ ବସ୍ତ୍ର ଧନ ଯାହା ଥିଲେ
ଡକାଇଣ ଲୋକଙ୍କୁ ତାହା ବୁହାଇଲେ ।
କୃଷ୍ଣ ବୋଇଲେ ଆହେ ଧର୍ମଙ୍କ ତନୟ
ଚାଲ ଯିବା, ଏ ସ୍ଥାନ କଲଇଁ ତ ଜୟ ।
ଯୁଧିଷ୍ଠିର ହେଉ ବୋଲଣ ତାଙ୍କୁ କହି
ସେକ୍ଷଣି ସେଠାରୁ ଆସିଲେ ନରସାଇଁ ।
ଓଘବତୀନଦୀ ସମୀପେ ପାଣ୍ଡୁସୁତେ
ବସା ପାଡ଼ି ରହିଲେ ନିଶ୍ଚିନ୍ତ ମନରେ ।
ଓଘବତୀନଦୀ ତୀରରୁ ଶ୍ରୀକୃଷ୍ଣଙ୍କୁ
ପେଷିଲେ ଯୁଧିଷ୍ଠିର ହସ୍ତିନାପୁରକୁ ।
କୃଷ୍ଣ ପାଣ୍ଡବଙ୍କ ବଚନେ ଚଢ଼ି ରଥ
ବାହାରିଯାନ୍ତେ ଯୁଧିଷ୍ଠିର ନରନାଥ ।
କହିଲେ କୃଷ୍ଣଙ୍କୁ ବଡ଼ ମା ବଡ଼ ବାବୁ
ଦୁହିଙ୍କି ସନ୍ତୋଳିବ, ଆଉ କି କହିବୁ ।
କୃଷ୍ଣ ତାହା ଶୁଣିଣ ବୋଇଲେ ରାଜନ
କହିବ ତାଙ୍କୁ ପ୍ରୀତିକର ସୁବଚନ ।
ଏହା ଶୁଣି ଜନମେଜୟ ନରପତି
ବୋଇଲେ ଆହେ ବଇଶମ୍ପାୟନ ଯତି ।
ପାଣ୍ଡବେ ତ ପୂର୍ବେ କୃଷ୍ଣଙ୍କୁ ପଠାଇ
ନ ପାଇ କାର୍ଯ୍ୟ ଯୁଦ୍ଧ କଲେ ଲଜ ପାଇ ।
ଏବେ କାହିଁ ପାଇଁ କୃଷ୍ଣଙ୍କୁ ହସ୍ତିନାକୁ
ବରଗିଲେ ଏ କଥା କହ ତ ଆମ୍ଭଙ୍କୁ ।
ବଇଶମ୍ପାୟନ ବୋଇଲେ ହେ ରାଜନ
ଭୀମ ତ ଅନ୍ୟାୟରେ ସୁଯୋଧନ-ପ୍ରାଣ ।
ନେଲେ ଏ ସକାଶୁଁ ଲାଜ ଭୟ ଦୁଇ
ପାଣ୍ଡବ-ନରପତି ହୃଦରେ ମିଶାଇ ।
କୃଷ୍ଣଙ୍କୁ ବୋଇଲେ ହେ ଆଗ ତୁମ୍ଭେ ଯାଅ
ବୋଧ ଯାଇ ଅମ୍ବିକାଦେବୀଙ୍କ ତନୟ ।
ଆମ୍ଭେ ଯେବେ ଆଗରୁ ହସ୍ତିନାକୁ ଯିବୁଁ
ଗାନ୍ଧାରୀ-କ୍ରୋଧାନଳେ ନିଶ୍ଚେ ଭସ୍ମ ହେବୁ ।
ତୁମ୍ଭର ପ୍ରସାଦରୁ କୁରୁ-ମହୋଦଧି
ପାର ହେଲୁ ଗୋବିନ୍ଦ ଆମ୍ଭେଟି ଅବଧି ।
ପାର୍ଥ-ରଥେ ତୁମ୍ଭେ ସାରଥି ନୋହିଥିଲେ
କୁରୁଏ ନ ମରନ୍ତେ ପାର୍ଥ ହାତେ ଭଲେ ।

ପିତୃକର୍ମରେ କୁରୁଦେଶଟି ଆମ୍ଭର
ହେଲେ ହେଲେ ହେ ପ୍ରଭୁ ରୁକ୍ମଣୀଙ୍କ ବର ।
ତୁମ୍ଭର ସାହା ବିନା ପାଇବାକୁ କଷ୍ଟ
ହୁଅନ୍ତା କୁରୁଏ ଅଟନ୍ତି ଯେଣୁ ଦୁଷ୍ଟ ।
ଏରୂପେ ଯୁଧିଷ୍ଠିର କହନ୍ତେ କୃଷ୍ଣଙ୍କୁ
କୃଷ୍ଣ ଗଲେ ଚଢ଼ି ହସ୍ତିନା-ନଗରକୁ ।
ହସ୍ତିନା ସିଂହଦ୍ୱାରେ ରଖାଇଣ ରଥ
ରଥରୁ ଓହ୍ଲାଇଲେ ଶଙ୍ଖଚକ୍ର-ହାତ ।
ଦୁଆରୀ-ହାତେ ଧୃତରାଷ୍ଟ୍ରଙ୍କୁ କୁହାଇ
ବାହାରିଲେ ତାହାଙ୍କ ପାଶକୁ ଗେଲଇ ।
ଦେଖିଲେ ବେଦବ୍ୟାସ ଧୃତରାଷ୍ଟ୍ର-ପାଶେ
ବସିଅଛନ୍ତି କୃଷ୍ଣ ମାନସ ହରଷେ ।
ବେଦବ୍ୟାସଙ୍କର ପାଦରେ ନମସ୍କାର
ଆଗ କଲେ ରୁକ୍ମଣୀଦେବୀ-ପ୍ରାଣେଶ୍ୱର ।
ପଛେ ଧୃତରାଷ୍ଟ୍ର ଗାନ୍ଧାରୀଙ୍କର ପାଦେ
ନମି କୃଷ୍ଣ ବସିଲେ ଶୋକ-ଗଦଗଦେ ।
ପାଣି ଆଣି କୃଷ୍ଣ କରିଣ ଆଚମନ
ଧୃତରାଷ୍ଟ୍ର ରଜାଙ୍କୁ କହିଲେ ବଚନ ।
ଆହେ ଧୃତରାଷ୍ଟ୍ର ନୃପତି ମହାରଥୀ
ଜାଣ ତ ତୁମ୍ଭେ ତିନିକାଳେ ହେବା କଥା ।
ପୂର୍ବୁଁ ତ ଆମ୍ଭ କଥା ନ କର ହୃଦୟ
ଏ ସକାଶୁଁ ସ୍ୱଜନ ହେଲା କୁରୁକ୍ଷୟ ।
ପାଞ୍ଚୋଟି ଗ୍ରାମ ଯେବେ ପାଣ୍ଡବଙ୍କୁ ଦେଇ—
ଥାଆନ୍ତ ଏ ଦଶା ପାଆନ୍ତ କାହିଁପାଇଁ ।
ଭୀଷ୍ମ ସୋମଦତ୍ତ ବାହ୍ଲୀକ କୃପ ଦ୍ରୋଣ
ଅଶ୍ୱତ୍ଥାମା ସଞ୍ଜୟ ବିଦୁର ବଚନ ।
ନ ଘେନିବାରୁ ସ୍ୱୟେ ଏତେ ସବୁ କଥା
ପ୍ରବର୍ତ୍ତି ନାଶ ଗଲେ କ୍ଷତ୍ରି ମହାରଥୀ ।
କାଳବଶରେ ତୁମ୍ଭେ ପାଇକରି ମୋହ
ହରାଇଲ କାହିଁକି ପୁତ୍ରେ କରି ସ୍ନେହ ।
ପାଣ୍ଡବେ ତୁମ୍ଭଠି ନୁହନ୍ତି କେବେ ଦୋଷୀ
ତୁମ୍ଭର ପୁତ୍ର ନାଶ ଗଲେ ହୋଇ ରୋଷୀ ।
ଆପଣାର ସକାଶୁଁ ହୋଇଛି ଏ କଥା
ପାଣ୍ଡବଙ୍କଠାରୁ ହେ ଗୁଢ଼ ହୃଦବ୍ୟଥା ।
ତୁମ୍ଭଙ୍କୁ ପାଣି ପାତ୍ର ଦେବାକୁ କାରଣ
ଆର୍ତ୍ତ ହୋଇଲେ ଯୁଧିଷ୍ଠିର ନରରାଣ ।

ଯୁଧିଷ୍ଠିରଙ୍କର ଯେ ତୁମ୍ଭଠାରେ ଭକ୍ତି
ସବୁବେଳେ ପ୍ରବର୍ତ୍ତି ଅଛି ନରପତି ।
ତୁମ୍ଭଙ୍କ ତ ସଦୃଶେ ହୋଇଛି ଗୋଚର
ଅଧିକ କିନା ଅଟେ ମୋର କହିବାର ।
ଅପକାରୀ ଶତ୍ରୁଙ୍କୁ ଯୁଧିଷ୍ଠିର ମାରି
ତୁମ୍ଭ ଚିନ୍ତାରେ ସେହୁ ହେଉଛନ୍ତି ଝାରି ।
ଏରୂପେ ଧୃତରାଷ୍ଟ୍ର ନୃପେ କୃଷ୍ଣ କହି
କହିଲେ ପୁଣି ଗାନ୍ଧାରୀଙ୍କ ମୁଖ ଚାହିଁ ।
ତୁମ୍ଭ ପରି ସାଧବୀ ନାହିଁ ଏ ମହୀରେ
ନେଉଛ ଦିନ ତୁମ୍ଭେ ଭର୍ତ୍ତାଙ୍କ ଭକ୍ତିରେ ।
ସୁଯୋଧନରଜାଙ୍କୁ କହିଲ ତଆରି
ବହୁତ ପ୍ରକାରେ ଧର୍ମକୁ ଚାହିଁକରି ।
ତୁମ୍ଭ କଥା ନ ଘେନି ସୁଯୋଧନ ପାପ-
ବୁଦ୍ଧି କରି ନିଜ ନାମକୁ କଲେ ଲୋପ ।
ତୁମ୍ଭେ ତ କହିଅଛ ଧର୍ମ ଯାର ଅଛି
ତାହାର ସଙ୍ଗେ ଜାଣ ଜୟ ଯୋଡ଼ାଇଛି ।
ସେହି କଥା ଆସିଛି ହୋଇଲା ଗାନ୍ଧାରୀ
ଝିଅ ଏବେ ହୃଦ-ବ୍ୟଥାକୁ ଦୂରକରି ।
ପାଣ୍ଡବଙ୍କ ନାଶେ ନ କର ବୁଦ୍ଧି ତୁମ୍ଭେ
କି ନ ଜାଣ, ତୁମ୍ଭଙ୍କୁ କହିବୁ କି ଆମ୍ଭେ ।
କ୍ରୋଧ ହୋଇ ଚକ୍ଷୁରେ ଚାହିଁଲେ ତ୍ରିଲୋକ—
ଯାକକୁ ଦହିଦେବ ଜାଣୁଛୁ ପାବକ ।
ଗାନ୍ଧାରୀ ବୋଇଲେ କହୁଛ କୃଷ୍ଣ ଯାହା
ସତକରି ମୁହିଁଟି ଘେନୁଅଛି ତାହା ।
ମୋର ବୁଦ୍ଧି କ୍ରୋଧରେ ଯାଇଥିଲା ଜଳି
ଏବେ ତୁମ୍ଭେ ତାହା ରଖିଲ ବନମାଳୀ ।
ଧୃତରାଷ୍ଟ୍ରରଜା ତ ଜନମରୁ ଅନ୍ଧ
ମରାଇ ପୁତ୍ର ଅର୍ଜିଲେ ଏ କର୍ମମନ୍ଦ ।
ଏହାଙ୍କର ଏବେ ହେ ତୁମ୍ଭେ ହୋଇ ପତି
ହରିନିଅ ହରି, ପଡ଼ିବା ଦୁର୍ଗତି ।
ଏହିରୂପେ ଗାନ୍ଧାରୀ କହିଣ କୃଷ୍ଣଙ୍କୁ
କାନ୍ଦିଲେ ନେତ୍ରୁଁ ତେଜି ଉଷ୍ମ ଜଳକୁ ।
କୃଷ୍ଣ ତାହାଙ୍କ କାନ୍ଦଣି କି ହେବୁ କହି
କଲେ ବୋଧ ଜାଣି ହସ୍ତିନା ନରସାଇଁ ।
ଗାନ୍ଧାରୀ ଧୃତରାଷ୍ଟ୍ର ଦୁହିଙ୍କି ସାନ୍ତ୍ୱନା
ଏରୂପେ କରିସାରି କୃଷ୍ଣ ମହାମନା ।

ଅଶ୍ୱଥାମାଙ୍କର ଯେ ହୃଦୟ-କଥାକୁ
ମନେକରି ନମିଲେ ଯାଇଣ ବ୍ୟାସଙ୍କୁ ।
ଧୃତରାଷ୍ଟ୍ର ନୃପେ ବୋଇଲେ ନୃପବର
ଉଚିତ ନୁହେଁ ଆଉ ଶୋକକରିବାର ।
ଆଜ ରାତ୍ରେ ପାଣ୍ଡବମାନଙ୍କ ସଂହାର
ବଳୁରଛନ୍ତି ଜାଣ ଦ୍ରୋଣଙ୍କ କୁମର ।
ଏହି ସକାଶରୁଟି ମହାତୁର ହୋଇ
ପାଣ୍ଡବଙ୍କ ପାଶକୁ ଯାଉଅଛୁ ମୁହିଁ ।
ଧୃତରାଷ୍ଟ୍ର ଶୁଣି କୃଷ୍ଣଙ୍କ ବଚନକୁ
ବୋଇଲେ ଯାଅ ବେଗି, ପାଳ ପାଣ୍ଡବଙ୍କୁ ।
ଧୃତରାଷ୍ଟ୍ର ଅନୁଜ୍ଞା ପାଇଣ ଗୋବିନ୍ଦ
ନିଜ ରଥେ ବସିଲେ ହୋଇଣ ଆନନ୍ଦ ।
ପାଣ୍ଡବଙ୍କର ସମୀପକୁ ବାହାରିଲେ
ବ୍ୟାସ ଧୃତରାଷ୍ଟ୍ରଙ୍କୁ ପ୍ରବୋଧନା କଲେ ।
କୃଷ୍ଣ ଓଘବତୀ-ତୀରରେ ପାଣ୍ଡବଙ୍କୁ
ଭେଟିକରି କହିଲେ ସବୁ ବୃତ୍ତାନ୍ତକୁ ।
ସେ ସରିକ ରାତ୍ର ହୋଇଛୁ ପରବେଶ
ମୁଁ କହିବାରୁ ଜାଣ ହସ୍ତିନା ନରେଶ ।
ଧୃତରାଷ୍ଟ୍ର ପୁଚ୍ଛିଲେ ସଞ୍ଜୟଙ୍କୁ ରହି
ସୁଯୋଧନ ମୋର ଗୋଇଠା ମୁଣ୍ଡେ ଖାଇ ।
କି ବୋଇଲା କି କଲା କହ ତା ସଞ୍ଜୟ
ଶୁଣିବାକୁ ମୋହର ଦେଉଛୁ ହୃଦୟ ।
ସଞ୍ଜୟ ବୋଇଲେ ହେ ଦୁଇ ଊରୁ ଭାଙ୍ଗି
ସୁଯୋଧନ ତୁମ୍ଭର ହୋଇ ଭୂମିସଙ୍ଗୀ ।
ପାଟିଦେଇ ପୂଳାଏ ଖାଏ ଦାଣ୍ଡଧୂଳି
ଯା ବୋଇଲେ ରାଜ୍ୟ ଶୁଣ ହେ ରାଜ୍ୟେ ଚଳି
ଭୀଷ୍ମ ଦ୍ରୋଣ ଯେ କର୍ଣ୍ଣ କୃପ ଅଶ୍ୱଥାମା
ଶକୁନି କୃତବର୍ମା ଆଦିଙ୍କ ଗାରିମା ।
ଭାଙ୍ଗି ପାଣ୍ଡୁସୁତେ ମୋତେ ଯା କଲେ ଏହା
ସବୁ କରିପାରନ୍ତି ଏକା କୁଣବାହା ।
ଏହା ବୋଲିଣ ଥିବା ସମୀପ ଲୋକଙ୍କୁ
କହିଲେ ସୁଯୋଧନ ନୃପ ବଚନକୁ ।
ମୋହର କୁଳେ ଯେଉଁମାନେ ଛନ୍ତି ଜୀଇ
ତୁମ୍ଭେ ତାହାଙ୍କୁ ଯାଇ କହିବ ବୁଝାଇ ।
ସୁଯୋଧନରାଜା ଊରୁକୁ କପଟରେ
ଭାଙ୍ଗିଲା ବୃକୋଦର ଗଦା- ପ୍ରହାରରେ ।

ଅକାର୍ଯ୍ୟ କର୍ମରେ ପାଣ୍ଡବ ଜୟକାରୀ
ହୋଇ ଯାଉଁଛନ୍ତି ବସାକୁ ନିଶ ଧରି ।
ଏଥିରେ ଯେ ଫଳ ତା ସାଧୁ-ପାଖେ ବସି
ଶୁଣିଲେ ପାଣ୍ଡୁସୁତେ ହେବେ ବନବାସୀ ।
ଭୀମ ବିନା ଅଧର୍ମ ଜୟେ ତୋଷମନ୍ତ
ହେବାକୁ କ୍ଷତ୍ରିୟ ତ ମୋତେ ନ ହଣନ୍ତ ।
ମୋ ଜାନୁ ଦୁଇ ଭାଙ୍ଗି ମୋ ମୁଣ୍ଡରେ ପାଦ
ମାଇଲା ଭୀମ ହୃଦଦେଶେ ବହି ମୋଦ ।
ମୋର ତ ଚଳିବାକ୍ କର୍ତ୍ତବ୍ୟ ନ ଥିଲା
ଯେ ଯୋଗ ଥିଲା, ମଲାକାଳେ ତା ହୋଇଲା ।
ଏମନ୍ତେ ଲୋକଙ୍କୁ କହିଲେ ମୋତେ ରହି
କହିବ ତୁମ୍ଭେ ଧୃତରାଷ୍ଟ୍ର-ପାଶେ ଯାଇ ।
ଯାଗ ଦାନ କରିଣ କଲି ମହୀ ଭୋଗ
କି କରିବ ଏବେ ତ ହୋଇଲି ଅଭାଗ୍ୟ ।
ଅଭାଗ୍ୟରେ ହେଲେ ଅର୍ଜିଛି ଭାଗ୍ୟ ମୁହିଁ ।
ମରି ସ୍ୱର୍ଗଲୋକ ଭୁଞ୍ଜିବି ସୁଖେ ଯାଇ ।
କୃପ କୃତବର୍ମା ଦ୍ରୋଣଙ୍କର ନନ୍ଦନ
ତିନିଙ୍କି କହିବ ସଞ୍ଜୟ ଏ ବଚନ ।
ପାଣ୍ଡବେ ଅଧର୍ମରେ ପ୍ରବର୍ତ୍ତି ଅଛନ୍ତି
ବିଶ୍ୱାସ ପାଇ ନ ରହିବ ତାଙ୍କ କତି ।
ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଭଗଦତ୍ତ
ଦୁଃଶାସନ ଲକ୍ଷ୍ମଣ ଦୁଃଶାସନ ସୁତ ।
ବୃଷସେନ ଆଦି ହୋଇଲେ ଯେତେ ହତ
ପାଉଥିବେ ପୂଜା ସେ ବାସବେ ମହତ ।
ଏମାନଙ୍କ ଟି ଅନୁଗତ ହୋଇ ମୁହିଁ
ଯାଉଛି ହେ ସଞ୍ଜୟ କିସ କହିବଇଁ ।
ମୋ ଭଉଣୀ ଦୁଃଶୀଳା ହେବ ଏବେ ଦୁଃଖୀ
ଜୟଦ୍ରଥ ରାଜାଙ୍କୁ ନେତ୍ରରେ ନ ଦେଖି ।
ମୋର ମାତା ପିତା ନଦେଖି ମୋତେ ନେତ୍ରେ
କି କରି ବଞ୍ଚିବେ ସଞ୍ଜୟ ମହାମତେ ।
ଲକ୍ଷ୍ମଣର ମାତା ସୁବର୍ଣ୍ଣ-ଖଡ଼ୁ-ବାହି
ଛେଚି ମୋହ ବିନା କାନ୍ଦିବ ଶୋଇ ଭୁଇଁ ।
ମୋ ସଖା ଆଶ୍ଚର୍ଯ୍ୟ ଦ୍ୱିଜ ମୋ ମରିବାର
ଜାଣିଲେ ପାଣ୍ଡବଙ୍କୁ କରିବେ ସଂହାର ।
ଏରୂପେ ତୁମ୍ଭ ପୁତ୍ର ପ୍ରଳାପକୁ ଶୁଣି
ପଳାଇଲେ ଯେ ଥିଲେ ତୁମ୍ଭ ଲୋକ-ଶ୍ରେଣୀ ।

ମହାଭଗ୍ନପାତ ହୋଇକରି ସଜାତ
ଅଗାଇଲା ବନ ଭୂଇଁରେ ପର୍ବତ ।
ଭୀମ-ସୁଯୋଧନ ଯୁଦ୍ଧ ଯେ ଦେଖିଥିଲେ
ଏକଥାଯାକ ଅଶ୍ୱତ୍ଥାମାଙ୍କୁ କହିଲେ ।
ସୁଯୋଧନ ମରଣ ଶୁଣି ଦ୍ରୋଣସୁତ
ହେଲେ ସୁଯୋଧନଙ୍କଠାକୁ ଉପଗତ ।
ପୃଷ୍ଠଦେଶେ ତାଙ୍କର କୃପ କୃତବର୍ମା
ଥିଲେ ବହିଣ ଧନୁ ଶର କରସୀମା ।
ଦେଖିଲେ ସୁଯୋଧନ ମତ୍ତହସ୍ତୀ ପରି
ପଡ଼ିଛନ୍ତି ଭୂମିରେ ଊରୁ ଭଙ୍ଗୀକରି ।
ଚନ୍ଦ୍ରବମ୍ବ ଭୂଷାରେ ଆବୃତ ପରାୟେ
ଘୋଡ଼ାଇଅଛି ଧୂଳି ସୁଯୋଧନ-କାୟେ ।
ବିଲୁଆ ଶାଗୁଣା ଏ ମେଳଦେଇ ପାଟି
ବେଢ଼ି ଅଛନ୍ତି ମାଂସ ନେବାକୁ ରେଢ଼ିକଟି ।
କୃପ କୃତବର୍ମା ଯେ ଦ୍ରୋଣଙ୍କର ସୁତ
ତା ନ ସହିପାରି ମୋହକୁ ହେଲେ ଗତ ।
ପୁଣି ଚେତା ପାଇ ସେ ରଥରୁ ଓହ୍ଲାଇ
ସୁଯୋଧନପାଶକୁ ବେଗେ ଗଲେ ଧାଇଁ ।
ଅଶ୍ୱତ୍ଥାମା ନୟନ-ଯୁଗଳେ ଲୋତକ
ପୂର୍ଣ୍ଣ କରିଦେଇ କାନ୍ଦଣ ସକସକ ।
ବୋଇଲେ ସୁଯୋଧନ ହୋଇ ଆମ୍ଭ ସାଇଁ
ମହୀରେ ପଡ଼ିଅଛ ଅରକ୍ଷିତ ହୋଇ ।
ଏହା ଦେଖି ଆମ୍ଭର କପାଁ ହୃଦୟଟି
ଯାଉନାହିଁ ଆହେ ରାଜନ କହ ଫାଟି ।
ଏ ଲୋକରେ ଜାଣିଲୁ କେ କାହାକୁ ସାହା
ନୁହଇ, ହୁଏ ବିଧି କରିଥାଏ ଯାହା ।
ଯେଉଁ ଦେହେ ଚନ୍ଦ୍ର ଚନ୍ଦନ ହୁଅ ବୋଳି
ସେ ଦେହରେ ଏବେ ତ ଲାଗିଅଛି ଧୂଳି ।
ଯା ପାଶେ ବସିଥାନ୍ତି ଭୀଷ୍ମ ଦ୍ରୋଣ କର୍ଣ୍ଣ
ଏବେ ତା ପାଶେ ଛନ୍ତି ବିଲୁଆ-ସଇନ ।
ଛତ୍ର ଚାମର ଯହିଁ ହୋଇଥିଲା ଠେକା
କେମନ୍ତେ ରାୟେ ଏବେ ଶୋଇଲେଟି ଏକା ।
ଆହାରେ ଦଇବ କି ଦେଖାଇଲୁ ଆଣି
ନ ମରାଇଲୁ କପାଁ, ହେଲୁ କିଆଁ ଋଣୀ ।
ଅଶ୍ୱତ୍ଥାମା-ବଚନ ଶୁଣି ସୁଯୋଧନ
କହିଲେ ନେତ୍ରୁ ନୀର କରି ବିମୋଚନ ।

ଏରୂପେ ପ୍ରାଣୀଙ୍କର ଲାଗିଅଛି ନାଶ
ନ କର ଦୁଃଖ ଆହେ ଦ୍ରୋଣଙ୍କର ଶିଷ୍ୟ ।
ଯୁଦ୍ଧରେ ମୁଁ ଉତ୍ସାହ କରି ମରିଅଛି
ମାରିଲା କପଟରେ ମୋତେ ବାତବହ୍ନି ।
ତୁମ୍ଭେମାନେ ମୋହର ଅଟ ପ୍ରିୟଲୋକ
ଯା ଗାଇଛ ମୋହର ଏ ବଡ଼ ଅଧିକ ।
ମୋ ପାଇଁ ଅନୁତାପ ନ କର ହେ କଛି
ଯୁଦ୍ଧେ ମରି ମୁଁ ତ ସ୍ୱର୍ଗକୁ ଯାଉଅଛି ।
ହସ୍ତିନାକୁ ପ୍ରତିଟି ଦଶଗୁଣ ସୁଖ
ଭୁଞ୍ଜି ଦେବେ ମୋତେ ହେ ଇନ୍ଦ୍ର ସୁରଶିଖ ।
ତୁମ୍ଭେମାନେ ଯେ ଅନୁରୂପ କାର୍ଯ୍ୟ କଲ
ଦଇବ ସକାଶରୁ ଯୁଦ୍ଧରେ ହାରିଲ ।
ଏରୂପେ କହି ଦୁର୍ଯ୍ୟୋଧନ ବେଦନାରେ
ବିହ୍ୱଳ ହୋଇଣ ରହିଲେ ମଉନରେ ।
ଦ୍ରୌଣି ଶୁଣିଣ ସୁଯୋଧନଙ୍କ ଉକତି
କଟ କଟ କରିଣ ଭିଡ଼ି ଦନ୍ତପନ୍ତି ।
ମଟ ମଟ ଚାହିଁ ଦେହକୁ ମୋଟ କଲେ
କ୍ରୋଧେ ତୁମ୍ଭ ପୁଷ୍ଟ ବଚନ ଉଚ୍ଚାରିଲେ ।
ମୋ ବାପୁର ସ୍ୱର ପାଞ୍ଚାଳେ ନେଲେ ପ୍ରାଣ
ତହିଁକି ଦୁଃଖ କିଛି ନାହିଁ ନରଗଣ ।
ତୁମ୍ଭ ପରି ଲୋକ ଯା ଶୋଇଅଛ ଭୂଇଁ
ଏହା ଦେଖି କ୍ରୋଧ ବଳୁଛି ନରସାଇଁ ।
ନିୟମ କରି ଏବେ କହୁଛି ତୁମ୍ଭଙ୍କୁ
ମାରିବି ଆଜ ଯୁଦ୍ଧେ ପାଞ୍ଚାଳମାନଙ୍କୁ ।
କୃଷ୍ଣ ଅର୍ଜୁନ ନିୟନେ ଚାହିଁ ଥିବେ
ପ୍ରତିକାର କରିଣ ରଖି ନ ପାରିବେ ।
ମୋତେ ଏବେ ଆଜ୍ଞା ଦିଅ ହେ ନରବର
କରିବି ତୁମ୍ଭର ଶତ୍ରୁମାନଙ୍କୁ ସଂହାର ।
ସୁଯୋଧନ ଶୁଣିଣ ଦ୍ରୋଣସୁତ-ବାଣୀ
କୃପଙ୍କୁ ବୋଇଲେ ହେ ଆଣ ଯାଇ ପାଣି ।
କରି ଅଶ୍ୱତ୍ଥାମଙ୍କୁ ଆମ୍ଭେ ଅଭିଷେକ
ମରାଇବା ଅଛନ୍ତି ଯେତେ ଶତ୍ରୁଲୋକ ।
ସୁଯୋଧନ ବଚନ କୃପଦ୍ୱିଜ ଘେନ
କଳଶରେ ପାଣି ଆଣିଲେ ସେହିକ୍ଷଣି ।
ସୁଯୋଧନ କୋଳରେ ଅଶ୍ୱତ୍ଥାମା-ଶିରେ
ଢାଳିଦେଲେ ତାହା ଅତ୍ୟନ୍ତ ସୁମନରେ ।

ସେକାଳେ ସୁଯୋଧନ କହିଲେ ବଚନ
ନୃପତି ନ ହୋଇଲେ ଯୁଦ୍ଧ ଦ୍ୱିଜଜନ ।
କରି ନ ପାରଇ ଜାଣୁଛି ମୁହିଁ ଏହା
ଏବେ ତ ସେନାପତି ହେଲେ ଦ୍ୱିଜନାହା ।
ମାରି ପାଣ୍ଡବଙ୍କୁ ଯାଇଣ ହାତସୁଖେ ।
ଜାଣୁଛି ମରିବେ ସେ ଭୀମ କାଣ୍ଡମୁଖେ ।
ଏରୂପେ ମନେ ପୂର୍ବ କରିଥିଲେ ଭୀମେ
ଉରୁ ଭଙ୍ଗି ମହୀରେ ଶୁଅନ୍ତୁ କି ଆମ୍ଭେ ।
ଦ୍ରୋଣଙ୍କର ନନ୍ଦନ ଅଭିଷିକ୍ତ ହୋଇ
ସୁଯୋଧନରାଜାଙ୍କୁ ପୋଟାଳି ପକାଇ

ଦୁଇ ଜଣଙ୍କୁ ମୋଡ଼ି ଆରୋହଣ ରଥ
ଗମିଲେ ସେ ଆଶ୍ରୟ କରି ବନପଥ ।
ରକତେ ଓଦା କରି ଅଙ୍ଗ ସୁଯୋଧନ
କଲେ ଏକା ଶୋକରେ ରଜନୀ ବଞ୍ଚନ ।
ଭୂତ ପ୍ରେତ ପିଶାଚେ ପୂର୍ଣ୍ଣ ସେ ସ୍ଥାନଟି
ଦେଖିବାକୁ ସ୍ୱପନ ସେଠାରେ ନୁହେଁଟି ।
ଏଠାରେ ଶଲ୍ୟପର୍ବ ଗଦାପର୍ବ ଦୁଇ
ଶେଷ କରିଲେ ବ୍ୟାସ ଋଷିକୁଳସାଇଁ ।
ହୃଦରେ ଗୁଣି ତାଙ୍କ ପାଦ ସରସିଜ
କହଇ କୃଷ୍ଣସିଂହ ନରକୁଳରାଜ ।



ରାଜା କୃଷ୍ଣସିଂହ କୃତ—ମହାଭାରତ

# ଶାନ୍ତିପର୍ବ

## ସୂଚିପତ୍ର

### ରାଜଧର୍ମ ପ୍ରକରଣ

## ମୋକ୍ଷଧର୍ମ

ବିଷୟ ପୃଷ୍ଠାଙ୍କ

# ମ ହା ଭା ର ତ

## ଶାନ୍ତିପର୍ବ

—:-✱-✱-✱-:—

## ରାଜଧର୍ମ ପ୍ରକରଣ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ କୈବର୍ତ୍ତକଃ କେଶବଃ ।

---

### ଆଦ୍ୟବନ୍ଦନା

ଜୟ ଶ୍ରୀରାମ ଜଗତଜନ-କାରଣ
ଜୟ ଦୁଷ୍ଟ ଦଶବଦନ ନିବାରଣ ।
ଜୟ ହେ ତ୍ରିଭୁବନ ଭୂତ ବିଭାବନ
ଜୟ ନବଦୂର୍ବାଦଳନ ବିଭାନନ ।
ଜୟ ଯୋଗୀଜନ ହୃଦୟ ବିକାଶନ
ଜୟ ସର୍ବରାକ୍ଷସ ଭୟ ବିନାଶନ ।
ଜୟ ହେ ଶୁକସନକାଦି ସନ୍ତଜନ
ଜୟ ଜନକ ରାଜାଙ୍କର ସଭାଜନ ।
ଜୟ ଶ୍ରୀକୃଷ୍ଣ ବୃନ୍ଦାବନ ବିହାର
ଜୟ ହେ ଗୋପବାଳୀ କେଳୀକଳାକର ।
ଜୟ ହେ ଧୃତ ଗୋବର୍ଦ୍ଧନ ଧରାଧର
ଜୟ ହେ ପୀତ ପୀନପୟୋଧରାଧର ।
ଜୟ ବ୍ରଜନାରୀବୃନ୍ଦଙ୍କ ପଟହର
ଜୟ ହେ ନିଜ ଭକ୍ତ କଷ୍ଟହର ।
ଜୟ ଜଳଧର ଶ୍ୟାମ ନଟନାଗର
ଜୟ ଦକ୍ଷ ଦୁଷ୍ଟ ଅବ ଦଳ ସଂହାର ।
ଜୟ ଜଗନ୍ନାଥ ମହାବାହୁ ଚେତନ
ଜୟ ହେ ଭୁଜଙ୍ଗ ମହାଶନ-କେତନ ।
ଜୟ ଫୁଲ୍ଲ ରାଜୀବଦଳନୟନ
ଜୟ ଭବ ପ୍ରାଣୀଦୁରିତାପନୟନ ।
ଜୟ ହେ ଇନ୍ଦ୍ରାମର ସକଳାସେବନ
ଜୟ ମୁନିମାନସଧ୍ୟେୟ ଅପଦନ ।
ଜୟ କଳିଯୁଗ ଭକ୍ତସୁରଞ୍ଜନ
ଜୟ ଭକ୍ତ ଦର୍ଶନ ଦୁଷ୍କୃତଭଞ୍ଜନ ।
ଆଦି ସଭା ବନ ଯେ ବିରାଟ ଉଦ୍ୟୋଗ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆଉ ସରସ ।
ଗ୍ରନ୍ଥ ଭଣି ଗୀତ କରିଲି ସମାପତ
ଏବେ ଶାନ୍ତି ପର୍ବକୁ ଲାଗୁଅଛି ମତ ।
କି ରୂପେ ଏହି ଗୀତ ହୋଇବ ମୋହଠାରେ
ଏ ପର୍ବ ତ ଅଗମ୍ୟ ଅଟେ ପଣ୍ଡିତରେ ।
ଏଣୁ ମୋ ମତକ ପର୍ବତ ପରି ହୋଇ
ମାତ୍ର ବସିଛି ଏଥି ଆୟୁଷ ମୋ ନାହିଁ ।
ଏଥିକି ଯେ କୃପାୟୁକ୍ତ ହୁଅ ମୋତେ ହରି
ନୋହିଲେ ନ ପାରିବି ମୁଁ ଏ ଗୀତ କରି ।
ରାଜଧର୍ମ ଯେ ମୋକ୍ଷଧର୍ମ ଦାନଧର୍ମ
ଏ ସର୍ବେ କହିଛନ୍ତି ଋଷିଙ୍କ ଉତ୍ତମ ।
ପରାଶର ତନୟ ବର୍ଣ୍ଣି ହରଷେ
ମୁଁ କହୁଅଛି ଜନେ ଶୁଣ ଏବେ ତୋଷେ ।

ଥିଲେ ହେଁ ବୋଲ ମୋର ନ କରିବ ହାସ
ସବୁ ମୂର୍ଖରେ ମୁହିଁ ଅଟଇ ବିଶେଷ ।
ଏ ସଂସାର-ଜଳଧି ପାରି ହେବା ପାଇଁ
କେବଳ ଭାରତେ ଭେଳ କଳୁଛି ମୁହିଁ ।

—✱—

## ନାରଦ ଯୁଧିଷ୍ଠିର ସମ୍ବାଦ

ବଇଶମ୍ପାୟନ ବୋଲିଲେ ଜନ୍ମେଜୟ

ଏଥୁଅନ୍ତରେ ଧର୍ମରାଜାଙ୍କ ତନୟ ।
କୁଟୁମ୍ବ ଜଳଦାନ ବିଧିମାନ ସାରି
ରହିଲେ ମାସେ କୁରୁକ୍ଷେତ୍ରେ ବାସ କରି ।
ଧୃତରାଷ୍ଟ୍ର ବିଦୁର ଗାନ୍ଧାରୀଙ୍କ କୁଳେ
ହସ୍ତିନାକୁ ପଠାଇ ସେ ମଧ୍ୟ ରହିଲେ ।
ସେଠାରେ କୁଟୁମ୍ବର କରି ବିଧି ସ୍ୱାଦର
ପ୍ରେତକାର୍ଯ୍ୟମାନ ସାରିଲେ ଯୁଧିଷ୍ଠିର ।
ସେକାଳେ ଦେବଲ ନାରଦ ବେଦବ୍ୟାସ
ଦେବସ୍ଥାନ କଣ୍ୱ ଯେ ଆସିଲେ ନରେଶ ।
ଏହାଙ୍କର ସଙ୍ଗରେ ବହୁତ ଯଦୁପତି
ଆସିଲେ ଯେ ଯାହାର ବେଦ ଶିଷ୍ୟପନ୍ତି ।
ଯୁଧିଷ୍ଠିର ଦେଖି ନୟନେ ଭକ୍ତିଭାବ
ନମିଲେ ଯାଇ କରି ତାଙ୍କ ପାଦତଳ ।
ଯେ ଯାହା ଅନୁରୂପେ ପୂଜାବିଧି କରି
ଆସନେ ବସାଇଲେ ଅତି ଦଣ୍ଡଧାରୀ ।
ଯୁଧିଷ୍ଠିର ରାଜାଙ୍କ ଦେଖି ଘୋର ଶୋକ
ପ୍ରବୋଧନା କଲେ ନାରଦ ତପୋଧିକ ।
କୃଷ୍ଣଙ୍କ ପ୍ରସାଦେ ହସ୍ତିନା ମହୀ ଜିଣି
ଅଛ, ଭୋଗ କର ହେ ପାଣ୍ଡବ ନୃମଣି ।
କ୍ଷତ୍ରିୟ ଧର୍ମେ ଏବେ ରତ ହୋଇ ନୃପ
କେଉଁଛଟିକ ଗୁଡ଼ ହୃଦେ ଥିବା ତାପ ।
ଯୁଧିଷ୍ଠିର ବୋଇଲେ ଶ୍ରୀଅର୍ଜୁନ ବଳେ
କୃଷ୍ଣଙ୍କ ପ୍ରସାଦେ ଜିଣିଲି ମହୀ ହେଳେ ।
କୃଷ୍ଣଙ୍କ କୁଳେ ଅଭିମନ୍ୟୁ ଦ୍ରୌପଦୀଙ୍କ
ସୁତଙ୍କୁ ହରାଇଲି ମୁଁ ଯମଙ୍କ ଲୋକ ।
ଏକଥା ଯେତେବେଳେ ମୋ ହୃଦରେ ପଡ଼େ
ଶୋକାଗ୍ନିରେ ନାରଦ ଜାଣ ଦେହ ପୋଡ଼େ
ଅଭିମନ୍ୟୁ ଜନନୀ ସୁଭଦ୍ରାଙ୍କ କଥା
ଶୁଣିବେ ଯଦୁ କୃଷ୍ଣ ହୋଇବେ ଭାଟକା ।

ଦ୍ରୌପଦୀ ଆହା ହତପୁତ୍ରା ହେ ରହନ୍ତି
କହ ମୁନି କେଉଁ କରିବି ତାଙ୍କୁ ଶାନ୍ତି ।
ଏ ବାହାରେ କୁନ୍ତୀ କର୍ଣ୍ଣର ପର ପୁତ୍ର
ମରିଲ ଧଣଜନ୍ତ ଦେଖି ଋଷି ଗାତ୍ର ।
ଏହା ଦେଖି ମୋହ ଅଗ୍ନି ହେଉଅଛି ଯାହା
ବର୍ଷକେ ଲଭିବ ମୁଁ ନ ପାରଇ ତାହା ।
ନାଗାୟୁତ ପରାକ୍ରମ କର୍ଣ୍ଣ ବେହୁଟି
ବଳେ ସବୁ ଅର୍ଦ୍ଧମାନଙ୍କୁ କରି ଗୋଟି ।
ମହାରଥଙ୍କର ସେ ଅଟେ ମହାରଥ
ସମସ୍ତଙ୍କ ବଳ ଗର୍ଜିବାରେ ତା ହାତ ।
ଏରୂପେ କର୍ଣ୍ଣ ପର ପୁତ୍ରକୁ ଲୁଚାଇ
ଥିଲେ ମାତା କୁନ୍ତୀ ଯେ ଆମ୍ଭରେ ନ କହି ।
ସୃଷ୍ଟି ହେବାବେଳେ କେବଳ କୁନ୍ତୀ ମୋତେ
ଭଣିଲେ କୁମ୍ଭ ଭାଇ କର୍ଣ୍ଣ ମହାମତେ ।
ମୁଁ ବୋଇଲି ମାତ କି ରୂପେ ଆମ୍ଭ ଭାଇ
ବୋଇଲେ ବାଳୁଥି କାଳେ ମୁଁ ଥିଲି ପାଇ ।
ସୂର୍ଯ୍ୟଙ୍କ ଅଂଶରେ ଜାଣ ମୁଁ ଯୁଧିଷ୍ଠିର
ମୁଁ ତ ମାତା ମୋତେ କୁ ଅଜ ତ ପସ୍ତର ।
ରାଜ୍ୟଲୁବଧ ହୋଇ ସେ କର୍ଣ୍ଣ ପରା ଭାଇ
ମରାଇଲି ମୁହିଁ ନାରଦ ଋଷି ସାଇଁ ।
ଏବେ ତ ମୁଁ ଶୁଣିଲି ଯୁଦ୍ଧାରମ୍ଭ କାଳେ
କୁନ୍ତୀ ଯାଇଁ କର୍ଣ୍ଣକୁ ଡାକିଲେ ବିକଳେ ।
କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ଅନ୍ନ ଥିଲେ ଖାଇ
ଏଣୁ ମାତା ଡାକିଲେ ହେଲେ କଲେ ନାହିଁ ।
ମାତାଙ୍କ ଶୋକ ପାଇ କଲେ ସେ ସଙ୍କେତ
କୃଷ୍ଣ ଅର୍ଜୁନକୁ କଲେ ମୁଁ ରଣେ ହତ ।
ଯୁଧିଷ୍ଠିର ସଙ୍ଗେ ପୀରତି କରିବ
କୁରୁ ରାଜ୍ୟ ଅଧେ ମୁଁ ଭୋଗ କରାଇବ ।
କୁନ୍ତୀ ଏହା ଶୁଣି ବୋଇଲେ ଆରେ ବାବୁ
ଅର୍ଜୁନ ବିନା ଆନ ଭାଇ ନ ମାରିବୁ ।
କର୍ଣ୍ଣ ବୋଇଲେ ମା ଯାହା କହୁଛ ମାତ
ଅନୁଜାଣ ହେଲା ମୋହ ଏହା କଥା ସତ୍ୟ ।
କର୍ଣ୍ଣାର୍ଜୁନଙ୍କ ଜଣେ କେହି ହେଲେ ହତ
କୁମ୍ଭର ରହିବ ଯେ ପାଞ୍ଚଗୋଟି ସୁତ ।
ଏରୂପେ କର୍ଣ୍ଣବୀର କହନ୍ତେ ବଚନେ
କୁନ୍ତୀ ଯାଇ ରହିଲେ ବିଦୁର ସଦନେ ।

ଏହା ତ ପୂର୍ବରୁ ମୋତେ ନ ଥିଲା ଗୋଚର
ଏଣୁ ପାର୍ଥ କରିଲା କର୍ଣ୍ଣଙ୍କୁ ସଂହାର ।
ନ ଜାଣି ରଣେ ଜ୍ୟେଷ୍ଠଭ୍ରାତା କଲି ହତ
ଶୋକେ ଦଗ୍ଧ ମୋ ହୃଦ ହେଉଛି ନିୟତ ।
ଦ୍ୟୂତବେଳେ ଦୁର୍ଯ୍ୟୋଧନଙ୍କ ପକ୍ଷ ହୋଇ
କଟୁବାକ୍ୟ ଆମ୍ଭଙ୍କୁ କହିଲେ ସେ ଯାଇ ।
ତା ଶୁଣି କ୍ରୋଧ ମୋର ଜନ୍ମିଲା ଯେ ଅତି
ମାତ୍ର ତାଙ୍କ ପାଦ ଦର୍ଶନେ ହେଲା ଶାନ୍ତ ।
ମାତାଙ୍କ ପାଦ ପରି ତାଙ୍କ ପାଦ ଦୁଇ
ଦର୍ଶନେ ଜନ୍ମିଥିଲା ମୋ ମନେ ସନ୍ଦେହ ।
କାହିଁକି ଧରା ରଥଚକ୍ରକୁ ତାଙ୍କର
ଯୁଦ୍ଧରେ ଗ୍ରାସ କଲେ କହ ମୁନିବର ।
ଜାଣିଲି ଏବେ ବନ୍ଧୁ ଭାଇ ମରାଇଲି
ନ ମାରି ଯନ୍ତ୍ରଣାରେ ମଲା ପରି ହେଲି ।

—※—

## ପରଶୁରାମଙ୍କଠାରୁ କର୍ଣ୍ଣଙ୍କର ବ୍ରହ୍ମାସ୍ତ୍ର ଶିକ୍ଷା

ନାରଦ ବୋଇଲେ ରାଜନ ଯୁଧିଷ୍ଠିର
ଶୁଣ ସବୁ କଥା କହିବା ପୂର୍ବପର ।
ଏକ ସମୟେ ସ୍ୱର୍ଗେ ବସିଣ ଦେବତା
କ୍ଷତ୍ରିୟମାନଙ୍କ କୁଶଳ କଲେ ଚିନ୍ତା ।
ଏ ପ୍ରକାରେ କ୍ଷତ୍ରିୟ ସକଳ ଶସ୍ତ୍ରଯୋଗେ
ପବିତ୍ର ଆତ୍ମା ହୋଇ ପଶିବେ ସ୍ୱର୍ଗେ ।
ତା ସେନ ଜଣାଇବା ପାଇଁ ଦେବଗଣେ
କୁନ୍ତୀ ଗର୍ଭ ସୃଜିଲେ ତାଙ୍କ କନ୍ୟାକାଳେ ।
କର୍ଣ୍ଣ ଯେ ସେହି ଗର୍ଭେ ପୁଣି କୁନ୍ତୀସୁତ
ସୂତପୁତ୍ର ବୋଲି ସେ ହେଲେ ପରିଚିତ ।
ଦ୍ରୋଣଙ୍କ ପାଶେ ଧନୁର୍ବେଦ ଶିକ୍ଷାକାଳେ
ପାଣ୍ଡବ ବଳ-ଗୁଣ-ଶୌର୍ଯ୍ୟ ଦ୍ୱେଷୀ ହେଲେ ।
ବାଲ୍ୟୁଁ ଦୁର୍ଯ୍ୟୋଧନ ସଙ୍ଗରେ ମିତ୍ରପଣ
କ୍ରମରେ ଶତ୍ରୁଭାବ ଦୃଢ ହେଲା ଜାଣ ।
ଧନୁର୍ବେଦ ପ୍ରବୀଣ ଦେଖି ଅର୍ଜୁନେ
ବ୍ରହ୍ମାସ୍ତ୍ର ଶିକ୍ଷାର୍ଥୀ ହୋଇଲେ ଗୋପନେ ।
ଦ୍ରୋଣ କର୍ଣ୍ଣଙ୍କର ଜାଣିଣ ଦୁଷ୍ଟମତି
ବୋଇଲେ ହେ କ୍ଷତ୍ରିୟ ନୋହେ ତୁମ୍ଭ ଜାତି ।
କହୁଁନେ ବ୍ରହ୍ମାସ୍ତ୍ର ଦେବୁ ଅବା ଅନ୍ୟେ
କହନ୍ତୁ ଅଜ୍ଞ ଥରେ ନ ବୋଲିବ ତୁମ୍ଭେ ।
ତା ଶୁଣି କର୍ଣ୍ଣବୀର ପରଶୁରାମଠାରୁ
ବାହାରିଲେ ବ୍ରହ୍ମାସ୍ତ୍ର ଶିକ୍ଷା କରିବାକୁ ।
ପରଶୁରାମ ଥିଲେ ଯେ ମହେନ୍ଦ୍ର ପର୍ବତେ
ସେଠାରେ କର୍ଣ୍ଣ ଯାଇ ମିଳିଲେ ତ୍ୱରିତେ ।
ଦ୍ୱିଜରୂପେ ପରଶୁରାମଙ୍କୁ ଦେଖା ଦେଇ
ବୋଇଲେ ଅସ୍ତ୍ର ଶିକ୍ଷା ଆସିଅଛି ମୁହିଁ ।
ପରଶୁରାମ ଗୋତ୍ର ପ୍ରବର ତାଙ୍କୁ ପୁଚ୍ଛି
ବୋଇଲେ ଏ ଆସନେ ବସ ଦ୍ୱିଜବର ।
ତହିଁ ଦେବ ଯକ୍ଷ ଯେ ଗନ୍ଧର୍ବ ରାକ୍ଷସ
ସଙ୍ଗରେ ହେଲା ତାଙ୍କ ମିତ୍ରତା ପ୍ରକାଶ ।
କର୍ଣ୍ଣ ସେ ପରଶୁରାମଠାରୁ ଧନୁର୍ବେଦ
ଶିଖିଲେ ମାନସେ ଉତ୍ପନ୍ନ ତହିଁ ମୋଦ ।
ଦିନେ କର୍ଣ୍ଣ ହୋଇଣ ଧନୁଃଶରପାଣି
ବୁଲିଲେ ଆଶ୍ରମ ନିକଟ ବନଶ୍ରେଣୀ ।
ତହିଁ ଏକ ବ୍ରାହ୍ମଣ ଗାଈଟିକ କାଣ୍ଡେ
ଅଜାଣି ବଧାଇଲେ ନେଇ ଯମଦଣ୍ଡେ ।
ଯେଉଁ କ୍ଷଣି ଦେଖିଲେ ସେ ଗାଈ ସ୍ୱରୂପ
ତେକ୍ଷଣି କର୍ଣ୍ଣ ମନେ ଧରି ମହାତାପ ।
ଯେଉଁ ଦ୍ୱିଜ ଗାଈ ସେ ଦ୍ୱିଜଠାରୁ ଗଲେ
ଅଜାଣି ଭ୍ରମେ ଗାଈ ମାରିଲି କହିଲେ ।
ସେ ବ୍ରାହ୍ମଣ କ୍ରୋଧବଶ ନ ପାରି ସହି
ଶାପ ଦେଲେ କର୍ଣ୍ଣଙ୍କୁ ଅତିକ୍ରୋଧ ବହି ।
ଯା ଭୁଲେ ତୁମ୍ଭେ ଯୁଦ୍ଧ ଇଚ୍ଛା ଅଛ କରି
ତାହା ଭୁଲେ ଯେବେ ଯୁଝିବ ଶସ୍ତ୍ର ଧରି ।
ତେବେ ହେ ତୁମ୍ଭ ରଥ ମହୀରେ ଲାଗିବ
ଏ ଯେଣୁ ମୁଣ୍ଡ ତାର ହାତେ କଟାଇବ ।
କର୍ଣ୍ଣ ତା ଶୁଣି ବ୍ରାହ୍ମଣଙ୍କ ତୋଷ ପାଇଁ
ଗୋଧନ ବସ୍ତ୍ର ରତ୍ନ ଦେଲେ ସବୁ ନେଇ ।
ବ୍ରାହ୍ମଣ ବୋଇଲେ ମୁଁ ଦେଲିଣ ତ ଶାପ
ଦ୍ରବ୍ୟ ଦେଲେ କାହିଁ ତା ହୋଇଯିବ ଲୋପ ।
ଯାଅ ଯାଅ ଅବା ଯେ ଇଚ୍ଛା ଅଛି ଚିତ୍ତେ
କର ତା ଆଉ କହି ନ ପାରେ କଥିତେ ।
ବ୍ରାହ୍ମଣର ଶୁଣି ସେ ନିଷ୍ଠୁର ବଚନ
ଭୟେ ଅଶ୍ରୁପୂର୍ଣ୍ଣ ହେ କରିଣ ନୟନ ।

ସେଠାରୁ କର୍ଣ୍ଣ ପର୍ଶୁରାମଠାକୁ ଗଲେ
ବୃଦ୍ଧି ଯଥାବିଧିରେ ଅସ୍ତ୍ରକୁ ଶିଖିଲେ ।
କର୍ଣ୍ଣ ସେବାରେ ସୁଖୀ ହୋଇ ପର୍ଶୁରାମ
ଦେଲେ ତାଙ୍କୁ ବ୍ରହ୍ମାସ୍ତ୍ର ଅସ୍ତ୍ରଙ୍କ ଉତ୍ତମ ।
ଦିନେ ଉପବାସରେ ପର୍ଶୁରାମ ଶ୍ରାନ୍ତ
ହୋନ୍ତେ ନିଦ୍ରା ହେଲା ନୟନେ ଆସନ୍ତ ।
କର୍ଣ୍ଣଙ୍କ ଜଙ୍ଘେ ମୁଣ୍ଡ ଦେଇ ଭୂମିତଳେ
ପଡ଼ିଲେ ଶୋଇ ଲୁଗା ପାଡ଼ି ନିଦ୍ରାବଳେ ।
ସେକାଳ ଜାଣି କୀଟ ଗୋଟିଏ ଆସିଲା
କର୍ଣ୍ଣଙ୍କ ଉରୁଦେଶ ଖୋଳିବାକୁ ଲାଗିଲା ।
କର୍ଣ୍ଣ ଗୁରୁଙ୍କ ନିଦ୍ରା ଭଙ୍ଗିବା ଭୟରେ
ନ ହଲି ଜଙ୍ଘ ତର୍କି ରହିଲେ ଧୈର୍ଯ୍ୟରେ ।
ନିଦ୍ରା ଛାଡ଼ିଣ ଉଠି ପର୍ଶୁରାମ ବୀର
ଦେଖିଲେ କର୍ଣ୍ଣଜଙ୍ଘୁ ବହେ ରକ୍ତଧାର ।
କର୍ଣ୍ଣଙ୍କୁ ବୋଇଲେ ଏ ରକ୍ତ ମୋ ଦେହରେ
ଲାଗିଲା କି ହେବୁ ତୁ କହ ମୋ ଆଗରେ ।
ତୋ ଦେହ ଏତେବେଳେ ଜଳେ ସ୍ନାନ
ତେବେଟି ଶୁଦ୍ଧ ହେବ ମୋର ଅପାବନ ।
ସତ କହ ଏ କଥା କହ ମୋ ଆଗରେ
ସତ୍ୟରୁ ନାହିଁ କର୍ଣ୍ଣ ଜାଣ ମୁଁ ସାଗରେ ।
କର୍ଣ୍ଣ ବୋଇଲେ ଗୁରୁଦେବ ଏ କୃମିଟି
ଖୋଳିଗଲା ମୋ ଜଙ୍ଘ ହାଡ଼କୁ ଭେଦଟି ।
ସେ କୃମିର ଆଠଟି ଗୋଡ଼ ତୀକ୍ଷ୍ଣ ଦାନ୍ତ
ଅଟଇ ଜାଣ ଆହେ ଜମଦଗ୍ନି ସୁତ ।
ପର୍ଶୁରାମ କୃମିକି ଚାହିଁ ଦେବାକ୍ଷଣି
ଗଲେ ତା ପ୍ରାଣ ହୋଇ ଯମଦୂତ ଶ୍ରେଣୀ ।
ସେ କୃମି ମୂର୍ତ୍ତି ଧରି ରାକ୍ଷସ ମୂରତି
ଦେଖା ଦେଲା ଆକାଶ ମଧ୍ୟେ କରଯୋଡ଼ି ।
ବୋଇଲା ମୁଁ ତୁମ୍ଭ ସକାଶୁଁ ହୋଇ ମୁକ୍ତ
ଯାଉଛି ନିଜସ୍ଥାନ ଆହେ ଭୃଗୁସୁତ ।
ପର୍ଶୁରାମ ବୋଇଲେ ନରକରୁ ଆମ୍ଭେ
କିପାଇଁ କୃମିଜନ୍ମ ପାଇଥିଲୁ ତୁମ୍ଭେ ।
ସେ ଅସୁର କହିଲା ଦଂଶନାମ ମୋର
ପୂର୍ବେ ମୁଁ ହୋଇଥିଲି ଜାଣ ମୁନିବର ।
ଭୃଗୁଙ୍କ ଭାର୍ଯ୍ୟାକୁ ମୁଁ ବଳେ ତ ହରିଲି
ଭୃଗୁ ଶାପରେ କୃମିରୂପ ମୁଁ ଧରିଲି ।
ତାଙ୍କ ଶାପ ଅନ୍ତକୁ ମାଗନ୍ତେ କାରଣ
ପ୍ରସନ୍ନ ହୋଇ ମୋତେ କହିଲେ ବଚନ ।
ପର୍ଶୁରାମ ତୋତେ ଚାହିଁବେ ଯେତେବେଳେ
ସେତେବେଳେ ମୁକ୍ତ ତୁ ହେବୁ ସେହି ବଳେ
ଏହା କହି ରାମଙ୍କ ପାଦତଳେ ନମି
ହୋଇଲା ସେ ଅସୁର ନିଜ ସ୍ଥାନଗାମୀ ।
ଏଥନ୍ତେ ପର୍ଶୁରାମ ମହାକ୍ରୋଧ ହୋଇ
କହିଲେ ଏ ବଚନ କର୍ଣ୍ଣଙ୍କୁ ଅନାଇଁ ।
କ୍ଷତ୍ର ପୁତ୍ରକୁଳେ ତୁମ୍ଭେ ହୋଇଛ ଜନମ
ନୋହିଲେ ଆନ ଲୋକ ସହେ କି ଏ କର୍ମ ।
କର୍ଣ୍ଣ ତହୁଁ ବୋଇଲେ ମୁଁ ତ ସୂତପୁତ୍ର
ରାଧେୟ ନାମ ମୋର ଜାତ ଗୁରୁ ମନ୍ତ୍ର ।
ଅସ୍ତ୍ର ଲୋଭ କରି ଭାର୍ଗବ ଗୋତ୍ର ବୋଲି
ତୁମ୍ଭ ଆଗେ ମିଥ୍ୟାବଚନ କହିଥିଲି ।
ଏ ଦୋଷକୁ ଦେବ କ୍ଷମା କରି ମୋହର
ପ୍ରସନ୍ନ ହୁଅ ମୋତେ ଋଷି କୁଳବର ।
ଏରୂପେ କହି କର୍ଣ୍ଣ ଗୁରୁ ପାଦତଳେ
ଦଣ୍ଡା ହୋଇ ପଡ଼ିଲେ ପ୍ରାଣର ଭୟେ ।
ପର୍ଶୁରାମ ବୋଇଲେ କପଟେ ବ୍ରହ୍ମାସ୍ତ୍ର
ଶିଖିଲୁ କହି ମୋତେ ବୋଲି ଦ୍ୱିଜପୁତ୍ର ।
ଏ ସକାଶୁଁ ଶାପ ମୁଁ ଦେଉଅଛି ତୋତେ
ମୃତ୍ୟୁକାଳେ ଅସ୍ତ୍ର ନ ସ୍ମରିବ ସେ ଚିତ୍ତେ ।
ତଥାପି ତୋପରି ଏ ମର୍ତ୍ତ୍ୟମଧ୍ୟେ କେହି
କ୍ଷତ୍ର ପୁ ଯୋଦ୍ଧା ହୋଇ ପାରିବଟି ନାହିଁ ।
ଏ ସ୍ଥାନରୁ ଏବେ ପ୍ରସ୍ଥାନ ବେଗେ କରି
ଏଠା ନୁହେ ମିଥ୍ୟାବାଦୀର ରହିବାର ।
ଏରୂପେ ପର୍ଶୁରାମଠାରୁ ଶାପ ପାଇ
ଦୁର୍ଯ୍ୟୋଧନ ପାଶେ ଆସିଲେ କର୍ଣ୍ଣ ଧାଇଁ ।
ଦୁର୍ଯ୍ୟୋଧନ କୁଳେ ଯାଇ ମିତ୍ରତା କଲେ
କୁରୁଠାରେ ବସି ସେ ଈର୍ଷାକୁ ବଢ଼ିଲେ ।
ଏରୂପେ କେତେ ଦିନ ଯାନ୍ତେ ସ୍ୱୟମ୍ବର
ଦୁହିତା ପାଇଁ କଲେ କଳିଙ୍ଗ ନୃପବର ।
ଶତସଂଖ୍ୟା ରାଜା ହୁଅନ୍ତେ ଠୁଳି ଗୋଟି
ତାହା ଶୁଣି ପାଇ ସେ ଗାନ୍ଧାରୀ ବେଟାଟି ।
କର୍ଣ୍ଣଙ୍କୁ ସଙ୍ଗେ ଧରି ବସି ସୁରଥେ
ବାହାରିଲେ ଚଳିଲେ ସୈନ୍ୟ ସାଥେ ।

ଜରାସନ୍ଧ ଶାଲ୍ୱକ ବକ୍ର ଶିଶୁପାଳ
ଅଶୋକ ସ୍ତ୍ରୀରାଜ୍ୟ ଅଧିପତି ଶୃଗାଳ ।
ମାଳ ରୁକ୍ମୀ ଶତଧନ୍ୱା ସେ ଶ୍ୱେତରାଜ
ଏମାନେଟି ଗଲେ ସେଠାକୁ ହୋଇ ସଜ ।
ସେ ସର୍ବେ ଜଳଙ୍କର ସ୍ୱୟମ୍ବର ସଭା
ମଣ୍ଡିଲେ ଦେଖାଇ ଆପଣା ବେଦପ୍ରଜ୍ଞ ।
କଳଙ୍ଗ ରାଜା ବୋଲେ ଧାଇଁ ସଜ ଧର
ସଭାସ୍ଥାନେ ଆଣିଲେ ତାଙ୍କର କୁମାରୀ ।
ଦୁର୍ଯ୍ୟୋଧନ ଆଦି ବହୁ ନୃପତି ଦେଖି
ବରଣ ନ କଲା ସେ ସ୍ୱନ୍ତ ଚନ୍ଦ୍ରମୁଖୀ ।
ଦୁର୍ଯ୍ୟୋଧନ ରାଜା ତ ସହି ନ ପାରିଲେ
କନ୍ୟାକୁ ବଳେ ରଥେ ନେଇ ବାହାରିଲେ ।
ରାଜାମାନେ ତା ଦେଖି କ୍ରୋଧେ ଅନ୍ଧ ହୋଇଲ
କର୍ଣ୍ଣ ଦୁର୍ଯ୍ୟୋଧନକୁ ବେଢ଼ିଣ ଯୁଝିଲେ ।
କର୍ଣ୍ଣର କ୍ଷୁରକାଣ୍ଡେ ନୃପମାନଙ୍କର
ଧନୁ କାଟି ପକାଇଲେ ହେ ଯୁଧିଷ୍ଠିର ।
କେତେ ରାଜାମାନଙ୍କ ରଥୀ ସେ ପତାକ
କାଟିଲେ ଯୁଦ୍ଧ କର୍ଣ୍ଣ ଦେଖାଇ କଉତ ।
ରାଜାମାନେ କର୍ଣ୍ଣଙ୍କୁ ଜିଣି ନ ପାରିଲେ
ସମସ୍ତେ ଅସ୍ତବ୍ୟସ୍ତ ହୋଇ ପଳାଇଲେ ।
ଦୁର୍ଯ୍ୟୋଧନ ବହୁ ମାନସେ ହରଷକୁ
କନ୍ୟା ନେଇ ଆସିଲେ ଆପଣା ଘରକୁ ।
କର୍ଣ୍ଣଙ୍କ ବଳ ଦେଖି ଜାଣି ଜରାସନ୍ଧ
କ୍ରୋଧ ଅହଙ୍କାରେ ଅତି ହୋଇଣ ଅନ୍ଧ ।
ହସ୍ତିନାକୁ ଆସି ବୋଇଲେ କର୍ଣ୍ଣ ଆସ
ଜିଣିଲେ ମୋତେ ଯୁଦ୍ଧ ଆର୍ଜ୍ଞିତ ଜଣ ।
ଏହା ଶୁଣି କର୍ଣ୍ଣ ଯେ ଅଧିରଥବସି
ଯୁଝିଲେ ତାଙ୍କ ସଙ୍ଗେ ଭଗ୍ନକୁ ମୁହୂର୍ତ୍ତ ।
ଦୁହେଁ ସେ ବଳୀ ବଳୀଙ୍କରେ ଅନନ୍ତ ଶେଖର ।
କଲେ ସବୁ ଅସ୍ତ୍ର ଶସ୍ତ୍ରଙ୍କ ସେ ପ୍ରହାର ।
ନିଃଶେଷ ହେଲା ଅସ୍ତ୍ର ଯହୁଁ ଦୁହିଁଙ୍କର
ବାହୁଯୁଦ୍ଧ କଲେ ସେ ତହୁଁ ପରସ୍ପର ।
ଜରାସନ୍ଧ ଦେହ ଜନ୍ମରୁ ଅଛି ଯୋଡ଼ା
ତା ଶ୍ଳଥ କରିଦେଲା କର୍ଣ୍ଣ ବାହୁଭିଡ଼ା ।
ଗ୍ଳାନବନ୍ତ ହୋଇଣ ଜରାସନ୍ଧ ନୃପ
କହିଲେ ପ୍ରୀତିବାଣୀ କର୍ଣ୍ଣେ ଛାଡ଼ି କୋପ ।

ଏ ଅନ୍ତେ କର୍ଣ୍ଣଙ୍କୁ ମାଳିନୀ ନାମେ ପୁରୀ
ଦେଇ ଗଲେ ସେ ଜରାସନ୍ଧ ଦଣ୍ଡଧାରୀ ।
କର୍ଣ୍ଣ ଦୁର୍ଯ୍ୟୋଧନଙ୍କର ସ୍ୱୀକାର ପାଇ
ପାଳିଲେ ସେ ମାଳିନୀପୁରୀ ସ୍ନେହ ବହି ।
ମାଗି କୁନ୍ତୀପାଇଁ କର୍ଣ୍ଣଠୁଁ ସୁରରାଜ
ନେଲେ ଯେ କବଚ କୁଣ୍ଡଳ ଛାଡ଼ି ଲାଜ ।
ବ୍ରାହ୍ମଣ ରାମ ଶାପ କୁନ୍ତୀ ବରଦାନ
ଇନ୍ଦ୍ରଙ୍କ ମାୟା ଯେ ଶାସ୍ତ୍ରଙ୍କ ଅପମାନ ।
ଶଲ୍ୟଙ୍କ ତେଜୋବଧ କୃଷ୍ଣଙ୍କର ନୟ
ଏ ସାତଙ୍କରେ କର୍ଣ୍ଣ ହୋଇଲେଟି କ୍ଷୟ ।
ରୁଦ୍ର ଇନ୍ଦ୍ର ବରୁଣ କୁବେର ବୈଶ୍ୱାନର
ଅସ୍ତ୍ରଶିକ୍ଷା ତ ଥିଲା ବୀର ଅର୍ଜୁନର ।
ଏ ବଳରେ ଅର୍ଜୁନ କର୍ଣ୍ଣର ମୁଣ୍ଡଟି
ପାଣ୍ଡବରାଜ ଜାଣ ପକାଇଲେ କାଟି ।
କର୍ଣ୍ଣ ମହାଯୁଦ୍ଧ କରିଣ ହେଲେ ହତ
ତାହାଙ୍କ ପାଇଁ ଶୋକ ନୁହଇ ଉଚିତ ।
ଏ ରୂପରେ ନାରଦ କହୁଁ କହୁଁ ବାଣୀ
କାନ୍ଦିଲେ ଯୁଧିଷ୍ଠି ପାଣ୍ଡବ ନରମଣି ।
କୁନ୍ତୀଦେବୀ ବୋଇଲେ ନ କାନ୍ଦ ତନୟ
କର୍ଣ୍ଣ ଯୁଦ୍ଧେ ମରି ଗଲେଣ ଯମାଳୟ ।
ସୂର୍ଯ୍ୟେ ଯାଇ କର୍ଣ୍ଣଙ୍କୁ ବହୁ ବୁଝାଇଲି
ନ ମାନିବାରୁ ମୁହିଁ ହାଲିଆ ହୋଇଲି ।
ସୂର୍ଯ୍ୟ ମଧ୍ୟ କର୍ଣ୍ଣକୁ ବହୁତ କହିଲେ
ତାହାଙ୍କ ବୋଲ ମଧ୍ୟ କର୍ଣ୍ଣ ଲଙ୍ଘି ଦେଲେ ।
ତୁମ୍ଭମାନଙ୍କଠାରେ କର୍ଣ୍ଣ ପ୍ରତିକୂଳ
ହେଲେ ଯେଣୁ ତାଙ୍କୁ ଛାଡ଼ିଲି ଜାଣ ବାଳ ।
ଯୁଧିଷ୍ଠିର ବୋଇଲେ ତୁମ୍ଭ ସକାଶରୁ
ନାଶ ଗଲେ କର୍ଣ୍ଣ ହୋଇ ଆମ୍ଭ ଗୁରୁ ।
ଶାପ ଦେଉଛି ମୁହିଁ ଆଜ ସ୍ତ୍ରୀଜାତି
ଗୁପତ କଲେ କଥା ହୋଇବ ସେ ଖ୍ୟାତ ।
ପୁଣି ପୁତ୍ର ନାତିଙ୍କ ମରଣ ଉତାଇ
ଅର୍ଜୁନେ କହିଲେ ପାଣ୍ଡବ ନରସାଇଁ ।
ଭିକ୍ଷା ମାଗିଣ ବୃଷ୍ଣି ଅନ୍ଧକମାନଙ୍କୁ
ବଞ୍ଚିବା ଥିଲା ଭଲ ନ ମାରି କୁରୁଙ୍କୁ ।
ତାହା ଛାଡ଼ି ଯାହା କଲଇଁ ବାବୁ ଏହା
ଆପଣା ଇଚ୍ଛାରେ ତ କାଟିଲଇ ବାହା ।

କ୍ଷତ୍ର ସ୍ୱ ଧରମକୁ ହେଳ ଧିକ ଧିକ
ଯାବତ ବେଦ ପାରଗରେଁ ଜନ କୁଳଯାକ ।
କ୍ଷମା ଶୌଚ ଅହିଂସା ବଇରାଗ୍ୟ ଦମ
ଆଉ ବନବ୍ରତଧର୍ମ ଅଟେ ଉତ୍ତମ ।
ରାଜ୍ୟ ଲୋଭ କରି କୁଳକୁ ଯେ ହରଇ
ମୂର୍ଖ ଭାବ ଦୂରେ ଅର୍ପି ବସିଥାଇ ।
ଜନକେକ ରାଜ୍ୟ ପାଇଲେ ଏବେ ଆମ୍ଭେ
ଉତ୍ତ ନ ଚାରିବା ଜାଣ ହେ ଶୋକ ତମ୍ଭେ ।
ଯାଗ ବ୍ରତ ଦାନ ଲୋକ ସିଦ୍ଧି ଲଭେ
ବୃତ୍ତିଭାବେ ପୋଷିବା ପାଳବାର ଲୋଭେ ।
ଆମ୍ଭ ପୁତ୍ରମାନେ ତ ସୁଖକୁ ନ ଭୁଞ୍ଜ
ଜୀବନ୍ତ ହେଲେ ଶତ୍ରୁବଳେ ହୋଇ ଗଞ୍ଜି ।
ଏ ସବାଙ୍କୁ ମୋର ଅର୍ଜୁନ ବୋଲନ୍ତି ଦୁଃଖ
ବନ୍ଧୁ ଅଛୁ କରିବାକୁ ବା କେଉଁ ସୁଖ ।
ଦୁର୍ଯ୍ୟୋଧନ ସ୍ୱଭୃତ ବଚନ ନ ଶୁଣ
ମଲ ଭଲ ଆମ୍ଭମାନଙ୍କୁ ଶୋକସ୍ଥାନ ।
ଦୁର୍ଯ୍ୟୋଧନ ଦୁଷ୍ଟପଣେ ବୁଡ଼ାଇଲେ
ଧୃତରାଷ୍ଟ୍ର ରାଜା ବୁଡ଼ିଲେ ଶୋକଜଳେ ।
କୁଳକୁ ନାଶ ପୁଣି ପୁଣେ ରାଜ୍ୟଦେଲ
ଦୁଃଖ ପାଇଲେଟି ଗାନ୍ଧାରୀ-ପ୍ରାଣଧାରି ।
ଜ୍ୟେଷ୍ଠକ ହୋଇ ଯେ ମନ୍ତ୍ରୀ ହେଲ ମୋର
ଏ ଶୋକକୁ କେଉଁ ଉପାୟ କର ଧୀର ।
ମୋ ବୋଲେ ତୁମ୍ଭେ ହୁଅ ଏ ରାଜ୍ୟରେ ରାଜା
ପାଳିବା କର ଏବେ ଧର୍ମେ ସବୁ ପ୍ରଜା ।
ବନେ ପଶି ମୁହିଁ ମୁନିମାନଙ୍କ ବ୍ରତ
ଆଚରିବାକୁ ମୋ ଇଚ୍ଛା ହେଉଅଛି ଚିତ୍ତ ।
ଅର୍ଜୁନ ଶୁଣି ଯୁଧିଷ୍ଠିରଙ୍କ ଏ ବାଣୀ
କ୍ରୋଧାନଳେ ସେ ଜଳିଲେ ସେହିକ୍ଷଣି ।
ଇନ୍ଦ୍ରଙ୍କ ପରି ରୂପ ଦେଖାଇ ତାହାଙ୍କୁ
କହିଲେ ରୁଷ୍ଟ ହୋଇ ବଚନମାନଙ୍କୁ ।
ଶତ୍ରୁ ମାରି ପୃଥିବୀ ପାଇ ହେଲ ରାଜା
ଏବେ କର୍ମା ଛାଡ଼ିବ ଛଡ଼ାଉଛ ମଜ୍ଜା ।
ଯେବେ ହେ ଏତେ ଦୟା ବୁଦ୍ଧି କରିଥିଲ
ତେବେ ଆମ୍ଭମାନଙ୍କୁ କର୍ମା ଯୁଝାଇଲ ।
ଅଭିମନ୍ୟୁ ପରି ବୀର ପୁତ୍ର ମରଇ
ତୁମ ହିତପାଇଁ ଜାଣ ମୁଁ ଅଛୁ ଜୀଇଁ ।

ନୃପ ହୋଇ ଭିକ୍ଷା ମାଗିବା ମନ କଲେ
ମହାଦୁଃଖେ ରାଜନ ମିଳେ ଛାଡ଼ି ଭଲେ ।
ଜନଲୋକେ ଖ୍ୟାତ ହୋଇଛୁ ତୁମ୍ଭ ଲାଗି
ଆଚରିବ କ ତୁମ୍ଭେ କହ ଭିକ୍ଷାବୃତ୍ତି ।
ରାଜ୍ୟ ଛାଡ଼ି ଯେବେ ବନକୁ ତୁମ୍ଭେ ଯିବ
ହସିବେଟି ଶୁଣି ସକଳ ନରଦେବ ।
ଏଥିରୁ ମୂର୍ଖପଣ ଧୋଇ କଥା ନାହିଁ
କବିହିଁ ଉଚ୍ଚ ଆଜ୍ଞ ବଚନ ଯେ କହି ।
କହୁଛ କଷ୍ଟଜନ୍ତୁ ବନ୍ଧୁଦ୍ରୋହ ଇଚ୍ଛା
ନ କରିବଟି ନୃପକୁଳର ଯେ ଦକ୍ଷା ।
ଧରମ ବୋଲି ଲୋକେ କହନ୍ତି ଯାହାକୁ
ଧନ ଥିବା ଲୋକେଟି ଅର୍ଜନ୍ତି ତାହାକୁ ।
ଯେ ଯାହାର ହରି ନଅଇଟି ସର୍ବସ୍ୱ
ଜାଣ ସେ ତାର ଧର୍ମ ସବୁ କରେ ନାଶ ।
କୁନ୍ତୀସୁତେ ଆମ୍ଭର ଯେବେ ଧନ ହରି
ତାଙ୍କୁ ଯେଣୁ ମାରିବା ଉଚିତ ଆମ୍ଭରି ।
ନିଜ ନ ପଣ୍ଡିତଙ୍କ ଦଶାଟି ସମାନ
ଏଣୁ ଦୁଃଖେ ସେ ସଦା ନେଉଥାନ୍ତି ଦିନ ।
ଅର୍ଥରୁ ସବୁ ଧର୍ମ ପ୍ରବର୍ତ୍ତିଲ ରାୟେ
ପର୍ବକୁ ନଗରଜନ ବନ୍ଧନ ପରାୟେ ।
ଅର୍ଥ ସବାଙ୍କୁ କାମନା ଯେ ସ୍ୱର୍ଗ ହୋଏ
କହୁଥାନ୍ତି ଏକଥା ବସିଣ ସଭିଏଁ ।
ଅର୍ଥହୀନ ଲୋକ ନିତ୍ୟ ପେଟ ଆଉଁଷି
ବସିଥାଏ ଏକା ଖାଇବା କଥା ଘୋଷି ।
ଅର୍ଥଥିବା ଲୋକ ଯେ ହୋଇଏ ପଣ୍ଡିତ
ଅର୍ଥରୁ ବଡ଼ ହୋଇ ନାହିଁ ଏ ଜଗତ ।
ଅର୍ଥ ଥିଲେ ଅର୍ଥ ତହୁଁ ବଢ଼େ ଅଧିକ
ଦେଖୁଥାଇ କେବେ ତା ଅର୍ଥହୀନ ଲୋକ ।
ଅର୍ଥ ଯାର ଅଛିଟି କୁଳ ତାର ଅଛି
ଅର୍ଥହୀନ ଲୋକ ତା ଦଅଇ ମୁଞ୍ଚୁଛି ।
ଦୁର୍ବଳ ହେଲେ ଲୋକ କୃଶ ନ ବୋଲାଏ
ଧନହୀନ ଲୋକଟି କୃଶ ଜାଣ ରାୟେ ।
ଧନଲୋଭେ ଦେବତା ଦୈତ୍ୟ ଏକା ଗୋତ୍ର
ହୋଇଣ ପରସ୍ପର ହୋଇ ମରୁଛନ୍ତି ।
ତିନବେଦ ପଢ଼ି ଯେ ଶାସ୍ତ୍ରକୁ ଜାଣିମ
ଧନ ସମ୍ପାଦନ ଏ ପୁରୁଷଙ୍କ ଧର୍ମ ।

ଅନ୍ୟଠାରୁ ଧନ ଆଣିକ ଯେବେ ନର
ଯାଗ ଦାନ କରିବ ସାଧୁ ଏ ବେଭାର ।
ତା ଜାଣି ନୃପତି ଏ ପୃଥିବୀ ଜିଣି
ଦ୍ୱିଜଙ୍କୁ ତୋଷୁଛନ୍ତି ଦେଇ ଧନ ଶ୍ରେଣୀ ।
ରାଜା ଯେ ଧନ ଯୁଦ୍ଧେ ଜିଣିକରି ଆଣେ
ତା ପୁଣ୍ୟ ପିତୃ ଧନ ପାଇବାର ମଣେ ।
ସାଗର ଜଳ ପରି ସେହି ରାଜଧନ
କରେ ପୃଥ୍ୱୀ ମାନବ କାର୍ଯ୍ୟ ସମ୍ପାଦନ ।
ଅମ୍ବରୀଷ ନହୁଷ ମାନ୍ଧାତା ଦିଲୀପ
ଭୋଗ କରୁଥିଲେ ପୂର୍ବେ ଏ ମହୀ ନୃପ ।
ଏବେ ତୁମ୍ଭଠାରେ ସ୍ୱବାହୁଜାତ ହେଲ
ଉତ୍ତମଠାରେ ମହୀ ଭର କ୍ଷମା ନାହିଁ ।
ମହୀ ପାଇ ଯେବେଟି ନ କରିବ ଯାଗ
ବେଦଅନ୍ତେ ନରକ କହନ୍ତି ଭୋଗ ।
ଅଶ୍ୱମେଧ ଯାଗ ଯେ ରାଜାଟି କରଇ
ସତ୍ୟଲୋକ ଭୋଗ ସେ ସ୍ୱର୍ଗରେ ବସଇ ।
ମହାଦେବ ପରି ଯେ ହେବ ସର୍ବମେଧ
ଯାଗ କଲେ ଶେଷେ ସେ ନିଜ ତନୁ ମେଧ ।
ସବୁ ପ୍ରାଣୀଙ୍କରେ ଏ ମାର୍ଗର ପ୍ରସିଦ୍ଧି
ଜାଣି ନ ହରାଅ ନୃପ ହୋଇଣ ସୁବୁଦ୍ଧି ।

—✻—

## ଯୁଧିଷ୍ଠିରଙ୍କ ତତ୍ତ୍ୱବାଣୀ

ଯୁଧିଷ୍ଠିର ବୋଇଲେ ଅର୍ଜୁନ ତୁମ୍ଭ କଥା
ଶୁଣି ଜାତ ହେଉଛି ମୋ ହୃଦରେ ବ୍ୟଥା ।
ରାଜସୁଖ ତ୍ୟଜି କରିବି ବନବାସ
ମୁନିବୃତ୍ତି ଆଚରି ସାରିବି ଦିବସ
ଯଥାକାଳେ ଅନଳେ ହୋମ କରୁଥିବି
ଶୀତ ବାତ ଆତପ ତନୁଙ୍କେ ସହିବି ।
ଆଘ୍ରାଣି ମୁଁ ପୁଷ୍ପିତ ବୃକ୍ଷ ଲତା ଗନ୍ଧ
ଲଭଇବ ତୃପ୍ତି ମୋ ମନୋଭୃଙ୍ଗ ଅନ୍ଧ ।
କାହାର ଅପ୍ରିୟରେ ନ ହେବ ମୋ ମତି
କରିବ ପିତୃଙ୍କୁ ମୁଁ ଜଳରେ ତୃପତି ।
ଏରୂପେ ଭୂତ ମୂର୍ତ୍ତି ଦେଇ ଥିବାଯାଏ
କରୁଥିବି ଜାଣ ଅର୍ଜୁନ ସାରସ୍ୱେ ।
ଏ ନୋହିଲେ ଗଛ ଗୋଟିଏ ଫଳଟିଏ
ଦିନେକ ଖାଇ ମୁଁ କରିବ ଶୀର୍ଣ୍ଣକାୟେ ।
ବୃକ୍ଷର ମୂଳେ ରହି ହୋଇ ଦେହ ଧୂଳି
ନ ସେବିବ ମନରେ ଭେଲେ କେହୁ ଗାଳି ।
ପ୍ରାଣୀମାନଙ୍କୁ କଷ୍ଟ ନ କହି ବଚନ
ହୃଦରୁ ହିଂସା ଦ୍ୱେଷ କରିବ ବର୍ଜନ ।
ନ ପୃଚ୍ଛି ବାଟ ବନବାସ୍ତେ ଯାଉଥିବ
ସର୍ବ ମନ ହେବ ତୁଷ୍ଟିରେ ରହିବ ।
ପାଞ୍ଚ ସାତ ଘରରୁ ଅଳ୍ପ ମାଗି ଆଣି
ତା ଖାଇ ରହିବ ମୁଁ ପିଇ ବନପାଣି ।
ଗାଇବା ମାରିବାରେ ହରଷ ବିରସ
ନୋହିବ ଧର୍ମ ଜରଣ ମୁଖରେ ପ୍ରକାଶ ।
ବାହୁ କାଟିବାର ଲୋକକୁ ଅକଲ୍ୟାଣ
ନ କରିବ ଜାଣ ହେ ସୁଭଦ୍ରାରମଣ ।
ଯେ ବୋଳିବ ମୋର ବାହୁରେ ଚନ୍ଦନକୁ
ଭଲ ଜଣ ବୋଲି ହେ ନ ବୋଲିବ ତାକୁ ।
ଏ ବୃତ୍ତି ଆଚରି ନର ସ୍ୱମାର୍ଗେ ରହି
ଦେହ ତ୍ୟଜି ମୋକ୍ଷ ଅଳକେ ଲଭିବଇ ।

—✻—

## ଯୁଧିଷ୍ଠିରଙ୍କ ପ୍ରତି ଭୀମଙ୍କ ବାକ୍ୟ

ଭୀମ ବୋଇଲେ ହେ ରାଜନ ତତ୍ତ୍ୱ ଅର୍ଥ
ନ ଜାଣି କ୍ଷମା କଥା କହୁଛ ଅନର୍ଥ ।
ରାଜପଦବୀରେ ଶ୍ରଦ୍ଧା ନ ଥିଲା ଯେବେ
କାହିଁକ କ୍ଷତ୍ର କୁଳ ମରାଇଲ ତେବେ ।
ତୁମ୍ଭ ବଳା ଷଣ୍ଢ ପୃକୁଳେ ଜାତ ହୋଇ
ଏ ରୂପେ କହୁଚ ମହୀରେ ଲୋକ ନାହିଁ ।
ତୁମ୍ଭର ଏ ବୁଦ୍ଧି ଯେବେ ଜାଣିଥାନ୍ତୁ
ଶତ୍ରୁଙ୍କ କ୍ଷମା ଆମ୍ଭେ ଶସ୍ତ୍ରରେ ମାରନ୍ତୁ ।
ତୁମ୍ଭ ସକାଶୁ ଯେ ଦାରୁଣ କର୍ମଜାସ୍ତ
ହୋଇଲୁ ଆମ୍ଭେ ମହୀ ମଧ୍ୟେ ଦଣ୍ଡଧାସ୍ତ ।
ପ୍ରାଣ ରଖିବାକୁ ଆଚରି ଭିକ୍ଷାବୃତ୍ତି
ଅଳ୍ପ ମଣିବାଯାଏ ରହି ନରପତି ।
ସ୍ଥାବର ଜଙ୍ଗମରେ ପୃଥ୍ୱୀ ଧରା ଜାଣ
ସାର୍ଥ୍ୟା ବୋଲି କହନ୍ତି ଜ୍ଞାନୀଗଣ ।
ରାଜାକୁ ଯେଉଁମାନେ ହୋନ୍ତି ପ୍ରତିକୂଳ
କରନ୍ତି ରାଜା ତାଙ୍କ ବଂଶକୁ ନିର୍ମୂଳ ।
କୁରୁ ତୁମ୍ଭ ରାଜ୍ୟ ନେବାରୁ ତୁମ୍ଭେ ତାଙ୍କୁ
ମାରିଲ ଏବେ କ୍ଷମା କରୁଛ ଶତ୍ରୁଙ୍କୁ ।

କୂପ ଖୋଳି ଶେଷେ ନୋହି ନ ପାଇ ଜଳ
କାଳିଆ ହେଲ ପରି ହେଲ ଆସ୍ଥ ଫଳ ।
ତ୍ରିଶି ଏହେ କାମୁକ ବର୍ଜିଣ ସୁଜନ୍ତି
ନ କଲା ପ୍ରାୟେ ହେଲ ଆସି ଆସ୍ଥ ସନ୍ତି ।
ତୁମ୍ଭଙ୍କୁ ଜ୍ୟେଷ୍ଠ ବୋଲି ହେଲୁ ଅନୁଗତ
ଅଗର୍ଜନ୍ତୁ ଏ ନନ୍ଦା-ବଚନକୁ ଜଗତ ।
ବନୀସ୍ଥାର ହୋଇ ବା କ କରିବୁ ଆମ୍ଭେ
ହୋଇଯାଇଛୁ ନପୁଂସକ ପ୍ରଭୁ ତୁମ୍ଭେ ।
ଜରା ବା ଶତ୍ରୁ ଭୟ ହେଲେ ଉପସ୍ଥିତ
ସନ୍ନ୍ୟାସ କରିବା ଅଟଇ ଧର୍ମସମ୍ମତ ।
ଆନନ୍ଦକାଳେ ନେଇ ଅସ୍ତ୍ର ହାତ କରି
ତୁମ୍ଭ ଏଦା ବୋଲିବେ କେ ହେ ବନସ୍ଥ ।
ପୁତ୍ର ନାତି ଭୃତ୍ୟଙ୍କୁ ପୋଷି ଯେ ନ ଖାରେ
ସେ ଏକା ସିନା ଯାଇ ବନେ ବାସ କରେ ।
ବନରେ ଯେ ବସନ୍ତି ମୃଗ ପକ୍ଷୀ ଜନ୍ତୁ
କହ ମଲେ ସ୍ୱର୍ଗ କି ସେମାନେ ପାଆନ୍ତୁ ।
ଏଣୁ ତ ତୁମ୍ଭେ ଛାଡ଼ିଛନ୍ତି ସବୁ କର୍ମ
ତାଙ୍କର ହେଉଅଛୁ କି ସନ୍ନ୍ୟାସ ଧର୍ମ ।
କର୍ମ ଏଣ ଜଗତେ ସିଦ୍ଧି ହେବା ପାଇଁ
ଚିତା ପରି ମୋତେ ତ କଥା ବୁଝନାହିଁ ।

—*—

## ଯୁଧିଷ୍ଠିରଙ୍କ ପ୍ରତି ଅର୍ଜ୍ଜୁନଙ୍କ ବାକ୍ୟ

ଅର୍ଜ୍ଜୁନ ବୋଇଲେ କର୍ମ ବିଷୟରେ
ଶୁଣ ପୁରାତନ ଚରିତ ସ୍ଥିରେ ଧୀରେ ।
ଦ୍ୱିଜମାନେ ବନକୁ ଯାଆନ୍ତେ ତପ କରି
ଦେଖିଲେ ଇନ୍ଦ୍ର ତାଙ୍କୁ ପକ୍ଷୀରୂପ ଧରି ।
ଏରେ ଥାଇ ଦେବ ପିତୃଙ୍କୁ ଦେଇ ଅନ୍ନ
ଯେ ଭୋଜନ କରୁଛି ଧନ୍ୟ ତା ଜୀବନ ।
ସେ ଋଷିମାନେ ତାହା ଶୁଣିଣ ହସିଲେ
ପକ୍ଷୀ ଶିକ୍ଷା ଦେଉଛି ବୋଲିଣ ଭାଷିଲେ ।
ବୋଇଲେ ପୁଣି ସର୍ବେ ପକ୍ଷୀଙ୍କ ଅନାଇ
ବନବାସ ଧର୍ମରୁ ବଡ଼ ଧର୍ମ ନାହିଁ ।
ବୋଇଲେ ପକ୍ଷୀ ତୁମ୍ଭେ ନ କଲେ ଆଶଙ୍କା
କହିବ ମୁଁ ଯଥାର୍ଥ ଧର୍ମ ଗୂଢ଼ କଥା ।
ଦ୍ୱିଜମାନେ ବୋଇଲେ ଶୁଣିବୁ ହେ କହ
ତହିଁ ପକ୍ଷୀ କହିଲେ ପ୍ରକାଶି ଆଗ୍ରହ ।
ଚଉଷ୍ପଦରେ ଗାଈ, ଦ୍ୱିପଦେ ବ୍ରାହ୍ମଣ
ଧାତୁଜରେ କାଞ୍ଚନ ଶ୍ରେଷ୍ଠ ଅଟେ ଜାଣ ।
ଶବଦ ଯାକରେ ମନ୍ତ୍ର ଅଟେ ସାର
ଯୋ ଜନ୍ମବାରୁ ଦ୍ୱିଜମାନେ ମନେ କର ।
ମନ୍ତ୍ରରୁ ବଡ଼ ହୋଇ ବ୍ରାହ୍ମଣରେ କଥା
ଥିବା ପରି କହୁନାହିଁଟି କେଣେ ପୋଥା ।
ଦ୍ୱିଜମାନେ ଯେ ଉକ୍ତ କର୍ମମାନ କରି
ଭୋଗ କରୁଅଛନ୍ତି ବସି ସ୍ୱର୍ଗପୁରୀ ।
ସିଦ୍ଧଲୋକ ଯେ ତିନ ପ୍ରକାର ଜଗତେ
କହୁଥାଇଁ ତା ଶୁଣ ଆହୋ ଦ୍ୱିଜସୁତେ ।
ଉତ୍ତରାୟଣ ମାଘ ଆଷାଢ଼ର ଯାଏ
ଯେ ମରେ ଶୁକ୍ଳପକ୍ଷେ ସ୍ୱର୍ଗଲୋକ ପାଏ ।
ଶ୍ରାବଣ ପୌଷଯାଏ ଦକ୍ଷିଣାୟନରେ
ମରିଲେ କୃଷ୍ଣ ପକ୍ଷେ ଚନ୍ଦ୍ରଲୋକେ ଚଳେ ।
ଅବିମୁକ୍ତମାନଙ୍କୁ ଅନ୍ତେ ମହେଶ
ତାରକ ବ୍ରହ୍ମମନ୍ତ୍ର ଦିଅନ୍ତି ଉପଦେଶ ।
ତାଙ୍କର ଏଥି ହୁଏ ବ୍ରହ୍ମଲୋକ ପ୍ରାପ୍ତି
ଏହି ପ୍ରକାରେ ଜାଣ ତ୍ରିବିଧ ଯେ ମୁକ୍ତି ।
ଶୁକ୍ଳପକ୍ଷ ଅଟଇ ଜାଣ ଆଲୋକିତ
କୃଷ୍ଣପକ୍ଷଟି ଘୋର ଅନ୍ଧକାରବୃତ ।
ଶୁକ୍ଳପକ୍ଷଗାମୀର ଜନ୍ମମୁକ୍ତ ହୁଏ
କୃଷ୍ଣପକ୍ଷଗାମୀ ପୁନରାବୃତ୍ତି ପାଏ ।
ଅନାବୃତ୍ତି ମୁକ୍ତ ତାରକ ବ୍ରହ୍ମମନ୍ତ୍ର
ଲଭିବା ଜନମାନେ ହୁଅନ୍ତି ପ୍ରାପତ ।
ଏ ଦେବ ପିତୃଲୋକ ପୁଣି ବ୍ରହ୍ମଲୋକ
କର୍ମ ବିନା ଲଭି ତା ନ ପାରଇ ଲୋକ ।
ଗୃହସ୍ଥ ଶ୍ରମ କର୍ମ ଯେଣଟି ପବିତ୍ର
ସିଦ୍ଧକ୍ଷେତ୍ର ଆଦର ଅଟଇ ମହତ ।
କର୍ମ ବିନା କରି ଯେ କୁମାର୍ଗକୁ ଯାଏ
ରହନ୍ତି ତା ନରକରେ ପାତକ ସବୁଏଁ ।
ଗୃହସ୍ଥାଶ୍ରମ କରି କର୍ମ ଯେ କରଇ
ତାହାଙ୍କ ଭଳି ଆଉ ତପୀ ଭାବି ନାହିଁ ।
ସାୟଂ ପ୍ରାତଃକାଳେ ଅନ୍ନର ବିଭାଗ
କରି ସେ ଲୋକମାନେ କରୁଛନ୍ତି ଭୋଗ ।
ସେହିମାନଙ୍କୁ ବିଘସାଶୀ ବୋଲି କହ
ଆହେ ଦ୍ୱିଜମାନେ ଏଥି ସନ୍ଦେହ ନାହିଁ ।

ଏମନ୍ତ ଉପଦେଶ ପକ୍ଷୀଠାରୁ ଶୁଣି
ସନ୍ନ୍ୟାସ ଧର୍ମ ତେଜିଲେ ସେ ଦ୍ୱିଜଶ୍ରେଣୀ ।
ଏହିରୂପେ ଅର୍ଜୁନ ଯୁଧିଷ୍ଠିର ଆଗେ
ପ୍ରକାଶିଣ ବଚନ କହିଲେ ଉଦ୍‌ବେଗେ ।

—*—

## ଯୁଧିଷ୍ଠିରଙ୍କ ପ୍ରତି ନକୁଳଙ୍କ ବାକ୍ୟ

ନକୁଳ ବୋଇଲେ ଶୁଣ ହେ ଯୁଧିଷ୍ଠିର
ବିଶାଖ ଯୂପକ୍ଷେତ୍ରେ ଅଗ୍ନିଙ୍କ ଯେ ସୁର ।
ରଚିଥିଲେ ଯଷ୍ଟି ନିର୍ମିତ ପାଇଁ
ଏଣୁ ଜାଣୁଅଛୁ ମୁଁ କର୍ମ ବଡ ନାହିଁ ।
ବେଦୋକ୍ତ କର୍ମ ଶୁଣ ପାଣ୍ଡୁଙ୍କର ସୁତ
ସ୍ୱର୍ଗକୁ ତ ଯିବାକୁ ଅନ୍ୟ ନାହିଁ ବାଟ ।
ଧର୍ମପ୍ରାପ୍ତି ଦ୍ରବ୍ୟରେ କର୍ମ ଯେ କରଇ
ସାତ୍ତ୍ୱିକ ତ୍ୟାଗୀ ବୋଲି ତାହା ଶ୍ରୁତି କହି ।
ସନ୍ନ୍ୟାସୀ ଯେ ଛାଡ଼ି ଗୃହସ୍ଥାଶ୍ରମ ସୁଖ
କାମତ୍ୟାଗୀ ସେ ବୋଲାଏ ନରଶିଖ ।
ଯେ ଯୋଗୀ ଗୃହତ୍ୟାଗୀ ମନୁଷ୍ୟ ଭିକ୍ଷାଶୀ
ତାହାକୁଟି ବୋଲନ୍ତି ଭିକ୍ଷୁକ ସନ୍ନ୍ୟାସୀ ।
କ୍ରୋଧ ଦର୍ପ ଛାଡ଼ି ଯେ ବେଦକୁ ପଢଇ
ତାକୁ ମଧ୍ୟ ଭିକ୍ଷୁକ ସନ୍ନ୍ୟାସୀଟି କହି ।
ଗୃହସ୍ଥାଶ୍ରମ ବଡ ସବୁ ଆଶ୍ରମରେ
ତୁଳନା ହୋଇଛୁ ଏ ସବୁ ଋଷିଙ୍କରେ ।
ଅନୁମାନ କୃତ ଅଟଇ ଯେଉଁ କର୍ମ
ବିସ୍ତରିଲେ ବର୍ତ୍ତିବେ ନାହିଁ କିଛି ଧର୍ମ ।
ନିଷ୍କାମ ଭାବେ କର୍ମ କଲେ ମହାଫଳ
ହୁଅଇ ଜାଣ ଏବେ ଆହେ ମହୀପାଳ ।
ଶମ ଦମ ସତ୍ୟ ଆଦି ଯେ ଯଜ୍ଞ କର୍ମ
ଋଷିମାନଙ୍କର ତା ପ୍ରବର୍ତ୍ତିତ ଧର୍ମ ।
ଗୃହସ୍ଥାଶ୍ରମ ଧର୍ମ ଅର୍ଥ କାମ ଅଛୁ
ତାହା ବ୍ୟର୍ଥ କରି ନ ହେବ ଧର୍ମବନ୍ଧି ।
ପ୍ରଜାଙ୍କୁ ଯାଗରେ ପାଇବାକୁ ପୂଜା
ପ୍ରଜାଙ୍କୁ ସରଜନା କଲେ ଜାଣ ରଜା ।
ଗୃହସ୍ଥାଶ୍ରମଙ୍କର ଯାଗ କର୍ମ ସାର
ବୋଲି କହିଅଛୁ ଏଥେ ବେଦ ନିରନ୍ତର ।
ଯାଗ ଯେ ନକରେ ଗୃହସ୍ଥାଶ୍ରମ ପାଇ
ମୃତର କାଳ ପାପ ଭୋଗ କରେ ସେହି ।
ଯାଗ କଲ ଲୋକଙ୍କୁ ହେବେ ସୁଖ ପାଇ
ଦେଖିବା କେବେ ବୋଲି ବସିଥାନ୍ତି ଧ୍ୟାୟି ।
ଏବେ ତୁମ୍ଭେ ରାଜସୂୟାଦି ଯାଗ କରି
ହସ୍ତିନା ମହୀପାଳ ହୁଅ ତ ସୁନ୍ଦର ।
ରାଜାଙ୍କ ଅଜ୍ଞାନରୁ ହେଲେ ପ୍ରଜାପୀଡ଼ା
ଜାତ ହୁଏ ରାଜାର ସେହି ହେବ ବ୍ରୀଡ଼ା ।
ଆମ୍ଭେ ଯେବେ ପ୍ରଜାଙ୍କୁ ନ ପାଳିବା ସତ୍ୟେ
ନିନ୍ଦା କରିବେ ନିଷ୍ଠେ ଶୁଣିଲେ ସର୍ବେ ।
ନ କରି ଯାଗ ଯେବେ ତୁମ୍ଭେ ଛାଡ଼ି ଘର
ସର୍ବଧର୍ମ ନାଶ ହେବ ନିଶ୍ଚେ ତୁମ୍ଭର ।
ଗୃହସ୍ଥାଶ୍ରମେ ଥାଇ ବନ୍ଧୁ ଯେ ଛାଡ଼ଇ
ତାର ବିନାଶ ତୁମ୍ଭେ କହିବାକୁ ନାହିଁ ।
ଯାଗ କରି ଧନାଦି ଦ୍ୱିଜେ ଦାନ କର
ଅନାୟାସେ ସ୍ୱର୍ଗ ଲଭିବ ନରବର ।

—*—

## ଯୁଧିଷ୍ଠିରଙ୍କପ୍ରତି ସହଦେବଙ୍କବାକ୍ୟ

ସହଦେବ ବୋଇଲେ ବାହ୍ୟଦ୍ରବ୍ୟ ତେଜି
ଗଲେ କି କେହି ସିଦ୍ଧି ପାରଇ ଅରଜି ।
ବାହ୍ୟ ଦ୍ରବ୍ୟ ଛାଡ଼ି ନସେବଣ ଧର୍ମ ସୁଖ
ଶତ୍ରୁଙ୍କର ହେଇ ତା ନୃପକୁଳ ଶିଖ ।
ମମତା ଯେହୁ ସବୁ କଥାରେ କରଇ
ମୃତ୍ୟୁ ତାହାର ଜାଣ ଅବଶ୍ୟ ହୁଅଇ ।
ମମତା ନ କରିବା ଲୋକଙ୍କ ମୁକତି
ଖ୍ୟାତ ହୋଇଛୁ ଜାଣ ରାଜନ ଏ କ୍ଷିତି ।
ପୂର୍ବେ ଲୋକେ ଯେ ପନ୍ଥା କରିଯାଇଛନ୍ତି
ତହିଁକି ଯୁକ୍ତି ଏବେ ଲୋକଟି ଚଳନ୍ତି ।
ପୃଥ୍ୱୀ ପାଇ ଯେ ରାଜା ଭୋଗ ନ କରଇ
ତାହା ଜୀବନୁ ଏକା କିଛି କାର୍ଯ୍ୟ ନାହିଁ ।
ବନେ ରହି ଦ୍ରବ୍ୟରେ କରେ ଯେ ମମତା
ବୃଥା ଅଟେ ରାଜନ ତାର ସେହି ଚିନ୍ତା ।
ଆପଣ ତ ଆମ୍ଭର ମାତା ପିତା ଗୁରୁ
କ୍ଷମ ଦୋଷ ହୋଇଥିଲେ ମୋ କହିବାରୁ ।

—*—

## ଯୁଧିଷ୍ଠିରଙ୍କପ୍ରତି ଦ୍ରୌପଦୀଙ୍କ ବାକ୍ୟ

ଏଥୁଅନ୍ତେ ଦ୍ରୌପଦୀ ଯୁଧିଷ୍ଠିର ମୁଖ
ଅନାଇଣ କହିଲେ ହୋଇଣ ବିମୁଖ ।

ଦେଖ ତୁମ୍ଭ ଭାଇଏ କେତେ କଷ୍ଟ କଷ୍ଟ
ଭୁଞ୍ଜିଲେଣି ହାଲିଆ ହୋଇ ଦେଶ ଛାଡ଼ି ।
ବହୁତ ଦୁଃଖ ପାଇ ତୁମ୍ଭଙ୍କୁ ରାଜନ
ସେବା କଲେ ବନେ ଏ ନୋହିଣ ଉନ୍ମନ ।
ଏହାଙ୍କୁ ଏବେ ସୁଖ ଦେବାର ଉଚିତ
ବୃଥା ପିଡ଼ା ତୁମ୍ଭ ଦେଉଛ ଦୁଃଖ ଚିତ୍ତ ।
ବନବାସରେ ତୁମ୍ଭେ କହିଛ ଭାଇଙ୍କି
ମାରି ସମରେ ଧୃତରାଷ୍ଟ୍ର ପୁତ୍ରଙ୍କି ।
ଅକଣ୍ଟକ ରାଜ୍ୟ କରିବା ମଣ୍ଡଳେଶ୍ୱର
ଛଡ଼ାଇବା ଯାଗରେ ସବୁ ପାପ ଭାର ।
ଅସମର୍ଥ ହା ଯେବେ ରାଜନ ତୁମ୍ଭର
ଶ୍ରେୟକରି ନ ପାରେ ମନ୍ତ୍ରୀ ଧନ ଦୁଇ ।
ଏ ବାହାରେ ପୁତ୍ର ବୁଦ୍ଧି ନ ରହେ ଘରେ
ସେ ପରକାଳେ ମାତ୍ର ନର୍କ ପଙ୍କରେ ।
ରାଜା ହୋଇ ଯେବେ ସେ ଦଣ୍ଡ ନ ଧରଇ
ସମ୍ପତ୍ତି ତାର ଜାଣ କେବେ ନ ରହଇ ।
ପ୍ରଜାଏ ମଧ୍ୟ ତାକୁ ସୁଖ ନ ପାଆନ୍ତି
ନ ବୁଝିବା ଦୋଷ ଯେହ୍ନ ଜଳ ନ ଗଡ଼ ।
ସବୁ ପ୍ରାଣୀଠାରେ ମିତ୍ରତା ଅଧ୍ୟୟନ
ଦାନ ତପସ୍ୟାଟି ବ୍ରାହ୍ମଣ ଧର୍ମ ଜାଣ ।
ଦୁଷ୍ଟ ଲୋକଙ୍କୁ ମାରି ପାଳିବ ସାଧୁଙ୍କୁ
ଏ ଧର୍ମ ଲେଖିଅଛି ରାଜନ ରାଜାଙ୍କୁ ।
କ୍ଷମା କ୍ରୋଧ ଦାନ ଆଦାନ ଭୟାଭୟ
ନିଗ୍ରହ ଅନୁଗ୍ରହ ଯା ହୃଦେ ଉଦୟ ।
ଦେଉଥାଏ ଦେବାଠାରେ ଜାଣ ଭୂପତି
ତାକୁ ଧାମ କ ବୋଲି ସକଳେ କହନ୍ତି ।
ନାନା ଜନପଦ ସଂଯୁକ୍ତ ଜମ୍ବୁଦ୍ୱୀପ
ଗୋଟିଏ ଦଣ୍ଡିଅଛି ତୁମ୍ଭର ପ୍ରତାପ ।
ଏହା ବାହାରେ କ୍ରୌଞ୍ଚ ଶାକ ଯେ ଇତ୍ୟାଦି
ଜନଙ୍କୁ ତ ତୁମ୍ଭେ ବ କରିଅଛ ବଶ ।
ଏରୂପେ କର୍ମମାନ କଲାଠାରେ ମଜ୍ଜା
ସୁଖେ କମ୍ପା ନ କର ପାଣ୍ଡୁକୁଳ ରାଜା ।
ପୂର୍ବେ ତ ଶାସ୍ତ୍ର କହିଥିଲେ ଯୁଧିଷ୍ଠିର
ସାଉସନ୍ତ ପୃଥ୍ୱୀରେ ହେବେ ନରବର ।
ତୁମ୍ଭେ ତାଙ୍କର ପୁଣି ପାଞ୍ଚ ମହାବୀର
ହୋଇ ସୁଖେ ଭୁଞ୍ଜିବେ ଜାଣ ଜନ୍ମଥାଇଁ ।

ଏବେ ସେ କଥା ଆପ ହେଉଅଛି ବୃଥା
ନ କହନ୍ତି କେବେ ମିଥ୍ୟାବଚନ ପୃଥ୍ୱୀ ।
ଭାଇମାନେ ତୁମ୍ଭର ନୋହିଥିଲେ ଦାଇ
ପ୍ରଣ୍ଡ ହେଲେ ତୁମ୍ଭଙ୍କୁ ଭୋଗିବେଟି ମନ୍ତ୍ରୀ ।
ରାଜା ଯେବେ ଉନ୍ମତ୍ତ ଦଶାକୁ ଲଭିବ
ମୋହନ ଔଷଧରେ ତାହାକୁ ରକ୍ଷିବ ।
ପୃଥ୍ୱୀମାନଙ୍କେ ମୂର୍ତ୍ତି ମ୍ଳାନ ହୋଇଅଛି
ତୁମ୍ଭେ ନଲେ ଜୀବନ ଦେବଇଁ ମୁଚ୍ଛି ।
ମାନ୍ଧାତା ଅମ୍ବରୀଷ ପଶ୍ଚାତ୍ ରାଜନ
ପାଳ ସୁଖେ ବସି ଏ ହସ୍ତିନାର ଜନ ।
ଯାଗ ହୋମ କରି ବ୍ରାହ୍ମଣେ ଦେଇ ଧନ
ମନ୍ତ୍ରୀ ଭୁଞ୍ଜି ଭଜନ ଅର୍ଜ ସୁଖସ୍ଥାନ ।

—❋—

## ଯୁଧିଷ୍ଠିରଙ୍କ ପ୍ରତି ଅର୍ଜୁନଙ୍କ ବାକ୍ୟ

ଅର୍ଜୁନ ବୋଇଲେ ରାଜନ ଯୁଧିଷ୍ଠିର
ଶାସନ ପାଳନଟି ଦଣ୍ଡେ ପ୍ରଜାଙ୍କର ।
ଶୋଭଣ ଥିଲେ ଲୋକ ଦଣ୍ଡ ହେତୁ ଥାଏ
ଧର୍ମ ବୋଲି ଦଣ୍ଡକୁ କହନ୍ତି ସର୍ବେ ।
ଧର୍ମ ଅର୍ଥ କାମକୁ ରକ୍ଷିଅଛି ଦଣ୍ଡ
ଏ ସର୍ବାଙ୍ଗ ଅନ୍ୟାୟ ନୁହେ ଏ ବ୍ରହ୍ମାଣ୍ଡ ।
ଧନ ଧାନ୍ୟ ଦୁର୍ବଳଙ୍କ ଦଣ୍ଡ ରଖିଅଛି
ନ ଥିଲେ ଦଣ୍ଡ କଥା ନ ରହନ୍ତା କିଛି ।
ରାଜ-ଯମ-ଦଣ୍ଡ ଯେ ପରଲୋକ ଭୟ
ସର୍ବାଙ୍କୁ ନ କରନ୍ତି ପାପ ଜନଚୟ ।
ଦଣ୍ଡଭୟ ହୃଦୟରେ କରିବାରୁ ବସା
ପରସ୍ପର ପ୍ରାଣୀଏ ଛାଡ଼ନ୍ତିଟି ହିଂସା ।
ଦଣ୍ଡ ଯେବେ ସଂସାରେ ନ ଥାନ୍ତାଟି ରାଜ୍ୟେ
ନର୍କରେ ଯାଇ ବୁଡ଼ି ମରନ୍ତେ ସର୍ବେ ।
ଅଶାନ୍ତକୁ ଶାନ୍ତ ଯେ ଅସନ୍ତକୁ ସନ୍ତ
କରୁଥିବାରୁ ଦଣ୍ଡ ବୋଲନ୍ତି ଜଗତ ।
ବ୍ରାହ୍ମଣଙ୍କୁ ବଚନେ କ୍ଷତ୍ରିୟ ଯୁଦ୍ଧରେ
ବୈଶ୍ୟଙ୍କୁ ଧନ ଦାନେ ଶୂଦ୍ରଙ୍କୁ ସେବାରେ ।
ଦଣ୍ଡ ଦେବ ହେ ଜାଣି ନ ବୁଝି ରାଜନ
ଅଧର୍ମ ନାହିଁ ଏହା ବକ୍ଷୁଛି ବିଧାନ ।
ଲୋକରକ୍ଷାରେ ସାବଧାନ ହେବାପାଇଁ
ଦଣ୍ଡଟି ପ୍ରତିଷ୍ଠିତ ହୋଇଅଛି ମହୀ ।

ଦୁର୍ବଳରେ ଲୋକର ମୋହ ହେଲେ ତୁଷ୍ଟ
ତାହା ନାଶ ପାଇଁକି ରହିଅଛି ଦଣ୍ଡ ।
ଦଣ୍ଡର ସ୍ୱରୂପ ଅଟଇ ଶ୍ୟାମ କଳ
ଆଖି ରଙ୍ଗ ଦୁଇ ଯେମନ୍ତ ରକ୍ତ ବୋଳ ।
ବ୍ରହ୍ମଚାରୀ ଗୃହୀ ବା ଭିକ୍ଷୁ ବାନପ୍ରସ୍ଥ
ଦଣ୍ଡ ଭୟେ ରହଅନ୍ତ ହୋଇ ସୁସ୍ଥ ।
ଭୟ ଯେବେ ଉପୁଜିତ ନୋହନ୍ତା ମନରେ
ଧର୍ମ କରି ନ ପାରେ ଲୋକ ଏ ମହୀରେ ।
ଦାରୁଣ କର୍ମ ଯେବେ ନ କରଇ ରାଜା
ଯୁଧିଷ୍ଠିର ସେ ନ ପାଏ କେବେହେଁ ପୂଜା ।
ନ ମାରିଲେ ଶତ୍ରୁକୁ ଧର୍ମ ଜାଣି ମନ୍ତ୍ରୀ
ବଶ ତ କରି ରାଜା ରଖି ନ ପାରଇ ।
ବୃତ୍ରାସୁର ପ୍ରାଣକୁ ନେଇ ସୁରଗଣ
ମହେନ୍ଦ୍ର ହୋଇଲେ ଯୁଧିଷ୍ଠିର ଜାଣ ।
ସେହିଁ ଦେବତାଙ୍କି ଲୋକଙ୍କୁ ଖାଇ ଭଏ
ତାହାଙ୍କୁଟି ପୂଜା ତ କରନ୍ତି ସର୍ବେ ।
ଶଙ୍କର ଇନ୍ଦ୍ର ସ୍କନ୍ଦ କୁବେର ବରୁଣ
ଅନଳ ଯମ କାଳ ମରୁତ ପବନ ।
ଅଶ୍ୱିଦେବ ମୃତ୍ୟୁ ବସୁ ଦ୍ୱିଜପତି
ସମସ୍ତ ପ୍ରାଣୀଙ୍କ ଏ ସଂହାର କରନ୍ତି ।
ଏମନ୍ତ ସଭାଙ୍କୁ ଜାଣି ପାଇ ମହାଭୟ
ନତ ନମୁଅନ୍ତି ତାଙ୍କୁ ଲୋକଚୟ ।
ବ୍ରହ୍ମ ଧାତା କାହାକୁ ଦଣ୍ଡ ନ ଦେବାରୁ
ଅଲଗା ହୋଇଲେ ସେ ଲୋକଙ୍କ ପୂଜାରୁ ।
ଏ ଲୋକରେ ହିଂସା କାହେ ନ କରି ଜନ
ଥିବା ପଶୁ ତ ମୋହର ପାଇନାହିଁ ମନ ।
ନକୁଳ ମୂଷାକୁ ବଧଇ ନକୁଳକୁ
କୁକୁର ବଧଇ କ ବାଘ କୁକୁରକୁ
ମରୁଅଛନ୍ତି ଭାଇଟି ଏହାଙ୍କୁ ମାରୁଛି
ଏ କଥା ତ ଆପଣ ଦେଖିବା ହେଉଛି ।
ସ୍ଥାବର ଜଙ୍ଗମରେ ଅଛନ୍ତି ଯେତେକ
ସେସବୁ ଜୀବନର ଭକ୍ଷ୍ୟ ସେ ପୋଷକ ।
ସେହିଁ ନରପତି ଅଟଇ ମୂଢ଼ମତି
କ୍ରୋଧ ଦରଶକୁ ସେ ଛାଡ଼ି ଦିଏ ଯତି ।
ହିଂସା ନ କଲେଟି କବାଟ ତପୋବ୍ରତ
ବେଦପାଠା କବାହେ ନୁହନ୍ତି ସମର୍ଥ ।

ଭୂତଳେ ଜଳେ ଫଳେ ଯେତେ ଜୀବଗଣ
ଅଛନ୍ତି ତାହା ସଙ୍ଗେ ନେଇ ତାଙ୍କ ପ୍ରାଣ ।
ଦ୍ୱିଜେ ଜୀବହିଂସାରେ କରିଣ ଯାଗକୁ
ଦେଖି ଯାଇଁ ପାଇ ତ ଅନନ୍ତ ସ୍ୱର୍ଗକୁ ।
ପୂର୍ବେ ମୁନିମାନେ ହୋମ କରୁଥିଲେ
ଭଲ ହୋଇ ଅଗ୍ନି ଦେବତା ନ ଜଳିଲେ ।
ପୂଜ୍ୟର ଦଣ୍ଡକୁ ପ୍ରଦକ୍ଷିଣି ସେହି
କରନ୍ତି ଅଗ୍ନିରେ ଶିଖାକୁ ଦେଖାଇ ।
ଏହା ଜାଣି ପିତା ମୁଁ କହୁଛି ତୁମ୍ଭଙ୍କୁ
ଦଣ୍ଡ ଧନା ନ ଆସନ୍ତ ନେଇ କଳିକୁ ।
ଦଣ୍ଡ ଧନା ଲୋକରେ ହୋଇଥିବ ବଶ
କେ ଅଛି ଭଳି ନାହିଁ ଆଜଯାଏ ଦୃଶ୍ୟ ।
ଦଣ୍ଡ ପାଇବାରୁଟି ବାଘ ଭାଲୁ ହରି
ବନରେ ରହନ୍ତି ଗ୍ରାମ ଅପସରି ।
ଦଣ୍ଡ ହୋଇ କଥା ନ ଥିଲେ ଦ୍ୱିଜମାନେ
ବ୍ରତ ହୋଇ ବେଦ କି ପଢ଼ନ୍ତେ ଯତନେ ।
କନ୍ୟା ନର ହୋଇ ଥାଆନ୍ତା କମା କଥା
ପ୍ରବର୍ତ୍ତନେ ଜନେ କରିଣ ଅବ୍ୟବସ୍ଥା ।
ଦଣ୍ଡଭୟ ସବାଙ୍କୁ ଗଧ ଉଟ ଘୋଡ଼ା
ଭାର ବହୁଅଛନ୍ତି ନ ହେଲ ତଳେ ଗଡ଼ା ।
ଦଣ୍ଡଭାବେ ରାଜା ନୃପନ୍ତା ଆଜ୍ଞାଭୂର
ବିଷ୍ଣୁର କର ମନେ ନୃପ ଯୁଧିଷ୍ଠିର ।
ଦଣ୍ଡ ଥିବାଠାରେ କପଟ ପାପ ଦୂର
ଦୁଷ୍ଟ ପାଇଥାଏ ପାଣ୍ଡବ ନରବୀର ।
ନ ଥିଲେ ଦଣ୍ଡ କାକ ଶ୍ୱାନ ହବିର୍ଭାଗ
ମାଡ଼ି ବସିଣ ନଷ୍ଟେ ପିଇଥାନ୍ତେ ଆଗ ।
ଅଧର୍ମେ ବା ଧର୍ମେ ଯାଇଛି ରାଜ୍ୟ ତୁମ୍ଭ
ଶୋକ ଛାଡ଼ି ତା ପାଇ କହୁଅଛୁ ଆମ୍ଭେ ।
ଶ୍ରୀମନ୍ତ ଲୋକ ଧର୍ମ ଦେଇଟି ଧର୍ମକୁ
ଅରଜ ଟି ନାଶ କରିଣ ପାତକକୁ ।
ସର୍ବକାର୍ଯ୍ୟସାଧକ ଅଟଇ ଯେ ଅର୍ଥ
ସେହି ଅର୍ଥଟି ଜାଣ ଦଣ୍ଡର ଆୟତ୍ତ ।
ଦୁର୍ଜନକୁ ପ୍ରବଳ କଦଣ୍ଡ ରଖିଲେ
ସେ ହିଂସାରେ ଅଧର୍ମ ନୁହଇଟି ଭଲେ ।
ପଣ୍ଡୁଙ୍କର ନାମରେ ବଳିଷ୍ଠ ଲଗାଇ
ଯଜ୍ଞିକ ଲୋକ ହିଙ୍ଗେ ତର୍କିକ ସେ ଯାଇ ।

ଆତତାୟୀ ଲୋକଙ୍କୁ ଶସ୍ତ୍ରରେ ମାରିଲେ
ଦୋଷ ତ ଲେଶେ ନାହିଁ ଶାସ୍ତ୍ରଙ୍କରେ କଲେ ।
ଆମ୍ଭାକୁ କେତେ କହିଲେ ନ ପାରିଲ ମାଣି
ବୁଝାକୁ ସିନା ଶତ୍ରୁାଙ୍କର ଦଣ୍ଡଧାରୀ ।
ଦେହ ଗଲେ ଯେ ଜୀବ ଆନ ଦେହ ଧରେ
ଅରଜିବା ପୁଣ୍ୟ ପାତକ ଭୋଗ କରେ ।

—※—

## ଯୁଧିଷ୍ଠିରଙ୍କ ପ୍ରତି ଭୀମଙ୍କ ବାକ୍ୟ

ଭୀମ ବୋଇଲେ ଆହେ ସବୁ ଧର୍ମ ଜାଣି
ନ ଜାଣିଲା ପରି କହୁଛ ସେସବୁ ବାଣୀ ।
ତୁମ୍ଭଙ୍କୁ ବୋଲିବାକୁ ନ ସ୍ଫୁରେ ବଚନ
ବୋଲୁଛି ମହାଦୁଃଖ ବଳିବାରୁ ଜାଣ ।
ତୁମ୍ଭ ଏ ବୃଥା ମୋହ ଦେଖି ଆମ୍ଭେମାନେ
ଧଇର୍ଯ୍ୟ ଧରି ପାରୁନାହୁଁ ହୃଦସ୍ଥାନେ ।
ସକଳ ଶାସ୍ତ୍ର ଜାଣି କାପୁରୁଷ ପରି
ମୋହେ ତ ଲୀନ ଏବେ ହଜିଲ ତୁମ୍ଭରି ।
ଲୋକଙ୍କର ଅଗତି ଗତି ତ ତୁମ୍ଭଙ୍କ
ଘୋଟର ଅଛୁ ଜପ ଅଛୁ କହିବାକୁ ।
ରାଜ୍ୟ ବିଷୟରେ ମୂର୍ଖ କହିବ ଯାହା
ସାବଧାନ ହୋଇ ତା ଶୁଣ ନରନାହା ।
ଶରୀର ମାନସିକ ବ୍ୟାଧି ଉପୁଜଇ
ସେ ଦୁହେଁ ଥାଆନ୍ତି ଛନ୍ଦାଛନ୍ଦ ହୋଇ ।
ଏକ ଉତ୍ପତ୍ତିରେ ଅନ୍ୟଟି ହୁଏ ଜାତ
ଏଥିରେ ସଂଶୟ ତ ନାହିଁ ନରନାଥ ।
ଶାରୀରିକ ପୀଡାରେ ମଲେ ଦୁଃଖ ହୁଏ
ମାନସିକ ପୀଡାରେ ଦେହ ଶୁଖିଯାଏ ।
ଅଳ୍ପ ପୀଡା ଶୋଚିକ ମନରେ ଭଜାଇ
ଦୁଃଖୀ ଯେ ହୁଏ ଦୁଇ ପୀଡା ଭୋଗେ ସେହି ।
ବାତ ପିତ୍ତ କଫ ଏ ତିନହେଁ ସମାନ
ଥିଲେ ସୁସ୍ଥ ଥାଏ ଏହା ଶରୀର ଜାଣ ।
ନ୍ୟୂନ ଧିକେ ଅସୁସ୍ଥ ଦେହଟି ହୁଅଇ
ଚିକିତ୍ସା ଶାସ୍ତ୍ରେ ତା ସବୁ ଅଛି କହି ।
ଉଷ୍ମଦ୍ରବ୍ୟରେ କଫ ଶୈତ୍ୟରେ ଉଷ୍ମତା
ଶାସ୍ତ୍ରରେ ଅଛି ନିବାରିତ ହେବା କଥା ।
ମାନସ ସ୍ୱାସ୍ଥ୍ୟେ ସତ୍ତ୍ୱ ରଜ ତମ ଥାଇ
ଯେବେ ବଢଇ ଗୋଟିଏ ଯୋନକୁ ନାଶଇ ।
ହର୍ଷ ହୋଇ ଶୋକର ଶୋକରେ ହର୍ଷର
ନିବୃତ୍ତି ହୁଅଇ ପାଣ୍ଡବ ଗଣେଶ୍ୱର ।
ପାଇଲେ ସୁଖ ଲୋକ ଦୁଃଖ ସ୍ମରଣା
କରୁଥାଏ ବୁଦ୍ଧି ନ କରି ତହିଁ ବଣା ।
ସୁଖକୁ ଜାଣ ସେହିରୂପେ ଦୁଃଖୀ ଲୋକ
ସ୍ମରୁଥାଏ ଆହେ ଅବସାଦାତ୍ମକ ।
ତୁମ୍ଭର ହେବେ ଦୁଃଖ ସୁଖ ସ୍ମରଣା
ହେଉନାହିଁ କମ୍ପା ରାଜନ ମହାମନା ।
ବୃତ୍ତଙ୍କ ସକାଶରୁ ପାଇଛ ଯେ ଦୁଃଖ
କହ ତ ପାଶୋରିଲ କା ଏ ନରଶିଖ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଯୁଦ୍ଧମୁଖରୁ ତରି
ମନ ଭୁଲେ ଯୁଝିକ ପ୍ରାଣେ ଯିବ ମରି ।
ଏବେ ବୁଦ୍ଧି ବଳେ ମନକୁ ଶାନ୍ତ କର
ହସ୍ତିନାରେ ବସି ହେ ନୃପ ନଇବର ।
କୃଷ୍ଣଙ୍କୁ ଘେନ ଆମ୍ଭେ ଅଛୁ ଚାରିଭାଇ
ତେବେ ତୁମ୍ଭର ଭୟ ହେଉଛି କିମ୍ପାଇ ।
ଚିନ୍ତା ତେଜି ଏବେ କର ନରବର
ସଦକ୍ଷିଣ ଅଶ୍ୱମେଧ ଯଜ୍ଞକୁ କର ।

—※—

## ଯୁଧିଷ୍ଠିରଙ୍କର ଉପଦେଶ

ଯୁଧିଷ୍ଠିର ବୋଇଲେ ଯାଉ ବଳ ମୋହ
ଘାରି ତ ଅଛି ଭୀମସେନ ତୁମ୍ଭ ଦେହ ।
ଏ ସକାଶୁଁ ରାଜ୍ୟଧନେ କର ଆକାଂକ୍ଷା
କହୁଅଛ ଯୁକ୍ତି କରି ମୋତେ କକ୍ଷା ।
ରାଜା ହୋଇଲେ କି ଉଦର ପୋଷି ହୋଇ
ଏଥିକି କେତେ ବସି ଖାଇବା ହେ ଭାଇ ।
ତୃଷାର ନିବୃତ୍ତି ମରଣ ପର୍ଯ୍ୟନ୍ତେ
ନୁହଇ କାହାର ହେ ଭୀମ ମହାମତେ ।
ଅଗ୍ନି କାଠ ପାଇଲେ ଜଳଇ ଯେମନ୍ତେ
କାମ୍ୟାସବେ ଲଭେ ଏ କଥା ସେହିମତେ ।
ଏବେ ମୋ ବୋଲ ଘେନ ତୃଷ୍ଣା ନାଶ କର
ବୃଥା ଅଟଇ ସିନା ମସ୍ତ କଷିବାର ।
ଯେଉଁମାନେ ଭୋଗ ନ କରି ତପ କରି
ମନ୍ତୁଜନ୍ତି ସ୍ୱର୍ଗଟି ହେଉଛି ତାଙ୍କର ।
ବାଘ ଯେ ବନେ ରହି ଖାଉଛି ସୁହାଏ
କହ ଭୀମ ଏଥୁ କି ସ୍ୱର୍ଗ ତା'ର ହୋଏ ।

ପୂର୍ବେ ଯେ ରାଜାମାନେ କରିଲେ ସନ୍ନ୍ୟାସ
ତାଙ୍କୁ କି ଲୋକେ କେହେକେହେଲେ ନିନ୍ଦାଦୋଷ
ପତିର ଜଳ ଖାଇ ନରକ ଭୟରେ ।
ତପ କରୁଅଛନ୍ତି ମୁନିଏ ବନରେ ।
ପଥର ସୁନା ଏକା ମଣେଁ ଯେ ରାଜା
ସ୍ୱର୍ଗପୁରେ ସିନା ସେ ଲଭେ ଶତପୂଜା ।
ଏ ମୋହର କହିବା କଥା ଘେନ ଭୀମ
ବିଷୟେ ମମତା ନ କରି ଛାଡ଼ ତମ ।
ଯେମାନେ କାମ୍ୟକର୍ମ ଛାଡ଼ି ଦେଇଛନ୍ତି ।
ଶୋକ ତାଙ୍କଠାରେ ନ ପାରେ କରି ସ୍ଥିତି ।
ପିତୃମାନେ ରାଜାଏ ଦେବଯାନେ ମୁନି
ଯାଇ ହେଉଛନ୍ତି ସ୍ୱର୍ଗ ମୋକ୍ଷସ୍ଥାନୀ ।
ଋଷିମାନେ ତପସ୍ୟାବଳେ ମରଣକୁ
ଜିଣିଣ ଲଭନ୍ତି ପରମ ପଦକୁ ।
ମୋକ୍ଷକୁ ଇଚ୍ଛା କରି ଜନକ ଯାହା କହି
ଅଛନ୍ତି ତାହା ଶୁଣ ପାଣ୍ଡବ ଭୀମ ଭାଇ ।
ଜନକ ରାଜା ଦିନେ ସଭାରେ ବସିଲେ
ଭଣ୍ଡାର ପୋଡ଼ିଗଲା ବୋଲିଣ ଶୁଣିଲେ ।
ଲୋକଙ୍କୁ ବୋଇଲେ ରେ ନ ଯାଅ ଲିଭାଇ
ମୋର ତ ଦେହ ଆଜ ପୋଡ଼ି ଯାଇ ନାହିଁ ।
ବୁଦ୍ଧି ପ୍ରସାଦରେ ଚଢ଼ଇ ଯେଉଁ ନର
ସବୁ ଦେଖୁଥାଏ ସେ ଶୋକ କରି ଦୂର ।
ବୁଦ୍ଧିମନ୍ତ ଲୋକଙ୍କ ଯେଉଁ ଜାତି ଗତି
ହୃଷଇ ସେ ରୂପରେ ନ ପାଆନ୍ତି ଯତି ।
ଏ ସକାଶୁଁ ବୁଦ୍ଧିରେ ସାଧ୍ୟ ସବୁ କଥା
ହେଉଅଛି ଜାଣ ହେ ଭୀମ ମହାରଥୀ ।

—*—

## ଅର୍ଜୁନଙ୍କର ଉତ୍ତର

ଯୁଧିଷ୍ଠିରଙ୍କ ଶୁଣି ଏସନ ଉତ୍ତର
କହିଲେ ପୁଣି ତାଙ୍କୁ ଅରଜୁନ ବୀର ।
ମିଥିଳା ନୃପତିଙ୍କ ଭାର୍ଯ୍ୟା ଭୂଲେ ଯାହା
ପଢ଼ିଥିଲା କଥା ତାହା ଶୁଣ ନରନାହା ।
ଜନକରାଜା ରାଜ୍ୟ ଛାଡ଼ି ଭିକ୍ଷୁ ବୁଦ୍ଧି
କରନ୍ତେ ଭାର୍ଯ୍ୟା ତାଙ୍କୁ କହିଲେ ପ୍ରବୋଧି ।
ଧନଧାନ୍ୟ ଯୁତ ପୁଣ୍ୟ ରାଜ୍ୟକୁ ଛାଡ଼ି
ଭିକ୍ଷୁବୁଦ୍ଧି ଟିକି ଆଣୁଛ କାହିଁ ଲୋଡ଼ି ।
ଦେବ ପିତୃ ଅତିଥିମାନଙ୍କୁ ଧନ ବିନା
କରୁପେ ତୋଷିବ ରାଜନ ମହାମନା ।
ସହସ୍ରସଂଖ୍ୟା ଦ୍ୱିଜଙ୍କୁ ଯେ ପୋଷୁଥିଲେ
ଏଥିରୁ ଭିକ୍ଷାବୃତ୍ତି ହେବକି ହେ ଭଲ ।
ଆଜ ତୁମ୍ଭ ମାତା ଭାରଯା ଏହା ରହିଁ-
ଅଛନ୍ତି ଅପୁତ୍ରୀ ବିଧବା ପରି ହୋଇ ।
କ୍ଷତ୍ରିୟେ ତୁମ୍ଭଙ୍କୁ ହେ ଅଂଶ କରିଥିଲେ ।
ତାହା କମ୍ପା ବିଫଳ କରୁଅଛ ଭଟଲ ।
ଏହିସକାଶୁଁ ତୁମ୍ଭେ ପାଳଣ ମହୀକି
ସୁଖ ଭୁଞ୍ଜ ଛାଡ଼ିଦେଇ ଭିକ୍ଷାବୃତ୍ତିକି ।
ମାଗିବା ଦେବା ଦୁଇ କଥାରେ କେ ଭଲ
ବିଚାର ହୃଦସ୍ଥଳେ ମିଳିଥିବା ଭୂପାଳ ।
ଯାଗ ଦାନେ ପ୍ରବନ୍ଧ କର ନିଜ କାର୍ଯ୍ୟେ ।
ତରନ୍ତି ନରପତିମାନେ ସେ ଉପାୟେ ।
ବିଦେହରାଣୀ କଥା ଶୁଣି ନରବର
ଆଜ ତୋତେ ଜାତ ନ ହେଲା ତାହାଙ୍କର ।
ଧନ ଥିଲେ ଧର୍ମ ଅଲଭ୍ୟ ଅରଜିବା
ସେହି ବଳରେ ଯାଇ ସ୍ୱର୍ଗରେ ବସିବା ।

—o—

## ଯୁଧିଷ୍ଠିରଙ୍କ ଉକ୍ତି

ଯୁଧିଷ୍ଠିର ବୋଇଲେ କର୍ମ କରି ଛାଡ଼ି
ବୋଲି ବେଦ କଲେ ହେବାକୁ ପ୍ରାଣୀ ଦୃଢ଼ ।
ବେଦରେ ଯେ ତତ୍ତ୍ୱ ତାହା ମୁହିଁ ଜାଣଇଁ ।
ତୁମ୍ଭଙ୍କୁ ଅର୍ଜୁନ ତ ଗୋଚର ସେ ନାହିଁ ।
ବୀରବୁଦ୍ଧିରେଟି ନିବଦ୍ଧ ଅଟ ତୁମ୍ଭେ
ଏ କଥାରେ ପ୍ରଶଂସା କରିବୁ କି ଆମ୍ଭେ ।
ଯୁଦ୍ଧଶାସ୍ତ୍ର ବ୍ୟତୀତ ତୁମ୍ଭେ ଧର୍ମଶାସ୍ତ୍ର
ସ୍ୱପନେ ଶୁଣି ନାହଁ ହେ ଅର୍ଜୁନ ଭ୍ରାତ
ଧନରୁ ବଡ଼ କିସ ନାହିଁ ବୋଲ ତୁମ୍ଭେ
ପୁଣ ଭାଇ କହିବା ତହିଁକି ଯାଅ ଆମ୍ଭେ ।
ଧନ ବିନା ଅରଜୁଛନ୍ତି ସୁରଲୋକ
ଋଷିଏ ତପ କରି ପଢ଼ି ବେଦବାକ ।
ତମରବନ୍ତ ଲୋକ ଦକ୍ଷିଣମାର୍ଗରେ
ଯାଆନ୍ତି ଯେଣୁ ସେ ଥାନ୍ତି ଅମାର୍ଗରେ ।
ଯେଉଁଲୋକ ମନ ନିଗ୍ରହ କରି କର୍ମ
ଛାଡ଼ଇ, ତାରତି ଉପୁଜେ ଜାଣ ଧର୍ମ ।

ସାଧୁଙ୍କର ମତରେ ଯାର ଅଛି ଅର୍ଥ
ତାକୁ କେବେହେଁ ଛାଡ଼ି ନ ପାରେ ଅନର୍ଥ ।
ତପରେ ଲୋକ ବ୍ରହ୍ମଦେବଙ୍କୁ ଲଭଇ
ଆଉ ଉପାୟେ ତାଙ୍କୁ ପାଇବ କେ ନାହିଁ ।

—୦—

## ଦେବସ୍ଥାନ ଋଷିଙ୍କ ଉକ୍ତି

ସେ ସମୟରେ ଆସି ଦେବସ୍ଥାନ ଋଷି
ଯୁଧିଷ୍ଠିର ରାଜେ କହିଲେ ମନ୍ଦେ ହସି ।
ଅରଜୁନ ତୁମ୍ଭଙ୍କୁ କହିଲେ ଯା ରାୟେ
ଆଚରନ୍ତି ତାହା ସବୁ ନୃପତିଏ ।
ଧର୍ମରେ ତ ମହୀକି ଜିଣିଲ ଯୁଦ୍ଧରେ
ତାହା ଏବେ ନ ଛାଡ଼ ପଡ଼ିଣ ମୋହରେ ।
ବାହୁବଳରେ ରାଜ୍ୟ ମିଳିଲା ତୁମ୍ଭଙ୍କୁ
ଛଡ଼ାଅ ପାପ ଧନ ଦେଇଣ ଦ୍ଵିଜଙ୍କୁ ।
ଯାଗ କଲେ ସବୁ କାମନା ହୁଏ ଭଲେ
ନୋହିଲେ ଶତଯାଗ ଇନ୍ଦ୍ର କିମ୍ପା କଲେ ।
ସର୍ବମେଧ ଯାଗକୁ କରି ମହାଦେବ
ହୋଇଲେ ଜଗତମଧ୍ୟରେ ଦେବ ଦେବ ।
ମରୁତ ରାଜା ଯାଗ କରି ଏ ଲୋକରେ
ବଳ ବଢ଼ାଇଲେଟି ଇନ୍ଦ୍ରଙ୍କୁ ସମ୍ପତ୍ତିରେ ।
ମରୁତ ରାଜାଙ୍କର ଯାଗେ ଲକ୍ଷ୍ମୀ ରହି
ଥିଲେ ବୋଲି ଏହା କର୍ଣ୍ଣରେ ଶୁଣିଥାଇ ।
ହରିଶ୍ଚନ୍ଦ୍ର ରାଜା ମରୁତଙ୍କ ପରି
ଯାଗ କରି ଅର୍ଜିଲେ ମଧ୍ୟ ଜୟଶିରୀ ।
ଏ ବିଷୟରେ ଇନ୍ଦ୍ର ବୃହସ୍ପତିଙ୍କର
ହୋଇଥିବା ସମ୍ବାଦ ଶୁଣ ଯୁଧିଷ୍ଠିର ।
ଏକ ସମୟରେ ଇନ୍ଦ୍ରରେ ଜିଜ୍ଞାସିତ
ହୋଇଣ ବୃହସ୍ପତି କହିଲେ ଏମନ୍ତ ।
ପରମସୁଖ ସ୍ଵର୍ଗ ସନ୍ତୋଷକୁ କହି
ସନ୍ତୋଷରୁ ବଳି ଆଉ ବଡ଼ କଥା ନାହିଁ ।
କୂର୍ମ ଅଙ୍ଗ ସହାରିଲା ପରାୟେ ମନ
ସହାରିବା ଲୋକ ବ୍ରହ୍ମରେ କରେ ସ୍ଥାନ ।
ନ ଦେଇ ଭୟ କାହୁଁ ଭୟ ଯେବେ ଛାଡ଼ି
ତେବେ ଜାଣ ବ୍ରହ୍ମରେ ଲୋକ ଶତ୍ରୁ ବୁଡ଼ି ।
ଯେହୁ କାଳେ ମନେ ବା ବଚନେ କାହାକୁ ।
ନ କରଇ ଦ୍ରୋହଟି ପାଏ ସେ ବ୍ରହ୍ମକୁ ।
ସନ୍ନ୍ୟାସ ଦାନ ମୌନ ତନକ ପ୍ରଶଂସା
କରୁଥାନ୍ତି ଅନ୍ୟାନ୍ୟେ ଜନେ କରି ହିଂସା ।
କେଉଁମାନେ ବା ରାଜ୍ୟ ପ୍ରଜା ପାଳନାକୁ
ବୋଲନ୍ତି ଏଥୁ ନାହିଁ କଥା ଧରମକୁ ।
ସ୍ଵାୟମ୍ଭୁବମନୁଙ୍କ ମତରେ ମାର୍ଦ୍ଦବ
ସତ୍ୟ ଦୟା ଅଦ୍ରୋହ ଲଜ୍ଜା ଧୀରଭାବ ।
ଅସ୍ଥପଳ୍ପି ଆଦି ଗୁଣରୁ ବଡ଼ ହୋଇ
ଧର୍ମ ବୋଲିବାକୁ ଜଗତେ ଆଉ ନାହିଁ ।
ଆପଣ ଯେ ପ୍ରିୟ ଅପ୍ରିୟ ସମ କରି
ଯାଗ ଅବଶେଷେ ଯା ଭୁଞ୍ଜି ଦଣ୍ଡଧାରୀ ।
ଯେଉଁ ରାଜା ଧର୍ମରେ ପୃଥିବୀ ପାଳଇ
ପ୍ରାନ୍ତରେ ପୁତ୍ରଠାରେ ମହୀ ସମର୍ପଇ ।
ଭାଇମାନେ ତୁମ୍ଭର ବନ ମଧ୍ୟେ ରହି
ତୁମ୍ଭଙ୍କୁ ସେବୁଥିଲେ ବହୁ କ୍ଳେଶ ପାଇ ।
ଏବେ ସୁଖ ତାହାଙ୍କୁ ଦେଇ ନରବର
ତାଙ୍କ ମନୋରଥ ସଫଳ ବେଗେ କର ।
ଯଯାତି ପରି ହୋଇ ହସ୍ତିନାରେ ରାଜା
ପାଳନ କର ଏବେ ପୃଥ୍ଵୀଯାକ ପ୍ରଜା ।
ଧର୍ମ ଅର୍ଥ କାମର ବାବୁ ସେବା କର
ଆଗ ପଛେ ଯାଇ କରିବ ବନେ ଘର ।
ଅତିଥି ପିତୃ ଦେବତାଙ୍କ ଋଣ ଶୁଝି
ନିସ୍ତୃତ ପାଅ ରାୟେ ଭାଇ କଥା ବୁଝି ।
ସର୍ବମେଧ ଅଶ୍ଵମେଧ ଯାଗକୁ କରି
ମୁକତି ହେବ ଏଥି କିଛି ନ ବିସ୍ମର ।
ଦେଶ କାଳ ବୁଝି ସେ ଦସ୍ୟୁକୁ କ୍ଷମଇ
ପାତକ ତାହା ଦେହ ଛୁଇଁ ନ ପାରଇ ।
ଷଷ୍ଠଭାଗ କର ନେଇ ଯେ ପରଜାଙ୍କୁ
ପୀଡ଼ା ଦିଅନ୍ତି ସେ ପାଆନ୍ତି ନରକକୁ ।
ଶାସ୍ତ୍ରକୁ ଲଙ୍ଘି ରାଜା ବିଚରଣ କଲେ
ଧର୍ମଭ୍ରଷ୍ଟ ହୁଅନ୍ତି ଜାଣ ରାୟେ ଭଲେ ।
ଶାସ୍ତ୍ରର ଅନୁଯାୟୀ ଚଳିଲେ ରାଜନ
ନିର୍ଭୟେ କାଳ ଏକା କରନ୍ତି ହରଣ ।
କାମ କ୍ରୋଧ ତ୍ୟାଗୀ ଯେ ନିରପେକ୍ଷ ହୋଇ
ପାଳିଲେ ପ୍ରଜା ପାପ ଛୁଇଁ ନ ପାରଇ ।
ଶତ୍ରୁକୁ ଦଣ୍ଡି ରାଜ୍ୟୁଁ ପାପକୁ ନିବାରି
ପୁଣ୍ୟ ପ୍ରତିଷ୍ଠିତ କରିବ ଦଣ୍ଡଧାରୀ ।

ଧନବନ୍ତ ଲୋକଙ୍କୁ ପାଳିବ ବିଶେଷେ
ବିଦ୍ୟାବନ୍ତ ଲୋକଙ୍କୁ ପୂଜିବ ହରଷେ ।
ଶାସ୍ତ୍ର ଜାଣିବା ଲୋକମାନଙ୍କୁ ଧରମ
କଥାରେ ନିଯୁକ୍ତ କରିବ ନୃପୋତ୍ତମ ।
ଶୀର ପୁରୁଷେ କେବେ ପାଶୁଁ ନ ଛାଡ଼ିବ
ସତ୍କର୍ମଶାଳୀ ସାଧୁଜନେ ପାଳୁଥିବ ।
ବହୁଗୁଣଯୁକ୍ତ ହେଲେହେଁ କେହି ଜନ
ପୂର୍ଣ୍ଣ ବିଶ୍ୱାସ ତାକୁ ନ କରିବି ଜାଣ ।
ଦୁର୍ବିନୀତ ମାନି ଅଟନ୍ତି ଯେଉଁ ନୃପ
ତାହାଙ୍କୁ ଆସି କରି ଘୋଟଇଟି ପାପ ।
ଚାରି ଆଶ୍ରମରେ ଗୃହସ୍ଥାଶ୍ରମ ବର
ଏହା ଭଲ କରି ରାଜନ ମନେ କର ।
ସବୁ ଧର୍ମ ତୁମ୍ଭଙ୍କୁ ଗୋଚର ତ ଅଛି
ନ ଛାଡ଼ ଗୃହଧର୍ମ କୁନ୍ତୀ ଜେଂଷ୍ଠବତ୍ସି ।
ଗୃହସ୍ଥାଶ୍ରମ ଛାଡ଼ି ବାନପ୍ରସ୍ଥାଶ୍ରମ
କଲେ ନିନ୍ଦା ପାଇବ ନୃପତି-ଉତ୍ତମ ।
ଗୃହସ୍ଥଲୋକଙ୍କୁ ଅତିଥି ଦେବ ପନ୍ତ
ପିତୃ ଭୃତ୍ୟ ନିତି ଆକାଂକ୍ଷା କରିଥାନ୍ତି ।
ଗୃହସ୍ଥଧର୍ମ କରି ପିତୃ ପିତାମହ
ରାଜ୍ୟ ଭୋଗ କର ରାଜନ ବହି ସ୍ନେହ ।
ତପସ୍ୟା ଯାଗ କ୍ଷମା ଭିକ୍ଷା ଅନାସକ୍ତି
ଇନ୍ଦ୍ରିୟସଂଯମ ଦ୍ୱିଜଙ୍କୁ ଲେଖିଛନ୍ତି ।
ଯାଗ ବିଦ୍ୟା ଉତ୍ସାହ ଉଗ୍ରତା ବେଦଜ୍ଞାନ
ଅସନ୍ତୋଷ ଦଣ୍ଡଧାରଣ ଧନାର୍ଜନ ।
ସୁପାତ୍ରେ ଦାନ ପ୍ରଜାପାଳନ ଯେ ଧର୍ମ
ରାଜାର ଇହ ପର ଫଳର ଏ କର୍ମ ।
ଏ ଧର୍ମଙ୍କରେ ଦଣ୍ଡଧାରଣ ରାଜାର
ବଡ଼ ଅଟଇଟି ରାଜନ ମନେକର ।
କ୍ଷତ୍ରିୟଠାରେ ବାହୁବଳ ତ ରହିଛି
ଏଣୁ ଦଣ୍ଡ ଦେବାର ଉଚିତ ତା ଅଛି ।
ଯୁଦ୍ଧରୁ ନିବର୍ତ୍ତିଣ ରହଇ ଯେ ରାଜା
ତାହାକୁଟି ଛାଡ଼ଇ ଅବନୀ ହରଯା ।
ସଂସାରରେ ଆସକ୍ତ ହୋଇଲେ ବ୍ରାହ୍ମଣ
ପୃଥିବୀ ତାକୁ ଗ୍ରାସ କରଇଟି ଜାଣ ।
ସଦ୍ୟୁମ୍ନ ରଜା ଦଣ୍ଡ ଧରି ସିଦ୍ଧି ପାଇ-
ଅଛନ୍ତି ବୋଲି ଆମ୍ଭେ କର୍ଣ୍ଣେ ଶୁଣିଥାଇଁ ।

ଯୁଧିଷ୍ଠିର ବୋଇଲେ ସୁଦ୍ୟୁମ୍ନ କେଉଁ କର୍ମ
କରିଣ ଅର୍ଜିଲେ କହ ବ୍ୟାସ ଧର୍ମ ।
ବ୍ୟାସ ବୋଇଲେ ଶଙ୍ଖ ଲିଖିତ ଯେ ନାମ
ବହିଥିଲେ ଯୋଡ଼ିଏ ଋଷି ଭ୍ରାତୋତ୍ତମ ।
ସେ ଆଶ୍ରମ ଦୁଇ ବହୁଦା ନଦୀତୀରେ
ସଜାଡ଼ି ରହିଲେ ତପସ୍ୟା ଲାଳସରେ ।
ଶଙ୍ଖର ନ ଥିବାର ସମୟେ ଲିଖିତ
ଶଙ୍ଖ ଆଶ୍ରମେ ଯାଇ ହେଲେ ଉପଗତ ।
ଦେଖିଲେ ପାଚି ଜରି ବହୁଫଳ ଛନ୍ତି
ଖାଇଲେ ତା ତୋଳି ଲିଖିତ ମହାମତି ।
ଏ ସମୟରେ ଆସି ଶଙ୍ଖ ମହାମୁନି
ଲିଖିତଙ୍କୁ ଦେଖି କହିଲେ ଏହି ବାଣୀ ।
ଏ ଫଳ ଯେଉଁଠାରୁ ଆଣିଅଛ ତୁମ୍ଭେ
କାହିଁପାଇଁ ଖାଉଛ କହ ପୁଛୁ ଆମ୍ଭେ ।
ଲିଖିତ ବୋଇଲେ ମୁଁ ତୁମ୍ଭ ବାଡ଼ି ଫଳ
ତୋଳିଣ ଖାଉଛି ହେବାକୁ ଦେହେ ବଳ ।
ଶଙ୍ଖ ବୋଇଲେ ତୁମ୍ଭେ କଲ ଚୋରିବୃତ୍ତି
ବିଚାରିଲେ ଯତିଙ୍କ ଅଟେ ଏ ଦୁର୍ନୀତି ।
ତୁମ୍ଭେ ଏବେ ସୁଦ୍ୟୁମ୍ନ ରାଜାଠାକୁ ଯାଇ
ଦୋଷକୁ କହି ଆସ ଦଣ୍ଡପାଇଁ ହୋଇ ।
ନୋହିଲେ ଏ ପାତକ ସକାଶୁଁ ତୁମ୍ଭର
ଅନ୍ତଃକାଳେ ହୋଇବ ନରକୁଟି ଘର ।
ଏହା ଶୁଣି ଲିଖିତ ସୁଦ୍ୟୁମ୍ନ ପାଶକୁ
ବାହାରିଲେ ମାନସେ ବହି ବିରସକୁ ।
ଲିଖିତ ଆସିବାର ଶୁଣି ନୃପବର
ବନ୍ଦନା କଲେ ଆସି ତାଙ୍କ ଶ୍ରୀପୟର ।
ପଚାରିଲେ କାହିଁକି ଆସିବା ହୋଇଛି
ସତ କରିଣ ମୋତେ କହ ମୁନିବତ୍ସି ।
ଲିଖିତ ବୋଇଲେ ମୁଁ କହିବଇଁ ଯାହା
ନ କରିବଟି ନାହିଁ ଶୁଣି ନରନାହା ।
ସୁଦ୍ୟୁମ୍ନ ବୋଇଲେ ମୁଁ ତୁମ୍ଭର ବଚନ
କାହିଁପାଇଁ ଲଙ୍ଘିବି, ଅଛି ମୋର ଜ୍ଞାନ ।
ଲିଖିତ ଏହା ଶୁଣି ସନ୍ତୋଷ ହୋଇଲେ
ବୋଇଲେ ନୃପତି କହିବା ଶୁଣ ଭଲେ ।
ନ ଥିବାବେଳେ ଭାଇ ଆଶ୍ରମକୁ ଯାଇ
ତାଙ୍କ ବାଡ଼ି ଫଳକୁ ଖାଇଲଇଁ ମୁହିଁ ।

ଏଥିପାଇଁ ଯେ ଦଣ୍ଡ ପାଇବା ଉଚିତ
ତା ବିଧାନ କଲେ ସୁଦ୍ୟୁମ୍ନ ନୃପସୁତ ।
ବୋଇଲେ ରାଜା ଦଣ୍ଡ ଦେଲେ ପାପଶାନ୍ତ
ହୁଏ ଯେବେ ବିଶ୍ୱାସ ଜନ୍ମିଅଛି ମତ ।
ତେବେ ସେ କ୍ଷମା ଦେଲେ ଯିବ ପାପଭାର
ଏ ଘେନ କ୍ଷମା ଦେଲି ମାଗ ଆନ ବର ।

—✻—

## ଅର୍ଜୁନଙ୍କ ପ୍ରତି ଯୁଧିଷ୍ଠିରଙ୍କ ଉକ୍ତି

ଏରୂପେ କହି ବ୍ୟାସ ହୁଅନ୍ତେ ମଉନ
ଯୁଧିଷ୍ଠିର ବୋଇଲେ ଶୁଣ ହେ ଅର୍ଜୁନ ।
ଧନେ ବଡ଼ କରି ଯେତେକଲ ତୁମ୍ଭେ ଯାହା
ଜାଣ ମୋର ମନକୁ ପାଉନାହିଁ ତାହା ।
ମୁନିମାନେ ତପ କରିଣ ସିଦ୍ଧ ହୋଇ
ଅଛନ୍ତି ସାକ୍ଷାତେ ଆଖିରେ ଦେଖୁଥାଇଁ ।
କେତେ ଋଷି ଅବଧି ପଢ଼ି ମୁଖେ ବେଦ
ଶୁଣିଥାଇଁ ପାଉଅଛନ୍ତି ସ୍ୱର୍ଗପଦ ।
ସନ୍ତୋଷୁଁ ମହୀରେ ଖୋଜିଲେ ସୁଖ ନାହିଁ
ସନ୍ତୋଷ ଯାର ଅଛି ସ୍ୱର୍ଗ ଲଭେ ସେହି ।
ଯଯାତି କହିଛନ୍ତି ନିବୃତ୍ତି ମାରଗ
ଯେ ଆଚରେ ତାର ସଫଳ ହୁଏ ଯୋଗ ।
ଯେ ନୁହନ୍ତି କାହାଠୁଁ କେବେ ହେଲେ ଭୀତ
ତା'ଠାରୁ ମଧ୍ୟ ଭୀତ ନୁହନ୍ତି କେହି ତ ।
କାହିଁରେ ଇଚ୍ଛା ଦ୍ୱେଷ ଯାହାର ନୁହଇ
ଜାଣ ସେ ବ୍ରହ୍ମ ପ୍ରାପ୍ତ ନିଶ୍ଚୟ ହୁଅଇ ।
ବାକ୍ୟ ମନ କାର୍ଯ୍ୟେ ଯେ ଅପକାରୀ ନୁହେଁ
ବ୍ରହ୍ମ ସ୍ୱରୂପକୁ ସେ ଲଭେ ଶୀଘ୍ରପ୍ରାୟେ ।
ଅଭିମାନ ମୋହ ତ୍ୟାଗ କରିଛି ଯାକୁ
ନିର୍ବାଣ ମୁକ୍ତି ଲଭ ହୁଅଇ ତାହାକୁ ।
ଧରମ ଧନ ବୃଦ୍ଧଙ୍କ ଆଶ୍ରୟ କରି
ବନ ନେଉଛନ୍ତି ସକଳ ନରନାରୀ ।
ଧନଆଶା ପ୍ରତିକ ଧର୍ମାଶ୍ରିତ ନର
ତରଇଛି ଅର୍ଜୁନ ଏ ଘୋର ସଂସାର ।
ଧନ ଇଚ୍ଛି ଲୋକ ଅସତ ସତ କଥା
ଜାଣି ନ ପାରଇ ଅର୍ଜୁନ ମହାରଥୀ ।
ଧନ ଗଲେ ହେଉଥାଇ ସେ କଳବଳ
ଏଣୁ କହୁଥାଇ ନିର୍ଦ୍ଧନ ଲୋକ ଭଲ ।
ଯାଗ ବିନା ଧନ ଭୋଗକୁ ଯୋଗ୍ୟ ନୋହେ
ତୁଚ୍ଛା ଅରଜୁନ ନ ଭୁଲ ତୁମ୍ଭେ ମୋହେ ।
ନ କରି ଯୋଗ ଲୋକ ଧନ କଲେ ଭୋଗ
ନରକଟି ପ୍ରାନ୍ତେ ହୁଅଇ ତାର ଭାଗ ।
ତପୀରୂପ ଧରି କରଇ ବନବାସ
ସ୍ୱର୍ଗ ଲାଗିଥାଏ ତା ଜାଣ ପୃଷ୍ଠଦେଶ ।
ମୁକତି କଥାରେ ବହୁତ ବିଘ୍ନ ଅଛି
ତା କରି ନ ପାରନ୍ତି ଲୋକେ କୁନ୍ତୀବତ୍ସି ।
ଗୋ ବ୍ରାହ୍ମଣ ପରଜା ପାଳି ଅଛନ୍ତି ଯେ
ବସିଛନ୍ତି ରାଜା ଏ ବହୁ ସ୍ୱର୍ଗସ୍ଥାନେ ।
ରୁଦ୍ର ବସୁ ଆଦିତ୍ୟ ସାଧୁ ରାଜର୍ଷିଏ ।
ରାଜଧର୍ମ ଆଶ୍ରୟେ ସ୍ୱର୍ଗେ ଗଲେ ସ୍ୱୟେ ।
ଏରୂପେ କହିସାରି ଦେବସ୍ଥାନ ଋଷି
ରହିଲେ ତୁନି ହୋଇ ବଚନ ନ ଭାଷି ।

—o—

## ଅର୍ଜୁନଙ୍କର ଉକ୍ତି

ଅର୍ଜୁନ ବୋଇଲେ କ୍ଷତ୍ରିୟ ଧର୍ମେ ରାଜ୍ୟ
ଜିଣି ବୋଲାଇଲ ଜଗତେ ମହାରାଜ ।
ଏବେ କହ କାହିଁକି ଜାତ କର ଭୟ
ଛାଡ଼ିଣ ତାହ୍ୟ ଧୈର୍ଯ୍ୟ ଧର ହେ ହୃଦୟ ।
କ୍ଷତ୍ରିୟ ଯୁଦ୍ଧରେ ମରଣ ବଡ଼କଥା
ବୋଲି କହୁଛି ସବୁକାଳେ ଧର୍ମପୋଥା ।
ବ୍ରାହ୍ମଣର ତପସ୍ୟା କ୍ଷତ୍ରିୟର ଯୁଦ୍ଧ
ଏ ଜଗତଯାକରେ ହୋଇଛି ପ୍ରସିଦ୍ଧ ।
ପରୁ ଉପଜୀବିକା କ୍ଷତ୍ରି ଯେବେ କରେ
ଜୀଇଁଥିଲେ ବି ଜାଣ ସେ ମଲା ପରିରେ ।
କ୍ଷତ୍ରିୟ ଧର୍ମପରି ଆଉ ଧର୍ମ ନାହିଁ
ତା ଘେନ ଅଲଭ୍ୟରେ ଲଭ ସ୍ୱର୍ଗ ଭୂଇଁ ।
ଦେବରାଜ ଇନ୍ଦ୍ର ବ୍ରାହ୍ମଣ ହୋଇ କରି
କାର୍ଯ୍ୟବଶେ ହେଲେ କ୍ଷତ୍ରିୟ ଧର୍ମ ଗ୍ରହୀ ।
ପାପୀ ଜ୍ଞାତିକୁ ଜିଣି ସେହୁ ଦଶରଥର
ପ୍ରଶଂସା କରି ହେଲେ ସ୍ୱର୍ଗେ ପୁରନ୍ଦର ।
ନିଷ୍କଣ୍ଟକରେ ଇନ୍ଦ୍ର କଲା ପରି ଯାଗ
କରିଣ ଯାଗ ମହୀ କର ଉପଭୋଗ ।
ଦଇବକୁ ଅତିକ୍ରମ କେହି ନ ପାରେ
ଯା ଘଟିଲା ତହିଁ ନ ବୁଡ଼ ଶୋକ-ମାରେ ।

ଅରଜୁନ ମୁଖରୁ ଶୁଣି ଏ ବଚନ
ଯୁଧିଷ୍ଠିର ରାଜା ତହୁଁ ହେଲେ ମଉନ ।

—:*:—

## ବେଦବ୍ୟାସଙ୍କ ଉକ୍ତି

ବେଦବ୍ୟାସ ବୋଇଲେ ଅର୍ଜୁନଙ୍କ କଥା
ଶୁଣ ହେ ଯୁଧିଷ୍ଠିର ଛାଡ଼ ମନୁ ବ୍ୟଥା ।
ରାଜା ନ ରୁହିଲେ ପ୍ରାଣୀମାନଙ୍କ ପୀଡ଼ା
ଜନ୍ତୁ ଗୋଟି ଗୋଟି ହୋଇ ସ୍ୱେଚ୍ଛାଚର ଭିଡ଼ା ।
ଧର୍ମେ ପାଳୁ ପାଳୁ ପଡ଼ିଲେ ଉପଦ୍ରବ
ତହିଁର ପ୍ରତିକାର କରିବ ନୃଦେବ ।
ହୟଗ୍ରୀବ ରାଜା ସତ୍କର୍ମେ ଦେଇ ମନ
ସୁଖରେ କରିଥିଲେ ପ୍ରଜାଙ୍କୁ ପାଳନ ।
ଘୋର ଯୁଦ୍ଧେ ତସ୍କର ଶତ୍ରୁଙ୍କୁ ସଂହାରି
ରଣଯୋଗ କରି ଲଭିଲେ ସ୍ୱର୍ଗପୁରୀ ।

—:*:—

## ଯୁଧିଷ୍ଠିରଙ୍କ ଉକ୍ତି

ଅରଜୁନ କୁପିତ ହୋଇଥିବା ଜାଣି
ଦ୍ୱୈପାୟନ ଋଷିଙ୍କ ବାକ୍ୟମାନ ଶୁଣି ।
ଯୁଧିଷ୍ଠିର ବୋଇଲେ କି କହୁଛ ବ୍ୟାସ
ଜ୍ଞାତିନାଶ-ଶୋକ ମୋ ହୃଦେ କଲା ବାସ ।
ଏ ହେତୁ ରାଜ୍ୟରେ ମୋ ମନ ହେଉନାହିଁ
ବନେ ରହି ତପସ୍ୟା କରିବଇଁ ମୁହିଁ ।
ବ୍ୟାସ ବୋଇଲେ ହେ ବିଧି ଯା ଲେଖିଥାଏ
ତାହା ଭୋଗ କରନ୍ତି ମନୁଷ୍ୟ ସଭିଏଁ ।
ବିଦ୍ୟା ବୁଦ୍ଧି ପ୍ରଭାବ ହୁଏ ନାହିଁ ଭଲ
ସବୁଠାକୁ ମୂଳ ଏକା ଅଟେ କପାଳ ।
କାଳ ସକାଶୁଁ ଭଲ ମନ୍ଦ ଏହି ଦୁଇ
ଲୋକର ହେଉଅଛି ଜାଣ ନରସାଇଁ ।
କାଳଜାଣି ଔଷଧ କରୁଅଛି ଗୁଣ
ପୂରିଲେ କାଳ ବ୍ୟାଧି ନାଶଇ ପରଣ ।
କାଳ ଜାଣିଣ ଦେଖ ବହୁଛି ପବନ
କାଳ ଜାଣି ବରଷା କରୁଛନ୍ତି ଘନ ।
କାଳ ସକାଶୁଁ ପୁଣି ପଲ୍ଲବିତ ତରୁ
ହୋଇ ଦେଉଛନ୍ତି ଫଳ ପୁଷ୍ପରେ ସୁରୁ ।
କାଳରୁ ହେଉଛନ୍ତି ଶୁକ୍ଳ କୃଷ୍ଣ ଗତି
କାଳରେ କ୍ଷୟ ବୃଦ୍ଧି ଭଜେ ତାରାପତି ।
କାଳରେ ନଦୀମାନେ ବହୁତ ସଲିଳ
ବହୁଅଛନ୍ତି ଟି ପାଣ୍ଡବ ନରପାଳ ।
କାଳରେ ସ୍ତ୍ରୀମାନେ ଗର୍ଭକୁ ଧରନ୍ତି
ଶୀତ ଗ୍ରୀଷ୍ମ ବରଷା କାଳର ଏ ଖ୍ୟାତି ।
କାଳ ବିନା ଜନ୍ମ ମରଣ କଥା ଦୁଇ
ଆହେ ଯୁଧିଷ୍ଠିର ସମ୍ଭବ ନ ପାରଇ ।
କାଳ ବିନା ସ୍ତ୍ରୀ ପୁରୁଷ ଯଉବନ
ହେବାର କଷ୍ଟ ହେଉଅଛି କେ ରାଜନ ।
କାଳହିଁ କରୁଅଛି ସବୁର ବିନାଶ
କାଳକୁ କେବେ ବଳି ନ ପାରେ ଅପୁରୁଷ ।
ଦାରଯା ପୁତ୍ର ମିତ୍ର ବାନ୍ଧବ ସମ୍ପତ୍ତି
ମୋର ଯେ ନ ବୋଲେ ସେ ପାଏ ଭଲ ଗତି
ଶତ ଶତ ଭୟ ଶୋକ ମୂର୍ଖରଠାରେ
ଘର କରଇ ହେ ରାଜନ ନିରନ୍ତରେ ।
କାଳ ସକାଶରୁ ହେଉଅଛି ଦୁଃଖ ସୁଖ
କାଳହିଁ ଭଲ ମନ୍ଦ କଥା ହେତୁ ଶିଖ ।
ମୁକତିକି ଯେ ଲୋକ ଇଚ୍ଛା କରିଥିବ
ଦୁଃଖ ସୁଖ ଦୁହିଁଙ୍କି ସେ ତ୍ୟାଗ କରିବ ।
ଯାହାର ସକାଶରୁ ଉପୁଜିବ ଶୋକ
ତାକୁ ଛାଡ଼ ଦେବ ଯେ ହେବ ସେ ବିବେକ ।
ଜ୍ଞାନୀ ମୂର୍ଖ ଦୁହେଁ ପାଉଅଛନ୍ତି ସୁଖ
ମଧ୍ୟବର୍ତ୍ତୀ ଲୋକର ଉପୁଜଇ ଦୁଃଖ ।
ଏହି ରୂପରେ ସେନଜିତ ନରପତି
ପୂର୍ବକାଳେ ସଭାରେ ବସି କହିଛନ୍ତି ।
ସୁଖ ଦୁଃଖ ସମ୍ପତ୍ତି ଲାଭାଲାଭ ଜୟ
ମରଣ ଜନ୍ମ କ୍ରମେ ହେଉଛି ଉଦୟ ।
ଏତେକ କଥା ହେଲେ ନୋହିଲେ ସରସ
ମୀରସକୁ ନ କରିବ କେବେ ମାନସ ।
ଯୁଦ୍ଧମାତ୍ର ଦଣ୍ଡଦାନ ଏହି ରାଜାର
ପାଳନ ଅଟଇ ରଜାନ ମନେକର ।
ବେଦ ଶାସ୍ତ୍ର ଜାଣୁ ପାଳିଲେ ପ୍ରଜା ରାଜା
ସ୍ୱର୍ଗରେ ତାକୁ ପୂଜା କରନ୍ତି ବିଡ଼ୌଜା ।
ମରିଯିବା ଉତ୍ତାରୁ ଯାର ସୁଖ୍ୟାତିବାଣୀ
ପ୍ରକଟ ହୁଏ ସେହି ନରକୁଳମଣି ।
ସୁଦ୍ୟୁମ୍ନଙ୍କ ମୁଖରୁ ଶୁଣିଣ ଏ ବାଣୀ
ବୋଇଲେ ଋଷି ଇଚ୍ଛା ଦଣ୍ଡ ନରମଣି ।

ସୁଦ୍ୟୁମ୍ନ ଋଷିଙ୍କର କଥା ନ ଲଙ୍ଘିଲେ
ଦୁଇ ହାତ ତାଙ୍କର କାଟି ପକାଇଲେ ।
ଦଣ୍ଡ ପାଇ ଲିଖିତ ଶଙ୍ଖ ପାଶେ ଯାଇ
ବୋଇଲେ ଏବେ ଦୋଷ ଗଲା କିନା ଭାଇ ।
ଶଙ୍ଖ ବୋଇଲେ ହେ ଲିଖିତ ନୁହ କୋପ
ଦଣ୍ଡ ହେବାରୁ ଗଲା ପରଲୋକ ତାପ ।
ବାହୁଦା ନଦୀଙ୍କରେ ସ୍ନାନ ବେଗେ ସାରି
ଦିଅ ଦେବ ପିତୃଗଣଙ୍କୁ ଡାକି ବାରି ।
ଶଙ୍ଖଙ୍କ ବଚନ ଲିଖିତ ନ ଲଙ୍ଘିଲେ
ବାହୁଦାଙ୍କୁ ସ୍ନାନ କରିବାପାଇଁ ଗଲେ ।
ବାହୁଦାରେ ସ୍ନାନ କରି ସେ ଋଷିବର
ଜଳ ଦେଲେ ଯୋଡ଼ି ଖଣ୍ଡିଆ ଦୁଇକର ।
ସେହିକାଳେ ତାଙ୍କର ଅଙ୍କୁରିଲା ହସ୍ତ
ହୁଅନ୍ତେ ଧର୍ମେ ନିଜ ଗାସଟି ପବସ ।
ଲିଖିତ ତର୍ପଣକୁ ସାରି ଶଙ୍ଖ ପାଶେ
କହିଲେ କଅଁଳିଲା ହସ୍ତ ଦୁଇ ତୋଷେ ।
ଶଙ୍ଖ ବୋଇଲେ ନିଶ୍ଚେ ତପୋବଳେ କରି
ତୁମ୍ଭର କଲି ମୁହିଁ ଲିଖିତ ମନେ କରି ।
ଲିଖିତ ବୋଲେ ପାପ ନାଶିବା କ୍ଷମତା
ତୁମ୍ଭର ଥିବାଠାରେ ଦେଲ କିମ୍ପା ବ୍ୟଥା ।
ଶଙ୍ଖ ବୋଇଲେ ମୁଁ ତ ରାଜା ନ ଅଟଇ
କି ରୂପରେ ତୋତେ ଦିଅନ୍ତି ଦଣ୍ଡ ଭାଇ ।
ଉଚିତ ଦଣ୍ଡ ତୋତେ ଦେଇଣ ସୁଦ୍ୟୁମ୍ନ
ଅରଜିଲେ ସେ ବଳେ ଦେବଙ୍କର ସ୍ଥାନ ।
ତୁମ୍ଭେ ମଧ୍ୟ ପାତକୁଁ ହେଲେ ଏବେ ପାରି
ଆଉ ଭାଇ ମୋତେ ତା ନ ବସ ପଚାରି ।
ହେ ପ୍ରଭୁ ଯୁଧିଷ୍ଠିର ରାଜନ ସୁଦ୍ୟୁମ୍ନ
ଦଣ୍ଡ ଦେବାରୁଟି ପାଇଲେ ଦିବ୍ୟସ୍ଥାନ ।
ଏ ସକାଶେ ତୁମ୍ଭଙ୍କୁ ବୋଲୁଅଛୁ ଆମ୍ଭେ
ପ୍ରଜା ପାଳ ଭବେ ବୋଲାଅ ଭଲ ତୁମ୍ଭେ ।
କ୍ଷତ୍ରିୟ କୁଳେ ତ ହୋଇଛ ତୁମ୍ଭେ ଜାତ
ସେ ଧର୍ମେ କିମ୍ପା ତେବେ ହେଉଛ ବିରତ ।
ବଳ ହେଲେ ଦେଲେ ହୁଅଇ ତାହା ହିତ
ନ ଦେବା ଲୋକକୁ ସେ ହୁଅଇ ଅହିତ ।
ଲୁବ୍ଧ ଲୋକ ଧନକୁ ଯାକି ରଖିଥାନ୍ତି
ଅନାସ୍ଥରେ ଅପାତ୍ର ଲୋକରେ ଦିଅନ୍ତି ।

ଅପାତ୍ରରେ ଦାନ ଦିଅଇ ଯେଉଁ ନର
ଶତ ବର୍ଷ ପୁରୀଷଗ୍ରାସେ ଯାଏ ତାର ।
ଏହି ସକାଶୁଁ ଦାନ ଦେବାର ଦୁଷ୍କର
ଅଟଇ ହେ ଅର୍ଜ୍ଜୁନ ସାର ମନେ କରି ।
ବୋଇଲେ ପୁଣି ବ୍ୟାସଦେବ ଯୁଧିଷ୍ଠିର
ହୋଇଣ ଅତିଶୟ ବ୍ୟଥିତ ଅନ୍ତର ।
ପୁତ୍ର ନାତି ଜ୍ଞାତି ମରାଇ ପିତାମହ
ଭୀଷ୍ମଙ୍କୁ ମରାଇଲି ଛାଡ଼ି ବହୁ ମୋହ ।
ଯେ ଭୀଷ୍ମ ବଳରେ ମୋ ବାପୁ ହୋଇ ରାଜା
ପାଳୁଥିଲେ ବସି ହସ୍ତିନାରେ ପରଜା ।
ସେ ଭୀଷ୍ମଙ୍କୁ ଶିଖଣ୍ଡୀ ଅର୍ଜ୍ଜୁନ ହାତରେ
ମରାଇଲି ପଡ଼ି ମୁଁ ଦୁଷ୍ଟଙ୍କ ପଥରେ ।
ମିଥ୍ୟା କଥା କହି ମରାଇ ଗୁରୁ ଦ୍ରୋଣ
ହୋଇଲି ମୁଁ ବଞ୍ଚନା କଲି ନରରାଣ ।
ଗୁରୁଙ୍କ ଆଗେ ମିଥ୍ୟା କହି ତ ଅଛି ମୁହିଁ
ଗତି ହେବାପରି ତ ମୋତେ ଦିଶୁନାହିଁ ।
ଅଭିମନ୍ୟୁ ସୁତକୁ ବ୍ୟୂହ ଭେଦ ବୋଲି
ସୈନ୍ୟ ଘେନ ଯାହା ମୁଁ ଦୁଆରେ ରହିଲି ।
ଏହି କଥା ତ ଲାଜ ବଢ଼ାଇଛି ମୋର
ଯେତେବେଳେ ମୁଖକୁ ଦେଖେ ଅର୍ଜ୍ଜୁନର ।
ଅପୁତ୍ରୀ ହୋଇଣ ଦ୍ରୌପଦୀ ଆସିଛନ୍ତି
ତାହାଙ୍କୁ ବୋଧିବାକୁ ନାହିଁ ମୋ ଯୁକତି ।
ଏହି ସକାଶୁଁ ପିତା କହୁଅଛି ମୁହିଁ
ଅନଶନ ବ୍ରତରେ ନିଶ୍ଚେ ମରିବଇଁ ।
ବନକୁ ଯେବେ ମୋତେ କରୁଛ ନିଷେଧ
ବୋଲ ମୁଁ ଏଥିଠାରେ ଘୁଚିବ ମୋ ବଧ ।

ବ୍ୟାସ ଉବାଚ

ବ୍ୟାସ ବୋଇଲେ ହେ କି ବୋଲ ଯୁଧିଷ୍ଠିର
ବିହି ଯା କରିଥାଏ ସେ ହୋଏ ଲୋକର ।
ଜନ୍ମ ହେଲେ ଲୋକର ହୁଅଇ ମରଣ
ଏଥିକି କେତେ ତୁମ୍ଭେ କରୁଛ ଶୋଚନ ।
ଉଚ୍ଚରେ ଥିଲେ ଲୋକ ନୀଚକୁ ଆସଇ
ସମ୍ପତ୍ତି ହୋଇଥିଲେ ବିପତ୍ତି ଲଭଇ ।
ଜୀବନ ଶେଷେ ମୃତ୍ୟୁ ସୁଖ ପରେ ଦୁଃଖ
ଘଟୁଛି ସଂସାରେ ନିୟମ ନରଶିଖ ।

ସଂଯୋଗ ପରେ ନିଶ୍ଚେ ହୁଅଇ ବିଯୋଗ
ଆଳସ୍ୟ ଦକ୍ଷତାରେ ଦୁଃଖ ସୁଖ ଭୋଗ ।
ଐଶ୍ବର୍ଯ୍ୟ ଲଜ୍ଜା ଶ୍ରୀ କୀର୍ତ୍ତି ଆଉ ଧୃତି
ଜପୂର୍ଣ୍ଣ ଲୋକରଟି ଆଶ୍ରୟେ ରହନ୍ତି ।
ସୁହୃଦମାନେ ସୁଖ ନ ପାରନ୍ତି ଦେଇ
ଶତ୍ରୁଙ୍କର ସକାଶୁଁ ଦୁଃଖଟି ନୁହଇ ।
ତେମନ୍ତ ଜ୍ଞାନ ଯୋଗେ ନ ମିଳଇ ଧନ
ଧନରେ ସୁଖ ଲାଭ ରହେ କଦାଚନ ।
ଯାହାକୁ ଦଇବଟି ଯାହା କରିଥାଇ
ଅନାସକ୍ତ ହୋଇ ସେ ତାହା ଆଚରଇ ।
ଧରମ କରିବାକୁ ଜନମ ତୁମ୍ଭର
କରମ ଛାଡ଼ିବାକୁ ନାହିଁ ଅଧିକାର ।
ଏ ହେତୁ ରାଜା ହୋଇ ଧର୍ମକାର୍ଯ୍ୟ କର
ଅବଶ୍ୟ ସିଦ୍ଧି ଲାଭ ହେବ ନରବର ।
ଜନକ ପୂର୍ବେ ଅଶ୍ମ ନାମେ ବ୍ରାହ୍ମଣଙ୍କୁ
ପଚାରିଲେ ହୃଦୟ ଶୋକ ଛାଡ଼ିବାକୁ ।
ଜ୍ଞାତି ଧନ ଦୁହିଁଙ୍କ ଆଗମ ବିନାଶ
ଘଟିଲେ କି କରିବ କହ ତ ପୁରୁଷ ।
ଅଶ୍ମ ବୋଇଲେ ପ୍ରଭୁ ଜନକ-ନୃପତି
ହେବାକ୍ଷଣି ଲୋକ ମହୀରେ ଉତପତ୍ତି ।
ସୁଖ ଦୁଃଖ ଏ ଦୁହେଁ କରନ୍ତି ଆଶ୍ରୟ
ଏ ସକାଶୁଁ ଉପୁଜେ ମନେ ମହାଭୟ ।
ଅହଂବୁଦ୍ଧିରେ ଲୋକ ସଦା ବୁଡ଼ିଯାଇ
ପୈତୃକ ଧନଯାକ ବିନଷ୍ଟ କରଇ ।
ଚହୁଁକରେ ହରଣ ସେ ପରର ଧନ
ରାଜାଟି ତା'ର ଦଣ୍ଡ କରନ୍ତି ବିଧାନ ।
ଛାଡ଼ିଲେହେଁ ଦୁଷ୍କର୍ମ ବଂଶ ବା ତିରିଶ
ବରଷେ ସେ ଲୋକେ ନୁହନ୍ତି ଶତାୟୁଷ ।
ଏ ହେତୁ ରାଜା ସର୍ବ ଦୁଃଖ ଅବଗତ ।
ହୋଇଣ ପ୍ରତିକାର କରିବା ଉଚିତ ।
ଅନଷ୍ଟପାତ ଶତ୍ରୁବିଭ୍ରମ ଏ-ଦୁଇ
ମାନସିକ ଦୁଃଖର କାରଣ ଅଟଇ ।
ବଳୀ ଦୁର୍ବଳଙ୍କୁ ଜରା ମୃତ୍ୟୁ ଏ ଦୁଇ
ବାଘ ପରି ରଜନ ଦେଉଛନ୍ତି ଖାଇ ।
ସମୁଦ୍ର ପର୍ଯ୍ୟନ୍ତ ଜିଣିଲେ ରାଜା ମହୀ
ଜରା ମୃତ୍ୟୁକୁ ଅତିକ୍ରମି ନ ପାରଇ ।
ଦୁଃଖ ସୁଖ ଦୁହିଙ୍କି ନାହିଁ ପରିହାର
ବୃଥା ଅଟଇ ସିନା ଚିନ୍ତା କରିବାର ।
ଶୟନାଶନ ଯାତ ପାନାହାର କାଳ
ବଂଶରେ ପ୍ରାପତ ହେଉଛୁ ମହୀପାଳ ।
କାଳରେ ବଳସ୍ୱାର ଦୁର୍ବଳ ହେଉଅଛୁ
ଧନାଢ୍ୟ ଲୋକ ମଧ ପରକୁ ମାଗୁଛୁ ।
ସତ୍କୁଳେ ଜନ୍ମ ବୀର୍ଯ୍ୟ ଆରୋଗ୍ୟ ସୌନ୍ଦର୍ଯ୍ୟ
ସୌଭାଗ୍ୟ ଦୈବ ହେତୁ ପାଆନ୍ତି ମନୁଜ ।
ଦରିଦ୍ରଲୋକ ପୁତ୍ର ଇଚ୍ଛା ନ କରଇ
ପୁତ୍ର ତାହାକୁ କିନ୍ତୁ ବହୁତ ମିଳଇ ।
ସମ୍ପନ୍ନଲୋକ କରୁଥାଏ ପୁତ୍ର ଇଚ୍ଛା ।
ସ୍ୱପ୍ନରେ ଦେଖି ସୁଦ୍ଧା ନ ପାରେ ସେ ବତ୍ସା ।
ଜରା ବ୍ୟାଧି ପତନ କ୍ଷୁଧା ଅଗ୍ନି ଜଳ
ବିଷାଦ ଆପଦରେ ଘଟେ ପ୍ରାଣୀ-କାଳ ।
ଏହି ସବୁ ପ୍ରାଣୀର ତ ସୁକୃତ ଦୁଷ୍କୃତ
ପ୍ରାରବ୍ଧବଶେ ଘଟେ ଆହେ ନରନାଥ ।
ଧନବନ୍ତ ଲୋକର ଅଳ୍ପ ହୁଏ ଆୟୁ
ଅଧନବନ୍ତଯାକ ହୁଅନ୍ତି ଦୀର୍ଘାୟୁ ।
ଶ୍ରୀମନ୍ତ ଲୋକେ ଅନ୍ନ ଗୁରୁଗୁଣ୍ଡା ଖାଇ
ପୋଷେ ପାଣି ପିଇ ରହନ୍ତି ତୋଷ ହୋଇ ।
ଦରିଦ୍ରେ ଖାଇଲେ ଅନ୍ନ ଖାଆନ୍ତି ହାଣ୍ଡିଏ
ତେବେ ଜଳୁଥାଇ ଭୋକେ ତାହାଙ୍କର କାୟେ
ସ୍ତ୍ରୀ ଜୁଆ ମଦ୍ୟ ଯେ ମୃଗୟାରେ ଲୋକ
ହେଉଛନ୍ତି ଧର୍ମ ଛାଡ଼ିଣ ଅବିବେକ ।
କାଳ ପୂରିବାର ଲୋକକୁ ଦାନ ଜପ
ରଖି ତ ନ ପାରନ୍ତି ହେ ଜନକନୃପ ।
କାଳପ୍ରବାହେ ଲୋକ କାଠିପରି ଲୁଠା
ଛାଟେ ମିଳି କରି ହୁଅନ୍ତି ପୁଣି ଫିଟା ।
ଦ୍ୱିଜଠାରୁ ଚଣ୍ଡାଳ ଛରଯନ୍ତେ କାଳ
ଯମାନରେ ପ୍ରବର୍ତ୍ତିଛନ୍ତି ମହୀପାଳ ।
ମାତା ପିତା ପୁତ୍ର ଭାରିଯା କେ କାହାର
ନୁହଇଟି ବିଚାର କର ଦଣ୍ଡଧାରୀ ।
ପ୍ରତ୍ୟକ୍ଷେ ପରଲୋକ କେହି ଦେଖି ନାହିଁ
ଶାସ୍ତ୍ର ଲେଖିଅଛୁ ତାହା କହିଲଇଁ ମୁହିଁ ।
ଯାଗ ଦାନ କରି ଧର୍ମ ଅର୍ଥ ପାଳନା
ମନରେ କରିବ ଯେ ସ୍ୱର୍ଗର କାମନା ।

ଜରା-ମୃତ୍ୟୁ-କୁମ୍ଭୀର ସନ୍ତତରେ କାଳ
ସିନ୍ଧୁ ବୁଡ଼ାଉଛି ସଭିଙ୍କି ମହୀପାଳ ।
ବଇଦେ ନାନା ଜାତି ଔଷଧ ଜାଣନ୍ତି
ତେବେ ହେଲେ କି ଜରା ମୃତ୍ୟୁ ନ ପାଆନ୍ତି ।
ତପ ଦାନ ଯଜ୍ଞ ଯେ କରୁଥାନ୍ତି ନିତି
ସେ ସୁଦ୍ଧା ଜରା ମୃତ୍ୟୁ ବଳି ନ ପାରନ୍ତି ।
ଯାହାକୁ ଯେଉଁ ଦିନ ମୃତ୍ୟୁ ଲେଖିଥାଏ
ସେହି ଦିନଟି ତାର ନିଶ୍ଚେ ହୁଏ ରାଜ୍ୟେ ।
ନିଜ ଦେହ ସଙ୍ଗତ ପାରୁ ନାହିଁ ରହି
ଅପର ସଙ୍ଗ ଅବା ରହିବଟି କାହିଁ ।
ତୁମ୍ଭର ଭୁଲିଲ ପିତୃ ପିତାମହଙ୍କର
ଭେଟ ହେଉଛି କି ହେ କହ ନରବର ।
ହୃଦୟୁଁ ଏବେ ସବୁ ଦୁଃଖ ଦୂର କର
ଯାଗ ଦାନ ଧର୍ମରେ ରହ ଦଣ୍ଡଧାରୀ ।
ଯେଉଁ ରାଜା ଷଷ୍ଠାଂଶ କରକୁ ନଅଇ
କାହିଁ ତାର ପୃଷ୍ଠଦେଶକୁ ନ ଛୁଡ଼ଇ ।
ଏରୂପେ ଅଶ୍ମାହ୍ନିକ ଜନକରାଜାଙ୍କୁ
କହି ବାହାରିଲେ ଆପଣା ଘରକୁ ।
ଉଠ ଉଠ ହେ ଯୁଧିଷ୍ଠିର ନରବର
ଧର୍ମେ ତ ଜିଣିଛ ମହୀକୁ ଭୋଗ କର ।
ଯୁଧିଷ୍ଠିର ରାଜା ବ୍ୟାସଙ୍କର ବଚନ
ଶୁଣି କରି ତଳକୁ ପୋତିଲେ ବଦନ ।
ତା ସହି ନ ପାରି ସୁଭଦ୍ରା ପ୍ରାଣସାଇଁ
କହିଲେ ଶ୍ରୀକୃଷ୍ଣଙ୍କ ମୁହଁକୁ ଅନାଇଁ ।
ଯୁଧିଷ୍ଠିର ବୁଡ଼ିଗଲେଣି ଶୋକଜଳେ
ଏହାଙ୍କୁ ଉଦ୍ଧର ଶ୍ରୀକୃଷ୍ଣ ବୁଦ୍ଧି ବଳେ ।
ଅର୍ଜୁନଙ୍କ ଏ ବାଣୀ ଶୁଣି ଚକ୍ରପାଣି
ଯୁଧିଷ୍ଠିର ପାଶକୁ ଗଲେ ସେହିକ୍ଷଣି ।
ଚନ୍ଦନରେ ଭୂଷିତ ଯୁଧିଷ୍ଠିର କର
ହୋଇଥିଲା ତା ଧରି କରେ ଚକ୍ରଧର ।
ଆନନ୍ଦହୃଦ ହୋଇ କହନ୍ତେ ବଚନ
ମୁଖଶ୍ରୀ ରବିକରେ ପ୍ରସନ୍ନ ନଳିନ ।
ଯୁଧିଷ୍ଠିର ହେ ତୁମ୍ଭେ ଶୋକରେ ଦେହକୁ
ଶୁଖାଉଛ କାହିଁକି କହ ତା ଆମ୍ଭଙ୍କୁ ।
ସପନ ପ୍ରାଏ ପୁତ୍ର ନାତି ଜ୍ଞାତି କୁଳ
ତୁମ୍ଭର ହୋଇଗଲେ ଯୁଦ୍ଧରେ ନିର୍ମୂଳ ।

ଯୁଦ୍ଧ ଆଗ ପହଣ୍ଡେ କୁରୁମାନେ ମରି
ବସିଛନ୍ତି ରାଜନ ସ୍ୱର୍ଗେ ସ୍ଥାନ କରି ।
ତାଙ୍କର ପାଇଁ ଶୋକ କରିବାର କାଳ
ଏ ନୁହେ ଜାଣ ହେ ପାଣ୍ଡବ ମହୀପାଳ ।
ତନୟ ଶୋକ ଶାନ୍ତିପାଇଁ ସୃଞ୍ଜୟଙ୍କୁ
ନାରଦ କହିବାର କହିବା ତୁମ୍ଭଙ୍କୁ ।
ସୃଞ୍ଜୟଙ୍କ ପୁତ୍ର ନାଶକୁ ଶୁଣି କାନେ
ନାରଦ ଆସି ସୃଞ୍ଜୟଙ୍କ ସନ୍ନିଧାନେ ।
ବୋଇଲେ ନୃପଙ୍କର ମହାଭାଗ୍ୟ ମୁହିଁ
କହୁଛି ଶୁଣି ରହ ଦୁଃଖ ଛାଡ଼ି ଦେଇ ।
ଏ ଇତିହାସ ଯେବେ ଶୁଣେ କାନେ ଜନ
ନ ଛୁଅଇଁ ଦୁଷ୍ଟଗ୍ରହ ତା ଅପଘନ ।

—*—

## ଷୋଳଗୋଟି ରାଜାଙ୍କ ଚରିତ

ଅବିକ୍ଷିତ ପୁତ୍ର ମରୁତ୍ତ ମହୀପତି
ମହାନ ହୋଇ ମଧ୍ୟ ମୃତ୍ୟୁ ଲଭିଛନ୍ତି ।
ମରୁତ୍ତଙ୍କ ଯାଗକୁ ଦେବ ଶଚୀପତି
ସନ୍ତତରେ ଘେନ ଆସିଲେ ବୃହସ୍ପତି ।
ମରୁତ୍ତଙ୍କ ପୃଥିବୀ ପାଳନାରୁ ବିଷ
ନୋହି ମହୀ ଯେ ଧାନ ଫଳିଲା ବିଶେଷ ।
ମରୁତ ଆଦି ଦେବେ ମରୁତ୍ତଙ୍କ ଯାଗେ
ପରଷିଲେ ଅନ୍ନ ସେ ମନର ସରାଗେ ।
ବିଶ୍ୱଦେବ ଦେବତା ବୃତ୍ତିକ ଛାଡ଼ିଲେ
ମରୁତ୍ତଙ୍କ ଯାଗରେ ସଭାସଦ ହେଲେ ।
ଯାଗରେ ମରୁତ୍ତଙ୍କ ପରସ୍ତ ଦକ୍ଷିଣା
ଦେବା କଥାରେ ଏକା ଇନ୍ଦ୍ର ହେବେ ଊଣା ।
ଏ ରୂପେ କାହିଁ କରିଥିଲେଟି ମରୁତ୍ତ ।
କାଳରେ କାଳ ନେଲା ତାଙ୍କର ଜୀବିତ ।
ତୁମ୍ଭର ପୁଅ ମଲେ ବୋଲି ଶୋକ ଯାହା
କରୁଛ ସୃଞ୍ଜୟ ଉଚିତ ନୋହେ ତାହା ।
ଶୁଣ ହେ ସୃଞ୍ଜୟ ସୁହୋତ୍ର ଚରିତକୁ
ମାନନ୍ତି ସବୁଜନେ ତାଙ୍କ ଧରମକୁ ।
ସୁହୋତ୍ରଙ୍କ ଧର୍ମରେ ଇନ୍ଦ୍ରବଶ ହେଲେ
ବରଷଯାଏ ସୁନା ମହୀରେ ବର୍ଷିଲେ ।
ସୁବର୍ଣ୍ଣ କୂର୍ମ ମତ୍ସ୍ୟ ସୁହୋତ୍ରଦେଶ ନଦୀ—
ମାନଙ୍କରେ ବିହରା କଲେ ବୃଷବାଜୀ ।

ସୁହୋତ୍ର ଇନ୍ଦ୍ର ବୃଷ୍ଟି ସୁନା ଅଣାଇଲେ
ସେ ବଳେ ଯାଇ କୁରୁକ୍ଷେତ୍ର ଯାଗ କଲେ ।
ଦ୍ୱିଜମାନଙ୍କୁ ସବୁ ସୁନାଯାକ ଦାନ
ଦେଇ ସେ କାଳବଶେ ଗଲେ ସ୍ୱର୍ଗସ୍ଥାନ ।
ତୁମ୍ଭ ପୁଅ ତ ଯାଗ ଦାନ କରି ନାହିଁ
ତା ମଲକୁ କମ୍ପା କାନ୍ଦୁଛ ନରସାଇଁ ।
ପୂର୍ବକାଳରେ ଅଙ୍ଗଦେଶ ରାଜା ଥିଲେ
ସେ ଧାର୍ମିକପ୍ରବର କାଳଗ୍ରସ୍ତ ହେଲେ ।
ଯାଗରେ ଲକ୍ଷେ କନ୍ୟା ଲକ୍ଷେ ଅଶ୍ୱ ଜାଣ
ଦାନ କରି ଦେଲେ ଦ୍ୱିଜକୁ ସେ ରାଜନ ।
ଏ ବାହାରେ ଲକ୍ଷେ ଗଜକୁ ଦାନ ଦେଲେ
ଦକ୍ଷିଣାରେ ଦ୍ୱିଜଙ୍କୁ ଖୁସି କରାଇଲେ ।
ବୃଷଭ ଲକ୍ଷ ଗାଈ ଲକ୍ଷ ବସ୍ତ୍ର ଲକ୍ଷ
ଦାନ କଲେ ସେ ରାଜା ହୋଇବାକୁ ମୋକ୍ଷ ।
ବିଷ୍ଣୁପଦଗିରିରେ ସେ ଯେ ଯାଗ କଲେ
ଇନ୍ଦ୍ର ତାଙ୍କ ସୋମ ଖାଇଣି ମତ୍ତ ହେଲେ ।
ସେ ଏଡ଼େ ରାଜାଙ୍କର କାଳ କାଳେ ବାଳ
ଧଇଲା ତୁମ୍ଭ ପୁତ୍ର ଅଟଇ ତା ବଳ ।
ଛାଡ଼ିବାକୁ ତୁମ୍ଭେ ଏହି ପୁତ୍ର ଶୋକକୁ
କହୁଥାଇଁ ଶୁଣ ଶିବିଙ୍କ ଚରିତକୁ ।
ଏକଇ ରଥକରେ ଶିବି ମହାରଥୀ
ସବୁ କ୍ଷତ୍ରିୟଙ୍କର ସରିଜିଲେ ବ୍ୟଥା ।
ଗ୍ରାମ ଅରଣ୍ୟରେ ଯେତେ ଥିଲେ ଯେତେ ପଶୁ
ତେତେକ ଗାଈ ଶିବି ଦେଲେ ଦେଇ ବସୁ ।
କାଳରେ ସେ ଯମଆଳକୁ କଲେ ସାହା
ଏହା ଶୁଣି ସୁତେ ନ ଭାଳ ନରନାହା ।
ଶକୁନ୍ତଳା ପୁତ୍ର ଯେ ଭରତ ନୃପତି
ସମୁଦ୍ରାନ୍ତ କରି ପାଳନା କରି କ୍ଷିତି ।
ସହସ୍ରେ ଅଶ୍ୱମେଧ ଶଏ ରାଜସୂୟ
କରିଲେ ଧର୍ମ ହୋଇବାକୁଟି ଉଦୟ ।
ପଦ୍ମକେ ଘୋଡ଼ା କଣ୍ୱଋଷିଙ୍କି ଦକ୍ଷିଣା
କରି ଦେଲେ ଭରତ ରାଜା ମହାମନା ।
ଧର୍ମ ଜ୍ଞାନ ଐଶ୍ୱର୍ଯ୍ୟ ବୈରାଗ୍ୟରେ ଜାଣ
କେହି ରାଜା ନୁହନ୍ତି ତାହାଙ୍କ ସମାନ ।
ତେଡ଼େ ରାଜାଟି ତ ଦଇବର ଆୟତ୍ତେ
ବସିଲେ ଯାଇକରି ଯମଙ୍କ ପୁରତେ ।

ଦଶରଥଙ୍କର ଶ୍ରୀରାମ ନାମେ ଶିଷ
ପିତା ବୋଲେ ଚଉଦବର୍ଷ ବନବାସ ।
ଶେଷ କରିଣ ଅଯୋଧ୍ୟାରେ ହେଲେ ରାଜା
ଧର୍ମକୁ ରକ୍ଷି କରି ପାଳିଲେ ସେ ପ୍ରଜା ।
ସେହି ସକାଶୁଁ ରୋଗର ବ୍ୟାଧି ଶତ୍ରୁ ଭୟେ
ନ ଜାଣିଲେ ସ୍ୱପନେ ଅଯୋଧ୍ୟାବାସୀଏ ।
କାଳ ଜାଣି ଇନ୍ଦ୍ର ବରଷା କଲେ ଜଳ
ମହୀ ହୋଇଲା ଧନ ଧାନ୍ୟରେ ସଙ୍କୁଳ ।
ଦଣ୍ଡପଦ କୋଡ଼ି ଓ କୁରାଡ଼ି ନ୍ତଶରେ
ରହିଲା ନ ରହିଲା ମାନବଙ୍କଠାରେ ।
ଗୁଣରୁ ନ ଖସିଲା କାହାରଟି ମନ
ଗୁଣୁଁ ଏକା ଖସେ ସାୟକ ଅବଛିନ୍ନ ।
ଦ୍ୱୀପୀପଦ ରହିଲା ସମୁଦ୍ରରଠାରେ
ନ ଜାଣିଲେ କେହି ତା ମହାବନାନ୍ତରେ ।
ଖେଳରେ ମାତ୍ର ଲୋକେ ହେଲେ ପାଶହସ୍ତ
ନୋହିଲେ କେହି ରାଜାଦଣ୍ଡେ ପାଶହସ୍ତ ।
ରାମ ରାଜ୍ୟ ଗୁଣେ ସଦମ୍ଭ ପଦ ନଈ
ସମ୍ପାଦିଲେ ଦାନରେ ତା ରହିଲା ନାହିଁ ।
ଏକାଦଶ ସହସ୍ର ବର୍ଷ ରାମ ମହୀ
ପାଳିଲେ ଅଯୋଧ୍ୟାରେ ହୋଇ ନରସାଇଁ ।
କାଳରେ ପୁଣି କାଳବଶ ସେ ହୋଇଲେ
ତୁମ୍ଭ ପୁଅ ସରି ତ ନୁହେ ତାଙ୍କ ତୁଲେ ।
ଭଗୀରଥ ମହୀମଣ୍ଡଳେ ହୋଇ ରଜା
ଧରମରେ ପାଳନା କରି ନିଜ ପ୍ରଜା ।
ସ୍ୱର୍ଗକାମନା ରଖି ଯାଗ ଯେବେ କଲେ
ତେବେ ସୋମ ପିଇଣ ଇନ୍ଦ୍ର ମତ୍ତ ହେଲେ ।
ବଳରେ ଅସୁରଙ୍କୁ କରିଣ ସଂହାର
ଭୋଗ କଲେ ସୁଖେ ଅମରାବତୀପୁର ।
ସହସ୍ର ସହସ୍ର କନ୍ୟାଙ୍କୁ ରତନରେ
ମଣ୍ଡି ବସାଇଲେ ରଥୁଟିମାନଙ୍କରେ ।
ରଥୁଟିମାନଙ୍କରେ ଶଏଗୋଟି ହାତୀ
ହାତୀଗୋଟିକରେ ସହସ୍ରେ ଘୋଡ଼ା ଥାନ୍ତି ।
ଘୋଡ଼ାଗୋଟିକରେ ଗାଈ ଯେ ଶତ ଦଶ
ଗାଈଗୋଟିକରେ ସହସ୍ରେ ଅଜମେଷ ।
ଦାନ ଦେଇ ଦ୍ୱିଜଜନଙ୍କୁ ଭଗୀରଥ
ଅରଜିଲେ ଯିବାକୁ ସୁଖ ସ୍ୱର୍ଗପଥ ।

ଭଗୀରଥଙ୍କର କୋଳରେ ଗଙ୍ଗା ବସି
ବୋଇଲେ ମୁଁ ତୁମ୍ଭର ଝିଅ ହେଲି ହସି ।
ସେ ବଳୁ ଭଗୀରଥି ଉର୍ବଶୀ ଯେ ନାମ
ହୋଇଲା ଜାଣ ଯୁଧିଷ୍ଠିର ନରୋତ୍ତମ ।
ଏ ରୂପେ କୀର୍ତ୍ତି ଧର୍ମ ଭଗୀରଥରାଣ
ଅରଜ କାଳବଶେ ପାଇଲେ ମରଣ ।
ଦିଲୀପ ରାଜା ପୂର୍ବେ ବହୁ ଯାଗ କଲେ
ଯାଗକେ ସୁନାର ସହସ୍ରେ ହାଣ୍ଡି ଦେଲେ ।
ତାହାଙ୍କର ଯାଗମାନଙ୍କେ ସୁନାଯୂପ
ପୋତାଇଲେ ଦ୍ୱିଜେ କରି ମନ୍ତ୍ରକୁ ଜପ ।
ଇନ୍ଦ୍ର ଆଦି ଦେବ ଗନ୍ଧର୍ବ ତାହା ଦେଖି
ନୃତ୍ୟ କଲେ ମଧ୍ୟରେ ହୋଇ ଅତି ସୁଖୀ ।
ବିଶ୍ୱାବସୁ ଗନ୍ଧର୍ବ ସଜାଡ଼ିଣ ଗୁଣା
ବଜାଇଲେ ରାଗ ସ୍ଥାପନା କରି ବୀଣା ।
ସେ ବୀଣାବାଦ୍ୟ ଶୁଣି ଯାଗ ସଭାଜନେ
ପୁଲକିତ ହୋଇ ପ୍ରଶଂସିଲେ ଅବିଚ୍ଛିନ୍ନେ ।
ଦିଲୀପଙ୍କୁ ଦେଖିଛୁ ଯାହାର ନୟନ
ତାହାର ଅନ୍ତକାଳେ ହେଲା ସ୍ୱର୍ଗସ୍ଥାନ ।
ଜ୍ୟା-ଘୋଷ ବେଦଧ୍ୱନି ଦିଅ ଦିଅ ସ୍ୱନ
ଦିଲୀପଙ୍କ ପୁରେ ପୂରିଲା ଅନୁକ୍ଷଣ ।
କାଳରେ ପୁଣି ଯମରାଜା ତାଙ୍କ ପ୍ରାଣ
ତୋଟି ଚପି କରି ନେଲା ପୁଣି ଆପଣ ।
ଯୁବନାଶ୍ୱ ଭ୍ରମେ ନ ଦେଖିଣ ରାତ୍ର୍ୟରେ
ପିଇଲେ ଦଧିଆଜ୍ୟ ପୁତ୍ର କାମନାରେ ।
ଗର୍ଭେ ଦସ୍ୟୁ ତାଙ୍କ ହୁଅନ୍ତେ ମରୁଦ୍ବୃନ୍ଦ
ଦେବେ ଯେ ପୁତ୍ର ଜନ୍ମାଇଲେ କୁକ୍ଷି ଭେଦ ।
ଯୁବନାଶ୍ୱ କୁକ୍ଷି ଭେଦଣ ଉତପତ୍ତି
ପୁତ୍ର ହେବା ଶୁଣି ଆସିଲେ ସୁରପତି ।
ଦେବେ ବୋଇଲେ ଏ କ କରିବ ଆହାର
ପିତୃ ଗର୍ଭୁ ଜାତ ତ ହୋଇଲା କୁମର ।
ଇନ୍ଦ୍ର ଏହା ଶୁଣି ଆପଣା ଅଙ୍ଗୁଳିକ
ଖୁଆଇଲେ ପୁତ୍ରର ଖାଇବା ପାଇଁକ ।
ବୋଇଲେ ଏହି ପୁତ୍ର ମୋତେ ତ ଖାଇଲେ
ଏ ଯେଣୁ ମାନ୍ଧାତା ଏ ବୋଲାଇବେ ଭଲେ ।
ବାର ଦିନରେ ବାଳୁ ବରଷିଆ ସର
ଖତ ଦିନରେ ହେଲେ ଯୁବା ଇନ୍ଦ୍ରପର ।

ଦିନକେ ଜଗତ ରାଜାଙ୍କୁ ବଶ କଲେ
ଲୋକରେ ଚକ୍ରବର୍ତ୍ତୀ ରାଜା ବୋଲାଇଲେ ।
ଶଏ ଯେ ଅଶ୍ୱମେଧ ଶଏ ରାଜସୂୟ
ସେ ନୃପ କରି ଅରଜିଲେ ପୁଣ୍ୟଚୟ ।
ଯୋଜନ ଦଶ ଲମ୍ବ ଯୋଜନେ ଉନ୍ନତ
ସୁନାର ମାଛମାନ ଦ୍ୱିଜେ କଲେ ଦତ୍ତ ।
ଏଡ଼ିକ ବଳୀୟାର ହୋଇଣ ମାନ୍ଧାତା
ମଲେ ଯେବେ ଘୋଟିଲା ମରଣ ଦେବତା ।
ଚକ୍ରବର୍ତ୍ତୀ ହୋଇ ଯେ ଯଯାତି ନୃପତି
ଶତ ବାଜପେୟ ସେ କଲେ ବହୁ ପ୍ରୀତି ।
ଏ ତାହାରେ ସହସ୍ର ଆନ ଯାଗ କଲେ
ଦେଇ ସୁନା ପର୍ବତ ଦ୍ୱିଜଙ୍କୁ ତୋଷିଲେ ।
ସହାର କରି ଯୁଦ୍ଧେ ରାକ୍ଷସ ଅସୁରେ
ଦାନ ଦେଲେ ପାଶରେ ଥିଲେ ଯେତେ ନରେ ।
ଶେଷେ ଜ୍ୟେଷ୍ଠ ପୁଅଙ୍କୁ ନିରାଶ ସେ କଲେ
କନିଷ୍ଠ ପୁତ୍ରଟିକି ରାଜପଦ ଦେଲେ ।
ନିଜର ଭାର୍ଯ୍ୟାଙ୍କୁ ସଙ୍ଗତରେ ଧରି
ବାନପ୍ରସ୍ଥେ ରହିଣ ଗଲେ ସ୍ୱର୍ଗପୁରୀ ।
ଅମ୍ବରୀଷ ରାଜା ସେ ଯେବେ ଯାଗ କଲେ
ଦଶଲକ୍ଷ ରାଜାଙ୍କୁ ସେବାରେ ରଖିଲେ ।
ଏଡ଼େ ରାଜାଟିକି ତ ନେଲା ଜନ୍ତୁରାଣ
ତୁମ୍ଭ ପୁତ୍ର ସୃଞ୍ଜୟ ଅଟେ ଅଳ୍ପ ପ୍ରାଣ ।
ଶଶବିନ୍ଦୁ ଲକ୍ଷେ କରିଣ ମହାଦେଈ
ଦଶଲକ୍ଷ ପୁତ୍ର ଥିଲେକ ଉପୁଜାଇ ।
ପୁଅ ଗୋଟିକରେ ଯେ କନ୍ୟା ଶଏଗୋଟି
କନ୍ୟା ଗୋଟିକରେ କୁଞ୍ଜର ଶଏଗୋଟି ।
ହାତୀ ଗୋଟିକରେ ଯେ ରଥ ଗୋଟି ଶଏ
ରଥ ଗୋଟିକରେ ଶଏ ପୁଣି ଘୋଡ଼ାଏ ।
ଘୋଡ଼ା ଗୋଟିକରେ ଯେ ଶଏଗୋଟି ଧେନୁ
ଧେନୁ ଗୋଟିକରେ ଶଏଟି ଅଜାସୁନୁ ।
ଦାନ ଦେଲେ ଅଶ୍ୱମେଧରେ ନରବର
ଦେଖିଲେ ତ ସେ ଯାଇଁ ଯମଙ୍କର ଘର ।
ଗୟରାଜା ଶଏ ବରଷ ଯାଗ କଲେ
ହୁତର ଅବଶେଷ ଖାଇଣ ରହିଲେ ।
ତୋଷ ହୋଇ ଅଗ୍ନି ଗୟଙ୍କୁ ଦେଲେ ବର
ଧର୍ମ ସତ୍ୟ ଧନ ବଢ଼ିବ ନିରନ୍ତର ।

ଏ ବାହାରେ ସହସ୍ରେ ବର୍ଷ ଅଶ୍ୱମେଧ
କରଣ ଗୟରାଜା ଚତ୍ତ କଲେ ବୋଧ ।

ଦନକରେ ଶତ ସହସ୍ର ଗାଈ ଦେଇ
ବପ୍ରଙ୍କର ମନ ତୋଷନ୍ତ ପ୍ରୀତି ବହି ।

ଦେବଙ୍କୁ ସୋମରସେ ସ୍ତ୍ରିଶଙ୍କି କାମରେ
ତୋଷି ପିତୃକୁଳକୁ ତୋଷିଲେ ଶ୍ରଦ୍ଧାରେ ।

ସୁନାରେ ମହୀଟାଏ କରାଇଣ ନର୍ଭ
ଦ୍ୱିଜଙ୍କୁ ଦାନ ଦେଲେ ଆପେ ହୋଇ ଉଭ ।

ଗଙ୍ଗାରେ ଯେତେ ବାଲି ଅଛି ରପ୍ୟେ ରହି
ତେତିକ ସେହି ଦାନଦେଲେ ଦ୍ୱିଜ ଗାଈ ।

ମୃତ୍ୟୁକାଳ ହୁଅନ୍ତେ ଏ ପୁଣ୍ୟ ତାଙ୍କର
ରଖି ନ ପାରନ୍ଧେଟି ଜାଣ ହେ ଶରୀର ।

ରନ୍ତିଦେବ ଇନ୍ଦ୍ରଙ୍କଠାରୁ ବର ପାଇ
ବହୁତ ଧନ ଅର୍ଜ ହେଲେ ନରସାଇଁ ।

ଗ୍ରାମ ଅରଣ୍ୟରେ ପଶୁ ଯେତେକ ଥିଲେ
ରନ୍ତିଦେବ ଯାଗକୁ ବଳେ ସେ ଆସିଲେ ।

ଯାଗବଧ ପଶୁଚର୍ମୁଁ ରସ ବହିଲା
ଚର୍ମଣ୍ୱତୀ ନାମେ ନଦୀ ସେ ଯେ ହୋଇଲା ।

ସ୍ୱସ୍ତିତ ଅତିଥିଙ୍କ ଭୋଜନ ପାଇଁ
ନିତ୍ୟ ବିଂଶ ସହସ୍ର ଗୋବଧ ହୁଅଇ ।

ଯାଗପାତ୍ର ଯେତେ ତାଙ୍କର ସବୁ ସୁନା
ନ ଥିଲେ ଜନେ ତହିଁ କେହି ପିନ୍ଧା କନା ।

ସେ ଗୟରାଜାଙ୍କର ପ୍ରାଣ ଜନ୍ତୁଗଣ
ହେନ ଗଲାଟି କାଳ ପାଶରେ ବାନ୍ଧିଣ ।

ସଗରଙ୍କ ଷାଠିଏ ସସ୍ର ପୁତ୍ର ହେଲେ
ସହସ୍ରେ ଅଶ୍ୱମେଧ ସେ ନୃପତି କଲେ ।

ଅଳଙ୍କାର ମଣ୍ଡିତ ନାରୀଙ୍କର ତୁଲେ
ଶତ ଶତ ଘର ସେ ଦ୍ୱିଜେ ଦାନ କଲେ ।

ଯାହାଙ୍କର କୀର୍ତ୍ତି ଅଟଇ ସାଗର
ଯେ ଦେଖି ଗଲେ ରାଜ୍ୟେ ଯମଙ୍କ ନଗର ।

ପୃଥୁ ରାଜା ହୁଅନ୍ତେ ବୃକ୍ଷ ନୋହି ମହୀ
ଧାନଗଛ ଲୋଟିଲେ ଫଳେ ଭରି ହୋଇ ।

ଗାଈମାନେ କଳସେ ଲେଖେଁ ଦୁଧ ଦେଲେ
ମାନବେ ରୋଗର ରୋଗ ପୀଡ଼ା ନ ଜାଣିଲେ ।

ସମୁଦ୍ର ପର୍ବତେ ପୃଥୁଙ୍କୁ ଦେଲେ ପଥ
ନୋହିଲାଟି କାହିଁ ଅଟକ ତାଙ୍କ ରଥ ।

ଲୋକଙ୍କୁ ପ୍ରଥିତ କରିବେ ଜାଣି ଭଲେ
ପୃଥୁନାମ ତାହାଙ୍କୁ ଋଷିମାନେ ଦେଲେ ।

କ୍ଷତରୁ ପ୍ରଜାଗଣେ କରିବାରୁ ତ୍ରାଣ
ସାର୍ଥକ କଲେ ସେ କ୍ଷତ୍ରିୟ ନାମ ଜାଣ ।

ଦ୍ୱି ଶତସହସ୍ର ଉଚ୍ଚ ସହସ୍ର ଯେ ସୁନା
ପର୍ବତ ଦାନ କଲେ ପୃଥୁ ମହାମନା ।

ଯେତେବେଳେ ଅଦୃଷ୍ଟ ହେଲା ତାଙ୍କ ବାମ
ସେତେବେଳେ ପରାଣ ଘେନଗଲେ ଯମ ।

ତୁମ୍ଭେ କମ୍ପା ସୃଞ୍ଜୟ ବସ ଶୋକ କର
ନ କହ କିଛି କଥା ମଉନକୁ ଧର ।

ସୃଞ୍ଜୟ ବୋଇଲେ ହେ ଆପଣଙ୍କ କଥା
ଶୁଣିକରି ଗୁଡ଼ିଲା ପୁତ୍ରଶୋକ ବ୍ୟଥା ।

ଏବେ ମୋର ଦୁଃଖ ଯାଇବ କେଉଁରୂପେ
ତହିଁକି ଯେ ଉଚିତ କହ ଋଷି ଆପେ ।

ନାରଦ ବୋଇଲେ ପର୍ବତ ତପୋବନ୍ତ
ଦେଇଥିଲେ ତୁମ୍ଭଙ୍କୁ ସ୍ୱର୍ଣ୍ଣଷ୍ଠୀବୀ ସୁତ ।

ସେ ସୁତକୁ ଏବେ ମୁଁ ଦେଉଛି ଯାଆଇ
ସୁଖୀ ହୁଅ ରାଜ୍ୟେ ଶୋକକୁ ଛାଡ଼ିଦେଇ ।

ଏହିଠାରେ ଷୋଡ଼ଶ ରାଜାଙ୍କ ଚରିତ
ସମାପତ କରିଲେ ସତ୍ୟବତୀ ସୁତ ।

—୦—

## ନାରଦ ଓ ପର୍ବତ କଥା

ଯୁଧିଷ୍ଠିର ବୋଇଲେ ସୃଞ୍ଜୟଙ୍କ ସୁତ
କାହିଁକି ସ୍ୱର୍ଣ୍ଣଷ୍ଠୀବୀ ହେଲେ ତା କହ ତ ।

ପର୍ବତ ଋଷି କମ୍ପା ଏ ସୁତକୁ ଦେଲେ
ଯେ ପୁତ୍ର କ ହେଉରୁ ଯମକୁ ଦେଖିଲେ ।

ନାମେ ସ୍ୱର୍ଣ୍ଣଷ୍ଠୀବୀ କ ସତେ ସ୍ୱର୍ଣ୍ଣଷ୍ଠୀବୀ
ଏହା ମୋତେ କହିବା ହେବ କୃଷ୍ଣ ଭାବି ।

ଶ୍ରୀକୃଷ୍ଣ ବୋଇଲେ ହେ ନାରଦ ପର୍ବତ
ମାମୁ ଭଣଜା ଏ ବୋଲନ୍ତି ସର୍ବମତ ।

ନରଲୋକେ ବିହାର କରିବାକୁ ଦୁହେଁ
ଆଇଲେ ଅବନୀକି ଅତ୍ୟନ୍ତ ସେନେହେ ।

ସେ ଦୁହେଁ ସତ୍ୟ କଲେ ଯାହା ବିଚାରିବା
ତାହାକୁ ଦୁହେଁଯାକ କୁହାକୋହି ହେବା ।

ଏହା ନୋହିଲେ ହେବ ଶାପ ଦିଆଦେଇ
ଜାଣିଥାଆ ଏଥିରେ ସନ୍ଦେହଟି ନାହିଁ ।

ଏ ରୂପରେ ନିୟମ କରି ଦୁଇ ଋଷି
ସୃଞ୍ଜୟନୃପ ପାଶେ ପ୍ରବେଶିଲେ ଆସି ।
ବୋଇଲେ ଆହେ ନୃପବର ତୁମ୍ଭ ପାଶେ
ରହିବୁ ଆମ୍ଭେ ଦୁହେଁ ତୁମ୍ଭ ହିତ ଆଶେ ।
ରାଜା ବୋଇଲେ ମୋ ଏ କଥା ହେଲା ଭାଗ୍ୟ
ରହ ମୋର ପାଶେ ହେ ଋଷି ମହାଭାଗ୍ୟ ।
ସୃଞ୍ଜୟ କହିବାରେ ଋଷି ସନମତେ
ତାଙ୍କ ଝିଅ ଋଷିଙ୍କି ସେବିଲେ ନିରତେ ।
ନାରଦ ନୃପକନ୍ୟା ସଉନ୍ଦର୍ଯ୍ୟ ଦେଖି
ମଦନ-ଶର ଘାତେ ହେଲେ ଅତି ଦୁଃଖୀ ।
ନାରଦ ଏ କଥା ନ କହି ପର୍ବତଙ୍କୁ
ରଖିଲେ ଆପଣାର ଲଜ୍ଜା ହୋଇବାକୁ ।
ତପରେ ପର୍ବତ ନାରଦ ଚେଷ୍ଟା ଜାଣି
ଶାପ ଦେବାର ପାଇଁ ଧରି କୁଶପାଣି ।
ବୋଇଲେ ତୁମ୍ଭ ଆମ୍ଭେ ସତ୍ୟ କରିଥାଇଁ
ମୋତେ ଏବେ ଗୁପତେ କଲ କାହିଁପାଇଁ ।
ତପୋବଳେ ମୁହିଁ ଜାଣିଲି ତୁମ୍ଭ ଚିତ୍ତ
ହୋଇଛି ଏ ନୃପତି ଦୁହିତାରେ ମତ୍ତ ।
ଏହି ସକାଶରୁ ମୋର ଶାପକୁ ଯୋଗ୍ୟ
ହୋଇଲେ ଆହୋ ଜାଣ ଋଷି ମହାଭାଗ
ଏହି କନ୍ୟାକୁ ମନ କରିଅଛ ତୁମ୍ଭେ
ଭାର୍ଯ୍ୟା ହେବ ଏହାକୁ ବୋଲୁଅଛୁ ଆମ୍ଭେ ।
ଏ ତୁମ୍ଭଙ୍କୁ ମର୍କଟ ପରି ଦେଖୁଥିବ
ଏ ଶାପ ତୁମ୍ଭଙ୍କୁ ମୁଁ ଦେଲି ରହିଦେବ ।
ନାରଦ ବୋଲେ ତପ ବ୍ରତ କରୁଥିଲେ
ସ୍ୱର୍ଗକୁ ଯାଇ ନ ପାରିବ ତୁମ୍ଭେ ଭଲେ ।
ଏହିରୂପେ ଅନ୍ୟୋନ୍ୟ ଶାପ ଦିଆଦେଇ
ହୋଇକରି ସେଠାରୁ ଗଲେ ଋଷି ଦୁଇ ।
ପର୍ବତ ନାରଦଙ୍କ ଶାପକୁ ପାଇଲେ
ସ୍ୱର୍ଗକୁ ନ ଯାଇ ସେ ମହୀରେ ବୁଲିଲେ ।
ନାରଦ ସୃଞ୍ଜୟଙ୍କ ଝିଅ ବିଭା ହୋଇ
ବିହରିଲେ କାମରେ ମହାସୁଖ ପାଇ ।
ନାରଦଙ୍କ ବାନର ରୂପ ନେତ୍ରେ ଦେଖି
ବିମୁଖ ନୋହିଲା ସେ ସୁରୁଚନ୍ଦ୍ର ମୁଖୀ ।
ପର୍ବତ ବୁଲୁ ବୁଲୁ ନାରଦଙ୍କୁ ଦିନେ
ଆହେ ଯୁଧିଷ୍ଠିର ନିରେଖିଣ ନୟନେ ।

ବୋଇଲେ ମୋର ଦୋଷ ମାମୁଁ କ୍ଷମାକର
ସ୍ୱର୍ଗ ଯିବା ଅନୁଜ୍ଞା ଦିଅ ଋଷିବର ।
ନାରଦ ବୋଇଲେ ଭଣଜା ହୋଇ ତୁମ୍ଭେ
ଦେବାରୁ ଶାପ ଆଗେ ପଛେ ଦେଲୁଁ ଆମ୍ଭେ ।
ଅନ୍ୟୋନ୍ୟରେ ଏବେ ଶାପକୁ ନିବର୍ତ୍ତାଇ
ରହିବା ଯେଖା ସ୍ଥାନେ ମହାସୁଖେ ଯାଇ ।
ଏହା ଶୁଣି ପର୍ବତ ବୋଲେ ଯେଉଁରୂପେ
ବୋଲୁଅଛ ଆପଣ ହେଉ ସେହିରୂପେ ।
ତହୁଁ ସୁକୁମାରୀ ନାରଦ ରୂପ ଦେଖି
ନୋହେ ମୋ ପତି ବୋଲି ଭାବେ ହୋଇଦୁଃଖୀ
ପର୍ବତ ବୋଇଲେ ନାରଦ ଋଷିବର
ତୁମ୍ଭର ପତି ଏ ଗୋ ଭୟ ଦୂର କର ।
ଏ ବାହାରେ ଶାପର କାରଣ କହିଲେ
ଶୁଣି ସୁକୁମାରୀ ସୁନ୍ଦରୀ ସୁଖୀ ହେଲେ ।
ନାରଦ କନ୍ୟା ଘେନି ନିଜ ସ୍ଥାନେ ଆସି
ରହିଲେ, ପରବତ ହେଲେ ସ୍ୱର୍ଗବାସୀ ।
ବହିଛନ୍ତି ଆଗେ ସେ ନାରଦ ଗୋସାଇଁ
ସ୍ୱର୍ଣ୍ଣଷ୍ଠୀବୀ ପ୍ରସଙ୍ଗ ପୁଚ୍ଛ ନରସାଇଁ ।
ଏହା ଶୁଣିଣ ଯୁଧିଷ୍ଠିର ନରୋତ୍ତମ
ପଚାରିଲେ ଋଷିଙ୍କି ସ୍ୱର୍ଣ୍ଣଷ୍ଠୀବୀ ଜନ୍ମ ।

—*—

## ସ୍ୱର୍ଣ୍ଣଷ୍ଠୀବୀ ଜନ୍ମ ବୃତ୍ତାନ୍ତ

ନାରଦ ବୋଇଲେ କହିଲେ କୃଷ୍ଣ ଯାହା
ସତ୍ୟ ତାହା ଜାଣ ପାଣ୍ଡବ ନରନାହା ।
ଅବଶିଷ୍ଟ ଆଜ ତୁମ୍ଭର ପ୍ରଶ୍ନମତେ
କହୁଅଛୁଁ ଶୁଣ ପାଣ୍ଡବ ନରପତେ ।
ଯେବେ ମୁଁ ପର୍ବତଙ୍କୁ ଘେନି ସଙ୍ଗତରେ
ପ୍ରବେଶ ହେଲି ସୃଞ୍ଜୟଙ୍କ ପୁରତରେ ।
ତେବେ ତାଙ୍କଠାରୁ ଉଚିତ ପୂଜା ପାଇ
ତାଙ୍କ ଘରେ ରହିଲୁ ସୁଖେ ଆମ୍ଭେ ଦୁଇ ।
ଏ ରୂପେ କେତେ କାଳ ଯାନ୍ତେ ନରସାଇଁ
ଭଣଜା ବୋଇଲେ ମୋ ମୁଖକୁ ଅନାଇଁ ।
ସୃଞ୍ଜୟଙ୍କ ଗୃହରେ ଆମ୍ଭେ ବାସ କରି
ତାଙ୍କର ଶୁଭ କିଛି ନ ଥାଇ ଆଚରି ।
ମୁଁ ବୋଇଲି ଭଣଜା ରାଜାଙ୍କୁ ହେ ବୋଲି
ଆମ୍ଭେ ଦେବା ଯା ଇଚ୍ଛା କରିବେ ଭୂପାଳ ।

ମୋ ବଚନ ଶୁଣି ପର୍ବତ ମହାଋଷି
ସୃଞ୍ଜୟ ନୃପତିଙ୍କି କହିଲେକ ହସି ।
ଯା ଇଚ୍ଛା ହେଉଛି ତା ମାଗ ନୃପବର
ଦେବୁଁ ତ ଆମ୍ଭେ ସତ୍ୟ ବଚନ ଆମ୍ଭର ।
ସୃଞ୍ଜୟ ବୋଇଲେ ମୁଁ ତୁମ୍ଭ ଦୁହିଁଙ୍କର
ସନ୍ତୋଷରୁ ଏବେ ପାଇଲି ସବୁ ବର ।
ପୁଣି ପରବତ ବୋଇଲେ ନରସାଇଁ
ମାଗ ବର ଯେ ଇଚ୍ଛା ମନେ ଅଛି ହୋଇ ।
ସୃଞ୍ଜୟ ବୋଇଲେ ବୋଲୁଛ ଋଷି ଯେବେ
ଯେ ଇଚ୍ଛା ହେଉଛି ମାଗୁଛି ତାହା ତେବେ ।
ଇନ୍ଦ୍ରଙ୍କର ପରି ଯଶସ୍ୱୀ ବଳବନ୍ତ
ହୋଇ ମୋ ଭାର୍ଯ୍ୟା ଆଡ଼େ ହେଉ ଏକ ସୁତ
ପର୍ବତ ବୋଲେ ଇନ୍ଦ୍ରଙ୍କଦ୍ୱେଷ ଚିତ୍ତ ।
ଥିବାରୁ ଅଳ୍ପାୟୁଟି ହୋଇବ ସେ ସୁତ ।
ସ୍ୱର୍ଣ୍ଣଷ୍ଠୀବୀ ନାମକୁ ସେ ପୁତ୍ର ବହିବ
ତା ନିଷ୍ଠୀବନୁ ଜାଣ ସ୍ୱର୍ଣ୍ଣ ଉପୁଜିବ ।
ଇନ୍ଦ୍ରଙ୍କ ସକାଶୁଁ ପାଇବ ପିଲା ଭୟ
ସେଥିକି କରିଥିବ କରଣ ଉପାୟ ।
ସୃଞ୍ଜୟ ବୋଇଲେ ହେ କ୍ଷୀଣଅୟୁ ହୋଇ
ପୁତ୍ର ହେଲେ ମୋହର ତାହା ଲୋଡ଼ା ନାହିଁ ।
ଯେବେ ପୁତ୍ର ମୋତେ ଦେଉଛ ତପୋବନ୍ତ
ହୋଇ ସେ ହୋଇଥାଉ ଦୀର୍ଘାୟୁରେ ଯୁତ ।
ପର୍ବତ ଇନ୍ଦ୍ରଙ୍କର ସ୍ନେହ ମନେ ଘେନି
ନୃପତିଙ୍କି କଥା ନ କହି ହେଲେ ତୁନି ।
ରାଜା ତାହା ଜାଣିଣ ହୋଇଲେ ବିରସ
ତା ଶୁଣି ତାଙ୍କୁ ମୁଁ କହିଲି ଧରି ହାସ ।
ମୁଁ ବୋଇଲି ସେ ପୁତ୍ର ମରିଗଲେ ମୁହିଁ
ଜୀଇ ଦେବି କିଛି ନ ଭାଳ ନରସାଇଁ ।
ସୃଞ୍ଜୟ ଏହା ଶୁଣି ସନ୍ତୋଷ ହୋଇଲେ
ଅମ୍ଭଙ୍କୁ ଯାଅ ବୋଲି ଘରକୁ ସେ ଗଲେ ।
ପର୍ବତଙ୍କ ବଚନେ କିଛି କାଳ ଅନ୍ତେ
ହେମରୂପେ ସୃଞ୍ଜୟ ଜାତ କଲେ ସୁତେ ।
ଜଳ ମଧ୍ୟେ ପଦ୍ମ ବଢ଼ିଲା ହେ ଯେସନେହୋଇ
ସେ କୁମର ବଢ଼ିଲା ହେ ପାଣ୍ଡବସାଇଁ ।
ସେ ପୁତ୍ର ନିତି ଯେ ଛେପ ପକାଉ ଉର୍ଦ୍ଧ୍ୱରେ
ସୁନା କରି ଘରେ ତା ରଖନ୍ତି ସେ ନେଇ ।
ଇନ୍ଦ୍ର ସେ ପୁତ୍ର ଜନ୍ମ ଜାଣି ଭୟ କଲେ
ବୃହସ୍ପତି ମଧ୍ୟ ତା ଛିଦ୍ରକୁ ଜଗିଲେ ।
ବଜ୍ର ଆୟୁଧକୁ ବୋଇଲେ ପୁରନ୍ଦର
ବାଘରୂପେ ସୃଞ୍ଜୟ ପିଲା ତୁମ୍ଭେ ମାର ।
ବଢ଼ିଲେ ସେ ହୋଇବ ନିଶ୍ଚେ ଇନ୍ଦ୍ରହନ୍ତା
ବୋଲିଛନ୍ତି ପର୍ବତ ଏଣୁ କରେ ଚିନ୍ତା ।
ଇନ୍ଦ୍ରଙ୍କ ବଚନକୁ ବଜ୍ରାସ୍ତ୍ର ଘେନିଲେ
ସେ କୁମାରର ଛିଦ୍ରକାଳକୁ ଜଗିଲେ ।
ସୃଞ୍ଜୟ ରାଜା ପୁତ୍ର ପାଇ ସୁଖୀ ହୋଇ
କୁଟୁମ୍ବକୁ ଘେନି ରହିଲେ ବନେ ଯାଇ ।
ବନେ ସେ ବାଳକଟି ଧାଈକୁଳ-ମେଳ
ପାଇ ଆରମ୍ଭିଲା ସେ ବନମଧ୍ୟେ ଖେଳ ।
ବଜ୍ର ତ ବାଘରୂପ ଧରି ବନେ ଥିଲେ
ମାଡ଼ି ବସି ପିଲାର ବେକକୁ ମୋଡ଼ିଲେ ।
ଧାଈଏ ତାହା ଦେଖି ହୋଇଣ ଚାଟକା
ମଲା ପୁଅ ବୋଲି ଉଚ୍ଚେ କଲା ଡକା ।
ଧାଈଙ୍କର ଏ ଡକା ଶୁଣି ନୃପକାନେ
ଦଉଡ଼ି ଉଠି ସେଠାକୁ ଆସିଲେ ବହନେ ।
ଦେଖିଲେ ପଡ଼ିଅଛି ପୁଅ ମୃତ୍ୟୁ ପାଇ
ପୁଅକୁ କୋଳେ ଧରି କାନ୍ଦିଲେ ସେ ଯାଇ ।
ସୃଞ୍ଜୟଙ୍କ ଭାରିଯାମାନେ ଯେତେ ଥିଲେ
ସୃଞ୍ଜୟଙ୍କ କାନ୍ଦୁଣି ଶୁଣିଣ ଆସିଲେ ।
ପୁତ୍ରର ମରଣକୁ ନୟନରେ ଦେଖି ।
ଲୋତକରେ ସମସ୍ତେ ପୂର୍ଣ୍ଣ କଲେ ଆଖି ।
ସୃଞ୍ଜୟ ମୋର ବାଣୀ ସୁମରି ମାନସେ
ମୋତେ ସୁମରିଲେ ସେ ମାନସ ହରଷେ ।
ସୃଞ୍ଜୟଙ୍କର ସୁମରଣା ମୁହିଁ ଜାଣି
ତାଙ୍କ ସମୀପରେ ମିଳିଲି ସେହିକ୍ଷଣି ।
କହିବା ଶ୍ରୀକୃଷ୍ଣଙ୍କ ଚରିତ ତୁମ୍ଭଙ୍କୁ
କହିଲି ମୁଁ ଦୃଷ୍ଟାନ୍ତ ଦେଖାଇ ତାହାଙ୍କୁ ।
ତେବେ ତାଙ୍କ ଶୋକ ତ ଶାନ୍ତ ନ ଦେଖିଲି
ଇନ୍ଦ୍ରଙ୍କର ସମ୍ମତେ ପୁତ୍ର ଜୀଆଇଲି ।
ଯାହା ସକାଶରୁ ଯେ ଯୋଗ ଥାଏ ରାୟ
ତା ହେଉଥାଏ ବୃଥା ନ କାନ୍ଦ ଗୁଡ଼ାଏ ।
ସ୍ୱର୍ଣ୍ଣଷ୍ଠୀବୀ ବାବୁ ଅନ୍ତରେ ହୋଇ ରାଜା
ଏଗାର ଶତ ବର୍ଷ ପାଳିଲେ ପରଜା ।

ଦେବ-ପିତୃମାନଙ୍କୁ ଯାଗଶ୍ରାଦ୍ଧେ ତୋଷି
କାଳବଶେ ହୁଣି ସେ ହେଲେ ସ୍ୱର୍ଗବାସୀ ।
ଆହେ ଯୁଧିଷ୍ଠିର ଶୋକକୁ ନିବର୍ତ୍ତାଅ
ଶୋକ କଲେ ନିକ ଜୀଇବେ ଜ୍ଞାତି ପୁଅ ।
ରାଜା ହୋଇ ଏବେ ପାଳନା କର ପ୍ରଜା
ଅନ୍ତକାଳେ ତୁମ୍ଭଙ୍କୁ ପୂଜିବେ ଦ୍ୱିଜୋଜା ।

—*—

## ବ୍ୟାସ ଓ ଯୁଧିଷ୍ଠିରଙ୍କ ଉକ୍ତି ପ୍ରତ୍ୟୁକ୍ତି

ବେଦବ୍ୟାସ ବୋଇଲେ ପିଣ୍ଡୁ ପିତାମହ
ଧର୍ମକୁ ପାଳ ଯୁଧିଷ୍ଠିର ଛାଡ଼ କୋହ ।
ବ୍ରାହ୍ମଣଠାରେ ଧର୍ମ ରହିବାକୁ ନିତି
ପାଳନା କରୁଥିବ ଯେ ହେବ ନୃପତି ।
ବ୍ରାହ୍ମଣର ଧର୍ମକୁ ବୁଡ଼ାଏ ଯେ ନର
ତାହାକୁ ଦଣ୍ଡିବ ନ ଯୁକ୍ତି ନରବର ।
ପ୍ରମାଣ କଥାକୁ ଯେ ଅପ୍ରମାଣ ବୋଲେ
ରଜାର ଦୋଷ ନାହିଁ ତାର ପ୍ରାଣ ନେଲେ ।
ଧର୍ମକୁ ଯେଉଁ ରାଜା ନ ରଖଇ ନିତି
ଅନ୍ତକାଳେ ତାର ନରକ ହୁଏ ଗତି ।
ଧର୍ମେ ପ୍ରଜାପାଳଇ ଦୁଷ୍ଟର ଦମନ
ଦାନ ନୃପତିଙ୍କ ପ୍ରକୃତି ଧର୍ମ ଜାଣ ।
ଧର୍ମହନ୍ତା ଜନକୁ କର ଯୁଦ୍ଧେ ନାଶ
କାହିଁପାଇଁ ହୃଦେ ଶୋକକୁ ଦିଅ ବାସ ।
ଯୁଧିଷ୍ଠିର ବୋଇଲେ ରାଜ ଲୋଭୀ ହୋଇ
ଅବଧକୁ ଯେ ବଧ କରାଇଲି ମୁହିଁ ।
ଏହି ସକାଶୁ ରାଜ୍ୟେ ରାଜା ହୋଇବାକୁ
ଆସଇ ନାହିଁ ଜାଣ ମୋର ମାନସକୁ ।
ବ୍ୟାସ ବୋଇଲେ ହେ ଅସାଧୁ ସାଧୁକର୍ମ
କରିବାର ଲୋକର ସେ ଈଶ୍ୱରଧର୍ମ ।
ପରଶୁରେ ଗଛ କାଟିଲେ ପରଶୁର
ଯେଉଁରୂପେ ପାପ ନୁହଇ ନରବର ।
ସେ ରୂପରେ ଈଶ୍ୱର ଆଯୁତ୍ତରେ ଲୋକେ
ମାରୁଛନ୍ତି ଲୋକଙ୍କୁ ସିଦ୍ଧେ କର୍ମା ନର୍କେ ।
କ୍ଷତ୍ରିୟକୁଳେ ଜନ୍ମି କ୍ଷତ୍ରି ବୃତ୍ତି କର
ମରିବ କପାଁ ବୋଲୁଅଛ ଦଣ୍ଡଧାରୀ ।
ପାତକ ଗଲେ ଲୋକେ କରେ ପ୍ରାୟଶ୍ଚିତ୍ତ
ଦେହ ଗଲେ କି ରୂପେ କରିବ କହ ତ ।
ପାତକରେ ପ୍ରାୟଶ୍ଚିତ୍ତ ଯେ ନ କରଇ
ମରିଲେ ନରକରେ ଯାଇ ସେ ପଡ଼ଇ ।
ଯୁଧିଷ୍ଠିର ବୋଇଲେ ରାଜ୍ୟ ଲୋଭେ ନାହିଁ
ଜ୍ଞାତି ମିତ୍ର ପୁତ୍ର ବନ୍ଧୁଙ୍କୁ ଯେ ମରାଇ ।
ଅଛୁ ତ ଏଥୁ ଗତି କି ହେବ ମୋହର
ଏହା ମୋତେ ବିସ୍ତାର କହ ଋଷିବର ।
ନୃପତିରେ ହୀନ ତ ହେଲା ବସୁନ୍ଧରା
ଏ ସକାଶୁଁ ଶୋକେ ମୁଁ ହେଉଛୁ ଅଧିରା ।
ପୁତ୍ର ଗୃହସ୍ଥରେ ହୀନ ହୋଇଣ ନାରୀ
ଦେଖି ମରୁଛନ୍ତି ମୋ ଆଗେ ଡକାପାରି ।
ଏ ଯେନ ଏହାଙ୍କର ହୋଇଲେ ମରଣ
ହୋଇବ ସ୍ତ୍ରୀହତ୍ୟା ମୋର ଋଷିଗଣ ।
ଅଧଃଶିର ହୋଇ ନରକେ ପଡ଼ିବାକୁ
ଲେଖିଛୁ ମୋତେ ବିହି କହୁଛୁ ତୁମ୍ଭଙ୍କୁ ।
ଏହି ଭୟରେ ସିନା ତପ କରି ମୁହିଁ
ଦେହ ଛାଡ଼ିଦେବି କହୁଛୁ ଋଷିସାଇଁ ।
ଆଶ୍ରମବାସୀଙ୍କ ବିଶେଷ ଧର୍ମମାନ
ମୋ ଆଗରେ କହତ ବ୍ୟାସ ତପୋଧନ ।
ବ୍ୟାସ ବୋଇଲେ ହେ କ୍ଷତ୍ରିୟ ଧରମକୁ
ଛାଡ଼ି କରି ନ ଭଜ ଏ ଦୁଃଖଦଶାକୁ ।
କ୍ଷତ୍ରିୟମାନେ ଯେଖା ଧର୍ମେ ହେଲେ ହତ
ତହିଁକି ବିକଳ ତ ନୁହଇ ଉଚିତ ।
ତୁମ୍ଭର ଭୁଲେ ତୁମ୍ଭ ଭାଇମାନେ ମରି
ନାହାନ୍ତି କାଳ ତାଙ୍କ ପ୍ରାଣ ନେଲା ହରି ।
ନାଶକୁ ହେତୁ ମାତ୍ର ଅଟଇ ମନୁଷ୍ୟ
କାଳ ହରୁଅଛନ୍ତି ସବୁର ଆୟୁଷ ।
କାଳସ୍ୱରୂପଟି ତ ଅଟନ୍ତି ମୁରାରି
କାଳକୁ ଲୋକ ନ ପାରଇ ଆନ କରି ।
କି ପାତକ କରି ସେ ଅଳପ ବୟସେ
ମଲେ ଏହା ବିଶ୍ବର ସ୍ୱଜନ ମାନସେ ।
ତେବେ ସିନା ଜାଣିବା ପଣକୁ ତୁମ୍ଭର
ସୁନ୍ଦର ବିଶିବ ପାଣ୍ଡବ ନରବର ।
କାଳ ସବୁ ପ୍ରାଣୀଙ୍କି ଯନ୍ତ୍ରରେ କୁଣ୍ଢାଇ
ନଚାଇଲା ପରାୟେ ନଚାଉ ଅଛଇ ।
ଯେବେ ଚିତ୍ତେ ତୁମ୍ଭର ପାତକ ଆଭାସୁଛୁ
ତେବେ ତ ପ୍ରାୟଶ୍ଚିତ୍ତ କର ମୁଁ ବୋଲୁଛୁ ।

ଦେବ ଦାନବେ ତ ଅଟଇ ସମ୍ପ୍ରେ ଭାଇ
ମହାମର ହୋଇଛନ୍ତି ରାଜଶ୍ରୀ ପାଇଁ ।
ଦେବ ଦଇତମାନଙ୍କୁ କରିଣ ସଂହାର
ଭୋଗ କରୁଅଛନ୍ତି ସୁଖେ ସ୍ୱର୍ଗପୁର ।
ସେକାଳେ ଅଷ୍ଟଅଶୀ ସହସ୍ର ବ୍ରାହ୍ମଣେ
ଦାନବପକ୍ଷ ହୋଇ ପ୍ରବର୍ତ୍ତିଲେ ରଣେ ।
ଏହେତୁ ସେମାନେ ବୋଲାଇ ଶଳାବୃକ
ଥିଲେ; ତାଙ୍କ ପରାଣ ନେଲେ ଦେବଲୋକ ।
ଲେଖିଛନ୍ତି ଅଧର୍ମପ୍ରବର୍ତ୍ତକ ଲୋକ—
ମାନଙ୍କୁ ଯେ ମାରଇ ଲଭଇ ସେ ନର୍କ ।
ବ୍ରାହ୍ମଣ ହୋଇବ ଯେବେ ହେବ ଦୁଷ୍ଟ ନଷ୍ଟ
ତାକୁ ମଧ୍ୟ ମାରିବ ହୃଦେ ହୋଇ ହୃଷ୍ଟ ।
କୁଳପାଇଁ ଗୋଟିକୁ କଲେହିଁ ବିନାଶ
ରାଷ୍ଟ୍ରପାଇଁ କୁଳ ନାଶିଲେ ନାହିଁ ଦୋଷ ।
ଅଧର୍ମ କେଉଁଠାରେ ଧର୍ମ ବୋଲାଉଛି
ସେହିରୂପେ ଧରମ ଅଧର୍ମ ହେଉଛି ।
ଦେବତାମାନଙ୍କର ମାର୍ଗ ଅନୁସରି
ଅଛ ହେ ତୁମ୍ଭେ କୁରୁମାନଙ୍କୁ ସଂହାରି ।
ଏଥିରେ ଦୋଷ କିଛି ଦିଶୁ ନାହିଁ ମୋତେ
ତୁମ୍ଭେ କପାଇଁ ଚିନ୍ତା କରୁଅଛ ଚିତ୍ତେ ।
ସୋଦର ଭାଇମାନେ ଦୁଃଖ କରୁଛନ୍ତି
ବଚନେ ତାଙ୍କୁ ତୋଷ କର ହେ ନୃପତି ।
ଆଗ ସେ ତୁମ୍ଭଠାରେ କରିବାରୁ ଦୋଷ
ପଛନ୍ତେ ତୁମ୍ଭେ ସିନା କଲ ତାଙ୍କୁ ନାଶ ।
ଯେବେ ବା ଅନୁତାପ କରୁଛ ନୃପତି
ଅଶ୍ୱମେଧ ଯାଗକୁ କର ବହି ପ୍ରୀତି ।
କ୍ଷତ୍ରିୟମାନଙ୍କର ପୁତ୍ର ନାତି ଭାଇ
ଯେ ଅଛନ୍ତି ତାହାଙ୍କୁ କର ମହୀସାଇଁ ।
ଯାହାର ପୁତ୍ର ଅବା ବୟସେ ବାଳକ
ବୋଧି ରାଜ୍ୟେ ତାକୁ କରାଅ ଅଭିଷେକ ।
ପୁତ୍ରାଭାବେ କନ୍ୟାକୁ ଅଭିଷିକ୍ତା କର
ସେ ହେଲେ ନିପୁଣା ବଢ଼ିବ ବଂଶ ତାର ।
ଏରୂପେ ସବୁ ରାଜ୍ୟ କରି ସଂସ୍ଥାପନା
କର ଅଶ୍ୱମେଧ ପାଣ୍ଡବ ମହାମନା ।
ହିଷ୍ଟାଶ୍ଚକ ହୋଇଣ ବାଳ୍ମୁବଳେ ମନ୍ତ୍ରୀ
ଅଟଜିଛ ଏହା ନ ଘୁଞ୍ଜ ନଇଁପାଇଁ ।

—※—

## ପ୍ରାୟଶ୍ଚିତ୍ତ ବୁଦ୍ଧି

ଯୁଧିଷ୍ଠିର ବୋଇଲେ କେଉଁ କର୍ମ କଲେ
ପ୍ରାୟଶ୍ଚିତ୍ତ ଯୋଗ୍ୟ ନୃପତି ହୋଏ ଭଲେ ।
ବ୍ୟାସ ବୋଇଲେ ହେ ବିହିତକର୍ମ ଛାଡ଼ି
ନିଷେଧକର୍ମ ଜନେ ଯେ ରହଇ ବୁଡ଼ି ।
ସେହି ଲୋକଙ୍କୁ ଲେଖିଅଛି ପ୍ରାୟଶ୍ଚିତ୍ତ
ମୋ କହିବାରୁ ଏହା ଜାଣ ନୃପସୁତ ।
କୁନଖୀ ବୃଥା ପଶୁଘାତି ଗ୍ରାମଘାତି
ନିୟମ ଉଲ୍ଲଂଘନକାରୀ ଶ୍ୟାମଦନ୍ତୀ ।
ସ୍ତ୍ରୀ ଦ୍ୱିଜ ଖ୍ୟାତି ଉଦଯ୍ୱାସ୍ତଶାୟୀ
ଗୁରୁଜନବିରୋଧୀ ଯେ ମାଂସବିକ୍ରୟୀ ।
ଅଗ୍ନିତ୍ୟାଗୀ ବ୍ରତଭଞ୍ଜନ ଓ ନିନ୍ଦୁକ
ପ୍ରତାରକ ଅପାଙ୍କେ ବେଦସମ୍ପର୍କ ।
ଗୃହଦାହୀ ବୃତ୍ତିଭୋଗୀ ଯେ ଅଧ୍ୟାପକ
ପାପୀ ବୋଲନ୍ତି ଏ ଜାଣ ହେ ନରଶିଖ ।
ଜ୍ୟେଷ୍ଠଭାଇ ବିବାହ ନୋହୁଁ ସାନଭାଇ
ବିଭା ହେଲେ ପାତକୀ ହୁଅନ୍ତି ସେ ଦୁଇ ।
ଅକାର୍ଯ୍ୟ ଯେଉଁ କଥା ବୋଲାଏ ସଜନ
ତାକୁ କହିବା ଏବେ ଶୁଣ ଦେଇ ମନ ।
ସ୍ୱଧର୍ମ ତ୍ୟାଗ ପରଧର୍ମ ଅନୁଷ୍ଠାନ
ଶରଣ-ଅରକ୍ଷଣ ଅଯାଜ୍ୟ ଯାଜନ ।
ତିର୍ଯ୍ୟଗ୍‌ଯୋନି ସଂହାର ଅଭକ୍ଷ୍ୟ ଭକ୍ଷଣ
ସବରସବିକ୍ରୟୀ ଭୃତ୍ୟ ଅପୋଷଣ ।
ନିଜ ସ୍ତ୍ରୀ ଗର୍ଭେ ନ କରିବା ବୀର୍ଯ୍ୟଦାନ
ଗୋବ୍ରାହ୍ମଣ ଦେହାର ଗୁରୁସ୍ତ୍ରୀ ଗମନ ।
ଦାନ ଦେଇ କରି ଦକ୍ଷିଣା ନ ଦେବାର
ବାବୁ ତୁଲେ ବିବାଦ ଦ୍ୱିଜେ ଅତ୍ୟାଚାର ।
ଏମାନଙ୍କୁ ଅକାର୍ଯ୍ୟ ବୋଲି କରି କହି
ଜାଣ ଯୁଧିଷ୍ଠିର ପାଣ୍ଡବ ନରସାଇଁ ।
ଯେଉଁ କରମ କଲେ ନ ଲାଗଇ ପାପ
ତା କହିବା ତୁମ୍ଭଙ୍କୁ ଯୁଧିଷ୍ଠିର ନୃପ ।
ବିଶୁଦ୍ଧ ଦ୍ୱିଜକୁଳେ ଜନ୍ମ ହୋଇଥିବ
ଶସ୍ତ୍ର ଧରି ମାରିଲେ ତାହାକୁ ମାରିବ ।
ତହିଁରେ ବ୍ରହ୍ମହତ୍ୟା ଦୋଷ ନାହିଁ କିଛି
ମୁନିଙ୍କ ସମ୍ମତରେ ଶାସ୍ତ୍ର କହୁଅଛି ।

ଅଜ୍ଞାନେ ପ୍ରାଣକ୍ଷୟେ ସୁରା ଯେବେ ଦ୍ୱିଜ
ପିଏ, ସଂସ୍କାରେ ପୁଣି ପାଏ ବ୍ରହ୍ମତେଜ ।
ଗୁରୁ ବୋଲେ ଗୁରୁ-ଭାରଜା ହରଇ ।
ତାହାକୁ ତ ପାତକ ଛୁଇଁ ନ ପାରଇ ।
ଉଦ୍ଦାଳକ ଶିଷ୍ୟଙ୍କ ଆଜ୍ଞେ ଶ୍ୱେତକେତୁ
ସୁତ ଜାତ କଲେ ନୃପତି କର ହେତୁ ।
ଗୁରୁପାଇ ସ୍ନେହ କରିଲେ ଦୋଷ ନାହିଁ
ବ୍ରହ୍ମସ୍ୱ ଛାଡ଼ ଆପକାଳେ ନରସାଇଁ ।
ମରଣେ ବିବାହେ ସୁରତେ ଗୁ ରୁକାର୍ଯ୍ୟେ-
ବିପଦ୍ୟେ ମିଥ୍ୟା ନୁହେ ଦୋଷ ଧର୍ମରାଜ ।
ସ୍ୱପନେ ରତିଭୋଗ ହୁଅଇ ଯାହାର
ବ୍ରତଭଙ୍ଗ ଦୋଷଟି ନୁହଇ ତାହାର ।
ଜ୍ୟେଷ୍ଠଭାଇ ପତିତ ତପ ବୃତ୍ତି କଲେ
ଦୋଷ ନାହିଁଟି ସାନଭାଇ ବିଭା ହେଲେ ।
କାମାର୍ତ୍ତ ହୋଇ ରତି ମାଗେ ଯେଉଁ ନାରୀ
ତାହାର ଭୋଗେ ଦୋଷ ନୁହେ ଦଣ୍ଡଧାରୀ ।
ଯାଗାଦିରେ ଯେ ଘେନେ ପଶୁର ପରାଣ
ତାହାକୁ ଦୋଷ ନ ଲାଗଇ ନରରାଣ ।
ତୀର୍ଥସ୍ଥଳେ ଅଯୋଗ୍ୟ ବ୍ରାହ୍ମଣଙ୍କୁ ଦାନ
ଦେଲେ ଧରମ ଲୋପ ନୁହଇ ରାଜନ ।
ବ୍ୟଭିଚାରିଣୀ ସ୍ତ୍ରୀ ଛାଡ଼ିଲେ ଦୋଷ ନାହିଁ
କହନ୍ତି ବସି ସକଳ ଋଷିମାନେ ।
ସୋମରସ ତତ୍ତ୍ୱ ଜାଣି ବିକେ ଯେ ନର
ଛୁଇଁ ନ ପାରେ କେବେ ପାପ ତା ଶରୀର ।
କାର୍ଯ୍ୟରେ ଅନିପୁଣ ଯେ ଭୃତ୍ୟ ଅଛଇ
ତାହାକୁ ପରିତ୍ୟାଗ କଲେ ଦୋଷ ନାହିଁ ।
ଗାଈ ଚରିବାକୁ ଯେ ପୋଡ଼େ ବନ ଯାଇ
ଅନ୍ୟାୟରେ ସେ କଥା ଲେଖାଯାଏ ନାହିଁ ।
ଦୋଷଥିବା ଲୋକଙ୍କୁ ପ୍ରାୟଶ୍ଚିତ୍ତ କଥା
କହିବା ଶୁଣ ଯୁଧିଷ୍ଠିର ମହାରଥା ।
ତପ ଦାନ ଯଜ୍ଞେ ଯେ ପାପ ନାଶ ଯାଏ
ସେ କର୍ମ କଲେ ପୁଣି ପାପ ବଢ଼େ କାୟେ ।
ବ୍ରହ୍ମ ହତ୍ୟା ପାପକୁ ଯେ ନର କରିବ
ମାରିବା ବ୍ରାହ୍ମଣର କପାଳ ବହିବ ।
ଭିକ୍ଷା ମାଗିଣ ଥରେ କରିବ ଭୋଜନ
ଭୂଇଁ ମାଟିଦେଶରେ କରିବ ଶୟନ ।

ଏ ବାଟାରେ କରିବ ବ୍ରହ୍ମଚର୍ଯ୍ୟ ବ୍ରତ
କହୁଥିବା ବ୍ରାହ୍ମଣ ମୁଁ କରିଛି ହତ ।
ଏ ରୂପେ ବାର ବର୍ଷେ ସଂସାରେ ବୁଲିବ
ତେବେ ସେ ବ୍ରହ୍ମହତ୍ୟା ଦୋଷରୁ ତରିବ ।
ଅଥବା ବ୍ରହ୍ମଘାତୀ ଇଚ୍ଛାରେ ତାହାର
କ୍ଷତ୍ରିୟଙ୍କୁ ବୋଲିବ ଶସ୍ତ୍ରେ ମୋତେ ମାର ।
ଇଚ୍ଛାସୁଖରେ ଅବା ଜାଳି କରି ନିଆଁ ।
ତାର ମଧ୍ୟଦେଶେ ହୋଇବ ଯାଇ ଠିଆ ।
ନୋହିଲେ ଜପ କରି କେଉଁ ବେଦ ମନ୍ତ୍ର
ତିନିଶ ଯୋଜନ ଭ୍ରମିବ ପାଣ୍ଡୁସୁତ ।
ଏ ତିନୋଟି କଥା ଯେ ନ ପାରିବ କରି
ଦେବ ସବୁ ଧନ ବ୍ରାହ୍ମଣେ ଡାକକରି ।
ଧନେ ଲୋଭ କଲେ ଛଅଟି ବରଷ
କୃଚ୍ଛ୍ର ବ୍ରତେ କରିବ ବ୍ରହ୍ମହତ୍ୟା ନାଶ ।
ତିନି ତିନି ଦିନ ତ୍ରିକାଳରେ ଭୋଜନ
କରିଣ ତହିଁ ଅଯାଚିତ ଦ୍ରବ୍ୟେ ଜାଣ ।
ତିନିଦିନ ପୁଣି ତ୍ରିଦିନ ଅନାହାରେ
ରହିବା କୃଚ୍ଛ୍ର ବ୍ରତ ବୋଲିଏ ଲୋକରେ ।
ଅବା ତିନି ମାସ ପ୍ରଥମ ସପ୍ତାହରେ
ପୂର୍ବାହ୍ନରେ ଦ୍ୱିତୀୟରେ ସନ୍ଧ୍ୟା ସମୟରେ ।
ତୃତୀୟରେ ଅଯାଚିତ ଯେ ଦ୍ରବ୍ୟମାନ
ଖାଇବ ଚତୁର୍ଥରେ ହେବ ଅନଶନ ।
ଏମନ୍ତେ ହେବ ବ୍ରହ୍ମହତ୍ୟାରୁ ମୁକତ
ତିନି ବରଷରେ ଜାଣ ହେ ନରନାଥ ।
ପ୍ରଥମେ ମାସେ ଖାଇ ପୂର୍ବାହ୍ନ କାଳରେ ।
ଦ୍ୱିତୀୟମାସଯାକ ସାୟାହ୍ନ ବେଳରେ ।
ତୃତୀୟମାସ ଅଯାଚିତ ଭୋଜନରେ
ରହିବ ଚତୁର୍ଥେ କେବଳ ଅନାହାରେ ।
ତେବେ ବରଷକେ ଏ ପାପ କ୍ଷୟ ହୁଏ
ଜାଣ ତୁମ୍ଭେ ହେ ଯୁଧିଷ୍ଠିର ନରରାୟେ ।
ମାସାଧିକ ରହିଲେ କରି ଅନାହାର
ପାତକ୍ଷୟ ନିଶ୍ଚୟେ ହୁଏ ନରବର ।
ଅଶ୍ୱମେଧଯାଗକୁ ପାରେ ଯେବେ କରି
ତେବେ ବ୍ରହ୍ମହତ୍ୟାରୁ ହୁଅଇ ସେ ପାରି ।
ଅଶ୍ୱମେଧଯାଗ ଯେ ଅବଭୃଥ ସ୍ନାନ
ଆସି କଲେ ପାପ ନ ଛୁଏଁ ଅଘଘ୍ନ ।

ଦ୍ୱିଜ ପ୍ରାଣରକ୍ଷାର୍ଥେ ଯୁଦ୍ଧେ ଯେ ମରଇ
ତାହାଙ୍କୁ ବ୍ରହ୍ମହତ୍ୟା ଦୋଷ ନ ଲାଗଇ ।
ଲକ୍ଷେ ଗାଈ ଉତ୍ତମ ଦ୍ୱିଜେ ଦେଲେ ଦାନ
ବ୍ରହ୍ମହତ୍ୟା ପାତକ ହୁଏ ବିନାଶନ ।
ପଚିଶ ସହସ୍ର ଯେ କପିଳା ଗାଈ ଦିଏ
ବ୍ରହ୍ମହତ୍ୟା ଧ୍ୱଂସନ କରଇ ସେ ରାଏ ।
ଦରିଦ୍ର ସାଧୁ ନ ଖାଇ ଯେ ମରୁଥିବ
ସହସ୍ର ଗାଈ ତାକୁ ଦେଲେ ତରିଯିବ ।
କାମ୍ବୋଜ ଦେଶ ଘୋଡ଼ା ଶଏଟି ଦ୍ୱିଜଙ୍କୁ
ଦାନ ଦେଲେ ନାଶିବ ବ୍ରହ୍ମହତ୍ୟାକୁ ।
ଶ୍ରୁତ୍ରେ ଦାନ କରି ଯାଚକ-ବାଞ୍ଛା ପୂର୍ତ୍ତି
କରିଲେ ବ୍ରହ୍ମହତ୍ୟା ହୁଅଇ ଧ୍ୱଂସନ ।
ବ୍ରାହ୍ମଣ ମଦ୍ୟପାନ କରି ଯେବେ ଥାଏ
ତପ୍ତ ମଦ୍ୟ ପାନେ ତାର ସେ ଦୋଷ ଯାଏ ।
ଅଗ୍ନିରେ ଦେହଦାହ ଗିରିରୁ ପତନ
ମହାପ୍ରସ୍ଥାନେ ପାପ ହୋଏ ବିମୋଚନ ।
କିବା ବୃହସ୍ପତିସୂତ୍ର ଯାଗକୁ କଲେ
ପାନଦୋଷ-ପାତକ ନାଶ ହୁଏ ଭଲେ ।
ମଦ୍ୟପାନ କରିଣ ଦେଲେ ଭୂମିଖଣ୍ଡ
ଦ୍ୱିଜ ଯେ ନ ଭୋଗଇ ଜାଣ ଯମଦଣ୍ଡ ।
ଗୁରୁଦାରାଙ୍କୁ ଯେ ଭୋଗ କରିଥିବ
ତପତଲୁହା ପ୍ରତିମାକୁ ପୋଟାଳିବ ।
ନୋହିଲେ ଲିଙ୍ଗଟିକ ପକାଇବ କାଟି
ଚାଲିଯିବ ଉପରକୁ କରିଣ ଦୃଷ୍ଟି ।
କ୍ଷୋଭୁ ଗାଈ ଯୁଦ୍ଧରେ ମରଇ ଯେ ଯାଇ ।
ଗୁରୁପତ୍ନୀ ଦଣ୍ଡ ଯେ ତାକୁ ନ ଲାଗଇ ।
ନ ଖାଇ କରୁ ଏକମାସ ମହାବ୍ରତ
କଲେ ଲୋକ ହୁଅଇ ପାପରୁ ମୁକତ ।
ନୋହିଲେ ସର୍ବସ୍ୱ ଦ୍ୱିଜରେ ବିତରଣ
କଲେ ଗୁରୁପତ୍ନୀ-ହରଣୁଁ ତରେ ଜନ ।
ଗୁରୁଠାରେ ଦୋଷ କରଇ ଯେ ରାଏ
ଗୁରୁ-ପ୍ରିୟ କାର୍ଯ୍ୟ କଲେ ସେ ଦୋଷ ଯାଏ ।
ବ୍ରତବ୍ରତଭଙ୍ଗମ ଗାଈଚର୍ମ ପିନ୍ଧି
ବ୍ରହ୍ମଚର୍ଯ୍ୟ ଛମାସ କଲେ ଲଭେ ଶୁଦ୍ଧି ।
ପରସ୍ତ୍ରୀ ପରଧନ ହରିବା ମନୁଷ୍ୟ
କରିବା ସମ୍ବତ୍ସରେ ବ୍ରତରେ ହବିଷ ।
ପରଧନ ଲୋକ ଯେତିକା ହରିଥାଏ
ସେତିକ ଦେଲେ ଲୋକ ପାପୁଁ ମୁକ୍ତ ହୋଏ ।
ବାରଦିନ କୃଚ୍ଛ୍ର ପରିବେତ୍ତା ପରିବେତ୍ତି
କରିଲେ ପୁନ ଦେବା ପିଣ୍ଡକୁ ପାଆନ୍ତି ।
ସ୍ତ୍ରୀ ଶିଠାରେ ପରପୁରୁଷ ଶଙ୍କା ହେଲେ
ରଜା ହେବା ଯାଏ ଛାଡ଼ିବ ତାକୁ ଭଲେ ।
ଖାଦ୍ୟ ପାନ ଉଚ୍ଛିଷ୍ଟ ଗୋଘ୍ରାଣ ଦୂଷିତ
ହେଲେ ଦଶ ଦ୍ରବ୍ୟରେ ହୁଅଇ ପବିତ୍ର ।
ପଞ୍ଚଗବ୍ୟ ମୃତ୍ତିକା ଭସ୍ମ ଅମ୍ଳଜଳ
ଅଗ୍ନି ଏହି ଦଶ ପଦାର୍ଥ ମହୀପାଳ ।
ବ୍ରହ୍ମହତ୍ୟାଠାରୁ ଯେ କଂସା ପରଯନ୍ତେ
ପ୍ରାୟଶ୍ଚିତ୍ତ ଯେତେ କହିଲି ମହୀପତେ ।
ଚାରିପାଦ କରିବ ଧର୍ମାର୍ଥ ବ୍ରାହ୍ମଣ
କ୍ଷତ୍ରିୟାଦି ତିନ ଦ୍ୱିଜ ଏକ ପାଦ ଜାଣ ।
ତିର୍ଯ୍ୟଗ୍‌ଯୋନି ଜନ୍ତୁ ପ୍ରାଣୀଙ୍କି ଯେ ମାରଇ
ରହିବ ସେହି ତିନରାତ୍ର ବାତ ଖାଇ ।
ବୃଷକଟା ନଗର ମଧ୍ୟ ଏହି ବ୍ରତ
ଲେଖିଅଛନ୍ତି ସକଳ ଶାସ୍ତ୍ରେ ପ୍ରାୟଶ୍ଚିତ୍ତ ।
ଅଗମ୍ୟାସ୍ତ୍ରୀ-ଜନଠାକୁ ଯେ ଗମଇ
ଛମାସ ଓଦା ପିନ୍ଧି ହୋଇ ଭସ୍ମଶାୟୀ ।
ଶତରୁଦ୍ରୀ ପଠନ କଲେ ପାପ କ୍ଷୟ ।
ହୁଅଇ ଯୁଧିଷ୍ଠିର ଜାଣ ହେ ନିଶ୍ଚୟ ।
କ୍ଷତ୍ରିୟ ଦ୍ୱିଜ ବୈଶ୍ୟ ସାବିତ୍ରୀ ଜପିବେ
ଶୂଦ୍ରଠାରେ ଏକଥା କେବେ ନ ସମ୍ଭବେ ।
ଶୁଦ୍ଧସ୍ଥାନେ ରହି ଯେ ସାବିତ୍ରୀ ଜପଇ
ସମସ୍ତ ପାତକରୁ ଅଚିରେ ତରଇ ।
ବ୍ରତ କରିଲା ଲୋକ ସ୍ତ୍ରୀ ଶିଶୁ ଶୂଦ୍ର ଜନ
ପତିତକୁ କେଭେ ନ କହିବ ବଚନ ।
ଯେବେ ବା ଏମାନଙ୍କୁ କହିବ ଅଜାଗେ
ରହିବ ତିନଦିନ ଯାଇ ଜଳଭାଗେ ।
ପୁଣ୍ୟ କରମ କରୁଥାଏ ଯେଉଁ ନର
ପାତକ ଛୁଇଁ ନ ପାରଇ ତା ଶରୀର ।
ମହାପାତକକୁ ଛାଡ଼ିଣ ସବୁ ପାପ-
ମାନଙ୍କୁ ବ୍ରତ କଲେ କରିପାରେ ଲୋପ ।
ଶିଶୁ ମୂଢ଼ ଅନ୍ତ୍ୟଜ ଜାତି ସମ୍ବନ୍ଧରେ
ଏ ନିୟମ ଭଜନ ଖଟି ତ ନ ପାରେ ।

ଜ୍ଞାତକୃତ ପାପରୁ ଦୈବକୃତ ପାପ
ଲଘୁଟି ଅଟଇ ହେ ଯୁଧିଷ୍ଠିର ନୃପ ।
କ୍ଷତ୍ରିୟ ସ୍ୱଧର୍ମ ଅବା ପ୍ରାଣରକ୍ଷା ପାଇଁ ।
ଦୁଷ୍ଟଙ୍କୁ ବଧ କଲେ ପାପ ଲାଗେ ନାହିଁ ।
ନୋହିଲେ ଗ୍ଲାନ ଏଥେଁ ତେଜ ନରବର ।
ପ୍ରାୟଶ୍ଚିତ୍ତ କରଣ ରାଜ୍ୟ ଭୋଗକର ।
ଯୁଧିଷ୍ଠିରରାଜା ଏରୂପେ ବ୍ୟାସ-ବାଣୀ
ଶୁଣିକରି ବ୍ୟାସଙ୍କୁ ପଚାରିଲେ ପୁଣି ।
କେଉଁ ଦ୍ରବ୍ୟ ଭକ୍ଷ ବା ଅଭକ୍ଷ ଅଟଇ
ଦାନର ପାତ୍ରାପାତ୍ର କାହାକୁଟି କହି ।
ଦାନ ମଧ୍ୟେ ପ୍ରଶସ୍ତ ଅଟେ କେଉଁ ଦାନ ।
ବିସ୍ତାରି ତାହା କହ ମୋତେ ତପୋଧନ ।
ବେଦବ୍ୟାସ ବୋଇଲେ ମନୁ ଯା ସିଦ୍ଧଙ୍କୁ ।
କହିଅଛନ୍ତି ତାହା କହିବା ତୁମ୍ଭଙ୍କୁ ।
ଆଦିକାଳେ ମନୁଙ୍କୁ ବ୍ରହ୍ମ ଋଷିଗଣ
ପୁଚ୍ଛିଲେ ବିଶେଷେ କହ ଦାନ ଅଧ୍ୟୟନ ।
ତପସ୍ୟା କାର୍ଯ୍ୟାକାର୍ଯ୍ୟ କେମନ୍ତ ପ୍ରକାର
ପବିତ୍ର ବିଧି ଦାନପାତ୍ର ସମାଚାର ।
କହିଲେ ମନୁ ଆହେ ପ୍ରିୟ ଋଷି ଗଣ
କହୁଥାଇ ତାହାକୁ ମନ ଦେଇ ଶୁଣ ।
ପୁଣ୍ୟଶୀଳା ନଦୀ ଯେ ସ୍ଥଳେ ବହୁଥାଏ
ଯହିଁ ରହିଥାନ୍ତି ସାଧୁ ମୁନି ଋଷିଏ ।
ତହିଁ ଜପ ହୋମ ଉପାସ ଆତ୍ମଜ୍ଞାନ
ସାଧନା ତପସ୍ୟାରେ ପୂତ ହୋନ୍ତି ଜନ ।
ସାମାନ୍ୟ ପାପେ ସ୍ୱର୍ଣ୍ଣ ବା ଆଜ୍ୟ ପ୍ରାଶନ
ସ୍ୱର୍ଣ୍ଣାଦି ରତ୍ନରେ ଧୌତ ଜଳେ ସ୍ନାନ ।
ଦେବସ୍ଥାନ ପୁଣ୍ୟ ପର୍ବତ ଦର୍ଶନ
କଲେଟି ସୁପବିତ୍ର ହୋନ୍ତି ନରଗଣ ।
ଦୀର୍ଘକାଳ ବଞ୍ଚିବା ଆଶା ଯାର ଥିବ
କାହାକୁ ସେ ଅବଜ୍ଞା କେବେ ନ କରିବ ।
ଅଜ୍ଞାନେ କଲେ ତିନିରାତ୍ର ଉଷ୍ଣ ପାଣି
ପିଇଣ କୃଚ୍ଛ୍ରବ୍ରତ କର ନୃପମଣି ।
ସତ୍ୟ ଦାନ ତପସ୍ୟା ଅହିଂସା ଅଧ୍ୟୟନ
ଅକ୍ରୋଧ ଦେବପୂଜା ଧର୍ମର ଲକ୍ଷଣ ।
ମାତ୍ର ଏ ଧର୍ମ ଦେଶକାଳ-ବିଶେଷରେ
ଅଧର୍ମରୂପେ ହୁଏ ଗଣ୍ୟ ଲୋକରେ ।

ତ୍ରିତତ୍ତ୍ୱେ ମିଥ୍ୟା ହିଂସାଦି ଅଧର୍ମ ।
ପ୍ରାଣସଂଶୟାଦି ବିଷୟେ ହୁଏ ଧର୍ମ ।
ପ୍ରାଜ୍ଞ ଲୋକ ପକ୍ଷେ ଏ ଧର୍ମାଧର୍ମ ସିନା
କରିବାକୁ ହୁଅଇ ବିଜନ ଗଣନା ।
ଏ ଧର୍ମାଧର୍ମ ପୁଣି ବୈଦିକ ଲୌକିକ
ଭେଦେ ହୁଏ ଦୁଇ ପ୍ରକାର ନରଶିଖ ।
ବୈଦିକ ଧର୍ମ ବେଦବିହିତ କରମ
ଲୌକିକ ଧର୍ମ ସଦାଚାର ଆଚରଣ ।
ଦଇବ, ଶାସ୍ତ୍ରଉକ୍ତ କର୍ମ, ନିଜ ପ୍ରାଣ
ପିତା ମାତା ପ୍ରଭୁର ଅନୁରୋଧେ ଜାଣ ।
ଅନ୍ୟାୟ କାର୍ଯ୍ୟ କଲେ ନ ହୁଅବେ ଦୋଷ
ଧର୍ମଶାସ୍ତ୍ରେ ଏ କଥା ହୋଇଛି ପ୍ରକାଶ ।
ଧର୍ମ ବିଷୟରେ ସଂଶୟ ହେଲେ ମନେ
କରିବ କର୍ମ ପଚାରିଣ ବିଜ୍ଞଜନେ ।
ବୃକ୍ଷ କୀଟ ମୃତ୍ତିକା-ପିପୀଳିକା ବିଷ
ବ୍ରାହ୍ମଣର ଅଭକ୍ଷ ଜାଣ ନରଈଶ ।
କାତି ନ ଥିବାର ମାଛକୁ ବ୍ରାହ୍ମଣ
ନ ଖାଇବ ବୋଲି ଲେଖିଛି ଶାସ୍ତ୍ର ଜାଣ ।
କଚ୍ଛପ ଛଡ଼ା ମଣ୍ଡୁକାଦି ଚତୁଷ୍ପଦ
ଜଳଜନ୍ତୁ ବ୍ରାହ୍ମଣ ଭକ୍ଷଣେ ନିଷିଦ୍ଧ ।
ବକ ଚକ୍ରବାକ ସୁପର୍ଣ୍ଣ କାକ ହଂସ
ମଦଗୁ ଗୃଧ୍ର ଶ୍ୟେନ ପେଚକ ଯେ ଭାସ ।
ମାଂସାଶୀଦଂଷ୍ଟ୍ରୀ ଚତୁଷ୍ପଦ ସଙ୍ଗ ପକ୍ଷୀ
ବ୍ରାହ୍ମଣର ଅଭକ୍ଷ ଶାସ୍ତ୍ରେ ଅଛି ଲେଖି ।
ବିଆଣ ଦଶଦିନ ନ ଯିବାର ଗାଈ
ନାଗ ମେଷୀ ଉର୍ଦ୍ଧ୍ୱ ଉଷ୍ଟ୍ରୀ ମୃଗୀ ଏହି ।
ଦୁଗ୍ଧମାନ ଅପେୟ ଅଟେ ବ୍ରାହ୍ମଣର
ପିଇଲେ ଦୋଷ କଷ୍ଟେ ହୁଏ ନରବର ।
ପ୍ରେତାନ୍ନ ସୂତକାନ୍ନ ବ୍ରାହ୍ମଣ ଭୋଜନ
କଲେ ଶୂଦ୍ରର ପରି ହୁଏ ହୀନମାନ ।
ରାଜଅନ୍ନ ଖାଇଲେ ତେଜ ହାନି ହୋଏ
ସୁନାରୀ-ବିଧବାର ଅନ୍ନେ ଆୟୁ ଯାଏ ।
ଶୂଦ୍ରାନ୍ନରେ ବେଦଅଧ୍ୟୟନ ପ୍ରତିଷ୍ଠ
ଯାଏ ଯେ ବ୍ରାହ୍ମଣର ଯେଣ ଦେହ-ତ୍ରାଣ ।
କ୍ଷୁଦ୍ରଗ୍ରାହୀ ଅନ୍ନ ବିସ୍ତାର ସଙ୍ଗେ ଯାଏ
ବେଶ୍ୟା ଅନ୍ନ ହୋଏ ବୀର୍ଯ୍ୟର ନାଶକାରୀ ।

ନାରୀବଶ ପତି ପୁରକୁ ଭ୍ରଷ୍ଟା ଦେବା
ଲୋକ ଅନ୍ନ ଖାଇଲେ ପାପ କି କହିବା ।
ଯକ୍ଷ୍ମାଗ୍ରସିତ ବୈଦ୍ୟ କୃପଣ ବଢ଼ାଇ
ଚର୍ମକାରେ ଧୋବା ସୋମରସବିକ୍ରୟୀ ।
ପୁଂଶ୍ଚଳୀ ନାରୀ ନଗରରକ୍ଷକ ଜନ
ପରବେତ୍ତି ଶଠ ଯେ ଜୁଆରୀର ଅନ୍ନ ।
ଦ୍ୱିଜ କଲେ ଭୋଜନ ତାର ମୁକ୍ତି ନୋହେ
ନରକରେ ଯାଇ ସେ ଘୋର କଷ୍ଟ ସହେ ।
ଗଣାନ୍ନ ଗ୍ରାମ୍ୟ ଦୂଷିତ ବ୍ୟକ୍ତିର ଅନ୍ନ
ଉଚିତ ନୁହେ ତାହା କରିବା ଗ୍ରହଣ ।
ବିକାରି କରେ ଧରି ଆଣି ଅନ୍ନ ଥାଳି
ଭୋଜନ ନ କରିବ କେବେ ବୁଦ୍ଧଶାଳୀ ।
ପ୍ରର୍ଯ୍ୟୁଷିତ ଅନ୍ନ ନ କରିବ ଭୋଜନ
କଲେ ତହିଁରୁଟି ପାତକ ହୋଏ ଜାଣ ।
ପିଷ୍ଟକ ଆଖୁ ଦଧି ଆଦି ସବୁ ଶାକ
ଉଖୁଡ଼ା ଖଜା ଫଳ ମୂଳ ଘୃତପାକ ।
ଏମାନେ ବାସୀ ହେଲେ ନ କରିବ ତ୍ୟାଗ
କହିଅଛନ୍ତି ଏହା ପଣ୍ଡିତ ସମାଜ ।
ଖେଚଡ଼ି କ୍ଷୀରି ପିଠା ମାଂସ ଦେବତାକୁ
ନ ଦେଇ ଦ୍ୱିଜ ନ କରିବ ଭୋଜନକୁ ।
ଭୋଜ୍ୟକୁ ଯୁକ୍ତ ଯେଉଁ ସାମଗ୍ରୀ ହୋଇବ
ଦେବ ପିତୃ ଅତିଥି ଦେଇ ତା ଭୁଞ୍ଜିବ ।
ନୃତ୍ୟ ଗୀତ ପରିହାସ୍ୟକାରୀ ବ୍ରାହ୍ମଣଙ୍କୁ
ଲେଖିଅଛଇ ଶାସ୍ତ୍ର ଦାନ ନ ଦେବାକୁ ।
ଭୟଯୋଗେ କୀର୍ତ୍ତି-ବାଞ୍ଛାରେ ଦେଲେ ଦାନ
ତାର ସେ ଦାନ ବ୍ୟର୍ଥ ହୋଇଯାଏ ଜାଣ ।
ମୋଦକଖିଆ ବୈଦ୍ୟ ଜ୍ୟୋତିଷ ବାତୁଳ
ନ ଦେବ ଦାନ ଏମାନଙ୍କ କରତଳ ।
ନିନ୍ଦୁକ ଚୌର ମୂକ ବାମନ ଦୁର୍ଜ୍ଜନ
ଦୁଷ୍କୁଳ-ଜାତ ବ୍ରତହୀନ-ଦ୍ୱିଜଜନ—
ମାନଙ୍କୁ ଜାଣି ଯେହୁ ଦିଅଇଟି ଦାନ
ଅରଜଇ ଇଚ୍ଛାରେ ସେ ଦୁଷ୍କୃତ ଜାଣ ।
ଦେବଲୋକ ଯେଉଁବା ଲୋକ ଅଲଗଡ଼
ହେଲେ ତହିଁ ଉପୁଜେ ପାତକଟି ବଡ଼ ।
ନ ଜାଣି ବେଦକୁ ଯେ ପ୍ରତିଗ୍ରହ କରେ
ନିଅନ୍ତି ତାକୁ ବାନ୍ଧି ଯମଙ୍କ କଙ୍କରେ ।

ନିର୍ମନ୍ତ୍ର ବ୍ରତହୀନ ମୂର୍ଖ କ୍ରୋଧୀ ହୀନ
ବ୍ରାହ୍ମଣଙ୍କୁ ଦାନ ଦୟାରେ ଦେବ ଜାଣ ।
ବ୍ରାହ୍ମଣ ଯେବେ ବେଦାଧ୍ୟୟନ ନ କରେ
ନାମ ମାତ୍ର ରହେ ବ୍ରାହ୍ମଣ ବଚନରେ ।
କାଷ୍ଠମୟ ଯେ ହସ୍ତୀ ଚର୍ମମୟ ମୃଗ
ପରାୟେ ସେ ବ୍ରାହ୍ମଣ ଅଟେ ମହାଭାଗ ।
ମୂର୍ଖ ବ୍ରାହ୍ମଣଙ୍କୁ ହେ ଦାନ କରନ୍ତିଏ
ତାହା ଯେ ପାଉଁଶରେ ଆହୁତି ପରାୟେ ।
ମୋହଠାରୁ ତ ମନୁ ସିଦ୍ଧଙ୍କ ସମ୍ବାଦ
ଶୁଣିଲ ଯୁଧିଷ୍ଠିର ଏବେ ପାଅ ମୋଦ ।
ଯୁଧିଷ୍ଠିର ବୋଇଲେ ରାଜଧର୍ମ ସ୍ଥିର
ବର୍ଣ୍ଣଧର୍ମ ମୋତେ କହ ତ ତପସ୍ୱୀର ।
ଧର୍ମ ରାଜ୍ୟ ଦୁହେଁ ତ ଅତ୍ୟନ୍ତ ବିରୁଦ୍ଧ
ଏ ସକାଶୁଁ ରାଜ୍ୟେ ମୋ ନ ଉପୁଜେ ବୋଧ
ବେଦବ୍ୟାସ ବୋଇଲେ ଗଙ୍ଗାଙ୍କ ନନ୍ଦନ
ଭୀଷ୍ମଙ୍କୁ ପଚାରିଲେ କହିବେ ଏମାନ ।
ବୃହସ୍ପତିଠୁଁ ଭୀଷ୍ମ ପଢ଼ି ରାଜନୀତି
ଇନ୍ଦ୍ରାଦି ବେଦ ତହୁଁ ମଧ୍ୟ ଶିଖିଛନ୍ତି ।
ଶୁକ୍ରଯେତେକ ଶାସ୍ତ୍ର ଲେଖିଛନ୍ତି ସ୍ୱୟେ
ରହିଛନ୍ତି ସେ ଶାସ୍ତ୍ର ଭୀଷ୍ମଙ୍କ ହୃଦୟେ ।
ବଶିଷ୍ଠ ଚ୍ୟବନ ଯେ ସନତକୁମାର
ଶିଷ୍ୟ ଗୁରୁ ଅଟନ୍ତି ଜାଣ ଭୀଷ୍ମଙ୍କର ।
ମାର୍କଣ୍ଡେୟଙ୍କର ମୁଖରୁ ଯତିଧର୍ମ
ଶିଖିଅଛନ୍ତି ଭୀଷ୍ମ ନରଙ୍କ ଉତ୍ତମ ।
ପର୍ଶୁରାମ ଇନ୍ଦ୍ରଙ୍କଠାରୁ ଅସ୍ତ୍ର ପାଇ
ଭୀଷ୍ମଟି ସାଧି କଲେ ସେ ବଳେ ଏ ମହୀ ।
ଭୀଷ୍ମଙ୍କୁ ଅବହିତ ହୋଇ ଶାସ୍ତ୍ର ପୋଥା
ନାହିଁ ଏ ମହୀରେ ରାଜନ ମହାରଥା ।
ଯୁଧିଷ୍ଠିର ବୋଇଲେ କପଟେ ମାରିଇ
ଅଛି ମୁଁ ତାଙ୍କୁ ଏହା ପୁଚ୍ଛିବି କି ଯାଇଁ ।

—❋—

## ଯୁଧିଷ୍ଠିରଙ୍କ ସିଂହାସନ ଆରୋହଣ

ଶ୍ରୀକୃଷ୍ଣ ବୋଇଲେ ହେ ବ୍ୟାସଙ୍କ ବଚନ
କର ଯୁଧିଷ୍ଠିର ଛାଡ଼ି ଏହି ବମନ ।
ତୁମ୍ଭଙ୍କୁ ସବୁଜନେ କରିଛନ୍ତି ଆଶା
ତୁମ୍ଭେ କମାଇଁ କରୁଅଛ ଅଭରସା ।

ଅସ୍ମମାନଙ୍କର ପ୍ରିୟକୃତି ଏବେ କର
ଲୋକସ୍ଥିତ ପ୍ରବର୍ତ୍ତି ଆହେ ନରବର ।
ଶ୍ରୀକୃଷ୍ଣଙ୍କ ବଚନ ଚନ୍ଦ୍ରମା ହୋଇଲା
ଯୁଧିଷ୍ଠିର ହୃଦୟକୁମୁଦ ଉଲ୍ଲାସିଲା ।
ବସିଥିବା ଆସନ ଛାଡ଼ିଣ ନୃପତି
ଯିବାକୁ ହସ୍ତିନା ଭାବଲେ ବହୁ ପ୍ରୀତି ।
ସହସ୍ର ସଂଖ୍ୟା ଦ୍ୱିଜଗଣେ ଡକାଇଲେ
ବଧିମତ କରଣ ତାହାଙ୍କୁ ପୂଜିଲେ ।
ଷୋଳଗୋଟି ବଳଦଯୋଗ୍ଯ ରଥେ ବସି
ହସ୍ତିନାକୁ ବାହାରିଲେ ସେ ଯେ ଉଦ୍ଦେଶି ।
ସେ ରଥରେ ସାରଥି ଭୀମ ମହାରଥୀ
ହୋଇଣ ଛାଡ଼ିଦେଲେ ହୃଦୟରୁ ବ୍ୟଥା ।
ଅରଜୁନ ଶ୍ୱେତଛତ୍ରକୁ ଧରି କରେ
ଟେକିଲେ ଯୁଧିଷ୍ଠିର ନୃପ ମସ୍ତକରେ ।
ଦୁଇ ରଶ୍ମିରେ ଶରଦଚାନ୍ଦସାଇଁ
ନକୁଳ ସହଦେବ ଚାମର ପକାଇ ।
ରଥ ଚଢ଼ି ପଛରେ ଯୁଯୁତ୍ସୁ ଗହଣ
ଲଗାଇଲେ କରଣେ ଧରି ଧନୁବାଣ ।
ଗରୁଡ଼ଧ୍ୱଜରେ ସାତ୍ୟକି ସଙ୍ଗେ ହରି
ଚଢ଼ିଲେ ଯିବାକୁ ହସ୍ତିନା ନାମେ ପୁରୀ ।
ଧୃତରାଷ୍ଟ୍ର ଗାନ୍ଧାରୀ ଚଢ଼ି ନରଯାନେ
ଆଗରେ ବାହାରିଲେ ଦୁଃଖେଦୁଃଖ ମନେ ।
କୁନ୍ତୀ କୃଷ୍ଣା କୁରୁସ୍ତ୍ରୀଙ୍କ ସଙ୍ଗେ ଧରି
ବାହାରିଲେ ଯେ ଯାନମାନ ଚଢ଼ିକରି ।
ଦେଶାନ୍ତରୁ ପାଇକ ରଥୀ ଆସିଥିଲେ
ଯୁଧିଷ୍ଠିର ରଜାଙ୍କ ସଙ୍ଗେ ଗୋଡ଼ାଇଲେ ।
ଯୁଧିଷ୍ଠିର ଆଗରେ ବାରଙ୍ଗନାଗଣ
ନୃତ୍ୟ ଆରମ୍ଭିଲେ ସଙ୍ଗୀତକୁ ଗାଇଣ ।
ଯୁଧିଷ୍ଠିରରଜାଙ୍କ କୀର୍ତ୍ତି ମେଳି ପ୍ରୀତି
ଭଟ ଭଟ ହୋଇଣ ଭାଟେ ଗାଇଲେଟି ।
ଯୁଧିଷ୍ଠିରଙ୍କର ଯେ ଆସିବା ବାରତା
ଶୁଣିକରି ହସ୍ତିନା-ନର-ନାରୀ ଯେତା —
ଘୁଞ୍ଚ ଦେଇଣ ଯେଝା ଘରକୁ ମଣ୍ଡାଇ
ଦ୍ୱାରେ ଛୁଡ଼ା ହେଲେ ଆପଣେ ମଣ୍ଡିହୋଇ
ନଗର-ଦ୍ୱାରେ ପୂର୍ଣ୍ଣକୁମ୍ଭ ସ୍ଥାପାଇଲେ
ପୋତାଇ ରମ୍ଭାତରୁ ତୋରଣା ବାନ୍ଧିଲେ ।

ନୃପତି ଯୁଧିଷ୍ଠିର ସୁହୃଦଙ୍କ ଭୁଲେ
ଏରୂପେ ହସ୍ତିନାରେ ପ୍ରବେଶ ହୋଇଲେ ।
ଯୁଧିଷ୍ଠିର ରଜାଙ୍କୁ ଦେଖିବାର ପାଇଁ
ହସ୍ତିନା ନରନାରୀ ଧାଡ଼ି ହୋଇ ରହି ।
ଚନ୍ଦ୍ରର ଉଦୟରେ ସମୁଦ୍ର ବଢ଼ିବା
ପ୍ରଜଙ୍କୁ ସେ ଶୋଭା ଉପମା ଅବା ଦେବା ।
ସେ ନଗର ଦାଣ୍ଡରେ ପକାଇଲେ ତିଳ
ନ ପଡ଼ିଲା ଲୋକଙ୍କୁ ଯେବେ ମହୀତଳ ।
ଦ୍ରୌପଦୀଙ୍କର ଭୁଲେ ପାଣ୍ଡବମାନଙ୍କୁ
ପ୍ରଶଂସିଲେ ନାରୀଏ ବହୁ ଆନନ୍ଦକୁ ।
ସେ ବଚନ ସେ ପୁରି କରଣୀ ଅକୂଳ
ଗମିଲା ସେ ଯେ ଆଖଣ୍ଡଳଙ୍କ ମଣ୍ଡଳ ।
କ୍ରମରେ ରାଜମାର୍ଗ ଅତିକ୍ରମ କଲେ
ରାଜବେଶ୍ମ-ସମୀପେ ରଜନ ମିଳିଲେ ।
ପୁରଜନମାନେ ସେକାଳେ ଏହୁ ବାଣୀ
ବୋଇଲେ ରଜା ହୋଇ ପାଣ୍ଡବ ନୃମଣି ।
ଇନ୍ଦ୍ର ଦେବତାଙ୍କୁ ଯେ ପାଳିଲା ପରାୟେ
ଆମ୍ଭଙ୍କୁ ପାଳ ତୁମ୍ଭେ କରାଅ ନିର୍ଭୟେ ।
ସେହିକାଳେ ରଥୁ ଓହ୍ଲାଇ ଯୁଧିଷ୍ଠିର
ଚାଲିଲେ ଭୀମଙ୍କର ହାତେ ଦେଇ କର ।
ଦେବପୁରର ପ୍ରବେଶ ହୋଇ ରହେ ପୂଜା
କରି ତାଙ୍କୁ ନମିଲେ ତୋଷ ଧରି ମଜ୍ଜା ।
ଏଥି ଉତ୍ତରେ ଦ୍ୱିଜମାନଙ୍କୁ ନମିକେ
ସୁଖେ ତ ଅଛ ଟିକି ବୋଲି ପଚାରିଲେ ।
ଧୌମ୍ୟଙ୍କର ହାତରେ ସଂକଳ୍ପ କରାଇ
ଦେଲେ ଦ୍ୱିଜଙ୍କ କରେ ଧନ ବସ୍ତ୍ର ଗାଈ ।
କଲେ ଦ୍ୱିଜମାନେ ପୁଣ୍ୟାହ ସ୍ୱସ୍ତି ଘୋଷ
ସେହି ଶବଦ ପୂରି ରହିଲା ଆକାଶ ।
ଶଙ୍ଖ ଭେରୀ ମୃଦଙ୍ଗ ଦୁନ୍ଦୁଭି ଆନକ
ବଜାଇଲେ ହସ୍ତିନା-ବାଦ୍ୟକାରିଯାକ ।
ଏହିକାଳେ ଦୁର୍ଯ୍ୟୋଧନଙ୍କର ଯେ ସଖା
ଚର୍ବାକ ନାମ ଅତି ଦୁଷ୍ଟରେ ସେ ଲେଖା ।
ଦିଜ ଦଣ୍ଡୀରୂପ ଧରି ଯୁଧିଷ୍ଠିର ଆଗେ
ଛିଡ଼ା ହୋଇ କହିଲା ଏ ବଚନ ରାଗେ ।
ସବୁ ଦ୍ୱିଜେ ମୋ ହାତେ କୁହାଇଅଛନ୍ତି
ଜ୍ଞାତିଘାତୀ ଯେ ତୁମ୍ଭେ ହୋଇଲେ ନୃପତି ।

ଜ୍ଞାତିକ୍ଷୟ କରି ଯା ପୂଜାଇ ବନ୍ଦନ
ରାଜା ହୋଇଅଛ ହେ ଧିକ ତୁମ୍ଭ ପ୍ରାଣ ।
ବ୍ରାହ୍ମଣେ ଯେହ୍ନ ଦୁଷ୍ଟବାଣୀ ତ ଶୁଣିଲେ
କି ବୋଲୁଛି ଏ ବୋଲି ଗାଲେ ମାରିଦେଲେ
ଯୁଧିଷ୍ଠିର ରାଜା ଯେ ନ କହ୍ନ ବଚନ
ଲଜ ପାଇ ତଳକୁ ପୋତିଲେ ବଦନ ।
ପୁଣି ବୋଇଲେ ଆହା ଦ୍ୱିଜେ ମୁଁ ତୁମ୍ଭଙ୍କୁ
ମାଗୁଅଛୁଟି ଗାଳି ନ ଦଅ ଆମ୍ଭଙ୍କୁ ।
ତାହାଶୁଣି ଦ୍ୱିଜେ ବୋଇଲେ ନରସାଇଁ
ଆମ୍ଭେ ଏହା ତୁମ୍ଭଙ୍କୁ ବୋଲିବୁ କପାଇଁ ।
ଏହା କହ୍ଣ ଦ୍ୱିଜେ ଜ୍ଞାନନେତ୍ରେ ସ୍ୱହିଁ
ଜାଣିଲେ ସେ ଦ୍ୱିଜକୁ ରାକ୍ଷସ ଅଟଇ ।
ପୁଣି ଯୁଧିଷ୍ଠିରେ କହ୍ଲେ ଦ୍ୱିଜେ ରୋଷ
ଦୁର୍ଯ୍ୟୋଧନ ସଖା ଏ ଚାର୍ବାକ ରାକ୍ଷସ ।
ଦୁର୍ଯ୍ୟୋଧନର ହିତପାଇଁ ଏ ତୁମ୍ଭଙ୍କୁ
ଗଞ୍ଜୁଅଛୁ ଏ ଦୋଷ ନ ଦଅ ଆମ୍ଭଙ୍କୁ ।
ଯୁଧିଷ୍ଠିର ବୋଇଲେ ତୁମ୍ଭର ବଚନେ
ଆସିଲି ସିନା ମୁହିଁ ରାଜା ହେବା ମନେ ।
ଏହା ଶୁଣିଣ ଦ୍ୱିଜେ ପକାଇ ନିଶ୍ୱାସ
ହୁଙ୍କାରେ ସେ ଚାର୍ବାକ ଦ୍ୱିଜେ କଲେ ନାଶ ।
ଯୁଧିଷ୍ଠିର ରାଜା ଚାର୍ବାକ ମୃତ୍ୟୁ ଦେଖି
ବ୍ରାହ୍ମଣଙ୍କୁ ପୁଣି ପୂଜିଲେ ହୋଇ ସୁଖୀ ।
ଶ୍ରୀକୃଷ୍ଣ ବୋଇଲେ ଯେ ଯୁଧିଷ୍ଠିର ରାଣ
ବ୍ରାହ୍ମଣେ ମୋର ପୂଜ୍ୟ ଅଟନ୍ତି ଜାଣ ।
ବ୍ରାହ୍ମଣପାଶେ ନତ ହୋଇ ସଦା ଥିଲେ
ପ୍ରସନ୍ନ ହୋଇ ଶୁଭ କରନ୍ତି ସେ ଭଲେ ।
ଯେ ଦୁରାତ୍ମା ଗର୍ବିତସ୍ୱଭାବକୁ ଦେଖାଏ
ବଜ୍ରାଗ୍ନି ସମ ଶାପାନଳେ ଦହି ହୁଏ ।
ଏ ଯେନ ଇହ ଲୋକେ ବ୍ରାହ୍ମଣ ସମସ୍ତ
ବାକବଜ୍ର ଭୂଦେବ ବୋଲିଣ ପ୍ରଥିତ ।
ପୂର୍ବେଟି ଏ ଚାର୍ବାକ ବଦରିକାଶ୍ରମେ
ବହୁତ ତପ କଲା ରହି ଦେହ-ଶ୍ରମେ ।
ଯାଚନ୍ତେ ବର ବ୍ରହ୍ମା ତପେ ତୁଷ୍ଟ ହୋଇ
ମାଗିଲା ନ କରିବ କାରେ ଭୟ ମୁହିଁ ।
ସେ ବର ଦେଇ ବ୍ରହ୍ମା ବୋଇଲେ ଆବର
ବ୍ରାହ୍ମଣ ଅବଜ୍ଞାରେ ମୃତ୍ୟୁ ହେବ ତୋର ।

ବ୍ରହ୍ମାଙ୍କର ବରେ ଗର୍ବିତ ବୁଦ୍ଧି ଧରି
ବୋଇଲା ଏ ଦେବତାମାନଙ୍କ ବଇରି ।
ଦେବେ ଚାର୍ବାକର ସନ୍ତାଶୁଁ ପାଇ ଦୁଃଖ
ବୋଇଲେ ରକ୍ଷାକର ଆହେ ଚତୁର୍ମୁଖ ।
ତୁମ୍ଭଠାରେ ଅଭୟ ଚାର୍ବାକ ହୋଇଲା
ଏଣୁ ଆମ୍ଭର ସେ ଯେ ପୀଡ଼ା ସମ୍ପାଦିଲା ।
ବ୍ରହ୍ମା ବୋଇଲେ ଆହେ ଚାର୍ବାକ ମୃତ୍ୟୁକୁ
ଭିଆଇଅଛୁ ଭୟ ନ ଆଣ ମନକୁ ।
ଦୁର୍ଯ୍ୟୋଧନ ରାଜାର ସଖା ସେ ହୋଇବ
ତାର ସ୍ନେହେ ଦ୍ୱିଜଙ୍କୁ ଅବଜ୍ଞା କରିବ ।
ଦ୍ୱିଜଙ୍କର କ୍ରୋଧରେ ହୋଇ ଭସ୍ମୀଭୂତ
ବସିବ ଆସି କରି ଯମଙ୍କ ପୁରତ ।
ହେ ଯୁଧିଷ୍ଠିର ରାଜା ଚାର୍ବାକଟି ଏହି
ଦେଖ ମଲା ବ୍ରାହ୍ମଣ-କ୍ରୋଧେ ଦଗ୍ଧ ହୋଇ ।
ବିଧାତାର ଭିଆଣ ନୁହେଁ କେବେ ଆନ
ତାର କଥାରେ ତୁମ୍ଭେ ନୁହ ହେ ବିମନ ।
ଶତ୍ରୁମାରି ପ୍ରଜା ପାଳନ କର ରାଜ୍ୟେ
ଏହା ନୋହିଲେ ନିନ୍ଦା କରିବେ ସଭିଏଁ ।
କୃଷ୍ଣଙ୍କର ବଚନେ ଛାଡ଼ିକରି ଶୋକ
ବସିଲେ ସ୍ୱର୍ଣ୍ଣାସନେ ପାଣ୍ଡବନାୟକ ।
ଯୁଧିଷ୍ଠିର ନୃପଙ୍କ ଅଗ୍ରାସନେ ଯାଇଁ
ବସିଲେ ସାତ୍ୟକିଙ୍କ ଯେନ ଯଦୁସାଇଁ ।
ଯୁଧିଷ୍ଠିରଙ୍କର ଯେ ଦୁଇ ପାର୍ଶ୍ୱରେ
ଭୀମ ଅର୍ଜୁନ ବସିଲେ ହରଷରେ ।
ନକୁଳ ସହଦେବ ଯାକୁ ଯେନ କୁନ୍ତୀ
ବସିଲେ ଆସନରେ ହୋଇ ହୃଷ୍ଟମତି ।
ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କ ପୁରୋହିତ
ସୁଧର୍ମା ଧୌମ୍ୟ ହେଲେ ଆସନେ ରଜତ ।
ଧୃତରାଷ୍ଟ୍ର ଗାନ୍ଧାରୀ ଯୁଯୁତ୍ସୁ ବିଦୁର
ସଞ୍ଜୟାଦି ବସିଲେ ଯାଇ ଆସନର ।
ଯେତେ ଲୋକ ନାମ ଆସନ କହିଲଇଁ
ସେ ସବୁ ସୁବର୍ଣ୍ଣରେ ଥିଲା ନିର୍ମା ହୋଇ ।
ସୁବର୍ଣ୍ଣ ରୁପା ମଣି ମୃତ୍ତିକା ଘଡ଼ଳ
ଆଣାଇଁ ଛୁଇଁଲେ ପାଣ୍ଡବ ନରପାଳ ।
ମୃତ୍ତିକା ସୁନା ରୁପା ତମ୍ବା ଫୁଲ ଦୁଧ
ପୂର୍ଣ୍ଣକୁମ୍ଭ ପିପ୍ପଳ ପଲାଶ ସମିଧ ।

ଉଦୁମ୍ବର ସ୍ରୁକ ସୁବର୍ଣ୍ଣଭୂଷା ଶଙ୍ଖ
ହୋମ ଦ୍ରବ୍ୟ ଆଦି ଧରାଇ ମନ୍ତ୍ରି ଶିଖ-
ମାନେ ଯୁଧିଷ୍ଠିରଙ୍କ ପାଦରେ ନମିଲେ
ଆମ୍ଭର ଭାଗ୍ୟ ହୋଇଲା ବଚନେ ଭାଷିଲେ ।
କୃଷ୍ଣ ଅନୁଜ୍ଞାରେ ପକାଇ ବ୍ୟାଘ୍ରଚର୍ମ
ବେଦୀ ମଧ୍ୟରେ ଧୌମ୍ୟ ଋଷିଙ୍କ ଉତ୍ତମ ।
ଯୁଧିଷ୍ଠିର ରାଜାଙ୍କୁ ତହିଁ କୃଷ୍ଣ। ବୁଲେ
ବସାଇଣ ଅନଳ ଜାଳି ହୋମ କଲେ ।
ତାହା ଦେଖିଣ କୃଷ୍ଣ ଆସନୁ ଉଠିଲେ
ଯୁଧିଷ୍ଠିର-ମସ୍ତକେ ଶଙ୍ଖେ ପାଣି ଦେଲେ ।
ଏଥିଅନ୍ତେ ହେ ଧୃତରାଷ୍ଟ୍ର ନରମଣି
ଯୁଧିଷ୍ଠିର-ମସ୍ତକରେ ଢାଳିଲେ ପାଣି ।
ଯେତେ ସଭା ମଧ୍ୟେ ପ୍ରଧାନ ଲୋକ ଥିଲେ
ଯୁଧିଷ୍ଠିର ରାଜାଙ୍କୁ ଅଭିଷେକ କଲେ ।
ସେହିକାଳକୁ ଜାଣି ଲୋକେ ଭେରୀ ଶଙ୍ଖ
ଆନକ ମୃଦଙ୍ଗ ବାଇଲେ ବହୁ ସୁଖ ।
ଯୁଧିଷ୍ଠିର ଦ୍ୱିଜେ ଭୋଜନ କରାଇଲେ
ଏକ ଏକ ସହସ୍ର ସୁନା ଟଙ୍କା ଦେଲେ ।
ବ୍ରାହ୍ମଣ ଯୁଧିଷ୍ଠିର ରାଜାଙ୍କୁ ଆଶିଷ
କଲେ ଯେ ମାନସରେ ବହୁ ମହାତୋଷ ।
ଧୃତରାଷ୍ଟ୍ର ରାଜା ବୋଇଲେ ବଚନ ମହୀ
ଜିଣି ଯୁଧିଷ୍ଠିର ହୋଇଲ ନରସାଇଁ ।
ଏଣିକି ଯେଉଁ ଧର୍ମ ହୋଇବ ଉଚିତ
ସେହି କଥାରେ ମନ ଦେଇଥିବ ତାତ ।
ଯୁଧିଷ୍ଠିର ବୋଇଲେ ତୁମ୍ଭେ ଜ୍ୟେଷ୍ଠ ପିତା
ବୋଲିବ ଯା ତାହା କରିବି ଯୁଡ଼ି ହସ୍ତ ।
ସଭାର ମୁଖୁଁ ଯୁଧିଷ୍ଠିର ସାଧୁବାଣୀ
ଶୁଣି ତୋଷ ହୋଇଲେ ହସ୍ତିନା ଜନଶ୍ରେଣୀ ।
ଯୁଧିଷ୍ଠିର ସେକାଳେ କହିଲେ ଲୋକଙ୍କୁ
ନ ଲଙ୍ଘିବ ଧୃତରାଷ୍ଟ୍ରଙ୍କର ଆଜ୍ଞାକୁ ।
ସେ ଯାହା ବୋଲୁଥିବେ କରୁଥିବ ତାହା
ଜାଣ ଆମ୍ଭମାନଙ୍କେ ସେହି ନରନାହା ।
ଜ୍ଞାତିବଧ କରିଣ ଜାଳୁଅଛୁ ମୁହିଁ
ଏହାଙ୍କୁ ସେବିଲେ ସେ ପାପୁଁ ତରିବଇଁ ।
ଏହାଙ୍କ ଥିବାଯାକ ନୋହେ ଆମ୍ଭ ମହୀ
ଏ ଯାହା ବୋଲୁଥିବ ସେ ଆମ୍ଭର ହିଁ ।

ଏହା କହି ବରାସ୍ଥ ସମସ୍ତଙ୍କୁ ଦେଇ
ଅଣାଇଲେ ଯେ ଭୀମସେନଙ୍କୁ ଡକାଇ ।
ଯୁବରାଜ ପଦରେ କରି ଅଭିଷେକ
ବୋଇଲେ ବାବୁ ହୁଅ ଏବେ ଗତଶୋକ ।
ମନ୍ତ୍ରଣାରେ ବିଦୁରଙ୍କ ଅଧିକାରୀ
କଲେ ବିଗ୍ରହଣ ପାଣ୍ଡବେ ଦଣ୍ଡଧାରୀ ।
ଆୟ ବ୍ୟୟ କଥାରେ ସଞ୍ଜୟ ନିଯୁକ୍ତ
ହେଲେ ଆଜ୍ଞା ଦିଅନ୍ତେ ଧର୍ମଙ୍କର ସୁତ ।
ବଳରେ ପରିମାଣ ବର୍ତ୍ତନ ଦେବାରେ
ନକୁଳଙ୍କୁ ରଖିଲେ ନରେଶ ସ୍ନେହରେ ।
ପର-ସେନା ମରଦନରେ ଅର୍ଜୁନ
ଅଧିକାରୀ ହୋଇଲେ ଜନ୍ମେଜୟ ଜାଣ ।
ବ୍ରାହ୍ମଣଙ୍କର ଭଲମନ୍ଦ ବୁଝିବାକୁ
ଅଧିକାରୀ ହୁଅ ହେ ବୋଇଲେ ଧୌମ୍ୟଙ୍କୁ ।
ସମୀପରେ ହେ ସହଦେବଙ୍କୁ ରଖିଲେ
ମୋ କଥା ତୋତେ ଭାଇ ଲାଗଇ ବୋଇଲେ ।
ଏ ବାହାରେ ଯେ ଯେଉଁ କର୍ମେ ଅଛି ଯୋଗ
ତାଙ୍କୁ ତହିଁ ରଖିଲେ ହୃଦେ ବହୁ ରାଗ ।
ବିଦୁର ଯୁଯୁତ୍ସୁଙ୍କୁ ଧୃତରାଷ୍ଟ୍ରଙ୍କର
କଥାଟିରେ ନିଯୁକ୍ତ କଲେ ଯୁଧିଷ୍ଠିର ।
ଏ ବାହାରେ ବୋଇଲେ ରାଜକାର୍ଯ୍ୟ ଯେତେ
କରୁଥିବ ସବୁ ଧୃତରାଷ୍ଟ୍ରଙ୍କ ହସ୍ତେ ।
ଏହା କହି ଜ୍ଞାତି ବାନ୍ଧବ ପାଇଁ ଶ୍ରାଦ୍ଧ
କରାଇଲେ ଯେ ଯୁଧିଷ୍ଠିର ବହୁ ସିଧ ।
ଧୃତରାଷ୍ଟ୍ର ପୁତ୍ରଅର୍ଥେ ଗୋ ଦାନମାନ
ବହୁତ ଦେଲେ ଡକାଇଣ ଦ୍ୱିଜଜନ ।
ଦ୍ରୋଣ କର୍ଣ୍ଣ ବିରାଟ ପ୍ରଭୃତି ସୁହୃଦ
ତନୟ ଦ୍ରୌପଦେୟ ହୈଡ଼ମ୍ବ ସୌଭଦ୍ର ।
ଏମାନଙ୍କ ପାଇଁ ପ୍ରତ୍ୟେକେ ଧନ ଗାଈ
ବସ୍ତ୍ର ଯେ ଦେଲେ ଯୁଧିଷ୍ଠିର ନରସାଇଁ ।
ଯେଉଁ ନରପତିମାନଙ୍କ ନାହିଁ କୁଳ
ତାଙ୍କ ପାଇଁ ରତ୍ନଆଦି ଦେଲେ ବହୁଳ ।
ଏ ଉଦ୍ଦେଶ୍ୟରେ କରି ପ୍ରତ୍ୟେକ ନାମାଙ୍କିତ
କଲେ ଯେ ଧର୍ମଶାଳା ତଡ଼ାଗ ବହୁତ ।
ଧୃତରାଷ୍ଟ୍ର ଗାନ୍ଧାରୀଙ୍କର ପାଦ ଦୁଇ
ନିତି ନ ବନ୍ଦିଲେ ନ ଖାନ୍ତି ଅନ୍ନ ଯାଇ ।

କୁରୁସ୍ତ୍ରୀଙ୍କର ଯେତେକ ବନ୍ଧୁ ଥିଲେ
ପୂର୍ବପରି ତାହାଙ୍କୁ ବରତନ ଦେଲେ ।
ହୀନ ଅନ୍ଧ ଜନଙ୍କୁ ଅନ୍ନ ବସ୍ତ୍ର ଘର
ଦେଲେ ସୁଖୀ ହେବାକୁ ପାଣ୍ଡବ ନୃବର ।

— ❋ —

## ଯୁଧିଷ୍ଠିରଙ୍କର କୃଷ୍ଣଙ୍କୁ ସ୍ତୁତି

ଏ ରୂପେ ହସ୍ତିନାବାସୀଙ୍କୁ କରି ସୁଖୀ
ଯୁଧିଷ୍ଠିର ରାଜନ ଦୁଃଖକୁ ଉପେକ୍ଷି ।
କର ଦୁଇ ଯୋଡ଼ିଣ କୃଷ୍ଣଙ୍କ ସମ୍ମୁଖରେ
ନମସ୍କାର କରି କହିଲେ ବିନୟରେ ।
ତୁମ୍ଭର ପ୍ରସାଦରେ ରାଜ୍ୟ ଧନ ଦୁଇ
ଯୁଦ୍ଧେ ଜିଣି ଅରଜିଲି ହେ ଯଦୁସାଇଁ ।
ତୁମ୍ଭେ ହେ ଏକା ତିନଲୋକରେ ପୁରୁଷ
ବେଦଶାସ୍ତ୍ର ପୁରାଣେ ହୋଇଛି ପ୍ରକାଶ ।
ହଂସ କୃଷ୍ଣ ବୈକୁଣ୍ଠ ଶୁଚିଶ୍ରବା ବିଷ୍ଣୁ
କେଶବ ଘୃତାର୍ଚ୍ଚିତ ନେହବଭ୍ରୁ ଜିଷ୍ଣୁ ।
ପୃଶ୍ନିଗର୍ଭ ବିଶ୍ୱୋତ୍ପାଦକ ଉରୁକ୍ରମ
ତ୍ରିଯୁଗ ଦାମୋଦର ପୁରୁଷ ଉତ୍ତମ ।
ବରାହ ଶମ୍ଭୁ ବଭ୍ରୁ ଊର୍ଦ୍ଧ୍ୱ ବର୍ମା ଅଗ୍ନି
ଶିପିବିଷ୍ଟ ତୁମ୍ଭେ ବରିଷ୍ଠ ବାଜସନ ।
ଶ୍ରେଷ୍ଠ ସତ୍ୟ ଅମୀକସାହ ହେ ସଂସ୍କୃତ
ବିକସ୍କୃକ ଯେ ସୂର୍ଯ୍ୟ ଗରୁଡ଼ ବିକୃତ ।
ବୃଷାକପି ସିନ୍ଧୁ ଧ୍ରୁବ ପୁଣି ବିଧର୍ମା
ତ୍ରିକକୁତ ତ୍ରିବିକ୍ରାଚ୍ୟୁତ ହେ ତ୍ରିଧାମା ।
କୃଷ୍ଣ କୃଷ୍ଣବର୍ମା ପର୍ବତ ସୁରରାଟ
ବୃଷଧ୍ୱଜ ସୁରାଟ ବିରାଟ ସମ୍ରାଟ ।
କପିଳ ବୃକ୍ଥଯଜ୍ଞ ଉଗ୍ରସେନାମା ଭୂ
ନହୁଷ ଯଜ୍ଞସେନ ଶିଖଣ୍ଡୀ ଅନ୍ତଭୂ ।
ବାମନ ଦେବସେନାମା ଯେ ସର୍ବସୂକ୍ଷ୍ମ
ଗଭସ୍ତିନେମି ବିଶ୍ୱାତ୍ମା ପବନଧାମ ।
ପୁନର୍ବସୁ ବ୍ରହ୍ମା ଯେ ଦୁନ୍ଦୁଭି ସୁଷେଣ
ହିରଣ୍ୟଗର୍ଭ ଅଚ୍ୟୁତ ପୁଷ୍ପଧାରଣ ।
ବୃଷଦର୍ଭ ଭକକାରଣ ପ୍ରିୟସ୍ଥକୃତ
ଗରୁଡ଼ଧ୍ୱଜ ଭୃଷଜାବର୍ତ୍ତ ଧାମବତ ।

ଶ୍ରୀପଦ୍ମ ଆମ୍ଭୋନିଧି କେଶବ ପୁଷ୍କର
ସ୍ୱାହା ସ୍ୱଧା ବିଭୁ ସୁବଭ୍ରୁ ସର୍ବେଶ୍ୱର ।
ଏ ରୂପେ ଯୁଧିଷ୍ଠିର କଲେ ମୁଖେ ସ୍ତୁତି
ଶୁଣି ତୋଷ ହେଲେ ରୁକ୍ମିଣୀ ପ୍ରାଣପତି ।
ଯୁଧିଷ୍ଠିରରାଜା ଶ୍ରୀକୃଷ୍ଣଙ୍କୁ ସନ୍ତୋଷ
ଦେଖିଣ ମନେ ମନେ ହୋଇ ହସହସ ।
ମନ୍ତ୍ରୀଙ୍କ ତୁଲେ ଭୃତ୍ୟଜନଙ୍କୁ ମେଲାଣି
ଦେଇ ଭାଇମାନଙ୍କୁ କହିଲେ ଏ ବାଣୀ ।
ମୋ ସକାଶୁଁ ତୁମ୍ଭେ ପାଇଲ ବହୁ କ୍ଲେଶ
ଏବେ ସୁଖ ପାଇ ସେ କ୍ଲେଶ ବାବୁ ନାଶ ।
ଦୁର୍ଯ୍ୟୋଧନ ଗୃହେ ବୋଲନ୍ତେ ଧୃତରାଷ୍ଟ୍ର
ଭୀମସେନ ରହିଲେ ହୋଇ ଅତି ହୃଷ୍ଟ ।
ଦୁଃଶାସନ ଘରେ ଗାଣ୍ଡୀବଧନୁର୍ବାହା
ଘର କରିଲେ ଯେ ଗାନ୍ଧାରୀ ପ୍ରାଣନାହା ।
ଧୃତରାଷ୍ଟ୍ର ସମ୍ମତେ ଦୁର୍ମର୍ଷଣ ଘରେ
ନକୁଳ ବାସ କଲେ ଭାଇଙ୍କ ଆଜ୍ଞାରେ ।
ସେହିରୂପେ ଯେ ସହଦେବ ଦୁର୍ମୁଖ
ଘରେ ଯାଇ ରହିଲେ ପାଇ ମହାସୁଖ ।
ସଞ୍ଜୟ ଯୁଯୁତ୍ସୁ ଯେ ବିଦୁର ମେଲାଣି
ହୋଇ ଯେଝା ଘରକୁ ଗଲେ ସେହିକ୍ଷଣି ।
ଧରିଣ କୃଷ୍ଣ କରେ ସାତ୍ୟକିଙ୍କ ହାତ
ଗଲେ ଯେ ଯହିଁ ରହିଥିଲେ ବୀର ପାର୍ଥ ।
ଯୁଧିଷ୍ଠିରରାଜନ ଦ୍ରୌପଦୀଙ୍କି ଧରି
ରହିଲେ ଧୃତରାଷ୍ଟ୍ର ନୃପତିଙ୍କ ପୁରୀ ।
ଏ ରୂପେ ଘରମାନ ପାଇଣ ପାଣ୍ଡବେ
କୃତକାର୍ଯ୍ୟ ହୋଇ ରହିଲେ ସୁଖେ ସର୍ବେ ।
ଜନମେଜୟ ବୋଇଲେ ବଇଶମ୍ପାୟନ
ହସ୍ତିନାମହୀ ପାଇ ପାଣ୍ଡବ ରାଜନ ।
ଧର୍ମ ଅଧର୍ମରୁ କେବଣ କଥା କଲେ
ହୋ ମୋତେ କହିବା ହେଉ ଜାଣ ଭଲେ ।
ତିନିଲୋକଗୁରୁ ରୁକ୍ମିଣୀ ପ୍ରାଣପତି
ତାଙ୍କର କେଉଁ କଥା ଏଥୁ ହେଲା ମତି ।
ଏହିମାନ ଶୁଣିବାକୁ ମୋହର ମତି
ହେଉଛି ଜାଣ ବଇଶମ୍ପାୟନ ଯତି ।
ବଇଶମ୍ପାୟନ ବୋଇଲେ ନରରାଣ
ଯୁଧିଷ୍ଠିରରାଜା ହେ କୃଷ୍ଣଙ୍କୁ ଦେଖିଣ ।

ଯାହା କଲେ ତାହା କହିବା ହେ ତୁମ୍ଭଙ୍କୁ
ବଢ଼ଅ ମୋ କଥାଟିରେ ଏକୋ ମାନସକୁ ।
ରାଜ୍ୟ ପାଇଣ ଯୁଧିଷ୍ଠିର ମହାପତି
ସ୍ୱରବର୍ଣ୍ଣଯାକୁ ପାଳିଲେ ବହୁ ପ୍ରୀତି ।
ଜଣକରେ ସହସ୍ରେ ଲେଖାଏଁ ସହସ୍ରେ
ବ୍ରାହ୍ମଣେ ସ୍ୱର୍ଣ୍ଣନିଷ୍କ ଦେଲେ ଧର୍ମଆଶେ ।
ବିଦୁରବାଦୀ କୃପ ଶ୍ଳୋକଙ୍କ କାମନା
ପୂର୍ଣ୍ଣ କଲେ ମଧ୍ୟ ରାଜନ ମହାମନା ।
ପୁରୋହିତ ଧୌମ୍ୟେ ଅୟୁତେ ଧେନୁ ଦେଲେ
ଧନ ରତ୍ନ ବସ୍ତ୍ରରେ ତୋଷ କରାଇଲେ ।
କୃପ ପୂର୍ବ ଗୁରୁବୃତ୍ତିକ ପ୍ରାପ୍ତ ହୋଇ
ରହିଲେ ଯୁଧିଷ୍ଠିର ନୃପ ଆଜ୍ଞା ପାଇ ।
ବିଦୁରଙ୍କୁ କରିଣ ମହାସତ୍କାର
କହିଲେ ମୋର ଦ୍ରବ୍ୟଯାଚକ ତୁମ୍ଭର ।
ଯୁଯୁତ୍ସୁଙ୍କୁ ଗ୍ରାମ ସେ ଧନ ବସ୍ତ୍ର ଦେଇ
କହିଲେ ମୋ ପାଖେ ନିଶ୍ଚିନ୍ତେ ଥାଅ ଭାଇ ।
ଆଶ୍ରିତ ଜନେ ପାନାହାର ବସ୍ତ୍ର ଦେଇ
ସନ୍ତୋଷିତ କଲେ ପାଣ୍ଡବ ନରସାଇଁ ।
ଧୃତରାଷ୍ଟ୍ର ଗାନ୍ଧାରୀ ବିଦୁରଙ୍କୁ ରାଜ୍ୟ
ଭାର ଦେଇ ସୁଖେ ରହିଲେ ଧର୍ମରାଜ ।
ଏ ଅନ୍ତେ ଶ୍ରୀକୃଷ୍ଣଙ୍କ ସମୀପକୁ ଗଲେ
ପଲଙ୍କଅଙ୍କେ ବସିଅଛନ୍ତି ଦେଖିଲେ ।
ବୋଇଲେ ଆହେ ହରି ତୁମ୍ଭର ପ୍ରସାଦେ
ଶତ୍ରୁ ମାରି ପାଇଲୁଁ ରାଜ୍ୟ ଅପ୍ରମାଦେ ।
ତୁମ୍ଭ ଯୋଗେ ଜୟ ଯଶ ଧରାମଣ୍ଡଳ
ଲଭ କଲୁଁ ଧର୍ମ ରହିଲା ପୀଡ଼ତଳେ ।
ଶ୍ରୀକୃଷ୍ଣ ଯୁଧିଷ୍ଠିର କହିବାର ଶୁଣି
ରହିଲେ ମଉନରେ ନ କହିଣ ବାଣୀ ।
ଯୁଧିଷ୍ଠିର ବୋଇଲେ କହିଲି ମୁଁ କଥା
କାହିଁକି କହୁନାହିଁ କୃଷ୍ଣ ମହାରଥା ।
ତିନିଲୋକ ମଙ୍ଗଳ ଭାବୁଛ ବା ହୃଦେ
ତାହା ଥରେ ଶୁଣିବି କହ କଥା ପଦେ ।
ନିବାତ ଦୀପ ପରି ରହିଛ ତ ଦେହି
ଏହା ଦେଖି ମୋର ହେଉଛି ଜାତ ମୋହ ।
ଯେବେ ସେ ଅପଗୁପ୍ତ ନୁହେ କୃଷ୍ଣ ମୋତେ
ତେବେ ତାହା କହିବା ହେଉ ତ ତୁରିତେ ।

ଅକ୍ଷର କ୍ଷର କର୍ତ୍ତା ଅକର୍ତ୍ତା ହେ ତୁମ୍ଭେ
ତୁମ୍ଭଙ୍କୁ ବଳପ୍ରାଇ କି କହିବୁ ଆମ୍ଭେ ।
ଯୁଧିଷ୍ଠିରଙ୍କର ଶୁଣିଣ ଏହି ବାଣୀ
ହସି କରି ତାଙ୍କୁ କହିଲେ ଚକ୍ରପାଣି ।
ଶର ତଳପେ ଥାଇ ଭୀଷ୍ମ ମହାମତି
ମୋଠାରେ ମନ ଦେଇ କରୁଛନ୍ତି ସ୍ତୁତି ।
ତାହାଙ୍କଠାରେ ରହିଥିଲା ମୋର ମନ
କିସ ପଚାରୁଅଛ ମୋତେ ହେ ରାଜନ ।
ଯାହାଙ୍କର ଶରମୁନଙ୍କୁ ମଘବାନ
ରହନ୍ତି ସାଙ୍କୋଡ଼ାଇ ଦେଇ ଅବଧାନ ।
ଯାହାର ବଜ୍ର ପରି ଧନୁର୍ଘୋଷ ଅଟେ
ଶୁଣିଲେ ଶତ୍ରୁଜନେ ପଡ଼ିଲେ ସଙ୍କଟେ ।
ଯାହାର ବଳ କେହି ନ ପାରନ୍ତି କଳି
ଯାହାକୁ ହାରିଛନ୍ତି ପର୍ଶୁରାମ ବଳୀ ।
ଯାହାର ପ୍ରଭାବ ମାନନ୍ତି ଦେବାସୁର
ଭାଙ୍ଗିଲେ ବଳେ କାଶୀରାଜା ସ୍ୱୟମ୍ବର ।
ଯାହାର ମାତା ଗଙ୍ଗାଦେବୀଙ୍କି କହନ୍ତି
ବଶିଷ୍ଠ ଗୁରୁ ହୋଇ ପଢ଼ାଉଅଛନ୍ତି ।
ତାଙ୍କର ଏବେ ହେଉଅଛୁଟି ଅପାୟ
କି କହିବା ହେଉଛି ଯାହା ମୋ ହୃଦୟ ।
ତୁମ୍ଭର ପିତାମହ ଭୀଷ୍ମ ପରା ଲୋକ
ନିକଟରେ ଯାଇ ଦେଖିବେ ପରଲୋକ ।
କାଳ ଆସି ପ୍ରାପତ ହେଲାଣି ତାଙ୍କର
କିଯ ଦେଖୁଛ ପାଣ୍ଡବ-ଦଣ୍ଡଧାରୀ ।
ଚାଲ ଏବେ ତାହାଙ୍କଠାକୁ ଆମ୍ଭେ ଯିବା
ଧର୍ମ କାହାଣୀମାନ ସମସ୍ତ ପୁଚ୍ଛିବା ।
ସେ ଗଲା ଉତ୍ତାରୁ ଧରମ ପୁଚ୍ଛିବାକୁ
ନ ଦେଖେ ମୁଁ ମହୀରେ ମନୁଷ୍ୟ କାହାକୁ ।
ଯୁଧିଷ୍ଠିର ବୋଇଲେ କହିଲ ଯେ ଯାହା
ଭୀଷ୍ମଠାରେ ସମ୍ଭବପାରେ ଚକ୍ରବାହା ।
ବ୍ରାହ୍ମଣମାନେ ପୂର୍ବେ କହିଛନ୍ତି ମୋତେ
ମହାସୌଭାଗ୍ୟବନ୍ତ ଭୀଷ୍ମ ମହାମତେ ।
ଆମ୍ଭଙ୍କୁ ଯେବେ ଥରେ ତାଙ୍କୁ ଦରଶନ
ଦେବା ଆଉ ଆପଣ ହୋଇଣ ପ୍ରସନ୍ନ ।
ଯୁଧିଷ୍ଠିରଙ୍କର ସେ ସମ୍ମତକ ଜାଣି
ସାତ୍ୟକଙ୍କି ଆଦେଶ ଦେଲେ ଚକ୍ରପାଣି ।

ତିଆରି କର ରଥ ଭୀଷ୍ମ-ସମୀପକୁ
ଯିବି ମୁଁ ନ ସହିବି ଆଉ ବିଳମ୍ବକୁ ।
ଶ୍ରୀକୃଷ୍ଣ ଆଜ୍ଞାରେ ସାତ୍ୟକି ମହାରଥ
ଦାରୁକକୁ ବୋଇଲେ ସଜକର ରଥ ।
ଦାରୁକ ସାତ୍ୟକିଙ୍କ ବଚନେ ଅରୁଣ
ଅନୁଜଧ୍ୱଜରଥ ତିଆରି କରିଣ ।
ମଣି ରତନେ ସେ ଖଚିତ ବିଧିମତେ
କହିଲା ଆଣି ତାହା କୃଷ୍ଣଙ୍କ ପୁରତେ ।
ଆଜ୍ଞା ପ୍ରମାଣରେ ତିଆରି କଲା ରଥ
ବିଜେ ହେଉ ରଥବରକୁ ଚକ୍ରହସ୍ତ ।

—(*)—

## ଭୀଷ୍ମଙ୍କର ଶ୍ରୀକୃଷ୍ଣଙ୍କୁ ସ୍ତୁତି

ଜନ୍ମେଜୟ ବୋଇଲେ ଭୀଷ୍ମ ଶ୍ରୀକୃଷ୍ଣଙ୍କୁ
କିରୂପେ ଧ୍ୟାନ କଲେ କହ ତା ଆମ୍ଭଙ୍କୁ ।
ବୈଶମ୍ପାୟନ ବୋଇଲେ ଜନ୍ମେଜୟ
କହିବା ତାହା ଶୁଣ ଦେଇ ମନ ଲୟ ।
ପୁଲସ୍ତ୍ୟ କ୍ରତୁ ଦକ୍ଷ ମରୀଚି ଉଲୂକ
ମାଣ୍ଡବ୍ୟ ବିଭାଣ୍ଡକ କୃଷ୍ଣାନୁଭୌତିକ ।
ଅଙ୍ଗିରା ବନ୍ଧୁଧୌମ୍ୟ ଆରୁଣି ମାର୍କଣ୍ଡେୟ
ଭାସ୍କରି ପରାଶର ଗୌତମ ମୈତ୍ରେୟ ।
କାଶ୍ୟପ ଦେବଳ ତ ସୁମନ୍ତୁ ନାରଦ
ବଶିଷ୍ଠ କୌଶିକ ଗାଲବ ପିପଲାଦ ।
ବ୍ୟାସ ଶୁକ ଜୈମିନି ବାତ୍ସ୍ୟ, ଦେବସ୍ଥାନ
ଶାଣ୍ଡିଲ୍ୟ ବୃହସ୍ପତି ପଇଳ ଚ୍ୟବନ ।
କପିଳ ବାୟୁ କୁତ୍ସ ମୌଦ୍‌ଗଲ୍ୟ ଅସିତ ।
ଆତ୍ରେୟ ଶଙ୍ଖ କଠ ଲୋମଶ ହାରୀତ ।
ମୁନୀନ୍ଦ୍ର ଭୃଗୁବେନ୍ଦ୍ର ପୁଣ ତୁମ୍ବୁର
କାଶ୍ୟ ଧୌମ୍ର କୃଷ୍ଣ ବାଲ୍ମୀକ କବଗୁରୁ ।
ପରଶୁରାମ ସନତକୁମାର ସମ୍ବର୍ତ୍ତ ।
ସୁଲହ ସୁତାଦ୍ଧ ଧୀମାନ ମୁନିବ୍ରାତ ।
ଏମାନେ କୃଷ୍ଣଙ୍କର ପାଶେ ବସିଥିଲେ ।
ଭୀଷ୍ମ କରଯୋଡ଼ି କୃଷ୍ଣଙ୍କୁ ସ୍ତୁତି କଲେ ।
ସିଦ୍ଧ ଦେବତା ଋଷି ଉରଗ କିନ୍ନର
ତୁମ୍ଭଠାରୁ ଜନ୍ମ ଅଛନ୍ତି ଚକ୍ରଧର ।
ତ୍ରିଭୁବନପ୍ରାଣୀରେ ଅଛ ଅଗୋଚର
ବିଶ୍ୱପାଳ ପୂରି ରହିଅଛ ଉଦର ।
ଶତ ଶତ ବାହୁ ଯେ ସହସ୍ର ବଦନ
ଶତ ଶତ ଚରଣ ସହସ୍ର ନୟନ ।
ଅଣୁରୁ ଅଣୁ ଗୁରୁଦ୍ରବ୍ୟକୁ ଗରିଷ୍ଠ
ସ୍ଥୂଳରୁ ସ୍ଥୂଳ ଶ୍ରେଷ୍ଠମାନଙ୍କରେ ଶ୍ରେଷ୍ଠ ।
ତୁମ୍ଭ ମହିମାକୁ ମାନସେ ବହି ପ୍ରୀତି
ଦେବତାମାନେ ନିତ କରୁଛନ୍ତି ସ୍ତୁତି ।
ବାସୁଦେବ ଯେ ସଙ୍କର୍ଷଣ ପ୍ରଦ୍ୟୁମ୍ନ
ଅନିରୁଦ୍ଧ ନାମ ବିଖ୍ୟାତ ତ୍ରିଭୁବନ ।
ଦେବ ତୁମ୍ଭେ ଦ୍ୱିଜଙ୍କୁ ପାଳିବାର ପାଇଁ ।
ଦେବକୀ-ଗର୍ଭେ ଉପୁଜିଲ ଯଦୁସାଇଁ ।
ମୁନିମାନେ ଯୋଗ ପ୍ରଭାବରେ ଆତ୍ମାରେ
ଦେଖୁଛନ୍ତି ରହିଛ ତୁମ୍ଭେ ନିରନ୍ତରେ ।
ପାଳନାରେ ପୁରୁଷ ସର୍ଜନାରେ ବ୍ରହ୍ମ
ପ୍ରଳୟରେ ସଙ୍କର୍ଷଣ ନାମ ଅଛ ବହି ।
ସୂର୍ଯ୍ୟ ଅଗ୍ନି ପ୍ରଭୃତିଙ୍କ ତେଜରେ ଅଧିକ
ଦେବଙ୍କର ଦେବତା ଉପରେ ନାୟକ ।
ଅଦିତିଙ୍କ ଗର୍ଭେ ଦ୍ୱାଦଶାଦିତ୍ୟ ରୂପେ
ଜାତ ହୋଇ ଜଗତ ପ୍ରକାଶିଲ ଆପେ ।
ଚନ୍ଦ୍ର ରୂପରେ ଶସ୍ୟ ଔଷଧିଙ୍କ ବୃଦ୍ଧି
କରାଇ କରିଅଛ ତାହାଙ୍କୁ ପ୍ରସିଦ୍ଧି ।
କୃଷ୍ଣ ବିଷ୍ଣୁ ବୋଲି ଜାଣନ୍ତି ଯେତେ ନର
ମୋକ୍ଷ ଗୋଡ଼ାଉଛି ସଙ୍ଗତେ ତାହାଙ୍କର ।
ବେଦ ଗାୟତ୍ରୀରେ ଯେ ତୁମ୍ଭଙ୍କୁ ବିସ୍ତାର
ଦ୍ୱିଜେ ଯାଗ କରିଣ ଯାଜୁଛନ୍ତି ତର ।
ରଥନ୍ତର ବୃହତ୍‌ସାମରେ ପରକାଶ
ହୋଇଛ ହେ ହିରଣ୍ୟରୂପୀ ପୀତବାସ ।
ଲୋକଙ୍କ ହିତପାଇଁ ପୃଥ୍ୱୀକି ଉଦ୍ଧାରି
ଆଣିଅଛ ବରାହମୂରତିକି ଧରି ।
ଶେଷଶାୟୀ ହେ ସତ୍ୟରୂପୀ ସାଧୁନର
ପାଳନା କରୁଅଛ ଜନ୍ମି ଏ ସଂସାର ।
ପୃଥକ ଧର୍ମଫଳ ପାଇବା ଆଶାରେ
ଧର୍ମରୂପେ ତୁମ୍ଭଙ୍କୁ ପୂଜନ୍ତି ସଂସାରେ ।
କାମାତ୍ମା ପୁଣ ଜୀବଆତ୍ମାଟି ତୁମ୍ଭଙ୍କୁ
ବୋଲିକରି ଋଷିଏ ଆଣନ୍ତି ମନକୁ ।
ସାଂଖ୍ୟ ମୋକ୍ଷ ଯୋଗ ଯେ ମାୟା ପଦ୍ମ ଘୋର
ଯୋଗନିଦ୍ରା କାର୍ଯ୍ୟ କାରଣ ଦ୍ରଷ୍ଟାନର ।

ପରଶୁରାମ କାଳ ବିଶ୍ୱ ଗୋପ୍ତା ପ୍ରାଣ
ପବନ ସୂକ୍ଷ୍ମ ମୋହ ବୀର୍ଯ୍ୟ ଦିବ୍ୟ ଜ୍ଞାନ ।
ସଲିଳମୟ ଲୋକମୟ ବର୍ଣ୍ଣାତ୍ମକ
ନୃସିଂହ ନଖ ଉଗ୍ର ଶାନ୍ତ ଟାକାତ୍ମକ ।
ବୃଷ୍ଣି ରୁଦ୍ର ଯେ ସର୍ବରୂପୀ ତୁମ୍ଭେ ହରି ।
ତୁମ୍ଭ ନାମ ମହାପାତକ ଅଘହାରୀ ।
ଆକାଶ ଶିର, ମହୀ ଚରଣ ତୁମ୍ଭର
ସଂଗ୍ରାମରେ କରୁଛ ଦୁଷ୍ଟଙ୍କୁ ସଂହାର ।
ଦଶ ଭୁଜ, ରବି ନେତ୍ର, ଦ୍ୱିଜାତି ବୀର୍ଯ୍ୟ
ତୁମ୍ଭରଟି ବୋଲନ୍ତି ଦେବଙ୍କ ତନୁଜ ।
ଅତସୀପୁଷ୍ପବର୍ଣ୍ଣ ପୀତବସନଆ
ତୁମ୍ଭଙ୍କୁ ଧ୍ୟାୟୀ ବା ପାତକ ତୃଣ ନାଆଁ ।
ତୁମ୍ଭଙ୍କୁ କରେ ଯେ ଭକ୍ତିରେ ନମସ୍କାର
ଜନ୍ମ ମୃତ୍ୟୁ ଯାତନା ଭୋଗ ନୁହେ ତାର ।
ସତ୍ୟ ବିଶ୍ୱ ଆଦ୍ୟ ଯେବେହେ ବିଷ୍ଣୁ ମୟ
ତେବେ ମୋ ଚିତ୍ତ ହେଉ ପାପପାକ କ୍ଷୟ ।
ତୁମ୍ଭ ପାଦେ ଶରଣ ପଶୁଅଛି ମୁହିଁ
ମୋର ଶ୍ରେୟ ଭାବନା କର ଯଦୁସାଇଁ ।
ମୋହ ବଚନେ ତୁମ୍ଭେ ପାଇଣ ତୃପତି
ହେଉଛି ଅନ୍ତକାଳ ଦିଅଇ ମୁକତି ।
ବେଦ ତପ ଯେ ଆତ୍ମସ୍ୱରୂପ ତୁମ୍ଭର
ଆଜ ଜସ ଜ୍ଞାପନ କରିଣ ଘୁମ୍ଭର ।
ହେ ବ୍ରହ୍ମଣ୍ୟଦେବ ଗୋ ଦ୍ୱିଜ-ହିତକାରୀ
ତୁମ୍ଭର ପାଦ ସେବୁ ମସ୍ତକ ମୋହରି ।
ଏ ରୂପେ ଭୀଷ୍ମ ସ୍ତୁତି କରିବାର ଜାଣି
ଯୋଗେ ବିଜେ କଲେ ସେଠାକୁ ତପସ୍ୱୀ ।
ଭୀଷ୍ମଦେବ କୃଷ୍ଣଙ୍କୁ ନୟନଯୁଗଳେ
ଦେଖି ନମିଲେ ତାଙ୍କ ଚରଣ-କମଳେ ।
କୃଷ୍ଣଙ୍କର ଦୟାରେ ଭୀଷ୍ମ ଦିବ୍ୟଜ୍ଞାନ
ପାଇଲେ ସେହିକ୍ଷଣି ଜନ୍ମେଜୟ ଜାଣ ।
ଋଷିମାନେ ଭୀଷ୍ମଙ୍କୁ କରି ପ୍ରଶଂସା
ବୋଇଲେ ସାକ୍ଷାତେ ପାଇଲେ ମୁକ୍ତିଦଶା ।
ଏ ଅନ୍ତେ ନବଘନତମାଳ-ଶରୀର
ଶ୍ରୀକୃଷ୍ଣ କରିଦେଲେ ସେଠାରୁ ଅନ୍ତର ।
ଆହେ ଜନମେଜୟ ପରୀକ୍ଷିତରିଦା କଥା
ଶୁଣିଲ ସବୁ ଏବେ ଛାଡ଼ ମନୁ ବ୍ୟଥା ।
ଭୀଷ୍ମ ଦେହ ଛାଡ଼ିବା କଥାଟି ତୁମ୍ଭଙ୍କୁ
କହିବା ଶୁଣ ଏବେ ଦେଇଣ ମନକୁ ।

—※—

## ଭୀଷ୍ମଙ୍କର ଦେହତ୍ୟାଗ କଥା

କୃଷ୍ଣଙ୍କ ବୋଲେ ରଥ ଦାରୁକ ତିଆର
କରିଣ ଥିଲେ ଜନ୍ମେଜୟ ନରବର ।
କୃଷ୍ଣଙ୍କର ଆଜ୍ଞା ପାଇ ସେହି ରଥକୁ
ତ୍ୱରା ହୋଇ ଆଣିଲେ କୃଷ୍ଣଙ୍କ ସମ୍ମୁଖକୁ ।
ସାତ୍ୟକିଙ୍କ ସଙ୍ଗରେ ରୁକ୍ମିଣୀ ରମଣ
ଯେବେ ସେ ରଥବରେ କଲେ ଆରୋହଣ ।
ଏହା ଦେଖି ପାଣ୍ଡବମାନେ ରଥ ଚଢ଼ି
ବାହାରିଲେ କୃଷ୍ଣଙ୍କ ସ୍ୟନ୍ଦନ ବେଢ଼ି ।
ସୃଞ୍ଜୟ କୃପ ଯୁଯୁତ୍ସୁ ଏକ ଏକ ରଥ
ଚଢ଼ିଣ ବାହାରିଲେ ମଣ୍ଡି ଯିବା ପଥ ।
କୁରୁକ୍ଷେତ୍ରରେ ଯାଇ ପ୍ରବେଶ ହୋଇଲେ
ଯହିଁ ବୀରେ ସମରେ ମୃତ୍ୟୁ ଲଭିଥିଲେ ।
ସେ କୁରୁକ୍ଷେତ୍ର ଅସ୍ଥି ଚର୍ମରେ ଆବୃତ
ହୋଇ କରୁଅଛି ପ୍ରାଣୀଙ୍କ ଭୟ ଜାତ ।
ସହସ୍ରସଂଖ୍ୟା ରକ୍ଷ ହୋଇଅଛି ତହିଁ
ଭୂତ ପ୍ରେତ ବୁଲୁଅଛନ୍ତି ସୁଖ ପାଇ ।
ଏ ରୂପେ କୁରୁକ୍ଷେତ୍ର ନୟନରେ ଦେଖି
ଯୁଧିଷ୍ଠିର ରାଜା ବୁଜି ଦେଇଣ ଆଖି ।
କୃଷ୍ଣଙ୍କର ତୁଲରେ ସମନ୍ତପଞ୍ଚକରେ
ପ୍ରବେଶ ହୋଇଲେ ମାନସ ଶୋକରେ ।
ଶ୍ରୀକୃଷ୍ଣ ବୋଇଲେ ଦେଖ ହେ ଯୁଧିଷ୍ଠିର
ଏ ତର୍ପଣ ସ୍ଥାନଟି ପରଶୁରାମଙ୍କର ।
ନିଃକ୍ଷତ୍ରିୟ କରି କ୍ଷତ୍ରିୟ-ରକ୍ତରେ
ତରପଣ କଲେ ସେ ପିତୃଙ୍କ ହିତରେ ।
ସେ ହିନୁ ସମନ୍ତପଞ୍ଚକ ଏ ତୀର୍ଥର
ନାମ ହୋଇଅଛି ରାଜନ ମନକରେ ।

—※—

## ପରଶୁରାମ କଥା

ଯୁଧିଷ୍ଠିର ବୋଇଲେ କପାଁ କ୍ଷତ୍ରିୟଙ୍କୁ
ପରଶୁରାମ ମାଇଲେ କହତ ଆମ୍ଭଙ୍କୁ ।
ରାମ ତ ପୃଥ୍ୱୀ ନିଃକ୍ଷତ୍ରିୟ କରିଥିଲେ
କି ପ୍ରକାରେ ପୁଣି କ୍ଷତ୍ରିୟ ଜନମିଲେ ।

କ୍ଷତ୍ରିୟ ଯୋଦ୍ଧାଏ ତ ଥିଲେ କୋଟି କୋଟି
ଏକାକୀ ରାମ କେମନ୍ତେ ଦେଲେ ଶିର କାଟି ।
ଏସବୁମାନ ଶୁଣିଲେ ନ ଶୁଣିଲା ପର
ହେଉଛି ମନ ମୋର ଆହେ ଚକ୍ରଧାରୀ ।
ଶ୍ରୀକୃଷ୍ଣ ବୋଇଲେ ହେ ରାମଙ୍କ ପ୍ରଭାବ
ଯା ଶୁଣିଛ କହିବି ଶୁଣ ନରଦେବ ।
ଜହ୍ନୁଙ୍କ ସୁତ ଅଜ ଅଜଙ୍କର ସୁତ
ବଳାକାଶ୍ୱ ନାମରେ ଜଗତେ ବିଖ୍ୟାତ ।
ବଳାକାଶ୍ୱଙ୍କର ଯେବଣ ପୁତ୍ର ଥିଲେ
ତାହାଙ୍କୁ ସବୁଲୋକେ କୁଶିକ ବୋଇଲେ ।
କୁଶିକ ପୁତ୍ରପାଇଁ ବହୁ ତପ କଲେ
ଗାଧି ନାମ ବହିଣ ଇନ୍ଦ୍ର ପୁତ୍ର ହେଲେ ।
ଗାଧିଙ୍କର ଦୁହିତା ହେଲେ ସତ୍ୟବତୀ
ତାଙ୍କ ପର ନାହିଁ ଏ ସଂସାରେ ଯୁବତୀ ।
ଗାଧି ସତ୍ୟବତୀଙ୍କି ଋଚୀକଙ୍କୁ ଦେଲେ
ଋଚୀକ ସେ କନ୍ୟାକୁ ପାଇ ସୁଖୀ ହେଲେ ।
ଋଚୀକ ପୁତ୍ର ଅର୍ଥେ ଶାଶୁ ଭାର୍ଯ୍ୟାପାଇଁ
ଚରୁଦ୍ୱୟ ସମ୍ପାଦି ରଖିଲେକ ନେଇ ।
ଭାରିଯାଙ୍କୁ କହିଲେ ଏ ଚରୁ ଖାଇବ
ତୁମ୍ଭ ମାତାଙ୍କୁ ଏହି ଚରୁ ଖୁଆଇବ ।
ତୁମ୍ଭ ମାତାଙ୍କର ହୋଇବ ଯେଉଁ ସୁତ
ଘେନବ ସେ କ୍ଷତ୍ରିୟମାନଙ୍କ ଗାରବତ ।
ତୁମ୍ଭ ପୁତ୍ର ତପ କରିଣ ଆଚରଣ
ହୋଇବ ଧୃତିମାନ ଧର୍ମ ପରାୟଣ ।
ଏ ରୂପେ ଭାର୍ଯ୍ୟାଙ୍କୁ ଋଚୀକଋଷି ଭାଷି
ବନମଧ୍ୟେ ଯାଇ ତପସ୍ୟା କଲେ ବସି ।
ଏହିକାଳେ ଗାଧି ଋଚୀକ ଆଶ୍ରମକୁ
ଆସିଲେ ସଙ୍ଗତରେ ଘେନିଣ ଭାର୍ଯ୍ୟାକୁ ।
ଋଚୀକ ଦେଇଯିବା ଚରୁ ସତ୍ୟବତୀ
ଧରି ମାତା ଆଗେ କହିଲେ ବହୁ ପ୍ରୀତି ।
ଜୁଆଇଁ ଏହି ଦୁଇ ଚରୁ ଦେଇଛନ୍ତି
ଖାଇଲେ ତୁମ୍ଭେ ଆମ୍ଭେ ହେବା ପୁତ୍ରବତୀ ।
ଗାଧିଙ୍କର ଭାରିଯା ଶୁଣି ତୋଷ ହେଲେ
ସେ ଦୁହେଁ ଚରୁ ପାଲଟାଇଣ ଖାଇଲେ ।
ଋଚୀକ ଭାରିଯା କ୍ଷତ୍ରିୟ ନାଶକର
ଗର୍ଭକୁ ଧରିଲେ ଜାଣ ହେ ନରବର ।
ଋଚୀକ ତପୋଅନ୍ତେ ଆଶ୍ରମକୁ ଆସି
ଭାର୍ଯ୍ୟାକୁ ବୋଇଲେ କି କଲୁ ମଦାଳସି ।
ପାଲଟାଇ ତ ଚରୁ ଖାଇଲୁ ନ ଜାଣି
ତୋ ପୁତ୍ର କ୍ରୂରକର୍ମା ହେବ ଥାଅ ମଣି ।
ତୁମ୍ଭ ମାତାଙ୍କରଠି ଯେଉଁ ସୁତ ହେବ
ତପସ୍ୱୀ ଧାର୍ମିକ ସେ ଭାବେ ବୋଲାଇବ ।
ସତ୍ୟବତୀ ତା ଶୁଣି ମହାଭୟ ପାଇ
ପଡ଼ି ତଳେ ଧରି ଗୃହସ୍ଥ ପାଦଦୁଇ ।
ନ ଜାଣି ତ ଚରୁ ମୁଁ କରିଦେଲି ଗ୍ରାସ
ଏବେ ହେ ରକ୍ଷାକର ମୋତେ ଋଷିଈଶ ।
ଯେବେ ପୁତ୍ର ମୋହର ହୋଇବ କ୍ଷତ୍ରିୟ
ହସିବେ ସିନା ନେତେ ଦେଖି ଋଷିଚୟ ।
ଋଚୀକ ବୋଇଲେ କ୍ଷତ୍ରିୟ ଚରୁ ଖାଇ
ଭାଳିଲେ ଏଥି ବସି କାର୍ଯ୍ୟ କିଛି ନାହିଁ ।
ସତ୍ୟବତୀ ବୋଇଲେ ତପୀସୁତ ମୋତେ
ଦିଅ ତୁମ୍ଭେ ତପେ ତ ବିଦିତ ଜଗତେ ।
ଋଚୀକ ବୋଇଲେ ଯା କରିଅଛୁ ବିହି
ତା ଆନ କରିବାକୁ କାର ଶକ୍ୟ ନାହିଁ ।
ସତ୍ୟବତୀ ବୋଇଲେ ତପୀପୁତ୍ର ହେଉ
ନାତିଠାରେ ଯାଇ କ୍ଷତ୍ରିୟଗୁଣ ରହୁ ।
ଋଚୀକ ବୋଇଲେ ଯା କହୁଛ ସଜନ
ସେ ରୂପେ ହେଉ ଏବେ ତୋହର କଥା ଘେନ ।
କାଳରେ ସତ୍ୟବତୀ କଲେ ପୁତ୍ର ଜାତ
ଜମଦଗ୍ନି ନାମ ଜଗତେ ହେଲା ଖ୍ୟାତ ।
ସେ ତପସ୍ୱୀ ସଂଯତବ୍ରତ ଶାନ୍ତ ହେଲେ
ଗାଧିଙ୍କ ପୁତ୍ର ବିଶ୍ୱାମିତ୍ର ବୋଲାଇଲେ ।
ଜମଦଗ୍ନିଙ୍କର ହୋଇଲେ ଯେଉଁ ସୁତ
କ୍ଷତ୍ରିୟ ବିଦ୍ୟାରେ ହେଲେ ସେହୁ ପୂଜିତ ।
ଗନ୍ଧମାଦନରେ ସେ ଶିବଙ୍କୁ ତୋଷିଲେ
ଅସ୍ତ୍ର ଭୂଲେ ପରଶୁ ଗୋଟିଏ ପାଇଲେ ।
ଆଗ ଯେ ହୋଇଥିଲା ତାଙ୍କ ରାମ ନାମ
ସେ ଦିନୁ ବୋଲାଇଲେ ଲୋକେ ପର୍ଶୁରାମ ।
ହୈହୟବଂଶେ ଦେଲେ କୃତବୀର୍ଯ୍ୟଙ୍କର
ସହସ୍ରବାହୁ ଅର୍ଜୁନ ନାମେ କୁମର ।
ଦତ୍ତାତ୍ରେୟ ଋଷିଙ୍କି ପ୍ରସନ୍ନ କରାଇ
ବର ପାଇଣ ବଳେ ଜିଣିଲେ ସେ ମହୀ ।

ଅଶ୍ୱମେଧ କରି ସପ୍ତ ଦ୍ୱୀପଲୋକ
ଦେଲେ ଦ୍ୱିଜ କରେ ସେ ଅଦମ୍ୟ-ନାୟକ ।
ଅଗ୍ନି ଆସି ଦିନେ ମାଗିଲେ ତାଙ୍କୁ ଭିକ୍ଷା
ଦେଲେ ଗ୍ରାମ ପୁର ରାଷ୍ଟ୍ର ସେ କରି କକ୍ଷା ।
କାର୍ତ୍ତବୀର୍ଯ୍ୟଙ୍କର ହୁଅନ୍ତେ ମହା ଦତ୍ତ
ପୋଡ଼ିଦେଲେ ବନସ୍ପତ୍ୟାଦି ବିତହେ ସ ।
ବଶିଷ୍ଠ ଋଷିଙ୍କର ଆଶ୍ରମକୁ ଯାଇ
ଶୂନ୍ୟ ଦେଖି ପୋଡ଼ିଲେ ତାହା ସ୍ୱାହାପାଇଁ ।
କାର୍ତ୍ତବୀର୍ଯ୍ୟ ସକାଶୁଁ ଅଗ୍ନି ପାଇ ବଳ
ପୋଡ଼ିଦେଲେ ଆଶ୍ରମ ଜାଣି ତପଃଶୀଳ ।
ବଶିଷ୍ଠ କ୍ରୋଧରେ ବୋଇଲେ ନରୋତ୍ତମ
ତୁମ୍ଭ ବାହୁ ଯୁଦ୍ଧେ କାଟନ୍ତୁ ପର୍ଶୁରାମ ।
କାର୍ତ୍ତବୀର୍ଯ୍ୟ ରାଜା ଅତ୍ୟନ୍ତ ମହାବଳୀ
ବଶିଷ୍ଠ ଶାପକୁ ସେ ରହିଲେ ନ ଭାଳି ।
କାର୍ତ୍ତବୀର୍ଯ୍ୟଙ୍କର ହେଲେକ ଯେତେ ସୁତ
ବଳେ ସେ ପ୍ରାଣୀଙ୍କ ନାଶରେ ହେଲେ ଯୁତ ।
ଦିନେ ସେ ଯମଦଗ୍ନି ଆଶ୍ରମକୁ ଗଲେ
ତାହାଙ୍କ ହୋମଧେନୁ ବତ୍ସାକୁ ଆଣିଲେ ।
ଏହି ସକାଶରୁ ଯେ ଯମଦଗ୍ନିଙ୍କର
ତୁଲେ ହେଲା କାର୍ତ୍ତବୀର୍ଯ୍ୟଙ୍କ ଯୁଦ୍ଧ ଘୋର ।
ପର୍ଶୁରାମ ସେ ଯୁଦ୍ଧେ ମହାକ୍ରୋଧ ହୋଇ
ତା ସହସ୍ର ବାହୁ କାଟିଲେ ନରସାଇଁ ।
ଏଥୁଅନ୍ତେ ବାହୁଗଟିକ ପର୍ଶୁରାମ
ଆଣିକରି ରଖିଲେ ଆପଣା ଆଶ୍ରମ ।
ଅର୍ଜ୍ଜୁନଙ୍କ ପୋଏ ସେ ଦିନୁ ଜଗିଥିଲେ
ଏକା ଦେଖିଣ ଜମଦଗ୍ନିଙ୍କି ମାଇଲେ ।
ପିତୃ ନିଧନ ପର୍ଶୁରାମ ଋଷି ଶୁଣି
ବାହାରିଲେ ବନରୁ ହୋଇ ଧନୁଷ୍ପାଣି ।
ପୁତ୍ର ପୌତ୍ରଙ୍କ ତୁଲେ କାର୍ତ୍ତବୀର୍ଯ୍ୟଙ୍କର
ଜୀବନ ନେଇ ଗଲେ ଯୁଦ୍ଧେ ନରବର ।
ହୈହୟବଂଶେ ଯେତେ ନରପତି ଥିଲେ
ପର୍ଶୁରାମଙ୍କର ହାତେ ସେ ପ୍ରାଣ ଦେଲେ ।
ମହୀଦେବୀ ରକତ ମାଂସରେ କାଦୁଅ
ହୋଇଲା ସେହି କାଳେ ଜାଣ ପାଣ୍ଡୁପୁଅ ।
ଏ ରୂପେ କର୍ମ କରି ପର୍ଶୁରାମ ବୀର
ତରି ମାରି ଆନନ୍ଦେ ହୋଇଲେ ବାହାର ।

ବନ ମଧ୍ୟରେ ରହି ସହସ୍ରେ ବରଷ
ତପ କଲେ ନିଜ ଦେହକୁ କରି କୃଶ ।
ବିଶ୍ୱାମିତ୍ରଙ୍କର ଯେ ନାତି ପରାବସୁ
ନେବାପାଇଁ କ୍ଷତ୍ରିୟମାନଙ୍କର ଅସୁ ।
ପରଶୁରାମଙ୍କର ସମୀପକୁ ଗଲେ
ହେଲା ତୁମ୍ଭ ପ୍ରତିଜ୍ଞା ମିଥ୍ୟା ତ ବୋଇଲେ ।
ହୈହୟ ବଂଶଯାକ କ୍ଷତ୍ରି ବୋଲି ଜାଣି
ବନେ ଯେ ରହିଲ ଆଖିକ ଘାଲେ ଖୋପି ।
ମହୀରେ ଅଛନ୍ତି ବହୁତ କ୍ଷତ୍ରିୟ
ତୁମ୍ଭ ଘେନି ସେମାନେ ହେଲେ କିବା କ୍ଷୟ ।
ପରାବସୁଙ୍କର ମୁଖରୁ ଏହା ଶୁଣି
କ୍ରୋଧ ହୋଇଣ ପର୍ଶୁରାମ ଋଷିମଣି ।
ପର୍ଶୁ କରରେ ଧରି ମହୀକି ଆସିଲେ
ଯେତେ ଥିଲେ କ୍ଷତ୍ରିୟ ତାହାଙ୍କୁ ନାଶିଲେ ।
କ୍ଷତ୍ରିୟ ସ୍ତ୍ରୀଏ ଯେ ଥିଲେ ଗର୍ଭ ହୋଇ
ପୁତ୍ର ଜାତ କଲରୁ ପୁଣି କ୍ରୋଧ ବହି ।
ସେ ପୁତ୍ରଟିମାନଙ୍କୁ ପର୍ଶୁରେ ହାଣିଲେ
ଅଧରମକଥାକୁ ମନେ ନ ଗଣିଲେ ।
ଏ ରୂପେ ଏକୋଇଶ ଥର ନିଃକ୍ଷତ୍ରିୟ
ମହୀକି କଲେ ଯମଦଗ୍ନିଙ୍କ ତନୟ ।
ଅଶ୍ୱମେଧ କରିଣ କଶ୍ୟପଙ୍କୁ ମହୀ
ଦାନ କଲେ ପାତକ ନାଶ ଯିବାପାଇଁ ।
କଶ୍ୟପ ବୋଇଲେ ଦେଲ ତମ୍ଭେ ଦାନ
ସମୁଦ୍ରତଟରେ ଯାଇ କର ଏବେ ସ୍ଥାନ ।
ଉଦର ମଧ୍ୟେ ସିନ୍ଧୁ ଶୂର୍ପାରକ ନାମ
ସ୍ଥାନକୁ ନିର୍ମିଣି ରହିଲେ ତହିଁ ରାମ ।
କଶ୍ୟପ ମହୀଟିକ ବ୍ରାହ୍ମଣଙ୍କୁ ଦେଇ
ତପ କଲେ ଅରଣ୍ୟ ମଧ୍ୟରେ ସେ ଯାଇ ।
ଅରାଜକ ଯୋଗୁଁ ଯେ ହେଲା ବଳୀୟାର
ବଳରେ ହରି ନେଲା ଦ୍ରବ୍ୟ ଦୁର୍ବଳର ।
ବୈଶ୍ୟ ଶୂଦ୍ରଗଣ ହୋଇଣ ସ୍ୱେଚ୍ଛାଚାରୀ
ବ୍ରାହ୍ମଣ ସ୍ତ୍ରୀଙ୍କୁ ରମଣ କଲେ ଧରି ।
ଅଧର୍ମଯୋଗୁଁ ମହୀ ପୀଡ଼ା ତ ପାଇଲେ
ପାତାଳରେ ପଶିବି ବୋଲି ଇଚ୍ଛା କଲେ ।
ପୃଥ୍ୱୀ ପାତାଳକୁ ଯିବାର ଦେଖି କରି ।
ଅଇଲେ ଉରୁରେ କଶ୍ୟପ ତପସ୍ୱାରି ।

ସେହିଦିନୁ ମହୀ-ମହିଳାଙ୍କର ନାମ
ହୋଇଲା ଉର୍ବୀ ଜାଣ ଆହେ ନୃପୋତ୍ତମ ।
ପୃଥ୍ୱୀ ବୋଇଲେ କେ କଶ୍ୟପ ମୋତେ ରାଜା
ନ ଦେଲେ ଧରି ନ ପାରିବି ମୁହିଁ ପ୍ରଜା ।
ହୈହୟବଂଶୀ କେତେ କ୍ଷତ୍ର ସୁତେ ମୁହିଁ
ମୋର ଗର୍ଭଭିତରେ ରଖିଛି ଲୁଚାଇ ।
ବିଦୁରଥ ପୁଅ ଯେ ଋକ୍ଷବାନ ନାମ
ପର୍ବତେ ରହିଛନ୍ତି ଆହେ ଦ୍ୱିଜୋତ୍ତମ ।
ପରାଶର ସୌଦାସ ପୁତ୍ର ରଖିଛନ୍ତି
ବୋଇଲେ ତୁମ୍ଭେ ଏବେ ସେ ହେବେ ନୃପତି
ଶିବିରାଜା ପୁଅ ଗୋପତି ଗାଈ ରଖି
ବନରେ ରହିଛନ୍ତି ହୋଇ ମହାଦୁଃଖୀ ।
ଏହିରୂପେ ଅନେକ ରାଜାଙ୍କର ପୁତ୍ର
ଲୁଚିଅଛନ୍ତି ହେ କଶ୍ୟପ ତପୋବନ୍ତ ।
ତୁମ୍ଭ ସମ୍ମତିକି ସେ ନ ପାଇଲେ ମୋତେ
ଭୋଗ କରି ନ ପାରନ୍ତି ହେ ମହାମତେ ।
ପୃଥ୍ୱୀଙ୍କ ବଚନେ କଶ୍ୟପ ତୋଷ ହୋଇ
କଲେ ରାଜା କ୍ଷତ୍ରିୟ ପୁତ୍ରଙ୍କୁ ଅଣାଇ ।
ସେ ନୃପତିମାନଙ୍କ ହୋଇନ୍ତେ ପୁତ୍ର ନାତି
ମହୀଦେବୀ ମଣ୍ଡିରେ ଲଭିଲେ ଭୂପତି ।
ରାମଙ୍କର ଚରିତ ପଚାରିଲ ଯାହା
କହିଲଇଁ ଶୁଣିଲ ତାହା ନରନାହା ।
ଏବେ ଚାଲ ଯିବା ହେ ଭୀଷ୍ମଙ୍କର ପାଶ
ଶିଖିବା ତାଙ୍କଠାରୁ ଧର୍ମ ଉପଦେଶ ।
ଯୁଧିଷ୍ଠିର ରାମଙ୍କ ପରାକ୍ରମ ଶୁଣି
ପ୍ରଶଂସାରେ ବହୁତ ଉଚାରିଲେ ବାଣୀ ।

—✳—

## କୃଷ୍ଣ ଓ ଭୀମଙ୍କର କଥୋପକଥନ

ଯେଉଁଠାରେ ସେ ଗଙ୍ଗାଦେବୀଙ୍କର ସୁତ
ରହିଥିଲେ ସେଠାରେ ହୋଇଲେ ଉପଗତ ।
ଦେଖିଲେ ଭୀଷ୍ମ-ପାଶେ ମୁନି ବସିଛନ୍ତି
ଇନ୍ଦ୍ରପାଶେ ଦେବଙ୍କ ଶୋଭାକୁ ଗଞ୍ଜନ୍ତି ।
କୃଷ୍ଣ ତୁଟିଲେ ପାଣ୍ଡବେ ଛାଡ଼ିଦେଇ ରଥ
ଚାଲିଲେ ଧରାଧରି ହୋଇକରି ହାତ ।
ବ୍ୟାସ ଆଦି ମୁନିଙ୍କ ପାଦେ ପ୍ରଣମିଲେ
ସେ ଯାହା ନାମ କହି ଭୀଷ୍ମଙ୍କୁ ନମିଲେ ।
ଭୀଷ୍ମଙ୍କର ଚାରି ପାଖକୁ ବେଢ଼ି କରି
ବସିଲେ ପାଣ୍ଡୁସୁତେ ଦୁଃଖ ମନେ ଧରି ।
କୃଷ୍ଣ ବୋଇଲେ ଆହେ ଗଙ୍ଗାଦେବୀ-ସୁତ
କହିବାକୁ କଥା ଅଛଇ କି ଆସ୍ୱସ୍ତ ।
କାଣ୍ଡ ତ ତୁମ୍ଭ ସର୍ବାଙ୍ଗରେ ଅଛି ଗଳି
ବ୍ୟଥାରେ ସନ୍ତାପିତ ତ ମହାବଳି ।
ପୂର୍ବପରି ଅଛି ତ ପରସନ୍ନ ।
ବୁଦ୍ଧି ହୋଇନାହିଁ ବ୍ୟାକୁଳେ ଅବସନ୍ନ ।
ବାପଙ୍କର ସକାଶୁଁ ସ୍ୱଚ୍ଛନ୍ଦମରଣ
ପାଇଛ ତ ଏଣୁ ପୁଚ୍ଛିଲୁ ଏହା ଜାଣ ।
ଦେବଙ୍କୁ ଧର୍ମଶିକ୍ଷା ଦେବାର ଶକତି
ତୁମ୍ଭଠାରେ ଅଛି ହେ ଭୀଷ୍ମ ମହାମତି ।
ପ୍ରାଣୀମାନଙ୍କର ସଂହାର ଯେ ଜନମ
ତୁମ୍ଭଙ୍କୁ ବିଦିତ ହେ ଭୀଷ୍ମ ନରୋତ୍ତମ ।
ତୁମ୍ଭ ବିନା ମୃତ୍ୟୁ ନବାର ଶରଶେଯେ
ଶୋଇବା ଲୋକ ନାହିଁ ଏ ଲୋକ-ସମାଜେ ।
ରଥୀମାନଙ୍କରେ ଯେ ତୁମ୍ଭେ ମହାରଥ
ନ ଛାଡ଼ କେବେ ହୃଦମଧ୍ୟ ଧର୍ମପଥ ।
ଦେବ ଯକ୍ଷ କିନ୍ନର ଗନ୍ଧର୍ବ ଅସୁର
ଯୁଦ୍ଧରେ କରିପାରି ଏହାଙ୍କୁ ସଂହାର ।
ଦ୍ୱିଜେ କହିଛନ୍ତି ନବମବସୁ ତୁମ୍ଭେ
ତୁମ୍ଭ ଗୁଣଯାକ ତ ଜାଣିଅଛୁ ଆମ୍ଭେ ।
ଦେବତାରେ ତ ତୁମ୍ଭ ପରି ଲୋକ ନାହିଁ
ମନୁଷ୍ୟ ଥିବ ବା ବୋଲିବି ତୁମ୍ଭେ କାହିଁ ।
ତପୋବଳେ ସରଜପାରି ପ୍ରାଣୀଗଣ
ଶେଷରେ ଶେଷ ହେବ ନାହିଁ ତୁମ୍ଭ ଗୁଣ ।
ଯୁଧିଷ୍ଠିର ରାଜା ଜ୍ଞାତିଶୋକକୁ ବହି
କ୍ଷୀଣ କରିଅଛନ୍ତି ଦେଖ ତାଙ୍କ ଦେହି ।
ଏହାଙ୍କୁ ଏବେ ଧର୍ମକଥା କହି ତୁମ୍ଭେ
ଶୋକ ନାଶ କରହେ ବୋଲୁଅଛୁଁ ଆମ୍ଭେ ।
ଚାରି ଯେ ଆଶ୍ରମର ଚାରିବର୍ଣ୍ଣଙ୍କର
ଧରମ ତ ତୁମ୍ଭଙ୍କୁ ହୋଇଛି ଗୋଚର ।
ସେ ଧର୍ମଯାକ ଏବେ ପରକାଶ କରି
ଯୁଧିଷ୍ଠିରଙ୍କର ନିଅ ଶୋକକୁ ହରି ।

ସାଂଖ୍ୟଯୋଗ ବେଦ ପୁରାଣଯାକ କଥା
କରିଛ ତ ଗୋଚର ଭୀଷ୍ମ ମହାରଥା ।
ଏ ବାହାରେ ପ୍ରବୃତ୍ତି ନିବୃତ୍ତି ମାରଗ
କଥାର ଜାଣ ତୁମ୍ଭେ ଏକା ସାରଭାଗ ।
ଏହି ସକାଶରୁ ପାଣ୍ଡବ ନରସାଇଁ
ସଂଶୟଚ୍ଛେଦ ହୁଅ ତୁମ୍ଭଙ୍କୁ ବୋଲଇ ।
କୃଷ୍ଣଙ୍କର ଶୁଣିଣ ଏମନ୍ତ ବଚନ
ଜଣାଇଲେ ଗଙ୍ଗାଦେବୀଙ୍କର ନନ୍ଦନ ।
ଉତ୍ପତ୍ତି ସଂହାରଣ କର୍ତ୍ତା ଅଟ ତୁମ୍ଭେ
ତୁମ୍ଭଙ୍କୁ ନମସ୍କାର କରୁଅଛୁ ଆମ୍ଭେ ।
ତ୍ରିଭୁବନଯାକ ବ୍ୟାପିଛି ତୁମ୍ଭ ରୂପ
ମୋତେ କିସ ପୁଚ୍ଛୁଛ ଆହେ ବିଶ୍ୱଗୋପ ।
ଏବେ ମୋହର ଯେଉଁ କଥା ହେବ ଶ୍ରେୟ
ତା କର ତୋଷିତହେଁ ଦେବକୀ-ତନୟ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭର ଭକ୍ତି ଜାଣି
ଆସିଛୁ ଜାଣ ଆହେ ଭୀଷ୍ମ ନରମଣି ।
ଦିବ୍ୟବପୁ-ଚନ୍ଦ୍ରରେ ତୁମ୍ଭ ନେତ୍ରଦ୍ୱନ୍ଦ୍ୱ—
କୁମୁଦକୁ କରାଇବ ମୁହିଁ ଆନନ୍ଦ ।
ମୋ ଦିବ୍ୟରୂପ ପାପୀ ଲୋକକୁ ଗୋଚର
କେବେ ନୁହଇ ଆହେ ଭୀଷ୍ମ ମନେକର ।
ଜୀବର ଯହିଁ ପୁନରାବୃତ୍ତି ନ ହୁଏ
ସେଠାକୁ ଯିବ ତୁମ୍ଭେ ନାହିଁ ତ ସଂଶୟେ ।
କାଣ୍ଡ ବାଜି ପଡ଼ିବା ଦିନରୁ ଛପନ
ଦିନଯାଏ ଆୟୁଷ ତୁମ୍ଭ ଅଟେ ଜାଣ ।
ଷଡ଼୍‌ବିଂଶ ଗତ ଅବଶିଷ୍ଟ ତ ତିରିଶ
ଦିନ ଅଛି ଏ ମଧ୍ୟେ ଦିଅ ଉପଦେଶ ।
ଏଥୁ ଅନନ୍ତରେ ତୁମ୍ଭେ ଛାଡ଼ିଣ ଦେହଟି
ରହିବ ମହାସୁଖେ ପାଇ ମୋ ପୁରଟି ।
ବସୁମାନେ ଚଢ଼ିଣ ଯେ ମାହା ଯାନକୁ
ରହିଅଛନ୍ତି ଭୀଷ୍ମ ଜଗିଟି ତୁମ୍ଭଙ୍କୁ ।
ସୂର୍ଯ୍ୟ ଯେବେ ଉତ୍ତର ଦିଗକୁ ଯାଇବେ
ଅକ୍ଷୟ ଲୋକେ ତେବେ ବସିବା ହୋଇବେ ।
ତୁମ୍ଭେ ପରଲୋକେ ଯାଆନ୍ତେ ଧର୍ମକଥା
ଲୋପ ହୋଇ ଯିବ ହେ ଭୀଷ୍ମ ମହାରଥା ।
ଏହି ସକାଶରୁ ପଶ୍ଚରିବାକୁ ଆମ୍ଭେ
ଆସିଅଛୁ ହେ ଧର୍ମ-କଥା କହ ତୁମ୍ଭେ ।

ଭୀଷ୍ମ ବୋଇଲେ ଆହେ ତୁମ୍ଭର ବଚନ
ଶୁଣି ମହାସନ୍ତୋଷ ହେଉଛି ମୋ ମନ ।
ତୁମ୍ଭେ ଆଗେ ଧର୍ମ କହିବା ଯଦୁସାଇଁ
ମୁଁ ମହାପାପୀଠାରେ ସମ୍ଭବିବ କେହି ।
ତୁମ୍ଭଠାରୁ ସବୁ ତ ହୋଇଅଛି ଜାତ
ମୋତେ କିସ ପୁଚ୍ଛୁଛ ବସୁଦେବ ସୁତ ।
କାଣ୍ଡଘାଏ ମୋହର ଦେହ ତ ଜଳୁଛି
କହି କି ପାରିବି କେଉଁ କଥା ଶ୍ରୀହରି ।
ହୋଇବାରୁ ହେ କୃଷ୍ଣ ଆୟୁହୀନତର
ବୁଦ୍ଧି ଆସିଣ ଊଣା ହେଲାଣି ମୋହର ।
ତୁମ୍ଭ ଆଜ୍ଞାକୁ ମୁଁ ଯା କରୁଅଛି ନାହିଁ
ଏ ଦୋଷ କ୍ଷମାକର ମୋର ଯଦୁସାଇଁ ।
ବୃହସ୍ପତିଙ୍କୁ ପର ଲୋକ ତୁମ୍ଭ ଆଗେ
ବସିଣ କହି ନ ପାରିବେ କଥା ବାଗେ ।
ତୁମ୍ଭର ସକାଶରୁ ରହିଛି ଜୀବନ
ଦେଖିଲିଣି ନେତ୍ର ବେନି ମୋ ସବୁ ଶୂନ୍ୟ ।
ଯୁଧିଷ୍ଠିରଙ୍କର ଯେଉଁ କଥାଟି ହିତ
ହୋଇବ ତାହା କର ଆପଣ ବିହିତ ।
ଆପଣ ଗୁରୁ ହୋଇ ବସିଥିବାଠାରେ ।
ଏତେ ଭାର କିମ୍ପା ଲଦୁଛ ମୋହଠାରେ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭଙ୍କୁ ଅନୁରୂପ
ବଚନକୁ କହିଲ ଭୀଷ୍ମ ରଥୀନୃପ ।
ପ୍ରସଙ୍ଗେ କହୁଛି ଅର୍ଜ୍ଜୁନ ବାଣଗଣ
ବ୍ୟଥା ଛାଡ଼ି ଦେଉ ତୁମ୍ଭର ଅପଘନ ।
ମୂର୍ଚ୍ଛା ଗ୍ଲାନି ଦାହ କ୍ଷୁଧା ତୃଷାକୁ ତୁମ୍ଭେ
ନ ଜାଣିବ ବର ଯେ ଦେଉଅଛୁ ଆମ୍ଭେ ।
ତୁମ୍ଭ ଜ୍ଞାନ ପ୍ରତିଭାନ୍ୱିତ ବୁଦ୍ଧି ଗୋଟି
ହୋଇଥିବେ କହିବାବେଳେ ମେଳି ପାଟି ।
ଜ୍ଞାନଚକ୍ଷୁ-ବଳେ ସକଳ ପ୍ରାଣୀଯାକ
କରିବ ହେ ଭୀଷ୍ମ ଆପଣେ ଅବଲୋକ ।
ଏହାଶୁଣିଣ ବେଦବ୍ୟାସାଦି ଋଷି ଏ
ଶ୍ରୀକୃଷ୍ଣଙ୍କୁ ସ୍ତୁତି କଲେ ଅତିଶୟେ ।
ଶ୍ରୀକୃଷ୍ଣ ଭୀଷ୍ମ ଯୁଧିଷ୍ଠିର ଶିର ପରେ
ପୁଷ୍ପବୃଷ୍ଟି ହୋଇ ପୂରିଲା ମହୀ ଖରେ ।
ଅପସରାମାନେ ଯେ ନୃତ୍ୟ ଗୀତ କରି
ବଜାଇଲେ ବାଦ୍ୟମାନଙ୍କୁ କରେ ଧରି ।

ମନ୍ଦ ମନ୍ଦ ହୋଇ ବହିଲା ସମୀରଣ
ଉଲ୍ଲାସ କଲା ସବୁ ପ୍ରାଣୀ ଅପଘନ ।
ମୃଗ ପକ୍ଷୀମାନେ ଶାନ୍ତରେ ଧ୍ୱନି କରି
ହେଲେ କର୍ଣ୍ଣ ଶତ୍ରୁ ଦୁହିଙ୍କ ସୁଖକାରୀ ।
ଏହିକାଳେ ଯେ ସୂର୍ଯ୍ୟ ଅସ୍ତଗିରିଶିଖ ।
ଛୁଇଁଲେ ନାଶ କରି ଆପଣା ମୟୂଖ ।
ସବୁ ଋଷିମାନେ ତା ଦେଖିଣ ଉଠିଲେ
ଯାଉଅଛୁଁ ହେ ବୋଲି କୃଷ୍ଣଙ୍କୁ ବୋଇଲେ ।
ତାହା ଶୁଣି କୃଷ୍ଣଙ୍କ କୂଳରେ ପାଣ୍ଡବେ
ନମିଲେ ଦ୍ୱିଜଙ୍କର ପାଦେ ପ୍ରୀତିଭାବେ ।
ଋଷିମାନେ ଭୀଷ୍ମଙ୍କ ଆଦରେ ତୋଷକୁ
ବହି ସେ ବୋଇଲେ ଆସିବୁ ତୁମ୍ଭଠାକୁ—
କାଲି ସକାଳୁ ଆହେ ଭୀଷ୍ମ ମହାରଥି
ହୃଦୟେ ତୁମ୍ଭେ ଆଉ କିଛି ନୁହ ବ୍ୟଥି ।
ପାଣ୍ଡବେ କୃଷ୍ଣ ତୁଲେ ବସି ଯେଝା ରଥେ
ବାହାରିଲେ ପୁରକୁ କୁରୁକ୍ଷେତ୍ର ପଥେ ।
ଆଗ ପଛରେ ରଥ ହାତୀ ଘୋଡ଼ାଯନ୍ତ
ବାହାରିଲେ ରାଜନ ହୋଇ ଜନ୍ତାଜନ୍ତ ।
ଏହିକାଳେ ଉଦୟ ଗିରିଶିଖ-ତଟ
ସିଂହର ପରି ରହି ଅହି ଋଷି ସ୍ଫୁଟ ।
ମୟୂର-ନଖେ ତମ-କରୀ ବିଦାରିଲେ
ଚନ୍ଦ୍ରିକା ବ୍ୟାଜେ ମୋତି ପଙ୍କ୍ତି ଫିଙ୍ଗିଲେ ।
ଏହି ସକାଶୁଁ ଶତ୍ରୁ-ଚକୋର ଉଲ୍ଲାସ
ହୋଇଲା କୁମୁଦିନୀ ପ୍ରକାଶିଲେ ହାସ ।
କମଳରେ ମୁଦ୍ରିତ ହୋଇଥିବା ଅଳି
ତା ହାସ ଜାଣିପାରି ଛାଡ଼ିଲେ ବୋବାଳି ।
ରବିକର-ତପତ ମହୀ-ମହିଳାର
ହରିଲେ କର-ଚନ୍ଦ୍ର-ଲେପେ ଶଶଧର ।
ପାଣ୍ଡବଙ୍କ ଯିବା ଦହୁଡ଼ି ଚନ୍ଦ୍ର କର
ଆକାଶେ ତାରା ପରି ଦିଶିଲା ସୁନ୍ଦର ।
ପାଣ୍ଡୁସୁତେ ଘରି ଗୁହାରେ ସିଂହ ପରି
ଏ ଅନ୍ତରେ ପ୍ରବେଶ ହେଲେ ଦଣ୍ଡଧାରୀ ।
ଭୋଜନାଦି କର୍ମକୁ ସାରି ପାଣ୍ଡୁସୁତେ
ଶୋଇଲେ ଯେଝା ଘରମାନଙ୍କେ ନିଶ୍ଚିନ୍ତେ ।
ଶ୍ରୀକୃଷ୍ଣ ଯେହିରୂପେ ସାରିଣ ଭୋଜନ
ପଲଙ୍କ ଅଙ୍କେ ପଡ଼ି ବୁଜିଲେ ନୟନ ।

ପହରେ ରାତି ଥାଉ ଉଠିଣ ମାଧବ
ପରଂବ୍ରହ୍ମ-ରୂପ ଧ୍ୟାଇଲେ ବହି ଭାବ ।
ବନ୍ଦୀମାନେ ସେହି କାଳରୁ ଜାଣି ବେଢ଼ି
କୃଷ୍ଣଙ୍କ ନିକଟରେ ବସିଲେ ସ୍ତୁତି ପଢ଼ି ।
ଗାୟକମାନେ ମାରି କରଦେଶେ ତାଳ
ଗାଇଲେ ଗୀତ ଉଚିତ ଲୟ କରି ମେଳ ।
ମୃଦଙ୍ଗ ଝାଞ୍ଜ ବୀଣା ବଜାଇଲେ ଲୋକେ
ସେ ଶବଦ ପୂରିଲା କୁରୁରାଜ୍ୟଯାକେ ।
ଏଣେ ଯୁଧିଷ୍ଠିର କୃଷ୍ଣଙ୍କ ପରି ମତି
କର୍ମ କଢ଼ାଇଣ ବସିଲେ ବହି ପ୍ରୀତି ।
ଏଥୁଅନ୍ତେ କୃଷ୍ଣ ସାରିଣ ସ୍ନାନ କର୍ମ
ଅଗ୍ନିକୁ ସ୍ଥାପି କରି ଆରମ୍ଭିଲେ ହୋମ ।
ବେଦପଢ଼ା ଦ୍ୱିଜ ସହସ୍ରେ ଡକାଇଲେ
ଜଣକେ ଏକ ଏକ ଲେଖାଏଁ ଗାଈ ଦେଲେ ।
ମାଙ୍ଗଳ୍ୟ ସ୍ପର୍ଶିଣ ଆଦର୍ଶେ ମୁଖ ଦେଖି
ଗୋବିନ୍ଦ ମାନସରେ ହୋନ୍ତି ଅତି ସୁଖୀ ।
ସାତ୍ୟକିଙ୍କି ଯାଇ ବୋଇଲେ ଯୁଧିଷ୍ଠିର
ରାଜାଙ୍କୁ କହ ଆଉ ବିଳମ୍ବ ନ କର ।
ଭୀଷ୍ମେ ଦେଖିବାକୁ ଉତ୍ସାହ ବଳେ ଅତି
ଏ ଘେନ ବୋଲୁଥାଇ ଆସନ୍ତୁ ଝଟତି ।
ସାତ୍ୟକି ଶ୍ରୀକୃଷ୍ଣଙ୍କ ବଚନ ମାନିଲେ
ଯୁଧିଷ୍ଠିରଙ୍କର ସେ ସମୀପକୁ ଗଲେ ।
ବୋଇଲେ କୃଷ୍ଣ ରଥ ସଜ କରିଛନ୍ତି
ଦେଖିବାକୁ ଯାଇ ସେ ପ୍ରତାପଙ୍କ ନାତି ।
ପେଷିଛନ୍ତି ମୋତେ ତୁମ୍ଭଙ୍କୁ ନେବାପାଇଁ
ଯେ ଉଚିତ ତାହା କରି ହେ ନରସାଇଁ ।
ଯୁଧିଷ୍ଠିର ଘେନି ସାତ୍ୟକିଙ୍କ ବଚନ
ଅର୍ଜୁନଙ୍କୁ ବୋଇଲେ ସଜ କରି ଯାନ ।
କେବଳ ଆମ୍ଭେ ପାଞ୍ଚ କୃଷ୍ଣଙ୍କ ସଙ୍ଗରେ
ଯିବା ସୈନ୍ୟ ଥାଆନ୍ତୁ ରହି ହସ୍ତିନାରେ ।
ଧାର୍ମିକ ପିତାମହେ ସୈନ୍ୟ କୋଳାହଳେ ।
କ୍ଲେଶ ଦେବା ଆମ୍ଭର ଉଚିତ କି ଭଲେ ।
ପୁଣି ତାଙ୍କ ଧର୍ମାର୍ଥ ସହିତ ବଚନ
ଶୁଣିବା କି ଉଚିତ ଆମ୍ଭ ବିନା ଆନ ।
ଅର୍ଜୁନ ଯୁଧିଷ୍ଠିର ବଚନେ ରଥକୁ
ତିଆରି କରାଇଣ କହିଲେ ତାହାଙ୍କୁ ।

ତୁମ୍ଭ ଆଜ୍ଞା ମତେ ତିଆର ହେଲା ରଥ
ବାହାର ହେ କୁରୁରାଜନ ମହାରଥ ।
ଯୁଧିଷ୍ଠିର ଭାଇମାନଙ୍କୁ ସଙ୍ଗେ ଧରି
ଗଲେ ଯହିଁ ଥିଲେ ସେ ରୁକ୍ମିଣୀ-ବିହାରୀ ।
ପାଣ୍ଡବଙ୍କୁ ଯେ ଦେଖି କରି ଚକ୍ରଧର
ସାତ୍ୟକିଙ୍କି ଘେନି ଚଢ଼ିଲେ ରଥବର ।
ପାଣ୍ଡୁ ସୁତେ ରଥ ଚଢ଼ିଣ ଆନନ୍ଦରେ ।
ବାହାରିଲେ ସମସ୍ତେ ଗୋବିନ୍ଦ ସଙ୍ଗରେ ।
ଶୈବ୍ୟ ବଳାହକ ସୁଗ୍ରୀବ ମେଘପୁଷ୍ପ
ଦାରୁକଙ୍କ ଚାଳନେ ଧାଇଁହେ ପ୍ରତାପେ ।
କ୍ଷଣକରେ କୁରୁକ୍ଷେତ୍ରରେ ପାଣ୍ଡୁ ସୁତେ
ରଥମାନଙ୍କେ ଯାଇ କୃଷ୍ଣଙ୍କ ସଙ୍ଗତେ ।
ଭୀଷ୍ମଙ୍କର ସମୀପ ହୁଅନ୍ତେ ପ୍ରାପତ
ଯାନ ଛାଡ଼ି ସର୍ବେ ନମ୍ରକ ହୋଇ ଗତ ।
ଋଷିଙ୍କି ବନ୍ଦି ଭୀଷ୍ମ ସମୀପକୁ ଗଲେ
ଯେ ରୂପେ ଇନ୍ଦ୍ର ଯାନ୍ତି ଦେବଙ୍କର ତୁଲେ ।
ଶର ତଳ୍ପରେ ଥାଇ ଭୀଷ୍ମ ମହାଯଶା
ଦେଲେ ସବୁ ଲୋକଙ୍କ ନେତ୍ର-ଘରେ ବସା ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ପାଣ୍ଡବେ ତ ଗଲେ ଭୀଷ୍ମଙ୍କ ସନ୍ନିଧାନ ।
ଏ ଅନ୍ତେ କେଉଁ କଥା ହେଲା ତାହା ମୋତେ
ବିସ୍ତାରିଣ କହିବା ହେଉ ମହାମତେ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ନାରଦ ଋଷି ଆଦି ସର୍ବେ ଋଷି ଚୟ ।
ଭୀଷ୍ମଙ୍କର ସମୀପକୁ ଯହୁଁ ଆସିଲେ
ଭୀଷ୍ମ ତାହାଙ୍କୁ ଦେଖି ନମସ୍କାର କଲେ ।
ଅବଶେଷ ନୃପଙ୍କୁ ଘେନି ଧୃତରାଷ୍ଟ୍ର
ବନ୍ଦିଲେ ଭୀଷ୍ମ ପାଦବେନି ହୋଇ ହୃଷ୍ଟ ।
ପାଣ୍ଡବଙ୍କୁ ଘେନିଣ ଦେବକୀଙ୍କ ସୁତ ।
ଭୀଷ୍ମଙ୍କ ସମୀପରେ ହେଲେ ଉପଗତ ।
ନମସ୍କାର କରି ଆଗରେ ଛିଡ଼ା ହୋଇ
ଆହା ଭୀଷ୍ମ ମନ୍ତୁଛ ବୋଲିଲେକ ଯାଇ ।
ଏହା ଶୁଣି ଯେତେକ ଲୋକ ତହିଁ ଥିଲେ
ଲୋତକେ ପରିପୂର୍ଣ୍ଣ ନୟନକୁ କଲେ ।
ମୁହୂର୍ତ୍ତେକ ଉତ୍ତାରୁ ନାରଦ ମହର୍ଷି
ପାଣ୍ଡବରାଜାଙ୍କୁ କହିଲେ ହସି ହସି ।
ଭୀଷ୍ମଙ୍କ ଅସ୍ତଦଶା ହୋଇଲା ପ୍ରବେଶ
ପ୍ରାଣ ଥାଉଁ କର ଧରମ ଉପଦେଶ ।
ଚାରିବର୍ଣ୍ଣଙ୍କର ଧର୍ମକୁ ଏ ଜାଣନ୍ତି
ଏ ଗଲେ ଧର୍ମଶୂନ୍ୟ ହେବ ଜାଣ କ୍ଷିତି ।
ରାଜାମାନେ ଶୁଣି ନାରଦଙ୍କ ବଚନ
ଚାହାଁଚୁହିଁ ହୋଇଣ ରହିଲେ ବଦନ ।
ଯୁଧିଷ୍ଠି କୃଷ୍ଣଙ୍କୁ ବୋଇଲେ ଯଦୁସାଇଁ
ତୁମ୍ଭ ବିନା ଭୀଷ୍ମଙ୍କୁ ପୁଚ୍ଛିବ କେ ଯାଇ
ଆମ୍ଭମାନଙ୍କର ତୁମ୍ଭେ ତ ଅଟ ବର
ଆଗ ଯାଇ ଭୀଷ୍ମଙ୍କୁ ଧର୍ମକୁ ପଚାର ।
ଯୁଧିଷ୍ଠିର ବଚନେ ଭୀଷ୍ମ ପାଶେ ଯାଇ
ପଚାରିଲେ ତାହାଙ୍କୁ ଜଗତ ଗୋସାଇଁ ।
ଅହେ ଭୀଷ୍ମ ତୁମ୍ଭ ଦେହରେ କିଛି ଗ୍ଲାନି
ହେଉ ନାହିଁଟିକି ତ କହ ବ୍ୟଥା ଘେନି ।
ପୂର୍ବପରି ଜ୍ଞାନେ ରହିଛଟିକି ତୁମ୍ଭେ
ପଚାରୁଅଛୁ ତାହା ଜାଣିବାକୁ ଆମ୍ଭେ ।
ଭୀଷ୍ମ ବୋଇଲେ ମୋର ଦେହ-ଦାହ-ଗ୍ଲାନି
ତୁମ୍ଭେ ପ୍ରସାଦରୁ ଯାଇଛି ଯଦୁମଣି ।
କହିବ ମୁଁ ଭୂତ ଭବିଷ୍ୟ ବର୍ତ୍ତମାନ
ତୁମ୍ଭ ଆଜ୍ଞା କଲେ ହେ ଜଗତପାବନ ।
ତୁମ୍ଭ ବରଦାନରୁ ବେଦୋକ୍ତ ଧରମ
ମୋ ହୃଦୁ ସ୍ଫୁରୁଅଛି ପୁରୁଷ ଉତ୍ତମ ।
ଶିଷ୍ଟଲୋକମାନେ କରିଅଛନ୍ତି ଯାହା
ତାହା ମଧ୍ୟ ମୁହିଁ ଜାଣୁଛି ଚକ୍ରବାହା ।
ଦେଶ ଜାତି କୁଳ ଚାରି ଯେ ଆଶ୍ରମର
ଧରମ ମଧ୍ୟ ମୋତେ ହେଉଛି ଗୋଚର ।
ରାଜଧର୍ମଯାକ ଗୋଚର ହେଉଅଛି
ଅଗୋଚର ହୋଇଣ କଥା ନାହିଁ କିଛି ।
ତୁମ୍ଭେ ପ୍ରସାଦରୁ ମୋ ଅଙ୍ଗ ଯୁବାପରି
ଲାଗୁଛି ଏ ମରଣ ବ୍ୟଥା ଛାଡ଼ିକରି ।
ଆପଣ ଥିବାଠାରେ ମୋ ମୁଖେ ଧରମ
କୁହାଇବାର ବଡ଼ ଅନୁଚିତ କର୍ମ ।
ଶ୍ରୀକୃଷ୍ଣ ବୋଇଲେ କହୁଛ ଭୀଷ୍ମ ଯାହା
ସତ୍ୟ କରିଣ ମୁହିଁ ମାନୁଅଛି ତାହା ।
ସବୁ କଥାରେ ମୁଁ ଅଟଇ ପରିପୂର୍ଣ୍ଣ
ମୋ ଗୁଣ ମୁଁ କି ରୂପେ କରିବି ବର୍ଣ୍ଣନ ।

ଚନ୍ଦ୍ରଠାରୁ ଶୀତଳ ପାଇକରି ନରେ
ଘେନନ୍ତି ତା ବଡ଼ କରି ମନରେ ।
ଏ ସକାଶୁଁ ସିନା ମୁଁ ବୋଲୁଛି ତୁମ୍ଭଙ୍କୁ
କାହିଁ ପାଞ୍ଚ କହ ଲୋକକୁ ଧରମକୁ ।
ଯେତେକାଳ ପର୍ଯ୍ୟନ୍ତ ଥିବ ଏ ମହୀଟି
କେତେ କାଳ ଥିବ ଏ ତୁମ୍ଭର କୀର୍ତ୍ତିଟି ।
ଯୁଧିଷ୍ଠିରଙ୍କର ତୁମ୍ଭରଠାରୁ ଜ୍ଞାନ
ପାଇଲକ୍ଷଣି ହେବ ସନ୍ଦେହ ଭଞ୍ଜନ ।
ତୁମ୍ଭର ବଚନକୁ ବେଦ ପରି ଘେନ
ଆଜୁଁ ଆଚରଣ କରିବେ ଜନଶ୍ରେଣୀ ।
ଏହିମାନ ଭାବ ତୁମ୍ଭଙ୍କୁ ଦେଲି ବର
କହ ରାଜାମାନଙ୍କୁ ଧର୍ମର ଉତ୍ତର ।
ବୟସେ ବୃଦ୍ଧ ତୁମ୍ଭେ ଧର୍ମର କୁଶଳ
କହ ଧର୍ମ ଶୁଣନ୍ତୁ ସର୍ବ ମହୀପାଳ ।
ଜନ୍ମକାଳରୁ ଆଜଯାଏ ତୁମ୍ଭ ଦୋଷ
ହୋଇନାହିଁ କାହାର ମୁଖରେ ପ୍ରକାଶ ।
ଶାସ୍ତ୍ରରେ ଲେଖିଛି ଯେ ଜାଣିବାର ହେବ
ପଚାରିବା ଲୋକଙ୍କୁ ସେ ଧର୍ମ କହିବ ।
ଧର୍ମ ଜାଣି ଧର୍ମ ଯେ ପୁଛିଲେ ନ କହେ
ଯମଦଣ୍ଡଯାକ ଲାଗଇ ତାର ଦେହେ ।
ପୁଅ ନାତିମାନେ ତ ଧର୍ମ ପୁଛିବାକୁ
ଆସିଛନ୍ତି ବତାଇ କହ ଧର୍ମ ତାଙ୍କୁ ।
ଭୀଷ୍ମ ବୋଇଲେ ମୁହିଁ କହିବ ଧରମ
ପୁଛନ୍ତୁ ଯୁଧିଷ୍ଠିର ପୁରୁଷଉତ୍ତମ ।
ଧୃତି ଦମ ସଂଯମ ଶାନ୍ତି କ୍ଷମା ଓଜ
ଧର୍ମ ସତ୍ୟ ଦାନ ତପସ୍ୟା ଶୌର୍ଯ୍ୟ ତେଜ ।
ଅସନ୍ତ୍ରାନ୍ତ ଯାହାଙ୍କଠାରେ ଅଛି ରହି
ସେ ପୁଛନ୍ତୁ ମୁହିଁ କହିବ ଯଦୁସାଇଁ ।
କାମ କ୍ରୋଧ ଲୋଭ ଅର୍ଥ ଯୋଗୁଁ ଧରମ ।
ନ କରନ୍ତି ହେ ଯୁଧିଷ୍ଠିର ନରୋତ୍ତମ ।
ଯଜ୍ଞ ଅଧ୍ୟୟନେ ଯେ ସର୍ବଦା ନିରତ
ସେ ରସଜ୍ଞ କରନ୍ତୁ ପ୍ରଶ୍ନ ନରନାଥ ।
ଶ୍ରୀକୃଷ୍ଣ ବୋଇଲେ ଯେ ଯୁଧିଷ୍ଠିର ରାଜା
ହୃଦୟ ମଧ୍ୟେ ଧରି କରି ମହାଲଜ୍ଜା ।
ତୁମ୍ଭଠାକୁ ଆସିବାକୁ ସେ ଡରୁଛନ୍ତି
କରି ତ ଛନ୍ତି ତୁମ୍ଭ ମହତ ଅପ୍ରୀତି ।

ଭୀଷ୍ମଦେବ ବୋଇଲେ କ୍ଷତ୍ରିୟ ଲୋକର
ମହାଧର୍ମ ଅଟଇ ଯୁଦ୍ଧେ ମାରିବାର ।
ପିତା ଗୁରୁ ବନ୍ଧୁ ଯୁଝିଲେ ଶସ୍ତ୍ର ଧରି
ଶାସ୍ତ୍ର ଲେଖିଅଛି ତାହାକୁ ଦେବ ମାରି ।
ଗୁରୁ ହେଉ ଲୋଭେ ଧର୍ମକୁ ନ ରକ୍ଷିଲେ
ତାହାଙ୍କୁ ସଂହାରିବ ଯୁଦ୍ଧ କଲେ ଭଲେ ।
କ୍ଷତ୍ରି ଯେବେ ଯୁଦ୍ଧେ ବୁହାଏ ରକ୍ତନଦୀ
ସବୁଧର୍ମ ଜାଣ ସେ ପାରଇ ସମ୍ପାଦି ।
ଯୁଦ୍ଧ ତ ସ୍ୱର୍ଗ ମୋକ୍ଷ ଏ ସକାଶୁଁ ତାହା
ଛାଡ଼ି ନ ପାରିବ ଯେ ହେବ ଧନୁ ବାହା ।
ଭୀଷ୍ମଙ୍କରଠାରୁ ଶୁଣିଣ ଏହି ବାଣୀ
ଭୀଷ୍ମ-ପାଶେ ଯାଇ ପାଣ୍ଡବ-ନରମଣି ।
ଭୀଷ୍ମଙ୍କର ଚରଣ ଦୁଇ ଧରି କରେ
ନମସ୍କାର କରି କହିଲେ ବିନୟରେ ।
ଭୀଷ୍ମ-ଯୁଧିଷ୍ଠିରଙ୍କ ମସ୍ତକ ଶୁଙ୍ଘିଲେ
ବସରେ ବାବୁ ମୋର ପାଶରେ ବୋଇଲେ ।
କେଉଁ ଧର୍ମ ତୁମ୍ଭର ପୁଛିବାକୁ ମନ
ହେଉଅଛି ତାହା ହେ ପଚାର ରାଜନ ।
ଯୁଧିଷ୍ଠିର ଭୀଷ୍ମଙ୍କ ବଚନେ ସୁଖୀ ହେଲେ
କୃଷ୍ଣଙ୍କ ଆଦେ ଭୀଷ୍ମ-ପାଦରେ ନମିଲେ ।
କହିଲେ ହେ ଭୀଷ୍ମ ମୋତେ ନୃପତିଙ୍କର
ଧର୍ମକୁ କହ ଇଚ୍ଛା ହେଉଛି ମୋହର ।
ତିନିବର୍ଗ ରାଜଧର୍ମରେ ରହିଅଛି
ଏ ବାହାରେ ମୋକ୍ଷ ଧର୍ମ ତ ମଧ୍ୟ ଅଛି ।
ଘୋଡ଼ାକୁ କଡ଼ି ଆଳ ହାତୀକ ଅଙ୍କୁଶ
ଲୋକଙ୍କୁ ରାଜଧର୍ମ କରେ ଜାଣ ବଶ ।
ଅନ୍ଧକାରକୁ ସୂର୍ଯ୍ୟ ନାଶିବା ପରାଏ ।
ରାଜଧର୍ମ ଲୋକ ମୋହକୁ କରେ କ୍ଷୟେ ।
ଏ ସକାଶୁଁ ତୁମ୍ଭଙ୍କୁ ବୋଲୁଅଛି ପିତା
କହ ରାଜଧର୍ମ ଛଡ଼ାଅ ମୋର ଚିନ୍ତା ।
ଶ୍ରୀକୃଷ୍ଣ ତ ତୁମ୍ଭଙ୍କୁ ସ୍ତୁତି କରୁଛନ୍ତି
ଭୀଷ୍ମ ବିନା ଆନ ନ ଜାଣେ ଧର୍ମରୀତି ।

— * —

## ଭୀଷ୍ମଙ୍କର ଉପଦେଶ ଦାନ

ଭୀଷ୍ମ ଯେ ବୋଇଲେ ଶ୍ରୀକୃଷ୍ଣଙ୍କୁ ଦ୍ୱିଜଙ୍କୁ
ଧର୍ମଙ୍କୁ ପ୍ରଣମି କହିବ ତୁମ୍ଭଙ୍କୁ ।

ରାଜଧରମଯାକ ସମ୍ବାଦ ରାଜନ
ଶୁଣିବାକୁ ଯେବେ ହେଉଅଛି ତୁମ୍ଭ ମନ ।
ଏତେ ବୋଲଣ ଭୀଷ୍ମ କୃଷ୍ଣଙ୍କର ତୁଲେ
ଧର୍ମ ଋଷି ମାନଙ୍କୁ ନମସ୍କାର କଲେ ।
ଯୁଧିଷ୍ଠିର-ରାଜାଙ୍କୁ ବୋଇଲେ ରାଜନ
ହୋଇବ ଯେ ଆଗ ପାଳିବ ଦ୍ୱିଜଜନ ।
ଏ ବାହାରେ ଦେବତା ବଶ ହୋଇବାକୁ
ଆଗ କରି ମଧ୍ୟ କରିବ ଉପାୟକୁ ।
ରାଜା ଆଗ ଯେ ଦେବ ଦ୍ୱିଜଙ୍କୁ ପୂରିଲେ ।
ଲୋକେ ଶୁଣିଲେ ବୋଲନ୍ତି ଅଚ୍ଛା କଲେ ।
ସବୁକାଳେ ପଉରୁଷକୁ ଉଦ୍‌ଯୋଗ
କରୁଥିବ ରାଜା କରିଣ ଅନୁରାଗ ।
ଉଦଯୋଗ ବିନା ରାଜାର କାର୍ଯ୍ୟ ସିଦ୍ଧି
ହେବାକୁ ଶାସ୍ତ୍ରଙ୍କରେ ଲେଖିନାହିଁ ବିଧି ।
ଦଇବ ଉଦ୍‌ଯୋଗ ଦୁଇରେ ପଉରୁଷ
ଅଧିକ ଜାଣ ଅଟେ ଆହେ ନରଈଷ ।
ସତ୍ୟ ବିନା ସିଦ୍ଧି ନୃପତିମାନଙ୍କର
ଆନରେ ଶୁଣା ନାହିଁ ହେବା ନରବର ।
ଋଷିମାନଙ୍କର ସେହିରୂପେ ଯେ ସତ୍ୟ
ପରମ ଧନ ବୋଲି ଜାଣ ପାଣ୍ଡୁସୁତ
ଗୁଣବାନ ଶୀଳବନ୍ତ ଦୟାବାନ
ଧରମନିଷ୍ଠ ଦାନ ପ୍ରିୟଦରଶନ ।
ଜିତେନ୍ଦ୍ରିୟ ବଦାନ୍ୟ ହୋନ୍ତି ଯେ ଭୂପାଳ
ଶ୍ରୀଭ୍ରଷ୍ଟ ନୁହନ୍ତି ସେ ଭଲେ କେଉଁକାଳେ ।
ପରଛିଦ୍ର ଖୋଜି ନିଜ ଛିଦ୍ର ଲୁଚାଇ
ମନ୍ତ୍ରଣାକୁ ଗୁପ୍ତ କରିବ ନରସାଇଁ ।
ମୃଦୁତା ତୀକ୍ଷ୍ଣତା ଦୁଇଗୁଣ ଧରି
ଥିବ ଯେ ହେବ ଏ ମହୀରେ ଦଣ୍ଡଧାରୀ ।
ଦୋଷୀ ହେଲେ ବ୍ରାହ୍ମଣ ଦେବଦଣ୍ଡ ତାକୁ
ନ ଦେବ ଯେ ରଖିବ ଆପଣା ଧର୍ମକୁ ।
କ୍ଷତ୍ରିୟର ବ୍ରାହ୍ମଣ ସଲିଳର ଅଗ୍ନି
ଲୋହର ଅଗ୍ନି ଅଟଇଟି ଜନ୍ମସ୍ଥାନି ।
ଯେ ଯହିଁରୁ ଯାତ ସେ ତହିଁରେ ନିହତ
ହେଉଅଛି ଜାଣ ହେ ପାଣ୍ଡୁ-ନୃପସୁତ ।
ଏହି କଥା ଜାଣି ଦ୍ୱିଜଙ୍କୁ ନମସ୍କାର
କରୁଥିବ ଯେ ହେବ ବୁଦ୍ଧିମନ୍ତ ନର ।

ଲୋକ-ସଂହାରକ ହୋଇବ ଯେଉଁ ନର
ରାଜାର ଧର୍ମ ଅଟେ ତାକୁ ମାରିବାର ।
ବ୍ରାହ୍ମଣ ଶସ୍ତ୍ର ଧରି ଆସିଲେ ଯୁଦ୍ଧକୁ
ନିଗ୍ରହିତ କରିବ ନ ବଧିବ ତାକୁ ।
ଗୁରୁପତ୍ନୀ ହରିବ ବ୍ରାହ୍ମଣେ ମାରିବ
ଗର୍ଭହତ୍ୟା କରି ରାଜାରେ ଦୋଷୀ ହେବ ।
ଯେଉଁ ଦ୍ୱିଜ ତାହାକୁ ଦେଶର ପ୍ରାନ୍ତରେ
ରଖାଇବ ରାଜା ଶାସ୍ତ୍ରଙ୍କର ମତରେ ।
ଯେ ଦିଅଇ ଦ୍ୱିଜମାନଙ୍କୁ ଦେହଦଣ୍ଡ ।
ତାକୁ ସବୁକାଳେ ଲାଗଇ ଯମଦଣ୍ଡ
ବ୍ରାହ୍ମଣଭକ୍ତକୁ ନଯୋଗେ ରଖିବାର
ସମ୍ମତି ସ୍ୱରୂପଟି ଅଟେ ରାଜନର ।
ସ୍ୱବର୍ଣ୍ଣପାଳକରେ କରିଥିବ ଦୟା
ଗୁଡ଼ ଦେଇ କରିଣ ହୃଦୟରୁ ମାୟା ।
ରାଜା ଯେବେ ଧର୍ମ ସତ୍ୟକୁ ଆଚରଇ
ସେ ବଳରେ ପ୍ରଜାଙ୍କୁ ବଶ ସେ କରଇ ।
ନିତ୍ୟରେ କ୍ଷମାବନ୍ତ ହୋଇଲେ ରାଜନ
ଅଧର୍ମରେ ତାକୁ ଗଣନ୍ତି ସବୁଜନ ।
ରାଜା ହୋଇଣ ହେଲେ ମୃଦୁ କ୍ଷମାଶୀଳ
ନୀରଜନମାନେ ଯେ ହୁଅନ୍ତି ପ୍ରବଳ ।
ସେହିରୂପେ ତୀକ୍ଷ୍ଣବୁଦ୍ଧିକ ଆଚରିଲେ
ନୃପତିମାନେ ନାଶ ଯାଆନ୍ତିଟି ଭଲେ ।
ଏ ସକାଶୁ ବସନ୍ତ ସୂର୍ଯ୍ୟ ପରି ହୋଇ
ତୀକ୍ଷ୍ଣ ମୃଦୁତାକୁ ନୃପତି ଥିବ ବହି ।
ଆପଣା ପର ଦୁଇ ପରୀକ୍ଷା କରୁଥିବ
ନିତ୍ୟବ୍ୟବସାୟୀ ହୋଇ କ୍ଷଣେ ନ ରହିବ ।
ଗୀତ ନୃତ୍ୟ ସ୍ତ୍ରୀଙ୍କରେ ଆସକ୍ତ ନୃପତି
ହେଲେ ଇଚ୍ଛାସୁଖରେ ନାଶ କରେ ଭୂତି ।
ଲୋକଙ୍କୁ ଯେଉଁ ରାଜା ଉଦବେଗ ଦିଏ
ପରାଭବ ତାଙ୍କୁ ଗୋଡ଼ାଇଥାଏ ଭୟେ ।
ଗର୍ଭିଣୀ ସ୍ତ୍ରୀଗ ଯେଉଁରୂପେ ପୁତ୍ର ହିତ
ବାଞ୍ଛରେ ସେହିରୂପେ ହେବ ନୃପସୁତ ।
ଏହା ଜାଣି ରାଜା ଲୋକଙ୍କ ହିତ ଗୋଟି
କରୁଥିବ ଲେଖିଛି ଏ ଧର୍ମଶାସ୍ତ୍ରଟି ।
ତୁମ୍ଭଙ୍କୁ କହୁଥାଇଁ ସବୁକାଳେ ଶୁଭ
ବୁଦ୍ଧି କରିଥିଲେ ଜଣିବ ଏ ସଂସାର ।

ଭୃତ୍ୟ ଭୂଲେ ବସି ନୋହିବ ପରିହାସ
ତହିଁରେ ଯା ଦୋଷ ଶୁଣ ନରଈଶ ।
ରାଜା ଯାହା ବୋଲନ୍ତି ନ କରନ୍ତି ତାହା
ବୁଲୁଥାନ୍ତି ଦାଣ୍ଡରେ ବୋହିଲାଇ ବାହା ।
ଗୁପତକଥାଯାକ ପୁଚ୍ଛନ୍ତି ରାଜାକୁ
ନ କହିଲେ ରାଜା ଦହନ୍ତି ଗୁମାନକୁ ।
ଯେବଣ କଥା ମାଗିବାରଟି ନୁହଇ
ତା ମାଗି ନ ଦେଲେ ବସନ୍ତି ରୋଷ ବହି ।
ରାଜାର ଖାଇବା ଗ୍ରାସକୁ କରନ୍ତି ଆଶ
କରୁଥାନ୍ତି ବୋଲିଣ ମୁଁ ବଡ଼ ବିଶ୍ୱାସ
ଲୋକଙ୍କୁ ଡରାଇଣ ଖାନ୍ତି ନିତି ଲାଞ୍ଚ
ରାଜାର କାର୍ଯ୍ୟଟିରେ ବାଧା କରି ପାଞ୍ଚ ।
ବେଶ ଭୂଷା ହୁଅନ୍ତି ରାଜା ଯେଉଁପରି
ଏମାନେ ମଧ୍ୟ ସାଜ ହୁଅନ୍ତି ସେପରି ।
ଅନ୍ତଃପୁର ଦ୍ୱାରର ସମୀପକୁ ଯାଇ
ଅନ୍ତଃପୁର ଲୋକଙ୍କୁ ବସନ୍ତି ରସାଇ ।
ବସିଣ ଥାଇ ରାଜା ପାଶରେ ଖଙ୍କାର
ପକାଇ ମାଡ଼ିଦେଲେ ନୁହନ୍ତି କାତର ।
ରାଜାର ଘୋଡ଼ା ହାତୀ ରାଜାକୁ ନକହି
ଯାଉଥାଆନ୍ତି ଚଢ଼ି ଗାରିମା ଦେଖାଇ ।
ରାଜା କ୍ରୋଧ ହୋଇଲେ ପ୍ରକାଶନ୍ତି ହାସ ।
ସତ୍କାର କଲେ ମନ କରନ୍ତି ବିରସ ।
ରାଜା ଯେ ବିଷୁର କରନ୍ତି ତା ବିଷୁର
କରନ୍ତି ନାଶି ଦୁଷ୍ଟ ବୁଦ୍ଧି କ ଆଚର ।
ରଜାର ଯେ ଗୁପତ କଥା ତା ଦାଣ୍ଡରେ
ପକାବନ୍ତି କହିଣ ଆପଣା ତୁଣ୍ଡରେ ।
ବୋଲୁଥାନ୍ତି ଏ ରାଜାଟିରେ କାର୍ଯ୍ୟ ନାହିଁ ।
କି କରିବା କେତେ ବା କହିବା ବୁଝାଇ ।
କଲେ ତାହାଙ୍କୁ ପର ଜନେ ବସି ନିନ୍ଦା
ଆପଣା ଇଚ୍ଛାରେ ପ୍ରକାଶୁଥାନ୍ତି ନିନ୍ଦା ।
ଗ୍ରାମ ଦେଲେ ନୃପତି ନୁହନ୍ତି ସନ୍ତୋଷ
ବୋଲୁଥାନ୍ତି ଏହା କରିବୁ ଆମ୍ଭେ କିସ ।
ରାଜା ଯାହା ଲୋକଙ୍କୁ ପୂର୍ବରୁ ଦେଇଥାଏ
ତା ହରିବାକୁ କରୁଥାନ୍ତି ସେ ଉପାୟେ ।
ରାଜାର ଭୂଲେ ଅହର୍ନିଶି ବସି କ୍ରୀଡ଼ା
କରିବାକୁ ଇଚ୍ଛା କରନ୍ତି ଛାଡ଼ି ବ୍ରୀଡ଼ା ।

କହୁଥାଆନ୍ତି ଲୋକମାନଙ୍କୁ ଅନାଇଁ
ରାଜା ଆମ୍ଭ ବୋଲୁଁ ବାହାର ନ ପାରଇ ।
ରାଜା ଯେବେ ଲୋକ ଭୂଲରେ ପରିହାସ
ହୁଅଇ ଯୁଧିଷ୍ଠିର ଉପୁଜଇ ଏ ଦୋଷ ।
ନିତି ଯେବେ ରାଜା ଉଦ୍‌ଯୋଗକୁ କରେ
ନ ପଡ଼ଇ ଜାଣ ସେ କେବେହେଁ ଶୋକରେ ।
ରାଜାର ଯୁଦ୍ଧ ବ୍ରାହ୍ମଣର ପରବାସ
ନୋହିଲେ ଏ ଦୁହିଙ୍କି ପୃଥ୍ୱୀ କରେ ନାଶ ।
ପ୍ରୀତି କଲା ଲୋକର ସଙ୍ଗତରେ ପ୍ରୀତି
କରିବ ଅପ୍ରୀତିରେ କରିବ ଅପ୍ରୀତି ।
ରାଜ୍ୟ ବିଷୟେ ଯେ ଅହିତ ବିଷୁରିବ
ଗୁରୁ ହେଲେହେଁ ତାକୁ ହାଣି ପକାଇବ ।
ଗୁରୁ ଯେବେ ଅପଥ୍ୟ ମାର୍ଗେ ପ୍ରବର୍ତ୍ତିବ ।
ମରୁତ କହିଛନ୍ତି ତାଙ୍କୁ ଦଣ୍ଡ ଦେବ ।
ସଗର ରାଜାଙ୍କର ଅସଗର ପୁତ୍ର
ପୁରଜନ ବାଳକଗଣେ କଲେ ହତ ।
ସଗର ତା ଶୁଣି ଛାଡ଼ିଲେ ସେ ପୁତ୍ରକୁ
ରଞ୍ଜାଇବାକୁ ପୁରଜନ ମାନସକୁ ।
ବ୍ରାହ୍ମଣକୁ ମିଥ୍ୟା କହିଲେ ଶ୍ୱେତକେତୁ
ଉଦ୍ଦାଳକ ଛାଡ଼ିଲେ ଜାଣି ଏହି ହେତୁ ।
ଲୋକଙ୍କୁ ରଞ୍ଜାଇବ ସତ୍ୟକୁ ପାଳିବ
ସଦ୍‌ବ୍ୟବହାର କରିବ ଧର୍ମଦେବ ।
ଆପଣା ଧନ ପାଇ ହୋଇବ ତୃପତ
ପରଧନେ ନ ଦେବ କଦାଚିତେ ଚିତ୍ତ ।
ଭୃତ୍ୟବର୍ଗେ ଯଥା ସମୟେ ବରତନ
ଦେବାର କର୍ତ୍ତବ୍ୟ ଅଟଇ ହେ ରାଜନ ।
ଚତୁରଙ୍ଗ ଜାଣି ଯେ ଗୁପ୍ତମନ୍ତ୍ର ହୋଏ
ରାଜା ବୋଲି ତାହାକୁ ବୋଲନ୍ତି ସର୍ବେ ।
ପାପ କଥା ହେଲେ ଲୁଚାଇଥିବ ରାଜା
ନ କହିବ କାହାକୁ ଫେଡ଼ିକରି ମଞ୍ଜା ।
କାହାକୁ ହେଁ ବିଶ୍ୱାସ ନ ଯିବ ରାଜନ
ନିଜକୁ ନିଜେ ଜଗିଥିବ ତ୍ରିଭୁବନ ।
ବର୍ଣ୍ଣଧର୍ମରକ୍ଷକ ହୋଇଲେ ରାଜନ
ଧର୍ମଶଙ୍କରଟି ନୁହଇ ପ୍ରଜାଜନ ।
ଶୁଣି ଦୋଷ ଦେଖି ଷାଡ଼୍‌ଗୁଣ୍ୟମାନ୍ତି ଧରି
କର୍ମ କଲେ ଜୟଶ୍ରୀ ଲଭେ ଦଣ୍ଡଧାରୀ ।

ବରଗି ଦୂତ ପରଛିଦ୍ର ଜାଣୁଥିବ
ଉତ୍କୋଚ ଦେଇ ମଧ୍ୟ ଭେଦ ଜନ୍ମାଇବ ।
ହେବ ଯମ ପରି ପ୍ରତାପୀ ଈଶ୍ୱରକ
କୁବେର ପରି ଜାଣ କୋଷସମ୍ବର୍ଦ୍ଧକ
ଅନଳସ ହୋଇଣ ବୃଦ୍ଧ ଉପାସନ
କରି କହୁଥିବ ଯେ ହସିଣ ବଚନ ।
ଲୋଭକୁ ଛାଡ଼ି ସାଧୁ ବୃତ୍ତିରେ ରହିବ
ଉଚିତ କଥା ଯେବେ ନ ପଡ଼େ ଛାଡ଼ିବ ।
ସାଧୁଲୋକମାନଙ୍କୁ ଦେଉଥିବ ଦାନ
ଆଣୁଥିବ ଅସାଧୁଲୋକଙ୍କର ଧନ ।
କାଳରେ ଭକ୍ଷ୍ୟ ଭୋଜ୍ୟ ପେୟ ଦେଉଥିବ ।
କାଳକୁ ଜାଣି ବିଚରଣ ଯେ କରିବ ।
ଶୂର ଭକ୍ତ ଧାର୍ମିକ ସୁସ୍ଥ ବିଦ୍ୟାବନ୍ତ
ଲୋକଙ୍କୁ ସ୍ୱସମ୍ପତ୍ତି କରୁଥିବ ଦତ୍ତ ।
କେବଳ ରଖିଥିବ ଛତ୍ର ଆଜ୍ଞା ଦୁଇ
ଜାଣ ହେ ଯୁଧିଷ୍ଠି ହସ୍ତିନା ନରସାଇଁ ।
ଆଚରଣ ଗୋଚର ଅଗୋଚର ଲୋକେ ।
କରଉଥିବ ରାଜା ମିତ୍ର ଥୋକେ ଥୋକେ ।
ଏ ରୂପେ ଯେଉଁ ରାଜା କରୁଅଛି ମିତ୍ର
ତାହାକୁ ଛୁଇଁ ନ ପାରଇଟି ବିପତ୍ତି ।
ଯେଉଁ ରାଜନ ଲୋଭୀ କୁଟିଳ ହୁଅଇ
ଦୋଷ ଦେଇ ଅନ୍ୟର ଧନକୁ ହରଇ ।
ତାହାକୁ ମେଳ ହୋଇ ମାରନ୍ତି ତା ଜନ-
ମାନେଟି ଏଥି ନାହିଁ ସନ୍ଦେହ ରାଜନ ।
ଯେଉଁ ରାଜା ଲୋକଙ୍କ ଚିତ୍ତକୁ ରଞ୍ଜାଏ
ତାହାକୁ ଭଜି ରହିଥାନ୍ତିଟି ସଭିଏଁ ।
ଅକ୍ରୋଧନ ମୃଦୁଦଣ୍ଡ ଯେ ଜିତେନ୍ଦ୍ରିୟ
ରାଜାକୁ ପ୍ରାଣୀଏ ପୂଜନ୍ତି ଅତିଶୟ ।
ଯେ ରାଜା ପ୍ରାଜ୍ଞ ଦାମ ସୁନ୍ଦରଦର୍ଶନ
ପ୍ରସନ୍ନ ଧନସ୍ୱୀ ମନସ୍ୱୀ ନିତ୍ୟୋତ୍ଥାନ
ନ୍ୟାୟ ଜାଣି ଶତ୍ରୁ ଛିଦ୍ରକୁ ଜଗିଥାଏ
ପଡ଼ିଲେ କାର୍ଯ୍ୟ ତତ୍କାଳରେ କରି ନିଏ ।
ଏମନ୍ତ ରାଜାରତି କାର୍ଯ୍ୟ ହାନି ନାହିଁ
ଯା ଚିନ୍ତୁଥାଏ ତା ଯାଏ ସିଦ୍ଧ ହୋଇ ।
ତାହାର ଅତି ଭଲ ଯେଉଁ କାର୍ଯ୍ୟ ହେବ
ସେହି କାର୍ଯ୍ୟକୁ ରାଜା ଆରମ୍ଭ କରିବ ।

ପୁତ୍ର ପରି ପ୍ରଜାଙ୍କୁ ପାଳଇ ଯେ ରାଜା
ତାହାରତି କୀର୍ତ୍ତି ବାଜଇ ହୋଇ ବାଜା ।
ଯେଉଁ ରାଜାଠିକି ପ୍ରଜାଏ ଯାଚ ଧନ
ଦେଖାଉଛନ୍ତି ଲୋକେ ସେହି ବଡ଼ ଜାଣ ।
ଧର୍ମରେ ଯେଉଁ ରାଜ୍ୟେ ପ୍ରଜା ରହିଥାନ୍ତି
ସେ ରାଜ୍ୟ ରାଜାକୁଟି ସର୍ବେ ପ୍ରଶଂସନ୍ତି ।
ଯେଉଁ ରାଜା-ଦେଶେ ସତ୍ୟରେ କାରବାର
ହୋଏ ସେ ଦେଶେ ଦ୍ରବ୍ୟ ମିଳଇ ଅପାର ।
ଯେଉଁ ରାଜା ଚୂର ବଳର ଶତ୍ରୁଜନ
ନ ଜାଣେ ସେ କରେ ଜଗତ ଅଧୀନ ।
ବାଲ୍ମୀକି କହିଛନ୍ତି ପୂର୍ବେ ରାମଙ୍କୁ
ପ୍ରଜାଏ ଆଗ ରକ୍ଷା କରିବେ ରାଜାଙ୍କୁ ।
ତଦନ୍ତେ ବୁଝିବେ ଯେ ଭାର୍ଯ୍ୟା ବିତ୍ତ କଥା
କାରଣ ରଜା ବିନା ହେବ ଏହା ବୃଥା ।
ରାଜାର ପ୍ରଜାରକ୍ଷା ଅଟେ ବଡ଼ କର୍ମ
ଏଥୁଁ ନାହିଁ ତାହାର ବଳିଶଲେ ଧର୍ମ ।
ଅବକ୍ତା ଆଚାର୍ଯ୍ୟେ ଯେ ଅରକ୍ଷକ ରାଜା
ଗ୍ରାମକାମୀ ଗଉଡ଼ ଦୁଷ୍ଟଭାଷୀ ଭାର୍ଯ୍ୟା ।
ବେଦ ନ ପଢ଼ିଥିବା ଦ୍ୱିଜ ବନକାମ
ଉଣ୍ଡାର ଏହାଙ୍କୁ ଛାଡ଼ିବ ନରୋତ୍ତମ ।
ବିଶାଳାକ୍ଷ ଶୁକ୍ର ଯେ ଇନ୍ଦ୍ର ବୃହସ୍ପତି
ବ୍ରହ୍ମର୍ଷିର ତପସ୍ୱୀ ଭରଦ୍ୱାଜ ଯତି ।
କହିଛନ୍ତି ରାଜା କରିବ ପ୍ରଜା ରକ୍ଷା
ଜାଣ ଯୁଧିଷ୍ଠିର ଯେ କରି ଅତି କକ୍ଷା ।
ରାଜ୍ୟ ରଖିବାର ଅଟଇ ସେ ସାଧନ
ତାହା କହିବା ଏବେ ଶୁଣ ଦେଇ ମନ ।
ଚର-ଦୂତ ସାଧୁସଂଗ୍ରହ କାଳେ ଦାନ
ଶୌର୍ଯ୍ୟ ଦାକ୍ଷ୍ୟ ସତ୍ୟନ୍ୟାୟରେ ଯେ ଆଦାନ
ବୁଦ୍ଧିମନ୍ତର ସେବା ସୈନ୍ୟହରଷଣ
ଶତ୍ରୁଙ୍କୁ ଅନବଜ୍ଞା କୁଳୀନ ରକ୍ଷଣ ।
ମାତ୍ସର୍ଯ୍ୟ ହୀନଜନ ସଦ୍ୟୁକ୍ତି ଗ୍ରହଣ
ହାରି ଭୃତ୍ୟ ଅବିଶ୍ୱାସ ପ୍ରଜାରଞ୍ଜନ ।
ଜୀର୍ଣ୍ଣଘର ଦର୍ଶନ ପରଆଶ୍ୱାସନା
ସାଧୁଜନର ଅତ୍ୟାଗ କୋଷବର୍ଦ୍ଧନ ।
ନିତ୍ୟ ଉଦ୍ୟମ ମିତ୍ରମାର୍ଗାନୁସରଣ
ଶତ୍ରୁ ମିତ୍ର ମଧ୍ୟସ୍ଥ ପରୀକ୍ଷାକରଣ ।

ସମ୍ପତ୍ତି ଦଣ୍ଡ ପ୍ରାଣଦଣ୍ଡର ପ୍ରୟୋଗ
ଅସାଧୁ ବର୍ଜନ ରାଜାର କାର୍ଯ୍ୟଭାର ।
ଏ ବାହାରେ ଯେତେ ବସିବେ ହୋଇ ଗୋଟି
କରୁଥିବ ତାହାଙ୍କ ମନ ଫଟାଫଟି ।
ନୃପଙ୍କର ଉଦ୍ୟୋଗ ଅଟେ ମୂଳଧର୍ମ
କହିଅଛନ୍ତି ବୃହସ୍ପତି ଦ୍ୱିଜୋତ୍ତମ ।
ଦେବେ‌ତି ଉଦ୍ୟୋଗ କରି ଅମୃତକୁ
ଖାଇକରି ଜିଣିଲେ ମୃତ୍ୟୁଦେବତାଙ୍କୁ ।
ଉଦ୍ୟୋଗେ ଇନ୍ଦ୍ର ତିନିଲୋକେ ଅଧିପତି
ଉଦ୍ୟୋଗୀ ପୁରୁଷକୁ ପଣ୍ଡିତେ ମାନନ୍ତି ।
ଯେଉଁ ରାଜା ଉଦ୍ୟୋଗ କରି ନ ପାରଇ
ଧଣ୍ଡସାପ ବୋଲିଣ ତାହାକୁ‌ଟି କହି ।
ଦୁର୍ବଳ ହେଲେ ଶତ୍ରୁ ନ କରିବ ହୀନ
କଲେ କାଳେ ସେହିଟି ନେବ ତୁମ୍ଭ ପ୍ରାଣ ।
ବିଜୁ ଅନରିଜୁ ନୋହିଲେ ନରପତି
ଧରି ନ ପାରଇଟି ରାଜ୍ୟର ବିଭୂତି ।
ପ୍ରଜା ପାଉଁ ପାଉଁ ବିପତ୍ତି ଯେବେ ପାଏ
କଦା ତାକୁ କେହି ନ କରନ୍ତି ଗୋଟିଏ ।
ହେ ଯୁଧିଷ୍ଠିର ରାଜକର୍ମ କିଛିଅଂଶ
କଲଇଁ ଏବେ ତୁମ୍ଭ ଆଗରେ ପ୍ରକାଶ ।
ଯେବେ କେଉଁ କଥାରେ ସନ୍ଦେହ ହେ ଅଛି
ତେବେ ତାହା କହ ଛଡ଼ାଇ ଦେଉଅଛି ।
ବାସୁଦେବ ବ୍ୟାସ ଯେ ଅଶ୍ୱ ଦେବସ୍ଥାନ
କୃପ ସଞ୍ଜୟ ସର୍ବେ ହେଲେ ତୋଷମନ ।
ଭୀଷ୍ମଙ୍କର କହିବା ଧରମ କଥାକୁ
ପ୍ରଶଂସିଲେ ମାନସେ ବହି ସରାଗକୁ ।
ଯୁଧିଷ୍ଠିର ସୂର୍ଯ୍ୟ ଅସ୍ତ ହେବାର ଦେଖି
ଭୀଷ୍ମ ପାଶୁଁ-ମେଲାଣି ହେଲେ ହୋଇ ଦୁଃଖୀ ।
କହିଲେ ମୁହିଁ କାଲି ଆସି ରାଜଧର୍ମ
ବାକି ଯେ ଥିବ ତା ପୃଚ୍ଛିବି କୁରୁତ୍ତମ ।
ଏହିରୂପେ କହିଣ ଧର୍ମଙ୍କର ବଂଶ
ହସ୍ତିନା ଯିବାକୁ ଉଠିଲେ କରି ଇଚ୍ଛା ।
ଭୀଷ୍ମଙ୍କ ପାଦ ଦୁଇ ଆନନ୍ଦେ ବନ୍ଦିଲେ
କୃଷ୍ଣ ଆଦି ଯେ ଯାହା ରଥରେ ବସିଲେ ।
ଦୃଷଦ୍ୱତୀ ନଦୀରେ ସ୍ନାନ ସନ୍ଧ୍ୟା ସାରି
ହସ୍ତିନାରେ ପ୍ରବେଶ ହେଲେ ଦଣ୍ଡଧାରୀ ।

କୃଷ୍ଣଙ୍କ ଯିବା ଦେଖି ତପସ୍ୱୀ ଜନ
ଯେ ଯାହା ଆଶ୍ରମକୁ କଲେ ଯେ ଗମନ ।
ରାତ୍ରି ଶେଷରେ ପାଣ୍ଡବଙ୍କୁ ଜନାର୍ଦ୍ଦନ
ଘେନି କରି ଆସିଲେ ଭୀଷ୍ମ ସନ୍ନିଧାନ ।
ବ୍ୟାସ ଆଦି ଋଷିଏ ସେହି କାଳ ଜଗି
ଆସିଲେ ଭୀଷ୍ମଠାକୁ ହୋଇ ଅନୁରାଗୀ ।
ପୂର୍ବପରି ମର୍ଯ୍ୟାଦା କରାକରି ହେଲେ
ଭୀଷ୍ମଙ୍କ ଶ୍ରୀରପଟେ ଘେରିଣ ବସିଲେ ।
ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ରାଜଶବ୍ଦ କି ରୂପେ ହେଲା ମୋତେ କହ ।
ସବୁରି ତ ହେ ହାତ ଗୋଡ଼ ମୁଖ ସରି
ଜନମ ମୃତ୍ୟୁ ଦୁଃଖ ସୁଖ ତ ସବୁରି ।
ସମାନ ହୋଇକରି ପ୍ରବର୍ତ୍ତିଛି ନିତି
ରାଜାର କି ବିଶେଷ କହ ମହାମତି ।
ଏକ ରାଜା ପ୍ରସନ୍ନ ହୋଇଲେ ପ୍ରସନ୍ନ
ହେଉଅଛି ସମସ୍ତ ପ୍ରାଣୀଙ୍କର ମନ
ସେହିରୂପେ ଦୁଃଖୀ ହୋଇଲେ ଦୁଃଖୀ ହୋଇ
ସବୁ ଲୋକେ ବସନ୍ତି ମୁଣ୍ଡେ ହାତ ଦେଇ ।
ରାଜା ଶୂର ହେଲେ ହୁଅନ୍ତି ଜନେ ଶୂର
ଏ କାରଣ ମୋତେ ତ ନୁହଇ ଗୋଚର ।
ଭୀଷ୍ମ ବୋଇଲେ ହେ ଶୁଣ ଯୁଧିଷ୍ଠିର
ସତ୍ୟେ ହେଲା ଯେସନ୍ତେ ପ୍ରତିଷ୍ଠା ରାଜାଙ୍କର ।
ରାଜା ରାଜ୍ୟ ଦଣ୍ଡକର୍ତ୍ତା ଦଣ୍ଡ ସେକାଳେ
ନ ଥିଲା ଥିଲେ ସର୍ବେ ସ୍ୱତେ ପରସ୍ପରେ ।
ଧର୍ମରେ ସବୁ ପ୍ରାଣୀମାନେ ରତ ହୋଇ
ପରସ୍ପରେ ପାଳନା କରନ୍ତି ଯେ ରହି
ଅନ୍ୟୋନ୍ୟରେ ଧର୍ମ ପାଳନା କରୁ କରୁ
ଜ୍ଞାନ ଲୋପ ହୋଇଲା ଚିତ୍ତ ବିଭ୍ରମରୁ ।
ଏହି ସକାଶରୁ ପ୍ରବେଶ ହୋଇ ମୋହ
ଧରମକୁ ତଡ଼ାଇବାରେ କଲା ସ୍ନେହ ।
ତାହା ଦେଖିଣ ଲୋଭ ମହାସୁଖ ପାଇ
ରହିଲା ସବୁ ପ୍ରାଣୀ ହୃଦଦେଶେ ଯାଇ ।
ଲୋଭୁଟିକ କାମ ହୁଅନ୍ତେ ଅନୁକୂଳ
ରାଗ ପ୍ରାଣୀମାନଙ୍କ ହୋଇଲା ପ୍ରବଳ ।
ଏହି ସକାଶରୁ ପ୍ରାଣୀଏ ଘାଣ୍ଟି ହୋଇ
ଅମର୍ଯ୍ୟାଦାକୁ ଆଚରିଲେ ନରସାଇଁ ।

ତଦନ୍ତେ ଏ ମର୍ତ୍ତ୍ୟମଧ୍ୟରୁ ବେଦ ଆନ
ଯଜ୍ଞାଦି ଧର୍ମ କର୍ମ ହେଲା ଲୋପ ଜାଣ ।
ଦେବ ଧର୍ମ ଦୁହିଁଙ୍କ ଲୋପ ଦଶା ଦେଖି
ଦେବତାଏ ହୃଦେ ଭାବିଲେ ହୋଇ ଦୁଃଖୀ ।
ବ୍ରହ୍ମାଙ୍କର ପାଦରେ ଶରଣ ପଶିଲେ
ମର୍ତ୍ତ୍ୟରୁ ଧର୍ମ ଗଲା ବୋଲିଣ ଭାଷିଲେ ।
ଧର୍ମ ନ ଥିବାରୁ ନ କଲେ ଲୋକେ ଯାଗ
ଅପୂର୍ବ ହେଲଣି ଆମ୍ଭଙ୍କୁ ହବିର୍ଭାଗ ।
ଏଥିକି ସୃଷ୍ଟି ଯେଉଁ କଥା ହେବ ଭଲ
ତାହା କର ହେ ଏବେ ବସି ଲୋକପାଳ ।
ବ୍ରହ୍ମା ବୋଇଲେ ହେ ନ ଭାଳ ଦେବଚୟ
ତୁମ୍ଭର ଶ୍ରେୟ ମୁଁ କରିବି ଉପାୟ ।
ଏହା କହି ଲକ୍ଷେ ଅଧ୍ୟାୟେ ନୀତିଶାସ୍ତ୍ର ।
କଲେ ବ୍ରହ୍ମଦେବ ତା ଶୁଣ ପାଣ୍ଡୁପୁତ୍ର ।
ସକାମରେ ତ୍ରିବର୍ଗ ଧର୍ମ ଅର୍ଥ କାମ
ନିଷ୍କାମ ଭେଦେ ଏକ ମୋକ୍ଷ ତାର ନାମ ।
ଦଣ୍ଡଜନ୍ୟ ତ୍ରିବର୍ଗ ଶାମ୍ୟ ବୃଦ୍ଧି କ୍ଷୟ
ବଣିକ ତପୀ ଚୋର ପ୍ରତି ନରସାୟ ।
ଆତ୍ମା ଦେଶ ଉପାୟ ଯାହା ପ୍ରୟୋଜନ
କାଳ, ଏ ଷଡ଼୍‌ବର୍ଗ କର୍ମକାଣ୍ଡ ସଜନ ।
ଜ୍ଞାନ ଜୀବିକାକାଣ୍ଡ ବୃହଦଣ୍ଡ ନୀତି
ପ୍ରସଙ୍ଗ ଶାସ୍ତ୍ରେ ବର୍ଣ୍ଣିଛନ୍ତି ବେଦପତି ।
ଅମାତ୍ୟ ରକ୍ଷକ ରାଜପୁତ୍ର ଲକ୍ଷଣ
ପ୍ରଣିଧି, ଦୂତ, ଗୁପ୍ତଚରର ବିଧାନ ।
ସାମ, ଦାନ, ଭେଦ, ଦଣ୍ଡ, ତ୍ୟାଗ ଉପାୟ
ମନ୍ତ୍ର ବିଭ୍ରମ ସିଦ୍ଧି ଅସିଦ୍ଧି ବିଷୟ ।
ଭେଦ ଅର୍ଥ ତ୍ରିବିଧ ସନ୍ଧି ଯେ ପ୍ରକାରେ
ଦୁଏ ଭୟେ ଦକ୍ଷାରେ ଧନ ଗ୍ରହଣରେ ।
ହୀନ ମଧ୍ୟମୋତ୍ତମ ତହିଁର ବିଧାନ
ବର୍ଣ୍ଣିଛନ୍ତି ସେ ଶାସ୍ତ୍ରେ ବିଧି ଭଗବାନ ।
ସ୍ୱର ଯେ ଯାତ୍ରାକାଳ, ତ୍ରିବର୍ଗ ବିସ୍ତାର
ଧର୍ମ-ଅର୍ଥ ଆସୁର ବିଜୟ ସମାଚାର ।
ଉତ୍ତମ ମଧ୍ୟମାଧର୍ମରେ ରାଷ୍ଟ୍ର, ବଳ,
ଦୁର୍ଗ, ଅମାତ୍ୟ କୋଷ ଲକ୍ଷଣ ସକଳ ।
ପ୍ରକାଶ୍ୟ ଗୁପତ ଏ ଦ୍ୱିବିଧ ସେନାର
ବର୍ଣ୍ଣିତ ହୋଇଛି ଅଷ୍ଟବିଧ ବିସ୍ତାର ।

ରଥ, ହସ୍ତୀ, ପତ୍ତି, ବିଷ୍ଟି, ବାହୀ ଯେ ନାଗ
ଚର; ନାବିକ, କଇଶିକ, ବଳଅଙ୍ଗ ।
ପିଣ୍ଡାବାସେ ଭକ୍ଷ୍ୟଦ୍ରବ୍ୟ ବିଷଦ ନରେ
ଦଣ୍ଡବିଧି ବର୍ଣ୍ଣିତ ହୋଇଛି ତହିଁରେ ।
ଅରି, ମିତ୍ର, ଉଦାସୀନ ଜନ ଲକ୍ଷଣ
ଗ୍ରହ ନକ୍ଷତ୍ର ମାର୍ଗଗୁଣ ଭୂମି ପୁଣ ।
ମନ୍ତ୍ର ଯନ୍ତ୍ର ଧାରଣଯୋଗେ ଆତ୍ମା ରକ୍ଷା
କରି ଆଶ୍ୱାସ ଦେବା ରଥାଦି ପରୀକ୍ଷା ।
ନର ନାଗ ଅଶ୍ୱ-ବଳକର ଯୋଗମାନ
ବ୍ୟୂହଯୁଦ୍ଧ କୌଶଳ ଉତ୍ପାତ ଲକ୍ଷଣ ।
ଶସ୍ତ୍ର ଶାଣିବ ନକ୍ଷେପିବା ସଂହାରିବା
ବଳ କ୍ଷୟ ବୃଦ୍ଧି ପୀଡ଼ା ଉପାୟ ଯେବା ।
ମନ୍ତ୍ରଣା ଶୁଣାଇ ଶତ୍ରୁ ମନ ମୋହିତ
କରିବା ଉପାୟ ତହିଁ ଅଛି ବର୍ଣ୍ଣିତ ।
ଚୌର, କପଟ, ଅଗ୍ନି, ବିଷଦ ଜାଲିଆ
ଯୋଗେ ବଳବାନଙ୍କୁ କରିବା ହାଲିଆ ।
ଧାନ୍ୟାଦି ଛେଦ ମନ୍ତ୍ର ତନ୍ତ୍ର ମହୋଷଧି
ପ୍ରୟୋଗେ ମାତଙ୍ଗଙ୍କ ଜନ୍ମାଇବା ବ୍ୟାଧି ।
ପ୍ରଜାଙ୍କୁ ଉକାଇ ଅନୁଗତେ ଭୁଲାଇ
ଶତ୍ରୁଙ୍କୁ ପୀଡ଼ା ଦେବା କଥା ଅଛି ତହିଁ ।
ସପ୍ତାଙ୍ଗ ରାଜ୍ୟ ହ୍ରାସ ବୃଦ୍ଧି ପୁଣି ଶାନ୍ତ
ସ୍ଥାପନ, ବୀରସଂଗ୍ରାହ କରିବା ନୀତି ।
ନିକୃଷ୍ଟ ମିତ୍ରଯୋଗେ ଶତ୍ରୁଗଣ-ପୀଡ଼ା
ସୂକ୍ଷ୍ମ ବସ୍ତୁର ଫଳତ୍ୟାଗ ମଲ୍ଲକ୍ରୀଡ଼ା ।
ଆୟୁଧ କ୍ଷେପଣ ଦାନ ଦ୍ରବ୍ୟ ସଂଗ୍ରହ
ଭୃତ୍ୟତତ୍ତ୍ୱ ଅଭୃତ୍ୟ ପ୍ରତି ଅନୁଗ୍ରହ ।
ବ୍ୟୟ ଅବ୍ୟସନ ଉତ୍ଥାନ ରାଜଗଣ
ସେନାନୀ ତ୍ରିବର୍ଗର ଗୁଣ ଦୋଷ ପୁଣ ।
ପ୍ରମାଦ ଶକ୍ତିତତ୍ତ୍ୱ ବର୍ଜନ ବିଧାନ
ଅର୍ଥଲାଭ ଅର୍ଥ ବିବର୍ଦ୍ଧନ ଯେ ଦାନ ।
କ୍ରୋଧକାମଜ ଦଶବିଧ ଯେ ବ୍ୟସନ
ବର୍ଣ୍ଣିତ ଅଛି ସେହି ଶାସ୍ତ୍ରେ ନରଗଣ ।
ନାରୀ-ଆସକ୍ତି, ବେଣ୍ଟ, ଅକ୍ଷ, ସୁରାପାନ
ଏ ସ୍ୱର ଅଟେ କାମଜନିତ ବ୍ୟସନ ।
ଦୁର୍ଭାବ ଦୁର୍ଦ୍ଧର୍ଷ, ପରୁଷ ଭଣ
ଆତ୍ମହତ୍ୟା, ନିଗ୍ରହ; ଅରଥ ଦୂଷଣ ।

ଏ ଛଅ କ୍ରୋଧ ଜନ୍ୟ ବ୍ୟସନ ଆବର
ଜାଣ କୌଶଳ କ୍ରିୟା ଯନ୍ତ୍ର ନିର୍ମାଣର ।
କ୍ରୀଡ଼ାଦ୍ରବ୍ୟ ଯୋଗାଡ଼ କର୍ମ ନିର୍ମାଣ
ପଣବ ମୃଦଙ୍ଗ ଶଙ୍ଖ ଘଣ୍ଟିର ଲକ୍ଷଣ ।
ମଣି ପଶୁ ଭୂମି ବସ୍ତ୍ର ଦାସୀ କାଞ୍ଚନ
ଏ ଷଡ଼୍‌ବିଧ ଦ୍ରବ୍ୟର ଯେମନ୍ତ ଅର୍ଜନ ।
ସାଧୁପୂଜା ପଣ୍ଡିତ ସହ ସମଭାବ
ଦାନ ହୋମ ବିଧି ସ୍ୱସ୍ତ୍ୟାଦି ଶୁଭଦ୍ରବ୍ୟ ।
ସ୍ପର୍ଶନ, ଭୂଷଣ ଭକ୍ଷ ଦ୍ରବ୍ୟ ନିୟମ
ସେ ଶାସ୍ତ୍ରେ ହୋଇଅଛି କଥିତ ନରୋତ୍ତମ ।
ବାକ୍ୟରେ ସତ୍ୟତ୍ୱ କଥନେ ମଧୁରତ୍ୱ
ଗୃହକାର୍ଯ୍ୟ ଦେଖିବା ଜାଣିବା ଯେମନ୍ତ ।
ଦ୍ୱିଜେ ନ ଦଣ୍ଡି ନ୍ୟାୟଦଣ୍ଡ ଚାଳିବାର
ମର୍ଯ୍ୟାଦା ସ୍ଥାପନ କରିବା ସ୍ୱଜାତିର ।
ପୌରଜନ ରକ୍ଷଣ ରାଜ୍ୟର ବର୍ଦ୍ଧନ
କଥା ସେ ଶାସ୍ତ୍ରେ ଅଛି ପାଣ୍ଡବ ରାଜନ ।
ଅରି ମିତ୍ର ଉଦାସୀନ ଏ ପ୍ରତ୍ୟେକର
ସ୍ଥିର ଭେଦର ବାର ରାଜାଙ୍କ ମଣ୍ଡଳ ।
ଶରୀର ବାଆସ୍ତରି ଚକସ୍ତ୍ରା-ବିଧାନ
ଦେଶ ଜାତି କୁଳଭେଦ ଧର୍ମ ଲକ୍ଷଣ ।
ନାନା ଉପାୟ ଅର୍ଥମାନ କଥା ତହିଁ
କଥିଛି ଅଛି ବିସ୍ତୃତରେ ନରସାଇଁ ।
ଏ ଶାସ୍ତ୍ର କରିଣ ଇନ୍ଦ୍ରାଦି ଦେବତାଙ୍କୁ
କହିଲେ ପ୍ରାଣୀ ଉପକାର ହୋଇବାକୁ ।
ନୀତିଶାସ୍ତ୍ର ଲକ୍ଷେ ଅଧ୍ୟାୟ କଲି ମୁହିଁ
ଇହ ଦେବତାଏ ଭୟକୁ ଛାଡ଼ିଦେଇ ।
ବ୍ରହ୍ମାଙ୍କର କରିବା ନୀତିଶାସ୍ତ୍ର ଶିବ
ବ୍ରହ୍ମାଙ୍କରଠାରୁ ଶିଖିଲେ ବହୁ ଭାବ ।
ଆପେ ବସି ଦଶସହସ୍ର ଅଧ୍ୟାୟରେ
ସମାପତ କଲେ ସେ ଶାସ୍ତ୍ରକୁ ତୋଷରେ ।
ଶିବଙ୍କଠାରୁ ତାହା ଇନ୍ଦ୍ର ଯେ ପଢ଼ିଲେ
ସହସ୍ରପଞ୍ଚ ଅଧ୍ୟାୟରେ ତା ଦାଢ଼ିଲେ ।
ବୃହସ୍ପତି ତିନିସହସ୍ର ଅଧ୍ୟାୟରେ
କଲେ ସେ ନୀତିଶାସ୍ତ୍ର ଅତି ସନ୍ତୋଷରେ ।
ସହସ୍ର ଅଧ୍ୟାୟରେ ଶୁକ୍ର ମହର୍ଷି
ସେ ଶାସ୍ତ୍ରକୁ ଅଛନ୍ତି ବିଦ୍ୟାବଳେ ଭାଷି ।

ଋଷିମାନେ ଶୁକ୍ରଙ୍କ ଶାସ୍ତ୍ରକୁ ସଂକ୍ଷେପ
କଲେ ଦେଖିଣ ପ୍ରାଣୀଙ୍କର ଜ୍ଞାନଲେପ ।
ଏ ଅନ୍ତେ ଦେବତାଏ ବିଷ୍ଣୁଙ୍କୁ କହିଲେ
ଲୋକରେ ଅଧିପତି ଜଣେ ହେଉ ଭଲେ ।
ନାରାୟଣ ଶୁଣି ମନସୁଁ କଲେ ଯାତ
ତୈଜସ ଯେ ବିରଜା ନାମେ ଦୁଇସୁତ ।
ସେ ବିରଜା ମହୀରେ ହୋଇବାକୁ ରଜା
ନ କଲେ ଆହେ ଯୁଧିଷ୍ଠିର କେବେ ମଜ୍ଜା ।
ବିରଜାଙ୍କର କୀର୍ତ୍ତିମାନ ପୁତ୍ର ହେଲେ
ବାପାଙ୍କର ପରାଏ ଆଚରଣ କଲେ ।
କୀର୍ତ୍ତିମାନଙ୍କର କର୍ଦ୍ଦମ ହେଲେ ସୁତ
କର୍ଦ୍ଦମଙ୍କ ହେଲେ ଅନଙ୍ଗ ନାମେ ପୁତ୍ର ।
ପ୍ରଜାଙ୍କର ରକ୍ଷଣ ଯେ ଅନଙ୍ଗ କଲେ
ଅନଙ୍ଗଙ୍କ ପୁତ୍ର ନୀତିମାନ ହେଲେ ।
ମୃତ୍ୟୁ ମାନସୀ କନ୍ୟା ସୁନୀଥା ସୁନ୍ଦରୀ
ଗର୍ଭରୁ ଜାତ ହେଲେ ବେଣ ଦଣ୍ଡଧାରୀ ।
ବେଣ ରାଜା ହୋଇ ଅଧର୍ମ ଆଚରିଲେ
ଋଷି ଏ କୁଶଜଳେ ତାଙ୍କ ପ୍ରାଣ ନେଲେ ।
ବେଣ ମରନ୍ତେ ବେଣ ଦକ୍ଷିଣ ଉରୁକୁ
ମନ୍ଥିଲେ ଋଷିମାନେ କୁମାର ହେବାକୁ ।
ସେ ମନ୍ଥନରୁ ନିଷାଦ ନାମେ ପୁତ୍ର ଜାତ
ହେଲା ସେ କଳାହାଣ୍ଡି ପରି ପ୍ରକାଶିତ ।
ତାହାଠାରୁ ଯେତେକ ପୁତ୍ର ଉପୁଜିଲେ
ନିଷାଦ ନାମ ବହି ବଣେ ବାସ କଲେ ।
ଏହାକୁ କରି ସାର ଋଷିକୁଳ ଭଲେ
ବେଣଙ୍କର ଦକ୍ଷିଣବାହୁକୁ ମନ୍ଥିଲେ ।
ତହିଁରୁ ଯାତ ହେଲା ରାଜ୍ୟେ ଯେଉଁ ପୁତ୍ର
ତେଜରେ ନିନ୍ଦା କଲା ଅଗ୍ନି ଶାନ୍ତିହୋତ୍ର ।
କବଚ ଖଣ୍ଡା ଧନୁକୁ ସେ ବହିଅଛି
ସାଙ୍ଗୋପାଙ୍ଗ ଧନୁର୍ବେଦକୁ ଯେ ପଢ଼ିଛି ।
ଦଣ୍ଡନୀତି ସେହି କୁମାରକୁ ଆଶ୍ରୟ
କରିଲା ଜାଣ ଆହେ ପାଣ୍ଡୁଙ୍କ ତନୟ ।
ସେ ପୁତ୍ରଟିର କର ବେନିକ ଯୋଡ଼ିଲେ
କି କରିବି ତାହାକୁ କହ ଋଷିଭଲେ ।
ଋଷିମାନେ ବୋଇଲେ ନିଃଶଙ୍କ ଚିତ୍ତରେ
ନିୟମଶୀଳ ହୋଇ ପ୍ରବର୍ତ୍ତ ଧର୍ମରେ ।

ଛାଡ଼ିଣ କାମ କ୍ରୋଧ ଲୋଭ ଅଭିମାନ
ପ୍ରାଣୀରେ କର ସମଭାବ ଆଚରଣ ।
ଅଧର୍ମେଯେଉଁ ଲୋକ ଯିବ ତୁମ୍ଭେ ତାକୁ
ଦଣ୍ଡ ଦେଇ କରଣ ଆଣିଣ ଧର୍ମକୁ ।
ପ୍ରତିଜ୍ଞା କର ବଚନେ ମନେ କର୍ମରେ
ପାଳିବ ମହୀ ବ୍ରହ୍ମସ୍ୱରୂପ ଜ୍ଞାନରେ ।
ଦଣ୍ଡନୀତି ଶାସ୍ତ୍ରରେ କହିବା ଧର୍ମକୁ
କରୁଥିବ ନିଃଶଙ୍କେ ଛାଡ଼ି ଉପ୍ରୋଧକୁ ।
ଦ୍ୱିଜାତିଗଣେ ସଦା ଅଦଣ୍ଡ୍ୟ ବିଚାର
କରୁଥିବ ଭକ୍ତିରେ ପାଳନ ତାଙ୍କର ।
ଚାରିବର୍ଣ୍ଣଯାକଙ୍କୁ ପଡ଼ିଲେ ସଙ୍କଟ
ତାଙ୍କୁ ଉଦ୍ଧରିବ ଦେଖାଇ ବେଦ ଆଣ୍ଟ ।
ବୈଣ ବୋଇଲେ ଆହେ ବ୍ରାହ୍ମଣେ ମୋହର
ସବୁକାଳରେ ନମସ୍କାରକୁ ପାତର ।
ଋଷିଏ ବୋଇଲେ ଏ ରୂପେ ଚିତ୍ତ ଥିଲେ
ସବୁ ହେବ ଉତ୍ତମ ଜାଣୁଥାଇଁ ଭଲେ ।
ପୁରୋହିତ ତୁମ୍ଭର ଶୁକ୍ର ଋଷି ହେଲେ
ବାଳଖିଲ୍ୟ ଋଷି ଏ ମନ୍ତ୍ରିତ୍ୱ ପାଇଲେ ।
ଜ୍ୟୋତିର୍ବିଦ ଗଗ ହୋଇଲେ ଜଉତିଷ
ଅଜଣା ନାହିଁ ଯାଙ୍କୁ କାହାର ଆୟୁଷ ।
ଏ ରୂପେ ଅଷ୍ଟମ ପୁରୁଷ ବିଷ୍ଣୁଙ୍କର
ବେଣ ପୁତ୍ର ପୃଥୁ ଯେ ହେଲେ ରାଜେଶ୍ୱର ।
ମାଗଧ ସୂତ ବୈଣସୁତେ କଲେ ସ୍ତୁତି
ତାଙ୍କୁ ଦୁଇ ଦେଶ ଦେଲେ ବହି ସେ ପ୍ରୀତି ।
ପୂର୍ବରେ ପୃଥ୍ୱୀ ଖାଲ ଢ଼ିପ ହୋଇଥିଲା
ବୈଣସୁତ ବଳେ ସେ ସମାନ ହୋଇଗଲା ।
ପର୍ବତମାନ ତଳେ ପଡ଼ି ରହିଥିଲେ
ସେ ବୈଣ ଧନୁଷ୍କୋଟିରେ ତା କାଢ଼ିନେଲେ
ଇନ୍ଦ୍ର ମହୋଦଧି ମେରୁରୁ ଆଣି ଧନ
ଦେଲେ ବୈଣସୁତଙ୍କୁ ହୋଇଣ ପ୍ରସନ୍ନ ।
ବୈଣ ଚିନ୍ତା କରିବା ମାତ୍ରେ କୋଟି କୋଟି
ହାତୀ ଘୋଡ଼ା ରଥ ଆସିଲେ ଗୋଟି ଗୋଟି ।
ଏ ସକାଶୁଁ ମାନସେ ବହି ମହାତୋଷ
ପାଳିଲେ ଏ ମହୀକି ବୈଣ ନରଈଶ ।
ବୈଣଙ୍କ ପାଳିବାର ସକାଶୁଁ ଦୁର୍ଭିକ୍ଷ
ଜରା ଆଧି ବ୍ୟାଧିରୁ ପ୍ରାଣୀ ହେଲେ ମୋକ୍ଷ ।
ବୈଣସୁତ ବଳରେ ମହୀ ଗାଈ ହେଲେ
ସେ କ୍ଷୀର ପରି ଶସ୍ୟମାନଙ୍କୁ ଦୁହିଁଲେ ।
ବୈଣ ଗଲାବେଳେ ଜଳକୁ ସ୍ତମ୍ଭି ଦେଇ
ସମୁଦ୍ର ରହଇ ପାଣ୍ଡବ ନରସାଇଁ ।
ପର୍ବତମାନେ ତାଙ୍କୁ ଛାଡ଼ଦ୍ୟନ୍ତି ବାଟ
ବୈଣଙ୍କର ଦେଖି କରି ବଳର ଆଣ୍ଟ ।
ପ୍ରଜା ମନୋରଞ୍ଜନ କରିବାକୁ ରାଜା
ବୋଲାଇଲେ ମହୀରେ ବୈଣ ମହାଓଜା ।
ବ୍ରାହ୍ମଣଙ୍କୁ କ୍ଷତରୁ ରକ୍ଷିବାରୁ ଭଲେ
କ୍ଷତ୍ରିୟ ନାମେ ଲୋକେ ଅଭିହିତ ହେଲେ ।
ଅଟଇ ବୈଣ-ସୁତଙ୍କର ପୃଥୁନାମ
ମହୀକି ପାଳିଲେ ସେ ପାଇ ମହାଶ୍ରମ ।
ଏଣୁ ମହୀଦେବୀ ପୃଥ୍ୱୀ ବୋଲାଇଲେ
ମୋ କହିବାରୁ ରାଜେନ୍ଦ୍ର ଜାଣ ଏହା ଭଲେ ।
ବିଷ୍ଣୁ ବଚନେ ସେ ଅନନ୍ତତନ୍ମୟ ହେଲେ
ସାକ୍ଷାତେ ବିଷ୍ଣୁ ତାଙ୍କ ଦେହରେ ରହିଲେ ।
ସମସ୍ତେ ତାଙ୍କ ପାଦେ କଲେ ନମସ୍କାର
ଯେ ରୂପେ ପୂଜା ପାନ୍ତି ଦେବେ ପୁରନ୍ଦର ।
ବିଷ୍ଣୁ ବୋଲେ ଲକ୍ଷ୍ମୀ ରହିଲେ ପୃଥୁ ଘରେ
ହୃଦୟରେ କରୁଣା ବହି ନିରନ୍ତରେ ।
ପୃଥୁଠାରୁ ରାଜ ଶବଦ ପ୍ରବର୍ତ୍ତିଲେ
ଦଣ୍ଡ ପାଇ ଯେ ଲୋକେ ହିଂସାକୁ ଛାଡ଼ିଲେ ।
ସୁକୃତ କ୍ଷୟେ ସ୍ୱର୍ଗୁ ପଡ଼ଇ ଯେ ନର
ମହୀରେ ରାଜା ନାମ ହୁଅଇ ତାହାର ।
ବିଷ୍ଣୁଙ୍କର ଶକତି ରହଇ ଦେହରେ
ଏଣୁ ମାହାତ୍ମ୍ୟ ତାର ବଡ଼ ହୁଏ ନରେ ।
ଦେବେ ତ ପୂର୍ବୁ ତାଙ୍କୁ କରିଥାନ୍ତି ରାଜା
ଏ ସକାଶୁଁ ଲଙ୍ଘି ନ ପାରଇ ପରଜା ।
ଦେବତା ତୁଲେ ସରି ଅଟଇ ରାଜନ
ହେ ଯୁଧିଷ୍ଠିର ରାଜା ସନ୍ଦେହ ନ ଘେନ ।
ରାଜାର ଯେ ଚରିତ କହିଲି ବିସ୍ତାରି
ଆଉ କି ଭାବିଥିଲେ ପୁଚ୍ଛ କଣ୍ଠଧାରି ।

—※—

## ବର୍ଣ୍ଣାଶ୍ରମ ଧର୍ମ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ଚାରିବର୍ଣ୍ଣ ଚାରିଆଶ୍ରମ କଥା କହ ।

ଯେଉଁ ଧର୍ମକୁ କଲେ ରାଜ୍ୟ ଭୁଲେ ରାଜା
ବନେ ପୁରବାସୀ ହୁଅନ୍ତି ତୋଷମନା ।
କୋଷ ଦଣ୍ଡ ଦୁର୍ଗ ସହାୟ ପୁରୋହିତ
ଆମାତ୍ୟ ମନ୍ତ୍ରୀ ହୋଏ କି ଦୋଷେ ତ୍ୟକତ ।
ଏ ବାହାରେ ବିପତ୍ତି ପଡ଼ିଲେ କାହାକୁ
କହିବ ରାଜା ବସି ବିଶ୍ୱାସ କଥାକୁ ।
କେଉଁ ବିଷୟରୁ ହେ ଅବନୀର ରାଣ
ସର୍ବମତେ କରିବ ନିଜକୁ ରକ୍ଷଣ ।
ଏମାନ ବିଶେଷାବିଶେଷି କରି ମୁହିଁ
ତୁମ୍ଭଠାରୁ ଶୁଣିବା ଇଚ୍ଛା ଅଛି ବହି ।
ଭୀଷ୍ମ ବୋଇଲେ ହେ ପୁଚ୍ଛୁଛ ଯାହା ମୋତେ
କହିବ ତା ଶୁଣ ରାଜନ ଏକ ଚିତ୍ତେ ।
ଅକ୍ରୋଧ ସବିଭାଗ ସ୍ୱଦାର-ରମଣ
ସତ୍ୟ କ୍ଷମା ଶଉଚ ସେବକ-ପୋଷଣ ।
ଅଦ୍ରୋହ ଋଜୁଭାବ ଚାରିବର୍ଣ୍ଣଙ୍କର
ଧର୍ମ ଅଟଇ ହେ ରାଜନ ମନେ କର ।
ବିଶେଷି ବ୍ରାହ୍ମଣଙ୍କ ଧରମ ତୁମ୍ଭଙ୍କୁ
କହିବା ଏବେ ଶୁଣ ଦେଇଣ ମନକୁ ।
ଇନ୍ଦ୍ରିୟ ବିନିଗ୍ରହ ବେଦ ଅଧ୍ୟୟନ
ତପସ୍ୟା କରୁଥିବ ନିୟତ ବ୍ରାହ୍ମଣ ।
ବ୍ରାହ୍ମଣକୁ ଯେବେ ପ୍ରାପତ ହେବ ଧନ
ତେବେ କରିବ ସେ ଯେ ବିର୍ଯ୍ୟା ଯାଗ ଦାନ
ନ ଥିଲେ ଧନ ବେଦ ଅଧ୍ୟୟନ କରି
ଦେବ ନିଜ ଆୟୁଷ କାଳଟିକୁ ସାରି ।
କ୍ଷତ୍ରିୟ ନ ମାଗିବ, ଥିଲେ ଧନ ଦେବ ।
କରିବ ଯାଗ ଯାଜକତା ନ କରିବ ।
ପଢ଼ିବ ବେଦ ପଢ଼ାଇଲେ ହେବ ଦୋଷ
କହିଛନ୍ତି ଏହା ସକଳ ଋଷିଈଶ ।
ପ୍ରଜା ପାଳିବ ଦସ୍ୟୁଗଣେ ବିନାଶିବ
ସମରେ ନିଜ ପରାକ୍ରମ ପ୍ରକାଶିବ ।
ଯେ ରାଜାଏ ଯୁଦ୍ଧେ ଲଭନ୍ତି ଜୟ ଶିରୀ
କୀରତି ଅରଜନ୍ତି ଯାଗ କର୍ମ କରି ।
ସେମାନଙ୍କୁ ସ୍ୱର୍ଗେ ବସାଇ ପୁରନ୍ଦର
ପୂଜା କରୁଥାନ୍ତି ଆଦରେ ନିରନ୍ତର ।
ଅକ୍ଷତ ଦେହେ ରଣୁଁ ଆସିଲେ କ୍ଷତ୍ରିୟ
ନୋହିଲ କିଛି ବୋଲି ବୋଲେ ଲୋକଚୟ ।

ଏହି ସକାଶୁଁ ତେଣୁ ରାଜା ଯେ ହୋଇବ
ଯୁଦ୍ଧକୁ ବଡ଼ବୃତ୍ତି କରି ଆଦରିବ ।
ଦାନ ଅଧ୍ୟୟନ ଯଜ୍ଞଟି ନୃପତିର
ମଙ୍ଗଳବିଧାନକୁ କରେ ନୃପବର ।
ସ୍ୱଧର୍ମେ ପ୍ରଜାଗଣେ କରି ଅବସ୍ଥିତ
ପାଳିବା ନୃପତିର କର୍ତ୍ତବ୍ୟ ମହତ ।
ନ୍ୟାୟ ଧନ ସଞ୍ଚୟ ଯଜ୍ଞ ଅଧ୍ୟୟନ
ଦାନ ପଶୁପାଳନ ବୈଶ୍ୟ କର୍ମ ଜାଣ ।
ବୈଶ୍ୟ ବିନା ଆନ ପଶୁଙ୍କର ପାଳନ
କରିବା ଖଞ୍ଜି ନାହିଁ ଚତୁର-ଆନନ ।
ଶୂଦ୍ର ତିନବର୍ଣ୍ଣଙ୍କୁ ସେବା କରୁଥିବ
ତେବେଟି ତାର ଭାଗ୍ୟ ଭବେ ପ୍ରକାଶିବ ।
ଶୂଦ୍ର ଯେବେ ଲୋଭ କରି ରଖଇ ଧନ
ସେ ହେନ ତାର ହୁଏ ନରକେଟି ସ୍ଥାନ ।
ରାଜାର ଅନୁଜ୍ଞାରେ ଧନର ସଞ୍ଚୟ
କରିଣ ଶୂଦ୍ର କରିପାରେ ଧର୍ମେ ବ୍ୟୟ ।
ତିନବର୍ଣ୍ଣଯାକ ଯେ ଶୂଦ୍ରକୁ ପୋଷିବେ
ଶୂଦ୍ର ସେବା କରିବ ତ୍ରିବର୍ଣ୍ଣଙ୍କୁ ଭାବେ ।
ତିନବର୍ଣ୍ଣଠାରେ ଜୀର୍ଣ୍ଣ ଦ୍ରବ୍ୟକୁ ନେଇ
କଲେ ଶୂଦ୍ର ଭୋଗ ଅଧର୍ମ ତହିଁ ନାହିଁ ।
ପ୍ରଭୁ ଯେଉଁ ଧନ ଦିଅଇ ସେହି ଧନ
ଶୂଦ୍ରର ଯଥାର୍ଥଟି ଧନ ବୋଲି ଜାଣ ।
ନମଃ ସ୍ୱସ୍ତି ବୋଲିଣ ଶୂଦ୍ର ବୈଶ୍ୱଦେବ
ନ କରିବ ହେ ଯୁଧିଷ୍ଠିର ନରଦେବ ।
ଆଉ ସ୍ୱାହାପଦ ତୁଣ୍ଡରେ ଧରିବାର
ଶୁଣିଲେ କର୍ଣ୍ଣେ ଶୂଦ୍ର ପାଏ ପାପ ଘୋର ।
ତିନବର୍ଣ୍ଣଯାକ ଯେ ଯାଗକୁ କରିବେ
ବିଶେଷରେ ବ୍ରାହ୍ମଣଠାରେ ତା ସମ୍ଭବେ ।
ବ୍ରାହ୍ମଣଙ୍କ ବଚନ-ମାନି ତିନବର୍ଣ୍ଣ
କରୁଣ ଥିବେ ନାନା ଧରମ ବିଧାନ ।
ଉଦୟ ସୂର୍ଯ୍ୟ ନୋହୁଁ ଶୁଦ୍ଧିମନ୍ତ ହୋଇ
କରିବ ଦ୍ୱିଜ ହୋମ ଶାସ୍ତ୍ର ଅଛି କହି ।
ଯେଉଁ ଦ୍ୱିଜ ଯାଗ କରିବା ଇଚ୍ଛା କରେ
ପରଶଂସା-ବଚନ ପାଏ ସେ ସଂସାରେ ।
ଚାରିବର୍ଣ୍ଣଯାକ କରିବେ ବୈଶ୍ୱଦେବ
ବୋଲି ଲେଖିଛନ୍ତି ଶାସ୍ତ୍ରରେ ବିଧିଦେବ ।

ଏବେ ଶୁଣ ଆଶ୍ରମ ଧରମ ଭୀଷ୍ମଙ୍କୁ
କହିବା ଯୁଧିଷ୍ଠିର ବଇ ମାନସକୁ ।
ବ୍ରତ ହୋଇ ବ୍ରହ୍ମଚର୍ଯ୍ୟରେ ଦ୍ୱିଜଲୋକ ।
ଗୁରୁଠାରୁ ପଢ଼ିବ ଶାସ୍ତ୍ରବେଦଯାକ ।
ତଦନ୍ତରେ ଗୃହସ୍ଥାଶ୍ରମକୁ କରିବ
ପୁତ୍ର ଜନ୍ମାଇଣ ବନରେ ରହିବ ।
ଭିକ୍ଷୁ-ଆଶ୍ରମକୁ ଆଚରି ଅନ୍ତଃକାଳେ
ବସିବ ଯାଇ କରି ଦେବଙ୍କର ଆଳେ
ବସିବ ଯାଇ କରି ଯୁଧିଷ୍ଠିର ମହୀ
ଆଶ୍ରମ ଥିଲ ପରି ମୋତେ ବଶୁନାହିଁ ।
ଋତୁକାଳରେ ଭାର୍ଯ୍ୟା ଭୁଲେ ପ୍ରବର୍ତ୍ତିବ
ଶଠ ନୋହି ଅଳପ ଭୋଜନ କରିବ ।
ହୋଇବ ସତ୍ୟବାଦୀ କ୍ଷମାବାନ ଦନ୍ତ
କୃତଜ୍ଞ ଅନୃଶଂସ ମୃଦୁ ଦେବରତ ।
ଦୃଢ଼ ଭାର୍ଯ୍ୟା ପୋଷି ଧାରଣ କଲେ ବେଦ
ଗୃହସ୍ଥାଶ୍ରମୀ ଲୋକ ନ ପାଏ ବିପଦ ।
ଏ ରୂପେ ଯେ ଦ୍ୱିଜ ଗୃହସ୍ଥ ବୃତ୍ତି କରେ
ସେ ବଳରେ ଯାଇ ସେ ବସଇ ନର୍କରେ ।
ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ସୁଖାବହ ଧର୍ମକଥା ଆମ୍ଭଙ୍କୁ ଯେ କହ ।
ବୋଇଲେ ଭୀଷ୍ମ ଦ୍ୱିଜ-ବିହିତ ଆଶ୍ରମ
ଶୁଣ ନୁହେ କ୍ଷତ୍ରିୟ ଆଦିଙ୍କର ଧର୍ମ ।
ବ୍ରାହ୍ମଣ ଯେବେ କ୍ଷତ୍ରିୟାଦି ଧର୍ମ କରେ
ଇହରେ ନିନ୍ଦା ପାଇ ଦୁଃଖ ପାଏ ପରେ ।
ବିରୁଦ୍ଧକର୍ମା ଯେଉଁ ବ୍ରାହ୍ମଣ ହୁଅଇ
ଶୂଦ୍ରଠାରୁ ହୀନ ଅଟେ ନରସାଇଁ ।
ଯେଉଁ ବ୍ରାହ୍ମଣ ଷଟ୍‌କର୍ମକୁ ଆଚରେ
ମଲେ ଯାଇ ରହେ ସେ ଅକ୍ଷୟ ଲୋକରେ ।
ହିଂସାହୀନ ଜିତେନ୍ଦ୍ରିୟ ଶୁଦ୍ଧସ୍ୱଭାବ
ବଦାନ୍ୟ ତପୀ ଦ୍ୱିଜ କରେ ସ୍ୱର୍ଗଲାଭ ।
ସେବା ପଶୁରକ୍ଷା ବାଣିଜ୍ୟାଦି କର୍ଷଣ ।
କଲେ ପରଲୋକକୁ ନାଶଇ ବ୍ରାହ୍ମଣ ।
ବ୍ରାହ୍ମଣ ବେଦ ପଢ଼ି ଘର କରୁଥିବ
କୃତକାର୍ଯ୍ୟ ହେଲେ ସେ ବନରେ ରହିବ ।
ରାଜସେବା, ଶୂଦ୍ର ଆଜ୍ଞ ବଣିଜେ ଧନ
ବ୍ରାହ୍ମଣ ଅର୍ଜିଲେ ଧର୍ମ ହୋଏ ହୀନ ।
ପରଦାର, ଚଣ୍ଡ-କୁସୀନ-ବ୍ୟବହାର
କଲେ ହୀନ ହୁଏ ବ୍ରାହ୍ମଣ ନରବର ।
ବିଧର୍ମା, ନାଚୁଆ ଖଟୁଆ ଶୂଦ୍ରସ୍ତ୍ରୀଗା—
ରତିକାରୀ ଦ୍ୱିଜଟି ଜାଣ ଶୂଦ୍ର ସରି ।
ଏ ରୂପେ ବ୍ରାହ୍ମଣଙ୍କୁ ଦିଅଇ ଯେ ଦାନ
ମଲେ ନର୍କରେ ସେ ପକାଏ ଅଦେଧନ ।
ଦମ ଶୌଚ ଆର୍ଜବେ ଯେଉଁ ଦ୍ୱିଜ ରହେ
ବିଷ୍ଣୁରଲେ ଦେବତା ଧରି ତାକୁ ନୋହେ ।
ରାଜଧର୍ମ ନ ଥିଲେ ଶୁଣରେଟି ଆଶ୍ରମ
ଧର୍ମ ନ ରହନ୍ତା ହେ ପାଣ୍ଡବ-ଉତ୍ତମ ।
ଶୂଦ୍ର ସେବା କରି ରାଜାର ଅନୁମତେ
ବନେ ରହି ତପସ୍ୟା କରିବ ନିରତେ ।
ବୈଶ୍ୟ ମଧ୍ୟ ନୃପଙ୍କୁ ଅନୁଜ୍ଞା ମାଗିବ
ଅରଣ୍ୟରେ ରହିଣ ଶରୀର ଛାଡ଼ିବ ।
ରାଜ୍ୟ ରାଜ୍ୟ ଜିଣି ପାଳନ କରି ପ୍ରଜା
ଯାଗରେ ଦେବ ଦାନ ବିପ୍ରେ କରି ପୂଜା ।
ପୁତ୍ରକୁ ରାଜ୍ୟ ଦେଇ ବାନପ୍ରସ୍ଥାଶ୍ରମ
କରିବ ନରପତି ହୋଇ ସ୍ୱର୍ଗକାମ ।
ଚତୁର୍ବର୍ଣ୍ଣ ଧର୍ମ ରାଜଧର୍ମରୁ ଜାତ
ହୋଇଛି ମୁଁ ଜାଣିଛି ଆହେ ପାଣ୍ଡୁସୁତ ।
କ୍ଷତ୍ରିୟଧରମରୁ ଆନ ଧର୍ମ ମହୀ—
ମଧ୍ୟରେ ବଡ଼ ହୋଇ ଯୁଧିଷ୍ଠିର ନାହିଁ ।
ରାଜା ବିନା ସକଳ ତ୍ୟାଗ କରିପାରେ
ନ ସମ୍ଭବେ ଏ କଥା ଆନ ଲୋକଠାରେ
ରାଜଧର୍ମଟି ହୋଇ ନଥିଲେ କଥାଏ
ସବୁ ଧର୍ମ ନାଶ ଯାଆନ୍ତା ଆହେ ରାୟେ ।
ସବୁ ଯୋଗ ସବୁ ଧର୍ମ ସବୁ କରମ
ରାଜଧର୍ମେ ରହିଛି ହେ ନରଉତ୍ତମ ।
ଯେତେକ ଲୋକହିତ ଧର୍ମ ଏ ମହୀରେ
ଅଛି ସେ ରହିଅଛି କ୍ଷତ୍ରିୟ-ଧର୍ମରେ ।
ପୂର୍ବେ ରାଜାମାନେ ବିଷ୍ଣୁଙ୍କଠାକୁ ଗଲେ
ବିଷ୍ଣୁଙ୍କ ବୋଲେ ଦଣ୍ଡନୀତି ଆଶ୍ରେ କଲେ ।
ତା ଦେଖି ଦେବ, ଯକ୍ଷ, ଉରଗ, କିନ୍ନର
ଆଚରିଲେ କ୍ଷତ୍ରିୟବୃତ୍ତି ଯୁଧିଷ୍ଠିର ।
ଦାନବରେ ଜଗତ ହେଲା ଯେବେ ନାଶ
ତେବେ ମାନଧାତା ହୋଇଣ ନରଈଶ ।

ବନରେ ମହୀ ଜଣି ଯାଗ ଆରମ୍ଭିଲେ
ବିଷ୍ଣୁଙ୍କୁ ମୁଁ ଦେଖିବି ବୋଲଣ ଭାବିଲେ ।
ବିଷ୍ଣୁ ଇନ୍ଦ୍ର ରୂପକୁ ଧରଣ ସେ ଯାଗେ
ଉଭା ହୋଇଲେ ଆସି ମାନ୍ଧାତାର ଆଗେ ।
ମାନ୍ଧାତା ଇନ୍ଦ୍ରରୂପ ନୟନରେ ଦେଖି
ନମସ୍କାର କରି ପୂଜିଲେ ହୋଇ ସୁଖୀ ।
ଇନ୍ଦ୍ର ବୋଇଲେ ଆହେ କାହିଁକି ବିଷ୍ଣୁଙ୍କୁ
ଦେଖିବା ଇଚ୍ଛା କଲ କହ ତ ଆମ୍ଭଙ୍କୁ ।
ବ୍ରହ୍ମାଣ୍ଡ ଦେବଙ୍କୁ ଅଟନ୍ତି ସେ ଅଦୃଶ୍ୟ
ତୁମ୍ଭଙ୍କୁ ସେ କେମନ୍ତେ ହୋଇବେଟି ଦୃଶ୍ୟ ।
ଏହା ଛାଡ଼ିଣ ଆନ ମନୋରଥ ମୋତେ
ଥିଲେ ମାଗ ତାହା ମୁଁ କରିବି ତୁରିତେ ।
ମାନ୍ଧାତା ବୋଇଲେ ମୁଁ ମାଗୁଛି ତୁମ୍ଭଙ୍କୁ
ଅନୁଜ୍ଞା ଦିଅ ଏବେ ଯିବି ମୁଁ ବନକୁ ।
କ୍ଷତ୍ରିୟଧର୍ମ କରି ଅରଜିଲି କୀର୍ତ୍ତି
ଏବେ ବିଷ୍ଣୁ ପାଦରେ ବଳିଅଛି ମତି ।
ଏଥିକି ଯେ କାରଣ ତାହା ଇନ୍ଦ୍ର ମୋତେ
କହିବା ହେଜ ବୋଲୁଅଛି ମୁଁ ସୁଚିତ୍ତେ ।
ଇନ୍ଦ୍ର ବୋଇଲେ ହେ କ୍ଷତ୍ରିୟ ଆନ ଧର୍ମ
ଆଚରିଲେ ରାଜ୍ୟେଟି ପାଏ ଅଧରମ ।
କ୍ଷତ୍ରିୟ ଧର୍ମ ବିଷ୍ଣୁ ଦେବ ଆଗ କଲେ
ପଛରେ ଆନ ଧର୍ମମାନଙ୍କୁ ରଚିଲେ ।
କ୍ଷତ୍ରିୟଧର୍ମେ ସବୁଧର୍ମ ରହିଅଛି
ହେ ନୃପବର ତାହା ନ ଦିଅ ମୁଚୁଛି ।
କ୍ଷତ୍ରିୟଧର୍ମେ ବିଷ୍ଣୁ ମାରଣ ଅସୁର
ମହୀଭୁଲେ ପାଳନା କଲେ ସ୍ୱର୍ଗପୁର ।
ଦୈତ୍ୟମାନଙ୍କୁ ବିଷ୍ଣୁ ନ ମାରନ୍ତେ ଯେବେ
ଧର୍ମ ହୋଇ କି ଭବେ କଥା ଥାନ୍ତା ତେବେ
ବ୍ରାହ୍ମଣେ ନାଶ ଗଲେ ଚ୍ଛର ଆଶ୍ରମର
ଧରମ ଲୋପ ହୋଇଯାନ୍ତା ମନେ କର ।
ବନସ୍ଥ ବଇଷ୍ଣବଧର୍ମ ସ୍ନାନଧର୍ମ
ଯୋଗେ ପୁଣି ପ୍ରବୃତ୍ତ ହେଲ ନୃପୋତ୍ତମ ।
ବ୍ରହ୍ମଧର୍ମ କ୍ଷତ୍ରିୟ ଧର୍ମରେ ରକ୍ଷିତ
ହୋଇଅଛି ଏ ଯେଣୁ ସେ ଧର୍ମ ମହତ ।
ଦେହତ୍ୟାଗ ପାଳନ କରୁଣା ମୋକ୍ଷଣ
କ୍ଷତ୍ରିୟଧରମରେ ରହିଅଛି ଜାଣ ।

ନୃପତି-ଭୟେ ପାପକର୍ମେ ରତ ନୋହି
ପ୍ରାଣୀଏ ଧର୍ମ ଆଚରନ୍ତି ସୁଖେ ରହି ।
ଏ ସକାଶରୁ ସିନା କହୁଥାଇ ରାଜା
କ୍ଷତ୍ରିୟଧର୍ମରୁ ନ କର ଭିନ୍ନ ମଜ୍ଜା ।
ବର୍ଣ୍ଣଧର୍ମ ଲୋକେ ନ କରୁଥାନ୍ତି ଯେବେ
ପଶୁ ବୋଲି ତାଙ୍କୁ କହନ୍ତି ଜାଣ ତେବେ ।
ଦ୍ୱିଜ ଯେବେ ଦ୍ୱିଜକର୍ମକୁ ନ କରଇ
ଶସ୍ତ୍ରରେ ସେହିକାଳେ ମରଣ ଲଭଇ ।
ଚ୍ଛରଟି ଆଶ୍ରମର ଧରମ ବ୍ରାହ୍ମଣ
ବିନା ଆନଠାରେ ସୁସାଧ୍ୟ ନୋହେ ଜାଣ ।
ଯେ ଯେଉଁ ରୂପରେଟି କରଇ କରମ
ତାହାର ସେହିରୂପେ ହୁଅଇ ଧରମ ।
ମାନଧାତା ବୋଇଲେ ଯବନ ଗାନ୍ଧାର
କିରାତ ପୌଣ୍ଡ୍ର କଙ୍କ ପହ୍ଲବ ଶବର ।
କାମ୍ବୋଜ ବୈଶ୍ୟ ଶୂଦ୍ର କମଠ ବର୍ବର ।
ପୁଳିନ୍ଦ ଆନ୍ଧ୍ର ଶକ ମଦ୍ରକ ତୁଷାର ।
ଏମାନେ କି ଧର୍ମ କରିବେ ସୁରନାଥ ।
ଏହା ମୋର ଆଗରେ କର ତ ବିଦିତ ।
ଇନ୍ଦ୍ର ବୋଇଲେ ଯେ ଏ ସବୁ ଲୋକଯାକ
ମାତା ପିତା ସେବାରେ ଛାଡ଼ିବେ ପାତକ ।
ଏ ବାହାରେ ନୃପଙ୍କ ସେବାକୁ କରିବେ
ଦାନକୁ ଦେଇ ପାଣିଛତ୍ରରେ ତରିବେ ।
ପୁତ୍ର ଭାରିଯା ପୋଷି ପରଠାରୁ ହିଂସା
ଛାଡ଼ିଲେ ପାଇବେ ସେ ସ୍ୱର୍ଗପୁରେ ବସା ।
ବେଦୋକ୍ତ ଧର୍ମ କର୍ମ ଶ୍ରାଦ୍ଧ ପିତୃ ଯାଗ
ଶୂଦ୍ରର କରିବା କର୍ତ୍ତବ୍ୟ ମହାଭାଗ ।
ଚ୍ଛର ଆଶ୍ରମରେ ପାଷଣ୍ଡ-ବୃତ୍ତି କରି
ରହିଛନ୍ତି ରାଜନ ବହୁଲୋକ ପୂରି ।
ରାଜଧର୍ମ ହାନି ହୋଇବ ଯେଉଁକାଳେ
ଜାଣ ସେ ଲୋକ ପ୍ରବର୍ତ୍ତିବେ ସେହିକାଳେ ।
ପୁରାତନ ଧର୍ମମାନଙ୍କୁ ଦେଇ ଛାଡ଼ି
ଅହନ୍ତୁ ମାର୍ଗଟିକି ଆଣିବେ ସେ ଲୋଡ଼ି ।
ଏ ସକାଶୁ ଜାଣ ଧର୍ମର ପ୍ରବର୍ତ୍ତକ
ରାଜଦଣ୍ଡ ଅଟଇ କର ହେ ବିବେକ ।
ସବୁ ଲୋକ-ଗୁରୁ ରାଜାଙ୍କୁ ଯେ ନିନ୍ଦଇ
ଯାଗ ଦାନ କଲେ ଫଳ ତାହାର ନାହିଁ ।

ଧର୍ମକଥା ହୋଇଥିଲେକ ନରପତି
ଦେବତାଏ ତାହାଙ୍କୁ ମାନନ୍ତି ଥାଆନ୍ତି ।
ପ୍ରଜାପତି ଧରମ ରଖିବା ନିମନ୍ତେ
ରାଜା କଲେ ସର୍ଜନା କଲେ ମହୀପତେ ।
ପ୍ରବୃତ୍ତି ଧର୍ମ ଯେଉଁ ରାଜା ଆଚରଇ
ତହାକୁତି ଜାଣ ମୁଁ ପୂଜା କରୁଥାଇ ।
ଭୀଷ୍ମ ବୋଇଲେ ସେ ଇନ୍ଦ୍ରରୂପୀ ଭଗବାନ
ଏମନ୍ତ କହି ହୋଇଗଲେ ଅନ୍ତର୍ଦ୍ଧାନ ।
ଏଣୁ ଆଦ୍ୟ ଧର୍ମ କ୍ଷତ୍ରିୟ ଧର୍ମେ କହି
ଏହା ଜାଣି ତହିଁରେ ରହ ରତ ହୋଇ ।
ଯୁଧିଷ୍ଠିର ବୋଇଲେ ଚାରି ଆଶ୍ରମରେ
କଥା ଶୁଣି ବିସ୍ତାର କହ ଆଗେ ମୋର ।
ଭୀଷ୍ମ ବୋଇଲେ ହେ ମୋ ପରି ଧର୍ମ ତୁମ୍ଭେ
ଜାଣିଅଛ ବୋଲି ତ ଜାଣିଅଛୁ ଆମ୍ଭେ ।
ଦଣ୍ଡନୀତି ଥାଇ ଛାଡ଼ିଛି କାମ ଦ୍ୱେଷ
ଯେଉଁ କ୍ଷତ୍ରିୟ ତି ତା ବ୍ରହ୍ମଲୋକେ ବାସ ।
ଏ ବାହାରେ ପ୍ରାଣୀଙ୍କଠାରେ ସମଦୃଷ୍ଟି
ହୋଇଥିଲେ ତାଙ୍କୁ ପୂଜନ୍ତି ପରମେଷ୍ଠୀ ।
ଜ୍ଞାନ ଲଭି ନିଗ୍ରହାନୁଗ୍ରହ ଯେ କରେ
ଗାର୍ହସ୍ଥ୍ୟ-ଲଭ୍ୟ ସ୍ଥାନ ଲଭେ ନିଶ୍ଚୟରେ ।
ପୂଜ୍ୟଗଣେ ନିତ୍ୟ ପୂଜନ୍ତି ଯେଉଁ ରାଜା
ସନ୍ୟାସ-ଲଭ୍ୟ ସ୍ଥାନେ ପାଆନ୍ତି ସେ ପୂଜା ।
ଜ୍ଞାତି ମିତ୍ରେ ବିପଦୁଁ ତାରଇ ଯେ ରାଜା
ତାହା ସଙ୍ଗତେ ସରି ନୁହନ୍ତି ବିଡ଼ୌଜା ।
ବାନପ୍ରସ୍ଥାଶ୍ରମର ଫଳ ସେ ଲଭଇ
ସର୍ଗ ମଧ୍ୟେ ମହାସୁଖରେ ବସିଥାଇ ।
ପିତୃଙ୍କୁ ଘରେ ଦେଇ ଭୁଞ୍ଜେ ଯେତୁ ଅନ୍ନ
ତାହାର ବାନପ୍ରସ୍ଥ-ଧର୍ମ ହୋଏ ଜାଣ ।
ବେଦ ପଢ଼ି ଲୋକଙ୍କୁ କ୍ଷମା କରୁଥିବ
ଅତିଥିଙ୍କି ଦେଖିଲେ ଖାଦ୍ୟ ପେୟ ଦେବ
ସେ ମଲେ ବ୍ରହ୍ମାଙ୍କ ମନ୍ଦିରେ ସୁଖ ପାଇ ।
ବସଇ ହେ ରାଜା ସନ୍ଦେହ ଏଥି ନାହିଁ ।
ପରରାଜ୍ୟକୁ ଯେଉଁ ନୃପତି ଜିଣଇ
ତାହାକୁ ଜାଣ ଭଲ ଆଶ୍ରମ ମିଳଇ ।
ସବୁ ପ୍ରାଣୀଙ୍କ ପ୍ରତି ଭଲ ଯେ ଆଚରେ
ଜାଣ ସେ ଜାତ ହୋଇ ଆଉ ଏ ମର୍ତ୍ତ୍ୟରେ ।
ବିଦ୍ୟାବନ୍ତ ଦ୍ୱିଜଙ୍କୁ ଦିଅଇ ଯେ ଦାନ
ବାନପ୍ରସ୍ଥାଶ୍ରମଫଳ ସେ ପାଏ ଜାଣ ।
ଶରଣାପନ୍ନ ଜନେ ଯେ ଲୋକ ରଖଇ
ଗୃହସ୍ଥାଶ୍ରମଫଳ ତାଠି ଥାଏ ରହି ।
ଭଲ ପୁଅ ନାତିଙ୍କ ନିଗ୍ରହାନୁଗ୍ରହ
ଯେ କରୁଛି ତାର ସୁକୃତବନ୍ତ ଦେହ ।
ଧାତା ଲେଖିଥିବା ଧର୍ମ ଯେ ଆଚରଇ
ଚାରି ଆଶ୍ରମର ଫଳକୁ ସେ ଲଭଇ ।
ସ୍ଥାନ କୁଳ ବୟସ ମାନ ରଖିବାର
କର୍ତ୍ତବ୍ୟ ନୃପତିର ଜାଣ ନରବର ।
ଦେଶଧର୍ମ କୁଳଧରମ ଯେଉଁ ରାଜା
ପାଳଇ ଦେବଙ୍କରେ ପାଅଇ ସେ ପୂଜା ।
ଲୋକେ ଯେଉଁ ଦେଶରେ ଆଚରନ୍ତି-ଧର୍ମ
ଜାଣ ସେ ଦେଶ ନୃପତିର ପୁଣ୍ୟକର୍ମ ।
ଧର୍ମବନ୍ତ ଲୋକଙ୍କୁ ନ ରଖେ ଯେ ନୃପ
ସବୁ ସୁକୃତକୁ କରଇ ଯେ ଲୋପ ।
ସବୁ ଆଶ୍ରମଙ୍କରେ ଗୃହସ୍ଥ-ଆଶ୍ରମ
ବଡ଼ ଅଟଇ ହେ ପାଣ୍ଡବ ନରୋତ୍ତମ ।
ଯେଉଁ କାଳେ ଚିତ୍ତ କାମରୁ ନିବର୍ତ୍ତଇ
ସେକାଳେ ହିଁ ବ୍ରହ୍ମପଦ ସେ ଲଭଇ ।
ବେଦଧ୍ୟାୟୀ ଦ୍ୱିଜମାନଙ୍କର ପାଳନା
କଥାଟିରେ ଯତ୍ନ କର ହେ ମହାମନା ।
ବୃଦ୍ଧ ଧର୍ମାତ୍ମାଙ୍କ ଧର୍ମ ଆଚରଣ
ତହୁଁ ପ୍ରଜାପାଳନେ ଫଳ ଶତେ ଗୁଣ ।
ଏବେ ତ ସବୁ ଧର୍ମ ଶୁଣିଲ ମୋଠାରୁ
ନୁହ ତୁମ୍ଭେ ରାଜନ ହୋଇବାରେ ଭୀରୁ ।
ପରଜା-ପାଳନାରେ ଚାରି ଆଶ୍ରମର
ଧରମ ରହିଛି ପାଣ୍ଡବ ନରବର ।

—*—

## ରାଜଧର୍ମ

ଯୁଧିଷ୍ଠିର ବୋଇଲେ ରାଜକାର୍ଯ୍ୟ ମୋତେ
କହିବା ହେଉ ଆହେ ଭୀଷ୍ମ ମହାମତେ ।
ଭୀଷ୍ମ ବୋଇଲେ ଯେ ରାଜାର ଅଭିଷେକ
ରାଜ୍ୟର ବଡ଼ କାର୍ଯ୍ୟ ପାଣ୍ଡବ-ନାୟକ ।
ଅରାଜକ ଯେବଣ ରାଜ୍ୟଟି ହୁଅଇ
ପରଜନେ ତାହା ଗ୍ରାସନ୍ତି ଦୋଷ ବହି ।

ଅରାଜକ ରାଜ୍ୟେ ହବ୍ୟକୁ ବୈଶ୍ବ ନର
କଦାଚିତେ କରନ୍ତି ନାହିଁଟି ଆହାର ।
ଅରାଜକ ହେଲେ ଧର୍ମ ଯେ ନ ରହଇ
ମାଛ ପରି ଲୋକେ ହୁଅନ୍ତି ଖୁଆଖୋଇ ।
ଏହି ସକାଶରୁ ଦେବଙ୍କରେ ବଡ଼ୋଜା
ପରାୟେ ମନୁଷ୍ୟ କରିବ ରାଜପୂଜା ।
ଅରାଜକ ରାଜ୍ୟରେ କ୍ଷଣେ ନ ରହିବ
ଜାଣିବାର ଯେଉଁ ମନୁଷ୍ୟ ହୋଇଥିବ ।
ଅରାଜକ ରାଜ୍ୟରେ ପାପ ହୋଇ କଥା
ଥିଲ ପରି ହେ ବଶୁନାହିଁ ମହାରଥା ।
ଅରାଜକ ହୋଇଲେ ଧନ ଭାର୍ଯ୍ୟା ଆଶା
ଲୋକ ହୃଦୟେ କରି ନ ପାରଇ ବସା ।
ଏହା ଜାଣିଣ ଦେବେ ପାଳିବାକୁ ପ୍ରଜା
ରାଜ୍ୟଟିକେ ଗୋଟିଏ କରିଛନ୍ତି ରଜା ।
ପୂର୍ବେ ରାଜାମାନଙ୍କୁ ପ୍ରଜା କହିଛନ୍ତି
ପରସ୍ତ୍ରି ସ୍ତ୍ରୀ ପରଦ୍ରବ୍ୟରେ ଦେଇ ମତି ।
ଅନ୍ୟାୟରେ ଦଣ୍ଡ ଆମ୍ଭଙ୍କୁ ତୁମ୍ଭେ ଦେଲେ
ତୁମ୍ଭଙ୍କୁ ଗ୍ରାଡ଼ବୁଟି ଜାଣ ଆମ୍ଭେ ଭଲେ ।
ନୃପତିଏ ଏଥିରେ ହୋଇଣ ସମ୍ମତ
ଆଚରଣେ ସେକଥା କଲେ ବହୁଶତ ।
ପ୍ରଜାଏ ସେ ସକାଶେ ମହାଦୁଃଖୀ ହୋଇ
ପରମେଷ୍ଠୀ ଗ୍ରାମୁରେ ଜଣାଇଲେ ଯାଇ ।
ଆମ୍ଭଙ୍କୁ ଯେ ପାଳନା କରିବ ଧର୍ମରେ
ତାହାଙ୍କୁ ରାଜା କର ଆମ୍ଭର ଉପରେ ।
ବ୍ରହ୍ମା ବୋଇଲେ ହେ ମନୁଙ୍କୁ ଯାଅ ଘେନ
ରାଜା କରିଣ ତୁମ୍ଭେ ହୁଅ ସୁଖ-ସ୍ଥାନ ।
କହିଲେ ମନୁ ଶ୍ରୀଗ୍ରାମୁରେ ବ୍ରହ୍ମାଙ୍କର
ପାପ କାର୍ଯ୍ୟ କରିବାକୁ ବଡ଼ ମୋର ଡର ।
ନରେ ନ କହୁଥାନ୍ତି ମିଥ୍ୟାରେ ବଚନ
କାହୁପେ ମୁଁ ହୋଇବି ତାଙ୍କର ରାଜନ ।
ପ୍ରଜାଏ ବୋଇଲେ ନ ପାଅ ମନୁ ଭୟ
ମିଥ୍ୟା ଆଚରିଲେ ପାଇବୁ ଫଳଚୟ ।
ସ୍ୱର୍ଣ୍ଣାଦିରୁ ପଞ୍ଚଶ ଧାନ୍ୟ ଦଶମାଂଶ
ନେଇ ପାଳ ଭଣ୍ଡାର ପୂରାଇ ନରେଶ ।
ଶାସ୍ତ୍ର ଧରି ଲୋକେ ତୁମ୍ଭର ଅନୁଗତ
ହୋଇ ରହିଥିବେ ଯମୀପେ ଅବିରତ ।

ପ୍ରଜାମାନେ ଯେଉଁ ଧରମକୁ କରିବେ
ଚତୁର୍ଭାଗରୁ ଭାଗେ ପାଇବା ହୋଇବେ ।
ଏହି ସକାଶରୁ ଆମ୍ଭର ରାଜା ହୁଅ
ମହୀମଧରେ ମହା'ଧର୍ମକୁ ବଢ଼ାଅ ।
ଏହା ଶୁଣି ଯେ ମନୁ ମହାତୋଷ ବହି
ବାହାରିଲେ ତାଙ୍କ ହେବାକୁ ନରସାଇଁ ।
ମନୁଙ୍କର ତେଜ ପ୍ରଭାବେ ପ୍ରାଣୀଜନ
ଧର୍ମରେ ଅବିରତେ ଦେବେ ରାୟେ ମନ ।
ଯେଉଁ ଦେଶ ମଙ୍ଗଳ କାମନା କରିବ
ସେ ଦେଶରେ ଗୋଟିଏ ରାଜା କରାଇବ ।
ଗୁରୁ ପାଶରେ ଶିଷ୍ୟ, ଇନ୍ଦ୍ର ପାଶେ ଦେବ-
ଗଣ ପରି ପ୍ରଜେ ନୃପ ପାଶେ ହେବ ।
କୃତଜ୍ଞ ରାଜା ହେବେ ଉପକାରୀ ପାଶ
ଗୁରୁଜନେ ଭକତି କରିବେ ପ୍ରକାଶ ।
ଜିତେନ୍ଦ୍ରିୟ ସଂବିଭାଗୀ ନରପତିର
ଜୟ-ଶ୍ରୀ-ଯଶ ଲାଭ ହୁଏ ନିରନ୍ତର ।
ଯୁଧିଷ୍ଠିର ବୋଇଲେ ଭୀଷ୍ମ ମହାମତି
ନରାଧିପେ ଦେବତା ବୋଲିଣ କହନ୍ତି ।
କେଉଁ ହେତୁ ବ୍ରାହ୍ମଣମାନେ ମୋତେ କହ
ଶୁଣିବାକୁ ତାହା ବଳୁଛି ମୋର ସ୍ନେହ ।
ଭୀଷ୍ମ ବୋଇଲେ ଆହେ ବସୁମନା ନୃପ
ପୃଚ୍ଛାକଲେ ବୃହସ୍ପତିଙ୍କି ବହି ତାପ ।
ବୃହସ୍ପତି ଯାହା କହିଛନ୍ତି ତାହାଙ୍କୁ
ତାକୁ କହିବା ଏବେ ଦିଅ ହେ ମନକୁ ।
ପଚାରନ୍ତେ ବୃହସ୍ପତିଙ୍କୁ ବସୁମନା
କହିଲେ ଏହା ବୃହସ୍ପତି ମହାମନା ।
ରାଜାଟି ଲୋକଙ୍କର ଧର୍ମ ପ୍ରବର୍ତ୍ତାଏ
ରାଜା ନ ଥିଲେଟି ସେଟି ବ୍ୟର୍ଥ ହୋଇଯାଏ ।
ରାଜଦଣ୍ଡ ସକାଶୁଁ ପରସ୍ପରେ ହିଂସା
ଉପୁଜଇ ନାହିଁ ପ୍ରାଣୀଙ୍କର ମନସା ।
ଚନ୍ଦ୍ର ସୂର୍ଯ୍ୟ ନ ଥିଲେ ଯେସନ୍ତେ ଜୀବଗଣ
ଘୋର ଅନ୍ଧକାରେ ହୁଅନ୍ତି ନିମଗନ ।
ଅଳ୍ପଜଳେ ମାଛ ହିଂସ୍ର ନିର୍ଭୟ ବନେ
ପକ୍ଷୀଏ ଉଚ୍ଛୃଙ୍ଖଳେ ଉଡ଼ନ୍ତି ନିଧନେ ।
ନ ଥିଲେ ରାଜା ପାଳକ-ହୀନ ପଶୁ ପରି
ପ୍ରାଣୀଏ ମରନ୍ତି ହୋଇ ମରାମରି ।

ରାଜା ନ ପାଳିଲେ ଥାଉ ସେ ଆନ କଥା
ଭାରଯା ରକ୍ଷଣରେ ହେଉଥାନ୍ତା ବ୍ୟଥା ।
ମାତା ପିତା ଗୁରୁ ଯେ ଆଶ୍ରୟଁ ଅଛନ୍ତି
ନ ପାଳିଲେକ ରାଜା ଲଭନ୍ତେ ଦୁର୍ଗତି ।
ଦ୍ରବ୍ୟ ଥିବା ଲୋକଙ୍କୁ ବଳୀୟାର ଲୋକ
ବାନ୍ଧି ନେଉଥାନ୍ତେ ତା ଘରୁ ଦ୍ରବ୍ୟଯାକ ।
ନ ଥିଲେ ରାଜା ଲୋକ ପାପେ ପୀଡ଼ା ପାଇ
ମହୀଦେବୀର ତଳେ ପଡ଼ନ୍ତାନ୍ତି ଯାଇ ।
ସର୍ବ ଯାଗ ବିବାହ ବଣିଜାଦି କୃଷି
ରାଜା ବିନା ଆନରେ ନୁହନ୍ତା ପ୍ରକାଶ ।
ବେଦ ପଢ଼ିଣ ଜପିବାରୁ ମନ୍ତ୍ରବେତ୍ତ
ଦ୍ୱିଜ ଯେ ଆକୁଳରେ କରୁଥାନ୍ତ ଚିନ୍ତା ।
ଯାହାରଠାରେ ଦେଖୁଥାନ୍ତେ କଣ୍ଢୀ ନୋଳି
ନେଉଥାନ୍ତେ ତାହା ଛଡ଼ାଇ ଦେଇ ଗାଳି ।
ସ୍ତ୍ରୀମାନେ କେହ୍ନେ ମର୍ଯ୍ୟାଦା ନ ରଖନ୍ତେ
ସବୁ ପ୍ରାଣୀ ବର୍ଣ୍ଣଶଙ୍କର ହୋଇଯାନ୍ତେ ।
ରାଜା ସକାଶରୁ ନିର୍ଭୟ ଜନଚୟ
ହୋଇ ରହିଛନ୍ତି ହେ ପାଣ୍ଡୁଙ୍କ ତନୟ ।
ରାଜା ରଖିବାରୁଟି ତିନିବର୍ଣ୍ଣଯାକ
ଯେ ଯାହାର ଧର୍ମେ ଛନ୍ତି ଛାଡ଼ି ଭୟ ଶୋକ ।
ଏ ରୂପେ ଯେଉଁ ରାଜା ସକାଶରୁ ଧର୍ମ
ହୁଅଇ ତାର କମ୍ପା ହେବ ନିନ୍ଦା କର୍ମ ।
ରାଜାର ପ୍ରିୟ ଯେଉଁ ଲୋକଟି ଦାଞ୍ଛଇ
ଇହ ପର ଦୁଇରେ ବାଧା ତାର ନାହିଁ ।
ଯେ ଲୋକ ରାଜାର ଅନିଷ୍ଟ ଚିନ୍ତା କରେ
ପଡ଼ଇ ସେ ଯାଇଁଣ ଘୋର ନରକରେ ।
ଏହି କଥା ନ ଜାଣି ରାଜାକୁ ମନୁଷ୍ୟ
ଯେ ବୋଲଇ ତାହାର ହୁଅଇଟି ନାଶ ।
ଅଗ୍ନି ସୂର୍ଯ୍ୟ ମୃତ୍ୟୁ କୁବେର ଯମ ରୂପ
କାଳବଶେ ହେଉ ଥାଏଟି ଜାଣ ନୃପ ।
ଯେଉଁକାଳେ ପାପକୁ ତେଜେ ଦାହ କରେ
ଅଗ୍ନି ବୋଲି ଜାଣିଧ ରାଜାକୁ ସେକାଳେ ।
ଯେଉଁ କାଳେ ଚର ଚକ୍ଷୁରେ ସେ ଜାଣଇ
ସେକାଳରେ ରାଜାକୁ ସୂର୍ଯ୍ୟ ବୋଲି କହି ।
ଯେବେ ଅଶୁଚିକି ଦୁଷାଦି ସହ ନାଶ
କରେ ସେକାଳେ ରାଜା ମୃତ୍ୟୁର ସଦୃଶ ।

ଯେଉଁ କାଳେ ଅଧର୍ମୀ ଦଣ୍ଡି ଧାର୍ମିକଙ୍କୁ
ପାଳେ ସେହି କାଳେ ଉପମା ସେ ଯମକୁ ।
ଯେଉଁ କାଳେ ଉପକାରୀଙ୍କ ଦେଇ ଧନ
ଅପକାରୀରଠାରୁ ଆଣଇ ରାଜନ ।
ସେହି କାଳେ କୁବେର ବୋଲାଏ ନୃପତି
ଜାଣ ଯୁଧିଷ୍ଠିର ରାଜନ ମହାମତି ।
ମର୍ମ ଆକାଂକ୍ଷିତ ହୋଇବ ଯେଉଁଜନ
ରାଜ ଅପ୍ରାଧକୁ ଜଗିବ ପ୍ରତିଦିନ ।
ପୁଅ ଭାଇ ହେଉ ରାଜାର ପ୍ରତିକୂଳ
କଲେ ତାକୁ ବିଧାତା ନୁହେ ଅନୁକୂଳ ।
ରାଜଦ୍ୱେଷୀ ଲୋକର ନ ରହଇ ବଂଶ
ନ ମାଇଲେ ରାଜା ସେ ସ୍ୱୟଂ ଯାଏ ନାଶ ।
ରାଜଦ୍ରବ୍ୟ ପଥରଠାରୁ ଅଟେ ଆଣ୍ଠି
ଖାଇଲେ ତାହା ଲାଗି ରହେ କଣ୍ଠତଟ ।
ଏହା ଜାଣି ଆପଣାରୁ ଦ୍ରବ୍ୟ ଅଧିକ
କର ଟଣୁଥିବ ରାଜାର ଦ୍ରବ୍ୟଯାକ ।
ରାଜାର ଦ୍ରବ୍ୟ ବଳେ କଳେ ଯେ ହରଇ
ଭୟଙ୍କର ନରକେ ପଡ଼ଇ ସେ ଯାଇ ।
ଜୀଇବାକୁ ଯେ ନର ଇଚ୍ଛା କରିଥିବ
ରାଜା ବିନା ଆନକୁ ଆଶ୍ରା ନ କରିବ ।
କୃତଜ୍ଞ ଦୃଢ଼ଭକ୍ତ ଜିତେନ୍ଦ୍ରିୟ ଶୂର
ଅକ୍ଷୁଦ୍ରକର୍ମକାରୀ ଧାର୍ମିକ ସୁଧୀର ।
ଲୋକଙ୍କୁ ଦେଶ ବୁଝିବାରେ ନିଯୋଜନ
କରିବେ ସର୍ବହିତକାରକ ରାଜନ ।
ଯେବେ କୃପାଦୃଷ୍ଟିରେ ଚାହେଁ ମହୀପାଳ
ତେବେ ଯେ ମୂକ ଲୋକ ହୁଅଇ ବାଗ୍ମୀଳ ।
ଦୁଃଖୀ ସୁଖୀ ରାଜା କ୍ଷଣକେ କରିପାରେ
ପାଇଲେ ଦୁଃଖ ନିନ୍ଦା ନ ଦେଉ ରାଜାରେ ।
ଆଶ୍ରେ କରିଅଛୁ ଯେ ଅବନୀ ନାୟକ
ଜିଣିଅଛୁ ଏକା ସେ ଇହ ପରଲୋକ ।
ଏ ରୂପେ ବସୁମନା ଆଗେ ବୃହସ୍ପତି
କହିଛନ୍ତି ଜାଣ ହେ ପାଣ୍ଡବ ନୃପତି ।
ଯୁଧିଷ୍ଠିର ବୋଇଲେ ହେବ ଯେ ନରେଶ
ଭୃତ୍ୟ ଭାର୍ଯ୍ୟା ପୁତ୍ରକୁ କରୁପେ ବିଶ୍ୱାସ ।
କରିବ ରଖିବଟି କାକୁ କି କାର୍ଯ୍ୟରେ
ଏହା ମୋର ଆଗରେ ପ୍ରକାଶ କର ବାରେ ।

ଏ ବାହାରେ ଚର ପେଷିଣ ପରବେଶ
କରୁପରେ ବୁଝିବ ନର କୁଳଈଶ ।
ଗାଙ୍ଗେୟ ବୋଇଲେ ଯେ ହୋଇବ ରାଜନ
ମନେ ବଶକରି ଜିଣିବ ଶତ୍ରୁଜନ ।
ଆପଣାର ମନକୁ ନ ଜିଣିଲେ ରାଜ୍ୟେ
ଶତ୍ରୁକୁ ଜିଣିବାର କଷ୍ଟ ତାର ହୁଏ ।
ନୃପତି ଦୁର୍ଗ ରାଜ୍ୟପ୍ରାନ୍ତ ଉପବନ
ନଗର ଚତୁଷ୍ପଥ ରାଜନିବେଶନ ।
ପୁର ଅନ୍ତଃପୁର ଏ ସ୍ଥାନ ମାନଙ୍କରେ
ରଖାଇବ ସୈନ୍ୟ ଅଣିବ ଯତନରେ ।
ଯେ ଲୋକକୁ ଚର କରିବ ନରସାଇଁ
ଜଡ଼ ଅନ୍ଧ କାଲ ପରି ସେ ଥିବ ରହି ।
କ୍ଷୁଧା ତୃଷା ସହିବ ପ୍ରାଜ୍ଞ ହୋଇଥିବ
ଏମନ୍ତ ଲୋକଟିକୁ ପରଖି ରଖିବ ।
ମନ୍ତ୍ରୀ ପୁତ୍ର ମିତ୍ରଜନଙ୍କର ବ୍ୟବହାର
ଗୁପ୍ତଚର ଯୋଗେ ବୁଝିବ ନରବର ।
ଯେଉଁ ଲୋକଟିକୁ କରିଥିବେଟି ଚର
ପରସ୍ପରେ ସେ ତାହା ନୋହିବେ ଗୋଚର ।
ସଭା ଛୋଟା ହାଟ ବଜାର ସ୍ଥାନ ଦେଶ —
ମାନଙ୍କେ ପର ଚର ଖୋଜିବ ନରେଶ ।
ଶତ୍ରୁ ଚର ଜଣା ପଡ଼ିଲେ ନୃପତିର
ମଙ୍ଗଳ ହୁଅଇଟି ଜାଣ ନରବର ।
ଆପଣା ବଳ ଊଣା ଜାଣିବ ଯେକାଳେ
ବଳୀନୃପ ପ୍ରୀତିକି କରିବ ସେକାଳେ ।
କାର୍ଯ୍ୟାର୍ଥୀ ହୋଇ କରି ପରଭୂଲେ ପ୍ରୀତି
କରିବ ଲେଖିଅଛୁ ଯେ ହେବ ନୃପତି ।
ଗୁଣବନ୍ତ ମହା-ଉତ୍ସାହୀ ସାଧୁ ନର
ସଙ୍ଗତରେ ପ୍ରୀତି କରିବ ନରବର ।
ପୂର୍ବର ଅପକାରୀ ଲୋକ ବଇରକି
ମାରିବ, ଛାଡ଼ିଦେଇ କରିଣ ପ୍ରୀତିକି ।
ଯେ ଉପକାର ଅପକାରକୁ ଅକ୍ଷମ
ଉପେକ୍ଷା କରିବ ଯେ ନୃପେ ନରୋତ୍ତମ ।
ବିରଗଣ ପଡ଼ିଲେ ଲୁଚଇ ଯେ ଲୋକ
ତାକୁ ନ କରିବ ହେ ରାଜନ ସେବକ ।
ମୌନ ହୋଇଥିବା ଲୋକକୁ ଧର୍ମପରେ
ରଖିଲେ ପଡ଼େ ନୃପ ବିପତ୍ତି-ମୁଖରେ ।

ନଗରଟି ଜଗାଇ-ବାକି ଲୋକ ଭୂଲେ
ରାଜା ସେନ ପରଦେଶକୁ ଯିବ ଭଲେ ।
ନ ପାରିବା ରାଜାକୁ ତା ଜନରେ ଭେଦ
କରାଉଥିବ ହୃଦ-ଦେଶେ ବହି ମୋଦ ।
ପ୍ରୀତି ଦାନ ଭେଦରେ ଅର୍ଜିଲେ ରାଜ୍ୟ
ଶୁଣିଲେ ପ୍ରଶଂସନ୍ତି ପଣ୍ଡିତ-ସମାଜ ।
ପ୍ରଜା ରକ୍ଷାପାଇଁକି ତାଙ୍କଠାରୁ କର
ଆୟର ଷଷ୍ଠାଂଶ ନେଇବ ନରବର ।
ଅପୁତ୍ରିକ ଲୋକ ମରିଲେ ଧନ ଆଣି
ପୋଷିବ ଆପଣାର ପୁରଜନ ଶ୍ରେଣୀ ।
ପୂର୍ବପର ଲୋକମାନଙ୍କୁ ରହିଁଥିବ
ଦୋଷ କଲେ ଉତ୍ପ୍ରୋଧ ଛାଡ଼ିଣ ଦଣ୍ଡିବ ।
ବିଜ୍ଞଲୋକ ରାଜ୍ୟେ ନିଯୁକ୍ତ ଥିବ କରି
ଲୋକ ଭଲ ମନ୍ଦ ସେ ବୁଝିବ ବିଚାରି ।
ସୁନା ଲୁଣ ପୁଣି ଧାନ୍ୟାଦି କାରବାର
ସ୍ଥାନ ହାତୀ ଘୋଡ଼ାଦି ତତ୍ତ୍ୱର ବିଚାର ।
କରିବାକୁ ଆତ୍ମୀୟ ହିତକାରୀ ଜନେ
ଅଧିକାର ଦେବ ରାଜନ ତୋଷମନେ ।
ରାଜା ଧର୍ମେ ଦଣ୍ଡ ଦେଲେକ ରାଜଧର୍ମ
ପ୍ରକାଶ ହୋଇ ହୋଏ ସେ ନୃପେ ଉତ୍ତମ ।
ଦାନଶୀଳ ଜ୍ଞାନଶୀଳ ଯେ ତପଃଶୀଳ
ନୋହିଲେ କଦାଚିତେ ନୁହେଁ ମହୀପାଳ ।
ନିର୍ଦ୍ଦୟାହୀନ ରାଜାର ସ୍ୱର୍ଗେ ଯଶ ନାହିଁ
ପର ସକାଶୁ ସେ ସନ୍ତାପେ ହୋଏ ଦହି ।
ଦୁର୍ବଳ ରାଜା ବଳୀୟାରଠାରୁ ପୀଡ଼ା
ପାଇଲେ ଗଡ଼େ ଥିବ ଛାଡ଼ି ଦେଇ ବ୍ରୀଡ଼ା ।
ଧାନଯାକ କାଟିଣ ଗଡ଼ରେ ରଖିବ
ଆଣି ନ ପାରିଲେ ତାହାକୁ ପୋଡ଼ି ଦେବ ।
ଦୀର୍ଘିକା-ଆଦି ଜଳ ଭଣ୍ଡାରରୁ ଜଳ
ଅଣାଇ ତାକୁ ଶୁଷ୍କ କରିବ ନୃପାଳ ।
ଜଳ କାଢ଼ି ନୋହିଲେ ପୁରାଇବ ବିଷ
ଶତ୍ରୁଲୋକେ ମରିବେ ସେହେତୁ କରି ଗ୍ରାସ ।
ଗଡ଼ ବାହାରେ ଯେତେକ ଗଛ ଥିବ
ସାନର ମୂଳ, ବଡ଼ ଡାଳ କାଟିଦେବ ।
ଦୁର୍ଗ ପ୍ରକାର ମଧ୍ୟେ କରି ଗୁପ୍ତସ୍ଥାନ
ରଖାଇବ ତହିଁ ସର୍ବଦା ଶୂରଗଣ ।

ଶତ୍ରୁଗଣଙ୍କୁ ଦେଖି କରିବାକୁ ହତ
ଭିତ୍ତିମଧ୍ୟରେ କରିଥିବ ଛିଦ୍ର-ପଥ ।
ସିଂହଦ୍ୱାର ବାହାରେ ଗୁପତ ଦୁଆର
କରିବ ବିପତ୍ତିରେ ହେବାକୁ ବାହାର ।
ଦ୍ୱାରମାନଙ୍କରେ ଯନ୍ତ୍ର ଯେ କୋଟି କୋଟି
ରଖିବ ନେବାପାଇଁ ଶତ୍ରୁଙ୍କ ପ୍ରାଣଟି ।
ପାଣି କୂଅଁ ଗର୍ଭେ ଅବଧି ରଖିଥିବ
ଅଜାଗ୍ରତ ହୋଇଣ ଦିନକୁ ନ ନେବ ।
ତୃଣ-କୁଆଁ ଘରକୁ ପଙ୍କ ବୋଳି ଦେଇ
ରଖାଇବ ପାଣି ମାଠିଆ ତହିଁ ନେଇ ।
ଗ୍ରୀଷମ ଦିବସରେ ଅଗ୍ନି ନ ଜାଳିବ
ବ୍ରାହ୍ମଣଙ୍କ ହୋମ ନିଷେଧ ନ କରିବ ।
ସୂତିକାଘର ଅଗ୍ନି କମାରଙ୍କ ଶାଳ
ଜଗାଇଥିବ ଲୋକ ରଖି ଲୋକପାଳ ।
ଭିକାରି କେଳା ଗେଡ଼ିଆ ଉନମତ୍ତ
ଲୋକେ ଗଡ଼େ ସ୍ଥାନ ନ ଦେବ କଦାଚିତ୍ ।
ରାଜମାର୍ଗଟିକ ଯେ ବଡ଼ କରାଇବ
ନାନାଜାତି ହାଟ ତହିଁରେ ବସାଇବ ।
ଭଣ୍ଡାର ଶସ୍ତ୍ର ଯୋଧ ଅଶ୍ୱ ଗଜ ସୈନ୍ୟ
ରହିବା ଘର ପରିଖା ପୁର-ଉଦ୍ୟାନ ।
ଅଭ୍ୟନ୍ତର-ମାର୍ଗ କରିବ ଯେ ଏମନ୍ତ
ଗୋପ୍ୟ ସ୍ଥାନକୁ ଅନ୍ୟ ନ ଜାଣେ ଯେମନ୍ତ ।
ପରବଳେ ପୀଡ଼ିତ ହୋଇବ ରାଜନ
ସମ୍ପାଦୁଥିବ ଯୁଦ୍ଧଦ୍ରବ୍ୟ ପ୍ରତିଦିନ ।
ଏ ବାହାରେ ଔଷଧମାନଙ୍କୁ ଧରାଇ
ବୈଦ୍ୟଙ୍କୁ ଗଡ଼ ମଧ୍ୟେ ରଖାଇବ ନେଇ ।
ଦୁର୍ବଳ ସସପ୍ତେ ଆପଣା ଲୋକେ ଶଙ୍କା
ଜାତ ହେଲେ ତାହାଙ୍କୁ ବୋଧୁଥିବ ଏକା ।
କାର୍ଯ୍ୟଟି କରିଦେଲେ ଲୋକେ ଧନ ଦେବ
ନୋହିବା ଯାକେ ଦେବା ଦେବା ବୋଲୁଥିବ
ଆତ୍ମା କୋଷ ସଚିବ ଦଣ୍ଡ ମିତ୍ର ପୁର
ଜନପଦ ମିଶି ସପ୍ତାଙ୍ଗ ନରବର ।
ପାଳିବ ଅହର୍ନିଶ ଯାଗରୁକ ହୋଇ
ଯେବେ ମନ ଥିବ ହେବାକୁ ନରସାଇଁ ।
ଷାଡ଼୍‌ଗୁଣ୍ୟ ତ୍ରିବର୍ଗ ଯେ ପରମ-ତ୍ରିବର୍ଗ
ଜାଣିବା ନୃପ କରେ ସ୍ଥିରେ ମହୀ-ଭୋଗ ।

ଶତ୍ରୁରେ ସନ୍ଧିକରି ନିଶ୍ଚିନ୍ତେ ରହିବ
ସମସ୍ତ ଦେଖିକରି ଯୁଦ୍ଧ ଆରମ୍ଭିବ ।
ଦ୍ରୋହ କରିବ ଭୟ ଦେଖାଇବା ପାଇଁ
ଯାତ୍ରା ଛଳେ ପ୍ରକାଶି ବଙ୍କ ନରସାଇଁ ।
ଦ୍ୱୈଧୀ-ଭାବ ଅନ୍ୟ ଦୁର୍ଗ ଅବା ପ୍ରବଳ
ନୃପ ଆଶ୍ରା ଗ୍ରହଣ ଷାଡ଼୍‌ଗୁଣ୍ୟ ଭୂପାଳ ।
ତ୍ରିବର୍ଗ ଅଟେ କ୍ଷୟ ବୃଦ୍ଧି ଅଉ ସ୍ଥାନ
ପରମ ତ୍ରିବର୍ଗ ଯେ ଧର୍ମ ଅର୍ଥ କାମ ।
ପାଳିଲେ ପ୍ରଜା ରାଜା ଧର୍ମ ଅନୁସାରେ
କାର୍ଯ୍ୟ ନାହିଁ ତା ତପେ ଯାଗରେ ଦାନରେ
ଯୁଧିଷ୍ଠିର ବୋଇଲେ ନୃପ ଦଣ୍ଡନୀତି
ବହିଲେ ପିତାମହ କି ହୋଏ କୀରତି ।
ଭୀଷ୍ମ ବୋଇଲେ ଆହେ ଦଣ୍ଡନୀତିମନ୍ତ
ନୃପ ହେଲେ ବୋଲାଏ ଜାଣ ଭାଗ୍ୟବନ୍ତ ।
ରାଜା ଯେବେ ଦଣ୍ଡନୀତି ପ୍ରଯୁକ୍ତ କରେ
ଭୟରେ ତିନ ବର୍ଣ୍ଣ ରହନ୍ତି ଧର୍ମରେ ।
ଧର୍ମରେ ରାଜା ଦେଉଥାଏ ଯେବେ ଦଣ୍ଡ
ସତ୍ୟଯୁଗ ହୋଇଥାଏଟି ତହିଁ ରୁଣ୍ଡ ।
ସତ୍ୟଙ୍କୁ ଅନୁଗତ ଅଟେ ଧର୍ମ ଗୋଟି
ସେ ବଳେ ନ ଯାଏ ଅଳ୍ପକେ କାଳ ଘୋଟି ।
ସ୍ୱରବର୍ଣ୍ଣ ମନ ଯେ ହୁଅଇ ପ୍ରସନ୍ନ
କେହିଁ ନୁହେଁ ରୋଗୀ ଅଳ୍ପାୟୁ ନରଗଣ ।
ସେ କାଳରେ ବିଧବା ନୁହନ୍ତି ରମଣୀ
କର୍ଷଣ ବିନା ଶସ୍ୟ ହୁଅଇ ଅବନୀ ।
ଫଳ ପୁଷ୍ପମାନେ ଯଥାକାଳେ ହୁଅନ୍ତି
ଅକାଳବୃଷ୍ଟି ମଘବାନ ନ କରନ୍ତି ।
ବ୍ୟାଧି ଚୋର ଭୟରୁ ହୁଅନ୍ତି ବର୍ଜିତ
ନ ବାଧଇ କ୍ଷୁଧା ପିପାସା ପ୍ରାଣୀ ଚିତ୍ତ ।
ଦଣ୍ଡନୀତି ଚତୁଷ୍ପଦରୁ ପାଦେ ଊଣା
ହେଲେ ତ୍ରେତୟୁଗଟି ହୁଏ ମହାମନା ।
ଚତୁଷ୍ପାଦ ଧର୍ମରୁ ଅଧର୍ମ ତ୍ରି ପାଦେ
ଭୋଗ କରଇ ହେ ରାଜନ ଅପ୍ରମାଦେ ।
ଦଣ୍ଡନୀତିଟି ଅଧେ ଊଣା ହୋଇଗଲେ
ସେ କାଳକୁ ଦ୍ୱାପର କାଳ କହି ଭଲେ ।
ପୁଣ୍ୟ ପାପ ଦୁହେଁ ଜଗତରୁ ପ୍ରସରି
ରହନ୍ତିଟି ସମାନ ହୋଇ ଦଣ୍ଡଧାରୀ ।

ଦଣ୍ଡନୀତି ଛାଡ଼ି ଦିଅଇ ଯେବେ ରାଜା
ଆସଇ କଳିଯୁଗ ବିଜାଇଣ ବାଜା ।
ଧର୍ମକୁ ଲୋପ କରି ଅଧର୍ମ ବହୁଳ
ହୋଇ ଅଳପକେ ଘୋଟଏ ଆଣି କାଳ ।
କଉଣସି ସ୍ଥାନମାନଙ୍କେ ଧର୍ମ ଲେଶ
ରହଇ ଜାଣ ଆହେ ପାଣ୍ଡୁ ରାଜ ଶିଷ୍ୟ ।
ଚାରିବର୍ଣ୍ଣେ ସ୍ୱଧର୍ମ ବୃତ୍ତିକି ଛାଡ଼ନ୍ତି
ବିଧର୍ମ ବୃତ୍ତି କରି ଉଦର ପୋଷନ୍ତି ।
ଶୂଦ୍ରେ କଉପୁନିକି ମାରଣ କଟିରେ
ବସନ୍ତି ଯୋଡ଼ାପଟି ପକାଇ ମଝିରେ ।
ଅନ୍ୟର ପରିଚର୍ଯ୍ୟା କରଣ ବ୍ରାହ୍ମଣ
ଜୀବିକା ନିର୍ବାହନ୍ତି କରନ୍ତି ରାଜନ ।
ଷଡ଼ଋତୁ ସେ ବିପରୀତକୁ ଭଜନ୍ତି
କାଳ ଜାଣିଣ ଇନ୍ଦ୍ରବୃଷ୍ଟି ନ କରନ୍ତି ।
ସ୍ୱର ବର୍ଣ୍ଣ ମନ୍ତ୍ରି ହୋଇଯାଏ ହୀନ
ବ୍ୟାଧିବନ୍ତ ଅଳ୍ପାୟୁ ହୁଅନ୍ତି ଜନ ।
ରମଣୀଏ ବିଧବା ହୁଅନ୍ତି ବହୁତ
ପ୍ରଜାଗଣେ ନୃଶଂସ ହୁଅନ୍ତି ନିରତ ।
ଆହେ ଯୁଧିଷ୍ଠିର ରାଜାଙ୍କୁ ଅନୁରୂପ
କାଳ ହୋଇ ବଢାଏ ପ୍ରାଣୀଙ୍କ ସନ୍ତାପ ।
ରାଜାଟି ଚାରି ଯୁଗ କରତା ଅଟଇ
ଥାଆନ୍ତି ଯୁଗେ ରାଜା ଅନୁଗତ ହୋଇ ।
ସତ୍ୟ ତ୍ରେତା ଦ୍ୱାପର ପ୍ରବର୍ତ୍ତିକ ରାଜା
ପୁଣ ଅନୁରୂପେ ଲଭନ୍ତି ସ୍ୱର୍ଗେ ପୂଜା ।
କଳିଯୁଗ ଚରିତ କାର୍ଯ୍ୟ ପାପ ଜାତ
ଦୁଃଖ ଭୋଗ ହୁଅଇ ଜାଣ ନରନାଥ ।
ପ୍ରଜାକୃତ ପାପ ପଙ୍କରେ ଯାଇ ବୁଡ଼ି
ଦୁଷ୍କର୍ମା ନରପତି ସତେ ନର୍କେ ପଡ଼ି ।
ଶୁଣିଲ ତ ମୋଠାରୁ ଦଣ୍ଡନୀତି ମହୀ
ପାଳ ଧର୍ମେ ପ୍ରଜାଙ୍କୁ ଦଣ୍ଡି ନରସାଇଁ ।
ଯୁଧିଷ୍ଠି ବୋଇଲେ କି କଲେ ନରରାଣ
ଅର୍ଥବନ୍ତ ହୋଏ ତା ମୋ ଆଗେ ବଖାଣ ।
ଭୀଷ୍ମ ବୋଇଲେ ହେ ଛତିଶ ଗୁଣ ଯୁତ
ହୁଅଇ ଯେ ନୃପ ହୁଏ ସେ ଅର୍ଥବନ୍ତ ।
ରାଗ ଦ୍ୱେଷ ଛାଡ଼ି ଧର୍ମକୁ ଆଚରିବ
ସମସ୍ତ ପ୍ରାଣୀଠାରେ ସ୍ନେହ ରଖିଥିବ ।

ଅର୍ଥକୁ ସମ୍ପାଦିବ ଅନୃଶଂସ ହୋଇ
କାମକୁ କରୁଥିବ ଆସକ୍ତି ନ ବହି ।
ଅଧୀନ ଭାବ ଧରି କହିବ ପ୍ରିୟ ଗିର
ଶ୍ଳାଘାବିହୀନ ହୋଇ ହୋଇଥିବ ଶୂର ।
ପାତ୍ର ଦେଖି କରି କରିବ ବିତରଣ
କରିବ ନାହିଁ ବୁଦ୍ଧି ଅପାତ୍ରରେ ଦାନ ।
ପ୍ରଧାନ ହୋଇ ମୃଦୁ ହେବ ନିରନ୍ତର
ଜାଣ ହେ ଯୁଧିଷ୍ଠି ପାଣ୍ଡବ ନରବର ।
ଅପଣ୍ଡିତ ଭୁଲେ ନ କରିବ ପୀରତି
ତୋଷୁଥିବ ବଚନ ଧନେ ବନ୍ଧୁ ନିତି ।
ଅଲ୍ପାତ୍ମା ଲୋକଟିକୁ ନ କରିବ ଚାର
ନ ଦେଇ ପୀଡ଼ା ଅନ୍ୟେ କାର୍ଯ୍ୟ କରିବାର ।
ଅପତି ନିକଟରେ ଅର୍ଥ ନ କହିବ
ନିଜେ ଆପଣାର ଗୁଣକୁ ନ ଗାଇବ ।
ସାଧୁଙ୍କଠାରୁ କେବେ ନ ଆଣିବ ଧନ
ଅସାଧୁ ସଙ୍ଗେ ନ ହରିବ ଲବେ ମନ ।
ବୁଝିଣ ଦୋଷ ପ୍ରାଣୀମାନଙ୍କୁ ଦଣ୍ଡିବ
ଆପଣା ମନ୍ତ୍ରଣାକୁ ଗୁପ୍ତ କରୁଥିବ ।
ଲୋଭୀଙ୍କ ନ ଦେବ ଧନ ବିରୋଧୀ ଜନ-
ମାନଙ୍କୁ ନ କହିବ ବିଶ୍ୱାସ ବଚନ ।
ମୋହ-ଈର୍ଷା-ଅନ୍ୱିତ ଗୁପ୍ତଦାର ହେବ
ଶୁଦ୍ଧ ହୋଇ ଘୃଣାବିହୀନ ହୋଇଥିବ ।
ସ୍ତ୍ରୀଙ୍କଠାରେ ଅତି ନୋହିବ ଆସକତ ।
ଛାଡ଼ିବ ଭୋଜନରେ ଯେ ହେବ ଅହିତ ।
ଅସ୍ତବ୍ଧଭାବେ ମାନ୍ୟବ୍ୟକ୍ତିଙ୍କୁ ପୂଜିବ
ନିଷ୍କପଟେ ଗୁରୁଜନଙ୍କୁ ସେବୁଥିବ
ଅନିନ୍ଦିତ ଶିରୀକ ଇଚ୍ଛା କରୁଥିବ
ଶ୍ରଦ୍ଧା ରଖି ଦେବତା ବ୍ରାହ୍ମଣେ ପୂଜିବ ।
ଦକ୍ଷ ହୋଇଥିଲେହେଁ ଯେ ହେବ ବିଜ୍ଞ ନର
ସମୟେ ପ୍ରତୀକ୍ଷା କରିବ ନିରନ୍ତର ।
ଧନ ଦେଇ ସନ୍ଧି ଆଶ୍ରୟ ଦେଇ ତ୍ୟାଗ
କରିବା ଅନୁଚିତ ନୃପ ମହାଭାଗ ।
ନ ଜାଣି କରି ଦୋଷ ନ ମାରିବ ମାଡ଼
ନ କରିବ ଶୋକ ଭାଙ୍ଗିଣ ଶତ୍ରୁ ହାଡ଼ ।
ବୃଥା କଥାରେ କେବେହେଁ ନ କରିବ ରାଗ ।
ଅପକାରୀଠାରେ ଛାଡ଼ିବ ମୃଦୁଭାଗ ।

ଏ ରୂପରେ ଛତିଶଗୁଣକୁ ଆଚରି
ପାଳ ରାଜା ହୋଇ ହସ୍ତିନା ନାମ ପୁରୀ ।
ଯେଉଁ ରାଜା ଏତେ ଗୁଣରେ ଯୁକ୍ତ ହୋଏ
ଇହ ପର ଦୁଇରେ ଜାଣ ପୂଜାପାଏ ।
ଭୀଷ୍ମଙ୍କର ମୁଖରୁ ଶୁଣି ଏ ବଚନ
ପ୍ରଶଂସିଲେ ବହୁତ ଧର୍ମଙ୍କ ନନ୍ଦନ ।
ଯୁଧିଷ୍ଠିର ବୋଇଲେ କି ରୂପରେ ପ୍ରଜା
ପାଳିଲେ ଆଧିମନ୍ତ ନୁହଇଟି ରାଜା
ବେଭାର କର୍ଣ୍ଣପ୍ରାୟ କାର୍ଯ୍ୟର ଅନ୍ୟଥା
ନୁହଇ, ତାହା ହେଲେ ନ ମିଳଇ ବ୍ୟଥା ।
ଏ ଦୁଇ କଥାଯାକ ଜାହ୍ନବୀ-ସନ୍ତତି
ବିସ୍ତାରି କହ ଶୁଣିବାକୁ ବଳେ ମତି ।
ଭୀଷ୍ମ ବୋଇଲେ ହେ ସଂକ୍ଷେପେ ଏ ଧରମ
କହିବ ଶୁଣ ପାଣ୍ଡୁ କୁଳନନ୍ଦୋତ୍ତମ ।
ଧର୍ମନିଷ୍ଠ ବେଦଜ୍ଞ ବୃଦ୍ଧ ଗୁଣବନ୍ତ
ଗୃହଗତ ଦ୍ୱିଜଙ୍କୁ ପୂଜିବ ନିଯୁକ୍ତ ।
ପୁରୋହିତ ହୋଇଣ କର୍ମକୁ କରିବ
ଦ୍ୱିଜମୁଖେ ଶୁଭବଚନ ବୋଲାଇବ ।
କାମ କ୍ରୋଧ ଛାଡ଼ି ନିର୍ମଳ ହୃଦ ବହି
ଦ୍ରବ୍ୟ ପ୍ରତିଗ୍ରହ କରିବ ନରପାଇଁ ।
କାମ-କ୍ରୋଧବଶେ କଲେ ଅର୍ଥ ଅର୍ଜନ
ଧର୍ମ ବା ଅର୍ଥ ଲଭ ନୁହଇ ରାଜନ ।
ଲୁବ୍ଧ ମୂର୍ଖଙ୍କୁ ଯେହ୍ନେ କାର୍ଯ୍ୟେ ଯୁକ୍ତ କଲେ
ଅକାର୍ଯ୍ୟ ଗୋଟିକୁ ଯେ କରୁଥାଇ ଭଲେ ।
ଅଲୁବ୍ଧ ବୁଦ୍ଧିମନ୍ତେ ସେ କାର୍ଯ୍ୟେ ନିଯୁକ୍ତ
କଲେ କୀର୍ତ୍ତି-ଶିରୀକ ସମ୍ପଦେ ବହୁତ ।
ଷଷ୍ଠାଂଶ ଦେଇଣ ଦୋଷୀକି ଦଣ୍ଡ ଦିଏ
ବଣିକଙ୍କୁ ପାଳ ବର୍ତ୍ତନ ନେଉଥାଏ ।
ଅଧର୍ମି ଲୋକ ଯେଉଁ ରାଜା ଛାଡ଼ିଯାଏ
ତାହାକୁ ଅନୁଗତ ହୁଅନ୍ତି ସଭିଏ ।
ଦୁଧର ଲୋଭେ ଧେନୁକୁ କାଟିଲେ
ଦୁଧ ଯାଇ ଅକାର୍ଯ୍ୟ ଉପୁଜଇ ଭଲେ ।
ସେହିରୂପେ ରାଜା କଉଡ଼ିଲୋଭୀ ହୋଇ
ପ୍ରଜାକୁ ପୀଡ଼ା ଦେଲେ ଦୁଃଖକୁ ଭୁଞ୍ଜଇ ।
ମାଳୀ ଯେ ବୃକ୍ଷଲତା ପାଳଇ ପରଯତ୍ନେ
ପ୍ରଜାକୁଳ ପାଳିବ ଯେ ହୋଇବ ରାଯତ୍ନେ ।

ଅଙ୍ଗାରଲୋଭୀ ବୃକ୍ଷକାଟିଲି ପର ରାଜା
ବେଭାର କଲେ ତାକୁ ଛାଡ଼ନ୍ତି ପରଜା ।
ଶତ୍ରୁ ବିନାଶିବାରେ ହେଲେ ଧନହୀନ
ଦ୍ୱିଜ ଧନ ଛାଡ଼ି ଆଣିବ ଆନ ଧନ ।
ପ୍ରାଣ ରଖିବା ପାଇଁ ବ୍ରାହ୍ମଣ ଧନକୁ
ମନ ନ କରିବଟି କହୁଛୁଁ ତୁମ୍ଭଙ୍କୁ ।
ଏରୂପେ ଧର୍ମରେ ପାଳିଲେ ସବୁ ନର
ଅନ୍ତମେ ତୁମ୍ଭଙ୍କୁ ପୂଜିବେ ପୁରନ୍ଦର ।
ପ୍ରଜାରକ୍ଷା ରାଜା ଛାଡ଼ିଲେ ଦିନୁଟିଏ
ସହସ୍ର ବରଷେ ସେ ପାତକ ନ ଯାଏ ।
ପ୍ରଜାପାଳନରେ ଦିନକ ଧରମରେ
ଦଶଶତ ବରଷ ବସଇ ସ୍ୱର୍ଗରେ ।
ତପ ଯାଗାଦିରେ ଅର୍ଜିତ ଯେତେ ଲୋକ
ପରଜା-ପାଳନାରେ ଅଛନ୍ତି ତେତେକ ।
ରାଜକୁଳେ ତୁମ୍ଭେତ ଜନମ ହୋଇଛ
ତହିଁକି ଅନୁରୂପ ରାଜ୍ୟ ତ ପାଇଛ ।
ପ୍ରଜାପାଳ ସୁହୃଦଙ୍କର ମନ ତୋଷି
ଅନ୍ତମ କାଳେ ଯାଇ ହୁଅ ସ୍ୱର୍ଗବାସୀ ।
ଯେଉଁ ଦ୍ୱିଜ ସାଧୁଜନଙ୍କୁ ରଖାଇବ
ଅସାଧୁଙ୍କୁ ପାଶରୁ ଘଉଡ଼ାଇ ଦେବ ।
ସେ ଦ୍ୱିଜକୁ କରିବ ରାଜ ପୁରୋହିତ
ତେବେ ହୁଅଇଟି ଆପଣା ପୁର ହିତ ।
ପୁରୂରବା ଦିନେ ପୁଚ୍ଛିଲେ ପବନଙ୍କୁ
ବ୍ରାହ୍ମଣ କାହାଠାରୁ ପାଇଛି ଜନ୍ମକୁ ।
କ୍ଷତ୍ରିୟାଦି ଅପର ବର୍ଣ୍ଣତ୍ରୟ ଜାତ
କାହାଠାରୁ ବା ହୋଇଅଛି ନଭସ୍ୱତ ।
ବ୍ରାହ୍ମଣ କିପାଇଁ ଲୋକରେ ହେଲା ଶ୍ରେଷ୍ଠ
କହ ତ ମୋତେ ଏହା ହେ ଦେବ ବରିଷ୍ଠ ।
ପବନ ବୋଇଲେ ହେ ବ୍ରହ୍ମାଙ୍କ ମୁଖରୁ
ଜନ୍ମିବାରୁ ଆଗ ବ୍ରାହ୍ମଣ ହେଲେ ଗୁରୁ ।
ବ୍ରହ୍ମ ବେନିବାହୁରୁ ହୋଇଲେ କ୍ଷତ୍ରିୟ
ଉରୁରୁ ବୈଶ୍ୟ ପାଦୁଁ ହେଲେ ଶୂଦ୍ରଚୟ ।
ବ୍ରାହ୍ମଣ ଏ ମହୀରେ ଅଧିକାର କଲେ
କ୍ଷତ୍ରିୟ ସେ ଦ୍ୱିଜଙ୍କ ରକ୍ଷାକାରୀ ହେଲେ ।
ତିନିବର୍ଣ୍ଣଯାକଙ୍କୁ ଧନ ଦେଇ ବୈଶ୍ୟ
ପୋଷିଲେ ଆହେ ଯୁଧିଷ୍ଠିର ନରଈଶ ।

ଶୂଦ୍ରେ ତିନିବର୍ଣ୍ଣପାକର ହେଲେ ଲୋକ
ଏ ରୂପେ ଚାରିବର୍ଣ୍ଣ ପୂରିଗଲା ଲୋକ ।
ପୁରୁରବା ବୋଇଲେ ଧର୍ମରେ ଏ ମହୀ
କହ ହେ କେବଳର କାହାର ଅଟଇ
ବାୟୁ ବୋଇଲେ ଆହେ ମହୀ ବ୍ରାହ୍ମଣର
ଅଗ୍ର ଜନ୍ମ ହେବାରୁ ହେଲା ନରବର ।
ବ୍ରାହ୍ମଣଙ୍କ ଛାଡ଼ିଯା ଏ ମହୀ-ମଣ୍ଡଳା
ଯଥାର୍ଥରେ ଅଟଇ ଜାଣ ଈଳାବାଳା ।
ନ ପାରନ୍ତେ ଦ୍ୱିଜେ କ୍ଷତ୍ରିୟ ଶ୍ରେଷ୍ଠଙ୍କୁ
ଆଦେଶିଲା କସ କହିବା ହେ ଭୂମିକୁ ।
ଏହି ସକାଶୁଁ ଜାଣ ବ୍ରାହ୍ମଣଙ୍କୁ ମହୀ
ଜଣି ଦେଉଥିବ କ୍ଷତ୍ରିୟ ତୋଷ ବହି ।
କୁଳେ ତ ଜାତ ଦ୍ୱିଜ ଅବଶ୍ୟ ରଜା ଶ୍ରେଷ୍ଠ
ହୃଦୟ ମଧ୍ୟେ କରୁଥାଇଟି ଉଦୟ ।
ବ୍ରାହ୍ମଣ କହିବାର ଧର୍ମକୁ କ୍ଷତ୍ରିୟ
ଆଚରଲେ ଅଲଭ୍ୟ ଲଭେ କୀର୍ତ୍ତିଚୟ ।
ଧରମ ଅଧରମ ପୁରୋହିତ ବଳ
ପାଇ କର ଯେ କରୁଥାଏ ମହୀପାଳ ।
ରଜାକୁ ଆଶ୍ରା କରି ସୁରକ୍ଷିତ ହୋଇ
ଯେ ଧର୍ମ ଆଚରନ୍ତି ପ୍ରଜା ସୁଖେ ରହି ।
ନୃପତି ଚତୁର୍ଥାଂଶ-ଭାଗୀ ସେ ଧର୍ମର
ହୁଅନ୍ତି ଜାଣ ହେ ପାଣ୍ଡବ-ନରବର ।
ରାଜା ବିନା ଯଜ୍ଞ ନୁହଇ କଦାଚିତ
ଯଜ୍ଞ ବିନା ତୃପ୍ତ ନୁହଇ ଦଇବତ ।
ଏହି ସକାଶୁଁ ରାଜା ପ୍ରାଣୀଙ୍କ ଆଧାର
ବୋଲଣ କହିଛନ୍ତି ଜାଣ କୁଶଧର ।
ରଜା ସକାଶରୁ ଉପୁଜେ ସବୁ ସୁଖ
ରାଜା ବିମୁଖରେ ହୁଅଇ ସବୁ ଦୁଃଖ ।
ଅଭୟ ଦେବା ରାଜା ବଜାଇଣ ବାଜା ।
ସ୍ୱର୍ଗକୁ ଯାଇକରି ଲଭେ ମହାପୂଜା ।
ଇନ୍ଦ୍ର ଧର୍ମ ଶମନ ଅଟଇ ରାଜନ
ରାଜା ସକଳ ପ୍ରାଣୀମାନଙ୍କ ଜୀବନ ।
ସୁବିଦ୍ୟାବନ୍ତ ପୁରୋହିତଟି ରାଜନ
ଏହା ଜାଣି କରି କରିବ ସମ୍ପାଦନ ।
ପୁରୋହିତ ରାଜା ଧର୍ମଆତ୍ମା ହୋଇଲେ
ପ୍ରଜାମାନେ କୁଶଳେ ଥାନ୍ତି ରାଜ୍ୟ ଭଲେ ।
ପ୍ରଜା ଏ ବ୍ରାହ୍ମଣ କ୍ଷତ୍ରିୟ ସମ୍ଭାବନା
କଲେଣି ମହୀମଧ୍ୟେ ହୋନ୍ତି ସୁଖମନା ।
ସବୁ ବର୍ଣ୍ଣଙ୍କ ମଧ୍ୟେ ମୂଳ ଯେ ବ୍ରାହ୍ମଣ
କ୍ଷତ୍ରିୟ ଅଟନ୍ତି ଭଲକରି ଜାଣ ।
ପୁରୁରବା ଏବେ କଶ୍ୟପଙ୍କୁ ପୁଚ୍ଛିଲେ
ଅନ୍ୟୋନ୍ୟେ ଦ୍ୱିଜ କ୍ଷେତ୍ର ଛଡ଼ାଛଡ଼ି ହେଲେ ।
ସର୍ବବର୍ଣ୍ଣ କାହାର ଆଶ୍ରୟ ଗ୍ରହଣ
କରିଣ ସୁରକ୍ଷିତ ହୁଅନ୍ତି ବଖାଣ ।
କଶ୍ୟପ ବୋଇଲେ ଯେ ବ୍ରାହ୍ମଣ କ୍ଷତ୍ରିୟ
ବିରୁଦ୍ଧ ହେଲେ ବୁଡ଼ଯାଏ ଧର୍ମଚୟ ।
କ୍ଷତ୍ରିୟ ଦ୍ୱିଜଙ୍କରେ ଅଧରମ ରହି
ନାନାଜାତି ଅବିଦ୍ୟା ସମ୍ପାଦ ଆଣଇ ।
ଏ ଯେନ କହୁଥାଇଁ ଦୁହେଁ ଧରାଧର
ହୋଇଥିଲେ ପାଆନ୍ତି ଭବ ସିନ୍ଧୁ ପାର ।
ବ୍ରାହ୍ମଣକୁ କ୍ଷତ୍ରି ସମ୍ପାଦ ଥାଏ ଯେବେ
ଅମୃତବୃଷ୍ଟି ହୁଏ ତାର ଘରେ ତେବେ ।
ମୂର୍ଖ ପାପୀ ଦ୍ୱିଜ ରହିଲେ ରାଜା ପାଖେ
ରାଜା ସେହି ଯେନ ରହଇ ମହାଦୁଃଖେ ।
ପାପୀ ଦ୍ୱିଜ ଯୋଗେ ଆଚରି ରୌଦ୍ରକର୍ମ
ରାଜନଟି ଲୋଡ଼ି ଆଣଇ ଅଧରମ ।
ପୁରୁରବା ବୋଲେ ସେ ରୁଦ୍ର କି ପ୍ରକାର
କି ରୂପରେ ଉତ୍ପତ୍ତି ହୁଅଇ ତାହାର ।
ନୃପ ବା କି ଯେନ ଧରନ୍ତି ରୁଦ୍ରରୂପ
ତାହା ମୋତେ କହ ଆହେ ଋଷି କଶ୍ୟପ ।
କଶ୍ୟପ ବୋଇଲେ ବାତର ପ୍ରଭାବରେ
ଆକାଶରୁ ବିଦ୍ୟୁତ ବଜ୍ର ଯେ ପ୍ରକାରେ ।
ଜାତ ହୁଏ ତେହ୍ନେ ମାନବ ହୃଦୁଁ କାମ
କ୍ରୋଧ ଜନ୍ମି ଅନ୍ୟକୁ ନାଶେ ନରୋତ୍ତମ ।
ପୁରୁରବା ବୋଇଲେ ସୁକୃତି ଦୁଷ୍କୃତି
ଦୁହେଁ କପାଇଁ କହ ଦଣ୍ଡ ପାଉଛନ୍ତି ।
କଶ୍ୟପ ବୋଇଲେ ଦୁଷ୍କୃତ ସଙ୍ଗ ହେଲେ
ସୁକୃତି ଦଣ୍ଡ ପାଉଅଛି ଜାଣ ଭଲେ ।
ଆର୍ଦ୍ର ବିଶୁଷ୍କ କାଠ ମିଶିଲେ ଦହନ
ଯେରୂପେ ଦହୁଅଛି ସେରୂପେ ତା ଜାଣ ।
ପୁରୁରବା ବୋଲେ ଅସାଧୁ ସାଧୁ ଦୁଇ
ଧରିଅଛି ତ ନେତ୍ର ଦେଖୁଥାଇଁ ମହୀ ।

ସୂର୍ଯ୍ୟ ମଧ୍ୟ ଦୁହିଁଙ୍କ ସମାନ ଉତ୍ତାପ
ଦେଉଅଛନ୍ତି ବଢ଼ାଇ କରିଣ ପ୍ରତାପ ।
ପବନ ହେଉଛି ଦୁହିଁଙ୍କ ସୁଖ କର
ପବିତ୍ର କରଅଛନ୍ତି ସ୍ନାନ ଜଳେ ନୀର ।
କଶ୍ୟପ ବୋଇଲେ ଯାହା କହିଲା ହେଉଛି
ସତ ଏଥି ଶ୍ରବଣେ ମିଥ୍ୟା ନାହିଁ କିଛି ।
ଇହଲୋକ ଧର୍ମ ଅଟଇ ଏହିରୂପେ
ପରଲୋକେ ଅସାଧୁ ପଡ଼ନ୍ତି ସନ୍ତାପେ ।
ସାଧୁ ଜନ୍ମ-ମରଣ-ଦୁଃଖ-ହୀନ ହୋଇ
ସୁଖଲାଭ କରନ୍ତି ପରଲୋକେ ରହି ।
ଏହି ହେତୁ ଦ୍ୱିଜ ଯେ କ୍ଷତ୍ରିୟ ଧରମ
ରକ୍ଷା ହେବା କର୍ମ କରିବ ନରୋତ୍ତମ ।
କ୍ଷତ୍ରି ଦ୍ୱିଜମୁଖେ ନ ଦେଇ କଲେ ଗ୍ରାସ
ଉପୁଜଇ ଜାଣ ତହିଁରୁ ମହାଦୋଷ ।
ପରସ୍ପରେ ବ୍ରାହ୍ମଣ କ୍ଷତ୍ରି ସଙ୍ଗାସଙ୍ଗି
ହେଲେ ସେ ମହାବୁଦ୍ଧି ପାଆନ୍ତି ବେଗି ।
ରାଜ୍ୟର ଭଲ ମନ୍ଦ ରାଜାର ଆୟତ୍ତ
ରାଜା ଭଲ ମନ୍ଦ କରତା ପୁରୋହିତ ।
ଯେ ରାଜ୍ୟ ପ୍ରଜାଙ୍କ ଅଦୃଷ୍ଟ ଭୟ ହେଲେ
ପୁରୋହିତ ତା ନାଶ କରୁଥାଇ ଭଲେ ।
ଦୃଷ୍ଟଭୟ ହେଲେ ତା ରାଜା ନାଶ କରେ
ସେ ରାଜ୍ୟ ସୁଖ ଭୋଗ କରେ ନିରନ୍ତରେ ।
ପୂର୍ବେ ଯେ ମୁଚୁକୁନ୍ଦ ରାଜା ମହୀ ଜିଣି
କୁବେରଙ୍କର ଛୁଟିଲେ ରଚିଲେ ଆରଣି ।
କୁବେର ରାକ୍ଷସଙ୍କୁ କରନ୍ତେ ପ୍ରେରିତ
ମୁଚୁକୁନ୍ଦଙ୍କର ବଳ ହୋଇଲା ହତ ।
ଆପଣା ବଳ ହତ ମୁଚୁକୁନ୍ଦ ଦେଖି
ନିଜ ପୁରୋହିତ ନିନ୍ଦିଲେ ହୋଇ ଦୁଃଖୀ ।
ତାହା ଶୁଣି ବଶିଷ୍ଠ କଲେ ମହାତପ
ସେ ବଳରେ ରାକ୍ଷସମାନ ହୋଇଲେ ଲୋପ ।
କୁବେର ମୁଚୁକୁନ୍ଦ ସମୀପେ ଆସିଲେ
ପୁରୋହିତ ଯେ ବଳ ଜାଣିଣ କହିଲେ ।
ବ୍ରାହ୍ମଣ ବଳ ଛାଡ଼ି ନିଜ ଦେହ ବଳ
ଥିଲେ ମୋ ଆଗେ ତା ଦେଖାଅ ମହୀପାଳ ।
ମୁଚୁକୁନ୍ଦ ବୋଇଲେ ବ୍ରାହ୍ମଣ କ୍ଷତ୍ରି ଦୁଇ
ଏକା କରି ଦର୍ଜନା କରଅଛୁ କହି ।

ବ୍ରାହ୍ମଣ କ୍ଷତ୍ରି ଯେବେ ହୋନ୍ତି ଦୁହେଁ ଭିନ୍ନ
ତେବେ ଲୋକେ କେବେହେଁ ନ ପାନ୍ତି ପାଳନ
ଯେରୂପେ ବ୍ରାହ୍ମଣର ଜପ ମନ୍ତ୍ରବଳ
ରହିଛି ସେହିରୂପେ କ୍ଷତ୍ରି ବାହୁବଳ ।
ବ୍ରାହ୍ମଣଙ୍କୁ ସେନା ଯେ ହୋଇବ ରାଜନ
ପାଳିବ ପ୍ରଜାଜନ ଶାସ୍ତ୍ରର ବିଧାନ ।
ଏହା ମାଣି ସିନା ବ୍ରାହ୍ମଣ ସେନ ମୁହିଁ
ତୁମ୍ଭ ସଙ୍ଗେ ଯୁଦ୍ଧ କଲି ହେ ଧନସାଇଁ ।
କୁବେର ବୋଇଲେ ମୁଁ ବଚନେ ସନ୍ତୋଷ
ହୋଇ ଦେଲି ମହୀ ଭୁଞ୍ଜ ହେ ନରଈଶ ।
ମୁଚୁକୁନ୍ଦ ବୋଇଲେ ନ ଜିଣିଲି ମହୀ
କଦାଚିତେ ଭୋଗ ମୁଁ କରିବଇଁ ନାହିଁ ।
ମୁଚୁକୁନ୍ଦଙ୍କର କ୍ଷତ୍ରିୟ-ଧର୍ମ-ବାଣୀ
ଆଶ୍ଚର୍ଯ୍ୟ ପାଇଲେ କୁବେର ଦେବ ଶୁଣି ।
ତହୁଁ ଯେ ମୁଚୁକୁନ୍ଦ ବାହୁବଳାର୍ଜିତ
ଧରଣୀକି ଭୁଞ୍ଜିଲେ କରି ସମୁଦ୍ରାନ୍ତ ।
ମୁଚୁକୁନ୍ଦ ପରି ଦ୍ୱିଜକୁ ଅନୁଗତ
ଯେ ହୁଏ ମହୀ ତାର ହୁଏ କରଗତ ।
ବ୍ରାହ୍ମଣ ନିତ୍ୟସ୍ନାୟୀ କ୍ଷତ୍ରୀ ନିତ୍ୟ ଶସ୍ତ୍ର
ହୋଇଲେ ହେଲେ ଜିଣି ପାରନ୍ତି ଜଗତ ।
ଯୁଧିଷ୍ଠି ବୋଇଲେ ନୃପ ଯେ ବୃତ୍ତି ଧରି
ପୁଣ୍ୟ ଲୋକ ଜିଣଇ ପ୍ରଜା ପାଳି କରି
ତାହା ଶୁଣିବାକୁ ହେଉଛି ମୋର ମନ
କହ ମୋତେ ତାହା ହେ ଗଙ୍ଗାଙ୍କ ନନ୍ଦନ ।
ଗାଙ୍ଗେୟ ବୋଇଲେ ଯେ ଦାନ ତପଃଶୀଳ
ଯଜ୍ଞଶୀଳ ସଦା ହେବ ହେ ମହୀପାଳ ।
ସମସ୍ତ ପ୍ରାଣୀଙ୍କୁ ପାଳିବ ରାଜଧର୍ମେ
ଧାର୍ମିକଗଣେ ପୂଜା କରୁଥିବ ଶର୍ମେ ।
ରାଜା ଧର୍ମେ ଆଦର କଲେ, ଲୋକେ ଧର୍ମେ ।
ଆଦର କରନ୍ତି ଛାଡ଼ି ସବୁ କର୍ମେ ।
ଶତ୍ରୁଠାରେ ତପନ ପରାୟେ ହୋଇବ
ସୁଜନେ ଚନ୍ଦ୍ରପରି ଗୁଣ ପ୍ରକାଶିବ ।
ପାଳିଲେ ପ୍ରଜା ରାଜା ପୁଣ୍ୟରୁ ଚତୁର୍ଥ
ଭାଗ ପାଏ ନ ପାଳିଲେ ସେ ହୋଏ ବ୍ୟର୍ଥ ।
ନ ପାଳିଲେ ପ୍ରଜା ଯେ ଅମଙ୍ଗଳ ହୁଏ
ଚତୁର୍ଥାଂଶ ରାଜା ସେ ପାପୁଁ ଭାଗପାଏ ।

ପ୍ରଜାଙ୍କ ଧନ ଯେବେ ଚୋରେ ନେବ
ତା ଆଣି ନ ପାରିଲେ ଭଣ୍ଡାରରୁ ଦେବ ।
ତିନିବର୍ଣ୍ଣଯାକ ରଖିବେ ବ୍ରାହ୍ମଣଙ୍କୁ
ନ ରଖିବ ବ୍ରାହ୍ମଣ ଅପ୍ରାଧୀ ଜନଙ୍କୁ ।
ବ୍ରହ୍ମସ୍ୱ ରକ୍ଷଣ କରଇ ଯେବେ ରାଜା
ପର ଲୋକେ ତାହାକୁ ପୂଜନ୍ତି ବଡ଼ୋଜା ।
ସର୍ବାର୍ଥ-ସାଧକ ତ ଅଟଇ ରାଜନ
ତାଙ୍କୁ ଉପଜୀବ୍ୟ କରନ୍ତି ସବୁ ଜନ ।
କାମାତ୍ମା କାମବୁଦ୍ଧି ହୁଏ ଯେଉଁ ରାଜା
କେବେହେଁ ସେ ପାଳି ନ ପାରଇ ପରଜା ।
ଯୁଧିଷ୍ଠି ବୋଇଲେ ସୁଖ ପାଇବ ବୋଲି
ରାଜା ହେବ ଏ କଥା ଜାଣି ତ ନ ଥିଲି ।
ଧର୍ମ ପାଇଁ ସିନା ମୁଁ ରାଜ୍ୟ କରିଥିଲି
ଧର୍ମ ନାହିଁ ରାଜ୍ୟରେ ଏବେ ମୁଁ ଜାଣିଲି ।
ଗୃହରେ ଥିଲେ ମୋର ହୋଇବ ଅକାର୍ଯ୍ୟ
ବନେ ରହି ଅର୍ଜିବି ଯେତେ ପୁଣ୍ୟ କାର୍ଯ୍ୟ ।
ଭୀଷ୍ମ ବୋଇଲେ ମୁଁ ଜାଣେ ତୁମ୍ଭ ମନ
ରହିଥାଏ ଧର୍ମ କଥାରେ ପ୍ରତିଦିନ ।
କ୍ଷତ୍ରିୟ କୁଳରେ ତ ଜନ୍ମ ଅଛି ହୋଇ
ଧର୍ମାଧର୍ମ ଆଚରି ହୁଅ ନରସାଇଁ ।
ଅତି ମୃଦୁ କୃପାଳୁ ଧର୍ମଶୀଳ ହେଲେ
ଲୋକରେ କ୍ଲୀବ ତୁମ୍ଭେ ବୋଲାଇବ ଭଲେ ।
ସରବେ ଅସମର୍ଥ କରିବେ ବିସ୍ମର
କ୍ଷତ୍ରିୟଧର୍ମ ଏହା ନୁହେଁ ବୀରବର ।
ପିତୃପିତାମହେ ଯାହା କରି ଯେ ଅଛନ୍ତି
ତାହା କର ହେ ଯୁଧିଷ୍ଠିର ବହି ପ୍ରୀତି ।
ଯତ୍ନ କରି ଯେବେ ପାଳିବ ତୁମ୍ଭେ ପ୍ରଜା
ବୋଲାଇବ ଜଗତେ ପୁଣ୍ୟବନ୍ତ ରାଜା ।
ପାଣ୍ଡୁ କୁନ୍ତୀ ତୁମ୍ଭଙ୍କ ମହୀ ପାଳିବାକୁ
ଜାତ କରିଥିଲେ ଛାଡ଼ିବ କିମ୍ପା ତାକୁ ।
ପ୍ରଜା ପାଳିବାକୁ କ୍ଷତ୍ରିୟ ପୃଥ୍ୱୀ ଜାତ
କରଇ ତହିଁ କିମ୍ପା ହେଉଛ ବିରତ ।
ଦାନ ଯଜ୍ଞ ପ୍ରଜା ପାଳନ ଅଧ୍ୟୟନ
କର୍ମ ନ କରିବାକୁ ତୁମ୍ଭର ଜନମ ।
ଧର୍ମକୁ ଆଶ୍ରେ କରି ଆଜଯାଏ ଯିନ
କେବଳ କାହାରିଟି ଯାଇ ନାହିଁ ଜାଣ ।

ଧର୍ମକୁ ସ୍ମରି କର୍ମ କରୁଥିଲେ ଲୋକ
ତାହାକୁ ନିନ୍ଦା ନ କରନ୍ତି ଲୋକ ।
କର୍ମ ନ କରି ଯେହୁ ନିବର୍ତ୍ତି ରହଇ
ହେ ଯୁଧିଷ୍ଠିର ସେହୁ ପାପକୁ ଲଭଇ ।
ବଳରେ ଯେବେ ରାଜା ଅଇଶ୍ୱର୍ଯ୍ୟ ପାଏ
ପ୍ରଶଂସା ତାହାକୁଟି କରନ୍ତି ସଭିଏ ।
ଧାର୍ମିକ ଲୋକ ଯେବେ ହୁଅଇ ରାଜନ
ଦାନ ଯଜ୍ଞ ବଚନେ ବୋଧେ ସବୁ ଜନ ।
ଯାର ଆଶ୍ରୟେ ସୁଖୀ ପଣ୍ଡିତ ସଜ୍ଜନ
ହୁଅନ୍ତି ଯେ ସ୍ୱୟଂ ଧର୍ମ ବଡ଼ ଜାଣ ।
ଯୁଧିଷ୍ଠିର ବୋଇଲେ ଉତ୍କୃଷ୍ଟ ଉପାୟ
ସ୍ୱର୍ଗ ପ୍ରୀତି ଐଶ୍ୱର୍ଯ୍ୟ ଲଭିର କି କହ ।
ଭୀଷ୍ମ ବୋଇଲେ ହେ ପୁଚ୍ଛିଲ ଯା ରାଜନ
କହିବା ସେ କଥାଟି ଭଲ କରି ଶୁଣ ।
ଯେଉଁ ରାଜାଙ୍କୁ ଯେବ ପ୍ରଜାଏ ଭୟକୁ
ଛାଡ଼ନ୍ତି ସେହି ନିଷ୍ଟେ ଯାଏଟି ସ୍ୱର୍ଗକୁ ।
ଏବେ ତ ବାହୁ ବଳେ ଅରଜିଲ ମହୀ
ସାଧୁ ପାଳି ଅସାଧୁ କୁଳେ ଦିଅ ଦହି ।
ଯୁଧିଷ୍ଠିର ବୋଇଲେ ସ୍ୱକର୍ମ ବିକର୍ମ
କରନ୍ତି ଦ୍ୱିଜେ କହ କେ ଅଟେ ଉତ୍ତମ ।
ଭୀଷ୍ମ ବୋଇଲେ ଯେ ଦ୍ୱିଜ ସ୍ୱକର୍ମ ଥାଇ
ବିଦ୍ୟା-ଶମ-ଦମରେ ବ୍ରହ୍ମ ସମ ସେହି ।
ଯେ ଋକ ଯଜୁ ସାମ ଜାଣିଣ ସ୍ୱକର୍ମ
କରୁଅଛି ସେ ବୋଲାଉଛି ଦେବ ସମ ।
କର୍ମବିହୀନ ଦ୍ୱିଜ ଶୂଦ୍ର ତୁଲେ ସରି
ବୋଲି ଲେଖିଛନ୍ତି ଶାସ୍ତ୍ରରେ କୁଶଧାରୀ ।
ଚଟାଉବୁହା ଦେବପୂଜକ ଗଣକ
ଗ୍ରାମର ପୁରୋହିତ ବାଣିଜ୍ୟ କାରକ ।
ଯେଉଁ ଦ୍ୱିଜେ ଏହି ବୃତ୍ତିକୁ କରୁଥାନ୍ତି
ବ୍ରାହ୍ମଣରେ ଚଣ୍ଡାଳ ତାହାକୁ ବୋଲନ୍ତି ।
ଋତ୍ୱିକ ପୁରୋହିତ ମନ୍ତ୍ରୀ ଦୂତପଣ
କଲେ ଦ୍ୱିଜ କ୍ଷତ୍ରିଏ ସମ ହୋଏ ଜାଣ ।
ଅଶ୍ୱ ଗଜାରୋହୀ ରଥୀ ପଦାତି ହେଲେ
ବୈଶ୍ୟ ତୁଲେ ବ୍ରାହ୍ମଣ ଗଣ୍ୟ ହୁଏ ଭଲେ ।
ଦେବ ସମ ବ୍ରହ୍ମ ସମ ବ୍ରାହ୍ମଣ ଛାଡ଼ି
ଆନ ବ୍ରାହ୍ମଣଠାରୁ ଆଣିବ କାଉଡ଼ି ।

ବୃତ୍ତିକାମୀ ଦ୍ୱିଜଙ୍କୁ ଯେ ନ ଛାଡ଼ିବ
ଶିଖାଇ ଧର୍ମ ନିୟମରେ ରଖାଇବ ।
ନ ପାରି ଖାଇ ଦ୍ୱିଜ ଚୋର ବୃତ୍ତି କଲେ
ତୋଷିନ୍ତ ତାଙ୍କୁ ରାଜା ଧନ ଦେଇ ଭଲେ ।
ରାଜା ପୋଷିବାର ଉପରୁ ସେହି ବୃତ୍ତି
କଲେ ଖେଦିଦେବ ନିଜ ରାଜ୍ୟ ନୃପତି ।
ଯୁଧିଷ୍ଠିର ବୋଇଲେ କି ବୃତ୍ତି କରିବ
ରାଜା କାହା ଧନରେ ପ୍ରଭୁ ବୋଲାଇବ ।
ଏହା ମୋର ଆଗେ କହ ତ ଗଙ୍ଗାସୁତ
ଶୁଣିବାକୁ ମୋହର ବଳୁଅଛି ଚିତ୍ତ ।
ଭୀଷ୍ମ ବୋଇଲେ ଆହେ ତିନିବର୍ଣ୍ଣ ବିତ୍ତ
ଯାଙ୍କରେ କ୍ଷତ୍ରିୟର ଅଟଇ ପ୍ରଭୁତ୍ୱ ।
ଦୁଷ୍କର୍ମକାରୀ ଅବ୍ରାହ୍ମଣମାନଙ୍କର
ଧନରେ ନୃପତିର ଅଟେ ଅଧିକାର ।
ବିପ୍ରମାନେ ଯେ ବିକର୍ମରେ ସ୍ଥିତ ହେଲେ
ଉପେକ୍ଷା ତାଙ୍କୁ ନୃପ ନ କରିବ ଭଲେ ।
ଯେ ରାଜା ରାଜ୍ୟେ ଦ୍ୱିଜ ହୁଅଇ ତସ୍କର
ସେ ରାଜା ପରେ ପଡ଼େ ତାର ଦେଶ ଭାର ।
ଏହା ଜାଣି ତାଙ୍କୁ ପାଳନ୍ତି ରାଜମୁନି
ବୃତ୍ତିଦାନ କରି ପାଣ୍ଡବ ନରମଣି ।
ପୂର୍ବକାଳେ କେକୟ ଅଧିପ ଅରଣ୍ୟେ
ବେଦ ପଢ଼ୁଥିଲେ ବସିଣ ତୋଷମନେ ।
ତାଙ୍କୁ ବାନ୍ଧି ନେବାକୁ ରାକ୍ଷସଟେ ଆସି
ପାଶକୁ ଧରି କରି ରହିଲା ଗରସି ।
ସେ ରାଜା ସେ ରାକ୍ଷସ ମୁଖକୁ ଅନାଇ
ବୋଇଲେ ମୁହିଁ ଅତି ବ୍ରହ୍ମଣ୍ୟ ଅଟଇ ।
ମୋ ଦେଶରେ ତସ୍କର କଦର୍ଯ୍ୟ ମଦ୍ୟପ
ନାହାନ୍ତି ତୁଚ୍ଛା ମୋତେ ନ ହୁଅ ସନ୍ତାପ ।
ଅବ୍ରତୀ ଅପଣ୍ଡିତ ଅଯାଜ୍ୟ ବ୍ରାହ୍ମଣ
ମୋର ଦେଶରେ ରହି ନାହାନ୍ତିଟି ଜାଣ ।
ନୋହିଲେ ବ୍ରତ ଦ୍ୱିଜେ ନ ପଢ଼ନ୍ତି ବେଦ
ଯାଗ କଲେ ଦକ୍ଷିଣା ଦିଅନ୍ତି ବହି ମୋଦ ।
ଏ ବାହାରେ ଷଟ୍‌କର୍ମରେ ସ୍ଥିତ ନୋହି
ଦ୍ୱିଜକୁଳେ ମୋ ଦେଶେ ଜନ୍ମି ନାହିଁ କେହି
ସ୍ୱକର୍ମସ୍ଥିତ ସତ୍ୟବନ୍ତ ଶାନ୍ତ ଦାନ୍ତ
ବ୍ରାହ୍ମଣେ ଛନ୍ତି ମୋ ରାଜ୍ୟ ହୋଇ ସମ୍ମାନିତ ।

ଯେତେ ଅଛନ୍ତି ମୋର ଦେଶେ ଯେ କ୍ଷତ୍ରିୟ
ପାଳନା କରୁଛନ୍ତି ଧର୍ମେ ଦ୍ୱିଜଚୟ ।
ସତ୍ୟ ଧର୍ମେ ରହି କାହାକୁ ନ ମାଗନ୍ତି
ସନ୍ତୋପ୍ରାଦାନ ସର୍ବେ ନିୟତ କରନ୍ତି ।
ଯାଠନ ନ କରିଣ କରନ୍ତି ପଠନ
ନ କରାଇ ଯଜ୍ଞ କରନ୍ତି ଅନୁଷ୍ଠାନ ।
ମୋ ଦେଶେ ବୈଶ୍ୟଯାକ କୃଷି ଗୋପାଳନ
ବାଣିଜ ବିନା ନ ଜାଣନ୍ତି କଥା ଆନ ।
ମୋ ଦେଶେ ଶୂଦ୍ରେ ତିନିବର୍ଣ୍ଣ ସେବା କରି
ଅଟନ୍ତି ଦେହର ଧାତକ ନାଟକାରି ।
ଅନାଥ ଦୁର୍ବଳ ଆତୁରେ ଦିଏ ଅନ୍ନ
ମୋତେ ସେ ହେଉଥାନ୍ତି ଦେଖି ତୋଷମନ ।
କୁଳଧର୍ମ ଦେଶ ଧର୍ମ ମୁଁ ଆଜଯାଏ
ନାଶ ତ କରି ନାହିଁ ହେ ରାକ୍ଷସରାୟେ ।
ଅସମୟରେ ପୀଡ଼ା ପରସ୍ତ୍ରୀ ଗମନ—
ତାରୁ ସଦା ନିବର୍ତ୍ତି ଥାଏ ମୋର ମନ ।
ଅବ୍ରହ୍ମବିତ ଭିକ୍ଷାନ୍ନ ହୋଇ ମୋର
ଲୋକର କେହି ନାହିଁ ହେ ରାକ୍ଷସବର ।
ତପସ୍ୱୀ ବୃଦ୍ଧଙ୍କୁ ଅବଜ୍ଞା ନ କରଇ
ସମସ୍ତେ ଶୋଇଲେ ମୁଁ ଜାଗି ଥାଏ ରହି ।
ମୋହର ପୁରୋହିତ ସର୍ବଧର୍ମଜ୍ଞାତା
ଏ ବାହାରେ ପୁଣି ସ୍ଥିର ବେଦବେତ୍ତା ।
ଦାନରେ ବିଦ୍ୟା ବ୍ରାହ୍ମଣଙ୍କୁ ରକ୍ଷା କରେ
ସତ୍ୟେ ସ୍ୱର୍ଗାଦି ଲୋକେ ବାଞ୍ଛି ନିରନ୍ତରେ ।
ଗୁରୁପାଦେ ସେବା ତ ଅବଧି ମୋହର
ଅଛି, ଶୁଣ ତୁମ୍ଭ ଭୟକୁ କରେ ଦୂର ।
ମୋହ ଦେଶରେ ପତି ମଲେ ପତ୍ନୀକୁଳ
ପଡ଼ନ୍ତି ଅଗ୍ନି ମଧ୍ୟେ ନୋହିଣ ବିକଳ ।
ନାହିଁ ମୋର ରାଜ୍ୟରେ ଶଠ ଅବ୍ରାହ୍ମଣ
ଅଯାଜ୍ୟ ଯାଜୀ ପାପକର୍ମୀ କେହି ଜାଣ ।
ଧର୍ମଯୁଦ୍ଧ କରିବାରେ ଯେ, ମୋ ଦେହରେ
ଜନ୍ମଚର୍ମ ଟିକଏ ନାହିଁ ଅଲଗାରେ ।
ଗୋ ବ୍ରାହ୍ମଣ ରକ୍ଷଣ ଯଜ୍ଞବଳ ହେତୁରେ
ମୋ ଶୁଭ ପ୍ରଜାଏ ବାଞ୍ଛନ୍ତି ନିରନ୍ତରେ ।
ଏହି ରୂପେ ତ ମୁହିଁ ଅଟଇ ଧାର୍ମିକ
ତୋହଠାରେ କମ୍ପା ହୋଇବ ମୋର ଦକ ।

ରାକ୍ଷସ ବୋଇଲା ଧାର୍ମିକ ଅଟ ତୁମ୍ଭେ
ଥାଅ ଆମ୍ଭ ଘରକୁ ଯାଉଅଛୁଁ ଆମ୍ଭେ ।
ଗୋ ବ୍ରାହ୍ମଣ ପାଳନା କରଇ ଯେ ଜନ
ସେ ନୋହେ କଦାଚ ହିତ ରାକ୍ଷସ-ଅଶନ ।
ଯେ ରାଜା ଆଗରେ ବ୍ରାହ୍ମଣ ଥାଏ ବସି
ସେ ଜନେ ଅନ୍ତଃକାଳେ ହୋଏ ସ୍ୱର୍ଗବାସୀ ।
ଏ ରୂପେ କହିକରି ଅଧର୍ମ ରାକ୍ଷସ
ଛାଡ଼ିଗଲା କେକୟ ନୃପତିଙ୍କ ପାଶ ।
ଏହିକଥା ଶ୍ରବନା କରି ପାଣ୍ଡୁସୁତ
ଦ୍ୱିଜମାନଙ୍କର ସେବାରେ ହୁଅ ରତ ।
ଯେଉଁ ରାଜା ମର୍ତ୍ତ୍ୟରେ ଧର୍ମ ଆଚରଇ
ଇହ ପରରେ ତାର କୀର୍ତ୍ତି ପ୍ରକାଶଇ ।
ଯୁଧିଷ୍ଠି ବୋଇଲେ ବ୍ରାହ୍ମଣ ରାଜଧର୍ମ
କରିବ ଆପଦେ କହନ୍ତ ନରୋତ୍ତମ ।
ପଚ୍ଚରୁଛୁ ମୁହିଁ ବୈଶ୍ୟ ଧର୍ମ ବ୍ରାହ୍ମଣ
ଆଚରି ପାରେ କି ନା କହ ରଥୀ-ଗଣ ।
ଭୀଷ୍ମ ବୋଇଲେ ଆହେ ପଡ଼ିଲେ ବିପତ୍ତି
କ୍ଷତ୍ରି ଧର୍ମ କରି ଜୀଇବ ଦ୍ୱିଜଜାତି ।
ଯେବେ ହେବ କ୍ଷତ୍ରିୟ ଧର୍ମକୁ ଅସତ
ତେବେ ବୈଶ୍ୟ ଧର୍ମରେ ରଖିବ ଜୀବିତ ।
ଲୁଣ ରସି ଘୋଡ଼ା ବୃଷଭ ମଦ୍ୟ ମାଂସ
ଅନ୍ନପଶୁ ସୁରା ବିକଲେ ହେବ ଦୋଷ ।
ଅଗ୍ନି ମହୀ ଅନ୍ନ ହୋମ ଘୋଟକ ଅଜ
କେବେହେଁ ନ ବିକିବ ଧେନୁ ଯାଗ ଦ୍ୱିଜ ।
ଏହା କାରବାର କରିବା ଛାଡ଼ି ଦେଇ
ଆନ କାରବାର କଲେ ଯେ ଦୋଷ ନାହିଁ ।
ଖାଇବା ପାଇଁ ଘୃତ ଗନ୍ଧ ରଖିଥିବ
ଲୋକେ ଜଣେ ଆସିଲେ ତାକୁ ତାହା ଦେବ ।
ସେ ଯେବେ ଖାଇବାକୁ ପକ୍ୱ ଅନ୍ନ ଦେଇ
ଯିବ ତେବେ ତାହା ଖାଇଲେ ଦୋଷ ନାହିଁ ।
ଯୁଧିଷ୍ଠିର ବୋଇଲେ ବଳହୀନ ରାଜା
କି ରୂପେ ପାଳନା କରିବ କହ ପ୍ରଜା ।
ଭୀଷ୍ମ ବୋଇଲେ ହେ ଦାନ ତପସ୍ୟା ଯାଗ
କରି ଦ୍ୱିଜେ ରଖିବେ ନିଜ ଦେହଭାଗ ।
ବେଦରେ ଯେଉଁମାନେ ବଳୀୟାର ଥିବେ
ସେ କର୍ମକରି ରାଜା ବଳ ବଢ଼ାଇବେ ।
ରାଜାର ଯେତେବେଳେ ହେବ ପରକ୍ରମ
ଛାଡ଼ିବେ ଦ୍ୱିଜେ ରାଜା ପାଇଁ କାମ୍ୟକର୍ମ ।
ରାଜାପରେ ପଡ଼ିଲେ ଚାରିବର୍ଣ୍ଣଯାକ
ଯୁଦ୍ଧ କଲେ ଧରମ ହୁଅଇ ଅଧିକ ।
ଯୁଧିଷ୍ଠି ବୋଇଲେ ବ୍ରାହ୍ମଣ ଦୋଷକାରୀ
କ୍ଷତ୍ରିୟ ହେଲେ ଦ୍ୱିଜ କି ଧର୍ମ ଆଚରି ।
ଭୀଷ୍ମ ବୋଇଲେ ହେ ବ୍ରାହ୍ମଣ ମାତ୍ରାବଳେ
ତପସ୍ୟାର ବଳରେ ଶାସିବେ ଭୂପାଳେ ।
କ୍ଷତ୍ରିୟ ତେଜୋବଳ ବ୍ରାହ୍ମଣେ ଶାନ୍ତ
ହୁଅଇ ବୋଲିକରି ଧାତା କହିଛନ୍ତି ।
ବ୍ରାହ୍ମଣ ପାଇଁ କ୍ଷତ୍ରିୟର ଅସ୍ତ୍ରବିଦ୍ୟା
ପ୍ରସିଦ୍ଧ ହୋଇଅଛୁ ରାଜନ ସର୍ବଦା ।
ବ୍ରାହ୍ମଣ ତିନିବର୍ଣ୍ଣ ପାଳିବାକୁ ଶାସ୍ତ୍ର
ଧଇଲେ ନ ଯାଏ ତା ବେଦପଢ଼ା ମନ୍ତ୍ର ।
ବ୍ରାହ୍ମଣପାଇଁ ଯୁଦ୍ଧ କରି ଯେ ମରଇ
ତାହା ଗତି ଜାଣ ପାଣ୍ଡବ ନରସାଇଁ ।
ବଳଦ ହୋଇକରି ନ ପାରିବ ବହି
ଦୁଧ ଦେଇ ସେ ନ ପାରିବ ଗାଈ ହୋଇ ।
ଭାର୍ଯ୍ୟା ହୋଇକରି ନୋହିବ ପ୍ରଜାପତି
ପ୍ରଜା ନ ପାଳିବ ବୋଲିଣ ମହୀପତି ।
ତେବେ ଏମାନଙ୍କରେ କିଛି କାର୍ଯ୍ୟ ନାହିଁ
ମୋ କଥାରୁ ଜାଣ ପାଣ୍ଡବ-ନରସାଇଁ ।
କାଷ୍ଠ ହସ୍ତୀ ଚର୍ମମୃଗ କ୍ଲୀବର ପରି
ବେଦ ନ ପଢ଼ିବା ଦ୍ୱିଜଟି ଦଣ୍ଡଧାରୀ ।
ନ ପାଳୁଥିବା ରାଜା ନ ବର୍ଷିବା ଘନ
ସେପରି ଅଟନ୍ତି ପାଣ୍ଡବ ରାଜନ ।
ଯୁଧିଷ୍ଠି ବୋଇଲେ କର୍ତ୍ତବ୍ୟ ଋତ୍ୱିକର
କି କି ତା କହ ମୋତେ ଭୀଷ୍ମ ବଳୀବର ।
ସ୍ୱଭାବ ଗୁଣ ପୁଣି କପରି ଉଚିତ
ହେବାର ତାହା ମୋତେ କହ ତପୋବନ୍ତ ।
ଭୀଷ୍ମ ବୋଇଲେ ବେଦ ଶ୍ରୁତିଜ୍ଞ ଋତ୍ୱିକ
କର୍ତ୍ତବ୍ୟତା କରିବା ରାଜାଙ୍କୁ ପୌଷ୍ଟିକ ।
ସ୍ୱଭାବ ତାଙ୍କ ଯାରେ ପ୍ରୀତିମନ୍ତ ହେବେ
ସ୍ନେହୀ ହୋଇ ପ୍ରିୟବାକ୍ୟ ସର୍ବେ କହିବେ ।
ଦୟାଳୁ ସତ୍ୟବାଦୀ ସରଳ ଧୀମାନ
ଦାନ୍ତ ହେବା ତାଙ୍କର ଗୁଣ ହେ ରାଜନ ।

ଯୁଧିଷ୍ଠି ବୋଇଲେ ସେ ଲେଖୁଅଛୁ ବେଦ
ଦେବ ଦ୍ୱିଜକରେ ଧନ ହୋଇ ପ୍ରମୋଦ ।
ନ ଥିବ ଧନ ଯେମାନଙ୍କଠାରେ ରହି
ତାଙ୍କଠାରେ ଏହା ତ ସମ୍ଭବବ ନାହିଁ ।
କହ ସେମାନଙ୍କର କି ରୂପରେ ଗତି
ହୋଇବ ହେ ଗଙ୍ଗାନନ୍ଦନ ମହାମତି ।
ଭୀଷ୍ମ ବୋଇଲେ କର୍ତ୍ତବ୍ୟର ଅନୁରୂପ
ଦେବାଲୋକ ନ ପାଏ ପରଲୋକ ତାପ ।
ଉପାସେ ମଲେ ନ ମିଳଇ ତପ ଫଳ
ଧର୍ମରେ ଯେ ଥାଏ ସେ ଲଭଇ ସକଳ ।
ଧର୍ମର ଏ ନିର୍ଯ୍ୟାସ କହିଲି ତୁମ୍ଭଙ୍କୁ
ଏ ବିଷୟରେ ଆଉ ନ ପୁଚ୍ଛ ଆମ୍ଭଙ୍କୁ ।
ଯୁଧିଷ୍ଠିର ବୋଇଲେ ଅସହାୟ ହୋଇ
କର୍ମ କରଣେ ତ ଲୋକର ଶକ୍ୟ ନାହିଁ ।
ଏକାହୋଇ କି ରୂପେ ରାଜ୍ୟର ପାଳନା
କରିବ ରାଜା ମୋତେ କହ ମହାମନା ।
କେଉଁ ଲୋକମାନଙ୍କୁ କରିବ ବିଶ୍ୱାସ
କରିବ କେଉଁ ଲୋକେ ମନ୍ତ୍ରୀ ନରଈଶ ।
ଏହା ତୁମ୍ଭଙ୍କୁ ଯା ପୁଚ୍ଛୁଛୁ ପୁନଃ ପୁନଃ
ନ ଜାଣିବାରୁ ମୁହିଁ ବୋଲି ମନେ ଘେନ ।
ଭୀଷ୍ମ ବୋଇଲେ ଚତୁର୍ବିଧ ମନ୍ତ୍ରୀ ଜାଣ
ସହାର୍ଥ ଭଜମାନ ସହଜ କୃତ୍ରିମ ।
ଏକା ଉଦ୍ଦେଶ୍ୟେ କାର୍ଯ୍ୟ କରନ୍ତି ଯେ ଦୁଇ
ସହାର୍ଥ ମନ୍ତ୍ରୀ ବା ମିତ୍ର ତାହାକୁ କହି ।
ଥାନ୍ତି ଯେ ରହି ପିତୃ ପିତାମହ କ୍ରମେ
ଆଖ୍ୟାତ ହୁଅନ୍ତି ସେ ଭଜମାନ ନାମେ ।
ମାତୃସ୍ୱସ୍ରୀୟମାନେ ଅଟନ୍ତି ସହଜ
କୃତ୍ରିମ ଅଟେ ଧନଗ୍ରାହୀ ମହାରାଜ ।
ଧାର୍ମିକ ନିରପେକ୍ଷ ନ୍ୟାୟ ପରାୟଣ
ବେତନ ଭୋଗୀ ଯେହୁ ନିଷ୍କପଟ ଜାଣ ।
ରାଜାର ପଞ୍ଚମ ମିତ୍ର ଜାଣ ସେ ରାଜ୍ୟେ
ତା ଯେଣ ବହୁ ଶୁଭ ରାଜାଙ୍କଠି ହୁଏ ।
ଭଜମାନ ଆଉ ସହଜ ଶ୍ରେଷ୍ଠ ମିତ୍ର
ସହାର୍ଥ କୃତ୍ରିମେ ଶଙ୍କା ରଖିବ ନିତ୍ୟ ।
ମିତ୍ର-ରକ୍ଷଣେ ନରପତି ସାବଧାନ
ହୋଇବ ଯୁଧିଷ୍ଠିର ନୃପ ପ୍ରତିଦିନ ।

ଅସାଧୁ କେତେବେଳେ ହେଉଅଛି ସାଧୁ
ଅବନ୍ଧୁ କେତେବେଳେ ହେଉଅଛି ବନ୍ଧୁ ।
ମିତ୍ର କେତେବେଳେ ହେଉଛି ଅମିତ୍ର
ଏଥିକି ଜାଗରୁକ ହେବ ନୃପପୁତ୍ର ।
କାହାକୁ ଅଧିକେ ବିଶ୍ୱାସ ଅବିଶ୍ୱାସ
ନ କରିବ, କଲେ ଯେ ଧର୍ମ ଅର୍ଥ ନାଶ ।
ବ୍ୟକ୍ତି ବିଶେଷ ପ୍ରତି ସାବଧାନ ହୋଇ
ବିଶ୍ୱାସ ଅବିଶ୍ୱାସ କରିବା ଯୋଗାଇ ।
ଯାହାର ଉପରୁ ଯେ ରାଜ୍ୟଙ୍କୁ ପାଳିବ
ତା ଠାରେ ବଡ଼କରି ଶଙ୍କା ରଖିଥିବ ।
ଏକ କାର୍ଯ୍ୟେ ଦୁଇ ତିନ ମାଲିକ ହେଲେ
ସେ କାର୍ଯ୍ୟ ନାଶଯାଏ ବିରୋଧ ଘଟିଲେ ।
ସତ୍ୟବନ୍ତ କୁଳୀନ ଶୂର ହୋଇଥିବ
କାମ ଲୋଭ ମୋହରେ ଧର୍ମ ନ ଛାଡ଼ିବ ।
ଅବିକତ୍ଥନ ଦକ୍ଷ କୀର୍ତ୍ତିବନ୍ତ ହେବ
ସମର୍ଥ ଅସମର୍ଥ ଲୋକକୁ ଜାଣିବ ।
ଏମନ୍ତ ଲୋକକୁ ଭାବିଲେ ନୃପ ଘେନ
କେବେ ନୋହେ ଜଣଟି ବିପତ୍ତିର ସ୍ୱାମୀ ।
ଜ୍ଞାତି ନିକଟେ ମୃତ୍ୟୁ ହେବ ତା ପର୍ଯ୍ୟେ
ବୃଦ୍ଧି କରିଥିବ ଯେ ହେବ ନରବର୍ଯ୍ୟେ ।
ଜ୍ଞାତିଏ ନୃପତିରେ ଦେଖିଲେ ସମ୍ପତ୍ତି
କି କରି ଏହା ନେଇ ଖାଇବା ବୋଲନ୍ତି ।
ଯେଉଁ ଜ୍ଞାତି ଋଜୁ ମୃଦୁ ବା ହୋଇଥିବ
ସତ୍ୟ ବିନା ଅସତ୍ୟ କଥା ନ କହିବ ।
ତାହାକୁ ରାଜା ଆଣି ରଖିଥିଲେ ପାଶେ
କାର୍ଯ୍ୟ ପଡ଼ିଲେ ମାରି ମରେ ବିଦେଶେ ।
ଜ୍ଞାତିଙ୍କର କେବେହେଁ ନ ପାଞ୍ଚିବ ମୃତ୍ୟୁ
ଜ୍ଞାନ-ହୀନ ଲୋକହିଁ ପାଞ୍ଚନ୍ତି ମୃତ୍ୟୁ ।
ଜ୍ଞାତି ସକାଶୁ ଜାଣ ଭଲମନ୍ଦ ଦୁଇ
ସବୁବେଳେ ଲଗିଛି ଆହେ ନୃପସାଇଁ ।
ଜ୍ଞାତିଠାରେ ବେଳ ଜାଣିଣ ସମ୍ଭାବନା
ଅସମ୍ଭାବନା କରୁଥିବ ମହାମନା ।
ଯୁଧିଷ୍ଠିର ବୋଇଲେ ଜ୍ଞାତିଙ୍କର ମତ
କି ରୂପରେ ରାଜାଙ୍କୁ ହୋଇବ ବିଦିତ ।
ରାଜା କେଉଣ ରୂପେ ତାହାଙ୍କୁ ପାଳିବ
ଏହା ମୋତେ କହତ ଭୀଷ୍ମ ରଥିଦେବ ।

ଭୀଷ୍ମ ବୋଇଲେ ହେ ନାରଦ ବାସୁଦେବ
ସମ୍ବାଦକୁ ଶୁଣ ସୁଜ୍ଞାନ ଉପୁଜିବ ।
ନାରଦ ଦେବେ ବଦନେ କହିଲେ ଗୋବିନ୍ଦ
କରୁଛି ମୁହିଁ ନିତ ଯଦୁଙ୍କୁ ଆନନ୍ଦ ।
ସେ ଯାହା ମାଗୁଛନ୍ତି ଦେଉଅଛି ତାହା
ଅବଳ ହେଲେ ତାଙ୍କୁ ହେଉଅଛି ସାହା ।
ମୋତେ ଯେଉଁ ଦୁଷ୍ଟବଚନ ସେ ବୋଲନ୍ତି
ହୃଦେ କ୍ରୋଧ ହେଲେ କରାଉଥାଏ ଶାନ୍ତି ।
ବଳଦେବ ଯେ ବଳୀପ୍ରବର ତ ହୋଇଲେ
ପ୍ରଦ୍ୟୁମ୍ନ ସୁନ୍ଦର ବୋଲି ଗର୍ବୀ ହେଲେ ।
ଅନ୍ଧକ ବୃଷ୍ଣି ଯଦୁଏ ତ ବଳୀପ୍ରବର
କାହିଁକି ଏ କାହାକୁ କରିବେ ନଜର ।
ଏହି ସକାଶରୁ ପୁଚ୍ଛୁଅଛି ତୁମ୍ଭଙ୍କୁ
କି ଶ୍ରେୟ ହୋଇବ ତା କହ ତ ଅମ୍ଭଙ୍କୁ ।
ନାରଦ ବୋଇଲେ ଆପଣା ପର ଯେଣି
ହେଉଅଛନ୍ତି ପ୍ରାଣୀମାନେ ଦୁଃଖଗ୍ରାମୀ ।
ତୁମ୍ଭର କର୍ମେ ଏବେ ତୁମ୍ଭର ବଇରି
ହୋଇଅଛନ୍ତି ଆହେ କୃଷ୍ଣ ଉପସ୍ଥିତ ।
କଂସକୁ ମାରି ହୋଇକରି ରାଜା
ଉଗ୍ରସେନରଠାରେ ସମର୍ପିଲ ପୂଜା ।
ଉଗ୍ରସେନରାଜା ହେଲେନି ଦୃଢ଼-ବଳ
ଏବେ ତାହାଙ୍କୁ କରି ନ ପାରି ନିର୍ମୂଳ ।
ଉଚ୍ଛିଷ୍ଟ ପଦାର୍ଥକୁ ଗୋବିନ୍ଦ ଆହାର
ନ କଲା ପରି ରାଜ୍ୟ ହେଲାନି ତୁମ୍ଭର ।
ଏବେ ବୁଦ୍ଧି ବଚନେ ଯଦୁଙ୍କର ମନ
ହରଣ କର ଆହେ ଜଗତପାବନ ।
ବଳିଦ ପରି ତୁମ୍ଭେ ସବୁ ଭାର ବହି
ସ୍ଥିର ହୋଇ ରହ ରୁକ୍ମଣୀ-ପ୍ରାଣସାଇଁ ।
ଭେଦ କଲେ ଜ୍ଞାତି କୁଳ ତ ନାଶ ଯିବେ
ଏହା ଜାଣି କି ରୂପେ ତା କରିବା ହେବେ ।
ଯଦୁଏ ତ ତୁମ୍ଭ ଆଶ୍ରୟେ ଚକ୍ରଧର
ସୁଖଭୋଗ କରୁଅଛନ୍ତି ନିରନ୍ତର ।
ତ୍ରିଲୋକଯାକର ତ ଗୁରୁ ଅଟ ତୁମ୍ଭେ
କି ନ ଜାଣ ଅବା କହିବୁଁ କିସ ଆମ୍ଭେ ।
ଏହା କହି ଭୀଷ୍ମ କହିଲେ ଯୁଧିଷ୍ଠିର
ମନ୍ତ୍ରୀଙ୍କ ସକାଶରୁ ସରିଲେ ଭଣ୍ଡାର ।

ଲୋକେ ଯେବେ ରାଜାକୁ କହିବେ ତା ଆସି
ରାଜା ତାହା ଶୁଣିବ ଏକାନ୍ତରେ ବସି ।
ନ ହେଉଁ କାର୍ଯ୍ୟ ରାଜା କଲେ ତା ପ୍ରକାଶ
ଶୁଣିଲେ ମନ୍ତ୍ରୀ କରେ ସେ ଲୋକକୁ ନାଶ ।
ଏଥିପାଇଁକି ପୁନରବୃତ୍ତ ଯାହା ଅଛି
ତାହା କହିବା ଶୁଣ ପାଣ୍ଡୁରାଜା ବସି ।
କାଳକବୃକ୍ଷୀୟକ ମୁନି ଧରି କାକ
ବୁଲିଲେ କ୍ଷେମଦରଶିଙ୍କ ଦେଶଯାକ ।
ସେହି ଦେଶରେ ବୃତ୍ତିଯାକ ଯେ ଜାଣିଲେ
କାକକୁ ଧରି ପୁଣି ରାଜାଠାକୁ ଗଲେ ।
ବୋଇଲେ ଏହି କାକ ସର୍ବଜ୍ଞ ଅଟଇ
ଯା ପୁଛିବ ତାହା ପଚାରି କହିବଇଁ ।
ରାଜା ବୋଇଲେ ହେ ଆମ୍ଭର ଭଲମନ୍ଦ
କି ଜାଣିଛ ତା କହ ତପୋବୃଦ୍ଧ ।
କାଳକବୃକ୍ଷୀୟକ ବୋଲେ ନରରାଣ
କହୁଛି କୁଆ, ଧନ ନେଲେ ମନ୍ତ୍ରିଗଣ ।
ତୁମ୍ଭର ଭଣ୍ଡାରରୁ ଆହେ ନରସାଇଁ
ଜାଣିଥା ମୋ କୁଆ କଥାରେ ମିଥ୍ୟା ନାହିଁ ।
ମନ୍ତ୍ରୀମାନେ ତା ଶୁଣି ପାଇ ଉଦବେଗ
କଲେ କୁଆ ଉପରେ ଅତିଶୟ ରାଗ ।
ମୁନିଙ୍କ ଶୋଇଥିବା କାକ ଜାଣି ଗଲେ
କୁଆର ଚୋଟି ଚପି ମାରି ପକାଇଲେ ।
କୁଆର ମୃତ୍ୟୁ ଦେଖି ନୃପତିର ପାଶେ
ସେ ମୁନି ଯାଇକରି କହିଲେ ବରଷେ ।
ତୁମ୍ଭର ଯେ ହିତ କହୁଛି ରାଜା ମୁହିଁ
ମୋହଠାରୁ ତାହା ଶୁଣ ହେ ମନଦେଇ ।
ରାଜା ବୋଇଲେ କିସ କହ ମୁନିବର
ତୁମ୍ଭ କଥା ନ ଶୁଣି ଶୁଣିବୁଁ କାହାର ।
ମୁନି ବୋଇଲେ ଆହେ ରାଜ-ଉପସେବୀ
ବନ ନେଉଥାଏ ନିରତେ ଭୟ ଭାବି ।
ସାବଧାନ ଅସାବଧାନ ରାଜା ପାଶ
ଥିଲେ ଯେ ଅତିଶୟ ଜଗିବ ମନୁଷ୍ୟ ।
ରାଜାର ଇଙ୍ଗିତକୁ ଜାଣିଣ ବିଷୟ
କରୁଥିବ କେବେହେଁ ନୋହିବ ନିର୍ଭୟ ।
ରାଜାର ପ୍ରସନ୍ନେ ବଢ଼ଇ ଧନ ପ୍ରାଣ
ରାଜା ଅପ୍ରସନ୍ନରେ ଯାଏ ସବୁ ଧନ ।

ବିପତ୍ତିରେ ରାଜାକୁ ବୁଦ୍ଧି ଯେ ଶିଖାଏ
ତାହାକୁ ମନ୍ତ୍ରୀ କରି ରଖିଥିବ ରାଜ୍ୟେ ।
ତୁମ୍ଭଠାରେ ଯେତେକ ଲୋକ ବିହରନ୍ତି
ତୁମ୍ଭର ମନ୍ଦ କଥା ସର୍ବେ ସେ ଜାଣନ୍ତି ।
ତୁମ୍ଭେ ମଲେ ରାଜ୍ୟରେ ହୋଇଣ ଯେ ରାଜା
ମହାସୁଖରେ ବସି ପାଳିବେ ପରଜା ।
କାଲି ତୁମ୍ଭ ଆଗରେ ମୋ କାକ ବଚନ
କହିବାରୁ କାକକୁ ମାଇଲେ ରାଜନ ।
ତାମସଦୁର୍ଗ ଜଳଦୁର୍ଗ ଦ୍ୱୀପ ନାବ
ଆଶ୍ରା କରିଣ ତରୁଅଛନ୍ତି ମାନବ ।
ରାଜଦୁର୍ଗ ତାରଣ ପାଇଁ ନୃପବରି
ପଣ୍ଡିତଙ୍କ ମତରେ ଆଶ୍ରା ନାହିଁ କରୁ ।
ଜାଣିବାର ଯେଉଁ ଜନଟି ହୋଇଥିବ
ଲବେ ସେ ରାଜା ସମୀପରେ ନ ବସିବ ।
ତୁମ୍ଭ ଭଲ ହେଲେହେଁ ତୁମ୍ଭର ସମୀପ—
ଲୋକଯାକଙ୍କ ବୁଦ୍ଧି ଅଟେ ମହାପାପ ।
ଲତା ଯେ ବୃକ୍ଷ ଆଶ୍ରା କରିଣ ବଢ଼ଇ
ପ୍ରାନ୍ତେ ତାକୁ ଆବୃତ କରି ସେ ରହଇ ।
ସେହିରୂପେ ରାଜନ ତୁମ୍ଭ ମନ୍ତ୍ରୀକୁଳ
ତୁମ୍ଭଙ୍କୁ ପାଇକରି ହୋଇଲେ ପ୍ରବଳ ।
ଶାସ୍ତ୍ରୋକ୍ତ ରାଜଗୁଣ କି କି ରହିଅଛି
ତୁମ୍ଭଠାରେ ତା ଜାଣିବାକୁ ମୁଁ ଆସିଛି ।
ଏବେ ତ ତୁମ୍ଭ ଲୋକଙ୍କର ଯେନ ଫଳ
ପାଇଲ ଯାଉଅଛି ମୁନିର କପାଳ ।
ତୁମ୍ଭର କଥା ମୋର ମନକୁ ଆସୁଛି
ତୁମ୍ଭ ପାଖଲୋକ ମୁଁ ଦେଖିଲେ ଡରୁଛି ।
ପୃଷ୍ଠଭଙ୍ଗ କୁପିତ ସର୍ପ ପରି ରାଜ୍ୟେ
ହେଉଛି ଦୁଷ୍ଟଚିତ୍ତ ଶତ୍ରୁଠାରେ ଭୟେ ।
ରାଜା ବୋଇଲେ ହେ ବ୍ୟଥାକୁ ଛାଡ଼ିଦେଇ ।
ରହ ମୁନି ମୁହିଁ ରଖିବି ସ୍ନେହ ବହି ।
ତୁମ୍ଭଠାରେ ବିରୋଧୀଛନ୍ତି ଯେତେ ଜନ
ତାହାଙ୍କୁ ବାସ ନ ଦେବି ମୋ ସନ୍ନିଧାନ ।
ମୁନି ବୋଇଲେ ହେ ରହିବି ତୁମ୍ଭ ପାଶେ
ନ ବୁଡ଼ ମହୀପତି ତୁମ୍ଭେ କ୍ରୋଧ-ରସେ ।
କହୁଛି ଜଣେ ଜଣେ କରିଣ ଫିଟାଅ
ପଛେ ତାହାଙ୍କୁ ଯମପୁରକୁ ପଠାଅ ।

ବ୍ରାହ୍ମଣକୁଳେ ଆମ୍ଭେ ଜନମ ହୋଇଛୁଁ
ଏ ଯେନ ଜୀବହତ୍ୟା ଦୋଷକୁ ଡରୁଛୁ ।
ପୂର୍ବେ ଥିଲ ସଖା ମୁଁ ତୁମ୍ଭ ବାପାଙ୍କର
ବିପନ୍ନ ଦେଖି ରାଜ୍ୟ କଲି ଉପକାର ।
ମନ୍ତ୍ରିଙ୍କ ରାଜ୍ୟ ଦେଇ ଅସତର୍କ ହୋଇ
ରହିଛ ଯା ତୁମ୍ଭର ଉଚିତ ନୁହଇ ।
ହେ ନୃପ ଯୁଧିଷ୍ଠିର କ୍ଷମଦର୍ଶୀ ରାଜା
ମୁନିଙ୍କର କଥାଟି ରଖି କରି ମଜା ।
ମୁନିଙ୍କର କହିବା ପ୍ରାୟେ ମହୀ ପାଳି
ଭୋଗ କରିଲେ ହୋଇ ଅତି ବଳଶାଳୀ ।
ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ସଭାସଦ ସହାୟ ମନ୍ତ୍ରୀ କିଏ କହ ।
ଭୀଷ୍ମ ବୋଇଲେ ଯେ ସତ୍ୟରେ କଥା କହେ
ସଭାରେ ରଖିଥିବ ନୃପ ତାକୁ ସ୍ନେହେ ।
ଏ ବାହାରେ କହି ପୃଚ୍ଛି ଯେ ବା ପାରିବ
ଧର୍ମ ବିନା ଅଧର୍ମ କଥା ଛାଡ଼ିଥିବ ।
ହୋଇଣଥିବ ଲଜ୍ଜାଶୀଳ ଜିତେନ୍ଦ୍ରିୟ
ସରଳ ହୋଇ ଜାଣିଥିବ ପ୍ରିୟାପ୍ରିୟ ।
ତାହାକୁ ସଭାମଧ୍ୟେ ବସାଇଲେ ନେଇ
ନରପତି ମଙ୍ଗଳ ସର୍ବଦା ବଢ଼ଇ ।
ବ୍ରାହ୍ମଣ ହୋଇ ଶୌର୍ଯ୍ୟଶାଳୀ ହୋଇଥିବ
ଅତିଶୟ ଶୁଣିବା ଶକ୍ତି ପାଇଥିବ ।
ସୁସନ୍ତୁଷ୍ଟ ସକଳ କାର୍ଯ୍ୟେ ମହୋତ୍ସାହ
ସେ ଲୋକକୁ ଆପଦେ କରିବ ସହାୟ ।
କୁଳୀନ ସାଧୁ ଇଙ୍ଗିତଜ୍ଞ ଅନସୂର
ଦେଶ-କାଳ-ବିଧାନ-ଜ୍ଞାତ ତତପର ।
ଧର୍ମଜ୍ଞାତା ସୁବୁଦ୍ଧି ଥିବା ଲୋକ ମନ୍ତ୍ରୀ
ହୋଇଲେ ମହୀପତି ନ ପାଏ ବିପତ୍ତି ।
ଦୁଷ୍ଟକୁଳୀନ ଯେ ଲୁବ୍ଧ ନିର୍ଲଜ ନାସ୍ତିକ
ରହିଥାନ୍ତି ନୃପତି ପାଶେ ହେବାଯାକ ।
ବିଦ୍ୟାବନ୍ତ କୁଳୀନ ଲୋକ ମହୀପତି
ଅନ୍ନ ଖାଇଥିଲେ ତା ଶୁଝାଇ ଦିଅନ୍ତି ।
ସମୁଦାୟ ଲୋଡ଼ି ଜଣକୁ ପରୀକ୍ଷ
ନ କରିବ ଯେ ହେବ ନରକୁଳ ଈଶ ।
ଜଣକ ଯେବେ ହେବ କୁଳୀନ ସୁବୁଦ୍ଧି
ତେବେ ସମୁଦାୟରେ କରିବ ପ୍ରସିଦ୍ଧି ।

ଯେଉଁମାନେ ପ୍ର ରୁଷ-ଅନୁତ୍ତମ ହୋଇ
ଅଛନ୍ତି ତାଙ୍କୁ ନ ଛାଡ଼ିବ ନରସାଇଁ ।
ତପ ଥିବା ଲୋକେ ବିଚାର ନ କହିବ
କହିଲେ ତହିଁ ପରମାଦ ଉପୁଜଇ ।
ଶତ୍ରୁ ସେବି ଅବିଦ୍ୟାବନ୍ତ ଲୋକ କଥା
ଶୁଣିଲେ ନୃପତି ଅବଶ୍ୟ ଲଭେ ବ୍ୟଥା ।
ସବୁ ଲୋକଯାକର ସ୍ନେହକାରୀ ନର
ଯେ ହେବ ତାର ଆଗେ କହିବ ବିଚାର ।
ବିଚାର ଥିଲେ ରାଜା ରାଜ୍ୟ ବଢ଼ୁଥାଏ
ଅବିଚାର ହେଲେ ନିକଟେ କ୍ଷୟ ଯାଏ ।
ନପୁଂସକ ବାମନ କୁବୁଜ ବଧିର
ଅନ୍ଧ ଛୋଟା ସଙ୍ଗରୁ ଛାଡ଼ିବ ବିଚାର ।
ଯେଉଁଠାରେ ବସିଲେ ନ ଜାଣିବେ କେହି
ସେଠାରେ ବିଚାର କରିବ ନରସାଇଁ ।
ଇନ୍ଦ୍ର ଦିନେ ବୃହସ୍ପତିଙ୍କି ପଚାରିଲେ
ରାଜା କୀର୍ତ୍ତି ପାଏ କେଉଁ କଥା କଲେ ।
ବୃହସ୍ପତି ବୋଇଲେ ଲୋକଙ୍କର ପ୍ରୀତି
କରିଲେ ନରପତି ଲଭଇ କୀର୍ତ୍ତି ।
କ୍ରୋଧୀ ରାଜା ହୋଇଲେ ଜଗତ ବଇରୀ
ହୋଇଣ ଅଳପକେ ନାଶ କରେ ଶିରୀ ।
ହସି କରି ବଚନ କହିବ ଦୋଷ ବୁଝି
କ୍ରୋଧ ହେଲେ ତାକୁ ରହନ୍ତି ଲୋକେ ବୁଝି ।
ବଚନେ ନ ବୁଝାଇ ନୃପ ଦେଲେ ଧନ
ଦୁଃଖ କରୁଣଥାନ୍ତି ତେବେ ହେଲେ ଜନ ।
ତୁମ୍ଭେ ହେ ଏବେ ଏହିରୂପେ ଆଚରଣ
କରି କୀର୍ତ୍ତି ପାଅ ହେଲେ ତ ନାରାୟଣ ।
ଯୁଧିଷ୍ଠିର ବୋଇଲେ ପ୍ରକାର ପାଳନା
କି ରୂପରେ କଲେ ହେ ଭୀଷ୍ମ ମହାମନା ।
ପ୍ରୀତି ସ୍ୱର୍ଗ କୀର୍ତ୍ତି ଲୋକରେ ଅରଜଇ
ନୃପତି, ମୋତେ ତାହା କହ ତ ବତାଇ ।
ଭୀଷ୍ମ ବୋଇଲେ ଆହେ ବିଶୁଦ୍ଧ ବେଭାର
ନୃପତି କଲେ ସ୍ୱର୍ଗ କୀର୍ତ୍ତି ହୋଏ ତାର ।
ଯୁଧିଷ୍ଠ ବୋଇଲେ କା ତୁଲେ କି ବେଭାର
କରିବ କହ ମୋତେ ଗଙ୍ଗାଙ୍କ କୁମର ।
ଯେତେକ ଗୁଣଯାକ କହିଛ ଆପଣ
ସେ ରୂପେ କେଉଁଠି ନ ଥିବେ ନରଗଣ ।

ଭୀଷ୍ମ ବୋଇଲେ ହେ ରାଜନ ଯୁଧିଷ୍ଠିର
ପାଉଅଛୁ ମନକୁ କହିବା ଉତ୍ତର ।
ଏହି ମହୀରେ ସବୁ ଗୁଣଯାକ ବହି
ନର ତ ଥିବା ପରି ମୋତେ ଦିଶୁନାହିଁ ।
ତଥାପି ଯେ ପ୍ରକାରେ ଅମାତ୍ୟ କରିବ
ତା ତୁମ୍ଭଙ୍କୁ କହୁଛୁ ଶୁଣ ନରଦେବ ।
ଗୃହବନ୍ତ ଦେବଜ୍ଞ ଦ୍ୱିଜ ଚାରିଜଣ
ବଳବାନ କ୍ଷତ୍ରିୟ ଆଠ ଧନବାନ ।
ବୈଶ୍ୟ ଏକୋଇଶ, ଯେ ଶୂଦ୍ର ତିନି ସୁତ
ଏକଜଣ ଏହାକୁ କରିବ ଅମାତ୍ୟ ।
ଅବା ଚାରି ବ୍ରାହ୍ମଣ ତିନି ଶୂଦ୍ର ଏକ
ସୂତ, ଏ ଅଷ୍ଟମନ୍ତ୍ରୀ ଜାଣ ନରଶିଖ ।
ଏହାଙ୍କୁ ଘେନି ରାଜା ସୁବିଚାର କଲେ
ଗୁଣ ହୋଇବଟି କି ଜାଣିବେ ବା ଦୋଷ ହେଲେ ।
ଯେଉଁ କଥାରେଟି ହୋଇବ କାର୍ଯ୍ୟବୋଧ
ତାହା ଛାଡ଼ିଦେବ ହୃଦୟେ କରି ବୋଧ ।
ଅଧର୍ମରେ ଯେଉଁ ନୃପତି ପ୍ରଜା ପାଳେ
ନରକେ ପଡ଼ଇ ସେ ମରି ଅନ୍ତକାଳେ ।
ଅନାଥ ଅସାକ୍ଷୀକ ଲୋକ କଥାଯାକ
ଭଲକରି ବୁଝିବ ଅବନୀ-ନାୟକ ।
ସାକ୍ଷୀଏ ପଞ୍ଚ ଧରି ଅବଶ୍ୟ କହନ୍ତି
ତହିଁକି ଜାଗରୁକ ଥିବ ନରପତି ।
ଅପରାଧକୁ ଅନୁରୂପ ଦେବ ଦଣ୍ଡ
ବର୍ଜନ ଦେଇ କରି ଉପରୋଧ ଖଣ୍ଡ ।
ସମ୍ପନ୍ନ ଲୋକଠାରୁ ଆଣିବଟି ଧନ
ଅସମ୍ପନ୍ନ ଲୋକକୁ କରିବ ବନ୍ଧନ ।
ଦୁର୍ବୃତ୍ତକୁ ଶାଙ୍କୋଳି ଦେଇ ରଖିଥିବ
ତହିଁ ବନ୍ଦି ପଡ଼ିଲେ ମାଡ଼ ମରାଇବ ।
ଶିଷ୍ଟଲୋକ ଦୋଷ କରିଲେ ଭଙ୍ଗୀବାଣୀ
କହିବାର ଯେ ଦଣ୍ଡ ଦେବ ନରମଣି ।
ରାଜବଧ ବିଚାରିଥିବ ଯେଉଁ ନର
ତା ଜୀବନ ନେବାର ଧର୍ମର ବେଭାର ।
ତସ୍କର ଶଙ୍କଟ କାରକ ଗୃହଦାହୀ
ଏମାନଙ୍କୁ ନିଧନ କରିବ ନରସାଇଁ ।
ଏ ରୂପେ ଯେଉଁ ରାଜା ବୁଝୁଅଛି ମହୀ
ଅଧର୍ମ ତାହାଠାରେ ସମ୍ଭବଇ ନାହିଁ ।

କା'କୁ ନ ପରଖିଣ ମନକୁ ଦେଲେ ଦଣ୍ଡ
ସେ ରାଜା ମଲେ ଯାଇ ପାଏ ଯମଦଣ୍ଡ ।
ଦୂତକୁ ରାଜା କେବେ ନ କରିବ ବଧ
ସବୁ ସ୍ଥାନରେ ଦୂତ ଅଟଇ ଅବଧ ।
ଦୂତକୁ ମାରିବାର ନୃପ ମନ୍ତ୍ରୀ ଯେବେ
ନିକଟେ ହୋଇଯାଏ ନିଶ୍ଚେ ନର୍କଗାମୀ ।
ଦକ୍ଷ ପ୍ରିୟମ୍ବଦ କୁଳୀନ କୁଳବାନ
ଯଥୋକ୍ତବାଦୀ ସ୍ମୃତିମାନ ବାଗ୍ମୀଜନ ।
ତାହାକୁଟିହିଁ ଦୂତ କାର୍ଯ୍ୟେ ରଖିଥିବ
ଏହା ବାହାରେ ମଧ୍ୟ ଦୁଆରି କରିବ ।
ଏତେ ଗୁଣ ଥାଇ ସହିବ ଦୁଃଖ ସୁଖ
ଦୁର୍ବଳକାଳ ହେଲେ ନୋହିବ ବିମୁଖ ।
ପରର ଛିଦ୍ର ଅନ୍ୱେଷଣ କରୁଥିବ
ଏମନ୍ତ ଲୋକେ ସେନାପତି କରିବ ।
ରାଜା ସବୁ ଲୋକର ହୋଇବ ବିଶ୍ୱାସ
ଭଜନ ନ କରିବ କାହାକୁ ବିଶ୍ୱାସ ।
ରାଜା ଅବିଶ୍ୱାସ କରିବା ଯେହ୍ନେ କେହି
ନ ଜାଣିବେ ତାହାଙ୍କ ଥିବ ଜଗି ରହି ।
ଯୁଧିଷ୍ଠିର ବୋଇଲେ କିପରି ପୁରେ ଘର
କରି ରାଜା ରହିବ କହ ନରବର ।
ଭୀଷ୍ମ ବୋଇଲେ ହେ ରହିବ ରାଜା ଯହିଁ
ଛଅପ୍ରକାର ଦୁର୍ଗ କରିଥିବ ତହିଁ ।
ମରୁଭୂଦୁର୍ଗ ଗିରିଦୁର୍ଗ ବନଦୁର୍ଗ
ମହୀଦୁର୍ଗ ମୃତ୍ତିକାଦୁର୍ଗ ନରଦୁର୍ଗ ।
କରିଥିଲେ ରାଜା ଆପଣା ଘରକୁ
ରକ୍ଷା ପାଏ ଶତ୍ରୁ ଆସିଲେ ମାରିବାକୁ ।
ଧନ ଶାସ୍ତ୍ର ଧାନ୍ୟ ଅନେକ ରଖିଥିବ
ଚତୁରଙ୍ଗ ସୈନ୍ୟରେ ପୁର ପୂରାଇବ ।
କାଠ ଲୌହ ଅଙ୍ଗାର ତୁଷ ଶୁଷ୍କମତ୍ସ୍ୟ
ସର୍ବ୍ବରସ ଛଣି ରଖିବ ନୃପବତ୍ସ ।
ବଂଶ ଅସ୍ଥି ମଜ୍ଜା ନାନାବିଧ ଔଷଧ
ଚର୍ମ ବେତ ଧାନ୍ୟ ଶର ଆଦି ଆୟୁଧ ।
ପୋଖରୀ କୂପ ତଡ଼ାଗ ଭିତରେ ଯତନ
କରିଣ ରଖିଥିବ ପୂରାଇ ଜୀବନ ।
ଋତ୍ୱିକ ପୁରୋଧା ବଡ଼ାଇଶ୍ରେଣି ଆଣି
ପୁରରେ ରଖିଥିବ ନରକୁଳମଣି ।

ସୂତ ପଠାଇ ନିତି ବୁଝୁଥିବ କଥା
ହେଲେହେଁ ଆପଣେ ରଥୀରେ ମହାରଥା ।
ସ୍ୱଜନ ପାଳି ପରଜନକୁ ନିଗ୍ରହ
କରିବା କଥାଟିରେ କରିଥିବ ସ୍ନେହ ।
ଯାଗ କରି ଦ୍ୱିଜଜନଙ୍କୁ ଦେଉଥିବ
ଅବ୍ରାହ୍ମଣ ବୃତ୍ତି ବ୍ରାହ୍ମଣକୁ ନ ଦେବ ।
ହୀନ ଅନ୍ଧ ବିଧବା ପୋଷିବାରେ ଯତ୍ନ
କରୁଥିବ ଯେ ହେବ ନରକୁଳ ରତ୍ନ ।
ଋଷିର ଆଶ୍ରମକୁ ହେ ଦେବ ଲୁଗା ଘୃତ
କହୁଥିଲି କଥା ହୋଇଣ ସୁସଂଯତ ।
ତପସ୍ୱୀ ଲୋକ ଯେବେ ଆସିବ ରାଜାଙ୍କୁ
ରାଜ୍ୟ ଭୁଲେ ସମର୍ପି ଦେବଟି ପ୍ରାଣକୁ ।
ତାପସଙ୍କ ନିକଟେ ନୃପତି ବିଶ୍ୱାସ
କଲେ ତାର ଧରମ ବଢ଼ଇ ବିଶେଷ ।
ଯୁଧିଷ୍ଠିର ବୋଇଲେ ରାଜ୍ୟର ଲକ୍ଷଣ
ସଂଗ୍ରହ କହ ମୋତେ ରଥୀକୁଳରାଣ ।
ଭୀଷ୍ମ ବୋଇଲେ ସେହି କଥା ଯେ ତୁମ୍ଭଙ୍କୁ
କହିବା ଯେବେ ପୁଚ୍ଛୁଅଛ ହେ ଆମ୍ଭଙ୍କୁ ।
ପ୍ରତି ଗ୍ରାମରେ ଏକ ଏକ ଅଧିପତି
ରଖି ପରେ ଏମନ୍ତ କରିବ ନୃପତି ।
ଗ୍ରାମ ଦେଶ କୋଡ଼ିଏ ଶତ ସହସ୍ରରେ
ଅଧିପତି କରିବ ଗୋଟିଏ ଲେଖାଁରେ ।
ଏ ଗ୍ରାମାଧିପମାନେ ସାନ ବଡ଼ କ୍ରମ
ମାନ ରହିବେ ଦୋଷ ଗୁଣ ନିରେଖିମ ।
ସହସ୍ର ଗ୍ରାମାଧିପ କହିବ ରାଜାଙ୍କୁ
ରାଜା ତାହା ବୁଝିବେ କରିଣ ସଭାକୁ ।
ଏଥିରୁ ଆନଲୋକ କହିଲେ ନୃପତି
ଦଣ୍ଡ ଦେଲେ ଲୋକ ତହିଁକି ନ ନିନ୍ଦନ୍ତି ।
ପାପକାମୀ ଲୋକ ହିଂସାରୁ ପ୍ରଜାଜନ
ମାନଙ୍କୁ ରଖିଥିବ ନୃପ ଅବିଚ୍ଛିନ୍ନ ।
ପ୍ରଜାମାନଙ୍କ କାଳେ ବୃତ୍ତି ଆୟୁ ବୁଝି
ଆଣିବ କର ରାଜା ଲୋଭରେ ନ ମଜ୍ଜି ।
ବିପତ୍ତିରେ ପ୍ରଜାଙ୍କୁ ଡକାଇ ଆଣିବ
ତାହାଙ୍କ ମନ ନେଇ ଧନକୁ ଘେନିବ ।
ଯୁଧିଷ୍ଠିର ବୋଇଲେ ନୃପତି ଭଣ୍ଡାର
ବୃଦ୍ଧି ଇଚ୍ଛା କଲେ କି କରିବ ବିସ୍ତର ।

ଭୀଷ୍ମ ବୋଇଲେ ତହୁଁ ଦେଶ କାଳ ବଳ
ଅନୁରୂପ ବଚନ କହ ମହୀପାଳ ।
ଲୋଭ କରି ନର ନ ନେବ ସମଧିକ
ତା ନେବ ଯାହା ଦେଇ ବୋଧ ହେବ ଲୋକ
ଏ ବାହାରେ ଧନୀମାନଙ୍କୁ ବୋଧି କରି
ପ୍ରଜାଙ୍କୁ ଋଣ ଦିଆଇବ ଦଣ୍ଡଧାରୀ ।
ପ୍ରାଜ୍ଞ ଶୂର ସରଳ ଲୋକ ପାଖେ ରଖି
ଥିଲେ ରାଜା କେବେହେଁ ନୁହଇଟି ଦୁଃଖୀ ।
ସତ୍ୟ ଅରଜବ ହେ ଅନୃଶଂସ ଗୁଣ
ପାଳନା କରିବ ଯେ ହେବ ନରରାଣ ।
ଶତ୍ରୁ ମାରି ପର ମହୀକି ବଳେ ଜିଣି
ଯାଗ କରି ଦ୍ୱିଜଙ୍କୁ ଦେବ ଧନଶ୍ରେଣୀ ।
ଅନ୍ତରଙ୍ଗ ବହିରଙ୍ଗଙ୍କୁ ରକ୍ଷା କରି
ଆତ୍ମାକୁ ରଖିବ ଯେ ହେବ ଦଣ୍ଡଧାରୀ ।
ଉତଥ୍ୟ କହିଛନ୍ତି ମାନ୍ଧାତା ରାଜାଙ୍କୁ
ଅଙ୍ଗିରା କଥା ଯା କହିବା ତା ତୁମ୍ଭଙ୍କୁ ।
ଧର୍ମପାଇଁ ରାଜା ଲୋକରେ ହୋଇଥାଏ
ଏହି ସକାଶରୁ ସେ ଧର୍ମ ଉପୁଜାଏ ।
ଧାର୍ମିକ ରାଜା ହେଲେ ହୋଏ ଦେବ ସରି
ଅଧାର୍ମିକ ହେଲେ ନରକେ ପଡ଼େ ମରି ।
ପ୍ରାଣୀମାନେ ଧର୍ମରେ ରହିଛନ୍ତି ଜାଣ
ଧର୍ମ ସ୍ୱରୂପଟି ଅଟନ୍ତି ନରରାଣ ।
ଧର୍ମଆତ୍ମା ରାଜାକୁ ନାରାୟଣ ପ୍ରିୟା
ନ ଛାଡ଼ନ୍ତି ଯେଣୁ ନ ଥାଏ ତାର ମାୟା ।
ରାଜା ହେବେ ପାପୀ ଲୋକଙ୍କୁ ନ ନିବାରେ
ବେଦ ଲୋପ ହୋଏ ସେ ପଡ଼ଇ ନିନ୍ଦାରେ ।
ପାପ ବଳ ହେଲେ ଭାରିଯା ପଶୁ ଧନ
ମାନଙ୍କରୁ ଆଶା ଛାଡ଼ନ୍ତି ଛାଡ଼ି ଜନ ।
ପିତୃ ଆଦ୍ଧ ଦେବେଟି ନ ପାଆନ୍ତି ପୂଜା
ଅତିଥିମାନେ କରୁଥାନ୍ତି ଦୁଃଖ ମଜ୍ଜା ।
ପାପର ବହୁଳରୁ ବେଦ ଅଧ୍ୟୟନ
ଲୁପତ ହୋଏ ଯାଗ ନୁହଇ ଯଜନ ।
ପାପୀ ଦଣ୍ଡୀ ଧାର୍ମିକ ଲୋକଙ୍କୁ ପାଳିବ
ବୋଲି କରି କହିଛନ୍ତି ନରଦେବ ।
ଯେଉଁ ରାଜାଠାରେ ଧରମ ଥାଏ ରହି
ତାହାକୁଟି ଲୋକେ ବୋଲନ୍ତି ନରସାଇଁ ।

ଧର୍ମ ନିବାରଣ କରଇ ଯେଉଁ ରାଜା
ବୃଷଳ ବୋଲି ତାକୁ କହନ୍ତି ପରଜା ।
ଧର୍ମହୀନ ହେଲେ ପରଜାଙ୍କ କ୍ଷୟ
ହେବ ବୋଲି ଧର୍ମ ଜଗିବ ନୃପଚୟ ।
ପ୍ରଜାଙ୍କୁ ଧର୍ମେ ରଖି ମହୀ ଯେ ପାଳଇ
ସେ ରାଜାକୁ ପୁରୁଷ ବୋଲି କରି କହି ।
କାମ କ୍ରୋଧ ଛାଡ଼ିଣ ଧର୍ମକୁ ପାଳନା
ଏଣୁ କରୁଥିବ ନୃପତି ମହାମନା ।
ଧର୍ମକୁ କାରଣ ଅଟନ୍ତି ଦ୍ୱିଜଗଣ
ଏ ସକାଶୁଁ ତାଙ୍କୁ ପୂଜିବ ନରରାଣ ।
ବ୍ରାହ୍ମଣ ମନୋରଥ ନ କଲେ ରାଜାଏ
ପଡ଼ନ୍ତିଟି ଜାଣ ସେ ଯାଇ ମହାଭୟେ ।
ବ୍ରାହ୍ମଣଙ୍କୁ ବଳି ଅସୂୟା ଯେବେ କଲେ
ଅର୍ଜିଥିବା ଭୂମି ବାମନ ହରିନେଲେ ।
ଏହା ଜାଣି ଏବେ ହେ ବ୍ରାହ୍ମଣପୂଜନ
କରୁଣଥାଅ ନିତି ମାନ୍ଧାତା ରାଜନ ।
ରାଜା ପ୍ରଜା ହିତେ ପ୍ରବର୍ତ୍ତି ରହିଥିବ
ନ ପ୍ରବର୍ତ୍ତିଲେ ବିପତ୍ତି କି ସେ ଲଭିବ ।
ସ୍ୱୈରିଣୀ ପରଭାର୍ଯ୍ୟା ଅବଜ୍ଞାତ କ୍ଳୀବ
ସ୍ତ୍ରିଣ୍ଟ କନ୍ୟା ସହ ମୈଥୁନ ନ କରିବ ।
ପ୍ରମତ୍ତ ରାଜା ହେଲେ ଦୋଷ ଉପୁଜଇ
ପ୍ରଜାଗଙ୍କର କର ଅଧର୍ମ ବଢ଼ଇ ।
ରାଜା ନ ଯୁଝିଲେ ହୁଅଇ ଅନାବୃଷ୍ଟି
ବ୍ୟାଧି-ଯୁତ ହୋଇ ବିନାଶ ଯାଏ ସୃଷ୍ଟି ।
ଗ୍ରୀଷମ ଶୀତ ଦୁହେଁ ହୁଅନ୍ତି ଅକାଳେ
ଅତି ବରଷା ହୋଇଯାଏ ବେଳେ ବେଳେ ।
ଧର୍ମ ହୁଡ଼ି ରାଜା ଅସାବଧାନ ହେଲେ
ଲୁଟି ନିଅନ୍ତି ତା ଧନ ପ୍ରାଣୀଏ ଭଲେ ।
ଧରମ ଆଚରିଲେ କାଳରେ ପର୍ଜ୍ଜନ୍ୟ
ବୃଷ୍ଟି କରି ସନ୍ତୁଷ୍ଟ କରେ ସବୁଜନ ।
ଚାରିବର୍ଣ୍ଣଯାକ ହୁଅନ୍ତି ଧର୍ମେ ସ୍ଥିତ
ଯେଣୁ ରାଜାକୁଟି ପ୍ରାଣୀଏ ଅନୁଗତ ।
ରାଜା ଯେ ପ୍ରାଣୀଙ୍କର କରତା ନିହନ୍ତା
ଏ ବାହାରେ ମଧ୍ୟ ଅଟଇ ଅନ୍ନଦାତା ।
ପ୍ରମାଦଗ୍ରସ୍ତ ରାଜା ହେଲେ ଭାର୍ଯ୍ୟା ପୁଅ
ବାନ୍ଧବ ସୁହୃଦ୍‌ଗଣେ ହୋନ୍ତି ଶୋକଗ୍ରସ୍ତ ।

ରାଜା ଅଧାର୍ମିକ ହୋଇଲେ ପଶୁଜନ
ମାନେ ହୋଇଯାନ୍ତି ପାପରେ ଜାଣ ଶୀର୍ଘ୍ର ।
ଦୁର୍ବଳର ବଳ ଯେ ଅଟଇ ରାଜନ
ଦୁର୍ବଳ ପାଳିବାର ରାଜାର ବିଧାନ ।
ଦୁର୍ବଳ ଲୋକଙ୍କ ନିଃଶ୍ୱାସ ଅଟେ ବଳ
ତାହା ପଡ଼ିଲେ କୁଳ ହୁଅଇ ନିର୍ମୂଳ ।
ଦୁର୍ବଳକୁ ପ୍ରବଳ ଦଣ୍ଡୁଥିଲେ ରଜା
ନ ରଖିଲେ ଦଣ୍ଡଇ ବିଧାତା ମହୋଜା ।
ମିଥ୍ୟା ଅପବାଦ ଦୁର୍ବଳ ଜନେ ଦେବ
ବଳୀୟାର ଯେବେ, ତା ନୃପତି ବୁଝିବ ।
ଦେଶଲୋକ ଅନ୍ୟାୟ କଲେ ମହାଦୋଷ
ରାଜାଠାରେ ଯାଇଟି ହୁଅଇ ପ୍ରକାଶ ।
ଦୁଷ୍ଟକୁ ମାରି ରାଜା ସନ୍ଥକୁ ପାଳନା
କଲେ ତାଙ୍କୁ ସୁମନା ହୁଅନ୍ତି ସୁମନା ।
ପିତୃରୂପେ ଲୋକଙ୍କୁ କରି ରାଜା ରକ୍ଷା
ବଳ ମିତ ମର୍ଯ୍ୟାଦାରେ କରିବ କକ୍ଷା ।
ପୁତ୍ର ଭାରିଯା ତା କରିବେ ଯେବେ ଦୋଷ
ଉଚିତ ଦଣ୍ଡ ତାଙ୍କୁ ଦେବ ନରଈଶ ।
ଶରଣାଗତ ଲୋକେ ରାଜା ପ୍ରାଣ ଛାଡ଼ି
ରଖିବ ବୋଲି କହିଅଛି ଧର୍ମ ଛାଡ଼ି ।
ସାବଧାନ ହୋଇ ଶିଖିବ ଧର୍ମ କଥା
ହୃଦୟରୁ ଛାଡ଼ି ଦେଇଥିବଟି ବ୍ୟଥା ।
ସବୁ ସୈନ୍ୟମାନଙ୍କୁ ସଂଗ୍ରହ କରିବ
ଦାନ ଦେଇ ବଚନେ ମନକୁ ହରିବ ।
ପୁଅ ପରି ପ୍ରଜାଙ୍କୁ କରିବ ପାଳନ
ବିବିଧ ଭାବରେ ସେ ଦେଇ ବସ୍ତ୍ର ଧନ ।
ଦଣ୍ଡନୀତିକି ଯେଉଁ ନୃପତି ଜାଣଇ
ରାଜ୍ୟ ପାଳିବାରେ ସେ କଷ୍ଟ ନ ଲଭଇ ।
ଋଷିମାନଙ୍କରେ କଥିତ ଏହି ମାର୍ଗ
ହୋଇଛି ଆଚରି ମାନ୍ଧାତା ମହାଭାଗ ।
ଉତଥ୍ୟଙ୍କ କହିବା ପରି ତ ମାନ୍ଧାତା
ଆଚରି ଦେହ ଛାଡ଼ି ହୋଇଲେ ଦେବତା ।
ତୁମ୍ଭେ ଏବେ ମାନ୍ଧାତା ପ୍ରାୟେ ଧର୍ମ କର
ହୋଇଲ ତ ହସ୍ତିନା ନରଙ୍କରେ ବର ।
ଯୁଧିଷ୍ଠିର ବୋଇଲେ ଧର୍ମ ଇଚ୍ଛା କରି
କି ରୂପରେ ଧାର୍ମିକ ହେବ ଦଣ୍ଡଧାରୀ ।

ଭୀଷ୍ମ ବୋଇଲେ ଆହେ ବସୁମନା ନୃପ
ବାମଦେବ ଋଷିଙ୍କି ପୁଛିଲେ ବହୁ ତାପ ।
ଧର୍ମାର୍ଥଯୁକ୍ତ ବାକ୍ୟ କହ ବାମଦେବ
ଯା କଲେ ସ୍ୱଧର୍ମରେ ହୋଇବ ନୃଦେବ ।
ବାମଦେବ ବୋଇଲେ ଧର୍ମେ ଅବଗତ
ହୁଅ ତୁମ୍ଭେ କରିବ ରାଜତ୍ୱ ମହତ ।
ଅର୍ଥକୁ ପ୍ରତି ଧର୍ମ ବଡ଼ ଯେ ମଣଇଁ
ତାହାଠାରୁ ଧାର୍ମିକ ହୋଇ ରାଜା ନାହିଁ ।
ଅଧର୍ମଶୀଳ ହୋଇ ପ୍ରବର୍ତ୍ତିଲେ ରାଜା
ହୁଅଇ ଜାଣ ସେ ଅକୀର୍ତ୍ତି-ବାଦ୍ୟ ବଜା ।
ଧରମ ଅର୍ଥ କାମ ବୁଦ୍ଧି ମିଳେ ମୁହିଁ
ଅପୂର୍ଣ୍ଣ ଜାଣି ଯେ ତା ସଂଗ୍ରହ କରଇ ।
ସେହି ରଜାଟି ଜାଣ ଯଶ କୀର୍ତ୍ତିଶିରୀ
ତ୍ରିଜାଲଭ ଲୋକେ ହୁଅଇ ଇନ୍ଦ୍ରସରି ।
କୃପଣ ସାହସିକ ତୀକ୍ଷ୍ଣ ଦଣ୍ଡୀ ରାଜା
ହେଲେ ନିକଟରେ ଛାଡ଼ନ୍ତି ତାକୁ ପ୍ରଜା ।
ଧର୍ମରେ ବୁଦ୍ଧି ଯାର ନ ଥାଇଟି ଲେଶ
ହୋଇ ନ ପାରେ ସେହୁ କେବେ ନରଈଶ ।
ଧର୍ମରେ ଯେ ଗୁରୁର ହୁଅନ୍ତି ଅଧୀନ
ଧର୍ମକୁ ସ୍ୱହିଁ ଦେଉଥାନ୍ତି ଦଣ୍ଡମାନ ।
ତାହାକୁ କେଉଁ ରାଜଲକ୍ଷ୍ମୀ ନ ଛାଡ଼ଇ
ଜୀବନ ଥିବାଯାକ ମହୀ ସେ ଭୋଗଇ ।
ବଳୀୟାର ହୋଇ ଯେ ଆଚରେ ଅଧର୍ମ
ତାର ବଂଶନାଶ କରନ୍ତି ସେହି କର୍ମ ।
କପଟୀ ନୃପତିକି ଲୋକେ ତ ଭଜନ୍ତି
ତା ଅନୁଗାମୀ ହୋଇ ଧନକୁ ହରନ୍ତି ।
ଏ ସକାଶୁଁ ତାହାର ଅଧର୍ମ ବହୁଳ
ହୋଇ ପ୍ରାନ୍ତେ କରଇ କୁଳକୁ ନିର୍ମୂଳ ।
ପୂର୍ବ ପୁରୁଷଙ୍କୁ ସ୍ୱହିଁଶ ଯେଉଁ ଧ୍ୟେୟ
ଆଚରଣ ନ କରେ ତାର ଧର୍ମ ଯାଏ ।
କାମ ଦ୍ୱେଷ ବଶେ ଧର୍ମକୁ ନ ଛାଡ଼ିବ
କାହାକୁହିଁ ନିଷ୍ଠୁର ଉତ୍ତର ନ ଦେବ ।
ପ୍ରିୟ ହୋଇଲେ ମଧ୍ୟ ନୋହିବ ସନ୍ତୋଷ
ଅପ୍ରିୟ ହୋଇଲେ ନୋହିବ ବିରସ ।
ଗୁଣବନ୍ତ ଲୋକଙ୍କୁ ନୃପତି ସତ୍କାର
କଲେ ସୁଖ ଜାତ ଯେ କରେ ପ୍ରାଣୀଙ୍କର ।

ଅନୁରକତ ଶକ୍ତ ପ୍ରାଜ୍ଞ ଜିତେନ୍ଦ୍ରିୟ
ଯେ ହେବ ସେ କରିବ ରଜାର ବିଷୟ ।
ଅସଂଯତ ମୂଢ଼ ମଦ୍ୟପ ଦ୍ୟୂତକାର ।
ଲୁବ୍‌ଧ ହିଂସ୍ର କାମୁକ ମୃଗୟା ତତ୍ପର ।
ଲୋକକୁ ରାଜା ଯେବେ ମହତ କାର୍ଯ୍ୟରେ
ନିଯୋଗେ ତେବେ ଶ୍ରୀଭ୍ରଷ୍ଟ ହୁଅଇ ଖରେ ।
ମୁଖ୍ୟ ମନ୍ତ୍ରୀ ଅନ୍ତର କରି ଅମୁଖ୍ୟଙ୍କୁ
ମନ୍ତ୍ରୀ କଲେ ରାଜା ଲଭଇ ଦୁଃଖକୁ ।
ଗୁଣବନ୍ତ ଜ୍ଞାତି କୁଳକୁ ଅପକାର
କଲେ ନୃପ ଇଚ୍ଛାରେ ଛାଡ଼େ ତା ଦକାର ।
ଯୁଦ୍ଧ ପ୍ରତି ରାଜା ବଳରେ ମହୀ ଜିଣି
ଭୋଗ କଲେ ତାକୁ ପୂଜନ୍ତି ନରଶ୍ରେଣୀ ।
ଏ ରୂପେ ବାମଦେବ କହିବା ବଚନ
ଘେନି ବସୁମନା ତା କଲେ ପ୍ରତିଢନ ।
ଏ ସକାଶୁଁ ଇହ ପରକୁ ଜିଣି ରାଜା
ବସୁମନା ଅଛନ୍ତି ସ୍ୱର୍ଗେ ପାଇ ପୂଜା ।
କହୁଅଛୁ ମୁଁ ଏବେ ବସୁମନା ପରି
ଆଚରଣ କର ପାଣ୍ଡବ-ଦଣ୍ଡଧାରୀ ।
ଯୁଧିଷ୍ଠି ବୋଇଲେ କ୍ଷତ୍ରିୟ କ୍ଷତ୍ରିୟେ ତ
କିରୂପେ ଜିଣାଜିଣି ହୁଅନ୍ତି ଧର୍ମରେ ।
ଭୀଷ୍ମ ବୋଇଲେ ହେ ଧରମକୁ ଧରମ
କପଟକୁ କରିବ କପଟ ସଂଗ୍ରାମ ।
ରଥୀ ରଥୀ, ଅଶ୍ୱଚଢ଼ାକୁ ଅଶ୍ୱଚଢ଼ା
ଯୁଦ୍ଧ କଲେ ଜାଣ ତା ନାମ ଧର୍ମବଢ଼ା ।
ସିପାଇ ପାଇକର ହେଲେ ମରାମର
ମହା ଅଧର୍ମଟି ଅଟଇ ସିପାଇର ।
ବିଷଦିଆ କାଣ୍ଡମାନ ଧନ୍ୱୀ ଯୁଦ୍ଧରେ
ନ ମୁଞ୍ଚିବ ପରଜନକୁଟି କ୍ରୋଧରେ ।
ଧର୍ମଯୁଦ୍ଧ କରିବ, ସ୍ୱାୟମ୍ଭୁବ ମନୁ
କହିଛନ୍ତି, ହୃଦରୁ ଛାଡ଼ିଦେଇ ମନ୍ୟୁ ।
ଅଧର୍ମେ ଜିଣିଲେ ଇହରେ କୀର୍ତ୍ତି ନାହିଁ
କ୍ଷତ୍ରିୟଙ୍କ ମୁଖକୁ ନ ପାରେ ସେ ଚାହିଁ ।
ଧର୍ମଯୁଦ୍ଧ କରି ମରଇ ଯେଉଁ ନର
ସ୍ୱର୍ଗପୁରେ ତାକୁ ପୂଜନ୍ତି ପୁରନ୍ଦର ।
ଏ ଘେନି ଯେଉଁ କ୍ଷତ୍ରିୟର ଥିବ ବ୍ରୀଡ଼ା
ଯୁଦ୍ଧ ଧର୍ମଜୟ ଯେ କରୁଥିବ ଲୋଡ଼ା ।

ମୁକ୍ତକେଶ ଭୀତ ମୋହ ଯିବା ଲୋକ
ମାନଙ୍କୁ ନ ବଧିବ କ୍ଷତ୍ରିୟ ଶାୟକ ।
ଦୁଇ ସେନାଙ୍କର ହେଉଣ ଥିବ ଯୁଦ୍ଧ
ବ୍ରାହ୍ମଣ ଭଙ୍ଗାଇବାପାଇଁ ରଣମଧ୍ୟ—
ଦାଣ୍ଡରେ ଛିଡ଼ା ହେଲେ ନିବର୍ତ୍ତି ରହିବ
କଦାଚିତେ ଶର ପ୍ରୟୋଗ ନ କରିବ ।
ଦ୍ୱିଜଙ୍କୁ ଲଙ୍ଘିଲେ ମର୍ଯ୍ୟାଦା ହାନି ହୋଏ
ଏହା ଜାଣି ତାହାଙ୍କୁ ଜଗିଥିବ ରାୟେ ।
ଯେଉଁ ଦେଶ ଅତି ଧର୍ମାତ୍ମ ହୋଇଥାଏ
ଦୃଢ଼ମୂଳ ହୋଇ ସେ ଦେଶର ରାୟେ ।
ଋତ୍ୱିକ ପୁରୋହିତ ଗୁରୁ କଲେ ପୂଜା
ମହାକୀର୍ତ୍ତିମନ୍ତ ହୁଅଇ ଏକା ରାଜା ।
ନାଭାଗ ଦିବୋଦାସ ପ୍ରତର୍ଦ୍ଦନ ନୃପ
ଏହା କରି ମହୀ ଭୁଞ୍ଜିଲେ ଛାଡ଼ି ତାପ ।
ଯୁଧିଷ୍ଠିର ବୋଇଲେ କ୍ଷତ୍ରିୟ କୃତାର୍ଥ
କେଉଁ କର୍ମ କରି ହୁଅଇ ମହାରଥ ।
ଭୀଷ୍ମ ବୋଇଲେ ଆହେ ପାପୀଙ୍କ ନିଗ୍ରହ ।
ଅପାପୀମାନଙ୍କଠାରେ ଯେ ଅନୁଗ୍ରହ
କରି ରାଜା ଦାନ ଦକ୍ଷିଣା ଦ୍ୱିଜେ ଦେଇ
କୃତାର୍ଥ ହୁଅଇ ପାଣ୍ଡବ-ନରସାଇଁ ।
କ୍ଷତ୍ରିୟ ଦେହେ ଯେତେ ଅସ୍ତ୍ର ବାଜିଥାଏ
ମଲେ ତେତେ ପୁଣ୍ୟଲୋକେ ସେ ପାଏ ରାୟେ
କ୍ଷତ୍ରିୟ ସହିଥିଲେ କାଣ୍ଡର ଧମକ
ହୁଅଇଟି ସେ ପୁଣ୍ୟବନ୍ତର ନାୟକ ।
ଏହା ନ ଜାଣନ୍ତି ଯେ ତ୍ରାଣରଙ୍କମାନେ
ଯୁଦ୍ଧ ପଳାଦନ୍ତି ସେ ଅତିଭୟ-ମନେ ।
ଯୁଦ୍ଧେ ସାହା ହୋଇ ଯେ ପଳାଇ ଆସଇ
ତାହାକୁ ମରାଇଲେ କିଛି ଦୋଷ ନାହିଁ ।
କ୍ଷତ୍ରିୟ ବେଦନାରେ ଘରେ ଯେବେ ମରେ
ତେବେ ତାହାକୁ ନିନ୍ଦା କରନ୍ତି ସଂସାରେ ।
ଜାଣିବାର କ୍ଷତ୍ରିୟେ ଏହା ଜାଣି ଯୁଦ୍ଧ
କଥାଟିରେ ନିତ୍ୟ ଯେ କରୁଥାନ୍ତି ସାଧ ।
ଯୁଦ୍ଧେ ମଲେ ସ୍ୱର୍ଗେ ପୂଜନ୍ତି ସୁରରାୟେ
କହିଅଛନ୍ତି ଏହା ସକଳ ମୁନିଏ ।
ଯୁଧିଷ୍ଠି ବୋଇଲେ ମରନ୍ତି ଯେତେ ଶୂର
ଯୁଦ୍ଧରେ କେଉଁଗତି ହୁଅଇ ତାଙ୍କର ।

ଏହା ମୋର ଆଗରେ କହ ପିତାମହ
ଶୁଣିଲେ ଛାଡ଼ି ଦେବ ହୃଦରୁ ସନ୍ଦେହ ।
ଭୀଷ୍ମ ବୋଇଲେ ଆହେ ଅମ୍ବରୀଷ ନୃପ
ପୁରଜନଙ୍କଠାରେ କଢ଼ାଇ ସନ୍ତାପ ।
ସ୍ୱର୍ଗକୁ ଯିବାକାଳେ ସ୍ୱସେନାପତିଙ୍କ
ଦେଖିଲେ ଯାଉଛି ସେ ଇନ୍ଦ୍ରଙ୍କ କତିକ ।
ଅମ୍ବରୀଷ ରାଜା ଇନ୍ଦ୍ରଙ୍କପାଶେ ଗଲେ
ଆଗ ସେନାପତିର କଥା ପଚାରିଲେ ।
ଚାରିବର୍ଣ୍ଣଯାକ ମୁଁ ପାଳିଲି ଧର୍ମରେ
ପଢ଼ିଲି ବେଦ ବ୍ରହ୍ମଚର୍ଯ୍ୟ ନିୟମରେ ।
ରାଜଶାସ୍ତ୍ର ଜାଣି ଦଣ୍ଡର ବିଧିମାନ
ଲୋକଙ୍କଠାରେ ଆଚରିଲି ଦୃଢ଼ମନ ।
ପିତୃମାନଙ୍କରେ ସେ ହୋଇଲି ଅନୃଣୀ
ଦେଇଣ ତାଙ୍କୁ ଫଳ ମୂଳ ଅନ୍ନ ପାଣି ।
ଧାମରେ ଦ୍ୱିଜ ଯଜ୍ଞ କରି ଦଇବତ
କୂଳକୁ ତୋଷିଅଛି କଶ୍ୟପଙ୍କ ସୁତ ।
କୁଳରବୃତ୍ତି ଧନୁର୍ବିଦ୍ୟାକୁ ଆଚରି
ପରଜନମାନଙ୍କୁ ଦେଲି ମୁଁ ସଂହାରି ।
ମୁହିଁ ନ ଆସୁଁ ସେନାପତି ମୋ ସୁଦେବ
ତୁମ୍ଭଠାକୁ ଆସିଲା କଥା ଇନ୍ଦ୍ରଦେବ ।
ଏ ତ ଯାଗ ତପ କିଛିହିଁ କରି ନାହିଁ
ଏଡ଼େ ଗତି ହେଲା ଏହାର କାହିଁପାଇଁ ।
ଇନ୍ଦ୍ର ବୋଇଲେ ଆହେ ତୁମ୍ଭର ସୁଦେବ
ରଣଯୋଗ କରିଛି ଜାଣ ନରଦେବ ।
ଅମ୍ବରୀଷ ବୋଇଲେ ଯୁଦ୍ଧଯାଗ ବିଧି
କିରୂପରେ ହୋଇଛି ଜଗତେ ପ୍ରସିଦ୍ଧି ।
ଏହାକୁ ତୁମ୍ଭଠାରୁ ଶୁଣିବାକୁ ମନ
ହେଉଅଛି ଜାଣ ହେ ଶଚୀଙ୍କ ରମଣ ।
ଇନ୍ଦ୍ର ବୋଇଲେ ହେ ଋତ୍ୱିକ ଗଜ ଅଶ୍ୱ
ହୁଅନ୍ତି ଯୁଦ୍ଧରେ ଜାଣ ନରଈଶ ।
ଶ୍ରୁକ ସ୍ରୁଚ ତହିଁରେ ଗଦା ଶର ଶକ୍ତି
ବୋଲାଅନ୍ତି ବାହାର ହୋଇ ପନ୍ତି ପନ୍ତି ।
ଅହୁତି ହୁଅନ୍ତେ ଅତ୍ୟନ୍ତ ଧାପିତ
ରକତ ଦିଷ- ତହିଁ ପଡ଼ଇ ବହୁତ ।
ବଲୁଆ କୁକ୍କୁର ଶାଗୁଣା ସଭାସଦ
ହୋଇ ସେ ହବିଶେଷ ଖାନ୍ତି ବହି ମୋଦ ।

ଯୋଦ୍ଧାଏ ଯା ଡାକ ଯାଆନ୍ତି ଦାନ୍ତ ଭିଡ଼ି
ସେହିଟି ରାଜନ ହେ ଅଟଇ ବେଦଧାଡ଼ି ।
କବନ୍ଧ ଯୂଥଙ୍କରେ ପ୍ରାନ୍ତେ ଯାଗ ଶୋଭା
ଯୁଦ୍ଧେ ମଲା ପ୍ରାଣୀକି କରେ ସ୍ୱର୍ଗ ଲଭା ।
ଦ୍ୱିଜ ପାଇଁ ନ ଟଳାଇ ଯେ ଯୁଦ୍ଧେ ମରେ
ତାଙ୍କୁଟି ପୂଜା କରିଥାଅନ୍ତି ଅମରେ ।
ନିଃସହାୟ ହୋଇଣ ସେନାମଧ୍ୟେ ପଶି
ଯେ ମରଇ ବସେ ସେ ମୋ ପାଶରେ ଆସି ।
ରକତନଦୀ ବହିବାର ଅବଭୃଥ—
ସ୍ନାନ ଅଟଇ ଜାଣିଥାଅ ନରନାଥ ।
ଯୁଦ୍ଧରୁ ପଳାଇ ଯେ ଘରରେ ମରଇ
ଅପ୍ରତିଷ୍ଠିତ ନର୍କ ଜାଣ ସେ ଲଭଇ ।
ସେନାପତିଙ୍କ ମାରି ସେନାପତିଯାନେ
ଚଢ଼ି ଯେ ଯୁଦ୍ଧକରେ ସେ ବସେ ମୋ ସ୍ଥାନେ
ଯୁଦ୍ଧେ ମଲା ଲୋକକୁ ନ କରିବ ଶୋକ
ସେ ତ ପାଇଥାଏ ଅଲଭ୍ୟ ସ୍ୱର୍ଗଲୋକ ।
ଯୁଦ୍ଧ ମଲା ଲୋକର ଶ୍ରାଦ୍ଧ ଲୋଡ଼ା ନାହିଁ
ନ ଛାଡ଼ିବ ଶ୍ରାଦ୍ଧକୁ କୁଳଧର୍ମ ପାଇଁ ।
ଯୁଦ୍ଧରେ ଯେ ଅଗ୍ର ପଦଣ୍ଡ କରି ମରେ
ସହସ୍ରେ ଅପ୍ସରା ସେବନ୍ତି ତା ପଛରେ ।
ଯୁଦ୍ଧରୁ ନ ପଳାନ୍ତି ଯେଉଁ ନରପତି
ଚାରି ଆଶ୍ରମର ଫଳକୁ ସେ ପାଆନ୍ତି ।
ଶରଣ ପଶିବାର ଲୋକକୁ ଯୁଦ୍ଧରେ
ମାଇଲେ ଲୋକ ଯାଇ ଏଡ଼େ ନରକରେ ।
ବାଳକ ବୃଦ୍ଧ ସ୍ତ୍ରୀ ଏ ଜନଙ୍କୁ ସଂହାର
ନ କରିବ ଯୁଦ୍ଧରେ କଦାଚିତ ନର ।
ଯୁଦ୍ଧରେ ମୁଁ ବହୁତ ଦାନବ ସଂହାରି
ଦେଖ ହେ ବସି ଭୁଞ୍ଜୁଅଛି ସ୍ୱର୍ଗପୁରୀ ।
ଅମ୍ବରୀଷ ଶୁଣି ଇନ୍ଦ୍ରଙ୍କ ଏ ବଚନ
ପୁଚ୍ଛିବାରୁ ନିବର୍ତ୍ତିଲେ ଆହେ ରାଜନ ।
ଏହାକହି ଭୀଷ୍ମ କହିଲେ ନରରଣ
ପ୍ରତର୍ଦ୍ଦନ ଜନକ ଯୁଦ୍ଧକଥା ଶୁଣ ।
ନିଜ ସେନାଗଣଙ୍କୁ ସ୍ୱର୍ଗେ ନରକ
ଦେଖାଇ କହିଥିଲେ ନୃପତି ଜନକ ।
ଯୁଦ୍ଧରେ ଭୟ ନ ପାଇ ଯେ ମରିଛନ୍ତି
ଗନ୍ଧର୍ବ କନ୍ୟା ହେନ ଦେଖ ସେ ରମନ୍ତି ।

ଯୁଦ୍ଧରୁ ପଳାଇ ଯେ ମରିଛନ୍ତି ଘରେ
ଦେଖ ପଡ଼ିଛନ୍ତି ଏ ଘୋର ନରକରେ ।
ଏହି ସକାଶରୁ କହୁଅଛୁଁ ତୁମ୍ଭଙ୍କୁ
ଯୁଦ୍ଧରେ ମରି ଲଭ ଉତ୍ତମଗତିକୁ ।
ଜନକନୃପତିଙ୍କ କଥା ଯୋଧେ ଘେନ
ମାରି ମରି ଶତ୍ରୁ ପକାଇଲେ ଯେ ଜିଣି ।
ଜାଣିଥିବାର ଯେଉଁ ଜନ୍ତୁଟି ହୋଇବ
ଯୁଦ୍ଧେ ମାରି ମରିବା କଥା ନ ଘୁଞ୍ଚିବ ।
କାତରମାନେ ଶତ୍ରୁମାନଙ୍କ ଭୋଜନ
ହୁଅନ୍ତି ଯଥାର୍ଥରେ ଯୁଧିଷ୍ଠିର ଜାଣ ।
ଶୂରଙ୍କୁ ଆଶ୍ରେ କରି ଭୟାକ୍ତ ମାନବେ
ଦିନ ଯେ ନେଉଥାନ୍ତି ଲଙ୍କସ୍ତକ ଭାବେ ।
ଶୂରଲୋକ ପାଳନା ଅପାଳନା ଦୁଇ
କରିପାରଇ ଜାଣ ଆହେ ନରସାଇଁ ।
ଯୁଧିଷ୍ଠିର ବୋଇଲେ ଭୟାର୍ତ୍ତ ହେଲେ ସେନା
କିରୂପେ ପଠାଇବ କହ ମହାମନା ।
ଭୀଷ୍ମ ବୋଇଲେ ହେ ଶତ୍ରୁଙ୍କର ବିନାଶ
ଉପାୟ ଯା ପୁଚ୍ଛୁଛ ତା ଶୁଣ ନରେ ।
ଋଜୁବୁଦ୍ଧି ସବୁ ଲୋକମାନଙ୍କେ ଧରି
ଶତ୍ରୁଙ୍କୁ ସହାରିବ ବକ୍ରବୁଦ୍ଧି କରି ।
ଧାନ ବୁଣା କାଟିବା ବେଳେ କଲେ ଗୋଳ
ମହୀପାଳ ଜିଣି ପାରଇ ଶତ୍ରୁଦଳ ।
ଝଣା କଣ୍ଟା ନ ଥିବ ଥିବ ଜଳବାଟ
ଏମନ୍ତ ବାଟରେଟି ନେବ ନିଜ ଥାଟ ।
କାଦୁ ଚେକା ପାଣି ନ ଥିଲେ ଯୁଦ୍ଧସ୍ଥାନେ
ଯୋଦ୍ଧାଏ ସେ ସ୍ଥାନକୁ ପ୍ରଶଂସନ୍ତି ମନେ ।
ବେତ ବାଁଶ ଯେ ବଡ଼ବୃକ୍ଷ ଥିବା ବାଟ
ଜଗିଲେ ପାଇକେ ମାରନ୍ତି ପରଥାଟ ।
ବୃଷ୍ଟିହୀନ ଦିନେ ପଦାତିର ଅଶ୍ୱ
ସେନା ପ୍ରଶଂସିତ ଅଟନ୍ତି ନରଈଶ ।
ବର୍ଷାରେ ପଦାତି ବହୁଳ ନାଗସେନା
ଲଭନ୍ତି କାର୍ଯ୍ୟ ନୃପତି ମହାମନା ।
ମୁହୂର୍ତ୍ତ ତିଥି ଯୋଗମାନ ନୃପ ବୁଝି
ଶୁଆଇବ ଶତ୍ରୁକୁଳକୁ ରଣମଝି ।
ପଳାଇବା ସେନାକୁ ପାଲଟାଇ ରଖି
ଯେ ଯୁଝିବ ତାକୁ କରିଥିବ ସୁଖୀ ।

ଦଶ ଶତ ସହସ୍ର ଜଣରେ ଗୋଟିଏ
ଲେଖାରେ ଅଧିପତି କରିଥିବ ଚୟେ ।
ଯୁଦ୍ଧକୁ ଯିବାବେଳେ ବୁଝାଇ ସେନାଙ୍କୁ
ନେଇଥିବ ନ ଥିବ ଶଙ୍କା ଭାଙ୍ଗିବାକୁ ।
ଯୁଦ୍ଧରୁ ପଳାଇଲେ ହୁଅଇ ଅକୀର୍ତ୍ତି
ଏ ସକାଶୁଁ ତାଙ୍କୁ ବୋଧିବ ନରପତି ।
ଯୁଦ୍ଧୁଁ ଯେଉଁମାନେ ପଳାନ୍ତି ଯୁଧିଷ୍ଠିର
ଇହ ପର ଦୁଇଟି ନାହିଁ ତାହାଙ୍କର ।
ଶୂରଯାକ ଯୁଦ୍ଧରେ କରିଥିବ ଆଗ
ବହଳ ହେବାକୁ ଭୀରୁଏ ଥିବେ ସଙ୍ଗ ।
ଭୀରୁଙ୍କର ବାକ୍ୟରେ ଉତ୍ସାହ ବର୍ଦ୍ଧନ
କରୁଥିଲେ ନ କରିଲେ ସେ ପଳାୟନ ।
ଅଳ୍ପଲୋକ ଥିଲେ ଯେ କରେ ସୂଚିବ୍ୟୂହ
ତାହାକୁଟି ନିନ୍ଦା ନୁହଇ ନରସିଂହ ।
ଭୁଜା ବୋଲୁଥିବ ଯେ ଶତ୍ରୁକୁ ଅନାଇ
ନ ପଳାଇଣ ରହ ଯୁଦ୍ଧ କର ଭାଇ ।
ଆପଣାର ଯେବେ ଥିବ ଅଳପ ବଳ
ତେବେ ସେ କରୁଥିବ ତୁଣ୍ଡରେ ଚହଳ ।
ଯୁଧିଷ୍ଠିର ବୋଇଲେ କପରି ରୂପ ଗୁଣ
ଆଚାର କର୍ମ ସ୍ୱଧର୍ମ ଶୂରଗଣ ।
ଯୁଦ୍ଧେ ଶତ୍ରୁ ଜିଣି ଦେଖାଇ ଶରୀରକୁ
ସକ୍ଷମ ହୁଅନ୍ତି କୀର୍ତ୍ତିଅର୍ଜିବାକୁ ।
ତାହା ମୋ ଆଗରେ କହ ତ ପିତାମହ
ଶୁଣିବାକୁ ମୋହର ହେଉଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ଧର୍ମସୁତ ପୁଣ
ଧରିଥିବ କୁଳର ଅନୁରୂପ ଶସ୍ତ୍ର ।
ଗାନ୍ଧାର ସିନ୍ଧୁ ସଉବୀର ପ୍ରାସ ଧରି
ଯୁଦ୍ଧ କରି ଜିଣନ୍ତି ଶତ୍ରୁକୁ ସଂହାରି ।
ଉଶୀନର ଲୋକେ ଜାଣନ୍ତି ସବୁ ଶସ୍ତ୍ର
ପ୍ରାଚ୍ୟଲୋକେ ହାତୀ ଯୁଦ୍ଧରେ ସୁପ୍ରଶସ୍ତ ।
ଯବନ କାମ୍ବୋଜ ମାଥୁର ଜନେ ମଲ୍ଲ
ଯୁଦ୍ଧ କରିବାରେ ଅଟନ୍ତି ଅତି ଭଲ ।
ଦାକ୍ଷିଣାତ୍ୟ ଖଣ୍ଡା ଫଳକ ଧରିଥାନ୍ତି
ସେ ବିଦ୍ୟାରେ ପାରଙ୍ଗ ସେମାନେ ବୋଲନ୍ତି ।
ସିଂହ ବାଘ ପରିଏ ଗମନ ବଚନ
ହୋଇଥିବ ଯାର ସେ ମହାଯୋଦ୍ଧା ଘେନ ।

ମୃଗ ପରି ସ୍ୱର ଉଷର ପରି ଆଖି
ଯାହାର ତାହାକୁଟି ମନୁଆରେ ଲେଖି ।
ବଳଦ ପରି କୁଜ ପିଠିଟି ଯାହାର
ଯୁଦ୍ଧରେ ଗେଲଇ ସେ କରଇ ବିହାର ।
ଘୋଡ଼ା ପରି ଗତି ଯେ ଘୋଡ଼ା ପରି ବାଣୀ
ଯାହାର ହୋଏ ସେନା ପାରଇ ସେ ଜିଣି ।
ଖଳ ଦୃଷ୍ଟି ଭ୍ରୂକୁଟିମୁଖ ବଜ୍ରବାହୁ
ଚର୍ମାଂସ ହନୁ ଶିରାଳ ଶତ୍ରୁଙ୍କ ରାହୁ ।
ନକୁଳାକ୍ଷ ପିଙ୍ଗଳାକ୍ଷ ଯେବଣ ନର
ଯୁଦ୍ଧ କଲେ ତାଙ୍କ ନ ଥାଇ କିଛି ଡର ।
କେଶାଗ୍ର ଯାର ଫାଟ୍ର ପୃଣି ଫଟା ଫଟା
ବଦନ ହନୁମନ୍ତ ପାର୍ଶ୍ୱ ଅତି ମୋଟା ।
ଉଚ୍ଚତ ସ୍କନ୍ଧ ପୃଥ ଗଳ ବିକଟାଳ
ରୂପ ସ୍ୱଭାବ ଉଦ୍ଧତ ଶିର ବର୍ତ୍ତୁଳ ।
ମାର୍ଜାର ପ୍ରାୟେ ପାଟି ଅନ୍ୟନ୍ତ ବିସ୍ତୃତ
ସ୍ୱର ଉଗ୍ର ଅଧାର୍ମିକ ଝୁନ୍ଧ ଗର୍ବିତ ।
ଏହି ଅନ୍ତ୍ୟଜଜାତି ସୈନ୍ୟେ ଅଗ୍ରେ କଲେ
ଯୁଦ୍ଧରେ ନରପତି ଶ୍ରେୟ ପାଏ ଭଲେ ।
ଅଧାର୍ମିକ ଉଚ୍ଚବୃତ୍ତି ଅଟେ ଯେ ଜନ
ଶାନ୍ତ ନୁହେଁ କହିଲେ ସେ ପ୍ରୀତି ବଚନ ।
ଯୁଧିଷ୍ଠିର ବୋଇଲେ ଜୟବନ୍ତ ସେନା
ଲକ୍ଷଣ ମୋତେ କହ ଭୀଷ୍ମ ମହାମନା ।
ଭୀଷ୍ମ ବୋଇଲେ ହେ ନୃପତି ଅନୁକୂଳ
ଗଣକ ସାହାଯ୍ୟେ ବୁଝିବ ଶୁଭ ବେଳ ।
ଏ ବାହାରେ ଦ୍ୱିଜଙ୍କ ହାତରେ କରମ
କରାଇବ ହୋଇବା ପାଇଁ ଜୟଧର୍ମ ।
ଯୁଦ୍ଧକୁ ଗଲବେଳେ ହୃଷ୍ଟପୁଷ୍ଟ ହୋଇ
ସେନାଏ ଗଲେ ଜୟ ପାଏ ନରସାଇଁ ।
ଅନୁକୂଳ ହୋଇଣ ବହିବ ପବନ
ପଛେ ଥିବେ ବଳୁଆ ବକ ଗୃଧ୍ର ସୈନ୍ୟ ।
ହୋମ କଲବେଳେ ବିଧୂମ ଅଗ୍ନି ହୋଇ
ଜଳିଲେ ଜୟ ହୋଏ ସନ୍ଦେହ ଯେ ନାହିଁ ।
ଶଙ୍ଖ ଭେରି ମୃଦଙ୍ଗ ଯାହାର ଗମ୍ଭୀର
ହୋଇ ଶୁଭେ ସେ କରେ ଶତ୍ରୁକୁ ସଂହାର ।
ମୃଗମାନେ ଦକ୍ଷିଣପଟେ ଥାନ୍ତି ଯେବେ
ଜୟ ଆଶଙ୍କା ମନେ ନ କରିବ ତେବେ ।

ହଂସ କ୍ରୌଞ୍ଚ ଶତପତ୍ର ପକ୍ଷୀ ସକଳ
ମଧୁରେ ଧ୍ୱନି କଲେ ହୁଅଇ ମଙ୍ଗଳ ।
ଯାର ଶସ୍ତ୍ର ଧ୍ୱଜ ଦେହକୁ ନୋହେ ଚାହିଁ
ସେହିଟି ଶତ୍ରୁ ସୈନ୍ୟ ମାରେ ନରସାଇଁ ।
ଶସ୍ତ୍ର ଯନ୍ତ୍ର କବଚ କେତୁ ଯୋଦ୍ଧା ମୁଖ
ସମୁଜ୍ଜ୍ୱଳ ଦିଶିଲେ ହୁଏ ଶତ୍ରୁ ଦୁଃଖ ।
ନୃପତି କରି ଯୁଦ୍ଧସାମଗ୍ରୀ ବ୍ୟବସ୍ଥା
ପ୍ରୀତି କରାଇବାକୁ ଲଗାଇଥିବ କଥା ।
ଟୋଳିବା ସେନାକୁ ଗୋଟିଆଇ ଯୁଦ୍ଧ
କରି ନ ପାରନ୍ତି ଇନ୍ଦ୍ରାଦି ବିବୁଧ ।
ମନୁର ଯୋଦ୍ଧାକୁ ଡରୁଆ ଯୋଦ୍ଧାଟାଏ
ସମାନ ନୁହନ୍ତି ଯୁଦ୍ଧରେ ଜାଣ ରାୟେ ।
ଶତ୍ରୁକୁ ଜିଣି କରି ହୁଅଇ ଯେ ରାଜ୍ୟ
ତାହାର କେବେ ଜାଣ ନୁହଇ ଅକାର୍ଯ୍ୟ ।
ଯାହାକୁଟି ମାରିବା ମନ କରିଥିବ
ଦୟା କରି ତାଠାରେ ବଚନ କହିବ ।
ପଡ଼ିବ ଯେତେବେଳେ ଆସିଣ ସେ ହାତେ
ଖାପରୁ କାଢ଼ି ଖଣ୍ଡା ହାଣିବ ତା ମାଥେ ।
ଯୁଧିଷ୍ଠିର ବୋଇଲେ ଶ୍ଲକ୍ଷ୍ଣ ମୃଦୁ ପର—
ଠାରେ କେଉଁରୂପେ ବର୍ତ୍ତିବ ନରବର ।
ଭୀଷ୍ମ ବୋଇଲେ ହେ କହିବା ତା ତୁମ୍ଭଙ୍କୁ
ଏ ବିଷୟେ ଇନ୍ଦ୍ର ଯା ପୁଚ୍ଛିଲେ ଗୁରୁଙ୍କୁ
ଇନ୍ଦ୍ର ପଚାରିଲେ ଗୁରୁଙ୍କ ମୁଖ ଚାହିଁ
ଶତ୍ରୁକୁ ଉପାୟେ କି ରୂପେ ମାରିବଇଁ ।
ପିଟିଲେ ଅସ୍ତ୍ର ସାଧାରଣ ଜୟ ସିନା
ଏଥିକି ପୁଚ୍ଛୁଅଛୁ ଜାଣ ମହାମନା ।
ବୃହସ୍ପତି ବୋଇଲେ କଳହରେ ଅପ—
କାରୀଙ୍କର କେବେହେ ନ ଭାଳିବ ତାପ ।
କ୍ରୋଧ ହୋଇଣ କ୍ଷମା ନ କରିବା କଥା
ବାଳକମାନଙ୍କର ଅଟେ ସେ ବ୍ୟବସ୍ଥା ।
ବ୍ୟାଧ ଯେଉଁ ରୂପରେ କାଣ୍ଡିଆ ପକାଇ
ତୁନି ରହିଥାଏ ସେରୂପେ ତୁନି ହୋଇ ।
ଥିବ ଶତ୍ରୁଜନଙ୍କୁ ମାରିଣେ ରାଜନ
ଏହି ଯେ ଅଟେ ନୀତିଶାସ୍ତ୍ରର ବିଧାନ ।
କାମ କ୍ରୋଧ ଛାଡ଼ିଣ ଶତ୍ରୁ ଛିଦ୍ର ଜଗି
ବସିବା କଥାଟିରେ ହେବ ଅନୁରାଗୀ ।

ଶତ୍ରୁ ଯେବେ ହେବ ମହତ ବଳୀୟାର
ତାକୁ ଯେ କହୁଥିବ ବିନୟ ଉତ୍ତର ।
ନୃପତେ ତାର ଆଦି, ମଧ୍ୟ, ଅନ୍ତ ଜାଣି
ଭେଦ ଦାନ ଔଷଧ କରିବ ନୃମଣି ।
ଯେଉଁ କାଳରେ ଶତ୍ରୁ ମାରିବା ସାମର୍ଥ୍ୟ ।
ହେବ ସେହି କାଳରେ କରିବ ଅନର୍ଥ ।
ଇନ୍ଦ୍ର ପଚାରିଲେ ଦୁଷ୍ଟଲୋକର ଚିହ୍ନ
କେଉଁରୂପେ ଜାଣିବ ତା ଗୁରୁ ବଖାଣ ।
ବୃହସ୍ପତି ବୋଇଲେ ଆହେ ଶଚୀପତି
ପଚାରିବା କଥା କହିବା ବିଜ୍ଞ ମତି ।
ଯେଉଁ ଲୋକ ପ୍ରଭୁର ଆଗରେ ବନ୍ଦଇ
ପଛ ଆଡ଼ରେ କିନ୍ତୁ ନିନ୍ଦାକୁ ବାଢଇ ।
କହିଲେ ପରଲୋକ ପ୍ରଶଂସା ବଚନ
ଶୁଣିଣ ହେଉଥାଏ ବିମନେ ମଉନ ।
ସେ ଲୋକଙ୍କୁ ଜାଣିମ ଅଟେ ବଡ ଦୁଷ୍ଟ ।
ଜାଇଁଥିବା ଯାକ କରିବ କଥା ନଷ୍ଟ ।
ଅଶନେ ଶୟନରେ ଗମନେ ତା ଭାବ
ଅଭାବ ବୁଝିବ ଯେ ଜାଣିବାର ହେବ ।
ଆର୍ତ୍ତିରେ ଯେ ଆର୍ତ୍ତି ପ୍ରିୟରେ ପ୍ରୀତି ଅତି
ଆଚରଇ ତା'ର ଜାଣିବ ମିତ୍ରଗତି ।
ଏ ରୂପେ ବୃହସ୍ପତି କଥା ଇନ୍ଦ୍ର ଶୁଣି
ମହାସନ୍ତୋଷକୁ ପାଇଲେ ନରମଣି ।
ତୁମ୍ଭେ ଯେ ସେହି ରୂପ ଆଚରଣ କର
ଏ ଜଗତ ମଧ୍ୟରେ ହେବ ଏକ ସାର ।
ଯୁଧିଷ୍ଠିର ବୋଇଲେ କଉଡ଼ି ନ ଥାଇ
କି କଥା କଲେ ରାଜା ସ୍ୱର୍ଗକୁ ଲଭଇ ।
ଗାଙ୍ଗେୟ ବୋଇଲେ ହେ କ୍ଷେମଦର୍ଶୀ ରାଜା
ନିର୍ଧନ ହୁଅନ୍ତେ ଥରଇ ଦୁଃଖେ ମଜ୍ଜା ।
କାଳକବୃକ୍ଷୀୟ ମୁନିଙ୍କଠାକୁ ଗଲେ
ଦ୍ରବ୍ୟହୀନ ହୋଇଲି ବୋଲି ସେ କହିଲେ ।
ଏବେ କେଉଁ ରୂପେ ହେବ ମୋ ଧନଭାଗ
କହ ମୋତେ ଏବେ ହେ ମୁନି ମହାଭାଗ ।
ମାନସିକ ଶରୀର ବ୍ୟାଧିଯୁକ୍ତ ନର—
ମାନଙ୍କୁ କରିପାର ତୁମ୍ଭେ ପ୍ରତିକାର ।
ମୁନି ହୋଇଲେ ଯେହୁ ଜାଣିବାର ହେବ
ସୁଖ ହେଲେ ଦୁଃଖ କରି ତା ଯେନୁଥିବ ।

ଅନିତ୍ୟ ତ ଅଟଇ ଏ ସଂସାର କଥା
ନିତ୍ୟ କଥାଟିରେ ଯେ ନ ଘେନିବ ବ୍ୟଥା ।
ବିସ୍ମରୁଥିବ ମନେ ବାବୁ, ଅଜା କ୍ଷମ
ପ୍ରବର୍ତ୍ତାଇ ଯେ ବୁଦ୍ଧି ଟିକି ନିଜ ଧର୍ମ ।
ଶତ ବରଷର ସମ୍ପୂର୍ଣ୍ଣେ ପ୍ରାଣୀଗଣ
ପ୍ରାପତ ହେଉଛନ୍ତି ଅବଶ୍ୟ ମରଣ ।
ଦ୍ରବ୍ୟ ବାଧ ହୋଇଲେ ନ କରିବ ଚିନ୍ତା
ଯାର ଥିବ ଧର୍ମ କଥାରେ ବିବେକତା ।
ଆପଣାର ଅଧିକ ଜଣା ସମ ଲୋକ
ଅନନ୍ତ ବୋଲି ଭାବୁଥିବ ମହାଲୋକ ।
ରାଜା ବୋଇଲେ ହେ ଛାଡ଼ିଲି ମୁହିଁ ଶୋକ
ତୁମ୍ଭ କଥା ଶୁଣି ହୋଇଲି ମୋ ବିବେକ ।
ମୁନି ବୋଇଲେ ହେ ଧର୍ମରେ ଆଛା ବୁଦ୍ଧି
ରହିଲି ହେ ତୁମ୍ଭର ନୃପକୁଳନିଧି ।
ହୀନଭାଗ୍ୟ ଲୋକ ବହିକ ମିଛେ ନିନ୍ଦ
ଏ ସଂସାର ମାୟାରେ ହେଉଥାଏ ଧନ୍ଦ ।
ଏ ସକାଶୁଁ କହୁଛୁ ପରଲୋକ ଶିକ୍ଷା
ଦେଖିଲେ ହିଂସାକୁ ଛାଡ଼ିବ ଦଣ୍ଡଧାରୀ ।
ତୁମ୍ଭେ ତ ସକଳ କଥାରେ ଜାଣିବାର
ସନ୍ତାପ କରିବା କଥାକୁ କର ଦୂର ।
ଧର୍ମ କାମନା କରି ଜାଣ ପରଲୋକ ।
ମହାଦୁଃଖ ଅଟଇ ଇହ କଥାଯାକ ।
ଧନ ହୀନ ହେଲେ ଧନ ଯେ ଇଚ୍ଛାକରେ
ତାକୁ ବଳି ଅଧର୍ମ ନାହିଁଟି ସଂସାରେ ।
ଧନ ଥାଇଣ ଧର୍ମହୀନ ହେଲେ ନର
ନରକଟି ତାହାର ହୁଏ ଗେହ ଘର ।
ଜନ୍ମହେଲେ ମନ ପରାୟେ ଧର୍ମକଥା
ସବୁଠାରେ ପ୍ରବର୍ତ୍ତି ଅଛି ମହାରଥା ।
ସଂଯତ ବଚନ ମନ ଇନ୍ଦ୍ରିୟେ କରି
ଧରମରେ ପ୍ରବର୍ତ୍ତି ଆହେ ଦଣ୍ଡଧାରୀ ।
ନୃଶଂସ ଲୋକ ବୃତ୍ତି ଆଚରଣ କଲେ
ପଣ୍ଡିତ ନ ଲେଖନ୍ତି ସେ କଥାକୁ ଭଲେ ।
ଫଳ ମୂଳ ଖାଇବ ବନ ମଧ୍ୟେ ରହ
ହୃଦୟମଧ୍ୟୁ ଛାଡ଼ ଦେଇକରି ମୋହ ।
ଯେମନ୍ତ ବନ୍ଧାବଳ ଅରଣ୍ୟେ ବହତରେ
ତେମନ୍ତ ବିଜ୍ଞ ବାନପ୍ରସ୍ଥ ବୃତ୍ତି ଧରେ ।

ଏହା ଜାଣି ଯେ କହୁଅଛି ଲୋକଧର୍ମ
ଆଚରଣ କଲେ ଛାଡ଼ଇ ପାପକର୍ମ ।
ତୁମ୍ଭେ ଏବେ ମୋଠାରୁ ଶୁଣିଲ ତ ରାଜ୍ୟେ ।
କର ସକଳରୂପେ ଧରମ ଉପାୟେ ।
ଯେବେ ପରଧର୍ମ କରିବା ଇଚ୍ଛା ଅଛି
ତହିଁକି ଯେ ଉଚିତ ଶୁଣ ତା କହୁଛି ।
କରମ ଆଚରଣ କଲେ ନରରାଣ
ବଳେ ଆସି ଅର୍ଥାଦି ମିଳିବଟି ଜାଣ ।
ରାଜା ବୋଇଲେ ମୁହିଁ କି କର୍ମ କରିବି
କହ ତାହା ମୋତେ ହେ ମହରଷି ଭାବି ।
ମୁନି ବୋଇଲେ ଆହେ ଦମ୍ଭ ହର୍ଷ କ୍ରୋଧ
ଛାଡ଼ି ଶତ୍ରୁ ଲୋକକୁ ସେବିବ ବହୁ ବୋଧ ।
ଶତ୍ରୁ ତୁମ୍ଭ ସେବାରେ ମହାସୁଖୀ ହୋଇ
ବଳାକାରେ ଯାଚଣ ଦେବ ଜାଣ ମହୀ ।
ରାଜ୍ୟକୁ ପାଇ ଯେବେ ବଳୀୟାର ହେବ
ଜନକରାଜା ତୁଲେ କରିବ ଆହବ ।
ନୀତିଶାସ୍ତ୍ର ଜାଣିବା ଲୋକ ଶତ୍ରୁଠାରେ
ମିତ୍ର ପରି କଥା କହିବ ନିରନ୍ତରେ ।
ଶତ୍ରୁକୁ ମିତ୍ର ପରି କହିବ ସୁକଥା
କରାଇ ଉଦ୍‌ବେଗ କରିବ ଜାତ ବ୍ୟଥା ।
କ୍ଷେମଦର୍ଶୀ ନୃପ ବୋଇଲେ ମୁନିବର
କପଟ ଧନକାଂକ୍ଷା ନାହିଁ ତ ମୋହର ।
ମୁନି ବୋଇଲେ ଯା କହିଲ ନରରାଣ
ମୋ ମନକୁ ସେ କଥା ପାଇଲାକ ଜାଣ ।
ତୁମ୍ଭର ଶତ୍ରୁ ତୁଲେ ଯେଉଁରୂପେ ପ୍ରୀତି
ହୋଇବ ସେ ରୂପେ ମୁଁ କରିବି ନୃପତି ।
ଜନକ ସିନା ତୁମ୍ଭ ଶତ୍ରୁ ନରସାଇଁ
ତାହାଙ୍କୁ ବୋଧିବି ମୁଁ ଆଶ୍ରମେ ଅଣାଇଁ ।
ଏହା କହି ଜନକରାଜେ ଡକାଇଲେ
ଅଛନ୍ତି ଆଜ୍ଞା କ୍ଷେମଦରଶୀ କହିଲେ ।
ମୋଠାରେ ଯେଉଁରୂପେ ତୁମ୍ଭର ଅଛି ଖ୍ୟାତି
ସେ ରୂପେ ତାଙ୍କଠାରେ କର ଏବେ ମତି ।
ସାଧୁମାର୍ଗ ବିନା ଅସାଧୁମାର୍ଗ କାନେ
ନ ଶୁଣନ୍ତି ସେ ଦେଖି ନାହାନ୍ତି ସ୍ୱପନେ ।
ଏବେ ତାଙ୍କୁ ମୋ ବୋଲେ ତାଙ୍କ ମହୀ ଦିଅ
ଯେ ଯୁଝିଲେ ଯୁଝିବା କରିବ ହୃଦୟ ।
ମୋ ବଚନେ ଯେ ତ ହେଲେନି ତୁମ୍ଭ ବଶ
ତୁମ୍ଭେ ତାଙ୍କଠୁଁ ଏବେ ଛାଡ଼ ପୂର୍ବରୋଷ ।
ଜନକ ବୋଇଲେ ଯା ବୋଲୁଛ ଗୋସାଇଁ
ତୁମ୍ଭଙ୍କୁ ଲଙ୍ଘି ପାରିବ କି କରି ନାହିଁ ।
ଏହା କହି ଋଷିଙ୍କି କ୍ଷେମଦର୍ଶୀ ନୃପ—
ବରଙ୍କୁ ଡାକିଲେ ଜନକ ଛାଡ଼ି ତାପ ।
ବୋଇଲେ ତୁମ୍ଭ ବୁଦ୍ଧି ଜ୍ଞାନେ ବଶ ହେଲି ।
ଜିଣିଲେ ହେ ପରାଜୟ ମୁହିଁ ପାଇଲି ।
ତା'ପରେ ଜନକ ବୋଇଲେ ଆମ୍ଭ ଘର
ଦେଖିବ ଆସ ମୋ ସଙ୍ଗତେ ନରବର ।
କ୍ଷେମଦର୍ଶୀ ରାଜା ତହିଁ ସମ୍ମତି କଲେ
ଗଲେ ତାଙ୍କ ପୁରକୁ ଜନକଙ୍କ ତୁଲେ ।
ଜନକ ନିଜ ଦୁହିତାକୁ ତାଙ୍କୁ ଦେଇ
ଧନ ତୁଲେ ଯଉତୁକ ଦେବେକ ମହୀ ।
ଏହି କଥା ଜାଣି ହେ ପାଣ୍ଡବ ରାଜନ
ଜୟ ପରାଜୟ ଅନିତ୍ୟ କରି ଘେନ ।
ଯୁଧିଷ୍ଠିର ବୋଇଲେ ସମୀପ ଲୋକଙ୍କର
ଆଚରଣ କିରୂପେ ଗଙ୍ଗାଙ୍କ କୁମର ।
ଗୂଢ଼ାଏ ତ ରାଜାଙ୍କ ଅନୁସରି ଥାନ୍ତି
ଯା ପଡ଼ୁଥାଏ ତାହା ପ୍ରକାଶ କରନ୍ତି ।
ଯେ ରୂପରେ ସେମାନେ ଏକ ମତ ହୋଇ
ରହିବେ ସେହିରୂପେ କହ ତା ବିଚାଇ ।
ଭୀଷ୍ମ ବୋଇଲେ ଆହେ ଲୋଭରେ କ୍ରୋଧରେ
ସମୀପଲୋକେ ମରୁଥାନ୍ତି ବଇରରେ ।
ଗଣଭେଦ ହୋଇଲେ ଶତ୍ରୁକରେ ଜୟ
ଏ କଥାରେ ନ କର ସନ୍ଦେହ ହୃଦୟ ।
ସମୀପଲୋକ ଯାର ଭେଦ ନ ଭଜନ୍ତି
ତାକୁଟି ପରଜନେ ଡରି ରହିଥାନ୍ତି ।
ଦ୍ରବ୍ୟମନ୍ତ୍ର ସାରଙ୍କ ମନ୍ତ୍ରୀ ଦେଇ ଧନ
ରଖିଥାଏ ବୋଧି ନୃପତି ପାଶ ଜନ ।
ରାଜା ଯେବେ ସମୀପଲୋକଙ୍କୁ ବିସ୍ତର
ଲୁଣ୍ଠଏ ନାହିଁ ଦୁଃଖ ବଢ଼ଇ ତାହାର ।
ରାଜାର ସମ୍ମୁଖେ ଯେ ମୁଖ୍ୟ ହୋଇଥିବେ
ଆଉ ଲୋକେ ଫିଟିଲେ ମିଶାଇ ସେ ନେବେ ।
ଶତ୍ରୁଠାରେ ପଦାର୍ଥ ପାଇଲେ ସମୀପ—
ଲୋକେ ବଢ଼ାଅନ୍ତି ଆପଣା ନୃପ ତାପ ।

ଏହି ସକାଶୁ ରାଜା ଜାଗରୁକ ହୋଇ
ସମୀପର ଲୋକଙ୍କୁ ଜଗିବା ଯୋଗାଇ ।
ଯୁଧିଷ୍ଠିର ବୋଇଲେ ଧରମରେ ସୁର
କେଉଁ ଧର୍ମ କହ ହେ ଗଙ୍ଗାଙ୍କ କୁମର ।
ଭୀଷ୍ମ ବୋଇଲେ ଆହେ ମାତା ପିତା ଗୁରୁ
ସେବା କଲେ ଲୋକ ତରଇ ଅଧର୍ମରୁ ।
ଧର୍ମ ଅଧର୍ମ ଯାହା ହେବ ଏ ତ ଶିକ୍ଷା
ତା କରିବ ଏଥିରେ ନ କରିବ କକ୍ଷା ।
ମାତା ପିତା ଗୁରୁ ତିଦେବ ତିଆଶ୍ରମ
ତିନଅଗ୍ନି ତିଲୋକ ଆହେ ନରବର ।
ପିତା ଗାର୍ହପତ୍ୟ ଯେ ଦକ୍ଷିଣାଗ୍ନି ମାତା
ଗୁରୁ ଆହବନୀୟ ବୋଲନ୍ତି ଦେବତା ।
ମାତା ପିତା ଗୁରୁଙ୍କ ପାଦ ସେବି ନର
ଅରଜ ପୁଣ୍ୟ ଜଣୁ ଅଛନ୍ତି ତିପୁର ।
ପିତା ମାତା ଗୁରୁ ପାଦରେ ପୂଜା କଲେ
ଇହ ପର ବ୍ରହ୍ମଲୋକ ମିଳଇ ଭଲେ ।
ଏ ତିନ ନ ମାନ ସୁକୃତ କଲେ ଲୋକ
ନିଷ୍ଫଳ ମଲେ ଯାଇ ଭୋଗଇ ନରକ ।
ଶ୍ରୋତ୍ରୀୟ ଅପେକ୍ଷାରେ ଅଧିକ ଆଚାର୍ଯ୍ୟ
ଆଚାର୍ଯ୍ୟ ଅପେକ୍ଷାରେ ଉପାଧ୍ୟାୟ ପୂଜ୍ୟ ।
ଉପାଧ୍ୟାୟଠାରୁ ଯେ ଅଧିକ ଜନକ
ଜନକ ଅପେକ୍ଷାରେ ଜନନୀ ଅଧିକ ।
ମାତା ପିତା ପ୍ରତି ଅଧିକ ମନ୍ତ୍ରଦାତା
କହନ୍ତି ଏହା ସକଳ ବେଦବେତ୍ତା ।
ମାତା ପିତା ପିଣ୍ଡକୁ ନିର୍ମାଣ କରନ୍ତି
ମନ୍ତ୍ର ଦେବା ଲୋକଟି ପ୍ରାଣୀଙ୍କର ଗତି ।
ମାତା ପିତା ଗୁରୁଙ୍କୁ ପୂଜା ଯେ କରଇ
ପ୍ରଜାପତି ମହୀ ବ୍ରହ୍ମକୁ ସେ ପୂଜଇ ।
ମାତା ପିତା ଗୁରୁଙ୍କ କ୍ଷତି ଯେ କରଇ
ଗର୍ଭ ହତ୍ୟାଠାରୁ ଅଧିକ ପାପ ପାଇ ।
ମିତ୍ରଦ୍ରୋହୀ ସ୍ତ୍ରୀ ଘାତି ଗୁରୁହତ୍ୟାକାରୀ
କୃତଘ୍ନ ହେଲେ ଲୋକ ନୁହଇଟି ପାରି ।
ଯୁଧିଷ୍ଠିର ବୋଇଲେ ସତ ମିଛ ଦୁଇ ।
ଆବୋରି ରହିଛି ପ୍ରାଣୀଙ୍କର ଦେହି ।
କେଉଁ କାଳେ କେଉଁ କଥାକୁ ଆଚରିଲେ
ଧରମ ହୋଏ ତାହା କହ ମୋତେ ଭଲେ ।
ଭୀଷ୍ମ ବୋଇଲେ ହେ ସତ୍ୟରୁ ବଡ଼ ହୋଇ
ପଦାର୍ଥ ଏ ମହୀରେ ମୋତେ ଦିଶୁ ନାହିଁ ।
ସତ୍ୟ ମିଥ୍ୟା କହିବା କାଳ ପାଣ୍ଡୁସୁତ
ଅଛି ତାହା ତୁମ୍ଭଙ୍କୁ କହିବା ବିହିତ ।
ପ୍ରାଣ ଯିବାର କାଳେ, ବିବାହରେ ମିଥ୍ୟା
କହିବା ଲୋକ ନ ପାଏଟି ପାତକ୍ୟଥା ।
ହିଂସା ନ କରିବାକୁ ଧର୍ମ ପ୍ରବର୍ତ୍ତନ
କହିଅଛନ୍ତି ବ୍ରହ୍ମା ଦେବଙ୍କ ନନ୍ଦନ ।
ବେଦ ସ୍ମୃତି ଦୁହିଙ୍କି ପ୍ରମାଣ ଘେନିବ
ସେ ଯାହା ବୋଲୁଥିବ ତାହା କରୁଥିବ ।
ଅନ୍ୟାୟ ଧର୍ମ ଇଚ୍ଛା କରିବା ଲୋକଙ୍କୁ
ନ କହିବ ବେଦର ସ୍ମୃତି ମାରଗକୁ ।
ପାପୀ ଲୋକମାନଙ୍କୁ ନ ଦେବଟି ଧନ
ଧନ ଦେଲେ ତହୁଁ ଅକାର୍ଯ୍ୟ ହୋଏ ଜାଣ ।
ଧର୍ମ ଚ୍ୟୁତ ହେବା ଲୋକକୁ ଯମ ପରି
ଦଣ୍ଡ ଦେଉଥିବ ଯେ ହେବ ଦଣ୍ଡଧାରୀ ।
ପାପକାରୀ ଲୋକ ସଙ୍ଗତେ ନ ଭୁଞ୍ଜିବ
ଏ ବାହାରେ ତାହାକୁ ବନ୍ଧୁ ନ କରିବ ।
ମାୟାଠାରେ ମାୟା ଅମାୟାଠାରେ ମାୟା—
ଛାଡ଼ି ଦେଇଣ ମିତ୍ର କରିଥିବ ଦୟା ।
ଯୁଧିଷ୍ଠିର ବୋଇଲେ ଯେ ପ୍ରାଣୀ କ୍ଳେଶ ପାନ୍ତି
କି କର୍ମ କଲେ କହ ସୁଖେ ସେ ରହନ୍ତି ।
ଭୀଷ୍ମ ବୋଇଲେ ହେ ଯେଉଁ ଆଶ୍ରମର
ସେ ହେନ୍ତି ଧର୍ମ କଲେ ଜିଣଇ ସଂସାର ।
କପଟ ଛାଡ଼ି ସଦବୃତ୍ତି କରିଥାନ୍ତି
ଯେଉଁ ବ୍ରାହ୍ମଣ ପରିଗ୍ରହ ନ କରନ୍ତି ।
ଏ ବାହାରେ କରନ୍ତି ଇନ୍ଦ୍ରିୟ ନିଗ୍ରହ ।
ନ ପାରେ ଛୁଇଁ ପାପ ସେ ଲୋକର ଦେହ ।
ବୋଲ ନ ବୋଲନ୍ତି ମାଇଲେ ନ ମାରନ୍ତି
ତିଅନ୍ତି ମାଗିବାର କଥା ଛାଡ଼ିଥାନ୍ତି ।
ତାହାଙ୍କୁ ବୋଇଲେ ଦୁର୍ଗତି ହୋଇ କଥା
ନ ଥାଏ ଜାଣ ହେ ରାଜନ ମହାରଥା ।
ବେଦ ପଢ଼ିଣ ଅତିଥିଙ୍କି ସମ୍ଭାବନା
କଲ ଦ୍ୱିଜ ଜାଣ ନୁହଇ ଦୁଃଖମନା ।
ମାତା ପିତା ସେବା କରଇ ଯେ ଦିବସେ
ନ ଶୋଏ ନ ପଡ଼େ ସେ ଦୁର୍ଗତିର ପାଶେ ।

ଯେଉଁ ରଜା ଧର୍ମରେ ପାଳଇ ପରଜା
ସେ କେବେ ଦୁର୍ଗତିରେ ନ ଥବାଏ ମଜ୍ଜା ।
ଋତୁରେ ଯେ ଭାରିଯା ସଂଭୋଗକୁ କରେ
ଦୁର୍ଗତି ବାଧି ନ ପାରଇ ତାକୁ ଥରେ ।
ଧର୍ମଯୁଦ୍ଧ ଯେଉଁ କ୍ଷତ୍ରିୟ କରି କରେ
ତାହାକୁ ବଡ଼ କରି ପୂଜନ୍ତି ସ୍ୱର୍ଗରେ ।
କର୍ମରେ ମନରେ ଯେ କରଇ ପାପ
ତାକୁ କେବେହେଁ ଘୋଟି ନ ପାରଇ ତାପ ।
ମରଣ ଘଟିଲେହେଁ ଯେ ମିଛ ନ କହେ
ଦୁସ୍ତର ଭବସିନ୍ଧୁ ହେଳେ ପାରି ହୁଏ ।
ନିଷ୍କପଟ କରି କରମ ଯେ କରଇ
ଦୁର୍ଗତି କେଭେଁ ତାକୁ ଘୋଟି ନ ପାରଇ ।
ଅନଧ୍ୟାୟ ତିଥିରେ ନ ପଢ଼େ ଯେ ବେଦ
କହୁଥାଇଁ ତାରଟି ନୁହଇ ବିପଦ ।
ସବୁ ଧର୍ମ ଶୁଣି ସବୁ ଦେବତାଙ୍କର
ପାଦେ ଯେ ନମଇଁ ସେ ପୁଣ୍ୟବନ୍ତ ନର ।
ପ୍ରତି ଶ୍ରାଦ୍ଧତିଥିରେ ଶ୍ରାଦ୍ଧ ଯେ କରନ୍ତି
ବିଷୟ ଜଞ୍ଜାଳରୁ ସେ ନିସ୍ତେ ତରନ୍ତି ।
ନିୟତ ମଦ୍ୟ ମାଂସ ଛାଡ଼ିଛି ଯେ ନର
ଜାଣିବ ତାର ଏକା ହେ ପୁଣ୍ୟଟି ଅପାର ।
କମଳାଦେବୀକାନ୍ତ ରୁକ୍ମିଣୀ ବଲ୍ଲଭ
ସେବା ଯେ କରିଛି ସେ ପାପୁଁ ଯାଏ ତରି ।
ତୁମ୍ଭର ପାଶରେ ତ ସେ ଅଛନ୍ତି ବସି
ତାଙ୍କୁ ସେବା କର ରାଜନ ଅହର୍ନିଶି ।
ଯେଉଁମାନେ କୃଷ୍ଣଙ୍କ ସେବଛନ୍ତି ପାଦ
ସ୍ୱପନେ ନ ଜାଣନ୍ତି ସେମାନେ ବିପଦ ।
ତୁମ୍ଭଙ୍କୁ କହିଲି ମୁଁ ଯେତେକ ଚରିତ
ଶୁଣିଲେ ଏହା ଲୋକ ହୋଇବେ ମୁକତି ।
ଏଠାରେ ରାଜଧର୍ମ ପୂର୍ବାର୍ଦ୍ଧ ସମାପ୍ତି
ହେଲା ଭାଷଇ କୃଷ୍ଣସିଂହ ନରପତି ।

—:-*-:—

## ବ୍ୟାଘ୍ର-ଶୃଗାଳ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଭଲ ବୁଧଜନ—
ମାନଙ୍କୁ ମନ୍ଦ ବୋଲି ହେଉଥାଏ ଜ୍ଞାନ ।
ମନ୍ଦକୁ ସେହିରୂପେ ଭଲ ବୋଲି ପ୍ରତେ
ହେଉଥାଏ ତ ଆହେ ଭୀଷ୍ମ ମହାମତେ ।
ଏହା ମୁଁ ଯେ ରୂପେ ଜାଣିବି ପିତାମହ
ସେ ରୂପରେ ମୋ ଆଗେ ବତାଇଣ କହ ।
ଭୀଷ୍ମ ବୋଇଲେ ହେ ପୁରିକାନାମ୍ନୀ ପୁରେ
ରାଜା ହୋଇଲେ ଜଣେ ପୌରିକ ନାମରେ ।
ପରହିଂସାରତେ ମରନ୍ତେ ସେ ନୃପତି
ବିଲୁଆ ଜନ୍ମ ପାଇ ସୁମରିଲେ ଜାତି ।
ପଡ଼ିଥିବା ମଡ଼ା ଦେଖିଲେ ନୟନରେ
ନ ଲଗାନ୍ତି ତାହା କେବେ ସେ ବଦନରେ ।
ପଡ଼ିଥାଏ ଯେଉଁ ଫଳଟିମାନ ତଳେ
ତ ମାତ୍ର ବିଲୁଆ ଗୋଟାଇ ଖାଏ କଳେ ।
ବିଲୁଆଏ ଯେ ତାହା ଦେଖିଣ ନ ସହି
ବୋଇଲେ ବିଲୁଆରେ ହୋଇଲୁ କି ବାଇ ।
ଶମଶାନରେ ଥାଇ ଶବ ନ ଖାଇଲେ
ଗଣନା ହେବୁ ତୁ କି ଲୋକଙ୍କରେ ଭଲେ ।
ତୋ ବୁଦ୍ଧି ଛାଡ଼ ଏବେ ଆମ୍ଭ ବୁଦ୍ଧି କର
ମଡ଼ା ଖାଇ ସନ୍ତୋଷ କର ତୋ ଉଦର ।
ବିଲୁଆ ବୋଇଲା ମୁଁ ମଡ଼ାଖିଆ ଜାତି
ପାଇଅଛି ମନକୁ ତୁମ୍ଭ ଏ ଯୁକତି ।
କି କରିବି ପୂରୁବ ଜନ୍ମ ସୁମରଣା
ହେବାରୁ ଦୁଷ୍ଟ ଥାଇ ବୁଦ୍ଧି ହୋଏ ବଣା ।
ଆଶ୍ରମରେ ଥାଇ ବ୍ରାହ୍ମଣକୁ ମାଇଲେ
ପାତକୀ ନୁହଇକି କହ ତାହା ଭଲେ ।
ସେହିରୂପେ ଅନାଶ୍ରମରେ ଥାଇ ଜନ
ନ ତରଇ କି ଆହେ ଦେଲେ ଗୋରୁ ଦାନ ।
ଖାଇବା ବିନା ଆନ କଥା ଗୋଟି ତୁମ୍ଭେ
ଜାଣିଛ ବୋଲି ଏହା ଜାଣୁନାହୁଁ ଆମ୍ଭେ ।
ଇହ ପର ଦୁଇରେ ନିନ୍ଦିତ ବୃତ୍ତିକି
ଆଣୁ ତ ନାହିଁ ଜାଣ ମୋହର ମତିକି ।
ଏ କଥାଯାକ ସବୁ ବାଘ ଛପି କରି
ଶୁଣୁଥିଲା କର୍ଣ୍ଣ ଦୁଇକି ଦେଇ ଡେରି ।
ମନେ କଲା ଏହି ବିଲୁଆଟି ଧାର୍ମିକ
ଆଜୁ ଏହାକୁ ମୁଁ କରିବି ମୋର ଲୋକ ।
ଏତେ ବୋଲି ବାଘ ଡାକିଲା ବିଲୁଆକୁ
ଆସ ମୋର ସଙ୍ଗେ ହେ ବୁଲିବା ବନକୁ ।
କେବଳ କହୁଛି ମୁଁ ମୃଦୁ କହୁଥିବ
ନୋହିଲେ ଲୋକଙ୍କର ଶଙ୍କା ଉପୁଜିବ ।

ବିଲୁଆ ବାଘଜାତି ବୋଇଲା ଯେ ତୁହେଁ
ଆମ୍ଭଙ୍କୁ ଦେଖିଲେ କେ ନ ଡରିବ ଆହେ ।
ବିଲୁଆ ଶୁଣି ବାଘ ରାଜାର କଥାକୁ
କହିଲା ବଚନକୁ ଲମ୍ବାଇ ମଥାକୁ ।
ଧର୍ମ ଅର୍ଥ କାମନା କରିଅଛ ଯାହା
ବିଚାରିଲେ ଏଥିରୁ ବଡ଼ ଅଛି କାହା ।
ନ ଥିଲେ ମନ୍ତ୍ରୀ ରାଜା ରାଜ୍ୟକୁ ପାଳନା
କରି ନ ପାରଇ ହେ ବାଘ ମହାମନା ।
ତୁମ୍ଭେ ଯାହା ମୋତେ ବୋଲୁଛ ପାଖେ ରହ
ରହିବାକୁ ମୋର ତ ହେଉନାହିଁ ସ୍ନେହ ।
ଦୁଃଖ ସୁଖ ଦୁଇ ସମାନ ମୋର ଅଛି
ତୁମ୍ଭ ସଙ୍ଗେ କେତେ ବୁଲିବି କଣ୍ଟାବାଟେ ।
ମୁହିଁତ ତୁମ୍ଭ ଆଗେ କହୁଥିବି ଧର୍ମ
ତୁମ୍ଭ ଜାତି ଲୋକେ ପାଞ୍ଚିବେ ପାପକର୍ମ ।
ମୋର ନାମରେ ନିତି ତୁମ୍ଭ ଆଗେ ଖଟ
କହି କହି ଶେଷରେ ଛଡ଼ାଇବେ ମଣ୍ଡ ।
ନିଶ୍ଚିନ୍ତ ହୋଇ ଏବେ ବନରେ ବୁଲୁଛି
ମୋର ମନକୁ ଯାହା ଆସୁଛି ଖାଉଛି ।
ତୁମ୍ଭ ତୁଲେ ଥିଲେ ତୁମ୍ଭଙ୍କୁ ସ୍ତୁତି କରି
ନ କଲେ କଥା ତୁମ୍ଭେ ପକାଇବ ମାରି ।
ସୁଖ ହୋଇଲେ ପାଣି ପିଇଣ ରହିବି
ଦୁଃଖ ହେଲେ ପିଠା ଖାଇଲେ ନ ରହିବି ।
ତୁମ୍ଭେ ଯେବେ ମୋହର କହିବା କଥାକୁ
ଘେନିବ ତେବେ ଯିବି ମୁଁ ତୁମ୍ଭ ପାଖକୁ ।
ବାଘ ବୋଇଲା ହେ କି ଭାବୁଅଛ ମନେ
ବିଲୁଆ ତାହା ମୋତେ କହ ତ ବଚନେ ।
ବିଲୁଆ ବୋଇଲା ମୁଁ ତୁମ୍ଭ ମନ୍ତ୍ରୀ ହେବି
ଏକାନ୍ତରେ ତୁମ୍ଭଙ୍କୁ କଥା ଶିଖାଇବି ।
ମୁଁ ଯାହା ବୋଲିବି ତାହା ତୁମ୍ଭେ କରୁଥିବ
ଆନ ବାଘଙ୍କର କଥାକୁ ନ ଘେନିବ ।
ବାଘମାନେ ହୋଇଲେ ତୁମ୍ଭଠାରେ ଦୋଷୀ
ତା ମୋତେ ନ ପୁଚ୍ଛିବ ଏକାନ୍ତରେ ବସି ।
ମୋହ ତୁଲେ ବିଚାର କରିଣ ବାଘଙ୍କୁ
ନ ମାରିବ ଏତେକ କହୁଛି ତୁମ୍ଭଙ୍କୁ ।
ମୋ ପାଖରେ ଅଛନ୍ତି ଯେତେକ ବିଲୁଆ
ତାଙ୍କୁ ନ ମାରିବ କ୍ରୋଧରେ ହୋଇ ନିଆଁ ।

ଏହା ଶୁଣିଣ ବାଘ ହୋଇ ହସ ହସ
କରିବ ତାହା ବୋଲି ଆଉଁସିଣ ନଖ ।
ବାଘର ବିଲୁଆର ଠାରେ ସ୍ନେହ ଦେଖି
ଆନ ବାଘପାଳ ହୋଇଲେ ମହାଦୁଃଖୀ ।
ମନେ କଲେ ଆମ୍ଭର ବାଘରାଜାଟାକୁ
ବିଲୁଆ ଡାକ ଯେ ଶିଖାଏ ବିଚାରକୁ ।
ଏଥିରୁ କେଉଁ କଥା ଅଭାଗ୍ୟ ଆମ୍ଭର
ହୋଇବା ପାଇଁ ଅଛି ଆଉ ମର୍ତ୍ତ୍ୟପୁର ।
ଏହି ରୂପରେ ବାଘେ ବିଚାର ଛିଣ୍ଡାଇ
ବିଲୁଆ ତୁଲେ ସଖା ସର୍ବେ ହେଲେ ଯାଇ ।
ବିଲୁଆକୁ ମଡ଼ାମାନଙ୍କ ଅଳଙ୍କାର
ଯାହା ଥିଲା ତାହାକୁ ଦେଲେ ଖରତର ।
ଏ ବାହାରେ ବସ୍ତ୍ରମାନ ଯା ରଖିଥିଲେ
ନଷ୍ଟ ଭାଇ ବିଲୁଆ ବୋଲିକରି ଦେଲେ ।
ବିଲୁଆ ସେହି ଅଳଙ୍କାର ବସ୍ତ୍ର ପାଇ ।
ବାଘଦରି ନିକଟରେ ରଖିଲା ତା ନେଇ ।
ବିଲୁଆ ଅଟଇ ତ ଜାଣିବାରେ ସାର
ଧର୍ମରୁ ତାର ବୁଦ୍ଧି ନୋହିଲା ଅନ୍ତର ।
ବାଘେ ତ ବିଲୁଆର ଜାଣି ଧର୍ମ କଥା
ଏ ଘେନି ହୃଦୟରେ ପାଇ ମହାବ୍ୟଥା ।
ବାଘରଜା ଖାଇବ ମାଉଁସ ଆଣିଲେ
ବିଲୁଆ ରହିଥିବା ଦରିରେ ରଖିଲେ ।
ବାଘରାଜା ବୁଲି କ୍ଷୁଧାରେ ଆର୍ତ୍ତ ହୋଇ
ବସା ଦରିରେ ବସିଲେକ ଶ୍ରମ ପାଇ
ଦେଖିଲା ତହିଁ ନାହିଁ ଖାଇଲା ମାଉଁସ ।
କ୍ରୋଧରେ ବାଘରଜା କଲା ମହାରୋଷ
ସମୀପକୁ ବାଘମାନଙ୍କୁ ଡକାଇଲା
ମୋ ମାଉଁସ କେ ନେଇ ଖାଇଲା ବୋଇଲା ।
ବାଘ ବୋଲେ ଆହେ ଆଗୁଁ ତ ବୁଝୁଛ
ଏତେବେଳେ କମ୍ପାଇଁ କ୍ରୋଧ କରୁଅଛ ।
ବିଲୁଆଟାଏ ଆଣି ରଖିଅଛ ପାଖେ
ସେ ନେଉଛି ମାଂସ ଖାଇବ ବୋଲି ସୁଖେ ।
ବାଘ ତ ହୋଇଥିଲା କ୍ରୋଧରେ ଆତୁର
ବିଲୁଆଠାରେ କ୍ରୋଧ ହୋଇଲା ତାହାର ।
ବାଘ ମନ ଜାଣି ତା ପାଖ ବାଘଗଣ
କହିଲେ ବିଲୁଆ ନାମରେ ଦୋଷମାନ ।

ବଲୁଆ ଥିବା ଦଣ୍ଡିରେ ଯେ ମାଉଁସ
ରଖିଥିଲେ ତା ଆଣି ଦେଲେ ବାଘ ପାଶ ।
ବଲୁଆ ମାଂସ ନେଲା ବୋଲି ମନେ କରି
ବାଘକୁ ବୋଇଲା ରେ ଆଣ ତାକୁ ମାରି ।
ବାଘମାତା ତା ଶୁଣି ବୋଇଲା ରେ ବାବୁ
ଏ ବାଘ ଚୋର ଧର୍ମ ବୁଡ଼ାଇବେ ସବୁ ।
ବଲୁଆ ପରି ଭଲ ଲୋକ କେହି ନାହିଁ
ମନରେ ବାବୁ ତାକୁ ନ ଗଣରେ ତୁହି ।
ମୁନିମାନେ ବନରେ ଫଳ ମୂଳ ଖାଇ
ତପ କରୁଛନ୍ତି ଯାହାତେ ଦେଖୁଥାଇଁ ।
ତାହାଙ୍କୁ ପାପୀ ଲୋକେ ଦେଇ ଅପବାଦ
ହୃଦୟରେ ନିତ ଲଭୁଥାନ୍ତି ପ୍ରମୋଦ ।
ଯେଉଁ ମାନେ ବ୍ରତ କରିଣ ନ ପାରନ୍ତି
ବ୍ରତୀଙ୍କି ଦେଖିଲେ ସେ ଭଙ୍ଗୀ କରୁଥାନ୍ତି
ନ ପଢ଼ିଥିବା ଲୋକେ ପଢ଼ିବା ଲୋକଙ୍କୁ
ପରସ୍ପରନ୍ତି ଇଙ୍ଗିତ କରିଣ କଥାକୁ ।
ଦରିଦ୍ରମାନେ ଧନୀ ଲୋକ ଧନ ଦେଖି
ଦ୍ୱେଷ କରି ମନେ ହୁଅନ୍ତି ମହାଦୁଖୀ ।
ବିରୂପା ସ୍ୱରୂପାକୁ କରୁଥାଏ ଦ୍ୱେଷ
ଲଭିବ ବୋଲି କରି ପତିର ମୁହାଁସ ।
ଲୋକର ଭାବ ନାନାବିଧ ଦେଖାଯାଏ
ପରୀକ୍ଷା କରିବା ଉଚିତ ସେ ବିଷୟେ ।
ଅବାଙ୍ଗ୍ଲୁଖ କଟାହ ପରପ୍ରେ ଆକାଶ
ଖଦ୍ୟୋତ ଅଗ୍ନି ପରି ହେଉଅଛୁ ଦୃଶ୍ୟ ।
ବୁଝିଲା ହେଲକୁ ସେ ଅଟଇ ଅନ୍ୟଥା
ଏ ଘେନ ଭାବ ଥରେ ବୋଲୁଛି ଯେ କଥା ।
ଆପଣାର ଲୋକକୁ ନାଶ କରିବାକୁ
କଷ୍ଟ ନୋହେ ପ୍ରଭୁତ୍ୱ ଥିବାର ଲୋକକୁ ।
ଏହି ସକାଶୁ ତୋତେ କହୁଛି ବଲୁଆ
ଦୋଷ ଘେନି କ୍ରୋଧରେ ନୁହ ବାବୁ ନଆଁ ।
ପର ବୋଲେ ଲୋକକୁ କରଇ ଯେ ନାଶ
ତା ବେକରେ ନିକଟେ ଲଗେ କାଳ ପାଶ ।
ଏ ରୂପେ ବାଘମାତା ବାଘେ କହୁଥିଲା
ଏହିକାଳେ ବଲୁଆ ଗୋଟିଏ ଅଇଲା ।
ବୋଇଲା ବଲୁଆଙ୍କୁ ମିଛେ ସବୁ ବାଘ
କରୁଛନ୍ତି ରଜା ତୁମ୍ଭଙ୍କୁ କ୍ରୋଧ ସଙ୍ଗ ।

ମାତାଠାରୁ ବଲୁଆଠାରୁ ବାଘ ଶୁଣି
ବଲୁଆଠାରୁ ଛାଡ଼ିଦେଲା କ୍ରୋଧଶ୍ରେଣୀ ।
ବଲୁଆକୁ ପାଖକୁ ଡ଼କାଇ ଆଣିଲା
ମୋ ଦୋଷ କ୍ଷମାକର ବୋଲିଣ ବୋଇଲା ।
ବଲୁଆ କହେ ମୁଁ ନିର୍ଦ୍ଦୋଷ ଦୋଷୀ ହୋଇ
ଥିଲି ଧର୍ମବଳେ ଜୀଇଲି ମିନା ମୁହିଁ ।
ଯେବେ ତୁମ୍ଭ ପାଶରେ ଥିବି ମୁଁ ରାଜନ
ବିନା ଦୋଷେ ତ ତୁମ୍ଭେ ନେବ ମୋ ଜୀବନ ।
ଏବେ ମୁଁ ଯାଉଅଛି ମୋହର ଘରକୁ
ଆଗ୍ରହ ନ କର ହେ ମୋତେ ରଖିବାକୁ ।
ଦିବ୍ୟ ପଦାର୍ଥେ ଯେବେ ମିଶିଥାଏ ବିଷ
ତା କଲେ ଗ୍ରାସ ଲୋକେ ନୋହିବ କି ନାଶ ।
ଚନ୍ଦନ ବୃକ୍ଷେ ସାପ ରହିଥିଲା ପରି
ତୁମ୍ଭ ପାଶେ ମନ୍ତ୍ରୀ ଅଟନ୍ତି ଦଣ୍ଡଧାରୀ ।
ବାଘ ବୋଇଲା ମୁହିଁ ନ ଜାଣିଲି ଯେବେ
ତା କ୍ଷମାକରି ଥରେ କହୁଅଛି ଏବେ ।
ବଲୁଆ ଏହା ଶୁଣି ନୟନୁ ଲୋତକ
ପକାଇଣ ବୋଇଲା ହେ ବାଘନାୟକ ।
ତୁମ୍ଭ ଅନ୍ନ ଖାଇ ମୁଁ ହୋଇଥିଲି ସୁଖୀ
ତୁମ୍ଭର ଦୋଷେ ଏବେ ଯାଉଛି ଉପେକ୍ଷି ।
ଏହିରୂପେ ବାଘକୁ କହିଣ ଅନେକ
ବଲୁଆ ବାହାରିଲା କାନ୍ଦି ସକାସକ ।
ବାଘର ସ୍ନେହେ ଅନଶନ ବ୍ରତ କଲା
ଦେହକୁ ଛାଡ଼ି ସ୍ୱର୍ଗପୁରରେ ବସିଲା ।

---

## ଉଷ୍ଟ୍ରସମ୍ବାଦ

ଯୁଧିଷ୍ଠି ବୋଇଲେ ନୃପତି କେଉଁ କଥା
କଲେ ସୁଖୀ ହୋଏ ଖ୍ୟାତ ମହାରଥା ।
ସେହି କଥାକୁ ଶୁଣିବାକୁ ମୋର ମନ
ହେଉଅଛି ହେ ତାହା ମୋ ଆଗେ ବଖାଣ ।
ଭୀଷ୍ମ ବୋଇଲେ ଆହେ କାର୍ଯ୍ୟର ନିଷ୍ଠିୟ
କହିବା ଶୁଣ ପାଣ୍ଡୁନୃପତି-ତନୟ ।
ଏ ମହୀମଣ୍ଡଳରେ ହୋଇ ନରଗଣ
ନ କରିବଟି ଉଷ୍ଟ ପରି ଆଚରଣ ।
ଯୁଧିଷ୍ଠିର ବୋଇଲେ ଉଷ୍ଟ କିସ କଲା
କହିବା ହେଉ ତାହା ଗଙ୍ଗାଦେବୀ ବଳା ।

ଭୀଷ୍ମ ବୋଇଲେ ଆହେ ସତ୍ୟଯୁଗେ ଜାତ—
ସ୍ୱର ହୋଇଣ ଉଷ୍ଟ ଜନମିଲା କ୍ଷିତ ।
ଏ ସକାଶୁଁ ବନମଧ୍ୟରେ ସେ ରହିଲା
ତପ କରି ପିତାମହଙ୍କୁ ତୋଷ କଲା ।
ବ୍ରହ୍ମା ଆସିଣ ବର ଦେବାକାଳେ ଉଷ୍ଟ
ମାଗିଲା ବର ତାଙ୍କୁ ଶର୍ଙ୍କୀକରି ମୋଟ ।
ଆପଣ ଯେବେ ମୋତେ ବର ଦେବା ହେବ
ମ୍ବୁଗୁଛି ବେକ ଶତ ଯୋଜନ ବଢ଼ିବ ।
ବ୍ରହ୍ମା ବୋଇଲେ ରେ ମାଗିଲୁ ମୋତେ ବର
ଯେରୂପେ ସେ ରୂପରେ ବଢ଼ୁ ବେକ ତୋର ।
ଉଷ୍ଟ ବର ପାଇ ବଳରେ ଗର୍ବା ହୋଇ ।
ବସିକରି ଖାଇଲା ବେକକୁ ଲମ୍ବାଇ ।
ଦିନେ ପାଣିପବନ ଭୟରେ ବେକକୁ
ପୂରାଇଲା ସେ ଉଷ୍ଟ ଦରି ଭିତରକୁ ।
ବିଲୁଆ ଘରଯାକୁ ଯେନ ଦଇବରେ
ଆସି ସେ ଦରିରେ ପଶିଲା କ୍ଷୁଧାର୍ତ୍ତିରେ ।
ଦେଖିଲା ମୋଡ଼ିଣ ପଡ଼ିଛି ଉଷ୍ଟ ବେକ
ଖାଇଲା ତାହା ତୋଷ ହୋଇଣ ଅଧିକ ।
ଉଷ୍ଟ ତା ଜାଣିପାରି ବେକ ଯାକୋଡ଼ାଇ
ରଖିଲା ତେବେ ସେ ବିଲୁଆ ଦେଲା ଖାଇ ।
ସେ ସକାଶୁଁ ସେ ଉଷ୍ଟ ପାଇ ମହାପୀଡ଼ା
ଛାଡ଼ିଦେଲା ପ୍ରାଣକୁ ଧରି ହୃଦେ ବ୍ରୀଡ଼ା ।
ବିଲୁଆ ବିଲୁଆଣୀ ତାକୁ ଖାଇ ସାରି
ବରଷା ଶେଷ ଦେଖି ଦରିରୁ ବାହାରି ।
ଦରି ମୁହଁରେ ରହି ବିଲୁଆ ବାପୁଡ଼ା
ଦେହର ପାଣିଯାକ ପକାଇଲା ଝାଡ଼ି ।
ହେ ଯୁଧିଷ୍ଠିର ରଜା ଉଷ୍ଟ ପରି ହେଜା
ଯେ କରୁଛି କାଳଟି ଶିମ୍ୱୁଛି ତା ରଜା ।
ତୁମ୍ଭଙ୍କୁ କହୁଛି ହେଲା ତ ମହୀପାଳ
ସଂଯତ ହୋଇକରି ପରଜାଙ୍କୁ ପାଳ ।
ବୁଦ୍ଧି ଥିବା ଲୋକର ସବୁବେଳେ ଜୟ
ଜାଣ ଯୁଧିଷ୍ଠିର ହେଉଅଛି ଉଦୟ ।
ବୁଦ୍ଧି ମୂଳ କର୍ମ ଉତ୍ତମ, ବାହୁବଳ—
କର୍ମ ଅଟେ ମଧ୍ୟମ ଆହେ ନରପାଳ ।
ଯାଇ ଆସି ଘର ବହିବା ଆଦି କର୍ମ
ଜଘନ୍ୟ ଅଟଇ ହେ ପାଣ୍ଡବ-ନରୋତ୍ତମ ।
ମନ୍ତ୍ରଣା ଗୁପ୍ତ କରି କାର୍ଯ୍ୟ କଲେ ରାଜ୍ୟ
କପଟିକ ଯେହ୍ନେ କଳରେ କଣାଯାଏ ।
ଯେଉଁ ରାଜନ ହୋଇ ସହାୟ-ସମ୍ପନ୍ନ
ପରୀକ୍ଷାରେ କାର୍ଯ୍ୟ କରନ୍ତି ସମ୍ପାଦନ ।
ଇହଲୋକେ ତାହାଙ୍କ ଅର୍ଥ ସମ୍ପଦାୟ
ବର୍ତ୍ତମାନ ରହେ ହେ ପାଣ୍ଡୁଙ୍କ ତନୟ ।
ସାଧୁମାନଙ୍କର ସେ ମାର୍ଗକୁ ତୁମ୍ଭଙ୍କୁ
କହିଲି କରି ସେହିପରି କର୍ମକୁ ।

—*—

## ସାଗର ଓ ନଦୀଗଣ ସମ୍ବାଦ

ଯୁଧିଷ୍ଠିର ବୋଇଲେ ରଜା ରାଜ୍ୟେ ଥିବ
ଶତ୍ରୁ ବଳୀୟାନ ବୋଇଲେ କି କରିବ ।
ଭୀଷ୍ମ ବୋଇଲେ ଆହେ ସେ କଥା ତୁମ୍ଭଙ୍କୁ
କହିବା ଏବେ ଶୁଣ ଦେଇଣ ମନକୁ ।
ସମୁଦ୍ର ଦିନେ ହୃଦେ ସଂଶୟକୁ ଧରି
ପଚାରିଲେ ନଦୀ ନଦକୁ ଡାକ କରି ।
ସବୁ ବୃକ୍ଷେ ତୁମ୍ଭେ ତ ସ୍ରୋତ ଯେନ ଆସେ
ପାଣି ବେଗୁନଆଁ କାହିଁପାଇଁ ନ ଆସେ ।
ତୁମ୍ଭର କୂଳରେ ତ ହୋଇଛି ସେ ଜାତ
ଏଥିର ଯେ କାରଣ ତା ମୋତେ କହତ ।
ଗଙ୍ଗା ବୋଇଲେ ଆହେ ପଚାରୁଛ ଯାହା ।
କହିବି ମୁଁ ସମୁଦ୍ର ବସି ଶୁଣ ତାହା
ପାଣି ବେଗୁନଆଁ ଆମ୍ଭର ପ୍ରବାହକୁ
ଡରି କରି ଯେ ଲଇଁ ପଡ଼ଇ ତଳକୁ ।
ଆଉ ଗଛମାନେ ନ ଲଇଁବାରୁ ଆମ୍ଭେ
ଯେନ ଆସୁଁ ତାଙ୍କୁ କି ପୁଚ୍ଛୁଅଛ ତୁମ୍ଭେ ।
ହେ ଯୁଧିଷ୍ଠିର ରଜା ବଳୀୟାର ଜନ—
ମାନଙ୍କୁ ଯେ ନମ୍ରରେ ନ କହେ ବଚନ ।
ସ୍ୱଇଚ୍ଛାରେ ତାହାର ନାଶ ଲୋଡ଼ି ଆଣି
ମରଇ କହିବାକୁ ନାହିଁ ଏଥି ବାଣୀ ।

—*—

ଯୁଧିଷ୍ଠିର ବୋଇଲେ ଶିକ୍ଷଣ ମୂର୍ଖଲୋକ
ତର୍ଜନା କଲେ ମୃଦୁ-ପଣ୍ଡିତ ଆତଙ୍କ ।
କରି ବ୍ୟବହାର କି ତା ମୋତେ ବତାଇ
କହ ତ ହେ ବିଚକ୍ଷଣ ଙ୍କର ଭାଇ ।

ଭୀଷ୍ମ ବୋଇଲେ ପଣ୍ଡିତ ମୃଦୁ ହେବ
ତୀକ୍ଷଣ ମୂର୍ଖଙ୍କର ଯେ ବଚନ ସହିବ ।
କ୍ରୋଧ ହେବା ଲୋକ ତା ସୁଖେ ନାଶ ଯାଏ
ସହିବାର ଲୋକଟି ବଡ଼ ସେ ବୋଲାଏ ।
ଟେଣ୍ଟୁଆ ଚିତ ହୋଇ ଶୋଇ ଗୋଡ଼ ଟେକ
ମରୁଥାଏ ନିଶିଯାକରେ ଡାକ ଡ.କ ।
ତହିଁକି କେଉଁ ଲୋକ ହୁଏ କି ଉତ୍ତର
ସେହିରୂପେ ଏ କଥାଯାକ ମନେ କର ।
ମୂର୍ଖଲୋକ ପ୍ରଶଂସା ନିନ୍ଦାକୁ ପଣ୍ଡିତ
ନ ବିଚାର ସହୁଥିବଟି ଅବିରତ ।
ବନ ମଧ୍ୟରେ କାକ ଡାକ ଦେଲାପରି
ସ୍ତୁତି ନିନ୍ଦା ବଚନ ଅଟଇ ତାହାର ।
ଜାଣିବା ଜନଙ୍କୁ ଯେ କରେ ଧର୍ଷଣା
ଲେଖନ୍ତି ଜନେ ତା ଜନ୍ମ କର ଊଣା ।
ଆଗେ ବନ୍ଧ ପଛେ ନଳା ଯେହ୍ନ କରଇ
କୁକୁର ପର ଜାଣ ବୁଦ୍ଧି ତା ଅଟଇ ।
ଏରୂପ ଲୋକକୁ ଅଖାଦ୍ୟଦ୍ରବ୍ୟ ପରି
ଛାଡ଼ିବ ପାଖରେ ନ ରଖି ଦଣ୍ଡଧାରୀ ।
ସର୍ପ ଦେହରେ ଫଣା ଲୁପିଥିଲା ପ୍ରାୟେ
ଲୁପିଥିବା ଦୋଷ ବେଶରେ ଜଣାଯାଏ ।
ଏହା ତ ମୋଠାରୁ ଶୁଣିଲ ଯୁଧିଷ୍ଠିର
ମୂର୍ଖଙ୍କ କହିବା କଥାକୁ କର ଦୂର ।

—୦—

## କୁକୁର ସମ୍ବାଦ

ଯୁଧିଷ୍ଠିର ବୋଇଲେ ଭୀଷ୍ମ ମହାରଥୀ
କହ ତ ମୋତେ ଏବେ ପୁଚ୍ଛିବି ଯେ କଥା ।
ରାଜା କୁଳ ଦୁହିଁଙ୍କ କଥାକୁ ଆସିବ
ପୁଣ ପୌରାଙ୍କ ବୃଦ୍ଧି କି କରାଇବ ।
ପିଇବା ଖାଇବାକୁ ହେଉଥିବ ହିତ
ଏରୂପେ କେଉଁ କଥା ଅଛି ଏ ଜଗତ ।
ଲଙ୍କା ଶଙ୍କୁ ଯେବେ ବିପତ୍ତି ପ୍ରାପ୍ତ ହେଲେ
କି ରୂପେ ପ୍ରଜା ଛାଡ଼ି ରହିବ ସେ ଭଲେ ।
ଆପଣ ଜ୍ଞାନେ ବୃହସ୍ପତିଙ୍କ ସମାନ
କହିବ ମୋତେ ପଛେ ଏତେ କଥାମାନ ।
ଆଗ ମୋତେ କହିବା ହେଉ ପିତାମହ
ଏହି କଥାଟିରେ ମୋ ବଳଅଛି ସ୍ନେହ ।

ଭୃତ୍ୟର ବିନା ରାଜ୍ୟ ପାଳନା ତ ନୋହେ
କି ଭୃତ୍ୟ ରଖିଲେ ନ ନଷ୍ଟେ ରାଜା ମୋହେ ।
ଭୀଷ୍ମ ବୋଇଲେ ଆହେ ଉତ୍ତମ ଭୃତ୍ୟଙ୍କୁ
ରଖିଥିବା ରାଜା କରଣ ଯତନକୁ ।
ଯାହାର ଭୃତ୍ୟଗଣ କୋବିଦ କୁଳୀନ ।
ହିତୈଷୀ ରାଜ୍ୟ ଫଳ ଭୁଞ୍ଜେ ସେ ରାଜନ ।
ଯାହାର ମନ୍ତ୍ରୀଗଣ କୁଳୀନ ଅଭେଦ୍ୟ
କାଳଜ୍ଞ ସାଧୁସଙ୍ଗ ଜ୍ଞାନରେ କୋବିଦ ।
ଅନାଗତ ବିଧାତା ଗଣକୁ ନ ଶୋଚେ
ରାଜ୍ୟର ଫଳ ଭୋଗ କରଇ ସେ ନିଶ୍ଚେ ।
ଯେଉଁ ଦେଶ ପ୍ରଜାଏ ନୁହନ୍ତି ଆରତ ।
ସେ ଦେଶ ରାଜାକୁ ବୋଲନ୍ତି ଭାଗ୍ୟବନ୍ତ ।
ଯେଉଁ ରାଜା ଭଣ୍ଡାର ଘରକୁ ପାଳନା
ଲୋକେ କରୁଥାନ୍ତି ଉତ୍ତମେ ସେ ଗଣନା ।
ଅର୍ଥୀ ପ୍ରତ୍ୟର୍ଥୀଙ୍କର ବିବାଦ ନିର୍ଣ୍ଣୟ
ଯା ରାଜ୍ୟେ ହୁଏ ତାର ଧରମ ଉଦୟ ।
ଷଡ୍‌ବର୍ଗ ପ୍ରତିଗ୍ରହ କରିବା ନରେଶ
ଧର୍ମଫଳ ଭୋଗନ୍ତେ ଲଭନ୍ତି ସନ୍ତୋଷ ।
ଋଷିମାନେ ପର୍ଶୁରାମଙ୍କୁ ଯାହା କହି
ଅଛନ୍ତି ତା କହିବା ଶୁଣ ମନଦେଇ ।
ବନରେ ଋଷି ଜଣେ ତପ କରୁଥିଲେ
ତାଙ୍କର ଭଲପଣ ପଶୁଏ ଜାଣିଲେ ।
ଏ ସକାଶୁଁ ତାଙ୍କ ପାଶରେ ହୋଇ ଗୋଟି
ଖେଳୁଥାନ୍ତି ଆନନ୍ଦେ ଯେହ୍ନ ବେଢାବେଢୀ ।
ସିଂହ ବାଘ ଭାଲୁ ଯେ ଆଦି ପଶୁମାନେ
ଋଷିଙ୍କି ସମ୍ମୁଖି ଯାଆନ୍ତି ଯେଖା ସ୍ଥାନେ ।
କୁକୁରଟାଏ ତାଙ୍କ ଗୁଣ-ରସେ ବୁଡ଼ି
ରହିଲା ଅହର୍ନିଶ ସମୀପରେ ପଡ଼ି ।
ଦିନେ ସେ କୁକୁରକୁ ଖାଇବା ଲାଳସେ
ବାଘେକ ଆସି ମିଳିଗଲା ତାର ପାଶେ ।
କୁକୁର ତାହା ଜାଣି କହିଲା ଋଷିଙ୍କି
ଯିବା ମୋ କାଳ ହେଲା ଯମଙ୍କ କଟକ ।
ଏଥିକି ଯେ ଉପାୟ କର ଋଷିବର
ନୋହିଲେ ରକ୍ଷା ନାହିଁ ଜାଣଟି ମୋହର ।
ମୁନି ତାହା ଶୁଣି ହୃଦରେ ଦୟା ବହି
ବୋଇଲେ ଥାଅ ମୋର ପାଖେ ବାଘ ହୋଇ

ସେକ୍ଷଣି କୁକୁର ଧଇଲା ବାଘ ରୂପ
ତାହା ଦେଖି ବାଘ ଭାବିଲା ବହୁ ତାପ ।
ହାତୀ ଗୋଟାଏ ଆସି କୁକୁର ବାଘକୁ
ମାରିବାକୁ ଧାଇଁଲା ଧରିଣ କ୍ରୋଧକୁ ।
ବାଘ ସେ ହାତୀ ଭୟେ ଲଭିଣ ତ୍ରାସକୁ
ଋଷିଙ୍କ ପୁଣି ହେଲା ଶରଣାଗତକୁ ।
ଋଷି ଦୟା ବହି ସେ ବାଘେ କଲେ ହାତୀ
ଲେଉଟିଲା ସେ ହାତୀ ହୋଇ ତହୁଁ ବ୍ୟର୍ଥୀ ।
କେତେକ ଦିନ ଅନ୍ତେ ସିଂହ ସେହିଠାକୁ
ଆସି ଧାଇଁଲା ସେ ହାତୀକ ମାରିବାକୁ ।
ପୂର୍ବ ପରି ମୁନିଙ୍କ କରନ୍ତେ ଗୁହାରି
ମୁନି କରିଲେ ସେ ହାତୀକ ସିଂହପରି ।
ସେ ଦେଖି ଆପଣା ସ୍ୱରୂପେ ସେ ହାତୀକ
ଭାବିଲା ମହାଭୟ ଧରାଇ ମନକ ।
ଅଷ୍ଟପାଦ ଶରଭ ମହାବଳବନ୍ତା
ଆସିଲା ସିଂହଠାକୁ ହୋଇ ସିଂହ-ହନ୍ତା ।
ମୁନି ସେ ଶରଭର ଆସିବାର ଦେଖି
ଶରଭ କଲେ ସେ ସିଂହକୁ ହୋଇ ଦୁଃଖୀ ।
ଶରଭ ସେ ସକାଶୁ ପାଇ ମହାତ୍ରାସ
ପଳାଇଗଲା କ୍ରୋଧ ନ ରଖି ମାନସ ।
କୁକୁର ତ ଶରଭ ରୂପକୁ ଧଇଲା
ସବୁ ପ୍ରାଣୀଠାରେ ସେ ବଳୁ ହିଂସା କଲା ।
ରକତ ମାଉଁସରେ ହୋଇ ଅନୁରାଗୀ
ମୁନିଙ୍କ ଖାଇବାକୁ ହେଲା ମହାରାଗୀ ।
ମୁନି ତାହା ଦେଖିଣ ହୃଦୟରେ ହସି
ବୋଇଲେ ଶରଭ ତୁ ଅଟୁ ବଡ଼ ଦୋଷୀ ।
କୁକୁର ହୋଇ ଆଗ ମୋ ପାଶରେ ଥିଲୁ
ମୋହ ପ୍ରସନ୍ନେ ସିନା ଶରଭ ହୋଇଲୁ ।
ଏବେ ମୋତେ ଧାଇଁଛୁ କରିବାକୁ ନାଶ
ତୋ ଦୋଷ ନାହିଁ, ସବୁ ଏ ମୋହର ଦୋଷ
ପୂର୍ବଜନ୍ମ ସ୍ୱରୂପ ଧରି ଏବେ ତୁହି
ରହ ତୋର ଏ ଗର୍ବ ଯାଉ ଚୂର୍ଣ୍ଣ ହୋଇ ।
ଏହିରୂପେ ସେ ଋଷି ବୋଇଲନ୍ତି ବଚନ
ସେହିକ୍ଷଣି ଶରଭ ହୋଇଗଲା ଶ୍ୱାନ ।
ନିଜ ସ୍ୱରୂପକୁ ପାଆନ୍ତେ କୁକୁରଟି
ଋଷିଙ୍କ ଗୋଡ଼ ଧରି ଭୂମେ ଗଲା ଲୋଟି ।

ତାହା ଦେଖି ସେ ଋଷି ଅତି କ୍ରୋଧ ହୋଇ
ହୁଙ୍କାରଘାତେ ତାକୁ ଦେଲେକ ଉଡ଼ାଇ ।
ଏହି କଥାକୁ ଜାଣି ରାଜାମାନେ ଲୋକ
ବଡ଼ କରିବାରେ ରଖିଣ ଥିବେ ଧକ ।
ଲୋକ ଗୁଣ ନ ବୁଝି ନ କରିବ ମନ୍ତ୍ରୀ
ଯେ କରଇ ନିକଟେ ପାଏ ସେ ବିପତ୍ତି ।
କୁଳଜ ଲୋକ ଯେବେ ମନ୍ତ୍ରୀ ହୋଇଥାଏ
ରାଜାର ବାଧ ସେ ଯେ କେବେ ନ କରାଏ ।
ଅକୁଳୀନ ଲୋକକୁ ଦେଲେ ଅଇଶ୍ୱର୍ଯ୍ୟ
ଗେଲାଇ ଭୁଲକରି କରନ୍ତି ଅକାର୍ଯ୍ୟ ।
ସତ୍ୱସ୍ଥ ସର୍ବଶାସ୍ତ୍ର ଅର୍ଥରୁ ତତ୍ତ୍ୱଜ୍ଞ
ଜିତେନ୍ଦ୍ରିୟ ସ୍ୱ ଦେଶଜ ଦକ୍ଷିଣ କୃତଜ୍ଞ ।
ତ୍ରିବର୍ଗ-ବେତ୍ତା ଲବ୍ଧ ସନ୍ତୁଷ୍ଟ କୁଳୀନ
ଉଚିତ କାର୍ଯ୍ୟକାରୀ ସୁଖ-ଦରଶନ ।
ସ୍ୱାମୀ-ମିତ୍ର-ମଙ୍ଗଳ-କାମୀ ବଳବନ୍ତ
ପୌର ଯେ ଜାନପଦ-ପ୍ରିୟ ଶାନ୍ତ ଦାନ୍ତ ।
ଦେଶ କାଳ କାର୍ଯ୍ୟରେ ଅଭିଜ୍ଞ ଅଲୁବ୍ଧ
ସରଳବାଣୀ ମିତକୁଶଳ ଅସ୍ତବ୍ଧ ।
ହସ୍ତୀ ଶିକ୍ଷା-ନିପୁଣ ତତ୍ତ୍ୱଜ୍ଞ ଶିକ୍ଷକ
ପ୍ରଗଲ୍‌ଭ ଧୀର ଅହଙ୍କାର-ବିବର୍ଜିତ ।
ହିତୈଷୀ ତୀକ୍ଷ୍ଣ ଯାହାଜ୍ଞାନ-ବିଶାରଦ
ଦେଶ କାଳ ସନ୍ଧି ବିଗ୍ରହରେ କୋବିଦ ।
ପ୍ରଗଳଭ ପ୍ରାଜ୍ଞ ଜ୍ଞାନ-ବିଜ୍ଞାନ ପାରଗ
ମନ୍ତ୍ରୀ ହେଲେ ନୋହେ ରାଜାର ଦୁଃଖ ଭୋଗ ।
ଶୁଚୀ ତୀକ୍ଷଣ ପ୍ରଜାପାଳନ-ତତପର
ପୁରୁଷକାରଜ୍ଞ ଯେ ଅନଳସ ଧୀର ।
ସାଧୁ ସ୍ୱର ଶ୍ରୋତା ଶୁଶ୍ରୁଷୁ ଶ୍ରୁତବନ୍ତ
ତର୍କ ବିତର୍କ ଜ୍ଞାତା କ୍ଷମାବନ୍ତ ।
ଭୃତ୍ୟଜନ ଅପେକ୍ଷୀ ସଂଗୃହୀତ ଜନ
ଯୁକ୍ତ କଥା କାରକ ପ୍ରସନ୍ନ ବଦନ ।
ଯୁକ୍ତଦଣ୍ଡ ମେଧାବୀ ପ୍ରିୟଭାଷୀ ଶ୍ରାନ୍ତ
ଧର୍ମାର୍ଥ କୁଶଳ ଅକ୍ରୋଧ ସୁରନେହ ।
ଏହି ରୂପରେ ରାଜା ହୋଇଲେ ମନ୍ତ୍ରୀରେ
ପ୍ରଜାଏ ନ ଧରନ୍ତି ଭୟ ହୃଦୟରେ ।
ଗୁଣଗଣଯୁତରେ ଯେହ୍ନ ବଳୀୟାର
ଯୋଦ୍ଧା ହେବ, ତାକୁ ରଖିବ ନରବର ।

ଶ୍ରୁତି ସ୍ମୃତି ଜାଣିବା ଇଥିଏ ଦୋଷ—
ବଳରେ ଯୁକ୍ତ ହେଲେ ଶତ୍ରୁକୁ ଜିଣନ୍ତି ।
ସହସ୍ର ସହସ୍ର ଉତ୍ତମ ଘୋଡ଼ା ରଖି
ନ ଥିଲେ ନ ପାରଇ ପରେ-ସଙ୍ଗେ ଯୋଝି ।
କୁକୁର ପରି ଭୃତ୍ୟମାନଙ୍କୁ କୁକୁର
ପରାଏ ରଖିବାର ଅଟଇ ବିସ୍ତର ।
ଯେଉଁ ଲୋକ କରଇ କୁକୁର ସତ୍କାର
ଆଗ ତା ମୁହଁ ଶୁଙ୍ଘିବ ସେ ଯୁଧିଷ୍ଠିର ।
ଲୋକକୁ ଅନୁରୂପ କର୍ମ ଦେଲେ ରାଜା
ଜଗତ ମଧ୍ୟେ ଜାଣ ଲଭଇ ସେ ପୂଜା ।
ବାଘକୁ ବାଘ ପରି ସିଂହେ ସିଂହପରି
ରଖିବା ଉଚିତ ପାଣ୍ଡବ-ଦଣ୍ଡଧାରୀ ।
ଦୁର୍ବୁଦ୍ଧି କ୍ଷୁଦ୍ର ମୂର୍ଖ ଲୋକକୁ ପାଖରେ
ରଖିଲେ ରାଜା ନଷ୍ଟ ହୋଇ ଦୁଃଖରେ ।
ସିଂହକୁ ରଖିଥିଲେ ସିଂହପରି କାର୍ଯ୍ୟ
ସାଧି କରୁଥାଏ ପାଣ୍ଡବ-ମହାରାଜ ।
ଏରୂପେ ବିଲୁଆ କୁକୁର ହେଲେ ଗୋଟି
ଲଭିପାରଇ ନାହିଁ ରାଜନ କାର୍ଯ୍ୟଟି ।
ପଡ଼ିଲେ କାର୍ଯ୍ୟ ଯେଉଁ ଲୋକ ଧାଇଁଯାନ୍ତି
ତାହାଙ୍କଠାରେ ରଖିଥିବ ବଡ଼ ପ୍ରୀତି ।
ହେ ରାଜା ହୋଇଥିବ ଭଣ୍ଡାର ବୃଦ୍ଧିକ
କରିବାରେ ସଦା ଦେଉଥିବ ଦୃଷ୍ଟିକ ।
ଭଣ୍ଡାରଘର ପରି କରି ଧାନଘର
ଏ ବଡ଼ ବିସ୍ତରଟି ନରବରଙ୍କର ।
ଜ୍ଞାତି ବନ୍ଧୁ ମିତ୍ର ମନ୍ତ୍ରୀକ ଯେବେ ଭୁଲେ
ସ୍ୱରକାର୍ଯ୍ୟ ରାଜା ବୁଝିବ ବସି ଭଲେ ।

— * —

## ରାଜଧର୍ମର ସାରାଂଶ

ଯୁଧିଷ୍ଠିର ବୋଇଲେ ରାଜଧର୍ମ ମୋତେ
ବିସ୍ତାରିଣ କହିବା ହେଉ ମହାମତେ ।
ଭୀଷ୍ମ ବୋଇଲେ ଯେ ହୋଇବ ନରବର
ପ୍ରଣୀଙ୍କି ପାଳିବାର ଧର୍ମ ଅଟେ ତାର ।
ଲକ୍ଷଣ ବନ୍ଧ ଧଳଖ ମଧ୍ୟସ୍ଥ ରାଜନ
ହେଲେ ଭଜନ୍ତି ପ୍ରଜା ଅହର୍ନିଶ ଜାଣ ।
ଯେଉଁ କାର୍ଯ୍ୟରେ ଯେଉଁ ଗୁଣ ହେବ ହିତ
ତାହା କରୁଥିବଟି ନୃପକୁଳ ସୁତ ।
ଆପଣା ଦୋଷକୁ ଲୁଚାଇ ହଟଘଡ଼ି
ଶତ୍ରୁ ଦୋଷଯାକକୁ ବସିଥିବ କାଢ଼ି ।
କାର୍ଯ୍ୟକୁ ବିରୋଧୀଟି ହେବ ଯେଉଁ କଥା
ସେ କଥା ନ କହି ରଖିବ ଲେଖି ପୋଥା ।
ଧର୍ମକୁ ଚାହିଁ କରି ବେଭାର କରିବ
ଧର୍ମହୀନ କେବେ ନୋହିବ ନରଦେବ ।
କ୍ରୋଧ ହର୍ଷ ଯେବେ ହେଜାର ନୋହେ ବ୍ୟର୍ଥ
ତେବେ ଜାଣ ସେ ଅର୍ଜିପାରେ ପୁରୁଷାର୍ଥ ।
ଚର ଦୃଷ୍ଟି କରି ସ୍ୱଦେଶ ପରଦେଶ
କଥା ଦେଖୁଥିବ ପ୍ରତ୍ୟହ ନରଈଶ ।
ପୁଷ୍ପମଧୁ ଭ୍ରମର ଖାଇଲା ପରାୟେ
ନିତ ଯେ ଆଣୁଥିବ କଉଡ଼ିକ ରାୟେ ।
ଧର୍ମ କାମପାଇଁ ଯେତେକ ଧନ ଦେବ
ନିତ ରାଜା ତେତେକ ସମ୍ପାଦ ରଖିବ ।
ଧୃତି ଦାକ୍ଷ ସଯମ ବୁଦ୍ଧି ତୁଷ୍ଟି ଶୌର୍ଯ୍ୟ
ଦେଶ କାଳ ବିଭାଗ ଅପ୍ରମାଦ ଧୈର୍ଯ୍ୟ ।
ଆଠକଥାମାନଙ୍କେ ଧନଟି ସମ୍ପାଦ
ପାରଇ ହେ ରାଜନ ହୋଇ ନିର୍ବିବାଦ ।
ବଳବନ୍ତ ଶତ୍ରୁ ଅସାବଧାନ ହେଲେ
ଦୁର୍ବଳ ଶତ୍ରୁ ତାକୁ ମାରଇଟି ଭଲେ ।
କାଳଜ୍ଞାତା ନୋହିଲେ ରାଜା ହୋଇବାର
ବ୍ୟର୍ଥ ଅଟଇ ଜାଣ ଆହେ ନରବର ।
ବୁଦ୍ଧିମନ୍ତ ଲୋକ ଶତ୍ରୁର ଭୁଲେ ପ୍ରୀତି
କରିଥିବ ମାରିବ ଦେଖିଲେ ବିପତ୍ତି ।
ବୁଦ୍ଧି ସକାଶୁ ହାନି ଲାଭ ପୁଣି ଜୟ
ହେଉଅଛି ଜାଣ ଆହେ ଧର୍ମଙ୍କ ତନୟ ।
ବିଦ୍ୟା ତପସ୍ୟା ଧନ ବ୍ୟବସାୟ ବିନା
କେବେହେଁ ନ ହୁଅଇ ଜାଣ ମହାମନା ।
ଲୁବ୍ଧ ଶତ୍ରୁ ହେଲେ ପଦାର୍ଥ ଦେଇ ତାକୁ
ମାରିଣ ଦେଖାଇବ ଆପଣା ଯଶକୁ ।
ଲୋଭୀ ଲୋକ ରାଜନ ନ ରଖିବ ପାଶେ
ରଖିଲେ ଯେହ୍ନ ଘନେ ଏଡ଼େ କାଳପାଶେ ।
ଯେତେ କଥା ତୁମ୍ଭଙ୍କୁ କହିଲଇଁ ମୁହିଁ
ତା ଘେନ ମନେ ଏବେ ପାଳ ଯାଇ ମହୀ ।
ଯୁଧିଷ୍ଠି ବୋଇଲେ ଦଣ୍ଡିତ ତିନଲୋକ
ତାପ କରୁଅଛି ହେ ରଥୀଙ୍କ ନାୟକ ।

ଚରାଚର ଜଗତଯାକେ ଅଛୁ ବ୍ୟାପି
ଯାହା ଯୋଗେ ସଂସାର ଜନେ ହୋନ୍ତି ସ୍ଥାପି ।
ଏ ବାହାରେ ନାମ ଅଟଇ କେସ ତା'ର
ଏହା ମୋତେ ଆଗେ କହ ତ ରଥିବର ।
ଭୀଷ୍ମ ବୋଇଲେ ଆହେ ଯା ଯୋଗେ ବେଭାର
ଚଳୁଛି, ତାକୁ ଦଣ୍ଡ ବୋଲି ମନେ କର ।
ଧର୍ମ ଅର୍ଥ କାମର ପ୍ରବର୍ତ୍ତକ ଦଣ୍ଡ
ଦଣ୍ଡ ନ ଥିଲେଟି ଟେକନ୍ତି ଜନେ ମୁଣ୍ଡ ।
ଶ୍ୟାମବର୍ଣ୍ଣ ଅନେକ ଚକ୍ଷୁ ଆଠଗୋଡ଼
ସ୍ଥିରଦାନ୍ତ ଯେ ସ୍ଥିରଭୂଜ ବଡ଼ ବଡ଼ ।
ଦୁଇ ଜିଭ ମସ୍ତକଦେଶେ ବନ୍ଧି ଜଟା
ବୋଲଏ ଦଣ୍ଡପ୍ରାଣୀଙ୍କର ଜ୍ଞାନଲୁଟା ।
ନାନାବିଧ ଆୟୁଧ ଦଣ୍ଡର ସ୍ୱରୂପ
ମୋ କହିବାରୁ ଜାଣ ଯୁଧିଷ୍ଠିର ନୃପ ।
କାହାକୁ ମାରୁଅଛୁ କାହାକୁ କାଟୁଛି
କାର ବା ଦେହେ ପୀଡ଼ା ଜାତ କରୁଅଛୁ ।
ଅସିବିଶସନ ଶ୍ରୀଗର୍ଭ ବ୍ୟବହାର
ଧରମ ଖାକ୍ଷଧର୍ମା ଶାସ୍ତ୍ର ଦୁରାଧର ।
ବ୍ରାହ୍ମଣ ମନ୍ତ୍ର ଶାସ୍ତା ବିଛୟ ସତ୍ୟଗ
ଧର୍ମପାଳ ଅସଙ୍ଗ ଅଗ୍ରଜ ନିତ୍ୟଗ ।
ସନାତନ ଯେ ରୁଦ୍ରତନୟ ଅକ୍ଷର
ଦଣ୍ଡଙ୍କର ନାମ ଏ ଶୁଣ ଯୁଧିଷ୍ଠିର ।
ବିଷ୍ଣୁ ଯଜ୍ଞ ମହାପୁରୁଷ ଦଣ୍ଡନୀତି
ନାରାୟଣ ବ୍ରହ୍ମକନ୍ୟା ଯେ ସରସ୍ୱତୀ ।
ଦଣ୍ଡକୁଟି ବୋଲନ୍ତି ଯୁଧିଷ୍ଠିରରାଣ
ମୋ କହିବାରୁ ଏହା ଭଲ କରି ଜାଣ ।
ଦଇବ ପଉରୁଷ ଦୁଃଖ ସୁଖ ଭୟ
ଅଭୟ ସୌଭାଗ୍ୟ ଦୁର୍ଭାଗ୍ୟ ଜୟାଜୟ ।
ଋତୁ ମାସ ବରଷ କ୍ରୋଧ ଗୁଣାଗୁଣ
କାମାକାମ ଯେ ବଳାବଳ ପୁଣ୍ୟାପୁଣ୍ୟ ।
କାର୍ଯ୍ୟ ଅକାରଣ ଯେବେ ମୋକ୍ଷ ମୋକ୍ଷତୟ
ଶକତି ଅଶକତି ପୁଣି ବ୍ୟୟାବ୍ୟୟ ।
ଅସୂୟା ଅନସୂୟା ମୃତ୍ୟୁ ସମ ଦମ
ଅହିଂସା ଲାଭ ଆଗମ ଯେ ଅନାଗମ ।
ଅପହପା ଅନପୀହପା ହର୍ଷ ମଦ
ଅମଦ ଦମ୍ଭ ମୋହ ସମ୍ପଦ ବିପଦ ।

ବିନୟ ବିସରଗ ଲୋକାଲୋକ ମାନ
ସ୍ତମ୍ଭ ଧର୍ମାଧର୍ମ ଶବ୍ଦଶି ଖଣ୍ଡ ଦିନ ।
ଅନୃତ୍ୟ ସତ୍ୟ ଶ୍ରଦ୍ଧା ଅଶ୍ରଦ୍ଧା କ୍ଲୀବତା
ବ୍ୟବସାୟ ଅଧିକ ଖାକ୍ଷଣତା ମୃଦୁତା ।
ବିଷାବିଷ ତପସ୍ୟା ଯଜ୍ଞ ସଂଯମନ
ଆଦି ମଧ୍ୟମ ଅନ୍ତ କୃତ୍ୟ ପ୍ରପଞ୍ଚନ ।
ପ୍ରମାଦ ଅପ୍ରମାଦ ବିରୋଧୀ ବିରୋଧ
ଅର୍ଥ ଅନରଥ ପାଣ୍ଡିତ୍ୟ ତତ୍ତ୍ୱବୋଧ ।
ଦଣ୍ଡ ଏ ବହୁରୂପ ଲୋକରେ ବୋଲଏ
ମୋ କହିବାରୁ ଜାଣ ଯୁଧିଷ୍ଠିର ରାୟେ ।
ଦଣ୍ଡ ହୋଇ କଥା ନଥିଲେ ଯୁଧିଷ୍ଠିର
ମର୍ମରେ ନିତ ହେଉଥାଆନ୍ତେ ନର ।
ଦଣ୍ଡରେ ପ୍ରଜାମାନେ ହେବାରୁ ରକ୍ଷିତ
ସୁଖ ପାଉଛନ୍ତି ମହୀରେ ମହୀକ୍ଷିତ ।
ଦଣ୍ଡ ସକାଶରୁ ସକାଳୁ ଦ୍ୱିଜେ ଉଠି
ସ୍ନାନାନ୍ତେ କହନ୍ତି ପଣ୍ଡିମେ କରି ପିଠି ।
ଏ ସକାଶୁଁ ଧର୍ମ ହୁଅଇ ପ୍ରବର୍ତ୍ତନ
ଧର୍ମ ସକାଶରୁ ହୁଅଇ ଯାଗଯାକ ।
ଯାଗ ସକାଶରୁ ଇନ୍ଦ୍ର ଯେ ବନ୍ଧି ପ୍ରୀତି
ପ୍ରାଣୀଙ୍କି ନିତ ଅନ୍ନଭୋଜନ ଦିଅନ୍ତି ।
ପ୍ରଜାଏ ଅନ୍ନ ଖାଇ ତୃପ୍ତମତି ହୋଇ
ରହିଥାନ୍ତି ରାଜାର ଆଜ୍ଞାଟିକ ରହିଁ ।
ଦଣ୍ଡ ଋଷିପୁଙ୍କ ବଚନ ଆଶ୍ରେ କରି
ନିତ ଜାଗରୁକ ହୋଇଛୁ ଦଣ୍ଡଧାରୀ ।
ଗୁରୁଙ୍କୁ ହେଲେ ରାଜା ନ୍ୟାୟଦଣ୍ଡ ଦେବ
ଦୋଷ ନାହିଁ ଜାଣ ପାଣ୍ଡବ-ନରଦେବ ।
ଅଙ୍ଗ ଦେଶରେ ବସୁହୋମ ରାଜା ହେଲେ
ମୁଞ୍ଜପୃଷ୍ଠେ ଭାରିଯା ଯେନଣ ରହିଲେ ।
ମୁଞ୍ଜପୃଷ୍ଠେ ବୋଲି ମୁଁ କହିବଇଁ ଯାହା
ମେରୁର ଖଣ୍ଡେ ବୋଲି ଜାଣ ନରନାହା ।
ଦିନେ ବସୁହୋମ ରାଜାଙ୍କ ସମୀପକୁ
ଆସିଲେ ମାନ୍ଧାତା ନୃପତି ପୁଚ୍ଛିବାକୁ ।
ବସୁହୋମ ରାଜନ ମାନ୍ଧାତାଙ୍କୁ ଦେଖି
ଆଦର କରି ପୂଜା କଲେ ହୋଇ ସୁଖୀ ।

—*—

## ଦଣ୍ଡର ଉତ୍ପତ୍ତି

ଏ ଉତ୍ତରେ ପୁଚ୍ଛିଲେ କମ୍ପା ମୋହଠାରୁ
ଆସିବା ହୋଇଅଛ କହ ତା ଆମ୍ଭଙ୍କୁ ।
ମାନ୍ଧାତା ବୋଇଲେ ହେ ଗୁରୁ ଶୁଦ୍ଧ ଶାସ୍ତ୍ର—
ଯାକ ତ ହୋଇଅଛି ତୁମ୍ଭଙ୍କୁ ପ୍ରତ୍ୟକ୍ଷ ।
ଦଣ୍ଡ କେଉଁରୂପେ ହୋଇଲା ଉତପତ୍ତି
କାହିଁକି ସେ ଆଶ୍ରୟ କଲା ନରପତି ।
ଏହି କଥାମାନ ପୁଚ୍ଛିବା ପାଇଁ ମୁହିଁ ।
ଆସିଅଛି ମୋତେ ତା କହ ତ ବତାଇ ।
ବସୁହୋମ ବୋଇଲେ ପ୍ରଜା ରଖିବାକୁ
ପୂର୍ବେ ତ କୁଣଧର ନ ଦେଖି କାହାକୁ ।
ବହୁକାଳଯାଏ ମସ୍ତକେ ଗର୍ଭଠାଏ
ଧରିଲେ ପ୍ରାଣୀହିତ ହୋଇବା ଉପାୟେ ।
ସହସ୍ରେବରଷ ଅନ୍ତରେ ଦେହସାଇଁ
ଛିଙ୍କନ୍ତେ ସେ ଗର୍ଭ ପଡ଼ିଲା ତଳେ ଯାଇ ।
ଛିଙ୍କରୁ ଜାତ ହେବା ହେତୁଁ କ୍ଷୁପ ନାମ
ବହି ହୋଇଲେ ପ୍ରଜାପତି ନରୋତ୍ତମ ।
ବ୍ରହ୍ମାଙ୍କର ଯୋଗେ ଯେ ଋତ୍ୱିକ ହୋଇଲେ
କରାଇ ଯାଗ ବ୍ରହ୍ମାମନକୁ ହରିଲେ ।
ବ୍ରହ୍ମା ଯାଗ କରିବା ସମୟରେ ଦଣ୍ଡ
ନ ରହିଲା ନରେଶ ଜାଣ ହେ ବ୍ରହ୍ମାଣ୍ଡ ।
ଏହି ସକାଶୁଁ ପ୍ରାଣୀମାନେ ବୁଦ୍ଧି ବଣା
କରଣ କଲେ ଧର୍ମକଥାଯାକ ଊଣା ।
ଅମର୍ଯ୍ୟଦା ହୋଇଣ ପ୍ରବର୍ତ୍ତିଲେ କଥା
ତାହା ଦେଖି ବ୍ରହ୍ମା ଧରି ହୃଦୟେ ବ୍ୟଥା ।
ବିଷ୍ଣୁଙ୍କୁ ପୂଜା କରି ରୁଦ୍ରଙ୍କୁ କହିଲେ
କି କରିବ ଦଣ୍ଡ ତ ବାହାରିଲା ଭଲେ ।
ଶିବ ତାହା ଶୁଣିଣ ପାଇଲେ ବିସ୍ମୟ
ସରଜନା କଲେ ସେ ନୃପ ରାଜତ୍ୱ ।
ଦେବତାମାନଙ୍କେ ଇନ୍ଦ୍ରଙ୍କୁ ରାଜା କଲେ
ପିତୃଙ୍କରେ ଯମ ନରପତି ହୋଇଲେ ।
ଧନମାନଙ୍କରେ ଯେ କୁବେର ଈଶ୍ୱର
ହେଲେ ଜାଣ ଆହେ ମାନ୍ଧାତା ନରବର ।
ପର୍ବତରେ ମେରୁ ନଦୀରେ ସମୁଦ୍ର
ରାଜା କଲେ ହୋଇବା ପାଇଁ ଶିବ ଭଦ୍ର ।
ଜଳମାନଙ୍କରେ ବରୁଣ ଅଧିପତି
ହେଲେ ରୁଦ୍ରଗଣରେ ଈଶାନ ନୃପତି ।
ତେଜରେ ଅଗ୍ନି ପ୍ରାଣୀ ପ୍ରାଣ ଅଧିକାର—
ମୃତ୍ୟୁ ପାଇଲେହେ ମାନ୍ଧାତା ନୃପବର ।
ବସୁଙ୍କରେ ଜାତବେଦ ହୋଇଲେ ପତି
ବ୍ରାହ୍ମଣେ ପାଳିଲେ ବଶିଷ୍ଠ ଦ୍ୱିଜ ଯତି ।
ଗ୍ରହଙ୍କରେ ସୂର୍ଯ୍ୟ, ନକ୍ଷତ୍ରେ ନିଶାକର
ଦେବ ସୈନ୍ୟ ପାଳିଲେ କୃତ୍ତିକା କୁମର ।
କ୍ଷୁପଙ୍କୁ ପ୍ରଜାଙ୍କରେ କରି ଅଧିପତି
ଦଣ୍ଡ ସମର୍ପିଲେ ବିଷ୍ଣୁଙ୍କୁ ଉମାପତି ।
ବିଷ୍ଣୁ ଦଣ୍ଡ ଅଙ୍ଗିରଙ୍କର ଠାରେ ଦେଲେ
ଅଙ୍ଗିର ଇନ୍ଦ୍ର ମରୀଚିଙ୍କି ସମର୍ପିଲେ ।
ମରୀଚି ସେ ଦଣ୍ଡକୁ କେତେ ଦିନ ରଖି
ଭୃଗୁଙ୍କରଠାରେ ଦେଲେ ହୋଇ ଅତି ସୁଖୀ ।
ଭୃଗୁଙ୍କଠାରୁ ଋଷିଏ ସେ ଦଣ୍ଡ ପାଇ
ଦଣ୍ଡଦେଲେ ପ୍ରାଣୀମାନଙ୍କ ଦୋଷ ଚାହିଁ ।
ଋଷିଏ ପୁଣି ଦଣ୍ଡ ଦେଲେ ଲୋକପାଳେ
ଲୋକପାଳେ ଦଣ୍ଡିଲେ ପ୍ରାଣୀଙ୍କି ସେକାଳେ ।
ଲୋକପାଳଠାରୁ ଯେ କ୍ଷୁପ ଦଣ୍ଡପାଇ
ବୈବସ୍ୱତ ମନୁଙ୍କଠାରେ ଦେଲେ ନେଇ ।
ମନୁଦଣ୍ଡ ପୁତ୍ରମାନଙ୍କୁ ସମର୍ପିଲେ
ଦୋଷକୁ ଚାହିଁ ବାକୁ ଦଣ୍ଡିବ ବୋଇଲେ ।
ଏହି କ୍ରମରେ ଦଣ୍ଡି ମହୀରେ ପ୍ରବର୍ତ୍ତି
ରହିଅଛି ଜାଣ ହେ ମାନ୍ଧାତା ନୃପତି ।
ଦଣ୍ଡକୁ ଡରି ଇନ୍ଦ୍ର ନିତି ଜାଗରୁକ
ହୋଇ ପାଳୁଛନ୍ତି ନୃପତି ସ୍ୱର୍ଗଲୋକ ।
ଅଗ୍ନି ଜଳପତି ଯେ ପ୍ରଜାପତି ଧର୍ମ
ବ୍ୟବସାୟ ତେଜ ଅଉଷଧି ଉତ୍ତମ ।
ମହୀଧର ସର ନିଋତି ମହାଜ୍ୟୋତି
ବେଦ ହସ୍ତ ଶିଖ ଯେ ବ୍ରହ୍ମା ଭୂତପତି ।
ଜଶ୍ୱଦେବ ତୁଷି ଚନ୍ଦ୍ର ଦେବତାଗଣ
ଦ୍ୱିଜ କ୍ଷତ୍ରି ଚଳ ଅଚଳ ନରଗଣ ।
କ୍ରମରେ ଦଣ୍ଡ ସକାଶରୁ ଭୟ ପାଇ
ଅଛନ୍ତି ଜାଣ ହେ ଜାଗରୁକ ହୋଇ ।
ତୁମ୍ଭଙ୍କୁ କହୁଅଛି ପ୍ରଜା ପାଳି ଜନ—
ଦୋଷକୁ ଚାହିଁ କର ଦଣ୍ଡର ବିଧାନ ।

ଏରୂପେ ମାନ୍ଧାତା ବସୁହୋମଙ୍କ ବାଣୀ
ଶୁଣି ଲେଉଟିଲେ ଘରକୁ ସେହିକ୍ଷଣି ।
ତୁମ୍ଭଙ୍କୁ କହଇ, ମାନ୍ଧାତା ପରି ତୁମ୍ଭେ
ଧର୍ମରେ ରହି ଦଣ୍ଡ ବୋଲୁଅଛୁଁ ଅମ୍ଭେ ।
ଯୁଧିଷ୍ଠିର ବୋଇଲେ ଧର୍ମ ଅର୍ଥ କାମ
ସମ୍ଭବ ଶୁଣିବାରେ କରଛୁ ମୁଁ କାମ ।
ଭୀଷ୍ମ ବୋଇଲେ ହେ ଅର୍ଥର ଧର୍ମ ମୂଳ
ଅର୍ଥ ଥିଲେ ଯେ କାମ ହୁଅଇ ସୁଫଳ ।
ଆଙ୍ଗିରଷ୍ଟ ରାଜନ କାମନ୍ଦ, ଋଷିଙ୍କି
ପଚାରିଥିଲେ ଏହା କହଣ ପ୍ରୀତିକି ।
ଯେଉଁ ରାଜା କାମ ମୋହରେ ପାପ କରେ
ସେ କଥାକୁ ନାଶଇ କହ ତ କାହିଁରେ ।
ଅଧର୍ମକୁ ଧର୍ମ ବୋଲି ଯେ ଆଚରଇ
ତାକୁ ରାଜା କରୁପେ ଷଏ ନିବର୍ତ୍ତାଇ ।
ଏହି କଥା ଶୁଣିବାକୁ ମୋହର ମନ
କହ ମୋତେ ଏହା କାମନ୍ଦ ତପୋଧନ ।
କାମନ୍ଦକ ହୋଇଲେ ଧର୍ମ ଅର୍ଥେ ବୁଦ୍ଧି
ନକରି କାମ କଲେ ଘୁଞ୍ଚଇ ପ୍ରସିଦ୍ଧି ।
ଏହି ସକାଶୁ ଜାଣ ତାହାକୁ ନାସ୍ତିକ
ଦୁରାଚାର ବୋଲନ୍ତି ଭବେ ଲୋକଯାକ ।
ଦୁରାଚାର ଲୋକକୁ ନିବର୍ତ୍ତାଇ ରାଜା
ନ ରଖିଲେ ଯେ ନିନ୍ଦା କରନ୍ତି ପରଜା ।
ଅଳ୍ପକେ ସେ ରାଜାର ପ୍ରବର୍ତ୍ତଇ ନାଶ
କରାଇବାରୁ ପ୍ରାଣୀମାନଙ୍କୁ ବିରସ ।
ପାପକାରୀ ଲୋକର ଧର୍ମେ ହେଲେ ବୁଦ୍ଧି
ଏ ଜଗତଯାକରେ ହୁଅଇ ପ୍ରସିଦ୍ଧ ।
ଗୁରୁଙ୍କ କହିବାର ବଚନ କରିବ
ମୁଁ କହୁଛି ନିକଟେ ଶ୍ରେୟକୁ ପାଇବ ।
ଯୁଧିଷ୍ଠିର ବୋଇଲେ ସଦ୍‌ବୃତ୍ତି କେଉଁରୂପେ
ପାଇ ହେ ଭୀଷ୍ମରଥ କହ ତା ସଂକ୍ଷେପେ ।
ଭୀଷ୍ମ ବୋଇଲେ ଆହେ ତୁମ୍ଭର ସମ୍ପତ୍ତି
ଦେଖି ଦୁଃଖୀ ହୋଇ ବଚହର୍ଯ୍ୟ ନାତି ।
ଦୁର୍ଯ୍ୟୋଧନ ରାଜା ଯେ ଧୃତରାଷ୍ଟ୍ରଙ୍କର
ଯା ଚଳିଲ ତାହା ଶୁଣ ହେ ଯୁଧିଷ୍ଠିର ।
ଧୃତରାଷ୍ଟ୍ରେ ବୋଇଲେ କମ୍ପା ଦୁର୍ଯ୍ୟୋଧନ
ହେଉଅଛୁ ତୁ କହ ଅତ୍ୟନ୍ତ ବିମନ ।
ତୋହଠାରୁ ଆଗ ଶୁଣିଲେ କଥା ମୁହିଁ
ପଛେ ତୋତେ ଧର୍ମ ଯେ କହିବି ବତାଇ ।
ଦୁର୍ଯ୍ୟୋଧନ ବୋଲେ ଇନ୍ଦ୍ରପରି ବିଭୂତି
ଭୋଗ କରୁଅଛନ୍ତି ପଣ୍ଡୁଙ୍କ ସନ୍ତତି ।
ଏହା ବାହାରେ ଦଶସହସ୍ର ବ୍ରାହ୍ମଣ—
ମାନଙ୍କୁ ସୁନା ପାତ୍ରେ କରାନ୍ତି ଭୋଜନ ।
ଏହି ସକାଶରୁ ହେ ଧୃତ ରାଷ୍ଟ୍ର ରାୟେ
ଶୋକାନଳେ ଦଗ୍ଧ ହେଉଛି ମୋର କାୟେ ।
ଧୃତରାଷ୍ଟ୍ର ବୋଇଲେ ଦୁର୍ଯ୍ୟୋଧନ ପୁଅ
କରିବୁ ସୁଖଭୋଗ ଶୀଳବନ୍ତ ହୁଅ ।
ଶୀଳବନ୍ତ ଲୋକର ହୁଅଇ ପ୍ରସିଦ୍ଧି
ଯେଣୁ ଧର୍ମେ ତା'ର ପ୍ରବର୍ତ୍ତିଥାଏ ବୁଦ୍ଧି ।
ମାନ୍ଧାତା ନୃପତି ଉତ୍ତମ ଶୀଳ କରି
ଦିନେକ ହେଲେ ଜଗତରେ ଅଧିକାରୀ ।
ସେହିରୂପେ ତିନ ଦିନରେ ଜନ୍ମେଜୟ
ଏ ମହୀରେ ପାଇଲେ ମହତ୍ତ୍ୱ ଉଦୟ ।
ନାଭାଗ ଆଚରଣ ଉତ୍ତମ ବୃତ୍ତିକୁ
ସାତଦିନେ ଭୋଗ କରିଲେ ଏ ଧରାକୁ ।
ଦୁର୍ଯ୍ୟୋଧନ ବୋଇଲେ କି ରୂପରେ ଶୀଳ
ହୋଇଲେ କହ କାହିଁ କେଉଁ ମହୀପାଳ ।
ଧୃତରାଷ୍ଟ୍ର ବୋଇଲେ ପୂର୍ବେ ପ୍ରହ୍ଲାଦ
ଶୀଳକୁ ଆଶ୍ରେକରି ହୋଇଲେ ପ୍ରମୋଦ ।
ଇନ୍ଦ୍ରଙ୍କର ସମ୍ପତ୍ତିଯାକ ନେଲେ ହରି
ଇନ୍ଦ୍ର ତାହାଦେଖି ବସିଲେ ଦୁଃଖ କରି ।
ଆପଣା ଗୁରୁ ବୃହସ୍ପତିଙ୍କି ଡାକିଲେ
ଶ୍ରେୟ କେଉଁ କଥା ତା କହ ହେ ବୋଇଲେ
ବୃହସ୍ପତି ବୋଇଲେ ଜ୍ଞାନ ବଡ଼ ଶ୍ରେୟ
ମୋ କହିବାରୁ ଜାଣ ଅଦିତି-ତନୟ ।
ଇନ୍ଦ୍ର ବୋଇଲେ ହେ ବିଶେଷ କରି ଏହା
କହ ମୋତେ ଶୁଣିବ ହେଉଛି ଉତ୍ସାହା ।
ବୃହସ୍ପତି ବୋଇଲେ ଯାଅ ଶୁକ୍ରଠାରୁ
ସେ କହିଦେବେ ଏହା ବତାଇ ତୁମ୍ଭଙ୍କୁ ।
ବୃହସ୍ପତିଙ୍କ ବୋଲ ଘେନି ଶଚୀପତି
ଶୁକ୍ରଙ୍କୁ ପଚାରନ୍ତେ କଲେ ଏ ଯୁକତି ।
ପ୍ରହ୍ଲାଦ ରାଜାଙ୍କୁ ପୁଚ୍ଛ ଯାଇ ତୁମ୍ଭେ
ସେ କହିବେ ଆଉ କସ କହିବୁ ଆମ୍ଭେ ।

ଇନ୍ଦ୍ର ତାହା ଶୁଣି ବ୍ରାହ୍ମଣରୂପ ହୋଇ
ଭେଟିଲେ ଯାଇ ପ୍ରହ୍ଲାଦ ଦୈତ୍ୟସାଇଁ ।
ପଚାରିଲେ ଯେଉଁ କଥାକୁ ସତ୍ୟେ ପ୍ରଶସ୍ତ
ବୋଲନ୍ତି ମୋର ଆଗେ କହ ତା ଉଦନ୍ତ ।
ପ୍ରହ୍ଲାଦ ବୋଇଲେ ତିନିଲୋକ କଥା
ବୁଝିବାରେ ନିତ୍ୟ ମୁଁ ଥାଉଅଛୁ ବ୍ୟଥା ।
ତୁମ୍ଭଙ୍କୁ ବସି ଏହି କଥା କହିବାକୁ
ସମୟ ନାହିଁ ମୋତେ ପଚାର ଆନକୁ ।
ଦ୍ୱିଜରୂପୀ ଇନ୍ଦ୍ର ବୋଇଲେ ପ୍ରହ୍ଲାଦ
ସମୟେ ପୁଚ୍ଛିବି କହିବ ହୋଇ ମୋଦ ।
ପ୍ରହ୍ଲାଦ ଶୁଣି ବ୍ରାହ୍ମଣ ବଚନ
ହେଲେ ସେ ଦ୍ୱିଜଠାରେ ଅତି ତୋଷମନ ।
ଉତ୍ତମ କାଳେ ତାଙ୍କୁ ଜ୍ଞାନ ଉପଦେଶ
ଦେଲେ ସେ ପ୍ରହ୍ଲାଦ ଦୈତ୍ୟକୁଳ ଈଶ ।
ଥରେ ସେ ଦ୍ୱିଜ ପ୍ରହ୍ଲାଦେ ଏକାନ୍ତରେ
ପୁଚ୍ଛିଲେ ତ୍ରିଲୋକ ଜିଣିଲେ କି ରୂପରେ ।
ପ୍ରହ୍ଲାଦ ବୋଇଲେ ଦ୍ୱିଜେ ଯା ବୋଲନ୍ତି
ସେହି କଥା କରନ୍ତି ବହି କରି ପ୍ରୀତି ।
ତୁମ୍ଭର ଯେଉଁ ଇଚ୍ଛା ଅଛି ଦ୍ୱିଜବର
ମାଗ ତାହା ମୁଁ ଦେବି ବିଳମ୍ବ ନକର ।
ବ୍ରାହ୍ମଣ ବୋଇଲେ ହେ ତୁମ୍ଭ ଶୀଳ ମୋତେ
ଦେବାର ହେଉ ପ୍ରହ୍ଲାଦ ମହାମତେ ।
ପ୍ରହ୍ଲାଦ ଶୁଣିଣ ବ୍ରାହ୍ମଣ ବଚନ
ବର ଦେଲେ ହୋଇଣ ଅତି ତୋଷମନ ।
ବରପାଇ ବ୍ରାହ୍ମଣ ହୋଇଲା ମେଲାଣି
ଗଲେ ସେହିଠାରୁ ବାହାରି ସେହିକ୍ଷଣି ।
ବ୍ରାହ୍ମଣ ଯିବା ଅନ୍ତେ ପ୍ରହ୍ଲାଦ ବୀର
ଚିନ୍ତାରେ ଶୀର୍ଣ୍ଣ କଲେ ଆପଣା ଶରୀର ।
ଏ ସକାଶୁଁ ତାଙ୍କ ଦେହରୁ ତେଜଟାଏ
ବାହାରି ଗଲା ଶୀଳ ପୁଣ ଧରି କାୟେ ।
ପ୍ରହ୍ଲାଦ ଦେହରୁ ତେଜ ମୂର୍ତ୍ତି ଦେଖି
କିଏ ସେ ବୋଲି ପଚାରିଲେ ହୋଇ ଦୁଃଖୀ ।
ତେଜ ବୋଇଲେ ମୁଁ ଅଟଇ ତୁମ୍ଭ ଶୀଳ
ଯାଉଛି ତୁମ୍ଭେ ଛାଡ଼ିବାରୁ ଦୈତ୍ୟପାଳ ।
ତୁମ୍ଭେ ତ ବ୍ରାହ୍ମଣଙ୍କୁ ମୋତେ ବର କରି
ଦେଲ, ତାଙ୍କଠାରେ ରହିବି ଘର କରି ।
ଏରୂପେ ପ୍ରହ୍ଲାଦ ଆଗେ ଶୀଳ କହି
ରହିଲେ ଇନ୍ଦ୍ରଙ୍କର ଦେହଟିରେ ଯାଇ ।
ଶୀଳଙ୍କ ଗଲାକ୍ଷଣି ଧର୍ମ ଧରି ରୂପ
ବାହାରି ହେଲେ ପୂର୍ବଶୀଳଙ୍କ ସମୀପ ।
ପ୍ରହ୍ଲାଦ ବୋଇଲେ ତୁମ୍ଭେ କିଏ କହି
ଯାଅ ମୋତେ ତୁମ୍ଭଙ୍କୁ ପଚାରୁଛି ମୁହିଁ ।
ସେ କହିଲେ ନୃପତି ମୁଁ ତୁମ୍ଭ ଧରମ
ଶୀଳଠାକୁ ଯାଉଛି ସ୍ମର ଏବେ କର୍ମ ।
ଧରମ ଗଲାକ୍ଷଣି ସତ୍ୟ ବୃତ୍ତି ବଳ
ଲକ୍ଷ୍ମୀ ମଧ୍ୟ ଗଲେ ହେ ପାଣ୍ଡବ-ନୃପାଳ ।
ପ୍ରହ୍ଲାଦ ତାହାଙ୍କୁ ପୁଚ୍ଛିବାରୁ ଏହା
କହିଲେ ଧର୍ମଠାକୁ ଯାଉ ଦୈତ୍ୟନାହା ।
ଲକ୍ଷ୍ମୀଙ୍କ ଗଲାବେଳେ ପ୍ରହ୍ଲାଦ ବୀର
ପଚାରିଲେ ମନକୁ କରିଣ ଅଧୀର ।
ତୁମ୍ଭେ କାହିଁପାଇଁ ଛାଡ଼ି ମୋହର କାୟେ
ଯାଉଅଛ କହ ବତାଇ ମୋତେ ମାଏ ।
ଲକ୍ଷ୍ମୀ ବୋଇଲେ ମୁଁ ବଳକୁ ଅନୁଗତ
ହୋଇଥାଏ ଜାଣ ହିରଣ୍ୟ ଦୈତ୍ୟସୁତ ।
ବଳ ଯହିଁ ଅଛି ମୁଁ ତହିଁକି ଯାଉଛି
ଆଜ ତ ତୁମ୍ଭେ ମୋତେ ନ ପଚାର କିଛି ।
ପ୍ରହ୍ଲାଦ ବୋଇଲେ ଶୀଳ ଦ୍ୱିଜଠାକୁ
ଗଲେ ତ ତୁମ୍ଭେମାନେ ଯାଉଛ ସେଠାକୁ ।
ସେ ଦ୍ୱିଜଟି କିଏ ଯେ ବତାଇଣ ତାହା
କହତ ତ ଥରେ ମୋତେ ଲକ୍ଷ୍ମୀ ପଦ୍ମାଳୟା ।
ଲକ୍ଷ୍ମୀ ବୋଇଲେ ହେ ବ୍ରାହ୍ମଣ ଶଚୀପତି
ତୁମ୍ଭଠୁଁ ହରିନେଲେ ସକଳ ବିଭୂତି ।
ଶୀଳରୁ ତୁମ୍ଭେ ଜିଣିଥିଲ ତିନିଲୋକ
ତା ଦେଲ ତ ଦ୍ୱିଜକୁ ଦଇତ-ନାୟକ ।
ଶୀଳକୁ ଅନୁଗତ ସିନା ଅଟୁ ଆମ୍ଭେ
ସେ ଗଲେ ଆମ୍ଭେ ଗଲୁଁ ଏକା ରହ ତୁମ୍ଭେ ।
ଏ ରୂପେ କହି କହି ଇନ୍ଦ୍ରେ ଅନୁଗତ
ହୋଇଲେ ଆହେ ଜାଣ ଦୁର୍ଯ୍ୟୋଧନ ସୁତ ।
ଦୁର୍ଯ୍ୟୋଧନ ବୋଇଲେ ଶୀଳ ପାଇବାକୁ
କି ଉପାୟ ଅଛି ତା ବତାଅ ଆମ୍ଭଙ୍କୁ ।
ଧୃତରାଷ୍ଟ୍ର ବୋଇଲେ କର୍ମରେ ମନରେ
ବାକ୍ୟରେ ସର୍ବ ପ୍ରାଣୀ ଦ୍ରୋହ ଯେ ଆଚରେ ।

ପରଲୋକ ଅହିତକର୍ମ ଯେ କରଇ
ଶୀଳ ତାହାଠାରେ କେବେହେଁ ନ ରହଇ ।
ଯେଉଁ କର୍ମ କଲେ ହୋଇବେ ଲୋକେ ତୋଷ
ସେହି କର୍ମ କରୁଥିବ ହେ ନରେଶ ।
ଆଶୀଳ ହୋଇକରି ନୃପତି ସମ୍ପତ୍ତି
ପାଇଲେ ଜାଣ ହୋଏ ତାଙ୍କର ବିପତ୍ତି ।
ଶୀଳକୁ ଏବେ ଆଶ୍ରେ କରି ଦୁର୍ଯ୍ୟୋଧନ
ହୋଇବେ ଯୁଧିଷ୍ଠିର ତୋହର ଅଧୀନ ।
ହେ ଯୁଧିଷ୍ଠିର ରାଜ୍ୟେ ଧୃତରାଷ୍ଟ୍ର ବାଣୀ
ପରାଜ୍ୟେ କରି ତୁମ୍ଭେ ଆଚରଣ ଶ୍ରେଣୀ ।
ଯୁଧିଷ୍ଠିର ବୋଇଲେ ଶୀଳକୁ ପ୍ରଧାନ
କରି ମୋତେ କହିବା ହୋଇଲେ ଆପଣ ।
ଆଶା କେଉଁରୂପେ ଲୋକର ହେଉଅଛି
ଏହା ଥରେ କହିବା ହେଉ ମୁଁ ବୋଲୁଛି ।
ମୋହର ଏ କଥାରେ ମନ୍ତ ସଂଶୟ
ହେଉଛି ତାହା କରି ମହାରଥୀ କ୍ଷୟ ।
ଦୁର୍ଯ୍ୟୋଧନଠାରେ ମୋ ଆଶା ବଳଥିଲା
ହୁଅନ୍ତେ ଯୁଦ୍ଧ ଯାହା ହେବାର ସେ ହେଲା ।
ସବୁ ଲୋକମାନେ ତ ଆଶା ସକାଶରୁ
ମରୁଛନ୍ତି ତହିଁରେ ନୋହି କଛି ଖାରୁ ।
ଆକାଶକୁ ପ୍ରତି ଯେ ଆଶା ଅଟେ ବଡ଼
ମୋ ମତରେ ଏଥିରେ କଛି ନାହିଁ ହୁଡ଼ ।



## ଋଷଭ ସୁମିତ୍ର ସମ୍ବାଦ

ଭୀଷ୍ମ ବୋଇଲେ ହେ ଋଷଭ ସୁମିତ୍ରର
ସମ୍ବାଦଟି କହିବା ଶୁଣ ନରବର ।
ହୈହୟ ବଂଶରେ ସୁମିତ୍ର ନୃପ ଥିଲା
ମୃଗକୁ କାଣ୍ଡେ ବିନ୍ଧି ପଛେ ଗୋଡ଼ାଇଲା ।
ମୃଗ ଯେ ଖାଲ ଢିପ ସରସମ ଭୂମି—
ମାନଙ୍କେ ପଳାଇଲା ସେ ତ ବେଗଗାମୀ ।
ସୁମିତ୍ରରାଜା ସେହିରୂପେ ତାର ସଙ୍ଗେ
ଧାଇଁଲେ ଖଣ୍ଡା ତୋଣ ଧନୁ ବହି ଅଙ୍ଗେ ।
ଯେତେ ବାଣ ବିନ୍ଧନ୍ତି ଓଟାରି ଧନୁକୁ
ନ ପାଆନ୍ତି ଜାଣ ସେ ମୃଗର ଦେହକୁ ।
କେତେବେଳେପାଖରେ କେତେବେଳେଦୂରେ
ଦେଖା ଦେଉଥାଏ ସେ ମୃଗ ନିର୍ଭୟରେ ।
ରାଜା ତାହା ନ ସହି କ୍ରୋଧେ ହୋଇ କ୍ରୁଦ୍ଧ
ମୃଗକୁ ଦେଲେ ଦିବ୍ୟ ଶରଟିଏ ବିନ୍ଧ ।
ସେ ଶରକୁ ବଞ୍ଚାଇ ହସି ଦେଇ ମୃଗ
ମହାଅରଣ୍ୟ ଭିତରେ ଅଙ୍ଗ କଲା ସଙ୍ଗ ।
ରାଜା ସେହିରୂପେ ତାହାର ପଛେ ଧାଇଁ
ମହାଅରଣ୍ୟଭିତରେ ପଶିଲେ ଝସାଇ ।
ସୁମିତ୍ର ରାଜା ବାଧାଭରେ ଶ୍ରାନ୍ତ ହୋଇ
ମୁନିଙ୍କ ଆଶ୍ରମରେ ପ୍ରବେଶିଲେ ଯାଇ ।
ଋଷିମାନେ ଦେଖିଣ ସୁମିତ୍ର ରାଜାଙ୍କୁ
ଆଦରେ ବସାଇଲେ ଦେଇ ଆସନକୁ ।
ରାଜା ଆସନରେ ବସି ସନ୍ତୋଷ ବହି
ପଚାରିଲେ ଅଛନ୍ତିକି ହେ ସୁଖୀ ହୋଇ ।
ଋଷି ବୋଇଲେ ହେଉଅଛୁ ସବୁ ସୁଖ
କହ କାହିଁପାଇଁ ଆସିଲ ନରଶିଖ ।
କେଉଁକୁଳେ ତୁମ୍ଭେ ଜନମ ଅଛ ହୋଇ
ଏହା ମଧ୍ୟ ଆମ୍ଭଙ୍କୁ କହିବ ବତାଇ ।
ରାଜା ବୋଇଲେ ମୁହିଁ ହଇହୟକୁଳ
ମଧ୍ୟରେ ହୋଇଅଛି ଜାତ ମହୀପାଳ ।
ସୁମିତ୍ର ମୋର ନାମ ଅଟଇ ହେ ଯତି
ମୃଗୟାରେ ମୁହିଁ ଯେ ହୋଇ ଆସକତି ।
ମୃଗ ପଛେ ଗୋଡ଼ାଇ ଆସିଲି ଏଠାକୁ
ପାଇଅଛି ଜାଣ ମୁଁ ମହତ ଶ୍ରମକୁ ।
ମୃଗ ଆଶା କରି ପାଇଲି ଗୁରୁଶ୍ରମ
ଏଥି ସକାଶୁଁ ମୋତେ ଲାଗୁଅଛି ଭ୍ରମ ।
ରାଜସମ୍ପତ୍ତିକି ଦେଇଛି ଦୂର କରି
ତହିଁକି ଚିନ୍ତା କରି ନାହିଁ ତପସ୍ୱୀ ।
କେଉଁ ମୃଗ ମୋତେ ଯେ ଆଣିଲା ଭଣ୍ଡାଇ
ମାଗିଲେ ତାହାକୁ ହୁଅନ୍ତି ତୋଷ ମୁହିଁ ।
ଆଶାର ଅନ୍ତ ମୋତେ ନୋହୁଛି ଗୋଚର
ତୁମ୍ଭଙ୍କୁ ସେ ଜଣା ବା ହେଉଛି ଗୋଚର ।
ଆଶାବନ୍ତ ପୁରୁଷ ଆକାଶ ଦୁଇରେ
କେ ବଡ଼ ଅଟଇ ତା କହ ମୋ ଆଗରେ ।
ସୁମିତ୍ରଙ୍କର ଠାରୁ ଶୁଣି ଏ ବଚନ
କହିଲେ ହସିଣ ଋଷଭ ତପୋଧନ ।
ଦିନେ ମୁଁ ନରନାରାୟଣ ଆଶ୍ରମକୁ
ଯାଇ କରି ଦେଖିଲି ବଦରୀଗଛକୁ ।

ହୟଗ୍ରୀବ ଦେବ ହୋଇଣ ଅତିମୋଦ
ଜଭକୁ ମୋଡ଼ି ବସି ପଢ଼ୁଥିଲେ ବେଦ ।
ବୈହାୟସ ସର ତାହାଙ୍କ ସମୀପରେ
ରହିଥିଲେ ପରିପୂରିତ ହୋଇ ନୀରେ ।
ସେ ସରରେ ସ୍ନାନ ତର୍ପଣ ସନ୍ଧ୍ୟା କଲି
ନରନାରାୟଣ ସମୀପ ସ୍ଥାନେ ଗଲି ।
ଦେଖିଲି ତହିଁ କ୍ଷୀଣ ଅଙ୍ଗ ତନୁ ଋଷି
ସେ ହିଁ ଆସୁଛନ୍ତି ହୋଇ ଅତି ତୋଷି ।
କାଣି ଅଙ୍ଗୁଷ୍ଠିର ମୋଟ ଦୁଇଟି ବାହା
ତାହାକୁ ଦେଖି ମୁହିଁ କଲି ଆହା ଆହା ।
ସେ ଋଷି ଯେତେବେଳେ କହିଲେଟି ବାଣୀ ।
ସ୍ୱରଟି ବାହାରଇ ହୋଇ କଣିକଣି ।
ମୋ ହୃଦୟେ ବିସ୍ମୟେ ହୁଅନ୍ତେ ଜାତ ଭୟ
ତାହାଙ୍କ ପାଦେ ପଡ଼ି ହେଲି ମୁଁ ବିନୟ ।
ସେ ମୋତେ ନାମ ଗୋତ୍ର ପଚାରନ୍ତେ ବିସ୍ମୟେ
ତାହାଙ୍କୁ ମୁଁ କହିଲି ତା ମଧ୍ୟ ସଭୟେ ।
ମୋତେ ସୁଖ ପାଇ ବସାଇ ଆସନରେ
କହିଲେ ଧର୍ମକଥା ସେ ମୋର ଆଗରେ ।
ଏହି କାଳରେ ଚତୁରଙ୍ଗ ସେନା ଧରି
ଆସିଲେ ବୀରଦ୍ୟୁମ୍ନ ନାମେ ଦଣ୍ଡଧାରୀ ।
ତାଙ୍କୁ ଆମ୍ଭେ ଦେଖି ପୁଚ୍ଛିଲୁ ନୃପବର
କାହିଁ ଆସିଥିଲ କହ ତ ଏତେ ଦୂର ।
ସେ କହିଲେ ମୋହର ପୁତ୍ରଟିଏ ଆସି
ଅରଣ୍ୟରେ ପଶିଛି ଖୋଜେ ଅହର୍ନିଶି ।
ତନୁ ଋଷି ଶୁଣି ନୃପତିଙ୍କ ବଚନ
ଚିନ୍ତାଶୀଳ ହୋଇଣ ରହିଲେ ମଉନ ।
ରାଜା ସେ ଋଷିଙ୍କି ବୋଇଲେ ମୁନିବର
ଆଶାରୁ ବଡ଼ କାହିଁ ଅଛି ଏ ସଂସାର ।
ଏରୂପେ କହି ମହାଶ୍ରାନ୍ତ ହୋଇଥିଲେ
ଆମ୍ଭ ଦୁହିଙ୍କର ଆଗରେ ସେ ବସିଲେ ।
ତନୁଋଷି ଯେ ଅର୍ଘ୍ୟ ପାଦାସନ ନେଇ
ରାଜାଙ୍କୁ ପୂଜା କଲେ ମହାତୋଷ ବହି ।
ସେକାଳେ ସେଠାକୁ ପତଙ୍ଗ ଋଷି ଆସି
ନୃପଙ୍କ ପାଶରେ ବସିଲେ ହୋଇ ତୋଷି ।
ବୋଇଲେ ଆହେ ନରପତି ମହାମଥା
କାହିଁକି ଆସିଅଛ କହ ଶୁଣିବା କଥା ।

ରାଜା ବୋଇଲେ ମୋର ପୁଅ ହଜିଅଛି
ତାହାକୁ ଖୋଜିବାକୁ ଜାଣ ମୁଁ ଆସିଛି ।
ତନୁଋଷି ତା ଶୁଣି ପୋତିଦେଲେ ମଥା
ସେ ନୃପତିବରଙ୍କୁ ନ କହନ୍ତି କଥା ।
ପୂର୍ବେତ ତନୁଋଷି ନୃପେ ଆଶାହତ
ହୋଇଥିବାରୁ ହେଲେ ତପସ୍ୟାରେ ରତ ।
ସେହି ସକାଶୁଁ ତନୁଋଷି ବେଦବେତ୍ତା
ଶୁଣି ନୃପକଥା ଲାଗିଲା ତାଙ୍କୁ ପିଡା ।
ରାଜା ବୋଇଲେ ହେ ଆଶାରୁ କେ କୃଶ
ମୋ ଆଗରେ କହ ତ ତନୁଋଷି ଈଶ ।
ଋଷି ବୋଇଲେ ଆଶାଠାରୁ କୃଶ ହୋଇ
ଜାଣ ନରସାଇଁ ମହୀରେ କେହି ନାହିଁ ।
ରାଜା ତାହା ଶୁଣି ବୋଇଲେ ତୁମ୍ଭ ପରି
କୃଶ କେ ଅଛି କହ ଭବେ ତପସ୍ୱୀ ।
ତନୁଋଷି ବୋଇଲେ କୃତଘ୍ନ ନାସ୍ତିକ
ଏ ବାହାରେ ଏକପୁତ୍ରଟି ଯେଉଁ ଲୋକ ।
ମୋତେ ପ୍ରତି ତାର ଆଶାଟି ଅଟେ କୃଶ
ଏଥିରେ ସନ୍ଦେହଟି ନ କର ନରେଶ ।
ଏହା ଶୁଣି ତନୁଋଷିଙ୍କ ପାଦଧରି
ପଡ଼ିଲେ ଶୋଇ ବୀରଦ୍ୟୁମ୍ନ ଦଣ୍ଡଧାରୀ ।
ବୋଇଲେ ମୋତେ ଦିଅ ପୁତ୍ରକୁ ମୋ ଋଷି
ତାହାଠାରେ ହୋଇଛି ମୁଁ ବଡ଼ ଲାଳସୀ ।
ଏହା ଶୁଣିଣ ତନୁ ତପସ୍ୟା ବଳରେ
ପୁତ୍ରକୁ ଛଡ଼ାକଲେ ରାଜାର ଆଗରେ ।
ଏ ବାହାରେ ଆପଣା ରୂପକୁ ଧରମ
ରୂପେ ଦେଖାଇଲେ ସେ ଋଷିଙ୍କ ଉତ୍ତମ ।
ଏରୂପେ ଋଷି ଆତ୍ମସ୍ୱରୂପ ଦେଖାଇ
କ୍ରୋଧ ଛାଡ଼ି ବନକୁ ଗଲେ ପ୍ରୀତି ବହି ।
ଋଷଭ ବୋଇଲେ ଏରୂପେ ଆଶାକଥା
ଜାଣିଛି ହେ ସୁମିତ୍ର ରାଜା ମହାରଥା ।
ତୁମ୍ଭେ ଏବେ ଆଶା ଗୋଟିକୁ ଦୂର କର
ଘରେ ବସି ସୁଖେ ପାଳନା କର ନର ।
ଏହା ଶୁଣି ସୁମିତ୍ର ଛାଡ଼ି ଦେଇ ଆଶା
ସେ ଋଷଭମୁନିଙ୍କି କଲେ ପରଶଂସା ।
ନିଜପୁରରେ ଆସି ହୋଇ ପରବେଶ
ପାଳନା କଲେ ବସି ଧରମରେ ଦେଶ ।

ଆହେ ଯୁଧିଷ୍ଠିର ତୁମ୍ଭେ ଆଶାକୁ ଛାଡ଼
ରହ ମୋର ଏ କଥା ଜଳଧିରେ ବୁଡ଼ ।
ଯୁଧିଷ୍ଠିର ବୋଇଲେ ତୁମ୍ଭ କଥାମୃତ
ଶୁଣିଲେ ହେଲେ ଚିତ୍ତ ହେଉନାହିଁ ତୃପ୍ତି ।
ଏହି ସକାଶରୁ ଯେ ବୋଲୁଛି ତୁମ୍ଭଙ୍କୁ
କହୁଥାଅ ଧର୍ମକଥାମାନ ଯେ ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ଆହେ ଅସତ୍ୟ ନଷେଧି
ଧର୍ମରେ ପ୍ରବର୍ତ୍ତିଲା ତୁମ୍ଭ ଆଚ୍ଛା ବୁଦ୍ଧି ।

– o –

## ଗୌତମ ଯମ ସମ୍ବାଦ

ଶୁଣ ହେ ଗଉତମ ଯମଙ୍କ ସମ୍ବାଦ
ହୃଦୟରେ ରାଜନ ବହି ଅତି ମୋଦ ।
ପାରପତ୍ର ପର୍ବତେ ଷାଠିଏ ସହସ
ବରଷ ତପ କଲେ ଗୌତମ ତପୀଶ ।
ଦିନେ ତାଙ୍କ ପାଶକୁ ସୂର୍ଯ୍ୟଙ୍କ ତନୟ
ଆସିଲେ ଯମରାଜା ବହି ଅତି ପ୍ରିୟ ।
ଗଉତମ ଯମରାଜାଙ୍କ ରୂପ ଦେଖି
ନମସ୍କାର କଲେ ହୋଇ ଅତି ସୁଖୀ ।
ଯମ ପଚାରିଲେ ହେ ଗଉତମଋଷି
କହ ତ ସୁଖେ ଅଛନ୍ତିକି ବନେ ବସି ।
ତୁମ୍ଭର କେଉଁ କଥା କରିବି ମୁଁ ଶ୍ରେୟ
ତାହାକୁ କର ମୋର ଆଗରେ ଉଦୟ ।
ଗଉତମ ବୋଇଲେ ମାତା ପିତା ଋଣ
ଶୁଝି କିସ କଲେ ପାଇବ ପୁଣ୍ୟସ୍ଥାନ ।
ଏହା ମୋର ଆଗେ କହ ତ ଯମରାୟେ
ଶୁଣିବାକୁ ମୋ ମନ ଅତି ତ୍ୱରା ହୋଏ ।
ଯମ ବୋଇଲେ ଆହେ ତପ ସତ୍ୟ ଦୁଇ
ଆଚର ମାତା ପିତା ପୂଜ ତୋଷ ବହି ।
ଅଶ୍ୱମେଧ ଯାଗ କରିଲେ ଅନ୍ତଃକାଳେ
ବସନ୍ତି ଯାଇ ସେ ଦେବଙ୍କର ଆଳେ ।
ଯୁଧିଷ୍ଠିର ବୋଇଲେ ବଳୀ ମିତ୍ରହୀନ
ହୋଇ ରହିଥିବେ ଯେଉଁ ରାଜା ନିର୍ଦ୍ଧନ ।
ଏହା ବାହାରେ ଦୁଷ୍ଟ ମନ୍ତ୍ରୀ ପାଶେ ଥିବ
କହ ସେ କେଉଁ କଥା କଲେ ସୁଖୀ ହେବ
ଗାଙ୍ଗେୟ ବୋଇଲେ ହେ କ୍ଷତ୍ରିୟ ଧରମ
ମାନଙ୍କରେ ଗୁପତ ଏହି ନରୋତ୍ତମ ।
ଆଚ୍ଛା ପଚାରିଲ ମୋ ମନକୁ ପାଉଛି ।
ଶୁଣ ତା କହିବି ମୁଁ ପୁଣି କୁନ୍ତୀବହ୍ନି ।
ଧର୍ମ ଶୁଣି ଧର୍ମକୁ କରେ ଯେ ଭାବନା
ସେହିଟି ବୋଲନ୍ତି ମର୍ତ୍ତ୍ୟରେ ମହାମନା ।
ପୁରୁଷ ବସି ଯେତେ ଶାସ୍ତ୍ର ପଢ଼ୁଥାଏ
ତେତିକ ଜାଣ ଜ୍ଞାନ ବୁଦ୍ଧି ତାର ହୋଏ ।
ଶାସ୍ତ୍ର ଯେ ନ ଜାଣଇ ସେ ନ ଜାଣେ କିଛି
ଏଥିରେ ଭାବିବାକୁ କି ସନ୍ଦେହ ଅଛି ।
ଉପାୟ ବିନା କେହି ସମ୍ପତ୍ତି ନ ପାଏ
ଯେ ହୋଇଥାଏ ଜାଣ ନରକୁଳରାୟେ ।
ରାଜା ନିତ୍ୟ ବସି ଭଣ୍ଡାର ଘର ବୃଦ୍ଧି
କରୁଥିବ ହେବାକୁ ଜଗତେ ପ୍ରସିଦ୍ଧି ।
କାଳରେ ସେ ଭଣ୍ଡାରଘର ଖାଲି ହୋଇ
ରଖିବ ରାଜା ଧାରେ ଲୋକକୁ ରଞ୍ଜାଇ ।
ବିପତ୍ତି ପଡ଼ିଲେ ସେ ସମ୍ପତ୍ତି ଧରମ
ନ ରହଇ ଅଦୃଷ୍ଟ ହୋଇଥାଏ ବାମ ।
ଏ ହେତୁ ବିପତ୍ତି ହେବାରୁ ଜାଗରୁକ
ହୋଇଥିବ ଯେ ହେବ ନରଙ୍କ ତିଳକ ।
ସବୁ ଉପାୟରେ ଉତ୍ସାହବନ୍ତ ହୋଇ
ଆପଣାକୁ ରଖୁଥିବ ହେ ନରସାଇଁ ।
କ୍ଷତ୍ରି ଦୁଃଖୀ ହେଲେ ଆଣିବ ସବୁ ଧନ
କେବଳ ଛାଡ଼ି ଦେଇଥିବ ଦ୍ୱିଜଧନ ।
ପାଳିଲେ ଦୁଃଖ ସୁରବର୍ଣ୍ଣଙ୍କର ରୀତି
ଭିନ୍ନ ଭିନ୍ନ ହୋଇଯାଏ ହେ ନରପତି ।
ବୈଶ୍ୟ ଶୂଦ୍ରଙ୍କ ଆଚରଣକୁ କ୍ଷତ୍ରିୟ
ନ କରିବ ଦୁଃଖ ପାଇଲେ ବହି ପ୍ରିୟ ।
ଖଣ୍ଡା ବିନା ଆନରେ କ୍ଷତ୍ରିୟର ସିଦ୍ଧି
ହୁଅଇ ବୋଲି ଜାଣ ଲେଖି ନାହିଁ ବିଧି ।
ରାଜାଙ୍କୁ ପ୍ରଜା ପ୍ରଜାମାନଙ୍କୁ ରାଜନ
ଅନ୍ୟୋନ୍ୟରେ ରକ୍ଷା କରିବେ ପ୍ରତିଦିନ ।
ବଳ ମନ୍ତ୍ର କୋଷ ସଞ୍ଚୟକୁ ଯେ ନିତି
କରିଲେ ସୁଖ ପାଏ ଜାଣ ନରପତି ।
କୋଷର ବଳ ମୂଳ, ବଳ ମୂଳ କୋଷ
ମୋ କହିବାରୁ ଜାଣ ପାଣ୍ଡବ ନରେଶ
ନିର୍ଦ୍ଧନ ହେଲେ ରାଜା ଦୁର୍ବଳ ବୋଲାଏ
ଧନ ଥିଲେ ବଳୀୟାର ହୁଅଇ ରାୟେ ।

ଏ ସକାଶୁଁ ସବୁ ପ୍ରକାରେ ଧର୍ମ କରି
ଧନ ରଖୁଥିବ ଯେ ହେବ ଦଣ୍ଡଧାରୀ ।
ଯୁଧିଷ୍ଠିର ବୋଇଲେ ଦୁର୍ବଳକୁ ବଳ
ବଡ଼ ଗୋଳ କଲେ ସେ କରିବ ସେ କି ବଳ
ଏହା ମୋହର ଆଗେ କହ ପିତାମହ
ଶୁଣିବା ପାଇଁ ମୋର ହେଉଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ବଳୀ ତୁଲେ ପ୍ରୀତି
ଦୁର୍ବଳ କରିବାର ଅଟେ ବଡ଼ ନୀତି ।
ନୋହିଲେ ରାଜଧାନୀ ଗୋଟି ଛାଡ଼ିଦେବ
ହାତେ ଥିଲା ଦରବ ଖାଇଣ ରହିବ ।
ଯେରୂପେ ବିପତ୍ତି ତରିବ ବହି ପ୍ରୀତି
ସେରୂପେ କରିବ ନୃପତି ବସି ନିତି ।
ଲୋକ ଅନୁରକ୍ତ ହେବାପାଇଁ ଉପାୟ
କରୁଥିଲେ ହୁଅଇ ପୁଣି ତା ଉଦୟ ।
ବୁଝାଇଲା ଲୋକ ଯୁଝିଲେ ଦଣ୍ଡଧାରୀ
ଜିଣିଲେ ମହୀ, ମଲେ ଭୁଞ୍ଜି ସ୍ୱର୍ଗଶିରୀ ।
ଯୁଧିଷ୍ଠିର ବୋଇଲେ ହେଲେ ଧନହୀନ
କିରୂପେ ଜୀଇବ ତା କହ ଦ୍ୱିଜଜନ ।
ଭୀଷ୍ମ ବୋଇଲେ ଆହେ ଜ୍ଞାନକୁ ଆଶ୍ରେ କରି
ଜୀଇବାର ଉଚିତ ଦ୍ୱିଜ ଦଣ୍ଡଧାରୀ ।
ଅସାଧୁ ଲୋକଙ୍କଠାରୁ ଆଣି ଧନ
ଖାଇଲେ ନିନ୍ଦା ନୋହେ ଦୁଃଖୀ ଦ୍ୱିଜଜନ ।
କ୍ଷତ୍ରିୟ ବଳୀୟାର ହୋଇ ହୀନବୃତ୍ତି
ଆଚରିଲେ ନିକଟେ ଲଭଇ ବିପତ୍ତି ।
ଋତ୍ୱିକ ପୁରୋହିତ ଆଚାର୍ଯ୍ୟଙ୍କୁ ପୂଜା
କରୁଥିବ ଯେ ହେବ ନରକୁଳ ରାଜା ।
ବହୁତ ଲୋକେ କ୍ରୋଧ ହୋଇ ପରସ୍ପର
ବୋଲାବୋଲି ହୁଅନ୍ତି ଅତ୍ୟନ୍ତ ନିଷ୍ଠୁର ।
ରାଜା କାନରେ ସେହି କଥା ଆସି କରି
ପଡ଼ିଲେ ଛାଡ଼ିଦେବ ନ ଶୁଣିଲା ପରି ।
କାହାର ଅପବାଦ ନ କହିବ ମୁଖେ
ରାଜନୀତି ସାଧନେ ବସିଥିବ ସୁଖେ ।
ଅସାଧୁ ମନୁଷ୍ୟେ କାନେ କହିଲେ ଖିଚ
ତାହାଙ୍କୁ କ୍ରୋଧରେ କହିବ ବାଣୀ ଉଚ୍ଚ ।
ଯେଉଁ ରୂପେ ବହୁତ ସହାୟ ହୋଇବ
ସେରୂପେ ଆଚରିବ ଶାନ୍ତି ନରଦେବ ।
ରାଜା ଯେବେ ହୁଅଇ ବିରୁଦ୍ଧକର୍ମା
ଦେବତାଏ ତାହାର ନ ମାଡ଼ନ୍ତି ସୀମା ।
ସର୍ବପାଦ ପରି ଦୁର୍ଜ୍ଞେୟ ଅଟେ ଧର୍ମ
ଜାଣି ଲୋକ ସାଧୁଲୋକଙ୍କୁ ହେବେ ନର୍ମ ।
ରାଜାମାନଙ୍କର ରୀତି ଏହି ଅଟଇ
ଆନଠାରେ ଏହା ସମ୍ଭବ ନ ପାରଇ ।
ସ୍ୱଦେଶ ବିଦେଶ ଦୁଇରୁ ଧନ ଆଣି
ବୃଦ୍ଧି କରୁଥିବ ଭଣ୍ଡାର ନରମଣି ।
ଦସ୍ୟୁଙ୍କୁ ଅଦସ୍ୟୁଙ୍କୁ ଗୁଣିକୁ କହିଲେ
ନୃପତି ସମ୍ପତ୍ତିକି ଅର୍ଜିପାରେ ଭଲେ ।
ଅବଳରେ କୋଷ ଯେ ଅକୋଷରେ ବଳ
ହେବାର କଷ୍ଟ ଜାଣ ହୁଏ ମହୀପାଳ ।
ବଡ଼ କରିଣ ଦଣ୍ଡ ଲୋକଙ୍କୁ ନ ଦେବ
ଦେବ ବୋଲି ବଳେ ଗରଜ ହେଉଥିବ ।
ହୀନକୋଷ ରାଜାଙ୍କୁ ଅବଜ୍ଞା କରନ୍ତି
ଲୋକମାନେ ଏହା ପଣ୍ଡିତେ କହୁଛନ୍ତି ।
ଧନବାନେ ରାଜା ଦୁର୍ବୃତ୍ତି ଆଚରିଲେ
ସୁବୃତ୍ତିରେ ତାହା ଲେଖନ୍ତି ଲୋକ ଭରେ ।
ସବୁ କଥା ଉଦ୍ୟମ କରିବାର ଧର୍ମ
ରାଜାର ଅଟଇ ପାଣ୍ଡବ ନରୋତ୍ତମ ।
ସମାନ ଲୋକଠାରେ ନମ୍ର ହେଲେ ରାଜା
ବଡ଼ ନିନ୍ଦା ତାଙ୍କୁ ଦିଅନ୍ତି ବସି ପ୍ରଜା ।
ନ କହିବ ନୃପ ମର୍ଯ୍ୟାଦା ହୀନ କରି
ଯତି ପ୍ରତିକଟି ବଚନ ଶ୍ରେୟସ୍କର ।
ମର୍ଯ୍ୟାଦା ରଖିଥିଲେ ସବୁକଥା ଅଛି
ମର୍ଯ୍ୟାଦା ଗଲେ ଲୋକ ବୋଲନ୍ତି ଛି ଛି ।
ବିଚାରି କାର୍ଯ୍ୟ କରିବାର ନରପତି
ଉଚିତ ବୋଲି ଏହା ସର୍ବେ କହିଛନ୍ତି ।
ଏ ବାହାରେ ଦେବତା ବ୍ରାହ୍ମଣରେ ଭକ୍ତି
ହୋଇଥିବ ମାନ କରିଣ ବେଦ ଉକ୍ତି ।
ଧର୍ମ ବିଷୟରେ ପୂର୍ବରେ ସବୁ ଯତି
ବସି ଯା କହିଛନ୍ତି ଶୁଣ ତା ନୃପତି ।
କ୍ଷତ୍ରିୟ ଆଡ଼େ ପୂର୍ବେ କହନ୍ତି ଶ୍ରୀ ପୁତ୍ରିୟେ
ପାଇଥିଲା କାଯୁବ୍ୟ ନାମ ତାର ରାଜ୍ୟେ ।
ସେ କାଯୁବ୍ୟ ଅଟଇ ମହାବୁଦ୍ଧିମନ୍ତ
ବ୍ରହ୍ମ ସଫଳତେହ୍ରସ୍ୟ ଶ୍ରାନ୍ତ ଶ୍ରୁତିମନ୍ତ ।

ପାରପାନ୍ଥ ପର୍ବତେ ତାହାର ବାସ
ନିଷାଦକାନଙ୍କର ଅଟଇ ସେ ଈଶ ।
ଧୂମ୍ର ମାଂସ ଫଳମୂଳରେ ନିତି ମାତା
ପିତାଙ୍କୁ ପୂଜା କରେ କରିଣ·ଦେବତା ।
ନିତି ମୃଗ ମାରିଣ ଉଦର ପୋଷଇ
ଯାହା ବଳଇ ତାହା ଦ୍ୱିଜଙ୍କୁ ଦିଅଇ ।
ବ୍ରାହ୍ମଣେ ବସୁ ବୋଲି ତାଠୁଁ ପ୍ରତିଗ୍ରହ ।
ନ କଲେହେଁ ଧନ ଦିଏ ସେ ବହି ସ୍ନେହ ।
ବସୁମାନେ ତାହାର ଧର୍ମଶକ୍ତି ଜାଣି
କଲେ ତାଙ୍କୁ ତାଙ୍କ ଉପରେ ନରମଣି ।
ଏ ବାହାରେ କହିଲେ ଯାହା ବୋଲୁଥିବ
ତାହା କରୁଥିବୁଁ ଆମ୍ଭେ ହେ ନରଦେବ ।
କାୟବ୍ୟ ରାଜା ହୋଇ ନିଷାଦମାନଙ୍କୁ
ବୋଇଲେ ଶୁଣ ଆମ୍ଭ କହିବା କଥାକୁ ।
ବାଳକ ସ୍ତ୍ରୀ ଗୁରୁ ତପଃଶୀଳ ଜନ
ମାନଙ୍କରେ କହୁଛୁ ନ ନେବ ଜୀବନ ।
ବଳାତ୍କାରେ ସ୍ତ୍ରୀମାନଙ୍କୁ ଧରି ଆଣି
ନ ରଖିବ ଘରେ ମୋ ବଚନକୁ ମାନି ।
ଗୋ ବ୍ରାହ୍ମଣ ମଙ୍ଗଳ ବାଞ୍ଛିବ ନିତି
ଯେବେ ମୋତେ ହେ ତୁମ୍ଭେ କରିଛ ନୃପତି
ପରଧନ ଧାନ୍ୟରେ ନଜର ନ ଦେବ
ଧନଗ୍ରାହ୍ୟ ଦ୍ରବ୍ୟକୁ ଲୋଡ଼ିଣ ଆଣିବ ।
ବ୍ରାହ୍ମଣଙ୍କୁ ଦ୍ୱେଷ କରଇ ଯେଉଁ ନର
ବ୍ରାହ୍ମଣ ଅସନ୍ତୋଷେ ଯାଏ ଯମପୁର ।
ବସୁମାନେ ଶୁଣିଣ କାୟବ୍ୟଙ୍କ ବାଣୀ
ଧର୍ମ ଆଚରିଲେ ପାଣ୍ଡବ ନରମଣି ।
ଉତ୍ତମ କର୍ମ କରି କାୟବ୍ୟ ସୁସିଦ୍ଧି
ପାଇଣ ଜଗତରେ ଲଭିଲେ ପ୍ରସିଦ୍ଧି ।
କାୟବ୍ୟ ଚରିତ ଯେ ନିତି ମୁଖେ ଗାଏ
ତାହାଙ୍କୁ ବାଘଭାଲୁ ସାପଟି ନ ଖାଏ ।
ଚୈର ଖଣ୍ଡ ଦୁଷ୍ଟ ନଷ୍ଟ ବ୍ରାହ୍ମଣଙ୍କର
ଆଣିବ ଧନ ଯେହୁ ହେବ ନରବର ।
ଯଜ୍ଞଶୀଳ ସୁବୃତ୍ତ ବ୍ରାହ୍ମଣ ଦେବସ୍ୱ
ହରିଲେ ନରପତି ବଂଶ ଯାଏ ନାଶ ।
ଧନ ତ କ୍ଷତ୍ରିୟର ଅଟେ ସାହସିକ
ଭୁଏହ ଆଣିବ ଅଜଲେ ଆନ ଲୋକ ।
ନ ପଡ଼ୁଁ ବିପତ୍ତି ଯେ ସମ୍ପତ୍ତି ଖର୍ଚ୍ଚଇ
ଜାଣ ତାକୁ ବିପତ୍ତି ବାଧି ନ ପାରଇ ।
ବିପତ୍ତି ପଡ଼ିବାର ଜାଣି ସାବଧାନ
ହୋଇଲେ ଲୋକ ମଧ୍ୟ ନ ପାନ୍ତି କଦନ ।
ଯେ ଲୋକ ଜାଣ ଦୀର୍ଘସୂତ୍ର କରେ କଥା
ତା ସଙ୍ଗେଟି ଗୋଡ଼ାଇଥାଏ ମହାବ୍ୟଥା ।
ଏହି ବିଷୟରେ ଯେ ଅଛି କଥାଟିଏ
ତାକୁ କହିବା ଶୁଣ ଯୁଧିଷ୍ଠିର ରାୟେ ।

— ୪୪ —

## ତିନୋଟି ମାଛର କଥା

ଅଳ୍ପ ଜଳ ଥିବା ସରସୀଟିରେ ମାଛ
ଘଞ୍ଚ ହୋଇ ରହିଥିଲେ ଯେ କୁନ୍ତୀବତ୍ସ ।
ସେ ସରରେ ସେହି ତିନୋଟି ସଙ୍ଗ ହୋଇ
ବୁଲୁଥାନ୍ତି ପାଣିଯାକରେ ତୋଷ ବହି ।
ଦୀଘସୂତ୍ରୀ ଦୀଘକାଳଜ୍ଞ, ଦୀର୍ଘଦର୍ଶୀ
ବୋଲି ସେ ମାଛମାନଙ୍କର ନାମ ଭାଷି ।
ଦିନେ ସେ ପୋଖରୀକି କେଉଟେ ଆସିଲେ
ମାଛ ଧରିବାକୁ ସେ ପାଣି କାଟି ଦେଲେ ।
ଦୀର୍ଘଦର୍ଶୀ ଜଳ ଊଣା ହେବାର ଜାଣି
ସଙ୍ଗ ଦୁଇ ସେଉଲ ଆଗରେ ଏ ବାଣୀ ।
କହିଲା ମାଛଙ୍କ ବିପତ୍ତି ହେଲା ଆସି
ଏ ପାଣି ସ୍ରୋତେ ଚାଲ ଆଗ ଯିବା ଭାସି ।
ଅନର୍ଥ ନୋହୁଁ ଯେଉଁ ଲୋକ ଜାଗରୁକ
ହୁଅଇ ତାକୁ ଜାଣ ନ ପଡ଼ଇ ଶୋକ ।
ଦୀର୍ଘସୂତ୍ର ବୋଲେ କହିଲ ଆଚ୍ଛା କଥା
ନ ପଡ଼ୁଁ ଦୁଃଖ କିମ୍ପା ପାଉଅଛ ବ୍ୟଥା ।
ଦୀର୍ଘକାଳଜ୍ଞ ତାହା ଶୁଣି କହେ ହସି ।
କରିବ ମୋ କାର୍ଯ୍ୟ ପଡ଼ିଲେ କାଳ ଆସି ।
ଦୀର୍ଘସୂତ୍ରୀ ଦୀର୍ଘକାଳଙ୍କର ବଚନ
ଶୁଣି ସେ ଦୀର୍ଘଦର୍ଶୀ ହୋଇଣ ବିମନ ।
ସେ ଦୁଇଙ୍କୁ ବୋଇଲେ ଥାଅ ତୁମ୍ଭେ ରହି
ଯାଉଛି ମୁହିଁ ବୋଲି ଗଲା ଭରା ହୋଇ ।
ସେକାଳେ କେଉଟ ପକାଇ ଜାଲଯାକ
ଧଇଲେ ପୋଖରୀ ଭିତର ମାଛଯାକ ।
ଦୀର୍ଘକାଳଜ୍ଞ ଛାଡ଼ି ଦୀର୍ଘସୂତ୍ରୀ ସଙ୍ଗ
ଲୁଚିଇଲା ମାଛଙ୍କ ମଧ୍ୟେ ନିଜ ଅଙ୍ଗ ।

କେଉଟ ସେ ମାଛକୁ ଜାଲେ ବନ୍ଧକରି
ଆଣିଲେ ଯୁଧିଷ୍ଠିର, କୂଳକୁ ଓଟାରି ।
ଆନ ଜଳତଟେ ମକାଇ ସବୁ ମାଛ
ଧୂଅନ୍ତେ ଦୀର୍ଘକାଳଜ୍ଞାମା ଯେଉଁ ମାଛ ।
ଜାଲରୁ ଖସିକରି ଚଳିଲା ପାଣିରେ
ଦୀର୍ଘସୂତ୍ରୀ ଯେ ମଲା ମାଛଙ୍କ ସଙ୍ଗରେ ।
ଏହିରୂପେ ଅଜାଗରୁକ ହେଲେ ନର
ଦୀର୍ଘସୂତ୍ରୀ ପରି ମରଇ ଯୁଧିଷ୍ଠିର ।
ସମ୍ପତ୍ତି ଥିବାବେଳେ ନ ଭାବେ ଯେ ଶ୍ରେୟ
ମହତ ଦୁଃଖ ତା'ର ହୋଏଟି ଉଦୟ ।
ବିପତ୍ତି ନୋହୁଁ ଜାଗରୁକ ଯେ ହୁଅଇ
ଦୀର୍ଘଦର୍ଶୀର ପରି ଜାଣ ସେ ତରଇ ।
କଳା କାଷ୍ଠା ମୁହୂର୍ତ୍ତ ଦିବାରାତ୍ର କ୍ଷଣ
ଲବ ପକ୍ଷ ମାସ ଛଅ ଋତୁ ଅୟନ ।
ସମ୍ବତ୍ସର ମିଶିଣ ବୋଲନ୍ତି କାଳ
ମୋ କହିବାରୁ ଜାଣ ପାଣ୍ଡୁ ନୃପବାଳ ।
ଦେଶ ବୋଲି ମହୀକି ବୋଲନ୍ତି ଯେ ଜନେ
ଏ ଦୁହିଙ୍କି ଜାଣି ପାରନ୍ତି ସାଧୁଜନେ ।
ଦେଶ କାଳ ଭାଗ କରି ଯେ କରେ କାର୍ଯ୍ୟ
ତାହାର କେତେବେଳେ ନୁହଇ ଅକାର୍ଯ୍ୟ ।

—୫୫—

## ମାର୍ଜାର ମୂଷିକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଦୁର୍ବଳ ନରପାଳ
କି କରିବ ବଳୀ ନୃପତି କଲେ ଗୋଳ ।
ଶତ୍ରୁମିତ୍ର ତାଙ୍କୁ ଭଜିବେ କେଉଁ କଥା
କଲେ ନରପତି ହେ ନ ଲଭଇ ବ୍ୟଥା ।
କା ତୁଲରେ ପ୍ରୀତି କା ତୁଲରେ ଅପ୍ରୀତି
କରିବ କହ ଆହେ ଭୀଷ୍ମ ମହାମତି ।
ଭୀଷ୍ମ କହିଲେ ହେ ଆପଦ କାଳେ ଯାହା ।
କର୍ତ୍ତବ୍ୟ କହୁଅଛୁ ଶୁଣ ଏବେ ତାହା ।
କାର୍ଯ୍ୟେ ବଳ ଜାଣି ଅମିତ୍ର ହୁଏ ମିତ୍ର
ମିତ୍ର ଯେ ସେହିରୂପେ ହୁଅଇ ଅମିତ୍ର ।
ବିପତ୍ତି ଯେଉଁକାଳେ ପଡ଼ିବ ଲୋକଙ୍କୁ
ବିସ୍ମରିଣ ଶ୍ରଦ୍ଧା କରିବ ଅମିତ୍ରକୁ ।
ଅମିତ୍ରରେ ପ୍ରୀତି ନ କଲେ ବିପତ୍ତିରେ
ରହି ନ ପାରେ ସେହୁ ଜାଣ ସମ୍ପତ୍ତିରେ ।
ଏ ବିଷୟେ ବିରାଡ଼ି ମୂଷାର ସମ୍ବାଦ
କହିବା ଶୁଣ ଯୁଧିଷ୍ଠିର ବହି ମୋଦ ।
ବଇରନ୍ତ୍ର ଗ୍ରାମ ପାଖରେ ବଟବୃକ୍ଷ
ଥିଲା ସବୁ ବୃକ୍ଷରେ ଅଟଇ ସେ ମୁଖ୍ୟ ।
ସେ ବଟ ମୂଳରେ ପଳିତ ନାମେ ମୂଷା
ଗାତ କରି ରହିଥିଲା ଯେ କରି ବସା ।
ସେହି ବଟବୃକ୍ଷର ଡାଳରେ ଲୋମଶା—
ନାମରେ ବିରାଡ଼ିଏ କରିଥିଲା ବସା ।
ସେହିଠାକୁ ଗ୍ରଜନ, ବ୍ୟାଧ ଜଣେ ନିତି
ପକାଇବାକୁ ଜାଲ ଆସେ ବହି ପ୍ରୀତି ।
ସନ୍ଧ୍ୟାବେଳରେ, ବଡ଼ ସକାଳୁ ଆସଇ
ଯେ ପଡ଼ୁଥାଏ ଜାଲେ ତାହାକୁ ନାଶଇ ।
ଦିନେ ଯେ ଜାଲଟିରେ ପଡ଼ିଲା ବିରାଡ଼ି
ଛଟପଟ ହୋଇଣ ଭୂମିକି ଗଡ଼ି ।
ତାହା ଦେଖି ମୂଷିକ ବାହାରି ଗାତରୁ
ରହିଲା ସେ ବିରାଡ଼ି ଆଗେ ନୋହି ଭୀରୁ ।
ଶବର ତ ଜାଲେ ଆମିଷ ଥିଲା ବାନ୍ଧି
ତାହା ମଧ୍ୟ ମୂଷା ଖାଇଲା ଦାନ୍ତେ ଛନ୍ଦି ।
ଏହିକାଳେ ହରିତ ନାମରେ ନେଉଳ
ଆସନ୍ତେ ମୂଷା ଭୟ ହୋଇଣ ଆକୁଳ ।
ଉପରକୁ ଚାହାନ୍ତେ ଦେଖିଲା ଡାଳରେ
ଚନ୍ଦ୍ର ନାମ ଉଲୁକ ବସିଛି ତହିଁରେ ।
ମୂଷା ମନରେ କଲା ଦଇବ ଛାଡ଼ିଛି
ମୋତେ, ଏଣୁ ଉଲୁକ ଡାଳରେ ବସିଛି ।
ତଳରେ ନେଉଳ ଯେ ଗ୍ରାସୁଅଛି ରହି
କିସ କରିବ, ମଲି ଆଜ ବ୍ୟର୍ଥେ ମୁହିଁ ।
ଏବେ ଏଥିକି କେଉଁ କରିଣ ଉପାୟ
ରଖିବି ମୋ ଦେହ ଲାଗୁଛି ପ୍ରାଣେ ଭୟ ।
ତଳେ ଉପରେ ତ ମୋ ମରଣ ଦେବତା
ରହିଛି ନିନ୍ଦ ତେଜେ ସବିତା ଦେବତା ।
ଜାଲ ମଧ୍ୟରେ ଯେବେ ପଶିବି ମୁଁ ଗଳି
ବିରାଡ଼ି ତ ରେକଟି ଦାନ୍ତେ ଦେବ ଗିଳି ।
ଏହିରୂପେ ବିଚାର କରି ମନେ ମୂଷା
ବିରାଡ଼ିକି କହିଲା ଚାହିଁ କରି ମୂଷା ।

ହେ ଭୁଆଁ ବରଡ଼ ପଡ଼ିଅଛୁ ତ ଜାଲେ
ତୁମ୍ଭଙ୍କୁ ସଙ୍ଗଳନା କରୁଛୁ ମୁଁ ଭଲେ ।
ତୁମ୍ଭେ ହେ ମୋତେ ଆଜ୍ଞା କରିବଟି ଯାହା
କହୁଅଛୁ ସତ୍ୟ ମୁଁ କରିବଇଁ ତାହା ।
ଉପାୟ କଲେ ମୁହିଁ ଜାଲ ସକାଶରୁ
ନୋହିବ ତୁମ୍ଭ ବଧ ନୁହ କହୁ ଖରୁ ।
କେବଳ କହୁଅଛୁ ଉଲୂକ ନେଉଳ
ମୁଖୁଁ ମୋତେ ରଖ ବରଡ଼ ମହାବଳ ।
ମୋହ ବିନା ଏଠାରେ ବନ୍ଧନକୁ କେହି
ଫିଟାଇବାକୁ କ୍ଷମ ମୋତେ ଦିଶୁନାହିଁ ।
ତୁମ୍ଭର ଆଶ୍ୱାସିତ ହୋଇଲେ ମୁଁ ଭୁଆଁ.
ତୁମ୍ଭ କୋଳେ ରହିବ ଫୁଲାଇଣ ହିଆ ।
ଯାହାରଠାରେ କେହି ନ ଯାନ୍ତି ବିଶ୍ୱାସ
ସେ କାହାଠାରେ ଜାଣ ନ ଯାଏ ବିଶ୍ୱାସ ।
ସେ ଦୁହିଁଙ୍କି ଇହ ପରରେ ଭଲ ଗତି
ନାହିଁଟି ବିଚାର ବରଡ଼ ମହାମତି ।
ହେଲ ନ ଯାଉଁ ମୋର ତୁଲେ ପ୍ରୀତି କର
ରଖିବା ପ୍ରାଣ ଆଜ ଦୁହେଁ ଦୁହିଁଙ୍କର ।
ଶଗଡ଼ ପରେ ନାବ, ନାବରେ ଶଗଡ଼
ଯାଉଅଛୁ ଯେଣୁ ଅଟଇ କାଳ ବଡ଼ ।
ବରଡ଼ ତ ଲଭିଥିଲା ମରଣ ଦଶା
ମୂଷାବାଣୀ ଶୁଣି ସେ କଲା ପରଶଂସା ।
କହିଲା ମୁହିଁ ପାଉଅଛୁ ମହାଦୁଃଖ
ଆସ ଯେବେ ହେଲ ମୋ ସଙ୍ଗତରେ ସୁଖ ।
ମୋତେ ଯେବେ ବନ୍ଧରୁ କରିବ ମୁକତ
ନେଉଳ ଉଲୁକରୁ ଛାଡ଼ ତୁମ୍ଭେ ଖିତ ।
ଆଜଠାରୁ ହୋଇଲ ତୁମ୍ଭେ ମୋ ସାମନ୍ତ
ଯା ବୋଲୁଥିବ ତାହା କରିବ ତୁରିତ ।
ମୂଷା ବୋଇଲା ହେ ନ ବୋଲ ଏ ବଚନ
ମୁଁ ତୁମ୍ଭର ଦାସ ଜନର ଦାସ ଜନ ।
ଏହିକ୍ଷଣି ତୁମ୍ଭ ଫାଶକୁ ଦେବି କାଟି
ନ ପାରିବ ମାରି ଶବର ବେଟାଟି ।
ଉଲୁକ ନେଉଳ ମୁଖରୁ ମୋତେ ରକ୍ଷା
କର, ତୁମ୍ଭ ପ୍ରକାଶିବ ଜାଣଟି କକ୍ଷା ।
ମାର୍ଜ୍ଜାର ବୋଇଲା ହେ ଆସ ମୋ କୋଳକୁ
ଛାଡ଼ିଦିଅ ମନରୁ ମରଣ ଭୟକୁ ।

ଏହା ଶୁଣିଣ ମୂଷା ବରଡ଼ କୋଳରେ
ପଶିଲା ସେହୁଁ ଉଲୁକ ନେଉଳ ଡରରେ ।
ମୂଷା ବରଡ଼ର କୋଳରେ ରହିବାର
ଦେଖି ଉଡ଼ିଗଲା ଉଲୁକ ତାହାପର ।
ନେଉଳ ମୂଷାକୁ ମାରିବାକଥା ଛାଡ଼ି
ବାହାରିଲା ପଛଆଡ଼କୁ ମୁହଁ ମୋଡ଼ି ।
ମୂଷାକୁ ତ ବରଡ଼ କୋଳେ ଥିଲା ଧରି
ସେ ମୂଷା ଜାଲେ ରେକଟିଲା ମଠ କରି ।
ବରଡ଼ ବୋଇଲା ହେ ମୂଷା କି ବିଚାର
ବେଗ କରି ଦାନ୍ତରେ ଜାଲକୁ କତୁର ।
ମୂଷା ବୋଇଲା ତୁମ୍ଭେ ନ ଡର ବିଲାଇ
ରେକଟୁଅଛୁ ମୁହିଁ କାଳକୁ ଅନାଇଁ ।
ଯେତେବେଳେ ପ୍ରବେଶ ହୋଇବ ସମୟ
ତେତେବେଳେ ସରି କି ନ ଥିବଟି ଭୟ ।
ମୋ ପାଶରେ ଥିଲେ ଚଣ୍ଡାଳ ତୁମ୍ଭ ପ୍ରାଣ
କେବେହେଁ ନ ନେବ ବରଡ଼ ରାଜା ଜାଣ ।
ବରଡ଼ ବୋଇଲା ହେ ତୁମ୍ଭ ସଙ୍ଗେ ପ୍ରୀତି
ମୁଁ ଯେରୂପେ କଲି ସେରୂପେ କର ମତି ।
ସାଧୁଲୋକଙ୍କର ତ ନୋହେ ଏ ବେଭାର
କାଳକୁ ଗୁହିଁକରି ଡେରି କରିବାର ।
ପୂର୍ବବଇରକୁ ନ କର ସୁମରଣା
ଧର୍ମରୁ ମୋର ବୁଦ୍ଧି ଜାଣ ନୋହେ ଊଣା ।
ନ ଜାଣି ଯେବେ ଦୋଷ ହୋଇଥିବ ମୋର
ଛାଡ଼ି ଦିଅ ମୂଷା ତୁମ୍ଭେ ତ ଜ୍ଞାତସାର ।
ମୂଷା ବୋଇଲା ହେ ତୁମ୍ଭେ ତ ବଳୀୟାର
ଭୟରେ ତୁମ୍ଭେ ସିନା ହେଉଛ ମୋହର ।
ମୋ ଶରୀରକୁ ଜଗି ତୁମ୍ଭର ମୁଁ କାର୍ଯ୍ୟ
କରିବ କେତେବେଳେ ନାହିଁଟି ଅକାର୍ଯ୍ୟ ।
କାର୍ଯ୍ୟକୁ ଗୁହିଁ ମିତ୍ର ଅମିତ୍ର ହୁଅନ୍ତି
ଶୁଣିଥାଇ ପଣ୍ଡିତ ଯାହା କହୁଛନ୍ତି ।
ଜାଣିବା ଲୋକ କାର୍ଯ୍ୟ ଶେଷ ରଖିଥାଏ
କାର୍ଯ୍ୟ ପୂର୍ତ୍ତିକଲେ ଆଦର ଭାଜିଯାଏ ।
ଯେତେବେଳେ ଶବର ଆସିବଟି ମାରି
ତେତେବେଳେ ଦଉଡ଼ି କାଟିବି ତୁମ୍ଭରି ।
ଦୁହେଁଯାକ ମିଶି ଯେ ପଳାଇଣ ଯିବା ।
ଅଳଭ୍ୟରେ ମରଣ ବିପତ୍ତି ତରିବା ।

କଥା ହେଉଁ ହେଉଁ ରଜନୀ ହେଲା ଶେଷ
ବିରାଡ଼ି ହୃଦୟେ ଲଭିଲା ମହାତ୍ରାସ ।
ପରିଘ ଚଣ୍ଡାଳ ତ ଜାଲକୁ ପକାଇ
ଯାଇଥିଲା ଗଣ୍ଡଶେଷରେ ଭିର ହୋଇ ।
କରେ ଖଣ୍ଡା ଘେନି ଆସନ୍ତେ ସେହିଠାକୁ
ତାକୁ ଦେଖି ବିରାଡ଼ି କହିଲା ମୂଷାକୁ ।
ବିରାଡ଼ି ବୋଇଲା ଦେଖ ହେ ମୂଷା ବ୍ୟାଧ
ଆସିଲା ଏହିକ୍ଷଣି କରିବନ୍ତି ବଧ ।
ମୂଷା ଯେ ବିରାଡ଼ିର ବଚନ ଘେନିଲା
କ୍ଷଣକେ ଦଉଡ଼ି ଚେକାଡ଼ି ପକାଇଲା ।
ବିରାଡ଼ି ମୂଷା ଘେନି ହୋଇଣ ମୁକତ
ଗଛଡ଼ାଳ ଉପରେ ବସିଲା ତୁରିତ ।
ମୂଷା ବିରାଡ଼ିର ମୁଖରୁ ମୁକ୍ତ ହୋଇ
ନିଜ ଗାତେ ରହିଲା ଦେହକୁ ଲୁଚାଇ ।
ଚଣ୍ଡାଳ ବ୍ୟାଧ ନିଜ ଜାଲଟି ସାଉଁଟି
ଘରକୁ ଲେଉଟିଲା ଆଉଁସି ମୁଣ୍ଡଟି ।
ବିରାଡ଼ି ଏଥୁଅନ୍ତେ ଡାକିଲା ମୂଷାକୁ
ଆସ ଆସ ମିତ ମୋହର ନିକଟକୁ ।
ତୁମ୍ଭ ତୁଲେ କିଛି ମୁଁ କଥା ହୋଇନାହିଁ
ଭୟରେ କମ୍ପୁଥିଲା ଏ ମୋହର ଦେହି ।
ଏବେ ଦୁହେଁ ବସି ହୋଇବା କଥାବାର୍ତ୍ତା
ଜାଣିବା କା'ର କେତେ ଅଛି ବିବେକତା ।
ତୁମ୍ଭ ସକାଶରୁ ପାଇଲି ମୁହିଁ ପ୍ରାଣ
ତୁମ୍ଭର ଉପକାର କରିବି ମୁଁ ଜାଣ ।
ମୋ କୁଳରେ ଯେତେ ଅଛନ୍ତି ଜନ୍ମ ହୋଇ
ଆଜଠାରୁ ତୁମ୍ଭଙ୍କୁ କରିବେ ସେ ସାଇଁ ।
ତୁମ୍ଭେ ତ ଅଟ ପ୍ରାଣଦାତା ଉପକାରୀ
ତୁମ୍ଭଙ୍କୁ ପୂଜିବାର ଉଚିତ ଆମ୍ଭରି ।
ତୁମ୍ଭେ ହେ ଆଜଠାରୁ ଦେବ ଯେଉଁ ବୁଦ୍ଧି
ତାହା କରୁଥିବୁଁ ଆମ୍ଭେ ଯେ ନିରବଧି ।
ବୁଦ୍ଧିରେ ଶୁକ୍ରଗୁରୁ ସମ ତୁମ୍ଭେ ଅଟ
ମୋତେ କମ୍ପା ଭୟରେ ଗୃହିଁ ମଟମଟ ।
ମୂଷା ବୋଇଲା ଆହେ ଶତ୍ରୁ ମିତ୍ର ଦୁଇ
ନ ଥାଏଟି ଜଣା ତା ଚିରକାଳ ହୋଇ ।
କାଳକୁ ଚାହିଁ ଶତ୍ରୁ ହେଉଅଛି ମିତ୍ର
ଅଶତ୍ରୁ ହେଉଅଛି କାଳରେ ଅମିତ୍ର

ଶତ୍ରୁ ମିତ୍ର ହୋଇ ନାହିଁ ତ ଜାତିଟାଏ
କାର୍ଯ୍ୟ ଅନୁରୂପେ ସେ କଥା ଆସି ହୋଏ ।
ଯାହାପାଖେ ଯାହାର କାର୍ଯ୍ୟ ଥାଏ ରହି
ସେ ତାକୁ ଅନୁଗତ ହୋଇଣ କହଇ ।
କାର୍ଯ୍ୟକୁ ନ ଜାଣି ଯେ ଶତ୍ରୁ ମିତ୍ର କରେ
ପଡ଼ଇଟି ଜାଣ ଶୋକରେ ଅନ୍ତକରେ ।
ବିଶ୍ୱାସରେ ଅତି ବିଶ୍ୱାସ ନ କରିବ
କରି ଯେବେ ସମୂଳ ହୋଇ ନାଶଯିବ ।
ପୁନହେଲେ କାଳରେ ହେଉଅଛି ଶତ୍ରୁ
ତାହାକୁ ଜଗିଥିବ ମନେ କରି ମୃତ୍ୟୁ ।
ଏତେବେଳେ ତୋର ମୋଠାରେ କିଛିକାର୍ଯ୍ୟ
ନାହିଁ ତ ଲୋଡ଼ୁଅଛୁ ବିଶୃର ଅକାର୍ଯ୍ୟ ।
କାର୍ଯ୍ୟ ଥିଲେ ସିନା ବିଶ୍ୱାସ ଯାଉଥାନ୍ତି
ନ କହ ଆଉ କଥା ରହ ହେ ନିବର୍ତ୍ତି ।
ଏକ ମାତା ପିତାରୁ ହୁଅନ୍ତି ଜନମ
କାର୍ଯ୍ୟକୁ ଚାହିଁକରି କରୁଥାନ୍ତି ପ୍ରେମ ।
ମୋହଠାରେ ତୁମ୍ଭର କେଉଁ କଥା ଅଛି
କହ ତାହା ସତ୍ୟ କରି ମୁଁ ପଚାରୁଛି ।
କେବଳ ଜାଣୁଅଛି, କଲେ ମୋତେ ଗ୍ରାସ
କରି ଦେଇ ରହିବ କରି ପେଟ ତୋଷ ।
ସନ୍ଧି ବିଗ୍ରହର କଥାରେ ମୋହ ପରି
ମୁହିଁ ଏକା ବୋଲି ହେ ଅଛି ମନେ କରି ।
ମୋତେ ତୁମ୍ଭେ କରି କଥାରେ ସଠାବଠା
ମୋଡ଼ି ନ ପାରିବ ଜାଣିଥା ମୋ ବେକୁଟା ।
ତୁମ୍ଭେ ମୋହର ଶତ୍ରୁ ମୁଁ ତୁମ୍ଭର ଶତ୍ରୁ
ମିତ୍ର ତୁମ୍ଭ ପାଶକୁ କହ ଯେଉଁ ହେତୁ ।
ଦୁହିଙ୍କର ବିପତ୍ତି ପଡ଼ିଥିବା ଘେନ
ଦୁହେଁ କହୁଥାଇ କଥାରେ ଘେନାଘେନ ।
ଏବେ ତ ଦୁହେଁ ବିପତ୍ତିରୁ ତରିଲୁଁ
ତୁମ୍ଭ ଆମ୍ଭ ସ୍ନେହ ରହିବ କାସ ପାଇଁ ।
ତୁମ୍ଭର ଯେବେ ଅଛି ମୋହଠାରେ ସ୍ନେହ
ମୋ ଭଲ ବାଞ୍ଛୁଥାଅ ଛାଡ଼ ହିଂସା ମୋହ ।
ଦୂରରୁ ତୁମ୍ଭଙ୍କୁ ମୁଁ କରୁଛି ଜୁହାର
ବଚନେ ମୋତେ ଲୋଡ଼ା ଆଉ ହେନ କରି
ବଳୀୟାର ଲୋକର ନିକଟ ଦୁର୍ବଳ
ଗଲେ ତାହାର ସେ ଯେ ହୁଅଇ କବଳ ।

ଯାହା ତୁମ୍ଭେ ବୋଲିବ ତାହା କରିଦେବି
କଦାଚିତେ ମୁଁ ତୁମ୍ଭ ପାଶକୁ ନ ଯିବି ।
ଆତ୍ମାପାଇଁ ଗରିଯା ପୁଣ ସମ୍ପତ୍ତିକି
ଛାଡ଼ିଦେବ ଯେ ଜନ ଜାଣିବ ମାସ୍ତିକ ।
ଗାଇଥିଲେ ଲୋକର ପୁଣ ଭାର୍ଯ୍ୟାଧାନ
ହେଉଅଛି ଦେଖୁଣଥାଇ ହେ ନୟନ ।
ଯେଉଁମାନେ ଆତ୍ମାକୁ ରକ୍ଷିକରି କାର୍ଯ୍ୟ
କରୁଥାନ୍ତି ତାହାଙ୍କୁ ଛାଡ଼ଇ ଅକାର୍ଯ୍ୟ ।
ବିରାଡ଼ି ବୋଇଲା ହେଲି କି ମୂଷା ବାଇ
ତୁମ୍ଭଙ୍କୁ ମାରି କି ଖାଇବି କହ ମୁହିଁ ।
ଅନ୍ୟୋନ୍ୟେ ତୁମ୍ଭେ ଆମ୍ଭେ ରଖାରଖି ପ୍ରାଣ
ହୋଇଥାଇଁ ତ ମୋତେ ନ କହ ବଚନ ।
ଧର୍ମଜ୍ଞ କୃତଜ୍ଞ ମୁଁ ଅଟଇ ହେ ମୂଷା
କିରୂପେ ତୁମ୍ଭଠାରେ କରିବି ମୁଁ ହିଂସା ।
ବୋଲିବ ଯେବେ ତୁମ୍ଭେ ଛାଡ଼ିବି ମୁଁ ପ୍ରାଣ
ବଚନର ଅନୁରୂପେ ମୋ ଆଚରଣ ।
ମୂଷିକ ବୋଇଲା ଉତ୍ତମ ତୁମ୍ଭେ ଅଛ
ମୁଁ କପଁ । ତୁମ୍ଭ କଥା କରିବଟି ମିଛ ।
କେବଳ କହୁଅଛ ତୁମ୍ଭର ପାଶକୁ
ଯାଇନାହିଁ ତ ଆଜ ନ ଡାକ ଆମ୍ଭଙ୍କୁ ।
ଜାଣିବାଲୋକ ନିଷ୍କାରଣେ ଶତ୍ରୁବଶ
ନୁହନ୍ତି ଜାଣ ହେ ବିରାଡ଼ିକୁଳଈଶ ।
ଶୁଣ ତ କହୁଛନ୍ତି ବଳୀୟାର ତୁଲେ
ପ୍ରୀତି କରି ଜାଗରୁକ ଥିବ ହେ ଭଲେ ।
ପାଇଲେ କାର୍ଯ୍ୟ ତାଙ୍କୁ ନ ଯିବ ବିଶ୍ୱାସ
କଞ୍ଚିତ ଦୋଷରି ସେ କରନ୍ତି ବିନାଶ ।
ସବୁଠାରେ ହେ ଅବିଶ୍ୱାସ କରିବାର
ଅଟଇ ଜାଣିବାର ଲୋକର ବିଚାର ।
ଅବିଶ୍ୱାସ କଲେ ଯେ ଦୁର୍ବଳକୁ ବଳୀ
ବାଧି ନ ପାରଇ ହେ ତାର ବଳ କଳି ।
ବଳୀୟାର ଲୋକ ଯେ ବିଶ୍ୱାସକୁ କଲେ
ଦୁର୍ବଳଲୋକଠାରୁ ମୃତ୍ୟୁ ଲଭେ ଭଲେ ।
ତୁମ୍ଭଙ୍କୁ କହୁଅଛି ଏ ଜାଲକୁ ଛାଡ଼
ବ୍ୟାଧଚଣ୍ଡାଳର ଯେ ହାତରେ ନ ପଡ଼ ।
ଏହା ଶୁଣି ବିରାଡ଼ି ଭୟରେ କମ୍ପିଲା
ବୃକ୍ଷଡାଳ ଛାଡ଼ି ସେଠାରୁ ପଳାଇଲା ।
ମୂଷା ବୁଦ୍ଧିବଳରେ ଜିଣି ବିରାଡ଼ିକି
ସେ ମଧ୍ୟ ଆଶ୍ରେ କଲେ ଆନ ବଳୁଟିକି ।
ଆହେ ଯୁଧିଷ୍ଠିର ବୁଦ୍ଧିରେ ଯେ ଦୁର୍ବଳ—
ଲୋକର ହେଉଅଛି ବିଖ୍ୟାତଟି ବଳ ।
ଏହିରୂପେ ଧର୍ମକୁ କ୍ଷତ୍ରିୟ ଆଚରି
କରୁଅଛନ୍ତି ଭୋଗ ହୋଇ ଦଣ୍ଡଧାରୀ ।
କାଳ ଜାଣ ଯେ ଶତ୍ରୁ ତୁଲରେ ପୀରତି
କରିବ ଏ ପଣ୍ଡିତମାନଙ୍କ ସମ୍ମତି ।
ଭୟ ଥାଇ ରାଜା ପୀରତି ଯେବେ କରେ
ନ ପଡ଼ଇ ଜାଣ ହେ କେବେ ସେ ଶୋକରେ
ନିର୍ଭୟ ହୋଇ ଯେବେ କରଇ ବେଭାର
ନୋହିବା ଦୁଃଖ ତେବେ ହୁଅଇ ତାହାର ।
ଏବେ ତ ମୋହଠାରୁ ପୁରାତନ ବାଣୀ
ଶୁଣିଲ ଆଚରଣ କର ଏହା ଜାଣି ।
ବ୍ରାହ୍ମଣଙ୍କୁ ପୋଷଣ କର ରାଜନାଥ
ନ ପାଇବଟି ତୁମ୍ଭେ ଲୋକରେ ବିପତ୍ତି ।
ରାଜଶିରୀ ଏ ଦୁହେଁ ବଢ଼ିବ ତୁମ୍ଭର
ବୋଲାଇବ ମହୀମଣ୍ଡଳେ ଏକା ବୀର ।
ଶେଷ ହେଲା ମୂଷିକ ମାର୍ଜାର ସମ୍ବାଦ
କହେ କୃଷ୍ଣସିଂହ ନୃପତି ବହି ମୋଦ ।

●

## ପୂଜନୀ ବ୍ରହ୍ମଦତ୍ତ ସମ୍ବାଦ

ଯୁଧିଷ୍ଠିର ବୋଇଲେ ବିଶ୍ୱାସ କାହାକୁ
ନ ଯିବ ବୋଲିକରି କହିଲ ଆମ୍ଭଙ୍କୁ ।
କହ କାହାକୁ ହେ ବିଶ୍ୱାସ ନରପାଳ
ଯିବ ଜାଣିବାକୁ ଆପଣା ଶତ୍ରୁବଳ ।
ଭୀଷ୍ମ ବୋଇଲେ ହେ ପୂଜନୀ ବ୍ରହ୍ମଦତ୍ତ
ସମ୍ବାଦକୁ ଶୁଣ ରାଜନ ଦେଇ ଚିତ୍ତ ।
କାମ୍ପିଲ୍ୟ ନଗରରେ ବ୍ରହ୍ମଦତ୍ତ ରାଜା
ପାଳନ କଲେ ବସି ଧର୍ମରେ ପରଜା ।
ପୂଜନୀ ନାମେ ପକ୍ଷୀଟିଏ ତାଙ୍କ ଘରେ
ରହିଲା ଘର କରି ଭାରି ନିର୍ଭୟରେ ।
ସବୁ ଜନ୍ତୁମାନଙ୍କ କଥା ସେ ଜାଣଇଁ
ଏ ବାହାରେ ଧର୍ମ ଲୋବେ ସେ ନ ଛାଡ଼ଇ ।

ବ୍ରହ୍ମଦତ୍ତ ସ୍ଥିତି କରନ୍ତେ ପ୍ରଜା ଜାତ
ପୂଜନୀ ସେହିଦିନ ପ୍ରସବିଲା ସୁତ ।
ରାଜପୁତ୍ର ନିଜ ସୁତର ହିତପାଇଁ
ଫଳ ଆଣିବାକୁ ପୂଜନୀ ଗଲା ଧାଇଁ ।
ସମୁଦ୍ର ତଟରୁ ଆଣିଲା ଦୁଇଫଳ
ତା ଖାଇଲେ ବୃଦ୍ଧି ହୁଅଇ ବୁଦ୍ଧି ବଳ ।
ସେ ଫଳରୁ ଗୋଟିଏ ରାଜାର ପୁଅକୁ
ଦେଲା ଆନ ଗୋଟି ଆପଣା ଆତ୍ମଜକୁ ।
ସେ ଫଳକୁ ଭକ୍ଷଣ କରି ରାଜପୁତ୍ର
ଦିନକୁ ଦିନ ପୁଷ୍ଟ କରିଦେଲା ଗାତ୍ର ।
ଦିନେ ସେ ଧାଈ କାଖେ ଥାଆନ୍ତେ ପୂଜନୀ
ପିଲାଟିକୁ ସେ ଅଣାଇଲା ବନେ ଘେନି ।
ପୂଜନୀ ପିଲା ଘେନି ଖେଳନ୍ତେ ସେ ପୁତ୍ର
ସେ ପିଲା କଣ୍ଢ଼ ପ୍ରାଣକୁ କଲା ହତ ।
ପୂଜନୀ ଏହି ସମୟରେ ଗଲା ଧାଇଁ
ଦେଖିଲା ଶୋଇଛି ପିଲାଟି ମୃତ୍ୟୁପାଇ ।
କ୍ଷଣକଏ ପରିଯନ୍ତେ ହୋଇଣ ତାଟକା
ହା ପୁତ୍ର ମଲୁ ବୋଲି ଉଚ୍ଚେ କଲା ଡକା ।
ଏ ବାହାଟରେ ବୋଇଲା କ୍ଷତ୍ରିୟଲୋକଙ୍କୁ
ଯେ ବିଶ୍ୱାସ କରେ ସେ ପାଏ ତ ଶୋକକୁ ।
ମୋ ପୁତ୍ରକୁ ମାରିଛି ବଳେ ରାଜପୁତ୍ର
ଆଜ ତାହାର ମୁହିଁ କରିବି ଅହିତ ।
ଏତେ ଭାବି ରାଜପୁତ୍ରର ଆଖି ଦୁଇ
ପାଦେ ଖୋଳିଦେଲା ପୂଜନୀ କ୍ରୋଧ ହୋଇ ।
ଆକାଶରେ ଥାଇ ଯେ କହିଲ ରାଜାକୁ
ତୁମ୍ଭ ପୁଅ ମାଇଲା ମୋହର ପୁଅକୁ ।
ଏକାବେଳକେ ହେଲେ ଦୁହେଁତ ଜନମ
ତୁମ୍ଭର ପୁତ୍ର କଲା ଦେଖ ଏ ଅକର୍ମ ।
ଏ ସକାଶୁଁ ମୁହିଁ ମାନସେ କ୍ରୋଧ-ବହ୍ନି
ଦେଲି ତୁମ୍ଭ ପୁଅର ଆଖିକି ଫୁଟାଇ ।
ବ୍ରହ୍ମଦତ୍ତ ବୋଇଲେ ସ୍ମରି ହେଲା କଥା
ରହ ଆସି ପୂଜନୀ, ଛାଡ଼ି ଭୟ ବ୍ୟଥା ।
ପୂଜନୀ ବୋଇଲେ ମୁଁ କଲି ଅପରାଧ
କପଟ ରହିବଟି କଥାରେ ହୋଇ ବୋଧ
ଅନ୍ୟୋନ୍ୟରେ ଯେବେ ବଇର ଉପୁଜଇ
ପୁଅ ନାତି ପର୍ଯ୍ୟନ୍ତେ ଜାଣ ଥାଏ ରହି ।

ମାତା ପିତା ସମସ୍ତ ବାନ୍ଧବରେ ବର
ଭାର୍ଯ୍ୟା ଅଟଇ କେବଳ ମୃତ୍ୟୁକର ।
ଧନ ହରଣରୁ ପୁତ୍ର ଯେ ଭ୍ରାତା ସଖା
ଶତ୍ରୁ ମଧ୍ୟେ ଜାଣ ତ ହୋଇଥାନ୍ତି ଲେଖା ।
ଅନ୍ୟୋନ୍ୟେ ବଇର କରନ୍ତି ଯେଉଁମାନେ
ପ୍ରୀତି ରହି ନ ପାରେ ଜାଣ ତାଙ୍କ ମନେ ।
ଯେଉଁ କାରଣକୁ ତୁମ୍ଭର ପାଖେ ଥିଲି
ସେ କାରଣ ସମସ୍ତ ଏବେ ତ ଛାଡ଼ିଲି ।
ଏବେ ତ ତୁମ୍ଭ ସଙ୍ଗେ କଲିନି ବଇର
ଯାଉଅଛି ଆଜ୍ଞା ଦିଅ ହେ ନୃପବର ।
ବ୍ରହ୍ମଦତ୍ତ ବୋଇଲେ ତୋର ମୋର ଦୋଷ
ସମାନ ହୋଇକରି ହେଲାତ ପ୍ରକାଶ ।
ତୁ କାହିଁପାଇଁ ମନେ ଡରୁଛୁ ଶକୁନ
ଆସ ମୋଠାକୁ ପୂର୍ବପରି ସ୍ନେହ ଘେନି ।
ପୂଜନୀ ବୋଇଲା ନୃପତି ତୁମ୍ଭ ପ୍ରୀତି
କରିବାକୁ ହେଉନାହିଁ ହେ ମୋର ମତି ।
ବ୍ରହ୍ମଦତ୍ତ ବୋଇଲେ ପ୍ରୀତି ଅପୀରତି
ବାରମ୍ବାର ହୋଏ ପୂଜନୀ ଭାବ ମତି ।
ପୂଜନୀ ବୋଇଲା ହେ ଯେତେ ପ୍ରୀତି ହେଉ
ପୂର୍ବ ଅପକାର ପାଶୋରି ଯିବ କାହୁଁ ।
କ୍ଷତ୍ରିୟଙ୍କର ଧର୍ମ ନ ପାରିଲେ ବଳେ
ମାରନ୍ତି ତାଙ୍କୁ ପାଶେ ରଖି କରି କୁଳେ ।
ବ୍ରହ୍ମଦତ୍ତ ବୋଇଲେ ଏ ଅହିତପାଇଁ
ରହିଲେ ପାଶେ ସ୍ନେହ ତା'ଠାରେ ଜନ୍ମଇ ।
ପୂଜନୀ ବୋଇଲା ସେ ନୃପତି ବଇର
ହେଉଅଛି ଜଗତେ ପାଞ୍ଚଟି ପ୍ରକାର ।
ସ୍ତ୍ରୀ ଭୂମି ବଚନ ସ୍ୱପନ ଅପରାଧ
ସକାଶରୁ ଜାତ ହେଉଅଛି ବିରୋଧ ।
ସମୁଦ୍ରରେ ବାଡ଼ବ ଅଗ୍ନିପରି ହୋଇ
ବୈରାଗ୍ନି ସଦୟେ ହୃଦୟରେ ଥାଏ ରହି ।
ପୂର୍ବରେ ଥିଲା ସଦୟେ ତୁମ୍ଭ ଆମ୍ଭ ପ୍ରୀତି
ଦଇବରେ ଆସି ସେ ହୋଇଲା ଅପ୍ରୀତି ।
ବ୍ରହ୍ମଦତ୍ତ ବୋଇଲେ କାଳେ ସବୁ ହୋଏ
ଏଥିକି କେତେ ବସି କରୁଅଛ ଭୟେ ।
କାଳ ଘେନି ଜନ୍ମ ମରଣ ଲୋକଙ୍କର
ହେଉଅଛି ଆଗୋ ପୂଜନୀ ମନେ କର ।

ଉପକାର କି ଅପକାରରେ କାହାର
ଅଧିକାର ନାହିଁ ତ ଆୟତ୍ତ କାଳର ।
କାଳ ସକାଶରୁ ହେଉଛି ଦୁଃଖ ସୁଖ
କାଳ ଘେନ ହେଉଛି ସମ୍ମୁଖ ବିମୁଖ ।
ପୂଜନୀ ବୋଇଲା ହେ କାଳ ଯେବେ ସତ
କହ କାହିଁପାଇଁ ବଇର ଘେନ ଶତ୍ରୁ ।
ଜ୍ଞାତିରୁ ଯେବେ ଆନ ଗୋଟିଏ ମାରଇ
ତାକୁ କମ୍ପା ମାରନ୍ତି ଧାଇଁ କ୍ରୋଧ ହୋଇ ।
ସବୁଠାକୁ କାଳ ତ ଅଟଇ ପ୍ରମାଣ
ତା କମ୍ପାଇ ନ ଭାବ ଆହେ ନରଗଣ ।
କାଳ ସକାଶରୁତ ଭଲ ମନ୍ଦ ଦୁଇ
ହେଉଛି ଜାଣୁଥାଇଁ ଜଗି କାହିଁପାଇଁ ।
ଦେବଦାନବଙ୍କ ମଧ୍ୟରେ ବୈର ଜାତ
ହୋଇଥିଲା କିପାଇଁ କହ ନରନାଥ ।
କାଳବଶରେ ଯେବେ ରୋଗ ଶୋକ ଜାତ
ଔଷଧ ଖାଇବାର ହୋଏ କି ଉଚିତ ।
କାଳ ଯେବେ ପ୍ରମାଣ ଶୋକ କରି ଲୋକେ
କହୁଥାଆନ୍ତି ମୁଣ୍ଡ ପୋତି କମ୍ପା ଥୋକେ ।
ତୁମ୍ଭ ପୁତ୍ରକୁ ତ ମାରିଅଛି ମୁହିଁ
ମୋତେ ବାନ୍ଧିବାକୁ ଲୋଡ଼ୁଛ ନରସାଇଁ ।
ଲୋକେ ପକ୍ଷୀଠାରେ ଯା କରନ୍ତି ଆଦର
କ୍ରୀଡ଼ା ଭୋଜନକୁ ବିଚାର ନରବର ।
ଏଥିରେ ଆନ ନ ସମ୍ଭବେ ଆନଠାରେ
ଆଉ କଥା ଗୁଡ଼ାଏ ନ କହ ଆଗରେ ।
ବନ୍ଧନ ଜନ୍ମ ମୃତ୍ୟୁ ତିନିଙ୍କି ସମାନ
କରି କହିଛନ୍ତି ପଣ୍ଡିତ ସାଧୁଜନ ।
ସବୁ ଜନଙ୍କର ଯେ ପ୍ରାଣ ପୁତ୍ର ପ୍ରିୟ
ଏ ବାହାରେ ବାଞ୍ଛନ୍ତି ମହତ ଉଦୟ ।
ଅନିଷ୍ଟ ତୁଲେ ବସ ଇଷ୍ଟ ବିଯୋଜନ
ଜରା ଅର୍ଥ ବିପତ୍ତି ଜୟ ନିଜଧନ ।
ସ୍ତ୍ରୀ ହିଂସା ସକାଶୁ ଜନ୍ମଇ ଯେ ବୈର
ହୁଏ ରଜନ ସେ ଅତି ଦୁଃଖକର ।
ଦୁର୍ବୁଦ୍ଧି ଲୋକେ ପରେ ଦୁଃଖ ନ ଘେନନ୍ତି
ଆପଣା ଦୁଃଖ ହେଲେ ବସି ଭାବୁଥାନ୍ତି ।
ତୁମ୍ଭ ଆମ୍ଭ ବଇର ବରଷ ଶତରେ
ନ ଯିବ ବୋଲି ପ୍ରତେ ହେଉଛି ମନରେ ।

ବଇର ଜାତ କରି କରେ ଯେବେ ପ୍ରୀତି
ତତକାଳେ ରାଜେ ସେ ହୁଅଇ ଅପ୍ରୀତି ।
ପଣ୍ଡିତେ କହିଛନ୍ତି ଅବିଶ୍ୱାସ କଲେ
ମହତ ସୁଖ ଲୋକ ଲଭଇଟି ଭଲେ ।
ଉଶନା କହିଛନ୍ତି ପ୍ରହ୍ଲାଦ ଆଗେ
ଶତ୍ରୁକୁ ଶ୍ରଦ୍ଧା କଲେ ପଡ଼େ ମୃତ୍ୟୁ ଭାଗେ ।
ରାଜାମାନେ ଶତ୍ରୁକୁ ଆଶ୍ୱାସନା କରି
ପାଖେ ରଖି ବେକ ମୋଡ଼ନ୍ତି ବଳେ ଧରି ।
ରାଜାର ତ କାହାକୁ ଯିବାର ବିଶ୍ୱାସ
ଶାସ୍ତ୍ର ଦେଖି ନାହିଁ ହେ ନରକୁଳଈଶ ।
ବ୍ରହ୍ମଦତ୍ତ ବୋଇଲେ ବିଶ୍ୱାସ ସକାଶରୁ
ହେଉଅଛି ରାଜା ଯେ ସବୁଲୋକେ ଗୁରୁ ।
ପୂଜନୀ ବୋଇଲେ ଯା ପାଦେ ବ୍ରଣ ଥାଏ
ଚାଲିବା ବେଳକୁ ସେ ମହାବ୍ୟଥା ପାଏ ।
ନେତ୍ର ରୋଗୀ ଲୋକ ଯେ ଚାହିଁଲେ ଖରାକୁ
ଆଖି ବୁଜି ଦେଇ ପଶଇ ସେ ଘରକୁ ।
ଆପଣା ବଳ ନ ଜାଣି ଯେ ଦୁଷ୍ଟବୁଦ୍ଧି
କରଇ ତା ମରଣ ହୁଅଇ ପ୍ରସିଦ୍ଧି ।
ବରଷା ନ ଜାଣି ଯେ କରଇଟି ଚାଷ
ତାର ଶ୍ରମପାକ ସମସ୍ତ ଯାଏ ନାଶ ।
ପିତ୍ତା କଷା ହେଉ ଯେ ପଥ୍ୟଦ୍ରବ୍ୟ ଖାଏ
ରୋଗ ତାକୁ ବାଧି ନ ପାରଇ ହେ ରାଜେ ।
ଦଇବ ପଉରୁଷ ଦୁହିଁଙ୍କ ଆଶ୍ରୟ
କରିଛନ୍ତି ଜାଣ ସଂସାର ଜନଚୟ ।
କ୍ଳୀବ ଲୋକେ ଦଇବ ଆଦର କରନ୍ତି
ଅକ୍ଳୀବ ଲୋକମାନେ କରମ କରନ୍ତି ।
କର୍ମ କଲା ଲୋକେ ଅନର୍ଥ ନରବର
କେବେ ଯେ ବାଧି ନ ପାରଇ ମନେ କର ।
ଯେ କାର୍ଯ୍ୟ ସଂଶୟ ହୋଇବ ନରପତି
ପରାକ୍ରମ କରି ସେ କାର୍ଯ୍ୟରେ ଝଟତି ।
ସବୁ ଛାଡ଼ି ଆପଣାର ହିତ କରିବାର
ଅଟଇ ଏହି ସବୁ କଥାର ବିଚାର ।
ବିଦ୍ୟା ଶୌଚ ଦାକ୍ଷ୍ୟ ବଳ ଯେ ଧୀରପଣ
ପଣ୍ଡିତ ଜନଙ୍କର ଏ ପାଞ୍ଚୋଟି ଗୁଣ ।
ଜାଣିବା ଲୋକ ସବୁଠାରେ ଶୋଭାପାଏ
ପଢ଼ିଲେ ଭୟ ନିର୍ଭୟରେ ହିନ ନଏ ।

ବୁଦ୍ଧିମନ୍ତ ଲୋକର ହେଲେ ଅଳ୍ପ ଧନ
ବୁଦ୍ଧିରେ ସେ ଦ୍ୱିଗୁଣ ହୁଅଇ ରାଜନ ।
ଗୃହସ୍ନେହ ଶଙ୍କୁରେ ବନ୍ଧ ହେଲେ ନର
ଜାଣ ତାକୁ ଭାର୍ଯ୍ୟା କରେଟି ଆହାର ।
ଯେଉଁ ରୂପେ କଙ୍କଡ଼ା ପ୍ରସବ ପିଲାକୁ
ମରଇ ସେହିରୂପେ ଲଭେ ମରଣକୁ ।
ଯେଉଁ ଦେଶରେ ବ୍ୟାଧି ଦୁର୍ଭିକ୍ଷ ପଡ଼ିବ
ସେ ଦେଶରେ ଜାଣିବାଲୋକ ନ ରହିବ ।
ଏତେ କଥାଯାକ ସବୁ ତ ମୁଁ ଜାଣଇଁ
କହୁଛି ତୁମ୍ଭ ପାଶେ ନ ପାରିବ ରହି ।
କୁପୁତ୍ର କୁଭାର୍ଯ୍ୟା କୁରାଜା କୁମିତ୍ର
ଛାଡ଼ିବ ଲେଖିଛି ହେ ନରପତି ଶାସ୍ତ୍ର ।
ଏ ବାହାରେ କୁଦେଶ କୁସମ୍ବନ୍ଧ ଦୁଇ
ତ୍ୟାଜ୍ୟ ବୋଲି ପଣ୍ଡିତମାନେ ଛନ୍ତି କହି ।
କୁଭାର୍ଯ୍ୟାଠାରେ ଯେ ପ୍ରୀତି ନ ରହଇ
କୁପୁତ୍ରକୁ ସ୍ନେହ କରିଲେ କାର୍ଯ୍ୟ ନାହିଁ ।
କୁତ୍ସିତ ରାଜାରେ ନ ପାଏ ଲୋକ ସୁଖ
କୁଦେଶେ ରହିଲେ ଅବଶ୍ୟ ଲଭେ ଦୁଃଖ ।
କୁମିତ୍ର ଜନରେ ମିତ୍ରତା ଆଚରିଲେ
ଅମିତ୍ରଗୁଣକୁ ସେ ଲଭେ ରାଜ୍ୟେ ଭଲେ ।
କୁତ୍ସିତ ସମ୍ବନ୍ଧେ ହୁଅଇ ଅପମାନ
ମୋ କହିବାରୁ ଏହା ଭଲ କରି ଜାଣ ।
ପତିକି ଯେବେ ପ୍ରିୟ ବଚନ ଉଚ୍ଚାରି
କହଇ ଜାଣିବ ସେ ଭାର୍ଯ୍ୟା ବୋଲି କରି ।
ମାତା ପିତାକୁ ଯେ କରଇ ନିତି ସେବା
ପୁତ୍ର ବୋଲି ଏକା ତାହାକୁ ଯେ ମାନିବା ।
କହିଲେ ଯେ ଗୁପତ ନ କରେ ପ୍ରକଟ
ମିତ୍ର ବୋଲି ତାକୁ ବୋଲିବ ନୃପଶ୍ରେଷ୍ଠ ।
ଯେଉଁ ଦେଶେ ଲୋକ ସହଜେ ବୃତ୍ତି ପାଏ
ସେ ଦେଶକୁ ଦେଶ ବୋଲିଟି ଜାଣ ରାଜ୍ୟେ ।
ଯେଉଁ ରାଜା ଲୋକର ବଚନ ଘେନଇଁ
ତା ପାଖରେ ରହିବ ବର୍ତ୍ତନ ନ ଖାଇ ।
ଦରିଦ୍ରକୁ ଯେଉଁ ନୃପତି ଦିଏ ଅନ୍ନ
ତା ସମ୍ବନ୍ଧ କେବେ ନ ଛାଡ଼ନ୍ତି ଜନ ।
ଗୁଣବନ୍ତ ଧର୍ମୀ ରାଜାକୁ ମିତ୍ର ସୂହୃ
ତ ପରିଜନ ହୁଅନ୍ତି ଅନୁରକ୍ତ ।
ପ୍ରଜାଠାରୁ କର ନେଇଣ ନ ପାଳନା
ନ କରଇ ଗ୍ଭେରରେ ହୁଏ ସେ ଗଣନା ।
ଅଭୟ ଦେଇଥାଏ ଲୋକକୁ ରାଜନ
ଅର୍ଥଲୋଭେ ସେ କଥା କରଇ ସେ ଆନ ।
ତେବେ ସେହି ଅଧର୍ମ ନରକ ତାହାର
ଅନ୍ତଃକାଳେ ମୂଳ ହୁଅଇ ମନେ କର ।
କହିବାର କଥା କରଇ ଯେଉଁ ରାଜା
ସ୍ୱର୍ଗେ ତାକୁ କରନ୍ତି ଶଚୀପତି ପୂଜା ।
ପିତା ମାତା ଗୁରୁ ଗୋପିତା ବହ୍ନି ଯମ
କୁବେର ବୋଲାଏଟି ନରଙ୍କ ଉତ୍ତମ ।
ପ୍ରଜାଠାରେ ଦୟାଟି କରିବାରୁ ପିତା
ଜ୍ଞାନରେ ଅନୁଗ୍ରହ କଲେ ହୋଏ ମାତା ।
ଅନିଷ୍ଟ କଥାଯାକ କଲେ ରାଜା ନାଶ
ଅଗ୍ନି ବୋଲାଏ ଆହେ ଜାଣ ନରଈଶ ।
ସବୁ ପ୍ରାଣୀମାନଙ୍କୁ ଧର୍ମେ ପ୍ରବର୍ତ୍ତାଇ
ରଖିବାରୁ ଯମ ବୋଲାଏ ନରସାଇଁ ।
ଆପଣା ଜସ୍ୱଦ୍ରବ୍ୟ କରିବାରୁ ଦାନ
କୁବେର ବୋଲାଏଟି ନୃପପତି ଜାଣ ।
ଧର୍ମ ଉପଦେଶ ଦେବାରୁ ହୋଏ ଗୁରୁ
ଗୋପ୍ତା ବୋଲାଏ ସେ ପାଳନା କରିବାରୁ ।
ପ୍ରଜାଙ୍କୁ ଅନୁରକ୍ତ ଗୁଣ ଯେ କରାଏ
ମଲାଯାଏ ବସି ସେ ରାଜା ଖାଉଥାଏ ।
ଯେ ରାଜା ସକାଶୁ ବଢ଼ନ୍ତି ପ୍ରାଣୀଗଣ
ତା ଘେନି ତା ସୁକୃତ ବଢ଼ଇ ଦ୍ୱିଗୁଣ ।
ବଳଆର ତୁଳରେ ଦୁର୍ବଳ ବିରୋଧୀ
ହେବ ବୋଲି ତ ଲେଖି ନାହିଁ ଶାସ୍ତ୍ର ବିଧି ।
ଏହିରୂପେ ଶକୁନ ବ୍ରହ୍ମଦତ୍ତ ଆଗେ
କହିକରି ମେଲାଣି ମାଗିଣ ସରାଗେ ।
ଆନ ସ୍ଥାନଟିକରେ କଲା ଯାଇ ବାସ
ଶୁଣିଲ ମୋ'ଠାରୁ ପାଣ୍ଡବ କୁଳଈଶ ।
ଆଉ କି ଇଚ୍ଛା ଥିଲେ ପଚାର କହୁଛି
ନୃପ ହେ ରାଜନ ସନ୍ଦେହ ମନ କାଛି ।
ଏହିଠାରେ ତ ବ୍ରହ୍ମଦତ୍ତ ପୂଜନୀର
ସମ୍ବାଦ ଶେଷ କଲେ ବ୍ୟାସଋଷିବର ।
ସେ ବ୍ୟାସଙ୍କ ପାଦ କମଳ ମନେ ଧ୍ୟାୟି
କୃଷ୍ଣସିଂହ ନରେଶ ଗୀତରେ କହଇ ।

## କଣିକ ଶତ୍ରୁଞ୍ଜୟ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଲୋକ ଧର୍ମକ୍ଷୀଣ
ହୋଇଲେ ତ ପୀଡ଼ା ପାଇବ ନରଗଣ ।
କି ବସ୍ତୁରେ କରି ସେ ହୋଇବ ଧଇର୍ଯ୍ୟ
ଏହା ମୋତେ ବତାଇ କହ ରଥୀରାଜ ।
ଭୀଷ୍ମ ବୋଇଲେ ହେ ବିପତ୍ତିକାଳ ନୀତି
କହିବି ଶୁଣ ଆହେ ପାଣ୍ଡବ ନୃପତି ।
ବିପତ୍ତିକାଳ ହେଲେ ନରପତି ଦୟା
ହୃଦୟରୁ ଛାଡ଼ି ସେ ହୋଇବ ନିର୍ଦ୍ଦୟା ।
ଏ ବିଷୟେ କଣିକ ଶତ୍ରୁଞ୍ଜୟଙ୍କର
ସମ୍ବାଦ ପୂର୍ବେ ପଢ଼ିଅଛୁ ହେ ଅପାର ।
ପୂର୍ବେ ଶତ୍ରୁଞ୍ଜୟ କଣିକଠାକୁ ଗଲେ
ଅଲବ୍ଧ କଥା ଲବ୍ଧ ହେବାର ପୁଚ୍ଛିଲେ ।
ଏ ବାହାରେ ପୁଚ୍ଛିଲେ ଲବ୍ଧ ବରଧନ
କିରୂପରେ ହୁଅଇ କହ ତପୋଧନ ।
ଲବ୍ଧାର୍ଥ ବଢ଼ିଲେ ପାଳିବ କିରୂପେ
ପାଳିତାର୍ଥ ବ୍ୟୟ କରିବ କି ବସ୍ତୁରେ ।
ଏହା ଶତ୍ରୁଞ୍ଜୟ ପୁଚ୍ଛନ୍ତେ କଣିକଙ୍କୁ
କଣିକ ମହାଋଷି କହିଲେ ତାହାଙ୍କୁ ।
ରାଜ ନୀତି ଦଣ୍ଡ ଦେଇଣ ଷଉରୁଷ
ଖ୍ୟାତ କରୁଥିବ ହୋଇଣ ସେ ଉଲ୍ଲାସ ।
ଆପଣାର ଛିଦ୍ର ଗୁପତ କରି ରଖି
ଆରଛିଦ୍ରେ ନିତି ନବେଶି ଥିବ ମତି ।
ରାଜା ଯେବେ ନିତି ପରକୁ ଦଣ୍ଡ ଦିଏ
ପରଲୋକ ଯେ କମ୍ପୁଥାନ୍ତି ନିତି ଭୟେ ।
ଏହି ସକାଶରୁ ପ୍ରାଣୀର ଭୟ ପାଇ
ରହିଥାନ୍ତି ମହିମା ବୋଲି ସାଧ ହୋଇ ।
କାର୍ଯ୍ୟର ତତ୍ତ୍ୱକୁଟି ଜାଣନ୍ତି ଯେମାନେ ।
ଏ କଥାକୁ ଆଗ୍ର ବୋଲନ୍ତି ପ୍ରଜ୍ଞାବନେ ।
ସାମ ଦାନ ଭେଦ ଦଣ୍ଡ ଏ ଚାରିଙ୍କରେ
ଦଣ୍ଡ ଉପାୟ ଅଟେ ଅଧିକ ଲୋକରେ ।
ଛିନ୍ନମୂଳ ହେଲେ ଦେଖ ଏ ବୃକ୍ଷମାନ୍ତ
ଶାଖା ଥିଲେ ହେଲେ ଶୁଖିଣ ଯାଇଛନ୍ତି ।
ଏହା ଜାଣିଣ ରାଜା ରିପୁପକ୍ଷ ମୂଳ
ଲୋକଟିକୁ ଆଗ ସେ କରିବ ନିର୍ମୂଳ ।

ଅସହାୟ ହୋଇ ଯେତେକ ଥିବେ ରହି
ପଛେ ତାଙ୍କୁ ମାରିବା କାହାକୁ ନ କହି ।
ବିପତ୍ତି ଯେବେ ଆସି ରାଜାକୁ ପଡ଼ିବ
ଉତ୍ତମ ଲୋକ ଯେହ୍ନ ବିସ୍ମିର କରିବ ।
ଉତ୍ତମ କରି ଦେଖାଇବ ଦେହ ବଳ
ଉତ୍ତମ କରି ମଧ ଆରମ୍ଭିବ ଗୋଳ ।
ଗୋଳେ ନ ପାରି ପଳାଇଲେ ଦୋଷ ନାହିଁ
ଦେହ ହେଲେ ଜୟ ଅଜୟ ଥାଏ ରହି ।
ବଚନରେ ବିନତି ହୋଇଣ କହିବ
ହୃଦୟଟି କ୍ଷୁର ପରାଯେ କରିଥିବ ।
ପଡ଼ିଲେ କାର୍ଯ୍ୟ ଶତ୍ରୁ ଭୁଲରେ ପୀରତି
କଲେ ହେଲେ ବିଶ୍ୱାସ ନ ଯିବ ନୃପତି ।
କାର୍ଯ୍ୟ ଲଭିବାର ଉତ୍ତାରୁ ନରବର
ତାଙ୍କ ସଙ୍ଗ ଛାଡ଼ି ଆସିବ ଏ ବିସ୍ମର ।
ସାପ ଘରେ ଥିବା ପରାଯେ ଭୟ ଧରି
ନ ପାରିବା ଶତ୍ରୁକୁ ଶ୍ରଦ୍ଧା ଥିବ କରି ।
ବୁଦ୍ଧି ଊଣା ଲୋକକୁ ଗଳ୍ପ କଥା କହି
ଦେଉଥିବ ତାହାର ଚିତ୍ତଟିକୁ ମୋହି ।
ଦୁର୍ବୁଦ୍ଧିକି ଉପର ହୋଇବା କଥାକୁ
କହି କରିଟି ବୋଧିଥିବ ହେ ତାହାକୁ ।
ଧନ ଇଚ୍ଛା ଥିଲେ ଶତ୍ରୁକୁ ଯୋଡ଼ି ହାତ
କହୁଥିବ ଯେହ୍ନ ହେବଟି ନରନାଥ ।
ଏ ବାହାରେ ଶାନ୍ତବଚନ ପରକାଶି
ନିୟମକୁ କରିବ ଏକାନ୍ତରେ ବସି ।
ଗୋଡ଼କୁ ଧରି କରି କରିବୁ ଜୁହାର
ବିପତ୍ତି ନୋହିବାକୁ ତା ଯେହ୍ନ ତାହାର ।
କାନ୍ଦି କରି ଯେ ବୋଲୁଥିବ ତୁମ୍ଭ ବିନା
ଆଉ ନାହିଁ ମୋହର ତୁମ୍ଭ ବାବୁ ନନା ।
କାଳ ହେବାଯାଏ ଶତ୍ରୁକୁ କାନ୍ଧେ ବହି
ଥିବ ଘଟ ପରି ଛେଦିବ କାଳ ରହି ।
କେନ୍ଦୁକାଠ ପରାଏ କ୍ରୋଧରେ ଜଳିବ
ମୁହୂର୍ତ୍ତିକ ଉତ୍ତାରୁ ଶାନ୍ତ ହୋଇଯିବ ।
ଯାହାର ଠାରେ କାର୍ଯ୍ୟ ନ ଥିବଟି କିଛି
ତାକୁ ପ୍ରୀତି କରି ରଖିଲେ ଦୋଷ ଅଛି ।
ନିଷ୍କପଟ କରିଣ କାହାର କାର୍ଯ୍ୟକୁ
ନ କରିବଟି, କଲେ ଲଙ୍ଘିବ ଉଜକୁ ।

କୋକିଳକଳ ପରି ଆଚରଣ ପ୍ରକାଶିବ
ବରାହ ପରି ଠେସି ପେଲି ଖୋଲି ଯିବ ।
ମେରୁ ପରି ଅଲଙ୍ଘ୍ୟ ଭାବକୁ ଧରିବ
ଅର୍ଥାଗମରେ ଶୂନ୍ୟ ଘରପରି ହେବ ।
ସାପ ପରି ଗାତରେ ଲୁଚାଇଣ ଦେହ
ରଖିବ, ପାଇଲେ ମାରିବ ବଳି କୋହ ।
ନାଟୁଆଙ୍କ ପରି ଧରିବ ନାନା ବେଶ
ଏପରି ରାଜା ହେଲେ ଲଭେ ମହାଯଶ ।
ପ୍ରତିଦିନ ଶତ୍ରୁକୁ ପଚାରି ମଙ୍ଗଳ
ନେଉଥିବ କାଳ ନୋହିବାପାଇଁ ଗୋଳ ।
ଅଭିମାନୀ ଅଳସ ଅପବାଦ ଭୀତ
ପଉରୁଷ ବିହୀନ ସଂଶୟିତ ଚିତ୍ତ ।
ଏମାନେ କେତେବେଳେ ନ ପାଆନ୍ତି କାର୍ଯ୍ୟ
ଜାଣ ମୋହଠାରୁ ହେ ଶତ୍ରୁନୃପରାଜ ।
କୂର୍ମ ଯେ ଚାରିଗୋଡ଼ ମୁଖକୁ ଛପାଇ
ଥିବା ପରି ରାଜା ଛପିବ କହୁଥାଇଁ ।
ଶତ୍ରୁ ଛିଦ୍ର ଗୋଚରେ କରି ନିଜ ଛିଦ୍ର ।
ଲୁଚାଇଲେ ପାଏଟି ଲୋକେ ସେହି ଭଦ୍ର ।
ବକ ପରି କାର୍ଯ୍ୟର ଚିନ୍ତା କରୁଥିବ
ସିଂହର ପରି ପରାକ୍ରମବନ୍ତ ହେବ ।
ପଡ଼ିଲେ ଶତ୍ରୁ ବାଘ ପରି ତଣ୍ଟି ନେଲା
ଚିପିଦେବ ଆଗଟି ନ କରିବ ହେଳା ।
ଶଶା ପରାୟେ ଅଲପକେ ପଳାଇବ
ମୂଷା ପରି ଘରେ ନିବର୍ତ୍ତି ରହିଥିବ ।
ପାନ ଅକ୍ଷ ନାରୀ ମୃଗୟା ସଙ୍ଗୀତରେ
ଆସକ୍ତ ନୋହିବ ରାଜନ ନିରନ୍ତରେ ।
କୁଟାସ୍ତୂପ ପରାଏ ଲୋଟାଇ ଅଙ୍ଗକୁ
ଭୂମିରେ ଶୋଇଥିବ ଜଣାଇ ଶତ୍ରୁକୁ ।
ବଧିର ଅନ୍ଧ ପରି ଶତ୍ରୁ ଆଗେ ରହି
ନିଜ ବେଳକାଳକୁ ରହିଥିବ ଚାହିଁ ।
ଦେଶ କାଳ ଚାହିଁ ଯେ କରେ ପରାକ୍ରମ
ବିଫଳ ନୁହଇ ତାହାର ସବୁ ଶ୍ରମ ।
କାଳ ହେଲେ ଯେ ଶତ୍ରୁ ନ କରେ ସଂହାର
ମରିବା ନିଃସନ୍ଦେହ ଅଟେଟି ତାହାର ।
ସୁପୁଷ୍ପିତ ପାଦପ ଫଳହୀନ ହୋଇ
ସୁଫଳବନ୍ତ ଦୁରାରୋହ ହୋଇଥାଇ ।

କଞ୍ଚାଫଳ ପାଚିଲା ପ୍ରାୟେ ଥାଏ ଦିଶି
ପାଚିଲା କଞ୍ଚା ପ୍ରାୟେ ଦିଶେ ନୃପବହ୍ନି ।
ଏ ସବୁ କାରଣ ବିଚାରି ନରରାଣ
କାହାଠାରେ ଶୀଘ୍ର ନୋହିବ କଦାଚନ ।
ଦେଖାଇବ କାଳ ଶତ୍ରୁ ଆଶା ବଢ଼ାଇବ
କାଳ ହେଲେ ନିମିତ୍ତ ଦେଖାଇ ଭାଙ୍ଗିବ ।
ଅଭୟ ହେଲେ ଭୟ ଭଜି ରହିଥିବ
ଭୟ ହେଲେ ନିର୍ଭୟ ହୋଇ ବିହରିବ ।
ସାହସ ବିନା ରାଜାମାନଙ୍କ ମଙ୍ଗଳ
ହେବାର ଦେଖା ନାହିଁ ଜାଣ ମହୀପାଳ ।
ଶତ୍ରୁଠାରେ ପୀରତି କରି ଘରେ ରହି—
ଥିଲେ ବୃକ୍ଷାଗ୍ରରେ ଜାଣ ସେ ଅଛି ଶୋଇ ।
ଦାରୁଣ ମୃଦୁ କର୍ମ କରି ନରନାଥ
ଦେହକୁ ରଖିବାର ଅଟଇ ଯଥାର୍ଥ ।
ଦେହ ଥିଲେଟି କାଳ ଚାହିଁ ଧରମକୁ
କରିଣ ଛଡ଼ାଇବ କଲା ପାତକକୁ ।
ଶତ୍ରୁ ଲୋକର ସେହୁ ହୋଇଥିବ ଶତ୍ରୁ
ତାକୁ ରଖିବ ଦେହ ହେବାକୁ ଶତ୍ରୁ ମୃତ୍ୟୁ ।
ପାଷଣ୍ଡ ତାପସଙ୍କୁ କରିଥିବ ଚର
ଜାଣିବାପାଇଁ ପରଜନର ବିଚାର ।
ପାନ ଆଗାର ପାନ୍ଥ ନିବାସମାନଙ୍କୁ
ପଠିଆଇ ଲୋକ ବୁଝିବ ବାରତାକୁ ।
ଅବିଶ୍ୱସ୍ତ ଲୋକେ ବିଶ୍ୱାସ ନ କରିବ
ବିଶ୍ୱସ୍ତଠି ଅତି ବିଶ୍ୱାସ ନ ଭଜିବ ।
ବିଶ୍ୱାସକୁ ଅତି ବିଶ୍ୱାସ ଯେବେ କରି
କାଳର ଭୟ ପାଏ ତହିଁ ଦଣ୍ଡଧାରୀ ।
ଜଟା ବାନ୍ଧିଣ ଯତିପଣ ଶତ୍ରୁ ଲୋକ
ଆଗରେ ଦେଖାଇ କାଟିବ ପଛେ ବେକ ।
ପୁଅ ଭାଇ ସମ୍ବନ୍ଧୀ ବନ୍ଧୁ ହୋଇ କାର୍ଯ୍ୟ
ବିରୋଧୀ ହେଲେ ସେ ଛାଡ଼ିବ ମହାରାଜ ।
ଗୁରୁ ହୋଇଣ କାର୍ଯ୍ୟ ଅକାର୍ଯ୍ୟ ନ ଜାଣି
ଅମାର୍ଗ କଲେ ଶିଖାଇବ ଡାକଆଣି ।
ଶତ୍ରୁକୁ ଦେଖି କରି ଉଠି ଛିଡ଼ା ହେବ
ନମସ୍କାର କରି ଧନ ରତନ ଦେବ ।
କାଳ ହେଲେ ବଳ ଦେଖାଇ ତାରି ବାଳ
ଧରିଣ ମାରିବ ପ୍ରହାରି କରବାଳ ।

ପର ମରମଭେଦୀ ଦାରୁଣ କରମ
ନ କଲେଟି ପୂଜା ନ ପାଏ ନରୋତ୍ତମ ।
ମିତ୍ରାମିତ୍ର ହୋଇଛି ନାହିଁ କଥାଟାଏ
କାର୍ଯ୍ୟକୁ ଚାହିଁ ସବୁ ହେଉଥାଏ ରାଜ୍ୟେ ।
ବିନୟ ହୋଇ କହୁଥିଲେ ଶତ୍ରୁଜନ
ମାରିବ ତାହାଙ୍କରେଟି ନୋହିବ ଅଧୀନ ।
ମାରିବ ଯାକୁ ତାକୁ ପ୍ରିୟ କହୁଥିବ
ମାରି ପକାଇଲେ ଯେ ବସିଣ କାନ୍ଦିବ ।
ଦୋଷ କଲେ ରୋଷ ନ ବହି ଦେବ ଶିକ୍ଷା
କାଳ ହେଲେ ମାରିବ କରି ତାକୁ କକ୍ଷା ।
ଶୁଷ୍କ ବଇରକୁ କେବେହେଁ ନ କରିବ
ନଦୀରେ ପହଁରିବା କଥାଟି ଛାଡ଼ିବ ।
ଗାଈ ଶିଙ୍ଗ ଖାଇଲେ ଝଡ଼େ ସିନା ଦାନ୍ତ
ତୋଷ କରିପାରେ କି ପେଟର ସେ ଅନ୍ତ ।
ସେହିରୂପେ ଏ ଦୁଇକଥା ନରସାଇଁ
କଲେ ନାଶ ଯାଏ କାରଣ କିଛି ନାହିଁ ।
ଧର୍ମ ଅର୍ଥ କାମକୁ କାଳେ ଆଚରିବ
ଏ ତିନି ଅଧିକ ନ ହେବାକୁ ଜଗିବ ।
ଋଣ ଶେଷ, ବଇରୀ ଶେଷ, ଅଗ୍ନି ଶେଷ,
ଥିଲେ ବଢ଼ି କରନ୍ତି କରଇ ବିନାଶ ।
ଭଲ ମନ୍ଦ ଦୁଇରୁ କରିବ ଯେ କଥା
ଅବଶେଷ ଥିଲେ ସେ ଜାତ କରେ ବ୍ୟଥା ।
କଣ୍ଟାଟି ବାଜି ଗୋଡ଼େ ରହେ ଅର୍ଦ୍ଧେ ଯେବେ
ଦୁଃଖ ଜାତ ନୋହେ କି ରାଜନ ହେ ତେବେ
ବାଟେ ଖଣ୍ଡିଜଗି ପୋଡ଼ିବ ଶତ୍ରୁଘର
ନୃପମାନଙ୍କର ଅଟଇ ଏ ବିସ୍ତର ।
ଏହା ବାହାରେ ଯେ ଇଟା ପଥର ଘରକୁ
ତଡ଼ାଇ ପକାଇବ ଲଗାଇ ଲୋକଙ୍କୁ ।
ଶୂରେ ଯେ ନିତ ରହେ ଭୟ, ଲୁବ୍‌ଧେ ଦାନ
ସମାନରେ ବିଗ୍ରହ କରିବ ରାଜନ ।
ମୃଦୁ ତୀକ୍ଷ୍ଣତା ଏହି ଦୁଇଗୁଣ କାଳ
ଅପେକ୍ଷା କରି କରିବ ହେ ନରପାଳ ।
ମୃଦୁ ହେଲେ ତୀକ୍ଷ୍ଣ, ଦାରୁଣେ ମୃଦୁତା
କଥା ସାଧି କରଇ ନରଙ୍କ ଦେବତା ।
କାଳକୁ ଜାଣି ମୃଦୁ ଦାରୁଣ ତା ଗୁଣ
ପରକାଶ କଲେଟି କାର୍ଯ୍ୟ ହୋଏ ଜାଣ ।
ବୁଦ୍ଧିମନ୍ତ ଲୋକର କୁଳରେ ବିରୋଧୀ
ହୋଇଥିଲେ ଜଗିଥିବ ରାଜନ ଅବଧି ।
ପାରି ନୋହି ଯିବା ଜଳରେ ନ ପଶିବ
ଗ୍ରାହ୍ୟ ନୋହିବାର ଦ୍ରବ୍ୟକୁ ନ ହରିବ ।
ମୂଳକୁ ଖୋଳି ନ ପାରିବାର ବୃକ୍ଷକୁ
ନ କରିବଟି ଖଣ୍ଡନରେ ପ୍ରହାରକୁ ।
ଯାହାର ମୁଣ୍ଡକାଟିବାକୁ ସମରଥ
ନୋହିବ, ତାର ଦେହେ ନ ମାରିବ ହାତ ।
କହିଲଇଁ ଏହା ତୋତେ ହେ ନରପତି
କଦାଚିତେ ଏଥିରେ ନ ଥିବଟି ମତି ।
ଏହି କଥାରୁ ଆଉ ନାହିଁ ଆନ କଥା
ଶତ୍ରୁ ଯେମନ ପାଇବ ଯେବେ ମହାବ୍ୟଥା ।
ହୋଇବାରୁ ତୁମ୍ଭେ ହେ ନରକୁଳ ନାହା
ହିତାର୍ଥୀ ହୋଇକରି କହିଲି ମୁଁ ଏହା ।
ଆହେ ଯୁଧିଷ୍ଠିର ଏ କଣିକ ବଚନ
ଯେମନ ମନେ ପ୍ରଜା ପାଳ ହେ ନରରାଣ ।
ସେହି ଦିନେ ଏହିରୂପେ ଏ ରାଜ୍ୟ ପାଳି
ହୋଇଲେ ସେ ଜନମାନଙ୍କେ ବୁଦ୍ଧିଶାଳୀ ।
କଣିକ ଶତ୍ରୁନୃପ କଥା ହେଲା ଶେଷ
ଭାବିଲେ ମନେ ରାଧିକାଦେଶୀ ପ୍ରାଣେଶ ।
କୃଷ୍ଣସିଂହ ନରେଶ କହେ ଗୀତରସେ
ରାଜ୍ୟ ପାରିପାଳନା କରିବା ଆଶେ ।

— ÷

## ବିଶ୍ୱାମିତ୍ର ଚଣ୍ଡାଳ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଯେବେ ଧର୍ମ ହୀନ
ହୋଇବ ପ୍ରଜାମାନେ ହୋଇବେ ଉଚ୍ଛନ୍ନ ।
ଚୋରେ ଖଣ୍ଡ ରାଜା ସକାଶୁଁ ଭୟ ପାଇ
ରହିବେ ଲୋକେ ପ୍ରାଣ ଧନ ଛାଡ଼ି ଦେଇ ।
ଏ ବାହାରେ ପୁଣି ଯେ ଅନାବୃଷ୍ଟି ହେବ
ତେବେ ପ୍ରଜାଜନ କେଉଁରୂପେ ଜୀଇବ ।
ଭୀଷ୍ମ ବୋଇଲେ ହେ ପୁଛିଲ ଯାହା ମୋତେ
ଏମାନ ହୋଏ ରାଜା ସକାଶୁଁ ଜଗତେ ।
ସତ୍ୟ, ତ୍ରେତା, ଦ୍ୱାପର କଳି ରାଜା ଯେମନ
ପ୍ରବର୍ତ୍ତିଛି ଜାଣ ପାଣ୍ଡବ ନରମଣି ।
କାଳଅଧୀନେ ଲୋକ ପୀଡ଼ାକୁ ପାଇଲେ
ଜ୍ଞାନର ଆଶ୍ଚର୍ଯ୍ୟେ ଜୀଇବ ଜାଣ ଭଲେ ।

ପୂର୍ବେ ତ୍ରେତା ଦ୍ୱାପର ସନ୍ଧିରେ ଅନାବୃଷ୍ଟି
ହୁଅନ୍ତେ ମହାଦୁଃଖ ପାଇ ପ୍ରଜାସୃଷ୍ଟି ।
ବୃହସ୍ପତି ଲୋକଙ୍କୁ ପ୍ରତିହତ ହେଲେ
କାଳଙ୍କ ପୁତ୍ର ଚନ୍ଦ୍ର ଦକ୍ଷିଣକୁ ଗଲେ ।
ଥାଉ ବୃଷ୍ଟି ହେବାର ମଧ୍ୟରେ କାକର
ପଡ଼ିବାର ତ ନ ଜାଣିଲେ କେବେ ନର ।
ନଦୀ ସରସୀ କୂପ ଝରଙ୍କରେ ପାଣି
ନ ଥିବାରୁ ଶୋଷରେ ମଲେ ନରଶ୍ରେଣୀ ।
ଖାଇଥିବା ଲୋକେ ଯେଉଁ ଆଡ଼କୁ ଦୃଷ୍ଟି
ଦିଅନ୍ତି ସେହିଆଡ଼େ ଦିଶେ ହାଡ଼ ସୃଷ୍ଟି ।
ଏ ସକାଶୁ ପ୍ରାଣୀର ପରସ୍ପରେ ମାଂସ
ମାରିକରି ଗ୍ରାସ କଲେ ହେ ନରହଂଶ ।
ଋଷିମାନେ ଆଶ୍ରମମାନଙ୍କୁ ଛାଡ଼ିଲେ
ବାଇ ପରି ବନଯାକରେ ବିଭ୍ରମିରେ ।
ଏହିରୂପେ ପ୍ରଜାଏ ଦିନକଲେ ଶେଷ
ଜଳହୀନ ହେବାରୁ ବାରଟିବରଷ ।
ବିଶ୍ୱାମିତ୍ର ଭାରିଯା, ତନୟଙ୍କୁ ଛାଡ଼ି
ଯା ପାଆନ୍ତି ତାହା ଖାଆନ୍ତି ହରଘଡ଼ି ।
ଦିନେ ସେ ଚଣ୍ଡାଳର ଘରରେ ପଶିଲେ
ଚର୍ମ ହାଡ଼ ବହୁତ ପଡ଼ିଛି ଦେଖିଲେ ।
ଭାଜି କରି ମାଠିଆ ହାଣ୍ଡି ଗଣ୍ଡା ଗଣ୍ଡା
ଖପରରେ ସେ ଘର ହୋଇଅଛି ମଣ୍ଡା ।
ସାପକାତିଗୁଡ଼ା ପଡ଼ିଛି ଟେକା ହୋଇ
ଘରମଧ୍ୟେ ତାର ଭୂଷଣ ସେ ଦିଶଇ ।
ଘରମାନଙ୍କରେ କୁକୁଡ଼ା ଗୋଟି ଗୋଟି
ଥାଇ ମୁଣ୍ଡ ଟେକ କରୁଥାନ୍ତି ରାବଟି ।
ଦେବତାର ଘରେ ଉଲୂକ ପକ୍ଷୀଧ୍ୱଜ
କରି ରଖିଅଛି ହେ ଯୁଧିଷ୍ଠିର ରାଜ ।
ବିଶ୍ୱାମିତ୍ର କ୍ଷୁଧାରେ ପଶି ସେ ଘରକୁ
ଖୋଜିଲେ ଆପଣାର ପେଟ ପୋଷିବାକୁ ।
ନ ପାଇଣ ଅତ୍ୟନ୍ତ ଆସକତ ହୋଇ
ପଡ଼ିଲେ ସେ ଚଣ୍ଡାଳଘରେ ମୋହ ହୋଇ ।
ପୁଣି ଚେତା ପାଇ ସେ ଭାବିଲେ ମାନସେ
କି କଲେ ନ ପଡ଼ିବ ଆଜ ମୃତ୍ୟୁ ପାଶେ ।
ଏହିରୂପେ ଅନେକ ଭାବି ମୁନିବର
ଦେଖିଲେ ତାହା ଘରେ ମାଉଁସ କୁକୁର ।
ମନେ ଭାବିଲେ ଏହା ନ ଖାଇଲେ ମୁହିଁ
ଆଜ ଏଠାରୁ ଜୀଇ ନ ପାରିବି ଯାଇ ।
ଶାସ୍ତ୍ର ତ ଲେଖିଅଛି ପ୍ରାଣ ରଖିବାକୁ
କରିବ ଭଲଜନ ଚଉର୍ଯ୍ୟ କଥାକୁ ।
ଏହିରୂପେ ଭାବିଣ ବିଶ୍ୱାମିତ୍ର ମୁନି
ଶୋଇବା ସ୍ଥାନରେ ରହିଲେ ହୋଇ ତୁନି ।
ଅର୍ଦ୍ଧରାତ୍ରକାଳେ ଚଣ୍ଡାଳ ନିଃଶବ୍ଦ
ହୋଇଲା ରାଜନ ନ ଭଜି ନିଦ୍ରାପଦ ।
ଶ୍ଲେଷ୍ମା ସକାଶରୁ ବୁଜିଲେ ହେଲେ ଆଖି
ହୃଦୟରେ ଚଣ୍ଡାଳ ଚେତାଥିଲା ରଖି ।
ତାହା ଜାଣି ନ ପାରି ବିଶ୍ୱାମିତ୍ର ଋଷି
ମାଉଁସ ନେବି ବୋଲି ଉଠି ହୋଇ ତୋଷୀ ।
ପଦଟି ନିଃଶବ୍ଦ କରି ମୁନିବର
ବାହାରିଲେ ନେବାକୁ ମାଉଁସ କୁକୁର ।
ତା ଦେଖି ଚଣ୍ଡାଳ ବୋଇଲା କେ ମାଉଁସ
ପାଶକୁ ଯାଉଛି କରିବି ତାକୁ ନାଶ ।
ବିଶ୍ୱାମିତ୍ର ବୋଇଲେ, ମୁହିଁ ବିଶ୍ୱାମିତ୍ର
ଗାଧି ରାଜନଙ୍କର ଅଟେ ମୁହିଁ ପୁତ୍ର ।
ଏହା ଶୁଣି ଚଣ୍ଡାଳ ଧଡ଼ପଡ଼ ହୋଇ
ଶେଯରୁ ଉଠି ତାଙ୍କ ପାଶେ ଗଲା ଧାଇଁ ।
ବୋଲେ ରାତ୍ରଅର୍ଦ୍ଧେ ମୋ ଦ୍ୱାରେ ମୁନିବର
କାହିଁପାଇଁ ପଶିଛ କର ତା ପ୍ରଚାର ।
ତପସ୍ୱୀ ବୋଇଲେ କ୍ଷୁଧାରେ ଆର୍ତ୍ତ ହୋଇ
ଆସିଛୁ ଜାଣ ହେ କୁକୁର ମାଂସ ଖାଇ ।
ଭକ୍ଷ୍ୟ ଅଭକ୍ଷ୍ୟରେ ବିବେକ ନାହିଁ ମୋର
ଭୋକ ସକାଶୁଁ ହେ ଚଣ୍ଡାଳ ମନେ କର ।
ଚାଉଳ ସେରେ ମିଳୁଥିଲେ ନିତି ମୋତେ
ଏତେ ପରି ଚିତ୍ତ ନୁହନ୍ତା କଦାଚିତେ ।
ଖାଇବା ଇଚ୍ଛା ଜାଣ କରେ ଯେଉଁ ଲୋକ
ତାହାର କେବେ ନାହିଁ ବିବେକାବିବେକ ।
କ୍ଷୁଧାଗ୍ନିରେ ତ ଜଳୁଅଛି ମୋର କାୟ ।
ଏ ଘେନି ହେଲି ଅଭକ୍ଷ୍ୟରେ ଭକ୍ଷପ୍ରିୟ ।
ଚଣ୍ଡାଳ ବୋଇଲା ହେ ବିଶ୍ୱାମିତ୍ରମୁନି
ଆଚରଣ କର ମୋହର କଥା ଘେନି ।
ଚଣ୍ଡାଳର ଅର୍ଜିତ କୁକୁର ମାଉଁସ
କିଏ ବୋଲିବ ତୁମ୍ଭେ କର ବୋଲି ଗ୍ରାସ ।

ଯେବେ ତୁମ୍ଭେ ଭେକକୁ ଘାରୁନାହିଁ ସହି
ଖାଇବାକୁ ଆନ ଉପାୟ କର ଯାଇ ।
ମାଉଁସ-ଲୋଭୀ ହୋଇ ତପସ୍ୟା ବିନାଶ
ନ କର ଆହେ ବିଶ୍ୱାମିତ୍ର ଋଷିଈଶ ।
ବିଶ୍ୱାମିତ୍ର ବୋଇଲେ, ରଖି ଆଗେ ପ୍ରାଣ
ପଛେ ଧର୍ମ କରିବ ଉଚିତ ଏ ଜାଣ ।
ଶାସ୍ତ୍ର ଲେଖିଅଛି ଧର୍ମ ଏ ବ୍ରାହ୍ମଣର
ଅଛଇ ମଧ୍ୟରେ ଯେସନେ ବୈଶ୍ୱାନର ।
ମୋର ଦେହରେ ବ୍ରହ୍ମତେଜ ରହିଅଛି
ସେ ବଳରେ ଅଭକ୍ଷ୍ୟ ଭକ୍ଷିବି ବୋଲୁଛି ।
ଜୀବନରେ ଆକାଂକ୍ଷା ଅଛି ତ ମୋହର
ଖାଇବି ଏ ମାଂସ ନକରି ପାରେ ଦୂର ।
ପ୍ରାଣ ଥିଲେ ତପ-ସୂର୍ଯ୍ୟରେ ପାପ ତମ
ନାଶ କରିପାରେ ହେ ଚଣ୍ଡାଳ-ଉତ୍ତମ ।
ଚଣ୍ଡାଳ ବୋଇଲା ଅଭକ୍ଷ୍ୟ ଭକ୍ଷ୍ୟ କରି
ନ ପାରିବ ଜୀଇ ଜାଣୁଛି ତପସ୍ୱୀରେ ।
ଆନ ଭିକ୍ଷା କରିଣ ଉଦରକୁ ତୋଷ
କୁକୁରମାଉଁସରୁ ଛାଡ଼ିଦିଅ ଆଶ ।
ବିଶ୍ୱାମିତ୍ର ବୋଇଲେ ମୁଁ ତ ଧନହୀନ
ଭିକ୍ଷା ବିନା କିରୂପେ ରଖିବି ଜୀବନ ।
ଏବେ ତ ଦଇବରେ ହେଲା ଅନାବୃଷ୍ଟି
ଭିକ୍ଷା ଦେବାପାଇଁ ତ ନାହିଁ ଜନସୃଷ୍ଟି ।
କୁକୁର ମାଉଁସରେ ବଳିଛି ମୋ ଆଶା
ଓଷ୍ଠେ ଦେଖି ଲାଳ କଲାଣି ଆସି ବସା ।
ଚଣ୍ଡାଳ ବୋଇଲା ହେ ପଞ୍ଚନଖେ ପାଞ୍ଚ
ଜନ୍ତୁ ଭକ୍ଷ ବୋଲିଣ ଶାସ୍ତ୍ର ଅଛି ମଞ୍ଚ !
ଏହା ବାହାରେ ଭକ୍ଷ୍ୟଜନ୍ତୁ ପାଞ୍ଚନଖ
ପାଞ୍ଚରେ ଏ କୁକୁର ଅଛଇଟି ଶିଖ ।
ବିଶ୍ୱାମିତ୍ର ବୋଇଲେ କ୍ଷୁଧାକୁଳ ହୋଇ
ଅଗସ୍ତ୍ୟଋଷି ଦେଲେ ବାତାପିକି ଖାଇ ।
ମୁହିଁ ତ ହୋଇଅଛି କ୍ଷୁଧାରେ ଆତୁର
କରିବି ଏ କୁକୁରମାଂସକୁ ଆହାର ।
ଚଣ୍ଡାଳ ବୋଇଲା ହେ ଯା ତୁମ୍ଭ ମନକୁ
ଆସୁଛି ତା କର କି ଅଛି କହିବାକୁ ।
ବିଶ୍ୱାମିତ୍ର ବୋଇଲେ ସାଧୁଙ୍କ ମାର୍ଗକୁ
ଆଚରି ସିନା ମୁଁ ଖାଉଛି ମାଉଁସକୁ ।

ଚଣ୍ଡାଳ ବୋଇଲା ଅସାଧୁ ଯେଉଁ କର୍ମ
ଆଚରଇ ସେ କର୍ମ ନ ବୋଲାଏ ଧର୍ମ ।
ବିଶ୍ୱାମିତ୍ର ବୋଇଲେ, କହିଲି ତ ତୋତେ
ଅଭକ୍ଷ୍ୟ ଭକ୍ଷିଲେ ଅଗସ୍ତ୍ୟ ମହାମତେ ।
ତୁ କିମ୍ପା ମୋତେ ଏତେ ନିନ୍ଦା କରୁଅଛୁ
କଷ୍ଟ କରି କଥା କହି ମୋ ଦୋଷ ବାଛୁ ।
ଚଣ୍ଡାଳ ବୋଇଲା ହେ ବ୍ରାହ୍ମଣର ସାଇଁ
ଅଗସ୍ତି ଋଷି ବାତାପିଙ୍କି ଦେଲେ ଖାଇ ।
ତୁମ୍ଭେ କେଉଁ କଥାକୁ କୁକୁର-ମାଉଁସ
ଖାଇବ ବୋଲୁଅଛ କର ତା ପ୍ରକାଶ ।
ବିଶ୍ୱାମିତ୍ର ବୋଇଲେ ପ୍ରାଣୁ ବଡ଼ ହୋଇ
ଜଗତେ ଥିଲା ପର ମୋତେ ଦିଶୁନାହିଁ ।
କୁକୁର-ମାଉଁସ ସେ ରହିବ ଯେବେ ଜୀବ
ତା ଗୁଡ଼ ଯେଉଁ କଥା ଲୋକ କରି ଯିବ ।
ଚଣ୍ଡାଳ ବୋଇଲା ହେ ବିଶ୍ୱାମିତ୍ର ମୁନି
କ୍ଷୁଧା ଘେନି ପଛକେ ହୁଅ ଯମ-ସ୍ଥାନୀ ।
ଏ କୁକୁର ମାଉଁସ ଖାଇକରି ପ୍ରାଣ
ରଖିବ ଯା ବୋଲୁଛ ନୋହେ କିଛି ଗୁଣ ।
ତୁମ୍ଭର ଭଲ ପାଇଁ କହୁଅଛି ମୁହିଁ
ଯାହା ଇଚ୍ଛା ତାହା କର ହେ ଋଷିସାଇଁ ।
ବିଶ୍ୱାମିତ୍ର ବୋଇଲେ ଚଣ୍ଡାଳତ୍ୱ ପାଇ
ମୋତେ ଧର୍ମ କହୁଛୁ, ଏ ଧର୍ମ ନୁହଇ ।
ଚଣ୍ଡାଳ ବୋଇଲା ହେ ତୁମ୍ଭ ହିତପାଇଁ
କହିଲି ସିନା କ୍ରୋଧ ହେଉଛ କିମ୍ପାଇଁ ।
ବିଶ୍ୱାମିତ୍ର ବୋଇଲେ ବନ୍ଧୁ ଯେବେ ମୋର
ହେଲ ଦିଅ ମାଉଁସ କରିବି ଆହାର ।
ଚଣ୍ଡାଳ ବୋଇଲା ମୁଁ ମାଂସ ଦେବି ନାହିଁ
ତୁମ୍ଭେ ବଳେ ନେଲେ ତ ରଖିବି ଛଡ଼ାଇ ।
ବିଶ୍ୱାମିତ୍ର ବୋଇଲେ ଗରହିତ କର୍ମ
କରି ବହିଲେ ତ ତରିବି କଉ ଧର୍ମ ।
ଚଣ୍ଡାଳ ବୋଇଲେ ତୁମ୍ଭଙ୍କୁ ତୁମ୍ଭେ ସାକ୍ଷୀ
ହୋଇଣ ଆଚରଣ କର ହୋଇ ଦୁଃଖୀ ।
ଏରୂପେ ବିଶ୍ୱାମିତ୍ର ଆଗେରେ ଚଣ୍ଡାଳ
କହି ନିବର୍ତ୍ତିଲା ପାଣ୍ଡବ ମହୀପାଳ ।
ବିଶ୍ୱାମିତ୍ର କୁକୁର-ମାଉଁସ ଫଡ଼ିଆ
ବହି କନ୍ଧଦେଶେ ଉଲ୍ଲାସ କରି ହିଆ ।

ଭାର୍ଯ୍ୟା ଚୁଲେ ତାହା ଅଗ୍ନିରେ ପାକ କଲେ
ଖାଇବ ବୋଲି ଶୁଦ୍ଧ ହୋଇଣ ବସିଲେ ।
ଏପରି ସମୟରେ ଜାତ ହେଲା ବୁଦ୍ଧି
ଦେବଙ୍କୁ ଦେଇ ଏହା ଖାଇବାର ବିଧି ।
ଭାରଯାକୁ ବୋଇଲେ ବେଗେ ଅଗ୍ନି ଜାଳ
ତୋଷିବି ଏ ମାଉଁସେ ପିତୃ ଲୋକପାଳ ।
ବିଶ୍ୱାମିତ୍ରଙ୍କର ଭାରିଯା ସେହିକ୍ଷଣି
ଜାଳିଲେ ଅଗ୍ନି ଶୁଷ୍କ କାଷ୍ଠ ବହି ଆଣି ।
ବିଶ୍ୱାମିତ୍ର ତା ଦେଖି ସନ୍ତୋଷ ହୋଇଲେ
ଦେବ ପିତୃଙ୍କୁ ସେ ମାଉଁସ ଦେଲେ ।
ଏପରି ସମୟରେ ବରଷିଲେ ଇନ୍ଦ୍ର
ଜଳରେ ପୃଥିବୀକି କରି ଅତି ସାନ୍ଦ୍ର ।
ବିଶ୍ୱାମିତ୍ର କୁକୁର ମାଉଁସକୁ ଖାଇ
ବନରେ ରହି ତପ କଲେ ସେ କିଠାଇ ।
ବହୁତ କାଳେ ପୁଣି ପାଇଲେ ସେ ସିଦ୍ଧି
ଏ ଜଗତଯାକରେ ପାଇଲେ ପ୍ରସିଦ୍ଧି ।
ଆହେ ଯୁଧିଷ୍ଠିର ବିପତ୍ତି ପଡ଼ିଗଲେ
କୁତ୍ସିତ ଉପାୟେ ରଖିବ ପ୍ରାଣ ଭଲେ ।
ଜୀବନ ଥିଲେ ପାପ ପୁଣ୍ୟ ଦୁଃଖ ସୁଖ
ପୁନଃ ପୁନଃ ହେଉଛି ଜାଣ ନରଶିଖ ।
ଏଠାରେ ବିଶ୍ୱାମିତ୍ର ଶ୍ୱପଚ ସମ୍ବାଦ
ସରଳ କହେ କୃଷ୍ଣସିଂହ ବହି ମୋଦ ।

—●—

## ବ୍ୟାଧ କପୋତ ସମ୍ବାଦ

ଯୁଧିଷ୍ଠିର ବୋଇଲେ ବିଶ୍ୱାମିତ୍ର ବୃତ୍ତି
ଚରିତ ଶୁଣି ଦୁଃଖେ ଯାଉଛି ମୁଁ ଭାସି ।
ଧର୍ମେ ମୋର ଆଉ ପ୍ରବର୍ତ୍ତି ନାହିଁ ମନ
ହୋଇଛି ମୁଁ ସବୁ କଥାରେ ଉଦାସୀନ ।
ଭୀଷ୍ମ ବୋଇଲେ ହେ କ୍ଷତ୍ରିୟ ଜନ୍ମ ହୋଇ
ଏକା ଧର୍ମ କଲେ ସେ ସୁଖ ନ ଭୁଞ୍ଜଇ ।
ବୁଦ୍ଧିକି ଅନୁରୂପ କରିବ ଉପାୟ
ଏହା ନୋହିଲେ କେବେ ନୁହଇଟି ଜୟ ।
ଅବଧ୍ୟକୁ ବଧନ୍ତି, ବଧ୍ୟକୁ ଅବଧ
କଲେ ରାଜା ଜାଣ ଲଭଇ ଅପରାଧ ।
ଏହି ସକାଶରୁ ଜ୍ଞାନୀବୁଦ୍ଧି ବହି
ପ୍ରଜାଙ୍କୁ ଧର୍ମେ ରାଜା ରଖିବ ରଖଇ ।
ଯେଉଁ ରାଜା ରାଜ୍ୟରେ ସ୍ୱେଚ୍ଛାରେ ହରେ ଧନ
ସେ ରାଜା କ୍ଷତ୍ରି ମଧ୍ୟେ ପାପୀ ବୋଲି ଜାଣ ।
କୁଳୀନ ବିଦ୍ୟାବନ୍ତ ଜନଙ୍କୁ ସରବ
ପଦେ ରଖିଣ ରାଜା ରାଜ୍ୟକୁ ପାଳିବ ।
ଅନ୍ୟାୟରୂପେ କର ଆଣିଲେ ରାଜନ
କ୍ଲୀବମଧ୍ୟରେ ଲେଖାହୁଏ ସେହି ଜାଣ ।
ଶିଷ୍ଟ ଅଶିଷ୍ଟର ପାଳନ ଓ ଶାସନ
କରୁଥିବ ବସିଣ ସୁଖେ ନରଗଣ ।
ତୁମ୍ଭଙ୍କୁ ତ ଉଗ୍ରକର୍ମରେ ବହି ଜାତ
କରିଛି ତହିଁ କମ୍ପା ହେଉଛ ନିସତ ।
ଯୁଧିଷ୍ଠିର ବୋଇଲେ କି ମର୍ଯ୍ୟାଦା କଲେ
ନ ପାରେ ଲୋକ ଲଙ୍ଘି କହ ମୋତେ ଭଲେ ।
ଗାଙ୍ଗେୟ ବୋଇଲେ ହେ ବିଦ୍ୟାବୃଦ୍ଧି ଦ୍ୱିଜ-
ମାନଙ୍କୁ ସେବ ହେ ପାଣ୍ଡବ-କୁଳରାଜ ।
ଦେବତା ବ୍ରାହ୍ମଣର ଏକବୁଦ୍ଧି କରି
ମହାସୁଖେ ରହି ବାସରେ ନିଅ ହରି ।
ବ୍ରାହ୍ମଣର ଅପ୍ରୀତି କରେ ଯେଉଁ ଜନ
ନରକ ତାକୁ ଥୁଆ ଥାଏ ରାୟେ ଜାଣ ।
ବ୍ରାହ୍ମଣ ତୋଷ ହେଲେ ବଢ଼େ ଆୟୁ-ଧନ
ବ୍ରାହ୍ମଣ ଅସନ୍ତୋଷ ହୁଅଇ ସେ ହୀନ ।
ଯୁଧିଷ୍ଠିର ବୋଇଲେ ଶରଣାଗତକୁ
ପାଳିଲେ କେଉଁ ଧର୍ମ କହ ତା ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ହେ ଶରଣାଗତ ଜନ
ପାଳନା କଲେ ପୁଣ୍ୟ ବଢ଼ଇ ରାଜନ ।
ଶୁଣିଥାଇଁ ଶିବି ଆଦି ରାଜନମାନେ
ଶରଣାଗତ ପାଳି ଗଲେ ସ୍ୱର୍ଗସ୍ଥାନେ ।
କପୋତଠାରେ ବ୍ୟାଧ ପଶନ୍ତେ ଶରଣ
ତା ପାଇଁ ସେ କପୋତ ଛାଡ଼ିଲା ପରାଣ ।
ଯୁଧିଷ୍ଠିର ବୋଇଲେ କପୋତ କେଉଁରୂପେ
ବ୍ୟାଧପାଇଁ ଛାଡ଼ିଲା ପରାଣକୁ ଆପେ ।
ତାହା ମୋର ଆଗେ ହେ କରତ ପ୍ରକାଶ
ଶୁଣିବାକୁ ମୋହର ବଳୁଛି ମାନସ ।
ଭୀଷ୍ମ ବୋଇଲେ ଆହେ ମୁଚୁକୁନ୍ଦ ଆଗେ ।
ଏ କଥା କହିଛନ୍ତି ଭାର୍ଗବ ସରାଗେ ।
ତୁମ୍ଭଙ୍କୁ ସେହିରୂପେ କପୋତ ବ୍ୟାଧ ଖ୍ୟାତି
କହିବି ହେ ଶୁଣ ପାଣ୍ଡବ-ନରପତି ।

ବ୍ୟାଧ ଚଢ଼ାଇଙ୍କ ବେଣ୍ଟରେ ନୋଖ ହୋଇ
ବୁଲେ ନିତି ମହାପାପକରେ ତୋଷ ବହି ।
ସେ ବ୍ୟାଧର ଦେହ ଡାମରକୁଆ ପରି ।
ନେତ୍ର ଯୁଗ ରକ୍ତ ବରନ ଥାଏ ଧରି ।
ଜଙ୍ଘଦ୍ୱୟ ସୁଦୀର୍ଘ ଅଟଇ ତାହାର ।
ଗୁଲବାବେଳେ ଦିଶୁଥାଏ ଭୟଙ୍କର ।
ଗାଲପୁଡ଼ାମାଉଁସ ବଢ଼ିବାରେ ମୁଣ୍ଡ ।
ଦିଶୁଥାଏ ଯେସନେ କ୍ଷୁଦ୍ର ସରଖଣ୍ଡ ।
ପତ୍ନୀ ଛଡ଼ା ବନ୍ଧୁ ବାନ୍ଧବ ତାର ନାହିଁ
କେବଳ ସେ ଚଢ଼ାଇ ମାରିବା ଜାଣଇ ।
ବନ୍ଧୁମାନେ ତାହାର ଦେଖିଣ ଦୁର୍ନୀତି
କେବେହେଲେ ତାହାକୁ ନ ବସାନ୍ତି କତି
ଶାସ୍ତ୍ର ତ ଲେଖିଅଛି ପାପୀର ପରଶ
କରିଲେ ସାତଜନ୍ମ ପୁଣ୍ୟ ଯାଏ ନାଶ ।
ସେ ବ୍ୟାଧ ଖାଲୋଇକ ପୃଷ୍ଠଦେଶେ ବହି
ଚଢ଼ାଇକ ସେ ମାରି ଆଣେ ସୁଖ ପାଇ ।
ବହୁତ ପକ୍ଷୀ ମାରି କରେ କାରବାର
ଅନ୍ନ କିଣି ଆଣି କରଇ ତା·ଆହାର ।
ଏହିରୂପେ ପ୍ରତ୍ୟହ ମାରି ପକ୍ଷୀକୁଳ
ସବୁ ଅଧରମକୁ କଲା ଦେହେ ଠୁଳ ।
ଦିନେ ସେହି ବ୍ୟାଧ ବନରେ ଥିଲା ରହି
ଦଇବେ ବହିଲା ପବନ ବଡ଼ ହୋଇ ।
ସେହି ସକାଶୁ ବୃକ୍ଷମାନେ ଭଡ଼ଭଡ଼ ।
ହୋଇ ତଳେ ପଡ଼ିଲେ ହୋଇ ଗଡ଼ଗଡ଼ ।
ବାୟୁ ମଧ ଅତି ଚଞ୍ଚଳେ ଚହଟିଲା
ଦେଖିବା ନରଙ୍କର ନୟନ ବୁଜିଲା ।
ଘଡ଼ଘଡ଼ ହୋଇ ବରଷେ ମେଘକୁଳ
ବିଜୁଳି ସଙ୍ଗତେ ମାଇଲେ ବଜ୍ରପାଳ ।
ଧାରରେ ଧର ପୂରିଯାନ୍ତେ ନଦୀମାନେ
ଦୁଇ ତଟ ଖାଇ ବହିଲେ ଅବିଚ୍ଛିନ୍ନେ ।
ବ୍ୟାଧ ପାଣି ପବନ ଯୋଗୁଁ ଆର୍ତ୍ତି ହୋଇ
ବୁଲିଲା ସେ ବନରେ ବାଟକୁ ନ ପାଇ ।
ପକ୍ଷୀମାନେ ବହୁତ ହରାଇଲେ ପ୍ରାଣ
କେତେ ବୃକ୍ଷକୋଟେ ରହିଲେ ଯାଇ ଜାଣ ।
ମୃଗ ସିଂହ ବରାହ ସ୍ଥଳ ଆଶ୍ରେ କରି
ସାଙ୍କୋଡ଼ାଇ ଗଣ୍ଡି ଦେଲେ ହେ ଦଣ୍ଡଧାରୀ

ସେ ବ୍ୟାଧ ଶୀତେ ଆର୍ତ୍ତ ହୋଇଣ ଘରକୁ
ବାହାରିଲା ନ ମାନି ପାଣିବରଷାକୁ ।
ବାଟରେ ଆର୍ତ୍ତ ହୋଇ କପୋତୀଏ ପଡ଼ି
ଥିଲା ତାହାକୁ କରେ ଧରିଣ ସେ ଭିଡ଼ି ।
ପୃଷ୍ଠଆଡ଼ରେ ସେ ଖାଲୋଇ ବାନ୍ଧିଥିଲା
ତହିଁରେ ତାକୁ ନେଇ ଶୀଘ୍ର ପକାଇଲା ।
ପଥେ ଯାଉଁ ଯାଉଁ ଦେଖିଲା ବୃକ୍ଷଟାଏ
ବଡ଼ ହୋଇ ବଢ଼ିଛି, ଅନନ୍ତ ପକ୍ଷୀଏ ।
ଏପରି ସମୟରେ ଗୃହଦିଗପାକ
ମେଘ ଘୁଞ୍ଚି ଯିବାରୁ ଦିଶିଲା ଆଲୋକ ।
ଶବର ସେ ସକାଶୁଁ ଦେଲା ବାରି ପାରି
ଯାଇ ନ ପାରିବ ବୋଲିଣ ବିଚାରି ।
ସେହି ବୃକ୍ଷର ମୂଳେ ଯାଇଣ ରହିଲା
ଏହିଠାରେ ରଜନୀ ସାରିବ ବୋଇଲା ।
ବୃକ୍ଷକୁ କର ଦୁଇ ଯୋଡ଼ିଣ ଶବର
କହିଲା ରକ୍ଷା କର ଶରଣ ତୁ ମୋର ।
ଏତେ ବୋଲି ସେ ପତ୍ରଗୁଡ଼ାଏ ସାଉଣ୍ଟି
ମେଞ୍ଚା କରି ତହିଁରେ ଲଦିଲା ମୁଣ୍ଡଟି ।
ଗୁଡ଼ାଏ ପତ୍ର ଗଣ୍ଡି ତଳେ ପକାଇଲା
ନିସତ ହୋଇ ବ୍ୟାଧ ଶୋଇଣ ପଡ଼ିଲା ।
ସେ ବୃକ୍ଷରେ ବହୁତ କାଳରୁ କପୋତ
ରହିଣ ଥିଲା ଆହେ ପାଣ୍ଡୁ ନୃପ ସୁତ ।
ତାର ଭାରିଯା ତାକୁ ଘୁଞ୍ଚ କରି ଚରି-
ଯାଇଥିଲା ସେକାଳେ ବରଷିଲା ବାରି ।
ଏଣୁକରି କପୋତୀ ଆସି ନ ପାରିଲା
ମହାଚିନ୍ତା କପୋତ ହୃଦେ ବାସ କଲା ।
ବୋଇଲା ବୃଷ୍ଟି ଆସି ହୋଇଲାଣି ଶାନ୍ତ
କାହିଁକି ମୋର ପ୍ରିୟା ନ ଆସିଲା କନ୍ତ ।
ପୁଅ ନାତି ବନ୍ଧୁ ମିତ୍ରରେ ପୂରିଥିଲେହେଁ ଘର
ଭାରିଯା ନ ଥିବାରୁ ଦିଶେ ଅସୁନ୍ଦର ।
ଗୃହୀଙ୍କ ଘର ଭାରିଯା ହୀନ ହେଲେ ।
ଶୂନ୍ୟ ତାହାକୁ କହିଥାନ୍ତି ଲୋକେ ଭଲେ ।
ଗୃହିଣୀ ସିନା ଗୃହସ୍ଥମାନଙ୍କର ଘର
ବନ ଅଟଇଟି ଗୃହିଣୀ ବିନା ଘର ।
ଆଜ ତ ଯେବେ ଚିତ୍ରଅଙ୍ଗରକ୍ତାପାଙ୍ଗୀ
ଆସିନାହିଁ ହେବି ମୁଁ ଯମଙ୍କର ସଙ୍ଗୀ ।

ମୁଁ ହେଲେ ହୃଷ୍ଟ ପୁଷ୍ଟ ଦୁଃଖୀ ହେଲେ ଦୁଃଖୀ
ମୁଁ ଖାଇଲେ ଖାଅଇ ମୋର ଚନ୍ଦ୍ରମୁଖୀ ।
ପତିବ୍ରତା ସ୍ତ୍ରୀର ଲକ୍ଷଣ ଯେତେକ
ମୋହର ପ୍ରିୟାଠାରେ ରହିଛି ସେତେକ ।
କ୍ରୋଧୀ ହେଲେ କଥା ନ କହି ତୋଟିତ ମଥା
ମୋ ଇଚ୍ଛାରେ ମୁଁ ତୁମ୍ଭ ହୁଏ ଲଭି ବ୍ୟଥା
ମୋ ଭୋକ କାଳ ଜାଣି ଗୃହେ ଆଣି ଗୋଡ଼
ମୋ ତୁଣ୍ଡେ ଦିଅନ୍ତେ ମୁଁ ଦିଅଇଁ ରଗଡ଼ ।
ଧର୍ମ ଅର୍ଥ କାମରେ ଭାରିଯା ସହାୟ
ନୋହିଲେ ପୁରୁଷର ନୋହେ ସେ ଉଦୟ ।
ଅସାହା ହୋଇଥିଲେ ନାରୀ ହୋଏ ସାହା
ତାରଇ କହିଛନ୍ତି ସବୁ ଋଷିନାହା ।
ରୋଗ ହେଲେ ଭାରିଯା ଅଟଇ ଔଷଧ
ବୋଲି କହିଅଛନ୍ତି ବସିଷ୍ଠ ବିବୁଧ ।
ଭାରିଯା ସମ ବନ୍ଧୁ ନାରୀ ସମ ଗତି
ଭାରିଯା ସମ ଧନ ନାହିଁ ହେ ଜଗତି ।
ଯେବେ ଘର ହେବ ଭାରିଜା-ମାତା-ହୀନ
ବନକୁ ତେବେ ଯିବ ସେହି ଗୃହୀଜନ ।
କପୋତୀ ତ ଶବର ଖାଳୋଇରେ ପଡ଼ି
କାନ୍ଦୁଥିଲି ମୁହଁ ତଳକୁ ଦେଇ ମାଡ଼ି ।
କପୋତର ଶୁଣିଣ ବିକଳ ବଚନ
ଭାବିଲି ଧନ୍ୟ ଅଟେ ମୋହର ଜୀବନ ।
ମୋର ଗୁଣକୁ ସୁମରଣା କରି ପତି
ବସିଛନ୍ତି ହୋଇ ବିକଳ କରି ମତି ।
ଯେଉଁ ସ୍ତ୍ରୀଠାରେ ଗୃହସ୍ଥ ନୋହେ ତୋଷୀ
ଘରେ ଥିଲେ ଜାଣ ସେ ନରକରେ ବାସୀ ।
ଏହିରୂପେ ଅନେକ ଭାବିଣ କପୋତୀ
କହିଲି ଭରତାକୁ ବିକଳେ ଭାରତୀ ।
ଶରଣାଗତ ମାନବଙ୍କୁ ରଖିବାର
ଉଚିତ ଅଟଇ ହେ ଲୋକମାନଙ୍କର ।
କ୍ଷୁଧା ଶୀତେ ଆରତ ହୋଇଛି ଶବର
ଏହାକୁ ଭକ୍ଷ୍ୟ ଅଗ୍ନି ଦେଇ ଶାନ୍ତ କର ।
ଗୋ ବିପ୍ର ଶରଣାଗତକୁ ଯେ ମାରଇ
ଇହ ପର ଦୁଇରେ ଗତି ତା'ର ନାହିଁ ।
ଗୃହୀ ଲୋକଟି ଯଥାଶକ୍ତି ଧର୍ମ କଲେ
ପରଲୋକ ଲୋକେ ପୂଜନ୍ତି ତାକୁ ଭଲେ ।
ତୁମ୍ଭର ତ ଏବେ ହେ ହୋଇଲ୍‌ଣି ସୁତ
ଧର୍ମକୁ ଗୃହିଁ ତୋଷ ଏ ଶବର ଶତ୍ରୁ ।
ମୋର ପାଇଁ ଦୁଃଖ ନ କର ମନେ କିଛି
ପତି ଜାଇଥିଲେ ଭାରିଯା କେ ନୋହୁଛି ।
ଏହିରୂପେ କପୋତୀ କହିଣ ବଚନ
ରହିଲି ଅନାଇଣ କପୋତ-ବଦନ ।
କପୋତୀର ଧର୍ମବଚନ ସେ କପୋତ
ଶୁଣି କରି ଅତି ଉଲ୍ଲାସ କରି ଚିତ୍ତ ।
ବ୍ୟାଧକୁ ବୋଇଲି ହେ ବଡ଼ ଶ୍ରାନ୍ତ ହୋଇ
ମୋ ଘରେ ଆସି ପଡ଼ିଛ ତ ତୁମ୍ଭେ ଶୋଇ ।
କେଉଁ କଥା କଲେ ତୁମ୍ଭର ହେବ ଭଲ
ତାହା କହ ଦୁଃଖରେ ନୁହ କଲବଲ ।
ତୁମ୍ଭେ ଅଟ ବିହଗମାନଙ୍କ ବଇରି
ଏହା ମୁଁ ଜାଣୁଅଛି ହୃଦରେ ବିଚାରି ।
ଏମନ୍ତ ହେଲେ ମୋର ଘରକୁ ଆସିଛ
ଏ ଯୋଗୁଁ ଆଦର କରୁଛି ବ୍ୟାଧବର ।
ଗୃହୀ ଯେବେ ଅତିଥିଲୋକଙ୍କୁ ଆଦର
ନ କରେ ସବୁ ଧର୍ମ ବ୍ୟର୍ଥ ହୋଏ ତାର ।
ଲୁବ୍‌ଧକ ବୋଇଲି ବାଧୁଛି ମୋତେ ଶୀତ
ଏଥିକି ଯେ ଉଚିତ କର ତା ତ୍ୱରିତ ।
ଏହା ଶୁଣି ପକ୍ଷୀ ଆକାଶେ ଉଡ଼ିଗଲି
କୁମାରଶାଳୁଁ ନିଆଁ ଖଣ୍ଡିଏ ଆଣିଲି ।
କୋରଡ଼ାମାନଙ୍କ ଶୁଖିଲାପତ୍ର ଗୋଟି
କରି ସେ ଜାଳଦେଲି ସେକ୍ଷଣି ନିଆଁଟି ।
ବ୍ୟାଧକୁ ବୋଇଲି ହେ କାହିଁକି ଶୋଇଛ
ଅନଳ ଜାଳି ଦେଇଛି ତ ବ୍ୟାଧବର ।
ତାହା ଶୁଣିଣ ବ୍ୟାଧ ଧଡ଼ପଡ଼ ହୋଇ
ଉଠିଲି ଦୁଇଜାନୁ ଶୀତରେ ଥରାଇ ।
ନିଆଁ ଟିକିଏ ଆବୋରି କରିଣ ବସିଲି
ଆହା କି ସୁଖ ହେଲି ବୋଲିଣ ଭାବିଲି ।
ପୁଣି ବ୍ୟାଧ ଆଗରେ କହିଲି ଉତ୍ତର
ଥାଅ ମୁଁ ଖାଇବାକୁ ଦେଉଛି ଆହାର ।
ଆହେ ଯୁଧିଷ୍ଠିର କପୋତ ଧର୍ମକାରୀ
ପୁଣି ଅଗ୍ନି ଜାଳିଲି ପତ୍ର ଆଣିକରି ।
ବୋଇଲି ଧର୍ମଶାସ୍ତ୍ରେ ଲେଖିଛି ଅତିଥି—
ଜନକୁଟେ ପୂଜିବ ନୋହି କିଛି ବ୍ୟଥୀ ।

ମୋ ଘରେ ଶବର ରହିଲେ ଉପବାସେ
ଏଥିପାଇଁ ପଡ଼ିବ ସନ୍ତୋଷେ ହୁତାଶେ ।
ମୋ ମାଉଁସ ଖାଇ ଶବର ହୋଇ ସୁଖୀ
ଯାଉ ନିଜ ଘରକୁ ନୋହୁ କିଛି ଦୁଃଖୀ ।
ଏତେ ବୋଲି ଅଗ୍ନିକି କରି ପ୍ରଦକ୍ଷିଣ
ଅଗ୍ନିରେ ପଡ଼ି ପ୍ରାଣ ଛାଡ଼ିଲା ସେକ୍ଷଣ ।
କପୋତ ଅଗ୍ନି ମଧ୍ୟେ ପଡ଼ି ଯହୁଁ ମଲା
ବ୍ୟାଧ ହୃଦୟେ ମହାଚିନ୍ତା ବାସ କଲା ।
ବୋଇଲା ମୋର ପାଇଁ ମଲା ଏ କପୋତ
ଧିକ ହେଉ କି ନା ମୋହର ଏ ଜୀବତ ।।
କପୋତ ମୋପାଇଁ ଯା ପ୍ରାଣକୁ ଛାଡ଼ିଲା
ଜାଣୁଅଛି ମୋତେ ସେ ଧର୍ମ ଶିକ୍ଷା ଦେଲା ।
ଏଣେକ ଆଜଠାରୁ ପୂର୍ବ ଭରସାକୁ
ଛାଡ଼ି କରି ଛାଡ଼ିବି ଦେହର ପ୍ରାଣକୁ ।
କ୍ଷୁଧା ତୃଷା ବରଷା ଆତପ ସହିବି
ତପ କରି ମୋର ଦେହକୁ ସଢ଼ାଇବି ।
ଧର୍ମରୁ ବଡ଼ ହୋଇ ଜଗତେ ନାହିଁ କଥା
କପୋତ ଦେଖାଇଲା ମୋତେ ଧର୍ମ ପନ୍ଥା ।
ଏପରି ସେ ପାପେ ବହୁତ ତାପ କରି
ହୃଦୟ ମଧ୍ୟେ ଧର୍ମବୁଦ୍ଧି ଠିକ ଧରି ।
ଖାଳୋଇରେ କପୋତୀଟି ଯେ ରଖିଥିଲା
ତାକୁ ଯାଅ ବୋଲି ତହିଁରୁ କାଢିଦେଲା ।
ବ୍ୟାଧ ବୃତ୍ତି ଶସ୍ତ୍ର ଯେତକ ଥିଲା ରଖି
ତାହା ମଧ୍ୟ ସେକ୍ଷଣି ଦେଲା ସେ ଉପେକ୍ଷି ।
କପୋତୀ ନ ଦେଖିଣ କପୋତ-ବଦନ
ନୟନ ଅଶ୍ରୁଜଳେ କରିଦେଇ ପୂର୍ଣ୍ଣ ।
ବୋଇଲା ଏତେକାଳ ମୋ ନେତ୍ର ପଶ୍ଚିମ-
ଅବସ୍ଥାକୁ ତୁମ୍ଭ ଦେଖିଲା ଦ୍ୱିଜୋତ୍ତମ ।
ପୂର୍ବେ ମୋତେ ବହୁତ କରୁଥାଅ ଶାନ୍ତ
ଦଇବେ ହେଲି ତୁମ୍ଭଠାରେ ମୁଁ ଅପ୍ରୀତ ।
ତୁମ୍ଭର ବଚନ ମୁଁ ଭୁଲି ସବୁ ଦୁଃଖ
ପ୍ରସନ୍ନ କରିଥାଏ ଚନ୍ଦ୍ରପରି ମୁଖ ।
ଆଜ ସେ କଥାଯାକ ମୋର କେଣେ ଗଲା
ଏହା ମୋ ଅଦୃଷ୍ଟରେ ବିଧି ଲେଖିଥିଲା ।
ତୁମ୍ଭଠାରୁ ମୋହର ପ୍ରିୟକାରୀ ହୋଇ
ଏ ମହୀରେ ଆଉ ତ କେହି ଦିଶୁନାହିଁ ।

ଶାସ୍ତ୍ର ଲେଖିଅଛି ଗୃହସ୍ଥ ଘରଯାର
ସବୁବେଳେ ଅଟଇ କୃତାର୍ଥ-ଦୁଆର ।
ଏହା ଜାଣିକରି ଯେ ଜାଣିବା ବନିତା
ମାନେ ଭର୍ତ୍ତାଙ୍କୁ ତେଣୁ କରନ୍ତି ଦେବତା ।
ଏହିରୂପେ ଅନେକ କାନ୍ଦଣ କପୋତୀ
ପତି ମଲା ଅଗ୍ନିରେ ପଡ଼ିଲା ଝଟତି ।
ନାନାରତ୍ନେ ଭୂଷିତ ହୋଇଣ ବିମାନ
ଆସିଲା ସେ ଘୋଟି ଆକାଶ କରି ଛନ୍ନ ।
ସେ ବିମାନମାନଙ୍କେ ଗନ୍ଧର୍ବ ଅପ୍ସରା
ବସି ଗୀତ ଗାଆନ୍ତି ବେଶେ ହୋଇ ତୋରା
କପୋତ କପୋତୀକୁ ସଙ୍ଗତରେ ଧରି
ସେ ବିମାନେ ବସିଲା ଦୁଃଖକୁ ପାସୋରି ।
ସ୍ୱର୍ଗପୁରେ ପାଇ ମହତ ସତକାର
ପ୍ରିୟା ସଙ୍ଗତେ କଲା ସୁଖରେ ବିହାର ।
ବ୍ୟାଧ ଦେଖି କପୋତୀକପୋତ-ମୁକତି
ଭାବିଲା ତପରେ ଲଭିବି ଦିବ୍ୟ ଗତି ।
ଆହେ ଯୁଧିଷ୍ଠିର ପାଣ୍ଡବ ନରପତି
ବ୍ୟାଧ ଏହିରୂପେ ନିଶ୍ଚୟ କରି ମନ ।
ମହାପ୍ରସ୍ଥାନକୁ ସେକ୍ଷଣି ଆଚରିଲା
ଆହାର କରି ବାତ କଳପନା କଲା ।
ଦେଖିଲା ସେ ବାଟରେ ପକ୍ଷୀ-ପଦ୍ମଶ୍ରେଣୀ-
ଯୁତ ହୋଇ ରହିଛି ଏକ ପୁଷ୍କରିଣୀ ।
ଲୁବ୍ଧକ ପବନ ଆହାର କରୁଅଛି
ଶୋଷକୁ ମାରି ଗଲା ମେ ପାଣି ମୁରୁଛି ।
ବନ ମଧ୍ୟେ ଆଘାତ ଲାଗି କଣ୍ଟା ଦେହେ
କ୍ଷତ ହୋଇ ସର୍ବ ଅଙ୍ଗରୁ ରକ୍ତ ବହେ ।
ଏହିକାଳେ ସଜନ ବହନ୍ତେ ପବନ
ଜାତ ହେଲା ଗଛ ଘର୍ଷଣେ ହୁତାଶନ ।
ସେ ଅଗ୍ନିଜଳି ବନଯାକ ଦେଲା ପୋଡ଼ି
ବନେ ଥିବା ଜନ୍ତୁଙ୍କୁ ଗୋଟିଏ ନ ଛାଡ଼ି ।
ବ୍ୟାଧ ତାହା ଦେଖିଣ ହୋଇ ହୃଷ୍ଟମନ
ସେ ଅଗ୍ନି ମଧ୍ୟେ ପଶି ଛାଡ଼ିଲା ଜୀବନ ।
ଲୁବ୍ଧକ ମରିବାର ଦେଖି ଦେବଶ୍ରେଣୀ
ରଥେ ନେଲେ ସ୍ୱର୍ଗେ ତାହାକୁ ସେହିକ୍ଷଣି ।
ଯକ୍ଷ କିନ୍ନରଙ୍କ ମଧ୍ୟରେ ସେ ଶବର
ଇନ୍ଦ୍ରପରି ଶୋଭା ପାଇଲା ନରବର ।

ପୁଣ୍ୟେକର୍ମ କଲାରୁ କପୋତ କପୋତି
ଶବରକୁ ପୂଜା କଲେଟି ଶଚୀ-ପତି ।
ଯେଉଁ ନାରୀ ପତି ମଲେ ହୁତାଶନ—
ମଧରେ ପଶି କରି ଛାଡ଼ଇ ଜୀବନ ।
ତାହାକୁ ପୁରନ୍ଦର କରଣ ଆଦର
କରନ୍ତି ପୂଜା ନିତି ଜାଣ ଯୁଧିଷ୍ଠିର ।
ଏ କପୋତ ଆଖ୍ୟାନ ହେ ନର ଶୁଣଇ
ଇହ ପର ଦୁଇ ଲୋକକୁ ସେ ଜିଣଇ ।
ଶରଣାପନ୍ନ ଲୋକ କରଇ ଯେ ନାଶ
କହି ନ ପାରିବି ମୁଁ ମୁଖେ ତାର ଦୋଷ ।
ଏ ଇତିହାସ ଯେଉଁ ଲୋକ ଶୁଣେ କାନେ
ମହାପୁଣ୍ୟ ପାଇ ସେ ବସେ ସ୍ୱର୍ଗସ୍ଥାନେ ।
ସରଳ ଲୁବ୍ଧକ କପୋତ-ସମ୍ବାଦ
କୃଷ୍ଣସିଂହ ନୃପତି କହେ ବହି ମୋଦ ।



## ଇନ୍ଦ୍ରୋତ ଜନ୍ମେଜୟ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଅଜ୍ଞାତରେ ପାପ
କରିଲେ କେଉଁରୂପେ ହେବ ତାହା ଲୋପ ।
ସେ କଥା ମୋ ଆଗରେ କହ ପିତାମହ
ଶୁଣିବାକୁ ମୋହର ବଳଅଛି ସ୍ନେହ ।
ଭୀଷ୍ମ ବୋଇଲେ ହେ ଇନ୍ଦ୍ରୋତ ଜନ୍ମେଜୟ
ସମ୍ବାଦକୁ କହିବା ଧିଅ ହେ ହୃଦୟ ।
ପୂର୍ବେ ପରୀକ୍ଷିତ ବୋଲି ଯେ ରାଜା ଥିଲେ
ତାହାଙ୍କର ପୁତ୍ର ଜନମେଜୟ ହେଲେ ।
ନ ଜାଣି ବ୍ରହ୍ମହତ୍ୟା କରି ଜନ୍ମେଜୟ
ଅର୍ଜିଥିଲା ସୁକୃତ କଲେ ସବୁ କ୍ଷୟ ।
ବ୍ରାହ୍ମଣେ ଜନ୍ମେଜୟ ଦୁର୍ମତିକ ଦେଖି
ଆହେ ଯୁଧିଷ୍ଠିର ଗଲେ ତହିଁ ଉପେକ୍ଷି ।
ଏହି ସକାଶୁଁ ଜନ୍ମେଜୟ ନରରାଣ
ତପ କଲେ ଆଶ୍ରୟ କରି ଘୋର ବନ ।
ଏ ବାହାରେ ଅନେକ ଦେଶ ସେ ବୁଲିଲେ
ବ୍ରହ୍ମହତ୍ୟା ନାଶର ଉପାୟ ଖୋଜିଲେ ।
ଯେଉଁ ଜୀବନ୍ତିକି ଦେଖନ୍ତି ସେ ରାଜନ
ତାହାକୁ ପଚାରନ୍ତି ତହିଁକି କାରଣ ।
ଏରୂପେ କେତେକ କାଳରେ ଇନ୍ଦ୍ରୋତକ
ଦେଖି ଜନମେଜୟ ବହିଣ ପ୍ରୀତିକ ।
ଦ୍ରୋହଟଲେ ଗୋସାଇଁ ମୁଁ ମାରିଛି ବ୍ରାହ୍ମଣ
କହ ହେ କରିବାକୁ ତହିଁର କାରଣ ।
ଇନ୍ଦ୍ରୋତ ବୋଇଲେ ରାଜନ ହେଲେ ବାଇ
କ କାରଣ କହିବ ମୁହିଁକୁ ନ ବୁଝି ।
ତୁମ୍ଭେ ତ ମାରିଅଛ ଗୋଟିଏ ବ୍ରାହ୍ମଣ
ତୁମ୍ଭଙ୍କୁ କହିଲେ ପାଇବ ପାପ ଜାଣ ।
କହୁଛି କ୍ଷଣେ ମୋର ପାଶରେ ନ ରହି
ଯାଅ ଯହିଁ ମନ ହେଉଛି ନରସାଇଁ ।
ପିତୃମାନେ ତପସ୍ୟା କରି ଭଲପୁତ୍ର
ଇଚ୍ଛାଅନ୍ତି କୃତାର୍ଥ କରିବାକୁ ଗୋତ୍ର ।
ତୁମ୍ଭେ ପିତୃଋଣକୁ ବୁଝିବାର ପାଇଁ
ବ୍ରାହ୍ମଣଙ୍କୁ ଆଗେ ମାଇଲ ରାଗେ ଯାଇ ।
ତୁମ୍ଭର ଏ ସୁକୃତବଳେ ପିତୃକୁଳ
ନରକ ସ୍ୱର୍ଗେ ଯାଇ ହୋଇଥିଲେ ଠୁଳ ।
ଇହ ପର ଦୁଇ ତୁମ୍ଭର କିଛି ନାହିଁ
ଥିବ ବ୍ରହ୍ମପ୍ରଳୟଯାଏ ନର୍କେ ରହି ।
ଜନ୍ମେଜୟ ବୋଇଲେ ନ ଜାଣି ବ୍ରାହ୍ମଣ
ଜଣଙ୍କର ଋଷି ତ ନେଇଅଛି ପ୍ରାଣ ।
ମୋତେ କପାଇଁ ଏତେ ଧିକ୍କାର ବୋଲୁଛ
ତୁମ୍ଭେ ତ ମୁନିକୁଳେ ଜନମ ହୋଇଛ ।
ନରକକୁଣ୍ଡରୁ ଆସିଛି ତୁମ୍ଭଠାକୁ
ଧରମ ଉପଦେଶ ଦିଅ ହେ ଆମ୍ଭଙ୍କୁ ।
ଇନ୍ଦ୍ରୋତ ବୋଇଲେ ପାପରେ ଅନୁତାପ
ପାଉଛ ଆଶ୍ରା କର ଧର୍ମକୁ ହେ ନୃପ ।
ଜନ୍ମେଜୟ ବୋଇଲେ ମନରୁ ବହି ପ୍ରୀତି
ଧର୍ମ ଉପଦେଶ ଦିଅ ହେ ମହାମତି ।
ଇନ୍ଦ୍ରୋତ ବୋଇଲେ ହେ ଦମ୍ଭମାନ ଦୁଇ
ଛାଡ଼ ଧର୍ମ ଆଚରି ରହ ନରସାଇଁ ।
ତୁମ୍ଭଙ୍କୁ ଧର୍ମ ଦେଖାଇବି ନେଇ ଧନ
କରିନାହିଁ ରାଜନ, ଏମନ୍ତେ ମୁଁ ମନ ।
ତୁମ୍ଭଙ୍କୁ ଯେବେ ଧର୍ମ ଦେବି ମୁହିଁ ଆଜ
ବ୍ରାହ୍ମଣ ବଚନେ ମାରିବେ ମୋତେ ଗଞ୍ଜି ।
ଜନ୍ମେଜୟ ବୋଇଲେ, ବଚନ ମନରେ
ବ୍ରାହ୍ମଣ ଦ୍ରୋହ ନ କରିବି ସ୍ୱପନରେ ।
ଇନ୍ଦ୍ରୋତ ବୋଇଲେ ହେ ଜନ୍ମେଜୟ ରାଣ
ତୁମ୍ଭ ଶତ୍ରୁ ଧର୍ମରେ ହେଲା ଏବେ ଜାଣ ।

ତୁମ୍ଭଙ୍କୁ ଧର୍ମଶିକ୍ଷା ଏବେ ମୁଁ ଦେବଇଁ
ଗାଳଦେଲେ ହେଲେ ରହଇ ଦୋଷ ହୋଇ
ଯାଗ ଦାନ ଦୟା ଯେ ବେଦ ସତ୍ୟ ତପ
ଏ ଛଅ କରନ୍ତି ପାତକକୁ ଲୋପ ।
ଏହା ବାହାରେ ପୁଣ୍ୟଦେଶକୁ ଗମନ
ଟବସ୍ଥଙ୍କର ମଧ୍ୟେ ଅଟେ ମନେ ଘେନ ।
କୁରୁକ୍ଷେତ୍ର ଯେ ସରସ୍ୱତୀ ପୃଥୁଦକ—
ଆଦି ତୀର୍ଥେ ବୁଡ଼ ହେ ଅବନୀ ନାୟକ ।
ଏ ତୀର୍ଥମାନଙ୍କେ ଦ୍ୱିଜଙ୍କୁ ଧନ ଦେଇ
ସନ୍ତୋଷ କରି ସ୍ୱର୍ଗେ ବସ ସୁଖେ ଯାଇ ।
କହୁଛି ମୁହିଁ ଆଜଠାରୁ ବ୍ରାହ୍ମଣଙ୍କୁ
ଦେଖିଲେ ନମୁଥିବ ତାଙ୍କର ପାଦକୁ ।
ବିକ୍ରମ କରି ଲୋକ କଲେ ଅନୁତାପ
ମୁକତି ପାଏ ଆହେ ଜନ୍ମେଜୟ ନୃପ ।
ଅଶ୍ୱମେଧ କରିଲେ ବ୍ରହ୍ମହତ୍ୟା ଦୋଷ
ଯାଏ ବୋଲି କହନ୍ତି ସର୍ବ ଋଷିଶ୍ରେଣ ।
ବୃହସ୍ପତିଙ୍କି ଯେ ପୁଚ୍ଛିଲେ ଦେବତାଏ
ପାପ କଲା ଲୋକ କି କରି ତରିଯାଏ ।
ଏହା ଆମ୍ଭଙ୍କୁ କହ ଦେବ ହେଉ ବଶୀ
ଶୁଣିବାରେ ଆମ୍ଭେ ହୋଇଛୁଁ ଲାଳସୀ ।
ବୃହସ୍ପତି ବୋଇଲେ ନ ଜାଣି ଯେ ପାପ
କରଇ ପୁଣ୍ୟ କଲେ କରେ ତାହା ଲୋପ ।
ପୁଣ୍ୟ ସୂର୍ଯ୍ୟ ସକାଶୁଁ ପାପ ଅନ୍ଧକାର
ରହି ନ ପାରଇ କେବେହେଁ ମନେ କର ।
ଏରୂପେ ଜନ୍ମେଜୟରାଜାଙ୍କୁ ଇନ୍ଦ୍ରୋତ
କହିଣ ମାନସରେ ହୋଇ ଅତି ପ୍ରୀତ ।
ଅଶ୍ୱମେଧ ଯାଗ ତାହାଙ୍କୁ କରାଇଲେ
ସେ କାଳରେ ସେ ବ୍ରହ୍ମହତ୍ୟାକୁ ନାଶିଲେ ।
ମହାତେଜକୁ ଧରି ଜନ୍ମେଜୟ ରାଜ
ରାଜ୍ୟେ ବସି ପାଳିଲେ ପରଜା ସମାଜ ।
ଇନ୍ଦ୍ରୋତ ଜନ୍ମେଜୟ ସମ୍ବାଦ ଏଠାରେ
ସରିଲା କହେ କୃଷ୍ଣସିଂହ ପ୍ରମୋଦରେ ।

— ÷

## ଗୃଧ୍ର ଶୃଗାଳ ସମ୍ବାଦ

ଏଥୁଅନ୍ତେ ଯୁଧିଷ୍ଠି ପାଣ୍ଡବ ନୃପତି
ଭୀଷ୍ମଙ୍କୁ ପଚାରିଲେ ତୋଷେ କରି ମତି ।
ମଲା ଲୋକ କି ଜୀଇଁଅଛି କେଉଁଠାରେ
ଶୁଣିଥିଲେ ତା ପିତା କହ ମୋ ଆଗରେ ।
ଭୀଷ୍ମ ବୋଇଲେ ହେ ଜମ୍ବୁକ ଗୃଧ୍ର ଦୁଇ
ସମ୍ବାଦକୁ କହିବା ଶୁଣ ମନ ଦେଇ ।
ନଇମିଷାରଣ୍ୟେ ବ୍ରାହ୍ମଣ ଜଣଙ୍କର
ବାଳକ ହୋଇ ଦେଖିଗଲା ଯମ ପୁର ।
ବନ୍ଧୁମାନେ ତା ଦେଖି ମହାଦୁଃଖ କଲେ
ଶ୍ମଶାନେ ନେଇ ବାଳକଟି ଟକୋଇଲେ ।
ଶୋକରେ ନୟନରୁ ମୁଞ୍ଚି ଅଶ୍ରୁଧାର
ବୋଇଲେ ଅବୟସେ ମଲୁରେ କୁମର ।
ଏକାଳେ ଗୃଧ୍ରପକ୍ଷୀ ସେଠାବକୁ ଆସି
କହିଲା ବ୍ରାହ୍ମଣମାନଙ୍କୁ ହସି ହସି ।
ତୁମ୍ଭପରି ବହୁତ ଦ୍ୱିଜ ଏହିଠାକୁ
ଆସି ଛୁଡ଼ିଯାନ୍ତି ପକାଇ ସେ ମଡ଼ାକୁ ।
ତୁମ୍ଭେ କମ୍ପା ଶବକୁ ବସିଛ ପୋଠାଳ
ଏମନ୍ତ ଉଚ୍ଚସ୍ୱରେ ଛୁଡ଼ିଣ ବୋବାଳ ।
ଏଥିରେ ଯେ କାରଣ ମୁଁ ତ ଜାଣୁନାହିଁ
କହ ତ ଦ୍ୱିଜଜନେ ତା ମୋତେ ବତାଇ ।
ଜନ୍ମ ହେଲେ ମରଣ ହୁଏ ପ୍ରାଣୀଙ୍କର
ଦେଖୁଅଛ ତ ନିତି ଏ ମାୟା ସଂସାର ।
ମଡ଼ା ଘେନି ଶ୍ମଶାନେ ରହଇ ଯେ ନର
କ୍ଷୀଣ ତ ହୋଇଯାଏ ଆୟୁଷ ତାହାର ।
କାନ୍ଦିଲେ କି ଜୀଇ ଆସଇ ମଲା ଲୋକ
ଏତେକ ତୁମ୍ଭର କି ନୋହୁଛି ବିବେକ ।
ଅସ୍ତକୁ ଭଜୁଛନ୍ତି ପଶ୍ଚିମେ ତରଣି
ଆସୁଛି ଭୟଙ୍କର ହୋଇଣ ରଜନୀ ।
ଦ୍ୱିଜେ ଶୁଣି ଗୃଧ୍ରବଚନ, ପାଇ ବ୍ରୀଡ଼ା
ବାଳକକୁ ଛାଡ଼ି ଅଲଗା ହେଲେ ଛିଡ଼ା ।
ଗାତେ ଥାଇ ବିଲୁଆ ଦ୍ୱିଜ ଯିବା ଜାଣି
ବାହାରିଲା ଗାତଭିତରୁ ସେହିକ୍ଷଣି ।
ବ୍ରାହ୍ମଣଙ୍କୁ ବୋଇଲା ଡର କମ୍ପା ମର
ଦେଖ ତ ରହିଛନ୍ତି ଛାୟାଦେବୀ ବର ।
ବେଳ ଥିଲେ ଶ୍ମଶାନ ତୁମ୍ଭଙ୍କୁ କି କସ
କରିପାରେ, ମାନସେ କର କମ୍ପା ତ୍ରାସ ।
ଆୟୁଷ ପ୍ରମାଣ କାହାକୁ ଜଣା ନାହିଁ
କେତେବେଳେ ଅବା ପିଲାଟି ଉଠିବଇଁ ।

ଏ ପିଲର ମଧୁର ବଚନ ଶୁଣିଛ
କରୂପରେ ତାହାକୁ ପାସୋର ଯାଉଛ ।
ମୃଗ ପକ୍ଷୀ ପୁତ୍ରରେ ଯେତେ ସ୍ନେହ ବନ୍ଧି-
ଥାଆନ୍ତି ତୁମ୍ଭର ମୁଁ ତେବେ ଦେଖୁନାହିଁ ।
ଏ ସକାଶୁଁ ବୋଲୁଛି ନରମାନଙ୍କର
ଧିକ ହେଉ ମହୀରେ ଜନ୍ମ ହୋଇବାର ।
ଏତେ ପୁତ୍ରଟିକି ଶ୍ମଶାନେ ପକାଇ
ନର ବିନା କେ ଗୃହେ ଯିବ ଭରା ହୋଇ ।
ବିଲୁଆର ବଚନେ ଦ୍ୱିଜ ହୋଇ ଗୋଟି
ପୁଣି ଆସିଣ ବେଢ଼ି ବସିଲେ ଶବଟି ।
ଗୃଧ୍ର ବୋଇଲା ହେଲେହେଁ ଦ୍ୱିଜଜାତି
ଭଲ ତ ନୁହଇ ଜାଣିଲ ତୁମ୍ଭ ରୀତି ।
ବିଲୁଆଟା ବଚନେ ଭୁଲି ବାହୁଡ଼ିଲ
କି ରୂପେ ଲୋକରେ ବୋଲାଅ ତୁମ୍ଭେ ଭଲ
କାଠଟା ପରି ସିନା ପଡ଼ିଅଛି ମରି
ତୁମ୍ଭେ ବେଢ଼ିଲେ କି ଉଠିବ ଜୀଇକରି
ତପ କର ବିଳାପ ମନୁଁ କରି ଦୂର
ବିଚାର କର, ଏହା ପ୍ରଳାପ ତମର ।
ଧନ ଗାଈ ରତ୍ନ ପୁତ୍ର ଭାରିଯା ତପ-
ବଳରେ ଲୋକପାଏ ଛାଡ଼ ସବୁ ପାପ ।
ପିତାର କର୍ମେ ପୁତ୍ର, ପୁତ୍ର କର୍ମେ ପିତା
ଭଲ ହୋଇ ନାହାନ୍ତି ହେ ଭୂମିଦେବତା ।
ଅଧର୍ମରୁ ନିବର୍ତ୍ତି ଧର୍ମେ କର ବୁଦ୍ଧି
ଦେଇଛି ତ ଦ୍ୱିଜକୁଳରେ ଜନ୍ମ ବିଧି ।
ସୁକୃତ ଦୁଷ୍କୃତ ଯେ ଯାହା କରିଥାଏ
ସେ ତାହା ଜନ୍ମ ହୋଇ ଭୋଗ କରିଯାଏ ।
ପଣ୍ଡିତ ଅପଣ୍ଡିତ ହୋଇ କାଳବଶ
କରୁଛନ୍ତି ଯାଇ ଯମଙ୍କ ଘରେ ବାସ ।
କାଳ ତ ସବୁଠାରେ ସମ ହୋଇକରି
ପ୍ରବର୍ତ୍ତିଅଛି ଶୋକ ଛାଡ଼ ତା ବିଚାରି ।
ଜମ୍ବୁକ ବୋଇଲା ହେ ଦ୍ୱିଜକୁଳେ ଜାତ
ହୋଇ ବଡ଼ ଅଟେ ଅଧର୍ମ ତୁମ୍ଭ ଚିତ୍ତ ।
ଅଳପ ବୁଦ୍ଧି ଗୃଧ୍ର କଥାରେ ତୁମ୍ଭଙ୍କୁ
ଭୁଲାଇ ଦେଲା ଅଛି କିସ କହିବାକୁ ।
ମନୁଷ୍ୟର ଶୋକ ଜାଣିଲା ଭଲ କରି
ତୁମ୍ଭ ଶୋକେ ଦେଖ ପଡ଼ୁଛି ନେତ୍ରୁ ବାରି ।

ଦୈବ ଯତ୍ନ ଦୁହେଁ ମିଶିଲେ କେଉଁକଥା
ସିଦ୍ଧ ନୋହେ ବୋଲି କି ଲେଖା ଅଛି ପୋଥା
ଅନିର୍ବେଦ ହୋଇଣ ନେଉଥିବ ଧନ
ନିର୍ବେଦ ଯେ ହୋଏ ସେ ଜନ ହୀନମାନ ।
ଏ ସକାଶୁଁ ଶବକୁ ଛାଡ଼ିକରି ଯିବା
କଥାଟିକି ଉଚିତ କିରୂପେ ବୋଲିବା ।
ଏ ପୁଅଟି ଜୀଇଲେ ତୁମ୍ଭ ପିତୃଲୋକ-
ମାନେ ଥିଲେ ନରକେ ଦେଖିବେ ସ୍ୱର୍ଗଲୋକ
ସନ୍ଧ୍ୟା ହୋଇବାଯାଏ ଉଚିତ ତୁମ୍ଭର
ମୋ ମନକୁ ପାଉଛି ଶବ ଜଗିବାର ।
ଗୃଧ୍ର ବୋଇଲା ଆହେ ସହସ୍ରେ ବରଷ
ହେଲାନି ମୁଁ ମର୍ତ୍ତ୍ୟପୁରେ ହେବାର ପ୍ରକାଶ ।
ଆଜିଯାଏ ତ ମଲା ଲୋକ ଜୀଇବାର
ଦେଖିନାହିଁ ଜାଣ ଏ ନେତ୍ର ବେନି ମୋର
ଗର୍ଭରୁ ଜନ୍ମି ବୃଦ୍ଧଯାଏ ପ୍ରାଣୀଙ୍କର
ମରଣ ଲାଗିଅଛି ଦ୍ୱିଜେ ମନେ କର ।
ମୃତ୍ୟୁମୁଖରେ ପଡ଼ି ନିତି ଲୋକମାନେ
ବସୁଅଛନ୍ତି ଯାଇ ଯମଙ୍କ ସଦନେ ।
ଏ ସକାଶୁଁ ଜୀଇବା ଲୋକେ ଦୁଃଖୀ ହୋଇ
ଘରେ ବସି କାନ୍ଦନ୍ତି ବୋଲି ବାବୁ ଭାଇ ।
ପ୍ରାଣ ଯେଉଁ କ୍ଷଣି ଛାଡ଼ିଯାଏ ଦେହକୁ
ସେକ୍ଷଣି ଲଭଇ ସେ ଆନ ଶରୀରକୁ ।
ଏହା ଜାଣିଣ ଆହେ ବ୍ରାହ୍ମଣ ଉତ୍ତମ-
ମାନେ ବିଲୁଆର ବୁଦ୍ଧିରେ ନ ଭ୍ରମ ।
ବିଲୁଆ ବୋଇଲା ଜୀଇଲା ପରି ହୋଇ
ଦେଖ ତୁମ୍ଭ ଶୁଅ ଭୂମିରେ ଅଛି ଶୋଇ ।
ଏହାକୁ ଛାଡ଼ି କରି ଶାଗୁଣା ବଚନେ ।
କିରୂପେ ଯିବ ବୋଲି ଭାବୁଛି ହେ ମନେ ।
ଶୁଣୁଥାଇ ଶମ୍ବୁକ ଶୂଦ୍ରକୁ ମାଇଲେ
ଶ୍ରୀରାମ ବ୍ରାହ୍ମଣ ପିଲା ଜୀଆଇଲେ ।
ତୁମ୍ଭର ପୁଅ ଅଳ୍ପ ବୟସେ ତ ମରି-
ଅଛି ଜୀଇବ ନିଶ୍ଚେ ରହ ତା ବିଚାରି ।
ଶ୍ୱେତ ମହର୍ଷିଙ୍କ ବାଳକ ମରିଥିଲା
ତାଙ୍କର ଉପାୟରେ ଜାଣ ସେ ଜୀଇଲା ।
ତୁମ୍ଭେ ଯେବେ ଏଠାରେ ପାଉଥିବ ଡକା
ଜିଆଇଦେବେ ଦେବେ ପୁତ୍ରେ ନାହିଁ ଶଙ୍କା ।

ଏରୂପେ ସେ ବଳୁଆ କହନ୍ତେ ବଚନ
ଘେନିଲେ ସେ ଆହା ବୋଲିଣ ଦ୍ୱିଜଜନ ।
ଶବଟିର ମୁଣ୍ଡକୁ କୋଡ଼ରେ ଲହିଲେ
ହା ବାବୁ ମଲୁ ବୋଲି ଉଚ୍ଚରେ ରଡ଼ିଲେ ।
ଶାଗୁଣା ତା ଦେଖି ବୋଇଲା ଦ୍ୱିଜେ ବାଇ
ହୋଇଲ ତୁମ୍ଭ ପୁତ୍ର ଜ୍ୟାଇବଟି କେହି ।
ତପସ୍ୟାରେ ଯୁକ୍ତ ହୋଇଲେ ହେଲେ ନର
କାଳକୁ ବଳିବାକୁ ଶକ୍ତି ନାହିଁ ତା'ର ।
ମଲା ଜୀଇବାକୁ ପାଡ଼ୁଛ ଯାହା ଡକା
ଜାଣୁଛି ବଳୁଆ ବୁଦ୍ଧିରେ ହେଲେ ବୋକା
ସହସ୍ରେ ବରଷରେ ସହସ୍ରେ ବଳୁଆ
କରି ନ ପାରିବେ ଏ ବାଳକକୁ ଠିଆ ।
ସେ ରୁଦ୍ର ବିଷ୍ଣୁ ବ୍ରହ୍ମା କୁମାରେ ପ୍ରସନ୍ନ
ହେଲେ ବା ବାଳକ ଜୀଇବ, ପାଏ ମନ ।
ତୁମ୍ଭେ ଯେ ବସି ଛେଚ କୋଡ଼ ହୋଇଶୋକ
କରିଲେ କେବେ ଜୀଇଁ ନାହିଁ ଏ ବାଳକ ।
ତୁମ୍ଭେ ଓ ଆମ୍ଭେ ବଳୁଆକୁ ଘେନି ଯିବା
ବାଟରେ ଏକ ସ୍ଥାନ ହୋଇଣ ରହିବା ।
ଯେବେ ଏ ବାଳକଟି ପାଇବ ଜୀବନ
ତେବେ ଧର୍ମରେ ବୁଦ୍ଧି ଦେବା ପ୍ରତିଦିନ ।
ଶାଗୁଣା ମୁଖୁଁ ଶୁଣି ଏରୂପେ ଉତ୍ତର
ଦ୍ୱିଜମାନେ ଯିବାକୁ ମନ କରେ ଘର ।
ଜମ୍ବୁକ ହୋଇଲା ବ୍ରାହ୍ମଣ ଜାତି ହୋଇ
ମୁହିଁ ବୋଲୁଛି ଲୋକ ଜନମିବ ନାହିଁ ।
ତୁମ୍ଭ ବିନା ଆନ କେ ଶ୍ମଶାନେ ପିଲାକୁ
ପକାଇଣ ଯାଆନ୍ତା ଗାଧୋଇ ଘରକୁ ।
ଶାଗୁଣା ବୋଲିବାର ବଚନକୁ ମାନ
ବାହାରୁତ କଥା ନ କହ ହୋଇ ତୁନ ।
ଦୁଃଖ ସୁଖ ଦେହକୁ ଲାଗିଅଛି ନିତ
ତା କଷ୍ଟ ଦେଖୁଅଛ କରିଣ ବିପତ୍ତି ।
କନ୍ଦର୍ପ ପରି ଦେଖ ଦିଶେ ପିଲା ମୂର୍ତ୍ତି
କିରୂପେ ଯିବାକୁ ବଳୁଛି ତୁମ୍ଭ ମତି ।
ଏରୂପେ ଗୃଧ୍ରକ ଅପେକ୍ଷା କରି ବାଣୀ
ଜମ୍ବୁକ କହନ୍ତେ ରହିଲେ ଦ୍ୱିଜଶ୍ରେଣୀ ।
ଗୃଧ୍ର ବୋଇଲେ ହେ ବଳୁଆ ବୁଦ୍ଧି କଥା
କରି ଆଉଁ ନ ବସ ଗଡ଼ିଲାଣି ବେଳ ।
ମାର୍ତ୍ତଣ୍ଡ ଅସ୍ତ ହେଲେ ଅନ୍ଧକାର ମାଡ଼ି
ଆସେ ଯେବେ ତୁମ୍ଭ ନୟନ ତହିଁ ଘୋଡ଼ି ।
ବାଘ-ଭାଲୁ ଡାହାଣୀ ଡରଗୁଣୀ ଗଣ
ଏଠାକୁ ଆସିଲେ ନେବେଟି ତୁମ୍ଭ-ପ୍ରାଣ ।
ଗୃଧ୍ର ତହୁଁ ବୋଇଲା ଘେନିବାର ଏହି-
କାରଣ ହୋଇଛି ମରିବ ଶୋଇ ଘାଇ ।
ବଳୁଆ ବୋଇଲା ବ୍ରାହ୍ମଣ ପୁତ୍ର ସ୍ନେହ
କାହିଁକି ଛାଡ଼ିବ ତା ମୋର ଆଗେ କହ ।
ସୂର୍ଯ୍ୟ ଥିବା ଭିତରେ ଦୂଷଣ ଦୁର୍ଭୟ
କେବେ ତୁମ୍ଭ ହୃଦରେ ନୋହିବ ଉଦୟ ।
ଗୃଧ୍ର ବଚନରେ ଘରକୁ ଗଲେ ତୁମ୍ଭେ
ନ ଜୀଇବ ଏ ପୁତ୍ର କହୁଅଛୁ ଆମ୍ଭେ ।
କ୍ଷୁଧାରେ ଆର୍ତ୍ତ ହୋଇ ବଳୁଆ ଶାଗୁଣା
ଦେଖାଇ କଥା କରି ଦେଲେ ବୁଦ୍ଧି ବିଣା ।
ବ୍ରାହ୍ମଣମାନଙ୍କର, ଆହେ ଯୁଧିଷ୍ଠିର ।
ମୁହିଁ ତ କହୁଅଛି ମନରେ ବିଚାର ।
ବ୍ରାହ୍ମଣେ ସେହି ଦୁଇ ବଚନ ଦୋଳରେ
ବସିଣ ପଡ଼ିଛି ହୋଇଲେ ନିରନ୍ତରେ ।
ହା ପୁତ୍ର ମଲୁ ବୋଲି କରନ୍ତେ ସେ ରଡ଼ି
ସେ ଶବଟି ପାଶକୁ ନ ପାରିଲେ ଛାଡ଼ି ।
ବ୍ରାହ୍ମଣଙ୍କର ରଡ଼ି ପାର୍ବତୀଙ୍କ କାନେ
ପଡ଼ନ୍ତେ ଶିବଙ୍କୁ ସେ କହିଲେ ସୁମନେ ।
ଶ୍ମଶାନରେ ବସିଣ ପୁତ୍ରକୁ ପକାଇ
ଡାକପାଡ଼ୁଛନ୍ତି ବ୍ରାହ୍ମଣେ ଦୁଃଖୀ ହୋଇ ।
ଆପଣ ଯାଇ ବର୍ତ୍ତମାନ ସେ ପିଲାକୁ
ଜୀଆଇ ଦିଅ ମୁହିଁ ମାଗୁଛି ତୁମ୍ଭଙ୍କୁ ।
ଏହା ଶୁଣି ଶୂଳହସ୍ତ ହୋଇଣ ତୋଷି
ଗଲେ ସେ ଶ୍ମଶାନକୁ କରି ହସି ହସି ।
ଦ୍ୱିଜଙ୍କୁ ବୋଇଲେ ହେ ମାଗ ମୋତେ ବର
ଆସିଛି ପ୍ରସନ୍ନ ହୋଇ ମୋ ନାମ ହର ।
ଦ୍ୱିଜେ ତାହା ଶୁଣିଣ ଆନନ୍ଦ ହୋଇଲେ
ନମସ୍କାର କରି ରୁଦ୍ରଙ୍କୁ ଜଣାଇଲେ ।
ଏ ପୁତ୍ର ଆପଣ ଜୀଆଇଁ ଯେବେ ଦେବ
ତେବେ ତ ସବୁ ବର ଦେବାର ହୋଇବ ।
ଶଙ୍କର ସେହିକ୍ଷଣି ପାଣିକି ମନ୍ତ୍ରିଲେ
ଜୀଉ ଶଏ ବରଷ ବୋଲିଣ ସିଞ୍ଚିଲେ ।

ଶବ-ଦେହରେ ମନ୍ତ୍ର ଜଳର ପରଶ
ହୁଅନ୍ତେ ଉଠିଲା ସେ ପକାଇ ନିଃଶ୍ୱାସ ।
ଏହା କହି ସାରି ସେ ଗୋମାୟୁ ଗୃଧଙ୍କୁ
ବର ଦେଇ ବୋଇଲେ ନ ଡର ଭୋଖକୁ ।
ବ୍ରାହ୍ମଣେ କୃତକାର୍ଯ୍ୟ ହୋଇଣ ଶ୍ମଶାନ
ଛାଡ଼ିକରି ଆସିଲେ ଯେ ଯାହା ସଦନ ।
ଶଙ୍କର ସେହିକ୍ଷଣି ଅନ୍ତର୍ଦ୍ଧାନ ହେଲେ
ପାର୍ବତୀଙ୍କ ଆଗରେ ଏ କଥା କହିଲେ ।
ତୁମ୍ଭ ବୋଲେ ଯାନ୍ତି ସେ ବ୍ରାହ୍ମଣ ପିଲାକୁ
ଜୀଆଇ ଦେଲ ଘେନିଗଲେ ସେ ଘରକୁ ।
ଆହେ ଯୁଧିଷ୍ଠିର ନରପତି ଉତ୍ତମ
ଏହି ସମ୍ବାଦେ ପୂର୍ଣ୍ଣ ଧର୍ମ ଅର୍ଥ କାମ ।
ଏହାକୁ ଯେଉଁ ଲୋକ କର୍ଣ୍ଣରେ ଶୁଣଇ
ଦେବତାଙ୍କ ସମୀପେ ଯାଇ ସେ ବସଇ ।
ଗୃଧ୍ର ଗୋମାୟୁଙ୍କ ସମ୍ବାଦ ହେଲା ଶେଷ
କହେ ଯେ କୃଷ୍ଣସିଂହ ନରକୁଳ-ଈଶ ।

—0—

## ଶାଲ୍ମଳୀ ପବନ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ଶୁଣ ଯେଉଁ କଥାରେ ହୋଇଛି ମୋ ସ୍ନେହ ।
ବଳଆର ଅଗତ ସମୀପରେ ଥିବ
ଦୁର୍ବଳ ହୋଇ ଆତ୍ମମୋହେ ଗାଳଦେବ ।
ବଳରେ ତ ହୋଇଥିବ ଏ ଅତି ହୀନ
ସେହି ଯୁଝିଲେ କି ଉପାୟ ତା ବଖାଣ ।
ଗାଙ୍ଗେୟ ବୋଇଲେ ହେ ଶାଲ୍ମଳୀପବନ
ସମ୍ବାଦକୁ କହିବା ପାଣ୍ଡବ ରାଜନ ।
ହିମାଳୟେ ଶାଲ୍ମଳୀ ବୃକ୍ଷ ଥିଲା ରହି
ଜାଣ ଯୁଧିଷ୍ଠିର ବହୁତ କାଳୁଁ ଠାଇଁ ।
ତା ଗୁରୁପଟି ଡାଳ ଶୃଙ୍ଗଶତ ହାତ
ମୋଟ ସେ ଅଟଇ ହେ ଜାଣ ପାଣ୍ଡୁସୁତ ।
ଗ୍ରୀଷ୍ମେ ଆର୍ତ୍ତ ମୋଗ ହାତିଏ ସେ ଗଛକୁ
ଆଶ୍ରେ କରି ଛାଡ଼ନ୍ତି ମହତ ଶ୍ରମକୁ ।
ତାହାର ଶିରେ ଶାଖି ଶୁଆ ପନ୍ତ ପନ୍ତ
ନିତ ବସି ସୁଖରେ ଧ୍ୱନି କରୁଥାନ୍ତି ।
ବୃକ୍ଷ ତଳେ ବଣିଜାରୁଏ ରହି ରହି
ଯାଆନ୍ତି ଦଣ୍ଡଧାରୀ ରନ୍ଧି ବାଢ଼ି ଖାଇ ।

ଦିନେ ସେ ଶିମୂଳୀର ସମୀପେ ନାରଦ
ରହିକରି କହିଲେ ବହି ଅତି ମୋଦ ।
ହେ ଶିମୂଳୀ ବୃକ୍ଷ ତୋ ବିଶାଳତା ଦେଖି
ହେଉଅଛି ଜାଣ ମନରେ ମୁହିଁ ସୁଖୀ ।
ପବନ-ବଳ କି ତୁମ୍ଭଙ୍କୁ ନ ପାଇଲା
ନୋହିଲେ କି ତୁମ୍ଭ ତାହାର ପ୍ରୀତି ହେଲା ।
ଶାଖାମାନ ତୁମ୍ଭର ଅଟେ ତ ବିଶାଳ
କହ ତ କାହିଁପାଇଁ ନ ଦେଖିଲେ ତଳ ।
ଯେଉଁ ପ୍ରଭଞ୍ଜନର ବେଗରେ ସମୁଦ୍ର
ଜଳଯାକ ଲଭନ୍ତି କ୍ଷଣକେ ଅଭଦ୍ର ।
ଏ ବାହାରେ ମେରୁ-ମହୀଧରକୁ ଥରେ
କମ୍ପାଇ ଦିଅନ୍ତି ସେ ବହିବା ଘାତରେ ।
ତୁମ୍ଭେ କମ୍ପା ରହିଛ ପଲ୍ଲବିତ ହୋଇ
ଏଥିର କାରଣ ତ ଜାଣି ପାରୁନାହିଁ ।
ତୁମ୍ଭ ଛାୟା ମୋହର ହୋଇଛି ହୃଦୟ
ଏଥୁଁ ସ୍ୱର୍ଗ ମୋର ନୋହିବ ଜାଣ ପ୍ରିୟ ।
ବନବାସୀମାନଙ୍କୁ ହରି ତୁମ୍ଭେ ଶ୍ରାନ୍ତି
ପକ୍ଷୀକୁଳ ତୁମ୍ଭ ଶାଖାରେ ବିହରନ୍ତି ।
ତପସ୍ୱୀ ବ୍ରାହ୍ମଣରେ ତୁମ୍ଭର ଛାୟାଟି
ପୂରବାରୁ ସ୍ୱର୍ଗ-ଶୋଭାକୁ କରେ ଲୁଟି ।
ତୁମ୍ଭର ପବନର ବନ୍ଧୁତା ବା ଅଛି
ନୋହିଲେ କମ୍ପା ତୁମ୍ଭଙ୍କୁ ସେ ନ ବାଧୁଛି ।
ନୋହିଲେ ବା ପବନ ପଦରେ ଶରଣ
ପଶିଛ ହେଉନାହିଁ ତୁମ୍ଭଙ୍କୁ ମରଣ ।
ଏହି କାରଣରୁ କି ତୁମ୍ଭଙ୍କୁ ଶାଲ୍ମଳୀ
ବୃକ୍ଷ, ରଖିଛି ହେ ପବନ ମହାବଳୀ ।
ଶାଲ୍ମଳୀ ବୋଇଲା ହେ ବ୍ରାହ୍ମଣ ଗୋସାଇଁ
ତୁମ୍ଭ କଥା ଶୁଣି ମୁଁ ବହୁତ ହସଇ ।
ପବନ ମୋର ସଖା ସୋଦର ନୁହନ୍ତି
ଜାଣ ମୋତେ ରଖିଅଛନ୍ତି ଲକ୍ଷ୍ମୀପତି ।
ପବନକୁ ପ୍ରତି ଅଟେ ମୁଁ ମହାବଳ
ମନେ କଲେ ଭାଙ୍ଗି ପାରଇ ବାତ ବଳ ।
ପବନ ଯେତେବେଳେ ମୋହର ପାଶକୁ
ଆସଇ ଶାଖା ପତ୍ରେ ନିବାରେ ମୁଁ ତାକୁ ।
ପବନ କ୍ରୋଧକୁ ମୋହର ନାହିଁ ଭୟ
ଜାଣ ଆହେ ନାରଦ ବ୍ରହ୍ମାଙ୍କ ତନୟ ।

ନାରଦ ବୋଇଲେ ବାତକୁ ବଳୀସ୍ୱାର
ଥିଲି ପରି ମନୁଷ୍ୟ ନ ରଶେ ସଂସାର ।
ଇନ୍ଦ୍ର ଯମ ସଲିଳ ଈଶ୍ୱର କୁବେର
ଏମାନଙ୍କୁ ଦ୍ୱିଗୁଣ ବଳରେ ସମୀର ।
ଯେତେ ପ୍ରାଣୀଯାକ ଏ ମହୀରେ ଅଛନ୍ତି
ପବନ ବଳରେଟି ଯାଆନ୍ତି ଆସନ୍ତି ।
ଦୁର୍ବୁଦ୍ଧି ସକାଶରୁ ପବନକୁ ନିନ୍ଦ
ଆପେ ଆପେ ହେଉଛୁ ନିଜ ବଳ ବନ୍ଧ ।
ମୋ ଦେହରେ କ୍ରୋଧଟି ହେଉଅଛୁ ଜାତ
ତୋ କଥା ସକଳ ଆଜ ଶୁଣିବେ ବାତ ।
ଚନ୍ଦନାଦି ଯେତେ ପାଦପ ରହିଛନ୍ତି
ପଡ଼ିଗଲେ ପବନ କଥା, ସେ କମ୍ପନ୍ତି ।
ତୁ ସେହି ବୃକ୍ଷଙ୍କର ଅଟୁ ହୀନମାନ
ରହିଅଛୁ ନିତ୍ୟ କଣ୍ଟକ ଅପଘନ ।
ତୋ ଗଣ୍ଡିକି ପୋଟାଳି ରହିବେ ମାନବେ
ଜାଣୁଛି ମୁଁ ରକତ ଜଳେ ଗାଧୋଇବେ ।
ଚନ୍ଦନାଦି ବୃକ୍ଷଙ୍କ ଗୁଣେ ଏ ଜଗତ
ପ୍ରାଣୀଙ୍କର ଜାଣ ରହିଅଛୁ ଜୀବତ ।
ତୋ ବାଣୀ ଶୁଣି ମୋର ଦେହ ତ ଚଳୁଛୁ
କି କହିବି ପବନ ପାଶକୁ ଯାଉଛୁ ।
ଏହା କହି ନାରଦଋଷି ପବନଙ୍କ
ସମୀପେ ହେଲେ ବାଞ୍ଛାଶାଲ୍ମଳୀ ଆତଙ୍କ ।
ପବନକୁ କହିଲେ ହିମାଦ୍ରି ଉପରେ
ଶାଲ୍ମଳୀ ବୃକ୍ଷାଟାଏ ଅଛୁ ନିର୍ଭୟରେ ।
ତୁମ୍ଭଙ୍କୁ ସେ ବହୁତ କରୁଛୁ ଆକ୍ଷେପ
ତା କହିଲେ ଜାଣ ଲାଗିବ ମୋତେ ପାପ ।
ତୁମ୍ଭ ବଳ ବିକ୍ରମ ମୁହିଁ ତ ଜାଣଇ ।
ତା ଛାର ବୋଲିବାର ରହିବଟି କେହି ।
ଏ ରୂପରେ ନାରଦ ବଚନ ପବନ
ଶୁଣି ସେ ବୃକ୍ଷଠାକୁ କଲେ ଯେ ଗମନ ।
ଶାଲ୍ମଳୀକି ବୋଇଲେ ମନେ ମନେ ବଳୀ
ହୋଇକରି ମୋ ସଙ୍ଗେ ଆରମ୍ଭିଛୁ କଳି ।
ଆଜ ତୋର ପ୍ରଭାବ ଦେଖାଇବି ତୋତେ
ନୋହିଲେ ତୁ ମାନବୁ ନାହିଁ କଦାଚିତେ ।
ବ୍ରହ୍ମା ଯେଉଁ କାଳରେ ସୃଷ୍ଟି ସରଜିଲେ
ତୋ ମୂଳେ କ୍ଷଣେ ବର୍ଷେ ଶ୍ରମ ହରିଥିଲେ ।

ଏ ସକାଶୁଁ ତୋତେ ଉପ୍ରୋଧ କରିଥାଏ
ତା ନ ଜାଣି ଗର୍ବେ ତୁ ଫୁଲୁ ଅନ୍ତରସ୍ୱେ ।
ମୋ ସ୍ୱରୂପ ନୟନେ ଦେଖିଲେ ଶାଲ୍ମଳୀ
ଜାଣିବୁ ତୁ ତେବେ ମୁଁ ବଳୀ କି ତୁ ବଳୀ
ପବନର ଏହି ନିଷ୍ଠୁର ବାଣୀ ଶୁଣି
ହସିକରି ଶାଲ୍ମଳୀ ବୋଲେ ତାଙ୍କୁ ବାଣୀ ।
ତୁମ୍ଭ କ୍ରୋଧକୁ କି ମୁଁ ହେଉଛୁ ନିସତ
ବଳ ଥିଲେ ମୋତେ ତା ଦେଖାଅ ତୁରିତ ।
ବୁଦ୍ଧିମନ୍ତ ଲୋକଟି ସିନା ବଳୀସ୍ୱାର
ଦେହ ବଳରେ କାର୍ଯ୍ୟ ନାହିଁ ହେ ସମୀର ।
ତୁମ୍ଭେ ତ କହୁଛ ବଳରେ ବାଇ ହୋଇ
ଆମ୍ଭେ ଏ କଥା ଜାଣି ଡରବୁଁ କପାଇଁ ।
ପବନ ବୋଇଲା ମୋ ବଳ ବୁଦ୍ଧି କାଲି
ଦେଖାଇବି ତୋହର ଭାଙ୍ଗିବି ଏ ଗୃଳି ।
ଆଜ ତ ରାତ୍ରି ଆସି ହେଲାଣି ନିକଟ
କଥାରେ ଏତେବେଳେ ହୋଇ ମୁଁ ପ୍ରକଟ ।
ଏହିରୂପେ ପବନ କହି ଶାଲ୍ମଳୀଙ୍କ
ଗଲେ କ୍ରୋଧ ଧରି ଆପଣା ସ୍ଥାନଟିକି ।
ଶାଲ୍ମଳୀ ମନେ କଲା ମୋ ପ୍ରତିକି ବାତ—
ଦେବତା ଅଙ୍ଗେ ବଳ ରହିଛୁ ବହୁତ ।
ତାଙ୍କ ତୁଲେ ନ ଜାଣି ଆରମ୍ଭିଲି କଳି ।
ମଲି ତ ବୋଲିଣ ବସିଲା କ୍ଷଣେ ଭାଳି ।
ପୁଣି ମନେ କଲା ମଟକା ହୋଇ ଅଙ୍ଗ
କ୍ଷଣକେ ଭାଙ୍ଗିଯିବ ହୋଇ ବାତସଙ୍ଗ ।
ମୋର ବୁଦ୍ଧିରେ ମୁଁ ଶରୀର ନ ରଖିଲେ
ପାଇଲେ ରାତ୍ରି ନାଶ ଯିବ ବାତ ବଳେ ।
ମୋ ବୁଦ୍ଧି ଆଶ୍ରେ କରି ମୋର ଜ୍ଞାତିକୁଳ
ରହିଲେ ପବନର ପାଆନ୍ତାନାହିଁବଳ ।
ମୂର୍ଖ ହୋଇବାରୁ ତ ଗରବିତ ହୋଇ
ସାତକାଳ ତରୁଏ ବଢ଼ନ୍ତି ନିଠାଇ ।
ଏହିରୂପେ ଶାଲ୍ମଳୀ ବିଚ୍ଛୁରି ଅନେକ
ଭାଙ୍ଗିଲା ଗଣ୍ଡି ଯାଏ ନିଜ ଡାଳଯାକ ।
କେବଳ ଗଣ୍ଡିଟିକେ ରହିଛୁ ଧରଣ
ଏକାଳେ ସେଠାକୁ ଆସିଲେ ସମୀରଣ ।
ପବନଙ୍କ ଆସିବା ଘାତେ ବୃକ୍ଷମାନେ
ପଡ଼ିଲେ ଶୋଇ ଶାଇ ଯେ ଯାହାର ସ୍ଥାନେ

ଶାଲ୍ମଳୀକ ଦେଖିଲେ ଛାଡ଼ ଡାଳପତ୍ର
ରଖିଅଛୁ ସେ ଏକା କର ଗାତ୍ର ମାତ୍ର ।
ହସିକର ବୋଇଲେ ମୁଁ ଯାହା କରନ୍ତୁ
ତୁ ତ ସେ ଦଶା ଭଜ କଲୁ ମୋ'ର ପ୍ରୀତ ।
ଏବେ ମୋ ଦେଖେ ରହ ଦୁର୍ବଳିର କଥା
ଛାଡ଼ କର ଛାଡ଼ ତୁ ହୃଦୟରୁ ବ୍ୟଥା ।
ଶାଲ୍ମଳୀ ପବନ ବର୍ଦ୍ଧନେ ଲଜ ପାଇ
ତୁନ ହୋଇ ରହିଲା କଥାକୁ ନ କହି ।
ପବନ ତାହାଠାରେ କରି ଦୟା ଚିତ୍ତ
ସେହିକ୍ଷଣି ସେଠାରୁ ହେଲେ ଅନ୍ତର୍ହିତ ।
ଆହେ ଯୁଧିଷ୍ଠିର ଦୁର୍ବଳ ବଳୀ ତୁଲେ
ଲାଗିଲେ ଶାଲ୍ମଳୀ ଦଶାକୁ ଲଭେ ଭଲେ ।
ତୁଲ୍ୟ ପରାକ୍ରମୀ ଅପକାରୀଠାରେ
ସହସା ଶତ୍ରୁତା କଦାପି ନ ଆଚରେ ।
ବୁଦ୍ଧିମନ୍ତର ତୁଲେ ବଳୀଠାର ନର
ବଇର କଲେ ନାଶ ହୁଅଇ ତାହାର ।
ବୁଦ୍ଧିକି ବଳ କେବେ ନୁହଇ ଅଧିକ
ମୋ କହିବାରୁ ଜାଣ ପାଣ୍ଡବ ନାୟକ ।
ବଳ ବୁଦ୍ଧି ଜଗତେ ଅଛଇଟି ସାର
ଏ କଥାରେ କେଛିହେଁ ସନ୍ଦେହ ନ କର ।
ସାକ୍ଷାତେ ତ ଦେଖିଲ ଏକାକେ ଅର୍ଜୁନ
ଅଠର ଅକ୍ଷୌହିଣୀଙ୍କର ନେଲା ପ୍ରାଣ ।
ରାଜଧର୍ମ ବପତ୍ତି ଧର୍ମକୁ ବସ୍ତର
କହିଲି ଜାଣିଲ ପାଣ୍ଡବ ଦଣ୍ଡଧାରୀ ।
କହଇ ଗୀତ ରସେ ଅତି ତୋଷ ହୋଇ
ସୁଜନଙ୍କ ମନକୁ ଉଲ୍ଲାସିବା ପାଇଁ ।
ଏହିଠାରେ ଶାଲ୍ମଳୀ ପବନ ସମ୍ବାଦ
ସରିଲା କହେ କୃଷ୍ଣସିଂହ ବହି ମୋଦ ।

—*—

## ଲୋଭ ଓ ଜ୍ଞାନ ସମାଚାର

ଯୁଧିଷ୍ଠିର ବୋଇଲେ ପାପର ଅଧିଷ୍ଠାନ
କେ ଅଟେ ତା ମୋହର ଆଗରେ ବଖାଣ ।
ଭୀଷ୍ମ ବୋଇଲେ ହେ ପାରେ ଅଧିଷ୍ଠାନ
ଯେଏଟି ତାହା ଶୁଣ ପାଣ୍ଡବ ରାଜନ ।
ଲୋଭ ହକାରରୁ ପାପ ଯେ ପ୍ରବର୍ତ୍ତଇ
ଲୋଭ ଛାଡ଼ କ୍ଷଣେ ସେ ରହି ନ ପାରଇ ।
ପରଦ୍ରବ୍ୟ ଚୋର ଅକୀର୍ତ୍ତି ଲକ୍ଷ୍ୟାତ୍ୟାଗ
କ୍ରୋଧ ମୋହ ଦୁଷ୍କରକାରିତା ଅଭୋଗ ।
ମରଣ କୃପଣତା ଅକାର୍ଯ୍ୟ କାରଣ
ଦମ୍ଭ ଖର ନିନ୍ଦା ହୁଏଟି ଏବେ ଜାଣ ।
ଯେତିକ ମିଳୁଥାଏ ତେତେ ହେଉଥାଏ
ଲୋଭ ମନରେ ଆହେ ଯୁଧିଷ୍ଠିର ରାୟେ ।
ଦେବ ଯକ୍ଷ ଗନ୍ଧର୍ବ କିନ୍ନରରେ ଲୋଭ
ଜିଣିବାର ମଧ୍ୟ ହୋଇଅଛି ଦୁର୍ଲଭ ।
ଯେଉଁମାନେ ଲୋଭରେ ହୁଅନ୍ତି ଆସକ୍ତ
ମଧୁରେ କହୁଥାନ୍ତି ପାପେ ରଖି ଚିତ୍ତ ।
ଲୋଭ ଯେ ଲୋକଙ୍କର ନାଶ କନା ଭଲ
କେବେ ନ ପ୍ରକାଶେ ପାଣ୍ଡବ ମହୀପାଳ ।
ସମାନ ଦୁଃଖେ ସୁଖ ସର୍ବୋପକାରକ
ଦୟାବନ୍ତ ସକଳ ଧର୍ମର ପାଳକ ।
ଅନୁଗ୍ରହକାରୀ ଯେ ଦାତା ସତ୍ୟବନ୍ତ
ସର୍ବଭୂତ ହିତ ଅତିଥି ସାଧୁବନ୍ତ ।
ଏମାନଙ୍କୁ ସବୁକାଳରେ ଉପାସନା
କରିଥିବ ଆହେ ରାଜନ ମହାମନା ।
ଲାଭ ଅଲାଭରେ ଯେ ସୁମୁଖ ବମୁଖ
ନୋହେ ତାକୁ ପୂଜିବ ଆହେ ନରଶିଖ ।
ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ଲୋଭକଥା ଶୁଣିଲି ଜ୍ଞାନକଥା କହ ।
ଭୀଷ୍ମ ବୋଇଲେ ହେ ସାଧୁଙ୍କୁ ନିନ୍ଦା କର
ଅଜ୍ଞାନରେ ପାପ ବୁଦ୍ଧିକି ଯେ ଆଚର ।
ଲୋକରେ ସେ ଲୋକଟି ପାଏ ମହାନିନ୍ଦା
କେବେହେଁ ତାକୁ କେହି ନ କରନ୍ତି ବନ୍ଦା ।
ଅଜ୍ଞାନୁ ନରକ ଦୁର୍ଗତି କ୍ଲେଶ ହୋଏ
ଏ ବାହାରେ ବପତ୍ତି ଜଳେ ବୁଡ଼ଯାଏ ।
ଯୁଧିଷ୍ଠିର ବୋଇଲେ ଅଜ୍ଞାନର ସ୍ଥାନ
ବୃଦ୍ଧି କ୍ଷୟ ଉଦୟ ପ୍ରବୃତ୍ତି କାରଣ ।
ଏମାନ ଶୁଣିବାକୁ ହେଉଛି ମୋ ଇଚ୍ଛା
କହ ହେ ପିତାମହ ଶାନ୍ତନୁଙ୍କ ବତ୍ସା ।
ଭୀଷ୍ମ ବୋଇଲେ ହେ ରାଗ ଦ୍ୱେଷ ମୋହ
ଶୋକ ଅଭିମାନ ଏ ଅଜ୍ଞାନର ଦେହ ।
କାମ କ୍ରୋଧ ତନ୍ଦ୍ରା ଆଳସ୍ୟ ତାପମାନ
ଏମାନଙ୍କୁ କରିବା କଥାଟା ଅଜ୍ଞାନ ।

ଅଜ୍ଞାନ ଲୋଭ ଦୁହିଁଙ୍କର ଏକା ବଳ
ଏଣୁ ତୁଲ୍ୟ ଦୋଷ ସେ ଜାଣ ମହୀପାଳ ।
ଅଜ୍ଞାନରୁ ଲୋଭ ଯେ ଲୋଭରୁ ଅଜ୍ଞାନ
ହୁଏ ବୋଲି ତାହା ଛାଡ଼ନ୍ତି ବିଜ୍ଞଜନ ।
ଜନକ ଯୁବନାଶ୍ୱ ପ୍ରସେନ୍‌ଜିତ୍ ରାଜା
ଲୋଭ ଛାଡ଼ିବାରୁ ପାଇଲେ ସ୍ୱର୍ଗେ ପୂଜା ।
ଯେବେ ଯୁଧିଷ୍ଠିର ଛାଡ଼ିବ ତୁମ୍ଭେ ଲୋଭ
ତେବେ ହୋଇବ ଇହ ପରରେ ଦୁର୍ଲ୍ଲଭ ।
ଯୁଧିଷ୍ଠିର ବୋଇଲେ ଅଜ୍ଞାନର କଥା
କହିଲତ ମୋ ଆଗେ ଭୀଷ୍ମ ମହାରଥୀ ।
ଧର୍ମ କରିବାକୁ ତ ବହୁତ ପ୍ରକାର
ଅଛି କେ ସାର ତାହା ମୋ ଆଗେ ବିସ୍ତାର
ଭୀଷ୍ମ ବୋଇଲେ ଆହେ ଧର୍ମର ତନୟ
ଯହିଁରେ ହେବ ତା କହିବା ମନ ଦିଅ ।
ଧର୍ମ କଥାଯାକରେ ଦମ ଅଟେ ସାର
ଦମକୁ ବଳି କଥା ନାହିଁଟି ସଂସାର ।
ବିଶେଷେ ବ୍ରାହ୍ମଣରଠାରେ ଦମ ଥିଲେ
ସବୁ ପାତକରୁ ସେ ତରେ ଜାଣ ଭଲେ ।
ତେଜକୁ ବଢ଼ାଇବା କର୍ତ୍ତା ଅଟେ ଦମ
ପବିତ୍ରକର ମଧ୍ୟ ଅଟେ ନରୋତ୍ତମ ।
ଦମ ଥିବା ଲୋକର ସବୁକାଳେ ସୁଖ
କେତେବେଳେ ରାଜନ ନୋହେ ସେ ବିମୁଖ
ଯେଉଁ ଲୋକରଠାରେ ଦମ ରହିନାହିଁ
ତାର କ୍ଲେଶ ବଦନେ ନ ପାରିବି କହି ।
ଚାରି ଆଶ୍ରମରେ ଉତ୍ତର ବ୍ରତ ଦମ
ଦମବନ୍ତ ଲୋକେ ହୁଅନ୍ତି ପୂର୍ଣ୍ଣକାମ ।
କ୍ଷମା ଧୃତି ଅହିଂସା ସତ୍ୟ ଆରଜବ
ଦକ୍ଷତା ଅଚାପଳ୍ୟ ଲଜ୍ଜା ମୃଦୁଭାବ ।
ଅକାର୍ପଣ୍ୟ ପ୍ରିୟବାଦିତା ଅନସୂୟା
ଗୁରୁପୂଜା ଧୈର୍ଯ୍ୟ ଇନ୍ଦ୍ରିୟଜୟ ଦୟା ।
ଏହାଙ୍କୁ ଦମ ବୋଲି ଯୁଧିଷ୍ଠିର କହି
ମୋ କହିବାରୁ ଜାଣ ସନ୍ଦେହ ତ ନାହିଁ ।
ଦମ ସକାଶରୁ ହୁଅଇ ଯେଉଁ ଦୋଷ
କହିବା ଶୁଣ ଯୁଧିଷ୍ଠିର ନରେଶ ।
ଦମ ଥିବା ଲୋକ କ୍ଷମା ତ କରୁଥାଏ
ନ ପାରିବାର ତାକୁ ବୋଲନ୍ତି ସଭିଏଁ ।

କ୍ଷମା ଥିବା ଲୋକ ଯେ ସ୍ୱର୍ଗରେ ବସଇ
ଏଥିରେ କହିବାକୁ ସନ୍ଦେହ ତ ନାହିଁ ।
ଜିତେନ୍ଦ୍ରିୟ ଲୋକ ଘରରେ ବସିଥିଲେ
ଅରଣ୍ୟ ତପଫଳ ମିଳେ ତାକୁ ଭଲେ ।
ଏରୂପେ ଭୀଷ୍ମଙ୍କର ବଚନୁଁ ପାଣ୍ଡବ
ଯୁଧିଷ୍ଠିର ହୃଦରେ ଲଭି ମହାଭାବ ।
ଭୀଷ୍ମଙ୍କୁ ବୋଇଲେ ହେ ଦମର ପ୍ରଭାବ
ଶୁଣିଲି ତପକଥା କହ ଶାନ୍ତନବ ।
ଭୀଷ୍ମ ବୋଇଲେ ଜାଣ ତପ ମୂଳଧର୍ମ
ତପରୁ ବଡ଼ ହୋଇ ନାହିଁ ଆଉ କର୍ମ ।
ପ୍ରଜାପତି ତପସ୍ୟ କରିଣ ଏ ସୃଷ୍ଟି
ସରଜନା କଲେ ନୋହି କିଛି କଷ୍ଟି ।
ତପୋବଳେ ଋଷିଏ ଜାଣି ଚାରିବେଦ
ସ୍ୱର୍ଗରେ ବସୁଛନ୍ତି ହୋଇଣ ପ୍ରମୋଦ ।
ତପର ସକାଶରୁ ସିଦ୍ଧଙ୍କର ଜ୍ଞାନ
ତିନି ଲୋକ ଯାକରେ ପ୍ରସରେ ରାଜନ ।
ଅସାଧ୍ୟ କଥା ସାଧ୍ୟ ତପ କଲେ ହୋଏ
ଏଥିରେ କହିବାକୁ କିସ ଅଛି ରାୟେ ।
ପଞ୍ଚ ମହାପାତକେ ତରିକରି ଲୋକ
ତପୋବଳେ ଦେଖୁଅଛନ୍ତି ସ୍ୱର୍ଗଲୋକ ।
ସବୁ ତପ ପ୍ରତିକ ଅନଶନ-ତପ
ଯେ କରୁଛି ଅତି ସେ ଅଟଇ ନିଷ୍ପାପ ।
ଦେବେ ମଧ୍ୟ ତପ ସକାଶୁଁ ସ୍ୱର୍ଗେ ଯାଇ
ରହିଛନ୍ତି ଆଗ ଶରୀର ପବିତ୍ରାଇ ।
ଯୁଧିଷ୍ଠିର ବୋଇଲେ ତପକଥା ଶୁଣି
ହୋଇଲି ମୁଁ ମହାତୋଷ ହେ ରଥୀମଣି
ସତ୍ୟକୁ ସମସ୍ତେ କରନ୍ତି ପରଶଂସା
ତା ଲକ୍ଷଣ ମୋତେ କହ ହେ ମହାଯଶା ।
ଭୀଷ୍ମ ବୋଇଲେ ଆହେ ଚାରିବର୍ଣ୍ଣଙ୍କରେ
ସତ୍ୟରୁ ବଳି କଥା ନାହିଁ ଏ ମର୍ତ୍ତ୍ୟରେ ।
ଧରମଗତି ତପ ଯୋଗେ ବ୍ରହ୍ମ ଯାଗ
ସତ୍ୟ ବୋଲି ଜାଣ ରାଜନ ମହାଭାଗ ।
ସତ୍ୟକୁ କେଉଁରୂପେ ପାଉଛନ୍ତି ଲୋକ
ତା କହିବା ଶୁଣ ହେ ପାଣ୍ଡବ-ନାୟକ ।
ସମତା ସତ୍ୟ ଦମ କ୍ଷମା ଅମାତ୍ସର୍ଯ୍ୟ
ତିତିକ୍ଷା ତ୍ୟାଗ ଧ୍ୟାନ ଆର୍ଯ୍ୟଭାବ ଧୈର୍ଯ୍ୟ ।

ଅନସୂୟା ଲଜ୍ଜା ଅହିଂସା ମିଶି ତେର
ଅଟନ୍ତି ଜାଣ ଏ ସତ୍ୟର ଆକାର ।
ଶତ୍ରୁ ମିତ୍ରଙ୍କଠାରେ ବୁଦ୍ଧି ଟି ସମାନ
ବହିବା ସମତା ସେ ବୋଲିଏ ରାଜନ ।
ଅବିକାର ଅକ୍ଷର ସତ୍ୟଟି ଅଟଇ
ସକଳ ଧର୍ମ ଅବିରୁଦ୍ଧ ବୋଲି କହି ।
ଦମ ଶମ ସକାଶୁଁ ହୁଅଇ ଅଭୟ
କାମ କ୍ରୋଧ ଆଦି ଏ ଯାଏ ମଧ୍ୟ କ୍ଷୟ ।
ସାଧୁଲୋକ କ୍ଷମା ସକାଶୁଁ ସ୍ବର୍ଗଲୋକ
ପାଉଛନ୍ତି ଜାଣ ଛାଡ଼ି ଦେଇ ହୃଦ ଶୋକ ।
ଦାନ ଧର୍ମକୁ ଯେହୁ ଆଶ୍ରେ କରିଥାଏ
ଅମତ୍ସରୀ ବୋଲି ଜଗତେ ସେ ବୋଲିଏ ।
ଧର୍ମନିମିତ୍ତରେ କ୍ଷମାକୁ ଯେ କରଇ
ତିତିକ୍ଷାବନ୍ତ ବୋଲି ତାହାକୁଟି କହି ।
ମମତା ବାସନା ଯେ କରିଥାଏ ଦୂର
ଜାଣଟି ଯୁଧିଷ୍ଠିର ତ୍ୟାଗୀ ସେହି ନର ।
ଯତ୍ନ କରି ପ୍ରାଣୀଙ୍କି ଅନୁଗ୍ରହ କରେ
ଆର୍ଜବ ବୋଲିଏଟି ଜାଣ ଏ ସଂସାରେ ।
ଦୁଃଖ ସୁଖ ପାଇଣ ନୁହଇ ବିକାର
ଯାହାର ବୋଲିଏ ସେ ଧୃତିମନ୍ତ ନର ।
ଲଜ୍ଜାବନ୍ତ ଲୋକର କେବେ ନୋହେ ଗ୍ଲାନି
ମୋ କହିବାରୁ ଜାଣ ପାଣ୍ଡବ ନୃମଣି ।
କର୍ମରେ ମନରେ ଯେ ପ୍ରାଣୀଦ୍ରୋହ କଥା
ଜାଡ଼ିଛି ଅହିଂସକ ସେହି ମହାରଥା ।
ଏ ସମସ୍ତେ ସତ୍ୟଙ୍କୁ ଆଶ୍ରା ଛନ୍ତି କରି
ଏ ସକାଶୁଁ ସତ୍ୟକୁ ବଡ଼ ଦଣ୍ଡଧାରୀ ।
ସତ୍ୟୁଁ ବଡ଼ ହୋଇ ଜଗତେ ନାହିଁ ପୁଣ୍ୟ
ମିଥ୍ୟା ସରବ ପାତକରେ ହୀନ ସ୍ଥାନ ।
ସହସ୍ରେ ଅଶ୍ୱମେଧ ସତ୍ୟ ତୁଲେ ତୁଳ—
ଅଛନ୍ତି ଋଷିଏଟି ସତ୍ୟ ଗଲ ବଳ ।
ଯୁଧିଷ୍ଠିର ବୋଇଲେ ସତ୍ୟର ଚରିତ
ଶୁଣି ତୋଷ ହେ ହେଲା ଭୀଷ୍ମ ମୋର ଚିତ୍ତ ।
ଅସୂୟା କାମ ଶୋକ ମୋହ ପରାସୁତା
ବିଧିତ୍ସା ଈର୍ଷା ନିନ୍ଦା ମାତ୍ସର୍ଯ୍ୟ ମତ୍ତତା ।
ଅକୃପା ଭୟ କ୍ରୋଧ ମିଶି ଏ ତେରଟି
କହ ପିତାମହ କାହିଁର ହୋଏ ଗୋଟି ।

ଭୀଷ୍ମ ବୋଇଲେ ହେ ଅସାବଧାନ ହେଲେ
ଏ ତେର ପ୍ରାଣୀଙ୍କି କରନ୍ତି ନାଶ ଭଲେ ।
ଏ ତେର ସକାଶରୁ ହୁଏ ମହାଦୁଃଖ
ଏ ବାହାରେ ପ୍ରବର୍ତ୍ତେ ପାପ ହେ ନୃଶିଖ ।
ଏ ତେରଙ୍କ ଉଦୟ କ୍ଷୟ ତୁମ୍ଭ ଆଗେ
କହିବା ଶୁଣ ଆହେ ରାଜନ ସତ୍ୱରେ ।
ଲୋଭ ହୋଇଲେ କ୍ରୋଧ ହୁଅଇଟି ଜାତ
କ୍ଷମା କରିଲେ ନାଶ ଯାଏ ସେ ତୁରିତ ।
ପର ଦୋଷ ଦେଖିଲେ ବଢ଼ଇଟି କ୍ରୋଧ
କଲିଇ ଦେଇ ହୃଦୟୁଁ ଟିକି ଅବୋଧ ।
ସଂକଳ୍ପରୁ କାର୍ଯ୍ୟର ଜନମ ହୁଅଇ
ଆଦର କଲେ ତାହା ଅଧିକେ ବଢ଼ଇ ।
ଅନାଦର ନ ହେଲେ ଯାଏ କାମ ନାଶ
କହୁଅଛି ଜାଣ ହେ ପାଣ୍ଡବ ନରେଶ ।
ପ୍ରୀତିର ବିଯୋଗରେ ଜାଣ ଶୋକ ହୁଏ
ପୀରତି ମିଥ୍ୟା ବୋଲି ଛାଡ଼ିଲେ ସେ ଯାଏ ।
ଅଜ୍ଞାନରୁ ମୋହର ହୁଅଇ ଜନମ
ପାପ ଅଭ୍ୟାସରୁ ବଢ଼େ ସେ ନୃପୋତ୍ତମ ।
ଯେବେ ପାପ ଅଭ୍ୟାସ ଲୋକ ଛାଡ଼ିଦିଏ
ତେବେ ତା ସୁଖରେ ଅଜ୍ଞାନ ନାଶ ଯାଏ ।
ବିରୁଦ୍ଧ ଶାସ୍ତ୍ର ଯେବେ ଦେଖେ ନିତି ନର
ବିବିଧ କଥା ଇଚ୍ଛା ହୁଅଇ ତାହାର ।
ତତ୍ତ୍ୱଜ୍ଞାନ ହେଲେ ଇଚ୍ଛାରେ ନିବର୍ତ୍ତଇ
ବାଞ୍ଛା କରିବାକୁ ଏଥିରେ କଥା ନାହିଁ ।
କ୍ରୋଧ ଲୋଭ ଦୁହେଁ ଲୋକର ପରାସୁତା
କରାନ୍ତିଟି ଜାଣ ହେ ମନୁଜ ଦେବତା ।
ପରାସୁତା ନିର୍ବେଦ ସାନେ ଭଲେ ନାଶ
ଜାଣ କୁରୁକ୍ଷେତ୍ର ଚନ୍ଦ୍ରମା ନୃପ ଈଶ ।
ଛାଡ଼ିଲେ ସତ୍ୟ ମତ୍ସରତା ଉପୁଜଇ
ସାଧୁ ସେବା କଲେ ସେ ରହି ନ ପାରଇ ।
କୁଳ ବିଦ୍ୟା ଅଇଶ୍ୱର୍ଯ୍ୟରୁ ମଦ ହୋଏ
ଜାଣିଲେ ଲୋକେ ଏହା କ୍ଷୟ କରିଦିଏ ।
କାମ ସକାଶନ୍ତୁ ଜାଣ ହୁଅଇ ଈର୍ଷା
ତତ୍ତ୍ୱଜ୍ଞାନ ହେଲେ ସେ ପାଏ ନାଶ ଦଶା ।
ମୂର୍ଖ ହେଲେ ଲୋକ ସଭିଙ୍କି ନିନ୍ଦା କରେ
ଜ୍ଞାନ ହେଲେ ଗଣନା ହୁଏ ଜାଣିବାରେ ।

ବଳୀୟସୀର ଲୋକଙ୍କୁ ନ ପାରେ ଦୁର୍ବଳ
ଅସୂୟା କରି ନିତ୍ୟ କରୁଥାଏ ଗୋଳ ।
ଯେଉଁ ସମୟେ ତା'ର ଶୋକ ଜାତ ହୋଏ
ସେ କାଳରେ ସମୟେ ତାହା ସେ ଛାଡ଼ିଦିଏ ।
କୃପଣକୁ ଦେଖି କୃପା ହୁଅଇ ଜାତ
ଧର୍ମେ ବୁଦ୍ଧି ହେଲେ ସେ ଯାଏ ପାଣ୍ଡୁ-ସୁତ
ଏତେକ ଦୋଷଯାକ ଧୃତରାଷ୍ଟ୍ରସୁତେ
ବହୁବାର ବସିଲେ ଯମଙ୍କ ପୁରତେ ।
ତୁମ୍ଭେ ଯେ ସତ୍ୟ ଧର୍ମ-ପରାୟଣ ହୋଇ-
ଥିବାରୁ ହୋଇଲ ହସ୍ତିନା ନରସାଇଁ ।
ଯୁଧିଷ୍ଠିର ବୋଇଲେ କ୍ରୋଧ କଥାଯାକ
ମୋ ଆଗେ ତ କହିଲ ରଥୀଙ୍କ ତିଳକ ।
ନୃଶଂସ-ଚରିତକୁ ଶୁଣିବାକୁ ଇଚ୍ଛା
ଅଛି ତାହା କହ ହେ ଶାନ୍ତନୁଙ୍କ ବତ୍ସା ।
ଭୀଷ୍ମ ବୋଇଲେ ଆହେ କଣ୍ଠା ଅଗ୍ନ ବଷ
ପରସ୍ପେ ନୃଶଂସକୁ ଛାଡ଼ନ୍ତୁ ନରେଶ ।
ଅଭିମାନ-କୁସଙ୍ଗ-ଆତ୍ମଶ୍ଳାଘା ରତ
କ୍ରୋଧୀ କୁପ୍ରକୃତ ଯେ ସତତ ଶଙ୍କିତ ।
ମିଥ୍ୟାବାଦୀ ନିନ୍ଦୁକ କୁପ୍ରବୃତ୍ତିଧାରୀ
ଆଶ୍ରମବାସୀ ଋଷିଗଣ ହିଂସାକାରୀ ।
ଏମାନଙ୍କୁ ନୃଶଂସ ବୋଲି କରି କହି
ଏହାଙ୍କଠାରେ ଭଲ ହୋଇ ଲବେ ନାହିଁ ।
ଧାର୍ମିକ ଗୁଣବନ୍ତ ଲୋକକୁ ନୃଶଂସ
ପାପୀ ବୋଲି ଉଗାରଥାଏ ନିତ୍ୟ ଭାଷ ।
ପର ଗୁଣ ଦେଖିଲେ ନୃଶଂସ ଲୁଚଇ
ଆପଣା ଗୁଣ ବସି ବଖାଣି ହୁଅଇ ।
ଉପକାରୀ ଲୋକେ ନୃଶଂସ ହେଲେ ଧନ
ହେଉଥାଏ ବସିବାଠାରେ ଛନ୍ନ ଛନ୍ନ ।
କାହାକୁ ନ କହିଣ ବସଇ ଏକାନ୍ତେ
ଘୃତ-ପକ୍ୱ ଆହାର ଭୁଞ୍ଜଇ ନିରତେ ।
ହେ ଯୁଧିଷ୍ଠିର ଜାଣ ନୃଶଂସ ଲୋକକୁ
କେବେ ନ ଆଣିବଟି କହୁଛି ପାଖକୁ ।
ନୃଶଂସର ଚରିତ ଶୁଣିଲ ରାଜନ
ଏବେ ଶୁଣ କହିବା ପ୍ରାୟଶ୍ଚିତ୍ତମାନ ।
ଯେ ଦ୍ୱିଜ ନିତ୍ୟଦିନ ପଢ଼ୁଥିବ ବେଦ
ରାଜା ତାହାକୁ ଦେବ ବହିଣ ପ୍ରମୋଦ ।

ଏ ଛଡ଼ା ଦରିଦ୍ର ଲୋକକୁ ଦାନ ଦେଇ
ରଖିଥିବ ପାଖରେ ସନ୍ତୋଷ କରାଇ ।
ତିନି ବରଷପାଇଁ ଘୃତ ରଖି ଘରେ
ଦ୍ୱିଜ ଯାଗ କରିବ ରହିଣ ଧର୍ମରେ ।
ବହୁଧନ ଥାଇ ନ କଲେ ବୈଶ୍ୟ ଯାଗ
ତା'ର ଧନ ଆଣିବ ରାଜା ବହି ରାଗ ।
ଶୂଦ୍ରର ଧନ ହେଲେ ଆଣିବ ରାଜନ
ଯାଗ ସାଧନେ ପାଳିବାକୁ ଦ୍ୱିଜ ଜନ ।
ଅଦାତା ଲୋକଙ୍କର ଧନକୁ ଆଣିଲେ
ଦୋଷ ନାହିଁ ତହିଁ ରାଜନ ଜାଣ ଭଲେ ।
କ୍ଷତ୍ରିୟ ଯେବେ ବ୍ରାହ୍ମଣଙ୍କୁ ଦୁଃଖ ଦେବ
ଭୂମିଦାନ ଦେଲେ ତା'ର ସେ ଦୋଷ ଯିବ
ଅତ୍ୟରସପୂର୍ବକୁ ରଖିବା ପରସ୍ପେ
ଦୁଃଖବନ୍ତ ଦ୍ୱିଜକୁ ପାଳିବଟି ରାଜ୍ୟେ ।
ସାମର୍ଥ୍ୟ ଥାଇ ଗୃହରପଣଠାରେ ପଣେ
ହେଲେ ନରକେ ଯାଇ ପଡ଼ଇ ଆପଣେ ।
ବେଦବେତ୍ତା ଦ୍ୱିଜ ରାଜାଙ୍କୁ ନ ମାଗିବ
ମାଗିବ ଯେହୁ ବେଦ ବଦ୍ୟାହୀନ ହେବ ।
ବେଦର ସ୍ୱରୂପଟି ବ୍ରାହ୍ମଣ ଅଟଇ
ବ୍ରାହ୍ମଣଠାରେ ଥିବ ଜାଗରୁକ ହୋଇ ।
ବାହୁବୀର୍ଯ୍ୟ କ୍ଷତ୍ରିୟ ବେଦରେ ବ୍ରାହ୍ମଣ
ଧନରେ ବୈଶ୍ୟ ଶୂଦ୍ର ତରୁଛନ୍ତି ଜାଣ ।
ଅମନ୍ତ୍ରଜ୍ଞ କନ୍ୟା ଯେ ବାଳକ ଯୁବତୀ
ଅଗ୍ନିହୋତ୍ରେ କେବେହେଁ ନଦେବେ ଆହୁତି
ଯା ପାଇଁ ଏମାନେ କରନ୍ତି ହୋମ ବସି
ତାହା ସହିତରେ ହୁଅନ୍ତି ନର୍କବାସୀ ।
ଯାଗାଦି କୁଶଳ ବେଦଜ୍ଞ ଲୋକ ହୋମ
କଲେ ଦ୍ୱିଜ ମଧ୍ୟରେ ଲଭଇ ଧରମ ।
ସାଧୁଯୁକ୍ତ ହୋଇ କରିବ ସର୍ବ ପୁଣ୍ୟ
ନ କରିବ ଯାଗ ଦକ୍ଷିଣା କରି ହୀନ ।
ଅଦକ୍ଷିଣା ଯାଗ ଯେ ଅସ୍ୱର୍ଗୀୟ ଅଟେ
ହେନ ଯୁଧିଷ୍ଠିର ରାଜନ ହୃଦ-ତଟେ ।
ଋତୁମଣ୍ଡଗାମୀ ଅନଗ୍ନି ଅଶ୍ରୋତ୍ରୀୟ
ହେଲେ ଦ୍ୱିଜ ହୋଏ ଶୂଦ୍ରରେ ଉପମେୟ ।
ଶୂଦ୍ରସ୍ତ୍ରୀ-ପତି ହୋଇ ବିପ୍ର ଶୂଦ୍ରଗ୍ରାମ
ଆଶ୍ରେ କଲେ ବ୍ରାହ୍ମଣ ହୋଏ ଶୂଦ୍ରସମ ।

ପରସ୍ତ୍ରୀ ସମ୍ଭୋଗ ବୁଦ୍ଧି ଦ୍ୱିଜଦ୍ରୋହ
କଲେ ଯେଉଁରୂପେ ଅଶୁଦ୍ଧ ହୋଏ ଦେହ ।
ଏ ବାହାରେ ବ୍ରାହ୍ମଣ ଶୂଦ୍ର ଧନ ଖାଇ
ଜୀଇଲେ ଯେରୂପେ ତରେ ତା'କହିବଇଁ ।
ସମ୍ପୂର୍ଣ୍ଣରେ ତିନି ବରଷ କଲେ ତପ
ଏ ତିନ ପାତକକୁ ବସ୍ତ୍ର କରେ ଲୋପ ।
ବିବାହ ଆତ୍ମାର ରକ୍ଷଣ ପରିହାସ
ସ୍ତ୍ରୀ ଗୁରୁ କାର୍ଯ୍ୟରେ ନାହିଁ ମିଥ୍ୟାଦୋଷ ।
ହୀନଲୋକଠାରେ ଉତ୍ତମବିଦ୍ୟା ଥିଲେ
ଦୋଷ ନାହିଁ ଶ୍ରଦ୍ଧାରେ ସୁଜନେ ପଢ଼ିଲେ ।
ଅମେଧରେ ସୁନା ପଡ଼ିଥିଲେକ ଆଣି
ଘରେ ସମ୍ପାଦଣ ରଖିବ ନରମଣି ।
ଦୁଷ୍କୁଳରେ ସ୍ତ୍ରୀ ରତନ ଥିଲେ ରହି
କରିବ ନୃପ ଭୋଗ କାହାକୁ ନ କହି ।
ଗୁରୁ ବ୍ରାହ୍ମଣଙ୍କ ରକ୍ଷଣପାଇଁ ବୈଶ୍ୟ
ଧରିଲେ ଧନୁ ତାକୁ ନ ଲାଗଇ ଦୋଷ ।
ସୁରାପାନ ଓ ଗୁରୁପତ୍ନୀଙ୍କ ଗମନ
ଏ ବାହାରେ ରାଜନ ବ୍ରାହ୍ମଣ ବଧନ ।
ଏ ଯେ କରେ, ପ୍ରାୟଶ୍ଚିତ୍ତରେ ନ ତରଇ
ଜାଣିଥାଅ ଆହେ ପାଣ୍ଡବ ନରସାଇଁ ।
ଦ୍ୱିଜ ଦ୍ରବ୍ୟ ସୁନା ହରଣେ ମହାପାପ
ନ ଯାଏ ସେ କେବେହେଁ ବସି କଲେ ତପ
ପତିତ ଲୋକ ଭୁଲେ ବର୍ଷେ କଲେ ସଙ୍ଗ
କରଏ ଦେହାନ୍ତିକ ନରକକୁ ଭୋଗ ।
ପାପୀଙ୍କ ପାପୀ ଚୋରଜନଙ୍କୁ ଯେ ଚୋର
ବୋଲଇ ସେ ଦୋଷଟି ହୁଅଇ ତାହାର ।
ଯେ ଚୋର ପାପୀନୋହେ, ତାହାକୁଯେ ଚୋର
ପାପୀ ବୋଲି ଦ୍ୱିଗୁଣ ପାପ ହୋଏ ତା'ର
କୁମାରୀ ବ୍ୟଭିଚାରଦୂଷିତା ଯେବେ ହୋଏ
ତିନିଭାଗ ବ୍ରହ୍ମ ହତ୍ୟାରୁ ଭାଗେ ପାଏ ।
ଯେ ପୁରୁଷ ତାକୁ ଦୂଷିତା କରିଥାଏ
ବାକି ଦୁଇ ଭାଗ ତାହାରଠାକୁ ଯାଏ ।
ବ୍ରାହ୍ମଣ ଗଣେ ଅପବାଦ ଦେଲେ ନର
ବରଷ ଶତ ଯାଏ ନୁହେ ତା'ର ପାର ।
ବ୍ରହ୍ମହତ୍ୟା କଲେ ବରଷ ଦଶଶତ
ଘୋର ନରକରେ ଯେ ହୁଅଇ ନିପାତ ।

ଯୁଦ୍ଧରେ ମଲେ ବ୍ରହ୍ମହତ୍ୟା ନାଶ ଯାଏ ।
ଏ ବିନା ଆନ ତାକୁ ନାହିଁ ହେ ଉପାୟେ ।
ତପତ ମଦିରା ପିଇଲେ ମଦ୍ୟପାନ—
କଲା ଦୋଷ ଯାଏ ହେ ପାଣ୍ଡବ ରାଜନ ।
ଗୁରୁତଳ୍ପ ସମ୍ଭୋଗୀ ଲୁହା ପ୍ରତିମାକୁ
ତତାଇ ପୋଟାଳିଲେ ତରେ ନରକକୁ ।
ନୋହିଲେ ଲିଙ୍ଗ କାଟି ନୈଋତ ଦିଗ
ଆଡ଼କୁ ପକାଇଲେ ତରେ ମହାଭାଗ ।
ଅଶ୍ୱମେଧ ଗୋମେଧ କରି ଦ୍ୱିଜପାଇଁ
ମଲେ ଯେ ଗୁରୁତଳ୍ପଦୋଷରୁ ତରଇ ।
ବ୍ରହ୍ମହା ଲୋକ କପାଳକୁ କରେ ବହି
ବାରବର୍ଷ ଯାଏ ରହିବ ଭିକ୍ଷା ଖାଇ ।
ଯାହାକୁ ଦେଖୁଥିବ କହୁଥିବ ତାକୁ
ମାଇଲି ମୁଁ ଦୁଷ୍ଟବୁଦ୍ଧିରେ ବ୍ରାହ୍ମଣଙ୍କୁ
ଏରୂପେ କଲେ ବ୍ରହ୍ମହତ୍ୟା ନାଶ ଯାଏ
ଏ ନୋହିଲେ ନରକ ପଡ଼ଇ ସେ ରାୟେ ।
ଋତୁମତୀ ସ୍ତ୍ରୀଙ୍କି ମାଇଲେ ବ୍ରାହ୍ମଣ
ମାରିବା ପ୍ରତିଟିକି ପାତକ ଦ୍ୱିଗୁଣ ।
ଯେଉଁରୂପେ ବ୍ରହ୍ମହତ୍ୟାକୁ ପ୍ରାୟଶ୍ଚିତ୍ତ
କହିଲଇଁ ସେରୂପେ ଧର୍ମେ ଦେଇ ଚିତ୍ତ ।
ଦ୍ୱିଗୁଣ କରି ପ୍ରତିକାର ନର କଲେ
ଋତୁମତୀ ହତ୍ୟାରୁ ତରିପାରେ ଭଲେ ।
ବୈଶ୍ୟକୁ ଯେ ମାରିବ ବର୍ଷ ଦୁଇ ଯାଗ
କରିବ ଦ୍ୱିଜେ ଷଣ୍ଢ ଶଏ ଗାଈ ଦେବ ।
ଶୂଦ୍ରକୁ ମାରିଲେ ଯେ ବର୍ଷେ କରି ଯାଗ
ଦ୍ୱିଜକୁ ଶଏ ଗାଈ ଷଣ୍ଢ ଦାନ ଦେବ ।
ମାର୍ଜାର ଗଧ ବେଙ୍ଗ ମୂଷିକ କୁକୁର
ଶୂକର କାଳ ସାପ ମାରଇ ଯେ ନର ।
ଶୂଦ୍ରହତ୍ୟାଦୋଷକୁ ପ୍ରାୟଶ୍ଚିତ୍ତ ପରି
ପ୍ରାୟଶ୍ଚିତ୍ତ କଲେ ସେ ପାପୁଁ ଯାଏ ତରି
କ୍ଷତ୍ରିୟ ଭାରଯାକୁ ହରିବ ଯେ ଜନ
କରିବ ଚତୁର୍ଥ କାଳରେ ସେ ଭୋଜନ ।
ବରଷ ତିନିଯାଏ ବ୍ରହ୍ମଚର୍ଯ୍ୟ କରି
ନୋହିଲେ ଆନ ମତେ ନ ପାରଇ ତରି
ପରସ୍ତ୍ରୀ ଭୋଗ କରି ବର୍ଷ ଦୁଇ ଯାଏ
ଚତୁର୍ଥକାଳ କଲେ ତରଇ ହେ ରାୟେ ।

ଦେବ ଅଗ୍ନି ମାତା ପିତାଙ୍କୁ ଯେ ଛାଡ଼ଇ
ଚତୁର୍ଥକାଳ କଲେ ଜାଣ ସେ ତରଇ ।
ଷଷ୍ଠ ଛାଡ଼ି ପରପୁରୁଷକୁ ଗଲେ
କୁକୁରକୁ ରାଜା ଦେବ ତା ମାଂସ ଭଲେ ।
ପରସ୍ତ୍ରୀ-ଭୋଗୀଠାରେ କରିଣ ନିର୍ଦ୍ଦୟ
ଖଡ଼ ଗୁଡ଼ାଇ ସେ ଜାଳ ଦେବ ନିଆଁ ।
ଜ୍ୟେଷ୍ଠ ବାଡ଼ୁଅ ଥାଉଁ ଯେହୁ ବିଭାକରେ
ପରିବେତ୍ତା ତାହାକୁ ବୋଲନ୍ତି ଶାସ୍ତ୍ରରେ ।
ପରିବେତ୍ତା ଘଟଳ ଆଉ ଜ୍ୟେଷ୍ଠଭ୍ରାତ
ଭାରଯା ସହିତରେ ବୋଲନ୍ତି ପଣ୍ଡିତ ।
ଏ ସମସ୍ତମାନେ କୃଚ୍ଛ୍ର ବା ଚାନ୍ଦ୍ରାୟଣ—
ବ୍ରତରୁ ବ୍ରତେ କଲେ ତରନ୍ତି ଜାଣ ।
କୁକୁର ଅବା ଗ୍ରାମଶୂକର କୁକ୍କୁଟ
ଗଧ ମାଉଁସରେ ବ୍ରାହ୍ମଣ ଯେବେ ପେଟ-
ତୋଷଇ ଆଉ ଥରେ ବ୍ରତ ହେବାଯାଏ
ପାତକରାଶି ତାଙ୍କ ଅଙ୍ଗେ ରହୁଥାଏ ।
ସୋମପାୟୀ ଦ୍ୱିଜ ସଭାରେ ବସିଥିବ
ସେ ଯେ ସୁରାପାୟୀ ଗନ୍ଧକୁ ଶୁଙ୍ଘିବ ।
ଜଳ ଦୁଧ ଘିଅ ତତାଇ ଦିନତ୍ରୟ-
ଲେଖାରେ ପିଇଲେଟି ଶୁଦ୍ଧ ହୋଏ କାୟ ।
ଏ ବାହାରେ ଦିନ ତିନୋଟି ବାଳ ପିଇ
ରହିବ ସୁଖରେ ପାଣ୍ଡବ ନରସାଇଁ ।

—*—

## ଖଣ୍ଡାର ଚରିତ

ଏରୂପେ ପ୍ରାୟଶ୍ଚିତ୍ତ ଭୀଷ୍ମ ମୁଖୁଁ ଶୁଣି
ରହନ୍ତେ ତୁନି ହୋଇ ପାଣ୍ଡବ-ନୃପମଣି ।
ନକୁଳ ଦେଖି ସମୟରେ ଭୀଷ୍ମ ଆଗେ
କର ଦୁଇକୁ ଯୋଡ଼ି ପୁଚ୍ଛିଲେ ସରାଗେ ।
ଧନୁକୁ ସବୁଲୋକ କରନ୍ତି ପ୍ରଶଂସା
ମୁଁ ତ ଖଣ୍ଡାକୁ ହେ ପ୍ରଶଂସେ ମହାଯଶା ।
ଧନୁ ଛାଡ଼ିଗଲେ ଖଣ୍ଡାର ବିନା ଆନ
ପ୍ରାଣ ରଖିବାପାଇଁ ନାହିଁ ପରିତ୍ରାଣ ।
ସବୁ ଯୁଦ୍ଧେ କେଉଁ ଆୟୁଧ ଅଟେ ବର
ଖଣ୍ଡା କିରୂପରେ ଜନ୍ମିଲା ଏ ସଂସାର ।
ଏହା ଶୁଣିବାକୁ ମୋ ମନ ହେଉଅଛି
କହିବା ହେଉ ମୋତେ ଗଙ୍ଗାଦେବୀ ବହି ।

ଭୀଷ୍ମ ବୋଇଲେ ଅହେ ମାଦ୍ରୀଙ୍କ ନନ୍ଦନ
ପୁଚ୍ଛ ଯାହା କହିବା ଶୁଣ ଦେଇ ମନ ।
ବ୍ରହ୍ମ ପ୍ରଳୟର ଶେଷରେ ଯେ ବ୍ରହ୍ମାଙ୍କ
ବିନା ଆଉ ମହୀରେ ନ ଥିଲେଟି ଲୋକ—
ଦକ୍ଷ ପ୍ରଜାପତିଙ୍କ ଭାର୍ଯ୍ୟା ଷାଠିଏଟି
କନ୍ୟାର ଗର୍ଭ ଜାତ କରି କଲେ ଗୋଟି ।
ସେ ଷାଠିଏ କନ୍ୟାଙ୍କୁ ବ୍ରହ୍ମଋଷିମାନେ
ପୁତ୍ର ପାଇଁ ବିଭା ହୋଇଲେ ତୋଷ ମନେ ।
ଦେବ ଯକ୍ଷ ଗନ୍ଧର୍ବ ରକ୍ଷ ପିତୃଗଣ
ଅପସରା ପକ୍ଷୀ ମର୍କଟ ସର୍ପମାନ ।
ଚତୁର୍ବିଧ ପ୍ରାଣୀ ଯେ ସ୍ଥାବର ଜଙ୍ଗମ
ତାଙ୍କଠାରୁ ନକୁଳ ହୋଇଲେ ଜନମ ।
ସୃଷ୍ଟି ହେବାର ତହୁଁ ପିତାମହ ଦେଖି
ବେଦଉକ୍ତ ଧର୍ମ କହିଲେ ହୋଇ ସୁଖୀ ।
ଆଦିତ୍ୟ ବସୁରୁଦ୍ର ଦେବ ପୁରୋହିତ
ସାଧ୍ୟ ଭୃଗୁ ଅଶ୍ୱିନୀକୁମାର ମରୁତ ।
ଅଙ୍ଗିରା ଅତ୍ରି ସିଦ୍ଧ ବଶିଷ୍ଠ ପର୍ବତ
ବାଳଖିଲ୍ୟ ଗୌତମ ନାରଦ ସିକତ ।
ମରୀଚି ଅଗସ୍ତି ଯେ କାଶ୍ୟପ ପ୍ରଭାସ
ଆକୃଷ୍ଣ ସୋମ ଯେ ବାୟବ୍ୟ ବୈଖାନସ ।
ଘୃତାଚ୍ୟ ପୃଶ୍ନି ଆଦି ବ୍ରହ୍ମାଙ୍କ ଶାସନେ
ବେଦଧର୍ମ ବସି ପାଳିଲେ ଅବିଚ୍ଛିନ୍ନେ ।
ହିରଣାକ୍ଷ୍ୟ ହିରଣ୍ୟକଶ୍ୟପୁ ଶମ୍ବର
ବିପ୍ରଚିତ୍ତି ବିରୋଚନ ଯେ ବଳି ବୀର
ନମୁଚି ପ୍ରହଲାଦ ଆଦି ଦୈତ୍ୟଗଣେ
ଟାଳିଲେ ବ୍ରାହ୍ମଣଙ୍କ ଆଜ୍ଞା ନ ମାନିଣ ।
ମନେ କଲେ ଦେବେ ଅଟନ୍ତି ଆମ୍ଭ ଭାଇ
ଏହାଙ୍କ ଭାଗ ନେଲେ ଆମ୍ଭ ଦୋଷ ନାହିଁ ।
ପ୍ରାଣୀଙ୍କଠାରେ ଦୟା ହୃଦୟ ନ କଲେ
ନିର୍ଦ୍ଦୟ ହୃଦ ହୋଇ ପ୍ରାଣୀଙ୍କୁ ମାରିଲେ ।
ପୂର୍ବ କୋଟିରୁ ଯେ ଉତ୍ତମ ଚରିତ
ଛାଡ଼ିଲେ ଦଣ୍ଡଦେବଙ୍କର ଯେତେ ସୁତ ।
ଏହିକାଳରେ ବ୍ରହ୍ମା ହିମାଳୟ ଶିଖେ
ଯାଗକୁ ଆରମ୍ଭିଲେ ଅତି ମନସୁଖେ ।
ଯେଉଁରୂପେ ବିଧାନ ବେଦେ ଲେଖିଛନ୍ତି
ସେରୂପେ ଯାଗ କଲେ ବ୍ରହ୍ମା ମହାମତି ।

ସେ ଯାଗରେ ଯେତେକ ଗଢ଼ା ହୋଇଲା ପାତ୍ର
ଜାଣ ସେ ସବୁ ଦାରୁ-ହେମରେ ନିର୍ମିତ ।
ସେ ଯାଗ ଅଗ୍ନିକୁଣ୍ଡ ମଧ୍ୟୁଁ ଭୟଙ୍କର
ପୁରୁଷ ଜାତ ହେଲା ନୀଳ ତା ଶରୀର ।
ସେହିକ୍ଷଣି ମହତ ଉତପାତ ସୃଷ୍ଟି-
ଯାକରେ ହେ ନକୁଳ ହୋଇଗଲା ଗୋଟି ।
ବ୍ରହ୍ମା ସେ ପୁରୁଷକୁ ଦେଖି ଦେବତାଙ୍କୁ
କହିଲେ ଖଡ଼ଗ ମୁଁ କରିବି ଏହାକୁ ।
ଦାନବେ ତ ହେଲେ ଅଧର୍ମ-ପ୍ରବର୍ତ୍ତକ
ବାଜିରେ ଖଣ୍ଡା ସେ ଯିବେ ଯମ-ଲୋକ ।
ବ୍ରହ୍ମାଙ୍କର ମୁଖୁଁ ଶୁଣି ଏ ବଚନକୁ
ସେ ପୁରୁଷ ଧରିଲା ଖଡ଼୍ଗ ସ୍ୱରୂପକୁ ।
ବ୍ରହ୍ମା ସେ ପୁରୁଷକୁ ଖଣ୍ଡା କରି ଦେଖି
ଶିବଙ୍କୁ ତାହା ଦେଲେ ହୋଇ ଅତି ସୁଖୀ ।
ରୁଦ୍ର ସେ ଖଣ୍ଡାଟିକି ଧରି କରମୂଠେ
କଷିଦେଲେ ଥରେ ମୁଷ୍ଟିକି ଭିଡ଼ି ଆଣ୍ଠେ ।
ଆପଣା ରୂପକୁ ବଢ଼ାଇ ଉମାପତି
ହୋଇଲେ ସେହିକ୍ଷଣି ଭୟଙ୍କର ମୂର୍ତ୍ତି ।
ଆକାଶରେ ମସ୍ତକ ମର୍ତ୍ତ୍ୟରେ ପୟର
କପାଳରେ ନେତ୍ର ବହ୍ନିର ଉମାବର ।
ମୁଖୁଁ ଅଗ୍ନି-ଜ୍ୱାଳା ବହୁତ ଜାତ କଲେ
କଟୀତଟରେ କୃଷ୍ଣାଜିନକୁ ଧରିଲେ ।
ତେବର କରମୁଠେ ଧରି ପଶିଣା
ମାଇଲେ ଭାଲି ହର ଲେଉଟାଇ କାୟେ ।
ରୁଦ୍ରଙ୍କର ରୌଦ୍ରରୂପକୁ ଦୈତ୍ୟ ଦେଖି
ଧାଇଁଲେ ତାଙ୍କଠାକୁ ଧନୁଶର ଯୋଖି ।
ରୁଦ୍ରଙ୍କର ଦେହ-ଭୂମିରେ ଧନୁ-ମେଘ—
ସକଳ ସରଜିଲେ ଶର-ଧାରା-ସଂଘ ।
ଶିବ ପରି ଖଣ୍ଡା ଯେ ଧରିଥିଲେ କରେ
ହାଣିଲେ ସେ ଦୈତ୍ୟମାନଙ୍କ ମସ୍ତକରେ ।
ଅସୁରମାନେ ଦେଖି ରୁଦ୍ରଙ୍କର ମୂର୍ତ୍ତି
ମନେ କଲେ କୋଟି ରୁଦ୍ରକ ଯୁଝୁଛନ୍ତି ।
ବାଜନ୍ତେ ରୁଦ୍ର-ଖଣ୍ଡା ଦୈତ୍ୟ ଗଣ୍ଡା ଗଣ୍ଡା
ମରି ମୁଖଦନ୍ତରେ କାଟେ ମହୀମଣ୍ଡା ।
କେତେ ଦୈତ୍ୟ ଭାଜିଲେ କେତେ ଦୈତ୍ୟ ମଲେ
କହି ନ ପାରିବ ନକୁଳ ତାହା ଭଲେ ।

ଭୂମିଦେବୀ ରଜସ୍ୱଳା ହୋଇଲା ପରି
ପରତେ ହେଲା ରକ୍ତେ ଦେଖିଲେ ସବୁରି ।
ଦାନବଙ୍କୁ ଏରୂପେ ସଂହାରଣ କରି
କଲେ ଶାନ୍ତ ରୁଦ୍ରରୂପକୁ ଆପଣାରି ।
ସବୁ ଋଷିମାନେ ଆନନ୍ଦ ହୃଦେ ରଖି
ଶିବ-ପଦ୍ମାଦେ ନମିଲେ ହୋଇ ସୁଖୀ ।
ରୁଦ୍ର ଏଥୁଅନ୍ତେ ସେ ଖଣ୍ଡାଟି ବିଷ୍ଣୁଙ୍କୁ
ଦେଲେ ଦୈତ୍ୟଗଣେ ସଂହାର କରିବାକୁ ।
ବିଷ୍ଣୁ ସେ ଖଣ୍ଡଟିକି ମରୀଚିଙ୍କି ଦେଲେ
ମରୀଚି ସେ ଖଣ୍ଡା ଋଷିଙ୍କି ସମର୍ପିଲେ ।
ଋଷିଙ୍କଠାରୁ ଇନ୍ଦ୍ର ନେଇ ସେ ଖଣ୍ଡାକୁ
ଅନୁଗ୍ରହ କଲେ ସେ ଦେବତାମାନଙ୍କୁ ।
ଦେବଗଣ ସୂର୍ଯ୍ୟ ପୁତ୍ରଙ୍କୁ ବଡ଼ ଭେଣ୍ଡା
ଦେଖି କତ ବୋଇଲେ ନିଅ ଏହି ଖଣ୍ଡା ।
ମନୁ ତ ମନୁଷ୍ୟରେ ରାଜା ହୋଇଥିଲେ
ବ୍ରହ୍ମା କଲ ଖଣ୍ଡା ଧରିଣ ତୋଷ ହେଲେ ।
ଦେବେ ବୋଇଲେ ଆହେ ମନୁ ନରବର
ଦୋଷ ବୁଝି କରିଟି ଦଣ୍ଡୁଥିବ ନର ।
ମନୁ କ୍ଷୁପସୁତକୁ ଯେବେ ଅଭିଷେକ
କଲେ ସମର୍ପିଲେ ସେ ଖଡ଼ଗ-ତିଳକ ।
କ୍ଷୁପ ଇକ୍ଷ୍ୱାକୁ ସେ କରେ ଖଣ୍ଡାକୁ ଦେଲେ
ଖଡ଼୍ଗ ଇକ୍ଷ୍ୱାକୁଠାରୁ ପୁରୁରବା ନେଲେ ।
ପୁରୁରବାଠାରୁ ଆୟୁ ସେ ଖଣ୍ଡା ପାଇ
ନହୁଷଙ୍କୁ ଦେଲେ ଅତିବ ତୋଷ ହୋଇ ।
ନହୁଷ ଯଯାତିଙ୍କି ସେ ଖଣ୍ଡାକୁ ଦେଲେ
ଯଯାତିଙ୍କଠାରୁ ସେ ପୂରୁ ଘେନିଲେ ।
ପୂରୁଠୁ ଅମୂର୍ତ୍ତିରୟସି-ଭୂମିଶୟ
କ୍ରମରେ ନେଲେ ଖଣ୍ଡା ମାଦ୍ରୀଙ୍କ ତନୟ ।
ଭୂମିଶୟଠାରୁ ଭରତ ପାଇ ଖଣ୍ଡା
ଦେଲେ ତାହାକୁ ଦେଖି ଐଳବିଳ ଭେଣ୍ଡା ।
ଐଳବିଳଠାରୁ ଧୁନ୍ଧୁମାର ପାଇ
କାମ୍ବୋଜଙ୍କୁ ଖଣ୍ଡା ସେ ନେଲେ ତୋଷବହି ।
କାମ୍ବୋଜଙ୍କଠାରୁ ତା ନେଲେ ମୁଚୁକୁନ୍ଦ
ଶତ୍ରୁଜନଙ୍କର ପାଞ୍ଚ ହୃଦୟେ ମନ୍ଦ ।
ମୁଚୁକୁନ୍ଦଠାରୁ ମରୁତ ଖଣ୍ଡା ନେଲେ
ରଇବତ ନୃପତିଙ୍କି ତା ସମର୍ପିଲେ ।

ରଇବତଠାରୁ ଯେ ଯୁବନାଶ୍ୱ ନୃପ
ଖଣ୍ଡା ନେଲେ ଦେବାକୁ ଶତ୍ରୁଜନେ ତାପ ।
ଯୁବନାଶ୍ୱଠାରୁ ରଘୁ ଯେ ଖଣ୍ଡା ନେଲେ
ରଘୁଙ୍କଠାରୁ ହରିଣାଶ୍ୱ ତା ପାଇଲେ ।
ହରିଣାଶ୍ୱଠାରୁ ସୁନକ ଖଣ୍ଡା ନେଇ
ଉଶୀନର ରାଜାଙ୍କୁ ଦେଲେ ତୋଷ ବହି ।
ଉଶୀନରଠାରୁ ଯେ ଯାଦବ ଶ୍ରେଣୀରେ
ରହିଲା ସେହି ଖଣ୍ଡା ଆସି ନିରନ୍ତର ।
ଯାଦବଙ୍କଠାରୁ ଶିବି ସେ ଖଣ୍ଡା ନେଇ
ପ୍ରତର୍ଦ୍ଦନ ରାଜାଙ୍କୁ ଦେଲେ ତୋଷ ବହି ।
ପ୍ରତର୍ଦ୍ଦନଠାରୁ ଅଷ୍ଟକ ତା ପାଇଲେ
ପୃଷଦଶ୍ୱଙ୍କୁ ଅନ୍ତ୍ୟକାଳେ ଯାଚି ଦେଲେ ।
ପୃଷଦଶ୍ୱଠୁଁ ଭରଦ୍ୱାଜ ଖଣ୍ଡା ନେଲେ
କ୍ରମେ ତା ଦ୍ରୋଣ କୃପ ପୁଣି ଭୋଗକଲେ ।
କୃପାଚାର୍ଯ୍ୟ ତୁମ୍ଭଙ୍କୁ କଲେ ଯେବେ ଶିଷ୍ୟ
ସେ ଖଡ୍ଗଟିକୁ ଦେଲେ ବହି ମହାତୋଷ ।
ବୃଷ ରାଶି କୃତ୍ତିକା ନକ୍ଷତ୍ର ଖଣ୍ଡାର
ରୋହିଣୀ ଗୋତ୍ରଟି ଅଟଇ ତା ଶରୀର ।
ଅଗ୍ନି ତାହାର ଦେବ ରୁଦ୍ର ତାର ଗୁରୁ
ବାଜିଲେ ସେ ଚୂର୍ଣ୍ଣ କରିପାରଇ ମେରୁ ।
ତୀକ୍ଷ୍ଣ-ଧାର ଖଡ୍ଗ ଆସି ବିଶସନ
ଦୁରାସଦ ଶ୍ରୀଗର୍ଭ ବିଜୟ ତା ନାମ ।
ଏ ବାହାରେ କର୍ମପାଳନ ନାମଟାଏ
ଖଣ୍ଡାରଟି ଜାଣ ନକୁଳ ବୀରରାୟେ ।
ଯୁଦ୍ଧେ ଗଲା ବେଳେ ଖଣ୍ଡାର ଏହି ନାମ—
ମାନ ସ୍ମରେ ଯେହୁ ଜିଣଇ ସେ ସଂଗ୍ରାମ ।
ଖଣ୍ଡାପରି ଆୟୁଧଙ୍କରେ କେହି ନାହିଁ
ଚାହିଲେ ହାଣି ଲୋକ ଶତ୍ରୁକୁ ଜିଣଇ ।
ପୃଥୁ ରାଜାଙ୍କଠାରୁ ଧନୁ ହେଲା ଜାତ
ହୋଇଛି ଜାଣ ଆହେ ମାଦ୍ରୀଙ୍କର ସୁତ ।
ଯୁଦ୍ଧବିଶାରଦ ଲୋକେ ବହି ଖଣ୍ଡାକୁ
ପୂଜୁଥାନ୍ତି ଆଗ ଦାଅଣ ବିଜୟକୁ ।
ଏ ଖଣ୍ଡା-ଚରିତଟି ଶୁଣଇ ଯେ ନର
ନୁହଇ ଇହ ପରେ ଅକୀର୍ତ୍ତି ତାହାର ।

—*—

## ତ୍ରିବର୍ଗ ସମାଚାର

ଏ ରୂପେ କୃଷ୍ଣ କହି ରହିଲେ ମଉନ
ଯୁଧିଷ୍ଠିର ବହାକୁ ଗମିଲେ ବଚନ ।
ବିଦୁରଙ୍କର ତୁଲେ ବହାଇ ଭାଇଙ୍କି
ଧର୍ମୀରେ ହୃଦରେ ବହିଣ ପ୍ରୀତିକି ।
ପଚାରିଲେ ଧରମ ଅର୍ଥ କାମଙ୍କରେ ।
କେ ବଡ଼ ଅଟଇ ତା କହ ମୋ ଆଗରେ ।
ବିଦୁର ବୋଇଲେ ହେ ସତ୍ୟ ଶମ ତ୍ୟାଗ
ଶ୍ରଦ୍ଧା କ୍ଷମା ଭାବ ବିଶୁଦ୍ଧ ଦୟା ଯାଗ ।
ସୁଯାନକୁ ମିଶି ଏ ଧର୍ମର ସମ୍ପତ୍ତି
ବଢ଼ାନ୍ତି ଜାଣ ଆହେ ପାଣ୍ଡବ ସନ୍ତତି ।
ଧର୍ମ ଅର୍ଥ ଦୁଇ ଏହାଙ୍କ ଭେଦ ହୋଏ
ମୋ କହିବାରୁ ଏହା ଜାଣ ଧର୍ମ ତ୍ୱୟେ ।
ଧରମ ସନାଶରୁ ତିନଲୋକ ଭଲ
ଚାଲୁଇ ହୋଉଅଛ ମଧ୍ୟ ଲୋକପାଳ ।
ଧର୍ମକୁ ପ୍ରତି ଅର୍ଥ ଅଟଇଟି ଉଣା
ଅର୍ଥକୁ ପ୍ରତି ସେହିରୂପେଟି କାମନା ।
ଜାଣିବା ଲୋକ ଧର୍ମ-ପ୍ରଧାନ ହୋଇବ
ଅର୍ଥ କାମନାକୁ ହେଳାରେ ବର୍ଜିବ ।
ଅର୍ଜୁନ ବୋଲେ ଗୋରକ୍ଷା କୃଷି ଶିଳ୍ପ
ବାଣିଜ୍ୟଟି ଅର୍ଥ ବୋଲାଏ ଜାଣ ନୃପ ।
ଅର୍ଥ ଥିଲେ ଧରମ କାମ ସିଦ୍ଧ ହୋଏ
ଅର୍ଥବନ୍ତ ଲୋକଙ୍କୁ ମାନନ୍ତି ସଭିଏଁ ।
ଜଟାଅଜିନକୁ ଧରିଲେ ହେଲେ ଜନ
ଅର୍ଥରେ ଦେଇଥାନ୍ତି ଅବଛିନ୍ନେ ମନ ।
ଯୋଗେ ଭୃତ୍ୟ ଦଣ୍ଡରେ ଶତ୍ରୁଙ୍କୁ ଶାସନ
ଯେ କରିପାରେ ଅର୍ଥବାନଟି ସେ ଜନ ।
ନକୁଳ ସହଦେବ ବୋଲେ ଧନ ଥିଲେ
ଆଦ୍ୟ ପାଦ ହୋଏ ଧରମର ତୁଲେ ।
ଧର୍ମ ଅର୍ଥ ଦୁହେଁ ଅମୃତ ମଧୁପରି
ଏହା କହିଅଛନ୍ତି ପଣ୍ଡିତେ ବିଚାରି ।
ଅର୍ଥ ନ ଥିବାର ଲୋକର କାମନା
କେବେ ନୁହଇ ହେ ରାଜନ ମହାମନା ।
ଅର୍ଥ ଯେଉଁ ଲୋକ ମୋଦ ନ ପାରୁଛି
ଧର୍ମ ଜାଣ ଇଚ୍ଛାରେ ତାହାକୁ ବରୁଛି ।

ଧର୍ମ ଅର୍ଥ କାମକୁ କ୍ରମରେ ମନୁଷ୍ୟ
କଲେ ଜଗତରେ ହୁଅଇଟି ପ୍ରକାଶ ।
ଭୀମ ବୋଇଲେ ହେ ଅକାମୀ ନର ହେଲେ
ରଖି ନ ପାରେ ତାକୁ ଅର୍ଥ ଜାଣ ଭଲେ ।
ଧନହୀନ ଲୋକର ଧର୍ମ କରିବାର
ତପ କରି ବଡ଼ କଷ୍ଟ ଏ ନରବର ।
ଏହି ସକାଶରୁ ଯେ କାମନା କଥାଟି
କରୁଥିବ ଯେ ହେବ ଜାଣିବା ଜନଟି ।
କାମନାରୁ ବଡ଼ ହୋଇ ଯେ ନରଗଣ
ଏ ସଂସାରେ ନାହିଁ ବୋଲିକରି ଜାଣ ।
ଶ୍ରାଦ୍ଧ ଦାନ କ୍ରିୟା ଓ ଯାଗ କାମନାର
ଦେହ ଅଟଇଟି ରାଜନ ମନେକର ।
ବଣିଜରୁ ଜ୍ୟୋତିଷ ଋଷୀ କାମନାକୁ
ହୃଦୟ କରି କହୁଛନ୍ତି କରମକୁ ।
କାମରେ ଯୁକ୍ତ ହେବାରୁଟି ନରକୁଳ
ସମୁଦ୍ରର ଦ୍ରବ୍ୟ ଆଣନ୍ତି କରି ଠୁଳ ।
କାମକୁ ଆଶ୍ରେ କରି ଧର୍ମ ଅର୍ଥ ଦୁଇ
ମହୀରେ ପ୍ରବର୍ତ୍ତିଟି ଅଛି ନରସାଇଁ ।
ଦଧିହାଣ୍ଡି ମଧ୍ୟେ ଲବଣୀ ଥିଲା ପରି
ଅର୍ଥ ଧର୍ମ ଦୁଇରେ କାମ ଦଣ୍ଡଧାରୀ ।
କାମ-ହୀନ ହୋଇଣ ପୁରୁଷ ଜନମ
ହୋଇଛି ବୋଲି ଶୁଣା ନାହିଁ ନରୋତ୍ତମ ।
ବେଶ କରି ଦିବ୍ୟ ସ୍ତ୍ରୀଙ୍କି ଧରି କୋଳେ
ବିହରି ସୁଖେ ରହେ କାମରାଜହେଲେ ।
ମୋ ମତରେ ନାରୀସଙ୍ଗରୁ ବଡ଼ କଥା
ଥିବା ପରି ଦିଶୁନାହିଁ ହେ ମହାରଥୀ ।
ତୁମ୍ଭେ କମ୍ପା କାମ-ସୁଖକୁ ଛାଡ଼ିକରି
ଆନ ସୁଖ ଇଚ୍ଛା କରୁଛ ଦଣ୍ଡଧାରୀ ।
ଧର୍ମ ଅର୍ଥ କାମ ଏ ତିନଙ୍କି ସମାନ
କରି ସେବା କର ରାଜନ ପ୍ରତିଦିନ ।
ଧର୍ମ ଅର୍ଥ କାମରୁ ଗୋଟିକେ ଆସକ୍ତ
ଯେ ହୋଏ ଅଧମ ସେ ବୋଲାଏ ନୃପତି ।
ଧର୍ମ ଅର୍ଥ କାମକୁ ସମାନ ଆଦର
କରିଥିବା ଲୋକ ଲୋକର ହୋଏ ବର ।
ଯୁଧିଷ୍ଠିର ବୋଇଲେ ତୁମ କଥାଯାକ
ଶୁଣି ହୃଦେ କଲି ବିବେକ ଅବିବେକ ।
ମୁଁ ଯାହା କହୁଅଛି ତୁମ୍ଭେ ତାହା ଶୁଣ
ମୋର କଥାରେ କିଛି ନୋହିବ ବିଗୁଣ ।
ଧରମ ଅର୍ଥ କାମ ଛାଡ଼ି ଟେକା ସୁନା
ସମାନ ଯେ ଗଣେ ସେ ଧାର୍ମିକେ ଗଣନା ।
ପ୍ରାଣୀମାନେ ଜନ୍ମ ମରଣେ ପୀଡ଼ା ପାଇ
ମୋକ୍ଷକୁ ପ୍ରଶଂସନ୍ତି ଶୁଣିଥାଇଁ ଭାଇ ।
ସ୍ନେହେ ବନ୍ଧ ହେବା ଲୋକର ନୋହେ ମୁକ୍ତି
କହନ୍ତି ଏକା ପାର୍ବତୀଦେବୀ-ପତି ।
ବୁଧମାନେ ମୋକ୍ଷରେ ହୁଅନ୍ତି ତତପର
ଏହା ଜାଣି ପ୍ରିୟ ଅପ୍ରିୟ କର ଦୂର ।
ବିଧାତା ଯାହାକୁଟି ଯହିଁରେ ନିଯୁକ୍ତ
କରିଛି ସେ ତା କରେ ବାହାର ଆୟତ୍ତ ।
ଯେଉଁ କଥା ହେବାର ହୁଅଇ ସେ କଥା
ଭାବିବାର ବିଷୟ ଅଟେ ସବୁ ବୃଥା ।
କେହି ଅର୍ଥ କର୍ମରେ ଲଭି ନ ପାରଇ
ଯା ଭାଗ୍ୟରେ ଯା ଅଛି ତାହାଟି ଘଟଇ ।
ଧରମ ଅର୍ଥ କାମ ତ୍ରିବର୍ଗ-ବିହୀନ
ହୋଇଲେ ହେଁ ଲୋକେ ଲଭନ୍ତି ବହୁଧନ ।
ଏଣୁ ଲୋକହିତ ନିମିତ୍ତ ହେ ବିଧାତା
ଗୋପନରେ ରଖିଅଛନ୍ତି ଏ ବାରତା ।
ଏହା ଶୁଣି ଗୁରଭାଇ ସନ୍ତୁଷ୍ଟ ହେଲେ
ଯୁଧିଷ୍ଠିର ରାଜାଙ୍କୁ ସବେ ପ୍ରଶଂସିଲେ ।
ଯୁଧିଷ୍ଠିର ଭାଇଙ୍କ ପ୍ରଶଂସାରେ ତୋଷି
ହୋଇ ପୁଣି ପୁଚ୍ଛିଲେ ଭୀଷ୍ମପାଶେ ଆସି ।
ଆହେ ଭୀଷ୍ମ ଶାନ୍ତନୁନୃପଙ୍କ ନନ୍ଦନ
ପଚାରିବ ଯାହା ମୁଁ କର ଅବଧାନ ।
କେଉଁ ମାନବମାନେ ପ୍ରୀତିର ଭାଜନ
ହିତକାରୀ ଅଟନ୍ତି କର ହେ ବଖାଣ ।
ଯାହା ପାଶେ ସୁହୃଦେ ନ ଥାଆନ୍ତି ରହି
ଧନ ଜୀବନଟି ଦୁର୍ଲ୍ଲଭ ତା'ର କହି ।
ଭୀଷ୍ମ ବୋଇଲେ ହେ କାହାର ତୁଲେ ପ୍ରୀତି
କରିବ କାହା ତୁଲେ କରିବ ଅପ୍ରୀତି ।
ଏହି ବିଷୟମାନ କହିବା ରାଜନ
ଶୁଣ ଏବେ ତୁମ୍ଭେ ହୋଇଣ ସାବଧାନ ।
ଲୁବ୍ଧ କ୍ରୂର କପଟୀ ମମତ୍ୱ-ଅସ୍ଥିତ
ଶଠ କ୍ଷୁଦ୍ର ଅଳସ ପ୍ରାଣୀବଧରତ ।

ପରଉପତାପୀ ଅସତ୍ୟ କୃତଘ୍ନ
ଧର୍ମସୂତ୍ର ଅନୃଜୁ ଦୂଷିତ ମିତ୍ରଘ୍ନ ।
ପାପଦର୍ଶୀ ନାସ୍ତିକ ଗୁରୁଦାରହାରୀ
ଦ୍ୱେଷକାରୀ ମତ୍ସରୀ ବେଦନିନ୍ଦାକାରୀ ।
ବନ୍ଧୁତ୍ୟାଗୀ ବପଦେ ନୃଶଂସ ପିଶୁନ
ସର୍ବଶଙ୍କୀ କାତର ଦୁଃଶୀଳ ନିର୍ଧନ ।
ସୁରାପାୟୀ ନିର୍ଦ୍ଦୟ କୁଟିଳ-ବଞ୍ଚକ
ଧର୍ମତ୍ୟାଗୀ ଦୁରାତ୍ମା ଅଧୈର୍ଯ୍ୟ କାମୁକ ।
ଅସଂଯତ-ଇନ୍ଦ୍ରିୟ ଧୂର୍ତ୍ତ ସ୍ୱେଚ୍ଛାଚାରୀ
ପରଧନ-ଇଚ୍ଛୁକ ମିତ୍ର-ଅପକାରୀ ।
ଏହିମାନଙ୍କର ତୁଲେ ନ କରିବ ପ୍ରୀତି
ଯେ ପ୍ରୀତିକରେ ତାର ନାଶଇ ସମ୍ପତ୍ତି ।
ମାଧୁର୍ଯ୍ୟଗୁଣବନ୍ତ ଯେହୁ ସତ୍ୟସନ୍ଧ
ଜିତଶ୍ରମ ଯେ ବନ୍ଧୁ-ବତ୍ସଳ ଅଲୁବ୍ଧ ।
ଜିତେନ୍ଦ୍ରିୟ କୁଳୀନ ବିଶ୍ୱସ୍ତ ନିର୍ଦ୍ଦୋଷ
ଯଥାଶକ୍ତିରେ ସଦାଗୁର ଅନଳସ ।
ପରିଜନ-ସଂଗ୍ରାହକ କୁଳ-ଉଦ୍‌ଗତ
ପ୍ରିୟବାଦୀ ଗୁଣଜ୍ଞ ସଦା ହୃଷ୍ଟଚିତ୍ତ ।
ସତକାର୍ଯ୍ୟପରାୟଣ ପୁଣି ରୂପବନ୍ତ
ନିରଭିମାନ ସମଦର୍ଶୀ ଗୁଣୋପେତ ।
ଶାସ୍ତ୍ର-ରତ ଅଶଠ ଧାର୍ମିକ ମିତ୍ରଜ୍ଞ
ଜ୍ଞାନ ଓ ବିଜ୍ଞାନରେ କୋବିଦ ସର୍ବଜ୍ଞ ।
ଏମାନଙ୍କୁ ଖୋଜି ଲୋଡ଼ି କରି ପୀରତି
କରୁଥିବ ଯେ ହେବ ମହୀରେ ନୃପତି ।
ସବୁ ଦୋଷଯାକ କୃତଘ୍ନ ମିତ୍ରଘାତୀ
ମହାଦୋଷୀ ଯେ ଧର୍ମନୃପତି ବୋଲନ୍ତି ।

—*—

## କୃତଘ୍ନ ବ୍ରାହ୍ମଣ ସମ୍ବାଦ

ଯୁଧିଷ୍ଠିର ବୋଇଲେ କୃତଘ୍ନ ମିତ୍ରଦ୍ରୋହୀ
କଥା ମୋତେ ବିସ୍ତୃତ କରି ଦିଅ କହି ।
ଭୀଷ୍ମ ବୋଇଲେ ହେ ଉତ୍ତରଦିଗେ ମ୍ଲେଚ୍ଛ
ଦେଶଟିଏ ଅଛି ପାଣ୍ଡୁରାଜା-ବତ୍ସ ।
ମଧ୍ୟଦେଶୀ ଗୌତମ ନାମେ ଦ୍ୱିଜ ଜଣେ
ଭିକ୍ଷା କରୁଁ କରୁଁ ମିଳିଲା ସେହି ସ୍ଥାନେ ।
ସେ ମ୍ଲେଚ୍ଛଗ୍ରାମେ ଶୂଦ୍ର ଜଣେ ଥିଲା ରହି
ତାହାପରି ଧନୀ ଖୋଜିଲେ ନାହିଁ ମହୀ ।
ବ୍ରାହ୍ମଣ ଦୈବରେ ତାହାକୁ ଭେଟିଲା
ତା ଘରେ ଭାତ ମୂକ କରିଣ ରହିଲା ।
ସେ ଦସ୍ୟୁ ତ ଅଟଇ ମହାଧାରମିକ
ବ୍ରାହ୍ମଣମାନଙ୍କୁ ଅନ୍ନ ଦିଏ ଅଧିକ ।
ମନୋହର ବସନମାନ ସମର୍ପିଲା
ଏ ବାହାରେ ବିଧବା ସ୍ତ୍ରୀ ଗୋଟାଏ ଦେଲା ।
ବ୍ରାହ୍ମଣ ଅନ୍ନ ବସ୍ତ୍ର ପାଇ ସୁଖୀ ହୋଇ
ସେ ନାରୀ ତୁଲେ ବିହରିଲା ନରସାଇଁ ।
ଆପଣା କୁଟୁମ୍ବ ପାସୋରି ପକାଇଲା
ସେ ଦସ୍ୟୁ କୁଟୁମ୍ବ ପୋଷଣେ ମନ ଦେଲା ।
ଶବର ବୃତ୍ତି କରି ମୃଗ-ପକ୍ଷୀ-ପ୍ରାଣ
ଘେନିଲା ବ୍ରାହ୍ମଣ ପ୍ରହାରି ମୂନବାଣ ।
ଏହି ସକାଶରୁ ହେ ନୃପତି-ସତ୍ତମ
ନାମ ହେଲା ତାଙ୍କର ଶବର ଗୌତମ ।
ପୂର୍ବରେ ଗଉତମ ଥିବା ଗ୍ରାମୁଁ ଦ୍ୱିଜ—
ଜଣେ ଭିକ୍ଷା କରି ଆସନ୍ତେ ମହାରାଜ ।
ଖୋଜୁଁ ଖୋଜୁଁ ଗଉତମ-ଥିବାନବର-
ଦାଣ୍ଡଦ୍ୱାରେ ପ୍ରବେଶ ହେଲେ ଦ୍ୱିଜବର ।
ସେହି ସମୟରେ ଯେ ଗଉତମ ଦ୍ୱିଜ
ଆସିଲେ ପୃଷ୍ଠଦେଶେ ବହି କରି ଭୋଜ ।
କରେ ଧନୁ ଧରି ନିଶକୁ ଦେଇ ଟେକ
ଫୁଲାଇ ଦେଇଛନ୍ତି ଆପଣା ଛାତିକ ।
ସେହି ବ୍ରାହ୍ମଣ ଗଉତମକୁ ଚିହ୍ନିଲେ
ଏ କିସ କର୍ମ କଲେ ବୋଲିଣ ଭାବିଲେ ।
ବୋଇଲେ କି ହେ ଗଉତମ ଦ୍ୱିଜବର
କେଉଁ କରମ କଲ ହୋଇଣ ଶବର ।
ଏବେ ମୁଁ ବୋଲୁଅଛି ଛାଡ଼ ଏ ବେଶକୁ
ଭଜ ଯାଇ କରି ଆପଣାର ଦେଶକୁ ।
ଗଉତମ ବୋଇଲେ ଧନପାଇଁ ମୁହିଁ
ଏହି ଅନାର୍ଯ୍ୟମାନ ଆଚରେ ଅଛଇ ।
ତୁମ୍ଭର ଆମ୍ଭର ଥିଲା ଏକା ଗ୍ରାମ ଘର
ତୁମ୍ଭଙ୍କୁ ଦେଖିଲି ଯା ଏ ଭାଗ୍ୟ ମୋହର ।
ଆଜିକଙ୍କୁ ମୋ ବୋଲେ ଏଠାରେ କର ବସା
କାଲି ଯିବ ଘର ହେ ଦ୍ୱିଜ ମହାଯଶା ।
ଗଉତମ ବୋଲେ ସେ ସ୍ଥାନେ ଦ୍ୱିଜ ରହି
ଅନ୍ନ ପାଣି ନ ଛୁଇଁଲେ ନରସାଇଁ ।

ରାତ୍ରି ଶେଷ ହୁଅନ୍ତେ ସେହୁ ଦ୍ୱିଜୋତ୍ତମ
ଯିବା ପରେ ବାହାର ହେଲେ ଗଉତମ ।
ଯାଉଁ ଯାଉଁ ବାଟେ ପର୍ବତୁଁ ଗଡ଼ି ହାଣ୍ଡି
ବଣିଜାରକୁଳରୁ କେତେ ଦେଲ ମଣ୍ଡି ।
ହାଣ୍ଡି ସକାଶରୁ ସେ ଗଉତମ ଦ୍ୱିଜ
ପଳାଇଲେ ଉତ୍ତରଦିଗେ ମହାରାଜ ।
ଦେଶ-ସାଥିରୁ ତ ବାହାର ହୋଇଥିଲ
ଏକାକୀ ହୋଇ ବନମଧ୍ୟରେ ବୁଲିଲ ।
ସେହି ବନରେ ତାଳ ଶାଳ ଆମ୍ବ ବୃକ୍ଷ
ରହିଅଛନ୍ତି ଫଳି ହୋଇଣ ଲକ୍ଷ ଲକ୍ଷ ।
ପର୍ବତ ଶୃଙ୍ଗମାନଙ୍କରେ ପକ୍ଷୀ ଶ୍ରେଣୀ
ରାବେ ମୁଗ୍ଧ କରୁଅଛନ୍ତି କର୍ଣ୍ଣେ ବେନି ।
ସେ ବନ ଗୁରପାଶେ ଭାରୁଣ୍ଡ ଭୁଜଙ୍ଗ
ପକ୍ଷୀ ସିଂହ ରହିଅଛନ୍ତି ହୋଇ ସଙ୍ଗ ।
ଗଉତମ ଦ୍ୱିଜ ପକ୍ଷୀଙ୍କ ଧ୍ୱନି ଶୁଣି
ପକ୍ଷୀଙ୍କ ସମୀପକୁ ଗଲେ ନରମଣି ।
ଦେଖିଲେ ସୁନା ବାଲି ମଧ୍ୟ ବଟବୃକ୍ଷ
ହୋଇଣ ସେ ବନ ସେ ବୃକ୍ଷଯାକେ ମୁଖ୍ୟ ।
ତା'ର ମୂଳଯାକ ଚନ୍ଦନପାଣି ସିଞ୍ଚା
ହୋଇଣ ହୋଇଅଛି ମଧ୍ୟ ଫୁଲ ବାଞ୍ଚା ।
ସେଠାରେ ଗଉତମ ପରିଶ୍ରାନ୍ତ ହୋଇ
ବସିଲ ମଳୟଜ ପବନକୁ ଚାହିଁ ।
ନିଦ୍ରା ଉପଗତ ହୁଅନ୍ତେ ନୟନରେ
କଡ଼ ପାଡ଼ି ବ୍ରାହ୍ମଣ ଶୋଇଲେ ଭୂମିରେ ।
ଏହି କାଳେ ସୂର୍ଯ୍ୟ ଯାଆନ୍ତେ ଅସ୍ତଦିଶା
କଶ୍ୟପ ସୁତ ନାଡ଼ୀଜଙ୍ଘ ମହାଯଶା ।
ବ୍ରହ୍ମଲୋକ ଛାଡ଼ି ଆସିଲେ ଭବ୍ୟ ହୋଇ
ବଟବୃକ୍ଷେ ରଜନୀ ବାଞ୍ଚିବାର ପାଇଁ ।
ସେ ନାଡ଼ୀଜଙ୍ଘ ବକ ଦେହ ପକ୍ଷଯାକ
ସୁବର୍ଣ୍ଣ ନିର୍ମିତ ହେ ପାଣ୍ଡବ-ନାୟକ ।
ଗଉତମ ଦ୍ୱିଜ ଯେ ବୃକ୍ଷତଳେ ଶୋଇ
ଥିଲ ସେ ବକ ବସିବାରେ ଚେତା ପାଇ ।
ଉଠିକରି ବସି ଚାହାଁନ୍ତେ ଉପରକୁ
ଦେଖିଲ ସେ ସୁବର୍ଣ୍ଣ-ଶରୀର ବକକୁ ।
କ୍ଷୁଧା ତୃଷ୍ଣା ଯୋଗରୁ ପରିଶ୍ରାନ୍ତ ହୋଇ
ହିଂସା-ପୂର୍ଣ୍ଣ ନୟନେ ରହିଲ ଅନାଇ ।

ସେହିକାଳରେ ବକ କହିଲେ ବଚନ
ଆଜ୍ଞା ହେଲ ଏଠାକୁ ଆସିଲ ବ୍ରାହ୍ମଣ ।
ଆଜ ମୁଁ ଭିକ୍ଷା ନେଇ ରଖିବି ତୁମ୍ଭଙ୍କୁ
କାଲିକି ଯିବ ମନ ହେବ ଯେଉଁଠାକୁ ।
ଗଉତମ ଶୁଣିଣ ବକର ବଚନ
ରହିଲେ ଟେକି ନ ପିଛୁଡ଼ିଣ ନୟନ ।
ବକ ବୋଇଲେ ହେ କଶ୍ୟପ-ପୁତ୍ର ମୁହିଁ
ଦାକ୍ଷାୟଣୀ ଗର୍ଭେ ଜନମ ଅଛି ହୋଇ ।
ଏ ରୂପେ କହି ସେ ଦ୍ୱିଜଙ୍କୁ ନାଡ଼ୀଜଙ୍ଘ
ବକ ଆଣିଣ ଦେଲେ ଶାଳପତ୍ର-ସଙ୍ଗ ।
ରୋହି ଭାକୁଡ଼ାଦି ମାଛକୁ ଅନେକ ଧରି
ଆଣିଦେଲେ ଖାଅ ବୋଲି ହେ ବ୍ରହ୍ମଋଷି ।
ଏହା ବାହାରେ ଅଗ୍ନି ଶୁଖିଲ ଇନ୍ଧନ
ଦେଇକରି ବୋଇଲେ କର ହେ ରନ୍ଧନ ।
ବ୍ରାହ୍ମଣ ମାଛ ଦେଖି, ମହା ସୁଖୀ ହୋଇ
ଅଗ୍ନି ଜାଳି ପୋଡ଼ି ଖାଇଲ ନରସାଇଁ ।
ବକ ତା'ର ଭୋଜନ ଅନ୍ତେ ଦୁଇଡେଣା
ପ୍ରସାରି ବିଞ୍ଚିଲେ ହେବାକୁ ଶ୍ରମ ଊଣା ।
ବୋଇଲେ ଆହେ ଦ୍ୱିଜ କି ଗୋତ୍ର ତୁମ୍ଭର
ଶୁଣିବି ମୁଁ, ମୋ ଆଗେ ପ୍ରକାଶ ତା କର ।
ସେ ବୋଇଲେ ମୋହର ଗୋତ୍ର ଗଉତମ
ମୋତେ କେତେ ପଚାର ବକଙ୍କ ଉତ୍ତମ ।
ଏତେ କହିଣ ବକ ଦେଲ ପତ୍ର ପାଡ଼ି
ଗଉତମ ଦ୍ୱିଜ ଶୋଇଲେ ମୁହଁ ମାଡ଼ି ।
ଗଉତମ ବ୍ରାହ୍ମଣ ଶୁଅନ୍ତେ ମଉନେ
ନାଡ଼ୀଜଙ୍ଘ ପୁଣି ସେ ପୁଚ୍ଛିଲେ ସୁମନେ ।
କି କାର୍ଯ୍ୟେ ଏହିଠାକୁ ଆସିଲ ବ୍ରାହ୍ମଣ
ମୋହ ଆଗରେ ସତ କରି ହେ ବଖାଣ ।
ଗଉତମ ବୋଇଲେ ଧନପାଇଁ ମୁହିଁ
ସମୁଦ୍ରକୁ ଯାଉଛି ଆହେ ନରସାଇଁ ।
ବକ ବୋଇଲେ ହେ ଢଙ୍ଗ ଏ ଉତ୍କଣ୍ଠା
ପାଇବ ଦ୍ରବ୍ୟ ବହି ନ ପାରିବ ଅଣ୍ଟା ।
ବୃହସ୍ପତି ମତରେ ଦୈବ ପାରମ୍ପର୍ଯ୍ୟ
କାମ ମୈତ୍ର ହୁଅଇ ଅର୍ଥ ସିଦ୍ଧି କାର୍ଯ୍ୟ ।
ତୁମ୍ଭର ଏବେ ମିତ୍ର ହୋଇଲିଣି ମୁହିଁ
କରିବ ଉଦ୍‌ଯୋଗ ତୁମ୍ଭର ଧନ ପାଇଁ ।

ଏବେ ମୋ ବୋଲରେ ସକାଳୁ ତୁମ୍ଭେ ଯାଅ
ବିରୂପାକ୍ଷ ରାକ୍ଷସ ସଙ୍ଗେ ଭେଟ ହୁଅ ।
ମୋର ବଚକୁ ତାଙ୍କ ଘର ନିଯୋଜନ
ମୋ କହିବା କହି ମାଗିବ ତାଙ୍କୁ ଧନ ।
ସେ ତୁମ୍ଭ ମନୋରଥ ପୂରଣ କରିବେ
ଏଥିରେ ହେ ଦ୍ୱିଜ ନ କର ଶଙ୍କା ଲବେ ।
ଏହା ଶୁଣି ଦ୍ୱିଜ ମହାତୋଷ ହୋଇ
ସେହିଠାରେ ସେ ରାତ୍ର ଗୋଟିକ ପୁହାଇ ।
ବକ କହି ଦେବାର ବାଟେ ବାଟେ ଗଲେ
ମେରୁ ବଜ୍ର ନାମରେ ନଗରେ ମିଳିଲେ ।
ଦୁଆରୀ ହାତେ ବିରୂପାକ୍ଷଙ୍କ ପାଶକୁ
କୁହାଇଲେ ମୁଁ ଆସିଅଛି ତୁମ୍ଭଠାକୁ ।
ଦୁଆରୀ ସେ ବ୍ରାହ୍ମଣ ବୋଲକୁ ଘେନିଲା
ବିରୂପାକ୍ଷ ରାକ୍ଷସ ଆଗରେ କହିଲା ।
ବିରୂପାକ୍ଷ ବୋଇଲେ ଆଣ ବ୍ରାହ୍ମଣଙ୍କୁ
କାହିଁକି ଆସିଛନ୍ତି ପୁଚ୍ଛିବା ତାହାଙ୍କୁ ।
ତାହା ଶୁଣି ସେ ଲୋକେ ଶତ ଶତ ହୋଇ
ଡାକିଲେ ଆସ ଧାଇଁ ଗୌତମ ଗୋସାଇଁ ।
ତୁମ୍ଭଙ୍କୁ ଦେଖିବାକୁ ବିରୂପାକ୍ଷ ରାଜା
ଧରିଅଛନ୍ତି ମହା ଆନନ୍ଦକୁ ମଜ୍ଜା ।,
ଗଉତମ ବୋଇଲେ କାହିଁକି ଡାକୁଛ
ନଅ ମୋତେ କେବେ ଲୋଡ଼ନ୍ତି ନୃପବର ।
ଏହା ଶୁଣିଣ ଲୋକେ ସନ୍ତୋଷ ହୋଇଲେ
ଗଉତମ ଦ୍ୱିଜଙ୍କୁ ଘେନି ବାହାରିଲେ ।
ବିରୂପାକ୍ଷ ରାକ୍ଷସ ଆଗେ ଛିଡ଼ା କରି
ବୋଇଲେ ଆମ୍ଭ ରାଜା ଏହି ତପସ୍ୱାରୀ ।
ବିରୂପାକ୍ଷ ଦ୍ୱିଜଙ୍କୁ କରିଣ ଆଦର
ଆସ୍ଥାନେ ଦେଲେ ବସ ବୋଲି ଦ୍ୱିଜବର ।
ଆସନରେ ବସନ୍ତେ ବିପ୍ର ହୋଇ ତୋଷୀ
ଗୋତ୍ର ବେଦ ପ୍ରବର ପଚାରିଲେ ହସି ।
ଗଉତମ ବୋଇଲେ ମୋର ଗଉତମ-
ଗୋତ୍ର ବୋଲି ଜାଣ ହେ ନୃପତି-ଉତ୍ତମ ।
ବିରୂପାକ୍ଷ ରାକ୍ଷସ ଭାବିଲେ ଦ୍ୱିଜଟି
ବ୍ରାହ୍ମଣ କରମରେ ଅଟେ ଅଧମଟି ।
ଶୁଣି ବୋଇଲେ ଆହେ କେଉଁଠାରେ ଘର
କାହା ଘରେ ବିଭା ହୋଇଛ ତପସ୍ୱର ।

ଗଉତମ କହିଲେ ମଧ୍ୟ ଦେଶେ ଜନ୍ମ
ଶବର-ପଲ୍ଲୀରେ ମୋ ଅଟେ ନିଜ ସଦ୍ମ ।
ଶୂଦ୍ର ସ୍ତ୍ରୀ ମୋହର ସେ ଶବରୀ ଅଟଇ
ଏ ବାହାରେ ଆନ ମୁଁ କିଛି ନ ଜାଣଇ ।
ବିରୂପାକ୍ଷ ଭାବିଲେ ଜନ୍ମେ ସେ ବ୍ରାହ୍ମଣ
କରିଛି ଶବର ସଦୃଶ୍ୟେ ଆଚରଣ ।
ମିତ ନ ଜାଣି ତ ପେଶିଲେ ମୋହଠାକୁ
ସେଥିପାଇଁ କି ଦାନ ଦେବି ମୁଁ ତାହାକୁ
ଚିନ୍ତି ପୁଣି କହିଲେ ଆଜି ପୁଣ୍ୟ ତିଥି
କାର୍ତ୍ତିକ ପୂର୍ଣ୍ଣିମାରେ ଆସିଛି ଅତିଥି ।
ବ୍ରାହ୍ମଣ ସଙ୍ଗେ ଏ ବ୍ରାହ୍ମଣ ଅନ୍ନ ଖାଉ
ଦେବା କିଛି ଧନ ତା ଘେନିକରି ଯାଉ ।
ଏହିକାଳେ ସହସ୍ରେ ବ୍ରାହ୍ମଣ ଗାଧୋଇ
ଆସିଲେ ଭୁଞ୍ଜିବାକୁ ଅତି ତ୍ୱରା ହୋଇ ।
ବିରୂପାକ୍ଷ ଦେଖନ୍ତେ ବ୍ରାହ୍ମଣମାନଙ୍କୁ
ନମସ୍କାର କରିଣ ଦେଲେ ଆସନକୁ ।
ଏ ବାହାରେ ଫୁଲ ଚନ୍ଦନ ବସନ
ଦେଲେ ବିରୂପାକ୍ଷ ହୋଇଣ ସୁପ୍ରସନ୍ନ ।
ସୁନା ପାତ୍ରରେ ଅନ୍ନ ଘିଅ ମହୁ ଭରି
ବ୍ରାହ୍ମଣଙ୍କୁ ଆଣିଣ ଦେଲେ ଦଣ୍ଡଧାରୀ ।
ବ୍ରାହ୍ମଣେ ସେ ଅନ୍ନକୁ କରିଣ ଆହାର
ବାଞ୍ଛା କଲେ ଆଶିଷ ବିରୂପାକ୍ଷଙ୍କର ।
ସୁନା ରୂପା ମଣିକ ଅଣାଇ ରତନ
ଦେଇ ବ୍ରାହ୍ମଣଙ୍କୁ ସନ୍ତୋଷ କଲେ ମନ ।
ବିରୂପାକ୍ଷ ବଚନେ ବିପ୍ର ତୋଷ ହେଲେ
ଖାଇଥିଲେ ଯେ ଯେଉଁ ପାତ୍ରରେ ସେ ନେଲେ
ଗଉତମ ବ୍ରାହ୍ମଣ ଘରେ ସୁନା ବହି
ବଟବୃକ୍ଷଠାକୁ ସେ ଗଲେ ତ୍ୱରା ହୋଇ ।
ମହାଶ୍ରାନ୍ତ ହୋଇ ସେ ବଟବୃକ୍ଷମୂଳ
ଭାର ଥୋଇ ବସିଲେ ପ୍ରାଣରେ ବିକଳେ ।
ତାହା ଦେଖିଣ ନାଡ଼ୀଜଙ୍ଘ ବକଶିଖ
ବଞ୍ଚିଲେ ତେଣେରେ ହେବାକୁ ଦ୍ୱିଜମୁଖ ।
ମାନ ଗୋଟାକେତେ ଥଣ୍ଟରେ ଆଣିଲେ
ପୂର୍ବପରି ତାହାଙ୍କୁ ଖାଇବାକୁ ଦେଲେ ।
ବ୍ରାହ୍ମଣ ସେ ମାଛକୁ ପୋଡ଼ିକରି ଖାଇ
ଭାବିଲା ଖାଇବାକୁ ଆଉ କିଛି ନାହିଁ ।

ବନ୍ଧା ତ ଅଛି ବଡ ଭାରୁଣ୍ଠାଏ ସୁନା
ଯା ହାତରେ ରହିବ, ସେ ନେଇଯିବ ସିନା ।
ଏହା ମନେ କରି ଭାବନା କଲା ଦ୍ୱିଜ
ବକକୁ ନ ମାରିଲେ ନୋହିବ ମୋ କାର୍ଯ୍ୟ
ବକ ତ ବିପ୍ରଙ୍କୁ ବିଶ୍ୱାସ ଯାଇଥିଲେ
ଅଗ୍ନି ଜାଳିଣ ତା'ର ପାଶରେ ଶୋଇଲେ ।
ବ୍ରାହ୍ମଣ ତ ଥିଲା ମାରିବା ଇଚ୍ଛା କରି
ପିଟିଲା ସେ ବକକୁ ଦରପୋଡ଼ା ଧରି ।
ବାଜନ୍ତେ ଦରପୋଡ଼ା ବକ ଛଟପଟ
ହୋଇକରି କହିଲେ, ଦ୍ୱିଜବଡ଼ ନଷ୍ଟ ।
ତୁମ୍ଭ ଯେବେ ମୁହିଁ ଯିବି ପୁଣ୍ୟଲୋକକୁ
ତୁମ୍ଭେ ମରିଲେ ଜନ୍ତୁ ଯିବ ନରକକୁ ।
ଏତକ କହି ବକ ତେଜିଟି ନୟନ
ଦେହକୁ ଛାଡ଼ି ଗଲେ ଶମନ-ସଦନ ।
ବ୍ରାହ୍ମଣ ସେ ବକକୁ ଅଗ୍ନିରେ ପକାଇ
ପାକ କରି ଅଣ୍ଟାରେ ବାନ୍ଧିଲାକ ନେଇ ।
ସୁନାର ଭାରଟିକ କାନ୍ଧରେ ବହିଲା
ଘରକୁ ମୁହଁ କରି ତହୁଁ ବାହାରିଲା ।
ବକ ତ ନିତି ବ୍ରହ୍ମଲୋକକୁ ଯାଆନ୍ତି
ସନ୍ଧ୍ୟାବେଳରେ ବିରୂପାକ୍ଷଙ୍କୁ ଭେଟନ୍ତି ।
ତଦନ୍ତେ ପୁଣି ସେ ଯାଆନ୍ତି ବସାକୁ
ପ୍ରସାରି ଡେଣା ବାତ କରି ଆକାଶକୁ ।
ଏହି ସକାଶୁଁ ଜାଣ ବିରୂପାକ୍ଷ ସଜା
ବକଙ୍କୁ ନ ଦେଖି ବିକଳ କଲେ ସଜ୍ଜା ।
ପୁତ୍ରଙ୍କୁ ବୋଇଲେ ହେ ବକଙ୍କ ଘରକୁ
ଯାଇ ବୁଝ ସେ ଅବା ଗଲେ କେଉଁଠାକୁ ।
ଯେଉଁ ଦ୍ୱିଜକୁ ମୋହଠାକୁ ପଠିଆଇ—
ଥିଲେ ତା ଆଚରଣ ନଷ୍ଟଟି ଅଟଇ ।
ବକକୁ ମାରି ଅବା ବ୍ରାହ୍ମଣ ରାକ୍ଷସ
ଭାବୁଅଛି ମୁଁ, ଯୋଡ଼ି କରିଥିବ ଗ୍ରାସ ।
ଏହା ଶୁଣି ଯେ ପୁତ୍ରମାନେ ତୋଷ ହୋଇ
ରାକ୍ଷସଙ୍କୁ ନେଇ ସେଠାକୁ ଗଲେ ଧାଇଁ ।
ଦେଖିଲେ ନାଡ଼ୀଜଙ୍ଘ ବକର କଙ୍କାଳ
ପଡ଼ିଛି, ପଡ଼ିଅଛି ଦରପୋଡ଼ା ଜାଳ ।
ଆହା କି ହେଲା ବୋଲି ବିରୂପାକ୍ଷ-ସୁତେ
ମନେକରି ଧାଇଁଲେ କ୍ରୋଧେ ସେ ବନସ୍ତେ ।

ଗଉତମ ଦ୍ୱିଜକୁ ବାଟରେ ପଗାଡ଼ି
ଆଣିଲେ ବାପୁଠାକୁ କ୍ରୋଧେ ଦାନ୍ତ ଭିଡ଼ି ।
ବିରୂପାକ୍ଷ ଦେଖିଣ ମିତଙ୍କ ମାଉଁସ
କ୍ରୋଧ ହୋଇ ଗୋଟାଏ ଛାଡ଼ିଲେ ନିଃଶ୍ୱାସ ।
ବିରୂପାକ୍ଷଙ୍କର ଯେତେକ ଲୋକ ଥିଲେ
ଆହା କି ହେଲା ବୋଲି ସର୍ବେ ରଡ଼ିଦେଲେ ।
ବିରୂପାକ୍ଷ ବକର ବଧକୁ ନ ସହି
ବୋଇଲେ ମାରି ଖାଅ ଦ୍ୱିଜେ ପ୍ରୀତି ବହି ।
ପାପକର୍ମା କୃତଘ୍ନ ଅଟଇ ଏ ଦ୍ୱିଜ
ପକାଅ ହାଣି ଏହା ମୁଖେ ନାହିଁ ଲାଜ ।
ରାକ୍ଷସେ ରାଜା ବାଣୀ ଶୁଣି ଭୁମି ହେଲେ
ପାପକର୍ମା ବୋଲି ସେ ଦ୍ୱିଜେ ନ ଖାଇଲେ ।
ରାଜାଙ୍କୁ ବୋଇଲେ ହେ ଏ ତ ପାପକର୍ମା
କିରୂପରେ ଖାଇବୁ କହ ତ ମହାତ୍ମା ।
ରାଜା ବୋଇଲେ ଆହେ ନ ଖାଇବ ଯେବେ
ଦସ୍ୟୁଙ୍କୁ ନେଇ ଦିଅ ଏ ଦ୍ୱିଜକୁ ତେବେ ।
ଏହା ଶୁଣି ରାକ୍ଷସେ ଖଣ୍ଡା କରେ ଧରି
ବ୍ରାହ୍ମଣଦେହଖଣ୍ଡାଟିକ ପକାଇଲେ ମାରି ।
ଖଣ୍ଡ ଖଣ୍ଡ କରି ତା ମାଉଁସ କାଟିଲେ
ଖାଅ ବୋଲି ସବୁ ଗଣ୍ଡାକୁ ବାଣ୍ଟିଦେଲେ ।
ଦସ୍ୟୁଏ ସେ ବ୍ରାହ୍ମଣ-ପାପବୃତ୍ତ ଜାଣି
ଏ ଭକ୍ଷ୍ୟ ନୋହେ ବୋଲି କହିଲେ ସେ ବାଣୀ
ବ୍ରହ୍ମଘ୍ନ ସୁରାପାନେ ଭଗ୍ନ-ବ୍ରତ ଲୋକ
ପୁଣ୍ୟ କରିଲେ ଦେଖୁଅଛୁ ଯାଇ ନାକ ।
କୃତଘ୍ନ ମିତ୍ରଦ୍ରୋହୀ ନାସ୍ତିକରେ କେବେ
ତରିବାକୁ କଥାଟି ଜାଣ ନାହିଁ ଲଭେ ।
ଏବ ।ଦ କୃମିଙ୍କର ଅଟନ୍ତି ଅଭକ୍ଷ୍ୟ
ଥାଉ ସେ ତାହାଙ୍କର ହୋଇବାରେ ମୋକ୍ଷ ।
ଏଥୁଅନ୍ତେ ବକର ପାଇଁ ଚିତା ଥାପି
ଚିତାରେ ରଖିଲେ ବକକୁ ହୋଇ ତାପୀ ।
ସୁରଭି ସେକାଳେ ଯାଆନ୍ତେ ଆକାଶରେ ।
ମୁଖଫେନ ପଡ଼ିଲା ବକ ଚିତା ପରେ ।
ବକ ସେ ଫେନ ପାଇ ଧଡ଼ପଡ଼େ ଉଠି
କାହିଁଲା କିଆଁ ବୋଲି ଖୋଲେ ଥରେ ପିଠି ।
ବିରୂପାକ୍ଷ ଦେଖିଣ ବକ ଜୀଇବାର
ମହା ସନ୍ତୋଷକୁ ଲଭିଲେ ନରବର ।

ଇନ୍ଦ୍ର ସେ ସମୟରେ ବିରୂପାକ୍ଷ ପାଶେ
ଆସିକରି କହିଲେ ମନର ହରଷେ ।
ତୁମ୍ଭ ଭାଗ୍ୟଯୋଗୁ ଜୀଇଲେ ତୁମ୍ଭ ମିତ
ପୂର୍ବ ଶାପ ଯୋଗୁଁ ମୃତ୍ୟୁକୁ ହୋଇଲେ ଗତ ।
ବିରୂପାକ୍ଷ ବୋଇଲେ କାହିଁପାଇଁ ଶାପ
ପାଇଲେ ସେ ବକ କହ ହେ ଇନ୍ଦ୍ର ନୃପ ।
ଇନ୍ଦ୍ର ବୋଇଲେ ହେ ବ୍ରହ୍ମାଙ୍କଠାକୁ ନିତି
ଯାଉଥାନ୍ତି ଏ ବକ ବହି ମନେ ପ୍ରୀତି ।
ବ୍ରହ୍ମାଙ୍କଠାକୁ ଦିନେ ଯାଇ ନ ପାରିଲେ
ବ୍ରହ୍ମା ତାହା ସହି ନ ପାରି ଶାପ ଦେଲେ ।
ଏହି ସକାଶୁଁ ଜାଣ ଗଉତମ ଦ୍ୱିଜ
ମାଇଲେ ଏ ଚୋଡ଼ା ଖୁଣ୍ଟରେ ବକରାଜ ।
ଦେହରେପଡ଼ିବାରୁ ସୁରଭିର ଫେନ
ଜୀଇଲେ ବକ ଜାଣ ରାକ୍ଷସ ରାଜନ ।
ବକ ବୋଇଲେ ପ୍ରଭୁ ଶଚୀଙ୍କର ବର
ଆହେ ଗୌତମ ଦ୍ୱିଜ ଦିଅ ଏହି ବର ।
ଇନ୍ଦ୍ର ସେ ବକଙ୍କର ବଚନ ଶୁଣିଲେ
ଗଉତମ ଦ୍ୱିଜଙ୍କୁ ଜୀଆଇଣ ଦେଲେ ।
ନାଡ଼ୀଜଙ୍ଘ ବକ ଦ୍ୱିଜଙ୍କୁ ଧନ ଦେଇ
ଯାଅ ହେ ଘରକୁ ବୋଇଲେ ପ୍ରୀତି ବହି ।
ବକ ବୋଲେ ବ୍ରାହ୍ମଣ ଘେନି ଧନଭାର
ଆସିଲ ଯେଉଁଠାରେ କରିଥିଲ ଘର ।
ନାଡ଼ୀଜଙ୍ଘ ବକ ସେ ଛାଡ଼ି ହିଦୁଁ ଦକ
ବାହାରିଲେ ଦେଖିବା ପାଇଁ ବ୍ରହ୍ମଲୋକ ।
ବ୍ରହ୍ମ ଦେଖି ନାଡ଼ୀଜଙ୍ଘକୁ ନରପାଳ
ଆଛା ଅଛ ବୋଲି ବୋଇଲେ ପ୍ରୀତି ବହି ।
ଗଉତମ-ଶବରପଲ୍ଲୀରେ ରହିଲେ
ଶୂଦ୍ରସ୍ତ୍ରୀ ଆଉରେ ପୁତ୍ର ଜାତ କଲେ ।
ଦେବେ ତାହା ଦେଖି ହୃଦରେ ବହି ତମ
ବୋଇଲେ ନରକରେ ପଡ଼ ଗଉତମ ।

ଏ ଚରିତ୍ରଯାକ ନାରଦଠାରୁ ଶୁଣି —
ଥିବାରୁ ତୁମ୍ଭ ଆଗେ ଦେଲି ମୁଁ ବଖାଣି ।
ସୁଖ ସ୍ଥାନ କାରନ୍ତି କୃତଘ୍ନ ଲୋକର
କେତେବେଳେ ନୁହଇ ରାଜା ମନେକର ।
କୃତଘ୍ନ ଲୋକଙ୍କର ନାହିଁଟି ନିଷ୍କୃତି
ତାହାଙ୍କୁ କେତେବେଳେ ନ କରିବ ପ୍ରୀତି ।
ମିତ୍ରଦ୍ରୋହ କେବେହେଁ ନ କରିବ ନର
କଲେ ନରକରେ କରିବ ଯାଇ ଘର ।
ବିଜ୍ଞଲୋକେ କୃତଜ୍ଞ ମିତ୍ର-କାମୀ ହେବ
ଯେବେ ଭଲ ହୋଇବାରେ ବୁଦ୍ଧି ଥିବ ।
ମିତ୍ର ସକାଶୁଁ ଜାଣ ବିପତ୍ତି-ମୋଚନ
କରଣ ଲୋକ ହୁଏ ସୁଖରେ ଭାଜନ ।
ଜାଣିବା ଲୋକ ସତକାରରେ ମିତ୍ରଙ୍କୁ
ପୂଜା କରୁଥିବ ନ କରି ଅସୂୟାକୁ ।
ମିତ୍ରଦ୍ରୋହୀ କୃତଘ୍ନ ଲୋକେ କେବେ ପାଶେ
ରଖିବ ନାହିଁଟି ପଡ଼ିବ ମହା-ଦୁଃଖେ ।
ମିତ୍ରଦ୍ରୋହୀ କୃତଘ୍ନ କଥା ତ୍ରୁ ତୁମ୍ଭଙ୍କୁ
କହିଲେ ଆଉ ଇଚ୍ଛା କରିଥିଲେ ଆମ୍ଭଙ୍କୁ ।
ପୃଚ୍ଛ ଅହେ ପାଣ୍ଡବକୁଳର ରାଜନ ।
କହିବାକୁ ମୋହର ହେଉଅଛି ମନ ।
ଆହେ ଜନ୍ମେଜୟ ଏରୂପେ ଋଷି-ବାଣୀ
ଶୁଣି ତୋଷ ହେଲେ ପାଣ୍ଡବ ନରମଣି ।
ଶେଷ ହୋଇଲା ରାଜଧର୍ମ ଉତ୍ତରାର୍ଦ୍ଧ
କୃଷ୍ଣସିଂହ ନୃପତି ବହେ ବହି ମୋଦ ।
ଶାନ୍ତିପର୍ବଙ୍କରେ ହେ ମୋକ୍ଷଧର୍ମ-ଖଣ୍ଡ
ଏକ୍ଷଣି କହିଛନ୍ତି ପରାଶର-ସୁତ ।
ତାହା ଯେତେ ଜାଣିଛି ସେତେ ମୁଁ ପ୍ରକାଶ
କରିବ ହେ ସୁଜନେ ନ ଧରିବ ଦୋଷ ।



## ମୋକ୍ଷ ଧର୍ମ

### ସେନଜିତ୍ ରାଜାଙ୍କ ଚରିତ

ଯୁଧିଷ୍ଠିର ବୋଇଲେ ଅହେ ପିତାମହ
ରାଜଧର୍ମ ଶୁଣି ଛୁଟିଲା ମୋର ମୋହ ।
ଚାରି ଆଶ୍ରମ ମଧ୍ୟେ କେଉଁ ଧରମକୁ
ବଡ଼ ବୋଲନ୍ତି ତାହା କହ ତ ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ହେ ପାଣ୍ଡବ ନରରାଣ
ଯାହା ପୁଚ୍ଛୁଛ ତା କହିବା ଆମ୍ଭେ ଶୁଣ ।
ସବୁ ଆଶ୍ରମଙ୍କରେ ଧର୍ମ ରହିଅଛି
ଧର୍ମହୀନ ଆଶ୍ରମ ନାହିଁ କୁନ୍ତୀବହ୍ନି ।
ତହିଁ ସତ୍ୟସ୍ୱରୂପ ପରମାତ୍ମା କଥା
ଯେ ଶୁଣେ ତାହାର ଜ୍ଞାନ ଲଭେ ତଥା ।
ଧର୍ମ-ପଥ ବିବିଧ ଅଛି ଏ ଜଗତେ
ଫଳ ବିଦ୍ୟାଗୁଣରେ ଫଳଇ ନିଶ୍ଚିତେ ।
କେହି ଜ୍ଞାନ ଲଭେ ଅବା କେହି ଶୁଦ୍ଧତା
କେହି ସ୍ୱର୍ଗ ଇଚ୍ଛଇ କେହି ପୁତ୍ର ସୁତା ।
ଏଣୁ ଯେଉଁ ଲୋକ ଯେ ଧର୍ମ କରଇ
ସେ ଧର୍ମ ବିନା ଆନ ଧର୍ମ ନ ଶୁଣଇ ।
ଲୋକଙ୍କର ବିଚାର ହେଲେ ବିପରୀତ
ଜାଣ ଯୁଧିଷ୍ଠିର ବିରାଗ ହୁଏ ଜାତ ।
ଏହି ସକାଶୁ ବୁଦ୍ଧିମନ୍ତ ଯେଉଁ ନର
କରିବ ଆଗ ମୋକ୍ଷପାଇଁ ସେ ବିଚାର ।
ଯୁଧିଷ୍ଠିର ବୋଇଲେ ପୁତ୍ର ଭାର୍ଯ୍ୟା ଧନ—
ବିହୀନ ହେଲେ କହ କି କରିବ ଜନ ।
କି ରୂପରେ ଶୋକ-ସମୁଦ୍ରୁଁ ସେ ତରିବ
ଏହା ମଧ୍ୟ ଆପଣ କହିବା ହୋଇବ ।
ଭୀଷ୍ମ ବୋଇଲେ ହେ ଯାହାର ଭାର୍ଯ୍ୟା ସୁତ
ମରିବ ସେ ଧର୍ମରେ ଦେଇକରି ଚିତ୍ତ ।
ଜଗତ ମିଥ୍ୟା ବୋଲି ମନରେ ବିଚାରି
ଦେବ ସବୁ ଦୁଃଖପାପକୁ ଦୂର କରି ।
ପୂର୍ବରେ ସେନଜିତ ରାଜାଙ୍କର ସୁତ
ମରନ୍ତେ ଦ୍ୱିଜ ଜଣେ ହୋଇ ଉପଗତ ।
ତାହାଙ୍କଠାରୁ ଆସି କହିଛନ୍ତି ଯାହା
ତା କହିବା ଶୁଣ ପାଣ୍ଡବ-ନରନାହା ।
ଦ୍ୱିଜ ବୋଇଲେ ହେ କାହିଁକି ସେନଜିତ
ପୁତ୍ର ଶୋକେ ଆକୁଳ କରୁଅଛ ଚିତ୍ତ ।
ତୁମ୍ଭେ ଆମ୍ଭେ ଯେବଣଠାରୁ ଆସିଥାଇ
ସେହିଠାକୁ ଯିବା ସନ୍ଦେହ ଏଥି ନାହିଁ ।
ତୁମ୍ଭେ ମଲା ଲୋକକୁ ଯେହ୍ନେ କର ଶୋକ
ତୁମ୍ଭେ ମଲେ ସେହ୍ନେ କରିବେ ଶୋକ ଲୋକ
ସେନଜିତ ବୋଇଲେ ଧ୍ୟାନ ବୁଦ୍ଧି ତପ
ଜ୍ଞାନଶାସ୍ତ୍ର କାହାକୁ ବୋଲି ଦ୍ୱିଜଧିପ ।
ଏହା ମୋର ଆଗେ କହିବା ହେଉ ବସି
ଶୁଣିବାକୁ ମୋହ ମାନସ ଅଛି ରସି ।
ଜ୍ଞାନରେ ହେବାର ଆପଣ ପରିପୂର୍ଣ୍ଣ
ହେଉନାହିଁ ମାନସ କିଛି ମାତ୍ର କ୍ଷିଣ ।
ଦ୍ୱିଜ ବୋଇଲେ ଆହେ ଦେହଟି ମୋହର
ବୋଲିବାକୁ ଶକତ ନାହିଁ ଜାଣ ମୋର ।
ମୋହର ପରି ସବୁ ପ୍ରାଣୀଙ୍କର ଦେହ
ନୁହଇ ଆପୃତ ଜାଣ ନୃପ-ସିଂହ ।
ଅହର୍ନିଶି ମୋ ଚିତ୍ତେ ଏ ବୁଦ୍ଧି ତ ଅଛି
ଏଣୁ ସୁଖ ଦୁଃଖ ଏ ଦୁହିଙ୍କି ମୂର୍ଚ୍ଛିଛି ।
ନଦୀ-ପ୍ରବାହରେ ଏକଠା କାଠି କୁଟା
ହୋଇ କ୍ଷଣକରେ ହୁଅଇ ପୁଣି ଫଟା ।
ସେହି ରୂପରେ ପୁତ୍ର ଭାରିଯା ସଙ୍ଗମ
କ୍ଷଣକେ ବ୍ୟର୍ଥ ହୋଇଯାଏ ନରୋତ୍ତମ ।
ଏହି ସକାଶରୁ କହୁଅଛି ତୁମ୍ଭଙ୍କୁ
ନିବର୍ତ୍ତାଅ ହେ ପୁତ୍ରଭାର୍ଯ୍ୟାର ସ୍ନେହକୁ ।
ଦୃଶ୍ୟରୂପେ ଯାହାଙ୍କୁ କେହି ନ ଦେଖଇ
ସେହି ଚିନ୍ମୟ ଜାଣ ପୁତ୍ରାଦି ଆସଇ ।
ପୁଣି ସେହି ସୁତ ଦୃଷ୍ଟିର ଅଗୋଚରେ
ଲୀନ ହୋଇଯାଏ ତାହାଙ୍କ ସହିତରେ ।
ଅଜଣା ହୋଇଣ ଜନ୍ମିଲା ଘରେ ସୁତ
ଅଜଣା ହୋଇ ଘରୁ ହୋଇଗଲା ମୃତ ।
ତୁମ୍ଭର ତାର ପୂର୍ବେ ସମ୍ବନ୍ଧ ନ ଥିଲା
ଦଇବରୁ ସମ୍ବନ୍ଧ ହୋଇ ଭିନ୍ନ ହେଲା ।
ଏଥିପାଇଁକି ଶୋକ ନ କର ରାଜନ
ସୁଖ ଦୁଃଖ ବୃତ୍ତାନ୍ତ କର ହେ ଶ୍ରବଣ ।
ବିଷୟ ବାସନାରୁ ଦୁଃଖ ଉପୁଜାଏ
ଦୁଃଖ ନାଶ ହେବାରୁ ସୁଖ ହୋଇଥାଏ ।

ସୁଖ ଅବସାନରେ ଦୁଃଖର ଉଦୟ
ଚକ୍ର ନେମେ ଭ୍ରମଇ ସୁଖ ଦୁଃଖ ଦ୍ୱୟ ।
ଭୁଞ୍ଜୁ ସୁଖର ପରେ ଲଭିଅଛ ଦୁଃଖ
ପୁଣି ତାହାର ପରେ ଆସିବ ହେ ସୁଖ ।
ସୁଖ ଦୁଃଖ ନିତ୍ୟତ ନୁହଇ ହେ ବୟେ ।
ଏହିମତ ଲଗିଛି ମନୁଷ୍ୟର କାୟ ।
ସ୍ଥୂଳ ସୂକ୍ଷ୍ମ ଭେଦରେ ଦୁଇଗୋଟି ଦେହ
କରିଥାନ୍ତି ଆଶ୍ରୟ ସୁଖ ଦୁଃଖ ଗୃହ ।
ଜୀବ ଯେଉଁ ଦେହରେ କରମ କରଇ
ପୁଣି ସେହି ଦେହରେ ତା ଫଳ ଭୁଞ୍ଜଇ ।
ସୂକ୍ଷ୍ମ ଦେହ ହୁଅଇ ଜୀବନ କାରଣ
ସ୍ଥୂଳ ଦେହ ଧରି ଜନ୍ମନ୍ତି ଜୀବଗଣ ।
ହେନି ଦେହ ସଂସାରେ ବିବିଧ ରୂପରେ
ରହି ନାଶ ପାଆନ୍ତି ଏକ ସମୟରେ ।
ସ୍ନେହ ପାଶ-ବନ୍ଧନ ବାଲିବନ୍ଧ ପ୍ରାୟେ
କାଳ ସ୍ରୋତ ମୁଖରେ କ୍ଷଣେ ଭାସିଯାଏ ।
ତେଲିମାନେ ଯେସନେ ତୈଳର କାରଣ
ଘଣା-ଯନ୍ତ୍ରେ ତିଳାଦି କରନ୍ତି ପେଷଣ ।
ଜୀବମାନେ ତେସନ ସୃଷ୍ଟି-ଚକ୍ରେ ପଡ଼ି
ବହୁ କ୍ଳେଶ-ରାଶିରେ ହେଉଛନ୍ତି ପେଡ଼ି ।
ପରିବାର ଭରଣ ପୋଷଣ କାରଣ
କେତେ ଲୋକେ କରନ୍ତି କୁକର୍ମ ସାଧନ ।
ତା'ର ପରିଣାମରେ ଇହପରକାଳେ
ଶୋକଦୁଃଖ ଭୁଞ୍ଜନ୍ତି ଯେଝା କର୍ମବଳେ ।
ସ୍ତ୍ରୀ ପୁତ୍ର କୁଟୁମ୍ବ ଆସକ୍ତିରୁ ନରେ
ନିମଜ୍ଜିତ ହୁଅନ୍ତି ଶୋକ-ସାଗରେ ।
ତେଣୁ ଯେଉଁ ବିଚ୍ଛେଦ ବିନାଶରୁ ହୁଏ
ଦାବାନଳ ପରାୟେ ଦୁଃଖ ଜାଳିଦିଏ ।
ସୁଖ ଦୁଃଖ ଉଦୟ ପ୍ରଳୟାଦି ଯେତେ
ସମସ୍ତହିଁ ରହିଛି ଦୈବର ଆୟତ୍ତେ ।
ପ୍ରତି ଉପକାର ହୃଦୟରେ ନ ମଣି
ଉପକାର ଯେ ରଖେ ସୁହୃଦରେ ଗଣି ।
ଉପକାର ଆଶାରେ କରମ ଯେ କରେ
ମିତ୍ର ପଦ ବାଚ୍ୟ ସେ ହୁଅଇ ସଂସାରେ ।
ଏଣୁ ଯା'ର ରହିଛି ମିତ୍ର ବା ସୁହୃଦ
ତା ପକ୍ଷରେ ନୁହଇ ସକଳ ସମ୍ପଦ ।

ଶତ୍ରୁ-ଯୁକ୍ତ ହେଲେହେଁ ଦୁଃଖର କାରଣ
ଉପଗତ ହୋଇ ନ ପାରଇ ରାଜନ ।
ବୁଦ୍ଧିମନ୍ତ ମନୁଷ୍ୟ ଅବା ବୁଦ୍ଧିହୀନ
ସୁଖ ଦୁଃଖ ବିଷୟେ ସର୍ବେ ଦୈବାଧୀନ ।
ଏଣୁ କରିଣ ପ୍ରାଜ୍ଞ ଭାଗ୍ୟାଭାଗ୍ୟ କଥା ।
ଜ୍ଞାତ ହୋଇ ମନରେ ନ ପାଆନ୍ତି ବ୍ୟଥା ।
ବଳବନ୍ତ ଦୁର୍ବଳ ଭୀରୁ ଶୂର ନର
ବୁଦ୍ଧିମନ୍ତ ଯେଉଁ ପଣ୍ଡିତ ମୂର୍ଖଙ୍କର ।
ହେବା କଥା ନୁହେଁ ନୋହିବା କଥା ନୋହେ
ଇଚ୍ଛା ରାଜନ ହେ ପଡ଼ି ଭୁମ୍ଭେ ମୋହେ ।
ବସ୍ତ୍ର ପ୍ରତିପାଳକ ଗୋପାଳ ତସ୍କର
ଏମାନଙ୍କ ମଧ୍ୟରୁ ଦୁଗ୍ଧପାୟୀଙ୍କର ।
ଅଧିକାର ଧେନୁରେ ଜାଣ ହେ ରାଜନ
ସୁଖ ଭାଗ୍ୟବନ୍ତର ସେପରି ଅଧୀନ ।
ମୂର୍ଖ ପଣ୍ଡିତଙ୍କର ହେଉଅଛି ସୁଖ
ବୁଝିଲେ ମଧ୍ୟଭଳି ଲୋକ ପାଏ ଦୁଃଖ ।
ଧର୍ମ ମୋକ୍ଷ ଏ ଦୁହେଁ ଯେଉଁ ରୂପେ ସୁଖ
ଅର୍ଥ କାମ ଏ ଦୁହେଁ ସେହି ରୂପେ ଦୁଃଖ ।
ଜ୍ଞାନ ସୁଖ ଆଶ୍ରୟ କରିଛି ଯାହାକୁ
ନ ଭଜଇ କେବେ ସେ ଅର୍ଥ ଅନର୍ଥକୁ ।
ଯେଉଁମାନଙ୍କଠି ନୋହିଥାଏ ଜ୍ଞାନ
ପାଇଲେ ଅର୍ଥ ହେଉଥାନ୍ତି ତୋଷ-ମନ ।
ପୁଣି ସେ ଅର୍ଥ ସକାଶରୁ ପରାଭବ ।
ହୁଅଇ ପରାପତ ଜାଣ ନରଦେବ ।
ସୁଖ ଦୁଃଖ ଦୁହିଙ୍କ ଆଚରଣ ଏକା
ମୁଁ କହିବାରୁ ବିଷୟେ ଛାଡ଼ ହୃଦ-ଶଙ୍କା ।
ଯେତେବେଳେ ଯେଉଁ କଥା ହେଉଥିବ
ତହିଁକି ଲଗିବସି ବିଚାର କରିବ ।
ନିତ୍ୟ ଶୋକସହସ୍ର ଶତ ଶତ ଭୟେ ।
ମୂର୍ଖ କରେ ପ୍ରବେଶ, ଜ୍ଞାନୀ ସ୍ଥିର ରହେ ।
ଏଣୁ ଶୋକ ହର୍ଷ ପଣ୍ଡିତେ ଉପସ୍ଥିତ
ହୋଇ ନ ପାରଇ ହେ ରାୟ କଦାଚିତ ।
ସୂର୍ଯ୍ୟଙ୍କର ଉଦୟ ଅସ୍ତ ହେଲା ପରି
ଜଗତ ହେଉଅଛି ବୋଲି ଦଣ୍ଡଧାରୀ ।
ଜଣାଅଛି ତାହାଙ୍କୁ ନ ବାଧଇ ଶୋକ
ପୂରିଥାଏ ଯେଣୁ ହୃଦୟରେ ବିବେକ ।

ସୁବୁଦ୍ଧି ମନ୍ତ୍ର ଦାନ୍ତ ଶାସ୍ତ୍ରାଭ୍ୟାସ ରତ
କତେନ୍ଦ୍ରିୟ ପ୍ର ରୁଷ ଅସ୍ପୃଶ୍ୟ-ରହିତ ।
ଯେଉଁମାନେ ଜାଣନ୍ତି ଜୀବ-ଜନ୍ମାଳୟ
ଶୋକ ସେମାନଙ୍କୁ ନ ଛୁଅଇଁ ନିଶ୍ଚୟ ।
ଶୋକ ତାପ ଦୁଃଖାଦି ମମତ୍ୱ କଳ୍ପିତ
ଏଣୁ ସେହି ମୋହକି ହୁଡ଼ିବା ଉଚିତ ।
ଯେଉଁ କାଳେ କାମକୁ ଛାଡ଼ୁଅଛୁ ନର
ସେକାଳେ ବନେ ଧର୍ମ କରି ହୃଦେ ଧର ।
ସ୍ୱର୍ଗସୁଖ ଇଚ୍ଛା ମୂର୍ଖଙ୍କୁ ତୃଷ୍ଣା ଛଡ଼ା
ଜ୍ଞାନୀ କେବେ ଜାଣ ହେ ନ କରନ୍ତି ଲୋଡ଼ା ।
ବାସନା ବିନାଶରୁ ଯେ ସୁଖ ଜନନ
ଟା ତୁଳେ ଆନ ସୁଖ ନ ହୁଏ ସମାନ ।
ପୂର୍ବରୁ ସୁକୃତକୁ ଗୁହିଁ ଭୋଗାଭୋଗ
ଲୋକ କରୁଅଛନ୍ତି ହେ ବହ୍ନଣ ମହାଗ ।
ସକଳ କାମ ତୁଳେ କ୍ରୋଧକୁ ପଛକୁ
ଫେଇ ପକାଏ ନିନ୍ଦା ନାହିଁଟି ତାହାକୁ ।
କାମନା ଥିବା ଲୋକ ମୃତ୍ୟୁ-ଦେବତାଙ୍କୁ
ଛାଡ଼ ନ ପାରିବ ମୁଁ କହୁଛି ତୁମ୍ଭଙ୍କୁ ।
କୂର୍ମ ଅଙ୍ଗ ପରି କାମକୁ ଯେ ସହରେ
ଆତ୍ମଜ୍ଞାନ ଜାଣ ରହଇ ତା ହୃଦରେ ।
ପଦାର୍ଥେ ମମତା କରନ୍ତି ଯେତେ ନର
ସେହି ଧେନ ଦୁଃଖ ହୁଅଇ ତାହାଙ୍କର ।
ଅତ୍ମା ହୁଏ ସେକାଳେ ଶାନ୍ତ ସମାହିତ
ଇଚ୍ଛା ଦ୍ୱେଷ ହରଷ ଶୋକ ଭୟାଣ୍ଡିତ ।
ତତ୍ତ୍ୱେ ହୁଏ ସେକାଳେ ବ୍ରହ୍ମ ଦରଶନ
ଥାଏଟି ଯେବେ ଶୁଦ୍ଧ କର୍ମ ବାକ୍ୟମନ ।
ଦୁର୍ବୁଦ୍ଧି ଲୋକେ ଛାଡ଼ ନ ପାରି ତୃଷ୍ଣାକୁ
ମରନ୍ତି ବୁଢ଼ା ହୋଇ ନ ପାନ୍ତି ମୋକ୍ଷକୁ ।
କହୁଛି ବେଶ୍ୟା ପିଙ୍ଗଳାର ଆଚରଣ
ମୋହଠାରୁ ଏବେ ତା ମନ ଦେଇ ଶୁଣ ।
ପିଙ୍ଗଳା ବେଶ୍ୟା ଦିନେ ହୋଇ ଆସକତ
ବସିଲା ଜଗି ନ ଆସିଲା ପୁଂସ କତ ।
ବିରାଗ ହୋଇ ପୁଣି ଭାବିଲା ମାନସେ
ବ୍ୟର୍ଥେ ସବୁଦିନ ପୁଆଇଲି ଧନ ଆଶେ ।
ହୃଦୟରେ ମୋର ଧର୍ମ ରହିଛନ୍ତି
ତାହାଙ୍କୁ ଭଜିଥିଲେ ଲଭନ୍ତି ମୁକତି ।

ଏଣିକି ଏ ଦେହକୁ ନିରୋଧିବି ମୁହିଁ
କାମନାରେ ଆଉ କିଛି କାର୍ଯ୍ୟ ନାହିଁ ।
ନାଗର କେହି ଯେବେ ଆସିବ ପୁନିଆଁ
ତେବେ ତାକୁ ଦେଖିଲେ ହୋଇବି ମୁଁ ନିଆଁ ।
ଏବେ ମୋର ଜ୍ଞାନ ପାଇଲି ଆସି ଦେହ
ଛଡ଼ାଇବି ମୁଁ ରତିରମଣ ସ୍ନେହ ।
ଏରୂପରେ ପିଙ୍ଗଳା ବେଶ୍ୟା ମନେ କରି
ପଡ଼ିଲା ଶୋଇ ଯେ ଆଶା ଛାଡ଼ିକରି ।
ଏହି ସକାଶୁଁ କହୁଥାନ୍ତି ଆଶାବନ୍ତ
ଲୋକ ଦୁଃଖାନଳରେ ହୁଅଇ ତପତ ।
ବ୍ରାହ୍ମଣଠାରୁ ଏ ବଚନ କର୍ଣ୍ଣେ ଶୁଣି
ଛାଡ଼ିଲେ ଶୋକ ସେନଜିତ ନରମଣି ।
କହଇ କୃଷ୍ଣସିଂହ ଧରାକୋଟପତି
ପିଙ୍ଗଳାଗୀତ ଅଧ୍ୟା ହେଲା ସମାପତି ।

—o—

## ପିତା ପୁତ୍ର ସମ୍ବାଦ

ଯୁଧିଷ୍ଠିର ବୋଇଲେ ପ୍ରାଣୀଙ୍କର କ୍ଷୟ
କାହା ସକାଶରୁଟି ହେଉଛି ଉଦୟ ।
ଯେଉଁ କଥାଟି କଲେ ଶ୍ରେୟ ଉପଗତ
ହୋଇବ ତାହା ମୋତେ କହ ଦେବବ୍ରତ ।
ଭୀଷ୍ମ ବୋଇଲେ ଆହେ ଦ୍ୱିଜ ଜଣଙ୍କର
ମେଧା ନାମରେ ହେଲେ ଗୋଟିଏ କୁମର ।
ସେ ପୁତ୍ର ମୋକ୍ଷ ଧର୍ମେ କୁଶଳ ହୋଇଲେ
ଦିନେ ଯାଇ ନିଜ ପିତାଙ୍କୁ ପଚାରିଲେ ।
ହେ ପିତା ଲୋକର ଆୟୁଷ ଯାଉଅଛି
କେଉଁ କଥା କରିବ କହ ପଚାରୁଛି ।
ବାପୁ ବୋଇଲେ ଆହେ ବ୍ରହ୍ମଚର୍ଯ୍ୟ କରି
ପଢ଼ିବ ବେଦ ଦ୍ୱିଜ କହେ କୁଶଧାରୀ ।
ତଦନ୍ତେ ବିବାହ ହୋଇ ପୁତ୍ର ଜାତ
କରି ଯାଗ କରି ବନକୁ ହେବ ଗତ ।
ସନ୍ନ୍ୟାସଧର୍ମ କରି ମରଣ ଲଭିଲେ
ବ୍ରହ୍ମାଦି ଦେବତାଙ୍କୁ ପୂଜ୍ୟ ପାନ୍ତି ଭଲେ ।
ପୁତ୍ର ବୋଇଲେ ହେ ସଂସାରୀ ଲୋକମାନେ
ଜରା ମୃତ୍ୟୁତାଡ଼ିତ ହୋନ୍ତି ପ୍ରତିଦିନେ ।
ଦୁର୍ଲଭ ମୁକ୍ତି ଏହା ହୃଦୟେ ବିଗ୍ଭରି
କେ ରହେ ନିର୍ବିକାର ତତ୍ତ୍ୱେ ଧୀର ପରି ।

ପିତା ବୋଇଲେ ଆହେ ଲୋକଙ୍କ ମୃତ୍ୟୁ
କାହିଁକି ନୋହିବାକୁ କହୁଛ ସୁଜନ ।
ପୁତ୍ର ବୋଇଲେ ଆହେ ମୃତ୍ୟୁ ହେଉଛନ୍ତି ଲୋକ
ଦେଖୁଛ ତ ନୋହୁଛି କିମ୍ପାଇ ବିବେକ ।
ଶର୍ବରୀ ଦିନ କ୍ଷଣ ଲବ ପକ୍ଷ ମାସ
ହୋଇଣ ସମ୍ବତ୍ସର କରୁଛନ୍ତି ପ୍ରକାଶ ।
ଏହି କ୍ରମେ ପ୍ରାଣୀଙ୍କ କାଳ ହୋଏ କ୍ଷୀଣ
ଏହା ଜାଣି ଜାଣି କି ବୋଧ ହେବ ମନ
ଏ ସକାଶୁଁ କହୁଛି ଯେଉଁ କଥା ଶ୍ରେୟ
ବିଚାରିବା କ୍ଷଣି ତା କରିବ ଉଦୟ ।
ବିଳମ୍ବ କରି ଯେଉଁ ଲୋକ କାର୍ଯ୍ୟ କରେ
କାର୍ଯ୍ୟ ନୋହୁଁ ଜାଣ ସେ ପଡ଼ଇ ମୃତ୍ୟୁରେ
ଘଡ଼ିକେ କରିବାର କଥାକୁ କ୍ଷଣକେ
କରି ଲୋକ ଜାଣ ନ ପଡ଼ଇ ଶୋକେ
କାହାର କେଉଁ ଦିନ ହେଉଛି ମରଣ
ଏହା ତ କେ କହି ନ ପାରେ କଦାଚନ ।
ବାଳକଠାରୁ ବୃଦ୍ଧ ଅବସ୍ଥା ପର୍ଯ୍ୟନ୍ତେ
ଧରମ କରୁଥିବ ବସିଣ ନିରନ୍ତେ ।
ଧରମ ଥିଲେ ଲୋକ ଇହ ପର ଦୁଇ
ଜାଣ ଆହେ ଜନକ ଅଲଭ୍ୟ କେଣିଇଁ ।
ମୋହାବିଷ୍ଟ ହୋଇ ସନ୍ତାନ ଭାର୍ଯ୍ୟା ଧନ
ଆପଣାର କରୁଥାନ୍ତି ଯେତେକ ଜନ ।
ମୃତ୍ୟୁ ତାହା ଦେଖିଣ ହର୍ଷିତ ହୋଇ ପାଟି
ମେଲି ଆଗ ତାଙ୍କ ପ୍ରାଣକୁ କରେ ଲୁଟି ।
କାର୍ଯ୍ୟ କଲି ଆଉ କରିବି ଯେତେ କାର୍ଯ୍ୟ
ବୋଲି ଯେ ଭାବେ କାଳ କରେ ତା ଅକାର୍ଯ୍ୟ
ଦୁର୍ବଳ ବଳି ଯେଉଁ ପଣ୍ଡିତ ମୂରୁଖ—
ମାନେ ପଡ଼ୁଛନ୍ତି ଯାଇଣି ମୃତ୍ୟୁ ମୁଖ ।
ମୃତ୍ୟୁ ଜରା ବ୍ୟାଧି ଲାଗିଛି ତ ଦେହରେ
କେ କାହୁଁ ପିତା କହ ରହେ ନିଶ୍ଚିନ୍ତରେ ।
ଜନମ ହେବାକ୍ଷଣି ମୃତ୍ୟୁ-ଦେବତା ଟି
ନେବା ସକାଶେ ରହିଥାଏ ଜାଣ ଘୋଟି ।
ଜ୍ଞାନେ ରହି ବିଷୟେ ଯେ ବଳାଏ ମନ
ମୃତ୍ୟୁ ସେହି ଜନଙ୍କୁ ଭେଟଇ ରହନ ।
ଦେବତାମାନଙ୍କ ଅରଣ୍ୟେ ଅଟେ ସ୍ଥାନ
ଏ ସକାଶୁଁ ବନେ ରହିବ ପ୍ରତିଦିନ ।

ବିଷୟ ଆସକ୍ତ ମୁକୁଳି ବିନା ଆନ
ଗ୍ରାମ ବାର ଜନକ କଷ୍ଟ ବୋଲି ଘେନ ।
କାୟ ମନ ବାକ୍ୟେ ପ୍ରାଣୀଙ୍କଠାରେ ଦୋଷ
ଯେ ନ କରେ ତାକୁ ନ ଲାଗେ ମୃତ୍ୟୁପାଶ ।
ସତ୍ୟ-ରଥୀ ବିନା ମରଣ-ସଇନକୁ
ମାରିବାକୁ ମହୀରେ ନ ଦେଖି କାହାକୁ ।
ଶମ ଦମ ବ୍ରତାଦି ସତ୍ୟର ସାଧନ
ସତ୍ୟହିଁ ଜଗତରେ ଅମୃତ କାରଣ ।
ଏହି କଥାକୁ ଜାଣି ସତ୍ୟପରାୟଣ
ହୋଇଥିବ ପ୍ରତ୍ୟେକ ହେବ ଯେ ସୁଜାଣ ।
ମୃତ୍ୟୁ ମୋକ୍ଷ ଦୁହେଁ ଦେହରେ ରହିଛନ୍ତି
ମୋହ ସତ୍ୟ ବିଭାଗ ବୁଝି ପ୍ରବର୍ତ୍ତନ୍ତି ।
ଏ ସକାଶୁଁ କାହାକୁ ନ କରି ମୁଁ ହିଂସା
ସତ୍ୟ-ଗୃହରେ ହେବି ବଚନକୁ ବଶା ।
ପଶୁ-ମର ଯାଗ ହୃଦରୁ ଛାଡ଼ି କରି
ଇନ୍ଦ୍ରିୟ ନିବର୍ତ୍ତିଅ ଯାଗକୁ ଆଚରି ।
ମୋକ୍ଷ ପାଇବା ପାଇଁ କରିବ ଉପାୟ
କହୁଅଛି ହେ ପିତା ଏହା ମୋ ହୃଦୟ ।
ତପସ୍ୟା ତ୍ୟାଗ ଯୋଗ ବାକ୍ ମନ ସଂଯତ
ହୋଇ ଯାଙ୍କ ବ୍ରହ୍ମରେ ହୁଏ ପ୍ରଣିହିତ ।
ମୋକ୍ଷ ପଦ ପ୍ରାପତ ହୁଅନ୍ତି ସେ ଭଲେ
ନିଜ ହୃଦେ ସଙ୍କଳ୍ପ ଅନୁଷ୍ଠାନ ବଳେ ।
ସତ୍ୟରୁ ନାହିଁ ତପଃ ବିଦ୍ୟାରୁ ଲୋଚନ
ନାହିଁ କିଛିଟି ଦୁଃଖ ରାଗର ସମାନ ।
ତ୍ୟାଗରୁ ବଡ଼ ହୋଇ ସୁଖ ଏ ସଂସାରେ
ଥିଲେ ପର ତ ଦିଶୁନାହିଁ ମୋ ନୟନରେ ।
ଅପୁତ୍ର ହୋଇ ଯେବେ ଆପଣା ଆତ୍ମାରେ
ଆତ୍ମାଦ୍ୱାରା ଆତ୍ମଜ ରୂପେ ଜନ୍ମି ପାରେ ।
ଆତ୍ମନିଷ୍ଠ ହୋଇ ସେ ଲଭନ୍ତି ଉଦ୍ଧାର
ପୁତ୍ର ଲାଗି ଭାବନା ନ ଥାଏ ତାଙ୍କର ।
ସ୍ୱଭାବ-ସ୍ଥିତି କ୍ରୋଧ ତ୍ୟାଗ ସାମ୍ୟ ସତ୍ୟ
ଏକତ୍ୱ ଆର୍ଜବ ଏ ବ୍ରାହ୍ମଣ ବିତ୍ତ ।
ପିତୃ ପିତାମହାଦି କ୍ରମରେ ମରଣ
ପାଇଛନ୍ତି ତୁମ୍ଭେ ବନ୍ଧୁଙ୍କୁ ବେଗେ ଜାଣ ।
ଏରୂପେ ପୁତ୍ରମୁଖୁଁ ଶୁଣି ପିତା ବାଣୀ
ଗୁରୁ ପରି ପୁତ୍ରକୁ ମଣିଲେ ସେକ୍ଷଣି ।

ଅନ୍ତଃକାଳେ ତାଙ୍କର ହେଲା ମୋକ୍ଷଲୋକ
ସେରୂପେ ଧର୍ମଂକର ପାଣ୍ଡବ ନାଁୟକ ।
ପିତା ପୁତ୍ର ସମ୍ବାଦ ହେଲା ସମାପତ
କହଇ କୃଷ୍ଣସିଂହ ନରକୁଳପତି ।

—ଃ-❋-ଃ—

## ସମ୍ପାକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଧର୍ମ ଅଧର୍ମଙ୍କ
ସୁଖ ଦୁଃଖ କହ ହେ ରଥୀଙ୍କ ତିଳକ ।
ଭୀଷ୍ମ ବୋଇଲେ ଆହେ ସମ୍ପାକ ବ୍ରାହ୍ମଣ
କୁଭାର୍ଯ୍ୟା କୁବଚନେ ହୋଇ ଅତି କ୍ଷୀଣ ।
ମୋହଠାକୁ ଆସିଣ କହିଛନ୍ତି ଯାହା
ତା ଶୁଣ କହିବା ପାଣ୍ଡବ ନରନାହା ।
ସମ୍ପାକ ବୋଇଲେ ହେଂଚନ୍ତ ହେଲା ଲୋକ
ଭୋଗ କରଇ ସୁଖ ଦୁଃଖ ଭୋଗଯୋଗ ।
ଏହି ସକାଶରୁ ସେ ସୁଖ ଦୁଃଖ ଦୁଇ
ପାଇଣ ସରସ ନୀରସ ହେବ ନାହିଁ ।
ମୋକ୍ଷରେ ଯେତେବେଳେ ରଖଇ ଆତ୍ମାକୁ
ସେକାଳେ ଜାଣିଲ ତରିଲ ସଂସାରକୁ ।
ଆପଣା ପାଇଁ ଯାହା କରୁଅଛ ଶ୍ରେୟ
ବିଗ୍ଣଲେ ଏ କଥା ଅଟଇ ଅଶ୍ରେୟ ।
ଅକାମ ହୋଇ ଯେବେ କର କର୍ମ ମାତ୍ର
କହୁଛି ନିକଟେ ମିଳିବ ମୋକ୍ଷଭୂତ ।
ନିର୍ଦ୍ଧନ ହୋଇବାର ଅଟେ ମହାସୁଖ
ଧନ ଥିଲେ ଅବଶ୍ୟ ଘେନୁଥାଏ ଦୁଃଖ ।
ଦରିଦ୍ରତା ରାଜତ୍ୱ ଦୁହିଙ୍କି ପୂର୍ବରେ
ତୁଳିଲି ଦରିଦ୍ରତା ବଳି ଅଧିକରେ ।
ଏହି ସକାଶୁଁ ମୁଁ ଯେ କହୁଛି ତୁମ୍ଭଙ୍କୁ
ଦରିଦ୍ର ହେଲେ ଲୋକ ତରେ ସଂସାରକୁ ।
ଧନତ୍ୟାଗୀ ଲୋକର ଅଗ୍ନି ଚୋରର ଭୟ
ହେବାର ଥାଉ ଜାଣି ନ ପାରେ ହୃଦୟ ।
ତଳେ ଶୋଇ ହାତ ମୁଠୁକୀ ଯେ କରଇ
ହେବେ ତାହାକୁ ପ୍ରଶଂସନ୍ତି ଦୋଷ ବହି ।
ଧନବନ୍ତ ଲୋକ ପଲଙ୍କ ଦେଇ ଛାତି
ବସି ଶୁଖି କରଣ କହୁଥାଏ ନିତି ।
ଶୀତକାଳବେଳେ ଦୋହଲାଇ ଦୁଇଡେଣା
ହୋଇ ତ ଥାଏ ଧନମଦେ ବୁଦ୍ଧି ବଣା ।
କରୁଥାଏ ଲୋକଙ୍କୁ ଦେଖି ପରିହାସ
ବଚନରେ ବୋଲଇ ଅଟନ୍ତି ଏ କସ ।
ବନ୍ଦ କର ଅଳପ ଅନାଇଁଣ ହଏ
କହିଲେ କଥା ଲୋକ କାନେ ନ ପକାଏ ।
ମଣିମା ଆଜ୍ଞା, କର ଯୋଡ଼ି ପରିଜନ
ବୋଲୁଥିଲେ ହେଉଣ ଥାଏ ତୋଷମନ ।
ଅମାନୁଷ ବୁଦ୍ଧିକି ଧରଇ ଦେହରେ
ପଡ଼ିଥାଏ ସେ ନିତି ସ୍ତ୍ରୀଙ୍କ ସ୍ନେହରେ ।
ଏ କଥା ଜାଣି ସିନା କହୁଛି ତୁମ୍ଭଙ୍କୁ
ସେ ସହି ପାରିବଟି ଧନିକ ଲୋକଙ୍କୁ ।
ଧର୍ମ ଲୋକ ହାତରୁ ଧନ ଗଲେ ଖସି
ପର ଧନଟିରେ ସେ ହୁଅଇ ଲାଳସୀ ।
ତାହା ଶୁଣି ତାହାକୁ ମରାଇ ରାଜନ
ଘେନିଯାଏ ତାର ଯେତେକ ଥାଏ ଧନ ।
ଏହି ସକାଶରୁ ଧନ ସୁଖକୁ ଛାଡ଼ି
ଦୁଃଖରେ ଦଉଡ଼ିବ ଲୋକ ହରବଡ଼ି ।
ତ୍ୟାଗହିଁ ଶ୍ରେଷ୍ଠ ସୁଖ ସଂସାର ମଧ୍ୟରେ
ତ୍ୟାଗରେ ଲୋକାଶ୍ରିତ ଧନ ମିଳିପାରେ ।
ବିଷୟ ବାସନାଟି ଦୁଃଖର କାରଣ
ତ୍ୟାଗ କରି କର ହେ ନିର୍ଭୟେ ଶୟନ ।
ତ୍ୟାଗ ନ କଲେ ଲୋକର ମୋକ୍ଷଲୋକ
ହୋଇବାର କଷ୍ଟଟି କର ହେ ବିବେକ ।
ଏରୂପେ ଯୁଧିଷ୍ଠିର ହସ୍ତିନାପୁରରେ
ସମ୍ପାକ କହି ଥିଲେ ବସି ମୋ ଆଗରେ ।
ସେହିଦିନୁ ଧନରେ ତୁଚ୍ଛ ବୁଦ୍ଧି କରି
ଆଜଯାଏ ଜାଣ ମୁଁ ଦେଲି ଧନ ସାରି ।
କୃଷ୍ଣସିଂହ ନରେଶ ସ୍ମରି ପୀତବାସ
କହେ ଗୀତେ ସମ୍ପାକ ଗୀତା ହେଲା ଶେଷ ।

—❋—

## ମଙ୍କି ସମ୍ବାଦ

ଯୁଧିଷ୍ଠିର ବୋଇଲେ ଧନଲୁବ୍ଧ ଜନ
ଉପାୟ କଲେ ଯେବେ ନ ଲଭଇ ଧନ ।
ତେବେ ସେ କି କରିଣ ଲଭଇ ସୁଖକୁ
ହେ ପିତାମହ ଏବେ କହ ତା ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ହେ ସମତା ଅନାୟାସ
ନିର୍ବେଦ ସତ୍ୟ ବାକ୍ୟ ଅହିଂସା ପ୍ରକାଶ ।

ହୃଦୟ ମଧ୍ୟେ ଯେଉଁ ଲୋକଟି କରଇ
ସେହି ଲୋକକୁ ସୁଖୀ ବୋଲିକରି କହି ।
ମଙ୍କି ଙ୍କର କଥାକୁ କହିବା ତୁମ୍ଭଙ୍କୁ
ଅଙ୍ଗୀକାର କଲେ ତୁମ୍ଭେ ମୋ କଥାକୁ ।
ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ତୁମ୍ଭ କଥାଟିରେ ବଳଇ ମୋର ସ୍ନେହ ।
ଭୀଷ୍ମ ବୋଇଲେ ହେ ପୂର୍ବରେ ମଙ୍କି ନାମ
ବହି ଜଣେ ଥିଲେ ସେ ଦରିଦ୍ର ଉତ୍ତମ ।
ଧନପାଇଁ ବଣିଜ ଇଚ୍ଛା ଦିନେ କଲେ
ଧନ ଦେଇ ଦାମଡ଼ା ଯୋଡ଼ିଏ କିଣିଲେ ।
ନିତି ସେ ଦାମଡ଼ାର ବେକରେ ଜୁଆଳି
ଯୋଚି ଦଉଡ଼ନ୍ତି ସେ ହେବ ଭଲ ଭାଳି ।
ଦିନେ ସେ ଦାମଡ଼ାଏ ଦଉଡ଼ିବା ବେଳେ
ଶୋଇଥିବା ଉଟରେ ହେଲେ ବେକଛାଣି ।
ଉଟ ସେ ସେହିକ୍ଷଣି ଧଡ଼ପଡ଼େ ଉଠି
ଦାମଡ଼ାଙ୍କୁ ବୋହି ଭାଗିଲା କରି ପିଠି ।
ମଙ୍କି ତାହାଙ୍କୁ ଦେଖି ହୃଦରୁ ପ୍ରମୋଦ
ଭାଙ୍ଗି କରି ହୋଇଲେ ବହୁତ ନିର୍ବେଦ ।
ଦାମଡ଼ା ଯୋଡ଼କୁ ମଣାଉଥିଲେ ମୁହିଁ
ଉଟ ତ ଏବେ ନେଇଗଲା ବେକେ ବୋହି ।
ଉଟ ବେକରେ ମଣି ପରି ମୋ ଦାମଡ଼ା
ଦିଶୁଛନ୍ତି ମୋହର କରି ଘରବୁଡ଼ା ।
ଦଇବ ଯାହା କରିଥାଏ ତା ହୁଅଇ
ଦାମଡ଼ା ଲୋଭେ ଦେଲି ଧନକୁ ବୁଡ଼ାଇ ।
ଯେଉଁ ଲୋକ ହୋଇବ ସୁଖପରାୟଣ
ନିର୍ବେଦଟି ତାହାର ଅଟେ ପରିବାଣ ।
ଶୁକ ଋଷି ଯେ କାଳେ ଅରଣ୍ୟକୁ ଗଲେ
ଏହା କହିଛନ୍ତି ଲୋକଙ୍କ ହିତେ ଭଲେ ।
କାମକୁ ତଡ଼ିବାର ଉତ୍ତମ ଅଟଇ
କାମରେ ଅନ୍ତ କେଉଁ ଲୋକ ପାଇ ନାହିଁ ।
କାମକୁ ନିତି ବସି କହୁଥିବ ଲୋକ
ନ ହରାଏ ମୋହର ଧର୍ମକୁ ବିବେକ ।
ଏରୂପେ ଭାବି ମଙ୍କି କହିଲେ କାମକୁ
ଯାଅ ଛାଡ଼ି ମୋହର ହୃଦୟ-ଗୃହକୁ ।
ଅଣ୍ଟ ପରି ନିଷ୍ଠୁର କଲୁ ତ ହୃଦୟ
ପଡ଼ୁ ତୋ ମୁଣ୍ଡେ ଆସି ଧର୍ମବଜ୍ରଚୟ ।

ସଂକଳ୍ପରୁ ସିନା ତୁ ଅଟୁ ଜାତ ହୋଇ
ସଂକଳ୍ପ ଛାଡ଼ିଦେବି ସତ୍ୟ କରି ମୁହିଁ ।
ଧନଲୋଭି ମନୁଷ୍ୟ ପରକୁ ମାଗଇ
ନ ପାଇଲେ ବସଇ ନିଃଶ୍ୱାସ ପକାଇ ।
ଏହା ଜାଣି ମୁହିଁ ବୋଲୁଛି ଆହେ ଭୂତ—
ପାଞ୍ଚେ ମୋର ଦେହରୁ ହୁଅ ଅନ୍ତର୍ହିତ ।
ତୃଷ୍ଣା ଶୋକ ଶ୍ରମର କାରଣ ତୁ କାମ
ମୋତେ ଛାଡ଼, ତୋତେ ହେଉଛି ନମୋନମ
ତୋର ସକାଶୁଁ ଦୁଃଖ ପାଇ ମୁଁ ନିରେଖ
ହେଲିନି ଛାଡ଼ିଦିଅ ବହି ମନେ ସୁଖ ।
ତୃପତିମନ୍ତ ହୋଇ ରହିଅଛି ମୁହିଁ
ନ ଘାଣ୍ଟ କାମ ମୋତେ ବିଷୟରେ ନେଇ ।
ନିର୍ବେଦ ସୁଖ ତୃପ୍ତି ଶାନ୍ତି ସତ୍ୟ ଦମ
କ୍ଷମା ଦୟାରେ ମୁଁ ରହିଛି ଛାଡ଼ କାମ ।
ତୋତେ ଛାଡ଼ିକରି ମୁଁ ରହିବଟି ଯେବେ
ବ୍ରହ୍ମାଦି ଦେବେ ମୋତେ ପୂଜିବେଟି ତେବେ ।
ଆହେ ଯୁଧିଷ୍ଠିର ନିର୍ବେଦ ହୋଇ ମଙ୍କି
କାମ ଛାଡ଼ି ପାଇଲେ ମୋକ୍ଷ ପଦଟିକି ।
ମିଥିଳା ପୋଡ଼ି ଯିବା ବେଳରେ ଜନକ
କାମ ଛାଡ଼ି ବୋଇଲେ ନାହିଁ ମୋର ଦକ ।
ବୋଧ୍ୟ ମହରଷିଙ୍କି ନହୁଷ ରାଜନ
ପୁଚ୍ଛିଲେ କାମନାର ଶାନ୍ତିକି ବଚନ ।
ବୋଧ୍ୟ ଋଷି ବୋଇଲେ ପିଙ୍ଗଳା କୁରର
କୁମାରୀ ଭୁଜଙ୍ଗ ସାରଙ୍ଗ ଇଷୁକାର ।
ଏହି ଛଅଙ୍କୁ ଗୁରୁ କରି ମୁହିଁ ଶାନ୍ତ
ହେଉଅଛି ଜାଣ ହେ ନହୁଷ ନୃପତି ।
ଆଶା ବଡ଼ କଷ୍ଟ ନିରାଶା ବଡ଼ ସୁଖ
ପିଙ୍ଗଳା ଆଶା ଛାଡ଼ି ପାଇ ମହାସୁଖ ।
ତାହା ତୁମ୍ଭ ଆଗେ କହିଛି ନରପତି
ମୋଠାରୁ ଏବେ ଶୁଣ ଦେଇକରି ମତି ।
କୁରରପକ୍ଷୀଟି ଆମିଷ ଥିଲା ବହି
ସେ ତା ଛାଡ଼ି ଦେଇ ରହିଲା ସୁଖ ପାଇ ।
ଗୃହ ଛାଡ଼ି ସର୍ପ ପର ଘରରେ ଯେ ସୁଖ
ପାଇଲା ଜାଣ ଆହେ ନରପତି ଶିଖ ।
ସାରଙ୍ଗପକ୍ଷୀ ଦେଖ ଦ୍ରୋହ ଦୂର କରି
ଜୀଇଣ ଅଛି ଭିକ୍ଷାବୃତ୍ତିକି ଆଚରି ।

କାଣ୍ଡ ସଜାଡ଼ିବା ଲୋକଙ୍କ କାଣ୍ଡେ ମନ
ଦେଇ ସୁଖକୁ ଲଭୁଥାଏ ଅବଚ୍ଛିନ୍ନ ।
ପଟେ ଶଙ୍ଖା ବହୁ କୁମାରୀ ଧାନ କୁଟି
ସ୍ୱଇଚ୍ଛାରେ ମହାସୁଖକୁ କଲା ଲୁଟି ।



## ପ୍ରହ୍ଲାଦ ଅଜଗର ସମ୍ବାଦ

ଯୁଧିଷ୍ଠିର ବୋଇଲେ କହ କେଉଁ କଥା
ପାଇବ ଲୋକ ସୁଖ କହ ମହାରଥୀ ।
ଭୀଷ୍ମ ବୋଇଲେ ଆହେ ପ୍ରହ୍ଲାଦଙ୍କର
ଅଜଗର ବୃତ୍ତି ମୁନିଙ୍କର ବିସ୍ତର ।
ତୁମ୍ଭ ଆଗେ କହିବା ଶୁଣ ମନଦେଇ
ମୋହଠାରୁ ଶୁଣ ହେ ପାଣ୍ଡବ-ନରସାଇଁ ।
ପ୍ରହ୍ଲାଦ ଦିନକରେ ଅଜଗରବୃତ୍ତି-
ମୁନି ପାଦେ ନମି ପୁଚ୍ଛିଲେ ବହୁ ପ୍ରୀତି ।
ଅଯାଚକ ହୋଇ ବାଳକ ଆଚରଣ
କରି ରହିଅଛ ହେ କହ କି କାରଣ ।
ନ ପାଇଲେ ପାଇଲେ ହେଉଛୁ ତୃପତି
ଏଣୁ ମୁଁ ଜାଣି ପାରୁନାହିଁ ତୁମ୍ଭ ରୀତି ।
ଧର୍ମ ଅର୍ଥ କାମ ତ କରିଅଛ ଦୂର
ନିନ୍ଦୁଚ ତେଜରେ ପ୍ରଳୟ ଦିବାକର ।
କେଉଁ ବୁଦ୍ଧି କେଉଁ ଶାସ୍ତ୍ର ଆଶ୍ରୟ କରି
ଧରମ ସାଧୁଚ ତା କହ ତପସ୍ୱୀବର ।
ବ୍ରାହ୍ମଣ ବୋଇଲେ ପ୍ରାଣୀଙ୍କ ଜନ୍ମମୃତ୍ୟୁ
ବୃଦ୍ଧି ଦେଖି ମନ୍ତୁଛି ସବୁ ମିଥ୍ୟା ହେତୁ ।
ସଂଯୋଗ ହୋଇଲେ ହେ ହେଉଛି ବିଯୋଗ
ଏ ସକାଶୁଁ ତହିଁରେ ନ କରେ ମୁଁ ରାଗ ।
ଜନମ ମରଣକୁ ଜ୍ଞାନ ଥିବା ଲୋକ
ଦେଖୁଁ ଦେଖୁଁ କପାଇଁ ମନେ କରେ ଶୋକ ।
ଚତୁର୍ବିଧ ପ୍ରାଣୀଏ ଯାଉଛନ୍ତି ନାଶ
ଜାଣୁ ଜାଣୁ ଜୀବନେ କରିବ କେ ଆଶ ।
ଆକାଶରେ ରହି ନକ୍ଷତ୍ର ପନ୍ତି ମହୀ
ମଧ୍ୟରେ ପଡ଼ୁଛନ୍ତି କାଳେ ନରସାଇଁ ।
ସବୁ ପ୍ରାଣୀମାନେ ହେବାରୁ ମୃତ୍ୟୁ ଯୁତ
ଆହେ ନୃପ ଆଶାରୁ ଛାଡ଼ିଲା ମୋ ଚିତ୍ତ ।
ମିଳିଲେ ଗ୍ରାସେ ପେଟ ପୂରାଇଣ ଖାଏ
ନ ମିଳିଲା ଦିନଟି ଉପାସରେ ଥାଏ ।
ଶଯ୍ୟନାସନ ଅଶନରେ ମନ୍ଦ ଭଲ
ନ ବାଛଇ ମୁଁ ହେ ରାଜନ ମହାମଲ୍ଲ ।
ବଳକଳ ଛଣିଠାରୁ ପାଟଲୁଗା ଯାଏ
ଯାହା ମିଳଇ ତାହା ପିନ୍ଧଇ ମୁଁ ରାୟେ ।
ଭୋଗ ଭୋଗ ଯେବେ ହୁଅଇ ଉପସ୍ଥିତ
ନାହିଁ ନ କରଇ ମୁଁ ଜାଣ ନୃପସୁତ ।
ଏରୂପେ ଅଜଗର-ବୃତ୍ତି ଆଶ୍ରେ କରି
ଦେଉଅଛୁ ମୁଁ ରାତ ଦିବସକୁ ସାରି ।
ଦଇବ ଦେନ ସୁଖ ଦୁଃଖ ଲାଭାଲାଭ
ହେଉଅଛି ମାନବମାନଙ୍କୁ ସୁଲଭ ।
ଏହାକୁ ଜାଣି ମୁହିଁ ନିବର୍ତ୍ତାଇ କାମ
ଭଜିଲି ଅଜଗରବୃତ୍ତି ଦୈତ୍ୟୋତ୍ତମ ।
ବ୍ରାହ୍ମଣ ସେବିତ ଅଟଇ ଏ ମାର୍ଗ
ଜାଣ ଆହେ ଦୈତ୍ୟନୃପତି ମହାଭାଗ ।
ହେ ଯୁଧିଷ୍ଠିର ରାଜା ଅଜଗର ବୃତ୍ତି
କଲେ ନ ପାଏ ଲୋକ କେବେହେଁ ବିପତ୍ତି ।
ପ୍ରହ୍ଲାଦ ଅଜଗରଙ୍କର ସମ୍ବାଦ
ପୂରିଲା କହେ କୃଷ୍ଣସିଂହ ବହୁ ମୋଦ ।



## ଶୃଗାଲ କାଶ୍ୟପ ସମ୍ବାଦ

ଯୁଧିଷ୍ଠିର ବୋଇଲେ ବାନ୍ଧବ କର୍ମବନ୍ତ
ପ୍ରଜ୍ଞାବ କଥାରେ ହେ କହ ଅଟେ ହିତ ।
ଭୀଷ୍ମ ବୋଇଲେ କେ ପ୍ରତିଷ୍ଠା ସ୍ୱର୍ଗଲାଭ
ମୋକ୍ଷ ଆଜ୍ଞା ସକାଶୁଁ ହୁଅଇ ସୁଲଭ ।
ବଳି ପ୍ରହ୍ଲାଦ ନମୁଚି ମଙ୍କି ଆଦି
ପ୍ରଜ୍ଞା ସକାଶରୁ ହୋଇଲେ ନିର୍ବିବାଦୀ ।
ପୂର୍ବରେ ବୈଶ୍ୟ ଜଣେ ଧନଗର୍ବେ ବହି
ରଥରୁ ଦେଲା ଋଷିଜଣଙ୍କୁ ପକାଇ ।
ଋଷି ବୈଶ୍ୟ ପକାଇ ଦେବା ନ ସହିଲେ
ଅଭିମାନ କରିଣ ମରିବି ବୋଇଲେ ।
ଇନ୍ଦ୍ର ତାହା ଜାଣି ଶୃଗାଳରୂପ ଧରି
ଆସିଲେ ଯୁଧିଷ୍ଠିର ଋଷିଙ୍କ ଦୁଆରି ।
କହିଲେ ହେ ଋଷି ମନୁଷ୍ୟ ଜନ୍ମସାର
ତା ପାଇଁ ତୁମ୍ଭେ କିମ୍ପା ଛାଡ଼ୁଚ ସଂସାର ।
ପୁଣି ନରଙ୍କରେ ବ୍ରାହ୍ମଣ ଜନ୍ମ ପରି
ଜନ୍ମ ନାହିଁ ଯେ ଅଟେ ଦେବତାଙ୍କ ସରି ।

ଯେଉଁରୂପେ ହାତକୁ ବନ୍ଧିଅଛ ତୁମ୍ଭେ
ସେରୂପେ ହାତ ଥିଲେ ତରନ୍ତୁତ ଆମ୍ଭେ ।
ହାତ ନଥିବା ଯୋଗୁଁ କଣ୍ଟା ଦେହେ ବାଜ
ରହିଥାଏ ରକତ ମାଉଁସରେ ମଜି ।
ହାତ ଥିବା ଲୋକର ଦେହେ ଯେବେ କଣ୍ଟା
ବାଜଇ ତା କାଢ଼ଇ ବଢ଼ କରି ଅଣ୍ଟା ।
ବରଷା ଖରା ହେଲେ ବାରଣକୁ ହସ୍ତ
ନ ଥିବାରୁ ଜାଣ ନ ପାଉ ଆମ୍ଭ ଶତ୍ରୁ ।
କୁକୁର ବାଘ ଶାଳୁ ବିଲୁଆ ତ ନୁହ
ମନୁଷ୍ୟ ଜନ୍ମ ବହି ବନ୍ଧ କମ୍ପା ମୋହ ।
ପାପଜନ୍ମତ ପାଇଅଛୁ ଆମ୍ଭେମାନେ
ଏଣୁ ପାପାଚରଣ କରୁ ପ୍ରତିଦିନେ ।
ନରମାନେ ଯେବେ ହୁଅନ୍ତି ମହୀପାଳ
ଭାବନ୍ତି କରୁପରେ ହେବା ଲୋକପାଳ ।
ଲାଭ ହେଉଥିଲେ ଯେ ବଢୁଥାଏ ଆଶା
ଯେ ରୂପେ ଅଗ୍ନି ଜଳେ ପାଇ ଘୃତବସା ।
ଜୀବଙ୍କର ଚିତ୍ତରେ ହର୍ଷ ଶୋକ ଆଦି
ଆଶା ଅନୁକ୍ରମରେ ଥାଏ ନିରବଧି ।
ଯେରୂପେ ଏବେ ତୁମେ ଲଭିଅଛ ଶୋକ
ହର୍ଷଲାଭ ଆମ୍ଭାରେ ଧରଣ ବିବେକ ।
ବୁଦ୍ଧି ଇନ୍ଦ୍ରିୟକୁ ହୃଦୟ ପଞ୍ଜୁରୀରେ
ରୁଦ୍ଧ କରି ନିର୍ଭୟେ ରହ ସଂସାରରେ ।
କାମନା ଯେଉଁ ମାର୍ଗ କରଇ ଆଶ୍ରୟ
ସେ ମାର୍ଗେ ଇନ୍ଦ୍ରିୟାଦି ଧାଏଁଟି ନିଶ୍ଚୟ ।
ଏଣୁ ବଳବନ୍ତ ରହିଥାଆନ୍ତି ହସ୍ତ
ହେଉଣ ଥାନ୍ତି ନର ମାନଙ୍କେ ପରାସ୍ତ ।
ଏ ବାହାରେ ଦାସତ୍ୱବୃତ୍ତି ଉପାସନା
ବଳବନ୍ତଙ୍କର ଅଟଇ ଏ କାମନା ।
ଚଣ୍ଡାଳ ଘର ଜନ୍ମୁଠାରୁ ଦ୍ୱିଜଯାଏ
ଭାଜୁଥାଆନ୍ତି ନିତି ମରିବାର ଭୟେ ।
ତୁମ୍ଭେ କପାଇଁ କହ ମରିବାକୁ ମନ
ବଳାଇଅଛ ହୋଇକରି ଦ୍ୱିଜଜନ ।
ବେଦଉକ୍ତ ଧର୍ମଫଳକୁ ମୋର ବୋଲି
ମାନ କରି, ବୋଲିଅ ଭବେ ଏବେ ଭଲ ।
ସତ୍ୟ ଦମ ଦାନ ପାଳନା କରି ଘରେ
ବସି ଭାବ ବ୍ରହ୍ମଙ୍କୁ ମନେ ନିରନ୍ତରେ ।

ଏରୂପେ ଲୋକଙ୍କର ଅମଙ୍ଗଳମାନ
କି ରୂପରେ ହୁଅଇ ନ ଜାଣଇ ମନ ।
ଉତ୍ତମ ମୁହୂର୍ତ୍ତରେ ଯେ ଜନ୍ମ ହୋଇଛୁ ।
ଦୁଃଖତାକୁ ବାଧି ନ ପାରଇ କହୁ ।
ପୂର୍ବେ ବେଦର ନିନ୍ଦା କରିବାରୁ ମୁହିଁ
ଦୁର୍ମୂହୂର୍ତ୍ତ ଜନ୍ମରୁ ବିଲୁଆ ହେଲଇଁ ।
ମନୁଷ୍ୟ ଯୋନି ଜନ୍ମ ପାଇବି ମୁଁ ଯେବେ
ପୁଣ୍ୟ କଥା କରି ତରିବି ଜାଣ ତେବେ ।
ତାହା ଶୁଣି କାଶ୍ୟପ ଦ୍ୱିଜ ସୁଖୀ ହୋଇ
ବିଲୁଆକୁ ପ୍ରଶଂସା କଲେ ତୋଷ ବହି ।
ଜ୍ଞାନ ଚକ୍ଷୁ ବଳରେ ଜାଣିଲେ ବିଲୁଆ—
ରୂପେ ଇନ୍ଦ୍ର ଆଗରେ ହୋଇଛନ୍ତି ଠିଆ ।
ପରିକ୍ରମା କରି କାଶ୍ୟପ ନମସ୍କାର
କରନ୍ତେ ତୋଷ ହୋଇଗଲେ ପୁରନ୍ଦର ।
କାଶ୍ୟପ ମଧ ମରଣରୁ ବୁଦ୍ଧି ନାଶି
ନିଜ ଘରେ ଆସି ବସିଲେ ସୁଖେ ହସି ।
ଶେଷ ହେଲା ଶୃଗାଳ କାଶ୍ୟପଙ୍କ ସମ୍ବାଦ
କହେ କୃଷ୍ଣସିଂହ ନୃପତି ବହି ମୋଦ ।



## ଗୁରୁସେବା

ଯୁଧିଷ୍ଠିର ବୋଇଲେ ଦାନ ତପ ଯାଗ
ଗୁରୁ ସେବା ମୋତେ କହ ହେ ମହାଭାଗ ।
ଭୀଷ୍ମ ବୋଇଲେ ହେ ଅନର୍ଥ ଯୁକ୍ତ ଲୋକ
ପାପ କରିବାରେ ଯାଉଛି ଦିନଯାକ ।
ଶ୍ରଦ୍ଧାଯୁକ୍ତ ହୋଇ ଯେ ଶୁଭ କର୍ମ କରେ
ଲଭଇ ସେ ସ୍ୱର୍ଗ ମୋକ୍ଷକୁ ଅକ୍ଲେଶରେ ।
ଧର୍ମଜ୍ଞାନ ନ ଥିବା ଲୋକକୁ ଅଗାଡ଼ି
ବୋଲି ବଚନରେ ଗଜନଟି ହେ ବୀର ।
ଯେ ଯେଉଁ କର୍ମ କରିଥାଏ ସେହି କର୍ମ
ଭୁଞ୍ଜଇ ଯୁଧିଷ୍ଠିର ହେଲେ ମର୍ତ୍ତ୍ୟ ଜନ୍ମ ।
ଫୁଲ ଫଳ ଯେରୂପେ କାଳ ଅତିକ୍ରମ
ନ ପାରେ କରି ସେହିରୂପେ ଜାଣ କର୍ମ ।
ପୂର୍ବ ଜନ୍ମେ ବାଲ୍ୟାବସ୍ଥାରେ ଶୁଭାଶୁଭ
କରିଥିଲେ ସେ ବାଲ୍ୟକାଳେ ହୋଏ ଲାଭ ।
ଏରୂପେ ଯୌବନ, ବାର୍ଦ୍ଧକ୍ୟ ଦୁଇ କଥା
ଶୁଭାଶୁଭ ଭୋଗ ଜାଣ ହେ ମହାରଥା ।

ଯେଉଁପେ ବାଳୁଙ୍ଗା ଗାଣ୍ଡକ ଅନୁସରେ
ଯାଏ ।ଣ କରମ ଅଟଇ ସେପରେ ।
ତପସ୍ୟା କରୁଥିଲେ ମନୋରଥ ବୃଦ୍ଧି
ତାହାଙ୍କ ହୋଇଥାଏ ହୁଅଇ ତା ସିଦ୍ଧି ।
ଜ୍ଞାନମାନଙ୍କର ତ ନୁହଇ ଜନମ
ଏଣୁ ତାଙ୍କ ଗତି ନ ଜାଣେ ନରୋତ୍ତମ ।
ଆପଣାର ହିତର ଅନୁରୂପ କଥା
କରୁଥିଲେ ଲୋକଟି ଗ୍ଲାନେ ସବ ବ୍ୟଥା ।



## ଭୃଗୁ ଭରଦ୍ୱାଜ ସମ୍ବାଦ ଓ ସୃଷ୍ଟି ତତ୍ତ୍ୱ

ଯୁଧିଷ୍ଠିର ବୋଇଲେ କା'ଠାରୁ ଜଗତ
ହେ ପିତାମହ କହ ହୋଇଅଛି ଜାତ ।
ପ୍ରଳୟରେ ଯାଇ ରହଇ କାହାଠାରେ
ପଚାରୁଛି ତ ମୁହିଁ କହ ମୋ ଆଗରେ ।
ଭୂମି ପରବତ ଯେ ବଳର ସ୍ୱଭାବ
ଶଉଚ ଅଶଉଚ ଧର୍ମାଧର୍ମ ଭାବ ।
ଜୀବ ଗଲେ କେଉଁଠାରେ ସେ ଯାଇ ରହେ
ଏହା ମଧ୍ୟ ମୋତେ କହିବା ହେଉ ସ୍ନେହେ ।
ଭୀଷ୍ମ ବୋଇଲେ ଅହେ କଇଳାସ ଶିଖେ
ଭୃଗୁ ଋଷି ଯେ ବସିଥିଲେ ମହାସୁଖେ ।
ଭରଦ୍ୱାଜ ଯାଇ ତାହାଙ୍କ ପାଦ ଧରି
ପଚାରିଲେ ଭୃଗୁଙ୍କୁ ପଚାରିବା ପରି ।
ଭୃଗୁ ବୋଇଲେ ହେ ସଂସାର-ସରଜନା
କହିବା ଶୁଣ ଭରଦ୍ୱାଜ ମହାମନା ।
ଅବ୍ୟକ୍ତ ଶାଶ୍ୱତ ଅନାଦି ଅବ୍ୟୟ
ହୋଇ ସେ ଜୀବ ଜନ୍ମ ଲୟର ଆଶ୍ରୟ ।
ମନରୁ ମହତ ସର୍ଜନା କରି ଶେଷ
ଅହଙ୍କାରୁ ଆକାଶ କଲେଟି ପ୍ରକାଶ ।
ଆକାଶରୁ ଜଳ ଯେ ହୋଇଲା ସମ୍ଭୂତ
ଜଳ କରିଲେ ଅଗ୍ନି ବାତଙ୍କୁଟି ଜାତ ।
ଅଗ୍ନି ଓ ପବନର ସଂଯୋଗରୁ ମହୀ
ହୋଇଲା ଜାଣ ଭରଦ୍ୱାଜ ଋଷିସାଇଁ ।
ମହୀ ପୁଣି ପଦ୍ମ କରନ୍ତେ ସରଜନା
ପଦ୍ମରୁ ଜାତ ହେଲେ ବ୍ରହ୍ମା ମହାମନା ।
ଚନ୍ଦ୍ର ସୂର୍ଯ୍ୟ ନୟନ ଆକାଶ ଉଦର
ପର୍ବତ ଅସ୍ଥି ନଦୀ ଶିରା ସ୍ୱର୍ଗ ଶିର ।

ସମୁଦ୍ର ରକ୍ତ ମହୀ ପାଦ ଦଶ ଭୁଜ
ଗନ୍ଧବହ ନିଃଶ୍ୱାସ ହୁତାଶନ ତେଜ ।
ଅଚିନ୍ତ୍ୟ ସେ ଜାଣ ହେ ଅଚିନ୍ତ୍ୟ ଅବ୍ୟୟ
ବିଶ୍ୱବ୍ୟାପୀ ଅନନ୍ତ ସର୍ବଭୂତାଶ୍ରୟ ।
ଭରଦ୍ୱାଜ ବୋଇଲେ ଭୂମି ଦିଗାକାଶ
ପରିମାଣ ମୋତେ କହ ହେ ଋଷିଈଶ ।
ଭୃଗୁ ବୋଇଲେ ହେ ଆକାଶ ପରିମାଣ
ନାହିଁ ମୋ କହିବାରୁ ଭରଦ୍ୱାଜ ଜାଣ ।
ଚନ୍ଦ୍ର ସୂର୍ଯ୍ୟ ଆକାଶ ମଧ୍ୟେ ଅନ୍ତର୍ଭୁକ୍ତ
ହୋଇ ହେଉଛନ୍ତି ନେତ୍ରକୁ ଉପଗତ ।
ଦେବେ ଆଜି ପର୍ଯ୍ୟନ୍ତେ ଆକାଶ ଅନ୍ତକୁ
ନ ପାଇଣ ଅନନ୍ତ ବୋଲନ୍ତି ତାହାକୁ ।
ମହୀ ଅନ୍ତେ ସମୁଦ୍ର ତଦନ୍ତେ ଅନ୍ଧାର
ତଦଅନ୍ତେ ଜଳ ତଦନ୍ତେ ବୈଶ୍ୱାନର ।
ପାତାଳ ଅନ୍ତେ ଜଳ ତହୁଁ ସର୍ପବର
ତଦଅନ୍ତେ ଆକାଶ ତଦଅନ୍ତେ ନୀର ।
ଅଦୃଶ୍ୟ ଅଗମ୍ୟ ନ ଆକାଶ ଅଟଇ
ତା ପରିମାଣ କହିବାକୁ ଲୋକ ନାହିଁ ।
ଭରଦ୍ୱାଜ ବୋଇଲେ ପଦ୍ମୁ ବ୍ରହ୍ମା ଜାତ
ହୋଇ କମ୍ପା ଦ୍ୱିଜ ବୋଲାନ୍ତି କହ ତ ।
ଭୃଗୁ ବୋଇଲେ ହେ ପୃଥିବୀ ପଦ୍ମ ମଧ୍ୟେ
ବ୍ରହ୍ମା ବସି ସୃଷ୍ଟି ସର୍ଜନା କଲେ ସଧେ ।
ମେରୁଟି ସେ ପଦ୍ମର କର୍ଣ୍ଣିକା ଅଟଇ
ମୋ କହିବାରୁ ଜାଣ ଭରଦ୍ୱାଜ ଭାଇ ।
ଭରଦ୍ୱାଜ ବୋଇଲେ ମେରୁମଧ୍ୟେ ଥାଇ
କରୁପେ ପ୍ରଜା ସରଜିଲେ ବେଦସାଇଁ ।
ଏହା ଶୁଣିବାକୁ ହେଉଛି ମୋର ମନ
କହ ତ ମୋତେ ଆହେ ଭୃଗୁ ତପୋଧନ ।
ଭୃଗୁ ବୋଇଲେ ହେ ମାନସ ପ୍ରଥମତ
ବିବିଧ ପ୍ରଜା କଲେ ମନରୁ ସଞ୍ଜାତ ।
ସେମାନଙ୍କ ପରାଣ ସଂରକ୍ଷଣ ପାଇଁ
ଜଳ ଆଗ ସର୍ଜିଲେ ବ୍ରହ୍ମା ପ୍ରୀତି ବହି ।
ଭରଦ୍ୱାଜ ବୋଇଲେ ଜଳ ଅଗ୍ନି ମହୀ
ବାତକୁ କରୁପେ ସର୍ଜିଲେ ବେଦସାଇଁ ।
ଭୃଗୁବୋଇଲେ ଆହେ ଶୁଣ ତପୋଧନ
ପୂର୍ବକାଳେ ଜନ୍ମିଲେ ବ୍ରହ୍ମର୍ଷିଗଣ ।

କିରୂପେ ସୃଷ୍ଟି ହେଲା ଜାଣିବା ଇଚ୍ଛାରେ
ନିଶ୍ଚଳ କଲେ ଧ୍ୟାନ ବସି ନିର୍ଜ୍ଜନେ ।
ତାଙ୍କ ଧ୍ୟାନ କରିବାରେ ହେ ଋଷିଗଣ
ହେଲା ଦିବ୍ୟବରଷେ ବର୍ଷ ଶତ ଶେଷ ।
ତଦନ୍ତେ ସେମାନଙ୍କ ହୃଦେ ସରସ୍ୱତୀ ।
ବ୍ରହ୍ମବାଣୀ ରୂପରେ ହେଲେ ମୂର୍ତ୍ତିମନ୍ତୀ ।
ଧ୍ୟାନସ୍ଥ ଋଷି କର୍ଣ୍ଣେ କଲେ ସେ ପ୍ରଚାର
ନୀରବ ନିଶ୍ଚଳଟି ଥିଲା ଏ ସଂସାର ।
ଆକାଶରେ ନ ଥିଲେ ଚନ୍ଦ୍ର, ସୂର୍ଯ୍ୟ ବାତ
ତମୋ ମଧ୍ୟେ ପ୍ରସୁପ୍ତ ଥିଲା ଏ ଜଗତ ।
ଆକାଶରୁ ଜଳ ଯେ ଜଳରୁ ପବନ
ବାୟୁଁ ଅଗ୍ନି, ଅଗ୍ନିରୁ ହେଲା ମହୀଜାଣ ।
ଏହି ବାଣୀ ସେମାନେ ମହାଧ୍ୟାନେ ଶୁଣି
ସଂଶୟ ଛଡ଼ାଇଲେ ସର୍ବେ ସେହିକ୍ଷଣି ।
ଭରଦ୍ୱାଜ ବୋଇଲେ ପାଞ୍ଚ ମହାଭୂତ
କାହିଁକି ବୋଲାଇଲେ କହ ମୋ ଅଗ୍ରତ ।
ଭୃଗୁ ବୋଇଲେ ଶୁଣ ପଞ୍ଚମହାଭୂତ
ଜଗତ କଲାରୁ ବୋଲାନ୍ତି ମହାଭୂତ ।
ବାୟୁ ଚେଷ୍ଟା ଆକାଶ ଇନ୍ଦ୍ର ଜଳ ଦ୍ରବ
ଅଗ୍ନି ଉଷ୍ମା ପୃଥ୍ୱୀ ସଂଘାତ ଋଷିଦେବ ।
ଥିବାରୁଟି ଦେହରେ ପଞ୍ଚମହାଭୂତ
ଘଟିତ ଏ ଶରୀର ବୋଲନ୍ତି ଜଗତ ।
ଏ ବାହାରେ ସ୍ଥାବର ଜଙ୍ଗମ ଯେତେକ
ପଞ୍ଚମହାଭୂତରେ ଘଟିତ ତେତେକ ।
ଭରଦ୍ୱାଜ ବୋଇଲେ ସ୍ଥାବର ଦେହରେ
ପଞ୍ଚଧାତୁ ନ ଦେଖୁଥାଇଁ ନୟନରେ ।
ଶ୍ରବଣ ଦରଶନ ଆଘ୍ରାଣ ସ୍ପରଶ
ରସ ତ ତାଙ୍କଠାରେ ନାହିଁ ଋଷିଗଣ ।
ଭୃଗୁ ବୋଇଲେ ହେ ବୃକ୍ଷରେ ସାନ୍ଦ୍ର ହୋଇ
ଥିଲେ ପୁଷ୍ପ ଫଳେ ଆକାଶ ଅଛି ରହି ।
ଉଷ୍ମ ଶୀତ ଯୋଗୁଁ ହୋଇଛି ପତ୍ର ମ୍ଳାନ
ଏ ସକାଶୁଁ ସ୍ପର୍ଶ ହେଉଛି ଦ୍ୱିଜ ଜାଣ ।
ବାତ ବହ୍ନି ବଜ୍ର ଶବଦ ଆକାଶରୁ
ଫଳ ପୁଷ୍ପେ ଝଡ଼ି ତ ପଡ଼ନ୍ତି ବୃକ୍ଷରୁ ।
ଏହି ସକାଶରୁ ମୁଁ ବୋଲୁଥାଇ ଶ୍ରୋତ
ଅଛି ଶୁଣୁଅଛନ୍ତି ସେ କଥା ସମସ୍ତ ।
ଯାହା ବୃକ୍ଷଙ୍କରେ ବେଢ଼ୁଛି ଲତାଗଣ
ଦୃଷ୍ଟି ନ ଥିଲେ କି ଏ କଥା ହୋଏ ଜାଣ ।
ଧୂପ ଦେବାରେ ଯାହା ଫୁଲ ଫୁଟୁଅଛି
ଆଘ୍ରାଣ ନ ଥିଲେ କି ଏ କଥା ଘଟୁଛି ।
ବୃକ୍ଷଙ୍କ ମୂଳରେ ରହିଛି ଖାଉଖଣ୍ଡି
ନୋହିଲା ପାଣି ଦେଲେ ବଢ଼େ କମ୍ପା ଗଣ୍ଡି ।
କାଟିଲେ ଛେଳିଗଣ୍ଡେ ମିଶିଯାଉଅଛି
କେହିଁ ପ୍ରାଣ ନାହିଁ ବୋଲିବା ଋଷିବର୍ଗି ।
ସବୁ ଜଙ୍ଗମଯାକେ ପଞ୍ଚମହାଭୂତେ ।
ପ୍ରତ୍ୟେକେ ଭିନ୍ନେ ଭିନ୍ନେ ଅଛନ୍ତି ନରତେ ।
ତ୍ୱକ ମାଂସ ଅସ୍ଥି ସେ ମଜ୍ଜା ସ୍ନାୟୁ ମନ୍ଥା
ଏକାର ବୋଲି ଜାଣ ଦ୍ୱିଜ କହୁଥାଇଁ ।
ତେଜ-ଜଠର ଅଗ୍ନି-ଚକ୍ଷୁ ଉଷ୍ମା-କ୍ରୋଧ
ଅଗ୍ନି ସମ୍ବନ୍ଧଟି ମନରେ କର ବୋଧ ।
ଶ୍ରୋତ୍ର ଘ୍ରାଣ ମୁଖ ସେ ହୃଦୟ ଉଦର
ଏତେ କଥାଯାକ ଅଟଇ ଆକାଶର ।
ଶ୍ଳେଷ୍ମା ପିତ୍ତ ସ୍ୱେଦ ବସା ରକତକୁ
ଜଳଟି କରୁଛି ଅଙ୍ଗରେ ଜନମକୁ ।
ପ୍ରାଣ ବ୍ୟାନ ଅପାନ ସମାନ ଉଦାନ
ଏ ପାଞ୍ଚୋଟି ପବନ ଦେହେ ଥାନ୍ତି ଜାଣ ।
ପ୍ରାଣ-ପବନ ସକାଶୁଁ ଅଛି ଯେ ପ୍ରାଣ
ବ୍ୟାନ-ବ୍ୟାତ ସକାଶୁଁ ଚେଷ୍ଟା କରେ ଜାଣ ।
ଅପାନ ସକାଶୁଁ ପୁରୀଷ ମୂତ୍ର ଦୁଇ
ପେଟରୁ ବାହାରଟି ମହୀରେ ପଡ଼ଇ ।
ସମାନ-ପବନ ତ ଅଛି ହୃଦୟରେ
ଜ୍ଞାନ କରାଉଛି ସେ ସବୁ ବିଷୟରେ ।
ଉଦାନ-ପବନର ସକାଶୁଁ ନିଃଶ୍ୱାସ
ପ୍ରଶ୍ୱାସ ହୋଇ ମଧ୍ୟ କୁହାଉଛି ଭାଷ ।
ଭୂମି ସକାଶୁଁ ପ୍ରାଣୀମାନଙ୍କର ନାକ
ଜାଣୁଅଛି ଏ ଜଗତ ବାସନାଯାକ ।
ଜଳସକାଶରୁ ସ୍ୱାଦକୁ ଜାଣୁଅଛି
ଜ୍ୟୋତିସକାଶରୁ ଜଗତ ଦେଖୁଅଛି ।
ଆକାଶ ସକାଶରୁ କାନରେ ଶବଦ
ସେହି ଭଲମନ୍ଦ ବୁଝୁଛି ବହି ମୋଦ ।
ପବନ ସକାଶରୁ ସ୍ପରଶ ଜାଣୁଛି
ସନ୍ଦେହ ଏଥି ନାହିଁ କହୁଛି ଦ୍ୱିଜବର୍ଗି ।

ଭରଦ୍ୱାଜ ବୋଇଲେ ପାର୍ଥିବ ଦେହରେ
କହ ପ୍ରାଣ ଅଗ୍ନି ରହିଅଛି କି ରୂପରେ ।
ଭୃଗୁ ବୋଇଲେ ଆହେ ଅଗ୍ନି ପ୍ରାଣବାତ
ବ୍ରହ୍ମଙ୍କ ଚରିତ କହିବା ଧ୍ୟାଅ ଚିତ୍ତ ।
ମୂର୍ଦ୍ଧାରେ ଥାଇ ଅଗ୍ନି ଦେହଯାକ ବ୍ୟାପି
ପାଳୁଅଛି ଦେହକୁ ନୋହି କିଛି କୋପୀ ।
ପ୍ରାଣ ମୂର୍ଦ୍ଧାଅଗ୍ନିରେ ଥାଇ ଭ୍ରମୁଅଛି
ଏଥିରେ ମନନ୍ଦନ ନଜର ଋଷିବର୍ଷି ।
ପ୍ରାଣକୁହି ବ୍ରହ୍ମ ବୋଲନ୍ତି ସବୁ ଲୋକେ
ପ୍ରାଣକୁ ସେବିଲେଟି ନ ପଡ଼ି ନରକେ ।
ହୃଦୟେ ସମାନ-ପବନ ରହିଅଛି
ପେଟରେ ଆହାରକୁ ଖେଳାଇ ଦେଉଛି ।
ମୂତ୍ର ପୁରୀଷକୁ ଯେ ବହଣ ଅପାନ
କରୁଛି ନାଭିତଳେ ଗୁହ୍ୟଦ୍ୱାର ସ୍ଥାନ ।
ଅତି ଯତନରେ ଉଦାନ ପବନଟି
ଶରୀରର ଚେଷ୍ଟାକୁ କରଅଛି ଗୋଟି ।
ସବୁ ସନ୍ଧିସ୍ଥାନରେ ରହିଛି ଯେ ବାତ
ବ୍ୟାନ ତାର ନାମ ହେ ଜାଣ ଋଷିସୁତ ।
ପ୍ରାଣୀମାନଙ୍କ ଦେହ-ଛିଦ୍ରକୁ ଶ୍ଳେଷ୍ମାଦି
ଉପୁଜୁ ଅଛନ୍ତିଟି ହୋଇ ନିର୍ବିବାଧି ।
ଏ ପାଞ୍ଚପବନ ମିଶନ୍ତି ଯେଉଁ କାଳେ
ସେକାଳରେ ଲୋକ ବସନ୍ତି ଯମ-ଆଳେ ।
ନାଭି ତଳ ଉପରେ ପକ୍ୱ ଆମାଶୟ
ସବୁବେଳେ ହେ ଋଷି ହୋଇଛି ଉଦୟ ।
ପ୍ରାଣ-ପବନରେ ପ୍ରେରିତ ଅନ୍ନ ହୋଇ
ଦଶ ନାଡ଼ିଯାକରେ ବ୍ୟାପିଛି ଯାଅଇ ।
ଏହି ମାର୍ଗକୁ ଜାଣି ସାଧଇ ଯେ ଯୋଗ
ଦେହଛାଡ଼ିଲେ ସେ କରଇ ସ୍ୱର୍ଗଭୋଗ ।
ଭରଦ୍ୱାଜ ବୋଇଲେ ବାୟୁ ଧେନ ଦେହ
ଚେଷ୍ଟା ତ ହେଉଛି କହିଲ ଋଷି-ସିଂହ ।
ଜୀବକୁ ସମାଦର କରିବାରେ କିଛି
କାର୍ଯ୍ୟ ନାହିଁ ବୋଲି ଜାଣ ମୁଁ ବୋଲୁଅଛି ।
ଖାଇବା ଆହାରକୁ ଅଗ୍ନି ପାକ କରେ
ଜୀବରେ ଆଦର କରିବା କିରୂପରେ ।
ଉଷ୍ମାରେ ଧ୍ୟାନ ହେଲେ ପ୍ରାଣୀର ଶରୀର
ବୋଲୁଥାଇ ସାକ୍ଷାତେ ଗଲା ଯମପୁର ।
ପଞ୍ଚମହାଭୂତରୁ ଏକୋ ନାଶ ଗଲେ
ସ୍ୱେତାଚିଯାକ ଜାଣ ଯାନ୍ତି ନାଶ ଭଲେ ।
ଆହାର ନ ଖାଇଲେ ଜଳ ନାଶ ପାଏ
ନ ପଡ଼ିଲେ ନିଃଶ୍ୱାସ ବାୟୁ ଛାଡ଼ି ଯାଏ ।
ପେଟ ଫାଟିଗଲେ ଆକାଶ ଯାଏ ନାଶ
ବ୍ୟାଧିରେ ନାଶ ହୋଏ ପୃଥ୍ୱୀ ପାଇ କ୍ଳେଶ ।
ନ ଖାଇଲେ ଅନଳ ପେଟ-ଭୃଣ ପାଇ
ଜଳି ଜଳି ତାର ଇଚ୍ଛାରେ ନିବର୍ତ୍ତଇ ।
ଏ ମଙ୍କାଶୁଁ ସିନା ମୁଁ କହୁଛି ତୁମ୍ଭଙ୍କୁ
ଜୀବ ଅଛି ବୋଲି କି ଆଣିବା ମନକୁ ।
ଗାଈ ଗୋଟି ଦାନ ଦେଇ ଯେ ମରନ୍ତି
ସେ ଗାଈ ତାହାକୁ କାହୁଁ ତାରେ କହ ଯତି ।
ଯେତେବା ଲୋକ ଗାଈ ଭୂଲରେ ମର୍ତ୍ତ୍ୟରେ
ମରୁଅଛି ତ ଦେଖୁଥାଇଁ ନୟନରେ ।
ଜୀବ ହୋଇ କଥାଏ ଥାନ୍ତା ଯେବେ ରହି
ମରିଲେ ଲୋକ ତ ଜୀଅନ୍ତା କାହିଁପାଇଁ ।
ଭୃଗୁ ବୋଇଲେ ହେ ଜୀବର ନାହିଁ ନାଶ
କିସ ପଚାରୁଅଛ ମୋତେ ଋଷିଈଶ ।
ଦେଖୁଛ ତ ଅଗ୍ନି ଲଗିଲା କାଠ ପୋଡ଼ି
ଆନ କାଠ ଭିତରେ ରହେ ଯାଇ ବୁଡ଼ି ।
ସେରୂପରେ ଏ ଜୀବ ଛାଡ଼ି ଏ ଦେହକୁ
କରଇ ଯାଇ ଆଶ୍ରା ଆନ ଶରୀରକୁ ।
ଭରଦ୍ୱାଜ ବୋଇଲେ କାଠ ସରିଗଲେ
ଲିଭିଲା ବୋଲି ଅଗ୍ନି ବୋଲନ୍ତିଟି ଭଲେ ।
ଶରୀର ନାଶ ଗଲେ ଜୀବର ବିନାଶ
କାହିଁପାଇଁ ନୋହିଲା କହତ ଋଷିଶ ।
ଭୃଗୁ ବୋଇଲେ ହେ ଜୀବନ ନାଶ ବୋଲି
ଭରଦ୍ୱାଜ ଋଷି ନ ବସ ମନେ ଭାଳି ।
ଦେହରେ ଯେଉଁ ଅଗ୍ନି ଧରିଅଛି ପ୍ରାଣ
ଜୀବ ବୋଲି କରି ତାହାକୁ ଏବେ ଜାଣ ।
ସେ ଅଗ୍ନି ଯେତେବେଳେ ଭଜଇ ବିନାଶ
ଯେତେବେଳେ ଜାଣ ଶରୀର ହୋଏ ନାଶ ।
ସେକାଳେ ପଞ୍ଚଭୂତେ ଛାଡ଼ଣ ଦେହକୁ
ବାହାରଣ ଯାନ୍ତି ଯେ ଯାହା ସ୍ଥାନକୁ ।
ଭରଦ୍ୱାଜ ବୋଇଲେ ପଞ୍ଚମହାଭୂତ—
ରୂପେ ଦେହେ ଜୀବ କିରୂପେ ହୋଇ ସ୍ଥିତ ।

ଦେହ କି ନାଶ ଗଲେ ଜୀବକୁ ନ ଦେଖି
ଜୀବ ଯାଏ ବୋଲି ତ ଶାସ୍ତ୍ର ଅଛି ଲେଖି ।
ଜୀବନକୁ ପ୍ରଭୁ ମନ ଅଟଇ ପ୍ରଧାନ
ସହିଁ ଥାଏ ମନ ତହିଁକି ହୋଏ ଜ୍ଞାନ ।
ମନକୁ ନେଇ ଯୁକ୍ତ କରଣ ପଦାର୍ଥ
ଦେଖିଣ ଲୋକ କରୁଥାଏ ସୁଖ ସ୍ୱାର୍ଥ ।
ହର୍ଷ କ୍ରୋଧ ଉଦ୍‌ବେଗ ଶୋକ କରିବାର
କାହାର ଦେହେ ହୋଏ କହ ମୁନିବର ।
ଭୃଗୁ ବୋଇଲେ ହେ ଦେହରେ ବ୍ରହ୍ମ ଥାଇ
ସୁଖ ଦୁଃଖ ଗନ୍ଧ ରସକୁ ସେ ନେଇ ।
ଦେହଟି ମଧ୍ୟେ ଯେଉଁ ଜୀବ ଅଛି ରହି
ପଦ୍ମରେ ଜଳବିନ୍ଦୁ ପ୍ରାୟେ ଜାଣ ସେହି ।
ଏହି ସକାଶୁଁ କହୁଥାଏଁ ଦେହ ନାଶ
ଗଲେ ଜୀବ କେବେ ନୁହଇ ଜାଣ ଧ୍ୱଂସ ।
ଛାଡ଼ିଲେ ଦେହ ଆନ ଦେହେ ଜୀବ ଧରି
ଯାହା ଅର୍ଜିଥାଏ ତା ଯାଇ ଭୋଗକରେ ।
ଜ୍ଞାନ-ଦୃଷ୍ଟି ବଳରେ ଯୋଗୀଏ ଜୀବକୁ
ଦେଖନ୍ତି ଭରଦ୍ୱାଜ ଜାଣ ହେ ମନକୁ ।
ପରମଆତ୍ମାଜ୍ୟୋତି ଅଟଇଟି ଜୀବ
ମୋ କହିବାରୁ ଭଲ କରି ମନେ ଭାବ ।
ପୂର୍ବେ ବ୍ରହ୍ମା ଆଗ ଦ୍ୱିଜଙ୍କୁ ସରଜିଲେ
ସ୍ୱର୍ଗର ପାଇଁ ସତ୍ୟଧର୍ମ ବେଦ କଲେ ।
ଦେବତା ଯକ୍ଷ ଦୈତ୍ୟ ଦାନବ ଗନ୍ଧର୍ବ
ଆଦିଙ୍କି ସରଜିଲେ ମଧ୍ୟ ବହି ଭାବ ।
ଯୁଗ ବର୍ଣ୍ଣଯାକର ହେବ ଯୁଗବର୍ଣ୍ଣ
ଯେରୂପେ ସୃଜିଲେ ତା ଦେଇ ଶୁଣ କର୍ଣ୍ଣ ।
ଶୁକ୍ଳ ରକ୍ତ ପୀତ କୃଷ୍ଣ ବରନରେ
ହୋଇଲା ଭରଦ୍ୱାଜ ଘେନ ହେ ମନରେ ।
ଭରଦ୍ୱାଜ ବୋଇଲେ ଯୁଗବର୍ଣ୍ଣଙ୍କର
ବର୍ଣ୍ଣଶଙ୍କର ତ ଅଛି ହେ ଋଷିବର ।
କାମ କ୍ରୋଧ ଯେ ଲୋଭ କ୍ଷୁଧା ଚିନ୍ତା ମୋହ
ସବୁଠାରେ ସମାନ ନ ହୁଏ ଉଦୟ ।
ଶ୍ଲେଷ୍ମା ସ୍ୱେଦ ମୂତ୍ର ପୁରୀଷ ପିତ୍ତ ରକ୍ତ
ଯୁଗବର୍ଣ୍ଣ ଅଙ୍ଗରୁ ହେଉଅଛି ଜାତ ।
ଏହି ସକାଶରୁଟି କହୁଅଛି ମୁହିଁ
ବର୍ଣ୍ଣବିଭାଗ ମୋତେ ଜଣା ଯାଉନାହିଁ ।

ଭୃଗୁ ବୋଇଲେ ଆଦ୍ୟ ପ୍ରଥମ ବ୍ରାହ୍ମଣ
ସରଜନା କରିଲେ ପାର୍ବତୀ-ରମଣ ।
ଭୋଗ ପ୍ରିୟ ତୀକ୍ଷ୍ଣ କ୍ରୋଧନ ଯେତେ ଦ୍ୱିଜ
ହୋଇଲେ ସେହି ଜାଣ ମଧ୍ୟରେ ବାହୁଜ ।
ଯେତେ ଦ୍ୱିଜ ଗାଈ ରଖି କୃଷି କଲେ
ଏ ମଧ୍ୟରେ ସେ ବୈଶ୍ୟ ଜନ ବୋଲାଇଲେ ।
ସବୁ କର୍ମକୁ ତ୍ୟାଗ କଲେ ଯେତେ ଦ୍ୱିଜ
ଶୂଦ୍ର ହୋଇଲେ ସେ ଜାଣ ଯେ ଭରଦ୍ୱାଜ ।
ଧର୍ମ-କର୍ମ- ବର୍ଜିତ ସ୍ୱେଚ୍ଛାଚାରୀ ଦ୍ୱିଜ—
ମାନେ ହୋଇଲେ ଜାଣ ଚଣ୍ଡାଳ ସମାଜ ।
ଭରଦ୍ୱାଜ ବୋଇଲେ ଯେଉଁ କର୍ମ କଲେ
କି ବର୍ଣ୍ଣ ଭଜେ ସ୍ପଷ୍ଟ କହ ତାହା ଭଲେ ।
ଭୃଗୁ ବୋଇଲେ ହେ ଅଟଇ କର୍ମଯୁତ
ଦଶକର୍ମରେ ଯେ ହୁଅଇ ସଂସ୍କୃତ ।
ଶଉଚାଚାରପର ବେଦ-ଅଧ୍ୟୟନ
ସମ୍ପନ୍ନ କରୁଥାଏ ବିଘସଅଶନ ।
ସତ୍ୟ ଦାନ ଅକ୍ରୋଧ କ୍ଷମା ଦୟା ତପ
ଅନୃଶଂସ୍ୟ ଯାହାଠାରେ ରହିଛି ଅମାପ ।
ତାହାଙ୍କୁ ଏକା ଦ୍ୱିଜ ବୋଲିକରି କହି
ଏ ନ ଥିଲେ କେବେହେଁ ବ୍ରାହ୍ମଣ ନୁହଇ ।
ବେଦପଢ଼ି ଯୁଦ୍ଧ ଯେ ପ୍ରାଣୀଗଣ ରଖେ
କ୍ଷତ୍ରିୟ ବୋଲାଏ ସେ ସବୁଙ୍କର ମୁଖେ ।
ବେଦ ପଢ଼ି କୃଷି କରି ଯେ ରଖେ ଗାଈ
ବୈଶ୍ୟ ବୋଲି କରି ଯେ ତାହାଙ୍କୁଟି କହି ।
ଆମିଷାଦି ଭକ୍ଷଣେ ଥାଏ ପ୍ରୀତି କରି
ଯାବନ୍ତ ନାସ୍ତିର କଥାକୁ ଆଚରି ।
ଏରୂପେ ଯେଉଁ ଦ୍ୱିଜ ତାକୁ ବୋଲି ଶୂଦ୍ର
ଏହି ବୁଦ୍ଧିରେ ଲୋଡ଼ ଥାଏ ସେ ଅଭଦ୍ର ।
ସବୁ ଉପାୟରେ କ୍ରୋଧ ଲୋଭ ଏ ଦୁଇ
ଛାଡ଼ିବାର ଉଚିତ ଦ୍ୱିଜର ଅଟଇ ।
କ୍ରୋଧ ହେବା ଲୋକର ନ ରହେ ସମ୍ପତ୍ତି
ବଳାତ୍କାରେ ତାହାର ହୁଅଇ ବିପତ୍ତି ।
ମାନ ଅପମାନରୁ ରଖୁଥିବା ବିଦ୍ୟା
ଛାଡ଼ି ଦେଲେଟି ଯୋଟି ରହଇ ସର୍ବଦା ।
ନିଜକୁ ରଖୁଥିବ ସଦା ପ୍ରମାଦରୁ
ନୋହିବ ହୃଦୟରେ ଅଭିଶାପ୍ ଖାରୁ ।

ନିଷ୍କାମ କର୍ମ ଯେହୁଁ ଲୋକଟି କରଇ
ତ୍ୟାଗୀ ବୋଲି ଜଣଟି ତାହାକୁହିଁ କହି ।
ତପୋନିଧି ଦାନ୍ତ ସଂଯତ-ଆତ୍ମା ବିନା
ବ୍ରହ୍ମକୁ ଜାଣି ନ ପାରେ ହେ ମହାମନା ।
ଇନ୍ଦ୍ରିୟରେ ଯେତେ ପଦାର୍ଥ ଜାଣୁଥାଇ
ବ୍ୟକ୍ତ ବୋଲିକରି ତାହାକୁହିଁ କହି ।
ଅନୁମାନେ ଯେତେକ ପଦାର୍ଥ ବ୍ୟକ୍ତ
ହେଉଛି ନାମ ତା'ର ଜାଣ ଅବ୍ୟକ୍ତ ।
ସବୁ ପ୍ରାଣୀଙ୍କଠାରେ କରିବ ବିଶ୍ୱାସ
ରୁନ୍ଧ ରଖିଥିବଟି ମାନସ ନିଃଶ୍ୱାସ ।
ପ୍ରାଣ ଯେ କାଳେ ଯାଇ ବ୍ରହ୍ମରେ ରହଇ
ମୁକ୍ତିଭାବନାହିଁ ଜାଣ ସେ ହୁଅଇ ।
ନିର୍ବେଦ ହେଲେ ହୋଏ ଦ୍ୱିଜଙ୍କର ମୋକ୍ଷ
ଯେଣୁ ଛାଡ଼ିଯାଏ ମନରୁ ସବୁ ସୌଖ୍ୟ ।
ସବୁକାଳେ ଆଚାର-ଦୟା-ଶୌଚବନ୍ତ
ଦ୍ୱିଜ ହେଲେ ବ୍ରାହ୍ମଣ ହୁଅଇ ପ୍ରାପତ ।
ପ୍ରଜା ଲୋକ ସୃଷ୍ଟି ଧାରଣ ତପୋଧର୍ମ
ସତ୍ୟ ଥିବା ଲୋକର ଏହି ଜାଣ କର୍ମ ।
ମିଥ୍ୟା ଯେ ଅଜ୍ଞାନର ସ୍ୱରୂପ ଅଟଇ
ଅଜ୍ଞାନ ଯୋଗୁ ନରକ ହୁଅଇ ।
ଏ ସଂସାରେ ସତ୍ୟ ମିଥ୍ୟାରେ ଭ୍ରମିକରି
ପଣ୍ଡିତ ଅପଣ୍ଡିତ ଛନ୍ତି ପରସ୍ପରେ ।
ଜାଣିବା ଲୋକ ଲୋକସୃଷ୍ଟି ଦୁଃଖମୟ
କରଣେ ନ କରନ୍ତି ତହିଁରେ ହୃଦୟ ।
ଇହ ପର ଦୁଇରେ ପ୍ରାଣୀଙ୍କର ସୁଖ
ଅନିତ୍ୟ ଅଟଇ ହେ ଜାଣ ଋଷିଶିଖ ।
ମୋହଗ୍ରସ୍ତ ଶୋକଙ୍କ ପରାୟେ ଅଜ୍ଞାନ
ଆବୃତ ଲୋକଙ୍କର ଯାଏ ସୁଖମାନ ।
ଧର୍ମ ଅର୍ଥ କାମରେ ପ୍ରବର୍ତ୍ତିତ ଲୋକ
ଭୋଗ କରୁଛନ୍ତି ସଂସାରେ ସୁଖପାକ ।
ଭରଦ୍ୱାଜ ବୋଇଲେ ବ୍ରହ୍ମା ଶିବ ଋଷି
ମାନେ ସେ କାମରେ ତ ନୁହନ୍ତି ଲାଳସୀ ।
କାହିଁପାଇଁ କହିଲ ସ୍ତ୍ରିୟଙ୍କର ସଙ୍ଗ
ସୁଖ ବୋଲିଣ ମୋତେ ଲାଗୁଅଛି ଖଙ୍ଗ ।
ଭୃଗୁ ବୋଇଲେ ହେ ଅଜ୍ଞାନଗ୍ରସ୍ତ ଲୋକେ
କାମରେ ମାତିକରି ପଡ଼ନ୍ତି ନରକେ ।

ପିପାସା କ୍ଷୁଧା ଜରା ସୁଖ ଦୁଃଖ ରୋଗ
ସମ୍ବାଧ ବହିଲେ ତ ନ ମିଳଇ ସ୍ୱର୍ଗ ।
ଭରଦ୍ୱାଜ ବୋଇଲେ ତପ ଧର୍ମ ଦାନ
ସ୍ୱାଧ୍ୟାୟ ହୋମଫଳ କହ ତପୋଧନ ।
ଭୃଗୁ ବୋଇଲେ ଜାଣ ବେଦ ଯେ ପଢ଼ଇ
ଅଲଭ୍ୟରେ ଶାନ୍ତିପଥକୁ ସେ ଲଭଇ ।
ହୋମ କଲେ ଲୋକର ହୋଏ ପାପନାଶ
ଦାନ ଦେଲେ ଭୋଗ ହୁଅଇ ପରକାଶ ।
ତପ କଲେ ଲୋକକୁ ସମ୍ବାଦ ଅହସ୍ର
ସ୍ୱର୍ଗେ ପୂଜା କରନ୍ତି ଜାଣ ତପସ୍କାର ।
ଭରଦ୍ୱାଜ ବୋଇଲେ ଧର୍ମ ଆଚରଣ
ଲକ୍ଷଣ ମୋତେ କହ ଋଷିକୁଳରଣ ।
ଭୃଗୁ ବୋଇଲେ ହେ ସ୍ୱଧର୍ମ ଆଚରଣ
ଯେ କରଇ ତାକୁ ମିଳଇ ସ୍ୱର୍ଗ ଜାଣ ।
ଭରଦ୍ୱାଜ ବୋଇଲେ ଗୃହଆଶ୍ରମଙ୍କ
କଥା ମୋତେ କହ ହେ ଋଷିଙ୍କ ତିଳକ ।
ଭୃଗୁ ବୋଇଲେ ହେ ଲୋକଙ୍କ ହିତପାଇଁ
ଚାରି ଆଶ୍ରମକୁ ସୃଜିଲେ ବେଦସାଇଁ ।
ଗୁରୁପାଖରେ ରହିବାଟି ପ୍ରଥମ
ବ୍ରହ୍ମଚର୍ଯ୍ୟ ଆଶ୍ରମ ବୋଲନ୍ତି ଜାଣ ।
ନିତ୍ୟ କରି ଶୌଚ ସଂସ୍କାର କରିବ
ଦ୍ୱିସନ୍ଧ୍ୟାକାଳେ ସୂର୍ଯ୍ୟ ଅଗ୍ନିଙ୍କି ସେବିବ ।
ତନ୍ଦ୍ରା ଆଳସ୍ୟକୁହିଁ କରିଦେବ ଦୂର
ଗୁରୁପୂଜାରେ ସଦା ଥିବ ତତପର ।
ଗୁରୁଠି ଶିଖାଇବା ବେଦକୁ ମୁଖେ ବାଢ଼ି
ବହିବ ସେ ତହୁଁ ପାପଗୋଟିକ ଛାଡ଼ି ।
ଏବେ ଶୁଣ ଦ୍ୱିତୀୟ ଆଶ୍ରମ ଚରିତ
ଆହେ ଭରଦ୍ୱାଜ ତପସ୍ୱୀକୁଳସୁତ ।
ସଦାର ହୋଇ ଧର୍ମ ଆଚରିବ ଗୃହୀ
ଅର୍ଥ କାମ ଦୁହିଁଙ୍କି ହୃଦୟରେ ଧ୍ୟାୟି ।
ଅନିନ୍ଦିତ କରମ କରି ଧନକୁ
ଅରଜିବାରେ ଦେବ ବହିଣ ମନକୁ ।
ଏହି ଆଶ୍ରମରେ ଗୃହସ୍ଥାଶ୍ରମ ମୂଳ
ଆଉ ତିନି ଆଶ୍ରମ ଗଣ୍ଡି ଡାଳ ଫଳ ।
ବୈଷ୍ଣବ ହୋଇ ଭିକ୍ଷା ବୁଲଇ ଯେ ନର
ଦେଖିଲେ ତାକୁ ନିତି କରିବ ଜୁହାର ।

ଅତିଥି ଅପୂଜାରେ ଯେବେ ଫେରିଯାଏ
ଗୃହୀର ଦେହୁ ଦୋଷ ନାଶକେ ମଜ୍ଜାଏ ।
ଯାଗ ଦେବେ ଶ୍ରାଦ୍ଧରେ ପିତୃଦେବେ ଋଷି ।
ସନ୍ତୋଷ ହୁଅଇଟି ବେଦ ଅଛୁ ଭାଷି ।
ପୁତ୍ର ଜାତ ହୋଇଲେ ପ୍ରଜାତନ୍ତଗଣ
ଆନନ୍ଦକୁ ଅବଶ୍ୟ ଲଭନ୍ତିଟି ଜାଣ ।
ଅବଜ୍ଞା ଅହଙ୍କାର ଦମ୍ଭ ଛାଡ଼ି ଦେଇ
କହିବ ଲୋକଙ୍କୁ କୋମଳ ହୃଦ ବହି ।
ଗୃହସ୍ଥାଶ୍ରମେ ବସ୍ତ୍ର ଆଭରଣ ନୃତ୍ୟ
ଗୀତ ଭକ୍ଷ୍ୟ ଭୋଜ୍ୟ ଅଛି ହେ ଋଷିସୁତ ।
ଉଞ୍ଛବୃତ୍ତିକ ଯେଉଁ ଗୃହୀଟି କରଇ
ଅଲଭ୍ୟରେ ସ୍ୱରଗ ପଦ ସେ ଲଭଇ ।
ବାନପ୍ରସ୍ଥ କରିବା ଲୋକେ ବୁଲି ତୀର୍ଥ
ଅରଣ୍ୟେ ତପରେ ହୁଅନ୍ତି କୃତାର୍ଥ ।
ବାନପ୍ରସ୍ଥ ଲୋକେ ବଢ଼ାଇ ଦେଇ ଦାଢ଼ି
ଦେହ ଶୁଖାଅନ୍ତି ମୁଖରେ ବେଦ ପଢ଼ି ।
ଭିକ୍ଷୁ ଆଶ୍ରମକୁ କରନ୍ତି ଯେତେ ଜନ
ସମ୍ପତ୍ତି ଭାର୍ଯ୍ୟାଦିରୁ ନିବର୍ତ୍ତାନ୍ତି ମନ ।
ଢେଲା ସୁନାଠାରେ ସମାନ ବୁଦ୍ଧି କରି
ହିତ ଅହିତକୁ ମନରେ ନ ବିଚାରି ।
ପ୍ରାଣୀମାନଙ୍କଠାରେ ନ କରନ୍ତି ଦ୍ରୋହ
ଶତ୍ରୁ ମିତ୍ରଠାରେ କରିଥାନ୍ତି ସ୍ନେହ ।
ପରବତ ପୁଳିନ ଦେବ ଆୟତନେ
ରହିଥାଆନ୍ତି ସ୍ଥାନ କରି ଅବିଚ୍ଛିନ୍ନେ ।
ଭିକ୍ଷା କରି ଯେବେ ଆସନ୍ତି ନଗରକୁ
ପାଞ୍ଚରାତ୍ରି ରହିଯାଆନ୍ତି ଅରଣ୍ୟକୁ ।
ଏରୂପେ ଚୌ ଆଶ୍ରମ କରଇଟି ଯେହି
ବ୍ରହ୍ମ ପାଇବାରେ ସନ୍ଦେହ ତା'ର ନାହିଁ ।
ଭରଦ୍ୱାଜ ବୋଇଲେ ପରଲୋକ କଥା
କହ ତା ଶୁଣିଲେ ଛାଡ଼ିବ ହୃଦବ୍ୟଥା ।
ଭୃଗୁ ବୋଇଲେ ଆହେ ହିମାଳୟଙ୍କର
ଉତ୍ତରପାଖେ ଅଛି ପରଲୋକ ଘର ।
ଲୋଭ-ମୋହ-ବିବର୍ଜିତ ସେହି ସ୍ଥାନଟି
ସବୁ ଧର୍ମଯାକ ହୋଇଛି ତହିଁ ଗୋଟି ।
କେହି କାହାଠାରେ ନ କରନ୍ତି ହିଂସା
ନ ଜାଣନ୍ତି ଅକାଳେ ଯମପୁରେ ବସା ।
ଉତ୍ତମ ଆଭରଣ ଉତ୍ତମ ବସନ
କରିଥାଆନ୍ତି ସବୁକାଳେ ପରିଧାନ ।
ଇହଲୋକେ ଧର୍ମ କରନ୍ତି ଯେତେ ଜନ
ସେହି ପରଲୋକେ କରନ୍ତି ଯାଇ ସ୍ଥାନ ।
କର୍ମଭୂମି ଜାଣ ଅଟଇ ମର୍ତ୍ତ୍ୟପୁରୀ
ଏଥିରେ କର୍ମ କଲେ ହୁଏ ସ୍ୱର୍ଗପୁରୀ ।
ସଂକ୍ଷେପରେ ତୁମ୍ଭଙ୍କୁ ଧର୍ମ କହିଲଇଁ
ଏହା ଜାଣି ଧର୍ମରେ ବୁଦ୍ଧି ଦିଅ ନେଇ ।
ଏରୂପେ ପୁଣି ଭୃଗୁଋଷିଙ୍କ ବଚନ
ଭରଦ୍ୱାଜ ଋଷି ହୋଇଣ ସୁପ୍ରସନ୍ନ ।
ଆଜ୍ଞା ହୋଇଲ ବୋଲି ପ୍ରଶଂସା କଲେ
ପାଆଁ ପଡ଼ି ଶୋଇ ଆପଣା ସ୍ଥାନେ ଗଲେ ।
ଏବେ ହେଉଅଛି ତୁମ୍ଭର କେଉଁ ଇଚ୍ଛା
ପୁଚ୍ଛ ମୁହିଁ କହିବ ଆହେ କୁନ୍ତୀବତ୍ସା ।
ସରିଲ ଭୃଗୁ ଭରଦ୍ୱାଜ ଭୂମିଦେବ
ସମ୍ବାଦ କହେ କୃଷ୍ଣସିଂହ ନରଦେବ ।

—o—

## ଆଚାର ବିଧି

ଯୁଧିଷ୍ଠିର ବୋଇଲେ ଆଚାର ବିଧିମତେ
କହିବା ହେଉ ଆହେ ଭୀଷ୍ମ ମହାମତେ ।
ଭୀଷ୍ମ ବୋଇଲେ ହେ ପାଣ୍ଡବ ଦଣ୍ଡଧାରୀ
ବୁଦ୍ଧିହୀନ ଦୁରସ୍ତସ୍ଥ ମନ୍ଦ ବ୍ୟବହାରୀ ।
ଅସାଧୁ ବୋଲନ୍ତିଟି ଜଗତ ମଧ୍ୟରେ
ସବୁରି ମତ ଥାଏ ପଡ଼ନ୍ତି ବଧରେ ।
ଉତ୍ତମ ଆଚାରଟି କରଇ ଯେ ନର ।
ତାର ଆୟୁଷ ବାଞ୍ଛୁଥାନ୍ତି ସବୁ ନର ।
ରାଜମାର୍ଗରେ ଗାଈଗୋଷ୍ଠେ ଧାନମଧ୍ୟେ
ଯେ ମୂତ୍ର ନ ତେଜେ ସେ ଲେଖା ସାଧୁମଧ୍ୟେ ।
ଦେହକୁ ଶୁଦ୍ଧ କରି କରିବ ତର୍ପଣ
ଆଗମନ କରି ତରିବ ନର୍କଗଣ ।
ସୂର୍ଯ୍ୟଙ୍କୁ ସବୁକାଳେ କରି ନମସ୍କାର
ନ ଶୋଇବ ଉଦୟକାଳେ ସୂର୍ଯ୍ୟଙ୍କର ।
ଉଦୟ ଅସ୍ତକାଳେ ପଇତାକୁ ଧରି
କରିବ ଜପ ମନ୍ତ୍ର ବିଷୟ ପାଶୋରି ।
ଦୁଇହାତ ଦୁଇ ଗୋଡ଼ ଧୋଇଣ ମୁଖ
ଭୁଞ୍ଜି ଉଦରକୁ ଯେ କରାଇବ ସୁଖ ।

ଅନ୍ନସ୍ୱାଦୁ ଅସ୍ୱାଦୁ ହେଲେ ସଦା ଗୁଢ଼
ଭୁଞ୍ଜିବ ମ ଣ୍ଡ ପୋଡ଼ ଦାନ୍ତ ନ ରଗଡ଼ ।
ଓଦା ପାଦ କରି ନ ପଡ଼ିବଟି ଶୋଇ
ଓଦା ହେଲେ ପୋଛିବ ଦୋଷ ଦେବେ ନାହିଁ
ଶୁଦେଶ ଦ୍ୱି ଜ ଗାଙ୍କ ପ୍ରଦକ୍ଷିଣ
କରିବାର ନିତ୍ୟ ଯେ ଅଟଇ ବିଧାନ ।
ଅତିଥି ଭୃତ୍ୟ ସ୍ୱଜନଙ୍କୁ ସର୍ବ ଅନ୍ନ
ଦେଇକରି ଶେଷରେ କରିବ ଭୋଜନ ।
ଦିବସେ ରାତ୍ରିରେ ଦୁଇଥର ଭୋଜନ
କରିବ ତିନଥରେ ଦୋଷ ବୋଲି ଜାଣ ।
ଋତୁକାଳେ ଯେ ଭାର୍ଯ୍ୟା ରତି କରେ ଭୋଗ
ବ୍ରହ୍ମଚର୍ଯ୍ୟ ବ୍ରତ ତାହାର ମହାଭାଗ ।
ବ୍ରାହ୍ମଣଙ୍କୁ ଦେଇଣ ପଛେ ଯେ ଭୁଞ୍ଜଇ
ଅମୃତ ଭୋଜନଟି ତାହାର ଅଟଇ ।
ସାଧୁ ଲୋକମାନେ ସତ୍ୟର ଉପାସନା
ନିତି କରୁଥାନ୍ତି ଜାଣ ହେ ମହାମନା ।
ପିତୃଙ୍କୁ ଦେଇ ମାଂସ କରେ ଯେ ଭୋଜନ
ମାଂସ ଭୁଞ୍ଜିବା ଦୋଷ ନାହିଁ ତା'ର ଜାଣ ।
ବିଅଁ ମାଉଁଙ୍କୁ ବ୍ରାହ୍ମଣ ଯେବେ ଖାଏ
ନରକେ ଶତଜନ୍ମଯାଏ ପଡ଼ିଥାଏ ।
ସ୍ୱଦେଶ ପରଦେଶ ଅତିଥି ଲୋକଙ୍କୁ
ନ ରଖିବ ନ ଦେଇ କେବେ ଭୋଜନକୁ ।
ଗୁ ରୁଙ୍କୁ ପୂଜା କରି ବସାଇ ଆସନେ
ଉତ୍ତମ ଭୋଜନକୁ ଦେବ ତୋଷମନେ ।
ଉଦୟସୂର୍ଯ୍ୟ, ବସ୍ତ୍ର ନଥିବା ନବନା
ଅଙ୍ଗେ ନ ଚାହିଁବ ଯେ ହେବ ମହାମନା ।
ସନ୍ଧ୍ୟା ପ୍ରାତଃକାଳେ ଦ୍ୱିଜଙ୍କୁ ନମସ୍କାର
କରି ଶୁଭବାର୍ତ୍ତା ପୁଚ୍ଛିବ ନରବର
ଦେବାଳୟେ ଗୋମଧ୍ୟେ ବେଦପାଠେ ଦ୍ୱି ଜ
ପ୍ରମାଣ ପାଇଲେ ଟେକିବ ଦକ୍ଷିଣଭୁଜ ।
ସୂର୍ଯ୍ୟଙ୍କୁ ଚାହିଁକରି ପୁରୀଷ ଉତ୍ସର୍ଗ
ନ କରିବ ଆହେ ରାଜନ ମହାଭାଗ ।
ଧୂଳି ପାଣି ସାରି ଆପଣାର ବିଷ୍ଠାକୁ
ଯେ ଚାହେଁ ଅମଙ୍ଗଳ ହୁଅଇ ତାହାକୁ ।
ରମଣୀଙ୍କ ସଙ୍ଗତେ ଶୟନ ଭୋଜନ
ଛାଡ଼ିଦେଇଥିବ ମନରୁ ପ୍ରତିଦିନ ।

ବନ୍ଧୁ ଜ୍ଞାତି ଶ୍ରେଷ୍ଠ ଲୋକରେ ଜ୍ୟେଷ୍ଠ ହେଲେ
ଆଦର କରି ତାକୁ ଡାକୁଥିବ ଭଲେ ।
କନିଷ୍ଠ ସମାନଙ୍କୁ ଅନାଦରେ ବାଣୀ
କହିଲେ ଦୋଷ ନାହିଁ ଜାଣ ନରମଣି ।
ପାପୀଲୋକ ପାପ କରିଣ ସୁଖ ପାଇ
ପ୍ରତିଦିନ ବଳନ ଦେହିଁ ପ୍ରବର୍ତ୍ତଇ ।
ଲୋଭୀ ଲୋକ ଦ୍ରବ୍ୟକୁ ରଖିଥାଏ ଘରେ
ନ କରି ଭୋଗ ବସେ ଯମଙ୍କ ନଗରେ ।
ଏକାକୀ ହୋଇ ଧର୍ମ କରୁଥିଲେ ନର
ପ୍ରାନ୍ତେ ଧର୍ମ ସାଥି ହୁଅଇ ମନେ କର ।
ଆଗ୍ନେୟବଧ ହେଲା ଏଠାରେ ସମାପ୍ତ
କୃଷ୍ଣସିଂହ ନୃପତି ଏ କହଇ ଗୀତ ।

—୦—

## ଅଧ୍ୟାତ୍ମ ତତ୍ତ୍ୱ

ଯୁଧିଷ୍ଠିର ବୋଇଲେ ଆହେ ଅଧ୍ୟାତ୍ମ କଥା
କହ ମୋତେ ଆହେ ଭୀଷ୍ମ ମହାରଥୀ ।
କାହା ସକାଶରୁ ହୁଅଇ ଏ ଜଗତ
ପ୍ରଳୟରେ ଜଗତ ହୁଏ କାହିଁ ସ୍ଥିତ ।
ଏହିମାନ ଶୁଣିବାପାଇଁ ମୋ ମନଟା
ବଳୁଅଛି ଜାଣ ଆହେ ଶାନ୍ତନୁଙ୍କ ବେଟା ।
ଭୀଷ୍ମ ବୋଇଲେ ଜାଣ ଅଧ୍ୟାତ୍ମ ଗତି
କହିବା ଶୁଣହେ ପାଣ୍ଡବ କୁଳପତି ।
ପଞ୍ଚମହାଭୂତ ସକାଶୁଁ ଦେହ ପାଏ
ଦେହ ପଞ୍ଚ ମହାଭୂତରେ ଲୀନ ହୁଏ ।
ଶବ୍ଦ କର୍ଣ୍ଣ ଦେହ ଛିଦ୍ରକୁ ଆକାଶଜ
ବୋଲି ମନେ ଜାଣ ହେ ଯୁଧିଷ୍ଠିର ରାଜ ।
ତ୍ୱଗିନ୍ଦ୍ରିୟ ଚେଷ୍ଟା ଯେ ସ୍ପର୍ଶ ବଚନ
ପବନ ପ୍ରଭାବ ବୋଲି ମନେ ଘେନ ।
ରୂପତେଜ ଶକ୍ତି ତେଜରୁ ଉତ୍ପତ୍ତି
ହୋଇଅଛି ବୋଲି ସମସ୍ତେ ବୋଲୁଛନ୍ତି ।
ରସ କ୍ଲେଦ ରସନା ଜଳରଟି ଗୁଣ
ଜାଣ ଆହେ ପାଣ୍ଡବକୁଳନରବାଣ ।
ଗନ୍ଧ ନାସିକା ଦେହ ଭୂମି ଘେନି ହୋଏ
ବୋଲି କହୁଅଛନ୍ତି ସକଳ ଋଷିଏ ।
ଇନ୍ଦ୍ରିୟମନ ଦୁହେଁ ଜ୍ଞାନର କାରଣ
ମୋ କହିବାରୁ ଜାଣ ଆହେ ନରରାଣ ।

ଦର୍ଶନ ଶ୍ରବଣ ଅଘ୍ରାଣ ଆସ୍ୱାଦନ
ସ୍ପରଶଙ୍କୁ ମିଶାଇ ପାଞ୍ଚୋଟି ଏ ଗୁଣ ।
ମନୁଷ୍ୟଙ୍କଠାରେ ହୋଇଛି ନରମଣି
ଆଖି କାନ ନାକ ଜିଭ ଚର୍ମକୁ ଘେନି ।
ସଂକଳ୍ପକୁ ମନ ଯେ ନିଶ୍ଚୟକୁ ବୁଦ୍ଧି
ବୋଲି ତ ଜଗତରେ ହୋଇଛି ପ୍ରସିଦ୍ଧି ।
ଏହି ଜଗତଯାକ ସତ୍ତ୍ୱ ତମ ରଜ
ଆଶ୍ରେ କରି ରହିଛି ଆହେ ମହାରାଜ ।
ସତ୍ତ୍ୱଗୁଣ ସକାଶୁଁ ପ୍ରୀତି ସୁଖ ଶାନ୍ତି
ଉପୁଜଇ ନିତି ଜାଣ ହେ ନରପତି ।
ଅସନ୍ତୋଷ ସନ୍ତାପ ଶୋକ ଆଉ ଲୋଭ
କ୍ଷମା ରଜୋଗୁଣ ସକାଶୁଁ ହୋଏ ଲଭ ।
ଅବମାନନା ମୋହ ତନ୍ଦ୍ରା ପରମାଦ
ଆଳସ୍ୟକୁ ତମ କରଇ ବହି ମୋଦ ।
ପ୍ରାକୃତକର୍ମ ଛାଡ଼ି ଆତ୍ମାରେ ରହିଲେ
ପରମଗତିକ ଟି ଲଭଇ ସେ ଭଲେ ।
ହୃଦରେ ଉଦୟ ଅଜ୍ଞାନୀ ଜନଙ୍କର
ହେବା ପରି ଉଦୟ ନୁହଇ ଜ୍ଞାନୀଙ୍କର ।
କହିବା ଶୁଣ ଧ୍ୟାନଯୋଗଙ୍କର ରୀତି
ଏକମନ ହୋଇ ହେ ପାଣ୍ଡବ ନୃପତି ।
ଧ୍ୟାନ କରିବାରେ ଉର୍ଦ୍ଧ୍ୱଧାମି ମୁନିଙ୍କି
ପାଇ ଯାଉଅଛନ୍ତି ଜାଣ ଏନ୍ତ ଏନ୍ତ ।
ଧ୍ୟାନ କରିଲି ଲୋକ କାଠକୁଢ଼ ପରି
ରହିଲେ ଧ୍ୟାନ ସିଦ୍ଧି ହୁଅଇ ତାହାରି ।
ଶ୍ରବଣ ଦରଶନ ଆଘ୍ରାଣ ସ୍ପର୍ଶନ
ଆସ୍ୱାଦନ ଆଦି କରିବ ବରଜନ ।
ମନ ଇନ୍ଦ୍ରିୟକୁ ଯେ ରୁନ୍ଧି ରଖିହିବ
ଯେବେ ଧ୍ୟାନ ସିଦ୍ଧି ହେବାର ବାଞ୍ଛିବ ।
ଧ୍ୟାନ ମାର୍ଗରେ ମନ ରଖିଲେ ଚଳଇ
ଏଥିକି ଜଗିଥିବ ସାବଧାନ ହୋଇ ।
ଚଞ୍ଚଳ ଚିତ୍ତ ହେଲେ ନ ଛାଡ଼ିବ ଧ୍ୟାନ
ଅହର୍ନିଶ ତହିଁ ନିବେଶିଥିବ ମନ ।
ଏରୂପେ ଯୋଗୀମାନେ ନିତି କରି ଧ୍ୟାନ
ମୋକ୍ଷ ପଦବୀକି ଲଭନ୍ତି ରାଜନ ।



## ଜପସ୍ଥାରୀ ବ୍ରାହ୍ମଣ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଚତୁର୍ବର୍ଣ୍ଣ ଧର୍ମ
ଶୁଣିଲି ତୁମ୍ଭଠାରୁ ପୁରୁଷ ଉତ୍ତମ ।
ଜପ କରିଲା ଲୋକମାନଙ୍କର ଗତି
କହ ମୋତେ ତୋଷି ପ୍ରଣତଙ୍କ ଦାତି ।
ସାଂଖ୍ୟଯୋଗ-ବିହିତବିଧି ଯାଗ-ବିଧି
ଏ ଦୁଇ ଜପେ କେ ହୁଅଇ ପ୍ରସିଦ୍ଧି ।
ଏହି କଥାମାନ ତୁମ୍ଭଠାରୁ ଶୁଣି
ସନ୍ଦେହ ଛାଡ଼ିବି ହେ ଜାଣ ରଥୀମଣି ।
ଭୀଷ୍ମ ବୋଇଲେ ଇକ୍ଷ୍ୱାକୁ ଯମ କାଳ
ମୃତ୍ୟୁଙ୍କର ବିବାଦ ଶୁଣ ନରପାଳ ।
ସାଂଖ୍ୟଯୋଗ ମତରେ ମୁନି ଛନ୍ତି କହି
ଜପ କରିବାରେ କାରଣ କିଛି ନାହିଁ ।
ଜପ ଅନୁଷ୍ଠାନ ଯେ ଜପ ନ୍ୟାସ ମାର୍ଗ
ବେଦ କହିଅଛନ୍ତି ବହୁଣ ସବର୍ଗ ।
କୁଟକୁ ଧରି କୁଶ ଆସନେ ବସିବ
ମନକୁ ନିବର୍ତ୍ତାଇ ବେଦକୁ ଜପିବ ।
ରାଗ ମୋହ ବିଦ୍ୱେଷ ଦ୍ୱନ୍ଦ୍ୱ ଅହଙ୍କାର
କରିଣ ଦେଇଥିବ ହୃଦୟରୁ ଦୂର ।
ସେ ଅବସ୍ଥାରେ ନେଇ ଜୀବକୁ ଛାଡ଼ିଲେ
ବ୍ରହ୍ମାଙ୍କ ସ୍ୱରୂପକୁ ଲଭଇ ସେ ଭଲେ ।
ଯୁଧିଷ୍ଠିର ବୋଇଲେ ଜପିବା ଲୋକରି
ଉତ୍ତମ ଗତିକି କହିଲ ରଥୀବର ।
ଗତି ତ ଲେଖିଅଛି ଶାସ୍ତ୍ରେ ନାନା ପରି
ଆନ ଗତି ନୋହେ କି କହ ତା ବିସ୍ତରି ।
ଭୀଷ୍ମ ବୋଇଲେ ଆହେ ଜପ କରି ବସି
ମନକୁ ଆନେ ଦେଲେ ନର୍କେ ହୋଏ ବାସୀ ।
ଅସନ୍ତୋଷ ଅବଜ୍ଞା ଦୁହିଙ୍କି ମିଶାଇ
ଜପିଲେ ମଧ୍ୟ ଲୋକ ନର୍କେ ପଡ଼େ ଯାଇ ।
ବ୍ରହ୍ମଲୋକଠାରୁ ପାତାଳ ଲୋକଯାଏ
ନରକ ବୋଲାଏଟି ଯୁଧିଷ୍ଠିର ବପ୍ୟେ ।
ଯେଉଁ ଲୋକ ଯା ଇଚ୍ଛା କରିଣ ଜପଇ
ସେହି ଲୋକ ନରକ ଭୋଗ ସେ କରଇ ।
ଯୁଧିଷ୍ଠିର ବୋଇଲେ ଜପ ଯେ କରଇ
କି ନରକ ଲଭଇ କହ ତା ବତାଇ ।

ଗାଙ୍ଗେୟ ବୋଇଲେ ହେ ତୁମ୍ଭେ ଧର୍ମ-ସୁତ
ଶୁଣ ମୋଠାରୁ କଥା ବସି ଧର୍ମାଶ୍ରିତ ।
ପୁଣ୍ୟ ପାପକ ସତ୍ତ୍ୱ ରଜ ତମ ଯୁକ୍ତ
ଉତ୍ପତ୍ତି ବୃଦ୍ଧି କ୍ଷୟ ନାଶର ରହିତ ।
ପ୍ରକୃତି ଅହଂକାର ପଞ୍ଚତନମାନ
ମହତ୍ତର ଏମାନଙ୍କରେ ବିବର୍ଜିତ ।
ତୃଷ୍ଣାତୃଷ୍ଣା କାରଣ ଶୋକ କ୍ଳମହୀନ
ସ୍ଥାନଟି ଅଟେ ଜାଣ ମୁକୁନ୍ଦ-ଭଜନ ।
ଏ ସ୍ଥାନ ବିନା ଆନ ଯେତେ ସ୍ଥାନ ଅଛି
ନରକଟି ବୋଲଏ ଜାଣ କୁନ୍ତୀ-ବହ୍ନି ।
ଯୁଧିଷ୍ଠିର ବୋଇଲେ ଇକ୍ଷ୍ୱାକୁ ବ୍ରାହ୍ମଣ
କାଳ ମୃତ୍ୟୁଙ୍କର ଯେ ବିବାଦ ବିଧାନ ।
ପୂର୍ବେ କହି ତ ମୋତେ ନ କହିଲ କିଛି
କହ ତା ଶୁଣିବି ହେ ଶାନ୍ତନୁଙ୍କ ବହ୍ନି ।
ଭୀଷ୍ମ ବୋଇଲେ ତୁମ୍ଭେ ପଚାରିଲ ଯାହା
କହିବା ତାହା ଶୁଣ ପାଣ୍ଡବ ନରନାହା ।
ବେଦ ଅଧ୍ୟୟନ କରିବା ଦ୍ୱିଜ ଜନେ
ତପସ୍ୟା କଲେ ରହି ହିମାଳୟ-ବନେ ।
ସାବିତ୍ରୀ ଜପିବାରେ ସହସ୍ର ବରଷ
ନିମିଷ ପରି ଶେଷ କଲେ ନରଈଶ ।
ମୂର୍ତ୍ତିମନ୍ତ ହୋଇଣ ସାବିତ୍ରୀ ତାହାଙ୍କୁ
ଦେଖା ଦେଲେ କଥା ସେ ନ କହିଲେ ତାଙ୍କୁ ।
ସାବିତ୍ରୀ ତାଙ୍କ କାନ୍ତି ଦେଖି ପ୍ରୀତି ବହି
ଆନନ୍ଦେ ରହିଥିଲେ ଟିପେହେଁ ନ ଯାଇ ।
ଜପ ଶେଷରେ ଦ୍ୱିଜ ସାବିତ୍ରୀଙ୍କ ପାଦେ
ଆଣ୍ଠୁ ହାତ ପକାଇ ନମିଲେ ପ୍ରମୋଦେ ।
କହିଲେ ମୋତେ ଯେବେ ପ୍ରସନ୍ନା ଗୋ ମାତ
ଜପରେ ବୃଦ୍ଧି ଦିଅ ଏହି ମୋର ଚିତ୍ତ ।
ସାବିତ୍ରୀ ବୋଇଲେ ଆଉ କି ଇଚ୍ଛା ଥିଲେ
ମାଗ ମୋତେ ହେ ତାହା ଦେବଇଁ ମୁଁ ଭଲେ
ବିପ୍ର ବୋଇଲେ ମା'ଗୋ, ଜପ ବିନା ଆନ
ମାଗିବାକୁ ମୋହର ହେଉନାହିଁ ମନ ।
ତାହା ଶୁଣି ସାବିତ୍ରୀ ଅତି ତୋଷ ବହି
ବର ଦେଲେ ପାଇବ ଶ୍ରେଷ୍ଠସ୍ଥାନ ଯାଇ ।
କେବଳ କହୁଥାଇ କାଳମୃତ୍ୟୁ ଯମ
ବିବାଦକୁ ଆସିବେ ହେ ଦ୍ୱିଜଉତ୍ତମ ।

ତାହାଙ୍କୁ ତୁମ୍ଭେ ସାବଧାନ ହୋଇ ଯୁକ୍ତି
କରିବ ନ ହୋଇଣ ବିହ୍ୱଳିତ ମତି ।
ଏହିରୂପେ ସାବିତ୍ରୀ କହି ବ୍ରାହ୍ମଣଙ୍କୁ
ବାହାରିଗଲେ ବେଗେ ଆପଣା ସ୍ଥାନକୁ ।
ବ୍ରାହ୍ମଣ ଦିବ୍ୟ ଶଏ ବର୍ଷ ପୁଣି ଜପ
ଦୁଃଖକୁ ସୁଖ ମଣି କଲେ ଜାଣ ନୃପ ।
ଶଏଟି ବରଷର ସମାପତି ଦିନ
ଧର୍ମଙ୍କୁ ଦେଖିଲ ସେ ବ୍ରାହ୍ମଣ-ନନ୍ଦନ ।
ଧର୍ମ ବୋଇଲେ ଆହେ ଜପଫଳ ପ୍ରାପ୍ତି
ହୋଇଲା ତୁମ୍ଭର ଶୁଣ ମୋଠାରୁ ଯତି ।
ସବୁ ଲୋକଯାକ ତୁମ୍ଭର ହେଲେ ବଶ
ପ୍ରାଣ ଛାଡ଼ି ଇଷ୍ଟଲୋକରେ ଏବେ ବସ ।
ବ୍ରାହ୍ମଣ ବୋଇଲେ ହେ ସୁଖ ଦୁଃଖ ଦେହ
ମୋହର ଏ ହେବାରୁ ଏହାକୁ ମୋ ସ୍ନେହ ।
ହୋଇଅଛି କିରୂପେ ଛାଡ଼ିବି ତୁମ୍ଭ ବୋଲେ
ବୋଲୁଅଛ ଏବେ ହେ ଯାଅ ତୁମ୍ଭେ ଭଲେ ।
ଧରମ ବୋଇଲେ ହେ ଛାଡ଼ିବ ତ ଦେହ
ଦେହ ଛାଡ଼ି ଏବେ ସ୍ୱର୍ଗରେ କର ସ୍ନେହ ।
ବ୍ରାହ୍ମଣ ବୋଇଲେ ହେ ଏ ଦେହକୁ ଛାଡ଼ି
ସ୍ୱର୍ଗକୁ ଯିବାକୁ ମୁଁ ବମିନାହିଁ ଲୋଡ଼ି ।
ଧର୍ମ ବୋଇଲେ ହେ ଦେହର ଲୋଭ ଛାଡ଼
ଏ ଦେହ ଗଲେ ଦେହ ଯେ ହେବ ସେ ବଡ଼ ।
ଦ୍ୱିଜ ବୋଇଲେ ହେ ଜପିବି ଦୁଃଖେ ପଡ଼ି
ଏ ଦେହରେ ସ୍ୱର୍ଗ ବସିବି ଯାଇ ମାଡ଼ି ।
ଧର୍ମ ବୋଇଲେ ଆହେ କାଳ ମୃତ୍ୟୁ ଯମ
ଆସୁଛନ୍ତି ଦେଖ ହେ ଦ୍ୱିଜଙ୍କ ଉତ୍ତମ ।
ସେହିକାଳେ ଯମ ବୋଇଲେ ତୁମ୍ଭ ତପ
ଫଳ ପ୍ରାପ୍ତି ହୋଇଲା ଛାଡ଼ ଦେହ-ତାପ ।
କାଳ ବୋଇଲେ ହେ ସ୍ୱର୍ଗକୁ ଯିବା କାଳ
ହୋଇଅଛି ନ ଭଜ ଚିତ୍ତଲେଦବାଳ ।
ମୃତ୍ୟୁ ବୋଇଲେ ହେ ତୁମ୍ଭଙ୍କୁ ନେବାପାଇଁ
କାଳ ବୋଇଲେ ଜାଣ ମୁଁ ଆସିଛି ଧାଇଁ ।
ବ୍ରାହ୍ମଣ ଏହା ଶୁଣି ମୃତ୍ୟୁ ଯମ କାଳ
ତିନିଙ୍କି ପୂଜା କଲେ ପାଣ୍ଡବ-ନୃପାଳ ।
ବୋଇଲେ କି କଥା ତୁମ୍ଭର ଆଜ୍ଞା ମୁହିଁ
କରିବି ତାହା ମୋତେ କହ ତ ବତାଇ ।

ଏହି ସମୟରେ ଇକ୍ଷ୍ୱାକୁ ନରବର
ସେଠାକୁ ଉପଗତ ହେଲେ ଯୁଧିଷ୍ଠିର ।
ବ୍ରାହ୍ମଣେ କାଳ ମୃତ୍ୟୁ ଯମଙ୍କୁ ଦେଖିଲେ
ନମସ୍କାର କରି କୁଶଳ ପଚାରିଲେ ।
ବ୍ରାହ୍ମଣ ସେ ରାଜାଙ୍କୁ ଦେଇ ପାଦ୍ୟାସନ
ପୁଚ୍ଛିଲେ ଅଛଟିକି କୁଶଳେ ରାଜନ ।
ତୁମ୍ଭର କେଉଁ କଥା ମୁଁ କଲେ ହୋଇବ
ତାହା ମୋତେ ବେଗେ କହି ତ ନରଦେବ ।
ଇକ୍ଷ୍ୱାକୁ ବୋଇଲେ ମୁଁ ଅଟଇ ନୃପତି
ମୋଠାରୁ ଧନ ନିଅ ଦ୍ୱିଜ ମହାମତି ।
ବ୍ରାହ୍ମଣ ବୋଇଲେ ହେ ଧର୍ମ ଦ୍ୱିଜ ଦୁଇ
ପ୍ରକାର ହୁଅଇ ରାଜନ ଶୁଣିଥାଇଁ ।
ପ୍ରବୃତ୍ତି ନିବୃତ୍ତି ଏ ଅଟେ ଦ୍ୱିପ୍ରକାର
ପ୍ରତିଗ୍ରହ ମୁଁ ନିବର୍ତ୍ତିଛି ମନେକର ।
ଯେଉଁମାନେ ଦାନରେ କରିଛନ୍ତି ଇଚ୍ଛା
ତାହାଙ୍କୁ ଦାନ ଦିଅ ଯାଇ ନୃପବସା ।
ତୁମ୍ଭର କେଉଁକଥା ହୋଇଅଛି କଷ୍ଟ
ମାଗ ମୋତେ ତା ଦେବି ହେ ନୃପଶ୍ରେଷ୍ଠ ।
ରାଜା ବୋଇଲେ ଅହେ ଯୁଦ୍ଧ ବିନା ଆନ
ମାଗିବାର ଜାଣେ କି କ୍ଷତ୍ରିୟର ମନ ।
ବ୍ରାହ୍ମଣ ବୋଇଲେ ମୁଁ ବ୍ରାହ୍ମଣ ଅଟଇ
କିରୂପେ ତୁମ୍ଭ ସଙ୍ଗେ କହ ଯୁଝିବଇଁ ।
ରାଜା ବୋଇଲେ ହେ ବ୍ରାହ୍ମଣ ବାକ୍ୟ ବଳୀ
ବୋଲି ମୁଁ ଆସିଛି ତୁମ୍ଭ ସଙ୍ଗେ କଳି ।
ବ୍ରାହ୍ମ ବୋଇଲେ ହେ ତୁମ୍ଭ ପରି ମୁହିଁ
ସ୍ୱଧର୍ମରେ ତୋଷ ହୋଇଛି ନରସାଇଁ ।
ରାଜା ବୋଇଲେ ଅହେ ପୂର୍ବରୁ ତ ଦ୍ୱିଜ
ଦେବି ବୋଲି କରିଛ ପ୍ରତିଜ୍ଞା ସମାଜ ।
ଏହା ଜାଣିଣ ମୁହିଁ ମାଗୁଛି ତୁମ୍ଭଙ୍କୁ
ଜପଫଳ ଯାଚଣ ଦିଅ ହେ ଅମ୍ଭଙ୍କୁ ।
ବ୍ରାହ୍ମଣ ବୋଇଲେ ହେ କରିଛି ପ୍ରତିଜ୍ଞା
ଯା ମାଗିବ ତା ଦେବି ନୋହିବ ଅବଜ୍ଞା ।
ରାଜା ବୋଇଲେ ହେ ବରଷ ଶତ ଜପ
ଫଳ ମୋତେ ଦିଅ ହେ ଦ୍ୱିଜ ଛାଡ଼ି ତାପ ।
ବ୍ରାହ୍ମଣ ବୋଇଲେ ହେ ସମଗ୍ର ବା ଅଧେ
ମୋ ଜପ ଫଳ ନିଅ ଦେଉଛି ମୁଁ ସଧେ ।

ରାଜା ବୋଇଲେ ଅହେ ଜପଫଳ ଦ୍ୱିଜ
କହ ତା ଶୁଣିବା ମୋ ମନ ହୁଏ ଆଜ ।
ବ୍ରାହ୍ମଣ ବୋଇଲେ ଫଳ ମୁଁ ନ ଜାଣଇ
ମାଗିଲ ଯାହା ତ ଦେଇଛି ନରସାଇଁ ।
ଏହି କଥାକୁ ଧର୍ମ କାଳ ଯମ ସାକ୍ଷୀ
କରି କହୁଛି ନୃପତି ହୋଇ ସୁଖୀ ।
ରାଜା ବୋଇଲେ ହେ ନ ଶୁଣି ଜପଫଳ
କହତ କାହିଁପାଇଁ ନେବି ଦ୍ୱିଜବାଳ ।
ବ୍ରାହ୍ମଣ ବୋଇଲେ ହେ ଜପଫଳ ମୁହିଁ
ଦେଲିଣି କରୁପରେ ନେବ କେଉଁଠାଇ ।
ଫଳକାଙ୍କ୍ଷୀ ହୋଇ ପୂର୍ବରୁ ମୁହିଁ ଜପ
କରିଥିଲେ ସିନା କହନ୍ତି ତାହା ନୃପ ।
ଯେବେ ମୋ ବାକ୍ୟ ନ ହେବ ନରମଣି
ଅଧାର୍ମିକରେ ତୁମ୍ଭେ ହୋଇବ ଅଗ୍ରଣୀ ।
ସତ୍ୟେ ତୁମ୍ଭେ ଯେବେ ରହିଲ ନୃପସୁତ
ହେନ ଜପଫଳ ମୁଁ କରୁଅଛି ଦତ୍ତ ।
ମିଥ୍ୟାବାଦୀ ଲୋକର ଇହ ପର ଦୁଇ
ଲୋକେ ସୁଖ ନାହିଁ ଇକ୍ଷ୍ୱାକୁ-ନରସାଇଁ ।
ସତ୍ୟ ପରି ପରଲୋକରେ ଯାଗ ଦାନ
ଯାହା ନୁହଇଟି ଜାଣ ଅହେ ରାଜନ ।
ସତ୍ୟ ତ ବ୍ରହ୍ମ ତପ ଯଜ୍ଞ ଧର୍ମ ଶ୍ରୁତି
ଓଁକାର ଜପ ଦେବ ସର୍ବ ଅଗ୍ରବର୍ତ୍ତୀ ।
ସତ୍ୟସ୍ୱରୂପଟିଏ ଅଟଇ ରାଜନ
ସତ୍ୟରୁ ବଡ଼ ହୋଇ କେହି ନାହିଁ ହେନ ।
ସତ୍ୟ ଯୋଗୁଁ ଜାଣ ଚନ୍ଦ୍ର ସୂର୍ଯ୍ୟ ଦୁଇ
ଉଦୟ ଅସ୍ତଦଶା ପାନ୍ତି ନରସାଇଁ ।
ସତ୍ୟ ହେନ ଅଗ୍ନି ଜଳୁଛି ଏ ସଂସାରେ
ପବନ ପ୍ରବହୁଛି ପ୍ରାଣୀଙ୍କ ଦେହରେ ।
ଧର୍ମ ସତ୍ୟ ଦୁହିଙ୍କି ପୂର୍ବେ ଦେବେ ତୁଳ
ବସିଲେ ସତ୍ୟ ଗଲା ଧର୍ମକୁ ବଳି ।
ସତ୍ୟ ଛାଡ଼ି ଅସତ୍ୟ କର୍ମ କାହିଁପାଇଁ
ଆଚରିବ କହ ଅଯୋଧ୍ୟା-ନରସାଇଁ ।
ମୋ ଜପଫଳ ଯେବେ ନ ନେବ ରାଜନ
ସ୍ୱଧର୍ମରୁ ଭ୍ରଷ୍ଟ ହୋଇବ ତୁମ୍ଭେ ଜାଣ ।
ଯାଚକର ନ ଦିଏ ମାଗେ ଯେ ନ ନିଏ
ଅନୃତବକ୍ତେ ସେ ଦୋହି ହୋଇ ।

ରାଜା ବୋଇଲେ ହେ କ୍ଷତ୍ରିୟ ଯିନା ଦାତା
ପ୍ରତିଗ୍ରହ କରୁନେମ କରିବ କହ ତା ।
ବ୍ରାହ୍ମଣ ବୋଇଲେ ହେ ମୁଁ ତ ଯାଚ ନାହିଁ
ମାଗିବାରୁ ଯିନା ଦେଇଛ ପ୍ରୀତି ବହି ।
ସେହି କାଳରେ ଧର୍ମ ବୋଇଲେ ବିବାଦ
ଛାଡ଼ ଦୁଇ ଲୋକ ହେ ରହ ବହି ମୋଦ ।
ସତ୍ୟଫଳେ ରାଜନ, ଦାନଫଳେ ଦ୍ୱିଜ
ରହନ୍ତୁ, ରହି ଦୁଇ ଲୋକଙ୍କର ଓଜ ।
ସ୍ୱର୍ଗ ସେହି ସମୟେ ସମାଧାନ ପାଇଁ
ଆସିଲେ ସେହିଠାକୁ ମୂର୍ତ୍ତିମନ୍ତ ହୋଇ ।
ବୋଇଲେ ହେ ନୃପ ବ୍ରାହ୍ମଣ ନୁହ କଳି
ଦୁହିଙ୍କର ମଥା ଦୁହିଙ୍କି ଅଛି ବଳ ।
ରାଜା ବୋଇଲେ ହେ ସ୍ୱର୍ଗକୁ ତୁମେ ଯାଅ
ଦ୍ୱିଜର ଦେବାଫଳ ଦ୍ୱିଜଙ୍କୁ ଦିଆଅ ।
ବ୍ରାହ୍ମଣ ବୋଇଲେ ହେ ନିବୃତ୍ତି-ଧର୍ମ ମୁହିଁ
ଆଚରୁଛି ଲୋଭ ମୋହର ହେବ କାହିଁ ।
ରାଜା ବୋଇଲେ ଆହେ ତୁମ୍ଭ ଆମ୍ଭ ଫଳ
ବଣ୍ଟାବଣ୍ଟି କରିବା ବୋଲି ଦ୍ୱିଜବାଳ ।
ଏହା କହି ଖାଷ୍ଟ କହିଲେ ବହି ପ୍ରୀତି
ଏକାଳେ ଦୁଇଜଣ ଆସିଲେ ଝଟତି ।
ସେ ଦୁହିଙ୍କର ନାମ ବିରୂପ ବିକୃତ
ଏମା କହିବାରୁ ଜାଣ ପାଣ୍ଡୁ ନୃପସୁତ ।
ସେ ଦୁହେଁ ହାତ ଧରାଧରି ହୋଇଛନ୍ତି
ଲଗିଛି ଲଗିନାହିଁ ବଚନେ ବୋଲନ୍ତି ।
ବିରୂପ ବୋଇଲେ ଇକ୍ଷ୍ୱାକୁ ନରବର
ଗୋଳ ଭାଙ୍ଗି ଦିଅ ହେ ଆମ୍ଭ ଦୁହିଙ୍କର ।
ବିକୃତଙ୍କ ଗୋଦାନଫଳ ମୁଁ ଘେନଛି
ନିଅ ବୋଇଲେ ସେ ଯାଆନ୍ତି ତା ମୁରୁଛି ।
ବିକୃତ ବୋଇଲେ ହେ ମୋର ଏ ବ୍ରାହ୍ମଣ
ନ ଲଗି କହୁଛନ୍ତି ମିଥ୍ୟାରେ ବଚନ ।
ଏରୂପରେ ଶୁଣି ସେ ଦୁହିଙ୍କର ବାଣୀ
ବିରୂପଙ୍କୁ ପୁଚ୍ଛିଲେ ଇକ୍ଷ୍ୱାକୁ ନୃମଣି ।
ବିକୃତଙ୍କଠାରେ ହେ ନେଇଅଛ କିସ
ସତ କରି ତାହା ମୋ ଆଗେ ପରକାଶ ।
ବିରୂପ ବୋଇଲେ ଯା ବିକୃତଙ୍କୁ ମୁହିଁ
ମାଗିଛି କହିବ ତା ଶୁଣ ନରସାଇଁ ।

ବିକୃତ ପୂର୍ବେ ଏକ ଦ୍ୱିଜେ ଗାଈ ଦେଲେ
ମୁଁ ଯାଇ ମାଗନ୍ତେ ମୋତେ ସେ ଫଳଦେଲେ
ମୁଁ ସେହି ଫଳ ପାଇ କିଣି ଗାଈ ଦୁଇ
ଉଞ୍ଛବୃତ୍ତି ଦ୍ୱିଜକୁ ଦେଲି ପ୍ରୀତି ବହି ।
ପୁଣି ବିକୃତଙ୍କର ପାଶକୁ ଆସିଲି
ଦେବାଫଳ ଦ୍ୱିଗୁଣେ ନିଅ ମୁଁ ଭାଷିଲି ।
ଏହି ମକାଣୁଁ ଆମ୍ଭ ଦୁହିଙ୍କର ଗୋଳ
ହୋଇଲୁଁ ତା ବୁଝ ହେ ଇକ୍ଷ୍ୱାକୁ-ନୃପାଳ ।
ରାଜା ବୋଇଲେ ଆହେ ବିକୃତ ଗୋସାଇଁ
ଦେଲେ ସେ ଦାନଫଳ କର କମ୍ପା ନାହିଁ ।
ବିକୃତ ବୋଇଲେ ଏ ମାଗିନେଲେ ମୋତେ
ଏବେ ଦେଉଛନ୍ତି ତା ନେବି ମୁଁ କେମନ୍ତେ ।
ରାଜା ବୋଇଲେ ହେ ବିରୂପ ଦେଉଛନ୍ତି
ନ ନେଉଛ ବିକୃତ ତୁମ୍ଭେ ଦୁଷ୍ଟମତି ।
ବିକୃତ ବୋଇଲେ ମୁଁ ଦେଇଛି ରାଜନ
ନ ନେବି ତୁମ୍ଭେ ଦଣ୍ଡ କର ହେ ବିଧାନ ।
ବିରୂପ ବୋଇଲେ ଯା ଦେଲିଠାରେ ମୁହିଁ
ନେଉନାହିଁ ଏ ତା ବୁଝିବେ ନରସାଇଁ ।
ବିକୃତ ବୋଇଲେ ହେ କହିଲେ ରାଜନ
ଦେବାଫଳ ମୁହିଁ ଘେନିବି ମୋର ମନ ।
ଏଅନ୍ତେ କହିଲେ ଜାପକ ଦ୍ୱିଜବାଳ
ଘେନ ଏବେ ରାଜନ ମୋର ଜପଫଳ ।
ଜପକଙ୍କ ବାଣୀ ଇକ୍ଷ୍ୱାକୁ ରାଜା ଶୁଣି
ଟିକିଏ ତୁନି ହେଲେ ନ କହିଣ ବାଣୀ ।
ମନେ କଲେ ଜାପିବ ଯୁକ୍ତି ପୁଷ୍ଟି ପାଇଁ
ଏ ଦୁହେଁ ଆସିଛନ୍ତି ଏତେ ଗୋଳ ହୋଇ ।
ଜାପକ ଜପଫଳ ନ ଘେନିବି ଯେବେ
ଏ ଦୋଷେ ନାଶ ଯିବି ଜାଣୁଅଛି ତେବେ ।
ଭାବିଣ କହିଲେ ବିକୃତ ବିରୂପଙ୍କୁ
ଯିବା ହେ କୃତକାର୍ଯ୍ୟ ହୋଇଣ ଘରକୁ ।
ଜାପକ ବୋଇଲେ ଘେନ ମୋ ଜପଫଳ
ନୋହିଲେ ଶାପ ଦେବି ଜାଣ ନରପାଳ ।
ରାଜା ରାଜ ଧର୍ମକୁ ବହୁ ନିନ୍ଦା କରି
ଘେନିବି ଜପଫଳ ବୋଇଲେ ଉଚ୍ଚାରି ।
ଜଳନ୍ତୁ ଏ କର ମୋ ଉପରେ ହୋଇଥିଲି
ଧରିବି ବୋଲି ତାହା ତଳକୁ ଆସିଲି ।

ଏତେ ବୋଲି ହସ୍ତ ପ୍ରସାରି ନରମଣି
ଜାପକ ଜପଫଳ ନେଲା ସେହିକ୍ଷଣି ।
କହିଲେ ଆହେ ଦ୍ୱିଜ ତୁମ୍ଭ ଫଳ ଦିଅ
ନ ନେବାର ବଚନ ହୃଦୁଁ ଛାଡ଼ିଦିଅ ।
ବିରୂପ ବୋଇଲେ ହେ କାମ କ୍ରୋଧ ଆମ୍ଭେ
ଆସିଥିଲୁଁ, କିସ କହିବ ବୁଝି ତୁମ୍ଭେ ।
ତୁମ୍ଭର ଧର୍ମ କଷି ହୋଇଲୁଁ ତ ସୁଖୀ
ଯିବୁ ମନରୁ ଏବେ ତାହାଙ୍କୁ ଉପେକ୍ଷି ।
ହେଉଅଛି ମନରେ ଯେଉଁ ଲୋକ ଇଚ୍ଛା
ସେ ଲୋକ ଏବେ ଯାଇ ପାଅ ମନୁବଂଶା ।
ଭୀଷ୍ମ ବୋଇଲେ ହେ ପାଣ୍ଡବ ନରପାଳ
ଶୁଣିଲ ଏବେ ଜପ କରିବାର ଫଳ ।
ବ୍ରହ୍ମ ଅଗ୍ନି ସୂର୍ଯ୍ୟଲୋକେ ଯାଇ ଜାପକ
ରହିଇଛି ଜାଣ ହେ ପାଣ୍ଡବନାୟକ ।
ଏ ଲୋକେ ବିରକତ ହୋଇଲେ ତ ମତି
ପରମ ସ୍ଥାନ ଯାଇ କରଇ ସେ ସ୍ଥିତି ।
ଜାପକର ଗତି ତ ଶୁଣିଲ ରାଜନ
ଆଉ କି ଇଚ୍ଛା ଥିଲେ ପୁଚ୍ଛ ତା ବଚନ ।
ଯୁଧିଷ୍ଠି ବୋଇଲେ ବିରୂପ ବିକୃତଙ୍କୁ
ଜାପକ ରାଜା ଦେଲେ କିସ ଉତ୍ତରକୁ ।
ବିରୂପ ବିକୃତ ତ ଆସୁଥିଲେ ପୁଚ୍ଛି
କେଉଁଠାକୁ ଗଲେ ସେ ଶାନ୍ତନୁଙ୍କ ବଂଶି ।
ଏହା ମୋର ଆଗରେ କହିବା ହେଉ ତ
ଶୁଣିବାକୁ ମୋହର ହେଉଅଛି ଚିତ୍ତ ।
ଭୀଷ୍ମ ବୋଇଲେ ହେ କହିବା ତାହା ନୃପ
ଶୁଣିଲେ ଯେବେ ଯିବ ତୁମ୍ଭ ମନସ୍ତାପ ।
ଧରମ ଯମ କାଳ ମୃତ୍ୟୁଙ୍କୁ ଜାପକ
ପୂଜା କରି ବୋଇଲେ ଅଯୋଧ୍ୟାନାୟକ ।
ମୁଁ ଦେବା ଜପଫଳ ନେଇ ପୁଣ୍ୟ ଲୋକ
ଯାଅ ହେ ଭୋଗକରି ଛାଡ଼ି ଦୁଃଖଶୋକ ।
ସାବିତ୍ରୀଙ୍କ ବରେ ମୋ ଜପେ ବିଘ୍ନ ନାହିଁ
ଏହିଠାରେ ଜପ କରିବି ପୁଣି ମୁହିଁ ।
ରାଜା ବୋଇଲେ ହେ ଜାପକ ପୁଣ୍ୟବନ୍ତେ
ମୋତେ ନେଇଯାଅ କହୁଛି ତୁମ୍ଭ ତୁଲେ ।
ଏହିକାଳରେ ଇନ୍ଦ୍ର ନେଇ ଦିଗପାଳ
ଆସିଲେ ଜାଣ ଆହେ ପାଣ୍ଡବ-ନୃପାଳ ।

ବସୁ ସାଧ୍ୟ ବ୍ରହ୍ମାଣ୍ଡ ସମୁଦ୍ର ମରୁତ
ନଦୀ ପର୍ବତ ତୀର୍ଥ ଉପବେଦ ସ୍ତୋତ୍ର ।
ବିଶ୍ୱାବସୁ ନାରଦ ଦେବଳ ସତ୍ୟସ୍ୱଷ୍ଟା
ହାହା ହୁହୁ ଯେ ଚିତ୍ରସେନ ପ୍ରଜାପତି ।
ନାଗ ସିଦ୍ଧ ତପସ୍ୱୀମାନେ ସେହିଠାକୁ
ଆସିଲେ ମଧ୍ୟ ମନେ ଏହି ସର୍ବଙ୍କୁ ।
ଆକାଶେ ଭେରୀ ତୁରୀ ବାଜିଲା ଅନେକ
ଦୁନ୍ଦୁଭି କଲା ଅତି ସ୍ତବ୍ଧ କର୍ଣ୍ଣପାକ ।
ଗନ୍ଧର୍ବମାନେ ଧୀରେ ବଜାଅନ୍ତେ ବୀଣା
ତାହାଦେଖି ନାଚିଲେ ଅପ୍ସରା ପ୍ରବୀଣା ।
ସ୍ୱର୍ଗ ମୂର୍ତ୍ତିମନ୍ତେ କହିଲେ ବ୍ରାହ୍ମଣଙ୍କୁ
ପାଇଲେ ରାଜା ତୁମ୍ଭ ତୁଲେ ସିଦ୍ଧି ତାଙ୍କୁ ।
ଏହା ଶୁଣି ରାଜା ଜାପକ ଦ୍ୱିଜ ତୁଲେ
ବିଷୟରୁ ଇନ୍ଦ୍ରିୟ ସଂହାରକୁ କଲେ ।
ପ୍ରାଣ ଅପାନ ବ୍ୟାନ ଉଦାନ ସମାନ
ମନରେ ରଖିଲେ ସେ ଜାଣ ଦୁଇଜଣ ।
ମୂର୍ଦ୍ଧାରେ ନେଇ ଜୀବଆତ୍ମାକୁ ରଖିଲେ
ଅତି ସ୍ଥିରଦୃଷ୍ଟି ଯେ ହୋଇଣ ରହିଲେ ।
ସେକ୍ଷଣି ବ୍ରାହ୍ମଣର ମୂର୍ଦ୍ଧାକୁ ଫଟାଇ
ଗଲା ତେଜ ବାହାରି ସ୍ୱର୍ଗେ ନରସାଇଁ ।
ବ୍ରହ୍ମା ସେ ଜ୍ୟୋତି ଆସିବାର ଜାଣିକରି
ଯେନାଗଲେ ପାଛୋଟି ଆହେ ଦଣ୍ଡଧାରୀ ।
ବଚନରେ ବୋଇଲେ ଯୋଗ ଜପଙ୍କର
ଫଳ ସମାନଟି ଅଟଇ ମନେ କର ।
ସେ ତେଜ ପୁଣି ବ୍ରହ୍ମା ଢାଅନ୍ତେ ଆଁ କରି
ବ୍ରହ୍ମାଙ୍କ ପେଟରେ ରହିଲେ ଘର କରି ।
ଯେଉଁରୂପେ ବ୍ରାହ୍ମଣ ଲଭିଲେ ମୁକତି
ସେହିରୂପେ ମୁକତି ଲଭିଲେ ନୃପତି ।
ଦେବେ ବ୍ରହ୍ମା ପାଦରେ କରି ନମସ୍କାର
କହିଲେ ମୁକ୍ତ ହେଲେ ଜାପକ ନୃବର ।
ଏଥିପାଇଁ ଆମ୍ଭେ ଏଠାକୁ ଆସିଥିଲୁଁ
ମୁକତି ଅନ୍ତେ ଶ୍ରୀମୁଖରେ ଜଣାଇଲୁଁ ।
ଯୋଗ ଜପ ଦୁଇ ଦେଖିଲୁ ବଡ଼ଫଳ
ଆହେ ପିତାମହ ସକଳ ଲୋକପାଳ ।
ବ୍ରହ୍ମା ବୋଇଲେ ହେ ସାବିତ୍ରୀ ଯେ ଜପଇ
ମୋ ଲୋକକୁ ଯିବାର ସନ୍ଦେହ ତା ନାହିଁ ।

ଯୋଗ ସାଧିବାର ଲୋକଟି ମୋର ଲୋକ
ମଧ୍ୟ ପାଅଇ ଜାଣ ହେ ଦେବତାପାଳ ।
ତୁମ୍ଭେମାନେ ଏଥର ଯାଅ ଯେ ଯାହାସ୍ଥାନେ
ମୁଁ ଆଜ୍ଞା କରୁଅଛି ଅତ୍ୟନ୍ତ ସୁମନେ ।
ଏହା କହି ବ୍ରହ୍ମା ହୁଅନ୍ତେ ଅନ୍ତର୍ଦ୍ଧାନ
ଦେବେ ଆଶ୍ରୟ କଲେ ଯେ ଯାହାର ସ୍ଥାନ ।
ଆହେ ମହାରାଜ ପାଣ୍ଡବ ଯୁଧିଷ୍ଠିର
ଶୁଣିଲ ତ ମୁକ୍ତକାମଙ୍କ ଲୋକଙ୍କର ।
ଏବେ କେଉଁକଥାକୁ ହେଉଅଛି ଇଚ୍ଛା
ତା ପଚ୍ଛର କହିବ କୁନ୍ତୀଦେବୀ ବତ୍ସା ।
ଶେଷ କରିଲେ ବ୍ୟାସ ଜାପକ-ଚରିତ
କହଇ କୃଷ୍ଣସିଂହ ନରେଶ ଏ ଗୀତ ।

—୦—

## ମନୁ ବୃହସ୍ପତି ସମ୍ବାଦ

ଯୁଧିଷ୍ଠିର ବୋଇଲେ ବେଦୋକ୍ତ କର୍ମଫଳ
ଜ୍ଞାନଯୋଗ କହ ହେ ଶାନ୍ତନୁଙ୍କ ବାଳ ।
ପରମ-ଆତ୍ମାଟିକି ଜାଣି କ ରୂପରେ
ଏହା ମଧ୍ୟ କହିବା ହେଉ ମୋ ଆଗରେ ।
ଭୀଷ୍ମ ବୋଇଲେ ଆହେ ମନୁ ବୃହସ୍ପତି
ସମ୍ବାଦକୁ କହିବା ଶୁଣ ଦେଇ ମତି ।
ବୃହସ୍ପତି ବୋଇଲେ କର୍ମ ଜ୍ଞାନଯୋଗ
ମୋ ଆଗରେ କହହେ ମନୁ ମହାଭାଗ ।
ମହୀ ବୃକ୍ଷ ପବନ ଅନ୍ତରୀକ୍ଷ ଜଳ
ସ୍ୱରଗ ଜଳଜନ୍ତୁ ଆଦି ଗିରିମାଳ ।
ଏମାନେ ଯାହାଠାରୁ ହେଲେ ଉତପତ୍ତି
ତାହା କହ ଶୁଣିବାକୁ ହୋଏ ମୋ ମତି ।
ଲୋକ ମନ ଜ୍ଞାନକୁ କରନ୍ତି ପ୍ରାର୍ଥନା
ଜ୍ଞାନୀ ଲୋକ ଜଗତେ ବୋଲାଏ ସୁମନା ।
ଏ ସକାଶୁଁ ତୁମ୍ଭଙ୍କୁ ପଚ୍ଚାରୁଛି ମୁହିଁ
ଉଲ୍ଲାସ କରି ତାହା କହ ମୋର ଦେହି ।
ଋକ ସାମ ଯଜୁ ଜ୍ୟୋତିଷଚନ୍ଦ ମୁହିଁ
ପଢ଼ିଛି, ଭୂତପ୍ରକୃତିକି ଜାଣି ନାହିଁ ।
ଜ୍ଞାନଫଳ କର୍ମଫଳ ଦେହୀର ଦେହ
ଛାଡ଼ି ଆନ ଦେହ ଆଶ୍ରୟ କଥା କହ ।
ମନୁ ବୋଇଲେ ଆହେ ଇଷ୍ଟ ହେବାପାଇଁ
କର୍ମ ପ୍ରବର୍ତ୍ତିଛି ଅନିଷ୍ଟ ନିବର୍ତ୍ତାଇ ।
ଇଷ୍ଟ ଅନିଷ୍ଟର ନାଶକୁ ଜ୍ଞାନବଧି
ପ୍ରବର୍ତ୍ତାଇ ମଧ୍ୟ ଅଛନ୍ତି ଜାଣ ବୁଧି ।
ଯେଉଁ ଲୋକଟି ଜାଣ ହୁଅଇ ସକାମ
କର୍ମଯୋଗ ତା'ର ଅଟଇ ବଡ଼ ଧର୍ମ ।
କର୍ମଯୋଗକୁ ଛାଡ଼ିଦେଲେ ବ୍ରହ୍ମ ପାଏ
ଏଥିରେ ନ କର ହେ ସନ୍ଦେହ ହୃଦୟେ ।
ନାନାପ୍ରକାର ତ ଅଟଇ କର୍ମ ମାର୍ଗ
ତହିଁ ପ୍ରବର୍ତ୍ତିଲେ ନ ପାଏ ଅପବର୍ଗ ।
କର୍ମ ଜ୍ଞାନ ଦୁଇରେ ଜ୍ଞାନ ଅଟେ ସାର
ସବୁକାଳରେ ଅବିନାଶୀ ନାମ ତା'ର ।
ସାତ କୂପ କଣ୍ଟାକୁ ଛାଡ଼ି ଲୋକମାନେ
ପୁଣି ତହିଁ ପଡ଼ନ୍ତି ଯାଇଣ ଅଜ୍ଞାନେ ।
ଲୋକ ଯେ କରମର ଅନ୍ତଟିକି ଜାଣି
ସେହିରୂପେ ଭରମୁଛନ୍ତି ଦ୍ୱିଜମଣି ।
ମନ୍ତ୍ର ଯାଗ ଦକ୍ଷିଣା ମାନସ ସମାଧି
ହେବ ଏ ପାଞ୍ଚରେ କର୍ମରେ ଆତ୍ମାବଧି ।
କର୍ମ ସିଦ୍ଧି ହେଲେ ନାରୀଙ୍କ ସଙ୍ଗେ ରହ
ସ୍ଥାନେ ରହି ବହଇ ମନେ ବହି ସ୍ନେହ ।
ଶରୀରବନ୍ତ ହୋଇ କର୍ମ ଥାଏକରି
ଭୋଗ କଲେ କରମ ଶରୀରକୁ ଧରି ।
ମନ ବଚନରେ କରଇ ଯେଉଁ କର୍ମ
ସେହିରୂପେ ସେ ଭୋଗ ହୋଏ ଦ୍ୱିଜୋତ୍ତମ ।
ତ୍ରିଗୁଣ ମଧ୍ୟୁଁ ଯେଉଁ ଗୁଣ ଆଶ୍ରେ କରି
କର୍ମ କରି ଭୁଞ୍ଜେ ସେ ଗୁଣ ଅନୁସରି ।
ପୂର୍ବରେ କଲା କର୍ମବଳେ ଉପସ୍ଥିତ
ହୁଅଇ ଜାଣ ବୃହସ୍ପତି ତପୋବନ୍ତ ।
ଯାହାଠାରୁ ଜଗତ ହେଉଅଛି ଜାତ
ଜ୍ଞାନୀ ବିନା ଆନକୁ ନୋହେ ସେ ବିଦିତ ।
ଯାହା ତୁମ୍ଭ ଆଗେ କହିବା ଆମ୍ଭେ ବସି
ଶୁଣ ହେ ବୃହସ୍ପତି ମାନସ ନିବେଶି ।
ରସ-ଗନ୍ଧ-ଶବଦ ସ୍ପର୍ଶ-ରୂପ-ହୀନ
ଅଗ୍ରାହ୍ୟ ଅବ୍ୟକତ ସ୍ତ୍ରୀ-ପୁଂସରୁ ଆନ ।
ଏହା ବାହାରେ ନପୁଂସକ ସେ ନୁହନ୍ତି
ସଦସଦକ୍ଷର କେବେହେଁ ନ ବୋଲନ୍ତି ।
ତାହାକୁ ଜାଣ ବ୍ରହ୍ମ ବୋଲି କରି କହି
ଜ୍ଞାନୀ ବିନା ଅଜ୍ଞାନୀ ଦେଖିବ ତା କେହି ।

ଉଷ୍ଣ ଶୀତ ଯେ ମୃଦୁ ତୀକ୍ଷ୍ଣ ମଧୁର
ତିକ୍ତ କଟୁ ପ୍ରଭୃତି କଥାରୁ ବାହାର ।
ଯେତି ତାହାଙ୍କୁ କହୁଥାନ୍ତି ପ୍ରାଣୀଗଣ
ଏ ଜଗତଯାକର ଅଟନ୍ତି କାରଣ ।
ସେହି ଶରୀରୀଙ୍କ ଶରୀରେ ଆତ୍ମା ହୋଇ
ରହିଛନ୍ତି ଜାଣ ତୁମ୍ଭଙ୍କୁ କହୁଥାଇଁ ।
ସୂର୍ଯ୍ୟର କର ପରି ଶରୀରୀ ଶରୀର
ଯାଉଛି ଆସୁଅଛି ବୋଲି ମନେ କର ।
କାଠର ମଧ୍ୟେ ଅଗ୍ନି ଥିବା ପରି ଦେହୀ—
ମାନଙ୍କ ଦେହେ ଜାଣ ଆତ୍ମା ଅଛି ରହି ।
ହାତ ଗୋଡ଼ ମୁଣ୍ଡ କାଟିଲେ ହେଲେ ତାକୁ
ଦେଖିଛି କେ ବୋଲି ନ ଆସେ ବଚନକୁ ।
ମନ୍ଥିଲେ କାଠ ଅଗ୍ନି ଦେଖାଗଲା ପରି
ଜ୍ଞାନରେ ଆତ୍ମା ହୋଏ ମନରେ ସଞ୍ଚରି ।
ଦେହ ଛାଡ଼ି ଆନ ଦେହକୁ ଆତ୍ମା ଯିବା
କଥା ଜ୍ଞାନଟି କି ହେ ଦଶାଇ ବୋଲିବା ।
ବୃଦ୍ଧି କ୍ଷୟ ଉତ୍ପତ୍ତି ଆତ୍ମାରେ ବର୍ଜିତ
ହୋଇଛି ଜାଣ ବୃହସ୍ପତି ତପୋବନ୍ତ ।
ଚକ୍ଷୁ ଆଦି ଇନ୍ଦ୍ରିୟେ ଆତ୍ମା ନ ଦେଖନ୍ତି
ଆତ୍ମା କିନ୍ତୁ ତାକୁ ଦେଖଇ ଦେହେ ନିତି ।
ପଞ୍ଚମହାଭୂତେ ତ ଦେହରେ ଥାଆନ୍ତି
ଦେହ ଗଲେ ସେ ଆନ ଦେହକୁ ଯାଆନ୍ତି ।
ଶ୍ରୋତ୍ର ଆଦି ଇନ୍ଦ୍ରିୟେ ତାକୁ ଅନୁଗତ
ହୁଅନ୍ତି ଜାଣ ଆହେ ଅଙ୍ଗିରାଙ୍କ ସୁତ ।
ପାଞ୍ଚଇନ୍ଦ୍ରିୟଙ୍କୁ ବିଷୟ ରହେ ଭଜି
ଇନ୍ଦ୍ରିୟେ ମନଠିଁ ରହନ୍ତି ଯାଇ ମଜ୍ଜି ।
ମନ ବୁଦ୍ଧିଟିକି ହୁଅଇଟି ଅନୁଗତ
ବୁଦ୍ଧି ଯାକ ହୁଅଇ ଆତ୍ମାଠାରେ ସ୍ଥିତ ।
ଏରୂପେ ଦେହ ଭଜି ପୂର୍ବ ଶୁଭାଶୁଭ
ପ୍ରାଣୀମାନଙ୍କ ଜାଣ ହେଉଅଛି ଲାଭ ।
ଇନ୍ଦ୍ରିୟଙ୍କେ ପ୍ରାପ୍ତ ଗୁଣ ଯେ ସୁମରଇ
ତାହାଙ୍କୁ ଜାଣି ଆତ୍ମା ବୋଲିକରି କହି ।
ସବୁ ବିଷୟଙ୍କୁ ଯେ ଦେଖେ ଏକାଥରେ
ତାହାକୁ ମଧ୍ୟ ଆତ୍ମା ବୋଲି ବଚନରେ ।
ରଜ ତମ ଗୁଣଙ୍କୁ ଆଶ୍ରେ କରି ଆତ୍ମା
ଇନ୍ଦ୍ରିୟ ମଧ୍ୟେ ଅଛି ଜାଣ ହେ ମହାତ୍ମା ।

ନୟନରେ ଦେଖିବ ଶ୍ରବଣେ ଶୁଣିବ
ଭାବିଲେ ଆତ୍ମାରେ ଏ ବଡ଼ ଅସମ୍ଭବ ।
ଆତ୍ମା ସବୁ ଇନ୍ଦ୍ରିୟମାନଙ୍କୁ ଦେଖଇ
ଆତ୍ମାକୁ ଦେଖିବାକୁ ଆୟତ୍ତ ବା କାହିଁ ।
ହିମାଳୟ ପାର୍ଶ୍ୱ ଯେ ଚନ୍ଦ୍ରଙ୍କର ପୃଷ୍ଠ
ଯେଉଁପରେ ଲୋକଙ୍କୁ ନୁହଇଟି ଦୃଷ୍ଟ ।
ସେହିରୂପରେ ଆତ୍ମା ଦେହାନ୍ତରେ ଚରି
ଦୃଷ୍ଟି ହେଉନାହିଁ ହେ ଜାଣ ତପସ୍ବୀରି ।
ଚନ୍ଦ୍ର ଦେହେ ଦେଖିଲେ କଳଙ୍କ ଉଚ୍ଛୁଇ
ଅପଣ୍ଡିତ ଲୋକ ଯେ ସନ୍ଦେହ କରଇ ।
ବୃଦ୍ଧି ପ୍ରଭାପରେ ସୂର୍ଯ୍ୟଙ୍କ ଗତିବଶୀ
ମୋହିଲା ପରି ଆତ୍ମା ଜ୍ଞାନେ ହୋଏ ଜଣା ।
ହାଣ୍ଡିକ ଯେଉଁରୂପେ ହାଣ୍ଡି ଯେନ ଧରି
ସେରୂପେ ଜ୍ଞାନରେ ଆତ୍ମାକୁ ପାରି ହେରି ।
ଧାତ ନିଜ ପାଦକୁ ଦେଖିଲା ପର୍ଯ୍ୟେ
ଜ୍ଞାନାଟିକି ଆତ୍ମା ଗୋଚରେ ଜାଣ ହୋଏ ।
ଶରୀର ନାଶ ଗଲେ ଆତ୍ମା ନୋହେ ନାଶ
ହୋଏ ସେ ଅମାବାସ୍ୟା ଶଶୀର ସଦୃଶ ।
ଅମାବାସ୍ୟା ବାହାରେ ଦୃଷ୍ଟି ଚନ୍ଦ୍ର ପରି
ଆତ୍ମା ପ୍ରକାଶଟି ହୁଅଇ ରୂପ ଧରି ।
ଜନମ ବୃଦ୍ଧି କ୍ଷୟ ଚନ୍ଦ୍ରର ପର୍ଯ୍ୟେ
ଆତ୍ମାର ଅଟଇଟି ବିଭୁର ହୃଦୟେ ।
ଚନ୍ଦ୍ର ତପନ ଛାଡ଼ି ରାହୁ ଯିବାବେଳେ
ଯେରୂପେ ନ ଦଶେ ରହିଁଲେ ଯେତେ କଲେ ।
ସେରୂପେ ଦେହକୁ ଛାଡ଼ଇ ଯେବେ ଆତ୍ମା
ଦଶଇ ନାହିଁ ତେବେ ଜାଣ ହେ ମହାତ୍ମା ।
ଜାଣ ହେ ଜୀବ ଜୀବ ଗଲେ ପରଲୋକେ
ଶୁଭାଶୁଭ ଭୁଞ୍ଜି ପଡ଼ଇ ସୁଖେ ଶୋକେ ।
ନିର୍ମଳ ଜଳେ ଯେଉଁରୂପେ ଦଶେ ମୂର୍ତ୍ତି
ସେରୂପେ ଇନ୍ଦ୍ରିୟଙ୍କ ତୋଷେ ଆତ୍ମା ଗତି ।
ଗୋଚର ହୁଅଇ ହେ ପୁରନ୍ଦର ମନ୍ତ୍ରୀ
ପିଠା କହୁଛି କଥାରେ ନୁହେ ଯନ୍ତ୍ରୀ ।
ଇନ୍ଦ୍ରିୟମାନେ ଯେବେ ହୁଅନ୍ତି ଆକୁଳ
ଆତ୍ମାର ଗୋଚରଟି ହୁଅଇ ଦୁର୍ବଳ ।
ଦେହରେ ଆତ୍ମବୁଦ୍ଧି ଯାଉ ଉପୁଜଇ
ଅଇନ୍ଦ୍ରିୟ-ଆବିଳ ବୋଲିକରି କହି ।

ମନରେ ଉପୁଜଇ ଯାଇ ଯେବେ ଦୋଷ
ହୁଅଇ ତେବେ ପାଞ୍ଚଇନ୍ଦ୍ରିୟଙ୍କ ନାଶ ।
ଅଜ୍ଞାନୁଁ ବିଷୟ ପ୍ରବର୍ତ୍ତି ଲୋକ ହୋଏ
ଆତ୍ମାକୁ ଦେଖିବାର ବଡ଼ କଷ୍ଟ ହୋଏ ।
ବିଷୟକୁ ଜୀବ ଛାଡ଼ିଲେ ପରମାତ୍ମା
ହୁଅଇଟି ଜାଣ ଆହେ ଜୀବ ମହାତ୍ମା ।
ପାପର ସକାଶରୁ ବିଷୟ ନିବୃତ୍ତି
କରି ଯେ ପାରଇ ଭଜି ନରମୂର୍ତ୍ତି ।
ପାପଟି ନାଶ ଗଲେ ତୃଷ୍ଣା ନାଶ ଯାଏ
ଆତ୍ମାକୁ ଭଜିଲେଟି ସିଦ୍ଧି ତା'ର ହୋଏ ।
ପାପକର୍ମ କ୍ଷୀଣ ହୋଇଣ ହେଲେ ଜ୍ଞାନ
କରଇଟି ଲୋକ ଆତ୍ମାକୁ ଦରଶନ ।
ବିଷୟରୁ ଇନ୍ଦ୍ରିୟ ନିବର୍ତ୍ତଇ ଯେବେ
ଜାଣ ଲୋକ ମହାସୁଖ ଲଭଇ ତେବେ ।
ଇନ୍ଦ୍ରିୟ ମନ ବୁଦ୍ଧି ପ୍ରଭୃତି ଜ୍ଞାନ ବର
ଜ୍ଞାନକୁ ପ୍ରଭୃତି ବ୍ରହ୍ମ ଅଟଇଟି ସାର ।
ଅନ୍ତରାତ୍ମା ଆଗ ବିଷୟ ଭୋଗ କରେ
ପଛେ ରହେ ବିଷୟ ସଙ୍ଗତେ ଦେହରେ ।
ସୂର୍ଯ୍ୟଙ୍କର ପ୍ରକାଶି ଲୁଣ୍ଠଇଲା ପ୍ରାୟେ
ସେହି କଥାଟି ଜାଣ ଆହେ ଦ୍ୱିଜରାୟେ ।
ପ୍ରବୃତ୍ତି ଧର୍ମ ପାଇ ଆତ୍ମାକର୍ମ-ଫଳ
ଭୋଗ କରଇ ଆହେ ଅଙ୍ଗିରାଙ୍କ ବାଳ ।
ନିରାହାର ଲୋକର ତୃଷ୍ଣା ନିବର୍ତ୍ତଇ
ଅନୁରାଗ ମାତ୍ର ଦେହରେ ରହିଥାଇ ।
ଅନୁରାଗ ପରମାତ୍ମାକୁ ଦେଖିଲେ
ନିବର୍ତ୍ତଇଟି ଯାଏ ଜାଣ ଦ୍ୱିଜ ଭଲେ ।
ବୁଦ୍ଧି କର୍ମଗୁଣରେ ହୁଏ ଯେବେ ହୀନ
ତେବେ ବ୍ରହ୍ମ ମନରେ ପ୍ରବର୍ତ୍ତଇ ଜାଣ ।
ସେ ମନ ଯେବେ ବୃତ୍ତି-ରହିତ ହୁଅଇ
ବ୍ରହ୍ମକୁ ଯାଇ ଜାଣ ଅବଶ୍ୟେ ଲଭଇ ।
ଶରୀର ମାନସିକ ଦୁଃଖ ଚିନ୍ତା କଲେ
ଦ୍ୱିଗୁଣ ହୋଇକରି ବଢ଼ଇ ଯେ ଭଲେ ।
ମାନସିକ ଦୁଃଖେ ଯେ ଶରୀର ଦୁଃଖକୁ
ବୁଦ୍ଧି-ଔଷଧରେ କରିବ ନାଶକୁ ।
ଜୀବନ ରୂପ ଧନ ଭୋଗ ପ୍ରିୟବାସ
ଏଥିରେ କଦାଚିତ୍ତେ ନୋହିବ ଲାଳସ ।

ନୈଷ୍ଟିଯାଦିକୁ ଯେବେ ମଡ଼ିବ ବିପତ୍ତି
ଜଣେ ନ ଭାବିବ ହେବାକୁ ତାହା ଶାନ୍ତ ।
ଯେଉଁ ଲୋକଟି ଦୁଃଖ ସୁଖକୁ ଛାଡ଼ଇ
ସେ ଲୋକ ବ୍ରହ୍ମ ପାଇବାକୁ ଶଙ୍କା ନାହିଁ ।
ସୁନା କଷଟିରେ ନୋହିଲା ପରି ବଣା
ଧ୍ୟାନରେ ଜାଣ ବ୍ରହ୍ମ ହୋଇଥାଏ ଜଣା ।
ମନ ଭୁଲେ ସହିତ ପଞ୍ଚେନ୍ଦ୍ରିୟ ହେଲେ
ମନକୁ ଲୋକ ଦେଖି ପାରଇଟି ଭଲେ ।
ସୂତରେ ମଣିମୁକ୍ତା ସୁନା ଥିଲା ପରି
ଆତ୍ମା ରହିଛନ୍ତି ସବୁରି ଦେହେ ପୂରି ।
ଯେଉଁ ଶରୀରରେ ଅର୍ଜିବ ଯେଉଁ କର୍ମ
ସେହି ଶରୀରରେ ଭୁଞ୍ଜିବ ସେହି ଧର୍ମ ।
ବ୍ରହ୍ମକୁ ଯୋଗୀ ବିନା ଆନ ଦେଖିବାର
କଷ୍ଟ ଅଟଇ ବୃହସ୍ପତି ମନେ କର ।
ପୃଥିବୀ ଜଳ ତେଜ ପବନ ଆକାଶ
ମନ ବୁଦ୍ଧି ପ୍ରଭୃତିକ କାଳଟି ବିଶେଷ ।
କାଳସ୍ୱରୂପଟି ଅଟନ୍ତି ଭଗବାନ
କାଳର ଆଦି ଅନ୍ତ ମଧ୍ୟ ନାହିଁ ଜାଣ ।
ପରଂବ୍ରହ୍ମ ପରଂଧାମ ବୋଲି କହି
ବିଷ୍ଣୁଙ୍କୁ ଜାଣିଥାଅ ଆହେ ଦ୍ୱିଜସାଇଁ ।
ଗୁରୁ ବେଦଙ୍କର ଯେ ଆଦି ଅନ୍ତ ଅଛୁ
ବ୍ରହ୍ମଠାରେ ଏ କଥା ନ ସମ୍ଭବେ କଛୁ ।
ଅଦୃଷ୍ଟ ଅନୁପାୟ ପ୍ରବୃତ୍ତି ଧରମ
ପ୍ରବର୍ତ୍ତକ ହେବାରୁ ଲୋକଙ୍କୁ ସେ ବାମ ।
ଜ୍ଞାନମଧ୍ୟରେ ବୁଦ୍ଧି, ବୁଦ୍ଧି ମଧ୍ୟେ ମନ
ମନ ମଧ୍ୟେ ଇନ୍ଦ୍ରିୟ କରିଣ ପ୍ରସନ୍ନ ।
ବ୍ରହ୍ମକୁ ଭାବିଲେଟି ଦେଖାସେ ଯାଆନ୍ତି
ଜାଣ ହେ ବୃହସ୍ପତି ଅଙ୍ଗିରା-ସନ୍ତତି ।
ମୁନିଲୋକ ବିଷୟ ପାଇଣ ନିବୃତ୍ତି
ହେଲେ ବ୍ରହ୍ମ ଧ୍ୟାନରେ ପାରଇ ପ୍ରବର୍ତ୍ତି ।
ସୁକୃତମାନଙ୍କର ଗତି ନାରାୟଣ
ଦେଖିଲେ ତାଙ୍କୁ ମୋକ୍ଷ ହୁଅନ୍ତି ସେ ଜାଣ ।
କହେ କୃଷ୍ଣସିଂହ ନରକୁଳପତି
ଶେଷ ହେଲା ସମ୍ବାଦ ମନୁ-ବୃହସ୍ପତି ।

—❋—

## ସର୍ବଭୂତ ଉତ୍ପତ୍ତି

ଯୁଧିଷ୍ଠିର ବୋଇଲେ ନାରାୟଣଙ୍କର
ମହାତମ କହ ହେ ଶାନ୍ତନୁକୁମାର ।
ଭୀଷ୍ମ ବୋଇଲେ ହେ ଋଷିଙ୍କଠାରୁ ମୁହିଁ
ଯା ଶୁଣିଛି ତାହା ତୁମ୍ଭଙ୍କୁ କହିବଇଁ ।
ନାରାୟଣ ଯେ ସର୍ବରୂପୀ ସେ ଅଟନ୍ତି
ଈଶ୍ୱର ବୋଲିକରି ତାହାଙ୍କୁ କହନ୍ତି ।
ପଞ୍ଚ ମହାଭୂତମାନଙ୍କୁ ନାରାୟଣ
ସରଜନା କରିଲେ ଆଗ କରି ଜାଣ ।
ତଦନ୍ତେ ଜଳରେ ଉତ୍ତାନଶାୟୀ ହୋଇ
ରହିଲେ ନାରାୟଣ ହୃଦେ ଯୋଗ ଧ୍ୟାୟି ।
ସଙ୍କର୍ଷଣ ଦେବଙ୍କୁ କଲେ ସରଜନା
ସେ ସବୁ ପ୍ରାଣୀଧାରକ ହେ ମହାମନା ।
ସଙ୍କର୍ଷଣ ପ୍ରଦ୍ୟୁମନଙ୍କୁ ସରଜିଲେ
ପ୍ରଦ୍ୟୁମନଙ୍କଠାରୁ ଅନିରୁଦ୍ଧ ହେଲେ ।
ଏଥୁଅନ୍ତେ ନାରାୟଣଙ୍କ ନାଭିଦେଶ—
ମଧ୍ୟରୁ ମହାପଦ୍ମ ହୋଇଲା ପ୍ରକାଶ ।
ସବୁ ପ୍ରାଣୀକରତା ଯେଉଁ ବେଦପତି
ସେ ପଦ୍ମମଧ୍ୟୁ ଜାଣ ହେଲା ଉତପତ୍ତି ।
ମଧୁନାମେ ଅସୁର ବ୍ରହ୍ମ ନୋହୁଁ ଜାତ
ଅଜ୍ଞାନରୁ ସେ ହୋଇଥିଲଟି ସମ୍ଭୂତ ।
ତମରୁ ଜାତହେବା ସକାଶୁଁ ତମବୁଦ୍ଧି
ହୁଅନ୍ତେ ବିଷ୍ଣୁ ଦେଲେ ପ୍ରାଣଟିକି ବଧି ।
ମଧୁକୁ ମାରିବାରୁ ବିଷ୍ଣୁଙ୍କର ନାମ
ବୋଇଲା ମଧୁସୂଦନ ନରୋତ୍ତମ ।
ବ୍ରହ୍ମାଙ୍କର ମନରୁ ଋଷିଙ୍କ ତିଳକ
ଜାତ ହୋଇଲେ ହେ ସପତ ଋଷିଯାକ ।
ମରୀଚଙ୍କଠାରୁ କଶ୍ୟପ ଜନମିଲେ
ଅଙ୍ଗୁଷ୍ଠିରୁ ବ୍ରହ୍ମା ଦକ୍ଷଙ୍କୁ ଜାତ କଲେ ।
ପ୍ରଜାପତିଙ୍କଠାରୁ ତେରଗୋଟି କନ୍ୟା
ଜାତହେଲେ ସମସ୍ତେ ସୁହେମବରଣା ।
ସେ ତେରଟି କନ୍ୟାଙ୍କୁ ମରୀଚଙ୍କ ସୁତ
ବରି ହେଲେ ରିଷି କଶ୍ୟପ ତପୋବନ୍ତ ।
ଦକ୍ଷପ୍ରଜାପତି ଦଶୋଟି କନ୍ୟା କଲେ
ଧରମଦେବତାଙ୍କୁ ନେଇ ତାହା ଦେଲେ ।
ବିଶ୍ୱଦେବ ମରୁତ ସାଧ୍ୟ ବସୁ ରୁଦ୍ର
ଧର୍ମଙ୍କ ସୁତ ଯେ ହୋଇଲେ ଲୋକ ଭଦ୍ର ।
ସତାଇଶ କନ୍ୟାଙ୍କୁ ଦଶପ୍ରଜାପତି
ଜାତ କରି ଇନ୍ଦୁଙ୍କୁ କରାଇଲେ ପତି ।
କଶ୍ୟପଙ୍କ ଅଦିତି ଭାରିଯା ଆଦିତ୍ୟ-
ମାନଙ୍କୁ ହେ ମାନ୍ତ୍ରବନୃପ କଲେ ଜାତ ।
ଆଦିତ୍ୟମାନଙ୍କର ପଛରେ ବାମନ-
ବିଷ୍ଣୁ ଜନମିଲେ ଜାଣ ଆହେ ରାଜନ ।
ବଳିଙ୍କର ଯେନ ମହୀକି ତ ପାଇଲେ
ଏଣୁ ଗୋବିନ୍ଦ ସେ ଜଗତେ ବୋଲାଇଲେ ।
ବାମନଙ୍କର ବିକ୍ରମରୁ ଦେବେ ଶିରୀ
ପାଳିକରି ଭୋଗ କରିଲେ ସ୍ୱର୍ଗପୁରୀ ।
କଶ୍ୟପଙ୍କ ଭାର୍ଯ୍ୟା ଦନୁଜ ନାରୀଙ୍କର
ବିପ୍ରଚିତ୍ତି ଆଦି ଯେ ହୋଇଲେ କୁମର ।
ଦିତିଙ୍କଠାରୁ ଅସୁରେ ଜନମିଲେ
ଆଉ ଭାର୍ଯ୍ୟା ଜଣେ ଗନ୍ଧର୍ବ ଜାତ କଲେ ।
ଏ ବାହାରେ ଯେତେକ କଶ୍ୟପଙ୍କ ଭାର୍ଯ୍ୟା
ଥିଲେ ସେ ପ୍ରସବିଲେ ପଶୁପକ୍ଷୀ ପ୍ରଜା ।
କାଳର ବିଭାଗକୁ କଲେ ଭଗବାନ
ଏବେ ହେ ଜାଣ ଯୁଧିଷ୍ଠିର ନରରାଣ ।
ଏ ଉତ୍ତାରୁ ସ୍ଥାବର ଜଙ୍ଗମକୁ କଲେ
ତଦଅନ୍ତେ ପୁଣି ମହୀକି ସରଜିଲେ ।
ମୁଖ ବାହୁ ଊରୁ ପାଦରୁ ଚାରି ଜାତି
ସରଜିଲେ ଶତ ସଂଖ୍ୟାରେ ଲକ୍ଷ୍ମୀପତି ।
ସବୁ ବିଦ୍ୟା ସବୁ ପ୍ରାଣୀଙ୍କରେ ଅଧ୍ୟକ୍ଷ
ବ୍ରହ୍ମାଙ୍କୁ ଜାତ କଲେ ବିଷ୍ଣୁ ଦେବମୁଖ୍ୟ ।
ଶଙ୍କର ଦେବଙ୍କୁ ପ୍ରମଥଗଣଙ୍କରେ
ଅଧିପତି କରିଲେ ବିଷ୍ଣୁ ସନ୍ତୋଷରେ ।
ପିତୃ ପାପୀଙ୍କରେ ଯମକୁ ଅଧିକାରୀ
ଏକା କରି କଲେ ହରଷେ ଚକ୍ରଧାରୀ ।
ନିଧିମାନଙ୍କ ମଧ୍ୟେ କୁବେର ଦେବତା
ଅଧିକାର କଲେ ଭୂତବନ୍ଦ୍ୟ ପିତା ।
ଜଳ ଜଳଜନ୍ତୁରେ ବରୁଣ ଅଧିପ
ହେଲେ ବିଷ୍ଣୁ ଆଜ୍ଞାରେ ଜାଣ ଆହେ ନୃପ ।
ଇନ୍ଦ୍ରସବୁ ଦେବତାଙ୍କରେ ଅଧିକାର
ପାଇକରି ହୋଇଲେ ଶଚୀଙ୍କର ବର ।

ସେ ଯୁଗରେ ଯେତେକ ଜନ ନୃପ ଇକ୍ଷ୍ୱାକରେ
ସେ ତେତେକଜନ ଯାଇ ଯମପୁରେ ଗଲେ ।
ମଇଥୁନ ଧର୍ମଟି ନୋହିଲା ତାହାର
ଇକ୍ଷ୍ୱାକଲ୍ମାଷକେ ଜନ୍ମିଲା କୁମର ।
ତ୍ରେତା ଯୁଗରେ ସ୍ପର୍ଶି ଅଙ୍ଗକୁ ଛୁଇଁଲେ
ପୁତ୍ରଟିଏ ପ୍ରସବ ପଡ଼େ ଜାଣ ଭଲେ ।
ଦ୍ୱାପର କଳିଯୁଗେ ମଇଥୁନ ଧର୍ମ
ପ୍ରବର୍ତ୍ତିଲା ପୁତ୍ରପାଇଁ ହେ ନରୋତ୍ତମ ।
ଏ କୃଷ୍ଣଟି ସଂସାର-କରତା ଅଟନ୍ତି
ଏହାଙ୍କୁ ଭଜ ପ୍ରୀତି ବହି ହେ ନୃପତି ।
ଦକ୍ଷିଣ ଦିଗେ ଆନ୍ଧ୍ର ଓଡ୍ରଙ୍କ ଶବର
ଚୁଚୁକ ମଦ୍ର ପୁଲକନ୍ଦ ଆଦିଙ୍କର ।
ଜନମ ହୋଇଲା ହେ ପାଣ୍ଡବ ନୃପତି
ଉତ୍ତର ଦିଗରେ କହିବା ଉତପତ୍ତି ।
ଗାନ୍ଧାର କାମ୍ବୋଜ ଯେ କଇତବ ଖାର
ଜନ୍ମଦେଶ ଉତ୍ତର ହୁତା ଆଦିଙ୍କର ।
ସତ୍ୟଯୁଗେ ଏମାନେ ଗୁପତରେ ଥିଲେ
ଦ୍ୱାପର କଳିଯୁଗେ ଭବେ ପ୍ରସବଲେ ।
ଦ୍ୱାପର କଳି ଦୁଇ ଦିଗର ସନ୍ଧିରେ
କ୍ଷତ୍ରିୟଙ୍କୁ ମାଇଲେ ଶ୍ରୀକୃଷ୍ଣ ମାୟାରେ ।
ଏହି କଥା ଶ୍ରୀକୃଷ୍ଣ ମୋତେ କହିଛନ୍ତି
କହୁଛି ଜାଣ ହେ ବଚସବର୍ଯ୍ୟ ନାତ ।
କୃଷ୍ଣଙ୍କ ମହିମା ଚିନ୍ତା କରିବାରେ
ନ ସରିବ କେବେହେଁ ଶେଷଙ୍କ ମୁଖରେ ।
ମହିଁ ଛାର ତା କାହୁଁ ପାରିବ ବା କହି
ମୋତେ ତା ନ ପଚାର ଆହେ ନରସାଇଁ ।
ନବଭୂତ ଉତ୍ପତ୍ତି ଅଧ୍ୟା ହେଲା ଶେଷ
କହଇ କୃଷ୍ଣସିଂହ ଧରକୋଟ-ଈଶ ।

— ୦

## ଦିଗରକ୍ଷ ବୃତ୍ତାନ୍ତ

ଯୁଧିଷ୍ଠିର ବୋଇଲେ ଯେଉଁ ଋଷିମାନେ
କେଉଁ ଦେଶେ ଥିଲେ କହ ମୋ ସନ୍ନିଧାନେ
ଏ ବାହାରେ କେତେ ବା ଥିଲେ ପ୍ରଜାପତି
ଏହା ମଧ୍ୟ କହିବା ହେଉ ମହାମତି ।
ଭୀଷ୍ମ ବୋଇଲେ ଆହେ ପଚାରିଲ ଯାହା
କହିବା ଶୁଣନ୍ତି ପାଣ୍ଡବ-ନରନାହା ।

ବ୍ରହ୍ମାଙ୍କମନରୁ ସପତଋଷି ହେଲେ
ସେ ସପତରେ ପ୍ରଜାପତି ବୋଲାଇଲେ ।
ଏ ସପ୍ତ ଜଗତେ ପ୍ରସିଦ୍ଧି ପ୍ରଜାପତି
ବୋଲନ୍ତି ଜାଣହେ ପାଣ୍ଡବ ନରପତି ।
ଅତ୍ରି ବଂଶେ ପ୍ରାଚୀନବର୍ହି ରାଜା ହେଲେ
ତାଙ୍କଠାରୁ ଦଶ ପ୍ରଚେତା ଉପୁଜିଲେ ।
ଦଶପ୍ରଚେତାଙ୍କଠାରୁ ଉତପତ୍ତି
ହୋଇଲେ ଜାଣ ଆହେ ଦକ୍ଷପ୍ରଜାପତି ।
ମରୀଚିଋଷିଙ୍କ କଶ୍ୟପ ପୁତ୍ର ହେଲେ
ସେହି ତ ମଧ୍ୟ ପ୍ରଜାପତି ବୋଲାଇଲେ ।
ଅଙ୍ଗ ନାମରେ ଜଣେ ପ୍ରଜାପତି ହେଲେ
ପିତାମହଙ୍କ ପଦ ଗୋଟିଏ ଖାଇଲେ ।
ଅରକ୍ଷମା ନାମରେ ଯେଉଁ ପ୍ରଜାପତି-
ହେଲେ ତାହାଙ୍କୁ ଭଲ ସମସ୍ତେ ବୋଲନ୍ତି ।
ଶଶବିନ୍ଦୁ ରଜାର ଭାରିଯା ଅୟୁତ
ବିଭା ହେଲେ କାନ୍ତିରେ ସେ ଅତି ଦୀପିତ ।
ଅୟୁତେ ଭାରିଯାର ଅୟୁତ ଲେଖାଏଁ
ପୁତ୍ର ଜନମିଲେ ହେ ନରକୁଳ ରାଏ ।
ଏହି ସକାଶରୁ ଯେ ଶଶବିନ୍ଦୁ ନାମ
ପ୍ରଜାପତି ହେଲେ ସେ ନରଙ୍କ ଉତ୍ତମ ।
ବୃଷ୍ଣି ଯାକ ଶଶବିନ୍ଦୁଙ୍କର ଅନ୍ୱୟ
ଅଟନ୍ତି ଜାଣ ଆହେ ଧର୍ମଙ୍କ ତନୟ ।
ସେ ପ୍ରଜାପତିଙ୍କର ଶୁଣିଲ ତ କଥା
ଏବେ ଶୁଣ ଦେବଙ୍କ କଥା ମହାରଥା ।
ଭଗ ଅଂଶ ଅର୍ଯ୍ୟମା ବରୁଣ ଦେବତା
ତ୍ୱଷାଟ ପୁଷା ବିବସ୍ୱନ୍ତ ଇନ୍ଦ୍ର ଧାତା ।
ବିଷ୍ଣୁ ମିତ୍ର ଦେଖି ହେ ଦ୍ୱାଦଶ ଆଦିତ୍ୟ
ସେ କଶ୍ୟପଙ୍କଠାରୁ ହୋଇଲେଟି ଜାତ ।
ବିବସ୍ୱନ୍ତଠାରୁ ଅଶ୍ୱିନୀକୁମାରେ
ଜନମି ଉପୁଜିଲେ ଜାଣ ଏ ସଂସାରେ ।
ତ୍ୱଷାଟଙ୍କର ବିଶ୍ୱରୂପ ହେଲେ ସୁତ
ଜଗତେ ତାଙ୍କ କୀର୍ତ୍ତି ହେଲା ଅତି ଖ୍ୟାତ ।
ଅଜୈକପାଦ ଅହିର୍ବୁଧ୍ନ୍ୟ ରୈବତ
ବହୁରୂପ ଯେ ହର ସାବର୍ଣ୍ଣୀ ଜୟନ୍ତ ।
ଅପରାଜିତ ବିରୂପାକ୍ଷ ତ୍ରିନେତ୍ର
ପିନାକୀ ମିଶି ଏକାଦଶ ରୁଦ୍ର ଖ୍ୟାତ ।

ଧର୍ମଙ୍କଠାରୁ ହୋଇଥିଲେ ଉତପତ୍ତି
ଜାଣଆନ୍ତ ନାରାୟଣ-ନରକୁଳ-ନନ୍ତ ।
ଏହା ବାହାରେ ଅଷ୍ଟବସୁଙ୍କର ତାତ
ହୋଇଲେ ଧର୍ମ ଏବେ ଜାଣ ଧର୍ମସୁତ ।
ପିତୃ ସାଧ୍ୟ ମିତ୍ର ମରୁତ ଋଭୁ ଦେବ—
ଗଣ ବୋଲନ୍ତି ହେ ଜାଣ ନରଦେବ ।
ଆଦିତ୍ୟ କ୍ଷତ୍ରିୟ ମରୁତଚୟ ବୈଶ୍ୟ
ଶୂଦ୍ର ବୋଲନ୍ତି ପୁଣି ଅଶ୍ୱିନୀଙ୍କ ଶିଷ୍ୟ ।
ଅଙ୍ଗିରାଙ୍କଠାରୁ ଦେବତା ଯେତେ ହେଲେ
ପଇତା ପକାଇ ସେ ଦ୍ୱିଜ ବୋଲାଇଲେ ।
ଏରୂପେ ଦେବଙ୍କର ଅଛି ଗୁରବର୍ଣ୍ଣ
ଏହାକୁ ଯେଉଁ ଲୋକ କରଇ କୀର୍ତ୍ତନ ।
ସମସ୍ତ ପାତକରୁ ମୁକତ ହୁଅଇ
ଅନ୍ତଃକାଳେ ଯାଇଣ ସ୍ୱର୍ଗରେ ବସଇ ।
ଯବକ୍ରୀତ ରୈଭ୍ୟ ଯେ ମୀଳ କାକ୍ଷୀବାନ
ଅର୍ବାବସୁ ପରାବସୁ ତପସ୍ୱୀ କାନ୍ୱ ।
ପୂର୍ବଦିଗରେ ଏହି କରନ୍ତି ବାସ
ତପସ୍ୟାରେ କରଣ ମାନସ ଲାଳସ ।
ଉନ୍ମୁଚ ବିମୁଚ ପ୍ରମୁଚ ସ୍ୱସ୍ତ୍ୟାତ୍ରେୟ
ଇଧ୍ମବାହ ଅଗସ୍ତ୍ୟ ଯାମ୍ୟ ଦିଗାଶ୍ରୟ ।
ଧୌମ୍ୟ ପରିବ୍ୟାଧ ଯେ ଉଷଙ୍ଗୁ ଏକତ
ଦୁର୍ବାସା ସାରସ୍ୱତ କରୁଣ ଦ୍ୱିତ ତ୍ରିତ ।
ଏମାନଙ୍କ ଅଟେ ପଶ୍ଚିମଦିଗ ବାସ
ତପୀ ଜପୀଙ୍କରେ ଏ ଅଟନ୍ତି ବିଶେଷ ।
ବଶିଷ୍ଠ ଅତ୍ରି ଗଉତମ ଭରଦ୍ୱାଜ
କଶ୍ୟପ ବିଶ୍ୱାମିତ୍ର ଋଚୀକ ଆତ୍ମଜ ।
ଉତ୍ତରଦିଗରେ ଏ କରିଥାନ୍ତି ସ୍ଥିତି
ଧରିଥାଆନ୍ତି କରେ ବସି କୁଶପାନ୍ତି ।
ଏ ଋଷିମାନଙ୍କୁ ଯେ କରଇ କୀର୍ତ୍ତନ
ସବୁ ପାପୁଁ ମୁକତ ହୁଅଇ ସେ ଜାଣ ।
ଯେଉଁ ଦିଗକୁ ଯେହୁ କରିବ ଗମନ
ସେ ଦିଗ ଋଷିଙ୍କର ନାମକୁ କୀର୍ତ୍ତନ ।
କରିଗଲେ ସମସ୍ତ କାର୍ଯ୍ୟ ଜୟ ହୋଏ
ଏଥି କିଛି ସଂଶୟ ନ କର ହୃଦୟେ ।
ଏଠାରେ ଦିଗ ସ୍ୱସ୍ତି ଅଧ୍ୟାୟ ସମାପ୍ତି
କଲେ, କହଇ କୃଷ୍ଣସିଂହ ବ୍ୟାସ ଯତି ।

—o—

## ଶ୍ରୀକୃଷ୍ଣର ବରାହ ଅବତାର

ଯୁଧିଷ୍ଠିର ବୋଇଲେ ପୁରୁଷ ଉତ୍ତମ
କୃଷ୍ଣ କମ୍ପା ହେଲେ ତିର୍ଯ୍ୟକ-ଯୋନିଜନ୍ମ ।
ଏହି କଥା ମୋ ଆଗେ କହ ପିତାମହ
ଶୁଣିବାକୁ ମୋହର ବଳୁଅଛି ସ୍ନେହ ।
ଭୀଷ୍ମ ବୋଇଲେ ହେ ମୋ ଯୁବାକାଳେ ମୁହିଁ
ଯାଇଥିଲି ମୃଗୟା କରି ନରସାଇଁ ।
ମୃଗୟା କରୁଁ କରୁଁ ମାର୍କଣ୍ଡେୟାଶ୍ରମ
ମିଳିଲି ମୁଁ ଯାଇ ଅତ୍ୟନ୍ତ ଦେହ ଶ୍ରମେ ।
ସେହି ସ୍ଥାନରେ ମୁନିମାନଙ୍କୁ ବହୁତ
ଦେଖିଲି ଆହେ ଜାଣ ଧର୍ମଦେବସୁତ ।
ସେ ଋଷିମାନେ ମୋତେ ଦେଖି ସ୍ନେହ କଲେ
ମଧୁପର୍କ ଦେଇ ଆଦରେ ବସାଇଲେ ।
ଋଷିଙ୍କଠାରୁ ଯେ ପାଇ ମୁହିଁ ପୂଜା
ମହାଆନନ୍ଦକୁ ଧରିଲି ଜାଣ ମଣ୍ଡା ।
ଋଷିଙ୍କ ଦେଇଥିବା ଆସନେ ବସିଲି
କଷୁଣୀରେ ମୁଁ ଧନୁର୍ଗୁଣକୁ କଷିଲି ।
ସେହିକାଳେ କଶ୍ୟପ କହିଲେ ଯା ମୋତେ
ଶୁଣ ତାହା ପାଣ୍ଡବରାଜା ଏକଚିତ୍ତେ ।
ପୂର୍ବକାଳେ ବିହୁ ନରକାଦି ଅସୁରେ
ଥିଲେ, ଯୁଦ୍ଧ କରନ୍ତେ, ହାରିଲେ ଅସୁରେ ।
ମହୀ ସେ ଦାନବଙ୍କ ଭାରକୁ ନ ସହି
ରହିଲେ ଅଧୋଦେଶ ଅଧକରେ ଯାଇ ।
ଏଥୁଅନ୍ତେ ଦେବେ ଯେ ବ୍ରହ୍ମାଙ୍କ ଆଗରେ
ଗୁହାରି କଲେ ଯାଇ ଅତ୍ୟନ୍ତ ରାଗରେ ।
ଦାନବଙ୍କ ଯୋଗୁଁ ପାଇଲୁ ଆମ୍ଭେ ପୀଡ଼ା
ଆହେ ପିତାମହ ତାଙ୍କର ନାହିଁ ବ୍ରୀଡ଼ା ।
ବ୍ରହ୍ମା ବୋଇଲେ ହେ ନ ଡର ଦେବେ କିଛି
ଏଥିକି ଉପାୟ ମୁଁ ପୂର୍ବୁ ବିଚାରିଛି ।
ବିଷ୍ଣୁ ଯେ ବରାହର ରୂପକୁ ଧରିବେ
ଉଦ୍ଧରି ଭୂମି ଭୂମି ଦୁଃଖ ନିବାରିବେ ।
ଏ ବଚନ ବ୍ରହ୍ମାଙ୍କ ମୁଖୁଁ ଦେବବୃନ୍ଦ
ଶୁଣିକରି ଗଲେ ହୋଇଣ ମହାନନ୍ଦ ।
ଏଥୁଅନ୍ତେ ବିଷ୍ଣୁ ବରାହ ରୂପ ଧରି
ଭୂମି ଭେଦି ଗମିଲେ ଦାନବ ସଂହାରି ।

ବରାହଙ୍କୁ ଦେଖି ଦାନବେ ହୋଇ କ୍ରୋଧ
ଧଇଲେ ଧାଇଁ ଯାଇ କରିବାକୁ ଯୁଦ୍ଧ ।
ଥାଉ ମାରିବାର ସେ ବରାହଙ୍କୁ ଛିପେ
ଖୁଲ ନ ପାରିଲେ ଧରିଲେ ଆଗ ଧାପେ ।
ବରାହମୂର୍ତ୍ତି ବିଷ୍ଣୁ ଦେଖି କ୍ରୋଧ ହେଲେ
ହୁଂକାର କରି ଅତିଶୟ ଗରଜିଲେ ।
ବରାହଙ୍କ ଗର୍ଜ୍ଜନ ନାଦ ଦଶଦିଗ
ଫାଟିଲା ପରି ହେଲା ଜାଣ ମହାଭାଗ ।
ଇନ୍ଦ୍ରାଦି ଦେବତାଏ ଚେଷ୍ଟା ଛାଡିଦେଲେ
ସ୍ଥାବର ଜଙ୍ଗମାଦି ମୋହକୁ ପାଇଲେ ।
ଦାନବମାନେ ମଧ୍ୟ ମହାଭୟ ପାଇ
ଶୋଇଲେ ସେ ଗର୍ଜି ତଳରେ ମୋହ ଯାଇ ।
ବରାହରୂପୀ ବିଷ୍ଣୁ ଦାନବ ଦୈତ୍ୟକୁଳ
ଚକଟି ପକାଇଲେ ପରକାଶି ବଳ ।
ବରାହଙ୍କ ଗର୍ଜ୍ଜନ ଶୁଣି ଦେବ ଶ୍ରେଣୀ
ବରାହଙ୍କ ଆଗେ କହିଲେ ଯୋଡି ପାଣି ।
ଏ ଶବଦ ଶୁଣି ଜଗତଲୋକ ମନ
ହେଉଛି ଛନ୍ନ ଛନ୍ନ ଆହେ ଭଗବାନ ।
ଏହି ସମୟେ ଜାଣ ଦାନବ ସଂହାରି
ବାହାରିଲେ ଜଳୁଁ ବରାହରୂପୀ ହରି ।
ବ୍ରହ୍ମା ବୋଇଲେ ହେ ବରାହରୂପୀ ହରି
ଦେଖ ଆସୁଅଛନ୍ତି ଦାନବ ସଂହାରି ।
ଆଉ ଦେବେ ତୁମ୍ଭେ ନ ପାଅ କିଛି ଭୟ
ଏଥୁଁ ହେବ ତୁମ୍ଭର ମହତ ଉଦୟ ।
ଏହି ବରାହଟି ଦୈତ୍ୟଙ୍କ ବଧକାଳେ
ସୁଂକାରଗରଜନ କଲେ ଦେହବଳେ ।
ପ୍ରସନ୍ନ କରି ମୁଖ ଗଲେ ଯେଥା ବାସ
ଏହାକୁ ଶୁଣି ଦେବେ ହୋଇଲେ ସନ୍ତୋଷ ।
ହେ ଯୁଧିଷ୍ଠିର ରଜା ବରାହ ମୂରତି
ବିଷ୍ଣୁ ବୋଲିଣ ଜାଣ ଶ୍ରୀକୃଷ୍ଣ ଅଟନ୍ତି ।
ଏହିଠାରେ କୃଷ୍ଣଙ୍କ ବରାହ ମୂରତି
ଚରିତ ଶେଷ କଲେ ବ୍ୟାସ ମହାମତି ।
କୃଷ୍ଣସିଂହ ନରେଶ ତାଙ୍କ ପାଦ ଧ୍ୟାୟି
ଗୀତ ପ୍ରବନ୍ଧରେ ତା ବର୍ଣ୍ଣିଣ କହଇ ।

—○—

## ଗୁରୁ ଶିଷ୍ୟ ସମ୍ବାଦ

ଯୁଧିଷ୍ଠିର ବୋଇଲେ ମୋହକୁ ଉପାୟ
ମୋ ଆଗେ ପିତାମହ କରି ତା ଉଦୟ ।
ଭୀଷ୍ମ ତହୁଁ ବୋଇଲେ ଗୁରୁ ଶିଷ୍ୟ ଦୁଇ
ମୋକ୍ଷ ସମ୍ବାଦକୁ ହେ ଶୁଣ ନରସାଇଁ ।
ଶିଷ୍ୟ ଦ୍ୱିଜ ଜଣେ ଗୁରୁଙ୍କଠାକୁ ଆସି
ମୁକୁତି ପଚାରିଲେ ସମୀପରେ ବସି ।
ତୁମ୍ଭେ ଆମ୍ଭେ ଯେ କେଉଁଠାକୁ ଆସିଥାଇଁ
ବେଦରେ କିବା କହିଅଛନ୍ତି ଗୋସାଇଁ ।
ସର୍ବପ୍ରାଣୀଯାକ ତ ଅଟନ୍ତି ସମାନ
ତହିଁରେ କିମ୍ପା ହୋଏ କ୍ଷୟ ବୃଦ୍ଧି ମାନ ।
ଏହି କଥାମାନ ମୋ ଆଗରେ ବିଶେଷି
କହିବାହେଉ ଆହେ ଗୁରୁଦେବ ବସି ।
ଗୁରୁଦେବ ବୋଇଲେ ବ୍ରହ୍ମାଙ୍କ ଚରିତ
ପୁଚ୍ଛିଲେ ଯେ ଶିଷ୍ୟ ତା ଶୁଣ ହୋଇ ରତ ।
ସୃଷ୍ଟି ପ୍ରଳୟକାଳେ କର୍ତ୍ତା ବାସୁଦେବ
ଶ୍ରୀକୃଷ୍ଣ ଅଟନ୍ତି ବ୍ରହ୍ମା ଭୂମିଦେବ ।
ଏ ଚରିତ ବ୍ରାହ୍ମଣ ବ୍ରାହ୍ମଣ ଆଗରେ
କହିବ ଲେଖିଅଛି ଶାସ୍ତ୍ର ସବୁଗରେ ।
କ୍ଷତ୍ରିୟେ କ୍ଷତ୍ରିୟ କହିଲେ ଦୋଷ ନାହିଁ
ଏହା ମଧୁଋଷି ଅଛନ୍ତି ମୁଖେ କହି ।
ଆଦି ଅନ୍ତ ଯେ ନାହିଁ କାଳଚକ୍ରଙ୍କର
ତ୍ରିଲୋକେ ଚକ୍ରପରି ବୁଲେ ନିରନ୍ତର ।
ଅକ୍ଷର ଅବ୍ୟକ୍ତ ବ୍ରହ୍ମଟି ରୁକ୍ମିଣୀ-
ଦେବୀଙ୍କ ବିହାରୀଙ୍କି ବନରେ ଭମଣି ।
ପ୍ରଳୟେ ଗର୍ଭରେ ସେ ରଖନ୍ତି ବ୍ରହ୍ମାଣ୍ଡ
ପୁଣି ପ୍ରକାଶନ୍ତି ହେଲେ ତା ଶେଷଖଣ୍ଡ ।
ସେ ଯେଉଁରୂପେ ବିଷ୍ଣୁ ଦେହେ ଥାଏ ରହି
ପ୍ରଳୟଅନ୍ତେ ସେରୂପେ ସେ ବାହାରଇ ।
ଯାହାର ଯେଉଁରୂପେ ହୋଇଥାଏ ଜ୍ଞାନ
ସେହିରୂପେ ତାହାର ହୁଅଇ ସେ ଜାଣ ।
ବ୍ରହ୍ମାଙ୍କ ଆଜ୍ଞାରେ ଋଷିଏ ବେଦଶ୍ରେଣୀ
ପାଇଣ ସଙ୍କ ତରେ ଉଚ୍ଚାରିଲେ ବାଣୀ ।
ବୃହସ୍ପତି ବେଦାଙ୍ଗ ଭାର୍ଗବ ନୀତିଶାସ୍ତ୍ର
ଜାଣିକରି ସେ କଲେ ଦେହକୁ ପବିତ୍ର ।

ନାରଦ ମହାଋଷି ଗାନ୍ଧର୍ବ ଶିଖିଲେ
ଭରଦ୍ୱାଜ ଧନୁର୍ବେଦକୁ ପାଠ କଲେ ।
ଗର୍ଗ ଜ୍ୟୋତିଷରେ ଯେ ହୋଇଲେ କୁଶଳ
କୃଷ୍ଣାତ୍ରେୟ ଆୟୁ ଜାଣିଲେ ଦ୍ୱିଜବାଳ ।
ଏ ବାହାରେ ଆନ ଋଷିଏ ଯେତେ ଥିଲେ
ନ୍ୟାୟ-ଶାସ୍ତ୍ରେ ଜଗତେ ବିବାଦୀ ସେ ହେଲେ ।
ବ୍ରହ୍ମକୁ ଜାଣିବାକୁ କାର ଅଧିକାର
ନୋହିଲା ଋଷିକୁଳେ ଜାଣ ଦ୍ୱିଜବର ।
ନାରାୟଣଙ୍କର ପ୍ରଭାବେ ମୋକ୍ଷଋଷି
ବ୍ରହ୍ମକୁ ଜାଣିଲେ ଆଖିକି ଭାଲେ ଖୋଷି ।
ପୁରୁଷ ସକାଶରୁ ପ୍ରକୃତି ଜଗତ
ଜାତ କରୁଅଛି ଜାଣ ହେ ତପୋବନ୍ତ ।
ପ୍ରକୃତିରୁ ବୁଦ୍ଧି, ବୁଦ୍ଧିରୁ ଅହଙ୍କାର
ଅହଙ୍କାରୁଁ ଆକାଶ, ଆକାଶୁଁ ସମୀର ।
ସମୀରଣରୁ ତେଜ ତେଜରୁ ସଲିଳ
ସଲିଳରୁ ମହୀ ଜାଣିଛ ଦ୍ୱିଜବର ।
ଏହିମାନଙ୍କୁ ମୂଳକାରଣଟି ବୋଲି
ମୋ କହିବାରୁ ଜାଣ ସନ୍ଦେହ ନ ଭାଳି ।
ପାଞ୍ଚେ କର୍ମ ଇନ୍ଦ୍ରିୟ ପାଞ୍ଚେ ଜ୍ଞାନେନ୍ଦ୍ରିୟ
ମନର ସଙ୍ଗତରେ ପାଞ୍ଚୋଟି ବିଷୟ ।
ଏମାନଙ୍କର ଜାତ ମୂଳକାରଣଟି
ମୋ କହିବାରୁ ଜାଣ ନାହିଁ କଣ୍ଠାବଟି ।
ଶ୍ରୋତ୍ର ତ୍ୱକ ରସନା ଚକ୍ଷୁ ଘ୍ରାଣ ଜ୍ଞାନ
ଇନ୍ଦ୍ରିୟ ବୋଲଏଟି ଦ୍ୱିଜମନେ ଘେନ ।
ପାଦ ଗୁହ୍ୟ ଉପସ୍ଥ ପାଣି ବାଣୀ କର୍ମ-
ଇନ୍ଦ୍ରିୟ ବୋଲାଏ ହେ ଦ୍ୱିଜଙ୍କ ଉତ୍ତମ ।
ଶବଦ ସ୍ପର୍ଶ ରୂପେ ରସ ଗନ୍ଧ ପାଞ୍ଚ
ବିଷୟ ବୋଲନ୍ତି ମନେ ଘେନ ପାଞ୍ଚ ।
ଏମାନେଟି ବିଷ୍ଣୁଙ୍କ ଆଶ୍ରାରେ ଜଗତ
ବନ୍ଧି ରହିଛନ୍ତି ହେ ଦ୍ୱିଜ ତପୋବନ୍ତ ।
ନବଦ୍ୱାର ପୁରରେ ପୂର ଶୋଇବାରୁ
ବୋଲନ୍ତିଟି ପୁରୁଷ ପ୍ରଦ୍ୟୁମ୍ନ ଗୁରୁ ।
ବ୍ୟକତ ଅବ୍ୟକତ ଅଜର ବ୍ୟାପକ
ଅମର ଗୁଣାଶ୍ରୟ ସୂକ୍ଷ୍ମ ଗୁଣାତ୍ମକ ।
ରୁକ୍ମିଣୀଦେବୀଙ୍କର ଯେ ଟି ପ୍ରାଣପତି
ତାହାଙ୍କୁଟି ଏରୂପେ ବୋଲିଣ କହନ୍ତି ।

ସକଳ ପ୍ରାଣୀଠାରେ ଜ୍ଞାନକୁ ପ୍ରକାଶ
କରୁଛନ୍ତି ହୃଦରେ ରହି ଯଦୁ-ଈଶ ।
ଦେହରେ ଥାଇ ପ୍ରଭୁ କର୍ମ ସେ କରନ୍ତି
ଭଲମନ୍ଦ ମନରେ କାରଣ ବୁଝନ୍ତି ।
ସୂର୍ଯ୍ୟ-କରେ ନଗର ଜଳ ନାଶ ପରି
ଦେହୀଙ୍କର ଦେହ ଯାଉଛି ତପସ୍ୱୀର ।
କରମ ଯାହାଠାକୁ ଯାଅଇଟି ଘେନ
ସେହି ତା'ର ହୁଅଇ ଜାଣ ଜନ୍ମସ୍ଥାନ ।
ଚତୁର୍ବିଧ ପ୍ରାଣୀଏ ପ୍ରକୃତିରୁ ଜାତ
ହୋଇ ପ୍ରକୃତିରେ ହୁଅନ୍ତି ଅନ୍ତର୍ଭୂତ ।
ମଞ୍ଜିରେ ଯେଉଁରୂପେ ଗଛ ଥାଏ ରହି
ସେରୂପ ପ୍ରକୃତିରେ ଜଗତକୁ କହି ।
କାଳେ ପ୍ରକୃତିରୁ ଜଗତ ହୋଏ ଜାତ
କାଳରେ ପ୍ରକୃତିରେ ହୁଏ ଉପଗତ ।
ଚୁମ୍ବକର ହେତୁ ଯେ ନ ଥାଇ ଲୁହାକୁ
ଆକର୍ଷେ ଯେରୂପେ ପ୍ରକୃତି ଜଗତକୁ ।
ପ୍ରବର୍ତ୍ତାଏ ଚେଷ୍ଟା ନ ଥାଇ ଦ୍ୱିଜବର
ମୋ କହିବାରୁ ଏହା ହୃଦୟରେ କର ।
ଏରୂପେ କାଳ ଚକ୍ର ପ୍ରବର୍ତ୍ତିଲେ ମହୀ
ଜନ୍ମ ମୃତ୍ୟୁ ଦୁଇ ହେଉଛି ଦେଖୁଥାଇଁ ।
କାଳ-ଘଣ୍ଟାଟିରେ ଜଗତ ଘଣିପରି
ପୀଡ଼ା ପାଉଅଛି ହେ ଜାଣ ତପସ୍ୱୀର ।
କାରଣ କାର୍ଯ୍ୟ ଦୁହେଁ ଧର୍ମଧର ଦ୍ୱିଜ
ହୋଇ କରୁଛନ୍ତିଟି କାରଣ-ସମାଜ ।
କାର୍ଯ୍ୟ କରିବାକୁ କାରଣ ତତ୍ତ୍ୱ ଅଟେ
କହୁଛି ମୁଁ ହେ ଦ୍ୱିଜ ଘେନ ହୃଦ-ତଟେ ।
ଜ୍ଞାନ-ଅଭ୍ୟାସରେ ଲୋକ ନିଯୁକ୍ତ ହେଲେ
ପ୍ରକୃତିକି ସେ ପାରଇଟି ଭଲେ ।
ପ୍ରବୃତ୍ତି-ଲକ୍ଷଣଟି ଧର୍ମ ଅଜ୍ଞାନୀର
ହେବାରୁ ପ୍ରକୃତିଟି କରଇ ଆହାର ।
ଜ୍ଞାନନିଷ୍ଠଲୋକଙ୍କୁ ଜ୍ଞାନତତ୍ତ୍ୱ ବିନା
ଆନ ତତ୍ତ୍ୱ ନ ରୁଚେ ଦ୍ୱିଜ ମହାମନା ।
ବେଦ ଜାଣି ବେଦାନ୍ତ କର୍ମ ଯେ କରଇ
ନାସ୍ତିକକୁ ପ୍ରତି ଭଲ ତାହାକୁ କହି ।
କାମ୍ୟ ଛାଡ଼ି ଅକାମ୍ୟ କର୍ମ ଯେହୁ କରେ
ତା ସୁକୃତ କହି କେ ପାରିବ ଲୋକରେ ।

ଯେଉଁ ଲୋକ ଜାଣିବା ଜନଟି ହୋଇବ
ବିଷୟ ଚିନ୍ତନ କେବେ ନ କରିବ ।
କାମ୍ୟକର୍ମ କରିବା ଲୋକର ମୁକତି
ସମ୍ପତ୍ତି ହୋଇ ବୋଲି ବୋଲିବା କେ ଯତି ।
ରାଗ ଯାଇ ନ ଥିବା ଲୋକରଟି ଜ୍ଞାନ
ଲୌହଯୁକ୍ତ ସୁବର୍ଣ୍ଣବାହୀ ପରି ଜାଣ ।
ଧର୍ମ-ମାର୍ଗ ଲଂଘି ଯେ ଅଧର୍ମ ଆଚରି
ସମୂଳରେ ବିନାଶ ହୁଅଇ ତାହାରି ।
ପଞ୍ଚେନ୍ଦ୍ରିୟ-ଭୋଗ ବିଷୟେ ଆସକତ
ନୋହିବ, ଯେ ହୋଇବ ଜଗତେ ପଣ୍ଡିତ ।
ମୂର୍ଖଲୋକେ ବିଷୟ ଆସକତ ହୋଇ
ରହନ୍ତି ଦେହକୁ ଅକ୍ଷୟ କରି ଧ୍ୟାୟି ।
ମାଟିର ଘଟଟିକି ଲିପୁଥିଲେ ଥାଏ
ନ ଲିପିଲେ ଦିନ ସେ ଝଡ଼ି ଭାଙ୍ଗିଯାଏ ।
ସେହିରୂପେ ପାର୍ଥିବ ଦେହକୁ ଭୋଜନ
ବିନା ଆନନ୍ଦରେ ହେ ନାହିଁ ପରିତ୍ରାଣ ।
ରୋଗୀ ଲୋକ ଔଷଧ ଖାଇବା ପରି
ଜ୍ଞାନୀଏ ଆହାର କରନ୍ତି ତପସ୍ୟାରି ।
ଶୌଚ ସତ୍ୟ ଆର୍ଜବ ଧୃତି କ୍ଷାନ୍ତି ତପ
କରଣ ସହିଥିବ ତ୍ରିଗୁଣ ସନ୍ତାପ ।
ସତ୍ତ୍ୱ ରଜ ତମରେ ପଡ଼ି ଲୋକଗଣ
ଜନ୍ମ ମରଣକୁ ଲଭନ୍ତି ପୁନଃ ପୁନଃ ।
ଦୋଷ ବା ଗୁଣ କେଉଁ ଜ୍ଞାନ ଅଜ୍ଞାନରୁ
ହେଲ ଏହାକୁ ବୁଝିଥିବା ହୋଇ ଧୀରୁ ।
ଅଜ୍ଞାନରୁ ସଂଯାତ ଅହଙ୍କାର ଛାଡ଼ି
ଜ୍ଞାନ-ଜଳଧିରେଟି ରହିଥିବ ବୁଡ଼ି ।
ପଞ୍ଚମହାଭୂତ ଯେ ସତ୍ତ୍ୱ ରଜ ତମ
ଅହଙ୍କାରରୁ ଜାତ ଜାଣ ଦ୍ୱିଜୋତ୍ତମ ।
କାଳ ଯେଉଁରୂପେ ଦେଖାଏ ଋତୁଗଣ
କାଳ ସେହିରୂପେ ବିଷୟ ଅଟେ ଜାଣ ।
ତମୋଗୁଣ ଯୋଗୁଁ ମୋହ ଜାତ ହୁଏ
କାମ କ୍ରୋଧ ପ୍ରମାଦକୁ ସେ ଗୋଟିଆଏ ।
ରଜୋଗୁଣ ସକାଶୁଁ ବିଷାଦମାନ ଦର୍ପ
ପ୍ରବର୍ତ୍ତିଣ ବଢ଼ାଏ ହୃଦୟ ସନ୍ତାପ ।
ସତ୍ତ୍ୱଗୁଣ ସକାଶୁଁ ମୋକ୍ଷ ପ୍ରୀତି ଧୃତି
ଶ୍ରୁତି ହୃଦୟ ସ୍ଥଳେ ହୁଅଇଟି ଖ୍ୟାତି ।

ସତ୍ତ୍ୱ ରଜ ତମର ଗୁରୁତା ଲଘୁତା
ବିଚାରି ଛାଡ଼ିବ ଯେ ହୋଇ ବିବେକତା ।
ଶିଷ୍ୟ ଦ୍ୱିଜ ପୁଚ୍ଛିଲେ ଛାଡ଼ିବ କି ଦୋଷ
କିସ ଆଚରିବ ତା କର ହେ ପ୍ରକାଶ ।
ଗୁରୁ ବୋଇଲେ ହେ ବିଶୁଦ୍ଧ ଆତ୍ମା ହେଲେ
ସବୁ ଦୋଷକୁ ଲୋକ ନାମକରେ ହେଲେ ।
ଅକୃତ ଆତ୍ମା ଲୋକ ରାଜସ ତାମସ
ଦୋଷରେ ନାଶ ଯାଏ ଦ୍ୱିଜକୁଳକଳଶ ।
ଏହି ସକାଶୁଁ ଜାଣ ସତ୍ତ୍ୱଗୁଣ ଧରି
ରାଜସ ତାମସକୁ ଦେବ ଧ୍ୱଂସ କରି
ରାଜସ ତାମସ ଦେହର ଉତ୍ପତ୍ତିର
କାରଣ ଅଟଇ ହେ ଦ୍ୱିଜ ମନେକର ।
ଜ୍ଞାନୀଲୋକ ଯେ ରଜ ତମକୁ ଛାଡ଼ିବ
ତେବେ ଯାଇ ସେ ସତ୍ତ୍ୱଗୁଣକୁ ଲଭିବ ।
ସତ୍ତ୍ୱଗୁଣ ଆଶ୍ରୟ କରେ ଯେଉଁ ଦେହୀ
ତାଠାରେ ପାପ କେବେ ରହି ନ ପାରଇ ।
ରଜୋଗୁଣ କ୍ରୋଧ ଯେ ଲୋଭ ମୋହ ଭୟ
ଜାତ ହୁଅଇ ଦ୍ୱିଜ କର ହେ ଉଦୟ ।
ବିଷ୍ଣୁଙ୍କର ମାୟାରେ ଭରମିଣ ଲୋକେ
କାମନା ଆଚରନ୍ତି ପଡ଼ନ୍ତି ନରକେ ।
କାମନା ସକାଶରୁ କ୍ରୋଧକୁ ପାଆନ୍ତି
କ୍ରୋଧରୁ ଲୋଭ ମାନ ଦୁହିଁଙ୍କି ବଢ଼ାନ୍ତି ।
ମାନରୁ ଅହଙ୍କାର ଅହଙ୍କାରୁ କ୍ରିୟା
କ୍ରିୟାରୁ ସ୍ନେହ, ସ୍ନେହୁ ହୋଏ ଶୋକକ୍ରିୟା ।
ଶୋକରୁ ଦୁଃଖ ଦୁଃଖୁ ହୁଏ କ୍ରିୟାତ୍ମ
ତଦଅନ୍ତେ ହୁଅଇ ରାଜଜନ୍ମ ଲଭ ।
ଜନ୍ମଅନ୍ତେ ଗର୍ଭେ କରଇ ନିବାସ
ବୀର୍ଯ୍ୟ ରଜ ସଙ୍ଗତେ ଜାଣ ହେ ଦ୍ୱିଜେଶ ।
ପୁରୀଷ ମୂତ୍ରାଦିରେ ଆବିଳ ହୁଅଇ
ପଡ଼ିଲା କାହିଁ କାଳ ରଢ଼ିକ ପାରଇ ।
ସ୍ତ୍ରୀଣମାନେ ସଂସାରେ ବୋଲଅନ୍ତି କ୍ଷେତ୍ର
କ୍ଷେତ୍ରଙ୍କଟି ସ୍ତ୍ରୀ ବୃକ୍ଷେ ଜାଣ ଦ୍ୱିଜପୁତ୍ର ।
ଏହି ସକାଶରୁ ଜାଣିବା ଲୋକମାନେ
ଛୁଇଁବ ନାହିଁ ନାରୀମାନଙ୍କୁ ସ୍ୱପନେ ।
କୃତ୍ୟା ସ୍ୱରୂପଟି ଅଟନ୍ତି ନାରୀକୁଳ
ଅଜ୍ଞାନ ନିକରର ନରକ ସେ ମଳ ।

ଆପଣା ଦେହ କୃମି ଛାଡ଼ି ଯେଉଁରୂପେ
ସେହିରୂପେ ପୁତ୍ରକୁ ଛାଡ଼ିବଟି ଆପେ ।
ଶୁକ୍ର ଶୋଣିତର ସଂଯୁତରେ ପ୍ରାଣୀ
ମଧ୍ୟରେ ଜନମନ୍ତି ହୋଇ ଶ୍ରେଣୀ ଶ୍ରେଣୀ ।
ରଜ ତମ ବିବର୍ଜିତ ହୋଇଲେ ସତ୍ତ୍ୱ
ହୃଦୟେ ରହି କରଇଟି ସର୍ବହିତ ।
ଜୀବ ଯେତେବେଳେ ତତ୍ତ୍ୱଜ୍ଞାନ ଶୂନ୍ୟ
ହୁଅଇ ସେତେବେଳେ ହୁଅଇ ଜନମ ।
ସେ ପୁଣି କର୍ମକାଳ ବଶରେ ସଂସାରେ
ଭ୍ରମଇ ଆମ୍ଭି ଦ୍ୱିଜବର ନିରନ୍ତରେ ।
ଯେଉଁ କର୍ମରେ ଯେଉଁ ଇନ୍ଦ୍ରିୟ ପ୍ରବଳ
ହୁଅଇ ସେ ବିଷୟ କରନ୍ତି ସେ ଠୁଳ ।
ପ୍ରାଣାପାନ ସମାନ ଉଦାନ ସେ ବ୍ୟାନ
ଦେହେ ଥାଇ ଦେହକୁ କରନ୍ତି ରକ୍ଷଣ ।
ଶାରୀର ମାନସିକ ଦୁଃଖରୁ ଅତୀତ
ହୋଇଲେ ବ୍ରହ୍ମଜ୍ଞାନ ହୃଦେ ହୁଏ ଜାତ ।
ବିଷୟ ଅଭିମାନ ଏ ଦୁଇରୁ ଦୁଃଖ
ବଢ଼େ, ଅର୍ଜନ୍ତି ଏହା ଯେତେକ ମୂରୁଖ ।
ବିଷୟକୁ ଛାଡ଼ିଲେ ଦୁଃଖ ହୋଏ ଶାନ୍ତ
ଦୁଃଖ ଶାନ୍ତ ହୋଇଲେ ହୁଅଇ ମୁକତ
ରଜୋଗୁଣୁଁ ଇନ୍ଦ୍ରିୟମାନେ ଉତପତ୍ତି
ହୋଇ ରଜୋଗୁଣରେ ଲୟକୁ ପାଆନ୍ତି ।
ଜ୍ଞାନୀମାନେ ଏ କଥା ପରୀକ୍ଷା କରନ୍ତି
ଏଣୁ ତାଙ୍କ ଇନ୍ଦ୍ରିୟେ ବିଷୟ ଛାଡ଼ନ୍ତି ।
ଇନ୍ଦ୍ରିୟବର୍ଗ ଯେତେ ହୁଏ କ୍ଷୀଣ ଅତି
ଦେହି ଦେହ ସଂସର୍ଗେ ନ ବଳାଏ ମତି ।
ଆଉ ଥରେ ଶରୀର ନୋହିବା ଉପାୟ
କହିବା ଏବେ ତୁମ୍ଭ ଆଗରେ ଉଦୟ ।
ଅଜ୍ଞାତରୁ ଯେବେ ତ୍ରାଣ ପାଆନ୍ତି ଜୀବ
ପରମସ୍ଥାନେ ତାଙ୍କ ହୁଅଇଟି ଠାବ ।
ସବୁ ଜୀବଙ୍କରେ ମନୁଷ୍ୟ ଅଟେ ସାର
ମନୁଷ୍ୟଙ୍କ ମଧ୍ୟରେ ବଡ଼ ଦ୍ୱିଜବର ।
ଦ୍ୱିଜମାନଙ୍କ ମଧ୍ୟେ ବେଦପଢ଼ା ଦ୍ୱିଜ
ଅଧିକ ଅଟଇ ତା ଜାଣ ତେଜ ଓଜ ।
ବେଦପଢ଼ା ଦ୍ୱିଜେ ଅଟନ୍ତି ତତ୍ତ୍ୱଦର୍ଶୀ
ମୁକତି ତାଙ୍କ ସଙ୍ଗେ ଅଛି ବୋଲି ଭାଷି ।

ଜ୍ଞାନହୀନ ଲୋକ ଅଟଇ ଜାଣ ଅନ୍ଧ
ଏଣୁ ଭୋଗ କରଇ ନରକ ଦୁର୍ଗନ୍ଧ ।
ଜ୍ଞାନବନ୍ତ ଲୋକ ତାହାକୁ ନ ଛାଡ଼ନ୍ତି
ନିତି ଧର୍ମକଥାରେ ଚିତ୍ତ ଦେଉଥାନ୍ତି ।
ଜ୍ଞାନୀ ଧର୍ମ ଛାଡ଼ିବା କଉଣସି କଥା
ନ କରନ୍ତି କଲେ ପାଆନ୍ତି ବ୍ୟଥା ।
ବଚନ ଦେହ ମନ ଧର୍ମିଜନମାନେ
ଶୁଦ୍ଧ କରିଥାନ୍ତି ଜାଣ ଯା ଅବିଚ୍ଛନ୍ନେ ।
କ୍ଷମା ସତ୍ୟ ଧୃତି ସ୍ମୃତିକି ଅହର୍ନିଶି
ନ ଛାଡ଼ନ୍ତି ଧନ ନିଅନ୍ତି ହସି ହସି ।
ବ୍ରହ୍ମଚର୍ଯ୍ୟ ବ୍ରହ୍ମ ଅଟଇଟି ସ୍ୱରୂପ
ତା କଲେ ବ୍ରହ୍ମଦେହେ ହୁଏ ଯାଇ ଲୋପ ।
ଥାଉ ସ୍ତ୍ରୀସଂଭୋଗ ମନରେ ଭାବନା
ଜ୍ଞାନୀଏ ନ କରନ୍ତି ଜାଣ ମହାମନା ।
ବ୍ରହ୍ମଚାରୀମାନଙ୍କ ହୋଏ ବ୍ରହ୍ମଲୋକ
ଋତୁଗାମୀ ଭୋଗ କରଇ ଯାଇ ନାକ ।
ନିତି ଯେ ସ୍ୱଭାର୍ଯ୍ୟାକୁ ସେବା ବିହରଇ
ବ୍ରାହ୍ମଣଗଣେ ଅଗ୍ରଜନ୍ମା ସେ ହୁଅଇ ।
ଯେଉଁ ଲୋକ ପାରଇ ମନଟିକି ରୁନ୍ଧି
ସେ ଲୋକ ହୋଇ ହୋଏ ବ୍ରହ୍ମଚର୍ଯ୍ୟ ସିଦ୍ଧି ।
ସ୍ତ୍ରୀମାନଙ୍କର ବଚନକୁ କାନରେ
ନ ଶୁଣିବ ନ ଚାହିଁବଟି ନୟନରେ ।
ସ୍ତ୍ରୀଙ୍କି ଚାହିଁଲେ ତ କାମ ହୋଏ ଗୋଟି
ଏଥିକି ସବୁବେଳେ ଦେଇଥିବ ଦୃଷ୍ଟି ।
ବ୍ରାହ୍ମଣର ହେଲେ ସ୍ତ୍ରୀରେ ଅନୁରାଗ
କୃଚ୍ଛ୍ରବ୍ରତ କରି ଭାଙ୍ଗିବ ସେ ସରାଗ ।
ଦିବସରେ କରିବ ତିନିବାର ସ୍ନାନ
ସ୍ୱପ୍ନେ ସଙ୍ଗ ହେଲେ ଜପିବ ମନ୍ତ୍ରମାନ ।
ଏରୂପେ ଯେଉଁ ଲୋକ ସଦା ଆଚରଇ
ବ୍ରହ୍ମଚର୍ଯ୍ୟ ବ୍ରତ ସେ ସମଗ୍ର ଲଭଇ ।
ଜ୍ଞାନବନ୍ତ ଲୋକ ଦେହକୁ ଶବପରି
ନିତି ମନେ କରୁଥିବ ହେ ତପସ୍ଚାରି ।
ବାତ ପିତ୍ତ କଫ ଯେ ଚର୍ମ ଅସ୍ଥି ମାଂସ
ଅନ୍ତ ରକ୍ତ ମଜ୍ଜାରେ ଶିରା କରି ବାସ ।
ଦେହଯାକ ଭୁକ୍ତ ରସକୁ ପ୍ରସବଏ
ମୋ କହିବାରୁ ଏହା ଜାଣ ଦ୍ୱିଜବରୟେ ।

ପଞ୍ଚେନ୍ଦ୍ରିୟକୁ ଯେଉଁ ଧାଡ଼ିଗୋଟି ଶିର
ଦେହରେ ରହିଅଛି ଜାଣ ଦ୍ୱିଜବର ।
ଏ ବାହାରେ ତାହା ସଙ୍ଗେ ସୂକ୍ଷ୍ମ ହୋଇ
ସହସ୍ର ସଂଖ୍ୟା ଶିର ଛନ୍ତି ଦେହେ ରହି ।
ଆହାରେ ଜଳପୂର୍ଣ୍ଣ ହୋଇ ଶିରା ନଦୀ
ପୂରିଉଛନ୍ତି ଦେହ ସିନ୍ଧୁ ନିର୍ବାଧି ।
ହୃଦୟର ମଧ୍ୟରେ ଶିରଟିଏ ଅଛି
ଅନ୍ତ ମନରଠାକୁ ଯେଉଁ ଯାଉଅଛି ।
ଏ ସବୁ ଅବୟବରୁ ଶୁକ୍ର ସମ୍ଭବଇ
ଏଥିରେ କହିବାକୁ ସନ୍ଦେହଟି ନାହିଁ ।
ନେତ୍ର ଦୁଇ ଯେଉଁ ଶିରକୁ ଛନ୍ତି ବହି
ତେଜୋଗୁଣ ଅଛି ଯେ ତାହିଁ ମଧ୍ୟେ ରହି ।
ଦୁଧରୁ ଯେଉଁରୂପେ ଘିଅ ଉପୁଜଇ
ସେରୂପେ କାମ ଯୋଗୁ ଶୁକ୍ର ଜନମଇ ।
ଅତ୍ରି ଋଷି ଶୁକ୍ରର ଜନ୍ମ ଜାଣିଛନ୍ତି
ଇନ୍ଦ୍ରଦେବ ଶୁକ୍ରର ଦେବତା ଅଟନ୍ତି ।
ଏହି ସକାଶୁଁ ଜାଣ ଶୁକ୍ରକୁ ଇନ୍ଦ୍ରିୟ
ବୋଲି କରି କହନ୍ତି ସର୍ବ ଋଷି ଚୟ ।
ଶୁକ୍ରଗତିରେ ଯେ ବିରାଗ ହୋଇଥାନ୍ତି
ଦେହର ସମ୍ଭବକୁ ଜାଣି ସେ ନ ପାନ୍ତି ।
ପରମକୁ ଆତ୍ମାରେ ଯେ ନିବେଶଇ ମନ
ମୁକତି ହୋଇ ତା'ର ହୋଇଲେ ନିର୍ବାଣ ।
ଯୋଗୀମାନଙ୍କର ସୁନିର୍ମଳ ଜ୍ଞାନଟି
ସବୁବେଳେ ମନରେ ହୋଇଥାଏ ଗୋଟି ।
ରଜସ୍ତମ ଛାଡ଼ିଣ ସତ୍ତ୍ୱଗୁଣ କର୍ମ
କରିବାର ଅଟଇ ଏ ମହାପ୍ରେ ଧର୍ମ ।
ବିରାଗାଦି ଉପାୟକୁ ମନେ ଗଲେ ଗଲ
ଲୋକ ପାଅଇ ବ୍ରହ୍ମଦେବଙ୍କୁ ନ ଭାଳ ।
ଯେମାନେ ବିଷୟେ ହୁଅନ୍ତି ଆସକତି
ପରମ-ଗତିକି ସେ କେବେ'ନ ପାଆନ୍ତି ।
ଜନ୍ମମୃତ୍ୟୁ ବ୍ୟାଧିରେ ପଡ଼ି ସବୁ ଲୋକ
ଭୋଗ କରୁଛନ୍ତି ଦେହରେ ଦୁଃଖ ଶୋକ ।
ଏହା ଦେଖି ଜାଣିବା ଜନ ଯେ ହୋଇବ
ସବୁ କଥାକୁ ଛାଡ଼ି ବ୍ରହ୍ମକୁ ଧ୍ୟାଇବ ।
ବଚନ ମନ ଦେହ ଶୁଦ୍ଧ କରିଥାନ୍ତି
ହେଲେ ବ୍ରହ୍ମ ଆସି ହୁଅନ୍ତି ପରାପତି ।

ପୂର୍ବରେ ଶୁଭାଶୁଭ ଦୁଇରୁ ଯେ ଯାହା
କରିଥାଏ ସେ ତାହା ଭୁଞ୍ଜେ ଦ୍ୱିଜନାହା ।
ଅହିଂସା କ୍ଷମା ସତ୍ୟ ଆର୍ଜବ ଏ ଗୁଣ—
ଆଚରଣେ ଦୁର୍ଗତି କେବେ ନାହିଁ ଜାଣ ।
ଯେଉଁ ଲୋକ ପ୍ରାଣୀଙ୍କ ସୁଖାବହ ହୋଏ
ସେ ଲୋକକୁ ତତ୍ତ୍ୱଜ୍ଞ ବୋଲିକରି କହେ ।
ଦୁଷ୍ଟକଥା ଦୁରାଶା ନ ରଖି ହୃଦରେ
ଯେ ଜ୍ଞାନ ସାଧୁଥିବ ବିଶୁଦ୍ଧ ମନରେ ।
ଅଧ୍ୟାତ୍ମ ଜ୍ଞାନେ ମନ ନେତ୍ର ପ୍ରବର୍ତ୍ତାଇ
ରଖିଥିବଟି ନିତି ପ୍ରୀତିମନ୍ତ ହୋଇ ।
ନ କହିବ କଥା ଗୁଡ଼ାଏ ଲୋକ ଆଗେ
ତାମସକର୍ମା ବୋଲାଏଟି ମହାଭାଗେ ।
ତେଜୋଗୁଣ ପୀଡ଼ିତ ଇନ୍ଦ୍ରିୟରେ କର୍ମ
କଲେ ଜାତ ହୁଅଇ ଜାଣ ହେ ଅଧର୍ମ ।
ମନ ବଚନରେ ଇନ୍ଦ୍ରିୟ ସୁସଂଯତ
କରୁଥିବ ଯେବେ ହୋଇବ ଭାଗ୍ୟବନ୍ତ ।
ଏକାନ୍ତରେ ରହିଣ ଅଳପ ଭୋଜନ
କରି ଜ୍ଞାନ ହେଲେ ପାଏ ସେ ବ୍ରହ୍ମସ୍ଥାନ ।
ଜ୍ଞାନ ଦଗଧ କ୍ଲେଶପରିଗ୍ରହ ମୁକ୍ତ
ଏକାନ୍ତସେବୀ ଜିତେନ୍ଦ୍ରିୟ ଯୋଗରତ ।
ଯେ ହୋଇବ, ପରମବ୍ରହ୍ମ ସେ ପାଅଇ
ଏଥିରେ କହିବାକୁ ସନ୍ଦେହଟି ନାହିଁ ।
ଧୈର୍ଯ୍ୟଗୁଣେ ବୁଦ୍ଧି, ବୁଦ୍ଧି ଗୁଣ ମନ
ମନରେ ବିଷୟ କରିବ ସାଧ ଜାଣ ।
ଯେଉଁ ଲୋକ ଇନ୍ଦ୍ରିୟ-ନିଗ୍ରହ କରଇ
ଦେବେ ତାକୁ ପ୍ରସନ୍ନ ହୋଇଥାନ୍ତି ରହି ।
ମନ କେଉଁକାଳରେ ହୁଅଇ ନିର୍ମଳ
ସେକାଳେ ବ୍ରହ୍ମ ପାଏ ଜାଣ ଦ୍ୱିଜବାଳ ।
ଚଣା ଶାଗ ପିଣ୍ୟାକ ଫଳ ଯେ ଯବାନ୍ନ
ଛତୁଆ ଖାଇ ଯୋଗୀ ରହିବଟି ଜାଣ ।
ଦେଶ କାଳକୁ ଜାଣି ଆହାର ନିୟମ
ଯୋଗପ୍ରବୃତ୍ତିରେ କରିବାର ଧରମ ।
ଜ୍ଞାନ ପ୍ରବୃତ୍ତିରେ ଯେ ଖାଉଥିବ ନିତି
ଯେବେ ଇଚ୍ଛା ଥିବ ହେବାପାଇଁ ମୁକତି ।
ଅଜ୍ଞାନ ଜାଣ ମୂଳ ପ୍ରକୃତିକି କହି
ତିନିଲୋକ ଯାକେ ସେ ବ୍ୟାପିଅଛି ରହି ।

କାଳଜୟୀ ମାନବ ଜରା ମୃତ୍ୟୁ ଜୟ
କରି ଅନ୍ତେ ବ୍ରହ୍ମରେ ହୁଅଇ ସେ ଲୟ ।
ବ୍ରହ୍ମଚର୍ଯ୍ୟକୁ ଯେଉଁଲୋକ କରୁଥିବ
ସ୍ୱପ୍ନଯୁକ୍ତ ନିଦ୍ରାରେ ଆସକ୍ତ ନୋହିବ ।
ନିଦ୍ରା ହୋଇଲେ ରଜୋଗୁଣ ତମୋଗୁଣ
ଦେହୀଲୋକ ଦେହରେ ପ୍ରବେଶିଇ ଜାଣ ।
ତୁମ୍ଭେ ଅବା ବୋଲିବ ଶୟନେ ଇନ୍ଦ୍ରିୟ-
ମାନେ ଦେହ ମଧ୍ୟରେ ହୋଇଥାନ୍ତି ଲୟ ।
ଆଉ ଦେହଟିଏ ସ୍ୱପ୍ନରେ କେଉଁରୂପେ
ମନ ଦେଖଇ ତାହା କହ ମୋତେ ଆପେ ।
ଏଥିକି କହୁଥାଇଁ ଶୁଣ ଆହେ ଶିଷ୍ୟ
ଏ କଥା ଜାଣିଛନ୍ତି ଏକା ବୃଷ୍ଣିଈଶ ।
ଏରୂପେ ତାଙ୍କଠାରୁ ଯାହା ଶୁଣିଛନ୍ତି
ତା ଶୁଣି ତୁମ୍ଭଙ୍କୁ କହୁଛୁ ବହି ପ୍ରୀତି ।
ଶିଷ୍ୟ ବୋଇଲେ ହେ ଋଷିଙ୍କଠାରୁ ତୁମ୍ଭେ
କ ଶୁଣିଛ କହତ ପଚାରୁଛୁ ଆମ୍ଭେ ।
ଗୁରୁ ବୋଇଲେ ଆହେ ଇନ୍ଦ୍ରିୟ ନିବୃତ୍ତ
ହବାରୁ ସର୍ବଗତ ମନେ ଦ୍ୱିଜସୁତ ।
ସ୍ୱପନ ବୋଲିକରି ଜନେ ଯେ କହନ୍ତି
ମୋହ କଥାରେ ବୃଥା ନ ଭଜାଅ ମତି ।
ମନ କେତେବେଳେ ନିଦ୍ରାରେ ନୋହେ ଲୀନ
ଏ ଯୋଗେ ସେ ସ୍ୱପନ କରେ ବିଲୋକନ ।
ଯେଉଁ କଥାରେ ସେ ଆସକ୍ତ ଥାଏ ବହି
ସ୍ୱପନରେ ସେ ଜାଣ ସେ କଥା ଦେଖଇ ।
ରଜୋଗୁଣ ତମୋଗୁଣର ସକାଶରୁ
ବେଦନା ଦେଖି ସ୍ୱପ୍ନେ ହୋଏ ଅତି ଭୀରୁ ।
ଏହାକୁ ଜାଣିକରି ତପରେ ମନକୁ
ନିର୍ମଳ କଲେ ଜାଣ ପାଏ ସେ ବ୍ରହ୍ମକୁ ।
ତପକୁ ଆଶ୍ରେ କଲା ସକାଶରୁ ଦେବେ
ସ୍ୱର୍ଗରେ ବସିଛନ୍ତି ମହାଅନୁଭବେ ।
ଅସୁରେ ତପ ଆଶ୍ରାକରିବାରୁ ବେଗ
କରି କଷ୍ଟକାଳେ ହୁଅନ୍ତି ଯମଭାଗ ।
ଜ୍ଞାନ ଅଜ୍ଞାନକୁ ଯେ ଦେବତା ଅସୁରେ
ଗୁପତ କରିଥାନ୍ତି ନ ଜାଣନ୍ତି ନରେ ।
ସତ୍ତ୍ୱଗୁଣକୁ ଦେବେ, ରଜସ୍ତମୋଗୁଣେ-
ଅସୁରେ ଆଚରନ୍ତି ଜାଣ ପ୍ରତିକ୍ଷଣେ ।

ସେମାନେ ବ୍ରହ୍ମକୁ ଜାଣନ୍ତି ଦ୍ୱିଜବର
ତାହାକୁ କେବେ ବାଧି ନ ପାରେ ସଂସାର ।
ସତ୍ତ୍ୱ ରଜ ତମ ଆତ୍ମାକୁ ଯେ ନ ଜାଣେ
ପଡ଼ିଥାଏ କେବଳ ସେ ସଂସାର-ବନେ ।
ବ୍ୟକତ ଅବ୍ୟକ୍ତ କପିଳଋଷି କହି-
ଅଛନ୍ତି ଜାଣ ଦ୍ୱିଜ ଏବେ ତା କହଇ ।
ବ୍ୟକତ ମୃତ୍ୟୁ ପଦ ଅବ୍ୟକ୍ତ ଅମୃତ
ପଦ ବୋଲି କରି ଜାଣ ହେ ଦ୍ୱିଜସୁତ ।
ନିବୃତ୍ତି-ଲକ୍ଷଣକୁ ନାରାୟଣ ଋଷି
ବଚନରେ ସେ ଜାଣ ଅଛନ୍ତିଟି ଭାଷି ।
ପ୍ରଜାପତି ପ୍ରବୃତ୍ତି-ଲକ୍ଷଣ ବଖାଣି
କରିଛନ୍ତି ଜନଙ୍କୁ ନୋହିବାକୁ ଜାଣ ।
ପ୍ରବୃତ୍ତି-ଧର୍ମ ଯେଉଁ ଲୋକ ଆଚରଇ
ଜନମନବୃତ୍ତିଟି ତା'ର କେବେ ନାହିଁ ।
ନିବୃତ୍ତିପର ହୋଇ ଜ୍ଞାନ ଯେ ଆଚରେ
ଆଉ ଥରେ ଜନମ ନୁହେଁ ସେ ସଂସାରେ ।
ପ୍ରକୃତି ପୁରୁଷ ବ୍ରହ୍ମକୁ ଆନ କରି
ଜ୍ଞାନୀ ଲୋକ ଜାଣିପାରେଟି ତପସ୍ତାରି ।
ପ୍ରକୃତି ପୁରୁଷର ନାହିଁ ଆଦ୍ୟ-ଅନ୍ତ
ସେ ଦୁହିଙ୍କି ଜାଣନ୍ତି ମାତ୍ର ଜ୍ଞାନବନ୍ତ ।
ପ୍ରକୃତିକି ପୁରୁଷ ଛାଡ଼ି ନ ପାରନ୍ତି
ଏକସ୍ଥାନ ହୋଇଣ ଜାଣ ସେ ରହନ୍ତି ।
ପ୍ରକୃତିଠାରୁ ଆନ ଅଟଇ ପୁରୁଷ
କହୁଅଛୁ ଜାଣ ହେ ଦ୍ୱିଜକୁଳ-ଈଶ ।
କ୍ଷେତ୍ରଜ୍ଞ ବୋଲିକରି ଆତ୍ମାକୁଟି କହି
ପ୍ରକୃତି ପୁରୁଷ ଅଟଇ ଏକଦେହୀ ।
ପ୍ରକୃତି ପୁରୁଷ ଅଗ୍ରାହ୍ୟ ସବୁଙ୍କର
ସେ ଦୁହିଙ୍କ ଭେଦକୁ ଜାଣିଟି ନ ପାର ।
ଆପଣା ଯେତେବେଳେ କର୍ମକୁ କରଇ
ମୁହିଁ କଲି ତା ବୋଲି ବଚନେ କହଇ ।
ପର ଯେତେବେଳରେ କରମକୁ କରେ
କଏ ସେ କର୍ତ୍ତା ବୋଲି ବଚନେ ଉଚାରେ ।
କାର୍ଯ୍ୟକଲା ଲୋକକୁ ଦେଖି ହାତ ଠାରି
ଏହିଟି କଥା ବୋଲି କହଇ ଉଚାରି ।
କାର୍ଯ୍ୟକଲାରେ ଲୋକ ନ ଥିଲେ ସମୀପେ
ସେ କର୍ତ୍ତା ବୋଲିକରି କହେ ମୁଖେ ଆପେ ।

ଯା ଉପରେ ବସନ ଗୁଡ଼ାଏ ଥାଏ ରହି
ଯେରୂପେ ବସନ ସେ ଭିନ୍ନ ପଦାରଥ ।
ସେହି ରୂପରେ ସତ୍ତ୍ୱ ରଜ ତମ ତିନ
ଦେହୀ ଠେଲି ଦେହେ ରହନ୍ତି ହୋଇ ସ୍ୱାମୀ ।
ବ୍ରହ୍ମକୁ ଇଚ୍ଛା କଲେ ଦେହ ନିୟମରେ
ତପ କରୁଥିବ ବଚନେ ନିରନ୍ତରେ ।
ଦେଖ ଚନ୍ଦ୍ର ତପନ ଦୁହେଁ ତପକରି
ପ୍ରକାଶ ହେଉଛନ୍ତି ମହାତେଜ ଧରି ।
ତମକୁ ନାଶକରି ଜ୍ଞାନ ଯେ କରଇ
ସେହି କଥାକୁ ତପ ବୋଲିକରି କହି ।
ବ୍ରହ୍ମଚର୍ଯ୍ୟ ଅହିଂସା ଦେହ ଜପ ତପ
ବାଙ୍ମନ ସଂଯମଟି ମନୋଜନ୍ୟତପ ।
ଅଧିକ ଦ୍ୱିଜ ଅନ୍ନ ଖାଇଣ ନିୟମ
ଆଚରିଲେ ମଧ୍ୟ ସେ ପ୍ରକାଶଇ ଧର୍ମ ।
ଯେତିକି ଖାଉଥିଲେ ରହିବ ପରାଣ
ସେତିକି ଖାଇବ ହେ ଦ୍ୱିଜବର ଜାଣ ।
ବିସ୍ମୟ ଯେବେ ଆସି ହୋଏ ଉପସ୍ଥାନ
ଆହାର ଊଣା କରିବାରଟି ଉଚିତ ।
ଆହାର ପୂର୍ଣ୍ଣ କରୁଥିଲେ ଜ୍ଞାନ-ସିଦ୍ଧି
କେବେ ତାର ନୁହଇ, ଜଗତେ ପ୍ରସିଦ୍ଧି ।
ରଜୋଗୁଣ-ଯୁକତ ନର ଯେବେ ହେବ
ଶାସ୍ତ୍ରକୁ ଛାଡ଼ି ନିଜ ଧର୍ମକୁ କରିବ ।
ଯେଉଁ ଲୋକ ବୈରାଗ ବୁଦ୍ଧି କରିଥାଇ
ଧର୍ମ ଅର୍ଥ କାମରେ ଆକୃଷ୍ଟ ନୁହଇ ।
ସଂସାର ମଧ୍ୟରେ ସେ ଥିଲେହେଁ ମାନବ
ଦେହଅନ୍ତେ କରଇ ବ୍ରହ୍ମାଙ୍କଠାରେ ଠାବ ।
ଯେଉଁମାନେ ଜ୍ଞାନରେ ହୁଅନ୍ତି ନୃପତି
ତାହାଙ୍କୁଟି ବ୍ରହ୍ମ ହୁଅଇ ପରାପତି ।
ଅଣୁ ସ୍ଥୂଳ ଦୀର୍ଘ ନୁହଇ ବୋଲି କହି
ବ୍ରହ୍ମଙ୍କୁ ସେ ସ୍ରଷ୍ଟାରୂପରେ ଛନ୍ତି ରହି ।
ଏ ସମସ୍ତେ ଲୋକ ଆଶାରେ ହୋଇ ବଦ୍ଧ
ସଂସାରେ ବୁଲୁଛି ମୋହେ ହୋଇ ଅନ୍ଧ ।
ତୃଷ୍ଣା ତନ୍ତୁ ତ ଦେହ ଯାକରେ ବ୍ୟାପିଛି
ଆଦି ଅନ୍ତ କଥା ତାଠାରେ ନାହିଁ କିଛି ।
ସଂସାର ସୂତ୍ର ତୃଷ୍ଣା ଦେହରେ ବାନ୍ଧିଛି
ସିପୁଟି ଲୁଗା ସିଆଁ ପରି ଦ୍ୱିଜବରି ।

ଏ ଜଗତ ପ୍ରକୃତି ପୁରୁଷକୁ ଜାଣି
ପାରିଲେ ନ ଭଜଇ ନରଲୋକ ଶ୍ରେଣୀ ।
ବିଳକ୍ଷଣ ପାଇଛି ନାରାୟଣ ଋଷି
ବ୍ରହ୍ମଜ୍ଞାନଯାକ ବଚନେ ଛନ୍ତି ଭାଷି ।
ଏଠାରେ ବାର୍ଷ୍ଣେୟ ଅଧ୍ୟାତ୍ମ ହେଲା ଶେଷ
କହଇ କୃଷ୍ଣସିଂହ ନର କୁଳଈଶ ।



## ଜନକଙ୍କ ମୋକ୍ଷଲାଭ ସମ୍ବାଦ

ଯୁଧିଷ୍ଠିର ବୋଇଲେ ମିଥିଳାଧିପତି
କିସ କି କରିଗଲେ ବ୍ରହ୍ମଙ୍କର ଗତି ।
ଭୀଷ୍ମ ବୋଇଲେ ଆହେ ଜନକ ରାଜନ
ପରଲୋକ ଗତିରେ ହେଲେ ସାବଧାନ ।
ପାଷାଣ୍ଡ ନାଶକାରୀ ଶଏଟି ଆଚାର୍ଯ୍ୟ
ରଖିଥିଲେ ଘରେ ଜନକ ମହାରାଜ ।
ଜନକ ଦିନେ ଶଏ ଆଚାର୍ଯ୍ୟ ବସାଇ
ପଚାରିଲେ ତାହାଙ୍କୁ ଅତି ପ୍ରୀତି ବହି ।
ପୁଣ୍ୟ ପାପ ଘେନି ଜନ୍ମାନ୍ତେ କେଉଁ ଦେହ
ହୁଅଇ ଏହା ମୋତେ ବତାଇଣ କହ ।
ଏହିକାଳରେ ପଞ୍ଚଶିଖ ମହର୍ଷି
ଜନକଙ୍କ ସମୀପେ ପ୍ରବେଶିଲେ ଆସି ।
ସବୁ ସନ୍ନ୍ୟାସୀରେ ସେ ଅତ୍ୟନ୍ତ ପଣ୍ଡିତ
ଶୀତ ଉଷ୍ଣ ଦୁଃଖ ସହଇ ତାଙ୍କ ଗାତ୍ର ।
ପଞ୍ଚଶିଖ ରୂପେଟି ଆସିଲେ କପିଳ
ଜାଣ ହେ ଯୁଧିଷ୍ଠିର ବସୁନ୍ଧରା ପାଳ ।
ଆସୁରଙ୍କର ଆଦ୍ୟ ଶିଷ୍ୟ ସେ ଅତ୍ୟନ୍ତ
ବ୍ରହ୍ମାଙ୍କ ଦିନ ଶେଷଯାଏ ସେ ଅଛନ୍ତି ।
ସହସ୍ର ବରଷ ଆସୁରି କରି ସୂତ୍ର
ପବିତ୍ର କରି ଦେଇଛନ୍ତି ନିଜ ଗାତ୍ର ।
ପୂର୍ବେ ଋଷିମାନଙ୍କୁ ପରମାର୍ଥ କଥା
କହିକରି ଛଡ଼ାଇଛନ୍ତି ହୃଦ ବ୍ୟଥା ।
ଦେହର ଆତ୍ମାଭେଦ ଜାଣନ୍ତି ଆସୁରି
କପିଳଙ୍କେ ଗରିଷ୍ଠ ତାଙ୍କୁ ବୋଲପାରି ।
ପଞ୍ଚଶିଖ ଆସୁରି ଋଷି ଶିଷ୍ୟସୁତ
କାପିଳେୟ ନାମ, କପିଳା ଯେଣୁ ମାତ ।
ଏ କଥା ସନତକୁମାର ମାର୍କଣ୍ଡେୟ
କହିଛନ୍ତି ଜାଣ ହେ ଧର୍ମଙ୍କ ତନୟ ।

ଜନକ ପଞ୍ଚଶିଖଠାରୁ ଜ୍ଞାନ ପାଇ
ଶଏ ଆଚାର୍ଯ୍ୟଙ୍କୁ ଜିଣିଲେ ନରସାଇଁ ।
ଶଏ ଆଚାର୍ଯ୍ୟ ମତ ଜନକ ଶୁଣିଲେ
ପଞ୍ଚଶିଖ କଥାକୁ ତତ୍ତ୍ୱ ସେ ବୁଝିଲେ ।
ଶାଣ୍ଡିଲ୍ୟ ନାରଦ ଯେ କପିଳ ଗାଲବ
ବ୍ରହ୍ମପଞ୍ଚରଜମାଜ୍ଞାତା ବୈଶ୍ୱଦେବ ।
ପାଠ ହୋମ ଅତିଥି ସପର୍ଯ୍ୟା ତର୍ପଣ-
କାୟ ଚକ୍ଷୁ ତ୍ୱକ୍ ରସନା କର୍ଣ୍ଣ ଘ୍ରାଣ ।
ନିରୋଧି ନାରାୟଣ ବସୁଦେବସୁତ
ସଙ୍କର୍ଷଣ ପ୍ରଦ୍ୟୁମ୍ନ ଅନିରୁଦ୍ଧ ତତ୍ତ୍ୱ ।
ବେଶୀ ଉପପାପଠି ପାପ ପାପ ମାନ
ମହାପାପ ଯେ ଅନୁତାପରୁ ନିବୃତ୍ତ ।
ଏରୂପେ ପାଞ୍ଚ ପାଞ୍ଚ କଥାରେ ପଣ୍ଡିତ
ହେବାରୁ ପଞ୍ଚଶିଖ ନାମ ତାର ଖ୍ୟାତ ।
ପଞ୍ଚଶିଖ ଜନକଙ୍କର ନମ୍ର ଦେଖି
ପରମଜ୍ଞାନ ହେଲେ ହୋଇ ଅତି ସୁଖୀ ।
ଜନମରେ ନିର୍ବେଦ କର୍ମରେ ନିର୍ବେଦ
ସର୍ବ ନିର୍ବେଦକୁ କହିଲେ ବହି ମୋଦ ।
ଏହି କାଳରେ ସହି ନ ପାରଣ ଶତ
ଆଚାର୍ଯ୍ୟରୁ ନାସ୍ତିକ ଜଣେ ଉପଗତ-
ହୋଇ ପଞ୍ଚଶିଖକୁ କହିଲଟି ଯାହା
କହିବି ତା ଶୁଣ ପାଣ୍ଡବ-ନରନାହା ।
ପ୍ରତ୍ୟକ୍ଷୁଁ ଆନ ତ ପ୍ରମାଣ ଆଉ ନାହିଁ
ଜଗତ ନାଶ ଯାଉଅଛି ଦେଖୁଥାଇଁ ।
ବେଦ ଯେ କହୁଅଛି ନିତ୍ୟ ଆତ୍ମା ବୋଲି
ଆମ୍ଭ ମତ ସେ କଥା ମିଛ କରି ଭଲି ।
କ୍ଳେଶ ଜନମ ଜରାମୃତ୍ୟୁ ଅଟେ ମୃତ୍ୟୁ
ଆତ୍ମାରେ ନାହିଁ ବୋଲିବାରେ ନାହିଁ ହେତୁ
ସାକ୍ଷାତେ ଦେଖୁଥାଇଁ ମରୁଛନ୍ତି ଲୋକ
ମନରେ ଆତ୍ମା ଯେବେ କରୁଛ ବିବେକ ।
ତେବେ ତ କହୁଥାଇଁ ଅଜର ଅମର
ନରପତି ଭାବିବା ପରି ମନେକର ।
ପଞ୍ଚଶିଖ ବୋଇଲେ ନ ଥିବା ଦ୍ରବ୍ୟରେ
ଅସ୍ତି ତା ନାସ୍ତି ତାଟି ସମ୍ଭବ ନ ପାରେ ।
ଚାର୍ବାକ ଏହାଶୁଣି ଉଠାଇଣ ଶିର
ବୋଇଲେ ପଞ୍ଚଶିଖ ବୁଦ୍ଧି ତୋର କଞ୍ଚା ।

ପ୍ରମାଣ ଯାକରେ ପ୍ରତ୍ୟକ୍ଷ ଅଟେ ସାର
ଆନ ପ୍ରକାରେ ଜାଣ ପ୍ରତ୍ୟକ୍ଷ-ସ୍ୱୀକାର ।
ଶରୀରଠାରୁ ଆନ ହୋଇକରି ଜୀବ
ଅଛଇ ବୋଲିକରି ନା କହ ବୋଲିବ ।
ସକଳ ଦ୍ରବ୍ୟଯାକ ଜଗତରେ ସିଦ୍ଧ
ହୋଇଣ ଜଗତରେ ହୋଇବ ପ୍ରସିଦ୍ଧ ।
ଦେଖ ଏ କଟମଞ୍ଜି ଅଣୁପରି ପଡ଼
ଗଛ ହୋଇ ରହେ କିଆରୀ ଗୁଆମାଡ଼ ।
ଲହୁଣୀରୁ ବାହାରି ଘିଅ ବାସୁଅଛି
ସମୀପରେ ଲୌହ ଚୁମ୍ବକ ଓଟାରୁଛି ।
ସୂର୍ଯ୍ୟକାନ୍ତରୁ ଅଗ୍ନି ହେଉଅଛି ଜାତ
ପାଣି ହେଉଅଛି ବଡ଼ବାନଳ ପୀତ ।
ମରିତା ଲୋକକୁଟି ପଞ୍ଚମହାଭୂତ
ଘୁଡ଼ୁଅଛି ଦେଖୁଛି ସବୁଙ୍କର ନେତ୍ର ।
ଏହି ଏକାଶୁ ଜାଣ କହୁଲଟି ମୁହିଁ
ସ୍ୱଭାବେ ସବୁ ଦ୍ରବ୍ୟେ ସିଦ୍ଧି ଛନ୍ତି ପାଇ ।
ପଞ୍ଚଶିଖ ବୋଇଲେ ଚାର୍ବାକ ହେଲେ ବାଇ
ଆତ୍ମା ନାହିଁ ବୋଲି ଯା ହେତୁକୁ ଦେଖାଇ ।
କହିଲି ଯେତେକଥା ଅଟଇ ସେ ମିଛ
ନିତ୍ୟ ଅନିତ୍ୟକୁ କରୂପେ ହେବ କଛ ।
ତୁମ୍ଭେ ଅବା ବୋଲିବ ଆତ୍ମା ନିତ୍ୟଯୁକ୍ତ
ସଂସାର ବନ୍ଧେ କମ୍ପା ହେଉଛି ସେ ଯୁକ୍ତ ।
ତାହାଁଙ୍କ କହୁଛି ଅଜ୍ଞାନ କର୍ମରାଗ
ଏ ତିନି ଏ ସଂସାର ପ୍ରବର୍ତ୍ତକ ଭାଗ ।
କେଉଁମାନେ ଲୋଭମୋହକୁ ବୋଲିଥାନ୍ତି
ସଂସାର ପ୍ରବର୍ତ୍ତନ ଏ ଦୁହେଁ କରନ୍ତି ।
ଅବିଦ୍ୟା କ୍ଷେତ୍ରେ କର୍ମ-ବୀଜ-ତୃଷା ନୀର
ପାଇ ପଲ୍ଲବାଏ ସଂସାର-ତରୁବର ।
ଜ୍ୱାଳାନଳ ଭୋଗରେ ଦେହ ନାଶ ଗଲେ
ଆଶା କ୍ଷୟ ଗଲା ବୋଲନ୍ତି ଲୋକ ଭଲେ ।
ଏଥିକି କହୁଥାଇ ଜୀବ ଅବିନାଶୀ
ଦେହ ଗଲେ ଆନ ଦେହେ ସେ ରହେ ଆସି ।
କ୍ଷଣକୁକ୍ଷଣ ଜ୍ଞାନ ଉପୁଜି ଯାଉଛି
ଆତ୍ମା ବୋଲି ତାହାକୁ ବୋଲି ଯେବେ ବାଞ୍ଛି ।
ତେବେ ସେହି ମୁହିଁ ବୋଲିବାରୁ ଯେ ଜ୍ଞାନ
କରୂପେ ସମ୍ଭବିବ ଚାର୍ବାକ ବଖାଣ ।

ଅନିତ୍ୟ ଯେବେ ଜୀବ ବୋଲି ଦାନକର୍ମ
ଆନ ଆତ୍ମା ଭୋଗ କରିବ କି ସେ ଧର୍ମ ।
ତୁମ୍ଭେ ବା ବୋଲିବ କ୍ଷଣକୁ କ୍ଷଣ କାୟ
ହେଉଛି ସେ ଆତ୍ମା ତହିଁ କି ମନ ଦିଅ ।
କହୁଥିଲି ତୁମ୍ଭଙ୍କୁ ଦେହରେ ଆଘାତ
ହେଲେ ଆନ ଦେହେ କି ପୀଡ଼ା ହୋଏ ଜାତ
ଯେଉଁରୂପରେ ଋତୁ ସମ୍ବତ୍ସରମାନେ
ସମାନ ଅବସ୍ଥାକୁ ନ ଭଜନ୍ତି ମନେ ।
ବିଚାର କର ସେହି ରୂପରେ ଦେହଟି
ସମାନ ହୋଇକରି କେବେ ନୁହଇଟି ।
ଜରା ରୋଗପାଇଁ ଦେହର ହୋଏ ଧ୍ୱଂସ
ତୁମ୍ଭେ ତୁଚ୍ଛା କହୁଛ ପ୍ରତିକ୍ଷଣେ ନାଶ ।
ବୋଲୁଅଛ ଯେ ପରଲୋକ ହୋଇନାହିଁ
ଦାନ ଧରମ ଲୋକେ କରନ୍ତି କିମ୍ପାଇଁ ।
ବେଦ କହୁଅଛି କରିଲେ ଦାନ ଧର୍ମ
ପରଲୋକରେ ଯାଇ ପ୍ରକାଶଇ ଧର୍ମ ।
ଏହିରୂପେ ବହୁତ କାରଣ ଅଛନ୍ତି
ବିସ୍ତାରି ତାହା କେତେ କହିବାକୁ ମତି ।
ଯେ ନରମାନେ ପରଲୋକରେ ସଂଶୟ
କରନ୍ତି କିଛି ନୋହେ ତାଙ୍କର ହୃଦୟ ।
ବାତରେ ଆନ୍ଦୋଳିତ ହୋଇ ବୃକ୍ଷବର
କ୍ଷୟ ପ୍ରାୟେ କ୍ଷୟ ସେ ପାନ୍ଥ ମନେକର ।
ଅର୍ଥ ଅନର୍ଥରେ ଯେ ଆନ୍ଦୋଳ ହୁଅନ୍ତି
ଶାସ୍ତ୍ରମାନେ ତାହାକୁ ଧର୍ମ ଶିଖାଅନ୍ତି ।
ହାତୀ ପଙ୍କରେ ଲାଗିଥିଲେ ନରପତି
ଯେବେଗଲ ପରେଟି ଶାସ୍ତ୍ର ଯେବେ ଯାନ୍ତି ।
ବଡ଼ ସୁଖ ପାଇବା ବୋଲି ଇହ ଲୋକେ
ଭାବିଲେ ମୃତ୍ୟୁ ମୁଖେ ପଡ଼ଇଟି ଶୋକେ ।
ଦେହୀର ତ ଜୀବ ନୁହଇ କେବେ ସ୍ଥିର
ବ୍ୟର୍ଥ ଅଟେ ବନ୍ଧୁ କୁଟୁମ୍ବ କରିବାର ।
ପଞ୍ଚ ମହାଭୂତେ ତ ଦେହକୁ ପାଳନା
କରିବାରୁ ଅସ୍ଥିର ଅଟଇ ସେ ସିନା ।
ଏରୂପେ ପଞ୍ଚଶିଖ ମୁଖୁଁ ବାଣୀ ଶୁଣି
ପୁଣି ପଚାରିଲେ ଜନକ ନରମଣି ।
ଆତ୍ମା ଯେବେ ବା ଏକ ଗୋଟିଏ ହୋଇବ
ଜଣେ ମୁକ୍ତ ହେଲେ ସେ ସବୁଙ୍କୁ ତାରିବ ।

ଏହା ମନେକରି ମୁଁ କହୁଅଛି ଦ୍ୱିଜ
ଅଜ୍ଞାନ ଜ୍ଞାନେ ନାହିଁ ଅକାରଣ କାର୍ଯ୍ୟ ।
ଏ ଜଗତଯାକରେ ଉଚ୍ଛନ୍ନତା ଦଶା
ପଡ଼ିଲେ ସତକରି ଯେବଲେ ଏ ଭାଷା ।
ଗୋଟିଏ ମୁକ୍ତ ହେଲେ ମୁକ୍ତ ଯେବେ ହେଲ
ତା'ର ଯୋଗେ କାହିଁକି ଘାଣ୍ଟି ହୋଇ ମଲ ।
ଏରୂପେ ଜନକ ପୃଚ୍ଛିବା ବାଣୀ ଶୁଣି
ପଞ୍ଚଶିଖ କହିଲେ ତହିଁ ଶାନ୍ତ ବାଣୀ ।
ତା କହିବା ତୁମ୍ଭଙ୍କୁ ଶୁଣ ଯୁଧିଷ୍ଠିର
ଏକଲୟ ହୋଇ ହୃଦୟ ଧୀରକର ।
ଏ ଜଗତ ନାଶ ପ୍ରକାଶ କର୍ମ ଯେବ
ହେଉଛି ଜାଣ ହେ ଜନକ ନରମଣି ।
କରମ-ଅନୁରୂପେ ଲୋକ ପାଇ ଦେହ
ଭୋଗ ପଦାର୍ଥରେ ସେ ବଳାଏଟି ସ୍ନେହ ।
ଏ ସକାଶୁଁ କହୁଛି ପ୍ରତି ଶରୀରରେ
ଆତ୍ମା ଭିନ୍ନ ଭିନ୍ନ ଅଟଇ ପ୍ରତ୍ୟେକରେ ।
ଆତ୍ମା ସବୁକାଳରେ ଅଟନ୍ତି ନିତ୍ୟ
ଶରୀରଟି ସମସ୍ତେ କହନ୍ତି ଅନିତ୍ୟ ।
ପଞ୍ଚମହାଭୂତରେ ହେବାରୁ ଗଠିତ
ମୋ କଥାରୁ ଜାଣ ଜନକ ନୃପସୁତ ।
କରମ ବାସନାରୁ ପଞ୍ଚଭୂତ ଗୋଟି ।
ହୋଇ କାଳରେ ସେ ହୁଅନ୍ତି ଫିଟାଫିଟି ।
ପଞ୍ଚମହାଭୂତେ ହୋଇଲେ ଏକସ୍ଥାନ
ଶରୀର ବୋଲିଏ ଜନକ ରଜା ଜାଣ ।
ଏ ଶରୀରେ ଏ ତିନି ଅଟନ୍ତି ପ୍ରଧାନ
ଜ୍ଞାନ ତେଜ ପବନ ବୋଲିକରି ଜାଣ ।
ଗମନ ଆଗମନ ହେତୁ ଏ ଅଟନ୍ତି
ଏହି ସକାଶୁଁ କର୍ମସଂଗ୍ରହ ବୋଲନ୍ତି ।
ଇନ୍ଦ୍ରିୟ ଇନ୍ଦ୍ରିୟାର୍ଥ ଚେତା ମନ ପ୍ରାଣ
ଧାତୁ ବୋଲିଏଟି ଜନକ ରଜା ଜାଣ ।
ପଞ୍ଚଇନ୍ଦ୍ରିୟେଟି ମନକୁ ବିଷୟରେ
ପ୍ରବର୍ତ୍ତାଇ ନିଅନ୍ତି ରଜା ନିରନ୍ତରେ ।
ସୁଖଜ୍ଞାନ ଦୁଃଖଜ୍ଞାନ ଯେ ସୁଖ ଦୁଃଖ
ଉପେକ୍ଷି ଜ୍ଞାନ ମିଶି ତିନି ଜ୍ଞାନ ଶିଖ ।
ପୁଣ୍ୟ ପାପର ସୃଷ୍ଟି ତତ୍ତ୍ୱାର୍ଥ ନିଶ୍ଚୟ
ହୁଅଇ ଯାହା ଯେବ ସେହିଟି ହୃଦୟ ।

ଦେହକୁ ଆତ୍ମା ବୋଲି ଯେଉଁ ଲୋକ ଜାଣେ
ପଡ଼ିଥାଏ ସେହି ଜନ୍ମାଦି ସୁଖ-ବଣେ ।
ଆତ୍ମବୁଦ୍ଧି ଯାହାର ଦେହରେ ନୋହୁଛି
ମୋକ୍ଷପଦ ତାହାକୁ ଅଲଭ୍ୟେ ମିଳୁଛି ।
ତ୍ୟାଗଶାସ୍ତ୍ର ଏବେ ହେ କହିବା ତୁମ୍ଭଙ୍କୁ
ହୋଇବ ସେ କାରଣ ତୁମ୍ଭର ମୋକ୍ଷକୁ ।
ନିତ୍ୟ ନୈମିତ୍ତିକ କର୍ମକୁ ତତ୍ତ୍ୱଜ୍ଞାନୀ
ହୋଇକରି ଛାଡ଼ିଲେ ହୁଏ ବ୍ରହ୍ମଜ୍ଞାନୀ ।
ଆଳସ୍ୟ କରି ନିତ୍ୟ ନୈମିତ୍ତିକ କର୍ମ
ଯେ ଛାଡ଼ୁଛି ତାହାର ହେଉଛି ଅଧର୍ମ ।
ଦ୍ରବ୍ୟ ତ୍ୟାଗକଲେ ଯେ ଯାଗ ସିଦ୍ଧ ହୋଏ
ଭୋଗ ତ୍ୟାଗ କରିଲେ ବ୍ରତ ସିଦ୍ଧି ପାଏ ।
ସୁଖ ତ୍ୟାଗରେ ତପ ଯୋଗକୁ ଲଭଇ
ସକଳ ତ୍ୟାଗ କଲେ ସଂସାରୁ ତରଇ ।
ଏହି ସଂସାର ଦୁଃଖ ନାଶ ନିବାପାଇଁ
ଏ ତ୍ୟାଗ ମାରଗଟି କହିଲି ବତାଇ ।
ଜ୍ଞାନେନ୍ଦ୍ରିୟ କଥା ଶୁଣିଲେ ନରବର
କର୍ମେନ୍ଦ୍ରିୟକୁ ଶୁଣ ଚିତ୍ତ କରି ଧୀର ।
ହସ୍ତ, ପାଦ, ଲିଙ୍ଗ, ଗୁଦ, ବାଣୀ, ଏ କର୍ମ
ଇନ୍ଦ୍ରିୟ ବୋଲି ଜାଣିଥାଅ ନୃପୋତ୍ତମ ।
ହସ୍ତେନ୍ଦ୍ରିୟ ନେବା ଆଣିବା କର୍ମ କରେ
ପାଦେନ୍ଦ୍ରିୟ ସମର୍ଥ ଅଟଇ ଗତିରେ ।
ଲିଙ୍ଗେନ୍ଦ୍ରିୟ ପୁତ୍ରାଦି ଉତ୍ପତ୍ତି ଆନନ୍ଦ
ଅରଜିବାରେ ଅଧିକାରୀ ନୃପଚନ୍ଦ୍ର ।
ଗୁହ୍ୟେନ୍ଦ୍ରିୟ ଯେ ମଳଉତ୍ସର୍ଗକୁ କରେ
ବାଗିନ୍ଦ୍ରିୟ ବଚନକୁ ଜାଣ ଉଚ୍ଚାରେ ।
ଜ୍ଞାନେନ୍ଦ୍ରିୟ କର୍ମେନ୍ଦ୍ରିୟ ମିଶି ଏ ଦଶ-
ଯାକରେ ଚିତ୍ତେନ୍ଦ୍ରିୟ ଅଟଇ ଅଧୀଶ ।
କର୍ଣ୍ଣ ଶବଦ ଚିତ୍ତ ଶବ୍ଦ ଶ୍ରବଣରେ
ଅଧିକାରୀ ଅଟନ୍ତି ଯେନ ହେ ମନରେ ।
ନୟନ ରୂପ ମନ ଦରଶନ ହେତୁ
ମୋ କହିବାରୁ ବୁଝ ମନେକରି ହେତୁ ।
ରସନା ମନ ରସ ରସଗ୍ରହଣରେ
ଅଧିକାରୀ ହେଉଅଛନ୍ତି ନିରନ୍ତରେ ।
ନାସିକା ଗନ୍ଧ ମନ ଗନ୍ଧକୁ ଆଘ୍ରାଣ
କରିବାରେଟି କାଳ ଯାଉଅଛି ଜାଣ ।

ତ୍ୱକ ସ୍ପର୍ଶ ମନ ସ୍ପର୍ଶ ଜ୍ଞାନର
କାରଣ ଅଟନ୍ତି ଜନକ ମନେ କର ।
ଭାବମାନେ ସାତ୍ତ୍ୱିକ ରାଜସ ତାମସ
ହେବାରୁ ତିନିପ୍ରକାର ଜ୍ଞାନଟି ପ୍ରକାଶ ।
ପ୍ରେମୋଦ୍‌ଗମ ପ୍ରୀତି ଆନନ୍ଦ ସୁଖ ଶାନ୍ତି
ସତ୍ତ୍ୱଗୁଣରୁଟି ହୁଅନ୍ତି ଉତପତ୍ତି ।
ଅସନ୍ତୋଷ ଅକ୍ଷମା କ୍ରୋଧ ପରିତାପ
ଲୋଭ ରଜୋଗୁଣରେ ଦେହ ଜାଣ ନୃପ ।
ଅବିବେକିତା ମୋହ ଆଳସ୍ୟ ପ୍ରମାଦ
ତମୋଗୁଣ କରେ ଏହାଙ୍କୁ ବହି ମୋଦ ।
ଦେହେ ମନେ ପ୍ରୀତି ଯେଣ ଯେ ଉପୁଜଇ
ସାତ୍ତ୍ୱିକ ବୋଲିକରି ତାହାକୁଟି କହି ।
ସନ୍ତାପ ଯୁକ୍ତ ହୋଇ ପ୍ରବର୍ତ୍ତିଲେ କଥା
ରଜୋଗୁଣ ବୋଲି ତା ଜାଣି ମହାରଥୀ ।
ମୋହ ଯେଣ କଥା ମନରେ ପ୍ରବର୍ତ୍ତିଲେ
ତମୋଗୁଣ ବୋଲି କହିବ ତାକୁ ଭଲେ ।
ଶ୍ରୋତ୍ରାଦି ଇନ୍ଦ୍ରିୟଟି ବିଷୟ ସଂଯୋଗ
ମନ ଯେଣ କରନ୍ତି ଜାଣ ମହାଭାଗ ।
ଏହି ସକାଶରୁ ସକଳ ଇନ୍ଦ୍ରିୟରେ
ମନକୁ ଶ୍ରେଷ୍ଠ କରି କହିବ କଥାରେ ।
ଚକ୍ଷୁ ଆଦି ଇନ୍ଦ୍ରିୟେ ଏକାବେଳକରେ
ଯେ ଯାହା ବିଷୟକୁ ଯେଣିଟି ନ ପାରେ ।
ପ୍ରତ୍ୟେକ ଇନ୍ଦ୍ରିୟେ ବହୁତ ସ୍ୱ ବିଷୟ
ଯେଣି ପାରନ୍ତିଟି ଯେ ନୃପତି ତନୟ ।
ଦଶଇନ୍ଦ୍ରିୟ ବୁଦ୍ଧି ମନ ଏକସ୍ଥାନ
ନୋହିଲେ ଯୁକ୍ତ ନୋହେ ଜନକ-ରାଜନ ।
ମନ ଆଦି ଜ୍ଞାନେ ଆତ୍ମାକୁ ଜାଣିଥିଲେ
ଗୁଣଯୁକ୍ତ ହେଲେ ସେ ତରଇଟି ଭଲେ ।
ତମୋଗୁଣ ରଜୋଗୁଣରେ ଚିତ୍ତଦ୍ୱାର
କେବେହେଁ ଛାଡ଼ି ନ ପାରଇଟି ସଂସାର ।
ନିଷ୍କାମ କର୍ମ କଲେ ଅନ୍ତଃଶୁଦ୍ଧ ହୋଇ
ଯିବାରୁ ଈଶ୍ୱର ସ୍ୱହାନ୍ତେ ପ୍ରୀତି ବହି ।
ଭୂତାଦି ସକଳ ଯାକୁ କ୍ଷେତ୍ର କହି
ମନ ବେଦ୍ୟ ଆତ୍ମା କ୍ଷେତ୍ରଜ୍ଞ ବୋଲାଅଇ ।
ଏଣୁ କହୁଥାଇଁ ଜନକ ନରବର
ଅନେକ ଜୀବ ଅଛି ନିତ୍ୟ ମନେକର ।

ଜୀବନ୍ତିଏ ଯଦ୍ୟପି ମୁକତି ଲଭଇ
ତେବେ ସେ ସବୁ ଜୀବ ତରି ନ ପାରଇ ।
ଯେତେ ଦେହ, ତ ତେତେଠାରେ ଆତ୍ମାଅଛି
ମୋ କହିବାରୁ ଜାଣ ଆହେ ନୃପବର୍ଯ୍ୟ ।
ମୋକ୍ଷ ହେବା ସକାଶୁଁ ଆତ୍ମାର ସଂସାର
ନାଶ୍ୟ ନୁହଇଟି ନୃପତି ମନେକର ।
ସମୁଦ୍ରେ ନଦୀ ଯାଇ ମିଶିବା ପରାଏ
ତେଜରେ ଜୀବ ମିଶିଯାଏଟି ହେ ରାଏ ।
ଜୀବ ପରମାତ୍ମା ସେ ଜାଣିଲେ ନରପତି
ଜୀବନ୍ମୁକ୍ତି ଜାଣ ହେ ହୁଅଇ ମୁକତି ।
ବୃଦ୍ଧି ଆଣୀ ସୂତା ଛାଡ଼ିଲେ ବୃଦ୍ଧି ଆଣୀ
ଯେରୂପେ ହରଇ ସେରୂପେ ନରମଣି ।
ଦୁଃଖକୁ ଛାଡ଼ିଲେଟି ମୁକ୍ତ ହୋଏ ନର
ମୋ କହିବାରୁ ଏହା ହୃଦୟରେ କର ।
ଏକାଳେ ଜନକ ନଗର ଯାଉନ୍ତି ପୋଡ଼ି
କହିଲେ ଲୋକମାନେ ତାହା କରଯୋଡ଼ି ।
ଜନକ ବୋଇଲେ ହେ ମୋହର ତ କଛି
ଯାଉନାହିଁ କମ୍ପା ଆସୁଛ ମୋତେ ପୁଛି ।
ପଞ୍ଚଶିଖ ବଚନେ ରହିଣ ଜନକ
ଗତଶୋକ ହୋଇ ଲଭିଲେ ମୋକ୍ଷଲୋକ ।
ଏ ଅଧ୍ୟା ଯେଉଁ ଜନ କର୍ଣ୍ଣରେ ଶୁଣଇ
ଜନକ ରାଜାପରି ମୁକ୍ତ ସେ ହୁଅଇ ।
ଏହି ସମ୍ବାଦ ଶ୍ଳୋକ କଷ୍ଟ ତ ପଣ୍ଡିତେ
ଜାଣ ମୋହର ଦୋଷ ନ ଦେବେ ଚିତ୍ତେ ।
ସୂଚମୁନେ ଗିରି ଟାଳିବା ପରି ମୁହିଁ
ଏ ସମ୍ବାଦ ଗୀତ ପ୍ରବନ୍ଧେ ଅଛି କହି ।
ଏଠାରେ ମୋକ୍ଷଧର୍ମ ପଞ୍ଚଶିଖ ବାଣୀ
ସାରିଲେ ବେଦବ୍ୟାସ ଋଷି ଶିରୋମଣି ।
ତାହାଙ୍କର ପାଦ-କମଳ ଅବିରତ
କୃଷ୍ଣସିଂହ ନୃପତି ମନୋଭୃଙ୍ଗ ରତେ ।

—✻—

## ସୁଖ ଦୁଃଖ ଓ ସିଦ୍ଧି ସମାଚାର

ଯୁଧିଷ୍ଠିର ବୋଇଲେ ଅଭୟ ଦୁଃଖ ସୁଖ
କି କଲେ ଲୋକ ପାଏ କହ ଯତିଶିଖ ।
ଭୀଷ୍ମ ବୋଇଲେ ତହୁଁ ଇନ୍ଦ୍ରିୟ ନିଗ୍ରହ
ଯେ ନ କରଇ ତାଙ୍କୁ ନ ଛାଡ଼ଇ ମୋହ ।
ଦମଠାରେ ନିଶ୍ଚୟ ତପ ବେଦ ରହିଛନ୍ତି
ଧର୍ମଠାରୁ ସବସ ହୋଇ କେ ନାହାନ୍ତି ।
ଦାନ୍ତ ଲୋକ ଯେ ସୁଖ ପାଇଣ ବହରେ
ନିଦ୍ରା ମଧ୍ୟ ଯାଏ ସେ ନ ପଡ଼ି ଭୟରେ ।
ଅଦାନ୍ତ ଲୋକ ମିତ ରାକ୍ଷସଙ୍କ ପରି
ଏ ସକାଶୁଁ ବହ୍ମ ସୃଜିଛି ଦଣ୍ଡଧାରୀ ।
ସବୁ ଆଶ୍ରମ ମଧ୍ୟେ ଇନ୍ଦ୍ରିୟ ନିଗ୍ରହ
ଶ୍ରେଷ୍ଠ ଅଟଇଟି ଜାଣ ହେ ନରସିଂହ ।
ଅକାର୍ପଣ୍ୟ ଅସଂରମ୍ଭ ଶରଧା ଦୟା
ଅଦ୍ରୋହ ଆର୍ଜବ ସନ୍ତୋଷ ଅନସୂୟା ।
ଅଳମବାଦୀ ଗୁରୁପୂଜା ଅପୈଶୁନ
ଅମାନ ଆଦି ଯାହାଠାରେ କରେ ସ୍ଥାନ ।
ସେହି ଲୋକଠାରେ ବଳାଢ଼ର ହୋଇ
ଦମ ରହଇଟି ସନ୍ଦେହ ଏଥି ନାହିଁ ।
ସମଲୀଳୀ ଅସ୍ପୃହ ସାଧୁକାମ ନର
ଅନ୍ତଃକାଳେ ଭୋଗ କରଇ ସ୍ୱର୍ଗପୁର ।
ଅନସୂୟା କ୍ଷମା ପ୍ରିୟବାଦୀ ସୁଶାନ୍ତ
ସତ୍ୟବାଦୀ ଅନାୟାସାଦି ଯେତେ ଗୀତ ।
ଦୁଷ୍ଟଆତ୍ମା ଲୋକଟି ନ ପାରନ୍ତି କରି
ଅନ୍ତଃକାଳେ ନରକ ହୁଏ ତାଙ୍କ ପୁରୀ ।
କାମ ମାନ ଲୋଭ ଈର୍ଷିକ ଆତ୍ମଶ୍ଳାଘା
ଅହଙ୍କାର ଦର୍ପ ଭୁଲରେ ପ୍ରତିଘା ।
ମହାତ୍ମାମାନଙ୍କରେ ନୁହଇ ଏ ମାର୍ଗ
ଶୁଣ ଏହା ହେ ନରପତି ମହାଭାଗ ।
ଜିତେନ୍ଦ୍ରିୟ ହୋଇ ବ୍ରାହ୍ମଣ କାଳାକାଂକ୍ଷୀ
ହୋଇ ତପ କରିବ ବୁଦ୍ଧି ଧର୍ମେ ରଖି ।
ନ୍ୟାୟଧର୍ମ ରାଜଧର୍ମ ତ ଥାଇ କହି
ମୋକ୍ଷଧର୍ମକୁ ମଧ୍ୟ ହୋଇଲାଣି କହି ।
ଏହାକୁ ଜାଣି ଜନେ ଇନ୍ଦ୍ରିୟନିଗ୍ରହ
କରିବା କଥାଟିରେ ବଳାଇବ ସ୍ନେହ ।
ଯୁଧିଷ୍ଠିର ବୋଇଲେ ଦ୍ୱିଜେ ବ୍ରତବିଧି
କରୁଛନ୍ତି ଯେରୂପେ ଲେଖିଛନ୍ତି ବିଧି ।
ଶ୍ରାଦ୍ଧଦ୍ୱିଜ ହୋଇସା ଆମିଷ ଭୋଜନ
କରନ୍ତି କହ ମୋତେ ଏଥିର କାରଣ ।
ଭୀଷ୍ମ ବୋଇଲେ ହେ ଅବଧି ବ୍ରତ ଶ୍ରାଦ୍ଧ
ଆମିଷାଦି ଭୋଜନ କରନ୍ତିଟି ସଧ ।

ବିଧିମନ୍ତ୍ର କରି ଯେ ବ୍ରତ କରୁଥାଏ
ନର ନିର୍ମଳଙ୍କୁ ସେ ବେଳେ ମାନ ପାଏ ।
ଯୁଧିଷ୍ଠିର ବୋଇଲେ ଉପବାସ କଲେ
ତପ ବୋଲିକରି ବୋଲନ୍ତି ଲୋକ ଭଲେ ।
ଏ ବାହାରେ ଅଛଇ ଆଉ ଯେଉଁ ତପ
ତା କହ ତ ମୋତେ ହେ ମହାରଥାଧିପ ।
ଭୀଷ୍ମ ବୋଇଲେ ଆହେ ମାସ ପକ୍ଷ ଦୁଇ
ଉପବାସକୁ ତପ ବୋଲିଣ ନ କହି ।
ଆତ୍ମଜ୍ଞାନ ତହିଁରେ ହୁଅଇଟି ନାଶ
ପାଇବ କପି କେହି ସେ ଜଗତଈଶ ।
କର୍ମଫଳ ଅହଙ୍କାର ଯେ ନାଶ କରେ
ତପ ନ କଲେ ମଧ୍ୟ ତପୀ ସେ ଲୋକରେ ।
ବ୍ରହ୍ମଚାରୀ ସର୍ବଦା ଉପବାସୀ ହେବ
ବ୍ରାହ୍ମଣଙ୍କୁ ଦେଇଣ ଭୋଜନ କରିବ ।
ସବୁ ସମୟରେ ନିଦ୍ରାରେ ଆସକତ
ନୋହିବ ମାଂସଭକ୍ଷେ ନ ବଳାଇ ପ୍ରୀତ ।
ଦେହ ଶୁଦ୍ଧ କରିଣ ଅମୃତାଶୀ ହେବ
ଦେବତାଙ୍କ ତୁଲରେ ଅତିଥି ପୂଜିବ ।
ଯୁଧିଷ୍ଠିର ବୋଇଲେ କହିଲ ଯା ପିତା
ତା ବତାଅ ମୋତେ, ଛାଡ଼ୁ ମୋ ହୃଦ ଚିନ୍ତା ।
ଭୀଷ୍ମ ବୋଇଲେ ଯେହୁ ଦ୍ୱିଥର ଭୋଜନ
ଘେନ ଦବା କରେ ସେ ଉପବାସୀ ଜାଣ ।
ଋତୁକାଳେ ଭାର୍ଯ୍ୟା ସଙ୍ଗମ ଯେ କରଇ
ବ୍ରହ୍ମଚାରୀ ବୋଲିଣ ତାହାକୁଟି କହି ।
ଦେବତା ପିତୃଙ୍କୁ ଯେ ଦେଇଣ ମାଉଁସ
ଖାଉଅଛି ତାହାକୁ ନ ଲାଗଇ ଦୋଷ ।
ଦିବସକାଳେ ଯେଉଁ ଲୋକ ନ ଶୁଣଇ
ଅନିଦ୍ରା ବ୍ରତ ବୋଲି ତାହାକୁଟି କହି ।
ଦାନ ଦେବାରେ ଲୋକ ଅଟଇ ପବିତ୍ର
ପାପ ଛୁଇଁ ନ ପାରଇ ତାହାର ଗାତ୍ର ।
ଭୃତ୍ୟ ଅତିଥିଙ୍କୁ ଭୁଞ୍ଜାଇ ଯେ ଭୁଞ୍ଜଇ
ଅମୃତାଶୀ ସେହି ସନ୍ଦେହ ଏଥି ନାହିଁ ।
ଦେବତା ଅତିଥି ପିତୃଙ୍କୁ ଦେଇ ଶୀର
ଭୁଞ୍ଜିଲେ ବିଘସାଶୀ ବୋଲି ଯୁଧିଷ୍ଠିର ।
ଯେତେକ ତୁମ୍ଭ ଆଗେ କହିଲି ହେ ରାୟେ
ଏତେକ କଲେ ଲୋକ ବ୍ରହ୍ମଲୋକ ପାଏ ।

## ପ୍ରହଲ୍ଲାଦ ଇନ୍ଦ୍ର ସମ୍ବାଦ

ଯୁଧିଷ୍ଠିର ବୋଇଲେ ଲୋକରେ ଶୁଭକର୍ମ
ଅଶୁଭ ଲୋକ କରିଥା କାଏ ନରୋତ୍ତମ ।
ଏହା ମୋହର ଆଗେ କହତ ତ ବତାଇ
ପରୁରିବା ଦୋଷକୁ ମନରେ ନ ବହି ।
ଭୀଷ୍ମ ବୋଇଲେ ଆହେ ପ୍ରହଲ୍ଲାଦ ଇନ୍ଦ୍ର
ସମ୍ବାଦକୁ କହିବା ଶୁଣ ହେ ନରେନ୍ଦ୍ର ।
ଇନ୍ଦ୍ର ପ୍ରହଲ୍ଲାଦଠାକୁ ଦିନେ ଗଲେ
ତାଙ୍କର ଧର୍ମଚିତ୍ତ ଜାଣିଣ କହିଲେ ।
ଯେତେ ଗୁଣଯାକରେ ପୂଜା ପାଏ ଲୋକ
ତେତେଗୁଣ ବହିଛ ହେ ଦୈତ୍ୟନାୟକ ।
ବାଳକ ପରି କରିଅଛ ତୁମ୍ଭେ ବୁଦ୍ଧି
କି ଶ୍ରେୟ ହୃଦେ କରିଛ ହେ ଗୁଣନିଧି ।
ଏହା ମୋର ଆଗରେ କର ତା ପ୍ରକାଶ
ଶୁଣିବାକୁ ମୋ ମନ ହେଉଛି ଲାଳସ ।
ଶତ୍ରୁ ଉପଦ୍ରବରୁ ଧନହୀନ ହୋଇ
ରହିଲେ ତୁମ୍ଭେ ତୁମ୍ଭ ହୃଦେ ଶୋକ ନାହିଁ ।
ଏହିରୂପରେ ଇନ୍ଦ୍ର ପଚାରନ୍ତେ ବସି
ପ୍ରହଲ୍ଲାଦଙ୍କୁ ତାଙ୍କୁ କହିଲେ ମନେ ହସି ।
ପ୍ରବୃତ୍ତି ନିବୃତ୍ତି ନ ଜାଣେ ଯେଉଁ ପ୍ରାଣୀ
ଗରବ କରି କହୁଥାଏଁ ଶିରେ ଟାଣି ।
ପୂର୍ବକର୍ମ ସଂସାରେ ଭଲ ମନ୍ଦ ଦୁଇ
ଏ ସଂସାରେ ହୋଉଛି ଜାଣ ଶଚୀସାଇଁ ।
ପୌରୁଷରେ ଯେବେ ନୋହିବ ପୁରୁଷାର୍ଥ
ଯେତେ ଉଦ୍‌ଯୋଗକଲେ ହୋଇବ ସେ ବ୍ୟର୍ଥ ।
ସାଧୁକର୍ମ ଅସାଧୁକର୍ମକୁ ଯେ ମୁହିଁ
କଲି ବୋଲେ ତାଠାରୁ ନ ଜାଣିବା ନାହିଁ ।
କଲେ ଯେବେ କାର୍ଯ୍ୟଟି ହେଉଥାନ୍ତା ସିଦ୍ଧି
ସମସ୍ତେ ହେଉଥାନ୍ତେ ଜଗତେ ପ୍ରସିଦ୍ଧି ।
ଏହି ପ୍ରକାରରୁ ହେ କଶ୍ୟପଙ୍କ ବାଳ
କହୁଛି ବିରୂପେ ସ୍ୱରୂପେ ଲୋକକୁଳ ।
ଏ ଜଗତଯାକରେ ପୂର୍ବେ ରହିଛନ୍ତି
କର୍ମକୁ ଗ୍ରହି ଶୁଭାଶୁଭକୁ ଭୁଞ୍ଜନ୍ତି ।
ଏ ଜଗତ ଅନିତ୍ୟ ବୋଲି ମୁଁ ଜାଣଇ
ହୋଇଛି ଏଣୁ ଶୋକ ହୃଦୁ ଆଡ଼ୁଆଇ ।

ପ୍ରହ୍ଲାଦ ବୋଇଲେ ଆର୍ଜବ ଅପ୍ରମାଦ
ବୃଦ୍ଧସେବାମାନେ ମୋ ହେଲେ ବୁଦ୍ଧି ପ୍ରଦ ।
ଏରୂପେ ଇନ୍ଦ୍ର ଶୁଣି ପ୍ରହ୍ଲାଦ ବାଣୀ
ବୋଇଲେ ଧନ୍ୟ ଅଛ ଦୈତ୍ୟକୁଳମଣି ।
ପ୍ରହ୍ଲାଦଙ୍କଠାରୁ ପୂଜା ପାଇ ଇନ୍ଦ୍ର ।
ଗଲେ ସ୍ୱର୍ଗପୁରକୁ ବାଞ୍ଛା ତାଙ୍କ ଭଦ୍ର ।
ପ୍ରହ୍ଲାଦ-ଇନ୍ଦ୍ର-ସମ୍ବାଦ ସମାପତି
ହୋଇଲା କହେ କୃଷ୍ଣସିଂହ ନରପତି ।

—*—

## ବଳି-ବାସବ-ସମ୍ବାଦ

ଯୁଧିଷ୍ଠିର ବୋଇଲେ ସମ୍ପତ୍ତି ନାଶ ଗଲେ
କି କରିବ ତାହା କେ କହ ମୋତେ ଭଲେ ।
ଭୀଷ୍ମ ବୋଇଲେ ହେ ଅସୁରକୁଳ ଜିଣି
ମହାସନ୍ତୋଷକୁ ଭଜିଣ ବଜ୍ରପାଣି ।
ବ୍ରହ୍ମାଙ୍କୁ ପଚାରିଲେ ବଳି କାହିଁ ଛନ୍ତି
କହ ମୋତେ ତାହା ସର୍ବଜ୍ଞ ଦେବ ପତି ।
ବଳି ଦେଉଥିଲେହେଁ ନ ସରେ ଭଣ୍ଡାର
ଧାର୍ମିକମାନଙ୍କରେ ଅଟନ୍ତି ସେ ବର ।
ଚନ୍ଦ୍ର ସୂର୍ଯ୍ୟ ବାୟୁ ବରୁଣ ଅଗ୍ନି ମେଘ
ସଙ୍ଗ ହୋଇଥିଲେହେଁ ବଳି ଦୈତ୍ୟବାଘ ।
ସେ ଏବେ କେଉଁଠାରେ ରହିଛନ୍ତି ଲୁଚି
ହୃଦୟ ପଦ୍ମମଧେ ମହାଭୟ ପାଞ୍ଚି ।
ବ୍ରହ୍ମା ବୋଇଲେ ଆହେ ବଳିଙ୍କର ସ୍ଥାନ
କହିଦେବା ତୁମ୍ଭଙ୍କୁ ଶୁଣ ମଘବାନ ।
ଉଟ ଗଧ ଗାଈରୁ ଏକ ରୂପ ବହି
ଶୂନ୍ୟ ଘରଟିକରେ ବଳି ଛନ୍ତି ରହି ।
ଇନ୍ଦ୍ର ବୋଇଲେ ଆହେ ଶୂନ୍ୟଘରେ ବଳି
ଥିଲେ କି ମୁହିଁ କରି ନ ପାରିବି କଳି ।
ଏହା ମୋର ଆଗେ କହ ତ କୁଶଧାରୀ
ତୁମ୍ଭର ବଚନ ଯେ ଅଲଙ୍ଘ୍ୟ ଆମ୍ଭର ।
ବ୍ରହ୍ମା ବୋଇଲେ ହେ ବଳିଙ୍କି ତ ମାରିବ
ଯେ ଇଚ୍ଛାଥିବ ତାହା ତାଙ୍କୁ ପଚାରିବ ।
ଏହା ଶୁଣିଣ ଇନ୍ଦ୍ର ବ୍ରହ୍ମାଙ୍କୁ ନମିଲେ
ଐରାବତ ହସ୍ତୀ ଚଢ଼ି ବାହାରିଲେ ।
ଦେଖିଲେ ଶୂନ୍ୟଘରଟିକେ ଗଧ ହୋଇ
ବଳି ଶୋଇଛନ୍ତି ମୁହଁକୁ ମାଡ଼ିଦେଇ ।

ଇନ୍ଦ୍ର ବୋଇଲେ ଆହେ ବଳି ଦୈତ୍ୟରାୟେ
ଗଧ ହୋଇ ରହିଲ ଲୁଚିଇଣ କାୟେ ।
ନପୂନବେହ୍ନରୁ ନ ଯାଏ ଲୁହ ବହି
ଖାଇ ତ ଗଣ୍ଡି ଟିକି ଦେଇଛ ଫୁଲାଇ ।
ପୂର୍ବେ ତ ରଥ ବାଜିକୁଳ ସେନା ସଙ୍ଗେ
ଏ ମହୀ ଜିଣିଲ ଏକାକେ ରଣରଙ୍ଗେ ।
ତୁମ୍ଭପରି ଦୈତ୍ୟମାନଙ୍କୁ ତୁମ୍ଭେ ଅନ୍ନ
ଦେଇଣ ରଖିଥିଲ କରି ପରିଜନ ।
ଗନ୍ଧର୍ବ ଯକ୍ଷ ସ୍ତ୍ରୀ ସହସ୍ର ସଂଖ୍ୟା ଧରି
ନୃତ୍ୟ ଗୀତ ରଙ୍ଗରେ ନିଅ ଦିନ ହରି ।
ଅଯୁତଦଶ ଗାଈ ଯାଗେ ଦାନ ଦେଲ
ଯାଗ-ବେଦୀ ସୁବର୍ଣ୍ଣ-ଜପରେ ମଣ୍ଡିଲ ।
ସୁବର୍ଣ୍ଣ-ଛତ୍ର ଏବେ କେଉଁଆଡ଼େ ଥୋଇ
ରହିଛ ହେ ବଳି ଏ ଗଧ ରୂପ ବହି ।
ବଳି ବୋଇଲେ ହେ ନ ବୋଲ ଇନ୍ଦ୍ର ଏହା
ଜାଣିଛ ତ ତୁମ୍ଭଙ୍କୁ ଜିଣିଛୁ ମୋ ବାହା ।
ଯେଉଁକାଳେ ମୋହର ପ୍ରକାଶିବ ବଳ
ସେକାଳେ ଦେଖିବ ସେ ସମ୍ପତ୍ତି ସକଳ ।
ସମ୍ପତ୍ତିମତ୍ତ ହେବା ଯୋଗୁଁ ମୋତେ ଆସି
ପଚାରୁଛ ପୂର୍ବ ସମ୍ପତ୍ତି ହସି ହସି ।
ଏହା କି ତୁମ୍ଭଙ୍କୁ ସୁନ୍ଦର ପୁରନ୍ଦର
ହୃଦୟ ମଧ୍ୟ ଥରେ କର ତା ବିଚାର ।
ଦୁଃଖ ଶୋକେ ହୋଇଲେ ସାଧୁଲୋକମାନେ ।
ଧମାନ ମଣି ଧନ ନିଅନ୍ତି ସୁମନେ ।
କାମ ଅହଙ୍କାର ଲେଶ ତ ନାହିଁ ମୋର
ମୋତେ କିମ୍ପା ବାଧିପାରିବ ଏ ସଂସାର ।
ଇନ୍ଦ୍ର ବୋଇଲେ କହ କି ଉପାୟ କରି
ଏ ବୁଦ୍ଧି କି ପାଇଲ କହ ତା ବିଚାରି ।
ବଳି ବୋଇଲେ ଏହି ଜଗତ ଅନିତ୍ୟ
ଜାଣିବାରୁ ଦୁଃଖିତ ହେଉନାହିଁ ଚିତ୍ତ ।
ନଦୀମାନେ ସମୁଦ୍ରଗାମୀ ହେବାପରି
ପ୍ରାଣୀଙ୍କ ମରଣଟି ଜାଣ ବଜ୍ରଧାରୀ ।
ମୋହ-ପରାୟଣ ହୁଅନ୍ତି ଯେଉଁମାନେ
ଦେଖିଲେ ହେଲେ ମୃତ୍ୟୁ ନ ଦେଖନ୍ତି ମନେ ।
ଯେଉଁ ଲୋକ ଜ୍ଞାନକୁ ପାଏ ବଜ୍ରଧର
ହୃଦଟି ତାହାର ନିର୍ମଳ ମନେକର ।

ଧର୍ମଭିମତରେ ପ୍ରେରିତ ଲୋକ ହୋଇ
କହୁଥାଆନ୍ତି କଥା ଲୋକଙ୍କୁ ନ ବୁଝି ।
ଏହିମାନେ ଜାଣିଣ ସୁଖ ଦୁଃଖ ଦୂର
କରି ମୁଁ ରହିଅଛି ଜାଣ ପୁରନ୍ଦର ।
ମାରିଲି ବୋଲିକରି ମାରେ ଯେଉଁ ଲୋକ
ଏ ସେନ ଦୁହେଁ ବସନ୍ତି ଯମଲୋକ ।
ମାଇଲି ଜାଣିଲି ଯେ ବଚନ ବୋଲଇ
ତାହା ବଚନୁ ଜାଣ କାର୍ଯ୍ୟ କରୁ ନାହିଁ ।
ଭଲ ମନ୍ଦ ଦୁହିଙ୍କି କର୍ତ୍ତା ଟି ଈଶ୍ୱର
ଆମ୍ଭେ କଲୁଁ ବୋଲି ଯାଏ ବ୍ୟଥା ଆମ୍ଭର ।
ପଞ୍ଚମହାଭୂତରେ ଗଠିତ ଏ ପ୍ରାଣୀ
ଏ ଘେନ ଜନ୍ମ ମୃତ୍ୟୁ କହେ ତାଙ୍କୁ ବାଣୀ ।
ପ୍ରବଳ ଦୁର୍ବଳ ସୁନ୍ଦର ଅସୁନ୍ଦର—
ମାନଙ୍କୁ ତ ନେଉଛି କାଳ-ଦଣ୍ଡଧର ।
ସମସ୍ତେ କାଳବଶ ଜାଣିବାରୁ ବ୍ୟଥା
ହେଉନାହିଁ ଆନନ୍ଦେ ବାହାରୁଛି କଥା ।
ଜନ୍ମ ମୃତ୍ୟୁ ଏ ଦୁଇ ନୁହଇ ଅନ୍ୟଥା
ଲୋକରେ ପ୍ରବର୍ତ୍ତିଛି ଇନ୍ଦ୍ର ମହାରଥୀ ।
ଯେବେ କାଳ ପ୍ରାଣୀଙ୍କି ନ କରନ୍ତା ଗ୍ରାସ
ତେବେ ହର୍ଷ ଗର୍ବେ ମୋ ବଳନ୍ତା ମାନସ ।
ଗଧସ୍ୱରୂପ ହୋଇବାରୁ ବଳହୀନ
ଦେଖି ମୋତେ କହ ଏରୂପେ କି ବଚନ ।
ମୁଁ ମନ କଲେ ଭୟଙ୍କର ରୂପ ଧରି
ଏକ୍ଷଣି ତୁମ୍ଭଙ୍କୁ ପକାଇପାରେ ମାରି ।
କାଳ ସବୁପ୍ରାଣୀଙ୍କ ଧରି ରଖିଅଛି
ଏହାକୁ ଜାଣ ପରାକ୍ରମ ମୁଁ ଛାଡୁଛି ।
ମୋପରି ଯେ ଦିନେ ତୁମ୍ଭର ହେବ ଦଶା
ସେ ଦିନ ନ ରହିବ ଏରୂପରେ ଭାଷା ।
ପିଲା ପରି ମୋତେ ନ କହ ବସି କଥା
ତୁମ୍ଭ କଥା ଶୁଣି ଛାଡିବ ମୋର ବ୍ୟଥା ।
ଉତ୍ତମ କଥା ଏବେ କହ ପୁରନ୍ଦର
ସ୍ୱର୍ଗେ ବସି ଶଚୀଦେବୀଙ୍କି ଭୋଗ କର ।
ମୁଁ ଥିବା ବେଳକୁ ପ୍ରାଣୀଏ ନମସ୍କାର
କରୁଥିବେ ସ୍ପର୍ଦ୍ଧି ହେବାକୁ ତାହାଙ୍କର ।
ଏହା ତ ଗୋଚର ହେଉଅଛି ତୁମ୍ଭଙ୍କୁ
ଆଜ ବସି କରୁ ହେ ନ ପୁଚ୍ଛ ଆମ୍ଭଙ୍କୁ ।
କୁଳୀନ ଲୋକମାନେ ଦୁଃଖ ପାଉଛନ୍ତି
ଦୁଷ୍କୁଳୀନ ଲୋକେ ସୁଖରେ ଭାସୁଛନ୍ତି ।
ଏହା ସାକ୍ଷାତରେ ଆଖିରେ ଦେଖୁଥାଇଁ
କାହିଁପାଇଁ ଭ୍ରମୁଛ ଆହେ ଶଚୀସାଇଁ ।
ସୁନ୍ଦରୀ ସ୍ତ୍ରୀ ରଖିକି ନ ବୁଝୁଁଛୁ ପତି
ଅସୁନ୍ଦରୀ ସ୍ତ୍ରୀ ଶ୍ରୀ ହେଉଛି ଭାଗ୍ୟବତୀ ।
ତୁମ୍ଭ ବଳରେ ହେ ମୋହର ପରାଜୟ
ହୋଇନାହିଁ ଜାଣ ହେ କଶ୍ୟପତନୟ ।
କାଳକୁ ବୁଝି ହେଉଅଛି ସବୁକଥା
ନ ଜାଣି ଗାଲୁ କହ କେତେ ଲଣ୍ଡମଥା ।
ବିକ୍ରମର କାଳ ନୁହଇ ଏ ମୋହର
ଏଣୁ କ୍ଷମା କରୁଛି ଯାଅ ସ୍ୱର୍ଗପୁର ।
ତୁମ୍ଭେ ତ ଜାଣିଛ ଦେବତା ହୋଇ ମୁହିଁ
ଦେବଙ୍କ କାର୍ଯ୍ୟପାକ ବହଇଁ ଭୁଲଇ ।
କାଳରେ ପଡ଼ି ଏବେ ପାସୋରିଲ ତାହା
ନୋହିଲେ ଏହା କି କହନ୍ତ ବଜ୍ରବାହା ।
ତୁମ୍ଭେ ଆମ୍ଭେ ତ ଦୁହେଁ ସୁଖ ଦୁଃଖ କର୍ତ୍ତା
ନୋହୁଁଟି କର୍ତ୍ତା ଅଟେ ଯେ କାଳଦେବତା ।
କାଳପୁରୁଷର ଯେ ମାସ ଅର୍ଦ୍ଧ ମାସ
ଅଟଇ ଜାଣ ଆହେ ଶଚୀପତି ବାସ ।
ଅହୋରାତ୍ର ଦୁହିଙ୍କି ବସ୍ତ୍ର ପରି ରହି
ପିନ୍ଧଥାଏ କଟି-ତଟରେ ଗୁଡ଼ାଇ ।
ଋତୁମାନେ ତାହାର ଇନ୍ଦ୍ରିୟ ଅଟନ୍ତି
ବରଷ ମୁଖରେ ସେ ଶୋଭା ଦିଶେ ଅତି ।
ଏହି କାଳକୁ ତୁମ୍ଭେ ସବୁ ତ ନ ଜାଣ
ଏ ସକାଶୁଁ ଏରୂପେ ବଚନ ବଖାଣ ।
ଅଗ୍ନି ପ୍ରଜାପତି ସେ କାଳରୂପି କହି
କାଳଙ୍କୁ ଜଗିବାକୁ ସଂସାରେ କେ ନାହିଁ ।
ତୁମ୍ଭ ପରି ଇନ୍ଦ୍ର ସହସ୍ର ସଂଖ୍ୟା କାଳ
କରି ନେଇଅଛିଟି ପାଟିରେ କବଳ ।
ଯେତେବେଳେ କାଳ ପ୍ରାପତ ହେବ ଆସି
ସେକାଳ ତପିବ କଟିରେ ମାଛି ନ ଘୁଷି ।
ରାଜଶ୍ରୀ ପାଇ ତୁମ୍ଭେ ହୋଇଅଛ ମତ୍ତ
କାଳେ ଏ ଇନ୍ଦ୍ରପଦୁଁ ହେବ ଭ୍ରଷ୍ଟେ ଚ୍ୟୁତ ।
ମୋଠାରେ ସ୍ୱର୍ଗଶ୍ରୀ ରହିଥିଲ ପୂର୍ବ
ମୋତେ ଛାଡ଼ିଗଲ ତୁମ୍ଭଙ୍କୁ ଆଶ୍ରେ କରି ।

ତୁମ୍ଭଙ୍କୁ ସେହିରୂପେ ଛାଡ଼ିଣ ନକଟେ
ରହିବ ଏ ଶ୍ରୀ ଯାଇ ଆନ କନ୍ଧ-ତଟେ ।
ଏହିକାଳେ ବଳିଙ୍କ ଦେହରୁ ବାହାରି
ଯାଆନ୍ତେ ହେ ପାଣ୍ଡବ-ରାଜନଟି ଶିରୀ ।
ତାହା ଦେଖିଣ ଇନ୍ଦ୍ର ପୁଚ୍ଛିଲେ ବଳକ
ନାରୀ ଜଣେ କେ ଗଲେ ଧରି ସୁମୂର୍ତ୍ତିକ ।
ତୁମ୍ଭ ଦେହରୁ ହେ ବାହାରି ଦୈତ୍ୟବର
ଏହା ମୋର ଆଗରେ କର ତ ବିସ୍ତାର ।
ବଳି ବୋଇଲେ ହେ ନ ଜାଣେ ମୁଁ ତାହାଙ୍କୁ
ତୁମ୍ଭର ଇଚ୍ଛା ଥିଲେ ତୁମ୍ଭେ ପୁଚ୍ଛ ତାଙ୍କୁ ।
ଇନ୍ଦ୍ର ଏହା ଶୁଣିଣ ସ୍ତ୍ରିଶ୍ରୀଙ୍କି ଆଗୁଳି
ଜଏ ସେ ତୁମ୍ଭେ ବୋଲି ପୁଚ୍ଛିଲେ ନ ଭାଳି ।
ସେ ସ୍ତ୍ରିଶ୍ରୀ ବୋଇଲେ ମୋ ନାମ ଅଟେ ଶିରୀ
ମୋତେ ଜାଣ ନାହିଁ ହେ ତୁମ୍ଭେ ବଜ୍ରଧାରୀ ।
ଇନ୍ଦ୍ର ବୋଇଲେ ଆଗୋ, ଛାଡ଼ି ବଳି ଦୈତ୍ୟ
କେଉଁଠାକୁ ଯାଉଛ କହ ମୋତେ ମାତ ।
ଶିରୀ ବୋଇଲେ ମୁହିଁ କାଳରେ ପ୍ରେରିତ
ହୋଇକରି ଜାଣ ଭ୍ରମୁଛି ଏ ଜଗତ ।
ଇନ୍ଦ୍ର ବୋଇଲେ ଗୋ ବଳି କି ଦୋଷ କଲେ
ତାହାଙ୍କୁ କିମ୍ପା ତୁମ୍ଭେ ଛାଡ଼ି ଅଛ ଭଲେ ।
ମୋତେ ଯେଉଁରୂପେ କରିବ ତୁମ୍ଭେ ରକ୍ଷା
ଏହା କହ ମୁହିଁ ତୁମ୍ଭଙ୍କୁ କରେ ପୃଚ୍ଛା ।
ଲକ୍ଷ୍ମୀ ବୋଇଲେ ଆହେ ସତ୍ୟ ଦାନ ଧର୍ମ
ତପସ୍ୟା ବ୍ରତ ନିଷ୍ଠା ରୁଚି ପରାକ୍ରମ ।
ଯାଠାରେ ଥାଏ ତା'ର କାମ୍ୟେ ମୁହିଁ ଥାଏ
ଅନ୍ୟାୟୁ ଆସୁର କରିବାକ୍ଷଣି ଯାଏ ।
ବଳି ତ ବ୍ରାହ୍ମଣରେ ହେଲେ ମହାଦୋଷୀ
ଅଇଁଠାରେ ଘିଅ-ଖାଇଲେ ହୋଇ ଚୋଷୀ ।
ଏଣୁ ସକାଶରୁ ତାହାଙ୍କ ଦେହ ଦୂର
କରି ମୁଁ ଯାଉଅଛି ଜାଣ ପୁରନ୍ଦର ।
ଏବେ ତୁମ୍ଭ ଦେହରେ ରହିବଇଁ ମୁହିଁ
ଏ କଥାରେ କିଛିହିଁ ସନ୍ଦେହଟି ନାହିଁ ।
ଇନ୍ଦ୍ର ବୋଇଲେ ହେ ଦେବତା ମନୁଷ୍ୟରେ
କେ ଅଛି ଧରିବାକୁ ତୁମ୍ଭଙ୍କୁ ଦେହରେ ।
ଏହା ମୋର ଆଗରେ କହ ପଦ୍ମାଳୟା
ହୃଦୟ ମଧ୍ୟୁଁ ଛାଡ଼ି ଦେଇକରି ମାୟା ।
ଶିରୀ ବୋଇଲେ ହେ ଗନ୍ଧର୍ବ ଯକ୍ଷ ଦେବ
ନର ମୋତେ ଧରି ନ ପାରେ ଇନ୍ଦ୍ରଦେବ ।
ଇନ୍ଦ୍ର ବୋଇଲେ ହେ ମୋଠାରେ ଯେଉଁରୂପେ
ରହିବ ନିତ ତାହା କହ ମୋତେ ଆପେ ।
ସେହିରୂପରେ ମୁହିଁ ନିତ ସେବା କରି
ମୋ ଦେହେ ତୁମ୍ଭଙ୍କୁ ଧରିବି ଜାଣ ଶିରୀ ।
ଲକ୍ଷ୍ମୀ ବୋଇଲେ ଆହେ ମୋତେ ଚାରିଭାଗ
କରି ତ ଏବେ ଇନ୍ଦ୍ରଦେବ ମହାଭାଗ ।
ଇନ୍ଦ୍ର ବୋଇଲେ ଗୋ, କରିବି ଚାରିଭାଗ
ରହିବ ସବୁ କରି ଭାଗ ମଧ୍ୟ ଭାଗ ।
ଲକ୍ଷ୍ମୀ ବୋଇଲେ ଆହେ ଆଉ ଭାଗେ ମୁହିଁ
ରହିବି କହ ତାହା କାହିଁ ସଚୀସାଇଁ ।
ଇନ୍ଦ୍ର ବୋଇଲେ ଗୋ ଦ୍ୱିତୀୟଭାଗ ଜଳେ
ରଖ ନେଇ ମୋହର ବୋଲରେ କମଳେ ।
ଲକ୍ଷ୍ମୀ ବୋଇଲେ ହେ ତୃତୀୟଭାଗ କାହିଁ
ରଖିବାକୁ ସ୍ଥାନଟି କହ ଶଚୀସାଇଁ ।
ଇନ୍ଦ୍ର ବୋଇଲେ ହେ ବ୍ରାହ୍ମଣ ସାଧୁନର
ତୃତୀୟଭାଗଟିକ ଧରନ୍ତୁ ତୁମ୍ଭର ।
ଏରୂପେ ତିନିଭାଗ ତିନିଠାରେ ରଖି
ମହାଲକ୍ଷ୍ମୀଦେବୀ ଯେ ହୋଇ ଅତି ସୁଖୀ ।
ଇନ୍ଦ୍ରଙ୍କୁ ବୋଇଲେ ହେ ଏ ଭାଗଟିଁ ମୋର
ତୁମ୍ଭେ ଧରି କରି ସ୍ୱର୍ଗକୁ ଭୋଗ କର ।
ଇନ୍ଦ୍ର ବୋଇଲେ ମାଗୋ, ଭୂମିରେ ଜଳରେ
ଏ ବାହାରେ ରଖିଲି ତୁମ୍ଭଙ୍କୁ ସାଧୁରେ ।
ଭୂମି ଜଳରେ ମଳ ମୂତ୍ରକୁ ଉତ୍ସର୍ଗ
ସାଧୁଜନଙ୍କରେ ରହିବ ଯେଉଁ ରାଗ ।
ତାହାଙ୍କୁ ମୁଁ ନାଶ କରିବି ଶ୍ରିୟାଦେବୀ
କହୁଅଛଇଁ ସତ୍ୟ ହୃଦୟରେ ଭାବି ।
ଶିରୀ-ହୀନ ହୁଅନ୍ତେ ବୁଦ୍ଧି-ବଣା ହୋଇ
ସେକାଳରେ ବଳି କହିଲେ କ୍ରୋଧ ବହି ।
ଯେଉଁକାଳେ ସୂର୍ଯ୍ୟ ଉଦୟ ହରିଭାଗେ
ହୋଇ ତାପକୁ ସରଜବେ ମଧ୍ୟଭାଗେ ।
ସେହିକାଳେଟି ଦେବାସୁର ଯୁଦ୍ଧ ହେବ
ତୁମ୍ଭେ ଆମ୍ଭ ହାତରେ ନିଧନ ପାଇବ ।
ଇନ୍ଦ୍ର ବୋଇଲେ ହେ ବ୍ରହ୍ମାଙ୍କ ବୋଲେ ମୁହିଁ
ବଜ୍ରେ ମାରୁ ନାହିଁ ତୁମ୍ଭଙ୍କୁ ଦୟା ବହି ।

ଯହିଁ ଇଚ୍ଛା ହେଉଛି ତହିଁ ଏବେ ଯାଅ
ମୋଠାରୁ ଭୟ ଛାଡ଼ ବିଲୋଚନ ପୁଅ ।
ପୂର୍ବରୁ ତ ବହୁ କରିଛୁ ସରଜନା
ଠାଆକେ ନ ରହିବେ ସୂର୍ଯ୍ୟ ମହାମନା ।
ଏହି ସକାଶୁଁ ଜାଣ କହୁଅଛୁ ମୁହିଁ
ତୁମ୍ଭହାତେ କେବେ ମରଣ ମୋର ନାହିଁ ।
ଇନ୍ଦ୍ରଙ୍କର ମୁଖରୁ ଶୁଣି ଏ ବଚନ
ଦକ୍ଷିଣଦିଗେ ବଳି କଲେ ଯାଇ ସ୍ଥାନ ।
ବଳିଙ୍କ ଯିବା ଦେଖି ଇନ୍ଦ୍ର ତୋଷ ହୋଇ
ବସିଲେ ସ୍ୱର୍ଗରେ ଶଚୀଙ୍କି କୋଡ଼ଆଇ ।
ଏଠାରେ ବଳି ଇନ୍ଦ୍ର-କଥା କଲି ଶେଷ
କୃଷ୍ଣସିଂହ ନୃପତି ସୁତ ପୀତବାସ ।

—ః-*-ః—

## ଇନ୍ଦ୍ର ନମୁଚି ସମ୍ବାଦ

ଭୀଷ୍ମ ବୋଇଲେ ପାଣ୍ଡବ ନରବଣ
ଶୁଣିଲ ତ ସମ୍ପତ୍ତି ହେବାର କାରଣ
ଏହି ବିଷୟରେ ନମୁଚି ଇନ୍ଦ୍ରଙ୍କର
ସମ୍ବାଦ ଅଛି ତା କହିବା ମନେକର ।
ଶ୍ରୀହୀନ ହୋଇଣ ନମୁଚି ତ ଥିଲେ
ଇନ୍ଦ୍ର ଯାଇକରି ତାହାଙ୍କୁ ଯେ କହିଲେ ।
ଶତ୍ରୁମାନଙ୍କର ଏବେ ତ ହେଲେ ବଶ
କିମ୍ପା ନ କାନ୍ଦୁଛ କହ ଏକଥା କିସ ।
ନମୁଚି ବୋଇଲେ ହେ ଶୋକ ଯେ କରଇ
ଦେହ ଶୀର୍ଣ୍ଣ କରି ଅବଶ୍ୟ ସେ ମରଇ ।
ଏହା ଜାଣିଣ ମୁହିଁ ଛାଡ଼ିଅଛି ଶୋକ
ଜାଣ ଏକଥା ଶଚୀଦେବୀଙ୍କ ନାୟକ ।
ଶୋକ ସକାଶରୁ ସନ୍ତାପ ଉପସ୍ଥିତ
ହୁଅନ୍ତି ଲୋକ ମରି ଯମ ଭେଟିଯାନ୍ତି ।
ଯେଉଁ ଲୋକଟି ଜାଣିବାର ହୋଇଥିବ
ଦୁଃଖ ବିନାଶକାରୀ କଥା ବିସ୍ତାରିବ ।
ଯେତିକ ମଙ୍ଗଳେ ପୁରୁଷ କରେ ବୁଦ୍ଧି
ତେତିକ ମଙ୍ଗଳଟି ହୁଅଇ ପ୍ରସିଦ୍ଧି ।
ଏ ଜଗତଯାକରେ ଗୋଟିଏ ଈଶ୍ୱର
ସିନା ତାହା ଆଜ୍ଞା ମୁଁ କରେ ନିରନ୍ତର ।
ଜନମ ମୃତ୍ୟୁ ଦୋଷ ଜାଣିକରି ମୁହିଁ
ଯହିଁରେ ନୋହିବ ତା କରି ପାରୁନାହିଁ ।
ଯେ କଥା ଯେରୂପେ ହେବାକୁ ଯୋଗ ଥାଏ
ସେହି କଥା ସେରୂପ ଭୋଗ ହୋଇଯାଏ ।
ବିଧାତା ଯାହାକୁଟି ଯେଉଁ କୁଳେ ଜନ୍ମ
ଲେଖିଥାଏ ସେ କୁଳେ ହୋଏ ସେ ଜନମ ।
ସପ୍ତଲୋକଯାକେ ବିପତ୍ତି ଲାଗିଅଛି
ଯେ ଏହା ବୁଝୁଅଛି, ମୋହ ସେ ଛାଡ଼ୁଛି ।
ପଣ୍ଡିତଲୋକ ଦୈନ୍ୟ କ୍ରୋଧ ଶୀର୍ଣ୍ଣତାକୁ
ନ ଭଜିବ ହୃଦୟରେ କରିଣ ଶାସ୍ତ୍ରକୁ ।
ଅର୍ଥସିଦ୍ଧି ଯାହାକୁ ଆନନ୍ଦ କରାଏ
ସେହିଲୋକଟି ବଡ଼ ଜଗତ ବୋଲାଏ ।
ଦୁଃଖ ସୁଖ ହୋଇଲେ ହରଷ ବିରସ
ନୋହିବ ଯେ ହୋଇବ ଜାଣିବା ମନୁଷ୍ୟ ।
ସାଧୁଲୋକଙ୍କର ସଭାରେ ମାଡ଼ି ବସି
ଯେ ଧର୍ମ କହଇ ବଚନେ ହସି ହସି ।
ତାହାକୁଟି କହନ୍ତି ବୁଦ୍ଧିମନ୍ତ ନର
ଏ ବଚନରେ କିଛି ସନ୍ଦେହ ନ କର ।
ପଣ୍ଡିତ ହେବାରୁଟି ଗଉତମ ଋଷି
ବିପତ୍ତିରେ ନୋହିଲେ ମୋହରେ ଲାଳସୀ ।
ନ ହୋଇବାର କଥା ବିସ୍ମୟରେ ବଳରେ
ସିଦ୍ଧ ନୁହଇ ଜାଣ କେବେହେଁ କାଳରେ ।
ବିଧାତା ଯେଉଁ କଥା ବିଧାନ କରିଛି
ଅଦୃଷ୍ଟ କରି ତାହା ମାନି ମୁଁ ରହିଛି ।
ଏହା ଜାଣି ମୋହ ନ ପାଏ ଯେଉଁ ନର
ସର୍ବଧନଈଶ୍ୱର ନାମଟି ତାହାର ।
ଶକ୍ର ନମୁଚିଙ୍କର ସରଳ ସମ୍ବାଦ
କୃଷ୍ଣସିଂହ ନୃପତି କହେ ବହି ମୋଦ ।

—ః-*-ః—

## ବଳି ବାସବ ସମ୍ବାଦ

ଯୁଧିଷ୍ଠିର ବୋଇଲେ ବନ୍ଧୁ ରାଜ୍ୟ ନାଶ
ଗଲେ କିସ କରିବ କର ତା ପ୍ରକାଶ ।
ଭୀଷ୍ମ ବୋଇଲେ ଆହେ ପୁତ୍ର ଧୈର୍ଯ୍ୟ ଧାନ
ମୁକ୍ତ ଲୋକ ଶ୍ରେୟ ବାଞ୍ଛିବ ଅବିଚ୍ଛିନ୍ନ ।
ଧୈର୍ଯ୍ୟଯୁକ୍ତ ଲୋକ ହୋଇଲେ ଶରୀର
ଶୀର୍ଣ୍ଣ କରି ନ ପାରେ ଚିନ୍ତା ମନେ କରି ।
ଯେବେ ତୁମ୍ଭର ଚିତ୍ତ ଅବୋଧ ହେଉଛି
କହିବା ବଳି-ଇନ୍ଦ୍ରକଥା କୁନ୍ତୀ ବତ୍ସ ।

ଥରେ ତ କହୁଥାଇଁ ଆଜ ଥରେ ତାହା
କହୁବା ଶୁଣ ଆହେ ନରକୁଳନାହା ।
ଦେବସୁର ଯୁଦ୍ଧେ କରନ୍ତେ କୃଷ୍ଣ ଜୟ
ଶଚୀଦେବୀ-ବଲ୍ଲଭ ମହତ ଉପାୟ ।
ପାଇଣ ଗଜ ଐରାବତରୁ ଆରୋହି
ବୁଲନ୍ତେ ତିନଲୋକ ମହାଦୋଷ ବହି ।
ବୁଲୁ ବୁଲୁ ସମୁଦ୍ର ପ୍ରାନ୍ତରେ ପର୍ବତ
ଥିଲା ତା ନେତ୍ରରେ ଦେଖିଲେ ପୁରୁହୂତ ।
ସେ ପର୍ବତ ମଧ୍ୟେ କନ୍ଦରଟିଏ ଅଛି
ତହିଁରେ ବସିଛନ୍ତି ବିରୋଚନ ବଳି ।
ବଳି ଦେଖି ନୟନେ ଇନ୍ଦ୍ରଙ୍କର ରୂପ
ନ କଲେ ସେ କିଛି ହୃଦରେ ଭୟତାପ ।
ଇନ୍ଦ୍ର ତାହା ଦେଖି ବୋଇଲେ ଆହେ ବଳି
ତୁମ୍ଭେ ଆମ୍ଭେ ପୂର୍ବରୁ କରିଥାଇ କଳି ।
ଆମ୍ଭର ସକାଶରୁ ଯୁଦ୍ଧରେ ପରାସ୍ତ
ହୋଇ ଆଶ୍ରେ କରିଛ ଆସି ଏ ପର୍ବତ ।
ଆମ୍ଭଙ୍କୁ ତୁମ୍ଭେ ଏବେ ନେତ୍ରେ ଦେଖିକରି
ତେଜିଛ ହୃଦୁ ଭୟ ତାପ ଦୂର କରି ।
ଯାହାଟି ତହିଁକି ମୁଁ କହୁଅଛି ଏହା
ତୁମ୍ଭ ପରି କାହାରି ନ ଥିବ ଉତ୍ସାହା ।
ତିନ ଲୋକେ ରାଜତ୍ୱ କରୁଥିବ ତୁମ୍ଭେ
ତୁମ୍ଭଙ୍କୁ ହାରି ସ୍ୱର୍ଗ ଯାଇଥିଲୁଁ ଆମ୍ଭେ ।
ତୁମ୍ଭେ ଏବେ ଆମ୍ଭରେ ହୋଇଣ ପରାସ୍ତ
କରୂପେ ସ୍ୱସ୍ଥିଅଛ ନୋହୁକରି ତ୍ରସ୍ତ ।
ବଳି ବୋଇଲେ ହେ ତୁମ୍ଭଙ୍କୁ ମୁହିଁ ଜାଣି
ଥିଲି, କେତେ କହୁଛ ହୋଇ ଟାଣି ଟୁଣି ।
ତୁମ୍ଭ ହାତେ ବଜ୍ର ଦେଖିଲେ ହେଲେ ମୋର
ହୃଦୟେ ଭୟ ହେଉନାହିଁ ପୁରନ୍ଦର ।
ତୁମ୍ଭର ବିନା ଆନଲୋକର ଅସ୍ତ୍ର ଏ
ଥିଲେ ହେ ନ କହନ୍ତା ନିଷ୍ଠୁର ହୃଦୟେ ।
ହାରିଲେ ଶତ୍ରୁ ଦୟା କରଇ ଯେଏଟି
ପୁରୁଷ ବୋଲି କରି ତାହାକୁ କହନ୍ତି ।
ଯୁଦ୍ଧ କଲେ ଅବଶ୍ୟ ହରା ଜିଣା ହୋଏ
ଏଥିକି କି କଲ କହ ହେ ସୁରରାୟେ ।
କାଳକୁ ବୁଝିକରି ଜଣୁଥିଲି ମୁହିଁ
କାଳରେ ହାରି ଯେ ରହିଲି ଲୀନ ହୋଇ ।

କାଳକ୍ରମେ ଏବେ ପତ୍ନୀକି ଧରି କୋଳେ
ବିହରିଲ ସୁଖକୁ ପାଇ ସ୍ୱର୍ଗ ଆଳେ ।
ତୁମ୍ଭଙ୍କୁ ଆମ୍ଭଙ୍କୁ କାଳରେ କାଳ କାଳ
ଧରିଣ ଦେଖାଇବ ସୂର୍ଯ୍ୟଙ୍କ ଦୁଲାଳ ।
କାଳରେ ପୀଡ଼ିତଟି ଯେ ନର ହୋଇଛି
ତାକୁ ରଖିବାକୁ କାହାରି ଶକ୍ତି ଅଛି ।
ଧରମ ତପୋଦାନ କରୁଥାଏ ନର
ଛୋଟିଲକ୍ଷଣି କାଳ ଯାଏ ଯମପୁର ।
ମୁଁ କରିଛି ବୋଲି ଯେ କରି ମନେ ତୁମ୍ଭେ
ବଡ଼ ମୂର୍ଖ ବୋଲି ଘେନୁଛୁ ମନେ ଆମ୍ଭେ ।
କାଳ ସ୍ୱରୂପୀଟି ଅଟନ୍ତି ଭଗବାନ
ତାହାଙ୍କର ଆମ୍ଭେ ଯେ ସମସ୍ତେ ଅଧୀନ ।
କାଳରେ ହେଲ ତୁମ୍ଭ ଆମ୍ଭ ହାରି ଜିଣା
ଏଥିକି କମ୍ପା ମୋତେ ଦେଖୁଅଛ ଊଣା ।
କାଳକୁ ତ ସଦା ମାନି ମୁଁ ରହିଅଛି
ନ କହ ମୋତେ କିଛି ଅହିତଙ୍କ ବଳି ।
ତୁମ୍ଭରି ପରି ଶତସଂଖ୍ୟା ଇନ୍ଦ୍ର ସ୍ୱର୍ଗ
ଭୋଗ କରି ଲଭିଲେଣି ନାଶଭାଗ ।
ଏହି ସକାଶୁ ଜାଣ କହୁଅଛି ମୁହିଁ
ନ ନାଶ ଏ ସମ୍ପତ୍ତି ଗର୍ବମଦ ପିଇ ।
ମୋହପରି ମଧ୍ୟ ଅନେକ ଦୈତ୍ୟ ଇନ୍ଦ୍ର
ଅରଜି ଭଦ୍ର ଅରଜିଲେନ ଅଭଦ୍ର ।
ମୂର୍ଖ ବୁଦ୍ଧି ତୁମ୍ଭ ହେବାରୁ ସୁରପତି
ବୋଲେ ସବୁଦିନେ ଭୁଞ୍ଜିବ ସ୍ୱର୍ଗ ଭୂତି ।
ଅନିତ୍ୟ କଥା ଯାହା ନିତ୍ୟ କରି ମଣ
ଜାଣେ କାଳଯୁକ୍ତ ହେଲନି ସୁରଗଣ ।
ସମ୍ପତ୍ତିର ନାମ ତ ଚଞ୍ଚଳା ଅଟଇ
ନିକଟେ ଛାଡ଼ିବ ତୁମ୍ଭଙ୍କୁ ସୁରସାଇଁ ।
ଯେଉଁମାନେ ମହୀକି ସମୁଦ୍ରାନ୍ତ କରି
ଭୁଞ୍ଜୁଥିଲେ ସେ ତ ଦେଖିଲେ ଯମପୁରୀ ।
ତୁମ୍ଭେ ସେହିରୂପେ ହୋଇବ ପୁରନ୍ଦର
ଏ ସଂସାରଯାକ ତ ବିଷ୍ଣୁଙ୍କ ହୃନ୍ଦର ।
ପୃଥୁମନ୍ୟୁ ଇଲ୍ୱଳ ପୁଲୋମାଶ୍ୱଗ୍ରୀବ
ସ୍ୱର୍ଭାନୁ ବିପ୍ରଚିତ୍ତି ନମୁଚି ହ୍ରୀନସେବ ।
ବଜ୍ର ବିଶ୍ୱଦଂଷ୍ଟ୍ର ଯେ ବାଣ କାଉଁସ୍ୱର
କପିଳାଶ୍ୱ ସତ୍ତ୍ୱୋସ୍ୱ ବୃଷଭ ଶମ୍ବର ।

ବଶିତାକ୍ଷ ଖ୍ରମ ବୃଷାଣ୍ଡ ବିଶ୍ୱଜିତ
ବିଗହ ଅଶ୍ୱ ପ୍ରତିରୂପ ପୁଷ୍ପଦନ୍ତ ।
କାଳକଞ୍ଜ ହିରଣ୍ୟକଶିପୁ ବିରୂପକ
କୈଟଭ ବିରୋଚନ ବିଷ୍କର ନରକ
ପ୍ରହ୍ଲାଦ ରୁକ୍ମାଙ୍ଗଦ ଭୂରିହା ସୁହୋତ୍ର
ମଧୁଗ୍ରହ ଯେ ରୁଚିପ୍ରଭ ନଭଶ୍ଚର ।
ଏମାନେ ତ୍ରିଜଗଲୋକ ଜିଣି ଭୁଞ୍ଜି ଶିର
କାଳବଶେ ଦେଖିଲେ ଯମଙ୍କ ନଗର ।
ଏହିରୂପେ ତୁମ୍ଭର ପରି ଶତ ଇନ୍ଦ୍ର
ଶତ ଯାଗ କରିଣ ଅର୍ଜିଲେ ଛତ୍ର ।
ସେ ଇନ୍ଦ୍ରମାନଙ୍କର ଗୁଣ ଅଟେ ଯାହା
କହିବା ତାହା ଶୁଣ ଆହେ ଶଚୀନାହା ।
ଧରମ-ପରାୟଣ ଅନ୍ତରୀକ୍ଷ-ଚର
ଅଭିମୁଖ-ଯୋଧୀ ପରିଘ-ବାହୁଧାରୀ ।
ଶତମାୟା-ସଂଯୁତ ସ୍ୱଇଚ୍ଛା-ଗମନ
ନ ହାରନ୍ତି କେବେହେଁ କଲେ ଆୟୋଧନ ।
ସ୍ୱରଦେବଙ୍କର ସେ କୁଶଳ ଅଟନ୍ତି
ସତ୍ୟ ବିନା ଅସତ୍ୟ କୁଣ୍ଡେ ନ ବସାନ୍ତି ।
ଏରୂପେ କର୍ମ କରି ଅର୍ଜି ସ୍ୱର୍ଗପୁର
ଥିଲେ, ତାହାଙ୍କୁ କାଳ କଲାଟି ଆହାର ।
ତୁମ୍ଭେ ଏବେ ତାହାଙ୍କ ପରି ଭୋଗ କରି
ଭେଟିବ ଯାଇ ଶେଷେ କାଳଦଣ୍ଡଧାରୀ ।
ରାଜ୍ୟ ଥିବା ଯୋଗୁଁ ହୋଇଛ ଶିରୀ-ମଦ
ରାଜ୍ୟ ଗଲେ ରହିବ ଲଭିଣ ବିପଦ ।
ଶୋକକାଳେ ଶୋକ ହର୍ଷକାଳେ ହରଷ
ନ କରନ୍ତି ପଣ୍ଡିତମାନେଟି ମାନସ ।
କାଳ ଆଗ ଆସିଲା ମୋହଠାକୁ ଯୋଟି
ଏବେ ତୁମ୍ଭଠାକୁ ଧାଇଁଛି ମେଲା ପାଟି ।
ହାରିବା ଜିଣିବାକୁ କାଳଟି କରତା
ଏତେକ କ୍ଷମା କରୁନାହଁ ବିବେକତା ।
ତୁମ୍ଭେ ଆମ୍ଭେ ଦୁହେଁତ ଜଣାଜଣି ହୋଇ—
ଥାଇଁ, କ୍ଷମା ଏବେ ଗରଜି କହ ଭାଇ ।
ମୋ ବାହୁବଳରେ ଆଦିତ୍ୟ ରୁଦ୍ର ସାଧ୍ୟ
ସ୍କନ୍ଧଦାଣ୍ଡରେ ରହିଥିଲେ ହୋଇ ସାଧ୍ୟ ।
କାଳକୁ ଅତିକ୍ରମି ନ ପାରନ୍ତେ ମୁହିଁ
ରହିଛିଟି ତୁମ୍ଭ ବଚନ-ଚେଲା ସହି ।
କାଳ ରଜ୍ଜୁ ବାନ୍ଧି ମୋ ଅଛି ଦୁଇହାତ
ମାଇଲେ ବଜ୍ର ତୁମ୍ଭେ ପାଡିବି ମୁଁ ମାଥ ।
ବଧ ବନ୍ଧ ଲାଭ ଅଲାଭ କାଳ ଯୋଗ
ପାଇଛି ଅଛନ୍ତି ଏ ତ୍ରିଜଗଲୋକ ଶ୍ରେଣୀ ।
ଶୋକ କଲେ ବିପତ୍ତି ହେଉଥିଲେ ଦୂର
ତେବେ ଶୋକ ମୁହିଁ କରନ୍ତି ପୁରନ୍ଦର ।
ଏରୂପେ ବଳମୁଖୁଁ ଇନ୍ଦ୍ର ବାଣୀ ଶୁଣି
କହିଲେ କ୍ରୋଧ ଛାଡ଼ି ଦେଇ ତାଙ୍କୁ ବାଣୀ ।
ବଜ୍ର ସହିତରେ ଦେଖିଲେ ମୋର ବାହୁ
କହ ବୁଦ୍ଧି ବଳ ନୋହିବ ଦାଉ ଦାଉ ।
ତୁମ୍ଭେ ଆଚ୍ଛା ଧୈର୍ଯ୍ୟ ଧରି ମୋହର ଆଗେ
କହିଲ ଏତେ କଥା ଦମ୍ଭେ ମହାଗରେ ।
ଏ ଜଗତ ଅନିତ୍ୟ ଦେଖୁଁ ଦେଖୁଁ ଦେହ
ଧନରେ କେଉଁ ଲୋକ କରିବଟି ସ୍ନେହ ।
ମୁଁ ମଧ୍ୟ ଜାଣୁଛି କାଳକୁ ଅତିକ୍ରମି
ପାରିବେ ନାହିଁ ଯାଇଁ ପିତା ବ୍ରହ୍ମାସ୍ୱାମୀ ।
କାଳ ସବୁଠାରୁ ହୋଇଛି ଜାଗରୁକ
କାଳରେ ଆବୃତ ହେଉଛି ସବୁ ଲୋକ ।
ବାଳ ବୃଦ୍ଧ ଭେଣ୍ଡା ସମସ୍ତଙ୍କର ଚୋଟି
ଚିପି ହେଉଅଛଇ କାଳଦେବତାଟି ।
ଆଜ ଏହାକୁ କାଲି କାଲି ତା କରିବି
ଯେ ଭାବୁଛି କାଳ ବୋଲଇ ତାକୁ ନେବି ।
ସଭାରେ ବସି ଲୋକ କଥା କହୁଥାଏ
ଶୂଳରୂପେ କାଳଟି ମାରି ନେଇଯାଏ ।
କାଳର ସକାଶରୁ ଅର୍ଥଭୋଗମାନ
ହେଉଅଛଇ ଦେଖୁଥାଇଁ ଆନ ଆନ ।
ତୁମ୍ଭର ବୁଦ୍ଧି ତତ୍ତ୍ୱଦରଶୀ ହେବାରୁ
ହେଉନାହିଁ ତୁମ୍ଭେ ଦେଖିଲେ ମୋତେ ଆଜୁ
ଈର୍ଷା ଅଭିମାନ କାମ କ୍ରୋଧକୁ ଘେନି
ହେଉଅଛନ୍ତି ଲୋକମାନେ ଲୋଭ-ପ୍ରାଣୀ ।
ଅଏଁଳା କୋଳ ହସ୍ତେ ଧରିବା ପରାୟେ
ବିଦ୍ୟାରେ କାଳକୁ ଜାଣୁଛି ଦୈତ୍ୟରାୟେ ।
ଜାଣିବା ଲୋକମାନେ ତୁମ୍ଭ ପରି ବୁଦ୍ଧି
ଇଚ୍ଛୁଥିବେ ଲୋକେ ପାଇବାକୁ ସିଦ୍ଧି ।
ରଜ ତମ ତୁମ୍ଭର ହୃଦୟରେ ଘର
ଆଜଯାଏଁ କରିନାହିଁ ହେ ଦୈତ୍ୟେଶ୍ୱର ।

ଶାନ୍ତ ସାଉ ଧୀର ମୁଁ ଦେଖିଣ କୃଷ୍ଣଙ୍କୁ
ତପସ୍ୟା କରିଣ ଯିବ ସ୍ୱର୍ଗକୁ ପରବ୍ୟ ।
କୃଷ୍ଣେ ପାଶରେ ବନ୍ଧା ହେବାର ମୁଁ ଦେଖି
ମାରିବାକୁ ବଳ ମୁଁ ହେଉଅଛି ଦୁଃଖୀ ।
ଶାଶୁକୁ ବୋହୂ ସେବା-ନିଯୁକ୍ତ କରିବ
ବାପକୁ ବସି ପୁଅ ଆଜ୍ଞାଟି କାଟିବ ।
ବ୍ରାହ୍ମଣମାନେ ଶୂଦ୍ରେ ଧୂଆଇବେ ଗୋଡ଼
ଭଣ୍ଡାସି ବ୍ରାହ୍ମଣେ ବୋଲାଇବ ମୋତେ ଭଡ଼ ।
ପୁରୁଷେ ପୁରୁଷଙ୍କ ମୁଖରେ ସୁରତ
କରିବେ ମର୍ଯ୍ୟାଦାରେ ନୋହିବକର ସ୍ଥିତ ।
ଯେଉଁ କାଳରେ ହେବ ଆହେ ଦୈତ୍ୟପତି
ସେକାଳେ ପାଶୁଁ ଛୁଟି ହୋଇବ ମୁକତି ।
ମୋହ ସକାଶୁଁ ଏବେ ଭୟ ଦୂର କର
ସମୟକୁ ପାଳନା କର ଦୈତ୍ୟେଶ୍ୱର ।
ଏରୂପେ ବଳି ଆଗେ କହି ସୁରପତି
ଗମିଲେ ସ୍ୱର୍ଗପୁରେ ହୋଇଣ ତୃପତି ।
ଋଷିମାନେ ଏହା ଦେଖିଣ ତୋଷୀ ହେଲେ
ହୁତାଶନ ଯେ ଯାଗ ଆହୁତି ଖାଇଲେ ।
ଶେଷଭାଗ ନେଇ ଇନ୍ଦ୍ରାଦି ଦେବତାଙ୍କୁ
ଦେଇଣ ବଢ଼ାଇଲେ ତାଙ୍କର ବଳକୁ ।
ଦ୍ୱିତୀୟରେ ବଳି-ବାସବ-ସମ୍ବାଦ
ସରଳ କହେ କୃଷ୍ଣସିଂହ ବନ୍ଧି ମୋଦ ।

—*—

## ଲକ୍ଷ୍ମୀ ବାସବ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଭଲ ମନ୍ଦ ଦୁଇ
ହେବାକୁ କେ କାରଣ କହ ତା ବତାଇ ।
ଭୀଷ୍ମ ବୋଇଲେ ଆହେ ଶୁଣ ଭଲ କଥା
ଦୁଇମନ୍ଦ ଜାଣି ହେ ଧର୍ମ ମହାରଥା ।
ଏହି ବିଷୟେ ଇନ୍ଦ୍ର ଲକ୍ଷ୍ମୀଙ୍କ ସମ୍ବାଦ
କହିବା ଶୁଣ ଧର୍ମରାଜ ବହି ମୋଦ ।
ତପୋବଳେ ନାରଦ ତେଜେ ଯୁକ୍ତ ହୋଇ
ଜନଲୋକ ଯାଇ ବୁଲିଲେ ସୁଖ ପାଇ ।
ଜନକେ ଆଚମନ ପାଇଁ ସେ ଆକାଶ
ଗଙ୍ଗାଙ୍କ ତୀରେ ଯାଇ ହେଲେ ପରବେଶ ।
ନାରଦଙ୍କ ଯିବା ସମୟେ ପୁରୁହୂତ
ଗଙ୍ଗାଙ୍କ ତୀରେ ଯାଇ ହେଲେ ଉପସ୍ଥିତ ।

ସେ ଦୁହେଁ ଗଙ୍ଗାଙ୍କରେ ପଶି ସ୍ନାନ କଲେ
ପଇତାରେ ହାତକୁ ଦେଇଣ ଜପିଲେ ।
ଜପଶେଷରେ ଦୁହେଁ ହେଲେ କଥାବାର୍ତ୍ତା
ଦୁହେଁ ତ ବୋଲନ୍ତି ସକଳଶାସ୍ତ୍ର-ବେତ୍ତା ।
ସୂର୍ଯ୍ୟ ଉଦୟଗିରି-ଶିଖର ଆଶ୍ରାକୁ
କରନ୍ତେ ଗୁଡ଼ ଦେଇ ଦୁହେଁ ଆସନକୁ ।
କର ଦୁଇକୁ ଯୋଡ଼ି ସ୍ତୁତି ପାଠ କଲେ
ପୁନଃ ପୁନଃ କରି ସେ ନମସ୍କାର କଲେ ।
ସେହିକାଳେ ଦ୍ୱିତୀୟ ସୂର୍ଯ୍ୟ ପରି ତେଜ
ବାହାରିଲା ଦେଖି କଶ୍ୟପ ବ୍ରହ୍ମାତ୍ମଜ ।
ସେ ତେଜ ମଧ୍ୟେ ବସିଛନ୍ତି ପଦ୍ମାଳୟା
ପଦ୍ମାଳୟା ଧରି ହୃଦରୁ ଗୁଡ଼ ମାୟା ।
ସହସ୍ର ସଂଖ୍ୟା ଅପସରୀଏ ଆଲଟ
ଚାମରକୁ ପକାନ୍ତି ବୃଦ୍ଧି ବୃଦ୍ଧିପଟ ।
ନାରଦ ଇନ୍ଦ୍ରଙ୍କର ସମୀପ ପାଆନ୍ତେ
ବିମାନ ମଧ୍ୟୁଁ ଲକ୍ଷ୍ମୀ ଓହ୍ଲାଇ ଭୂଇଁତେ ।
ଇନ୍ଦ୍ର ନାରଦଙ୍କ ସମୀପେ ହେଲେ ଉଭା
ଜ୍ୟୋତିରେ ଯାଙ୍କ ଶତଦାହ-ପ୍ରେମ ପ୍ରଭା ।
ନାରଦ ଇନ୍ଦ୍ର ଦେଖି ଲକ୍ଷ୍ମୀଙ୍କ ନୟନେ
ନମିଲେ ତାଙ୍କ ପାଦେ ଅତ୍ୟନ୍ତ ସୁମନେ ।
ଇନ୍ଦ୍ର ପଚାରିଲେ କିଏ ସେ କୃଷ୍ଣେ ଅଟ
ପଦ୍ମରୁଅଛୁ ତାହା କର ତ ପ୍ରକଟ ।
କେଉଁଠାକୁ ଯିବା ହେ ହେଉଅଛ ଏବେ
ତ ହା ମଧ୍ୟ ଆମ୍ଭଙ୍କୁ କହିବା ହୋଇବେ ।
ଲକ୍ଷ୍ମୀ ବୋଇଲେ ଆହେ ଜନଲୋକ ଲୋକ
ଯାକ ମୋର ଅଟନ୍ତି ଜାଣ ହେ ସେବକ ।
ପଦ୍ମା ଲକ୍ଷ୍ମୀ ଶିରୀ ଉଦ୍ଭୂତ ଭୂମି ମେଧା—
ଉନ୍ନତି ସ୍ଥିତି ଧୃତି ଜୟ ସିଦ୍ଧି ଶ୍ରଦ୍ଧା ।
ସମୃଦ୍ଧି ସ୍ୱାହା ସ୍ୱଧା ସନ୍ନତି ନୟତି
ସ୍ମୃତି ବୋଲିଣ ଜାଣ ମୋତେଟି କହନ୍ତି ।
ଯେଉଁ ରାଜାମାନେ ଅଟନ୍ତି ସୁଧାର୍ମିକ
ରହିଥାଏଁ ପୁରି ମୁଁ ତାଙ୍କ ଘରଯାକ ।
ଜିତକାମୀ ଶୂର ଅଟଇ ଯେଉଁ ନର
ତାର ଦେହମଧ୍ୟେ ଅଟଇ ମୋର ଘର ।
ଧାର୍ମିକ ସତ୍ୟବାଦୀ ଦାନଶୀଳ ଯେତେ
ଲୋକ ହୋଏ ଯେତେଟି କହିଥାନ୍ତି ତେତେ ।

ସତ୍ୟ ଧର୍ମ ଥିବାରୁ ପୂର୍ବେ ମୁଁ ଅସୁର
ସଙ୍ଗରେ ରହିଥିଲି ଜାଣ ସୁରେଶ୍ୱର ।
ଏବେ ସତ୍ୟ ଧର୍ମ ତ ତାଙ୍କଠାରେ ନାହିଁ
ତୁମ୍ଭଠାକୁ ଏଣୁ ଆସିଛି ଶଚୀସାଇଁ ।
ଇନ୍ଦ୍ର ବୋଇଲେ ହେ ସତ୍ୟଙ୍କ କସ ବୃତ୍ତ
ଦେଖିଣ କରିଥିଲେ ତା ମୋତେ କହ ତ ।
କେଉଁ ଦୁର୍ବୃତ୍ତକୁ ତାଙ୍କର ପୁଣି ଜାଣି
ମୋହଠାକୁ ଆସିଣ କହୁଛ ଏ ବାଣୀ ।
ଏହା ଶୁଣିବାପାଇଁ ଇଚ୍ଛୁଛି ମୁଁ ମନେ
ଜାଣ ଆହେ କମଳା କମଳଜାସନେ ।
କମଳା କହିଲେ ହେ ଧୈର୍ଯ୍ୟ ଅନୁଷ୍ଠାନ
କରି ସେ ଧର୍ମ କରୁଥିଲେ ପ୍ରତିଦିନ ।
ଦାନ ଯଜ୍ଞ ଗୁରୁ ଅତିଥି ଦେବ ପୂଜା
ଆସୁର ସକାଶୁଁ ମୋ ଥିଲା ତହିଁ ମଜ୍ଜା ।
ସ୍ତ୍ରୀବଶ ନୋହି ହୋମାଦି କରୁଥିଲେ
ବ୍ରହ୍ମଣ୍ୟ ହୋଇ ସତ୍ୟବଚନ କହିଲେ ।
କଉଣସି ଜନକୁ ନ କଲେ ଅସୂୟା
ପୁତ୍ର ଭାର୍ଯ୍ୟା ମନ୍ତ୍ରୀରେ ହୃଡ଼ ଦେଲେ ମାୟା ।
ଅନ୍ୟାନ୍ୟରେ କେହି ଯେ ବାହାର ନିନ୍ଦାକୁ
ନ ବାଡ଼ିଲେ ମୁଖରେ ଲଭିଣ ଉସୁକୁ ।
ପରଦ୍ରବ୍ୟେ ସ୍ପୃହା ନୋହିଲା ତାଙ୍କ-ଚିତ୍ତ
ପରସମ୍ପତ୍ତିରେ ନୋହିଲେ ସନ୍ତପତ ।
ଋଜୁ ଜିତେନ୍ଦ୍ରିୟ ହୋଇଣ ଦୟାବନ୍ତ
ଅହର୍ନିଶ ହେଲେ ଜାଣ ସେ ଦୟାଚିତ୍ତ ।
ପର୍ବ ତିଥିମାନଙ୍କେ ସ୍ନାନ ଦାନ କରି
ସଜ୍ଜ କରି ବସିଲେ ଅଳଙ୍କାର ଭରି ।
ଯେତେବେଳେ ପ୍ରାଚୀ ଆକାଶ ହୋଏ ରଙ୍ଗ
ଉଠନ୍ତି ତେତେବେଳେ ଗୁଢ଼ ସ୍ତ୍ରୀସଙ୍ଗ ।
ରାତ୍ରରେ ଦହି ଛତୁଆକୁ ନ ଖାଆନ୍ତି
ସ୍ନାନ କରି ଘୃତାଦି ମଙ୍ଗଳ ଦେଖନ୍ତି ।
ରାତ୍ରଅର୍ଦ୍ଧ ହୋଇଲେ କରନ୍ତି ଶୟନ
ଦିବସେ କେବେ ନ ବୁଜନ୍ତି ସେ ନୟନ ।
ଦୀନଜନଙ୍କଠାରେ କରିଥାନ୍ତି ଦୟା
ଦଅନ୍ତି ନ ଖାଇଣ ଶୀର୍ଣ୍ଣ କରି କାୟା ।
ବ୍ରାହ୍ମଣଙ୍କୁ ଦେଇଣ ଭୋଜନ କରନ୍ତି
ଆଜ୍ଞ ଭେଦ, ପରସ୍ତ୍ରୀଗଣ ନ ସ୍ପୃହାନ୍ତି ।

ସୁଖ ପଶୁଯୋନି ଆକାଶ ପର୍ବତଥି
ମାନଙ୍କେ ରେତ ନ ଛାଡ଼ନ୍ତି ହୋଇ ବ୍ୟଥି ।
ଦାନ ଦାକ୍ଷ୍ୟ ଆର୍ଜବ ଦୟା କ୍ଷମା ସ୍ନେହ
ଅହଙ୍କାର ବର୍ଜନ ଶଉଚ ଉତ୍ସାହ ।
ଅନଷ୍ଠୁର-ବାଣୀ ଅମିତ୍ର-ଦ୍ରୋହ ଆଦି
ଜାଣିବେ ତ ଦାନବ ନୃପତି ସମ୍ପାଦ ।
ଏହି ସକାଶୁଁ ମୁଁ ରହିଲି ତାଙ୍କ ଘରେ
ଅନେକ ଯୁଗଯାଏ ଅତି ସୁମନରେ ।
ଏବେ ସେ ଦୈତ୍ୟନୃପ ମୋ କହିବା କଥା
ତୁମ୍ଭଙ୍କୁ ତାହା କରିଦେଲେଟି ଅନ୍ୟଥା ।
ଯେଉଁରୂପେ ତାହା କରିବା ସୁରସ୍ୱଣ
ମୋହଠାରୁ ହେ ମନ ଦେଇକରି ଶୁଣ ।
ବୃଦ୍ଧ ଲୋକମାନେ କହିଲେ ଅତି ଧୀରେ
ହସିଦେଇ ଇଙ୍ଗିତ କଲେ ନିରନ୍ତରେ ।
ବସିଥାନ୍ତି ଛାତି ଫୁଲାଇ ଯୁବାଯାକ
ସଭାରେ ନ ଉଠନ୍ତି ଦେଖି ବୃଦ୍ଧଲୋକ ।
ବାବୁଙ୍କୁ ଘରେ ବୋକା ପରପ୍ରେ ବସାଇ
ବାହାରିଗଲା ପୁଅ ଅଧିକାରୀ ହୋଇ ।
ଶତ୍ରୁମାନେ ନିଜ ଉସୁକୁ କରି ଦୂର
ସଭାରେ ହସିଣ କହିଲେ ନିରନ୍ତର ।
ଧନ ପାଇଁ ନିନ୍ଦିତ କର୍ମ ଆଚରିଲେ
ପରଅପବାଦ ମୁଖରେ ଗାଇ ହେଲେ ।
ପିତା ପୁତ୍ର ଭାରିଯା ମହାଅପବାଦ
ଦିଆଦେଇ ହୋଇଲେ ବହିଣ ପ୍ରମୋଦ ।
ଗୁରୁଙ୍କଠାରେ ଗୁରୁବୁଦ୍ଧି ଟି ନ ରଖି
ଦେଖି ନ ଉଠିଲେ ଶୋଇଲେ ବୁଜି ଆଖି ।
ଖାଇଲେ ମିଷ୍ଟଅନ୍ନ ପୁତ୍ରଙ୍କୁ ନ ଅନା—
ବୋଲି ମଧ୍ୟ ତାହାଙ୍କୁ ନ କଲେ ପାଳନା ।
ଗୃହିଣୀମାନେ ଲୁଗାକୁ ନ ପାଲଟି
ଅଧଷ୍ଟା ଦାଣ୍ଡେ ଯାଇ ଜାଳିଲେ ଚୂଲିଟି ।
ଭକ୍ଷ୍ୟ ଦ୍ରବ୍ୟଯାକକୁ ଅଘୋରେ ରଖିଲେ
ଅଇଁଠା ହାତେ ଘିଅ ନିଠାଇ ଖାଇଲେ ।
କଂସା ଲୋଟା ଗିନାରେ ଗୋଟି ଗୋଟି ହୋଇ
ଘରେ ପଡ଼ିଥିଲେ ତା ସାଇତିଲେ ନାହିଁ ।
ଗାଈଙ୍କି ବାନ୍ଧି ଘରେ ଶୁଖାଇ ରଖିଲେ
ଘାସ ପାଣି ତିନଦିନରେ ଥରେ ଦେଲେ ।

ଖେଚଡ଼ି କ୍ଷୀର ପିଠା ପଲଉ ଗଇଁଠା
ଆପଣା ପାଇଁ ରାନ୍ଧି ଭୁଞ୍ଜିଲେ ସେ ମିଠା ।
ପ୍ରଭାତରେ ରାତ୍ର ଅବସକାଳେ କଲ
ଆରମ୍ଭିଣ ଉଚ୍ଚରେ ଡାକିଲେ ବୋବାଳି ।
ଆଶ୍ରମରେ ଥିବା ଲୋକଙ୍କୁ ଦୁଷ୍ଟ ଜନ
ବୋଲି ନିନ୍ଦା ବସି ବାଢିଲେ ପ୍ରତିଦିନ ।
ବ୍ରାହ୍ମଣମାନେ ପୂଜ୍ୟଲୋକଙ୍କୁ ଧନ ରତ୍ନ
ଦେବା କଥା ଅନକୂଳନ କଲେ ଆନ ।
ମିତ୍ର ଯେ ମିତ୍ରଙ୍କୁ ମାଗିଲେ ଦେବ ବୋଲେ
ପ୍ରାନ୍ତେ ଗାଲୁକଥା କହନ୍ତି ତାଙ୍କୁ ଭଲେ ।
ବ୍ରହ୍ମଚର୍ଯ୍ୟ ନ କରି ପଢ଼ି ମୂର୍ଖେ ବେଦ
ଶାସ୍ତ୍ରୀଙ୍କି ପୁଚ୍ଛନ୍ତି ଆମ୍ଭଙ୍କୁ ପାଠ କହ ।
ଅଳ୍ପ ଜ୍ଞାନ ହେଲେ ଗୁରୁଙ୍କୁ ଗର୍ବ କହି
ଶିଷ୍ୟ ବାଣୀ କହିଲ ତୁମ୍ଭେ ଜାଣ ନାହିଁ ।
ବେଦ ପଢ଼ି ଦ୍ୱିଜେ ଲଙ୍ଘନ କରନ୍ତି ଧରି
ବଳଦ ବାନ୍ଧିଲେ ପାଞ୍ଚଣବାଡ଼ି ଧରି ।
ଶାଶୁ ଆଗେ ବୋହୂ ଦାସୀଙ୍କି କଲ ଆଜ୍ଞା
ମାଇଲା ମାଡ଼ ମଧ୍ୟ ଯେ କଲ ଅବଜ୍ଞା ।
ଘରୁ ଯଦ୍ୟପି ଗୋଟିକର ପୋଡ଼ିଯାଏ
ଆରଟି ତାହା ବୃଦ୍ଧିକରି ହସୁଥାଏ ।
ଏରୂପେ ଦାନବେ ଆଚାର କରିବାରୁ
ତାଙ୍କଠାରେ ରହିବାରେ ମୁଁ ହେଲି ଖିନ୍ନ ।
ତୁମ୍ଭଠାକୁ ଆସିଅଛି ହେ ସୁରରାଣ
ରଖ ମୋତେ ଘରରେ ଆନନ୍ଦ ବହିଣ ।
ଆଶା ଶରଧା ଧୃତି କ୍ଷମା ଦୟା ଖ୍ୟାନ୍ତି
ବିଜୟା ଉନ୍ନତି ସଙ୍ଗତେ କରିଥାନ୍ତି ।
ତାହା ଶୁଣି ନାରଦ ଇନ୍ଦ୍ର କହି ତୋଷ
ମରିବେ ଦୈତ୍ୟେ ବୋଲି ଆଉଁଶିଲେ ନାଶ ।
ମନ୍ଦ ଶୀତ ସୁଗନ୍ଧ ହୋଇଣ ପବନ
ସୁରଙ୍କ ଆଗ ଯେ ବହିଲା ଅବିଚ୍ଛିନ୍ନ ।
ଏହା ଦେଖି ଦେବେ ବାସବ ଆସୁଛନ୍ତି
ବୋଲି ମନେ କରିଣ ଭଜିଲେ ଭୂପତି ।
ଏହିକାଳେ ଇନ୍ଦ୍ର ଲକ୍ଷ୍ମୀଙ୍କି ସ୍କନ୍ଧେ ବହି
ଦେବସଭା ମଧ୍ୟେ ପ୍ରବେଶ ହେଲେ ଯାଇ ।
ନାରଦ ସେକାଳେ ବୋଇଲେ ପଦ୍ମାଳୟା
ରହ ଏବେ ଏ ଘରେ ଛାଡ଼ି ଦୈତ୍ୟ-ମାୟା ।
ଏ ଯେ ତୁମ୍ଭଙ୍କୁ ବଡ଼ ଆଦର କରିବେ
ଅସୁରେ କଲା କଥା ପାସୋରାଇ ଦେବେ ।
ଦେବଙ୍କ ଘରେ ଲକ୍ଷ୍ମୀ ରହିବାରୁ ଜନ-
ମାନଙ୍କୁ ସୁଖରେ ପାଳିଲେ ମଘବାନ ।
ନର ଯକ୍ଷ କିନ୍ନର ରାକ୍ଷସେ ସଂବୃଦ୍ଧି
ପାଇ ଧର୍ମ ମାରଗେ ବୁଡ଼ାଇଲେ ବୁଦ୍ଧି ।
ପବନ ନ ବହିଲେ ନ ପଡ଼ିଲା ଫୁଲ
ଅଳକାରେ ଜାଣ ହେ ପାଣ୍ଡବ-ନୃପାଳ ।
ଗାଈଯାକ ଯେ କାମଦୋହନ ହୋଇଲେ
ମିଥ୍ୟାବାଣୀ କେହି ମୁଖରେ ନ ପଢ଼ିଲେ ।
ଏ ଆଖ୍ୟାନକୁ ଯେଉଁ ଜନଟି ପଢ଼ଇ
ନିକଟେ ଲକ୍ଷ୍ମୀ-ଅନୁଗୃହୀ ସେ ହୁଅଇ ।
ଶୁଣ ହେ ଯୁଧିଷ୍ଠିର ଧର୍ମରେ ସମ୍ପତ୍ତି
ବଢ଼ଇ, ଅଧର୍ମରେ ହୁଅଇ ବିପତ୍ତି ।
ଏବେ ତ ତା ମୋଠାରୁ ଶୁଣିଲ ରାଜନ
ଧର୍ମରେ ମତି ଦେଇ ନିଅ ପ୍ରତିଦିନ ।
ଏହିଠାରେ କମଳା-ବାସବ-ସମ୍ବାଦ
ସାରିଲା କୃଷ୍ଣସିଂହ ନୃପ ବହି ମୋଦ ।



## ଜୈଗୀଷବ୍ୟ ଦେବଳ ସମ୍ବାଦ

ଯୁଧିଷ୍ଠିର ପୁଚ୍ଛିଲେ କି ଶୀଳ କି ଆଚାର
କି ବିଦ୍ୟା କଲେ ବ୍ରହ୍ମେ ପାଉଛନ୍ତି ନର ।
ଭୀଷ୍ମ ବୋଇଲେ ହେ ଅନଘ ଅଭିଖାଏ
ମୋକ୍ଷଧର୍ମେ ରହିଲେ ବ୍ରହ୍ମେ ନର ପାଏ ।
ଜୈଗୀଷବ୍ୟଙ୍କୁ ଯେ ଦେବଳ ବନେ ବସି
ପଚାରିଲେ କଥା ତା ପ୍ରସଙ୍ଗେ ହସି ହସି ।
ଆଦର ନିନ୍ଦାରେ ସନ୍ତୋଷ ଅସନ୍ତୋଷ
ନୋହୁଛୁ କାହିଁପାଇଁ କର ତା ପ୍ରକାଶ ।
ଜୈଗୀଷବ୍ୟ ବୋଇଲେ ପୁଣ୍ୟକର୍ମ ଶାନ୍ତ
ତୁମ୍ଭ ଆଗେ କହିବା ଶୁଣ ଦେଇ ମତି ।
ନିନ୍ଦାପ୍ରଶଂସାରେ ସମାନ ପ୍ରବର୍ତ୍ତନ୍ତି
ଅହିତ କହିଲେ ହେ ତାହା ନ ଶୁଣନ୍ତି ।
ମାଇଲେ ମାରିବାକୁ ନ କରନ୍ତି ମନ
ନ ପାଇଲେ କିଛି ନ କରନ୍ତି ଶୋଚନ ।
କାଳରେ ପ୍ରାପ୍ତ ହେବା କଥାଟି କରନ୍ତି
ପରସମ୍ପତ୍ତିରେ ସେ କାତର ନୁହନ୍ତି ।

ପର ନିନ୍ଦା ପ୍ରଶଂସା ନ କହନ୍ତି ମୁଖେ
ଥାଆନ୍ତି ସବୁ ପ୍ରାଣୀମାନଙ୍କର ସୁଖେ ।
କ୍ରୋଧ ହୋଇ କାହାର ନ କରନ୍ତି ଦୋଷ
ବନ୍ଧୁ ଗ୍ରଠରୁ ଗୁପ୍ତ ଥାଆନ୍ତି ମନ୍ଦହାସ ।
ଶତ୍ରୁ ମିତ୍ର ଦୁହିଙ୍କି ସମାନ ମଣନ୍ତି
ଧର୍ମକୁ ଆଶ୍ରା କରି ଦିନ ନେଉଥାନ୍ତି ।
ଯେଉଁମାନେ ସେମାନଙ୍କର ମାରଗକୁ
କରନ୍ତି, ଆଶ୍ରା ସୁଖେ ସଂରନ୍ତି କାଳକୁ ।
ଏହି ସକାଶୁଁ ଜାଣ ନିନ୍ଦା ପ୍ରଶଂସାରେ
ସମାନ ବୁଦ୍ଧି କରିଥାଇଁ ନିରନ୍ତରେ ।
ପରମଗତି ଯେଉଁ ଲୋକଟି ଲଭଇ
ଦେବାଦି ତା'ର ଗୁଣ ନ ପାରନ୍ତି କହି ।
ଜୈଗୀଷବ୍ୟ-ଦେବଳ-ସମ୍ବାଦ ଏ ଶେଷ
କହଇ କୃଷ୍ଣସିଂହ ନରକୁଳ ଈଶ ।

—o—

## କୃଷ୍ଣ ଉଗ୍ରସେନ ସମ୍ବାଦ

ଯୁଧିଷ୍ଠିର ବୋଇଲେ ସବୁଗୁଣ ଯୁକ୍ତ
ହୋଇ ସର୍ବପ୍ରିୟ ଅଛି କିଏ କହ ତ ।
ଭୀଷ୍ମ ବୋଇଲେ ପାଣ୍ଡବ ନୃପବର
ତୁମ୍ଭଙ୍କୁ ଅନୁରୂପ ହୁଏ ଯା ଉତ୍ତର ।
ଆମ୍ଭ ଶକ୍ତିରେ ଆମ୍ଭେ କହୁଅଛୁଁ ଯାହା
ଏକଚିତ୍ତ ହୋଇ ଶୁଣ ହେ ନରନାହା ।
ନାରଦ ଲୋକପ୍ରିୟ କାହିଁକି ଜଗତେ
ହେଲେ ଏହା ପୁଚ୍ଛିଲେ କୃଷ୍ଣଙ୍କୁ ଏକାନ୍ତେ ।
ଦିନେ ଯଦୁକୁଳ ରାଜନ ଉଗ୍ରସେନ
ତାହିଁକି ଏହା କହିଲେଟି ଭଗବାନ ।
ଅହଙ୍କାର ବିହୀନ ତେଜ ଧର୍ମବୁଦ୍ଧି
ବିନୟ ଜ୍ଞାନ ତନୁ ତପରେ ପ୍ରସିଦ୍ଧି ।
ଏ ବାହାରେ ସୁବାକ୍ୟ ଶୁଚି ଆଚରଣ
ସୁଶୀଳ ବୋଲି କରି ତାହାଙ୍କୁଟି ଜାଣ ।
ପ୍ରାଣୀ ଶୁଭ ବିନା ଅଶୁଭ ହୃଦ ଖଣ୍ଡେ
ଥାଉ କରିବାର ବସାନ୍ତି ନାହିଁ ତୁଣ୍ଡେ ।
ବେଦ ସ୍ମୃତି ତତ୍ତ୍ୱଜ୍ଞାନରେ ନିତି ମନ
ଦେଇଣ ମାଳା ଧରି କରନ୍ତି ଭଜନ ।
କୌଣସି ପ୍ରାଣୀଙ୍କି ଅବଜ୍ଞା ନ କରନ୍ତି
ଏ ପ୍ରିୟ ଏ ଅପ୍ରିୟ ବୋଲି ନ ଜାଣନ୍ତି ।

ଅଚଳସ ଅଶଠ ଧମା ଆକ୍ରୋଧନ
ହୋଇଣ କୋମଳରେ ବୋଲନ୍ତି ବଚନ ।
ସବୁରି ମତଯାକ ଜାଣନ୍ତି ଯେତନ୍ତି
ନିକୃଷ୍ଟ ଶାସ୍ତ୍ର ହେଲେ ନିନ୍ଦା ନ କରନ୍ତି ।
ସବୁରି ପ୍ରସଙ୍ଗରେ ପ୍ରବର୍ତ୍ତି ଥାଏ ଚିତ୍ତ
କଦାଚିତ୍ତେ ନୁହନ୍ତି ତହିଁରେ ଆସକ୍ତ ।
ପାଇଲେ ନ ପାଇଲେ ହରଷ ବିରସ
ଛୁଇଁ ନ ପାରଇଟି ତାଙ୍କର ମାନସ ।
ଏତେ ଗୁଣ ଥିବାରୁ ନାରଦ ମହର୍ଷି
ଲୋକ ପ୍ରିୟ ବୋଲି ବଚନେ ତାଙ୍କୁ ଭାଷି ।
କୃଷ୍ଣ ଉଗ୍ରସେନ-ସମ୍ବାଦ ସମାପତି
ହେଲା କହଇ କୃଷ୍ଣସିଂହ ନରପତି ।

—*—

## ବ୍ୟାସ ଶୁକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ପ୍ରାଣୀଙ୍କ ଆଦିଅନ୍ତ
ଧ୍ୟାନ କୃତଯୁଗର ଆୟୁଷ କହ ତ ।
ପ୍ରଳୟ ସୃଷ୍ଟି କା ସକାଶୁଁ ପ୍ରବର୍ତ୍ତିଛି
ଏହା ମୋତେ କହିବା ହୋଇବ ପୁଚ୍ଛୁଛି ।
ଭୃଗୁ-ଭରଦ୍ୱାଜ ସମ୍ବାଦ ଆଗୁ ମୋତେ
କହିଛ ତୁମ୍ଭଠୁ ଶୁଣିଛି ମହାମତେ ।
ଏବେ ଆନ ସମ୍ବାଦ ସେହିରୂପେ ଜାଣି—
ଥିଲେ ମୋ ଆଗରେ ବଖାଣ ନରମଣି ।
ଭୀଷ୍ମ ବୋଇଲେ ଆହେ ଶୁକ ପଢ଼ି ବେଦ
ବ୍ୟାସଙ୍କୁ ପୁଚ୍ଛିଲେ ଏରୂପେ ବହି ମୋଦ ।
ପ୍ରାଣୀଙ୍କି କେ କରିଛି କାଳର ନିର୍ଣ୍ଣୟ
ବ୍ରାହ୍ମଣର କି କର୍ମ କରି ତା ଉଦୟ ।
ଏହା ଶୁଣିଣ ବେଦବ୍ୟାସ ତୋଷମନ
କହିଲେ ବସି ଶୁକପୁତ୍ର-ସନ୍ନିଧାନ ।
ଆଦି ଅନ୍ତ ନ ପାଇ ଅଜର ଅମର
ହୋଇ ବ୍ରହ୍ମ ଥିଲେ ହେ ପୁତ୍ର ମନେ କର ।
ପନ୍ଦର ନିମିଷରେ କାଷ୍ଠା ଟିଏ ହୋଏ
ତିରିଶି କାଷ୍ଠାଟିରେ କଳାଟି ବୋଲାଏ ।
ତିରିଶି କଳା ହେଲେ ବୋଲାଏ ମୁହୂର୍ତ୍ତ
ତିରିଶି ମୁହୂର୍ତ୍ତରେ ହୁଏ ଅହୋରାତ୍ର ।
ଅହୋରାତ୍ର ତିରିଶି ସମ୍ପୂର୍ଣ୍ଣରେ ମାସ
ବୋଲାଏ ଏରୂପେ ହୋଇଲେ ବାରମାସ ।

ବରଷ ବୋଲି କହି ତା ଅର୍ଦ୍ଧ ଅୟନ
ଉତ୍ତର ଦକ୍ଷିଣାୟନେ ବର୍ଷ ପୂରଣ ।
ଶୁଭ କରମ କରି ଶୁଭ ଲଭିବାକୁ
ସରଜନ କରି ଅଛନ୍ତି ଦିବସକୁ ।
ପ୍ରାଣୀଙ୍କର ଜନ୍ମ ହୋଇବା ପାଇଁ ରାତି
କରି କଥାଏଟି ଜାଣ ହେ ନରପତି ।
ନରଙ୍କ ମାସରେ ପିତୃଙ୍କୁ ରାତି ଦିନ
ଗୋଟିଏ ହେଉଅଛି ହେ ନନ୍ଦନ ଜାଣ ।
ଶୁକ୍ଳପକ୍ଷ ଦିବସ କୃଷ୍ଣପକ୍ଷ ରାତି
ତାହାଙ୍କର ଅଟଇ ସମସ୍ତେ କହନ୍ତି ।
ମନୁଷ୍ୟମାନଙ୍କର ବର୍ଷଟିଏ ହେଲେ
ଦେବଙ୍କ ଦିନ ରାତି ହୁଅଇଟି ଭଲେ ।
ଦେବଙ୍କର ଉତ୍ତରାୟଣଟି ଦିବସ
ଦକ୍ଷିଣାୟନେ ହୋଏ ଅନ୍ଧାର ପ୍ରକାଶ ।
ଦେବତାଙ୍କ ଚାରିସହସ୍ର ବରଷରେ
ସଞ୍ଚିଲି ସତ୍ୟ ଯୁଗ କହନ୍ତି ସଭାରେ ।
ସନ୍ଧ୍ୟା ସନ୍ଧ୍ୟାଅଂଶ ଚାରିଶତ ବରଷ
ସତ୍ୟଯୁଗରେ ଜାଣ ହୁଅଇ ପ୍ରକାଶ ।
ସତ୍ୟଙ୍କ ପରେ ତିନିଯୁଗରେ ବରଷ
ସହସ୍ରେ ଲେଖାଏଟି ହେଉଅଛି ନାଶ ।
ସନ୍ଧ୍ୟା ସନ୍ଧ୍ୟାଅଂଶ କ୍ରମରେ ଶଏ ଶଏ
ଚାରିଶହରୁ ହୋଇ ଯାଉଅଛି କ୍ଷୟେ ।
ସତ୍ୟଯୁଗେ ଧର୍ମ ରହଇ ଚତୁଷ୍ପାଦେ
ଆଉ ଯୁଗମାନଙ୍କେ କ୍ଷୟ ପାଦେ ପାଦେ ।
ସତ୍ୟଯୁଗର ଲୋକମାନଙ୍କ ଆୟୁଷ
ହୁଏଟି ଜାଣ ଆହେ ଚାରିଶ ବରଷ ।
ଦ୍ୱାପର କଳି ତ୍ରେତା ଯୁଗରେ ଦୁଇଶ
ଶଏ ତିନିଶରେ ଯେ ହୋଇଛି ପ୍ରକାଶ ।
ଯୁଗକ୍ରମେ ଲୋକଙ୍କୁ ଘୋଟଲେ ଅଜ୍ଞାନ
ବେଦକରମ ହେଉଅଛି ଆନ ଆନ ।
ସତ୍ୟେ ତପ, ତ୍ରେତାରେ ଜ୍ଞାନ ଦ୍ୱାପରରେ
ଯାଗ, କଳିଲୋକେ ତ ତରନ୍ତି ଦାନରେ ।
ଦିବ୍ୟ ବାରସହସ୍ର ବର୍ଷେ ଦିବ୍ୟଯୁଗ
ଗୋଟିଏ ହୋଏ ବୋଲି ଜାଣ ମହାଭାଗ ।
ଏହିରୂପେ ଯୁଗ ସହସ୍ର ଦୁଇ ହେଲେ
ବ୍ରହ୍ମା ଅହୋରାତ୍ର ସରଇ ଜାଣିଭଲେ ।

ବ୍ରାହ୍ମଦେବଙ୍କ ରାତ୍ରିକାଳରେ ପ୍ରଳୟ
ହୁଅଇ ତିନିଲୋକଯାକ ଯାଏ କ୍ଷୟ ।
ପ୍ରାତଃକାଳୁଁ ଉଠି ଜଗତ ସରଜନ
କରନ୍ତି ଦୁଃଖ ପାଇ ଚତୁର-ଆନନ ।
ପ୍ରଥମେ ହେଲା ମନ, ମନରୁ ଆକାଶ
ଆକାଶରୁ ପବନ, ପବନୁଁ ହୁତାଶ ।
ହୁତାଶନରୁ ଜଳ, ଜଳୁଁ ହେଲା କ୍ଷିତି
ଶବଦ ସ୍ପର୍ଶ ରୂପ ରସ ଗନ୍ଧ ସ୍ଥିତି
କ୍ରମରେ ହେଲା ଏମାନଙ୍କର ଏ ଗୁଣ
ମୋ କହିବାରୁ ଆହେ ଶୁକ ପୁତ୍ର ଶୁଣ ।
ପୃଥିବୀ ଆପ ତେଜ ବାୟୁ ନଭ ମିଶି-
ଯିବାରୁହିଁ ଶରୀର ହେଲା ବୋଲି ଭାଷି ।
ଦେହରେ ରହିବାରୁ ବ୍ରହ୍ମାଙ୍କୁ ପୁରୁଷ
ବୋଲି କରି କହନ୍ତି ସବୁ ଋଷି-ଶ୍ରେଷ୍ଠ ।
ଦେବ ଯକ୍ଷ ଗନ୍ଧର୍ବ କିନ୍ନର ଶଇଳ
ନଦୀ ସରଜିଲେ ଏ ଅନ୍ତେ ଦେବପାଳ ।
ବ୍ରହ୍ମାଙ୍କ ଚତୁର୍ବଦନେ ଯେ ଯେ କର୍ମ ଥିଲେ
ସେ ସେ କର୍ମମାନଙ୍କେ ଯାଇଣ ରହିଲେ ।
ପଞ୍ଚଭୂତ ସ୍ୱଭାବ ଦଇବରୁ ଲୋକ
ଜନମ ହେଉଛନ୍ତି ଏ ଜଗତଯାକ ।
କେହିଁ ଲୋକମାନଙ୍କ ଏ ମତ ହୁଅଇ
ଜ୍ଞାନୀଙ୍କ ମତେ ବ୍ରହ୍ମ କାରଣ ଅଟଇ ।
ବ୍ରହ୍ମକୁ ପାଇବାକୁ ତପଟି କାରଣ
ତପ ହୁଅଇ ଶମ ଦମ ଯେନ ଜାଣ ।
ତପ କରି ଋଷିଏ ବେଦକୁ ଜାଣିଲେ
ତପ କରି ବ୍ରହ୍ମାଟି ବେଦ ସରଜିଲେ ।
ବେଦରେ ଋଷିମାନଙ୍କର ନାମ ଜାଣି
ଋଷିଙ୍କ ନାମରେ ଡାକଲେ କୁଶପାଣି ।
ବେଦକୁ ଜାଣିଲେଟି ବ୍ରହ୍ମକୁ ଲଭଇ
ଏ ସକାଶୁଁ ବେଦ ପଢିବ ନିତିଆଇ ।
ବ୍ରାହ୍ମଣର ତପ ଯେ କ୍ଷତ୍ରିୟର ଯୁଦ୍ଧ
ବୈଶ୍ୟଙ୍କର କୃଷି, ଶୂଦ୍ର ସେବଣ ଯୁଦ୍ଧ ।
ହୋଇଛି ଶାସ୍ତ୍ରମାନଙ୍କରେ ଯାଗ ବୋଲି
ମୋ କହିବାରୁ ଜାଣ ହୃଦୟରେ ନ ଭୁଲି ।
ତ୍ରେତାଯୁଗରେ ଯାଗ କରିବା ବିଧାନ
କହିଛନ୍ତି ସତ୍ୟରେ ନ କରେ ତା ଜନ ।

କର୍ମରେ ଦ୍ୱାପରକୁ ଯାଗଧର୍ମ ଊଣା
କଳିଯୁଗ ଲୋକ ଅତ୍ୟନ୍ତ ବୁଦ୍ଧି-ବଣା ।
ଆୟୁଷହୀନ ହେବା ସକାଶୁଁ ଦ୍ୱାପରେ
ବେଦ ଊଣା ହୋଇଲେ ଶୁଣ ହେ ମନରେ ।
କଳିଯୁଗର ଦ୍ୱିଜ ନ ପଢ଼ିଣ ବେଦ
ଚାରି ଜାତି ରହିବେ ବଞ୍ଚଣ ପ୍ରମୋଦ ।
ସତ୍ୟଯୁଗରେ ଚାରିପାଦ ହୋଇ ଧର୍ମ
ରହିବାରୁ ସବୁରି ପ୍ରକାଶଇ କର୍ମ ।
ଚଉଦ ଲୋକଟିକାର ପରମେଷ୍ଟି ସୃଷ୍ଟି
ସରଜନା କରୁଅଛନ୍ତି ପରମେଷ୍ଠୀ ।
କାଳରେ ପ୍ରଜାମାନେ ହୁଅନ୍ତି ସଂହାର
କାଳରେ ଜନ୍ମ ହୋଇ କରନ୍ତି ସଂହାର ।
ସୃଷ୍ଟି କାଳର ସଂସ୍ଥା ବେଦକର୍ତ୍ତା କାର୍ଯ୍ୟ
କର୍ମଫଳ କହିଲି ଇତି ହେ ଆତ୍ମଜ ।
ଏବେ ଶୁଣ ବ୍ରହ୍ମାଙ୍କ ରାତ୍ରି ସମୟରେ
ପ୍ରାଣୀଏ ନାଶ ଯାନ୍ତି ଯେସନେ ପ୍ରଳୟରେ ।
ଏକାବେଳକରେ ଦ୍ୱାଦଶ ସୂର୍ଯ୍ୟ ଆସି
ଉଦୟ ହୋଇଣ ପଡ଼ନ୍ତି ମହୀଭାଗ ।
ନର ଆଦି ଗିରି ଭୂଇଁରେ ବନ-ରାଜି
ନାଶ ଯାଇ ରହନ୍ତି ଭୂମି ମଧ୍ୟେ ମଜ୍ଜି ।
ଏ ସକାଶୁଁ ଭୂମି କୂର୍ମଙ୍କ ପୃଷ୍ଠ ପରି
ଦିଶଇ ମନେ କର ଶୁକ ତପସ୍ୱୀର ।
ସେହିକ୍ଷଣି ସଲିଳ ଶୋଷିଣ ରସାକୁ
ଗରାସି ରହଇ ତା ସମଗ୍ର ଭାଗକୁ ।
ଅଗ୍ନି ଜାତ ହୋଇ ଜଳକୁ ଶୋଏ ପିଇ
ଆକାଶରୁ ବ୍ୟାପି ଦିଶଇ ସର୍ବ ଦହି ।
ପବନ ରହିବାରୁ ଅଗ୍ନିଙ୍କ ପ୍ରବଳ
ନାଶଯାଏ ମନରେ କରହେ ଦୁର୍ବଳ ।
ପବନ ବନ୍ଧକରି ହୁତାଶନ-ରାଶି
ନାଶି କରି ଦଶଦିଗକୁ ଶୋଷେ ଆସି ।
ଆକାଶ ପବନକୁ କରିଦେଇ ଗ୍ରାସ
ରହଇ ମାଡ଼ିକରି ସକଳ ପ୍ରଦେଶ ।
ଆକାଶକୁ ମନ, ମନକୁ ମହତତ୍ତ୍ୱ
ମହତତ୍ତ୍ୱଟିକି ପ୍ରକୃତି କରେ ହତ ।
ପ୍ରକୃତିକି ପୁରୁଷ ମୁଖେ ଦେଇ ଖାଇ
ବ୍ରହ୍ମଦେହରେ ଯାଇ ନିଷ୍ଠିତେ ରହଇ ।

ବ୍ରହ୍ମ ତ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ କରତା
ତାଙ୍କର ତ କେ କରି ନ ପାରଇ ଚିନ୍ତା ।
କହିବା ଶୁଣ ଶୁକ ପୁତ୍ର ଦେଇ ମନ
ବ୍ରାହ୍ମଣମାନଙ୍କର ଯେଉଁ କର୍ମମାନ ।
ଜାତ କରମଠାରୁ ଦଶକର୍ମ ଯାଏ
କରିବ ଦ୍ୱିଜ ଶୀଘ୍ର କରି ନିଜ କାର୍ଯ୍ୟେ ।
ଏଥିଅନ୍ତରେ ବେଦାଧ୍ୟୟନ କରିବ
ଗୃହସ୍ଥଧର୍ମ କରି ସୁଖେ ବିହରିବ ।
ବେଦ ପଢ଼ି ଯାଗ କରି ପୁତ୍ର ଜାତ
କଲେ ଗୃହୀ ହୁଅଇ ତିନ ଋଣୁଁ ମୁକ୍ତ ।
ଏହା ଉତ୍ତାରୁ ବାନପ୍ରସ୍ଥ ଧର୍ମ କରି
ହୋଇବ ଗୃହୀ ଲୋକ ସବୁ ତୀର୍ଥଚାରୀ ।
ତପ ଦାନ ବେଦଅଧ୍ୟୟନରେ ଦ୍ୱିଜ—
ମାନଙ୍କରେ ଅଧିକେ ପ୍ରକାଶଇ ତେଜ ।
ଏ ସକାଶୁଁ ଋଷି ଅପ୍ରିୟ ହୋଇ ମହୀ—
ଭାଗରେ ରହଇ ଯେ ବସେ ସ୍ୱର୍ଗେ ଯାଇ ।
ଅଧ୍ୟାପନାଧ୍ୟୟନ ଯଜନ ଯାଜନ
ପ୍ରତିଗ୍ରହ ଦାନ କରିବ ଦ୍ୱିଜଜନ ।
ଆଜ୍ୟଶେଷ ଧନକୁ ପାଇଲେ ବ୍ରାହ୍ମଣ
କରିବ ଯାଗ ବୋଲି ଅଛି ପୂର୍ବତନ ।
ଏକା ହୋଇ ବ୍ରାହ୍ମଣ ଅନ୍ନକୁ ଖାଇଲେ
ନରକ ମଧ୍ୟେ ଯାଇ ପଡ଼ଇଟି ଭଲେ ।
ଘରେ ବସିଥିବା ବ୍ରାହ୍ମଣ ପ୍ରତିଗ୍ରହ—
କଥାଟିରେ ବସି ବଳାଉଥିବ ସ୍ନେହ ।
ଆପଣା ସାମର୍ଥ୍ୟକୁ ବୃଦ୍ଧି ଦେଇଥିବ
ଯେ ମିଳିବ ତା ଖାଇ ଉଦର ତୋଷିବ ।
ଦ୍ୱିଜ ପ୍ରାଣ ପାଇଁ ଆପଣା ପ୍ରାଣ ଦେଇ
ସ୍ୱର୍ଗରେ ବସିଲେଟି ଶୁଦ୍ଧ ଋଷିସାଇଁ ।
ରନ୍ତିଦେବ ଶୀତରେ ଦେଇ ଉଷ୍ଣଜଳ
ବଶିଷ୍ଠଙ୍କୁ ତୋଷିଲେ ଯାଇ ସ୍ୱର୍ଗ ଆଳ ।
ଇନ୍ଦ୍ରଦ୍ୟୁମନଟି ଦ୍ୱିଜରେ ଧନ ଦେଇ
ବସିଲେ ସ୍ୱର୍ଗେ ଅପସରଙ୍କୁ ଭୁଣ୍ଡାଇ ।
ଶିବି ରାଜନ ଦେହ ପୁତ୍ର ବ୍ରାହ୍ମଣଙ୍କୁ
ଦେଇଗଲେ କ୍ରମରେ ଜାଣ ହେ ସ୍ୱର୍ଗକୁ ।
ପ୍ରତର୍ଦ୍ଦନ ଯେ ବ୍ରାହ୍ମଣଙ୍କୁ ଚକ୍ଷୁଦାନ
ଦିଅନ୍ତେ ପୂଜା ତାଙ୍କୁ କଲେ ମତିବାନ ।

ଦେବାବୃଷ ଦ୍ୱିଜଙ୍କୁ ସୁନା ଛତ୍ର ଦେଇ
ନନ୍ଦନବନ ଫୁଲ ଛତ୍ର କଲେ ଯାଇ ।
ସାଙ୍କୃତ ବ୍ରହ୍ମଜ୍ଞାନ ଦେଇଣ ଶିଷ୍ୟଙ୍କୁ
ଗଲେ ବାହାର ଜାଣ ଇନ୍ଦ୍ରଙ୍କ ପୁରକୁ ।
ଅମ୍ବରୀଷ ଦ୍ୱିଜଙ୍କୁ ଏଗାର ଅର୍ବୁଦ
ଗାଈ ଦେଇ ସ୍ୱର୍ଗେ ବସିଲେ ବହୁ ମୋଦ ।
ଜନମେଜୟଦେବ ସାବର୍ଣୀ କୁଣ୍ଡଳ
ଦେଇ ବ୍ରାହ୍ମଣଙ୍କୁ ଲଭିଲେ ଭଲ ଆଳ ।
ବୃଷାଦର୍ଭି ରତନ ଯୁବାନ ଶ୍ୱ ପ୍ରିୟ
ଦ୍ରିଶ୍ୱ ଦେଇ ସ୍ୱର୍ଗେ ରହିଲେ ଛାଡ଼ି ଭୟ ।
ନିମିରାଜ୍ୟ ପରଶୁରାମ ବସୁମତି
ଗୟ କ୍ଷିତି ଦେଇ ଦେଖିଲେ ସୁରପତି ।
ଜଳଦ ନ ବରଷିବାରୁ ଋଷଶ୍ରେଷ୍ଠ
ଦେଲେ ଯେ ତହୁଁ ପ୍ରାଣୀମାନଙ୍କୁ ବଶିଷ୍ଠ ।
କରନ୍ଧମ ପୁତ୍ର ମରୁତ ଅଙ୍ଗିରଙ୍କୁ
କନ୍ୟା ଦେଇ ଗଲେ ଇନ୍ଦ୍ରଙ୍କ ନଗରକୁ ।
ବ୍ରହ୍ମଦତ୍ତ ଯେ ବ୍ରାହ୍ମଣଙ୍କୁ ଶଙ୍ଖନିଧି
ଦେଇ ସ୍ୱର୍ଗଲୋକରେ ପାଇଲେ ପ୍ରସିଦ୍ଧି ।
ମିତ୍ର ସହିତ ବଶିଷ୍ଠଙ୍କୁ ଦମୟନ୍ତୀ
ଦେବାରୁ ତାଙ୍କୁ ପୂଜା କଲେ ସୁରପତି ।
ସହସ୍ରଜିତ ରାଜା ବିପ୍ର ପାଇଁ ମଲେ
ଉତ୍ତମଲୋକ ପାଇ ସୁଖରେ ବସିଲେ ।
ଶତଦ୍ୟୁମ୍ନ ମୁଦ୍‌ଗଲ ଋଷି ସୁନାଘର
ଦେବାରୁ ହୋଇଲେଟି ଉତ୍ତମଙ୍କର ବର ।
ଦ୍ୟୁତିମାନ ଋଚୀକ ଋଷିଙ୍କି ରାଜ୍ୟ ଦେଲେ
ଉତ୍ତମ ଲୋକଟିରେ ଯାଇଣ ବସିଲେ ।
ମଦିରାଶ୍ୱ ହିରଣହସ୍ତେ କନ୍ୟା ଦେଇ
ଦେବତାଙ୍କୁ ଡାକଲେ ସ୍ୱର୍ଗେ ବୋଲି ଭାଇ ।
ଲୋମପାଦ ଶାନ୍ତା କନ୍ୟାକୁ ଋଷ୍ୟଶୃଙ୍ଗ
ଋଷିଙ୍କି ଦେଇ କରି ଦେବେ କଲେ ସଙ୍ଗ ।
ପ୍ରସେନଜିତ ଯେ ସବତ୍ସା ଲକ୍ଷେ ଗାଈ
ଦେବାରୁ ସ୍ୱର୍ଗରେ ମାଇଲେ ସୁଖେ ହାଇ ।
ଏହିରୂପେ ବହୁତ ରାଜା ଦ୍ୱିଜେ ଦାନ
ତପ କରି କରି ପାଇଲେ ସ୍ୱର୍ଗସ୍ଥାନ ।
ମହୀରେ ଥିବାଯାକ ସେ ରାଜାଟିମାନେ
ଉଦ୍ଧବେ ପ୍ରାଣୀମାନେ ତାଙ୍କ ଶ୍ରବଣେ ।

ଋଗବେଦ ପଢ଼ି ଜାଣିବ କର୍ମକାଣ୍ଡ
ତରିବା ଇଚ୍ଛା ଯେବେ ଥିବଟି ବ୍ରହ୍ମାଣ୍ଡ ।
ବେଦବିବାଦରେ କୁଶଳ ଯେ ଅଟନ୍ତି
ପ୍ରଳୟ ସରଜନା କଥା ସେ ଜାଣନ୍ତି ।
ପ୍ରାଣୀଙ୍କ ହିତ ଲାଗି ଯେ ଦିଏ ଜୀବନ
ସାତ୍ତ୍ୱିକ କର୍ମଗୁଣେ ଅଟେ ସେ ବ୍ରାହ୍ମଣ ।
ହର୍ଷ ଭୟ କ୍ରୋଧ ନ ଆଉ ଦାନ ଧୀର
ସେପରି ବ୍ରାହ୍ମଣଙ୍କୁ ସର ନୋହେ ସୂର ।
ଅଧ୍ୟୟନ ତପସ୍ୟା ଦାନ ଯଜ୍ଞ ହ୍ରୀଶ
ଆର୍ଜବ ଦମକୁଟି ବ୍ରାହ୍ମଣ ଆଚରି—
ଥାଅ ଯେବେ ତେ'ବ ସର୍ବଦା ଦେବତା
ତେଜରେଟି ଜାଣ ପାଆନ୍ତି ନିଜନତା ।
ବ୍ରାହ୍ମଣ ଅଗ୍ନି ଦେବତାଙ୍କୁ ଦ୍ୱିଜ ପୂଜ
ଥିଲେ ନ ରହେଟି ସଂସାର-ଜଳେ ମଜ୍ଜି ।
ଅଧର୍ମ-ଯୁକ୍ତ ହିଂସା ବଚନ ଛାଡ଼ିବ
ଶାସ୍ତ୍ରକୁ ଜାଣିକରି କର୍ମ କରୁଥିବ ।
ଏ ରୂପେ ହେଲେ ଦ୍ୱିଜ ଲୋକରେ ପ୍ରସିଦ୍ଧି
ପାଇ-ଧନ ଧାନ୍ୟ ସମ୍ପତ୍ତି କରେ ବୃଦ୍ଧି ।
କର୍ମ-ପ୍ରବାହରେ ତ ଭାସୁଛି ଜଗତ
ଜ୍ଞାନ-ନାବ ବିନା କେ ତରିବ ତା ପୁତ୍ର ।
ସଂଶୟ-ଯୁତ କାମ-ଆତ୍ମା ଚଳ-ଚିତ୍ତ
ନର ଯେ କଦାଚିତେ ନୁହଇ ମୁକତ ।
କୃତାତ୍ମା ଜିତେନ୍ଦ୍ରିୟ ଲୋକ ଇହଲୋକ
ପରଲୋକ ଜିଣିଛି ଜାଣ ଆହେ ଶୁକ ।
ଜ୍ଞାନବନ୍ତ ପୁରୁଷ କର୍ମ ଯେବେ କରେ
ଇହ ପର ଦୁଇରେ ପ୍ରସରେ ସିଦ୍ଧିରେ ।
ଅଜ୍ଞାନୀ ଲୋକ ଅଧର୍ମକୁ ଧର୍ମ ମଣି
କର ନରକରେ ପଡ଼ଇ ପୁଣ ପୁଣି ।
ଊର୍ଦ୍ଧ୍ୱ ଅଧୋଗତିକି ପାଉଥିବ ନର
ଜ୍ଞାନ ହେଲେ ଅବ୍ୟଶ ତରଇ ସଂସାର ।
ଜ୍ଞାନବନ୍ତ ପୁରୁଷେ ଅବୁଦ୍ଧି ଲୋକଙ୍କୁ
ତରାନ୍ତି, ଅଜ୍ଞାନୀ ଯାଆନ୍ତି ନରକକୁ ।
ଯୋଗ ଆଶ୍ରା କରିଣ ଯୋଗୀଏ ଇନ୍ଦ୍ରିୟ
ଏଗାରଟି ରଖିବ ମନେ କରି ଶ୍ରେୟ ।
ଯେଉଁ ଇନ୍ଦ୍ରିୟର ଅଟଇ ଯେ ବିଷୟ
ତହୁଁ ତାକୁ ନବରାଇବ ବହୁ ପ୍ରିୟ ।

ବଚନ ମନ ଦୁହେଁ ବୁଦ୍ଧିରେ ସଂଯୁତ
କରି ଜ୍ଞାନ ଅଭ୍ୟାସ କରିବ ନିରତ ।
ଜ୍ଞାନ ଅଭ୍ୟାସକୁ କରିଲେ ମହାପାପୀ
ହୋଇଥିଲେ ସେ ଲୋକ ହୁଅଇ ନିଷ୍ପାପୀ ।
ବ୍ରହ୍ମଲୋକ ଯିବାକୁ ଯୋଗରଥ ଅଛି
ତା'ର ବସିବା ସ୍ଥାନ ଧର୍ମଟି ହୋଇଛି ।
ଲଜ୍ଜା ସେ ରଥଟିର ଅଟେ ଉଷାକାର
ଉପାୟ ତ୍ୟାଗଟି ଅଟଇ ଯୁଗନ୍ଧର ।
ଅପାନ ଅକ୍ଷ, ପ୍ରାଣ, ଯୁଗ ପ୍ରଜ୍ଞା ଯୋ ତା
ଚେତନାଟି ସାରଥି, ସ୍ଥାନ ବେଦବେତ୍ତା ।
ଇନ୍ଦ୍ରିୟସଂଯମଟି ତା ନେମି ଅଟଇ
ଘ୍ରାଣ ଚକ୍ଷୁ ଶ୍ରବଣ ଚର୍ମ ଘୋଡ଼ା ବନ୍ଧ ।
ଥାଆନ୍ତି ଜାଣ ଜ୍ଞାନ-ସାରଥିର ବଳେ
ଜୀବକୁ ବୋହି ବ୍ରହ୍ମ ଲୋକେ ବୋଲି ଚଳେ
ଏ ରୂପେ ଯୋଗ-ରଥ ଚଢ଼ିବାକୁ ଯୋଗୀ
ସଂସାର କଥାରେ ହୁଅନ୍ତି ବୀତରାଗୀ ।
ଯୋଗ-ରଥ ଚଢ଼ିବା ଇଚ୍ଛା ଯେବେ ଥିବ
ଇନ୍ଦ୍ରିୟଙ୍କ ନିଗ୍ରହ ଧାରଣା ଧରିବ ।
ଧୀର ଲୋକ ଯେ ଜ୍ଞାନ ପ୍ଲବକୁ ସେବିବ
ଯୋଗବିଦ୍ୟା-ପ୍ରବୁଷ ତରିବା ଇଚ୍ଛିବ ।
ଶୁକ ବୋଇଲେ ଆହେ ଜ୍ଞାନ ବିଦ୍ୟା ତାତ
କାହାକୁ ବୋଲି ମୋର ଆଗେ ତ କହ ତ ।
ବ୍ୟାସ ବୋଇଲେ ହେ ପ୍ରାଣୀଙ୍କ ତାରତମ୍ୟ
ଯହିଁରେ ଜାଣି ସେ ଅଟେ ସେ ଜ୍ଞାନ ଉତ୍ତମ ।
ପ୍ରାଣୀଙ୍କୁ ସରଜନା କରିଛନ୍ତି ଯେହି
ବିଦ୍ୟା ବୋଲି କରିଣ ତାହାକୁଟି କହି ।
ବ୍ରହ୍ମ ବସ୍ତନେ ପୂର୍ବକର୍ମକୁ ଅଦୃଷ୍ଟ
ଯେ ବୋଲି ଆଚରଇ ସେଏଟି ଅନଷ୍ଟ ।
କୃଷି ଆଦି କରମ ଜ୍ଞାନ ବ୍ରତ ବିନା
ଆନ ହାତେ ନୋହେ ହେ ଶୁକ ମହାମନା ।
ପ୍ରଜ୍ଞାର ସକାଶରୁ ଅର୍ଥ ଶ୍ରେଷ୍ଠ ଦୁଇ
ହୁଅଇ ବୋଲିକରି ଶାସ୍ତ୍ର ଅଛି କହି ।
ପରମାତ୍ମା ବଳେ ସ୍ୱେଦଜ ଜରାୟୁଜ
ଅଣ୍ଡଜ ଉଦ୍ଭିଜ୍ଜ ହେଉଛି ସରଜ ।
ସ୍ଥାବର ପ୍ରତି ଜାଣ ଜଙ୍ଗମ ଅଧିକ
ଜଙ୍ଗମ ଦ୍ୱିପ୍ରକାର ହୁଅନ୍ତି ଶୁକ ।

ସ୍ୱରପଦ ପ୍ରତିକ ଦ୍ୱିପାଦଟି ବର
ଦ୍ୱିପାଦେ ଦ୍ୱିପ୍ରକାର ଅଛନ୍ତି କୁମର ।
ଉତ୍ତମ ମଧ୍ୟମ ଅଧମ ବୋଲି କହି
ଉତ୍ତମରେ ବଡ଼ ଯେ ଧରମ ଜାଣଇ ।
ଧର୍ମଜ୍ଞମାନଙ୍କେ ବେଦଜ୍ଞ ଅଟେ ସାର
ବେଦଜ୍ଞଙ୍କୁ ଯେ କହି ପାରିବାରେ ବର ।
ବେଦବକ୍ତା ପ୍ରତିକ ଆତ୍ମଜ୍ଞ ଅଧିକ
ଜାଣେ ସେ ସେହିବଳେ ଏ ସପତ ଲୋକ ।
ଏରୂପେ ବେଦବ୍ୟାସ କଥା କର୍ଣ୍ଣେ ଶୁଣି
ପୁଣି ପୁଚ୍ଛି ବସିଲେ ଶୁକ ଋଷିମଣି ।
ପ୍ରଜାବନ୍ତ ଯାଜ୍ଞିକ କୃତପ୍ରଜ୍ଞ ଆନ—
ସୂକ୍ଷ୍ମ ଯେରୂପେ ହୁଅନ୍ତି ବ୍ରହ୍ମେ ଲୀନ ।
ଏହା ମୋର ଆଗରେ କହ ଆହେ ପିତା
ତୁମ୍ଭେ ତ ଅଟ ଋଷି କୁଳେ ବେଦବେତ୍ତା ।
ବ୍ୟାସ ବୋଇଲେ ଆହେ ବିଦ୍ୟାତପେନ୍ଦ୍ରିୟ
ନିଗ୍ରହ ବିନା ନ ତରନ୍ତି ପ୍ରାଣିଚୟ ।
ମନ-ଧାପରେଟି ବ୍ରହ୍ମଙ୍କୁ ହୋଏ ଦେଖି
କଦାଚିତେ ଦେଖି ନ ପାରଇ ଆଖି ।
ପଞ୍ଚମହାଭୂତର ଗୁଣ ବ୍ରହ୍ମଠାରେ
ଅଛି ବୋଲି ବଚନ ଉଚ୍ଚାରି ନ ପାରେ ।
ଦ୍ୱିଜରୁ କୁକୁର ଯାଏ ଯେ ସମ ମଣେ
ବ୍ରହ୍ମେ ଲୀନ ହୋଇ ସେ ରହେଟି ନିର୍ବାଣେ ।
ଜଙ୍ଗମ ସ୍ଥାବରାଦି ଦେହେ ପରମାତ୍ମା
ବ୍ୟାପି ରହିଅଛନ୍ତି ଜାଣ ହେ ମହାତ୍ମା ।
ସବୁ ପ୍ରାଣୀ ଶରୀରେ ଦେଖେ ଯେ ବ୍ରହ୍ମକୁ
ବ୍ରହ୍ମକୁ ପାଇବାକୁ ନିଃସନ୍ଦେହ ତାକୁ ।
ଜଳେ ମାଛ, ଆକାଶେ ପକ୍ଷୀ-ଗତି ପରି
ଜ୍ଞାନୀ ଲୋକ ଗତି ଅଟଇ ତପସ୍ୱୀର ।
ବ୍ରହ୍ମରୁ ସୂକ୍ଷ୍ମ ସ୍ଥୂଳ ନାହିଁ ଏ ସଂସାରେ
ହସ୍ତ ପାଦ ଚକ୍ଷୁ ତାଙ୍କର ସବୁଠାରେ ।
କ୍ଷୟ ଯିବାରୁଟି ପ୍ରାଣୀଙ୍କ ନାମାକ୍ଷର
ବୋଲିଏ, ପରମାତ୍ମା ଅଟନ୍ତି ଅକ୍ଷର ।
ଯେଉଁ ଲୋକ ପରମ ବ୍ରହ୍ମକୁ ପାଅଇ
ଜନ୍ମ ମୃତ୍ୟୁ ଏ ଦୁଇ ତାହାର ନୁହଇ ।
ଜ୍ଞାନ ତ ମୋହଠାରୁ ଶୁଣିଲ କୁମର
ଯୋଗକଥା କହିବା ମନ ଧୀର କର ।

କାମ କ୍ରୋଧନ ଲୋଭ ଭୟ ସ୍ୱପ୍ନ-ଛାଡ଼ି
ଯୋଗରସରେ ଜାଣ ରହିଥିବ ବୁଡ଼ି ।
କ୍ରୋଧକୁ ଶାନ୍ତ ନାଶେ କାମେ ମନୋରଥ
କରି ହାର ଛାଡ଼ିଲେ ଭଜେ ପୁରୁଷାର୍ଥ ।
ସତ୍ତ୍ୱଗୁଣକୁ ଆଶ୍ରା କରଇଟି ଯେହୁ
ନିଦ୍ରା ତା'ର ନୟନେ ରହି ନ ପାରଇ ।
ଧଇର୍ଯ୍ୟରେ ଉଦର ଉପସ୍ଥକୁ ରକ୍ଷା
କରିବ ବ୍ରହ୍ମ ପାଇବାରେ କରି କାଙ୍କ୍ଷା ।
ପାଣି ପାଦ ଦୁହିଁଙ୍କି ରଖିବ ଚକ୍ଷୁରେ
ଚକ୍ଷୁ କର୍ଣ୍ଣ ଦୁହିଁଙ୍କି ରଖିବ ମନରେ ।
ମନ ବଚନକୁ ଯେ କର୍ମରେ ରଖିବ
ସାବଧାନ ହୋଇଣ ଭୟକୁ ଛାଡ଼ିବ ।
ହିଂସାଯୁକ୍ତ ବଚନ ମନ୍ଦ କରି ଦୂର
ଅଗ୍ନି ଦ୍ୱିଜ ଦେବେ ସେବିବ ନିରନ୍ତର ।
ମନ ଇନ୍ଦ୍ରିୟଙ୍କୁ ଏକ ଠାବରେ ରଖି
ଭାବଂଲ ବ୍ରହ୍ମକୁ ପାରଇ ଲୋକ ଦେଖି ।
ଏକା ହୋଇଣ ଗିରି ଶିଖରେ ବସିବ
ଯୋଗ ସାଧିବାରେ ମାନବ ବଳାଇବ ।
ଯେଉଁ ଉପାୟରେ ହୋଇବ ମନ ଧୀର
ସେ ଉପାୟକୁ କରୁଥିବ ନିରନ୍ତର ।
ମନ ବଚନରେ ପ୍ରାଣୀଙ୍କଠାରେ ଦ୍ରୋହ
ନ କରିବ କରିବ ଯେ ବ୍ରହ୍ମରେ ସ୍ନେହ ।
ଶୁଭ ଅଶୁଭକୁ ପାଞ୍ଚିଲେ ମନେ ନର
ସେ ତାହାଠାରୁ ଛାଡ଼ି ଦେବ ଅହଙ୍କାର ।
ସୁନା ମାଟିଙ୍କରେ କରିବ ସମ ବୁଦ୍ଧି
କଷା ପିତା ଖାଇ କରିବ ତପୋବୃଦ୍ଧି ।
ପୁରୁଷ ସ୍ତ୍ରୀ ଶ୍ରି କଲେ ଦୁହେଁ ଏ ମାରଗ
ଜାଣ ଆହେ ଶୁକ ଲଭନ୍ତି ବ୍ରହ୍ମଭାଗ ।
ଶୁକ ବୋଇଲେ ଆହେ କର୍ମ କର ଛାଡ଼
ଦୁଇ କଥା ବୋଲୁଛ ଏଥିରେ କେ ବଡ଼ ।
ଏହା ମୋର ଆଗରେ ବତାଇ ତୁମ୍ଭେ କହ-
ହେଲ ହିଅ ହୃଦୟୁଁ ସଂଶୟ ଛଡ଼ାଇ ।
ବେଦବ୍ୟାସ ବୋଇଲେ ବିଦ୍ୟାରେ କର୍ମରେ
ଯା ପାଆନ୍ତି କହିବା ଶୁଣ ତାହା ଧୀରେ ।
ପ୍ରବୃତ୍ତି ନିବୃତ୍ତି ଏ ବିଅଟି ମାରଗ
ପ୍ରବର୍ତ୍ତି ଅଛି ଜାଣ ଏ ଅବଶ୍ୟ ଭାଗ ।

କର୍ମରେ ପ୍ରାଣୀମାନେ ବର୍ଦ୍ଧିତ ହୁଅନ୍ତି
ଏହା ଜାଣି ଯତିଏ କର୍ମ ନ କରନ୍ତି ।
ବ୍ରହ୍ମବିଦ୍ୟା ଆଶ୍ରାକୁ କରି ଅଚ୍ଛିନ୍ନ
ବ୍ରହ୍ମଙ୍କଠାରେ ଯାଇ ହୁଅନ୍ତି ଲୀନ ।
ଅଳ୍ପ ବୁଦ୍ଧି ଲୋକେ କର୍ମକୁ ପ୍ରଶଂସନ୍ତି
ଜନମ ମରଣରେ ଚିନ୍ତାକୁ ଛାଡନ୍ତି ।
ଯେଉଁମାନେ ଜ୍ଞାନକୁ ଆଶ୍ରା କରିଥାନ୍ତି
କରିବା ଥାଉ କର୍ମ ମନେ ନ ଭାବନ୍ତି ।
ଯେଉଁରୂପରେ ନଦୀପାଣିପିଆ ନର
କୂଅପାଣି ପିଇଲେ ବୋଲଇ ଏ ଛାର ।
ସେହି ରୂପରେ ଜ୍ଞାନବନ୍ତ ଲୋକମାନେ
କର୍ମକଥା ପଢ଼ିଲେ ନ ଶୁଣନ୍ତି କାନେ ।
କରମ ସକାଶରୁ ସୁଖ ଦୁଃଖ ପାଏ
ବ୍ରହ୍ମବିଦ୍ୟା କଲେ ଦୁଇରୁ ମୁକ୍ତ ହୋଏ ।
ଚାରି ଆଶ୍ରମରେ ଯେ କରେ ଯେଉଁ କର୍ମ
ତାହାରଟି ଜାଣ ହୁଅଇ ସେହି କର୍ମ ।
ଆଶ୍ରମେ ଥାଇ ଯେ ନିଷ୍କାମ ମର୍ମ କରେ
ସେ ଯାଇ ମିଶଇ ହେ, ପୁତ୍ର ବ୍ରହ୍ମଙ୍କରେ ।
ଗୁରୁସେବା କରି ସାରିବ ସନ୍ଧ୍ୟୋଦୟେ
ଭେଦ କରୁଥିବ ବଚନ ସବନୟେ ।
ଗୁରୁପାଖେ ପାଠ ପଢିବା ସମୟରେ
ବସିବ ଯାଇକରି ଦକ୍ଷିଣଭାଗରେ ।
ବ୍ରହ୍ମଚାରୀ ହୋଇ ଯେ ପଢିଥିବ ବେଦ
ଭୋଗକଥା ଦେଖିଲେ ନୋହିବ ପ୍ରମୋଦ ।
ଗୁରୁ ଯେଉଁ ରୂପରେ ହେଉଥିବେ ବଶ
ସେରୂପେ ସେବା ବସି କରୁଥିବ ଶିଷ୍ୟ ।
ବେଦ ଅଧ୍ୟୟନର ଶେଷରେ ଦକ୍ଷିଣା
ଗୁରୁଙ୍କୁ ଦେଇ ବିଭା ହେବ ଭବ୍ୟ କନ୍ୟା ।
ଦ୍ୱିତୀୟ ଆୟୁଷ ଭାଗରେ ଘରେ ରହି
ବିହରିବ ବ୍ରାହ୍ମଣ ବ୍ରାହ୍ମଣୀ କୁଣ୍ଢାଇ ।
ଯାଗ କରି ନ ପାରିଲେ ଅଗ୍ନିକୁ ଘରେ
ରଖିବ ଆଧାନକୁ କରି ନିରନ୍ତରେ ।
ଗୃହସ୍ଥ ଲୋକ କୁଶୂଳଧାନ୍ୟ କୁମ୍ଭୀଧାନ୍ୟ
ଅଶ୍ୱସ୍ତନ କପୋତ ବୃତ୍ତି ପ୍ରଭେଦନ ।
କରିବ ଯେଉଁରୂପେ ଶୁଣ ତାହା ମୁହିଁ
କହିବ ଶୁକ ପୁତ୍ର ତୁମ୍ଭଙ୍କୁ ବତାଇ ।

ବାରଦିନ ପର୍ଯ୍ୟନ୍ତ ଯେତ ଘରେ ଥିଲେ
କୁଶୂଳ ଧାନ୍ୟବୃତ୍ତି କହି ତାକୁ ଭଲେ ।
ଛଅଦିନକୁ ଯେବେ ଘରେ ଥାଏ ଅନ୍ନ
ତାହାରଟି ନାମ ଅଟଇ କୁମ୍ଭି ଧାନ୍ୟ ।
ପ୍ରତିଦିନ ଉଆଇ ଯେଉଁଲୋକ ଖାଏ
ଅଶ୍ୱସ୍ତନ ବୃତ୍ତିଟି ତାହାକୁ ବୋଲାଏ ।
ଦୁଇଟି ଅଞ୍ଜୁଳିରେ ଗୋଟିଆଇ ଧନ
ଯେ ଖାଏ କପୋତ ବୃତ୍ତି ତାହାର ଘେନ ।
କୁଶୂଳଧାନ ଲୋକ ଯଜନ ଯାଜନ
ଅଧ୍ୟାପନାଧ୍ୟୟନ ପ୍ରତିଗ୍ରହ ଦାନ ।
କରଣ ଆପଣାର ଉଦର ପୋଷଇ
ମୋ ପର କେହି ନାହିଁ ବୋଲଣ ଘୋଷଇ ।
କୁମ୍ଭି ଧାନ୍ୟ ଯେ ପ୍ରତିଗ୍ରହ ଅଧ୍ୟାପନ
ଯାଜନକୁ ଆଚରି ବଞ୍ଚଇଟି ଦିନ ।
ଅଶ୍ୱସ୍ତନ ଲୋକ ଯଜନ ଅଧ୍ୟାପନ
ଦୁଇ ବିନା ସ୍ୱପନେ ନ ଜାଣଇ ଆନ ।
କପୋତବୃତ୍ତି ଯେଉଁ ଲୋକ କରିଥାଏ
ଅଧ୍ୟାପନ କରିବାରେ ତା କାଳ ଯାଏ ।
ଆପଣା ପାଇଁ ଅନ୍ନ ବ୍ୟର୍ଥ ପଶୁମୃତ୍ୟୁ
ଯେ କରଇ ନରକର ସେ ହୋଏ ହେତୁ ।
ଦିବସରେ ଦୁଇ ସନ୍ଧ୍ୟାରେ ନ ଶୋଇବ
ରାତ୍ର ଦିବସର ମଧ୍ୟରେ ନ ଖାଇବ ।
ଅଋତୁରେ ସ୍ତ୍ରୀ ସହିତ ରତି-ରସ
ନ କରିବ ଲୋଭ ସେ ଦୋଷଟି ବିଶେଷ ।
ବ୍ରାହ୍ମଣଙ୍କୁ ଦୁଆରେ ଉପାସ ରଖାଇ
ଖାଇ ନ ଶୋଇବ ଘରଯା କୁଣ୍ଡ ଆଇ ।
କୁଟୁମ୍ବ ଭୃତ୍ୟ ଦ୍ୱିଜଗଣେ ଆଗ ଦେଇ
ପଛେ ଗୃହୀ ଭୁଞ୍ଜିବ ଉଦର ତୋଷାଇ ।
ଋତ୍ୱିଜ ପୁରୋହିତ ଆଚାର୍ଯ୍ୟ ମାତୁଳ
ଅତିଥି ବୃଦ୍ଧାତୁରା ଚକସ୍ରକ ବାଳ ।
ସମ୍ବନ୍ଧୀ ଜ୍ଞାତି ବନ୍ଧୁ ମାତା ପିତା ଭ୍ରାତା
ଦୁହିତା ପୁତ୍ର ଦାସ ଆପଣା ବନିତା ।
ଭୁଲରେହିଁ ଜାଣିବା ଜନ ଯେ ହୋଇବ
କଦାଚିତେ ବିବାଦକଥା ନ କରିବ ।
ଆଚାର୍ଯ୍ୟ ସେବା କଲେ ବ୍ରହ୍ମଲୋକ ହୋଏ
ବାକୁ ପରଜାପତି ଲୋକକୁ ପୃଷାଏ ।
ଜ୍ୟେଷ୍ଠ ଭ୍ରାତ ଅଟଇ ପିତାର ସମାନ
ଅତିଥିପୂଜା ଇନ୍ଦ୍ର ଲୋକ ଦିଏ ସ୍ଥାନ ।
ଋତ୍ୱିଜକୁ ଘେନଣ ଦେବଲୋକେ ଯାଏ
ବିଶ୍ୱଦେବଲୋକଙ୍କୁ ନଅନ୍ତି ଜ୍ଞାତିଏ ।
ସମ୍ବନ୍ଧୀ ବନ୍ଧୁରେ ଦେଖନ୍ତି ଦିଗ ସ୍ଥିର
ପୃଥିବୀରେ ମାତୃ ମାତୁଳ ଅଧିକାରୀ ।
ବୃଦ୍ଧ ବାଳ ଆତୁର ସ୍ନେହରେ ଆକାଶ
ଦେଖଇ ଭାର୍ଯ୍ୟା ପୁତ୍ର ଦେହରେ ସଦୃଶ ।
ଏହି ସକାଶକୁ ଏମାନଙ୍କର ଗାଳି
ସହିଥିବ ଜାଣିବା ଲୋକଟି ନ ଭାଳି ।
ଗୃହୀ ଲୋକ ନିଜର ବାଳ ପାତିବାର
ଦେଖିଲେ କରିଦେବ ଗୃହକର୍ମ ଦୂର ।
ଆପଣା ପତ୍ନୀଟିକି ସଙ୍ଗତରେ ଧରି
ବାନପ୍ରସ୍ଥଧର୍ମକୁ ରହିବ ଆଚରି ।
ଋଷ ନୋହିଥିବାର ଧାନକୁ ଖାଇବ
ଅଗ୍ନିହୋତ୍ର କରଣ ବନକୁ ରହିବ ।
ବାନପ୍ରସ୍ଥ-ଧରମ କରି ଯେଉଁମାନେ
ନିତି ଆଣି ଉଦର ପୋଷନ୍ତି ସୁମନେ ।
ମାସକେ ବରଷକେ ରଖିଣ ଆହାର
ବାନପ୍ରସ୍ଥରେ ପୋଷୁଥାଆନ୍ତି ଉଦର ।
ଦାନ୍ତରେ କେଉଁମାନେ ରେରଟି ଖାଆନ୍ତି
କେଉଁମାନେ ପଥରେ ଛେଚଣ ଖାଆନ୍ତି ।
ଶୁକ୍ଳ କୃଷ୍ଣପକ୍ଷେ କରନ୍ତି କେ ଆହାର
ଫଳ ମୂଳରେ କେ ବା ତୋଷନ୍ତି ଉଦର ।
ଏହିରୂପେ ଋଷିଏ ବାନପ୍ରସ୍ଥ କରି
ସ୍ୱର୍ଗେ ରହିଲେଟି ରମ୍ଭାକୁ କେ:କେ ଧରି ।
ବାନପ୍ରସ୍ଥ କରିବା ଲୋକ ନଖ ରୋମ
ଧରିଥିବ ହୃଦରୁ ଛାଡ଼ି ଦେଇ ତମ ।
ବାନପ୍ରସ୍ଥକାରୀ ଲୋକର ଭଲ ଗତି
ହୁଅଇ ବୋଲିକରି କହିଛନ୍ତି ଯତି ।
ଆୟୁଷର ଚତୁର୍ଥଭାଗ ଯେବେ ହେବ
ବାନପ୍ରସ୍ଥକୁ ଛାଡ଼ି ଭିକ୍ଷୁ ଆଚରିବ ।
ଏକାକୀ ହୋଇକରି ଆଚରିବ ଧର୍ମ
ଅଗ୍ନି ଘର ଛାଡ଼ିବ ନ କରଣ ତମ ।
କାହାକୁ ନ ବାନ୍ଧି କାହାକୁ ନ କହିବ
କେ କହିଲେ ଶୁଣିଲା ପରପ୍ରେ ନୋହିବ ।

ନିନ୍ଦାକଲେ ଲୋକ ରହିବ କୃମି ହୋଇ
ଯା ପାଉଥିବ ତାହା ଦେଉଥିବ ଖାଇ ।
ମାନନା ଅପମାନ କରିବା ଲୋକକୁ
ନ କରିବଟି କେବେ ହରଷ କ୍ରୋଧକୁ ।
ପ୍ରାଣୀମାନଙ୍କର ଅଭୟଦାତା ହେବ
କାଳଟିକି ପ୍ରତୀକ୍ଷା କରିଣ ରହିବ ।
ମରଣକୁ ନିନ୍ଦା ଗାଇଁବାପାଇଁ ତୋଷ
ନୋହିବ ମୁକତରେ ରଖିଥିବ ଦୃଶ ।
ଏରୂପେ ଆଚରଣ କଲେ ମୋକ୍ଷବିଧି
ହୁଅଇ ଆହେ ଶୁକ ପ୍ରାଣୀଙ୍କ ଅବଧି ।
ତୁମ୍ଭଙ୍କୁ ଯେଉଁ ଜ୍ଞାନ-ଶାସ୍ତ୍ରେ କହିଲଇଁ
ଗୁରୁଦେବଙ୍କର ସାରଥି ସେ ଅଟଇ ।
ଅପ୍ରଶାନ୍ତ ଅଦାନ୍ତ ଅତପସ୍ୱୀ ନର
ଆଗରେ ମୋକ୍ଷଶାସ୍ତ୍ର ଯେ କରେ ପ୍ରଚ୍ଚର ।
ତାହାର ସବୁ ସୁକୃତଟି ନାଶ ଯାଏ
କହିଅଛନ୍ତି ଏହା ସକଳ ଋଷି ଏ ।
ଧାର୍ମିକ ଲୋକ ଆଗେ ଏ ଶାସ୍ତ୍ର ବଖାଣ
କରିଲେ ମୋକ୍ଷ ଲୋକ ହୁଅଇଟି ଜାଣ ।
ଆହେ ପୁତ୍ର ଏବେ କି କଥା ପୁଚ୍ଛିବାକୁ
ମନ ହେଉଅଛୁ ତାହା ପୃଚ୍ଛ ହେ ଆମ୍ଭଙ୍କୁ ।
ଶୁକ ବୋଇଲେ ହେ ଅଧ୍ୟାତ୍ମଜ୍ଞାନ ମୋତେ
ଆଉ ଥରେ ବିସ୍ତାରି କହ ମହାମତେ ।
ଶୁଣ ସୁଧିଷ୍ଠିର ଅଧ୍ୟାତ୍ମ କଥାମାନ
ବ୍ୟାସ ଯାହା କହିଲେ ଶୁକ ସନ୍ନିଧାନ ।
ମନ ବୁଦ୍ଧି ଆତ୍ମାରେ ଇନ୍ଦ୍ରିୟ ସଂଯୁତ
ହୋଇଛୁ ପଞ୍ଚଭୂତେ ଏ ଦେହ ଗଠିତ ।
ଆତ୍ମାରେ ସତ୍ତ୍ୱ ରଜ ତମ ଗୁଣ ରହି
ନିଜ ନିଜ ଲକ୍ଷଣ ଧରି ପ୍ରକାଶଇ ।
ଏକ ଦେହେ ଭିନ୍ନ ହୋଇଣ ପ୍ରତିଷ୍ଠିତ
ଜୀବ ବ୍ରହ୍ମ ପ୍ରକୃତ ବଶେ ଏକର୍ଜିତ ।
ଏବେ ଶୁଣ ହେ ଶୁକ ବ୍ୟାସଙ୍କର ଆନ
ସମ୍ବାଦ ମୋହଠାରୁ ପାଣ୍ଡବ-ରାଜନ ।
ଶୁକ ପଚାରିଲେ ସବୁ ଧର୍ମରେ ଶ୍ରେଷ୍ଠ
କେ ଅଟଇ ତା କହ ହେ ଋଷି-ବରିଷ୍ଠ ।
ଏହା ଶୁଣିଣ ବେଦବ୍ୟାସ ଋଷି ଭଲେ
ବଶିଷ୍ଠ ଧର୍ମ ଶୁକ ଆଗରେ କହିଲେ ।

ଯେଉଁରୂପେ ତାହା ତୁମ୍ଭଙ୍କୁ ନରବର
ସେହିରୂପେ କହିବା ହୃଦ ଧୀର କର ।
ଇନ୍ଦ୍ରିୟଙ୍କୁ ବିଷୟମାନେ ସେହିଯାନ୍ତି
ବୁଦ୍ଧିରେ ସଂଯତ ହେ କର ମହାମତି ।
ମନ ଇନ୍ଦ୍ରିୟଙ୍କ ଏକଠା ହୋଇବାର
ସବୁ ଧର୍ମଙ୍କରୁ ଅଟଇ ଏକା ବର ।
ମନକୁ ଯେହ ଇନ୍ଦ୍ରିୟଙ୍କର ସଂଯତ
କରୁଥିବ ତୃପତ ହୋଇ ଅବିରତ ।
ଇନ୍ଦ୍ରିୟ ବିଷୟରୁ ନିବର୍ତ୍ତଇ ଯେବେ
ପରମ-ଆତ୍ମା ଲୋକ ଦେଖଇଟି ତେବେ ।
ଆସିଲି କେଉଁଠାରୁ ଯିବ କେଉଁଠାକୁ
ବ୍ରହ୍ମଜ୍ଞାନବଳେଟି ନ ଜାଣେ କାହାକୁ ।
ତୁମ୍ଭଙ୍କୁ କହୁଥାଇଁ ଏ ସଂସାର ନଦୀ
ଜ୍ଞାନବଳରେ ତରି ହୋଇ ନିର୍ବିବାଦୀ ।
ବ୍ରହ୍ମଙ୍କୁ ଜାଣିବାର ବଡ଼ ଗୁପ୍ତକଥା
ଆଚର ତାହା ବାବୁ ଛାଡ଼ ହୃଦୁଁ ବ୍ୟଥା ।
ତୁମ୍ଭଙ୍କୁ ଯେଉଁ ଜ୍ଞାନ କହୁଅଛୁ ମୁହିଁ
ତା ଜାଣିଲେ ଜନମ ଆଉ ହେବ ନାହିଁ ।
ଜ୍ଞାମୀ ପୁରୁଷ ସୁଖମାନ ମୂର୍ତ୍ତିମାନ
ହୋଇବା ପାଇଁ ଇଚ୍ଛା ନ କରିହ ମନ ।
ସ୍ୱର ବେଦପାଠକୁ ଅଭ୍ୟାସ କରିବ
ଜ୍ଞାନ ହେବ କ୍ଷଣି ତାହାକୁ ଛାଡ଼ିଦେବ ।
ଯେଉଁକାଳେ ପ୍ରାଣୀକି ନ ବାଧଇ ଭୟ
ଆପଣାହିଁ ହୁଅଇ ମହତ ନିର୍ଭୟ ।
ସେହି କାଳରେ ବ୍ରହ୍ମଜ୍ଞାନଟି ଉପୁଜ
ହୃଦୟ ମଧ୍ୟେ ବ୍ରହ୍ମଠାରେ ରହେ ମଜ୍ଜି ।
ଦୁଃଖ ଆବ ସୁଖରୁ ମୁକ୍ତ ହେଲେ ନର
ତରି ପାରଇଟି ଏହି ଘୋର ସଂସାର ।
ବ୍ରହ୍ମଜ୍ଞ ଲୋକକୁ ଅପୂର୍ବ ହୋଇ କଥା
ଥିଲି ପରି ତ ଲେଖି ନାହିଁ ଜାଣ ପୋଥା ।
ବେଦରୁ ସତ୍ୟ ହୋଏ, ସତ୍ୟୁଁ ହୋଏ ଦମ
ଦମରୁ ଦାନ, ଦାନୁଁ ଇନ୍ଦ୍ରିୟ ସଂଯମ ।
ତପରୁ ତ୍ୟାଗ, ତ୍ୟାଗୁଁ ସୁଖ, ସୁଖୁଁ ସ୍ୱର୍ଗ
ସ୍ୱର୍ଗରୁ ଶମ, ଶମୁଁ ହୋଏ ଅପବର୍ଗ ।
ମନ ନିବର୍ତ୍ତାଇଣ ଯୋଗୀଙ୍କ ସନ୍ତୋଷ
କହିବାକୁ କାହାର ନାହିଁ ଜାଣ ଦୋଷ ।

ନ ଖାଇ ଯେଉଁ କଥାଟିରେ ତୃପ୍ତି ହୋଇ
ସେ କଥା ଯେ ଜାଣେ ପଣ୍ଡିତ ତାକୁ କହି ।
ଇନ୍ଦ୍ରିୟଙ୍କୁ ବିଷୟୁଁ ନିବର୍ତ୍ତାଇ ରଖି
ଯେ ରହେଟି ତାକୁ ବୋଲନ୍ତି ଲୋକେ ସୁଖୀ ।
କର୍ମଗୁଣକୁ ଅତିକର୍ମ କରି ଦ୍ୱିଜ—
ରୂପେ ଥିବା ଲୋକ ପୂଜନ୍ତି ସୁରରାଜ ।
ରାଜ ମୃତ୍ୟୁ ତାହାକୁ ବାଧି ନ ପାରଇ
ସତ୍ୟ କରି ପୁତ୍ର ଜାଣେ ମୁଁ କହୁଥାଇଁ ।
ଉତ୍ତମ ଶିଷ୍ୟ ଯେବେ ଉପସ୍ଥିତ ହେବ
ଜ୍ଞାନୀ ଲୋକ ତାକୁ ଏ ଜ୍ଞାନ ଶିଖାଇବ ।
ଶ୍ରୋତ୍ର ଇନ୍ଦ୍ରିୟ ଜାଣ ଅଟଇ ଆକାଶ
ଶବଦ ଗୁଣ ତା'ର ହୋଇଛି ପ୍ରକାଶ ।
ପବନ ସକାଶରୁ ହୋଇଛି ଚଳନ
ପ୍ରାଣ ପାନ ଦୁହେଁଟି ତା ସମ୍ବନ୍ଧ ଜାଣ ।
ଜ୍ୟୋତି ସକାଶରୁ ଚକ୍ଷୁରେ ସବୁ ପ୍ରାଣୀ—
ମାନଙ୍କୁଟି ଦେଖୁଅଛନ୍ତି ପ୍ରାଣୀଶ୍ରେଣୀ ।
ଆର୍ଦ୍ରତା ସ୍ନେହ ରକ୍ତ ମଜ୍ଜା ଜିହ୍ୱା ରସ
ଜଳ ସକାଶରୁ ଏ ହୋଇଛି ଋଷୀଶ ।
ଅସ୍ଥି ଦନ୍ତ ନଖ ଯେ ଶ୍ମଶ୍ରୁ ଲୋମ କେଶ
ଶିରା ସ୍ନାୟୁ ଚର୍ମ ନାକ ଆଘ୍ରାଣ ବାସ ।
ପୃଥିବୀ ସକାଶରୁ ଏତେକ ହୁଅଇ
ଏରୂପେ କହିଛନ୍ତି ଋଷିଏ ବତାଇ ।
ଏ ପଞ୍ଚମହାଭୂତଙ୍କୁ ଯେ ମନ ବୁଦ୍ଧି
ରୂପେ ଜାଣିପାରିଲେ ଲୋକ ପାଏ ସିଦ୍ଧି ।
ଶରୀର ମଧ୍ୟୁଁ ଜୀବ ବାହାରି ଯିବାର
ଜ୍ଞାନୀ ବିନା ଦେଖି ନ ପାରେ ଆନ ନର ।
ସୂର୍ଯ୍ୟଠାରୁ କିରଣ ବାହାରିଲା ପ୍ରାୟେ
ଦେହରୁ ସୂକ୍ଷ୍ମ ଜୀବ ବାହାରି ଯାଏ ।
ଯେରୂପେ ଦରପଣେ ପ୍ରତିବିମ୍ବ ଦିଶେ
ଯୋଗୀଙ୍କ ଆତ୍ମା ସେହିରୂପେ ପରକାଶେ ।
ଯୋଗୀମାନଙ୍କର ସବୁକାଳରେ ପ୍ରାଣ
ବଶ ହୋଇ ରହିଥାଏଟି ଶୁକ ଜାଣ ।
ସବୁକାଳେ ଯୋଗୀଏ ସୂକ୍ଷ୍ମ ଆତ୍ମ ନିଜ
ଚିନ୍ତା କରୁଥାଆନ୍ତି ବୁଜିଣ ଆଖିକ ।
ତମ ରଜୋଗୁଣରେ ଆବୃତ ଯେ ଲୋକ
ଆତ୍ମାକୁ ଦେଖିବାକୁ ନାହିଁ ତା ବିବେକ ।

ଯୋଗଶାସ୍ତ୍ରରେ ତତପର ଯେଉଁମାନେ
ଆତ୍ମାକୁ ଦେଖୁଥାନ୍ତି ସେ-ଯୋଗ ନୟନେ ।
ଶାଣ୍ଡିଲ୍ୟଋଷି ଯୋଗଶାସ୍ତ୍ର କହିଛନ୍ତି
ତା ଜାଣିଲେ ବ୍ରହ୍ମ ହୁଅଇ ପରାପତି ।
ମୋହ ସଞ୍ଚୟରୁ ଜାତ ହୁଅଇ କାମ—
ଦ୍ରୁମ ହୃଦେ ରହିଛି ଜାଣ ପୁଷୋତ୍ତମ ।
ସେ କାମ-ଦ୍ରୁମରଟି କ୍ରୋଧ ଅଟେ କାଣ୍ଡ
ଚିନ୍ତା-ଶାଖା ଅସୂୟା ପତ୍ରେ ଦିଶେ ସାନ୍ଦ୍ର ।
ପୂର୍ବଜନ୍ମ ଦୁଷ୍କୃତ ଅଟେ ତା'ର ସାର
ମୋହିନୀ-ଲତାରେ ସେ ବେଢ଼ା ନିରନ୍ତର ।
ଯେଉଁ ଲୋକ ଯୋଗ ଖଣ୍ଡାରେ ତାହା କାଟେ
ବ୍ରହ୍ମ ଜାଣ ତା'ର ନୟନେ ପରକଟେ ।
ଆହେ ଶୁକପୁତ୍ର ମହାଭୂତର ଗୁଣ
ଶୁଣ ଏକଚିତ୍ତେ ତା କହିବା ବଖାଣ ।
ଗୁରୁତ୍ୱ ସ୍ଥୈର୍ଯ୍ୟ ଉତ୍ପାଦକତ୍ୱ କାଠିନ୍ୟ
ଗନ୍ଧ ଗ୍ରହଣ-ଶକ୍ତି ପଦାର୍ଥ ଧାରଣ ।
ସଂଘାତ ସ୍ଥାପନା ଏ ପୃଥିବୀର ଜେନ
ହୁଅଇ ଜାଣ ଆହେ ଶୁକ ମହାମୁନ ।
ଶୈତ୍ୟ ରସ କ୍ଲେଦ ଦ୍ରବତ୍ୱ ନିସ୍ୟନ୍ଦନ
ସୌମ୍ୟତା ଜିହ୍ୱା ଭୌମ ସ୍ନେହ ପ୍ରସ୍ରବଣ ।
ଏ ଦଶୋଟି ସଲିଳ ସକାଶୁଁ ଉତ୍ପତ୍ତି
ହୁଅଇ ଏ ସଂସାରେ ଶୁକ ମହାମତି ।
ଜ୍ୟୋତି ତପସ୍ୟାପାକ ଶୋକ ଦୁର୍ଦ୍ଧର୍ଷଣ
ଲଘୂଷ୍ଣତୀକ୍ଷ୍ଣତା ପ୍ରକାଶ ଊର୍ଦ୍ଧ୍ୱଜ୍ୱଳନ ।
ରାଗ ଆଦି ଏ ଦଶ ଗୁଣଟି ତେଜର
ସକାଶୁଁ ଶୁକ ଜାଣ ହୁଅଇ ପ୍ରବର ।
ସ୍ପର୍ଶ ବାକ ପ୍ରଶ୍ୱାସ ସ୍ୱତନ୍ତ୍ରତା ଓଜ
ଜନ୍ମ ମୃତ୍ୟୁ ପ୍ରାକର୍ମ ଚେଷ୍ଟା କର୍ମ ଶୌର୍ଯ୍ୟ ।
ଏମାନେ ଅଟନ୍ତିଟି ପବନର ଧର୍ମ
ଜାଣିଥାଅ ହେ ଶୁକଋଷିଙ୍କ ଉତ୍ତମ ।
ବାପିତ୍ୟ ଶବ୍ଦ ଅନାଶ୍ରୟ ଅବକାରୀ
ଛିଦ୍ରତା ଅନାଲମ୍ବ ଶ୍ରୁତିତ୍ୱବିବର ।
ଅବ୍ୟକ୍ତ ଅପ୍ରତିଘାତ ଆକାଶର
ଗୁଣ ଅଟଇ ହେ କୁମର ମନେ କର ।
କଉଶଳ ସ୍ମରଣ ଧୈର୍ଯ୍ୟ ଉତପତ୍ତି
କଳପନା କ୍ଷମା ଯେ ବଇରାଗ୍ୟ ଭ୍ରାନ୍ତି ।

ଏ ମତେ ତ୍ରିଗୁଣ ମନରୁ ଉତ୍ପତ୍ତି
ମନର ଏହାଙ୍କର ଅଟେ ବଡ଼ ପ୍ରୀତି ।
ନିଷ୍ଠାନିଷ୍ଠ ବିକଳ୍ପ ସଂଶୟ ସମାଧି
ବ୍ୟବସାୟ ପ୍ରୀତିକି ଧରିଅଛି ବୁଦ୍ଧି ।
ପଞ୍ଚମହାଭୂତ ଯେ ମନ ବୁଦ୍ଧିଙ୍କର
ଏତେ ଗୁଣ ପ୍ରବର୍ତ୍ତି ଅଛଇ ସଂସାର ।
ଏହା ଯେଉଁ ଲୋକ ଜାଣଇ ଭଲକରି
ଏ ସଂସାର-ଜଳଧିରୁ ହୋଏ ସେ ପାରି ।
ଶୁକ-ବ୍ୟାସ ସମ୍ବାଦ ହେଲା ଏଥି ଶେଷ
କହଇ କୃଷ୍ଣସିଂହ ନରକୁଳ-ଈଶ ।

—*—

## ମୃତ୍ୟୁ-ପ୍ରଜାପତି ସମ୍ବାଦ

ଏଥୁଅନନ୍ତରେ ପାଣ୍ଡବ ନରମଣି
ଭୀଷ୍ମଙ୍କ ମୁଖ ଚାହିଁ କହିଲେ ଏ ବାଣୀ ।
ଅଶୁଭେ ନାରଦଙ୍କ ବହୁ ରାଜାମାନେ
ଶୋଇଲେ ମୃତ୍ୟୁ ପାଇ କରି ଯୁଦ୍ଧସ୍ଥାନେ ।
ମୃତ୍ୟୁ ହୋଇ ପଦାଏ ହେଲା କାହୁପରେ
ବୋଲ ମୃତ୍ୟୁ କାହାକୁ କହ ତ ତା ଥରେ ।
ଭୀଷ୍ମ ବୋଇଲେ ଆହେ ପୂର୍ବେ ଅନୁକମ୍ପ
ନାମକୁ ବହନକରି ଥିଲେ ଏକ ନୃପ ।
ସଂଗ୍ରାମରେ ଶତ୍ରୁ ବଶ ସେ ହୋଇଥିଲେ
ମହାବଳୀ ପୁତ୍ର ହରିକି ହରାଇଲେ ।
ପୁତ୍ରଶୋକେ ସେ ରାଜା ନେତ୍ରୁଁ ନୀର ମୁଞ୍ଚି
ଆସୁଥିଲେ ଯୁଦ୍ଧ-ଦାଣ୍ଡିରୁ ବଞ୍ଚି ।
ଦେଖିଲେ ବାଟରେ ନାରଦ ଋଷିବର
ଯାଉଛନ୍ତି ବୀଣା ପୁସ୍ତକ ଧରି କର ।
ସେ ନୃପ ନାରଦଙ୍କ ପାଦ ଦୁଇ ଧରି
ବୋଇଲେ ମଲା ପୁତ୍ର ଯୁଦ୍ଧେ ତପସ୍ତାରି ।
ନାରଦ ବୋଇଲେ ନ କାନ୍ଦ ନୃପମଣି
ପୁତ୍ର ମଲା ପାଇଁ କହିବା ଯେଉଁ ବାଣୀ ।
ତାହାକୁ ଏକଚିତ୍ତହୋଇ ଏବେ ଶୁଣ
ସବୁ ପ୍ରାଣୀଙ୍କି ଲାଗିଅଛି ମରଣ ।
ଆଦ୍ୟକୃତ ଯୁଗରେ ପ୍ରଜାଏ ବହୁଳ
ହେବାରୁ ତ ନ ସହି ପାରି ଦେବପାଳ ।
ପ୍ରଜାଙ୍କୁ ସଂହାରିବାପାଇଁ ଚିନ୍ତା କଲେ
କାହୁପରେ ହେବ ସେ କିଛି ନ ଜାଣିଲେ ।
ଏହି ସକାଶୁଁ ଜାଣ ମହାକ୍ରୋଧ ହୋଇ
ଦେହୁଁ ଅଗ୍ନି କଲେ ସାବିତ୍ରୀଦେବୀ ସାଇଁ ।
ବ୍ରହ୍ମାଙ୍କ ଦେହୁଁ ଜାତ ହୋଇ ବୈଶ୍ବାନର
ପୋଡ଼ି ଦେଲେ ତିନଲୋକର ଯେତେ ଘର ।
ଶିବ ତା ଦେଖି ବ୍ରହ୍ମା ସମୀପେ ଆସିଲେ
ନାଶିଲେ ପିତାମହ ସଂସାର ଭାଷିଲେ ।
ବ୍ରହ୍ମା ବୋଇଲେ ହେ କହିବ କେଉଁ କଥା
ତା ମାଗ ଶିବ ମୋତେ ଛାଡ଼ି ହୃଦ ବ୍ୟଥା ।
ଶିବ ବୋଇଲେ ହେ ପ୍ରଜାଙ୍କଠାରୁ କ୍ରୋଧ
ଛାଡ଼ି ତାଙ୍କୁ ସରଳ ମନ କରି ବୋଧ ।
ତୁମ୍ଭ ତେଜଅଗ୍ନିରେ ପ୍ରଜା ପୋଡ଼ିଗଲେ
ତା ଦେଖି ଦୁଃଖୀ ମୁଁ ହେଉଛି ଜାଣ ଭଲେ ।
ବ୍ରହ୍ମା ବୋଇଲେ ହେ ପୃଥ୍ବୀଙ୍କ ଭାର ନାଶ
ପାଇଁ ସିନା ପ୍ରଜାଙ୍କୁ କଲି ମୁହିଁ ନାଶ ।
ପୃଥ୍ବୀ ତ ପ୍ରାଣୀଙ୍କର ପାହେ ଭାର ପାଇ
ଅଧକୁ ଯାଉଥିଲେ ଆହେ ଉମାସାଇଁ ।
ଏହା ଦେଖି ମୁହିଁ ହୋଇଲି ସିନା କ୍ରୋଧ
ଜାଣ ତୁମ୍ଭେ କେବେ ଏ ନୁହଇ ଦୁର୍ବୋଧ ।
ଶିବ ବୋଇଲେ ହେ ସ୍ଥାବର ଜଙ୍ଗମଙ୍କ
ହେଲାଣି ତୁମ୍ଭ ଦେହ ଅଗ୍ନିରେ ଆତଙ୍କ ।
ତୁମ୍ଭଙ୍କୁ ବର କରି ଏବେ ମୁଁ ମାଗୁଛି
ରଖ ହେ ହୃଦୟରୁ କ୍ରୋଧକୁ ମୁଚୁଛି ।
ଯେରୂପେ ପ୍ରାଣୀମାନେ ଦହନ ନୋହିବେ
ସେହିରୂପେ ବିଚାର କରିବା ହୋଇବେ ।
ଶିବଙ୍କ ବଚନେ ସାବିତ୍ରୀଦେବୀ-କାନ୍ତ
କ୍ରୋଧ ଛାଡ଼ି ରହିଲେ ହୋଇ ତୋଷ ଚିତ୍ତ ।
ଏହି କାଳେ ବ୍ରହ୍ମାଙ୍କ ଦେହୁଁ ସ୍ତ୍ରୀ ଗୋଟାଏ
ନୀଳବର୍ଣ୍ଣ ହୋଇ ବାହାରି ଗଲା ରଙ୍ଗେ ।
ପରିଧାନ କରିଛି ଆରକତ ବାସ
ଆରକତ ଫୁଲେ ବାନ୍ଧିଛି ଜୁଡ଼ାକେଶ ।
ସୁଦିବ୍ୟ ଅଙ୍ଗରାଗ ଆଭରଣପନ୍ତି
ରହିବା ଅବୟବଙ୍କରେ ରହିଛନ୍ତି ।
ବ୍ରହ୍ମାଙ୍କ ଦେହୁ ଜାତ ହୋଇ ସେ ନାରୀଟି
ଆଶ୍ରୟ କଲା ଯାଇ ଦକ୍ଷିଣ ଦିଗଟି ।
ବ୍ରହ୍ମା ସେ ସ୍ତ୍ରୀରଟିକି ମୃତ୍ୟୁ ନାମ ଦେଇ
ବୋଇଲେ ପ୍ରଜାଙ୍କୁ ତୁ ମାର ଏବେ ଯାଇ ।

ପ୍ରଜାଙ୍କୁ ମାରିବାକୁ କରିଅଛୁ ତୋତେ
ନାହିଁ ବଚନ ତୁମ୍ଭ ନ କହ ଗୋ ମୋତେ ।
ଏହା ଶୁଣିଣ କାନ୍ଦି ସେ ମୃତ୍ୟୁ ଦେବତା
ବ୍ରହ୍ମାଙ୍କୁ ବୋଇଲେ ହେ କ ବୋଲୁଛ ପିତା ।
ତୁମ୍ଭଠାରୁ ଜାତ ହୋଇକରି ମୁହିଁ
କଲୁଷରେ ପ୍ରାଣୀଙ୍କ ଚର୍ଣ୍ଣି ଛପିବଇଁ ।
ଅଧର୍ମକୁ ମୁହିଁ ପାଉଛୁ ମହାଭୟ ।
ଶିଖାଅ ବସି ମୋତେ ପିତା ଧର୍ମଚୟ ।
ବିନା ଅପରାଧରେ ପ୍ରାଣୀଙ୍କ ବେକୁଟି
ମୋଡ଼ିବାକୁ ନ ଯିବ ଜାଣ ମୋ ହାତୁଟି ।
ପିଲାଟିଏ ଯାହାର ମୃତ ହୋଇଯିବ
ସେ ତ କାନ୍ଦି ଅବଶ୍ୟ ମୋତେ ଗାଳିଦେବ ।
ବୋଲୁଥିବ କାହିଁ ଆସିଣ ମୃତ୍ୟୁ ରଣ୍ଡୀ
ମୋର ପିଲାଟିକି ମୋଡ଼ିଦେଲା ଦଗଣ୍ଡି ।
ଏଣୁ ସକାଶରୁ ମୁଁ ପୁନଃ ପୁନଃ କରି
କହୁଛି ଆହେ ପିତା ପାଦ ଦୁଇ ଧରି ।
ଆଜ୍ଞା କର ଏବେ କରିବି ଯାଇ ତପ
ଛଡ଼ାଇବ ଯେ ଥିବ ମୋ ହୃଦର ପାପ ।
ବ୍ରହ୍ମା ବୋଇଲେ ମୁଁ ପ୍ରଜାଙ୍କ ନାଶପାଇଁ
ସୃଷ୍ଟି କରିଣ ତୋତେ ଅଛୁ ଉପୁଜାଇ ।
ତୁ ମୋର ସୃଷ୍ଟି ହୋଇ ଡରୁଅଛୁ ଯାହା
ଏହା କାହା ଆଗରେ ଯିବ କହ କୁହା ।
ଏହା ଶୁଣି ମୃତ୍ୟୁ ଦେବତା ତୁନି ହୋଇ
ମୁଣ୍ଡ ପୋତି ରହିଲେ ବ୍ରହ୍ମାଙ୍କୁ ନ ଚାହିଁ ।
ବ୍ରହ୍ମା ଯେତେ ଆଉ କହିଲେ ବଚନ
ବ୍ୟର୍ଥ କରିଣ ତାହା ଘେନିଲେ ସେ ଜାଣ ।
ସେ କନ୍ୟା ସେକ୍ଷଣି ଧେନୁକସ୍ଥାନେ ଯାଇ
ତପକୁ ଆରମ୍ଭିଲେ କରିବାର ପାଇଁ ।
ପନ୍ଦର ପଦ୍ମ ସମ୍ବତ୍ସର ଏକପାଦେ
ଛିଡ଼ା ହୋଇ ତପସ୍ୟା କଲେ ସେ ପ୍ରମୋଦେ ।
ବ୍ରହ୍ମା ସେ ମୃତ୍ୟୁଦେବତାଙ୍କଠାକୁ ଯାଇ
ବୋଇଲେ ପ୍ରାଣୀ ମାର ମୋ ବଚନ ପାଇ ।
ମୃତ୍ୟୁ ସେ ବ୍ରହ୍ମାଙ୍କ ବଚନ ନ ଶୁଣିଲେ
ଅଠର ପଦ୍ମ ସମ୍ବତ୍ସର ତପ କଲେ ।
ଅଯୁତେ ପଦ୍ମ ସମ୍ବତ୍ସର ମୃଗସଙ୍ଗୀ
ହୋଇ ବନେ ବୁଲିଲେ ସେ ତମାଳ-ଅଙ୍ଗୀ ।
ବି'ଅଯୁତ ବରଷ ପିଇଣ ପବନ
ରହିଲେ ଶରୀରକୁ କରି ଅତି କ୍ଷୀଣ ।
ସହସ୍ର ଆଠ ସମ୍ବତ୍ସର ଜଳେ ଥାଇ
ତପ କଲେ ବାହୁ ଦୁଇକ ଟେକିଦେଇ ।
ତଦନ୍ତେ ଯେ କଉଶିକୀ ନଦୀତୀରେ
ପାଣି ପିଇ ରହିଲେ ଅତି ସୁମନରେ ।
ମେରୁପର୍ବତେ ଯାଇ ଦାରୁପରି ହୋଇ
ରହିଲେ ସେ ମୃତ୍ୟୁଚେଷ୍ଟାକୁ ଛାଡ଼ିଦେଇ ।
ହିମାଳୟ ଶିଖେ ଅଙ୍ଗୁଷ୍ଠିଟିଏ ଥୋବ
ତପ କଲେ ଖର୍ବେ ବରଷ ସୁଖ ଭବ ।
ବ୍ରହ୍ମା ଆଉ ଥରେ ସୃଷ୍ଟି ଅଙ୍କଠାକୁ ଗଲେ
କାହିଁକି ଏ କଥା ତୁ କରୁଛୁ ବୋଇଲେ ।
ମୁହିଁ ବୋଲୁଛି ଏବେ ପ୍ରାଣୀଙ୍କୁ ସଂହାରି
ଉଚିତ ନୋହେ ଏଥେଁ ହେଳା କରିବାର ।
ମୃତ୍ୟୁ ବୋଇଲେହେଁ ପ୍ରଜାଙ୍କୁ ସଂହାରି
ନ ପାରିବି କେବେହେଁ ଜାଣ କୃଶଧାରୀ ।
ବ୍ରହ୍ମା ବୋଇଲେ ତୁ ନ ଡର ଅଧର୍ମକୁ
ତୋତେ ତାରିବା ଭାର ଲାଗିଲା ଆମ୍ଭଙ୍କୁ ।
ଧର୍ମ ତୁମ୍ଭ ଦେହେ ରହିବ ସ୍ଥିର କରି
ତୁମ୍ଭେ ଯେ ଦେବ ପ୍ରାଣୀମାନଙ୍କୁ ସଂହାରି ।
ଦେବଙ୍କ ତୁଲେ ମୁହିଁ ଆଜ୍ଞାଁ ତୁମ୍ଭ ହିତ
ଭାବୁଥିବ ଜଗିଣ ଜାଣ ଆଗୋ ମାତ ।
ବ୍ୟାଧିରେ ପ୍ରାଣୀମାନେ ପାଇବେ ମରଣ
ତହିଁ ପାଇଁକି ତୁମ୍ଭେ ହୋଇବ କାରଣ ।
ପୁରୁଷକୁ ପୁରୁଷ ହୋଇଣ ମାରିବ
ସ୍ତ୍ରୀଙ୍କି ସ୍ତ୍ରୀରୂପେ ସଂହାରିଣ ଦେବ ।
ନପୁଂସକ ଲୋକକୁ ନପୁଂସକ ହୋଇ
ଦେବ ତାହାର ପ୍ରିୟପ୍ରାଣକୁ ବଢ଼ାଇ ।
ଏହା ଶୁଣିଣ ମୃତ୍ୟୁ ବୋଇଲେ ଏ କଥା
ନ କହ ଆଉ ମୋର ଆଗେ ସୁରନାଥା ।
ଏତେ ବୋଲି ନୟନ ଦୁଇରୁ ଲୋତକ
ଜାତ କଲେ ମୃତ୍ୟୁ ଦେବତା କରି ଶୋକ ।
ବ୍ରହ୍ମା ବୋଇଲେ ଆଗୋ ମାତ ତୁମ୍ଭ ନେତ୍ର
ନୀର ରୋଗ ହୋଇ ବ୍ୟାପିବ ପ୍ରାଣୀଗାତ୍ର ।
ପ୍ରାଣୀଙ୍କ ଅନ୍ତଃକାଳେ କାମ କ୍ରୋଧ ଦୁଇ
ନିଯୁକ୍ତ କରିବ ତୁମ୍ଭଙ୍କୁ କହୁଥାଇଁ ।

ତୁମ୍ଭଙ୍କୁ ସେହି ଘେନି ନ ଲାଗିବ ଦୋଷ
ଗୋଡ଼ଆଡ଼୍ ଶପି କରିବ ପ୍ରାଣ ନାଶ ।
ଅଧର୍ମ ତୁମ୍ଭ ଦେହ ନ ପାରିବ ଛୁଇଁ
ଧର୍ମରୁ ତୁମ୍ଭେ ହେବ ଜଗତେ ବିଜୟୀ ।
ମୃତ୍ୟୁ ବ୍ରହ୍ମାଙ୍କର ବଚନ ନ ଲଙ୍ଘିଲେ
ହେଉ ଏହିରୂପେ ମୁଁ କରିବି ବୋଇଲେ ।
ଇନ୍ଦ୍ରିୟ ଅଧିଷ୍ଠାନ ଦେବ ମୃତ୍ୟୁକାଳେ
ବାହାରି ଯାଆନ୍ତି ମୃତ୍ୟୁଦେବ ବଳେ ।
ଏହି ସକାଶରୁ କହୁଛି ମୁଁ ତୁମ୍ଭଙ୍କୁ
ନ କାନ୍ଦ ନୃପବର ପୁତ୍ର ମରିବାକୁ ।
ତୁମ୍ଭର ପୁତ୍ର ମନ୍ଦ କରି ସ୍ୱର୍ଗଦାଣ୍ଡେ
ବିହରୁଛନ୍ତି ସିଂହପରି ଅତି ଚଣ୍ଡେ ।
ଆହେ ଯୁଧିଷ୍ଠିର ବ୍ରହ୍ମାଙ୍କ ବୋଲ ପାଇ
ମୃତ୍ୟୁ ଯେ ପ୍ରାଣୀଙ୍କର ପ୍ରାଣକୁ ନିଅଇ ।
ପଚାରିବାରୁ ତୁମ୍ଭେ କହିଲି ତୁମ୍ଭଙ୍କୁ
ଆଉ କି ଇଚ୍ଛା ଥିଲେ ପଚାର ଆମ୍ଭଙ୍କୁ ।
ମୃତ୍ୟୁ-ପ୍ରଜାପତି-ସମ୍ବାଦ ହେଲା ଶେଷ
କହେ କୃଷ୍ଣସିଂହ ନରେଶ ବହି ତୋଷ ।

—❋—

## ତୁଳାଧାର ଜାଜଳି-ସମ୍ବାଦ

ଯୁଧିଷ୍ଠିର ବୋଇଲେ ଇହ ପର ଦୁଇ
ଲୋକ ତ ଅଛି ଧର୍ମ କରି କାର୍ଯ୍ୟପାଇଁ ।
ତାହା ମୋର ଆଗରେ କହ ପିତାମହ
ଶୁଣିବାକୁ ମୋହର ବଳିଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ସଦାଚାର ସ୍ମୃତି
ବେଦ ଧର୍ମ କହୁଅଛନ୍ତି ଜାଣ ନୀତି ।
ଇହ ପର ଦୁଇରୁ ତ୍ରାଣ ପାଇ ଲୋକ
ଧର୍ମ କଥା କରିବ କରିଣ ବିବେକ ।
ସତ୍ୟରୁ ବଡ଼ ହୋଇ ଏ ଜଗତଯାକେ
ବଡ଼ ଅଛି କୋଳିଣ ବୋଲିବେ ନଦେଖେଁ ।
ସମସ୍ତ ବିଷୟସ୍ଥ ଲୋକର ଧରମ
ଭିନ୍ନ ଭିନ୍ନ ଅଟେ ଜାଣ ହେ ନରୋତ୍ତମ ।
ସଦାଚାର ସାଧୁ ଲୋକଙ୍କ ଧର୍ମ କହି
ଅସଦାଚାର ଅସାଧୁମାର୍ଗ ଅଟଇ ।
ସତ୍ୟ ତ୍ରେତା ଦ୍ୱାପର କଳିରେ ବିଭିନ୍ନ
ହୋଇଅଛି ଧର୍ମ ହେ ପାଣ୍ଡବ ସୁଜନ ।
ଅଣୁଠାରୁ ଅତି ଅଣୁ ସ୍ଥୂଳରୁ ସ୍ଥୂଳ
ଧର୍ମ ଅଟଇ ହେ ପାଣ୍ଡବ-ନରପାଳ ।
ଧର୍ମ ବିଷୟରେ ଜାଜଳି ତୁଳାଧାର
ସମ୍ବାଦ ଯା ପଡ଼ିଛି ଶୁଣ ନରବର ।
ଜାଜଳି ସମୁଦ୍ରଙ୍କ ମଧ୍ୟେ ଘର କରି
ତପସ୍ୟା କଲେ ବେଦ ଧର୍ମକୁ ଆଚରି ।
କୌଣସି ଦିନ ସେ ଜଳରୁ ବାହାରିଲେ
ଇଚ୍ଛାମତେ ବେଗ କରିଣ ସେ ବୁଲିଲେ
ପୁଣି ଆସି ଜଳେ ରହିଲେ ଦ୍ୱିଜବର
ବୋଇଲେ ମୋହ ପରି ନାହିଁ ତପିବର ।
ଜଳମଧ୍ୟରେ ତ ପିଶାଚ ଥିଲେ ରହି
ସେ ଗର୍ବ ବଚନକୁ ନ ପାରିଣ ସହି ।
ବୋଇଲେ ଜାଜଳି ହେ ନ କର ଗୁମାନ
ତୁଳାଧାର ତୁମ୍ଭଙ୍କୁ ବେଶୀ ହେବ ଜାଣ ।
କାଶୀକ୍ଷେତ୍ରେ ସେ ଘର କରିଣ ଅଛନ୍ତି
ତାଙ୍କୁ ସମ୍ଭାବନା କରନ୍ତି ସବୁ ଯତି ।
ଏହାଶୁଣି ଜାଜଳି ତୁଳାଧାରଠାକୁ
ବାହାରିଲେ ହୃଦେ ବହିଣ ଗୁମାନକୁ ।
ଜାଜଳି ବାରଣସୀ ଦେଶେ ତୁଳାଧାର
ଅଛନ୍ତି ତାଙ୍କୁ ଯାଇ ଦେଖ ନୃପବର ।
ଯୁଧିଷ୍ଠିର ବୋଇଲେ ଜାଜଳି କିରୂପେ
ତପ କରିଥିଲେ ତା କହ ମୋ ସମୀପେ ।
ଭୀଷ୍ମ ବୋଇଲେ ଆହେ ଜାଜଳିଙ୍କ ତପ
ଏତେ କହି ମୁହିଁ ଯେ ନ ପାରିବି ନୃପ ।
ବରଷା ଶୀତ ଖର ଋତୁରେ ଜାଜଳି
ରହିଥାଆନ୍ତି ପଦାରେ ହୋଇ ନିର୍ଜଞ୍ଜାଳ ।
ତପ କରିବାରେ ଦେହଟି ତାଙ୍କ କାଠ
ସଙ୍ଗତରେ ଜାଣ ଆରମ୍ଭ କଲେ ରୁଷ୍ଟ ।
ଜାଜଳିର ସେ ସ୍ଥିତ ଜାଣିଣ ଚଟିଆ
ମୁଣ୍ଡପରେ ନିତି ହୁଅନ୍ତି ଯାଇ ଠିଆ ।
ଠିଆ ହେଉଁ ହେଉଁ ଘର ଗୋଟିଏ କଲେ
କ୍ରୀଡ଼ା କରି ସେ ଘରେ ଡିମ୍ବକୁ ପାରିଲେ ।
ସେହି ଡିମ୍ବଟିମାନଙ୍କରୁ ପକ୍ଷୀ ଜାତ
ହୋଇଣ ହେଲେ ନିତି ଆକାଶକୁ ଗତ ।
ଜାଜଳିଙ୍କ ମୁଣ୍ଡରେ ଆସିଣ ରହନ୍ତି
କେଉଁ କାଆଁ ହୋଇଣ ଦିନଟି କଟନ୍ତି ।

ଏରୂପେ ହେଲାରୁ ଜାଜଳି ଦ୍ୱିଜବର
ତପର ସକାଶରୁ ନ ସ୍ପନ୍ଦିଲେ ଶିର ।
ଜାଜଳି ସେ ପକ୍ଷୀଙ୍କ ଯିବାକାଳ ଜାଣି
ମନେ କଲେ ମୁଁ ହେଲି ଋଷି ଚୂଡ଼ାମଣି ।
ତଦନ୍ତେ ନଦୀଜଳେ ସ୍ନାନ ଠାଏ କଲେ
ମୋ ପରି ତପୀ ନାହିଁ ବୋଲି ଗରଜିଲେ ।
ଏରୂପେ ଜାଜଳି ତପୀରେ ଗର୍ବୀ ହୋଇ
ତୁଳାଧାରଠାକୁ ଆସିଲେ ନୃପ ଧାଇଁ ।
ପିଶାଚମାନଙ୍କର ରୂପ ତୁଳାଧାର
ତପ ଶୁଣିଣ କ୍ରୋଧ ହୋଇଲା ତାଙ୍କର ।
ତୁଳାଧାର ଜାଜଳି ବ୍ରାହ୍ମଣଙ୍କୁ ଦେଖି
ଆସନ ଦେଇ ପୂଜା କଲେ ହୋଇ ସୁଖୀ ।
ବୋଇଲେ ତପରେ ଗର୍ବିତ ହୋଇ ଦ୍ୱିଜ
ମୋଠାକୁ ସିନା ତୁମ୍ଭେ ଆସିଅଛ ଆଜ ।
ତୁମ୍ଭର କେଉଁ ପ୍ରିୟ କରିବଇଁ ମୁହିଁ
କହିଲେ ଦ୍ୱିଜବର ତା ମୁଁ କରିବଇଁ ।
ଚଟିଆ ମୁଣ୍ଡେ ଘର କରିବାରୁ ତୁମ୍ଭେ
ବୋଲୁଅଛ ତପୀରେ ବଡ଼ ବୋଲି ଆମ୍ଭେ ।
ଜାଜଳି ବୋଇଲେ ବଣିଜବାଟ କରି
ଉଦର ପୋଷି କିମ୍ପା ବୋଲ ତପସ୍ୱାର ।
ତୁଳାଧାର ବୋଇଲେ ସବୁ ପ୍ରାଣୀହିତ
ଧରମ ମୋତେ ଜାଣ ହୋଇଛି ବିଦିତ ।
ପ୍ରାଣୀମାନଙ୍କର ଅଳପ ଦ୍ରୋହ କରି
ବୃତ୍ତିକଟି ପରମ ଧର୍ମ ବୋଲପାରି ।
ତାହା କରିଣ ମୁହିଁ ପୋଷୁଛି ଜୀବନ
ଜାଜଳି ନୃହ ଜଞ୍ଜାଳୀ ମୋ ବାଣୀ ଘେନ ।
ମଦିରା ଛାଡ଼ି ସବୁ ଦ୍ରବ୍ୟ ମୁଁ ବିକଇ
ସମସ୍ତଙ୍କ ହିତ ହୃଦରେ ଚିନ୍ତରଇ ।
ପରର କର୍ମକୁ ମୁଁ ନ କରେ ପ୍ରଶଂସା
ଏ ହାହାରେ ମଧ୍ୟ ନ କରେ ନିନ୍ଦାକାଂକ୍ଷା ।
କଷିବା ବିକିବାରେ ନ କରେ କପଟ
ଏ ହେତୁ ତୁଳାଧାର ନାମ ମୋ ପ୍ରକଟ ।
ଅର୍ଥକାମ ଭୋଗରେ ନାହିଁ ମୋର ସ୍ପୃହା
ସବୁଠାରୁ ଜାଣ ହୋଇଛି ମୁଁ ନିସ୍ପୃହା ।
ଦ୍ୱିଜ ଯେବେ କାହାକୁ ଭୟ ନ ଦିଅଇ
କାହାର ସକାଶୁଁ ଭୟକୁ ନ ପାଅଇ ।
ତେବେ ଜାଣ ସେ ଦ୍ୱିଜ ଅରଜିଣ ସିଦ୍ଧି
ଏ ଜଗତଯାକରେ ହୁଅଇ ପ୍ରସିଦ୍ଧି ।
ଯେ କାୟ କର୍ମରେ ମନରେ ବଚନରେ
ପ୍ରାଣୀ-ହିଂସା ନ କରେ ସେକାଳେ ବ୍ରହ୍ମରେ ।
ମିଶଇ ଜାଣିଥାଅ ଦ୍ୱିଜଜାତି ନର
ମୋ କଥାରେ ମନୁଁ ସନ୍ଦେହ ଦୂରକର ।
ପ୍ରାଣୀମାନଙ୍କୁ ଯେତୁ ଅଭୟ ଦିଅଇ
ଅଭୟପଦକୁ ସେ ଅଲଭ୍ୟେ ଲଭଇ ।
ଯାହାର ସକାଶରୁ ଲୋକ ପାଏ ଭୟ
ତାହାର ମହାଭୟ ହୋଏଟି ଉଦୟ ।
ଆମ୍ଭର ସକାଶରୁ ଲୋକ ଧର୍ମ ପାଏ
ନରକଟି ତାହାକୁ ଥୁଆ ହୋଇଥାଏ ।
ଧର୍ମ ସୂକ୍ଷ୍ମ ତତ୍ତ୍ୱ କେ ନ ପାରନ୍ତି ହେରି
ଏ ସକାଶୁଁ ତପସ୍ୟା କରି ଯାନ୍ତି ମରି ।
ସକଳ ଜୀବମାନେ ଜୀବହିଂସା କର୍ମ
କରିବାରୁ ଅରଜୁଅଛନ୍ତି ଅଧର୍ମ ।
ତଇଳ ଘିଅ ମହୁ ଜଳ ବିକି ମୁହିଁ
ଜୀଉଛି ଜୀବହିଂସା କର୍ମ ଛାଡ଼ି ଦେଇ ।
ଚାଷ କରିଣ ଲୋକ ଭୈମଜୀବ ମାରେ
ଏ ବାହାରେ ଗାଈଙ୍କି ବାଡ଼ିରେ ପ୍ରହାରେ ।
ଗାଈରୋମ ଯେତେକ କେତୋଟି ଦେବତା
ଥାଆନ୍ତି ଦେହରେଟି ଜାଣ ବେଦବେତ୍ତା ।
ପୂର୍ବକାଳେ ପୃଷଧ୍ର ନାମେ ଋଷି ଥିଲେ
ଗୋମେଧ କରି ମହାପାତକ ଅର୍ଜିଲେ ।
ଋଷିମାନେ ଶୁଣି କହିଲେ ନହୁଷଙ୍କୁ
ପୃଷଧ୍ର ମାରିପକାଇଲେ ଗୋମାତାଙ୍କୁ ।
ଏ ସକାଶୁଁ ଆଜ ପ୍ରାଣୀଙ୍କ ଶରୀରରେ
ରହୁ ଶଏ ଏକଟି ରୋଗ ନିରନ୍ତରେ ।
ଏହା ଜାଣି ମୁହିଁ ଲୋକର ପ୍ରିୟାପ୍ରିୟ
କଥାରେ କରିଥାଏ ସମାନ ହୃଦୟ ।
ଜାଜଳି ବୋଇଲେ ହେ ଲୋକ କରି ଚାଷ
ଅରଜି ଧର୍ମ ଯାଗ କରି ସ୍ୱର୍ଗବାସ ।
ପାଉଥିଲେ ତାହା ନ ନିଷେଧିଲ ତୁମ୍ଭେ
ତତ୍ତ୍ୱ କରି କଥାଏ ଜାଣିଲୁଁଟି ଆମ୍ଭେ ।
ନାସ୍ତିକ ବୁଦ୍ଧି ଗୋଟି ଧରି ତୁଳାଧାର
ବୋଲଉଛ ମସ୍ତରେ ଧର୍ମବନ୍ତ ନର ।

ତୁଳାଧାର ବୋଇଲେ ନାସ୍ତିକ ନୁହଇ
ଅଧର୍ମୀ ବୋଲି ମୋତେ କହୁଛ କମ୍ପାଇ ।
ଯାଗକୁ ମୁଁ ତ ନିନ୍ଦା କରୁନାହିଁ ଦ୍ୱିଜ
ଯାଗକର୍ତ୍ତା ଲୋକେ ପୂଜନ୍ତି ସୁରରାଜ ।
ନିଷ୍କାମ କରି ଯାଗ କରିବାର ଧର୍ମ
ଶୁଦ୍ଧ ଦ୍ୱିଜ କଲେ ସକାମେ ଯାଗକର୍ମ ।
ବେଦର ଅଭିପ୍ରାୟ କିଛି ନ ଜାଣନ୍ତି
ଯା ପାଇଲେ ତାହାକୁ ଖାଇ ପ୍ରଶଂସନ୍ତି ।
ଶାସ୍ତ୍ର ଯେ ଲେଖିଅଛି ହୋମ ନମସ୍କାର
କରିଲେ ପ୍ରସନ୍ନ ହୁଅନ୍ତି ସବୁ ସୁର ।
ଏହା ଶୁଦ୍ଧ ଯାଗରେ ପଶୁଟାଏ ମୋଡ଼ି
ବଳି ଦେଇ ଦ୍ୱିଜେ ତା ଖାଆନ୍ତି ରଗଡ଼ି ।
ଅଗ୍ନିରେ ହୋମ କଲେ ସୂର୍ଯ୍ୟ ତୋଷହୋଇ
ବରଷି ଜଳ ମହୀ କରନ୍ତି ପୂରାଇ ।
ଏ ସକାଶୁଁ ଭୂମିରୁ ଉପୁଜଇ ଅନ୍ନ
ତାହା ଖାଇକରି ଜୀଅନ୍ତି ପ୍ରାଣୀଗଣ ।
ସନ୍ତୋଷଯଜ୍ଞ ତପୋଯଜ୍ଞ ହୋଇଣ ଜନେ
ଜ୍ଞାନଯଜ୍ଞ ହେଲେ ବସନ୍ତି ଦେବସ୍ଥାନେ ।
ଜ୍ଞାନଯଜ୍ଞକୁ ଯେଉଁମାନେ ଆଚରନ୍ତି
ବ୍ରହ୍ମସ୍ଥାନରେ ଯାଇ ଘର ସେ କରନ୍ତି ।
କାମୁକ ଲୋକ ଜୀବ ମାରି ଯାଗ କରେ
ରମ୍ଭାଦିଙ୍କି ଘେନିଣ ସ୍ୱର୍ଗରେ ବିହରେ ।
କାଳରେ ମହୀଦେଶ ଲଭଇ ପତନ
ମାତୃଗର୍ଭେ ନରକେ କରି ଆଗ ସ୍ଥାନ ।
ଏବେ ମୁଣ୍ଡେ ଥିବା ଚଟିଆଟିକି ଡାକ
କେ ବଡ଼ ଅଟଇ ବୁଝିବା ଧର୍ମପାକ ।
ଏହା ଶୁଣି ଜାଜଳି ଡାକିଲେ ଚଟିଆ
ଆସ ବୋଲିବା କ୍ଷଣି ଦାଣ୍ଡେ ହେଲେ ଠିଆ ।
ପକ୍ଷୀରନ୍ତେ କହିଲେ ଅହିଂସା କର୍ମଟା
ସବୁଠୁଁ ବଡ ହେ ଜାଜଳି ଦ୍ୱିଜବୋଟା ।
ଶ୍ରଦ୍ଧାଯୁକ୍ତ ହୋଇଣ ଯାଗ ଯେ କରଇ
ବ୍ରହ୍ମାଙ୍କଠାରେ ଯାଇ ଲୀନ ସେ ହୁଅଇ ।
ଶ୍ରଦ୍ଧାକୁ ବଡ଼ ହୋଇ ଏ ଜଗତେ କଥା
ଥିଲେପରି ତ ଜାଣ କହୁନାହିଁ ପୋଥି ।
ତୁମ୍ଭ ଧର୍ମ ଜାଣିବାପାଇଁ ଆସିଥିଲୁଁ
ଧର୍ମ ବୁଝି ଯଥାର୍ଥ କଥାଟି କହିଲୁଁ ।

ଶ୍ରଦ୍ଧା କରି ହେ ଦ୍ୱିଜବର ଧର୍ମ କର
ସଂସାର-ଜଳଧିରୁ ହୋଇବାକୁ ପାର ।
ଏହା ଶୁଣି ଜାଜଳି ଦ୍ୱିଜ ଲଜପାଇ
ଶ୍ରଦ୍ଧାରେ କର୍ମକଲେ ମୋକ୍ଷ ହେବାପାଇଁ ।
କାଳେ ତୁଳାଧାର ଜାଜଳି ପାଇ ମୋକ୍ଷ
ରହିଲେ ସ୍ୱର୍ଗେ ଧରି ଅପସରା ମୁଖ୍ୟ ।
ଯାହେ ଯୁଧିଷ୍ଠିର ଏରୂପେ ନାନାପରି
ଧରମ କରିଛନ୍ତି ସର୍ବ ତପସ୍ୱୀ ।
ତୁମ୍ଭର କେଉଁ ଧର୍ମ ଶୁଣିବାକୁ ଇଚ୍ଛା
ହେଉଅଛି ହେ ତାହା କର ମୋତେ ପୃଚ୍ଛା ।
ସରିଲା ତୁଳାଧାର ଜାଜଳି-ସମ୍ବାଦ
କୃଷ୍ଣସିଂହ ନରେଶ କହେ ବହି ମୋଦ ।

—❋—

## ବିଚକ୍ଷୁ ସମ୍ବାଦ

ଯୁଧିଷ୍ଠିର ରାଜା ରହନ୍ତେ ତୁନି ହୋଇ
ପୁଣି ତାଙ୍କୁ କହିଲେ ଭୀଷ୍ମ ଋଷିସାଇଁ ।
ଅହିଂସା ବିଷୟରେ ବିଚକ୍ଷୁ ରାଜନ
କହିଛନ୍ତି ଯାହା ତା ଯୁଧିଷ୍ଠିର ଶୁଣ ।
ଯାଗଶାଳରେ ଗାଈ କରନ୍ତେ ବିରାବ
ମଙ୍ଗଳ ତାଙ୍କର ବାଞ୍ଛୁଣ ବହି ଭାବ ।
ବୋଇଲେ କୁମାର୍ଗୀଙ୍କ ଅଟେ ହିଂସାବିଧି
ଲେଖିନାହିଁ ଏହା ମୋକ୍ଷଶାସ୍ତ୍ରରେ ବିଧି ।
କାମନା କରି ପଶୁ ମାରଇ ଯେ ନର
ଅଳପ ସୁଖ ପାଇ ନର୍କେ କରେ ଘର ।
ଯାଗେ ବେକ ମୋଡ଼ି ମାଉଁସ ହାଡ଼ ଦୁଇ
ରଗଡନ୍ତି ଗାଈର ଦ୍ୱିଜେ ବାଇ ହୋଇ ।
ଏଥିରୁ ଅଧରମ ହୋଇକରି କଥା
ମହୀରେ ଥିବ ବୋଲି ଲେଖିନାହିଁ ପୋଥା ।
ସୁରାମାଛ ମଦ୍ୟ ଯେ ଖେଚଡ଼ି ମାଉଁସ
ଦୁଷ୍ଟଲୋକ ସକାଶୁ ହୋଇଛି ପ୍ରକାଶ ।
କାମ ମୋହ ଲୋଭ ବହିବା ଲୋକଙ୍କର
ଅଟନ୍ତି ଅବଶ୍ୟ ଏମାନେ ଆହାର ।
କ୍ଷୀରି ବାଡ ବିଷ୍ଣୁ ସମୀପେ ନାନାପୁଷ୍ପ
ଦେଇଣ ପୂଜାକଲେ ହୁଅଇ ନିଷ୍ପାପ—
ତହୁଁ ସ୍ୱର୍ଗଲୋକେ ବସଇ ସୁଖେ ଯାଇ
ଏହାକୁ ଶୁଦ୍ଧ ଯାଗ କରନ୍ତି ବାଇ ।

ଯୁଧିଷ୍ଠିର ବୋଇଲେ ବିପତ୍ତି ହେଲେ ଲୋକ
ହିଂସା ତ ନ କରିବ ହେ ରଥି ନାୟକ ।
କିରୂପରେ ଜୀଇବ ଏହା ମୋ ଆଗରେ
କହ ତ ପିତାମହ କଥା ସବିସ୍ତରେ ।
ଭୀଷ୍ମ ବୋଇଲେ ଆହେ ଅସମୟ କାଳେ
ହିଂସାକର୍ମ କରି ପୋଷିବ ଜୀବ ବଳେ ।
ଯେତେବେଳେ ବିପତ୍ତି ଅଲଗା ହୋଇବ
ତେତେବେଳେ ହିଂସାକର୍ମକୁ ଛାଡ଼ିଦେବ ।
ବିବକ୍ଷୁ ଗୀତା ହେଲା ଏଠାରେ ସମାପ୍ତି
କହଇ କୃଷ୍ଣସିଂହ ନୃପ ବନ୍ଧୁ ପ୍ରୀତି ।

—*—

## ଚିରକାରୀ ସମ୍ବାଦ

ଯୁଧିଷ୍ଠିର ବୋଇଲେ ତଡ଼ିବ ଯେ କାର୍ଯ୍ୟ
ଚିରକାଳ କରିବ କି ହେ ରଥିରାଜ ।
ନୋହିଲେ ବା ଶିଘ୍ରେ କରିବ କାର୍ଯ୍ୟକୁ ।
ଏ କଥା କହାଇଣ କହ ତ ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ଶୁଣ ଗଉତମଙ୍କର
ଚିରକାରୀ ନାମରେ ହୋଇଲେ କୁମର ।
ପଡ଼ିଲେ କାର୍ଯ୍ୟ ସେ ବହୁତ ବିଚାରନ୍ତି
ବହୁତ କାଳେ ତାହା ନିର୍ବାହ କରନ୍ତି ।
ଶୋଇଲେ ବସିଲେ ସେ ଭାବିକରି କଥା
ଭିନଘଡ଼ି କରନ୍ତି ବୋଲି ଅଣ୍ଡା-ବ୍ୟଥା ।
ଗଉତମଙ୍କର ଭାରିଯା ବ୍ୟଭିଚାରୀ
ହେବା ପରି ମଣି ଗୌତମ ତପସ୍ୱୀ ।
ଚିରକାରୀ ପୁତ୍ରେ ବୋଇଲେ, ତୋ ମାତାକୁ ।
ମାରିପକା ତୁ କିଛି ନ ପୁଛି ଆମ୍ଭଙ୍କୁ ।
ଚିରକାରୀ ବହୁକାଳେ ତା ସୀକାର
କରି ବୋଇଲେ ହେ ମାରିବି ମାତା ମୋର ।
ପୁତ୍ରର ସମ୍ମତି ଶୁଣି କରି ପିତା
ବନକୁ କାଠ ପାଇ ଗଲେ ଛାଡ଼ି ଚିନ୍ତା ।
ଏତିକାଳରେ ଚିରକାରୀ ମନେ କଲେ
ଦୋଷ ହେବ ବାପଙ୍କ ଆଜ୍ଞାକୁ ଲଙ୍ଘିଲେ ।
ମାତା ତ ଗର୍ଭଧାରୀ-ତାହାର ପ୍ରାଣକୁ
କିରୂପେ ଜାଣିଁ ଜାଣିଁ କରିବି ନାଶକୁ ।
କୁଳରକ୍ଷାର ପାଇଁ ମାତା ପିତା ଦୁଇ
ପୁତ୍ର ଭରି ମୋତେ ଅଛନ୍ତି ଉପୁଜାଇ ।

ଜାତକର୍ମ ଆଦି ତ କରିଛନ୍ତି ପିତା
ପୁଣି ତ ମୋ ମାତାର ଅଟନ୍ତି ସେ ଭର୍ତ୍ତା ।
ବାଳକାଙ୍କୁ ମୋର ଉଦର ପୋଷୁଛନ୍ତି
ଗୁରୁର ଗୁରୁ ତ ସେ ସହଜେ ବୋଲନ୍ତି ।
ଏଣୁ ସକାଶରୁ ପିତାଙ୍କର ବଚନ
ଯେ ପାଳୁଛି ଧରମେ ବଡ଼ ସେହୁ ଜନ ।
ପିତୃବଚନ ଯେହୁ କରୁଛି ନିରତେ
ପୁଣ୍ୟବନ୍ତ ଲେଖା ସେ ଅଟଇ ମୋ ମତେ ।
ବାପୁ ଯେଉଁ ପୁତ୍ରକୁ ହୁଅଇ ସନ୍ତୋଷ
ସେ ପୁତ୍ରକୁ ଦିଅନ୍ତି ଦେବେ ସ୍ୱର୍ଗବାସ ।
ବାପୁ ତୋଷ ହୋଇଲେ ପାପରୁ ନିସ୍ତୃତ
ହୋଇଣ ସୁଖୀ ହୋଇଥାଏ ସଦା ସୁତ ।
ବାପୁ ପୁଅରଠାରୁ ନ ଛାଡ଼ଇ ସ୍ନେହ
ଲାଗି ତ ଥାଏ ସବୁବେଳେ ପୁତ୍ରମୋହ ।
ମୋହ ଦେହକୁ ଜାତ କରିବା କାରଣ
ମାତା ବିନା ତ ନାହିଁ ଆନ ପରାୟଣ ।
ଦରିଦ୍ର ଘରେ ଯେତେବ ଥାଏ ମାତା ଜୀଇଁ
ପିଇଲେ ପେଜ ପଣା ସମାନ ମଣଇ ।
ବୁଢ଼ା ହେଲେ ପୁତ୍ରକୁ ପିଲାପରି ମାତ
ଲାଳନା କରୁଥାଏ ହେଲେ ନେହଗତ ।
ସମର୍ଥ ଅସମର୍ଥ ହୋଇଲେ ପୁତ୍ରକୁ ।
ପୋଷି ଥାଏଟି ମାତା ଦେଇଣ ଅନ୍ନକୁ ।
ମାଆ ସମାନ ଛାୟା ମା ସମାନ ପ୍ରିୟ
ମାଆ ସମାନ ଗତି ଥିବାରୁ ହୃଦୟ ।
ପାଉନାହିଁ ମୋର ଏ ଜଗତ ମଧ୍ୟରେ
ଖୋଜିଲେ ସେପରି ନ ଦିଶେ ନୟନରେ ।
ଏହା ଜାଣୁ ଜାଣୁ ମାତା କେଉଁ ଲୋକ
ଖଣ୍ଡା ଧରି ହାଣିବ ନ କରି ବିବେକ ।
ଏରୂପେ ବିଚାର କରନ୍ତେ ଚିରକାରୀ
ପାଇଗଲେକ ଗଉତମ ତପସ୍ୱୀ ।
ପୁତ୍ରକୁ ବୋଇଲେ ତୋ ମାତା ପତିବ୍ରତା
ବୋଲିଣ କହିଗଲେ ମଘବା-ଦେବତା ।
ନ ଜାଣି ତୋତେ ମୁଁ ବୋଇଲି ମାରି ବୋଲି
ଏବେ ମରୁଅଛି ସେହି କଥାକୁ ଭାଳି ।
ମାରିଛୁ କି ନାହିଁ ତୋ ମାତାକୁ ରେ ବାବୁ
ସତ କରି ମୋତେ କହ ସେ କଥା ସବୁ ।

କୁହତ ତ ଚିରକାରୀ ଅଟୁରେ ନନ୍ଦନ
ଏଣୁ ତସ୍କୁରୁଅଛୁ ଥିବ ତା ଜୀବନ ।
ଚିରକାରୀ ଖଣ୍ଡା ଘଷିବା ଛାଡ଼ି ଦେଇ
ବୋଇଲେ ମାତାକୁ ମୁଁ ତାତ ମାରି ନାହିଁ
ଏହା ଶୁଣିଣ ଗଉତମଋଷି ତୋଷ
ହୋଇ ବୋଇଲେରେ ତୁ ଅନ୍ୟ ଅଟୁ ଶିଷ୍ୟ ।
ମାତା ତୋର ମରିଥିଲେ ମୁଁ ମରିଥାନ୍ତି
ସେହି ପାପେ ନରକେ ଯାଇଣ ପଡ଼ନ୍ତି ।
ତୁ ମଧ୍ୟ ମାତା ପିତା ଦୁଇ ହୋଇ ହାନ
ନସ୍ଥନୁଁ ଚନ୍ଦନ ମୁଖ ଥାନ୍ତୁ ବନ ।
ରାଗ ଦର୍ପ କ୍ରୋଧ ପାତକ ଚିରକାଳ
ବିସ୍ତର କରି କରିବାର ଅଟେ ଭଲ ।
ବାନ୍ଧବ ମିତ୍ର ଭୃତ୍ୟ ନାରୀଙ୍କର ଦୋଷ
ହେଲେ ନାଶ କରିବ ବିସ୍ତରି ବିଶେଷ ।
ଏରୂପେ ଗଉତମ ପୁତ୍ର ଆଗେ କହି
ପୁତ୍ରଙ୍କୁ ପ୍ରଶଂସି ରହିଲେ ତୁନି ହୋଇ ।
ଆହେ ଯୁଧିଷ୍ଠିର ପଢ଼ିଲେ କଥାଟିଏ
ବିସ୍ତାରଣ କଲେ ସେ ଭଲଟି ବୋଲାଏ ।
ହୋଇଲା ଚିରକାରୀ ଉପାଖ୍ୟାନ ଶେଷ
କହଇ କୃଷ୍ଣସିଂହ ଧରାକୋଟେଶ ।

— ✻ —

## ସତ୍ୟବାନ ଦ୍ୟୁମତ୍ସେନ ସମ୍ବାଦ

ଯୁଧିଷ୍ଠିର ବୋଇଲେ କିରୂପେ ରାଜନ
କହ ପିତାମହ ପାଳିବ ପ୍ରଜାଗଣ ।
ଭୀଷ୍ମ ବୋଇଲେ ଆହେ ଦ୍ୟୁମତ୍ସେନ ରାଜା
ପରଜାଙ୍କରଠାରେ କ୍ରୋଧ କରି ମଜ୍ଜା ।
ଧରାଇ ଚହୁଁ ଘେନଗଲେ ମାରିବାକୁ
ସେ କାଳେ ସତ୍ୟବାନ କହିଲେ ତାହାଙ୍କୁ ।
ଅଧରମ ଧରମ ଧର୍ମ ଅଧରମ
କେତେବେଳେ ହୁଏ ହେ ନୃପତିଉତ୍ତମ ।
ଦ୍ୟୁମତ୍ସେନ ବୋଲେ ଦୋଷୀକି ନ ମାରିଲେ
ବର୍ଣ୍ଣସଙ୍କରଟି ହୋଇବ ଜାଣ ଭଲେ ।
ସତ୍ୟବାନ ବୋଇଲେ ତିନିବର୍ଣ୍ଣଯାକ
ବ୍ରାହ୍ମଣଙ୍କୁ ବନ୍ଦିବେ ନୃପତିନାୟକ ।
ରାଜା ଯେ ହୋଇବ ସେ ନୀତିଶାସ୍ତ୍ର ଦେଖି
ପ୍ରାଣୀଙ୍କି ଦଣ୍ଡ ଦେବ ଉଚ୍ଛୋଧ ଉପେକ୍ଷି ।

ନିର୍ଦ୍ଦୋଷୀରେ ଯେବେ ମାରିବ ଲୋକଟିଏ
ସେ ପାପରେ ଜାଣ ସେହିଟି ନାଶଯାଏ ।
ଅସାଧୁ ଜନେ ଦଣ୍ଡ ଦେଲେ ସାଧୁଜନ—
ମାନଙ୍କ ନୃପ ହୋଏ ମସ୍ତକ-ମଣ୍ଡନ ।
ପ୍ରାଣ ଯିବା ଦଣ୍ଡକୁ ଛାଡ଼ି ଆନ ଦଣ୍ଡ
ଦେଲେ ଭଲ ହେଲେ କରିବ ତାକୁ ମଣ୍ଡ ।
ଦଣ୍ଡକେ ପ୍ରାଣ ଗଲେ ଆଉ ଥରେ ତାକୁ
ଖୋଜ ଦେଖିବ କି ମଣ୍ଡନ କରିବାକୁ ।
ପୁରୋହିତ ଯଦ୍ୟପି ଦୋଷ କିବା ପାପ
କରିବ ତେବେ ତାକୁ ନ ଦଣ୍ଡିବ ନୃପ ।
କାକୁଡ଼ି ଚୋରଠାରେ ମୁଣ୍ଡ କାଟି ଦଣ୍ଡ
ଯେ ଦିଏ ତାହାକୁଟି ଲାଗେ ଯମଦଣ୍ଡ ।
ଦ୍ୟୁମତ୍ସେନବୋଇଲେ ଦୋଷୀହେଲେ ପ୍ରଜା
ଦଣ୍ଡ ଦେଲେ ଧାର୍ମିକ ବୋଲାଏଟି ରାଜା ।
ପ୍ରଥମେ ଧିକଦଣ୍ଡ, ଦ୍ୱିତୀୟେ ବାକ୍‌ଦଣ୍ଡ
ତୃତୀୟେ ଆଦାନ, ଚତୁର୍ଥେ ଦେହଦଣ୍ଡ ।
ଏହିରୂପରେ ରାଜା କଲେ ଦଣ୍ଡବିଧି
ପାପରୁ ମୁକ୍ତ ହୋଇ ହୁଅଇ ପ୍ରସିଦ୍ଧି ।
ରାଜା ଧର୍ମେ ନ ରହି ପ୍ରଜାର ଅଧର୍ମ
ଦେଖିଣ ଦଣ୍ଡ ଦେଲେ ବିହି ହୋଏ ବାମ ।
ପାପୀ ପୁରୁଷ ଦଣ୍ଡ ନ ପାଇଲେ ମହୀ
ଭଲ କରି ଶସ୍ୟକୁ ଉପୁଜାଏ ନାହିଁ ।
ଏହିରୂପରେ ପୂର୍ବପୁରୁଷ ବଚନ
କହିଲ ଆହେ ସତ୍ୟବାନ ମନେ ଘେନ ।
ଆୟୁଷ ଶକ୍ତିବଳ କାଳ ଅନୁରୂପ
ଧର୍ମଦଣ୍ଡ ଦୁଷ୍ଟଙ୍କି କରିବ ହେ ନୃପ ।
ଏହା କହିଅଛନ୍ତି ସ୍ୱାୟମ୍ଭୁବ ମନୁ
ସତ୍ୟବାନ ହୃଦେ ନ ଧର ମୋତେ ମନ୍ୟୁ ।
ସରିଲା ସତ୍ୟବାନ ଦ୍ୟୁମତ୍ସେନଙ୍କର
ସମ୍ବାଦ କହେ କୃଷ୍ଣସିଂହ ନରବର ।

— ✻ —

## ସ୍ୟୁମରଶ୍ମି-କପିଳ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଗୃହସ୍ଥ ତ୍ୟାଗ ଧର୍ମ
ଏ ଦୁଇରେ ବଡ଼ କେ କହ ନରୋତ୍ତମ ।
ଭୀଷ୍ମ ବୋଇଲେ ହେ ଦୁଇ ଧର୍ମ ସରି—
ସମ ବୋଲିକରି ସଜନ ବୋଲପାରି ।

ଏବେ ଏ ଦୁଇ ଧର୍ମ ପ୍ରମାଣ ରାଜନ
ପଚାରିଲ ଯେବେ ତା କରିବା ବଖାଣ ।
ନହୁଷ ପୂର୍ବେ ଗୋମେଧ ଯାଗରପାଇଁ
ଯାଗଶାଳାକୁ ସଜାଡ଼ିଲେ ଭକ୍ତ ହୋଇ ।
ତହିଁ ମଧ୍ୟରେ ନେଇ ଗାଈଙ୍କି ରଖିଲେ
ଯାଗରେ ବଳି ଏହା କରିବ ଭାବିଲେ ।
କପିଳ ସେ ଗାଈଙ୍କି ଦେଖି ଦୁଃଖୀ ହୋଇ
ଆହେ ବେଦ ବୋଲି ରହିଲେ ତୁନି ହୋଇ ।
ଏହା ଶୁଣିଣ ସ୍ୟୂମରଶ୍ମି ନାମେ ଯତି
ଗାଈଙ୍କ ଗର୍ଭରେ ଯୋଗରେ କରି ସ୍ଥିତି ।
ବେଦଙ୍କୁ ଅଧରମ ବୋଲୁ ଯେବେ ତୁମ୍ଭେ
କହ ଲୋକ ସମ୍ମତ ପୁଚ୍ଛୁଅଛୁ ଆମ୍ଭେ ।
କପିଳ ବୋଇଲେ ମୁଁ ବେଦ ନିନ୍ଦୁନାହିଁ
ଚାରି ଆଶ୍ରମକୁ ଯେ ବେଦ ମାର୍ଗ କହି ।
ଫଳରେ ସିନା ମାତ୍ର ଅଛି ଊଣାଧିକ
ଏହା କହୁନାହିଁ ହେ ବିବେକ ।
ବେଦ ତ ଲେଖିଅଛି କରମ କରିବ
ପୁଣି ବୋଲୁଅଛି କେବେହେଁ ନ କରିବ ।
ଏ ସକାଶୁଁ ବେଦର ପ୍ରମାଣକୁ କହି
ଜାଣୁଅଛି ବୋଲି ବଚନ ଆସୁନାହିଁ ।
ଅହିଂସାଠାରୁ ବଡ଼ ହୋଇକରି କର୍ମ
ଜାଣିଥିଲେ କହ ହୃଦରୁ ଯାଉ ତମ ।
ସ୍ୟୂମରଶ୍ମି ବୋଇଲେ ସ୍ୱର୍ଗକାମୀ ଲୋକ
ଯାଗ କରି ମାତ୍ର ବସିବ ଇନ୍ଦ୍ରଲୋକ ।
ପଶୁଜନକର ଅଶ୍ୱ ମେଷ ଗାଈ ଅଜ
ଗ୍ରାମାରଣ୍ୟ ଔଷଧି ବଧି ଦେବରାଜ ।
ଯାଗପାଇଁ ପୂର୍ବରୁ କଳ୍ପନା କରିଛନ୍ତି
ଯେ ଯାଗ କରେ ସ୍ୱର୍ଗେ ବସେ ବହି ପ୍ରୀତି ।
ଔଷଧି ପଶୁ ବୃକ୍ଷ ଲତା ହୁତାଶନ
ଘୃତ ଦଧି ଦୁଗ୍ଧ ଯେ ହବି ଯଜମାନ ।
ଋକ ଯଜୁ ସାମ ଭୂମି ସମସ୍ତ ଜଗ
ଶ୍ରଦ୍ଧା ଏ ସତରେ ଅଟନ୍ତି ଯାଗ ଅଙ୍ଗ ।
ଏ ସତରେ ଋତ୍ୱିଜ ଦକ୍ଷିଣାକୁ ପାଇ
ଯାଗର ସମାପତି କରନ୍ତି କରାଇ ।
ଯାଗ ଏ ଜଗତେ ହୋଇଛି ଅନୁଗତ
ଜଗତର ମଧ୍ୟରେ ଅଟଇ ସେ ଖ୍ୟାତ ।

କରିବ ଯାଗ ବୋଲି ବେଦ କହୁଅଛି
ସିଦ୍ଧମାନଙ୍କରେ ଏ ସମ୍ମତ ହୋଇଛି ।
ଯାଗକରିବା ଲୋକ ମୃତ୍ୟୁ ଯେଉଁକାଳେ
ଲଭଇ ସ୍ୱର୍ଗରେ ବସଇ ଯାଇ ହେଳେ ।
ନ କଲେ ଯାଗ ଲୋକ ଇହ ପର ଦୁଇ
ଲୋକ ଥିଲା ପରି ନେଇକୁ ଦିଶୁନାହିଁ ।
ଏହା ଶୁଣି କପିଳ ବୋଇଲେ ଯେ ଯତି
ତାହାର ସର୍ବକାଳେ ଅଛଇ ମୁକତି ।
ଗୃହସ୍ଥାଶ୍ରମ କରିବାରେ ତାଙ୍କ କାର୍ଯ୍ୟ
ନାହିଁ, ତା ଇଚ୍ଛା ହେଲେ ପାନ୍ତି ମହାରାଜ ।
ସ୍ୟୂମରଶ୍ମି ବୋଲେ ଗୃହସ୍ଥ ଶ୍ରମ ବିନା
ଯତି ଧର୍ମରେ ପୂର୍ଣ୍ଣ ନୁହଇ କାମନା ।
ଗୃହସ୍ଥ ଲୋକ ଧର୍ମ ତପ ଆଚରଇ
ଏହା କାହାରେ ଯାଗ କରିବ କରାଇ ।
ଗୃହସ୍ଥାଶ୍ରମେ ମୋକ୍ଷ ନୁହେଁ ବୋଲିବାର
ଯେ ବୋଲିବ ଅଟଇ ସେ ବଡ଼ ପାମର ।
ଯଜ୍ଞ ଶ୍ରାନ୍ତ ଅଳସ ଅଶୁଦ୍ଧ ଯେ ଜନ
କରମ ଶାନ୍ତିକ ସେ ପ୍ରଶଂସନ୍ତି ଜାଣ ।
ବେଦ ତ ରହିଛି ବ୍ରାହ୍ମଣ ହୃଦ-ତଟେ
ଏଣୁ ତାଙ୍କ ସବୁରି ପୂଜାପାତ୍ର ଅଟେ ।
ପିତୃଦେବତା ଋଷି ସକାଶରୁ ଋଣୀ
ହୋଇଅଛନ୍ତି ଏ ଜଗତ ପ୍ରାଣୀଶ୍ରେଣୀ ।
ଏହାଙ୍କର ମୁକତି ହୋଇବାକୁ ବାଟ
କେବଳ ହୁଅନ୍ତି ଦ୍ୱିଜକୁଳ ଶ୍ରେଷ୍ଠ ।
ବେଦକୁ ସ୍ତୁତିକରି ଯାଗ ଦ୍ୱିଜେ କଲେ
ପଶୁ ଭୁଲେ ସ୍ୱରଗେ ବସଇ ସେ ଭଲେ ।
କପିଳ ବୋଇଲେ ବେଦକୁ ସ୍ତୁତି ଧର୍ମ
ନିଷ୍କାମ କରି କଲେ ଲଭେ ଲୋକ ବ୍ରହ୍ମ ।
କ୍ରୋଧ ହୋଇ ପ୍ରହାର ନ କରେ ଯେ ନର
ପାଣି ପାଦ ସୁପତ ଅଟଇ ତାହାର ।
ମିଥ୍ୟା ଗାଳି ଖଟରୁ ବିବଜ ତହେଲେ
ଲୋକର ତୁଣ୍ଡ ଗୁପ୍ତ ହୁଏ ଜାଣ ଭଲେ ।
ଅଳପ ଆହାର କରଇଟି ଯେ ନର
ଜଠର ଦ୍ୱାର ଗୁପ୍ତ ଅଟଇ ତାହାର ।
ଅବକ୍ଷରେ ଶ୍ୱର୍ଯ୍ୟାଗମନ ପରସ୍ତ୍ରୀ
ଛାଡ଼ିଛି ସେ ଜାଣ ଉପସ୍ଥ ରକ୍ଷାକାରୀ ।

ହସ୍ତ ବାକ ଉପସ୍ଥ ଉଦର ଗୁପତ—
ଦେବାଲେକକୁଟି ଜାଣିବ ଦ୍ୱିଜସୁତ—
ଏମାନ ଗୁପତଟି ଯାହାର ଅଟଇ
ତପ ଦାନ ଯାଗରେ କାର୍ଯ୍ୟ ତା'ର ନାହିଁ ।
ବକଳ ପିନ୍ଧି ତଳେ ଶୁଏ ଯେଉଁ ଦ୍ୱିଜ
ବୋଲାଏ ସେହୁ ଦ୍ୱିଜମାନଙ୍କରେ ରାଜ ।
ନିଷ୍କାମ କର୍ମ କରିବାର ଲୋକ ଫଳ
ଭୂଲରେ ଫଳ ନାହିଁ ଜାଣ ଦ୍ୱିଜବାଳ ।
କରମ ଅନୁଷ୍ଠାନ କରି ଲୋକମାନେ
ଜନମ ମରଣ ଲଭନ୍ତି ଅବିଜ୍ଞାନେ
ଏହା ତ ହେଉଅଛି ତୁମ୍ଭଙ୍କୁ ଗୋଚର
ବତନେ କେତେ ତାହା କରିବା ପ୍ରଚୁର ।
ସ୍ୟୁମରଶ୍ମି ବୋଇଲେ ପ୍ରବୃତ୍ତି ନିବୃତ୍ତି
ମାରଗ ତ ତୁମ୍ଭେ ଜାଣିଛ ମହାମତି ।
ଏହା ମୋହର ଆଗେ ବତାଇଣ କହ
ଶୁଣିବାକୁ ମୋର ଯେ ବଳୁଅଛି ସ୍ନେହ ।
କପିଳ ବୋଇଲେ ହେ ଜାଣୁଛ ତ ତୁମ୍ଭେ
ଦୁଇମାର୍ଗ ଆଉ କହିବା କେତେ ଆମ୍ଭେ ।
ସ୍ୟୁମରଶ୍ମି ବୋଇଲେ ମୋର ଶ୍ରେୟ ପାଇ
ତୁମ୍ଭଙ୍କୁ ଏହି ମାର୍ଗ ପଚ୍ଛରିଲି ମୁହିଁ ।
ତୁମ୍ଭେ ସବୁ କଥାରେ ଅଟ ତ ନିପୁଣ
ଆଗେ କସ କରିବା ଏବେ ତା ବଖାଣ ।
ପ୍ରବୃତ୍ତିମାର୍ଗେ ଶାସ୍ତ୍ର କହିଅଛୁ ଯେତେ
ତାହାକୁ କଲେ ଦୋଷ ନୁହଇ କଞ୍ଚିତେ ।
ଜ୍ଞାନକୁ ଅନୁଗତ ହୋଇଲେ ଜ୍ଞାନଟି
କାଳରେ କରାଏ ବ୍ରହ୍ମାଙ୍କ ସ୍ୱରୂପଟି ।
ଶାସ୍ତ୍ର ନ ଜାଣିଥିଲେ ବୁଡ଼ଇ କାମରେ
ଶାସ୍ତ୍ରଜ୍ଞେର ବୋଲନ୍ତି ତାଙ୍କୁ ବଚନରେ ।
ଯେ ଯେଉଁ ସ୍ୱଭାବରେ ଜନ୍ମ ଥାଏ ପାଇଁ
ସେ ସେହି ସ୍ୱଭାବରେ ଜାଣ ପ୍ରବର୍ତ୍ତଇ ।
ଏହା ଜାଣି ଅଶୁଭକର୍ମ ଛାଡ଼ି ନର
କରୁଥିବ ଶୁଭ କର୍ମକୁ ନିରନ୍ତର ।
ସ୍ୟୁମରଶ୍ମି ବୋଇଲେ ଶାସ୍ତ୍ର ଅର୍ଥ ଜାଣି
ପ୍ରବୃତ୍ତିମାର୍ଗ କଲେ ଲଭେ ଧର୍ମଶ୍ରେଣୀ ।
ଅଜ୍ଞାନୀ ଲୋକେ ଶାସ୍ତ୍ର କଥା ନ ଜାଣନ୍ତି
ମନ ଯହିଁ ପ୍ରବର୍ତ୍ତେ ତାହା ନ ମଣନ୍ତି ।
ଦାନ ଅଧ୍ୟୟନ ଆବର୍ଜ ପ୍ରଜା ଯାଗ
କଲେ ପ୍ରାଣୀଙ୍କର ନୋହେଟି ମୋକ୍ଷଭୋଗ ।
ଏହି ସକାଶରୁ ଯେ କହୁଅଛୁ ମୁହିଁ
ମୋକ୍ଷ-କଥା ମୋତେ ଶିଖାଅ ଋଷିସାଇଁ ।
କପିଳ ବୋଇଲେ ହେ ବେଦର ତତ୍ତ୍ୱଟି
ଯେ ଜାଣିଛି ସେ ଯାଇ ପାଉଛି ବ୍ରହ୍ମାଟି ।
ଯାଗ ଯେ କରୁଅଛି ଧର୍ମ ହେବ ଭଲ
ତାହାକୁ ଜାଣ ଦ୍ୱିଜ ମହାତ୍ୟାଗୀ ବୋଲି ।
ପାପକଥା ଆଶ୍ରା ନ କରି ସାଧୁମାର୍ଗ
ଆଚରି ବ୍ୟୟ କରୁଥିବ ଧନବର୍ଗ ।
କ୍ରୋଧ-ଅହଙ୍କାର-ମତ୍ସର-ବିବର୍ଜିତ,
କରିଥିବ ଅହର୍ନିଶରେ ନିଜ ଚିତ୍ତ ।
କ୍ଷତ୍ରିୟ ନିଜଗୃହେ ହୋଇ ଜ୍ଞାନନିଷ୍ଠ
ହୋଇଲେ ସେ ଧରମ ପାଆନ୍ତି ଗରିଷ୍ଠ ।
ସତ୍ୟକୁ ଆଶ୍ରେକଲେ ଦୁର୍ଦ୍ଧର୍ଷ ହୁଅନ୍ତି
ବୈଶ୍ୟ ଛଳବୁଦ୍ଧି ତେଜି ଧର୍ମେ ଥାନ୍ତି ।
ବେଦନିଷ୍ଠ ପ୍ରଧାନ ହୋଇ କ୍ରୋଧ କାମ
ଛାଡ଼ିଥିଲେ ଗତି ସେ ହୁଅଇ ଉତ୍ତମ ।
ସବୁ ବର୍ଣ୍ଣମାନଙ୍କେ ଧର୍ମ ବ୍ୟତିକ୍ରମ
ନ କରିବ କଲେ ବିନାଶ ଯାଏ ଧର୍ମ ।
ଘରରୁ ବାହାରି କେ ହୁଏ ବ୍ରହ୍ମଋଷି
କେ ଜପ କରଇଟି ହୋଇ ବନବାସୀ ।
ସଂସାରକୁ ଯେବେ କା ପାଆନ୍ତି ଏମାନେ
ମୁକତି ଲଭନ୍ତୁଟି ଜାଣ ଏହି ପୁଣ୍ୟେ ।
ସ୍ୟୁମରଶ୍ମି ବୋଇଲେ ଯାଗ ଦାନ ଭୋଗ
ମାନଙ୍କରେ ବଡ଼ କେ କହ ମହାଭାଗ ।
କପିଳ ବୋଇଲେ ହେ ତ୍ୟାଗ ସୁଖ ପର
ଏ ସୁଖଯାକ କେ ନୁହନ୍ତି ତପସ୍ତାର ।
ସ୍ୟୁମରଶ୍ମି ବୋଇଲେ ଯେଉଁ ଆଶ୍ରମରେ
ରହିଲେ ମୋକ୍ଷ ଏହୁ କହ ମୋ ଆଗରେ ।
କପିଳ ବୋଇଲେ ହେ ଅନୃଶଂସ ଶାନ୍ତି
ଅହିଂସା ହିଂସା ସତ୍ୟ ଆରଜବ କ୍ଷାନ୍ତି ।
ଅକ୍ରୋହାନଭିମାନ ଦମ ଆଦି ନର
ମଧ୍ୟେ ଯେ କରେ ବ୍ରହ୍ମ ହୁଅନ୍ତି ତାହାର ।
ଶାନ୍ତ ପୁରୁଷମାନଙ୍କର ଯେଉଁ ଗତି
ହୁଅଇଟି ବୋଲାଏ ସେ ପରମ ଗତି ।

ବ୍ରହ୍ମକୁ ଯେ ଜାଣଇ ତାକୁ ନମସ୍କାର
ବ୍ରହ୍ମଙ୍କ ପ୍ରଶଂସା କରିବା କି ପ୍ରସ୍ତର ।
ଏଠାରେ ସ୍ୟୂମରଶ୍ମି-କପିଳ-ସମ୍ବାଦ
ସରିଲା କହେ କୃଷ୍ଣସିଂହ ବହୁ ମୋଦ ।

—❋—

## କୁଣ୍ଡଧାର ସମ୍ବାଦ

ଯୁଧିଷ୍ଠିର ବୋଇଲେ ଧର୍ମ ଅର୍ଥ କାମ
ତିନଙ୍କରରେ ଉତ୍ତମ କେ ନର ଉତ୍ତମ ।
ତାହା ମୋର ଆଗରେ କହ ତ ପ୍ରକାଶି
ବେଦ ତ ତିନକଥାଯାକ ଅଛୁ ଘୋଷି ।
ଭୀଷ୍ମ ବୋଇଲେ ଆହେ ପୂର୍ବେ କୁଣ୍ଡଧାର
ଭକତଙ୍କୁ କରିଲେ ଯେଉଁ ଉପକାର ।
ତା ବିଶେଷ ବିଶେଷି କରି ତୁମ୍ଭ ଆଗ
କହିବା ହେ ଶୁଣ ନୃପତି ମହାଭାଗ ।
ନିର୍ଦ୍ଧନ ଦ୍ଵିଜ ଜଣେ ଧନୀ ହେବା ପାଇଁ
ତପ କଲେ ରକତ ମାଉଁସ ଶୁଖାଇ ।
ଦେଖିଲେ ବନେ ଆଗେ ଦ୍ଵିଜକୁଳମୁଖ୍ୟ
ଛିଡ଼ା ହୋଇଅଛନ୍ତି କୁଣ୍ଡଧାର ଯକ୍ଷ ।
ଧନ ଲୋଭରେ ତ ସେ ବେଦ ଜପୁଥିଲେ
ଯକ୍ଷଙ୍କୁ ଦେଖି ଦ୍ଵିଜ ଅତି ହୃଷ୍ଟ ହେଲେ ।
ମନେ କଲେ ଏ ଆଜି ମୋତେ ବହୁ ଧନ
ଦେଇ କରି ସନ୍ତୋଷ କରିବେ ମୋ ମନ ।
ଧୂପ ଦୀପ ଗନ୍ଧମାଲ୍ୟରେ ସେ ଯକ୍ଷଙ୍କୁ
ପୂଜା କରିଲେ ଦ୍ଵିଜ ବହୁ ସରାଗକୁ ।
ଯକ୍ଷ ସେ ପୂଜା ପାଇ ମହାତୋଷ କରି
କହିଲେ ଦ୍ଵିଜଙ୍କର ମୁଖକୁ ଅନାଇ ।
ପଞ୍ଚ ମହାପାତକ କରିଥିଲେ ତରେ
କୃତଘ୍ନ ହେଲେ ଲୋକ ତରିଟି ନ ପାରେ ।
ଆଶାର ଅଧରମ ବୋଲାଉଛି ସୂତ
ଅସୂୟାଟି କ୍ରୋଧକୁ କରୁଅଛି ଘାତ ।
କପଟରେ ଲୋଭ ଯେ ଅଟଇ କୁମର
କୃତଘ୍ନ ଆଣୁ କୁଣ୍ଡା ବୋଲି ମନେ କର ।
ଏଣୁ ସକାଶୁଁ ଜାଣ ତୁମ୍ଭର ଆଦରେ
ବର ଦେବି ଆଜି ମୁଁ ଅତି ପ୍ରମୋଦରେ ।
କୁଣ୍ଡଧାରଙ୍କର ମାୟାରେ ନୃପବର
ଭୁଜ ହୋଇଗଲା ନୟନ ଦ୍ଵିଜଙ୍କର ।

ସେହିକାଳେ ସ୍ଵପ୍ନରେ ଦେଖିଲେ ବ୍ରାହ୍ମଣ
କୃଶ ପାଣ୍ଡୁ ଶୋଇଅଛନ୍ତି ସେ ଆପଣ ।
ସବୁ ପ୍ରାଣୀମାନଙ୍କ ମଧ୍ୟେ ମାଣିଭଦ୍ର-
ଯକ୍ଷ ରହିଛନ୍ତି ବାଞ୍ଛି ଏ ଦ୍ଵିଜ ଭଦ୍ର ।
ଏହାରେ ଦେବତାମାନେ ଶୁଭକର୍ମ
କରିବା ଲୋକଙ୍କ ବଢ଼ାଉଛନ୍ତି ଧର୍ମ ।
କୁଣ୍ଡଧାରଦେବଙ୍କ ପାଦ ଦୁଇ ଧରି
ନମସ୍କାର କରନ୍ତି ବିନୟ ଉଚାରି ।
ଦେବଙ୍କର ବଚନେ ମାଣିଭଦ୍ରଯକ୍ଷ
ବୋଇଲେ ଆହେ କୁଣ୍ଡଧାର ଯକ୍ଷମୁଖ୍ୟ ।
କି ଇଚ୍ଛା ହେଉଅଛି ମାଗ ମୋତେ ତୁମ୍ଭେ
ତୁମ୍ଭ ମନୋରଥ କରିବୁ ପୂର୍ଣ୍ଣ ଆମ୍ଭେ ।
କୁଣ୍ଡଧାର ବୋଲେ ପ୍ରସନ୍ନ ଯେବେ ହେଲ
ମୋ ଭକତ ଦ୍ଵିଜକୁ କର ତୁମ୍ଭେଭଲ ।
ମାଣିଭଦ୍ର ବୋଇଲେ ତୁମ୍ଭ ବ୍ରାହ୍ମଣଙ୍କୁ
ବୋଲୁଅଛୁଁ ଆମ୍ଭେ ଦିଅ ହେ ଧନକୁ ।
ଯେତେକ ଧନ ତୁମ୍ଭ ବ୍ରାହ୍ମଣର ଇଚ୍ଛା
ହେଉଛି ତାହା ଦିଅ କରି ଗୋଟି ଇଚ୍ଛା ।
କୁଣ୍ଡଧାର ବୋଲେ ଏ ଇଚ୍ଛା ନାହିଁ ମୋର
ଧର୍ମରେ ବୁଦ୍ଧି ହେଉ ବୋଲି ଦ୍ଵିଜବର ।
ମାଣିଭଦ୍ର ବୋଇଲେ ଧରମର ଫଳ
ପାଆନ୍ତୁ ତୁମ୍ଭ ସଖା ଦ୍ଵିଜକୁଳବାଳ ।
ଦେବେ ତ କରିଛନ୍ତି ଦ୍ଵିଜଠାରେ ପ୍ରୀତି
ରହିବ ଜାଣ ଯକ୍ଷ ଧର୍ମ ତାଙ୍କ ମତି ।
କୁଣ୍ଡଧାର ତା ଶୁଣି ହୋଇ ଅତି ପ୍ରୀତ
ମନେ କଲେ ପବିତ୍ର ହେଲା ମୋର ମିତ୍ର ।
ବ୍ରାହ୍ମଣଙ୍କ ନିଦ୍ରା ଏ କାଳେ ହେଲା ନାଶ
ମନେ କଲେ ମୋ ତପ-ଫଳୁଁ ସ୍ଵପ୍ନ ଦୃଶ୍ୟ ।
ହୋଇଲା ମୋତେ ଏତେ ଶୁଭକଥା ଆସି
ତପ ଗୁଡ଼ି ଏବେ ହୋଇଲି ବନବାସୀ ।
ବୃତ୍ତେ ନିର୍ବେଦ ହୋଇ ସେ ଦ୍ଵିଜବର
ଅରଣ୍ୟେ ପଶି କଲେ ପୁଣି ତପ ଘୋର ।
ଦେବତା ଅତିଥିଙ୍କି ଆଦରଣା କଲେ
ଭଲ କରି ଧର୍ମକଥାରେ ବୁଦ୍ଧି ଦେଲେ ।
ଫଳ ମୂଳ ତପସ୍ୟା ଗୁଡ଼ି ପାଣି ପିଇ
ଉଦରକୁ ତୋଷି ରହିଲେ ସୁଖ ପାଇ ।

ତପବନ ପିଇ କେତେ କାଳ ସେ ରହିଲେ
ତେବେ ହେଲେ ପ୍ରାଣକୁ ଅଙ୍ଗେ ବହିଥିଲେ ।
ଏଥିଅନ୍ତେ ତାଙ୍କର ହେଲା ଦିବ୍ୟ ଜ୍ଞାନ
ମନେ କଲେ ମୋ ବର ହେଲା ଏବେ ଆନ ।
ଥାଉ ଧନ ସନ୍ତୋଷ ହୋଇ ରାଜ୍ୟଟାଏ
ଯାହାକୁ ଦେବ ବୋଲାଇବ ଲୋକତ୍ରୟେ ।
ଏରୂପେ ମନ କରି କରନ୍ତେ ସେ ତପ
ଆସିଲେ କୁଣ୍ଡଧାର ତାଙ୍କଠାକୁ ନୃପ ।
କୁଣ୍ଡଧାର ଆସନ୍ତେ ଯଥାବିଧି ପୂଜା
କଲେ ସୁଖ ପାଇ କରି ସେ ଦ୍ୱିଜ ମହା ।
କୁଣ୍ଡଧାର ସ୍ୱର୍ଗୀୟ ଚକ୍ଷୁକୁ ଦିଅନ୍ତେ
ଏ ଜଗତ ଲୋକଙ୍କୁ ଦେଖିଲେ ସେ ନେତ୍ରେ ।
ନର୍କରେ ସହସ୍ର ସଂଖ୍ୟାରେ ରାଜଗଣ
ପଡ଼ି ରାଣ୍ଡି ହୁଅନ୍ତି ବିକଳ ହୋଇଣ ।
କୁଣ୍ଡଧାର ବୋଇଲେ କାମନାକୁ କରି
ନରକେ ପଡ଼ିଛନ୍ତି ବହୁ ଦଣ୍ଡଧାରୀ ।
ତୁମ୍ଭେ ଏବେ ଧର୍ମ ଆଚରି ଦ୍ୱିଜବର
ଇହ ପର ଦୁଇଲୋକରୁ ବେଗେ ତର ।
କାମ କ୍ରୋଧ ମଦ ମାତ୍ସର୍ଯ୍ୟ ଲୋକଙ୍କର
ଧର୍ମବୃଦ୍ଧି ଜାଣ ହରୁଛି ନିରନ୍ତର ।
ଦେବତାଙ୍କର ଶ୍ରେଷ୍ଠ ପାଇ କାମ କ୍ରୋଧେ
ଲୋକେ ଦେହ ବହୁଥାନ୍ତି ଅତି ସଧେ ।
ନୋହିଲେ ସବୁଲୋକ ଧରମ ଆଚରି
ସ୍ୱର୍ଗପୁରେ ବସନ୍ତେ ଇନ୍ଦ୍ରାଦିଙ୍କ ଧରି ।
ଦେବତାଙ୍କ ଅନୁଜ୍ଞା ବିନା ଲୋକଙ୍କର
ଧରମରେ ବୁଦ୍ଧି ନୁହଇ ମନେ କର ।
ରାଜ୍ୟ ଧନ ଏ ଦୁଇ ଦେବାର ସାମର୍ଥ୍ୟ
ଥିଲା ତାହା ନ ଦେଇ ଦେଲି ଧର୍ମପଥ ।
ଏହା ଶୁଣିଣ ଦ୍ୱିଜ କୁଣ୍ଡଧାର ଗୋଡ଼େ
ପଡ଼ି ମସ୍ତକେ ଗଡ଼ିଲେ ଧଡ଼ପଡ଼େ ।
ବୋଇଲେ ନ ଜାଣି ଯା ମାଗୁଥିଲି ଧନ
ସେ ଦୋଷକୁ ଛାଡ଼ ହେ ଯକ୍ଷଙ୍କ ରାଜନ ।
କୁଣ୍ଡଧାର ତା ଶୁଣି ବୋଲେ ତୁମ୍ଭ ଦୋଷ
କ୍ଷମିଲି ହେ ଦ୍ୱିଜ ନ ଭାବ ମନେ ତ୍ରାସ ।
ଏତେ କହି ତାଙ୍କୁ ତୋଷି କୋଳ କଲେ
ଅନ୍ତର୍ଦ୍ଧାନ ହୋଇ ସେ ସେହିକ୍ଷଣି ଗଲେ ।
କୁଣ୍ଡଧାର ପ୍ରସନ୍ନେ ବିପ୍ର ଶୂନ୍ୟାଶୀ
ହୋଇ ସବୁ ଲୋକ ଭୁଲିଲେ ଦଣ୍ଡଧାରୀ ।
ଏହେତୁ ଜାଣ ହେ ଧନାଢ୍ୟ ନୋହେ କିଛୁ
ଧର୍ମବନ୍ତ ଲୋକଙ୍କୁ ସବୁ ମିଳୁଅଛୁ ।
ଆହେ ଯୁଧିଷ୍ଠିର ଧର୍ମରେ ତୁମ୍ଭ ବୁଦ୍ଧି
ରହିଛି ଯାହା ମୋକ୍ଷ ପାଇବ ଅବଧି ।
ଧନ ଥିଲେ ଯେ ସୁଖେ କଳାଟିଏ ଥାଏ
ଧର୍ମ କରିବେ ଷୋଳ କଳା ଭୋଗ ପାଏ ।
କୁଣ୍ଡଧାର ଉପାଖ୍ୟାନ ହୋଇଲା ଶେଷ
କହଇ କୃଷ୍ଣସିଂହ ନୃପ ବହି ତୋଷ ।

—※—

## ହିଂସା ନିନ୍ଦା-ସମାଚାର

ଯୁଧିଷ୍ଠିର ବୋଇଲେ ଯାଗ ତପ ଦୁଇ
କଥା କେ ବଡ଼ ତାହା କହ ହେ ବତାଇ ।
ଭୀଷ୍ମ ବୋଇଲେ ଆହେ ଉଞ୍ଛବୃତ୍ତି ଦ୍ୱିଜ
ବାର୍ତ୍ତା କହିଛନ୍ତି ନାରଦ ମୁନିରାଜ ।
ଯାହା ତାହାକୁ ତୁମ୍ଭ ଆଗରେ ବତାଇ
କହିବା ରାଜନ ପାଣ୍ଡବ-କୁଳ-ସାଇଁ ।
ବିଦର୍ଭ ଦେଶରେ ବ୍ରାହ୍ମଣ ଜଣେ ଥିଲେ
ଉଞ୍ଛବୃତ୍ତିକ କରି ଦିବସ ହରିଲେ ।
ଏ ବାହାରେ ସୁଆଁରେ କଲେ ସେହୁ ଯାଗ
ହେବାକୁ ଅବମା ମଣ୍ଡଳେ ମହାଭାଗ ।
ସାବଶୀ ସେହିକାଳେ ଦ୍ୱିଜଠାକୁ ଯାଇ
ବୋଇଲେ ଫଳେ ଯାଗ କର ପ୍ରୀତି ବହି ।
ସେ ଦ୍ୱିଜଙ୍କ ଭାରିଯା-ରୂପ ଅଟେ ଶ୍ୟାମ
ତାଙ୍କୁ ଘେନ ଗଲେ ଫଳରେ ଯାଗୋତ୍ତମ ।
ସେହି କାଳରେ ମୃଗଟାଏ ସେ ବନରୁ
ଆସି କରି କହିଲେ ନୋହି କିଛୁ ଧାରୁ ।
ପଶୁ ନ ମାରି ଯାହା ଯାଗ ତୁମ୍ଭେ କଲ
ଏ ତୁମ୍ଭର ନୋହିଲା ଜାଣ କିଛୁ ଭଲ ।
ମୋତେ ମାରି ଏବେ ଯାଗରେ ବଳି ଦେଇ
ଦେବଙ୍କ ସ୍ୱର୍ଗେ ତୁମ୍ଭେ ବସ ସୁଖ ପାଇ ।
ଏ କାଳେ ସାବଶୀ ଆସି ସେ ଦ୍ୱିଜଠାକୁ
ବୋଇଲେ ଯାଗ କର ମାରି ଏ ମୃଗକୁ ।
ବ୍ରାହ୍ମଣ ବୋଇଲେ ଏ ଅଟେ ସାହାଯ୍ୟ ମୋର
ଜଳରେ ଏହାକୁ ମୁଁ କରିବି ସଂହାର ।

ଏହା ଶୁଣି ସାବର୍ଣ୍ଣୀ ଅନ୍ତର୍ଦ୍ଧାନ ହୋଇ
ସେକ୍ଷଣି ଗଲେ ହେ ପାଣ୍ଡବ-ନରସାଇଁ ।
ମୃଗ ବୋଇଲେ ଆହେ ମାର ମୋତେ ଦ୍ୱିଜ
ଭୁମ୍ଭ ହାତେ ମଲେ ହୋଇବେ ଦେବରାଜ ।
ତୁମ୍ଭଙ୍କୁ ଦିବ୍ୟଚକ୍ଷୁ ଦେଇଅଛୁ ମୁହିଁ
ଦେବଙ୍କୁ ଦେଖ ଆକାଶରେ ଛନ୍ତି ରହି ।
ଏରୂପେ ଅନେକ ବଚନ ମୃଗ କହି
ବନକୁ ଗଲେ ଗୋଡ଼ ମଠରେ ପକାଇ ।
ଆହେ ଯୁଧିଷ୍ଠିର ଧର୍ମଟି ମୃଗ ରୂପେ
ଆସିଣ ବ୍ରାହ୍ମଣଙ୍କୁ କହୁଥିଲେ ଆପେ ।
ବ୍ରାହ୍ମଣ ସେ ମୃଗ ନ ମାରି କଲେ ତପ
ଏଣୁ ଛାଡ଼ିଗଲା ତାହାଙ୍କ ଦେହୁ ପାପ ।
ହିଂସା ନ କରିଣ ଯେ ଧରମ କରଇ
ତହିଁରୁ ବଡ଼ ହୋଇ କଥା ଆଉ ନାହିଁ ।
ହିଂସା ନିନ୍ଦା ଉପାଖ୍ୟାନ ଯେ ହେଲା ଶେଷ
କହେ କୃଷ୍ଣସିଂହ ନରେଶ ବହି ତୋଷ ।

—※—

## ନାରଦ-ଦେବଳ-ସମ୍ବାଦ

ଯୁଧିଷ୍ଠିର ବୋଇଲେ ଧାର୍ମିକ ପାପୀ ଲୋକ
କି ରୂପରେ ହୁଅଇ ନରକ ନାୟକ ।
କି କଲେ ଲୋକ ମୋକ୍ଷପଦକୁ ଲଭଇ
ଏହା ହେ ପିତାମହ କହ ତ ବତାଇ ।
ଭୀଷ୍ମ ବୋଇଲେ ଆହେ ମୋକ୍ଷଧର୍ମ ପାପ
କଥା ଆଦ୍ୟ ପ୍ରାନ୍ତ କରିଣ ଶୁଣ ନୃପ ।
ପଞ୍ଚବିଷୟକୁ ଜାଣିବାର ନିମିତ୍ତେ
ଇଚ୍ଛା ଯେ ଉପୁଜଇ ଜାଣ ଆଗେ ଚିତ୍ତେ ।
ଇଚ୍ଛାରୁ କାମ କାମୁଁ ଉପୁଜଇ ରାଗ
ରାଗରୁ ମୋହ ଜାତ ହୋଇ ମହାଭାଗ ।
ଏହି ସକାଶରୁ ବୁଦ୍ଧିଟି ଧରମକୁ
ଛାଡ଼ଇ ଆଉ କିସ କହିବା ତୁମ୍ଭଙ୍କୁ ।
କପଟରେ ଲୋକ ଯେ ପାପ ଇଚ୍ଛା କରେ
କହିଲେ ଧର୍ମ ଲୋକ ମନେ ତା ନ ଧରେ ।
ପାପୀ ଲୋକମାନଙ୍କ ଇହ ପର ଦୁଇ—
ସ୍ଥାନରେ ସୁଖ ଅଛି ଶାସ୍ତ୍ର କହି ନାହିଁ ।
ପାପୀ ଲୋକ କଥା ତ ଶୁଣିଲେ ରାଜନ
ଧର୍ମ-ଆତ୍ମା କଥାକୁ ଶୁଣ ଦେଇ ମନ ।
ଧର୍ମରେ କୁଶଳଟି ଅଟଇଟି ଯେ ନର
ପୂଜନ୍ତି ତାହାଙ୍କୁ ଦେଖିଲେ ପୁରନ୍ଦର ।
କାମ କ୍ରୋଧ ଛାଡ଼ି ସାଧୁଙ୍କୁ ସେବେ ସେବେ
ନରକ ତାକୁ ବାଧି ନ ପାରଇ ଲବେ ।
ଧର୍ମବନ୍ତ ଲୋକକୁ ମିତ୍ର ଧନ ଦୁଇ
କେବେ ନ ଛାଡ଼ନ୍ତି ପାଣ୍ଡବ ନରସାଇଁ ।
ଧର୍ମଫଳ ପାଇ ନିର୍ବେଦ ଜାତ ହୋଏ
ନିର୍ବେଦ ସକାଶରୁ ମୋକ୍ଷକୁ ସେ ପାଏ ।
ଏ ଯେଉଁ ସିନ ବାବୁ କହୁଛୁ ତୁମ୍ଭଙ୍କୁ
ଧର୍ମ ବିନା ଅଧର୍ମ ନ ଆଣ ମନକୁ ।
ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ମୋକ୍ଷର କି ଉପାୟ ମୋ ଆଗରେ କହ ।
ଭୀଷ୍ମ କହିଲେ ହେ ମୋକ୍ଷକୁ ପନ୍ଥାଟିଏ
ଅଛି ତାହା କହିବା ଶୁଣ ଏକଲୟେ ।
କ୍ଷମାରେ କ୍ରୋଧ ସଙ୍କଳ୍ପ ବର୍ଜନେ କାମ
ନାଶ କରିବାର ଆହେ ନୃପତି-ଉତ୍ତମ ।
ସତ୍ତ୍ୱକୁ ସେବା କରି ନିଦ୍ରା ଉପେକ୍ଷିବ
ସାବଧାନ ହୋଇଣ ଭୟକୁ ନାଶିବ ।
ଇଚ୍ଛା ସୁଖ ଦୁଃଖଙ୍କ କାମେ ନିବର୍ତ୍ତାଇ
ରଖିବ ଯେ ବିବେକୀ ହେବ ନରସାଇଁ ।
ସନ୍ତୁଷ୍ଟ ହୋଇ ଲୋଭ ମୋହକୁ ଛାଡ଼ିବ
ତତ୍ତ୍ୱଜ୍ଞାନେ ବିଷୟ-ଭଜନ୍ତୁ ଛଡ଼ାଇବ ।
ସଙ୍ଗ ବିବର୍ଜନ କରିବ ଆଶା ଦୂର
ଅନିତ୍ୟ ବୋଲି ସେହି କରିବ-ଅନ୍ତର ।
ମଉନ ହୋଇ ନ କହିବ କିଛି କଥା
ରହିବଟି ଧ୍ୟାନରେ ଟେକିଦେଇ ମଥା ।
ବାଣୀ ମନ ବୁଦ୍ଧିକୁ ସଂଯତ କରିବ
ବୁଦ୍ଧିଟିକ ଜ୍ଞାନ-ଚକ୍ଷୁରେ ଦେଖୁଥିବ ।
କାମ କ୍ରୋଧ ଭୟ ସ୍ୱପନ ଆଳସ୍ୟକୁ
ଯୋଗ ଦୋଷ ବୋଲିଣ ଛାଡ଼ିବ ଏହାଙ୍କୁ ।
ଧ୍ୟାନ ଅଧ୍ୟୟନ ଦାନ ଲଜ୍ଜା ଆର୍ଜବ
କରୁଥିବ ଯୋଗ ହେବାକୁ ବହି ଭାବ ।
ଏହିମାନେ ଯେ ଜ୍ଞାନ-ଅଗ୍ନିଟି ଅଟନ୍ତି
ପାପ-ତୃଣବନକୁ ଦହି ପକାଅନ୍ତି ।
ଏହି କଥା ଆହେ ରାଜନ ମୋହ ତ୍ୟାଗ
ବୋଲିଣ ମନେ ଯେବେ କହି ହୁଏ ଯୋଗ ।

ଏହିରୂପେ ପୂର୍ବେ ଦେବଳ ଆଗରେ
ନାରଦ କହିଛନ୍ତି ବସି ସଭାଘରେ ।
ନାରଦ ପୂର୍ବେ ଦେବଳଙ୍କୁ ପଚାରିଲେ
ବିଶ୍ୱ କେ ସରଜିଛି କହ ମୋତେ ଭଲେ ।
ଦେବଳ ବୋଇଲେ ହେ ବିଶ୍ୱ କେ ସର୍ଜିଛି
ମହାଭୂତ ପଞ୍ଚଟି ଶାସ୍ତ୍ର ବୋଲିଅଛି ।
ପଞ୍ଚମହାଭୂତେ ଯେ ଅନନ୍ତ ଅଚଳ
ନିତ୍ୟ ବୋଲି କରିଣ ଜାଣ ଦ୍ୱିଜ ବାଳ ।
କାଳ ଭାବ ଅଭାବ ଜଗତ କାରଣ
ଅନନ୍ତ ବୋଲନ୍ତି ନାରଦ ଦ୍ୱିଜ ଜାଣ ।
ପଞ୍ଚମହାଭୂତେ ଗଠିତ ଦେହ ହୋଏ
ସେ ଦେହ ଅନ୍ତେ ପୁଣି ପଞ୍ଚଭୂତ ପାଏ ।
ଏ ଦେହଟି କାହାର ନୁହଇ ନାରଦ
କେବଳ ଅଟଇଟି ସୁଖ-ଦୁଃଖ ପ୍ରଦ ।
ଦେହରେ ନିକ କ୍ଷୟ ବୃଦ୍ଧି ହେଉଅଛି
ଜୀବର ବା । ନାହିଁ ଜାଣ ଦ୍ୱିଜବରି ।
କରମ-କ୍ଷୟ କରି ଜ୍ଞାନ ଆଚରିଲେ
ଜୀବର ମୁକତିଟି ଜାଣ ହୁଏ ଭଲେ ।
ପୁଣ୍ୟ ପାପ କ୍ଷୟପାଇ କ ସାଂଖ୍ୟ ଜ୍ଞାନ
ଏରୂପେ କହିଛନ୍ତି ଜାଣ ତପୀଜନ ।
ପୁଣ୍ୟପାପ କ୍ଷୟ ହୋଇଲେଟି ବ୍ରହ୍ମକୁ
ଲଭଇ ନର ବୋଲି ଆପଣା ମନକୁ ।
ନାରଦ-ଦେବଳ-ସମ୍ବାଦ ସମାପତ ।
ହେଲା କହଇ କୃଷ୍ଣସିଂହ ନରପତ ।

—*—

## ଜନକ-ମାଣ୍ଡବ-ସମ୍ବାଦ

ଯୁଧିଷ୍ଠିର ବୋଇଲେ ଦ୍ରବ୍ୟକଲଶୀ ହୋଇ
ଭୁନ୍ଦର ଭୁଲେ ଜ୍ଞାନ ମାଇଲଇଁ ମୁହିଁ ।
ଏ ପାପ ମୁକ୍ତ ହୋଇ ଅର୍ଥରୁ ତୃଷ୍ଣାରୁ
କେଉଁ ନିବର୍ତ୍ତାଇ କହ ତା ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ଆହେ ଜନକ ମାଣ୍ଡବ୍ୟ
ସମ୍ବାଦକୁ କହିବା ଶୁଣ ବହିଭାବ ।
ଆପଣା ଘର ପୋଡ଼ି ଯିବାରୁ ଜନକ
ଶୁଣିକରି ବୋଇଲେ ନାହିଁ ମୋର ତକ ।
ମୋ ଦେହ ତ ଯେବେ ମୁଁ ସଙ୍ଗରେ ବସିଛି
ଘର ପୋଡ଼ିଗଲେ ମୋହର କ ଯାଉଛି ।

କାମସୁଖ ସ୍ୱର୍ଗୀୟ ସୁଖ ତୃଷ୍ଣା ନାଶ
ସୁଖ ତୁଲେ ସମାନ ନୁହଇ ପ୍ରକାଶ ।
ଲୋକର ଧନ ଯେତେ ବଢୁଥାଏ ନିତ
ତୃଷ୍ଣା ତେତେ ବଢୁଥାଏ ହେ ନରପତ ।
ମମତା କରିଥାଏ ଯେଉଁ କଥାଟିରେ
ସେ ନାଶ ଗଲେ ବଢ଼େ ହୃଦୟରେ ।
କାମକୁ ଆଶ୍ରା ନ କରିବ କେବେ ନର
କାମ ସକାଶରୁ ହୁଅଇ ଦୁଃଖ ଘୋର ।
ଯେ ଜାଣିବା ହେବ ସେ ସବୁକୁ ଛାଡ଼ିବ
ଜ୍ଞାନ କଥାଟିରେ ଏକାଗ୍ରଚିତ୍ତ ହେବ ।
ଧର୍ଯ୍ୟ ମିଥ୍ୟା ପ୍ରିୟ ଅପ୍ରିୟ ଭୟାଭୟ
ଶୋକାନଳେ ନ ବୁଡ଼ାଇବଟି ହୃଦୟ ।
ଚନ୍ଦ୍ର ପରି ନିଜ ଚରିତ ଯେବେ ହୋଏ
ଇହ ପର ଦୁଇ ଲୋକରେ ସୁଖ ଥାଏ ।
ଏରୂପେ ଜନକଙ୍କ ଶୁଣିଣ ବଚନ
ଜ୍ଞାନବଳେ ମାଣ୍ଡବ୍ୟ ଗଲେ ମୋକ୍ଷସ୍ଥାନ ।
ମାଣ୍ଡବ୍ୟ-ଜନକ-ସମ୍ବାଦ ହେଲା ଶେଷ
କୃଷ୍ଣସିଂହ ନୃପ ସୁମରେ ପୀତବାସ ।

—*—

## ହାରୀତ-ମହର୍ଷି-ସମ୍ବାଦ

ଯୁଧିଷ୍ଠିର ବୋଇଲେ କି କଥା ଆଚରିଲେ
ପରମପଦ ଲୋକ ପାଏ, କହ ଭଲେ ।
ଭୀଷ୍ମ ବୋଇଲେ ହେ ମୋକ୍ଷ ଧର୍ମରେ ରତ
ହୋଇଣ ଜିତେନ୍ଦ୍ରିୟ ହେଲେ ହୋଏ ମୁକ୍ତ ।
ଲାଭ ଅଲାଭରେ ସମାନ ବୁଦ୍ଧି କରି
ଲୋକ ଆଗ ହୋଇବ [illegible] ।
ପ୍ରତ୍ୟକ୍ଷେ ଅପ୍ରତ୍ୟକ୍ଷେ ବଚନ-ମନରେ
ପରନିନ୍ଦାଟି ନ ବାଢ଼ିବ ହୃଦୟରେ ।
ସବୁପ୍ରାଣୀଠାରେ କରିବ ମିତ୍ରବୁଦ୍ଧି
ହେବାକୁ ମନ ଥିଲେ ଜଗତେ ପ୍ରସିଦ୍ଧି ।
ଗାଳି ଦେଲେ ତାହାକୁ ପକାଇ ଦେହରେ
ନେଉଥିବ ରାଗ ନ କରି ହୃଦୟରେ ।
ଗାଳି ଦେଉଥିବ କ୍ରୋଧ ନ ହେଉଥିବ
ଏମନ୍ତ ଲୋକରେ ଅସୂୟା ନ କରିବ ।
ଛଅଢ଼ ବେଳ ହେଲେ ଯିବ ଭିକ୍ଷା ମାଗି
ଯେ ଜନ ହୋଇଥିବ ଉତ୍ତମ ବୈରାଗୀ ।

ସେତେକରେ ପ୍ରାଣ ରହିବ ଏ ଲୋକର
ସେତେକ ମାଗିକରି କରିବ ଆହାର ।
ନ ପାଇଲେ ପାଇଲେ ଦୁଃଖ ସୁଖ ଦୁଇ
ବିବର୍ଜିତ କରିବ ନୋହିବ ଶୋଷାଇ ।
ଅଳ୍ପ ଦୋଷ ଗୁଣକୁ ସୁଖେ ନ ବାଢିବ
ଏକାନ୍ତରେ ବସିଣ ଏକାନ୍ତେ ଶୋଇବ ।
ମୌନ ବ୍ରତ କରି ନିର୍ଭୟ ହୃଦୟରେ
ମୁଣ୍ଡ ଟେକି ଜପ କରିବ ନିରନ୍ତରେ ।
ଭିକ୍ଷୁ ଆଶ୍ରମରେ କହିବା କଥାଯାକ
ସନ୍ନ୍ୟାସ-ଆଶ୍ରମେ ତା କରି ମଧ୍ୟ ଲୋକ ।
ଏ ମୋକ୍ଷଶାସ୍ତ୍ର ବସି ହାରୀତ ମହର୍ଷି
ଲୋକଙ୍କ ହିତ ପାଇଁ ମୁଖେ ଛନ୍ତି ଭାଷି ।
ହାରୀତଙ୍କ ଗୀତା ସମ୍ପୂର୍ଣ୍ଣ ଏଠାରେ
ହେଲା କୃଷ୍ଣସିଂହ କରଇ ପ୍ରମୋଦରେ ।

—※—

## ବୃତ୍ରାସୁର ସମ୍ବାଦ

ଯୁଧିଷ୍ଠିର ବୋଇଲେ ଲୋକ ମୋତେ ଧନ୍ୟ
ବୋଲୁଅଛି, ମୋ ମତେ ମୁଁ ଅଟେ ଅଧନ୍ୟ ।
ଜ୍ଞାତି ପୁତ୍ର ନାତି ବାନ୍ଧବଙ୍କୁ ମରାଇ
ଶରୀର ଧରିବାରେ କିଛି କାର୍ଯ୍ୟ ନାହିଁ ।
କେଉଁ କାଳରେ ଆମ୍ଭେ କରିବୁ ସନ୍ନ୍ୟାସ
ସେ କାଳ ପିତାମହ କହ ଉପଦେଶ ।
ଭୀଷ୍ମ ବୋଇଲେ ଆହେ କାଳରେ ସନ୍ନ୍ୟାସ
କରିବ ଶୀଘ୍ର ଶୁଣ ନରକୁଳ-ଈଶ ।
କର୍ମ ଫଳେ ଦେହ ତ ଆବୃତ୍ତ ହୋଇଛି
ଏଣୁ ଜନ୍ମ ମରଣ ଦୁହିଁଙ୍କୁ ଲଭୁଛି ।
ଯେଉଁକାଳେ ପ୍ରାଣୀ ଅଜ୍ଞାନ ନାଶ କରେ
ଜ୍ଞାନରେ ସେକାଳେଟି ମିଶଇ ବ୍ରହ୍ମରେ ।
ଆପଦ ବିଷୟରେ ବୃତ୍ର ସୁର କଥା
କହିବା ଶୁଣ ହେ ପାଣ୍ଡବ ମହାରଥୀ ।
ଭ୍ରଷ୍ଟ ଧୈର୍ଯ୍ୟ ହୋଇ ରହନ୍ତେ ବୃତ୍ରାସୁର
ପଚାରିଲେ ତାହାଙ୍କୁ ଶୁକ୍ର ମୁନିବର ।
ପରାଜିତ ହୋଇ ରହିଲ ଭ୍ରଷ୍ଟ ହୋଇ
କହ ଦୁଃଖ ହୃଦରେ ହେଉଛି କି ନାହିଁ ।
ବୃତ୍ର ବୋଇଲେ ମୁଁ ପ୍ରାଣୀଙ୍କ ଗତି ଦେଖି
ହେଉ ନାହିଁ ହେ ଶୁକ୍ର ଋଷି ସୁଖୀ ଦୁଃଖୀ ।
ପ୍ରେରିତ ହୋଇ କାଳେ ପ୍ରାଣୀଏ ନର୍କରେ
ପଡୁଅଛନ୍ତି ଶୁଣୁଥାଇଁ ଶ୍ରବଣରେ ।
ଦୁଷ୍କୃତ ଯେ ଅବଶେଷରେ ତୀର୍ଯ୍ୟଗ—
ଯୋନି ଜନ୍ମ ହୋଇ ଲଭନ୍ତି ସୁଖଭୋଗ ।
କର୍ମକୁ ଅନୁରୂପ ହୋଇ ଜନ୍ମ ପାଏ
ସୁଖ ଦୁଃଖକୁ ଭୁଞ୍ଜି ପରଲୋକ ଯାଏ ।
ଶୁକ୍ର ବୋଇଲେ ଆହେ ଏଡ଼େ ଜ୍ଞାତସାର
ହୋଇଲେ କିରୂପେ ହେ କହ ବୃତ୍ରାସୁର ।
ବୃତ୍ରାସୁର ବୋଇଲେ ମୋର ବୃତ୍ତିଯାକ
ତୁମ୍ଭେ ତ ଜାଣିଅଛ ଋଷିଙ୍କ ତିଳକ ।
ତପ କରି ମୁହିଁ ସମ୍ପତ୍ତି ଅର୍ଜ୍ଜିଥିଲି
ଦୈବ ବାମ ହେବାରୁ ତାହା ହରାଇଲି ।
ଧୈର୍ଯ୍ୟ ଧରିବାରୁ ନ କରୁଛି ଶୋକ
କରି ସୁଖ ଦୁଃଖର ବିବେକାବିବେକ ।
ଇନ୍ଦ୍ରଙ୍କର ଭୁଲେ ଯୁଝିବା ଇଚ୍ଛା କଲି
ସାକ୍ଷାତରେ ନୟନେ ହରିଙ୍କି ଦେଖିଲି ।
ତାଙ୍କୁ ଦେଖି ଭାବିଲି ମୋହର ସୁକୃତ
ନ ଥିଲେ କି ହୁଅନ୍ତେ ଏ ଆସି ନେତ୍ର ।
କେଉଁ କରମ କରି ଐଶ୍ୱର୍ଯ୍ୟ ପାଇଲି
କେଉଁ କର୍ମ କରିଣ ହରିଙ୍କି ଦେଖିଲି ।
କେଉଁ କର୍ମ କରି ହୋଇଲି ମୁହିଁ ଦୁଃଖୀ
ଏହା ମୋତେ କହ ତ ଉପ୍ରୋଧ ଉପେକ୍ଷି ।
ଶୁକ୍ର ବୋଇଲେ ଆହେ ପୃଥ୍ୱୀଦେବୀ ପାଦ—
ଆକାଶ ବାହୁ ସ୍ୱର୍ଗ ଶିର ଅପ୍ରମାଦ—
ପ୍ରମାଦ ଯାହାଠାରେ ନାହିଁ ସାର କରି
ସେ ହରିଙ୍କି କହୁଛି ନମସ୍କାର କରି ।
ଏ କାଳେ ସନତ୍କୁମାର ଋଷିବର
ଧାଇଁଗଲେ ଯେଉଁଠାରେ ଥିଲେ ବୃତ୍ରାସୁର ।
ବୃତ୍ରାସୁରଠାରୁ ସମ୍ଭାବନା ପାଇ
ବହୁମୂଲ୍ୟ ଆସନେ ବସିଲେ ସେ ଯାଇ ।
ଶୁକ୍ର ଦେଖି ସନତ୍କୁମାର ଋଷିବର
ବୋଇଲେ ଭାଗ୍ୟ ହେଲା ଆଜ ହେ ଅସୁର ।
ବୃତ୍ରାସୁର ଆଗରେ ବିଷ୍ଣୁଙ୍କ ମାହାତ୍ମ୍ୟ
ପ୍ରକାଶ କରି ଆହେ ଋଷିଙ୍କ ଉତ୍ତମ ।
ଏହା ଶୁଣି ସନତ୍କୁମାର ମହର୍ଷି
ବିଷ୍ଣୁଙ୍କର କଥା ଭାଷିଲେ ହସି ହସି ।

ଭୂତ ଗ୍ରାସ ସୃଷ୍ଟି ସଂହାର ନାରାୟଣ
କରୁଅଛନ୍ତି ହେ ବୃତ୍ରାସୁର ଜାଣ ।
ତପସ୍ୟାରେ ଯାଗରେ ନ ପାଇ ବିଷ୍ଣୁଙ୍କୁ
ପାଇ ଯତ୍ନକଲେ ଇନ୍ଦ୍ରିୟ-ସଂଯମକୁ ।
ଶତ ଶତ ଜନ୍ମରେ ଜୀବ ଶୁଦ୍ଧ ହୋଏ
ସୁକୃତ ଅଗ୍ନିରେ ଦହନ ହେଲେ ପାପେ ।
ଯେଉଁ ରୂପରେ ଲୋକ କରନ୍ତି କରମ
ସର୍ବ୍ବ ସକାଶରୁ ସେ ହୁଅଇ କରମ ।
ଯାହାଠାରୁ ଯାଇ ରହନ୍ତି ଆଶ୍ରେ କରି
ଏ ସବୁ ବତାଇ କହିବା ଦଣ୍ଡଧାରୀ ।
ଅବ୍ୟୟ ଅକ୍ଷର ବୋଲନ୍ତି ନାରାୟଣ
ଜଗତକୁ ସରଜିବାରେ ସେ କାରଣ ।
ଆକାଶ ମସ୍ତ ସ୍ୱର୍ଗ ତାଙ୍କର ଶରୀର
ବୋଲିକରି ମନେ କର ହେ ଦୈତ୍ୟେଶ୍ୱର ।
ରଜ ତମ ସତ୍ତ୍ୱ ତାହାଙ୍କୁ ଜାଣ କହି
ତାଙ୍କ ବିନା ଆଉ ସଂସାରେ ଗତି ନାହିଁ ।
ପରମବ୍ରହ୍ମ ତପ ଯାଗ ମୋକ୍ଷ ଫଳ
ଋତ୍ୱିକ ବ୍ରହ୍ମା ବିଷ୍ଣୁ ରୁଦ୍ର ମହାକାଳ ।
ତାହାଙ୍କୁଟି କହନ୍ତି ଆହେ ବୃତ୍ରାସୁର
ଏ ବାହାରେ ସର୍ବ୍ବ ପୁରଙ୍କ ସେ ଈଶ୍ୱର ।
ଏକା ହୋଇ ବଶରେ ସପ୍ତ ବ୍ରହ୍ମାଣ୍ଡଟି
ରଖିଛନ୍ତି ଦେଖାଇ ନିଜ ମହିମାଟି ।
ଜ୍ଞାନ ବିନା ପ୍ରାଣୀଏ ବିଷ୍ଣୁ ଜାଣିବାକୁ
ଏ ମହୀରେ ଅଛୁକେ ନ ଆସେ ମନକୁ ।
ଏରୂପେ ନାରାୟଣ ମହାତମ କଥା
ଶୁଣିଲ ତ ମୋଠାରୁ ବୃତ୍ର ମହାରଥୀ ।
ବୃତ୍ର ବୋଇଲେ ମୁହିଁ ଶୁଣି ତୁମ୍ଭ ବାଣୀ
ନିଷ୍ପାପ ହୋଇଲି ହେ ଜାଣ ଋଷିମଣି ।
ଏତେ କହିଣ ବୃତ୍ର ଯୋଗରେ ପ୍ରାଣକୁ
ତ୍ୟାଗ କରି ଗଲେ ବ୍ରହ୍ମାଙ୍କ ସମୀପକୁ ।
ଯୁଧିଷ୍ଠିର ବୋଇଲେ ବୃତ୍ର-ଅସୁରକୁ
କହିଲେଟି ସନତ୍କୁମାର ଯାହାଙ୍କୁ ।
ବିଷ୍ଣୁ ବୋଲି କରି ବିଷ୍ଣୁ ଟିକ ଏହି
ବସୁଦେବ ସୁତ ହେ କହ ତା ବତାଇ ।
ଭୀଷ୍ମ ବୋଇଲେ ଆହେ ସନତକୁମାର
ଯେ ବିଷ୍ଣୁ କହିଲେ ସେ ବିଭୂମନେକର ।

ସେ ବିଷ୍ଣୁଙ୍କ ଚତୁର୍ଥ ଭାଗୁଁ ଅର୍ଦ୍ଧେ ଭାଗ
କୃଷ୍ଣ ବୋଲିକରି ଜାଣ ହେ ମହାଭାଗ ।
ଚତୁର୍ଥଭାଗୁଁ ଯେଉଁ ଅଧିକ ରହିଲେ
ସେ ବିଷ୍ଣୁ ପାଳନା କରନ୍ତି ଜାଣ ଭଲେ ।
ଦିନ ଅନ୍ତରେ ସେ ଯେ ଜଳରେ ଶୁଅନ୍ତି
ରାତ୍ରଅନ୍ତେ ଜଗତ ସର୍ଜନା କରନ୍ତି ।
ଯୁଧିଷ୍ଠିର ବୋଇଲେ ବୃତ୍ରାସୁର ଯୋଗ
ସାଧିଣ ପାଇଲେ ବ୍ରହ୍ମକୁ ମହାଭାଗ ।
ଆମ୍ଭେ ତ ଯୋଗ ସାଧନକୁ ନାହୁଁ କରି
ଆମ୍ଭର ତ ଗତି ନୋହିବ ସେହିପରି ।
କି କରିବୁ ତେବେ କହ ହେ ପିତାମହ
ନରକ ଭୟେ ଆମ୍ଭେ ହେଉଅଛୁ ମୋହ ।
ଭୀଷ୍ମ ବୋଇଲେ ଆହେ ସତ୍ୟବନ୍ତ ତୁମ୍ଭେ
ଦେବଲୋକ ବସିବ ଜାଣୁଅଛୁଁ ଆମ୍ଭେ ।
ଦେବଙ୍କର ସଙ୍ଗତେ ବ୍ରହ୍ମେ ହେବ ଲୀନ
ଆହେ ଯୁଧିଷ୍ଠିର ଏଥିରେ ନାହିଁ ଆନ ।
ଏଠାରେ ବୃତ୍ରଗୀତ ହେଲା ସମାପତ
କହଇ କୃଷ୍ଣସିଂହ ନରକୁଳପତି ।

—❋—

## ବୃତ୍ରାସୁର ବଧ

ଯୁଧିଷ୍ଠିର ବୋଇଲେ ବୃତ୍ର ତ ଅସୁର
କରୂପରେ ଛାଡ଼ି ପାରିଲେ ସେ ଈଶ୍ୱର ।
ବିଷ୍ଣୁଙ୍କୁ ଆଶ୍ରେ କରି ଇନ୍ଦ୍ରଙ୍କର ହାତେ
ବୃତ୍ର ମରି କେହ୍ନେ ଶୋଇଲେ ରଣ-ପଥେ
ଏହା ମୋର ଆଗେ ବିସ୍ତାରି ପିତାମହ
କହ ଶୁଣିବାକୁ ମୋ ବଢ଼ୁଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ମହାକାୟ ବଳି ଜନ୍ମିଲେ ବୃତ୍ରାସୁର ।
ଇନ୍ଦ୍ର ତାଙ୍କଠାକୁ ଦେବଙ୍କୁ ସଙ୍ଗେ ନେଇ
ଯୁଦ୍ଧେ ବାହାରିଲେ ହୋଇଣ ଅଭିମାନୀ ।
ଦେଖିଲେ ବୃତ୍ରାସୁର ପାଞ୍ଚଶ ଯୋଜନ
ଉପରକୁ ବଢ଼ିଛି ବ୍ୟୋମ କରି ଛନ୍ନ ।
ଗଣ୍ଡି ଯେ ମୋଟ ତିନି ଯୋଜନ ହୋଇଛି
ତିନି ଲୋକ ମନେ ସେ ଭୟ କରାଇଛି ।
ତାହା ଦେଖିଣ ଇନ୍ଦ୍ର ହୋଇ ଥରହର
ମନେକଲେ ମୋ ପ୍ରାଣ ନେବ ସେ ଅସୁର ।
ଇନ୍ଦ୍ର ବୃତ୍ରାସୁରଙ୍କ ରୂପେ ଭୟ ପାଇ
ରହିଲେଟି ମୁହିଁ ଆଗକୁ ନ ପକାଇ ।

ତେବେ ଅସୁରେ ସେ ସମୟେ ଗରଜଣ
କରି ବଜାଇଲେ ଯେ ଯାହା ବାଦ୍ୟମାନ ।
ଇନ୍ଦ୍ରଙ୍କୁ ଦେଖି ବୃତ୍ରାସୁର ଭୟ ଛାଡ଼ି
ଗରଜନନାଦ କଲେ ନଖକୁ ମୋଡ଼ି ।
ବୃତ୍ର ବାସବଙ୍କର ହୋଇଲା ସମର
ତା ଦେଖି ତିନଲୋକ ହୋଇଲେ କାତର ।
ସେ ଯୁଦ୍ଧ ଦେଖିବାକୁ ବ୍ରହ୍ମା ଘେନ ଋଷି
ସଙ୍ଗତରେ ହୋଇଲେ ଆସି ଶୂନ୍ୟ-ବାସୀ ।
ଅପସରାମାନେ ଆରୋହଣ ବିମାନ
ମଣ୍ଡି ଦେଲେ ଗଗନରେ ସେ ଯୁଦ୍ଧ ଅଙ୍ଗନ ।
ବୃତ୍ରାସୁର ଆକାଶେ ରହି ମେଘ ପରି
ପଥର ବରଷିଲେ ରୋଷ ମନେ ଧରି ।
ତେବେ ତାହା ଦେଖିଣ ବରଷିଣ କାଣ୍ଡ
ପଥରଟିମାନଙ୍କୁ କଲେ ଖଣ୍ଡ ଖଣ୍ଡ ।
ବୃତ୍ରାସୁର ମାୟାରେ ଇନ୍ଦ୍ର ମୋହ ହୋଇ
ଭୁଲ ହୋଇ ରହିଲେ ବଳ ନ ଦେଖାଇ ।
ବଶିଷ୍ଠ ତାହା ଦେଖି ରଥନ୍ତର ସାମ
ପଢ଼ି ବୋଇଲେ ଆହେ ଦେବଙ୍କ ଉତ୍ତମ ।
ମୋହ ପାଇ କପାଇଁ ଯୁଦ୍ଧରେ ରହିଛ
ତୁମ୍ଭ ସଙ୍ଗେ ଯୁଦ୍ଧ ଏ ଦୈତ୍ୟ ଅଛି ଇଚ୍ଛା ।
ବ୍ରହ୍ମା ବିଷ୍ଣୁ ଯେ ରୁଦ୍ର ତୁମ୍ଭ ବଳ ଦ୍ରଷ୍ଟି
ଅଛନ୍ତି ତୁମ୍ଭେ ଯୁଦ୍ଧୁ ନ ଯାଅ ପଳାଇ ।
ବୃହସ୍ପତି ଆଦି ଋଷି ଏ ତୁମ୍ଭ ଜୟ
ହେବୟରେଟି କରି ଅଛନ୍ତି ଉଦୟ ।
ଏରୂପେ ବଶିଷ୍ଠ ବଚନ କର୍ଣ୍ଣେ ଶୁଣି
ଦୁଇ ବାହୁ ନଖ ମୋଡ଼ିଲେ ବଜ୍ରପାଣି ।
ଆପଣା ଦେହ ବଳେ ବୃତ୍ରାସୁର ମାୟା
ଧ୍ୱଂସି ପକାଇଲେ ଶଚୀ ଯାହାର ପ୍ରିୟା ।
ବୃହସ୍ପତି ଋଷିଙ୍କି ଘେନ ସଙ୍ଗତରେ
କହିଲେ ରୁଦ୍ର ଆଗେ ସହେ ଧ ଚତ୍ତରେ ।
ଆଜକ ତୁମ୍ଭେ ବନ୍ଧ ମୂନ-ରକ୍ଷା ବାଣ
ଘେନ ପକାଅ ଆହେ ବୃତ୍ରାସୁର-ପ୍ରାଣ ।
ରୁଦ୍ର ବୃହସ୍ପତିଙ୍କ ବଚନ ଘେନଲେ
ଦେହରୁ ତେଜ କାଢ଼ି ଜ୍ୱର ତାକୁ ଦେଲେ ।
ସେ ଜ୍ୱର ଇନ୍ଦ୍ରଙ୍କ ଆଜ୍ଞାରେ ବୃତ୍ରାସୁର
ଦେହରେ ରହି ହୃଦ କଲା ଥର ଥର ।
ଏହିକାଳେ ଇନ୍ଦ୍ରଙ୍କ ବଜ୍ରଟିରେ ଯାଇ
ଆବର୍ଭୂତ ହେଲେ ଲକ୍ଷ୍ମୀଙ୍କ ପ୍ରାଣସାଇଁ ।
ଏହା କହି ଇନ୍ଦ୍ରଙ୍କୁ ବଶିଷ୍ଠଙ୍କ ଭୂଲେ
ବୃହସ୍ପତି ଇନ୍ଦ୍ରଙ୍କ ସମୀପକୁ ଗଲେ ।
ବୋଇଲେ ଭୟ ଛାଡ଼ ହୁଅ ଶଚୀବର
କରି ବୃତ୍ରାସୁରକୁ ବଜ୍ରରେ ସଂହାର ।
ଶିବ ବୋଇଲେ ହେ ଇନ୍ଦ୍ର ମୋ ବୋଲ ପାଇ
ବୃତ୍ରାସୁର-ଜୀବନ ହିଅ ହେ ବଢ଼ାଇ ।
ବୃତ୍ରାସୁର ପୂର୍ବରେ ଷାଠିଏ ସହସ୍ର-
ବର୍ଷ ତପ କରି ବ୍ରହ୍ମାଙ୍କୁ କଲେ ତୋଷ ।
ବ୍ରହ୍ମାଙ୍କର ବରେ ଏ ମହାବଳୀ ହୋଇ
ଦଳଦେଲେ ଦେବ-ସୈନ୍ୟଙ୍କୁ ସ୍ୱର୍ଗ ଥାଇଁ ।
ମୋ ତେଜ ଏବେ ତୁମ୍ଭଠାରେ ରହିଲେନ
ଯାଅ ସ୍ୱର୍ଗ-ପୁରକୁ ବୃତ୍ର-ପ୍ରାଣ ଘେନ ।
ଇନ୍ଦ୍ର ବୋଇଲେ ଆହେ ଆଜ୍ଞାଦେଲ ଯେବେ
ଦେଖ ଏବେ କ୍ଷଣେ ମାରିବି ବୃତ୍ର ତେବେ ।
ଇନ୍ଦ୍ର ଏହି ବଚନ ଶୁଣି ଦେବସେନ୍ୟ
ଦୁନ୍ଦୁଭି ବଜାଇଣ କଲେ ଶଙ୍ଖ ସ୍ୱନ ।
ଇନ୍ଦ୍ରଙ୍କର ରୂପ କୋଟିଏ ସୂର୍ଯ୍ୟ ପରି
ସେ କାଳେ ଦିଶିଲା ପାଣ୍ଡବ ଦଣ୍ଡଧାରୀ ।
ଜ୍ୱର ତ ବୃତ୍ର ଦେହେ ରହିଥିଲା ଲେଟି
ହାଇ ମରାଇଣ ସେ ମେଲାଇଲା ପାଟି ।
ଜ୍ୱର ସକାଶରୁ ମୁହଁ ଠା ଫଣ ଫଣ
ଦିଶିଲା ହୋଇଣ ସେ ଅତ୍ୟନ୍ତ ଭୀଷଣ ।
ନାନା ଉତପାତ ହୋଇଲା ସେ କାଳରେ
ଗୃଧ୍ର କଙ୍କ ଉଡ଼ିଲେ ବୃତ୍ର ଶିରୋପରେ ।
ଖରଶ୍ୱାସ ପକାଇ ବୃତ୍ରାନାମାସୁର
ଗରଜନନାଦ କଲା ଅତି ଘୋର ।
ଏ ବାହାରେ ହାଇ ସେ ପୁନଃ ପୁନଃ ମାରି
ପିଠକ ମୋଡ଼ିଲେ କଟିକ କରେ ଧରି ।
ଏହି ଛିଦ୍ରରେ ଇନ୍ଦ୍ର ଝଟକ ବଜ୍ରକୁ
ପିଙ୍ଗିଲେ ବୃତ୍ର ନାମ ଅସୁର ଭୁଣ୍ଡକୁ ।
ବଜ୍ର ଇନ୍ଦ୍ର ହାତରୁ ଫିଟି ଯୁଦ୍ଧଦାଣ୍ଡେ
ମନ ପରି ଗମନ କରି ଅତି ଚଣ୍ଡେ ।
ତେଜେ ସେ ପ୍ରଳୟ ଅଗ୍ନିଙ୍କି ଲୁଚାଇଲା
ବୃତ୍ରପିଣ୍ଡରେ ପଡ଼ି ପ୍ରାଣ ଘେନଗଲା ।

ବଜ୍ରାଘାତ ହେଲା ଶୁଣ ବୃତ୍ର ମହାସୁର
ଖଣ୍ଡହୋଇ ପଡ଼ ଫାଟିଲା ମୁଣ୍ଡ ତା'ର ।
ଜମ୍ଭହାକୁ ଘାତେ ସେ ହୋଇଲା କାଡ଼ି
ଗଣ ଗଣା ମାନ୍ତ୍ର ବସିଲେ ତହିଁ ବେଢ଼ି ।
ଆଖି ଦୁଇଟି ତା'ର ଲଭିଲା ଅଙ୍ଗାର
ଶୋଷକୁ ଜିଣିଲେ ପାଣ୍ଡବ-ନରବର ।
ଇନ୍ଦ୍ର ବୃତ୍ରାସୁରର ଜୀବନକୁ ହର
ବାହାରିଲେ ସ୍ୱର୍ଗପୁରକୁ ବଜ୍ର ଧର ।
ବ୍ରହ୍ମହତ୍ୟା ବୃତ୍ର ଶରୀରରୁ ବାହାର
ହୋଇଲା ସୁଧିଷ୍ଠିର କଳା ତା ଶରୀର ।
ଦାନ୍ତମାନେ ସେ ବଡ଼ ବଡ଼ ହୋଇଛନ୍ତି
ପିଙ୍ଗଳ ଦେହ ଊର୍ଦ୍ଧ୍ୱ ଦେଶେ ଉଡ଼ୁଛନ୍ତି ।
କପାଳ-ମାଳଟାଏ ଗଳେ ତା'ର ଲମ୍ବେ
ସର କଲେ ଜଗତକୁ ଡ଼ଣା ହେବ ଖମ୍ବେ ।
ଏହିରୂପେ ସେ ହତ୍ୟା ସ୍ୱରୂପକୁ ଧର
ଖୋଜିଲା କାହିଁ ଗଲେ ବୋଲି ବଜ୍ରଧାରୀ ।
ଯାଉଥିଲେ ସ୍ୱର୍ଗରେ ଦେଖିଲା ଇନ୍ଦ୍ରଙ୍କୁ
କାହିଁ ଯିବୁ ବୋଲିଣ ଧଇଲା ବେକକୁ ।
ଇନ୍ଦ୍ର ସେ ବ୍ରହ୍ମହତ୍ୟା କରକୁ କରରେ
ଛଡ଼ାଇ ପକାଇଣ-ଅତ୍ୟନ୍ତ ବେଗରେ ।
ମାନସ-ସରରେ ମୃଣାଳ ମଧ୍ୟେ ଯାଇ
ରହିଲେ ଲୁଚି ଲୋକ ନ ଦେଖିବା ପାଇଁ ।
ବ୍ରହ୍ମହତ୍ୟା ବଡ଼ ଜାଣିବା ପଣ କଲା
ମୃଣାଳ ମଧ୍ୟେ ଯାଇ ଇନ୍ଦ୍ରଙ୍କୁ ଧଇଲା ।
ଇନ୍ଦ୍ର ଯେତେକ ଯତ୍ନ କଲେ ସେ ହତ୍ୟାଟି
ବଳେ ଇନ୍ଦ୍ରଙ୍କର ଯେ ମାଡ଼ିଲା ବେକଟି ।
ଇନ୍ଦ୍ର ସେ ସକାଶରୁ ହୋଇଣ ଆରତ
ଗଲେ ତହିଁ ଥିଲେ ସାବିତ୍ରୀ-ଦେବୀ-କାନ୍ତ ।
ବ୍ରହ୍ମା ବାସବଙ୍କର-ଆସିବାର ଦେଖି
କହିଲେ ସେ ହତ୍ୟାକୁ ବଙ୍କ କରି ଆଖି ।
କେଉଁ ମନୋରଥ କରିବ ମୁଁ ତୁମ୍ଭର
ତା ମାଗ ମୋତେ ଛାଡ଼ିଣ ପୁରନ୍ଦର ।
ବ୍ରହ୍ମହତ୍ୟା ବୋଲଇ ତୁମ୍ଭେ ତିନଲୋକ-
ନାୟକ, ତୁମ୍ଭ ବୋଲ ଭାଙ୍ଗିବ କେ ଲୋକ ।
ମୋତେ ଯେଉଁଠାରେ ଆପଣ ଦେବ ସ୍ଥାନ
ସେଠାରେ ରହିବ ମୁଁ ଚତୁର-ଆନନ ।

ବ୍ରହ୍ମା ବ୍ରହ୍ମହତ୍ୟାର ବଚନକୁ ଶୁଣି
ଧ୍ୟାନ କଲାମାତ୍ରେ କହିଲେ ଅଗ୍ନି ବାଣୀ ।
କି କଥା ଚିନ୍ତିକୁ ଆସୁଛୁ ବେଦପତି
ତାହା କହ ମୁଁ ଯାଇ କରିବି ତୁରିତ ।
ବ୍ରହ୍ମା ବୋଇଲେ ଆହେ ବ୍ରହ୍ମହତ୍ୟାର ଭାଗେ
ବ୍ରହ୍ମହତ୍ୟା ଧର ମୁଁ ବୋଲୁଛି ସବୁବେ ।
ଅଗ୍ନି ବୋଇଲେ ମୁଁ ଧରିବି ବ୍ରହ୍ମହତ୍ୟା
କିରୂପେ ମୁକ୍ତହେବି କହ ଲୋକ ପିତା ।
ବ୍ରହ୍ମା ବୋଇଲେ ଯେ ତୁମ୍ଭଙ୍କୁ ନ ପୂଜିବ
ସେ ଦ୍ୱିଜଠାରେ ବ୍ରହ୍ମହତ୍ୟାଟି ରହିବ ।
ବ୍ରହ୍ମାଙ୍କର ବଚନେ ଅଗ୍ନି ତୋଷ ହୋଇ
ବ୍ରହ୍ମହତ୍ୟା ଭାଗକ ନେଲେ ନରସାଇଁ ।
ସେ ବୃକ୍ଷ ଔଷଧ ତୃଣକୁ ଡାକିଲେ
ବ୍ରହ୍ମହତ୍ୟା ଭାଗେ ଧର ଆହେ ବୋଇଲେ ।
ସେମାନେ କହିଲେ ଛେଦନ ଉତ୍ପାଦନ
ପାଇ ଶୀତୋତ୍ତାପ ସହୁଛୁ ପ୍ରଭଞ୍ଜନ ।
ନାଶ ଚଳ ଲୋକେ ସମୂଳ ନାଶ ପାଇଁ
ବସୁଛିଲି ଯେବେ ହେ ଜଗତ ଗୋସାଇଁ ।
ତେବେ ସେ ଜଣାଉଛୁଁ ଏ ବ୍ରହ୍ମହତ୍ୟାଟି
ଘେନିଲେ ତରିବାକୁ କହ କାରଣଟି ।
ବ୍ରହ୍ମା ବୋଇଲେ ଆହେ ଅମାବାସ୍ୟା ଦିନ
ଯେଉଁମାନେ ତୁମ୍ଭଙ୍କୁ କରିବେ ଛେଦନ ।
ସେମାନଙ୍କ ଦେହରେ ବ୍ରହ୍ମହତ୍ୟା ଯାଇ
ରହିବ କହୁଛି ସନ୍ଦେହ ଏଥି ନାହିଁ ।
ପାଦପ ଔଷଧି ତୃଣ ଏ ବଚନ
ଶୁଣି ବ୍ରହ୍ମହତ୍ୟାକୁ ଘେନିଲେ ରାଜନ ।
ଏ ଅନ୍ତେ ବ୍ରହ୍ମା ଅପ୍ସରାଙ୍କ ମୁଖ ଚାହିଁ
ବୋଇଲେ ଶୁଣ ସବୁ ସୂର୍ଯ୍ୟ-ଚନ୍ଦ୍ରମୁହିଁ ।
ବ୍ରହ୍ମହତ୍ୟା ଭାଗେକ ତୁମ୍ଭେମାନେ ନେନ
ନୋହିଲେ ଦୁଃଖ ହେଲେ ତୁମ୍ଭର ରାଜନ ।
ଅପସରମାନେ ବୋଇଲେ ବ୍ରହ୍ମହତ୍ୟା
ଧଇଲେ କେଉଁ ଚର୍ଚ୍ଚ ତରିବୁ କହ ତା ।
ବ୍ରହ୍ମା ବୋଇଲେ ଯେତୁ ରଜସ୍ୱଳାସ୍ତ୍ରୀ ସଙ୍ଗେ
ମଇଥୁନ କରିବ କାମେ କୋଳେ ଧରି ।
ତାହାରଠାରେ ଯାଇଁ ବ୍ରହ୍ମହତ୍ୟା ଦୋଷ
ରହିବ ଦୁଃଖୀ ନୁହ ସବ ନାସ୍ତି ଲେଶ ।

ଅପସର୍ଗ ବ୍ରହ୍ମାଙ୍କ ମୁଖୁଁ ଏହା ଶୁଣି
ଆନନ୍ଦ ହୋଇ ଗଲେ ବ୍ରହ୍ମହତ୍ୟା ସେନ ।
ଏରୂପେ ଜନସଙ୍ଗ ରଖି ସ୍ୱରମୁଖ
ଜଳକୁ ଚିନ୍ତା କଲେ ହୃଦେ ଧରି ଦୁଃଖ ।
ଚିନ୍ତିବା ମାତ୍ରକରେ ଜଳ ପାଇଗଲେ
କି ଇଚ୍ଛା ଅଛି ଆଜ୍ଞା କର ତା ବୋଇଲେ ।
ବ୍ରହ୍ମା ବୋଇଲେ ଆହେ ବ୍ରହ୍ମହତ୍ୟା ସଙ୍ଗେ
ସେନ ମୋର ବଚନ ମାନିଣ ସରାଗେ ।
ଜଳମାନେ ବୋଇଲେ ଆମ୍ଭ ମୁକତିକ
ବିଚାର କୁହନ୍ତେ ହୃଦେ କରିଣ ପ୍ରୀତିକ ।
ବ୍ରହ୍ମା ବୋଇଲେ ଯେହୁ ଜଳରେ ମୁତିବ
ଏ ବାହାରେ ଛେପ ଖଙ୍କାର ପକାଇବ ।
ତା'ର ଦେହରେ ତୁମ୍ଭ ବ୍ରହ୍ମହତ୍ୟା ଯାଇ
ରହିବ ଆମ୍ଭ ବୋଲେ ସନ୍ଦେହ ତ ନାହିଁ ।
ଏରୂପେ ଇନ୍ଦ୍ରଙ୍କ ଦେହରୁ ବ୍ରହ୍ମହତ୍ୟା
ଚାରିଠାରେ ରଖିଲେ ବ୍ରହ୍ମା ଲୋକ-ପିତା ।
ଏଥୁଅନ୍ତେ ମଘବା ଅଶ୍ୱମେଧ କରି
ଶଚୀଙ୍କ ଧରି ବିହରିଲେ ସ୍ୱର୍ଗପୁରୀ ।
ବୃତ୍ର ରୁଧିରରୁ, କୁକ୍କୁଟ ହେଲା ଜାତ
ଦ୍ୱିଜାତିର ଅଭକ୍ଷ୍ୟ ତାହା ନରନାଥ ।
ଏହି ସକାଶରୁ ହେ ପାଣ୍ଡବ-ରାଜନ
ଦ୍ୱିଜ ପ୍ରୀତି ହେବା କଥାରେ ଦିଅ ମନ ।
ବ୍ରାହ୍ମଣ ଅପ୍ରୀତିରେ ଇହ ପର ଦୁଇ—
କଥା ନ ରହଇ ତୁମ୍ଭଙ୍କୁ କହୁଥାଇଁ ।
ଏ କଥା ଯେ ନିତି ବ୍ରାହ୍ମଣ ଆଗେ କହେ
ରହିଣ ନ ପାରଇ ପାପ ତା'ର ଦେହେ ।
ବୃତ୍ରାସୁର ବଧଟି ହେଲା ସମାପତି
କହଇ କୃଷ୍ଣସିଂହ ଧରାକୋଟପତି ।

—*—

## ଜ୍ୱରର ଜନ୍ମ ବୃତ୍ତାନ୍ତ

ଯୁଧିଷ୍ଠିର ବୋଇଲେ ଜ୍ୱର-ଜନ୍ମ ମୋତେ
କହିବା ହେଉ ଆହେ ଭୀଷ୍ମ ମହାମତେ ।
ଭୀଷ୍ମ ବୋଇଲେ ଆହେ ଜ୍ୱରର ଜନମ
କହିବା ଶୁଣ ନରକୁଳଙ୍କ ଉତ୍ତମ ।
ସୁମେରୁରେ ଜ୍ୟୋତି ନାମରେ ଶୃଙ୍ଗେ ଥିଲେ
ପାର୍ବତୀ ତୁଲେ ହର ତହିଁ ବିହରିଲେ ।
ତାହାଙ୍କୁ ଜାଣିପାରି ଅଶ୍ୱିନୀକୁମାର
ଅଙ୍ଗିରାଦି ଯେ ଦେବର୍ଷି ବିଦ୍ୟାଧର ।
ସନତ୍କୁମାରାଦି ଶୁଦ୍ଧ ତପୋଧନ
ନାରଦାଦି ଋଷି ଯେ ଦେବଯକ୍ଷଗଣ ।
ଅପସରାଏ ପୁଣି ସେହିଠାକୁ ଆସି
ଶିବଙ୍କଠି ସେବା କରିଲେ ଅହର୍ନିଶି ।
ପିଶାଚ ପ୍ରଥମ ରାକ୍ଷସ ଶସ୍ତ୍ରଧାରୀ
ରହିବେ ସେଠାରେ ରୁଦ୍ରଙ୍କୁ ସେବାକରି ।
ତ୍ରିଶୂଳ ଧରି ନନ୍ଦୀଶ୍ୱରଙ୍କ ପୁରତେ
ରହିଲେଟି ଜାଣ ଶିବଙ୍କ ଅନୁମତେ ।
ମୂର୍ତ୍ତିମନ୍ତ ହୋଇଣ ମୋହର ମାତାଟି
ସେବା କଲେ ଶିବଙ୍କ ପାଦ ଦୁଇଗୋଟି ।
ମୋକ୍ଷଧର୍ମ ପର୍ବାର୍ଦ୍ଧ ହେଲା ଏଥେଁ ଶେଷ
ତୋଷରେ କହେ କୃଷ୍ଣସିଂହ ନର-ଈଶ ।

—*—

କେତେ କାଳ ଉତ୍ତାରୁ ଦକ୍ଷ ପ୍ରଜାପତି
ଯାଗ ଆରମ୍ଭିଲେ ହୃଦରେ ବହି ପ୍ରୀତି ।
ପ୍ରଜାପତି ଦକ୍ଷ କରିବେ ଶୁଣି ଯାଗ
ବାହାରିଲେ ସକଳ ଦେବ ମହାଭାଗ ।
ଜ୍ୱଳନ-ଅର୍କ-ପ୍ରଭ ବିମାନ ଆରୋହି
ଦେବେ ଗଲେ ଗଙ୍ଗାଦ୍ୱାରକୁ ଲଗ ହୋଇ ।
ଦେବଙ୍କର ଯିବାର ସତୀଦେବୀ ଦେଖି
ପତିଙ୍କ ପଚାରିଲେ ହୋଇ ଅତି ସୁଖୀ ।
ଇନ୍ଦ୍ରାଦି ଦେବେ କେଉଁଠାକୁ ଯାଉଛନ୍ତି
ଏହା ମୋତେ କହିବା ହେଉ ପଶୁପତି ।
ଈଶ୍ୱର ବୋଇଲେ ହେ ଦକ୍ଷଙ୍କ ଯାଗକୁ
ଯାଉଅଛନ୍ତି ଦେବେ ବହି ସରାଗକୁ ।
ସତୀ ବୋଇଲେ ହେ ନ ଗଲ କିମ୍ପା ତୁମ୍ଭେ
କି କାରଣ ଅଛି କହ ତ ପୁଚ୍ଛୁ ଆମ୍ଭେ ।
ଈଶ୍ୱର ବୋଇଲେ ହେ ଯାଗେ ମୋର ଭାଗ
ନ ଥିବାରୁ ଯାଉନାହିଁ ମୁଁ ବହି ରାଗ ।
ସତୀ ବୋଇଲେ ପରା ତୁମ୍ଭେ ତିନଲୋକ
ସହାର ସରଜନା କରିବା ନାୟକ ।
ତୁମ୍ଭଙ୍କୁ ଭାଗ ନ ଦେଇଣ ଦେବେ ଯାହା
ଖାଉଛନ୍ତି କର୍ଣ୍ଣେ ଶୁଣିବ କେହି ଏହା ।

ହର ବୋଇଲେ ପ୍ରିୟେ, ତୁମ୍ଭର ବଚନ
ଶୁଣି କ୍ରୋଧେ ଜଳୁଛୁ ମୋର ଅପଘନ ।
ଏହିକ୍ଷଣି ଦେଖିବ ମୋର କରାମତ
କ୍ଷଣକେ ଦକ୍ଷ ଯାଗ ହେବ ଛିନ୍ନ ଭିନ୍ନ ।
ଏରୂପେ ବୋଲି ଯୋଗେଶ୍ୱର ମହେଶ୍ୱର
ଯୋଗରେ ବଢାଇଲେ ଗଣଙ୍କୁ ପାଶର ।
ଶିବଙ୍କର ଆଜ୍ଞାରେ ଗଣେ ଧାଇଁଗଲେ
ଦକ୍ଷଙ୍କ ଯାଗେ ଥିବା ଲୋକଙ୍କୁ ନାଶିଲେ ।
ଏହା ବାହାରେ ଯାଗ-ଯୂପରୁ ଉପାଡ଼ି
ହୋମ-ଅଗ୍ନିକୁଣ୍ଡରେ ପକାଇଲେ ପୋଡ଼ି ।
ଲୋକଙ୍କର ରକତ ଯାଗ-ଅଗ୍ନିକୁଣ୍ଡେ
ପକାଇ ନିଭାଇଣ ପକାଇଲେ ଖଣ୍ଡେ ।
ଯାଗରେ ମୃଗରୂପ ଧରିଣ ଆକାଶ
ମଧ୍ୟରେ ଯାଇଣ ସୃଜନ କଲା ବାସ ।
ଶିବ ଧନୁକାଣ୍ଡକୁ କରପୃଷ୍ଠେ ବହି
ମାରିବାକୁ ଧାଇଁଲେ ଯୋଗେ ଉଗ୍ର ହୋଇ ।
କ୍ରୋଧବଶେ ସେକାଳେ ଶିବଙ୍କ କପାଳ
ମଧ୍ୟରୁ ଖସି ପଡ଼ିଗଲା ତଳେ ଝାଳ ।
ଝାଳବିନ୍ଦୁ ତଳରେ ପଡ଼ିବାରୁ କ୍ଷଣି
ପୁରୁଷଟାଏ ଜନ୍ମ ହେଲା ନରମଣି ।
ଅତି ଭୟଙ୍କର ଅଟଇ ତା ସ୍ୱରୂପ
ବଢ଼ାଇଲା ତହିଁରେ ତିନିଲୋକ ତାପ ।
ସେହି ପୁରୁଷ ଦକ୍ଷଯାଗକୁ ଧାଇଁଲା
ବାକି ଯେତେ ଥିଲା ତା ନାଶ କରିଦେଲା ।
ଜଗତ-ଲୋକ ପିଡ଼ା ଦେଖି କୁଶଧର
ଗଲେ ଯହିଁଥିଲେ ପାର୍ବତୀଦେବୀ ବର ।
ବ୍ରହ୍ମା ବୋଇଲେ ହର ନୁହଁ ତୁମ୍ଭେ କ୍ରୋଧ
ଖାଅ ଯାଗ-ଭଙ୍ଗ ନ କର ପ୍ରାଣେ-ବଧ ।
ତୁମ୍ଭର କ୍ରୋଧ ଦେଖି ଦେବେ ହୋଇ ଦୁଃଖୀ
ଭୟରେ ପଳାଇଲେ ବୁଜିଦେଇ ଆଖି ।
ତୁମ୍ଭ ସ୍ୱେଦୁଁ ଯେଉଁ ପୁରୁଷେ ହେଲେ ଜାତ
ଜ୍ୱରରୂପେ ପୀଡ଼ା ଦେବେ ସେ ଏ ଜଗତ ।
ଏ ଜ୍ୱରକୁ ଜଣେ ହେ ନ ପାରିବ ଧରି
ଧଇଲେ ଦେଖି ପିଲା ଯମଙ୍କ ନଗରୀ ।
ଏ ସକାଶୁଁ କହୁଅଛି ହେ ମହାଗିରି
ଶିବ କରିଲେ ଜ୍ୱର ରୂପକୁ ବିଭାଗ ।

ବ୍ରହ୍ମାଙ୍କର ବୋଲିବା ସରି ବହି ପ୍ରୀତି
ଭାଙ୍ଗିବା ଯାଗଟିକ କଲେ ସମାପତି ।
ଦେବ ସବେ ଶିବଙ୍କୁ ଯାଗ ଭାଗ ଦେଲେ
ଅନୁରାଗ ହୃଦରେ ଧରି ସ୍ୱର୍ଗେ ଗଲେ ।
ଶିବ ଜ୍ୱର ବିଭାଗ ଯେ ରୂପରେ କଲେ
କହିବା ତାହା ଶୁଣ ନରପତି ଭଲେ ।
ହସ୍ତୀଙ୍କୁ ମୁଣ୍ଡ ବ୍ୟଥା ଶେଳେ ଗଇଶିଳ
ଜଳମାନଙ୍କେ ନେଳୀ ସର୍ପର ନିର୍ମୋକ ।
ଗାଈ ଖୁରାରୋଗ, ପୃଥ୍ୱୀର ଲୁଣୀ ସ୍ଥାନ
କେକୀର ପକ୍ଷୋଦ୍ଭେଦ ପିକର ନୟନ ।
ମେଷର ପିତ୍ତ ଭେଦ ଶାର୍ଦ୍ଦୂଳର ଶ୍ରମ
ଜ୍ୱର ବୋଲି ଜାଣ ହେ ନୃପତି ଉତ୍ତମ ।
ଜନ୍ମରୁ ମଲାଯାଏ ପ୍ରାଣୀଙ୍କର ଠାରେ
ଜ୍ୱର ଆଶ୍ରେ କଲା ଅତ୍ୟନ୍ତ ନିର୍ଭୟରେ ।
ରୁଦ୍ରଙ୍କ ତେଜ ସବୁ ଲୋକର ନମସ୍ୟ
ଜ୍ୱରରୂପେ କଲା ସେ ସବୁଠାରେ ବାସ ।
ଏହି ଜ୍ୱରରେ ଆବୃତ ବୃତ୍ରାସୁର ହୋଇ
ରହିବାରୁ ବଜ୍ରେ ମାଇଲେ ସଚୀ-ସାଇଁ ।
ଇନ୍ଦ୍ରଙ୍କ ହାତେ ମାରି ବୃତ୍ର ନାମାସୁର
ସେବା କରିଲା ଯାଇ ବିଷ୍ଣୁଙ୍କ ପୟର ।
ଜ୍ୱରର ଉତ୍ପତ୍ତି ତ ଶୁଣିଲ ମୋଠାରୁ
ଆଉ କି ପଚ୍ଚର ହେ ପ୍ରତିବିନ୍ଧ୍ୟ ଗୁରୁ ।
ଏହା ଯେଉଁ ଲୋକ ପଢ଼ଇ ଶୁଣଇ
ସ୍ୱପନରେ ସେ ଜ୍ୱର-ଭୟ ନ ଜାଣଇ ।

—*—

## ଦକ୍ଷ ଯଜ୍ଞ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଶିବଙ୍କ କ୍ରୋଧେ ଯାଗ ହେଲା ତ ଧ୍ୱଂସନ ।
ଦକ୍ଷ ପ୍ରଜାପତି ସେ ଯାଗ କେଉଁ ରୂପେ
ଆଉ ଥରେ କଲେ ତା କହ ମୋତେ ଆପେ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଦକ୍ଷ ପ୍ରଜାପତି ହୃଦରେ ବହି ପ୍ରିୟ ।
ହିମାଳୟ ତଟରେ ଋଷିଙ୍କର କୂଳେ
ସାମଗ୍ରୀ କରି ଏକ ଯାଗ ଆରମ୍ଭିଲେ ।
ଦେବ ଯକ୍ଷ ରାକ୍ଷସ ପଣ୍ଡିତ ଗନ୍ଧର୍ବ
ହାହା ହୁହୁ ତୁମ୍ବୁରୁ ନାରଦ ଦାନବ ।

ଆଦିତ୍ୟ ବସୁ ରୁଦ୍ର ଊଷ୍ମପା ସୋମପା
ମରୁତ ଋଷି ପିତୃ ଆଜ୍ୟାପା ଧୂମପା ।
ଏମାନେ ଯେ ଯାହାର ବାହନ ଆରୋହି
ଦକ୍ଷଙ୍କ ଯାଗରେ ରହିଲେ ନରସାଇଁ ।
ଜରାୟୁଜ ଅଣ୍ଡଜ ସ୍ୱେଦଜ ଉଦ୍ଭିଜ୍ଜ
ଆସିଲେ ସେ ଯାଗକୁ ଜନ୍ମେଜୟ-ରାଜ ।
ଦଧୀଚି ଋଷି ଦକ୍ଷଯାଗେ ରୁଦ୍ରଙ୍କର
ନଦେଖି ଭାଗ୍ୟ କ୍ରୋଧେ ହୋଇ ଥରହର ।
ବୋଇଲେ ଏ ଯାଗ ଅବଶ୍ୟ ହେବ ନାଶ
କ୍ରୋଧ ହେବେ ଯେବେ ପାର୍ବତୀଦେବୀ-ଈଶ ।
ଏହା ବୋଲି ଧ୍ୟାନରେ ସତୀ ତୁଲେ ଶିବ
ବସିଛନ୍ତି ଦେଖି କହିଲେ ମହାଭବ ।
ଏ ବାହାରେ ଦେଖିଲେ ନାରଦ ମହର୍ଷି
ଶିବର ସମୀପରେ ରହିଛନ୍ତି ବସି ।
ମନେ କଲେ ସମସ୍ତେ ଦୁର୍ବିସ୍ବର କଲେ
ଶିବଙ୍କୁ ଯୋଗୀ ବୋଲି ଯାଗେ ନ ଲୋଡ଼ିଲେ
ଆମ୍ଭେ ଏ ଯାଗେ ଥିଲେ କାର୍ଯ୍ୟ କିଛି ନାହିଁ
ଏତେ ବୋଲି ସେଠାରୁ ଉଠି ଉଭା ହୋଇ ।
କହିଲେ ପୂଜ୍ୟ ଛାଡ଼ି ଅପୂଜ୍ୟ ପୂଜିଲ
ଏହିକ୍ଷଣି ଜାଣିବ ତହିଁର ଯେ ଫଳ ।
ପୂର୍ବରୁ କେବେ ମୁହିଁ ମିଥ୍ୟା କହି ନାହିଁ
ମୋ ବଚନ ମିଥ୍ୟା ନ ମଣ ତୁମ୍ଭେ କେହି ।
ଏ ଯାଗେ ରୁଦ୍ରଦେବ ଆସି ତ ନାହାନ୍ତି
କିରୂପେ ଯାଗ କରିବେଟି ପ୍ରଜାପତି ।
ଦକ୍ଷ ପ୍ରଜାପତି ବୋଇଲେ କିସ ବୋଲ
ତୁମ୍ଭ କଥା ମୋତେ ତ ଲାଗୁ ନାହିଁ ଭଲ ।
ମୋର ଯାଗରେ ଏକାଦଶ ରୁଦ୍ର ଛନ୍ତି
ମହାଦେବ ନ ଥିଲେ ଊଣିବ କି ମତି ।
ଦଧୀଚି ବୋଇଲେ ହେ ଦକ୍ଷ ତୁମ୍ଭେ ବାଇ
ହେଲ ପରି କଥା କହୁଛ କାହିଁପାଇଁ ।
ଦକ୍ଷ ବୋଇଲେ ଆହେ ଶିବଙ୍କର ଭାଗ
ବିଷ୍ଣୁଙ୍କୁ ଦେଇଅଛି ବହି ଅନୁରାଗ ।
ଏହି କାଳରେ ସତୀ ମନରେ ଭାବନା
କଲେ ମୋହର ପତି ରୁଦ୍ର ମହାମନା ।
ଦକ୍ଷରାଜାଙ୍କ ଯାଗକୁ ତ ସେ ନ ଗଲେ
ଲଜ୍ଜା ହେଲା ମୋତେ ଏ ଭାଗ ନ ପାଇଲେ ।

ରୁଦ୍ର ବୋଇଲେ ହେ କି ଭାବୁଛ ସତୀ
ତିନିଲୋକଯାକର ଅଟଇ ମୁଁ ପତି ।
ଇନ୍ଦ୍ରାଦି ଦେବତାଏ ହୋଇଣ ଅଜ୍ଞାନ
ଯାଗକୁ ମୋତେ ନ ଲୋଡ଼ିଲେ ବୋଲି ଜାଣ
ଯମାଦି ବେଦମାନେ ନିତି ମୋତେ ସ୍ତୁତି
କରୁଛନ୍ତି ପଚାର ହେବ ଭାବ ମତି ।
ସତୀ ବୋଇଲେ ଭାରିଯାର ଆଗେ କଥା
କହିଲେ ଅନ୍ତରେ କି ହେବ ମହାରଥା ।
ଶିବ ବୋଇଲେ ଆଗୋ ସତୀ ମୋ ସାମର୍ଥ
ଦେଖ ମୁଁ କହୁଛି ତୁମ୍ଭଙ୍କୁ କରି ତଥ୍ୟ ।
ଏହା କହିଣ ରୁଦ୍ର ରୌଦ୍ରବପୁ ଧରି
ମୁଖୁଁ ଭୂତଟାଏ ମର୍ଜିଲେ ଦଣ୍ଡଧାରୀ ।
ସେ ଭୂତଟିର ନାମ ଦେଲେ ବୀରଭଦ୍ର
ବୋଇଲେ କର ଦକ୍ଷଯାଗରେ ଅଭଦ୍ର ।
ବୀରଭଦ୍ର କ୍ରୋଧ ହୋଇଣ ଧାଇଁଗଲେ
ଦକ୍ଷଙ୍କର ଯାଗ ସାମଗ୍ରୀକୁ ଧ୍ୱଂସିଲେ ।
ସତୀ କ୍ରୋଧ ହୋଇଣ ସର୍ଜିଲେ ଗଣ
ଏ ବାହାରେ ଭଦ୍ରକାଳୀଙ୍କି କଲେ ଜାଣ ।
ବୀରଭଦ୍ର ରୋମକୂପରୁ ରୋମ୍ୟଗଣ
ସର୍ଜିଲେ ଆହେ ଜନମେଜୟ ଜାଣ ।
ସେମାନେ ରୁଦ୍ର ସମ ବଳରେ ଅଟନ୍ତି
ଧାଇଁଲେ ଯହିଁଥିଲେ ଦକ୍ଷପ୍ରଜାପତି ।
ସେମାନଙ୍କର ପାଦ ଖୁଣ୍ଡର ଶବଦ
ନ ସହି ପୃଥିବୀ ଛାଡ଼ିଲେ ହୁଦୁଁ ମୋଦ ।
ପର୍ବତ ମଧ୍ୟ ମସ୍ତ ତୁଲେ ଗଡ଼ି କମ୍ପି
ତିନିଲୋକ-ଲୋକ ରହିଲେ ଜାଣ ଛପି ।
ଏ ବାହାରେ ଭୂମି ଗଗନ ଉତପାତ
ସେକାଳେ କମ୍ପିଲା ହେ ପରୀକ୍ଷିତ-ସୁତ ।
ସେ ଗଣେ ଦକ୍ଷଯାଗ ଧ୍ୱଂସି ପକାଇଲେ
ଯାଗ-ଯୂପ ଉପାଡ଼ି ଅଗ୍ନିରେ ପୋଡ଼ିଲେ ।
କ୍ଷୀରନଦୀ ଯେ ଘୃତନଦୀ ଦଧିନଦୀ
ଯା ଥିଲା ଖାଇଲେ ତା ହୋଇ ନିର୍ବିବାଦୀ ।
ଦେବତାରେ ରକ୍ଷିତ ଯାଗ ହୋଇଥିଲେ
ଭଦ୍ରକାଳୀ ଯାଗରେ ମୁଣ୍ଡକୁ କାଟିଲେ ।
ବ୍ରହ୍ମାଦି ଦେବେ ଦକ୍ଷ ପ୍ରଜାପତି ତୁଲେ
ଭଦ୍ରକାଳୀ ବୀରଭଦ୍ରଙ୍କୁ ପଚାରିଲେ ।

ତୁମ୍ଭେ ଦୁହେଁ କଏସେ କାହିଁକି ଏଠାକୁ
ଆସିକରି ନାଶିଲ ଆମ୍ଭର ଯାଗକୁ ।
ଭଦ୍ରକାଳୀ ବୀରଭଦ୍ର ଏ ଦୁହେଁ ହସି
ବୋଇଲେ ଦକ୍ଷ ତୁମ୍ଭେ ଅଟ ବଡ଼ ଦୋଷୀ ।
ସତୀଙ୍କ କ୍ରୋଧ ହେବା ଯୋଗୁଁ ତୁମ୍ଭ ଯାଗ
ବିନାଶ କଲୁ ଆମ୍ଭେ ବନ୍ଧ ମହାଭାଗ ।
ବୀରଭଦ୍ର ଭଦ୍ରକାଳୀ ଅଟଇ ନାମ
ଆମ୍ଭ ଦୁହିଙ୍କ ବୋଲି ଜାଣ ନରୋତ୍ତମ ।
ଶିବଙ୍କଠାରେ ତ ଅପରାଧୀ ହେଲ ତୁମ୍ଭେ
ଶରଣ ପଶ ଏବେ ବୋଲୁଅଛୁ ଆମ୍ଭେ ।
ଆନ ଉପାୟେ ରକ୍ଷା ନାହିଁଟି ତୁମ୍ଭର
ଆମ୍ଭ ହାତେ ମରି ନ ଯାଅ ଯମପୁର ।
ଏହିରୂପେ ଶୁଣିଣ ଦକ୍ଷ ପ୍ରଜାପତି
ଶିବଙ୍କୁ କର ଯୋଡ଼ି କଲେ ବହୁ ସ୍ତୁତି ।
ଶିବ ତାଙ୍କ ସ୍ତୁତିରେ ସନ୍ତୋଷ ହୋଇଲେ
ମୂର୍ତ୍ତିମନ୍ତ ହୋଇ ସେଠାରେ ବିଜେ କଲେ ।
ଦକ୍ଷକୁ ବୋଇଲେ ତୁମ୍ଭର ଯେଉଁ ପ୍ରିୟ
କରିବ ତାହା କର ମୋ ଆଗେ ଉଦୟ ।
ଦକ୍ଷ ପ୍ରଜାପତି ଯେ ଶୋଇ ପାଆଁ ପଡ଼ି
ଉଠିଣ ଜଣାଇଲେ କର ଦୁଇଯୋଡ଼ି ।
ଯେଉଁ ରୂପରେ ଯାଗ କରୁଥିଲି ମୁହିଁ
ସେରୂପରେ ଯାଗ ହେଉ ବୋଲି ସତୀ ସାଇଁ ।
ମହାଦେବ ବୋଇଲେ ହେଉ ସେହିରୂପେ
ନ ପଡ଼ ଦକ୍ଷପ୍ରଜାପତି ହେ ସନ୍ତାପେ ।
ଏଥୁଅନ୍ତେ ସହସ୍ର ଆଠ ନାମ ସ୍ତୁତି
ଯେଉଁରୂପେ ଦକ୍ଷ କଲେ ଶୁଣ ଦେଇ ମତି ।
ଆହେ କୁରୁକୁଳ-ଆନନ୍ଦ ବରଧନ
ପରୀକ୍ଷିତ ଜନମେଜୟ ନରଗଣ ।
ଦେବଦେବଈଶ ଭବାନୀ ସହସ୍ରାକ୍ଷ
ଇନ୍ଦ୍ରିୟ-ବଳ-ବୃଦ୍ଧି ଦାତା ବିରୂପାକ୍ଷ ।
ଯକ୍ଷାଧିପତିପ୍ରିୟ ଦେବାରିସୂଦନ
ତ୍ର୍ୟକ୍ଷ ଦେବ-ଦାନବ ପୂଜ୍ୟ ଶତାନନ ।
ସର୍ବତଃ ପାଣି ପାଦ ଅନ୍ତ ଶଙ୍କୁକର୍ଣ୍ଣ
ସର୍ବତଅକ୍ଷି ଶିରୋମୁଖ ମହାବର୍ଣ୍ଣ ।
ଅର୍ଣ୍ଣବ ଆକାଶ ସର୍ବଭି କୁମ୍ଭକର୍ଣ୍ଣ
ଗଜେନ୍ଦ୍ର ବର୍ଣ୍ଣ ସୋମଅଗ୍ନି ପାଣିକର୍ଣ୍ଣ ।
ସର୍ବତଃଶ୍ରୁତି ଶତଜିହ୍ୱ ଶତୋଦର
ରବି ବିଷ୍ଣୁ ବ୍ରହ୍ମା ଗୋକର୍ଣ୍ଣ ଜଳେଶ୍ୱର ।
ଶତାବର୍ତ୍ତ ଅର୍ଣ୍ଣବାଳୟ ମହାମୂର୍ତ୍ତି
କାର୍ଯ୍ୟ-ନିପୁଣ ହେତୁ ସ୍ୱରୂପ ବୃହସ୍ପତି ।
ନିଶ୍ଚଳଦରପାଣି ଅବ୍ୟୟ ପ୍ରଭାବ
ନିଶୀଥ ତ୍ର୍ୟମ୍ବକ ନିଜଟ ଦଣ୍ଡୀ ଭବ ।
ମାର୍ତ୍ତଣ୍ଡ ସୂର୍ଯ୍ୟମାଳ ବୃଷସ୍କନ୍ଦ ଶିବ
ଊର୍ଦ୍ଧ୍ୱକେଶ ଦ୍ରଂଷ୍ଟ ଧୂମ୍ର ସୁନୀଳଗ୍ରୀବ ।
ଅସନ୍ତ ସନ୍ତ ସୂକ୍ଷ୍ମ ରୁଦ୍ର ଅବତାର
ନିପୁରଘ୍ନ ଯେ ସମକର୍ତ୍ତି ଅଣ୍ଡଧର ।
ଧନ୍ୱା ଶତଂଦମ ହିରଣ୍ୟଗର୍ଭ କୁଣ୍ଡ
ହିରଣ୍ମୟ ଚୂଡ଼ ପ୍ରଥମ ନାଥ ମଣ୍ଡ ।
ସୂର୍ଯ୍ୟଧ୍ୱଜପତା ଭଗବାନ ଚଣ୍ଡ
ପର୍ଣ୍ଣପଟଧାରୀ ବରଦ ସର୍ବମୁଣ୍ଡ ।
ପଶୁପତି ହିରଣ୍ୟକବଚ ନିନେହ
ହିରଣ୍ୟପତି ଅଣ୍ଡ ବିରୂପ ଲୋହିତ ।
ସର୍ବଭୂତ ଅନ୍ତରାତ୍ମା ଯେ ହବ୍ୟାହୋନ
ସର୍ବ ବ୍ୟାପକ ସର୍ବ ଭକ୍ଷ୍ୟ ସ୍ତୁତ୍ୟ ସ୍ତୁତ ।
ଶୁକ୍ଳଧ୍ୱଜପତାକୀ କୃଶାଙ୍ଗ ଜଟିଳ
ଅପ୍ରତିରୂପ ସର୍ବସ୍ପୃଷ୍ଟ କଳକଳ ।
ନମ୍ୟ ନାମ ଯେ କଟକଟ କୃଶନାଶ
ନାଟ୍ୟ ଉପହାର ଲୁବ୍ଧ କଲି-କୃଶ ।
ଗୀତବାଦ୍ୟ ସମ୍ପନ୍ନ ବଳପ୍ରମଥନ
କାଳନାଥ ନର୍ତ୍ତନଶୀଳ ଧାବଧାନ ।
ଅନ୍ଧକଘାତି ମୁଖବାଦ୍ୟ ବପ୍ରୋଜ୍ୟେଷ୍ଠ
ଶୟମାନ ଶୟିତ ଉତ୍ଥିତ ଯେ ଶ୍ରେଷ୍ଠ ।
ଦଂଷ୍ଟ୍ରୀ ଶ୍ୟାମ ହିନ୍ଦୁ ଉହାସ ବିଶ୍ୱରୂପ
ଦଣ୍ଡାହ୍ୱକ ଜମରୂପ ସ୍ଥାୟୁତପ ।
ସୁପକ୍ୱ-ମାଂସ ଲୁବ୍ଧ ଚିତା-ଭସ୍ମ-ପ୍ରିୟ
ଶ୍ୟାମବ୍ରତଧର ଯେ ଧୀଷ୍ଟ ଜତେନ୍ଦ୍ରିୟ ।
ଖଡ଼ଗଜିହ୍ୱ କପାଳହସ୍ତ ବିଶ୍ୱପଣ
କଟଂକଟ ସାମାନ୍ୟ ଲୁବଧ ବିଭାବନ ।
ପଟଂପଟ ମୁଣ୍ଡ କୁମ୍ଭୀ ବୀଣାରପ୍ରିୟ
ବିଷାଗ୍ରପାୟୀ ସୁରଶ୍ରେଷ୍ଠ ରଣପ୍ରିୟ ।
ଅକ୍ଷମାଳୀ ବିକୃତବକ୍ତ୍ର ଶାନ୍ତତମ
ଏକପାଦ ହେ ଶିବ ଘୋର ଘୋରତମ ।

ଅଗଣିତବରଦ ବହୁନେତ୍ର ପ୍ରଶାନ୍ତ
ଅଶୋଭ ଘୋରବର ଗନ୍ଧ-ମାଲ୍ୟ ହସ୍ତ ।
ଏକଶୀର୍ଷ କ୍ଷୁଦ୍ର ସଦୃଷ୍ଟ ଉପକ୍ଷୟ
ଶାନ୍ତ ସର୍ବଗଶସ୍ତ ସର୍ବଙ୍ଗପ୍ରିୟ ।
ପ୍ରଳୟରୂପ ଭୟଙ୍କର ଅସିତାଙ୍ଗ
ଘଣ୍ଟାମାଳାପ୍ରିୟ ସଞ୍ଜମୀ ପଞ୍ଚଅଙ୍ଗ ।
ଜର୍ତ୍ତମାଂସ ଶିବ-ଚଣ୍ଡିକ ପ୍ରାଣଘଣ୍ଟ
କଳକଳ ଗନ୍ଧ ସହସ୍ର ଶତଘଣ୍ଟ ।
ତାରକଧର ବ୍ରହ୍ମ ଯଜ୍ଞ ପ୍ରାଣଘଣ୍ଟ
ଚଟନି ତଟ ତପ୍ୟ ତପନ ଅଘଣ୍ଟ ।
ଚଟମାପତ୍ତ ଘଣ୍ଟା ସହସ୍ର ନୟନ
ଅଭବ ଅନ୍ନପତି ବାଳାର୍କ-ବରଣ ।
ହୁଁ ହୁଁ କାରପାର ଯେ ହୁଁ ହୁଁକାର ପ୍ରିୟ
ଯଜ୍ଞବାହ ଦାନ୍ତ ହେ ଗିରି ବୃଷାଳୟ ।
ସହସ୍ର ଶୂଳୋଦ୍ୟତ ସହସ୍ର ଚରଣ
ସହସ୍ରଶୀର୍ଷ ବାଳରୂପଧର ଅଭ ।
ବାଳକ୍ରୀଡ଼ନକର ସର୍ଲିଭ ପ୍ରବୃତ୍ତ
ବୃଦ୍ଧ ବାଳଅନୁଚର ଗୋପ୍ତାହତ ।
ଷଟକର୍ମ-ଭ୍ରଷ୍ଟ ହେ ତ୍ରିକର୍ମ-ନିରତ
ପିଙ୍ଗଳନେତ୍ର କଳକଳ ପୁଷ୍ପ ଶ୍ୱେତ ।
ସୋଷବର୍ଣ୍ଣ ଆଶ୍ରମ କରମନବର୍ତ୍ତି
ପ୍ରାଣଲଗନ ସାଙ୍ଖ୍ୟଯୋଗ ସପ୍ରବର୍ତ୍ତି ।
ଧର୍ମାର୍ଥ କାମ ମୋକ୍ଷ୍ୟ ବାକ୍ୟ କଥା ସାଙ୍ଖ୍ୟ
ଧୂମ୍ରକେଶ କାମ କାମଦ ସାଙ୍ଖ୍ୟ ମୋକ୍ଷ ।
ସେଟନଦଣ୍ଡବକ୍ତ୍ର ସଙ୍ଘାତ ସର୍ବଜ୍ଞ
କୃଷ୍ଣାଙ୍ଗନୋଭସ୍ପ କୃଷ୍ଣରକ୍ତେକ୍ଷଣ ।
ଭୃଙ୍ଗଭୃଙ୍ଗ ବଲ୍ଗଣ ତରଙ୍ଗିତ କେଶ
ଚତୁଷ୍ପଥନକେତ ବୃଦ୍ଧ ମଞ୍ଜୁକେଶ ।
ଚତୁଷ୍ପଥଗାମୀ ଯେ କାମଘ୍ନ ଈଶାନ
ବ୍ୟାଳଯଜ୍ଞୋପବୀତ ଲୁବ୍ଧ ବିକ୍ଷୋଭଣ ।
ମହାବାହୁ ମହାସତ୍ତ୍ୱ ହେ ମହାଦ୍ୟୁତି
ମହାମେଘନତପ୍ରଖ୍ୟ ଭର୍ତ୍ତାପତି ।
ବ୍ୟାଘ୍ର ବନ୍ଧ୍ୟାଗତ ସର୍ବଦା ମହାବଳ
ଉଲ୍ଲାଦନ ଶତ ଆବର୍ତ୍ତ ମହାକାଳ ।
ବଳକଳାଜନବାସ ସ୍ଥୂଳ ଜୀର୍ଣ୍ଣଅଙ୍ଗ
ବଳ୍କଳାଜଟଧାରୀ ଘାତ୍ର ସୂର୍ଯ୍ୟଅଙ୍ଗ ।

ଜରାୟୁଜ ଅଣ୍ଡଜ ସ୍ୱେଦଜ ଉଦ୍ଭିଜ୍ଜ
ଚତୁର୍ବର୍ତ୍ତି ଜାହ୍ନବୀ-ତୋୟାଭମୂର୍ଦ୍ଧଜ ।
ଅନ୍ନଭୋକ୍ତା ଅନ୍ନପକ୍ତା ଅନ୍ନସ୍ରଷ୍ଟା
ସ୍ଥାବରଜଙ୍ଗମାତ୍ମକ ଜଗତ-ସ୍ରଷ୍ଟା ।
ତପୋନତ୍ୟ ସହସ୍ର ତପନ ପ୍ରତିମ
ମନ୍ତ୍ରଭୂକତପର ମୋକ୍ଷବର୍ତ୍ତି ବ୍ରହ୍ମ ।
ଜ୍ୟୋତିନଧି ଖବାୟୁ ବ୍ରହ୍ମବଦାତ୍ମକ
କାମକ୍ରୋଧ ବିଜୟ ଅଜୟ ଓଁକାର ।
ଋକ ସାମ ମାନସ ଯୋନି ସମ୍ପ୍ରବର
ବ୍ରାହ୍ମଣ କ୍ଷତ୍ର ବୈଶ୍ୟ ଶୂଦ୍ର ବର୍ଣ୍ଣାବର ।
ଋତୁମାସ ମାସାର୍ଦ୍ଧକ୍ଷଣ ଯୁଗାବର୍ତ୍ତି
ଯୁଗ କାଷ୍ଠା ଜଳଦ ନକ୍ଷତ୍ର ବିଦ୍ୟୁତ ।
ଗ୍ରହ କାଳ ବୃଷ-କକୁଦ ଯଜମାନ
ଋଜୋମୟ ଗିରିଶିଖର ସ୍ତୁୟମାନ ।
ବଜ୍ରଧନୁ ବିଦ୍ୱେଷ ଷୀଗେତ ଅନନ୍ତ
କ୍ରୋଧ ଲୋଭ ବାସନା ମନୋରଥ ସତ୍ୟ ।
କ୍ଷମା ବ୍ୟବସାୟ ଯେ ମୋହ ଲଭ ସବ
ଅକ୍ଷମା ଗଦା ଶର ଖଟ୍ୱାଙ୍ଗୀ ଝର୍ଝରୀ ।
ଧରମ ଅର୍ଥ କାମ ଧୃତ ଛେଦ୍ୟ ଭେଦ୍ୟ
ସନ୍ତତ ସିନ୍ଧୁ ଗଙ୍ଗା ପଲ୍ୱଳ ପ୍ରହର୍ତ୍ତା ।
ପଶୁ ମୃଗ ପକ୍ଷୀ ସୁବର୍ଣ୍ଣପ୍ରିୟ ନେତା
ମହାମେଘନବାସୀ ଦକ୍ଷଯଜ୍ଞହନ୍ତା ।
ଲତା ବଲ୍ଲରୀ ତୃଣ ଔଷଧି ଅମିତ
ହବ୍ୟକରମ ଗୁଣାତ୍ମ ଆଦ୍ୟ ଅନ୍ତ ।
କପିଳାରୁଣ ନୀଳ ପିଙ୍ଗଳ ଲୋହିତ
କୃଷ୍ଣ ରକ୍ତ ବାଯ୍ୱଣୀ ମୋଚକ କପୋତ ।
ଦଶବିଧ ଲକ୍ଷଣ ସଂଯୁକ୍ତ ହରିତ
ସୁବର୍ଣ୍ଣ ବର୍ଣ୍ଣହୀନ ଉପରତ ମିତ୍ର ।
ବର୍ଣ୍ଣକାର ସୁବର୍ଣ୍ଣପ୍ରିୟକାନୁପମ
ଯମେନ୍ଦ୍ର ବରୁଣ ଧନଦ ସ୍ୱର୍ଣ୍ଣନାମ ।
ତ୍ରିସୁପର୍ଣ୍ଣ ଶତରୁଦ୍ରୀୟ ସୁପବିତ୍ର
ଛନ୍ଦଗ୍ରନ୍ଥ ସର୍ବ ନୁ ସ୍କନ୍ଦ ହୋତା ହୋତ୍ର ।
ସତ୍ତ୍ୱ ରଜ ତମ ହେ ପ୍ରବୃତ୍ତ ହୋମ୍ୟ ହୁତ
ଅପ୍ରମାଦ ଉନ୍ମେଷ ନିମେଷ ଜୃମ୍ଭିତ ।
ପ୍ରାଣାପାନ ସମାନୋଦାନ ବ୍ୟାନ ସୂତ
ଦୃଷ୍ଟି ମହାବନ୍ଧ ଲୋହିତ ଅନ୍ତର୍ଗତ ।

ଗିରକ ବୃଷ-ଗାବ ହିରଣ୍ଡ୍ରକ ଦୁର୍ଦ୍ଧର
ହରିତଶ୍ମଶ୍ରୁ ଊର୍ଦ୍ଧ୍ୱକେଶ ଜଳଚର ।
ଗୀତବାଦନ ପ୍ରିୟ ପ୍ରଭୁ ମହୋଦର
ଗୀତାବାଦନ ତତ୍ତ୍ୱଜ୍ଞାତା ମୃତ୍ୟୁ-ହର ।
ବାସନାଜଳ ବନ୍ଧ ଅକାଳ ହକାଳ
ମତ୍ସ୍ୟ ନକ୍ର ସଲିଳ କଳ କେଳକଳ ।
କୃତ-ସନ୍ଧ ଯଜ୍ଞ-ଷସ୍ୟକର ସନ୍ଧିକ
ମେଘ କାଳଦଂଷ୍ଟ୍ର ପାଳନାଶକ କାଳ ।
ବେଣୁବୀଣା ହଲ୍ଲୋମୀ ସମ୍ବର୍ତ୍ତ ବଳାହକ
ଚତୁର୍ବେଦ ଚତୁର୍ହୋତ୍ର ପ୍ରବର୍ତ୍ତକ ।
ଚତୁରାଶ୍ରମ୍ୟ ନେତା ଷିତଣ୍ଡଧ୍ୱଜ୍ ଘଣ୍ଟ
ଚତୁର୍ବର୍ଣ୍ଣକର ଯେ ଚତୁର୍ଯୁଗ ଘଣ୍ଟ ।
ଦୁଷ୍କାଳ ଘଣ୍ଟୀ ଘଣ୍ଟି ଧୂର୍ତ୍ତ ରଷ ପ୍ରିୟ
ଗଣଅଧ୍ୟକ୍ଷ କର୍ତ୍ତିକାର ସ୍ରଜ ପ୍ରିୟ ।
ରକ୍ତମାଳ୍ୟ-ଅମ୍ବର ଗିରୀଶ-ଶିଳ୍ପିକ
ଗଣାଧିପ ସକଳ ଶିଳ୍ପୀ ପ୍ରବର୍ତ୍ତକ ।
ଶିଳ୍ପୀ ଶ୍ରେଷ୍ଠ ହେ ଭୂତଭବ୍ୟ ଭବୋଦ୍ଭବ
ଭୂତଭୁବସ୍ୱର ହେ ମହେଶ୍ୱର ଶିବ ।
ଭଗଅନପ୍ରାଙ୍କୁଶ ପ୍ରଚଣ୍ଡ ପୂର୍ତ୍ତିଧାତା
ଗୃହ ତପା ପ୍ରବଣ ସଂଧାତା ବିଧାତା ।
ଯଜ୍ଞହନାଶକର ସ୍ୱାହା ନମସ୍କାର
କର୍ତ୍ତିକ ପ୍ରିୟ ସ୍ୱଧା ନମୋ ବଷଟ୍କାର ।
ତାରକମୟ ସତ୍ୟ ଗୂଢ଼ବ୍ରତାନନ୍ତ
ଧାରଣାଧର ବ୍ରହ୍ମ ତପ ଭୂତକୃତ ।
ବ୍ରହ୍ମଚର୍ଯ୍ୟ ପ୍ରଧାତା ଆର୍ଜ୍ଜବ ଦୀକ୍ଷିତ
ପ୍ରବର୍ତ୍ତକ କାମ ଅଦାନ୍ତ ଅଦୀକ୍ଷିତ ।
ଚନ୍ଦ୍ରାବର୍ତ୍ତ ଭୂତାତ୍ମା ପ୍ରଭୁ ଯୁଗବର୍ତ୍ତ
ଛନ୍ଦ ଅଣୁ ସ୍ଥୂଳ ହେ ଶଙ୍କର ସଂବର୍ତ୍ତ ।
ହିରଣ୍ୟଗର୍ଭ ଚତୁର୍ମୁଖ ଅଗ୍ନି ମୁଖ
ମହୋଦରପତି ସୁମୁଖ ବହୁମୁଖ ।
ଅଧର୍ମହା ନାଥ ଗୋନନ୍ଦ ଦଣ୍ଡଧାର
ମହାପାର୍ଶ୍ୱ ଶ୍ରେଷ୍ଠ ହେ ସ୍ଥିର ଗୁଣାକାର ।
ଗୋପ୍ରତାର ଗୋବୃଷେଶ୍ୱର ସ୍ୱୟମ୍ଭୁବ
ଦୁର୍ବାରଣ ତ୍ରୈଲୋକ୍ୟନାଥ ଆଦ୍ୟ ଦେବ ।
ଦୁର୍ଜ୍ଜୟ ଦୁର୍ଦ୍ଧର୍ଷ ଗୋବନ୍ଦ ଦୁବସହ
ଦୁରତିକ୍ରମ ସ୍ଥାଣୁ ଦୁର୍ବିଶ ଦୁଃସହ ।

ଆଧି-ବ୍ୟାଧି-ବ୍ୟଥିତ ଶଶାଙ୍କଶେଖର
ଅଜଗରଗଜସ୍ଥ ମୃଗ ବ୍ୟାଧବର ।
ଜୟ ସମଶୀତୋଷ୍ଣ ଇନ୍ଦ୍ରସ୍ୱ ଗୋଚର
ଶିଖଣ୍ଡି ସମଯଜ୍ଞ ସ୍ଥବିର ସାଗର ।
ଉଗ୍ରଦଣ୍ଡ ବିନେତ୍ର ମଧୁଚ୍ୟୁତ ଗ୍ରତା
ମନ୍ତ୍ରବୃତ୍ତି ଅଣ୍ଡନାଶନ ରକ୍ଷାକର୍ତ୍ତା ।
ପୁଣ୍ଡରୀକ ହେ ବନ ଆଳୟ କ୍ଷୀରପା
ଜ୍ୟେଷ୍ଠ ଦୁଷ୍ଟ୍ରକର୍ମ ତାରକ ଅମୃତପା ।
ଜଗନ୍ନାଥ ପୁଣ୍ଡରୀକାକ୍ଷ ଦଣ୍ଡଧର
ଦେବ ମୃତ୍ୟୁଞ୍ଜୟ ସୋମପା ଗଣେଶ୍ୱର ।
ବାଳ ଯୁବ ସ୍ତ୍ରି ସ୍ତ୍ରୀ ପୁମାନ ନପୁଂସକ
ଜୀର୍ଣ୍ଣଦଂଷ୍ଟ୍ର ନାଗେନ୍ଦ୍ର ବିଶ୍ୱକର୍ତ୍ତା ଶସ୍ତ ।
ବିଶ୍ୱତୋମୁଖ ବିଶ୍ୱବାହୁ ବିଶ୍ୱକୃତ
ବରେଣ୍ୟ ତେଜୋବନ୍ତ ସୁହିରଣ୍ୟରେତ ।
ଏତେକ ଦକ୍ଷପ୍ରଜାପତି ନାମ ଧରି
ସ୍ତୁତି କଲେ ରୁଦ୍ରଙ୍କୁ ଆହେ ଦଣ୍ଡଧାରୀ ।
ଏଥୁ ଅନ୍ତେ ସ୍ତୁତି ସେ କଲେ ଯେଉଁ ରୂପେ
ତା ଶୁଣ ଜନ୍ମେଜୟ କହିବା ସଂକ୍ଷେପେ ।
ଚନ୍ଦ୍ର ସୂର୍ଯ୍ୟ ଏ ଦୁହେଁ ନୟନ ତୁମ୍ଭର
ହୃଦୟ ଅଟନ୍ତି ଦେବ କୃଶଧର ।
ଅନଳ କ୍ରୋଧ ସରସ୍ୱତୀ ଦେବୀଗିର
ବଳ ଯେ ଅଟନ୍ତି ତୁମ୍ଭର ସମୀର ।
ବ୍ରହ୍ମା ବିଷ୍ଣୁ ଯେ ପୁରାତନ ଋଷିମାନେ
ତୁମ୍ଭର ମହିମାକୁ ନ ଜାଣନ୍ତି ଧ୍ୟାନେ ।
ପିତା ପୁତ୍ର ପାଳିବା ପ୍ରାୟେ ମୋତେ ହର
ସଂହାର କର କୋପ ମୋତେ ରକ୍ଷାକର ।
ତୁମ୍ଭର ରକ୍ଷଣୀୟ ଅଟେ ସବୁକାଳେ
ମୋତେ ରକ୍ଷାକର ହେ ଧୂର୍ଜ୍ଜଟି କୃପା ଡୋଳେ
ଜ୍ୟୋତି ତୁମ୍ଭେ, ବ୍ରହ୍ମସ୍ୱରୂପ ଅଟ ତୁମ୍ଭେ
ତୁମ୍ଭଙ୍କୁ ନମସ୍କାର କରୁଁ ଅଛୁଁ ଆମ୍ଭେ ।
ମହଜ୍ଜଳ ସ୍ୱରୂପ ଅଟ ଭଗବାନ
ଘେନ ମୋର କହିବା ବଚନ ବନ୍ଦନ ।
ପ୍ରଳୟକାଳେ ଜଳଶାୟୀ ତ୍ରିପୁରାରି
କ୍ଷମା କର କରିବା ଦୋଷଟି ମୋହର ।
ଚନ୍ଦ୍ର ସୂର୍ଯ୍ୟ ଦୁହିଙ୍କି ରାହୁରୂପେ ଗ୍ରାସ
କରୁଅଛ ତୁମ୍ଭେ ପାର୍ବତୀଦେବୀଈଶ ।

ଦେବଙ୍କ ଦୁଃଖ ସୁଖ ଦେଉଅଛୁ ଯେହ୍ନ
ସେହ୍ନ ବୋଲକର କୃଷ୍ଣଙ୍କୁ ପିନା କହ୍ନ ।
ଜନଲୋକ ପ୍ରାଣୀରେ ବ୍ୟାପକ ଯେ ଦେବ
ତାଙ୍କ ପାଦେ ମୋହର ହେଉ ଭକ୍ତିଭାବ ।
ପ୍ରମାଣ ସାଙ୍ଖ୍ୟରୂପ ଯାହାର ଗୋଚର
ନୋହୁଛୁ କା'ରେ ସେ ହରନ୍ତୁ ଦୁଃଖ ମୋର
ସବୁର ହୃଦେ ସ୍ଥିତ ହୋଇବାରୁ ତୁମ୍ଭେ
ତୁମ୍ଭଙ୍କୁ ନିମନ୍ତ୍ରଣ ନ ଦେଲୁଟି ଆମ୍ଭେ ।
ନୋହିଲେ ତୁମ୍ଭ ମାୟା-ଜଳରେ ମୁଁ ବୁଡ଼
ରହିଅଛୁ ତ, ଏଣୁ ନ ଆସିଲ ଲୋଡ଼ ।
ଏରୂପରେ ସ୍ତୁତି ଯଜ୍ଞ ସଖାଙ୍କର ପିତା
କଲେ ତୋଷ ହୋଇଲେ ଶ୍ରୀରୁଦ୍ରଦେବତା ।
ବୋଇଲେ ଆହେ ଦକ୍ଷ ହେଲି ମୁଁ ସନ୍ତୋଷ
ଯାଗଫଳ ପାଇ ଲଭିବ ସ୍ୱର୍ଗବାସ ।
ମୋର ନାମ ଅଛୁ ଜଗତେ ଯଜ୍ଞେଶ୍ୱର
ସେ ନାମ ସାର୍ଥକଲ ଏବେ ମନେ କର ।
ବେଦରୁ ଉଦ୍ଧାର କରିଛୁ ପାଶୁପତ
ସେ ଫଳଟି ତୁମ୍ଭଙ୍କୁ ହେଉ ପର୍ଯ୍ୟନ୍ତ ।
ଦକ୍ଷପ୍ରଜାପତିଙ୍କି ଏହ୍ନ ବର ଦେଇ
ଅନ୍ତର୍ଦ୍ଧାନ ହୋଇଣ ଗଲେ ସଖାସାଇଁ ।
ଦକ୍ଷପ୍ରଜାପତିର କରିବାର ସ୍ତୋତ୍ର
ଯେ ପଢ଼େ ଶୁଣଇ ସେ ହୁଅଇ ପବିତ୍ର ।
ସ୍ତବରାଜଙ୍କରେ ଏ ଗରିଷ୍ଠ ଅଟଇ
ରୁଦ୍ର ପଣ ଜାଣ ହସ୍ତିନା ନରସାଇଁ ।
ଯଶ ରାଜ୍ୟ ସୁଖ ଯେ ସ୍ୱର୍ଗକାମୀ ଲୋକ
ଏ ସ୍ତବ ପଢ଼ୁଥିବ ଛାଡ଼ି ହୃଦୁଁ ଦକ ।
ଏ ସ୍ତବ ପାଠ ହେଉଥିବ ଯେଉଁଠାରେ
ବ୍ୟାଧି ତସ୍କର ଭୟ ସମ୍ଭବ ନ ପାରେ ।
ଦେହ ଧରି ରୁଦ୍ରଲୋକକୁ ଲୋକ ଯାଏ
ଏ ସ୍ତବ ବଢ଼ିବାର ସୁକୃତରୁ ସ୍ୱପ୍ନେ ।
ଭୂତ ପ୍ରେତ ଡାହାଣୀ ଶଶଗୁଣୀ ଗୁଣ
ଏ ସ୍ତବ-ପାଠ ଶୁଣି ପଳାନ୍ତିଟି ଜାଣ ।
ଯେଉଁସ୍ତ୍ରୀ ଏହାକୁ ଭକ୍ତିରେ ଶୁଣଇ
ମନୁଷ୍ୟ ସ୍ତ୍ରୀରେ ସେ ପୂଜ୍ୟ ବୋଲାଅଇ ।
ମନ ବଚନରେ ଯେ କାର୍ଯ୍ୟ ଭାବ ସ୍ତବ—
ପଢ଼ିଲେ ସେ ହୁଅଇ ଜାଣ ନରଦେବ ।

ମହାଦେବ ଉମା ନନ୍ଦୀଙ୍କି ପୂଜାକରି
ଏ ସ୍ତବକୁ ପଢ଼ିବ ବ୍ରହ୍ମଚର୍ଯ୍ୟାଶ୍ରୟ ।
ଏହାକୁ କହିଛନ୍ତି ପରାଶର-ସୁତ
ବ୍ୟାସ, କହଇ କୃଷ୍ଣସିଂହ ମହୀକ୍ଷିତ ।



## ନାରଦ ସମଙ୍ଗ ସମ୍ବାଦ

ଏହା ଉତ୍ତାରୁ ପୁଣି ଅଧ୍ୟାତ୍ମ ଗୀତ
ପଚ୍ଚରିଲେ ପାଣ୍ଡବ କୁଳ ନରପତି ।
ଭୀଷ୍ମ ବୋଇଲେ ହେ ପାଣ୍ଡବ-ନରସାଇଁ
ମୋକ୍ଷଧର୍ମ-ପୂର୍ବାର୍ଦ୍ଧେ ଏହା କହିଥାଇଁ ।
ଏଣୁଟି ତାହା ଛାଡ଼ ଦେଲି ଜାଣ ମୁହିଁ
ଆନ ଇଚ୍ଛା ଥିଲେ ପଚ୍ଚର କହିବଇଁ ।
ଯୁଧିଷ୍ଠିର ବୋଇଲେ ଶୋକ ଦୁଃଖ ମୃତ୍ୟୁ
ପ୍ରାଣୀମାନଙ୍କର ଅଟଇ ଭୟ ହେତୁ ।
ଆମ୍ଭେ ତ ପ୍ରାଣ ଧରି ଭବେ ଜନ୍ମିଥାଇ
କି ରୂପରେ ଏ ଭବୁଁ ଯିବା ପାରି ହୋଇ ।
ଏହା ମୋତେ ବିସ୍ତାରି କହ ପିତାମହ
ଛଡ଼ାଇ ଦିଅ ମୋର ହୃଦୟରୁ ମୋହ ।
ଭୀଷ୍ମ ବୋଇଲେ ହେ ନାରଦ ସମଙ୍ଗଙ୍କୁ
ପଚ୍ଚରିଲେ ହୃଦରେ କହି ସରାଗକୁ ।
ନିତ୍ୟ ତୃପ୍ତ ହୋଇ ବାଳକପରି ସ୍ଥିତ
କରି କି ପାଇଁ ତୁମ୍ଭେ ଭ୍ରମୁଅଛ ଯତି ।
ସଙ୍ଗମ ବୋଇଲେ ହେ ନିତ କାଳକଥା
ଜାଣୁଅଛୁ ହୃଦରେ ବହି ଜ୍ଞାନ ପୋଥା ।
ଏହ୍ନ ସକାଶରୁ ମୁଁ କରୁନାହିଁ ଦୁଃଖ
କିସ ପଚ୍ଚରୁଛ ହେ ମୋତେ ଋଷିଶିଖ ।
ଅଜ୍ଞ ଜଡ଼ ଧର୍ମୀ ଅଧର୍ମୀ ଲୋକମାନେ
ଯାହିଁ ଥାଇଁ ଯେ ଦେଖୁଥାଇଟି ନୟନେ ।
ମୂଢ଼ ଲୋକଙ୍କର ତ ଇହ ପର ନାହିଁ
ଗର୍ବାଗ୍ନିରେ ନିତ ହେଉଥାଆନ୍ତି ଦହି ।
ସୁଖ ଦୁଃଖ ଲୋକର ନିତ୍ୟ ହୋଇ ନୋହେ
ଏ ସକାଶରୁ ଲୋକେ ନ ପଡ଼ିବ ମୋହେ ।
ଲାଭ ହାନି ହେଲେ ନୋହିବ ହୃଷ୍ଟାହୃଷ୍ଟ
କାରଣ କରିଥିବ ମନରେ ଅଦୃଷ୍ଟ ।
ଅସମର୍ଥ ହୋଇଲେ ବନ୍ଧୁ ମିତ୍ର ଦୁଇ
ରଖି ନ ପାରନ୍ତିଟି ଜାଣ କଦାପାଇଁ ।

ଅର୍ଥ କାମ ଶୋକ ମନରୁ ଦୂର କର
ବୁଲୁଅଛୁ ମୂର୍ତ୍ତି ନାରଦ ତପଶ୍ଚାର ।
ମୃତ୍ୟୁରେ ଅଧର୍ମରେ ନାହିଁ ମୋର ଭୟ
ନବେଶିତ ଅଛୁ ମୁଁ ଜ୍ଞାନରେ ହୃଦୟ ।
ସମଙ୍ଗ ଋଷିଙ୍କର ଶୁଣି ଏ ବଚନ
ନାରଦ ମହର୍ଷି ହୋଇଲେ ମଉନ ।
ସମଙ୍ଗ-ନାରଦ ସମ୍ବାଦ ସମାପତ
ହୋଇଲା, କହେ କୃଷ୍ଣସିଂହ ନରପତ ।

—*—

## ଗାଲବ-ନାରଦ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଶାସ୍ତ୍ର ଅର୍ଥ ଜାଣି
ନ ଥିବ ହେଉଥିବ ସଂଶୟରେ ବଖାଣି ।
ସଂଶୟଆତ୍ମା ହୋଇ ହରୁଥିବ ଦନ
ତା'ର କ ଭଲ ହୋଏ କରତା ବଖାଣ ।
ଭୀଷ୍ମ ବୋଇଲେ ଆହେ ଗୁରୁ ପୂଜା କର
ଶାସ୍ତ୍ର ଯେ ଜାଣୁଛୁ ସେ ତରେ ବୋଲପାର ।
ଏ କାହାରେ ବୃଦ୍ଧଲୋକଙ୍କୁ ଉପାସନ
କରିବାଉଟି ଭଲ କଥା କର ସେନ ।
ଗାଲବ ଋଷି ଥିନେ ଶ୍ରେୟ ଇଚ୍ଛା କଲେ
ନାରଦଙ୍କ ପାଶରେ ଯାଇ ପଚ୍ଚରିଲେ ।
ଯେତେ ଗୁଣଯାକରେ ଲୋକ ପାଏ ପୂଜା
ସେ ଗୁଣ ଅଛୁ ତୁମ୍ଭଠାରେ ଋଷି ରାଜା ।
ଆମ୍ଭମାନଙ୍କର ସଂଶୟ ଛେଦ୍ର ହୋଇ
ତୁମ୍ଭ ଭଳା ଆନ ନୟନେ ଦଶୁନାହିଁ ।
ଚାରିଆଶ୍ରମଙ୍କରେ କେଉଁ ଆଶ୍ରମକୁ
ବଡ଼ ବୋଲ ତାହାକୁ କହ ତ ଆମ୍ଭଙ୍କୁ ।
ବହୁଳଶାସ୍ତ୍ର ହୋଇବାରୁ ଭଲ ମନ୍ଦ
କଥାମାନଙ୍କରେ ରହିଛୁ ଜାଣ ଛନ୍ଦ ।
ନାରଦ ବୋଇଲେ ହେ ଚାରି ଆଶ୍ରମର
ଭିନ୍ନ ଭିନ୍ନ ଧର୍ମ ଅଛଇ ମନେ କର ।
ମିତ୍ର-ଅନୁଗ୍ରହ ଯେ ଅମିତ୍ର-ନଗ୍ରହ
ପାପକର୍ମ-ନବୃତ୍ତି ତ୍ରିବର୍ଗ-ସଂଗ୍ରହ ।
ମଧୁରବାଣୀ ପୁଣ୍ୟଶୀଳ ମାରଦବ
ସନ୍ତୋଷ ଦେବ ଅର୍ଥ ଜଜ୍ଞାସା ଆର୍ଜ୍ଜବ
ସତ୍ତ୍ୱଗିର ଦାନ ଦେବାଙ୍କ ଅଧ୍ୟୟନ;
ଦେବତା ଅତଥି ପିତୃଙ୍କର ପୂଜନ ।
ଅହଙ୍କାର ତ୍ୟାଗ ଆଦ ଯେତେକ କଥା
ଶ୍ରେୟ ବୋଲ ଲେଖିଛୁ ଜାଣ ଧର୍ମପୋଥା ।
ଶବ୍ଦ ରୂପ ରସ ଗନ୍ଧକୁ ଶ୍ରେୟ ଇଚ୍ଛା
କଲା ଲୋକ ଛାଡ଼ିବ କରି ଗୋଟି ବଚ୍ଛା ।
ଅବସରେ ଆଳସ୍ୟ ପାଇ ନ ଶୋଇବ
ପରନାଶ ବଚ୍ଚର ଖତ ନ କହିବ ।
ପରକୁ ନନ୍ଦା କର ଆପଣା ଉତ୍କର୍ଷ
ସଭାମଧ୍ୟରେ ନ କରିବଟି ପ୍ରକାଶ ।
ନର୍ଗୁଣ ଲୋକମାନେ ଦୋଷେ ଗୁଣବନ୍ତ-
ଲୋକଙ୍କୁ ନନ୍ଦା କରି ବାଢ଼ନ୍ତି ବହୁତ ।
ଜାଣିବା ଲୋକ କାହା ନନ୍ଦା ନ କହଇ
ଆପଣା ପ୍ରତିଷ୍ଠାରେ ସ୍ନେହ ନ ବହଇ ।
ମୂର୍ଖଲୋକ ନଜ ପ୍ରଶଂସା କରି କେବେ
ପ୍ରକାଶ ନୁହେଁଟି ଗାଲବ ଜାଣ ଲବେ ।
ବିଦ୍ୟାବନ୍ତ ଲୋକ ସୁବାସ ଫୁଲ ପରି
ଗାତେ ପଡ଼ିଥିଲେ ତଡ଼ନ୍ତେ ତପସ୍ଥାରି ।
ଏତିସକାଶୁଁ ଜାଣ ଜ୍ଞାନଲବ୍ଧ ନର
ଚିନ୍ତା କରୁଥାନ୍ତି ଗାଲବ ମନେକର ।
ଲୋକ ପଚ୍ଚରିଲେ ଯେ କହିବ ଯଥାର୍ଥ
ନ ପୁଚ୍ଛନ୍ତୁ କହିଲେ ସେ ହୋଇଯାଏ ବ୍ୟର୍ଥ ।
ଏହି ସକାଶରୁ ମାର୍ମିକ ସାଧୁଲୋକ
ଆଶ୍ରେ କରିଲେ ଲୋକ ବୋଲାଏ ବବେକ ।
ଗୃହବର୍ତ୍ତି ଧର୍ମଶଙ୍କର ଲୋକ ଯେବେ
ଶ୍ରେୟରେ ରଙ୍କ ହୋଇ ନ ରହିବ କେବେ ।
ବ୍ରାହ୍ମଣ ଯେଉଁ ଦେଶେ ଧର୍ମ ଉପଦେଶ
ନ ଥିବ ଦେଇ ତାହା ଛାଡ଼ିବ ଅବଶ୍ୟ ।
ଯେଉଁ ଦେଶରେ ଗୁରୁ ଶିଷ୍ୟ ସୁବୃତ୍ତିରେ
ଥିବେ ସେ ଦେଶେ ଯାଇ ରହିବ ସତ୍ତ୍ୱରେ ।
ଯେଉଁ ଦେଶରେ ଆମ୍ଭ ବଡ଼ାଇ ବଚନ ।
କାହାରିକ ସେ ଦେଶେ ନ କରିବ ସ୍ଥାନ ।
ଧରମ ମର୍ଯ୍ୟାଦାକୁ ଛାଡ଼ିବା ଦେଶଟି
ଛାଡ଼ିବ କଦାପି ନ ପିବେ ଶିବ ଦୃଷ୍ଟି ।
ଯେଉଁ ଦେଶେ ଅର୍ଥ ପାଇବା ଲୋଭେ ଧର୍ମ
କରୁଥିବ ସେ ଦେଶ ଜାଣିବ ଅଧର୍ମ ।

ପାପକର୍ମକାରୀ ଦେଶକୁ ଯିବେ ଗୁଡ଼
ରହିଲେ ଚଳିବ ପାପ ଜନେ ବୁଡ଼ ।
ଯେଉଁଦେଶରେ ରାଜା କାହାକୁ ନ ଦେଇ
ଖାଉଥିବ ତା'ର ପାଶକୁ ଯିବ ନାହିଁ ।
ଯେଉଁଦେଶେ ବ୍ରାହ୍ମଣେ ଭୁଞ୍ଜୁଥିବେ ଆଗ
ତହିଁ ଘର କରିବ ବନ୍ଧୁଣ ସରାଗ ।
ଯେଉଁ ଦେଶେ ଲୋକଙ୍କୁ ଦେଉଥିବେ ଘାତ
ତହିଁ ଲୋକ ରହିଲେ ହୁଅଇ ପତିତ ।
ଯେଉଁ ଦେଶେ ସାଧୁ ଲୋକଙ୍କୁ ସତ୍କାର
କରୁଥିବେ ତହିଁ କରିବ ଯାଇ ଘର ।
ଯେଉଁ ଦେଶରେ ରାଜ ଧର୍ମରେ ପ୍ରଜାଙ୍କୁ
ପାଳୁଥିବ କେବେ ନ ଛାଡ଼ିବ ତାହାଙ୍କୁ ।
ରାଜାମାନେ ଧାର୍ମିକ ହୋଇଲେ ଲୋକର
ମହତ ଶ୍ରେଷ୍ଠ ଜାଣେ ହୃଏ ମନେ କର ।
ପଚାରିବାରୁ ଶ୍ରେଷ୍ଠ ମୁଖ୍ୟ କଥା ଯେତେ
କହିଲଇଁ ଆହେ ଗାଲବ ମହାମତେ ।
ଶେଷ ହେଲା ଗାଲବ ନାରଦ-ସମ୍ବାଦ
କହଇ କୃଷ୍ଣସିଂହ ନୃପ ବନ୍ଧ ମୋଦ ।



## ସଗର-ଅରିଷ୍ଟନେମି ସମ୍ବାଦ

ଯୁଧିଷ୍ଠିର ବୋଇଲେ ମୋ ପଣ୍ଡ ରାଜନ
କି ରୂପେ ପ୍ରଜାଗଣ କରିବ ପାଳନ ।
କି ରୂପରେ ବା ଆଚରଣକୁ ଆଚରି
ଏ ସଂସାର-ସମୁଦ୍ର ମଧ୍ୟୁଁ ଯିବି ତରି ।
ଭୀଷ୍ମ ବୋଇଲେ ଆହେ ସଗର ଅରିଷ୍ଟ—
ନେମିଙ୍କର ସମ୍ବାଦ ଶୁଣ ନରଶ୍ରେଷ୍ଠ ।
ସଗର ପୁଚ୍ଛିଲେ କି ଶ୍ରେଷ୍ଠ ଲୋକ କଲେ
ସୁଖ ଦୁଃଖ ଦୁଇରୁ ତରେ କହ ଭଲେ ।
ଅରିଷ୍ଟନେମି ଶୁଣି ବୋଇଲେ ସଗର
ମୋକ୍ଷ କଥା ସୁଖ ଦୁଃଖକୁ କରେ ଦୂର ।
ପୁତ୍ର ମିତ୍ର ଧନରେ ଆସକତ ହୋଇ
ଯେ ଥାଏ ତାହା ଦୁଃଖ ନିବର୍ତ୍ତଇ ନାହିଁ ।
ସ୍ନେହପାଶ କଥାକୁ କହିବା ତୁମ୍ଭଙ୍କୁ
ଜୁମ୍ଭେ ଦିଅ ହେ ଆମ୍ଭ କଥାରେ ମନକୁ ।

ନିର୍ବେଦ ହେଲେ ଲୋକନାଶେ ସ୍ନେହପାଶ
ନୋହିଲେ ସେ ପାଶ କରଇ ତାଙ୍କୁ ନାଶ ।
ପୁତ୍ରମାନେ ତୁମ୍ଭର ଯୁବା ହୋଇଛନ୍ତି
ମୁକ୍ତି ଇଚ୍ଛା ଏବେ କର ହେ ନରପତି ।
ପୁତ୍ର ଥିଲେ ନ ଥିଲେ ମୁକ୍ତି ଇଚ୍ଛା ନର
କଲେ ବାଧି ତାଙ୍କୁ ନ ପାରଇ ସଂସାର ।
ଇନ୍ଦ୍ରିୟମାନଙ୍କେ ବିଷୟ ଅନୁଭବ
କର ଏବେ ହେ ନରକୁଳଙ୍କର ଦେବ ।
ଲାଭ ହାନି ଦୁଇରେ ସମବୁଦ୍ଧି କରି
ତପସ୍ୟା ଆଚରଣ କର ବନ ସାରି ।
ସଂସାର ଅସକତ ଛାଡ଼ିଲେଟି ନର
ଅନ୍ତଃକାଳେ ବ୍ରହ୍ମକୁ କରଇ ତାହାର ।
ମୋକ୍ଷର ବୁଦ୍ଧି ଥିଲେ ପୁତ୍ର ଶରୀରୁଁ
ସ୍ନେହ ଛାଡ଼ିବାରେ ଲୁହଇ କଷ୍ଟ ଶୀଘ୍ରୁ ।
ଜନମ ମରଣକୁ ନ କରିବ ଚିନ୍ତା
ଭୂମିରେ ଜନ୍ମ ହେଲେ ମରନ୍ତି ଦେବତା ।
ପୂର୍ବଜନ୍ମେ ଯେ ଯାହା ଅରଜିଟି ଥାଏ
ମେ ତାହା ଏ ଜନ୍ମରେ ଭୋଗ କରିଯାଏ ।
ବିଧାତା ଯେଉଁ ଭକ୍ଷ୍ୟ କରିଛି ବିଧାନ
ସେ ଭକ୍ଷ୍ୟ ଭକ୍ଷି ଜାଣ ରହିଛନ୍ତି ପ୍ରାଣ ।
ଦଇବ ମାୟାସୂତେ ଚଳୁଥାନ୍ତି ପ୍ରାଣୀ
କିରୂପେ ସେ ପୋଷିବେ କହିବ କେ ବାଣୀ ।
କାଳ ଯୋଟିଦେବାର କ୍ଷଣ ସୁଖ ଦୁଃଖ
ନ ଜାଣିବ ଆପଣା ଲୋକର ନୃଶିଖ ।
ପ୍ରାଣ ଥାଉଁ ପିଣ୍ଡେ ଆପଣା ହିତ ଲୋଡ଼
ଆଣ ଆହେ ରାଜନ ମୋହରେ ନ ପଡ଼ ।
ଏହା ଜାଣି ରାଜନ ମୋକ୍ଷେ ମନ ଦିଅ
ଏ ସଂସାର କଥାରେ ନ ବଳାଅ ପ୍ରିୟ ।
କ୍ରୋଧ ମୋକ୍ଷ କ୍ଷୁଧା ପିପାସା ଯେ ଜିଣିଛି
ପାପ ତା'ର ବାଧା ନ ପାରେ କରି କିଛି ।
ମଦ୍ୟପାନ ଜୁଆ ମଇଥୁନ ବେଶ୍ୟା
ଯେ ଜିଣିଅଛି ତା'ର ଧରମଟି ଆଶ୍ୟା ।
ପ୍ରାଣୀଙ୍କର ଜନମ ନାଶ ଯେ ଜାଣଇ
ମୁକତ ହୋଇବାରେ ସନ୍ଦେହ ତା' ନାହିଁ ।
ଦୁଃଖ ସୁଖ ଲାଭ ଅଲାଭ ଜୟାଜୟ
ଇଚ୍ଛା ବିଦ୍ବେଷ ଭୟ ଉଦ୍‌ବେଗାଦିଚୟ ।

ସମାନ କରି ଯେଉଁ ଲୋକଟି ଜାଣଇ
ଇହ ପର ଏ ଦୁଇଲୋକ ସେ ଜିଣଇ ।
ଉଜତ ମୂତ୍ର ବିଷ୍ଠା ସମ୍ମିଶ୍ରିତ ଦେହ
ବୋଲି ଯେ ଜାଣଇଟି ନୁହଇ ତା ମୋହ ।
ଋଷି ଦେବ ଅସୁର ପୁଣ୍ୟ ପାପ ବଳେ
ଯାଉଅଛନ୍ତି ଆସୁଛନ୍ତି ସବୁବେଳେ ।
ସହସ୍ର ସଂଖ୍ୟା ରାଜାମାନେ ଧର୍ମାଧର୍ମ
କରି ଜନ୍ମେ ମରଣେ ଭୁଞ୍ଜିଲେଣି କର୍ମ ।
ଏବେ ତ ମୋ ବଚନ ଶୁଣିଲ ନୃପତି
ମୋକ୍ଷକଥା ହେବାରେ ହୁଅ ବସି ମତି ।
ସଗର ଶୁଣି ଅରିଷ୍ଟନେମି ବଚନ
ମୋକ୍ଷରେ ମନଦେଲେ ପାଣ୍ଡବ-ରାଜନ ।
ଧର୍ମରେ ପ୍ରଜା ପାଳି ଅନ୍ତେ ସୁର-ଆଳେ
ଯାଇକରି ବସିଲେ ସୁରଙ୍କର ମେଳେ ।
ଅରିଷ୍ଟନେମି ସଗରଙ୍କର ସମ୍ବାଦ
ସରିଲା କହେ କୃଷ୍ଣସିଂହ ବନ୍ଦି ମୋଦ ।

—*—

## ଶୁକ୍ର ଚରିତ

ଯୁଧିଷ୍ଠିର ବୋଇଲେ କଉତୁକ କଥା
ଗୋଟିଏ ପୁଚ୍ଛିବି ହେ ପିତା ମହାରଥା ।
ବ୍ରାହ୍ମଣ ହୋଇ ଶୁକ୍ର ଦୈତ୍ୟଗୁରୁ ହେଲେ
ଦେବଙ୍କଠାରେ କିମ୍ପା ଈର୍ଷାକୁ ବହିଲେ ।
ଭୀଷ୍ମ ବୋଇଲେ ହେ ଶୁଣିଛୁ ମୁହିଁ ଯାହା
କହିବି ତା ଶୁଣ ପାଣ୍ଡବ ନରନାହା ।
ଦୈତ୍ୟମାନେ ନିତ୍ୟେ ଦେବଙ୍କୁ ପୀଡ଼ା ଦେଇ
ଭୃଗୁପତ୍ନୀ-ଆଶ୍ରମେ ରହନ୍ତି ସେ ଯାଇ ।
ଦାନବେ ପୀଡ଼ିତ ହେବାରୁ ଦେବଗଣ
ବିଷ୍ଣୁଙ୍କଠାରେ ଯାଇ ପଶିଲେ ଶରଣ ।
ଦେବଙ୍କର ଦୁଃଖ ଦେଖିଣ ଚକ୍ରଧର
ଚକ୍ର ପେଷି ଛେଦିଲେ ଭୃଗୁପତ୍ନୀ-ଶିର ।
ତାହା ଦେଖି ଦୈତ୍ୟ ଭୟରେ ପଳାଇଲେ
ଭାର୍ଗବଙ୍କଠାରେ ଯେ ଆଶ୍ରୟ ଲଭିଲେ ।
ମାତୃ ବଧ କାରଣ ଜନ୍ତ ଶୁକ୍ର ଯତି
ଦେବଶତ୍ରୁ ହେବାକୁ ବଳାଇଲେ ମତି ।

ଇନ୍ଦ୍ର ତାହା ଜାଣି କୁବେର ସଙ୍ଗେ ଯାଇ
କହିଲେ ହେ ଶୁକ୍ର ବିରୋଧ କାର୍ଯ୍ୟ ନାହିଁ ।
ଶୁକ୍ର ତ କ୍ରୋଧରେ ଅଜ୍ଞାନ ହୋଇଥିଲେ
ଏଣୁ ତାଙ୍କ ନିଷେଧ ବାଣୀ ନ ଶୁଣିଲେ ।
ଶୁକ୍ର ଯୋଗବଳରେ ଦେବରୂପ ଧରି
ପାଳିଲେ ଧରଣୀ ମଣ୍ଡଳ ଦଣ୍ଡଧାରୀ ।
ହେନେ ସେ କୁବେରଙ୍କ ଦେହରେ ରହିଲେ
କୁବେରଙ୍କ ଧନଯାକକୁ ନେଇଗଲେ ।
ଧନହୀନ ହୋଇ କୁବେର ଲାଜ ପାଇ
ସେବା କରିଲେ ଯାଇ ଉମାଦେବୀ-ସାଇଁ ।
ପ୍ରସନ୍ନ ଯହୁଁ ତାଙ୍କୁ ହେଲେ ଦେବ ହର
କହିଲେ ସେ ହରଙ୍କୁ ଯେମନ୍ତ ଉତ୍ତର ।
ଯୋଗବଳରେ ଶୁକ୍ର ଧନ ମୋର ନେଲେ
କି ଉପାୟ କରିବି କହ ମୋତେ ଭଲେ ।
ଏହା ଶୁଣି କରି ଯେ ଉମାଦେବୀ-ସାଇଁ
ଶୂଳ ଧରି ଶୁକ୍ରେ ରହିଲେ କ୍ରୋଧ ହୋଇ ।
ଶୁକ୍ର ତା ଜାଣିପାରି ଶିବଙ୍କର ଶୂଳ-
ମୁନରେ ରହିଲେ ହେ ପାଣ୍ଡବ ନୃପାଳ ।
ହର ଶୂଳମୁନେ ରହିଲେ ଶୁକ୍ର ଜାଣି
ଶୂଳମୁନ ନୁଆଇଁ ଦେଲେ ସେହିକ୍ଷଣି ।
ସେ ହନୁଁ ସେ ଶୂଳ ପିନାକ ବୋଲାଇଲେ
ଶୁକ୍ରକୁ ଧରି ହର ଗ୍ରାସ କରିଦେଲେ ।
ଯୁଧିଷ୍ଠିର ବୋଇଲେ ଶୁକ୍ରକୁ ହର ଗ୍ରାସ
କରନ୍ତେ କି କଲେ ସେ କର ତା ପ୍ରକାଶ ।
ଭୀଷ୍ମ ବୋଇଲେ ହେ ଶୁକ୍ରଙ୍କୁ ଢୋଇ ଗିଳି
ଜଳରେ ତପ କଲେ ଯାଇକରି ଶୂଳୀ ।
ତପ ଅନ୍ତେ ଜଳଭିତରୁ ବାହାରିଲେ
ସେ କାଳେ ବ୍ରହ୍ମା ତାଙ୍କ ସମୀପକୁ ଗଲେ ।
ବୋଇଲେ ଆହେ ହର ତପସ୍ୟା ସମ୍ପୂର୍ଣ୍ଣ
ହେଲାଟିକି କୁମ୍ଭର କର ତା ବଖାଣ ।
ହର ବୋଇଲେ ମୁଁ ଉତ୍ତମ ତପ କଲି
କି ପୁଚ୍ଛ ବୋଲି ବସିଲେ ପୁଣି ଭଳି ।
ଶୁକ୍ର ରୁଦ୍ରଙ୍କର ଗର୍ଭରେ ରହିଥିଲେ
ସେ ସମସ୍ତ ରୁଦ୍ରଦେବଙ୍କୁ ସ୍ତୁତି କଲେ ।
ମହାଦେବ ବୋଇଲେ ମେଢ୍ର ଦ୍ୱାରେ ଶୁକ୍ର
ବାହାର ମୋ କଥା ନ ଭେଦ ହୃଦେ ବକ୍ର ।

ଶିବଙ୍କର ଆଜ୍ଞା ନ ଲଙ୍ଘି ଶୁକ୍ର ଋଷି
ମେଢ୍ର ଦ୍ୱାରକୁ ବାହାରିଲେ ହୋଇ ତୋଷୀ ।
ଶୁକ୍ରଙ୍କ ବାହାରିବା ଦେଖିକରି ଶିବ
ଶୁଣି ହୃଦ-ପଦ୍ମେ କ୍ରୋଧକୁ ଦେଲେ ଠାବ ।
ଦୁର୍ଗା ତାହା ଜାଣି ବୋଇଲେ ଛାଡ଼ କ୍ରୋଧ
ଜାତ କରି ଶୁକ୍ରଙ୍କୁ କରିବ କେ ବଧ ।
ଏହା ଶୁଣି ଶୁକ୍ର ଦେବତା ତୋଷ ହେଲେ
ରୁଦ୍ରଙ୍କ ଆଜ୍ଞା ପାଇ ଶୁକ୍ରଋଷି ଗଲେ ।
ସେହି ଦିନରୁ ଜାଣ ଶୁକ୍ର ଋଷିବର
ଦେବଙ୍କୁ ଛାଡ଼ି ଅସୁରଙ୍କୁ କଲେ ମୋର ।
ପଚାରିଲ ଯାହା କହିଲୁଁ ତାହା ଆମ୍ଭେ
ଆଉ କି କଥା ଥିଲେ ପଚାର ହେ ଏବେ ।
ଏଠାରେ ହେଲା ଶୁକ୍ର ଚରିତ ସମାପ୍ତି
କହଇ ତୋଷେ କୃଷ୍ଣସିଂହ ମହୀପତି ।

—:*:—

## ଜନକ ପରାଶର ସମ୍ବାଦ

ଯୁଧିଷ୍ଠିର ବୋଇଲେ କି ଶୁଭକର୍ମ କଲେ
ଜନ୍ମ ପରେ ଶ୍ରେୟ ପାଇ ତା କହ ଭଲେ ।
ଭୀଷ୍ମ ବୋଇଲେ ହେ ଜନକ ପରାଶର
ସମ୍ବାଦକୁ କହିବା ଶୁଣ ନରବର ।
ଜନକ ପଚାରନ୍ତେ ପରାଶର ଋଷି
କହିଲେ ମୋକ୍ଷଧର୍ମ ଜ୍ଞାନ ହୃଦେ ଘୋଷି ।
ଧର୍ମରୁ ଶ୍ରେୟ ହୋଇ ଏ ଜଗତ ଯାକ
କଥା ଥିଲା ପରି ତ ନ କରି ଆଲୋକ ।
ଧର୍ମରୁ ବଡ଼ ହୋଇ ଦେହୀଙ୍କର କଥା
ନାହିଁଟି ହେ ଜାଣ ଜନକ ମହାରଥୀ ।
ଧର୍ମଙ୍କରେଟି ଚାରିଆଶ୍ରମ ପ୍ରବର୍ତ୍ତି—
ଥିବାରୁ ମହାସୁଖେ ରହିଅଛୁ କ୍ଷିତି ।
ଚାରିଗୋଟି ପ୍ରକାରରେ ହୋଇଛୁ ବେଭାର
ଧରମକୁ ଚାହିଁ ରାଜନ ମନେ କର ।
ସୁକୃତ କଲେ ଅନ୍ତକାଳେ ସୁଖପାଏ
ଦୁଷ୍କୃତ କରି ମଲେ ନର୍କକୁ ଯାଏ ।
ମନରେ ବଚନରେ ନୟନରେ ଯାହା
କରିଥାଏ ସଂଯୋଗ ଭୁଞ୍ଜଇଟି ତାହା ।
ସୁକୃତ ଦୁଷ୍କୃତ ଯେ କ୍ଷୟାକ୍ଷୟ ହୋଇ
ପୁନଃ ପୁନଃ ଭୋଗ ଭୁଞ୍ଜଇ ନରସାଇଁ ।
ଦମ-କ୍ଷମା-ଧୃତିମନ୍ତ ଯେ ସତ୍ୟବାଦୀ
ହୋଇଲେ ଲୋକ ସୁଖ ପାଏ ନିର୍ବିବାଦୀ ।
ସୁକୃତ ଦୁଷ୍କୃତ ଏ ନିଶ୍ଚିତ କାହାର
ନୁହଇ ହେ ଜନକ ରାଜା ମନେ କର ।
ପରର ଦୁଷ୍କୃତ ଓ ସୁକୃତକୁ କେହି
ଜାଣି ନାହିଁ ତ ଆଜଯାଏ ଶୁଣା ନାହିଁ ।
ପର ଯେଉଁ କର୍ମକୁ କରିବ ଅସୂୟା
ସେହି କର୍ମରେ ଯାଇ ଭୁଞ୍ଜଇଟି ଠିଆ ।
ଉତ୍ସବନ୍ତ କ୍ଷତ୍ରିୟ ସର୍ବଭକ୍ଷ ଦ୍ୱିଜ
କୃଷିବିହୀନ ବୈଶ୍ୟ ନୃପ ହୀନ ରାଜ୍ୟ ।
ଶ୍ରମ-ହୀନ କୁଳୀନ ଶୂଦ୍ର ଅନାଚାରୀ
ମୁକ୍ତ ରାଗୀ ବୁଧ ଅଶ୍ଳୀଳ ଦୁଷ୍ଟା ସ୍ତ୍ରୀରି ।
ମୂର୍ଖ ହୋଇ ବକ୍ତା ଅଯୋଗୀ ସ୍ନେହହୀନ
ହେବାର ହେ ଧିକ୍କାରେ ଜାଣନ୍ତି ଜାଣ ।
ମନୋରଥ-ରଥରେ ଜ୍ଞାନ-ରଜ୍ଜୁ ଯୋଚି
ଯେ ଯାଏ ତାହାକୁଟି ବୁଦ୍ଧିମନ୍ତେ ପାଞ୍ଚି ।
ପୁଣ୍ୟକର୍ମ କଲେ ଲୋକର ଉତ୍କର୍ଷ
ବଢ଼ଇ ହେ ଜାଣ ଜନକ ରାଜ-ଈଶ ।
ଜାତିଭ୍ରଷ୍ଟ ଲୋକ ହୋଇବ ଯେବେ ନନା
ତେବେ ତାକୁ ନ କରିବଟି ସମ୍ଭାବନା ।
ପୁଣ୍ୟ କରମ କଲା ଲୋକ ଜାତିହୀନ
ହେଲେ ସମ୍ଭାବନା ପାଇ ସେ ବୋଲି ଘେନ ।
ଅଜ୍ଞାନରେ ପାପକୁ ଥିବ ଯେବେ କରି
ତା ନାଶ କରିଦେବ ତପସ୍ୟା ଆଚରି ।
ପାପ କରିଲେ ଯେବେ ଧନ-ବୃଦ୍ଧି ହେବ
ଜାଣିବା ଜନ ତାହା କେବେ ନ କରିବ ।
ପାପକର୍ମ ସକାଶୁଁ ସବୁ ପୁଣ୍ୟ ଯାଏ
ଘୋର ପରି ନରକକୁ ଟି ଅବଜାଏ ।
ଦେବତା ମୁନିମାନେ ଯାହା କରିଛନ୍ତି
ନର କରିବାକୁ ତା କରାଇବ ମତି ।
ଆପଣା ସାମର୍ଥ୍ୟକୁ ଚାହିଁ ଶୁଭକର୍ମ
କରୁଥିଲେ ଲୋକର ପ୍ରକାଶଇ ଧର୍ମ ।
ଶତ୍ରୁ ଜିଣି ପ୍ରଜାପାଳନ କରି ରାଜା
ବନମଧ୍ୟେ ଗଲେ ସ୍ୱର୍ଗରେ ପାଏ ପୂଜା ।
ଧର୍ମାନ୍ୱିତ ହୋଇ ପ୍ରାଣୀଙ୍କଠାରେ ଦୟା
କରୁଥିବ ହୃଦରୁ ଛାଡ଼ିଦେଇ ମାୟା ।

ବୃଦ୍ଧ ଲୋକମାନଙ୍କୁ ପୂଜା କରୁଥିବ
ବଚନରେ ସ୍ୱପନେ ହେଲେ ନ ଲଙ୍ଘିବ ।
କେହି କାହାକୁ ଉପକାର ନ କରଇ
କେ କାହାକୁ ଦେବାକୁ ସମର୍ଥ ନୁହଇ ।
ସବୁ କଥାଯାକରେ ଈଶ୍ୱର କାରଣ
ମୁଁ କଲି ବୋଲିବାର ବ୍ୟର୍ଥ ଅଟେ ଜାଣ ।
ଦେବତା ପର ମାତା ପିତା ସେବଥାଇଁ
ସମସ୍ତ ହେଲେ ପୁଣି ତାହାକୁ ଛାଡ଼ଇ ।
ଏହା ଜାଣି ଆପଣା ଭଲ ହେବା ପାଇଁ
ଶୁଭକର୍ମକୁ ବସି କରିବ ନଠାଇ ।
ସୋଦର ଭାଇ ଯେବେ ଦଗାଦାର ହେବ
କହୁଥାଇଁ ଅବଶ୍ୟ ତାହାକୁ ଛାଡ଼ିବ ।
ସମାନ ଲୋକଠାରେ ଦେବ ଦଆଇବ
ଏହା ବାହାରେ ମଧ୍ୟ ଆପଣହିଁ ନେବ ।
ନ୍ୟାୟରେ ଯେଉଁ ଧନ ହୋଇବ ପ୍ରାପତ
ବଣ୍ଟାଇବ ସେ ଧନ ଦେଇକରି ମତ ।
ଧର୍ମାର୍ଥୀ ଲୋକ କେବେ ନୃଶଂସ କରମ
ଧନ ପାଇ ନ କରିବ ହେ ନରୋତ୍ତମ ।
ସାମର୍ଥ୍ୟକୁ ଲଙ୍ଘିଣ ସବୁ କାର୍ଯ୍ୟଯାକ
କରୁଥିବ ହୃଦରୁ ଛାଡ଼ିଦେଇ ଦକ ।
ରନ୍ତିଦେବ ଯେ ଅତିଥିଙ୍କି ଜଳଦେଲେ
ମହତଫଳ ପାଇ ସ୍ୱର୍ଗପୁରେ ଗଲେ ।
ଶୈବ୍ୟ ରଜା ଫଳ ପତ୍ରରେ ମାଠରଙ୍କୁ
ସନ୍ତୋଷ କରି ଗଲେ ମଧ୍ୟ ସେ ସ୍ୱର୍ଗକୁ ।
ଦେବତାତିଥି ଭୃତ୍ୟ ପିତୃ ଋଷି ଋଣ—
ଘେନି କରି ଜନ୍ମ ହୁଅନ୍ତି ଲୋକଗଣ ।
ବେଦପାଠ ପଢ଼ିଲେ ଋଷିଋଣ ଯାଏ
ଯାଗରେ ସନ୍ତୋଷ ହୁଅନ୍ତି ଦେବତାଏ ।
ପାଳନ କଲେ ଭୃତ୍ୟମାନେ ତୋଷୀ ହୋଇ
ରହନ୍ତି ପାଖେ କାହେ ଟଣ୍ଡାକୁ ପକାଇ ।
ଶ୍ରାଦ୍ଧ କଲେ ପିତୃଏ ହୋଇଣ ସନ୍ତୋଷ
ବୋଲନ୍ତି ବାକୁ ଅନ୍ତେ ପାଅ ସ୍ୱର୍ଗବାସ ।
ଧନରେ ବରଜିତ ହୋଇ ଋଷିମାନେ
ହୋମ କରି ବସିଲେ ଯାଇ ସ୍ୱର୍ଗସ୍ଥାନେ ।
ଲୁତକ ପୁତ୍ର ଦେବତାଙ୍କୁ ସ୍ତୁତି କଲେ
ବିଶ୍ୱାମିତ୍ରଙ୍କର ପୁତ୍ରଙ୍କୁ ଲଭି କଲେ ।

ଶିବଙ୍କ ପ୍ରସାଦେ ଉଶନା ଶୁକ୍ର ନାମ
ବନ୍ଦନ ବୋଲାଇଲେ ଋଷିଙ୍କ ଉତ୍ତମ ।
ଆଜ ହିଁ ଆକାଶରେ ଉଦୟ ହୁଅନ୍ତି
ମହତପ୍ରଭାକୁ ସେ ମଧ୍ୟ ବହୁଛନ୍ତି ।
ଅସିତ ଦେବଳ ଆଦି ସେ ଋଷିଗଣ
ବିଷ୍ଣୁ ସ୍ତୁତି କରି ପାଇଲେ ସିଦ୍ଧି ଜାଣ ।
ସାଧୁଲୋକମାନେ ସେହିରୂପେ ବିଷ୍ଣୁଙ୍କୁ
ସ୍ତୁତି କରି ପାଇଲେ ପରମ ପଦକୁ ।
ଧନାକାଂକ୍ଷୀ ହୋଇଲେ ନ ଛାଡ଼ିବ ଧର୍ମ
ନାଶ କରଇ ଜାତ ହୋଇଲେ ଅଧର୍ମ ।
ଅଗ୍ନି ସେବା କରି ଯେ ଅଗ୍ନି ଘରେ ରଖେ
ସେହି ମଧ୍ୟ ଜାଣ ନ ପଡ଼ଇଟି ଦୁଃଖେ ।
ବେଦମାନେ ଯେ ନିତ ଅଗ୍ନିଙ୍କରେ ସ୍ଥିତ
ହୋଇଅଛନ୍ତି ଆହେ ନୃପକୁଳ-ସୁତ ।
ଯେଉଁ ବ୍ରାହ୍ମଣଟି କରମ କରୁଥାଏ
ଅଗ୍ନି ଠାରୁ ଅଧିକ ଜାଣ ତାକୁ ରାୟେ ।
ମାତା ପିତାଙ୍କଠାରୁ ଅଧିକ ବନ୍ଦନ
ମନେ କରି ସେବା କରିବ ପ୍ରତିଦିନ ।
ମାନ ଛାଡ଼ି ବୃଦ୍ଧଲୋକଙ୍କୁ ଯେ ସେବଇ
ସାଧୁଙ୍କଠାରେ ଜାଣ ପୂଜ୍ୟ ସେ ହୁଅଇ ।
ସକଳ ଅବସ୍ଥାରେ ସାଧୁଙ୍କର ସଙ୍ଗ
କରିବ ଛାଡ଼ି ଦେଇ ମନୁଁ କ୍ରୀଡ଼ା-ରଙ୍ଗ ।
ଉଦୟ-ପର୍ବତରେ ରବି ଉଦେ ପରି
ଦିଶେ ଲୋକ ସାଧୁ ସଙ୍ଗରେ ଦଣ୍ଡଧାରୀ ।
ଏହି ସକାଶରୁ ଅନିତ୍ୟ ଏ ସଂସାର
ହୃଦେ ଧରି ରାଜନ ସାଧୁ ସଙ୍ଗ କର ।
ସୁଖ ଦୁଃଖ ଜାଣି ଯେ କରେ ଶୁଭକଥା
ତାକୁ ବାଧି ନ ପାରେ ଅମଙ୍ଗଳ-ବ୍ୟଥା ।
ଅଧର୍ମେ ବଡ଼ ଫଳ ଯେବେଟି ହୋଇବ
ତେବେ ତାହାକୁ ଲୋକ ଲୋଡ଼ା ନ କରିବ ।
ଯେଉଁ ରାଜା ପରଜା ପାଳି ରାଇ ଦାନ—
ଦିଏ, ତା'ର ଅଧିକ ଅଟଇ ଜୀବନ ।
ବ୍ରହ୍ମା ସରଜନା ରାଜାଙ୍କୁ କରିଛନ୍ତି
ସବୁ ପ୍ରାଣୀ ପାଳିବା ପାଇଁ ହେ ନୃପତି ।
ମହୀପତି ରକ୍ଷା କରିବ ଦ୍ୱିଜ କର୍ମ
ଶୂଦ୍ର ଧର୍ମ ଅର୍ଜିଲେ ନାଶ ଯାଏ ଧର୍ମ ।

ଧର୍ମ ଥିଲେ ସବୁ ପ୍ରାଣୀଏ ସୁଖ ପାଇ
ଜନକୁ ହରୁଥାନ୍ତି ଭୟକୁ ନ ବାନ୍ଧି ।
ପ୍ରଜାଏ ସୁଖ ଦେବେ ପାନ୍ତି ରାଜା ଯେବେ
ସେ ରାଜାକୁ ପୂଜନ୍ତି ସ୍ୱର୍ଗେ ସୁରମଣି ।
ନ୍ୟାୟଧନ କର୍ତ୍ତାକୁ ଅନ୍ୟାୟର ଶଏ—
ଟଙ୍କା ସାର ନୋହେ ଜାଣ ହେ ନରରାୟେ ।
ବ୍ରାହ୍ମଣଙ୍କୁ ଯେ ଯେତେ କରଇ ସତ୍କାର
ସେ ତେତେକ ସୁକୃତ ଲଭେ ମନେ କର ।
ନ ମାଗୁଁ ଯେ ଦ୍ୱିଜଲୋକକୁ ଦାନ ଦିଏ
ସେ ଦାନକୁ ଉତ୍ତମ ବୋଲି କହନ୍ତି ରାୟେ ।
ମାଗିଲେ ଦାନ ଦେଲେ ବୋଲାଏ ମଧ୍ୟମ
ଅବଜ୍ଞାରେ ଦେବାର ଅଟଇ ଅଧମ ।
ବ୍ରାହ୍ମଣ ପ୍ରତିଗ୍ରହ, କ୍ଷତ୍ରି ଆୟୋଧନ
ବୈଶ୍ୟ ନ୍ୟାୟ ଯେ ଶୂଦ୍ର ସେବାର୍ଜିତ ଧନ ।
ଙ୍କରେ କର୍ମ କଲେ ସଫଳ ହୋଏ ସିଦ୍ଧି
ଶାସ୍ତ୍ରରେ ଏହା ମଧ୍ୟ ଲେଖିଛନ୍ତି ବିଧି ।
ଶୂଦ୍ର କର୍ମ ଛାଡ଼ି ବ୍ରାହ୍ମଣ ଦୁଇବର୍ଣ୍ଣ—
କର୍ମ କରିଲେ ନିନ୍ଦା ନ ପାଏଟି ଜାଣ ।
ନ ପାରେ ଯେବେ ଶୂଦ୍ର ସେବାବୃତ୍ତି କରି
ପୋଷିବ ପେଟ ଗୋରୁ ପାଳନା ଆଚରି ।
ପୁନଶ୍ଚ ବାରସୀ ମୃଗୁର ଧରି କରେ
ହାଣିବ କାଠମାନ ତୋଷେ ନିରନ୍ତରେ ।
ମଦ୍ୟ ମାଂସକୁ ଛାଡ଼ି ସବୁ କାରବାର
ଶୂଦ୍ରଲୋକ କଲେ ଯେ ଦୋଷ ନୋହେ ତା'ର
ପୂର୍ବକାଳରେ ଦୋଷ କରିଲେ ପ୍ରଜାଗଣେ
ରାଜାମାନେ ଦଣ୍ଡ ଦେଉଥିଲେ ବଚନେ ।
ଧର୍ମରେ ତ ରାଜାଏ ପ୍ରଜାଙ୍କୁ ପାଳିଲେ
ଏ ଯୋଗୁଁ ଅସୁରେ ସହି ନ ପାରିଲେ ।
ପ୍ରଜାଙ୍କ ଦେହରେ ରହନ୍ତେ ଘର କରି
ଧର୍ମରୁ ଗଲା ତାଙ୍କ ବୁଦ୍ଧିମାନ ଫେରି ।
ଏ ସକାଶରୁ ଦର୍ପ ମୋହ କ୍ରୋଧମାନ
ବଢିଲା ଅବଚ୍ଛିନ୍ନେ ଜନକ ରାଜନ ।
ବଚନ ଦଣ୍ଡେ ଯାହା ଲଜ ପାଉଥିଲେ
ଦେହଦଣ୍ଡ ପାଇ ସୁଦ୍ଧା ତା ନ ମାନିଲେ ।
ଏହି କାଳରେ ଶିବ ଦେବଙ୍କ ବଚନେ
ତ୍ରିପୁରଯାକ ନାଶିଲେ ବାଣମୁନେ ।

ମହାମୋହ ନାମରେ ଗୋଟିଏ ଅସୁର
ଥିଲା ତାକୁ ଶୂଳେ ମାଇଲେ ଦେବ ହର ।
ଅସୁର ନାଶ ଯାନ୍ତେ ନର ପୂର୍ବପରି
ଧର୍ମ ଆଚରିଲେ ଜନକ-ଦଣ୍ଡଧାରୀ ।
ଇନ୍ଦ୍ର ସୁର ରାଜ୍ୟରେ ଅଭିଷିକ୍ତ ହେଲେ
ସପ୍ତର୍ଷି ଦଣ୍ଡ ଦେବାରେ ଯୁକ୍ତ ହେଲେ ।
ଏ ଉତ୍ତାରୁ ବିପୃଥୁ ନାମେ ରାଜା ହୋଇ
ଦୋଷ ବୁଦ୍ଧି ପ୍ରାଣୀଙ୍କି ଦଣ୍ଡିଲେ ନିଠାଇ ।
ଏହା ବାହାରେ ଦଣ୍ଡ ଦେବାକୁ ପୃଥକ
ପୃଥକ ରାଜା କଲେ ହେ ରାଜ-ନାୟକ ।
ଦାନବେ ତ ନୃପତି-ପଦ ପାଇଥିଲେ
ପୂର୍ବବୃତ୍ତି ପରି ସେ ବୃତ୍ତି ଆଚରିଲେ ।
ତାହା ଜାଣି ମିନା ମୁଁ କହୁଛି ତୁମ୍ଭଙ୍କୁ
ଛାଡ଼ ଏ ହୃଦୟରୁ ହିଂସା କରମକୁ ।
ସ୍ୱଧର୍ମରେ ପୁଣି ନାଥ ପରଜାଗଣ
ପାଳନା କରି ଆହେ ଜନକ ରାଜନ ।
ଗୁଣରେ ଅନୁରକ୍ତ ହୋଇଲେଟି ପ୍ରଜା
ସ୍ୱରଗରେ କରିବେ ତୁମ୍ଭଙ୍କୁ ବଡ଼ରାଜା ।
ଧର୍ମଶୀଳ ହୋଇଣ ଲୋକରେ ସଞ୍ଚାର
ଯେ କରୁଛି ମଙ୍ଗଳ ହେଉଛି ତାହାର ।
ଗୃହୀ ଲୋକର ଧର୍ମବିଧି କହିଲଇଁ
ତପବିଧିକୁ ଏବେ କହିବା ବତାଇ ।
ଗୃହୀଲୋକ ସଙ୍ଗ-ଆସ୍ଥାରେ ପ୍ରତିଦିନ
ପୁଣି ଈର୍ଷ୍ୟା ଧନରେ ବଢ଼ାଅଇ ମନ ।
ଅନିତ୍ୟ ବୋଲିଣ ସଂସାର ନ ଜାଣଇ
ରାଗଦ୍ୱେଷ-ରଜ୍ଜୁରେ ଥାଏ ବନ୍ଧ ହୋଇ ।
ରାଗ ଦ୍ୱେଷ ସକାଶୁଁ ପୁଣି ମିଥ୍ୟେ ପ୍ରୀତି
ବଢ଼ାଇଣ ଅନ୍ତମେ ଲଭଇ ଦୁର୍ଗତି ।
ମାନ ଗର୍ବ ମୋହ ରହନ୍ତି ଘର କରି
ହୃଦୟରେ ଜ୍ଞାନ ବିଅନ୍ତି ଏଣୁ ହରି ।
ବୁଦ୍ଧିଯୁକ୍ତ ଧର୍ମବାଞ୍ଛା ଯେତେକ ନର
ଧର୍ମକଥା ମୂଳ ଅଟଇ ତାହାଙ୍କର ।
ଆଧି ବ୍ୟାଧି ଦୁଇରେ ହୋଇବାରୁ ଯୁକ୍ତ
ଛାଡ଼ଇ ପୁଣି ମିତ୍ରଠାରୁ ସ୍ନେହ ଶତ୍ରୁ ।
ନିର୍ବେଦ ଜାତ ହେବା ଯୋଗୁଁ ଶାସ୍ତ୍ର ଦେଖି
ବନେ ରହି ତପ ଆଚରେ ହୋଇ ଦୁଃଖୀ ।

ଏରୂପେ ହୋଇ ଲୋକେ ତପସ୍ୟାକୁ କଲେ
ଲେଖନ୍ତି ଜାଣ ତାକୁ ସଂସାରରେ ଭଲେ ।
ପୂର୍ବେ ପ୍ରଜାପତି ବହୁତ ତପ କଲେ
ଏ ସଂସାରେ ପ୍ରଜାମାନଙ୍କୁ ସରଜିଲେ ।
ଦେବତାମାନେ ତପସ୍ୟାରେ ସିଦ୍ଧ ହୋଇ
ରହିଛନ୍ତି ଜାଣ ରାଜନ ମନ ଦେଇ ।
ମର୍ତ୍ତ୍ୟଲୋକରେ ଯେତେ ରାଜା ହୋଇଛନ୍ତି
ତପସ୍ୟାରେ ଫଳ ସେ ଜାଣ ନରପତି ।
ଘୋଡ଼ା ହାତୀ ପାଲିଙ୍କି ଅଳଙ୍କାର ଦାସ
ତପସ୍ୟାଫଳେ ଭୋଗ ହୁଅଇ ବିଶେଷ ।
ଦିବ୍ୟ ଘର ଦିବ୍ୟ ରମଣୀ ଦିବ୍ୟ ପୁଷ୍ପ
ତପୋବଳରେଟି ମିଳଇ ଅମାପ ।
ତପୋବଳେ ଇନ୍ଦ୍ର ପଦବୀ ସିଦ୍ଧ ହୋଏ
ତପରୁ ବଡ଼ ହୋଇ କଥା ନାହିଁ ରାୟେ ।
ତପସ୍ୟା ନ ଥିଲେ କୁଟୀରୁ ଛାଡ଼ି ବାସ
ଘୁଞ୍ଚ ନ ଯାଇ ପୂର୍ବେ ଜାଣ ନରଈଶ ।
ସୁଖ ଦୁଃଖ ଏ ଦୁଇ କଥାରେ ଲୋଭକୁ
କରିବ ତ୍ୟାଗ ଯେବେ ଲୋଡ଼ଣ ଭଲକୁ ।
ଅସନ୍ତୋଷ ହୋଇଲେ ଲୋକ ଦୁଃଖ ପାଏ
ଏହା ଜାଣି ଘୁଞ୍ଚିବ ତା ସବୁ ଉପାୟେ ।
ଲୋଭ ସକାଶରୁ ବୁଦ୍ଧି ହୁଅଇ ଧ୍ୱଂସ
ଆୟୁଷ ଅଣ୍ଡୁ ବେଳେ ଲାଗେ କାଳ-ପାଶ ।
ଏହା ଜାଣି ନିଷ୍ପାପ ହେବା ପାଇଁ ଯେହି
ତପ କରୁଅଛି ତା ସୁଖ-କ୍ଷୟ ନାହିଁ ।
ଧର୍ମରେ ଯେଉଁ ଲୋକ ସନ୍ଦେହ ହୃଦୟ
କରଇ, ଭୋଗ କରେ ସେ ନରକଚୟ ।
ଦୁଃଖ ସୁଖ ଦୁଇରେ ବର୍ଜି ଯେହୁ ଥାଏ
ଜ୍ଞାନଚକ୍ଷୁ ତାହାର ଜଗତେ ବୋଲାଏ ।
ନଦୀ-ନଦ ସମୁଦ୍ର ଆଶ୍ରେ କଲା ପ୍ରାୟେ
ଗୃହସ୍ଥ-ଧର୍ମେ ସବୁଧର୍ମ ଅଛି ରାୟେ ।
ଜନକ ବୋଇଲେ ହେ କେଉଁ ଧର୍ମ କଲେ
ଅନ୍ତଜନ୍ମା ପୁରୁଷ ହୁଅଇଟି ଭଲେ ।
ଏହା ମୋର ଆଗେ କହ ତ ପରାଶର,
ଶୁଣିବାକୁ କରୁଛୁ ଆଶା ହୃଦେ ଘର ।
ଯିଏ ଯାହାଠାରୁ ଜନମ ହୁଅଇ
ତାକୁ ତାହାର ଆତ୍ମା ବୋଲିକରି କହି ।
ବିଶେଷ ଧର୍ମକୁ ସେ ଲଭେ କେଉଁରୂପେ
ଏହା ମୋତେ କହିବା ହେଉଁ ବସି ଆପେ ।
ପରାଶର ବୋଇଲେ ଯେ ଯେତେ ନିଷ୍ପାପ
ହୁଅଇ ସେ ତେତେ ଅଧିକ ହୋଏ ନୃପ ।
ରଜୋସାର୍ଯ୍ୟ ଦୁହେଁ ହୋଇଲେ ସମଜାତି
ଉତ୍ତମପୁତ୍ର ବୋଲି ତାହାଙ୍କୁ କହନ୍ତି ।
ଏହି ଦୁଇରେ ଗୁଣ ଅଧିକ କଥାଏ
ହେଲେ ଦୁଷ୍ଟପ୍ରକୃତି ବୋଲାଏ ଯେହୁ ରାୟେ ।
ପ୍ରଜାପତିଙ୍କ ମୁଖ ଭୁଜ ଉରୁ ପାଦ—
ମଧ୍ୟୁଁ ଚତୁର୍ବର୍ଣ୍ଣ ଜନ୍ମିଲେ ବହି ମୋଦ ।
ବିଧାତା ସର୍ଜନାଟି ଏତେକ ବୋଲନ୍ତି
ଆଉ ବର୍ଣ୍ଣଯାକ ସଙ୍କର ନରପତି ।
ବ୍ରହ୍ମାଙ୍କଠାରୁ ମାନବେ ହେଲେ ଜାତ
ନାନା ଗୋତ୍ର ବିମ୍ବାଇ ହୋଇଲା କହତ ।
ମୃଗ ଗାଈ ସର୍ପ ଗର୍ଭରୁ ଜାତ ହୋଇ
ବୋଲାଇଲେ ମହୀରେ ମୁନି କାହିଁପାଇଁ ।
ପରାଶର ବୋଇଲେ ଦ୍ୱିଜ-ସାଜନ୍ତି—
ସକାଶରୁ ମୁନି ସେ ବୋଲାଅନ୍ତେ ଜାଣ ।
ପୁଣି ସେମାନେ ଜାଣ ତପସ୍ୟା କରନ୍ତି
ପାପ ତାଙ୍କ ଦେହେ ନ ପାରେ କରି ସ୍ଥିତି ।
ବଶିଷ୍ଠ ଋଷ୍ୟଶୃଙ୍ଗ ଯବକ୍ରୀତ କୃପ
କଣ୍ଠ କାକ୍ଷୀବାନ ମତଙ୍ଗ କାଶ୍ୟପ ।
ଆଉ ଦତ୍ତ ଦ୍ରୋଣ ଦ୍ରୁପଦ ମତ୍ସ୍ୟଋଷି
ତପକରି ସିଦ୍ଧି ପାଇଲେ ବୋଲି ଭାଷି ।
ଅଙ୍ଗିରା କଶ୍ୟପ ବଶିଷ୍ଠ ଭୃଗୁଗୋତ୍ର
ମୂଳ ଅଟନ୍ତିଟି ଜାଣ ହେ ଶକ୍ତିପୁତ୍ର ।
ଜନକ ବୋଇଲେ ହେ ବର୍ଣ୍ଣର ବିଶେଷ—
ଅବିଶେଷ ଧରମ କରତ ପ୍ରକାଶ ।
ପରାଶର ବୋଇଲେ ବ୍ରାହ୍ମଣ ଯେ ହେବ
ଯାଜ ଦାନ ଯାଗ କରଣ ପଢ଼ାଇବ ।
କ୍ଷତ୍ରିୟ ହୋଇ ଯେବେ ପ୍ରଜା ରକ୍ଷା କରେ
ଆଜ୍ଞା କଲା ସେ ବୋଲି ବୋଲନ୍ତି ସଂସାରେ ।
କୃଷି ପଶୁପାଳନ ବୈଶ୍ୟର ବିଶେଷ
ଧର୍ମ ବୋଲିକରି ଜାଣ ହେ ନର-ଈଶ ।
ତିନିବର୍ଣ୍ଣଯାକଙ୍କୁ ଶୂଦ୍ର ସେବା କଲେ
ବିଶେଷ ଧର୍ମ କଲା ବୋଲି ତାକୁ ଭଲେ ।

ଚତୁର୍ବର୍ଣ୍ଣଯାକର ସାଧାରଣ ଧର୍ମ
ଯାହାକୁ ବୋଲି ତାହା ଶୁଣ ନରୋତ୍ତମ ।
ଅନୃଶଂସତା ହିଂସା ପ୍ରମାଦ ବିତ୍ତଗ
ଶ୍ରାଦ୍ଧ ଅତିଥିଙ୍କି ପୂଜିବ ବହି ରାଗ ।
ଅକ୍ରୋଧ ସତ୍ୟ ଶୌଚ ତିତିକ୍ଷା ଆତ୍ମଜ୍ଞାନ
ଅନସୂୟା ସନ୍ତୋଷ ଆଦି କର୍ମମାନ ।
ସାଧାରଣ ଧରମ ବୋଲିକରି କହି
ମୋ କଥାରୁ ଜାଣ ଜନକ ନରସାଇଁ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟଙ୍କ ଦ୍ୱିଜ ନାମ
ବ୍ରତ ହେବାରୁଟି ବିହନ୍ତି ନରୋତ୍ତମ ।
ତିନିବର୍ଣ୍ଣଯାକର ଧର୍ମେ ଅଧିକାର
ସେବା କରିବା କର୍ମ କେବଳ ଶୂଦ୍ରର ।
ତିନିବର୍ଣ୍ଣ ଯେବେ ତପସ୍ୟା ନ କରନ୍ତି
ନରକେ ପଡ଼ି ଦୁଃଖ ସମୂହ ଭୁଞ୍ଜନ୍ତି ।
ସଦ୍‌ବୃତ୍ତିକି ଯେଉଁ ଲୋକଟି କରଇ ।
ଇହ ପର ଦୁଇରେ ବାଧା ତାର ନାହିଁ ।
ଜନକ ବୋଇଲେ ହେ କର୍ମ ଜାତି ଦୁଇ
କଥାରେ କେ ଦୂଷିତ ପ୍ରାଣୀକି କରଇ ।
ଏହା ମୋର ଆଗେ କହ ତ ପରାଶର
ଶୁଣିବା ପାଇଁ ମନ ହେଉଛି ମୋହର ।
ପରାଶର ବୋଇଲେ କର୍ମ ଜାତି ଦୁଇ—
ଦୋଷ କାର ବୋଲି ଦେଖନ୍ତି ନରସାଇଁ ।
ଏଥିରେ ଯେ ବିଶେଷ ଅଛି ତୁମ୍ଭ ଆଗେ
କହିବା ଯେବେ ପୁଚ୍ଛୁଅଛ ହେ ସରାଗେ ।
ଜାତିହୀନ ଲୋକ କରିଲେ ଶୁଭକର୍ମ
ଲୋକରେ ପରକାଶ ହୁଏ ତା'ର କର୍ମ ।
ଜାତିଟିରେ ପ୍ରଧାନ ହେଲେ କାର୍ଯ୍ୟ ନାହିଁ
ଅକର୍ମ କଲେ ନରକରେ ପଡ଼େ ଯାଇ ।
ଜନକ ବୋଇଲେ ହେ କେଉଁ କର୍ମ କଲେ
ଧର୍ମ କଲା ବୋଲି ବୋଲନ୍ତି ଲୋକ ଭଲେ ।
ପରାଶର ବୋଇଲେ ଅହିଂସ୍ର କର୍ମକୁ
କଲେ ଲୋକ ଭୋଗକରେ ସ୍ୱର୍ଗଲୋକକୁ ।
ନିର୍ଗୁଣ ଲୋକଙ୍କର ପିତା ପୁତ୍ର ମାତା
କଳତ୍ର ଆଦି ମଧ୍ୟ ନ ପକାନ୍ତି ଚିନ୍ତା ।
ଲୋକମାନଙ୍କର ଯେ ପରମ ଦେବତା
ଅଟଇଟି ରାଜନ ଜାତକଲା ପିତା ।
ପିତାକୁ ପ୍ରତି ମାତା ଅଧିକ ଅଟଇ
ଗୌରବରେ ଜାଣ ଜନକ-ନରସାଇଁ ।
ଜ୍ଞାନର ଲାଭଟିକି ବୋଲୁଥାନ୍ତି ବଡ଼
ନ କରଇ ତାହା ସେହିଟି ଅତି ମୂଢ଼ ।
କ୍ଷତ୍ରିୟ ଯଦି ଯୁଦ୍ଧେ ହାତ ଟେକି ମରେ
ଦେବଙ୍କୁ ଅଧିକ ଭୋଗ ସେ ଯାଇ କରେ ।
ପଳାଇବ ନିଶ୍ଚେ କହିବ ଯେ ନର
ନ କରିବ ତାହାକୁ ଯୁଦ୍ଧରେ ସଂହାର ।
ସାନଲୋକ ବଡ଼ଲୋକର ହାତେ ମଲେ
ଯୁଦ୍ଧରେ ଭଲଗତି ପ୍ରକାଶଇ ଭଲେ ।
ହୀନଲୋକ ହାତରେ ହୋଇଲେ ନିଧନ
ଯୁଦ୍ଧରେ ନରକଟି ହୁଏ ଜାଣ ସ୍ଥାନ ।
ସାଧୁଲୋକ ଯେବେ କରିବ ହିଂସାକର୍ମ
ତେବେ ତାହାକୁ ବସି ଶିଖାଇବ ଧର୍ମ ।
ଗୃହସ୍ଥଲୋକ ବାଳି ଶଯ୍ୟାଟିଏ କରି
ମଲେ ଜାଣ ହୁଏ ପାତକ ହନ୍ତକାରୀ ।
ଶରୀରର କେବଳ ହେଉଅଛି ନାଶ
ଆତ୍ମା ସବୁବେଳେ ଅଟେଟି ପରକାଶ ।
ଇନ୍ଦ୍ରିୟମାନଙ୍କରେ ମନ ଅଟେ ଶ୍ରେଷ୍ଠ
ମନକୁ ପ୍ରତି ଆତ୍ମା ଅଟଇ ଗରିଷ୍ଠ ।
ସବୁ ପ୍ରାଣୀଙ୍କରେ ମନୁଷ୍ୟଜନ୍ମ ସାର
ମନୁଷ୍ୟକୁ ପ୍ରତି ବଡ଼ ହେ ଦ୍ୱିଜବର ।
ଦ୍ୱିଜମାନଙ୍କ ମଧ୍ୟେ ବୁଦ୍ଧିମନ୍ତ ଲୋକ
ବୁଦ୍ଧିମନ୍ତରେ ଆତ୍ମାଜ୍ଞାନଟି ଅଧିକ ।
ଜ୍ଞାନୀଙ୍କରେ ଶ୍ରେଷ୍ଠ ଅଟଇ ବ୍ରହ୍ମଚାରୀ
ମୋ କଥାରୁ ଜାଣ ଜନକ-ଦଣ୍ଡଧାରୀ ।
ଉତ୍ତରାୟଣେ ଯେଉଁ ଲୋକ ଛାଡ଼େ ପ୍ରାଣ
ପୁଣ୍ୟକୃତ ବୋଲିଣ ତାହାକୁଟି ଜାଣ ।
ବନ୍ଧନ ବିଷ ବାଘ ସାପ ଯେବେ ମରେ
ଲେଖାହୁଅଇ ଜାଣ ସେ ପାପମୃତ୍ୟୁରେ ।
ପୁଣ୍ୟକର୍ମୀ ଲୋକର ପ୍ରାଣ ତାଳୁ ଫୁଟି
ଯିବାରୁ ସେ ଯାଅଇ ବ୍ରହ୍ମାଙ୍କୁଟି ଭେଟି ।
ମଧ୍ୟକର୍ମୀ ଲୋକଙ୍କ ଆଖି ଭୁଣ୍ଡି ବାଟେ
ପରାଣ ଯାଇକରି ଇନ୍ଦ୍ରଙ୍କୁଟି ଭେଟେ ।
ଅଧମକର୍ମୀ ଲୋକଙ୍କର ଗୁହ୍ୟଦ୍ୱାର
ବାଟରେ ପ୍ରାଣ ଯାଇ ନର୍କେ କରେ ଘର ।

ଅଜ୍ଞାନରୁ ଅଧିକ ହୋଇ ଶତ୍ରୁ ନାହିଁ
ଯା ଯୋଗ ନରକରେ ପଡ଼େ ଲୋକ ଯାଇ ।
ଜ୍ଞାନ ନିମିତ୍ତରେ ବୃଦ୍ଧିଙ୍କୁ ଉପାସନା
କରିବ ଯେ ହେବ ସଂସାରରେ ମହାମନା ।
ବେଦ ପଢ଼ି ତପ କରିବ ଯାଗ କରି
ବ୍ରହ୍ମଚାରୀ ହୋଇଲେ ଦେଖେ ସ୍ୱର୍ଗପୁରୀ ।
ନ ଥିଲେ ଭାଗ ଆତ୍ମାରକ୍ଷଣେ ଯତନ
କରୁଥିବ ଜାଣିବାର ଯେ ହେବ ଜନ ।
ସବୁ ଜନ୍ମ ପ୍ରତିକ ମନୁଷ୍ୟେ ଚଣ୍ଡାଳ—
ଜନ୍ମକୁ ପାଇଲେ ହେ ବଡ ମହୀପାଳ ।
ମନୁଷ୍ୟଜନ୍ମକୁ ଯେ ନିନ୍ଦା କରିଥାଏ
ଧର୍ମ ଜାଣ ତାର ଦେହରୁ ଛାଡ଼ିଥାଏ ।
ସମ-ଦୁଃଖ ସୁଖ ଜାଣଇ ଯେଉଁ ନର
କରନ୍ତି ପୂଜା ତାଙ୍କୁ ଦେବ ପୁରନ୍ଦର ।
ମନୁଷ୍ୟଜନ୍ମ ହେଲେ ତୀର୍ଥ ବ୍ରତ କରି
ଅନ୍ତଃକାଳେ ଯାଇ ବସିବ ସ୍ୱର୍ଗପୁରୀ ।
ଘରେ ମଲ ଲୋକକୁ ଯାନେ ଘେନିଯିବ
ଶ୍ମଶାନେ ବେଦଶାସ୍ତ୍ର ବିଧିରେ ପୋଡ଼ିବ ।
ଯେତେକ ଦାନ ପୁଣ୍ୟ ଜଗତରେ ଅଛି
ମନୁଷ୍ୟଜନ୍ମ ପାଇ ଲୋକ ତା କରୁଛି ।
ଜନକ ପଚାରିଲେ କି ଶ୍ରେଷ୍ଠ କି ଗତି
ଲୋକନାଶ ନ ଯାଏ କଲେ କେଉଁ ବୃତ୍ତି ।
କେଉଁଠାକୁ ଗଲେ ନିବର୍ତ୍ତଇ ଲୋକ
ଏହା ମୋତେ କହ ତ ଋଷିଙ୍କ ତିଳକ ।
ପରାଶର ବୋଇଲେ ଅନାଶକ୍ତ ହେଲେ
ଲୋକଙ୍କର ଶ୍ରେଷ୍ଠ ପ୍ରକାଶ ହୁଏ ଭଲେ ।
ଜ୍ଞାନୀ ଲୋକଙ୍କର ଅଟଇ ଭଲ ଗତି
ତପକୁଟି ଅକ୍ଷୟ ବୋଲାଣ କହନ୍ତି ।
ଅଧର୍ମ ନାଶ କରି ଧରମ ରଖିଲେ
ଲୋକ ଲେଖାଯାଏ ଏ ଜଗତରେ ଭଲେ ।
ଦାନ ଦେବା ପ୍ରତିକ ଅଭୟ ଦେବାର
ଅଧିକ ଅଟେ ହେ ରାଜନ ମନେ କର ।
ବିଷୟ ମଧ ଥିଲେ ବୁଦ୍ଧିମନ୍ତ ଲୋକ
ଦେହକୁ କେବେ ବାଧି ନ ପାରଇ ଶୋକ ।
ଅଜ୍ଞାନୀକ କେବେହେଁ ପାପ ନ ଛାଡ଼ଇ
ଜ୍ଞାନୀ ଜ୍ଞାନ-ଅନଳେ ଦହି ପକାଅଇ ।

ରାଗ କ୍ରୋଧକୁ ଛାଡ଼ି ଥାଇ ଯେଉଁ ନର
ସଂସାରେ ଥିଲେ ବାଧି ନ ପାରେ ସଂସାର ।
ଜ୍ଞାନବନ୍ତ ପୁରୁଷମାନଙ୍କର ଗୁଣ
ବେଳକୁ ବେଳ ବଢ଼ଇଟି ନରରାଣ ।
କଳତ୍ର ଧନ ଜନ ଛାଡ଼ଇଟି ନର
ସ୍ୱର୍ଗକୁ ଯିବା ବୁଦ୍ଧି ହୃଦେ କରେ ଧର ।
ବିଷୟରେ ଆସକତ ଯେ ହୋଇଥାଏ
ହିତକୁ ନ ଜାଣିବ କହିଲେ ସେ ଯାଏ ।
ଆବାଲ୍ୟରୁ ବୃଦ୍ଧଅବସ୍ଥା ହେବା ଯାଏ
ମୃତ୍ୟୁଟି ଯୋଗିଥାଏ ପ୍ରାଣୀଙ୍କର କାଯେ ।
ଏହା ଜାଣି ଜ୍ଞାନବଳରେ ଦେହୀ ଲୋକ
ନାଶ କରୁଥିବ ଦେହରୁ ପାପପାକ ।
ମୋକ୍ଷ ଧର୍ମ ନ ଜାଣି ଭବେ ବଦ୍ଧ ହୋଇ
ପ୍ରାଣୀଏ ଭୁଲୁଛନ୍ତି ଜାଣ କହୁଥାଇଁ ।
ଜ୍ଞାନ ମାର୍ଗେ ଥିବା ଲୋକର ଇହ ପର
ଦୁଇରେ ସୁଖ ଅଛି ରାଜା ମନେ କର ।
ଯୋଗୀ ହେଲେ ପରମବ୍ରହ୍ମକୁ ଦେଖଇ
ଅଯୋଗୀ ସଂସାରର ଦୁଃଖରେ ମଜ୍ଜଇ ।
ପନ୍ନଗ ପବନକୁ ଖାଇଲା ପରାଯେ
ମୃତ୍ୟୁ ପ୍ରାଣୀମାନଙ୍କୁ ଖାଉଛି ଟି ରାଯେ ।
ଯେଉଁ କର୍ମ ଲୋକ ପୂର୍ବରେ ଥାଏ କରି
ଜନ୍ମ ହେଲେ ସେ କର୍ମ ଭୁଞ୍ଜେ ଦଣ୍ଡଧାରୀ ।
ଦୁଃଖ ସୁଖରୁ ପୂର୍ବ କର୍ମକୁ ଜାଣିବ
ଜ୍ଞାନର ଅଭ୍ୟାସରେ ବସି ଦାନ ନେବ ।
ଶୁଭକର୍ମ କରିଲେ ବସନ ସଦନ,
ଏ ବାହାରେ ମିଳଇ ଉତ୍ତମ ସ୍ତ୍ରୀଜନ ।
ପରାଶର ଋଷିଙ୍କ ଏହି ବାଣୀ ଶୁଣି
ମହାତୋଷ ହେଲେ ଜନକ ନରମଣି ।
ଜନକ-ପରାଶର-କଥା ହେଲା ଶେଷ
କହେ କୃଷ୍ଣସିଂହ ନରେଶ ବହି ତୋଷ ।

—o—

## ସାଧ୍ୟ-ହଂସ ସମ୍ବାଦ

ଯୁଧିଷ୍ଠିର ବୋଇଲେ ସତ୍ୟ ଦମ କ୍ଷମା
ଶ୍ରଦ୍ଧାକୁ ତ କହନ୍ତି ଧରମେ ଉପମା ।
ତୁମ୍ଭର ଏହି ମତ ହୋଇ କି ନୁହଇ
ପଚାରୁଅଛି ମୋତେ କହ ତ ଫିଟାଇ ।

ଭୀଷ୍ମ ବୋଇଲେ ଆହେ ସାଧ୍ୟ ହଂସଙ୍କର—
ସମ୍ବାଦକୁ କହିବାକୁ ରାଜା ହୁଅ ଧୀର ।
ବ୍ରହ୍ମା ପର୍ବରେ ସୁନା ହଂସଟିଏ ହେଲେ
ତିନିଲୋକ ବୁଲି ସାଧ୍ୟଙ୍କଠାକୁ ଗଲେ ।
ସାଧ୍ୟ ବ୍ରହ୍ମା ବୋଲିଣ ହୃଦୟରେ ଲକ୍ଷି
ବୋଇଲେ ମୋକ୍ଷଧର୍ମ କହ ତ ହେ ପକ୍ଷୀ ।
ହଂସ ବୋଇଲେ ଆହେ ତପ ଦମ ସତ୍ୟ
ଆଚରିଥିବା ଲୋକ ହୁଅଇ ମୁକତ ।
ମର୍ମପୀଡ଼ା କଥା କାହାକୁ ନ ବୋଲିବ
ହୀନଲୋକଠାରେ ପଦାର୍ଥ ନ ଆଣିବ ।
ବଚନ-ସାୟକକୁ ଜଗିଥିବ ନିତି
କ୍ରୋଧ ହେଲେ ନ ବଳାଇବ ତହିଁ ମତି ।
କ୍ରୋଧ କରାଇଲେ ଯେ ହସି ତୁନି ହୋଏ
ପର ସୁକୃତକୁ ସେ ବଳେ ନେଇଯାଏ ।
ସତ୍ୟ ଆର୍ଜବ ଯେ କ୍ଷମା ଅନୃଶଂସ୍ୟ
ବଡ଼ କରିଣ ଦେଖିଥାଏ ମୋ ମାନସ ।
ବେଦ ସତ୍ୟ, ସତ୍ୟ ଦମଟି ମୋକ୍ଷ
ସାର ବୋଲି ସଂସାରେ କରୁଥାନ୍ତି ଲକ୍ଷ୍ୟ ।
ବଚନ ମନ ଜିହ୍ୱା ଉଦର ଉପସ୍ଥ
ଉଦ୍‌ବେଗ ଯେ ସହେ ସେ ଯାଏ ବ୍ରହ୍ମପଥ ।
କ୍ରୋଧ ହେବା ପ୍ରତିକ ଅକ୍ରୋଧନ ଲୋକ
ସକଳ ପ୍ରକାରେ ସେ ଅଟଇ ଅଧିକ ।
ଅକ୍ଷମାବନ୍ତ ଲୋକ ପ୍ରତି କ୍ଷମାବନ୍ତ
ଲୋକର ଧରମଟା ଅଟେ ପରବତ ।
ମର୍ତ୍ତ୍ୟ ମନୁଷ୍ୟର ଯେ କୋଣ ଶତ ଯାଏ
ଅନ୍ତର ଅଛି ବୋଲି କହନ୍ତି ସଭିଏଁ ।
ଅଜ୍ଞକୁ ପ୍ରତି ଜ୍ଞାନବନ୍ତ ଅଟେ ସାର
ମଲେ ତାକୁ ଆଦର କରିଥାନ୍ତି ସୁର ।
ଗାଳି ଦେଲେ ମାଇଲେ ବାନ୍ଧିଲେ ଯେ ପାପ
ନ ଇଚ୍ଛଇ ଜାଣ ସେ ଅଟଇ ନିଷ୍ପାପ ।
ଏହା ଜାଣି କାର୍ଯ୍ୟମାନଙ୍କୁ ଉପାସନା
ସର୍ବକାଳେ କରି ରହିଛି ମୁହିଁ ସିନା ।
ସଂଯତ ହୋଇବାର ମୋକ୍ଷର ଦୁଆର
ବୋଲି ମୋର ମନେ କରିଛି ନିରନ୍ତର ।
ମନୁଷ୍ୟଠାରୁ ବଡ଼ ହୋଇବାର କଥା
ଥିଲେ ପରି ହେ ଲେଖି ନାହିଁ ଜାଣ ପୋଥା ।

ପାପରୁ ମୁକ୍ତ ହୋଇ କାଳରେଟି ନର
ବ୍ରହ୍ମଙ୍କୁ ପାଉଛନ୍ତି ସାଧ୍ୟ ମନେ କର ।
ବଚନ ମନ ଯା ସଂଯତ ହୋଇଥାଏ
ଅଲଭ୍ୟରେ ସମସ୍ତ ଫଳକୁ ସେ ପାଏ ।
ନ ଜାଣିବା ଲୋକେ ନ ଦେବ ମୁଖେ ଗାଳି
ଯେବେ ଗାଳି ଦେବ ବସିବ କ୍ଷଣେ ଭାଳି ।
ଅପମାନ ପାଇଲେ ସୁଧା ପାନ ପରି
ପଣ୍ଡିତ ଯେ ହୋଇବ ରହିବ ବିଚାରି ।
ଲୋକଙ୍କୁ ଯେ ଅବଜ୍ଞା କରଇ ତା ନାଶ
ଏ ଜଗତ ମଧ୍ୟରେ ହୁଅଇ ପ୍ରକାଶ ।
କ୍ରୋଧ ହୋଇ ଧରମକଥା ଯେ କରଇ
ଅଧମରେ ଜାଣ ଲେଖା ସେ ହୁଅଇ ।
ଲୁଗାକୁ ଯେ ରଙ୍ଗେ ରଙ୍ଗ ବାସେ ରଙ୍ଗ
ହେଲାପରି ହୁଅଇ ଲୋକରଟି ସଙ୍ଗ ।
ସର୍ବକାଳରେ ଦେବେ ସାଧୁସଙ୍ଗ ଇଚ୍ଛା
କରନ୍ତି ଜାଣ ଏ କଥା ଗୋଟି ବଚ୍ଛା ।
ନ କହିବ କହିଲେ ଧରମ-ବଚନ
ଯେ କରଇ ତାକୁ ବୋଲନ୍ତି ଧନ୍ୟଜନ ।
ସାଧ୍ୟ ବୋଇଲେ ଆହେ କି କଥାରେ ଲୋକ
ଆବୃତ ହୋଇଛନ୍ତି ଛାଡ଼ିଣ ବିବେକ ।
କେଉଁ କଥା ସକାଶୁଁ ନୋହୁଛି ପ୍ରକାଶ
କେଉଁ କଥା ସକାଶୁଁ ଛାଡ଼େ ମିତ୍ର ପାଶ ।
କେଉଁ କଥା କରିଣ ସ୍ୱର୍ଗକୁ ନ ଯାଏ
ଏହା ବସି କହିବା ହେଉ ହଂସରାୟେ ।
ହଂସ ବୋଇଲେ ଆହେ ଅଜ୍ଞାନେ ଆବୃତ
ହେଉଅଛଇ ଜାଣ ଏ ମଧ୍ୟ ଜଗତ ।
ମତ୍ସର୍ଯ୍ୟ ସକାଶରୁ ନୋହୁଛି ପ୍ରକାଶ
ମିତ୍ରକୁ ଛାଡ଼ୁଅଛି ପାଇ ଲୋଭ ପାଶ ।
ଦୁଃସଙ୍ଗ ସକାଶରୁ ନୋହୁଅଛି ସ୍ୱର୍ଗ
ଅନ୍ତଃକାଳ ଭୋଗ କରଇ ଦୁଃଖଭୋଗ ।
ସାଧ୍ୟ ବୋଇଲେ ଆହେ ବ୍ରାହ୍ମଣରେ ଏକା
ହୋଇ କେ ସୁଖ ପାଉଅଛି ଛାଡ଼ି ଦକା ।
ଏକା ହୋଇ ବା ଯୋଗ କରୁଅଛି କିଏ
ଦୁର୍ବଳ ହୋଇ ବଳୟାର କେ ବୋଲାଏ ।
କିଏ ସେ କଳହର କଥା ନ ଜାଣଇ
ଏହା ମଧ୍ୟ କହିବା ହୋଇବ ବତାଇ ।

ହଂସ ବୋଇଲେ ଜାଣ ଜ୍ଞାନରେ ଏମାନେ
ସବୁ ସମ୍ଭବ ଅଛି ସାଧ୍ୟ ଜାଣ ମନେ ।
ସାଧ୍ୟ ବୋଇଲେ ଆହେ କେଉଁ କର୍ମ କଲେ
ସାଧୁଙ୍କୁ ବ୍ରହ୍ମାଣ୍ଡ ପାଆନ୍ତିଟି ଭଲେ ।
ଅସାଧୁଙ୍କୁ ମନୁଷ୍ୟ କାହାକୁ କହନ୍ତି
ଏହା ମଧ୍ୟ କହିବା ହେଉ ହଂସ ସତି ।
ହଂସ ବୋଇଲେ ଆହେ ଦ୍ୱିଜର ଦେବଭକ୍ତି-
ବ୍ରତ କରିବାର ଯେ ବୋଲାଏ ସାଧୁତ୍ୱ ।
ଅପବାଦ ଦେବାର ଅସାଧୁତେ ଯାଏ
ମୃତ୍ୟୁ ରୁଚି ବ୍ରାହ୍ମଣ ମନୁଷ୍ୟ ବୋଲାଏ ।
ସାଧ୍ୟ ହଂସଙ୍କର ତ ଶୁଣିଲ ସମ୍ବାଦ
ଆଉ କି ଇଚ୍ଛା ଅଛି ନୃପ ମୋତେ ବଦ ।
ଏଠାରେ ହଂସ-ଗୀତ ହେଲା ସମାପତି
ଗୀତ-ରସେ ଭଣିଲେ ଧରିକୋଟ-ପତି ।

—•—

## ଯୋଗ ବିଧି

ଯୁଧିଷ୍ଠିର ବୋଇଲେ ସାଂଖ୍ୟ ଯୋଗ ଦୁଇ
ବିଶେଷି ପିତାମହ କହ ତ ବତାଇ ।
ଭୀଷ୍ମ ବୋଇଲେ ଆହେ ଏହି କଥା ଦୁଇ
ଯେ ଯାହା ଆଚରଇ ସେ ତା ପ୍ରଶଂସଇ ।
ସାଂଖ୍ୟ ଜାଣିଥିବାର ଲୋକଙ୍କର ବେଦ
କାରଣ ହୋଇକରି ବଢ଼ାଏ ପ୍ରମୋଦ ।
ସାଂଖ୍ୟ ଜଣା ଲୋକେ ବୋଲନ୍ତି ସବୁ ଗତି
ଜାଣିଲେ ଲୋକ ଅନ୍ତେ ଲଭଇ ମୁକତି ।
ଆପଣା ପକ୍ଷେ ହିତ ବଚନ ଦେନନ୍ତି
ପରପକ୍ଷେ ହିତକୁ ଅହିତ ମଣନ୍ତି ।
ସାଂଖ୍ୟ ଯୋଗ ଦୁହେଁ ସବୁର ସନମତ
ଜାଣିଲେ ଲୋକ ହୋଇଯାଏଟି ମୁକତ ।
ସାଂଖ୍ୟ ଯୋଗ ଦୁଇରେ ବିଶେଷୀ ବିଶେଷ
ଅଛଇ ଜ୍ଞାନରେ ହେ ଜାଣ-ନରେଶ ।
ତପସ୍ୟା ଶୌଚ ଦୟା ଦମ ଦୁଇ ଶାସ୍ତ୍ରେ
ସମାନ ବୋଲିକରି ବୋଲନ୍ତି ସମସ୍ତେ ।
ଯୁଧିଷ୍ଠିର ବୋଇଲେ ଜ୍ଞାନ କାହିଁପାଇଁ
ଭିନ୍ନ ହୋଇଲା ହେ କହ ତା ପଚାରଇ ।
ଗାଙ୍ଗେୟ ବୋଇଲେ ଯେ ରାଗ କାମ କ୍ରୋଧ
ମୋହ ସ୍ନେହ ନାଶକରଇ ବିହି ସାଧ ।

ସେହିମାନଙ୍କର ପରମଗତି ହୋଏ
କହିଅଛନ୍ତି ଏହା ବିରିଞ୍ଚି ଋଷିଏ ।
ଯୋଗ-ଭେଳା ବଳେ ସଂସାର-ସମୁଦ୍ରରୁ
ତରିଯାନ୍ତି ଯୋଗୀଏ ନୋହି କିଛି ଭୀରୁ ।
ଯୋଗବଳ ନଥିବା ଲୋକ ଜାଲେ ମୃଗ
ନାଶଗଲା ପ୍ରାୟେ ପାଆନ୍ତି ନାଶଭାଗ ।
ଯୋଗ-ଅଗ୍ନିରେ ଜାଣ ପାପ-କାଷ୍ଠରାଶି
ଯୋଗୀମାନେ ବସି ପକାଉଛନ୍ତି ଧ୍ୱଂସି ।
ବଳହୀନ ଯୋଗୀକି ତଟ-ବୃକ୍ଷ ପରି
ପାପ-ପ୍ରବାହଟି ହଅଇ ନାଶକରି ।
ଯୋଗବଳରେଟି ଯୋଗୀଏ ଦେବତାଙ୍କ
ଦେହେ ଯାଇ ରହନ୍ତି ଛାଡ଼ିଣ ଆତଙ୍କ ।
ଅନ୍ତକ ଯମ ମୃତ୍ୟୁଯୋଗେ ଅଧିକାରୀ
ନୁହନ୍ତି ହେ ଜାଣ ପାଣ୍ଡବ-ଦଣ୍ଡଧାରୀ ।
ଯୋଗୀଲୋକ ସହସ୍ର ସଂଖ୍ୟା ଆତ୍ମାକରେ
ଏ ଜଗତଯାକରେ ମନକୁ ବିହରେ ।
କେତେବେଳେ ଯୋଗୀ ଧରିଣ ଧୂମ୍ରରୂପ
ଜନ-ନୟନ ଆଗୁଁ ହୋଇଥାଏ ଲୋପ ।
ମୋକ୍ଷରେ ଅଧିକାର ତା'ର ସବୁବେଳେ
ଥାଏ ଆହେ ରାଜନ ଜାଣ ଯୋଗବଳେ ।
ନାଭି ମସ୍ତକ କଣ୍ଠ ହୃଦୟ ଆଘ୍ରାଣ
ସ୍ଥାନରେ ଯୋଗୀ ନେଇ ରଖଇଟି ପ୍ରାଣ ।
ଯେତେବେଳେ ସେ ଇଚ୍ଛା କରଇ ନୃପତି
ବ୍ରହ୍ମରନ୍ଧ୍ରେ ପ୍ରାଣକୁ ଛାଡ଼ଇ ଝଟତି ।
ଯୁଧିଷ୍ଠିର ବୋଇଲେ ହେ ଯୋଗୀକି ଆହାର
କରଇ, କି ଦୋଷ ଜିଣିଲେ ବଳ ତା'ର ।
ବଢ଼ଇ, ଏହା ମୋର ଆଗରେ ପ୍ରକାଶ
ଶୁଣିବାକୁ ମୋହର ବଳିଛି ମାନସ ।
ଭୀଷ୍ମ ବୋଇଲେ ଆହେ, କଣାକଲ୍କ ଦୁଇ
ଖାଇଲେ ଯୋଗୀ ମହାବଳ ପ୍ରକାଶଇ ।
ଛଷି ଯାଉ ବେଳେ ଯେବେ କେ ଖାଇ ହଏ
ଯୋଗୀ ତେବେଳେ ଯୋଗ ସିଦ୍ଧିଟିକି ପାଏ ।
ଏ ବାହାର ପକ୍ଷକେ ପାଣି ଦୁଧ ପିଇ
ରହିଲେ ପକ୍ଷେ ବଳ ତାହାର ବଢ଼ଇ ।
କାମ କ୍ରୋଧ ଭୟ ନିଦ୍ରା ତନ୍ଦ୍ରା ଶୀତ
ଉଷ୍ଣ ବର୍ଷା ଶୋକ ଅରତି ଯେବେ ଜିତ ।

ହୁଅନ୍ତି ତେବେ ଯୋଗୀମାନଙ୍କର ବଳ
ଅଧିକ ପ୍ରକାଶଇ ପାଣ୍ଡବ-ନୃପାଳ ।
ଦୁର୍ଗମ ମାର୍ଗ ଯୁବା ତରିପିବା ପ୍ରାୟେ
ଯୋଗୀ ଯୋଗବଳରେ ପାପୁଁ ତରିଯାଏ ।
ଯୋଗଧାରଣାରେ ଯେ ରହିବାର କଷ୍ଟ
ବଡ଼ଟି ଅଟଇ ହେ ଜାଣ ନରଶ୍ରେଷ୍ଠ ।
ସମ୍ଭ୍ରମରେ ଧାରଣା ପକାଇ ରହିବ
ଯୋଗଧାରଣାରେ ଯେ ରହି ନ ପାରିବ ।
ବ୍ରହ୍ମା ବିଷ୍ଣୁ ଭବ ଧରମ ବ୍ରହ୍ମପୁତ୍ର
ପ୍ରକୃତି ତେଜ ସିଦ୍ଧି ତମ ରଜ ସତ୍ତ୍ୱ ।
ଚନ୍ଦ୍ର ତାରା ବିଶ୍ୱ ଉରଗ ପିତୃ ଶୈଳ
ସମୁଦ୍ର ନଦୀ ବନ ବୃକ୍ଷ ମେଘମାଳ ।
ପଶୁ ପକ୍ଷୀ ଯକ୍ଷ ଗନ୍ଧର୍ବ ସ୍ତ୍ରୀ ପୁରୁଷ
କ୍ଷଣରେ ଯୋଗୀ ହୋଇପାରେଟି ପ୍ରବେଶ ।
ଯୋଗ-ବିଧି ହେଲା ଏଠାରେ ସମାପତି
ଭୀଷ୍ମସିଂହ ନୃପ ସ୍ମୃତରେ ରାଧାପତି ।

— ❋ —

## ସାଂଖ୍ୟଯୋଗ

ଯୁଧିଷ୍ଠିର ବୋଇଲେ ସାଂଖ୍ୟ ମାର୍ଗ ପିତା
ବତାଇ କହ ହୁଦୁଁ ଗୁଡ଼ୁ ମୋର ଚିନ୍ତା ।
ଭୀଷ୍ମ ବୋଇଲେ ଆହେ ସାଂଖ୍ୟ ତତ୍ତ୍ୱ କଥା
କହିବା ଶୁଣ ନୃପକୁଳ ମହାରଥୀ ।
ଯେଉଁ ସାଂଖ୍ୟ କଥାରେ ଦୋଷ ହାନି ହୋଇ
ବହୁତ ଗୁଣ ଲେଖିଛନ୍ତି ବେଦସାଇଁ ।
ମନୁଷ୍ୟ ପିଶାଚରେ ଉରଗ ଗନ୍ଧର୍ବ
ତିର୍ଯ୍ୟଗ ରାଜର୍ଷି ମାରୁତ ବିଶ୍ୱଦେବ ।
ଦେବତା ଋଷି ପିତୃ ବ୍ରହ୍ମା ଆୟୁକାଳ
ବିଷୟରେ ଏହା ଜାଣିବ ନରପାଳ ।
ସବୁ ପ୍ରାଣୀମାନଙ୍କ ଦୁଃଖ ବେଦବାଦ
ସାଂଖ୍ୟଯୋଗେ ଜାଣ ଏହାଙ୍କୁ ବିହି ମୋଦ ।
ସତ୍ତ୍ୱ ଦଶଗୁଣ ଯେ ରଜ ନବଗୁଣ
ତମଟି ଅଷ୍ଟଗୁଣ ବୁଦ୍ଧି ସପ୍ତଗୁଣ ।
ମନ ପଞ୍ଚଗୁଣ ଜାଣଇ ଯେଉଁ ନର
ମୋକ୍ଷ ପଦବୀଟି ଅଲଭ୍ୟ ହୋଏ ତା'ର ।
ଚକ୍ଷୁକୁ ରୂପେ, ଗନ୍ଧେ, ଘ୍ରାଣକୁ ଶ୍ରୋତ୍ରକୁ
ଶବ୍ଦେ, ରସେ ଜିହ୍ୱାକୁ, ପରଶେ ତ୍ୱକକୁ ।

ଆକାଶେ'ବାୟୁକୁ ତମରେ ମୋହକୁ
ବିଷ୍ଣୁରେ ବିକ୍ରମକୁ, ଇନ୍ଦ୍ରରେ ବଳକୁ ।
କାଠରେ ଅନଳକୁ, ଜଳରେ ଧରାକୁ
ତେଜରେ ସଲିଳକୁ, ପବନେ ତେଜକୁ ।
ପବନକୁ ନଭେ, ମହତ ଆକାଶକୁ
ମହତକୁ ବୁଦ୍ଧିରେ, ତମରେ ବୁଦ୍ଧିକୁ ।
ରଜରେ ତମଟିକ, ସତ୍ତ୍ୱରେ ରଜକୁ
ଆତମାରେ ସତ୍ତ୍ୱକୁ, ବିଷ୍ଣୁରେ ଆତ୍ମାକୁ ।
ବିଷ୍ଣୁଙ୍କୁ ମୋକ୍ଷେ, ଆହେ ପାଣ୍ଡବ ରାଜନ
ସତକରି ମୋ କହିବାରୁ ମନେ ଘେନ ।
ମୋକ୍ଷ କାହିଁରେଟି ନୁହଇ ଆସକତି
ଏ ସକାଶୁଁ ତାହାଙ୍କୁ ବଡ଼ଟି ବୋଲନ୍ତି ।
ଇନ୍ଦ୍ରିୟ ଇନ୍ଦ୍ରିୟାର୍ଥ ଦୁର୍ବିର୍କ ଜାଣିବ
ମଧ୍ୟସ୍ଥ ବୋଲି ନିଜ ଆତ୍ମାକୁ ମଣିବ ।
ପ୍ରାଣାପାନୋଦାନ ସମାନ ବ୍ୟାନବନ୍ଧ
ଅଧଃପ୍ରବାହକୁ ଜାଣିବ କରି ସ୍ନେହ ।
ପ୍ରଜାପତି ସପ୍ତର୍ଷି ରାଜର୍ଷି ଦେବର୍ଷି
ବ୍ରହ୍ମର୍ଷି ଆଦି ନୁହନ୍ତି ଅବିନାଶୀ ।
ସମ୍ପତ୍ତି ମଦେ ମତ୍ତ ହୋଇ ଏ ଥାଆନ୍ତି
କାଳରେ କାଳ ତୋଟି ତପେ ବହି ପ୍ରୀତି ।
ପ୍ରାଣୀଙ୍କର ବିନାଶ ପାପକର୍ମୀ ଖ୍ୟାତି
ଯମପୁର ଦୁଃଖ କ ଯୋଗ ଉତପତ୍ତି ।
ଜଠରେ ବାସ ନାନା ଯୋଗ ପାପ ଗତି
ନକ୍ଷତ୍ରଙ୍କ ପତନ ସାତ୍ତ୍ୱିକ ମୁକତି ।
ଭୂତଙ୍କ ଅଶୁଭ ଲକ୍ଷଣ ବାଲ୍ୟମୋହ
ଦେହକ୍ଷୟ ବିଷୟ ଦୁରାତ୍ମତା ସ୍ନେହ ।
ମୃତଲୋକଙ୍କ ଦେହ ଜନ୍ତୁଙ୍କ ଦୁଃଖ ତ
ବ୍ରହ୍ମଘ୍ନ ମଦ୍ୟପ ଗୁରୁ ସ୍ତ୍ରୀ ଗାମୀରତ ।
ଋତୁ ମାସ ପକ୍ଷ ବରଷ ଦିନ କ୍ଷୟ
ସଂଯୋଗ ଯୁଗ ଶୈଳ ନଦୀ ବର୍ଣ୍ଣଚୟ ।
ପିତୃ ଚନ୍ଦ୍ର ଧନ ଏହାଙ୍କ କ୍ଷୟ ବୃଦ୍ଧି
ଜରା ଜନମ ମୃତ୍ୟୁ ଦେହଦୁଃଖ ବିଧି ।
ଏହାଙ୍କୁ ଯେଉଁ ଲୋକ ଜାଣଇଟି ରାଏ
ନିଃସଂଶୟ ହୋଇଣ ମୁକତି ସେ ପାଏ ।
ଯୁଧିଷ୍ଠିର ବୋଇଲେ ଦେହରୁ କେତେ ଦୋଷ
ଜାତ ହେଉଅଛି ହେ କର ତା ପ୍ରକାଶ ।

ଭୀଷ୍ମ ବୋଇଲେ ଆହେ ପାଣ୍ଡବ ରାଜନ
ସାଂଖ୍ୟବିଦ୍ୟା କପିଳଆଦି ମୁନି ଗଣ ।
ଦେହସ୍ଥିତ ଦୋଷ ଯାହାକୁ କହିଥାନ୍ତି
ଭୟ ଶ୍ୱାସ ଆଦି କରି ଯେ ସେ ଅଟନ୍ତି ।
ଅପ୍ରମାଦ ହୋଇଲେ ଭୟ ଉତପତି
ହୋଇ ଦେହରେ କରି ନ ପାରଇ ସ୍ଥିତି ।
ଅଳ୍ପାହାରୀ ଲୋକକୁ ନ ବାଧଇ ଶ୍ୱାସ
ଅକସ୍ମାତ ଥରେ ଆସିଲେ ଆସେ ନାଶ ।
ବିଷ୍ଣୁଙ୍କ ମାୟାରେ ଆବୃତ ଲୋକ ଜାଣ
ଜଳ ଫେନର ପରି ଅଟଇଟି ପ୍ରାଣ ।
ଏହା ଜାଣି ଯୋଗୀ ଜ୍ଞାନରେ ଅଭ୍ୟାସ
କରି ଏ ସଂସାରକୁ କରନ୍ତିଟି ନାଶ ।
ଜ୍ଞାନୀମାନେ ସଂସାର ତରନ୍ତି ଯେ କାଳେ
ଆଗ ଯାଇ ରହନ୍ତି ନକ୍ଷତ୍ରଙ୍କ ମେଳେ ।
ତଦନ୍ତେ ସୂର୍ଯ୍ୟଙ୍କ କିରଣେ ରହନ୍ତି
ପ୍ରବହ ପବନରେ ଉଡ଼ିଣ ଯାଆନ୍ତି ।
ଉପର ଲୋକେ ଯାଇ କରନ୍ତି ନିବାସ ।
ରଜୋଗୁଣରେ ପୁଣି କରନ୍ତି ସେ ବାସ ।
ରଜୋ ଗୁଣରୁ ପୁଣି ବାହାର ହୁଅନ୍ତି
ସତ୍ତ୍ୱଗୁଣରେ ଯାଇ ଆଶ୍ରୟ ଲଭନ୍ତି ।
ସତ୍ତ୍ୱଗୁଣରୁ ପୁଣି ନାରାୟଣଙ୍କର
ଦେହରେ ମିଶନ୍ତି ହେ ଜାଣ ନରବର ।
ନାରାୟଣଙ୍କର ଦେହରେ ପରମାତ୍ମା
ପାଅଇଟି ହେ ଯୋଗୀମାନଙ୍କର ଆତ୍ମା ।
ପରମ ଆତ୍ମା ଆତ୍ମା ପାଏ ଯେଉଁକାଳେ
ଆଉ ଜାଣଟି ଜନ୍ମ ନୁହେ ତା'ର ତଳେ ।
ଯୁଧିଷ୍ଠି ବୋଇଲେ ଉତ୍ତମ ସ୍ଥାନେ ରହି
ଜନମ ମରଣକୁ ଚିନ୍ତଇ କି ନାହିଁ ।
ଭୀଷ୍ମ ବୋଇଲେ ଏ ପ୍ରଶନ ବଡ଼ କଷ୍ଟ
କହିବାର ଜାଣ ହେ ପାଣ୍ଡବ ଗରିଷ୍ଠ ।
ଏକାଦଶ ଇନ୍ଦ୍ରିୟେ ଏକଥା ଜାଣନ୍ତି
ଆନକୁ ଗୋଚର ଏ ନୁହେଁ ମହାମତି ।
ଇନ୍ଦ୍ରିୟେ ଯେବେ ହୋଇ ଯାନ୍ତି ଆତ୍ମାହୀନ
କାଠ ବାଡ଼ ପରି ରହନ୍ତି ମନେ ଘେନ ।
ଇନ୍ଦ୍ରିୟମାନଙ୍କର ନିର୍ଯ୍ୟାପର ବେଳେ
ଆତ୍ମା ସଞ୍ଚାରଟି ଇନ୍ଦ୍ରିୟ କରେ ବଳେ ।

ସତ୍ତ୍ୱ ରଜ ତମ ଯେ ପଞ୍ଚମ ମହାଭୂତ
ବୁଦ୍ଧି ଗୁଣ ଆତ୍ମାକୁ ନୁହଇ ଅବିଦିତ ।
ପ୍ରକୃତିକ ଇନ୍ଦ୍ରିୟେ ଅତିକ୍ରମ କରି
ଆତ୍ମାରେଟି ଜାଣ ରହନ୍ତି ଘର କରି ।
ସାଂଖ୍ୟଙ୍କର ମତରେ ଏହିରୂପେ ଗତି
ପ୍ରକାଶ ହୋଇଅଛୁ ଜାଣ ମହାମତି ।
ସାଂଖ୍ୟଜ୍ଞାନରୁ ବଡ଼ ହୋଇ କରି ଜ୍ଞାନ
ନାହିଁଟି ଏ ସଂସାରେ ପାଣ୍ଡବ ରାଜନ ।
ସାଂଖ୍ୟଜ୍ଞାନଟିକ ଯେ ବ୍ରହ୍ମ ବୋଲି କହି
ସାଂଖ୍ୟଜ୍ଞାନ ଜାଣିଲେ ମୁକ୍ତ ହୋଇ ଦେହୀ ।
ବ୍ରହ୍ମବୋଲି ଯାହାକୁ କରନ୍ତି ପ୍ରାର୍ଥନା
ସେ କରିଛନ୍ତି ଜାଣ ସବୁଙ୍କୁ ସର୍ଜନା ।
ଜ୍ଞାନଟି ତାହାଙ୍କର ମୂର୍ତ୍ତି ବୋଲି କହି
ଦୃଷ୍ଟିରେ ଦେଖିବାକୁ ଯାଙ୍କ ଦେହ ନାହିଁ ।
ସାଂଖ୍ୟଶାସ୍ତ୍ରରେ ସମ ଜ୍ଞାନ ସୁଖ ତପ
କହିଛନ୍ତି ଆହେ ପାଣ୍ଡବକୁଳନୃପ ।
ସାଂଖ୍ୟଶାସ୍ତ୍ର ସଂସାରେ ବଡ଼ କରି ଜାଣ
ନାରାୟଣ ତାକୁ କରିଛନ୍ତି ଧାରଣ ।
ସୃଷ୍ଟି ସ୍ଥିତି ସଂହାର କରିବା କରତା
ବୋଲାଉଥାନ୍ତି ଯେ ନାରାୟଣ ଦେବତା ।
ଏହିଠାବରେ ସାଂଖ୍ୟଯୋଗ ହେଲା ଶେଷ
କହେ କୃଷ୍ଣସିଂହ ନରେ ବିହି ତୋଷ ।

—※—

## ବଶିଷ୍ଠଙ୍କ କରାଳ ସମ୍ବାଦ

ଯୁଧିଷ୍ଠି ବୋଇଲେ ଅକ୍ଷର କ୍ଷର କିଏ
ବୋଲାଏ ଏହା ମୋତେ କହ ରଥୀ ରାଏ ।
ଉତ୍ତରାୟଣ ହେଲେ ମରିବ ଆପଣ
କେ ମୋ ଆଗେ ବସି କହିବ ଏ ପୁରାଣ ।
ଆପଣ ତ କୁରୁ ବଂଶରେ ଅଟ ଦୀପ
ଜ୍ଞାନ କହି ମୋର ଛଡ଼ାଇ ଦିଅ ପାପ ।
ଭୀଷ୍ମ ବୋଇଲେ ଆହେ ବଶିଷ୍ଠ କରାଳ
ସମ୍ବାଦକୁ କହିବା ଶୁଣ ନରପାଳ ।
ବଶିଷ୍ଠେ ଏକଦିନେ କରାଳ ଜନକ
ପଚାରିଲେ ଜ୍ଞାନ ହୃଦରୁ ଗୁଡ଼ ଦକ ।
ଏହା ବାହାରେ କ୍ଷର ଅକ୍ଷର କାହାକୁ
ବୋଲି ମଧ୍ୟ ପୁଚ୍ଛିଲେ ରାଜା ବଶିଷ୍ଠଙ୍କୁ ।

ବଶିଷ୍ଠ ବୋଇଲେ ହେ ଜଗତର ନାଶ
ପ୍ରକାଶ ଶୁଣ ଆହେ ଜନକ ନରେଶ ।
ବ୍ରହ୍ମାଙ୍କର ରାତ୍ରିରେ ପ୍ରଳୟ ହୁଅଇ
ରାତ୍ରି ଶେଷ ହେଲେ ସଂସାର ପ୍ରକାଶଇ ।
ହିରଣ୍ୟଗର୍ଭ ବୁଦ୍ଧି ବିରଞ୍ଚି ମହତ
ବୋଲନ୍ତିଟି ଜାଣ ସାବର୍ଣୀ ଦେବୀ କାନ୍ତ ।
ଆଗ ବ୍ରହ୍ମା ଅହଙ୍କାରକୁ ସରଜିଲେ
ଅହଙ୍କାର ରାଜନ ଜୀବ ବୋଲାଇଲେ ।
ଜୀବରୁ ଟି ପଞ୍ଚମହାଭୂତ ସଂଜାତ
ହୋଇଲେ ଟି ସେ ପଞ୍ଚଗୁଣରେ ସଂଯୁତ ।
ପଞ୍ଚମହାଭୂତେ ଦ୍ୱାଦଶ ଇନ୍ଦ୍ରିୟଙ୍କୁ
ଜାତ କଲେ ରାଜନ ବହିଣ ଧାରକୁ ।
ସବୁ ପ୍ରାଣୀଙ୍କର ରାଜନ ଏତେ ଗୁଣ
ନିରନ୍ତରେ ରହିଅଛନ୍ତି ଏବେ ଜାଣ ।
ଜନମ ହେବା ଲୋକଯାକଙ୍କର ନାମ
କ୍ଷର ବୋଲାଏ ହେ ଜନକ ନରୋତ୍ତମ ।
ଆତ୍ମାଟିକ ଅକ୍ଷର ବୋଲନ୍ତି କହି
ପ୍ରଳୟରେ ତାହାର ଭୟ ବୁଦ୍ଧି ନାହିଁ ।
ତମ ରଜ ସତ୍ତ୍ୱରେ ହୋଇବାରୁ ଯୁତ
ଜୀବଟି ହେଉଅଛି ବାରବାର ଜାତ ।
ପାପକର୍ମକୁ ଯେଉଁ ଲୋକଟି କରଇ
ତିର୍ଯ୍ୟକ ଯୋନିରେ ସେ ଜନମ ହୁଅଇ ।
ପୁଣ୍ୟ ପାପ କଲେ ମନୁଷ୍ୟ-ଜନ୍ମ ହୋଏ
କେବଳ ପୁଣ୍ୟ କଲେ ଦେବତା ବୋଲାଏ ।
ଜ୍ଞାନ-ଶୂନ୍ୟ ହେବାରୁ ଜୀବ କୋଟି ଜନ୍ମ
ଲଭୁଛି ସଂସାରେ ନ ହୋଇ ପୂର୍ଣ୍ଣକାମ ।
ବୁଦ୍ଧିମନ୍ତ ହୋଇଣ ଜ୍ଞାନବନ୍ତ ହେଲେ
ବ୍ରାହ୍ମଣ ବ୍ରହ୍ମଙ୍କରେ ମିଶିଯାଇ ଭଲେ ।
ଜୀବ ସତ୍ତ୍ୱ ରଜ ତମକୁ ଆଶ୍ରା କରି
ଥିବାରୁ ତ୍ରିଗୁଣ ବୋଲାଏ ଦଣ୍ଡଧାରୀ ।
କେବଳ ସତ୍ତ୍ୱଗୁଣ ଆଶ୍ରା ଯେବେ କରେ
ଶୁଦ୍ଧ ବୋଲାଏ ସେହି ଜାଣ ଏ ଲୋକରେ ।
ସ୍ତ୍ରୀ ପୁରୁଷର ସଂଯୋଗରେ ମନୁଷ୍ୟ
ଜାତ ହେଉଅଛି ଯେ ରୂପେ ନରଈଶ ।
ସେହିରୂପେ ପ୍ରକୃତି ପୁରୁଷ ସମ୍ବାଦ
ଥିବାରୁ ଲାଗିଛିଟି ଏ ସଂସାର-ବନ୍ଧ ।

ନୋହିଲେ ପୁରୁଷ ସ୍ତ୍ରୀ ମେଳ, ରୂପଟାଏ
ମଣିଷର ନେତବେ ଜାତ ହୋଇନାହିଁ ରାୟେ ।
ମୃତ୍ତିକାର ସ୍ତ୍ରୀ ପୁରୁଷ ସଂଯୋଗେ ପୁରୁଷ
ଯେରୂପେ ଜାତ ହୋଏ ତା ଶୁଣ ନରେଶ ।
ହାଡ଼ ପିତ୍ତବଶ ବୀଜର ଗୁଣେ ହୋଏ
ଭଳ ମାଂସ ରକତ ରଜକରେ ରାୟେ ।
ମାତା ପିତା କରି ପ୍ରକୃତି ପୁରୁଷର
ନିତ୍ୟରେ ସମ୍ବନ୍ଧ ଟି ଅଛି ନରବର ।
ସାଂଖ୍ୟ ଯୋଗଶାସ୍ତ୍ରେ ଯେ ଏକାକରି ଜାଣେ
ବୁଦ୍ଧିମନ୍ତ ବୋଲି ତାହାକୁ ବାଣୀ ଭଣେ ।
ପ୍ରକୃତି ସକାଶୁଁ ପୁରୁଷ ଜାତ ହୋଇ
ଗୁଣାଢ୍ୟ ଗୁଣ ଥାଇ କ୍ଷୟକୁ ଲଭଇ ।
ଯେଉଁକାଳେ ପୁରୁଷ ଛାଡ଼େ ପ୍ରକୃତିକି
ସେକାଳେ ବଳାତ୍କାରେ ଲଭେ ମୁକତିକି ।
ମର୍ତ୍ତ୍ୟଯାକଙ୍କୁ କ୍ଷର, ଅମର ଅକ୍ଷର
ବୋଲନ୍ତି ଟି ଆହେ ଜନକ ମନେ କର ।
କ୍ଷରଯାକ ନିସ୍ତତ୍ତ୍ୱ, ଅକ୍ଷର ଟି ତତ୍ତ୍ୱ
ବୋଲିଣ ବେଦଙ୍କରେ ହୋଇଛି ବିହିତ ।
ଜନକ ବୋଇଲେ ହେ ଆଉ ଥରେ ଏହା
ବତାଇଣ କହ ବଶିଷ୍ଠ ଋଷିନାହା ।
କ୍ଷର ବିଦ୍ୟା ଅକ୍ଷର ଅଟେ ତ ଅବିଦ୍ୟା
ଯେ ରୂପରେ ଜାଣିବି ଏହା ମୁଁ ସର୍ବଦା ।
ସେହି ରୂପରେ ମୋତେ କହିବା ହୋଇବ
ମୋହଠାରେ ଯେବେ ତୁମ୍ଭର ଦୟା ଥିବ ।
ସାଙ୍ଖ୍ୟ ଯୋଗ ଦୁହିଁଙ୍କି ଭିନ୍ନ କରି ମୋତେ
କହିବା ହେବ ହେ ବଶିଷ୍ଠ ମହାମତେ ।
ବଶିଷ୍ଠ ବୋଇଲେ ଯା ପଚ୍ଛର ରାଜନ
ତାହା କହିବା ଏକମନ ହୋଇ ଶୁଣ ।
ଯୋଗୀ ଯୋଗରେ ଟି ପରମବଳ ଧ୍ୟାନ
ଧ୍ୟାନ ଦୁଇପ୍ରକାର ଅଟଇ ଟି ଘେନ ।
ଏକମନ ହେବ, ପ୍ରାଣ-ବାୟୁ ରୁନ୍ଧିବ
ଏ ଦୁହିଙ୍କ ଧ୍ୟାନ ବୋଲି ଟି ନରଦେବ ।
ବିଷୟୁ ଇନ୍ଦ୍ରିୟମାନଙ୍କୁ ନିବର୍ତ୍ତାଇ
ରଖିବ ବ୍ରହ୍ମଧ୍ୟାନ ସିଦ୍ଧି ହେବାପାଇଁ ।
ସବୁ ସଙ୍ଗୁ ମୁକତ ହୋଇଣ ଅଳପ
ଖାଇବ ହୋଇବାକୁ ହୃଦୟ ନିଷ୍ପାପ ।

ପାଷାଣ ପରି ମନ କରିବ ନିଶ୍ଚଳ
ନିବର୍ତ୍ତାଇ ରଖିବ ସ୍ୱ ଇନ୍ଦ୍ରିୟକୁଳ ।
ଏରୂପେ ଯେଉଁ ଯୋଗୀ ରହିବ ଟି ରାଜ୍ୟେ
ଯୋଗମୁକ୍ତ ବୋଲିଣ ସେହି ଟି ବୋଲାଏ ।
ନିବାତରେ ଦୀପ ରହିଲା ପରି ହୋଇ
ଯୋଗେ ଯୋଗୀ ରହିବ ରାଜା ଧୀର ହୋଇ ।
ଏରୂପେ ଯୋଗ ସାଧିବଇଁ ଯେବେ ନର
ଜୀବକୁ ପରମାତ୍ମା ହୁଅଇ ଗୋଚର ।
ଅମୃତାତ୍ମକ ଅଯୋନିଜ ଟି ବ୍ରହ୍ମଙ୍କୁ
ବୋଲନ୍ତି ରାଜନ ହେ ଆଣ ହୃଦୟକୁ ।
ଅଣୁରୁ ଅଣୁ, ମହତ୍ତ୍ୱରୁ ମହତତ୍ତ୍ୱ
ସେହି ଟି ଅଟନ୍ତି ହେ ଜାଣି କରି ତତ୍ତ୍ୱ ।
ସବୁ ପ୍ରାଣୀଙ୍କରେ ସେ ପୂରି ରହିଛନ୍ତି
ମନ-ଦୀପରେଟି ଦେଖନ୍ତି ତାଙ୍କୁ ଯତି ।
ମହତ ତମ ପାରେ ରହିବାରୁ ସେହି
ତମୋପହତ ମନୋଦ ତାହାଙ୍କୁ କହି ।
ଏରୂପେ ଯେଉଁମାନେ ଜାଣନ୍ତି ଟି ଯୋଗ
ବ୍ରହ୍ମ ମହାପୁରୁଷ ହୋନ୍ତି ତାଙ୍କ ଭୋଗ ।
ଯୋଗଶାସ୍ତ୍ର ମୋଠାରୁ ଶୁଣିବ ରାଜନ
ସାଂଖ୍ୟଶାସ୍ତ୍ର କହିବା ଦିଅ ଏବେ ମନ ।
ପ୍ରକୃତିବାଦୀମାନେ ଅବ୍ୟକ୍ତ ପ୍ରକୃତି
ବୋଲିକରି ରାଜନ ବଚନ କହନ୍ତି ।
ପ୍ରକୃତିରୁ ହୋଇଛି ମହତତ୍ତ୍ୱ ଜାତ
ମହତତ୍ତ୍ୱରୁ ଜାଣ ଅହଙ୍କାର ସୁତ ।
ଅହଙ୍କାରରୁ ପଞ୍ଚମହାଭୂତେ ହୋଇ
ବ୍ୟାପିଛନ୍ତି ଜଗତଯାକେ ନରସାଇଁ ।
ଯେ ତାହାଠାରୁ କାଳେ ଜନମ ହେଉଛି
ସେ ତାହାକୁ କୋଳରେ ଜାଣଟି ରଖୁଛି ।
ପ୍ରଳୟକାଳେ ଯାଇ ସର୍ବେ ପ୍ରକୃତିରେ
ରହନ୍ତି ପ୍ରକୃତିଟି ରହଇ ଏକାରେ ।
ସରଜନା କାଳରେ ଭିନ୍ନ ଭିନ୍ନ ହୋଇ
ପ୍ରକାଶ ହୁଅଇ ହେ ଜାଣ ନରସାଇଁ ।
ପ୍ରକୃତିକି କ୍ଷେତ୍ର ଯେ ଆତ୍ମାକୁ କ୍ଷେତ୍ରଜ୍ଞ
ବୋଲିକରି କହନ୍ତି ଯେତେ ଛନ୍ତି ବିଜ୍ଞ ।
ଦେହ ପରେ ଶୋଇବା ସକାଶୁ ଆତମା
ପୁରୁଷ ବୋଲାଏ ଜନକ ମହାତମା ।

ଅବ୍ୟକତକୁ ଜ୍ଞାନ, ଆତମାକୁ ଜ୍ଞେୟ
ବୋଲିକରି କହନ୍ତି ସର୍ବ ଋଷିଚୟ ।
ପ୍ରକୃତିଠାରୁ ଯେତେ ଜାତ ହୋଇଛନ୍ତି
ଜଗତ ମଧ୍ୟେ ଗୁଣତତ୍ତ୍ୱ ସେ ବୋଲନ୍ତି ।
ପ୍ରକୃତିଠାରୁ ଜାତ ଆତ୍ମା ନୋହିବାକୁ
ନିର୍ଗୁଣ ବୋଲିକରି କହି ଟି ତାହାକୁ ।
ଯେଉଁମାନେ ଆତ୍ମାକୁ ଜାଣନ୍ତି ରାଜନ
କରିଥାନ୍ତି ଭୟୁକଥାକୁ ସେ ମୋଚନ ।
ସାଂଖ୍ୟଗୀତି ମୋଠାରୁ ଶୁଣିଲ ତ ନୃପ
ବିଦ୍ୟା ଅବିଦ୍ୟାର କହିବା ଏବେ ରୂପ ।
ଧର୍ମଯୁକତ ଅବ୍ୟକତଟି ଅବିଦ୍ୟା
କର୍ମେନ୍ଦ୍ରିୟଙ୍କର ବୁଦ୍ଧି ଅଟଇ ବିଦ୍ୟା ।
ବୁଦ୍ଧୀନ୍ଦ୍ରିୟମାନଙ୍କେ ଯେ ଅଟେ ବିଶେଷ
ସେ ମଧ୍ୟ ବିଦ୍ୟା ବୋଲାଏ ହେ ନରଈଶ ।
ବିଶେଷମାନଙ୍କର ମନ ଅଟେ ବିଦ୍ୟା
ମନଙ୍କର ପଞ୍ଚମହାଭୂତ ଟି ବିଦ୍ୟା ।
ପଞ୍ଚମହାଭୂତଙ୍କରୁ ଯେ ଅହଙ୍କାର
ଅହଙ୍କାରର ବିଦ୍ୟା ବୁଦ୍ଧି ମନେ କର
ବୁଦ୍ଧିରୁଟି ପ୍ରକୃତି ବିଦ୍ୟା ବୋଲାଅଇ
ତତ୍ତ୍ୱର ଈଶ୍ୱରଙ୍କୁ ବିଦ୍ୟା ବୋଲି କରି ।
ପ୍ରକୃତି ପୁରୁଷଙ୍କୁ ବୋଲନ୍ତି ଅକ୍ଷର
କ୍ଷର ବୋଲିକରି ରାଜନ ମନେ କର ।
ଦୁହିଙ୍କୁ ଅନାଦି ଈଶ୍ୱର ତତ୍ତ୍ୱ ବୋଲି
ବେଦ କହୁଛି ଏହା ଘେନ ହେ ନ ଭୁଲି ।
ଗୁଣମାନ ଗୁଣରେ ହୋଇଲେ ବିଲୀନ
ପ୍ରକୃତି ଏକା ହୋଇ ରହଇ ରାଜନ ।
ସାଂଖ୍ୟଶାସ୍ତ୍ର ପରି ଅଟଇ ଯୋଗଶାସ୍ତ୍ର
ତାହା ଜାଣିଲେ ଲୋକ ହୁଅଇ ପବିତ୍ର ।
ଅଜ୍ଞାନ ଲୋକଙ୍କୁ ଏ ଶାସ୍ତ୍ର ନ କହିବ
କହିବ ଯେବେ ମହାପାତକ ଅର୍ଜିବ ।
ସାଧୁଲୋକ ଶ୍ରଦ୍ଧା କରିଣ ଏ ଶାସ୍ତ୍ରକୁ
ଶୁଣିବି ମୁଁ ବୋଇଲେ କହିବ ତାହାକୁ ।
ଜ୍ଞାନତତ୍ତ୍ୱକୁ ଜାଣି ମୋହଟିକି ଛାଡ଼
ବିଷୟ-ବିଷେ ପଡି ରାଜନ ନ ହୁଡ଼ ।
ଭୀଷ୍ମ ବୋଇଲେ ଆହେ ବଶିଷ୍ଠ ନାରଦ
ଶିଖିଥିଲେ ଏ ଶାସ୍ତ୍ର ବହି ଅତି ମୋଦ ।

ବ୍ରହ୍ମାଙ୍କଠାରୁ ଜାଣ ଆହେ ଯୁଧିଷ୍ଠିର
ମୋର ସେ ସାଂଖ୍ୟଶାସ୍ତ୍ର-ଗୁରୁ ମନେକର ।
ବଶିଷ୍ଠ ଜନକ ସମ୍ବାଦ ହେଲା ଶେଷ
କହେ କୃଷ୍ଣସିଂହ ନୃପତି ବହୁ ତୋଷ ।

—※—

## ବସୁମାନ ଭାର୍ଗବ ସମ୍ବାଦ

ଭୀଷ୍ମ ବୋଇଲେ ଆହେ ଜନକଙ୍କ ସୁତ
ବସୁମାନ ନାମ ଜଗତରେ ବିଖ୍ୟାତ ।
ଦିନେ ସେ ମୃଗମାରି ବନେ ଯାଇଥିଲେ
ଭାର୍ଗବଙ୍କୁ ସେ ବନମଧ୍ୟରେ ଦେଖିଲେ ।
ଭାର୍ଗବଙ୍କ ପାଦରେ କରି ନମସ୍କାର
ବୋଇଲେ ଭଲେ ଅଛଟିକି ମୁନିବର ।
ଇହ ପର ଏ ଦୁଇଲୋକରେ ମନୁଷ୍ୟ
ମାନଙ୍କରେ କେ ଭଲ କର ତା ପ୍ରକାଶ ।
ଭାର୍ଗବ ବୋଇଲେ ହେ ଲୋକର ମଙ୍ଗଳ
ଯେ ବାଞ୍ଛଇ ତାହାର ଇହ ପରେ ଭଲ ।
ସାଧୁ ଲୋକମାନଙ୍କର ଯେ ଧରମ ଟି
ମୂଳ ଅଟଇ ଆହେ ଜନକ ବେଟାଟି ।
ଧରମରୁ ଏ ଚରାଚରଟି ହୋଇଛୁ
କହିବାକୁ ଏଥିରେ କେଉଁ କଥା ଅଛୁ ।
ଅସାଧୁଲୋକ ଧର୍ମ ଇଚ୍ଛା ଯେବେ କରେ
ନିର୍ଭ କରି ନ ପାରେ ସେ ବହୁ କଷ୍ଟରେ ।
ସାଧୁଲୋକମାନଙ୍କର ହେ ନରୋତ୍ତମ
ଅଳପ ପୁଣ୍ୟ କଲେ ପ୍ରକାଶଇ ଧର୍ମ ।
ବନରେ ଥାଇ ଗ୍ରାମ୍ୟସୁଖ ଯେ ଆଚରେ
ଲେଖା ହୁଅଇ ସେ ରାଜନ ଗ୍ରାମ୍ୟନରେ ।
ଗ୍ରାମେ ଥାଇ ବନ କଥା ଯେ ଆଚରଇ
ବନ ନର ବୋଲଣ ତାହାକୁଟି କହି ।
ମନ ବଚନରେ ଶରୀରରେ ଧରମ
ଆଚରଣ କର ହେ ନୃପତି ଉତ୍ତମ ।
ନ୍ୟାୟ-ଅର୍ଜିତ-ଧନ ପାତ୍ରଲୋକେ ଦେଲା—
ଲୋକଟି ସରଗରେ ବୋଲାଅଇ ଭଲା ।
କ୍ରୋଧକୁ ଛାଡ଼ିକରି ଦ୍ୱିଜେ ଦେବ ଦାନ
ଦେବାର ନ ଗଣିବ ହୋଇବ ମଉନ ।
ସବୁ ଅବଗୁଣତ ତୁମଠାରେ ଅଛୁ
ତା ଛାଡ଼ି ଧର୍ମକଥା କର ନୃପବଚ୍ଛି ।

ଇହ ପର ଲୋକରେ ଧୈର୍ଯ୍ୟ ଅଟେ ମୂଳ
ଧୈର୍ଯ୍ୟ କରି ଧର୍ମ କର ମହୀପାଳ ।
ଧୀର ହୋଇବାରୁ ଯେ ଯଯାତି ନୃପତି
ପୁଣ୍ୟଚ୍ୟୁତଠାରେ ପାଇଲେ ସ୍ୱର୍ଗଭୂତି ।
ମହାଭିଷ ରାଜା ତ ସ୍ୱର୍ଗେ ଯାଇଥିଲେ
ଅଧୀର ହୋଇବାକୁ ମର୍ତ୍ତ୍ୟକୁ ଆସିଲେ ।
ଧାର୍ମିକ ତପୋବଦ୍ୟାବନ୍ତଙ୍କୁ ଆଶ୍ରୟ
କଲେ ତୁମ୍ଭେ ପାଇବ ମହାଲୋକଚୟ ।
ବସୁମାନ ମୁନିଙ୍କ ବଚନ ଘେନିବେ
ଧର୍ମକଥା ଆଚରି ସ୍ୱର୍ଗକୁ ଲଭିବେ ।
ଏଠାରେ ବସୁମାନ ଭାର୍ଗବ ସମ୍ବାଦ
ସରିଲା କହେ କୃଷ୍ଣସିଂହ ବହୁ ମୋଦ ।

—※—

## ଯାଜ୍ଞବଲ୍‌କ୍ୟ ଜନକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଧର୍ମ ଅଧରମ
ପୁଣ୍ୟ ପାପ ଆଦି କରି ଯେତେକ କର୍ମ ।
ଏମାନରୁ ବିମୁକ୍ତ ହୋଇଥିବା କଥା
କେ ଅଛୁ ତାହା ମୋତେ କହ ମହାରଥା ।
ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ଜନକ ମହର୍ଷି ମିଥିଳା ନରବର ।
ଯାଜ୍ଞବଲ୍‌କ୍ୟ ଋଷିଙ୍କି ଦିନେ ସେ ଦେଖିଲେ
ବିନୟ ହୋଇକରି ତାଙ୍କୁ ପଚ୍ଛରିଲେ ।
ପ୍ରକୃତି ଇନ୍ଦ୍ରିୟର ସଂଖ୍ୟା କେତେ କେତେ
ହୋଇଅଛୁ ବିସ୍ତାରି କହ ମହାମତେ ।
ଅବ୍ୟକ୍ତ ଜନମ ପ୍ରଳୟ କାଳ ସଂଖ୍ୟା
ଏହା ମୋତେ କହିବ ତୁମ୍ଭେ ଋଷିବର୍ଯ୍ୟା ।
ଯାଜ୍ଞବଲ୍‌କ୍ୟ ବୋଇଲେ ତୁମ୍ଭ ସବୁଜ୍ଞାନ
ଅଛୁ, ହେଲେ ହେଁ ମୋତେ ପୁଚ୍ଛୁଛ ରାଜନ ।
ପଚ୍ଛରିଲେ ଲୋକ କହିବାର ଧରମ
ଥିବାର ତ ଅଛୁ କହିବ ନରୋତ୍ତମ ।
ଅବ୍ୟକ୍ତ ପଞ୍ଚମହାଭୂତ ମହାତତ୍ତ୍ୱ
ଅହଙ୍କାର ପ୍ରକୃତି ବୋଲି ଜାଣ ଖ୍ୟାତ ।
ଅବ୍ୟକ୍ତ ଆତ୍ମାକୁ ପ୍ରଥମସୃଷ୍ଟି କହି
ଦ୍ୱିତୀୟ ଅହଙ୍କାର ଜାଣ ନରସାଇଁ ।
ଅହଙ୍କାରରୁ ଟି ମନର ଉତପତ୍ତି
ହୋଇଲା ଯେ ତୃତୀୟସୃଷ୍ଟି ନରପତି ।

ମନରୁ ପଞ୍ଚମହାଭୂତେ ଜାତ ହେଲେ
ଚତୁର୍ଥ ସୃଷ୍ଟି ବୋଲି ତାହାଙ୍କୁ କହିଲେ ।
ପଞ୍ଚମହାଭୂତରୁ ଶବ୍ଦ ରୂପ ରସ
ପରଶ ଗନ୍ଧ ଜାତ ହେଲା ହେ ନରେଶ ।
ତାହାଙ୍କୁ ଟି ପଞ୍ଚମ ସୃଷ୍ଟି ବୋଲି କହି
ମୋ କଥାରୁ ଜାଣ ମିଥିଳା ନରସାଇଁ ।
ଶ୍ରୋତ୍ର ନୟନ ଘ୍ରାଣ ଚରଣକୁ ଶ୍ରେଷ୍ଠ
ଗୁହ୍ୟୋପସ୍ଥ ମିଶି ବୋଲାଏ ସୃଷ୍ଟି ଷଷ୍ଠ ।
ଅଧଃସ୍ରୋତ ତିର୍ଯ୍ୟକସ୍ରୋତ ଊର୍ଦ୍ଧ୍ୱସ୍ରୋତ
ଏ ତିନି ମିଶିଣ ନବମ ସୃଷ୍ଟି ଖ୍ୟାତ ।
ଅବ୍ୟକତ କାଳସଂଖ୍ୟା ହେ ନରେଣ
ଶୁଣ ଏକଚିତ୍ତେ ତା କରିବା ବଖାଣ ।
ସହସ୍ର ଦଶକଳ୍ପ ଯେବେ ଭୋଗନ୍ତିଏ
ଅବ୍ୟକତ ଦିନ ସରିଲା ସେ ବୋଲାଏ ।
ରାତ୍ରି ମଧ୍ୟ ସେତିକ ହୁଅଇ ରାଜନ
ରାତ୍ରଯାକ ପ୍ରଳୟ ହୁଏ ମନେ ଘେନ ।
ରାତ୍ରି ଶେଷେ ଅବ୍ୟକ୍ତ ପୁରୁଷ ଉଠନ୍ତି
ଆଗ ଔଷଧିକି ସେ ସର୍ଜନା କରନ୍ତି ।
ତଦନ୍ତେ ବ୍ରହ୍ମାଣ୍ଡ ହାଣ୍ଡିକି ଭିଆଣ
କରି ବ୍ରହ୍ମାଟିଏ ସେ କରନ୍ତି ଆପଣ ।
ବ୍ରହ୍ମା ସେ ବ୍ରହ୍ମାଣ୍ଡରେ ବରଷେ ରହନ୍ତି
ତଦନ୍ତେ ସ୍ୱର୍ଗ ମହୀକି ସରଜନ୍ତି ।
ସ୍ୱର୍ଗ ମହୀ ମଧ୍ୟରେ ଆକାଶ ସଜନା
କରଅଛନ୍ତି ଜାଣ ବ୍ରହ୍ମା ମହାମନା ।
ସହସ୍ର ସାତପଞ୍ଚଶତ କଳପଟି
ହୋଇଲେ ବ୍ରହ୍ମାଙ୍କର ବୋଲାଏ ଦିନ ଟି ।
ରାତ୍ରି ମଧ୍ୟେ ତାଙ୍କର ଅଟଇ ଏତେକ
ଜାଣ ଆହେ ମିଥିଳା ଅବନୀ ନାୟକ ।
ଏରୂପେ ଯେ ବ୍ରହ୍ମା ପ୍ରଳୟ ଅନ୍ତେ ଆଗ
ଅହଙ୍କାର ସର୍ଜନା କଲେ ବହି ରାଗ ।
ମାନସ କରି ବିଶ୍ୱପୁତ୍ର ସରଜିଲେ
ପିତୃମାନଙ୍କର ସେ ପିତା ବୋଲାଇଲେ ।
ପିତୃଙ୍କଠାରୁ ଯେ ହେଲେ ଦେବଗଣ
ଦେବଙ୍କେ ସବୁଲୋକ ଆବୃତ ଟି ଜାଣ ।
ବ୍ରହ୍ମାଙ୍କଠାରୁ ଅହଙ୍କାର ଜନ୍ମିଥିଲେ
ପଞ୍ଚମହାଭୂତଙ୍କୁ ସର୍ଜନା ସେ କଲେ ।

ଅହଙ୍କାରର ଟି ସହସ୍ର ଦଶକଳ୍ପ
ଅହୋରାତ୍ର ବୋଲାଏ ଜାଣ ଆହେ ନୃପ ।
ଶବ୍ଦ ରୂପ ରସ ସ୍ପରଶ ଗନ୍ଧ ମିଶି
ପାଞ୍ଚଙ୍କୁ ଟି ବିଶେଷ ବୋଲିକରି ଭାଷି ।
ପାଞ୍ଚ ବିଶେଷରେ ବାନ୍ଧ ହୋଇଣ ନର
ହିତ ଅହିତକୁ କରନ୍ତି ନିରନ୍ତର ।
ବିଶେଷ ମନର ସହସ୍ର ଷଷ୍ଠକଳ୍ପ ।
ଅହୋରାତ୍ର କରି ଗଣିଛି ଆହେ ନୃପ ।
ମହୀ ନିବର୍ତ୍ତିଲେ ଇନ୍ଦ୍ରିୟେ ନିବର୍ତ୍ତନ୍ତି
ମନଦ୍ୱାରେ ଇନ୍ଦ୍ରିୟେ ବିଷୟ ଦେଖନ୍ତି
ସବୁ ଇନ୍ଦ୍ରିୟଙ୍କରେ ମନଟି ଈଶ୍ୱର
ମୋ କହିବାରୁ ହେ ଜନକ ମନେକର ।
ପାଦ ଗନ୍ତବ୍ୟ ବିଷ୍ଣୁ ପାୟୁ ବିସରଗ
ମିହୋପସ୍ଥ ଆନନ୍ଦ ବ୍ରହ୍ମା ମହାଭାଗ ।
ହସ୍ତ କର୍ମେନ୍ଦ୍ରିୟ ବଚନ ଯେ ବକ୍ତବ୍ୟ
ବହ୍ନି ନୟନ ରୂପ ଦିବାକରଦେବ ।
ଶ୍ରୋତ୍ର ଶବ୍ଦ ଦିଶ ରସନା ରସ ଜଳ
ଘ୍ରାଣ ଗନ୍ଧ ପୃଥିବୀ ତ୍ୱକ ସ୍ପର୍ଶାନିଳ ।
ମାନସ ମନ୍ତବ୍ୟେନ୍ଦୁ ଅହଙ୍କାରମାନ
ବୁଦ୍ଧି ବୃତ୍ତି ବୋଧବ୍ୟ କ୍ଷେତ୍ରଜ୍ଞ ରାଜନ ।
ତିନୋଟି ଲେଖାରେ ଟି ଅଧ୍ୟାତ୍ମ ଆଗଟି
ଦ୍ୱିତୀୟ ଅଧିଭୂତ ତୃତୀୟ ଦେବ ଟି ।
ପାଦଠାରୁ କ୍ଷେତ୍ରଜ୍ଞ ଯାଏ ତିନି ତିନି
ଏହିରୂପେ ବୋଲି ହେ ଜାଣ ନରମଣି ।
ଇନ୍ଦ୍ରିୟମାନଙ୍କର ବିଭୂତି ଏ ଅଟେ
ଦେବତା ବିନା ଆନଠାରେ ନ ପ୍ରକଟେ ।
ଦୀପରୁ ଶତଦୀପ ହୋଇଲା ପରାୟେ
ପ୍ରକୃତି ପୁରୁଷର ଗୁଣକୁ ବଢ଼ାଏ ।
ଆନନ୍ଦୋଦ୍ରେକ ପ୍ରୀତି ପ୍ରକାଶ ଆନୃଣ୍ୟ
ସନ୍ତୋଷ ଶ୍ରଦ୍ଧା ଅସଂରମ୍ଭ ଅକାର୍ପଣ୍ୟ ।
କ୍ଷମା ଧୃତି ଅହିଂସା ସମତା ଆର୍ଜବ
ଲଜ୍ଜା ଅଚପଳ ଯେ ଶୌଚ ମାରଦେବ ।
ଧନ ନଷ୍ଟାନଷ୍ଟ ବିଯୋଗ ଦୟା ସତ୍ତ୍ୱ
ଆରୋଗ୍ୟାଦି ଏମାନେ ବୋଲନ୍ତିଟି ସତ୍ତ୍ୱ ।
ଅତ୍ୟାଗ ଅକାରୁଣ୍ୟ ଦୁଃଖୋପସେବନ
ପରିତାପ ଭାବନା ବିବାଦ ଟପବନ ।

ବେ ଗ୍ରେପସେବନ ହ୍ରୀ ନାଶ ଅସତ୍କାର
ଅନାର୍ଜବ ଭେଦ ପାରୁଷ୍ୟ ଅହଙ୍କାର ।
ଅତିବାଦ ଦର୍ପ ବିଦ୍ୱେଷ କ୍ରୋଧ କାମ
ପରଅପବାଦଟି ରଜୋଗୁଣ ଜନ୍ମ ।
ଭୋଜନ ଅପର୍ଯ୍ୟାପ୍ତି ମୋହ ଦିବାସ୍ୱପ୍ନ
ତାମିଶ୍ର ଅତିବାଦ ଭକ୍ଷାତିବେଚନ ।
ଅନ୍ଧତାମିଶ୍ର ଅପ୍ରକାଶ ଧର୍ମଦ୍ୱେଷ ।
ନୃତ୍ୟ ବାଦ୍ୟ ଶ୍ରଦ୍ଧା ଏ ତମରୁ ପ୍ରକାଶ ।
ପ୍ରକୃତିରୁ ଜାଣ ଯେ ତିନିଗୁଣଯାକ
ପ୍ରତିଯୁଗେ ଅଛୁ ହେ ଅବନୀ-ନାୟକ ।
ସାତ୍ତ୍ୱିକଲୋକର ଉତ୍ତମସ୍ଥାନ ହୋଏ
ମଧ୍ୟସ୍ଥାନକୁ ହେ ରାଜସଲୋକ ପାଏ ।
ତାମସଲୋକଙ୍କର ଯେ ଅଧସ୍ଥାନଟି
ହୁଅଇ ଆହେ ନୃପକୁଳ-ଚନ୍ଦ୍ରମାଟି ।
କେବଳ ପୁଣ୍ୟ କଲେ ହୁଏ ଊର୍ଦ୍ଧ୍ୱଗତି
ପୁଣ୍ୟ ପାପ କରିଲେ ମନୁଷ୍ୟ ହୁଅନ୍ତି ।
ଅଧର୍ମ କଲେ ଲୋକ ନରକକୁ ଯାଏ
ନ କର ସନ୍ଦେହ ମିଥିଳା ମହୀରାୟେ ।
ସତ୍ତ୍ୱଯୁକ୍ତ ହେଲେ ଲଭଇ ଦେବଲୋକ
ରଜସତ୍ତ୍ୱଯୁକ୍ତ ମନୁଷ୍ୟ ଜନ୍ମଯାକ ।
ରଜ ତମ ଦୁଇରେ ଯେବେ ଯୁକ୍ତ ହୋଏ
ପଶୁଯୋନିରେଟି ତେବେ ସେ ଜନ୍ମପାଏ ।
ପୁଣ୍ୟ ପାପମୁକ୍ତ ଅଟନ୍ତି ଯେବେ ନର
ବ୍ରହ୍ମାଙ୍କଠାରେ ସେ କରନ୍ତି ଯାଇ ଘର ।
ଆତ୍ମା ଯେବେ ପ୍ରକୃତି ମଧ୍ୟେ ସ୍ଥିତ ହୋଏ
ପ୍ରାକୃତ ତାହାକୁଟି ବୋଲନ୍ତି ସଭିଏଁ ।
ପ୍ରକୃତିର ନାମ ଅଟଇ ଅଚେତନ
ଆତ୍ମା ସକାଶରୁ ବର୍ଜଇ ପ୍ରାଣୀଗଣ ।
ଜନକ ବୋଇଲେ ହେ ପ୍ରକୃତି ପୁରୁଷ
ଏ ଦୁହିଁଙ୍କି ସମାନ କହିଲ ଋଷୀଶ ।
ଦୁହେଁ ତ କହିବାରେ ବୋଲନ୍ତି ଅନାଦି
ଅଚଳ ଯେ ଅମୂର୍ତ୍ତିମନ୍ତ ନିର୍ବାଧି—
ହୋଇ କିମ୍ପା ପ୍ରକୃତି ହେଲା ଅଚେତନ
ପୁରୁଷ କାହିଁପାଇଁ ହୋଇଲା ଚେତନ ।
ଏ ବାହାରେ ଦେହେ ଦେବତା ଯେତେ ଛନ୍ତି
ଏହା ମଧ୍ୟ ମୋତେ କହିବା ଆହେ ଯତି ।

ବହୁତ ଦ୍ୱାର ଦେହପାକେ ରହିଛନ୍ତି
କେଉଁ ଦ୍ୱାରରେ ପ୍ରାଣ ଗଲେ ଭଲଗତି ।
ହୁଅଇ ଆହେ ଋଷିମାନଙ୍କ ଶିଖର
ଶୁଣିବାକୁ ମନ ଯେ ହେଉଛି ମୋହର ।
ସାଂଖ୍ୟ ଯୋଗ ଦୁହିଙ୍କ କଥା ଭିନ୍ନ ଭିନ୍ନ
କରି ମଧ୍ୟ କହିବା ହେବ ତପୋଧନ ।
ଯାଜ୍ଞବଲ୍କ୍ୟ ବୋଇଲେ ନିର୍ଗୁଣ ଆତ୍ମାକୁ
ଗୁଣବନ୍ତ କରିବ ଜ୍ଞାନ ଦେଖିବାକୁ ।
ପ୍ରକୃତିର ଅହଙ୍କାର ଥିବାର ଯେଣ
ହୋଇଲା ସେ ଏ ଯେଣ ଅଚେତନସ୍ୱାମୀ ।
ପୁରୁଷ ପ୍ରକୃତିର ଅଛୁ ଭିନ୍ନ ଭିନ୍ନ
ମାଛ ପାଣି ପରି ଅଟଇ ଆନ ଆନ ।
ଏହାକୁ ଯେଉଁ ଲୋକ ଜାଣି ନ ପାରଇ
ଅଜ୍ଞାନୀ ବୋଲିକରି ତାହାକୁଟି କହି ।
ସାଂଖ୍ୟଜ୍ଞାନ ଏରୂପେ ଶୁଣିଲ ତ ରାୟେ
ଯୋଗଜ୍ଞାନ କହିବା ଶୁଣ ସ୍ୱହୃଦୟେ
ଅଳ୍ପବୁଦ୍ଧି ଲୋକଟି ଯୋଗ ସାଂଖ୍ୟ ଦୁଇ
ଭିନ୍ନ ଭିନ୍ନ କରିଣ କହନ୍ତି ବତାଇ ।
ଆମ୍ଭ ମତେ ସାଂଖ୍ୟ ଯୋଗ ଏ ଦୁଇଜ୍ଞାନ
ନୀର କ୍ଷୀର ପରି ଅଟଇ ହେ ରାଜନ ।
ଯୋଗୀଏ ଯୋଗ ବଳେ ଦଶଦିଗଯାକ
ସଞ୍ଚାର କରନ୍ତି ହେ ଅବନୀ-ନାୟକ ।
ଗୁଣ ନିର୍ଗୁଣରେ ଯେ ଯୋଗ ଦୁଇଗୋଟି
ହୋଇଅଛି ଜାଣ ହେ ନୃପତିବେଟାଟି ।
ପ୍ରାଣାୟାମ ମନରେ ଧାରଣା ସଗୁଣ
ନିର୍ଗୁଣ ପୂର୍ବୋତ୍ତର କ୍ରମରେଟି ଜାଣ ।
ପ୍ରାଣଗଲାବେଳକୁ ବାତ ଜାତ ହୁଏ
ତହିଁକି ଯୋଗୀ ଜଗିଥାଆନ୍ତିଟି ରାୟେ ।
ପ୍ରଥମଯୋଗ ପ୍ରାନ୍ତଯାଗେ ବାର ବାର
ପ୍ରାଣାୟାମ କରି ଜନକ ନୃପବର ।
ଇନ୍ଦ୍ରିୟଙ୍କୁ ସଂଯତ କରିଣ ରଖିବ
ମନକୁ ନେଇ ଅହଙ୍କାରେ ନିବେଶିବ ।
ଅହଙ୍କାରଟିକି ଯେ ରଖିବ ବୁଦ୍ଧିରେ
ବୁଦ୍ଧିଟିକି ରଖିବ ପ୍ରକୃତିଭିତରେ ।
ପଦ୍ମାସନ ହୋଇଣ ନିସ୍ଥଳେ ବସିବ
ଆଖି ଦୁଇକ ଖୋଳି ବ୍ରହ୍ମକୁ ଭାବିବ ।

ଯେଉଁକାଳେ ନବୀତ ଯାପ ପର ହୋଇ
ରହଇ ସେକାଳେ ବ୍ରହ୍ମକୁ ସେ ଜାଣଇ ।
ଗୀତ ବାଦ୍ୟ ନୃତ୍ୟ କରିଲେ ଯୋଗୀ ଆଗେ
ନ ଶୁଣଇ ଯେବେ ଯେ ନୟନେ ସରାଗ ।
ତେବେ ଜାଣି ଯୋଗ ସିଦ୍ଧି ହୋଇଲା ଆସି
ଅଳପଦିନେ ଯିବ ବ୍ରହ୍ମରେ ଏ ମିଶି ।
ଏରୂପେ ଯୋଗଶାସ୍ତ୍ର କରି ଯୋଗୀମାନେ
ବସୁନ୍ତି ଯାଇ ପରମ ବ୍ରହ୍ମସ୍ଥାନେ ।
ପ୍ରାଣ ଯେଉଁ ଦ୍ୱାରରେ ଗଲେ ଭଲ ଗତି
ହୁଅଇ ତା କହିବା ଶୁଣ ଦେଇ ମତି ।
ପାଦଦୁଇଦ୍ୱାରେ ଯାଅଇ ଯେବେ ପ୍ରାଣ
ବସୁଙ୍କୁ ସେ ଯାଇ ଭେଟଇ ତତକ୍ଷଣ ।
ଗୁହ୍ୟଦ୍ୱାରରେ ମୈତ୍ରଲୋକଙ୍କୁ ଦେଖଇ
ଜାନୁରେ ଗଲେ ସାଧ୍ୟଲୋକରେ ବସଇ ।
ତଳପେଟ ଦେଇ ଯାଅଇ ଯେବେ ପ୍ରାଣ
ପୃଥିବୀକି ଆଶ୍ରୟ କରଇ ସେ ଜାଣ ।
ଉରୁଦେଇଣ ଗଲେ ପ୍ରଜାପତିଲୋକେ
ବାଟକୁ ଆସିଣ ନଅନ୍ତି ତାକୁ ଥୋକେ ।
ଦୁଇପାଖକୁ ଦେଇ ଗଲେ ମରୁତକୁ
ଲୋକଙ୍କୁ ଗମଇ ହେ ଅବନୀନାୟକ ।
ହସ୍ତ ଦେଇ ଗଲେ ରମ୍ଭାଦି ଅପସରୀ
କୋଳେ ଧରି ସ୍ୱର୍ଗରେ ବସନ୍ତି ବିହରି ।
ବକ୍ଷସ୍ଥଳ ଦେଇ ଯାଅଇ ଯେବେ ପ୍ରାଣ
ରୁଦ୍ରଲୋକ ତାହାର ହୁଅଇଟି ଜାଣ ।
ଗ୍ରୀବା ଦେଇ ଗଲେ ନରଙ୍କ ଦେହେ ରହେ
ଏହା ଶୁଣି ନ ବସ ମାନସ ସନ୍ଦେହେ ।
ମୁଖ ଦେଇଣ ଗଲେ ବିଶ୍ୱଦେବଲୋକ
କର୍ଣ୍ଣଦେଇ ଗଲେ ପାଅଇ ଦିଗପାଳ ।
ନାସିକା ଦେଇ ଯେବେ ପ୍ରାଣ ବାହାରଇ
ପବନ ଲୋକରେ ସେ ସୁଖରେ ବସଇ ।
ନେତ୍ର ଦୁଇ ବାଟେ ଯାଅଇ ଯେବେ ପ୍ରାଣ
ତାହାକୁ ପୂଜନ୍ତି ଗ୍ରହଙ୍କ ଗମଣ ।
ଭ୍ରୂରେ ଦେଇ ଗଲେ ଅଶ୍ୱିନୀକୁମାରେ
ବସାନ୍ତି ନେଇ ତାହାଙ୍କର ସମୀପରେ ।
ଲଲାଟ ଦେଇ ଯେବେ ବାହାରେ ଜୀବନ
ପିତାଙ୍କର ଆଦର ସ୍ଥାନ ହୋଏ ଘେନ ।
ମୁଣ୍ଡ ବାଟରେ ଗଲେ ଭେଟଇ ବ୍ରହ୍ମଙ୍କୁ
ସନ୍ଦେହ ନ ଆଣ ହେ ରାଜନ ମନକୁ ।
ଜୀବନ ଯେଉଁ ବାଟେ ଗଲେ ଯେଉଁସ୍ଥାନ
ପାଏ ତା ମୋହଠାରୁ ଶୁଣିଲ ରାଜନ ।
ଏବେ ଶୁଣ ଅରିଷ୍ଟମାନଙ୍କର କଥା
ନରକୁଳଚନ୍ଦ୍ର ଜନକ-ମହାରଥା ।
ଅରୁନ୍ଧତୀ ଧ୍ରୁବ ପୂର୍ଣ୍ଣଚନ୍ଦ୍ରମା ଦୀପ
ନ ଦିଶିଲେ ଜାଣିବ ଆୟୁ ହେଲା ଲୋପ ।
ଅଜ୍ଞାନ ପ୍ରଜ୍ଞାବନ୍ତ ଅତ୍ୟନ୍ତ ଅଜ୍ଞାନ
ଅତ୍ୟନ୍ତ ତେଜ ଅତି ନିସ୍ତେଜ ରାଜନ ।
ହୋଇଲେ ଛ ମାସରେ ହୁଅଇଟି ମୃତ୍ୟୁ
ମୋ କହିବାରୁ ଏହା ମନେ କର ହେତୁ ।
ଦେବତା ବ୍ରାହ୍ମଣଙ୍କୁ ଅବଜ୍ଞା ଯେ କରେ
ଆୟୁଷ ଥିଲେ ନାଶ ଯାଏ ସେ ଅଳ୍ପରେ ।
ଚନ୍ଦ୍ର ସୂର୍ଯ୍ୟ ଦୁହିଙ୍କ ମଧ୍ୟେ ନେତ୍ର କଣା
ଦେଖିଲେ ସାତରାତ୍ରେ ମରେ ମହାମନା ।
ବାନ୍ତି ଯାହା ନାକକୁ ସୁଗନ୍ଧ ବାସଇ
ଜାଣ ହେ ନୃପ ସାତଦିନ ସେ ଜୀଅଇ ।
କାନ ନାକ କୋମଳ ହୋଇଲେ ଲୋକର
ଜାଣିବ ଏହିକ୍ଷଣି ଗଲା ଯମପୁର ।
ଅକସ୍ମାତେ ବାମ ଆଖିରୁ ଲୁହ ବହି
ମୁଣ୍ଡ ଧୂଆଁ ଗଲେ ମରଇ ନରସାଇଁ ।
ଏରୂପେ ଅରିଷ୍ଟକାଳକୁ ଯେ ଜାଣିବ
ସବୁ ଛାଡ଼ି ବ୍ରହ୍ମଦେବଙ୍କୁ ସେ ଭାବିବ ।
ବ୍ରହ୍ମ କଥା ଏବେ କହିବା ତୁମ୍ଭଙ୍କୁ
ପୃଚ୍ଛି ତ ଥିଲ ତୁମ୍ଭେ ପୂର୍ବରୁ ଆମ୍ଭଙ୍କୁ ।
ପୂର୍ବେ ମୁଁ ତପ କରି ମହୀକି ବୁଲିଲି
ସୂର୍ଯ୍ୟଙ୍କଠାରୁ ଯଜୁର୍ବେଦକୁ ପଢ଼ିଲି ।
ଏହା ବାହାରେ ସୂର୍ଯ୍ୟ ଦେଲେ ମୋତେ ବର
ଯଜୁର୍ବେଦ ହୃଦରୁ ନୋହିବ ଅନ୍ତର ।
ସୂର୍ଯ୍ୟଙ୍କ ଆଜ୍ଞାରେ ମୋ ଦେହେ ସରସ୍ୱତୀ
ତୁଣ୍ଡ ବାଟେ ଯାଇ ହୃଦରେ କଲେ ସ୍ଥିତି ।
ଭାରତୀ ମୋ ଦେହେ ରହିବା କ୍ଷଣି ରାୟେ
ହୁଅନ୍ତେ ଦାହ ଜଳେ ଲୁଚିଇଲି କାୟେ ।
ସୂର୍ଯ୍ୟ ତାହାକୁ ଦେଖି ବୋଇଲେ ନ ଡର
ଶୀତଳ ହୋଇଯିବ ତୁମ୍ଭର ଶରୀର ।

ସେହିକ୍ଷଣି ମୋ ଦେହ ହୋଇଗଲା ଶାନ୍ତ
ନମିଲି ସୂର୍ଯ୍ୟଙ୍କର ପାଦରେ ଝଟତ ।
ସୂର୍ଯ୍ୟ ବୋଇଲେ ହେ ପ୍ରାନ୍ତରେ ମୋକ୍ଷଲୋକ
ଲଭ ହୋଇବ ତୁମ୍ଭେ ଋଷିଙ୍କ ତିଳକ ।
ସେକ୍ଷଣି ସୂର୍ଯ୍ୟଙ୍କର ପାଶରୁ ମେଲାଣି
ହୋଇକରି ଆସିଲି ଘରକୁ ନ ମଣି ।
ସରସ୍ୱତୀ ମୋହର ହୃଦରେ ତ ଥିଲେ
ରୂପ ଧରି ମୋତେ ସାକ୍ଷାତେ ଦେଖାଦେଲେ ।
ରହସ୍ୟ ତୁଲେ ସରସ୍ୱତୀଙ୍କ ଆଜ୍ଞାରେ
ଯଜୁର୍ବେଦ ଯାକ ରହିଲା ମୋ ହୃଦରେ ।
ମାମୁଁଙ୍କ ଉପକାର ହୃଦରେ ମୁଁ ଧରି
ସେ ବେଦ ପଢ଼ାଇଲି ଶଏ ଶିଷ୍ୟ କରି ।
ଯଜୁର୍ବେଦଙ୍କର ଯେ ପଞ୍ଚଦଶ ଶାଖା
ସୂର୍ଯ୍ୟଙ୍କଠାରୁ ମୁଁ କରିଥିଲି ଶିକ୍ଷା ।
କେ ବ୍ରହ୍ମ ବୋଲି କରି ମନେ ଚିନ୍ତା କଲି
ଏ ସମୟରେ ବିଶ୍ୱାବସୁଙ୍କୁ ଦେଖିଲି ।
ବିଶ୍ୱାବସୁ ସେ ମୋତେ ପଚାରିଲେ ଯାହା
ତା ଶୁଣ କହିବା ଜନକ ନରନାହା ।
ବେଦ୍ୟାବେଦ୍ୟ ମିତ୍ର ବରୁଣ ଜ୍ଞାନଜ୍ଞେୟ
ବିଶ୍ୱ ଅବିଶ୍ୱ ତପାତପ କ୍ଷୟାକ୍ଷୟ ।
ଅବିଦ୍ୟା ବିଦ୍ୟା ଅଜ୍ଞ ବିଜ୍ଞ ଚଳାଚଳ
ସୂର୍ଯ୍ୟାସୂର୍ଯ୍ୟ କିଏ ସେ କହ ଋଷିବାଳ ।
ମୁହିଁ କହିଲି ପୂର୍ବ ପ୍ରକୃତି ଅଟଇ
ପ୍ରାନ୍ତଟିକ ପୁରୁଷ ବୋଲିକରି କହି ।
ବେଦପାଠ ବେଦଅର୍ଥ ଯେ ନ ଜାଣଇ
ଗଧ ପାଦ ବହିଲା ପ୍ରାୟେ ଜାଣ ସେହି ।
ବେଦରେଟି ପ୍ରକୃତି ପୁରୁଷର ଜ୍ଞାନ
ବିଖ୍ୟାତ ହୋଇଅଛି ଗନ୍ଧର୍ବ ରାଜନ ।
କ୍ଷୟ ଛାଡ଼ି ଅକ୍ଷୟରୂପେ ଧ୍ୟାନ କରି
ତେବେ ବ୍ରହ୍ମ ବଶିବେ ନେତ୍ରକୁ ତୁମ୍ଭର ।
ବିଶ୍ୱାବସୁ ବୋଇଲେ ପଞ୍ଚବିଂଶ କିସ ।
ମୋ ଆଗରେ ଋଷି ତା କର ହେ ପ୍ରକାଶ ।
ଜୈଗୀଷବ୍ୟ ଗର୍ଗ ଯେ ନାରଦ ଦେବଳ
ବାର୍ଷଗଣ୍ୟ ଭୃଗୁ ଗଉତମ କପିଳ ।
ପରାଶର ଯେ ଅଷ୍ଟିସେନ ବିଶ୍ୱରୂପ
ଶୁକ ପଞ୍ଚଶିଖ ଯେ ଆସୁରି କାଶ୍ୟପ ।

ଦୈବତ ପିତୃ ରୁଦ୍ର ସନତ କୁମାର
ପୁଲସ୍ତ୍ୟ ଶୁକ ଆଦି ଋଷିଙ୍କ ଶିଖର ।
କହିଛନ୍ତି ମୋତେ ଶୁଣିଛି ପଞ୍ଚବିଂଶ
କଥା ତୁମ୍ଭେ ମୋତେ କହ ଋଷି-ଈଶ ।
ତିନି ଲୋକରେ ଯେତେ ଶାସ୍ତ୍ର ରହିଅଛି
ତୁମ୍ଭଙ୍କୁ ତା ସବୁ ଗୋଚର ହୋଇଅଛି ।
ଏ ସକାଶୁଁ ତୁମ୍ଭଙ୍କୁ କହୁଛି ମୁଁ ଏହା
ପଚାରିଲେ ଦୋଷ ନାହିଁ ହେ ଋଷି ନାହା ।
ଯାଜ୍ଞବଲ୍କ୍ୟ ବୋଇଲେ ତୁମ୍ଭେ ସବୁ ଜାଣି
କହୁଛ ମୋତେ ନ ଜାଣିବା ପରି ବାଣୀ ।
ପଞ୍ଚବିଂଶ ପ୍ରକୃତିକି ସିନା ମୁଁ ଜାଣଇ
ପ୍ରକୃତି ପଞ୍ଚବିଂଶକୁଟି ନ ଜାଣଇ ।
ଷଡ଼ବିଂଶ ଯେ ଚତୁର୍ବିଂଶ ପଞ୍ଚବିଂଶ
ଦୁହିଙ୍କି ଦେଖାଇଟି ହେ ଗନ୍ଧର୍ବଈଶ ।
ଷଡ଼ବିଂଶକୁ ଯେହୁ ଦେଖଇ ନୟନେ
ଆଉ ଆନ ଦେଖିବା ନ ଭାବଇ ମନେ ।
ପଞ୍ଚବିଂଶ ଚତୁର୍ବିଂଶକୁ ପାଇ କରି
ଭାବୁଥାଏ କେହି ନାହିଁ ମୋହରି ପରି ।
ଚତୁର୍ବିଂଶ ପ୍ରକୃତିକ ଷଡ଼ବିଂଶ ବ୍ରହ୍ମ
ପଞ୍ଚବିଂଶ ପୁରୁଷ ଶ୍ରେଷ୍ଠ ତା ମାହାତ୍ମ୍ୟ ।
ପ୍ରକୃତି ଥିବା ସକାଶୁଟି ପୁରୁଷକୁ
ଏକ ନୁହେ ବୋଲି କହିବି ବଚନକୁ ।
ଷଡ଼ବିଂଶ ବ୍ରହ୍ମ ତ ଅଟଇ ତାଙ୍କର
କେହି ସଙ୍ଗ ନୁହେଁ ଗନ୍ଧର୍ବ ମନେ କର ।
ବିଶ୍ୱାବସୁ ବୋଇଲେ ଜାଣ ଧର୍ମପୋଥା
କହିଲ ତଥ୍ୟ ଗଲା ମୋର ହୃଦବ୍ୟଥା ।
ଏରୂପେ ବିଶ୍ୱାବସୁ ପ୍ରଶଂସିଣ ମୋତେ
ସ୍ୱର୍ଗପୁରେ ଗଲେ ଜନକ ମହାମତେ ।
ସାଂଖ୍ୟଧର୍ମ ଯୋଗଧରମ ମୋକ୍ଷଧର୍ମ
ଯେ ଜାଣିଛି ତାହାର ଏ ଉଚିତ କର୍ମ ।
ଜ୍ଞାନରୁଟି ମୋକ୍ଷଧରମ ଜାତ ହୋଏ
ଅଜ୍ଞାନବନ୍ତଲୋକ ସଂସାରକୁ ପାଏ ।
ମୋକ୍ଷଶ୍ରଦ୍ଧା ଯେବେ ହୋଇବ ଲୋକଙ୍କର
ଗୁଣା ଅଧିକକୁ ନ କରିବ ବିସ୍ତର ।
ଯେ ଜ୍ଞାନ ଜାଣିଥିବ ତାହାଠାରୁ ଜ୍ଞାନ
ଉପଦେଶ କରିବ ନିବେଶିଣ ମନ ।

ସ୍ୱରବର୍ଣ୍ଣ ଯାକ ବ୍ରହ୍ମାଙ୍କଠାରୁ ଜାତ
ଏଣୁ ତାଙ୍କ ନାମ ବ୍ରାହ୍ମଣ ବୋଲି ଖ୍ୟାତ ।
ବିପ୍ର ତ ବ୍ରହ୍ମାମୁଖୁଁ ହୋଇଅଛି ଜାତ
ଏଣୁ ବେଦଅଭ୍ୟାସ ତାହାର ଉଚିତ ।
ଜ୍ଞାନହୀନ ହୋଇଥିବାରୁ ଟି ବର୍ଣ୍ଣଯାକ
ଥରକୁଥର ଭୋଗ କରନ୍ତି ନରକ ।
ଏହି ସକାଶରୁ ଜ୍ଞାନକୁ ଅନୁଷ୍ଠାନ
କରିବାର ବଡ଼ ଧରମ ବୋଲି ଘେନ ।
ଏବେ ତୁମ୍ଭେ ହେ ଜ୍ଞାନ ମାର୍ଗକୁ ଆଚର
ଆଉ ମୋତେ ଗୁଡ଼ାଏ ବସି ନ ପଚ୍ଚର ।
ଏରୂପେ ଯାଜ୍ଞବଲ୍‌କ୍ୟ କଥା କର୍ଣ୍ଣେ ଶୁଣି
ମୋକ୍ଷକୁ ଭାବଲେ ମିଥିଳା-ନୃମଣି ।
ଯାଜ୍ଞବାଲ୍‌କ୍ୟ ମୁନି ତ ହେଲେ ଅନ୍ତର୍ଦ୍ଧାନ
ଜନକ ସେହିକ୍ଷଣି ବୁଜିଲେ ନୟନ ।
ମୋକ୍ଷଧର୍ମଯାକ ଭାବନା ହୃଦେ କରି ।
ପୁଅକୁ ନିଜ ରାଜ୍ୟ କଲେ ଦଣ୍ଡଧାରୀ ।
କୋଟି ଗାଈ କୋଟି ସୁବର୍ଣ୍ଣ ଦାନ ଦେଲେ
ଡୋର କଉପୀନକ ମାରିଣ ବସିଲେ ।
ଅଞ୍ଜଳାଖଣ୍ଡେ ମାତ୍ର ନେଇଣ ବେଡ଼ାଇ
ରହିଲେ ସେ ଏକା ଯୋଗକୁ ହୃଦେ ଧ୍ୟାୟି ।
ପ୍ରାକୃତ ଧର୍ମ ଅଧର୍ମକୁ କଲେ ନିନ୍ଦା
ସାଂଖ୍ୟ ଯୋଗଶାସ୍ତ୍ର ଦୁହିଙ୍କି କଲେ ଫନ୍ଦା ।
ଆତ୍ମାକୁ ଏକ କରି ଜାଣି ନରବର
ଆତ୍ମାଠାରେ ମନକୁ ଦେଲେ ନିରନ୍ତର ।
ପ୍ରକୃତି ପୁରୁଷେ ଯେ ଜନ ନ ଜାଣଇ
ଅର୍ଥ କରିବାରେଟି ଜାଣ ସେ ଭ୍ରମଇ ।
ତପ ଯାଗ ବେଦରେ ବ୍ରହ୍ମକୁ ଜୀବନ ।
ନ ଲଭଇ ଯୋଗରେ ଲଭଇ ରାଜନ ।
ଜ୍ଞାନରେଟି ମାନବ ଏ ସଂସାର-ଦୁର୍ଗ
ତରଇ ହେ ଜାଣ ପାଣ୍ଡବ ମହାଭାଗ ।
ଆନ ପୁଣ୍ୟମାନଙ୍କେ ନର୍କ ସ୍ୱର୍ଗ ଦୁଇ
ଭୋଗ ହେଉଥାଏ ପାଣ୍ଡବ-ନରସାଇଁ ।
ଜ୍ଞାନକୁ ଉପାସନା କର ଯୁଧିଷ୍ଠିର
ବାଧି ନ ପାରିବ ତୁମ୍ଭଙ୍କୁ ଏ ସଂସାର ।
ଏହିଠାରେ ଯେ ଯାଜ୍ଞବଲ୍‌କ୍ୟ ଜନକ
ସମ୍ବାଦକୁ ସାରିଲେ ଋଷିଙ୍କ ତିଳକ ।
ପରାଶରନନ୍ଦନ ବେଦବ୍ୟାସ ଋଷି
କୃଷ୍ଣସିଂହ ନରେଶ ଗୀତରେ ଭାଷି ।

— ✻ —

## ପଞ୍ଚଶିଖ ଜନକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଅଇଶ୍ବର୍ଯ୍ୟ ଧନ
ପାଇଲେ ପୂର୍ଣ୍ଣକାମ ହୁଅଇ ତ ଜନ ।
କେଉଁ କଥାକୁ କଲେ ଜରା ମୃତ୍ୟୁ ଦୁଇ
ଅତିକ୍ରମ କରନ୍ତି କହ ତ ବତାଇ ।
ଭୀଷ୍ମ ବୋଇଲେ ଆହେ ଜନକ ରାଜନ
ଦିନେ ପଞ୍ଚଶିଖଙ୍କୁ ରଖି ସନ୍ନିଧାନ ।
ତୁମ୍ଭପରି ତାହାଙ୍କୁ ପଚ୍ଚରନ୍ତେ ଏହା
ସେ ଯାହା କହିଲେ ହେ ଶୁଣ ନରନାହା ।
ଜନ୍ମ ମୃତ୍ୟୁ ଦୁହେଁ କେବେହେଁ ପ୍ରାଣୀଙ୍କର
ଠାରୁ ନ ନିବର୍ତ୍ତେ ହେ ଜନକ ନୃବର ।
କାଳ-ସମୁଦ୍ରରେ ପ୍ରାଣୀଏ ଭାସୁଛନ୍ତି
ଜନ୍ମମୃତ୍ୟୁ ମଗର-ଆହାର ହୁଅନ୍ତି ।
ଭାର୍ଯ୍ୟା ପୁଅ ବାନ୍ଧବ ବାଟସାଥୀ ପରି ।
ଥାଆନ୍ତି ଆଶ୍ରେକରି ଜାଣ ଦଣ୍ଡଧାରୀ ।
ଅନ୍ତଃକାଳରେ କେହି ନୁହନ୍ତି କାହାର
ସେକାଳେ ସାଥୀ ଏକା ପୁଣ୍ୟ ମନେକର ।
ଜନମ ହେଲେ ସୁଖ ମରଣରେ ଦୁଃଖ
ନ କରିବ ହେବ ଯେ ପଣ୍ଡିତଙ୍କ ଶଖ ।
ସ୍ୱର୍ଗ ନରକକୁ କେ ନେଇଛି ଦେଖିନାହିଁ
କରୁଥିବ ଧରମ ଶାସ୍ତ୍ରକୁ ଅନାଇ ।
ପଞ୍ଚଶିଖ-ଜନକ କଥା ହେଲା ଶେଷ
କହଇ କୃଷ୍ଣସିଂହ ନରକୁଳଈଶ ।

— ✻ —

## ସୁଲଭା ଜନକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଗୃହୀ ଧର୍ମେ ଥାଇ
କେ ମୋକ୍ଷ ପାଇଛି ତା କହ ଶୁଣିବଇଁ ।
ଭୀଷ୍ମ ବୋଇଲେ ଆହେ ଧର୍ମଧ୍ୱଜ ନାମ
ବିହିହେଲେ ଜନକ କୁଳେ ନରୋତ୍ତମ ।
ସବୁ ଶାସ୍ତ୍ର ପଢ଼ିଣ ବେଦକୁ ଅନାଇଁ
ପାଳନା କଲେ ପ୍ରଜା ମହାସୁଖୀ ହୋଇ ।
ତାଙ୍କର ସେହି ରୀତି ଦେଖି ସାଧୁନରେ
ବସି ମୁଖେ ପ୍ରଶଂସା କଲେ ନିରନ୍ତରେ ।

ସୁଲଭା ନାମେ ରାଜକନ୍ୟା ଜଣେ ଥିଲେ
ଯୋଗଶାସ୍ତ୍ରେ ପଣ୍ଡିତ କହି ତାଙ୍କୁ ଭଲେ ।
ସେ ସେହି ସମୟେ ସଞ୍ଚାର କଲେ ମହୀ
ଜନକ ନୃପତିଙ୍କ ଦେଖିବାର ପାଇଁ ।
ଯୋଗବଳରେ ରମ୍ଭା ମେନକା ପରାୟେ
ରୂପ ଧରି ଭେଟିଲେ ଆହେ ନରରାୟେ ।
ଧର୍ମଧ୍ୱଜ ଜନକ ସେ ନାରୀଙ୍କି ଦେଖି
ପିଛୁଡ଼ି ନ ପାରିଲେ ରାଜା ଦୁଇ ଆଖି ।
ଏଥୁଅନ୍ତେ ତାଙ୍କୁ ବିଧିରେ ପୂଜାକଲେ
ଅନ୍ନ ଆଦି ଭୋଜନ ଖାଇବାକୁ ଦେଲେ ।
ସେ ଦି'ହେଁ ଯୋଗବଳେ ବନ୍ଧାବନ୍ଧ ହେଲେ
ଶୁଣ ତା କହିବା ଯାହା ସେ କଥା ହେଲେ ।
ଜନକ ପଚାରିଲେ କାହା ଝିଅ ତୁମ୍ଭେ
କେଉଁଠାକୁ ବା ଯିବ ପଚାରୁଛୁଁ ଆମ୍ଭେ ।
ପରାଶରଗୋତ୍ରୀ ଯେ ପଞ୍ଚଶିଖଙ୍କର
ଶିଷ୍ୟ ଅଟଇ ମୁଁ ନରାନା ମତେନକର ।
ସାଂଖ୍ୟ ଯୋଗ ପାଳନା ତିନଙ୍କି ଜାଣିଛୁ
ମୋତେ ପଚାରିବାର କଥା ନାହିଁ କିଛୁ ।
ପଞ୍ଚଶିଖଙ୍କର ବୋଲରେ ମୁ ଅବନୀ
ପାଳୁଅଛୁ ଧରମ କଥାଯାକ ଘେନ ।
ବୈରାଗ୍ୟ ଉପୁଜିଲେ ଲଭେ ମୋକ୍ଷସ୍ଥାନ
ମୋ କହିବାରୁ ଏହା ସୁଲଭ ଟେଗା ଘେନ ।
ଜ୍ଞାନରେ ଯେଉଁ ଲୋକ ଯତନ କରଇ
ବ୍ରହ୍ମ ପାଇବାରେ ସନ୍ଦେହ ତା'ର ନାହିଁ ।
ଧର୍ମାଧର୍ମରେ ଲୋକ ଜନମ ମରଣ
ଲଭଣ ସୁଖ ଦୁଃଖ ଭୁଞ୍ଜାଇଟି ଜାଣ ।
ଗୋଟିଏ ବାହୁଟିଏ କାଟି ପକାଇବ
ଗୋଟିଏ ବାହୁଟିକେ ଚନ୍ଦନ ବୋଳିବ ।
ସେ ଦୁହିଁଙ୍କଠାରେ ସମାନ ବୁଦ୍ଧି ମୋର
ଜାଣିଥାଅ ଆଗୋ କାମିନୀ ନାରୀବର ।
ତ୍ରିଦଣ୍ଡୀମାନଙ୍କ ତ୍ରିକ ମୋ ସନ୍ନ୍ୟାସ
ଅଧିକ ଅଟଇଟି ଘେନ ହୃଦ-ଦେଶ ।
ଜ୍ଞାନନିଷ୍ଠା କରମ ନିଷ୍ଠା ତ୍ୟାଗନିଷ୍ଠା
ମୋକ୍ଷରେ ଏ ତିନହେଁ ପ୍ରଧାନ ପ୍ରତିଷ୍ଠା ।
ତ୍ରିଦଣ୍ଡ ଧଇଲେ କି ମୋକ୍ଷ ଲୋକ ହୋଏ
ଛତ୍ର ଧଇଲେ କିବା ନରକକୁ ଯାଏ ।

ଏହା ମନେକର କହିବା ନରବର
ସବୁଠାରୁ ହୃଦୟ ଅଟଇଟି ସାର ।
ଜ୍ଞାନସ୍ନାନ ହୋଇ ମାଇଲେ କଉପୁମା
ଉପସ୍ଥଦେଖା ବୋଲି ତାହାକୁଟି ଘେନ ।
ତୁମ୍ଭେ ତ ସୁକୁମାରୀ ସୁନ୍ଦରୀ ହୋଇଛ
କିରୂପେ କହ ଯୋଗବ୍ରତ ଆଚରିଛ ।
ମୋ ହୃଦରେ କିପାଇଁ କରିଅଛ ଘର
ଏହା ଯେ ମୋତେ କିଛୁ ନୋହୁଛୁ ଗୋଚର ।
ତୁମ୍ଭ ଆମ୍ଭ ଦୁହିଙ୍କ ସମ୍ଭୋଗ ହୋଇଲେ
ବର୍ଣ୍ଣଶଙ୍କରଟି ହୋଇବ ଏଥୁଭଲେ ।
ମୁହିଁ ତ ରହିଅଛୁ ଗୃହସ୍ଥ-ଧର୍ମରେ
ତୁମ୍ଭ ଯୋଗଆଶ୍ରେ କରିଛ ନିରନ୍ତରେ ।
ଏ ଦୁଇକଥାଙ୍କର ବହୁତ ଅନ୍ତର
ନୁହଇ ମୁହିଁ ପତିଯୋଗ୍ୟକୁ ପାତର ।
ଯୋଗିନୀ ହୋଇ ତୁମ୍ଭେ ଆସିଛ ମୋଠାକୁ
କହୁଛୁ ଏହା ଜାଣି ତୁମ୍ଭ ପ୍ରକାରକୁ ।
ନୃପତି ଦ୍ୱିଜ ପତିବ୍ରତା ସ୍ତିରୀଠାକୁ
ମିଥ୍ୟା କହି ଗଲେଟି ଲଭେ ପାତକକୁ ।
ତୁମ୍ଭର କୁଳ ଗୋତ୍ର ନାମ ମତେ କହି
ଦିଅ ମୋର ହୃଦୟ-ସନ୍ଦେହ ଛଡ଼ାଇ ।
ଏହା ଶୁଣି ସୁଲଭା ଯୋଗିନୀ ହସିଲେ
କହିବାକୁ ଶୁଣ ନୃପ ବୋଲିଣ ଭାଷିଲେ ।
ତୁମ୍ଭେ ଆମ୍ଭେ ଶୁକ୍ର ଶୋଣିତ ସଂଯୋଗରେ
ଜନମ ହୋଇଥାଇଁ ଅବନୀ ଭାଗରେ ।
ରଜକୁ ଘେନ ବୀର୍ଯ୍ୟ ରହେ ଗର୍ଭେ ଯେବେ
କଲଲ ନାମ ତାର ବୋଲିଏଟି ତେବେ ।
କଲଲ ଉତ୍ତାରୁ ସେ ବୁଦ୍‌ବୁଦ୍ ହୋଏ ।
ତଦଅନ୍ତେ ପେଶୀ ବୋଲନ୍ତି ତାକୁ ରାୟେ ।
ପେଶୀରୁ ଅଙ୍ଗମାନ ହୁଅନ୍ତି ସମ୍ଭୂତ
ଅଙ୍ଗରୁ ନଖ ରୋମ ହୁଅଇଟି ଜାତ ।
ନବମାସ ସମ୍ପୂର୍ଣ୍ଣେ ଜନମ ହୁଅଇ
ସ୍ତିରୀ ବା ପୁରୁଷରୁ ଜଣେ ସେ ବୋଲାଇ ।
ଜନମ ଉତ୍ତାରୁ ସେ ବୋଲାଏ କୁମାର
ଯୌବନ ଅନ୍ତେ ପୁଣି ବୋଲାଏ ସ୍ଥବିର ।
ଏହିରୂପେ ସବୁ ପ୍ରାଣୀଏ ଜନ୍ମ ହୋଇ
ଭେଟି ଯାଉଅଛନ୍ତି ପ୍ରେତପୁରସାଇଁ ।

ଦେହରେ କାହାରଟି ନାହିଁ ଅଧିକାର
ବସ୍ତୁରେ ଅଟେ ସେ ମୃତ୍ୟୁ ଦେବତାର ।
ଆପଣା ପରରେ ସମତା ଯେବେ ଅଛୁ
ମୋ ଜାତି ପୁଚ୍ଛିବାରୁ କେଉଁ କାର୍ଯ୍ୟ ଅଛୁ ।
ଶତ୍ରୁ ମିତ୍ର ଜୟରେ ଯେଉଁ ନୃପ ମନ
ଅଛୁ ସେ ମୁକ୍ତ ହେବ କେହ୍ନେଟି ରାଜନ ।
ପ୍ରିୟ ଅପ୍ରିୟରେ ସମାନ ବୁଦ୍ଧି ଯାର
ନାହିଁ, ସେ ତରିବଟି କେହ୍ନେ ଏ ସଂସାର ।
ଛତ୍ରପତି ହୋଇ ମୋକ୍ଷରେ ଅଭିମାନୀ
ହେବା ମୁଁ ଆଶ୍ଚର୍ଯ୍ୟ ଅଛୁ ମନେ ଘେନ ।
ଏହା ବାହାରେ ନବକାମିନୀ ସୁରତ
ଇଚ୍ଛାରେ ଜଡ଼ିଅଛୁ ତିନ ତୁମ୍ଭ ଚିତ୍ତ ।
ଧ୍ୱଜଠାରୁ ଶୃଙ୍ଗାଳପାଏ ଦେବା ଘେନା
କରୁଅଛୁ ନତ ହୋଇଣ ତନମନା ।
ଶଙ୍କିତ ହୋଇ ରାଜ ଦିବସ ହରୁଛ
ମୁକତ ହେବ ଯାହା ଭାବୁଛ ଏ ମିଛ ।
କ୍ଷତ୍ରିୟେ ପ୍ରଧାନ ପ୍ରଧାନ ନାମେ ରାଜା
ତାହାଙ୍କ ଭରସାର ଅଟେ ମୁଁ ଆତ୍ମଜା ।
ସୁଲଭା ନାମ ମୋର ଜାଣ ନରବର
ମୋକ୍ଷଧରମ ପରାୟଣ ଚିତ୍ତ ମୋର ।
ଦ୍ରୋଣ ଶତଶୃଙ୍ଗ ପର୍ବତେ ମୁଁ ଜନ୍ମିଛି
ଏଥିରେ ସନ୍ଦେହ ନ କର ନୃପବର୍ଯ୍ୟ ।
ତୁମ୍ଭ ମୋକ୍ଷଧର୍ମ ଜାଣିବାପାଇଁ ମୁହିଁ
ତୁମ୍ଭଠାକୁ ଜାଣ ଆସିଅଛୁ ଧାଇଁ ।
ତୁମ୍ଭର ଦେହେ ଏ ରାତିକ ମୁଁ ରହିବି
ରାତ୍ରି ଶେଷେ ଯହିଁ ମୋ ମନ ହେବ ଯିବି ।
ଆହେ ଯୁଧିଷ୍ଠିର ସେ ସୁଲଭ ବଚନେ
ଜନକ ନରପତି ରହିଲେ ମଉନେ ।
ତାହାଙ୍କଠାରୁ ମୋକ୍ଷଧର୍ମ ଶିକ୍ଷା କରି
ବିଷୟରୁ ନିବୃତ୍ତ ହେଲେ ଦଣ୍ଡଧାରୀ ।
ସୁଲଭ-ଜନକ-ସମ୍ବାଦ ହେଲା ଶେଷ
କୃଷ୍ଣସିଂହ ନୃପ ସୁମରେ ପୀତବାସ ।

—❋—

## ଶୁକ ଚରିତ

ଯୁଧିଷ୍ଠିର ବୋଇଲେ ଏବେ ଶୁକଦେବ
କି ରୂପରେ ପାଇଲେ କରି ଜ୍ଞାନଭାବ ।
ତାହାଙ୍କୁ ଗୁଡ଼ ବ୍ରହ୍ମଦେହରେ ମିଶିଲେ
ଏହା ମୋତେ କହିବା ହେଉ ଏବେ ଭଲେ
ଭୀଷ୍ମ ବୋଇଲେ ହେ ଶୁକଙ୍କୁ ବେଦବ୍ୟାସ
ପଢ଼ାଇଲେ ବେଦକୁ ବସାଇଣ ପାଶ ।
ଏ ବାହାରେ କହିଲେ ଜିତେନ୍ଦ୍ରିୟ ହୋଇ
କ୍ଷୁଧା ପିପାସାକୁ ଅଙ୍ଗଦେଶରେ ସହି ।
ଧର୍ମକୁ ଉପାସନା କରି ତିନ ସୁତ
ହୋଇଯିବ ତୁମ୍ଭେ ଏ ସଂସାରୁ ମୁକତ ।
ବିଧିମନ୍ତ କରିଣ ସତ୍ୟ ଅରଜିବ
ଅନସୂୟା ଅହିଂସା ଦମ କ୍ରୋଧଭାବ ।
ପାଳନା କର ପୁତ୍ର ମୋର ବୋଲକରି
ଇଚ୍ଛା ଥିଲେ ସଂସାର-ଜଳଧିରୁ ପାରି ।
ଏହି ଦେହଟି ଫେନ ପରାୟେ ଅଟଇ
ଏହାକୁ ସ୍ଥିର ବୋଲି ଭାବ କାହିଁପାଇଁ ।
ଦିନକୁ ଦିନ ଦେଖ ଆୟୁ ହୋଏ କ୍ଷୀଣ
ନ ବୋଲ ଚିର ବୋଲି ଏ ମୋର ଜୀବନ ।
ଧର୍ମମାର୍ଗ ଯେଉଁମାନଙ୍କ ଉପାସନା
ତାହାଙ୍କର ଆଶ୍ରାରେ ହୁଅ ତନମନା ।
ଉତ୍ପଥଗାମୀ ତ ହୋଇଛୁ ତୁମ୍ଭ ଚିତ୍ତ
ତାହାକୁ ବସି ସୁତ କର ହେ ଆୟତ୍ତ ।
ଧୈର୍ଯ୍ୟ-ନାବରେ କାମ-କ୍ରୋଧ-ମୃତ୍ୟୁ-ବାରି
ହୁଅ ହେ ଶୁକ ପୁତ୍ର ବେଗେ ଏଥୁଁ ପାରି ।
ମୃତ୍ୟୁ ଘେନ ପ୍ରାଣୀ ତ ହେଉଛନ୍ତି ହତ
ତହିଁକି ଜଗିବାର ଅଟଇ ଉଚିତ ।
ବାଘ ମେଣ୍ଢା ନେଲା ପରାୟେ ମୃତ୍ୟୁଦେବ
ବେକ ମୋଡ଼ି ଗ୍ରାସ କରଇ ଆଗ ଜୀବ ।
ଚଉରାଶି ଯୋନିକି ଭ୍ରମିଲା ଉତ୍ତାରେ
ମନୁଷ୍ୟ ଜନ୍ମ ପାଏ ଜୀବ ଏ ସଂସାରେ ।
ମନୁଷ୍ୟରେ ତୁମ୍ଭେ ତ ବ୍ରାହ୍ମଣ ହୋଇଛ
ମୁକତିକି ଇଚ୍ଛା ମୋହର ଶୁକବତ୍ସ ।
ବ୍ରାହ୍ମଣ ଦେହେ ତପ ସହ୍ୟ ତ ଅଟଇ
ତପ ନ କଲେଟି ସେ ନରକେ ପଡ଼ଇ ।
ଏ ଜୀବନ ତ ନିତ୍ୟ ନୁହଇ କାହାର
ପରଲୋକ ଉଚିତ କଥାକୁ ଆଚର ।
ଯେଉଁ ଧନ ପାଇଲେ ତିନଲୋକ ଭୂତ-
ନିଚୟ ଜନ୍ମିବ ତା ଅର୍ଜ ବଳି ପ୍ରୀତି ।

ଶୁଭାଶୁଭ କରମ ବିନା ମଲେ ଆନ
ସଙ୍ଗତ ନୁହଇଟି ଜାଣ ହେ ନନ୍ଦନ ।
ଅଷ୍ଟରତ୍ନ ମଣ୍ଡିତ ପୁର କରିଥିଲେ
ନ ଯାଏଟି ସେ ଜାଣ ସଙ୍ଗତରେ ମଲେ ।
ଉତ୍ତମ କର୍ମ ଯେବେ କରିଥାଏ ନର
ଭୋଗକରେ ସେ ରତି ଅପସରାଙ୍କର ।
ପରଜାପତି ବୃହସ୍ପତି ସୁରପତି
ସମ୍ପତ୍ତି ଜାଣ ପୁଣ୍ୟବଳରେ ଭୁଞ୍ଜନ୍ତି ।
ଦିନକୁଦିନ ଗତି ହେଉଅଛୁ ପ୍ରାଣ
ଆହେ ବାବୁ କର ଧରମ ଆଚରଣ ।
ଏ ସଂସାର-ରଜ୍ଜୁ ସୁକୃତ-କତୁରୀରେ
କତୁରା ହୁଅଇଟି ନୁହଇ ଆନରେ ।
ପିତାମହଙ୍କର ତ ଶୁଣିଛ ମରଣ
ସେହିରୂପରେ ତୁମ୍ଭେ ହୋଇବଟି ଜାଣ ।
ମୋ କହିବାରୁ ସବୁକଥା ଛାଡଦେଇ
ଆତ୍ମା ଭାବରେ ଅତି ସାବଧାନ ହୋଇ ।
କାଲି ଯାହା କରିବା ସେ କଥାଟି ଆଜ
କରୁଥିବ ମନରୁ ଦୁଃଖକୁ ବରଜ ।
ମୃତ୍ୟୁ କେଉଁ ଦିନ ନେବ ଏହି ଜୀବନ
ଏହା ଜାଣିବା ପାଇଁ ନାହିଁ କେହି ଜନ ।
ସନ୍ତାନ ଭାର୍ଯ୍ୟା ମିତ୍ର ପାଇଲେ ମରଣ
ପୋଡ଼ି ଦେଇଣ କରୁଥାନ୍ତିଟି କାରୁଣ୍ୟ ।
କାଳରେ ସମସ୍ତେ ପୀଡିତ ହୋଇଛନ୍ତି
ଜୀଇଥିବା ବୋଲ ବିସ୍ମର କରୁଥାନ୍ତି ।
ତୁମ୍ଭେ ମୋ ବୋଲରେ ଜୀଇବା ଆଶା ଛାଡ଼
ଧର୍ମକୁ ଆଚର, ସେ ଅଟେ ସବୁ ବଡ଼ ।
ଧରମ କଲା ଲୋକ ପଣ୍ଡିତ ଅଟଇ
ଅଧରମୀକି ଅପଣ୍ଡିତ ବୋଲି କହି ।
ସ୍ୱର୍ଗର ସୋପାନଟି ମନୁଷ୍ୟ-ଜନମ
ପୁଣ୍ୟ କଲେ ବାବୁ ହୋଇବ ପୂର୍ଣ୍ଣକାମ ।
ଧନ ଛାଡି ଯେ ପୁଣ୍ୟକଥା ଆଚରଇ
ସୁରପତି ସମୀପେ ଜାଣ ସେ ବସଇ ।
ବିପତ୍ତିରେ ତ ପୁଣ୍ୟକଥା ସବୁଲୋକ
କରୁଥାନ୍ତି ଭୋଗ ହେବାକୁ ସୁଖଯାକ ।
ବିପତ୍ତି ସମ୍ପତ୍ତିରୁ ଛିନ୍ନ ହୋଇ ନରେ
କେତେ ପାପାତ୍ମାର କରନ୍ତି ନିରନ୍ତରେ ।

ସେମାନଙ୍କୁ କାଳରେ କାଳଦଣ୍ଡପାଣି
ବାନ୍ଧି ନେଇକରି ଭୁଞ୍ଜାନ୍ତି ନର୍କଶ୍ରେଣୀ ।
କେହି କାହାର ଭବେ ନୁହଇ କୁମର
ସୁକୃତ ଏକା ମୋର ବୋଲି ମନେ କର ।
ଧନ ଥିବାଯାକ ଅମିତ୍ର ମିତ୍ର ହୋଏ
ଧନହୀନ ହୋଇଲେ ମିତ୍ର ଛାଡ଼ି ଯାଏ ।
କୁଟୁମ୍ବ ପୋଷି ବାବୁ ପାପକର୍ମ ଲୋକ
ଆଚରି ପ୍ରାନ୍ତେ ଭୁଞ୍ଜୁ ଅଛନ୍ତି ନରକ ।
କରମ ଭୂମି ବୋଲି ଏ ମହୀକି ଜାଣି
ଆଚରଣ କରିଣ ସଦା ପୁଣ୍ୟଶ୍ରେଣୀ ।
କାଳ ଯେ ପ୍ରାଣୀଙ୍କୁ ଦେଇଛୁ ଗ୍ରାସ କରି
କି ରାତ୍ର ଦିବସରେ କିଛି ନ ବିସ୍ମରି ।
ଧନ ଥାଇ ନ ଦେବ ବଳ ଥାଇ ଶତ୍ରୁ
ନ ମାଇଲେ ଜାଣେ ସେ ଅଛୁ ଲଜ୍ଜା ହେତୁ ।
ସେହିରୂପରେ ଶାସ୍ତ୍ର ଜାଣିକରି ନର
ଧରମ ନ କଲେଟି ବ୍ୟର୍ଥ ତା ଶରୀର ।
ଏରୂପେ ଶୁକଦେବ ବ୍ୟାସ ମୁଖୁଁ ଶୁଣି
ବ୍ୟାସଙ୍କୁ ଛାଡ଼ି ଶୁକ ଗଲେ ସେହିକ୍ଷଣି ।
ଯୁଧିଷ୍ଠିର ବୋଇଲେ ବ୍ୟାସ ଶୁକ କଥା
ଆଉ ଥରେ କହ ହେ ଭୀଷ୍ମ ମହାରଥା ।
ଭୀଷ୍ମ ବୋଇଲେ ଆହେ ଅନର୍ଥର ମନ
ଯୁକତ ହେଲେ ପାପ ଆଚରଇ ଜନ ।
ଧର୍ମ-ବିହୀନେ ଯେଉଁ ନରଟି ହୁଅଇ
ଅଗାଉଧାନ ପରି ଅଟେ ଜାଣ ସେହି ।
ଆର ଜନ୍ମ କର୍ମ ଏ ଜନ୍ମେ ଭୋଗ କରେ
ଛୁଛା ସେ ନିନ୍ଦା ଦେଇଥାଇ ଦଇବରେ ।
ପୁଷ୍ପ ଫଳ କାଳକୁ ଅତିକ୍ରମ କରି
ନ ପାରିବା ପରି ସୁକୃତ ଦଣ୍ଡଧାରୀ ।
ଯେଉଁ ବୟସରେ ଯେ କରିଥାଏ ଯାହା
ସେ ବୟସେ ଭୋଗ ହୁଅଇ ଆସି ତାହା ।
ତପ କରି ଯେ ପାତକକୁ ନାଶ କରେ
ମନୋରଥ ଭୋଗ ସେ କରେ ଇହ ପରେ ।
ପକ୍ଷୀ-ଗୋଡ଼ ଯେସନ୍ତେ ଆକାଶେ ନ ଦିଶଇ
ସେ ରୂପରେ ସୁକୃତ ଜାଣଟି ନୁହଇ ।
କି କାର୍ଯ୍ୟ ଅଛୁ ଆଉ ଏତେ କହିବାକୁ
ବଡ ହୋଇ କଥା ତ ନାହିଁ ଧରମକୁ ।

ଯୁଧିଷ୍ଠି ବୋଇଲେ ଶୁକଙ୍କ ମାତା କିଏ
କାରୂପେ ସେ ଜନ୍ମିଲେ କହ ରଥୀରାୟେ ।
ପିଲା ହୋଇଣ ସୂକ୍ଷ୍ମ ଜ୍ଞାନରେ ବୁଦ୍ଧି ଟି
କାରୂପେ କଲେ ଶୁକ ବ୍ୟାସଙ୍କ ବେଟାଟି ।
ଏହା ଶୁଣିବାକୁ ହେଉଛି ମୋର ମନ
ବସ୍ତାର ତାହା କହ ମୋର ସନ୍ନିଧାନ ।
ଭୀଷ୍ମ ବୋଇଲେ ଆହେ ଋଷିଙ୍କ ମତରେ
ବେଦ ଜାଣେ ଯେ ପାପ ନାହିଁ ତ ତାହାରେ ।
ସାନ ହେଲେ ବ ବଡ଼ ବୋଲି ତାକୁ କହି ।
ବୟସ ଅଧିକରୁ କିଛି କାର୍ଯ୍ୟ ନାହିଁ ।
ଇନ୍ଦ୍ରିୟସଂଯମରେ ତପସିଦ୍ଧ ହୋଏ
ଆନ ପ୍ରକାରରେ ଟି ନୁହଇ ସେ ରାୟେ ।
ଇନ୍ଦ୍ରିୟଙ୍କ ବଶ ହୁଅଇ ଯେବେ ନର
ତେବେ ନରକରେ କରଇ ଯାଇ ଘର ।
ଇନ୍ଦ୍ରିୟେ ସଂଯତ କରି ଯେ ଯୋଗ ସାଧେ
ବ୍ରହ୍ମଙ୍କ ଦେହେ ଲୀନ ହୁଅଇ ସେ ସଧେ ।
ସହସ୍ର ଅଶ୍ୱମେଧ ସତ୍ର ବାଜପେୟ
ଯୋଗକୁ ସରି ନୋହେ ଧର୍ମଙ୍କ ତନୟ ।
ମେରୁଶୃଙ୍ଗଙ୍କର ଯେ କର୍ଣ୍ଣିକାର ବନେ
ବସି ଉମା ବିହାର ରଚିଲେ ସୁମନେ ।
ସେହି ମେରୁଶୃଙ୍ଗରେ ପୂର୍ବେ ପୁତ୍ରପାଇଁ
ତପସ୍ୟା କଲେ ବ୍ୟାସ ଶରୀର ଶୁଖାଇ ।
ପବନ ପିଇ ଶତ ବରଷ ରହିଲେ
ଶିବ ଉମା ଦୁହିଁଙ୍କ ପାଦରେ ପୂଜିଲେ ।
ବ୍ରହ୍ମର୍ଷି ରାଜର୍ଷି ସାଧ ଦିବାକର
ଲୋକପାଳ ବସୁ ଯେ ରୁଦ୍ର ନିଶାକର ।
ଦେବ ଗନ୍ଧର୍ବ ପୁଣି ଆଦିତ୍ୟ ମରୁତ
ବିଶ୍ୱାବସୁ ବାସବ ନାରଦ ପର୍ବତ ।
ଅପସରା ସିଦ୍ଧ ଯେ ଅଶ୍ୱିନୀକୁମାର
ଆସିଲେ ତପ ଦେଖି ବେଦବ୍ୟାସଙ୍କର ।
ବେଦବ୍ୟାସ ଗୋସାଇଁ ତପସ୍ୟାବଳରେ
ଆହାର ଦୂର କରି ରହିଲେ ପୃଷ୍ଟରେ ।
ମସ୍ତକ ଜଟାଯାକ ଦିଶିଲା ପିଙ୍ଗଳ
କରିଲା ଅଗ୍ନି ସୂର୍ଯ୍ୟ-ତେଜକୁ ଦୁର୍ବଳ ।
ଏ କଥା ମୋତେ ପୂର୍ବେ ମାର୍କଣ୍ଡେୟ ଋଷି
କହିଲେ ଶୁଣିଛି ମୁଁ ତାଙ୍କ ପାଶେ ବସି ।

ଏବେ ଯୁଧିଷ୍ଠିର ଜଟାକୁ ଦିଅ ଦୃଷ୍ଟି
ବ୍ୟାସଙ୍କର ଅଗ୍ନି ପରାୟେଟି ଦିଶଇ ।
ଶିବ ବ୍ୟାସଙ୍କର ତପରେ ତୋଷୀ ହେଲେ
ହୋଇବ ଦିବ୍ୟପୁତ୍ର ବୋଲି ବର ଦେଲେ ।
ଶିବଙ୍କଠାରୁ ବର ପାଇ ବେଦବ୍ୟାସ
ପୁତ୍ରାର୍ଥେ ଅରଣୀ ମନ୍ଥିଲେ ବହି ତୋଷ ।
ଏହି ସମୟରେ ଘୃତାଚୀ ଅପସରା
ସେହିଠାକୁ ଆସିଲେ ହୋଇ ବେଗେ ତ୍ୱରା ।
ଘୃତାଚୀକି ଦେଖିଣ ବ୍ୟାସ ମହାଋଷି
ମଦନେ ଧୀର ହୋଇ ନ ପାରିଲେ ଭାଷି ।
ଘୃତାଚୀ ବ୍ୟାସଙ୍କର ମନକୁ ଜାଣିଲେ
ଶୁକୀଟିଏ ହୋଇ ବ୍ୟାସଙ୍କ ପାଶେ ଗଲେ ।
ସେହିକାଳେ ବ୍ୟାସଙ୍କ ରେତ ବଳେ ଗଳି
ଅରଣୀରେ ପଡ଼ିଲା ଆହେ ମହାବଳି ।
ତହିଁରୁ ପୁତ୍ରଟିଏ ହୋଇଲା ଜନମ
ଦେଖି ତୋଷ ହୋଇଲେ ଋଷିଙ୍କ ଉତ୍ତମ ।
ଶୁକୀ ଦେଖିଣ ଶୁକ୍ର ପଡ଼ିବାରୁ ଗଳି
ଶୁକ ନାମକୁ ଦେଲେ ବ୍ୟାସ ତପଶାଳୀ ।
ଗଙ୍ଗା ମୂର୍ତ୍ତିମନ୍ତ ହୋଇଣ ଆସିଲେ
ଶୁକଙ୍କୁ କୋଳେ ଧରି ସ୍ନାନ କରାଇଲେ ।
ଆକାଶଦେଶରୁଁ ଦଣ୍ଡ କୃଷ୍ଣ ଜିନଟାଏ
ପଡ଼ିଲା ସେ ଶୁକଙ୍କଠାଇଁ ନରରାୟେ ।
ବିଶ୍ୱାବସୁ ପ୍ରଭୃତି ଗନ୍ଧର୍ବେ ଆସିଲେ
ଗୀତ ବାଦ୍ୟ କରି ଶୁକଙ୍କୁ ସନ୍ତୋଷିଲେ ।
ଇନ୍ଦ୍ରାଦି ଲୋକପାଳେ ରହି ଆକାଶରେ
ଶୁକଙ୍କୁ ସ୍ତୁତି କଲେ ଅତ୍ୟନ୍ତ ତୋଷରେ ।
ପବନ ଦିବ୍ୟ ପୁଷ୍ପ ବର୍ଷି ଶୁକ ମନ
ମୋହି ନେଲେ ଜାଣ ହେ ପାଣ୍ଡବ-ରାଜନ ।
ସ୍ଥାବର ଜଙ୍ଗମରେ ଯେତେକଟି ଥିଲେ
ଶୁକଙ୍କ ଜନ୍ମରେ ସମସ୍ତେ ହୃଷ୍ଟ ହେଲେ ।
ଉମାଙ୍କ ତୁଲେ ଶିବ ଶୁକଙ୍କର ବ୍ରତ
ବିଧିମତେ କଲେ ଜାଣ ହେ ଧର୍ମସୁତ ।
ଇନ୍ଦ୍ରପ୍ରୀତ ହୋଇଣ କମଣ୍ଡଳୁଟାଏ
ଶୁକକୁ ଦେଲେ ତହିଁ ସନ୍ନ୍ୟାସ-ଉପାୟେ ।
ଯେତେକ ମଙ୍ଗଳାଦି ପକ୍ଷୀଏ ଅଛନ୍ତି
ଶୁକଙ୍କୁ ପ୍ରଦକ୍ଷିଣ କଲେ ନରପତି ।

ଅରଣୀରୁ ଜାତ ହେବାରୁ ଆରଣୀସୁ
ବୋଲାଇଲେ ଯେ ଶୁକ ବ୍ୟାସଙ୍କ ତନସୁ ।
ସକଳ ବେଦଯାକ ହୋଇ ମୂର୍ତ୍ତିମନ୍ତ
ଶୁକଙ୍କର ଆନନ୍ଦ କରାଇଲେ ଚଉ ।
ଗୁରୁ ଯେବେ ନୁହଇ ବିଦ୍ୟା ଶିଖି ନୋହେ
ଏହା ହୃଦେ ବିଚାରି ଶୁକ ଋଷିରାଯେ ।
ଦେବ-ଗୁରୁ ବୃହସ୍ପତିଙ୍କି ଜଣାଇଲେ
ତାହାଙ୍କଠାରୁ ସବୁ ବିଦ୍ୟା ଶିକ୍ଷା କଲେ ।
ବିଦ୍ୟା ଶିକ୍ଷାନ୍ତେ ବୃହସ୍ପତିଙ୍କି ଦକ୍ଷିଣା
ଦେଲେ ଯେ ବ୍ୟାସସୁତ ଶୁକ ଅକଳଣା ।
ଜ୍ଞାନରେ ତ ଅଧିକ ହେଲେ ଶୁକଋଷି
ଦେବ ଯକ୍ଷ ଗନ୍ଧର୍ବେ ପୂଜାକଲେ ଆସି ।
ମୋକ୍ଷଧର୍ମ-ଆଶେ କଲେ ତା ଶୁକଦେବ
ଏଣୁ ଛାଡ଼ିଦେଲେ ସେ ନିଆଶ୍ରମଭାବ ।
କେତେ କାଳ ଶେଷରେ ଶୁକ ମହଋଷି
ବାପାଙ୍କ ପାଶେ ଯାଇ ଭାଷିଲେକ ବସି ।
ମୋକ୍ଷ ଇଚ୍ଛା ମୋହର ହେଉଅଛି ପିତା
ଯୋଗଶାସ୍ତ୍ର ବତାଇ କାଟ ହୃଦ-ଚିନ୍ତା ।
ବ୍ୟାସ ବୋଇଲେ ହେ ପସ୍ଥୁରୁଅଛ ଯେବେ
ମୋକ୍ଷଶାସ୍ତ୍ର ମୋଠାରୁ ଶୁଣ ବସି ତେବେ ।
ଏହାକୁ କହି ବ୍ୟାସ ସାଂଖ୍ୟ ମୋକ୍ଷଶାସ୍ତ୍ର
ଶିଖାଇଲେ ଶୁକଙ୍କୁ ହେବାକୁ ପବିତ୍ର ।
ମୋକ୍ଷଶାସ୍ତ୍ରେ ପଣ୍ଡିତ ହୋନ୍ତେ ଶୁକଋଷି
କହିଲେ ବେଦବ୍ୟାସ ତାଙ୍କୁ ହସି ହସି ।
ଜନକ ରାଜା ବଡ଼ ଧାର୍ମିକ ଅଟନ୍ତି
ତାଙ୍କଠାକୁ ଯାଇ ବଢ଼ାଅ ତାଙ୍କ ପ୍ରୀତି ।
ନ ଜାଣିଥିବ ଯେବେ ଯୋଗଶାସ୍ତ୍ର ତୁମ୍ଭେ
ତାହା ତୁମ୍ଭଙ୍କୁ ସେ କହିବେ ଜାଣୁ ଆମ୍ଭେ ।
ଏ ରୂପେ ବେଦବ୍ୟାସ ବାକ୍ୟ ଶିରେ ଘେନି
ବାହାରିଲେ ସେଠାକୁ ଶୁକ ହୋଇ ତୁନି ।
ଯିବାକାଳରେ ବ୍ୟାସ କହିଲେ ପୁତ୍ରଙ୍କୁ
ନ ଯିବ ଆକାଶେ ମାନି ମୋ ବଚନକୁ ।
କପଟ, ସୁଖ ଦୁଇ କରିଥିବ ଦୂର
ମହାଜ୍ଞାନୀ ଅଟନ୍ତି ଜନକ ନୃବର ।
ତାହାଙ୍କଠାରେ ଅହଂବୁଦ୍ଧି ଟି ଛାଡ଼ିବ
ଆମ୍ଭ ଜଜମାନଟି ଜନକ ନୃଦେବ ।

ଜନକ ଯା ବୋଲିବେ କରୁଥିବ ତାହା
ହୃଦୟ- ପଦ୍ମ ମଧ୍ୟେ ଧରିଣ ଉତ୍ସାହା ।
ଶୁକ ବୋଇଲେ ମୁହିଁ ତୁମ୍ଭର ବଚନ
କେବେହେଁ ଲଙ୍ଘି ନ ପାରଇ ପିତା ଜାଣ ।
ଏତେ ବୋଲି ବାପାଙ୍କୁ ପାଲଟି ରହିଲେ
ପାଦ ଦୁଇକି ଧରି ନମସ୍କାର କଲେ ।
ନଦୀ ପରବତ ଭୂଇଁରେ ବନ ଦୁର୍ଗ
ଲଙ୍ଘିଲେ ପଦବ୍ରଜେ ଶୁକ ମହାଭାଗ ।
ଭରତ-ଖଣ୍ଡେ ଯାଇ ପ୍ରବେଶ ହୋଇଲେ
ନାନା ଜାତି ଦେଶ ସେ ପୂରିଛି ଦେଖିଲେ ।
ସେମାନେ ଅତିକ୍ରମି ଆର୍ଯ୍ୟାବର୍ତ୍ତଦେଶେ
ପରବେଶ ହୋଇଲେ ଶୁକମୁନି ତୋଷେ ।
ନାନା ରତ୍ନମଣ୍ଡିଳ ପୁରମାନ ଦେଖି
ବାପାଙ୍କ ବୋଲ ମାନି ଦେଲେ ବୁଜି ଆଖି ।
ବିଦେହ ପୁରେ ଯାଇ ହୋଇଲେ ପ୍ରବେଶ
ଜନକ ନାମେ ଯହିଁ ଅଛନ୍ତି ନରେଶ ।
ସେ ମିଥିଲ ପୁରର ରମ୍ୟ ତପୋବନେ
ପରବେଶ ହେଲେ ଯେ ଅତ୍ୟନ୍ତ ବହନେ ।
ସେହି ତୋଟାକୁ ଲଙ୍ଘି ଶୁକ ମହଋଷି
ଜନକ ସିଂହଦ୍ୱାରେ ପ୍ରବେଶିଲେ ଆସି ।
ସେହିଠାରେ ଛିଡ଼ା ହୋଇଣ ଋଷିସାଇଁ
ଜନକଙ୍କ ଛାମୁକୁ କୁହାଇ ପଠାଇ ।
ପ୍ରାକୃତଲୋକ ପରି ଦୁଆରରେ ଜଣେ
ରହିଲେ କିଛି କ୍ରୋଧ ନ ଧରିଣ ମନେ ।
ଦୁଆରୀ ଶୁକଙ୍କର ବଚନ ଘେନିଲା
ଜନକଙ୍କ ଛାମୁରେ ଜଣା ମଣା କଲା ।
ଜନକ ଆଜ୍ଞାରେ ଶୁକଙ୍କୁ ଘେନିଯାଇ
ଦ୍ୱିତୀୟ ଦ୍ୱାରେ ନେଇ ଦେଲା ସେ ରଖାଇ ।
ସେହିଠାରୁ ଜନକମନ୍ତ୍ରିଏ ଆସିଲେ
ଆସିବାହେଉ ବୋଲି ଆଦରରେ ନେଲେ ।
ଅନ୍ତଃପୁରଭିତରେ ହେଲେ ପରବେଶ
ଦେଖିଲେ ତହିଁ ଶୁକ ବହୁ ନାରୀ-ବେଶ ।
ତାଙ୍କର ପାହୁଡ଼ ନୂପୁର ଝମକରେ
ପିଟେ କି କାମଦେବ ଠମକ ବୁକୁରେ ।
ଶୁକ ଅନ୍ତଃପୁରରେ ଛିଡ଼ା ହେବା ଜାଣି
ଖରପାଶେ ଆସି ବେଢ଼ିଲେ ବେଶ୍ୟାଶ୍ରେଣୀ ।

ଭ୍ରୂଲତା-କୋଦଣ୍ଡରେ ଚଡାଇ ଅଞ୍ଜନ
ଗୁଣକୁ ନେତ୍ର-ଶର କରିଣ ସନ୍ଧାନ ।
ବନ୍ଧ କରି ରୁନ୍ଧିବା ବେଳରେ ଶୁକଙ୍କୁ
ବାନ୍ଧିଲେ ସେ ଓଷ୍ଠାଣ ଧରିଣ ଗଳକୁ ।
ନେତ୍ରଅନ୍ତେ ତାଙ୍କର ଥିଲା ତ ରକ୍ତିମା
ରଜତକଷା ପରି ଦଶିଲା ସୁଷମା ।
ଏ ଅନ୍ତେ ପାଦ୍ୟ ଅର୍ଘ୍ୟ ଦେଇ ସେ ପୂଜିଲେ
ଜନକ-ରାଜାଙ୍କର ପୁର ଦେଖାଇଲେ ।
ଜନକ-ନଗରେ ସହସ୍ରସଂଖ୍ୟାନାରୀ
ଦେଖିଲେ ଶୁକପକ୍ଷୀ ଅପସରା ପରି ।
ତେବେହେଁ ତାଙ୍କର ନୋହିଲା କାମ ଜାତ
କ୍ରୋଧ ମଧ୍ୟ ଆକର୍ଷି ନ ପାରିଲା ଚିତ୍ତ ।
ସବୁ ସ୍ତ୍ରୀ ଶିଘ୍ରଯାକ ତ ଶୁକଙ୍କୁ ନମିଲେ
ଶୋଇବାକୁ ଦିବ୍ୟ ଆସନ ଆଣିଦେଲେ ।
ଆଦର ପାଇ ଶୁକ ସିଂହାସନେ ବସି
ଧ୍ୟାନ ସାରି ପଛେ ଶୋଇଲେ ହୋଇ ତୋଷୀ
ରଜନୀ ଶେଷରେ ସେ ଶଯ୍ୟାରୁ ଉଠିଲେ
ଶୌଚବନ୍ତ ହୋଇଣ ସନ୍ଧ୍ୟା ସୁମରିଲେ ।
ସବିତା ଉଦେ-ଗିରି କରନ୍ତେ ଆଶ୍ରୟ
ଜନକ ହୃଦ-ଦେଶେ ଲଭି ମୋଦଚୟ ।
ପାଦ୍ୟ ଅର୍ଘ୍ୟ ଧରିଣ ଶୁକଙ୍କୁ ପୂଜିଲେ
ଦୁଇପାଦକୁ ଧରି ନମସ୍କାର କଲେ ।
ରତନ-ବିଭୂଷିତ ଆସନେ ଶୁକଙ୍କୁ
ବସାଇଲେ ଜନକ କରି ଆଦରକୁ ।
ଶୁକ ବିଧିମତରେ ଘେନି ତାଙ୍କ ପୂଜା
ମନେ କରିଲେ ଆଚ୍ଛା ଅଛନ୍ତି ଏ ରାଜା ।
ଏ ଅନ୍ତେ ଜନକରାଜାଙ୍କୁ ପଚାରିଲେ
ସୁଖରେ ଅଛକି ଏ ପୁରରେ ଭଲେ ।
ଜନକ ବୋଇଲେ ମୁଁ ଅଛି ସୁଖୀ ହୋଇ
ଶୁକ ବୋଇଲେ ଆସି ବସ ନରସାଇଁ ।
ଶୁକଙ୍କ ବଚନେ ଜନକ-ମହୀପତି
ଆସନ ଛାଡ଼ି ତଳେ ବସିଲେ ଝଟତି ।
ଶୁକଙ୍କୁ ପଚାରିଲେ କାହିଁକି ଏଠାକୁ
ଆସିବା ହୋଇଅଛି କହ ତା ଆମ୍ଭଙ୍କୁ ।
ଶୁକ ବୋଇଲେ ଆହେ ବାପଙ୍କ ବଚନେ
ଆସିଅଛି ମୁଁ ଜାଣ ତୁମ୍ଭ ସନ୍ନିଧାନେ ।
ପ୍ରବୃତ୍ତି ନିବୃତ୍ତିଶାସ୍ତ୍ରକୁ ମୋତେ କହି
ମୋ ହୃଦୟ-ସଂଶୟ ଦିଅ ହେ ଛଡ଼ାଇ ।
ଏହିରୂପରେ ମୋତେ କହିଛନ୍ତି ବ୍ୟାସ
ଏଣୁ ମୁଁ ତୁମ୍ଭଙ୍କୁ ଟି ବୋଲୁଛି ନରେଶ ।
ବ୍ରାହ୍ମଣ କେଉଁ କର୍ମ କରିବ ନୃପତି
କହିବାହେଉ ମୋତେ ବଳି ହୃଦେ ପ୍ରୀତି ।
ଜ୍ଞାନ ତପ ଦୁଇକଥାରେ କେଉଁ କଥା
କଲେ ମୋକ୍ଷ ପାଇ ହେ କହ ମହାରଥୀ ।
ଜନକ ବୋଇଲେ ହେ ଦ୍ୱିଜ ଯା କରିବ
ତା କହିବା ତୁମ୍ଭଙ୍କୁ ଶୁଣ ଶୁକଦେବ ।
ବ୍ରହ୍ମଚର୍ଯ୍ୟ କରି ପଢ଼ିବ ଆଗ ବେଦ
ହୋଇବାକୁ ପଣ୍ଡିତଙ୍କର ବିଶାରଦ ।
ତଦଅନ୍ତେ ଗୃହସ୍ଥାଶ୍ରମ ଆଚରିବ
ପୁତ୍ର ହେବା ପାଇଁକ ଯତ୍ନ କରୁଥିବ ।
ପୁତ୍ର ହୋଇ ପୁତ୍ରର ହେବ ଯେବେ ପୁତ୍ର
ବନକୁ ଯିବ ତେବେ ହେବାକୁ ପବିତ୍ର ।
କେତେ କାଳ ବାନପ୍ରସ୍ଥକୁ ଆଚରିବ
ତାହା ଛାଡ଼ିଣ ଭିକ୍ଷୁ-ଆଶ୍ରମେ ରହିବ ।
ଶୁକ ବୋଇଲେ ଆହେ ଉପୁଜିଲେ ଜ୍ଞାନ
ତିନି ଆଶ୍ରମକୁ ଛାଡ଼ିବଟିକି ଜନ ।
ଜନକ ବୋଇଲେ ହେ ଗୁରୁ ହୋଇ ଜଣେ
ନ ଦେଲେ ଶିକ୍ଷା ଜ୍ଞାନ ନ ଜାଣନ୍ତି ଜନେ ।
ଗୁରୁ ଦେବା ଜ୍ଞାନନାବକୁ ଆଶ୍ରା କରି
ତରୁଅଛନ୍ତି ଜନେ ଏ ସଂସାର-ବାରି ।
ରାଜସ ତାମସକୁ ଛାଡ଼େ ଯେବେ ଜନ
ତେବେ ଜାଣ ହୁଅଇ ଆତ୍ମତତ୍ତ୍ୱଜ୍ଞାନ ।
ଆତ୍ମଜ୍ଞାନ ହୋଇଲେ ମୁକତି ହୁଅଇ
କର୍ମ-ବାସନା ଟି ତାହାକୁ ନ ଲାଗଇ ।
ମୋକ୍ଷ ବିଷୟରେ ଯଯାତିରାଜା ଯାହା
କହିଛନ୍ତି ତା ଶୁଣ ଶୁକ ଋଷିନାହା ।
ପରକୁ ଉଦବେଗ ନିଜ ଉଦବେଗ
ନ ଦେଲେ ନ ପାଇଲେ ଲଭେ ବ୍ରହ୍ମଭାଗ ।
ସୁଖ ଦୁଃଖ ବା ସ୍ତୁତି ନିନ୍ଦାକୁ ସମାନ
ଯେ ମଣଇ ବ୍ରହ୍ମକୁ ଲଭଇ ସେ ଜାଣ ।
ଜ୍ଞାନ ପ୍ରଦୀପରେ ଆତ୍ମାକୁ ଭବେ ଜନେ
ଦେଖୁଅଛନ୍ତି ଶୁକଋଷି ସେ ନୟନେ ।

ଜ୍ଞାନକଥାଯାକ ହେ ବ୍ୟାସଙ୍କର ବସି
ତୁମ୍ଭଠାରେ ଅଛି କଥାରୁ ମୁଁ ଜାଣୁଛି ।
ବାବୁ ତୁମ୍ଭଠାରେ ପ୍ରସନ୍ନ ଚିତ୍ତ ହୋଇ
ଅଛନ୍ତି ଏଣୁ ଜ୍ଞାନ ହୃଦେ ଅଛି ରହି ।
ବ୍ରାହ୍ମଣର କେଉଁ କଳା ଅଟଇଟି ସାର
ତାହା ତ ହୋଇଅଛି ତୁମ୍ଭଙ୍କୁ ଗୋଚର ।
ମୋହର କରିବାରୁ କେଉଁ କଥା ଅଛି
ତୁଚ୍ଛାକୁ ସିନା ପୁଚ୍ଛୁଅଛ ମୁଁ ଜାଣୁଛି ।
ଏରୂପେ ଜନକଙ୍କ ବଚନକୁ ଶୁଣି
ମହାହୃଷ୍ଟ ହେଲେ ସେ ଋଷି କୁଳମଣି ।
ଉତ୍ତର ଦିଗେ ମୁଖ କରି ହିମାଳୟ —
ପର୍ବତକୁ ଗମିଲେ ବ୍ୟାସଙ୍କ ତନୟ ।
ସେ ହିମାଳୟ ପର୍ବତରେ ଅପସରା-
ମାନେ ନାନାଜାତି ବେଶରେ ହୋଇ ତୋର
ନୃତ୍ୟ ଗୀତ ବାଦ୍ୟରେ ଦିନକୁ ହରନ୍ତି
ରାତ୍ରି ବୋଲିବାରେ ସ୍ୱପ୍ନେ ନ ଜାଣନ୍ତି ।
ହଂସ କାରଣ୍ଡବ ପକ୍ଷୀଏ ହୋଇ ଜୁଣ୍ଡ
ମଧୁରେ ଆଳାପନ୍ତି ମେଳକରି ଝୁଣ୍ଡ ।
ଗରୁଡ଼ ଆସି ଥରେ ନିତି ସେ ଗିରିକୁ
ପରିକ୍ରମ କରିଣ ଯାଆନ୍ତି ଘରକୁ ।
ଋଷିଦେବପାଳେ ଲୋକଙ୍କ ହିତ ପାଇଁ
ନିତି ବସିଯାଆନ୍ତି ବସ୍ତ୍ରର ଛିଣ୍ଡାଇ ।
ସେ ହିମବନ୍ତ ଗିରିଶିଖେ କାର୍ତ୍ତିକେୟ
ମୁଁ ମହାବଳୀ ବୋଲି କରିଣ ହୃଦୟ ।
ଶକତିଟି ପର୍ବତ-ଶିଖରେ ଥୋଇଲେ
ବଳ ଥିଲେ ଟେକ ହେ ଦେବଙ୍କୁ ବୋଇଲେ ।
ତାହା ଶୁଣିଣ ତିନିଲୋକ ପ୍ରାଣୀଯାକ
କି କରିବା ବୋଲି ହୋଇଲେ ଦକଦକ ।
ବିଷ୍ଣୁ ଯେ ତିନିଲୋକ କଥାକୁ ଜାଣିଲେ
ହସିକରି କରେ ସେ ଶକତି ଟେକିଲେ ।
ସେ ସକାଶୁଁ ବନ ତୁଳରେ ଧରାଧର
ନଗ ଭ୍ରମିତ ହୋଇଗଲେ ଥରହର ।
ପ୍ରହଲ୍ଲାଦ ବିଷ୍ଣୁଙ୍କ ସମୀପରେ ଥିଲେ
ତାହାଙ୍କ ମୁଖ ଚାହିଁ ବିଷ୍ଣୁ ଆଜ୍ଞାଦେଲେ ।
ଏ କୁମାର ବଳ ସମାନ ହୋଇ ଜଣେ
ଥିଲା ପରି ମୋତେ କେ ନ ଦିଶେ ନୟନେ ।

ପ୍ରହଲ୍ଲାଦ ତା ଶୁଣି ହୋଇ କ୍ରୋଧ ଚିତ୍ତ
କୁମାର ଶକତିକି କରି କରଗତ ।
ରଡ଼ିଟିଏ ପାଡ଼ି ଦୁଇଗୋଡ଼କୁ ଛାଡ଼ି
ପଡ଼ିଲେ ଗିରିପରେ ସେହୁ ମୁହଁ ମାଡ଼ି ।
ଶିବ ସେ ପର୍ବତର ସମୀପରେ ତପ
କରିଛନ୍ତି ପୂର୍ବେ ଛଡ଼ାଇବାକୁ ପାପ ।
ସେଠାରେ ଶିବଙ୍କର ଆଶ୍ରମ ଗୋଟିକ
ଜ୍ୱଳନ ଜଗିଥିଲେ ଦେଖାଇ ଜ୍ୟୋତିକ ।
ସେ ପର୍ବତେ ପୂର୍ବେଟି ଋଷି କୃଷ୍ଣ ବ୍ୟାସ
ପଢ଼ାଇଲେ ବେଦ କରିଣ ଗୁରୁଶିଷ୍ୟ ।
ବଇଶମ୍ପାୟନ ଯେ ପଇଲ ଜୈମିନି
ସମସ୍ତ ମିଶି ଗୁରୁଶିଷ୍ୟ ହେ ନୃମଣି ।
ଶୁକ ତ ଜନକଙ୍କ ଘରୁ ବାହାରିଲେ
ମାର୍ଗଣ ଗମିଗଲା ପରାଏ ଗମିଲେ ।
ସେ ପର୍ବତେ ବାପାଙ୍କ ସମୀପକୁ ଯାଇ
ଦୁଇ ପାଦ ଧରି ପଡ଼ିଲେ ଆଗ ଶୋଇ ।
ଜନକରାଜାଙ୍କ କହିବା କଥାଯାକ
ବାପ ଆଗେ ବସି କହିଲେ ପଛେ ଶୁକ ।
ଏରୂପେ ହିମାଳୟେ ବେଦବ୍ୟାସ ଋଷି
ସାରିଲେ ଅହର୍ନିଶି ଶିଷ୍ୟ ଘେନି ବସି ।
ଦିନେ ବ୍ୟାସ ଆଗେ କହିଲେ ଶିଷ୍ୟ ସର୍ବେ
ଯା ମାଗିବୁଁ ତାହା ଆମ୍ଭଙ୍କୁ ଦେବା ହେବେ ।
ବ୍ୟାସଙ୍କ ସମ୍ମତେ କହିଲେ ପାଞ୍ଚଶିଷ୍ୟ
ଆଉ ଶିଷ୍ୟ ନ କରିବ ହେ ବେଦବ୍ୟାସ ।
ଆମ୍ଭ ପାଞ୍ଚଶିଷ୍ୟରେ ତୁମ୍ଭର କୀରତି
ପରକାଶ ହୋଇବ ବୋଲି ବ୍ୟାସଯତି ।
ବ୍ୟାସ ବୋଇଲେ ଆହେ ଜ୍ଞାନୀ ଦ୍ୱିଜ ଆସି
ପଢ଼ିବି ବୋଇଲେ ମୁଁ ପଢ଼ାଇବି ବସି ।
ଏହି ବ୍ରତକୁ ଚିତ୍ତେ କରିଥିଲି ସୁତେ
ତୁମ୍ଭେ ତ ଏହା ଭାଙ୍ଗି ବର ମାଗ ମୋତେ ।
ତୁମ୍ଭେ ତିନିଲୋକଯାକରେ ଖ୍ୟାତ ହୁଅ
ମୋ ମନ ହେଲେ ମୁଁ ବରିବି ଶିଷ୍ୟପୁଅ ।
ଉତ୍ତମ ଶିଷ୍ୟ ଯେବେ ଆସେ ଗୁରୁପାଶେ
ନ ଦେଲେ ବିଦ୍ୟା ତାକୁ ପଡ଼େ ନରକେ ସେ
ଅସତ ଶିଷ୍ୟକୁ କହିଲେ ଧର୍ମଶାସ୍ତ୍ର
କଦାଚିତେଟି ଗାନ ନୁହଇ ପବନ ।

ବ୍ରାହ୍ମଣଙ୍କୁ ଆଗେ ବସାଇ ଶୂଦ୍ରବର୍ଣ୍ଣ
ଆଗେ ବେଦ କହିଲେ ନାହିଁ ଦୋଷ ଜାଣ ।
ବେଦଜାଣିବାର ଦ୍ୱିଜଙ୍କୁ ଯେ ଲଙ୍ଘଇ
ଇହ ପର ଦୁଇରେ ତା'ର ଭଲ ନାହିଁ ।
ତୁମ୍ଭଙ୍କୁ କହୁଛି ମିଳିବ ଯେବେ ଶିଷ୍ୟ
କରାଇବୁ ତାହାକୁ ମୋ ପାଠ ଅଭ୍ୟାସ ।
ଏରୂପେ ବ୍ୟାସଙ୍କ ବଚନ କର୍ଣ୍ଣେ ଶୁଣି
ହୃଷ୍ଟମନା ହୋଇ ବ୍ୟାସଙ୍କ ଶିଷ୍ୟଶ୍ରେଣୀ ।
କହିଲେ ଯାହା ଆଜ୍ଞାକଲେ ଋଷିନାହା
ଏହାଶୁଣି ଆମ୍ଭର ବଢ଼ିଲା ଉତ୍ସାହା ।
ଆଜଠାରୁ ଆପଣ କହିବା ପରଯ୍ୟେ
ଆଚରିବୁଁ କହୁଛୁ ନିର୍ମଳ ହୃଦୟେ ।
ବେଦବ୍ୟାସ ବୋଇଲେ କହୁଛି ତୁମ୍ଭଙ୍କୁ
ନ ଲଙ୍ଘିବ କେବେହିଁ ବ୍ରାହ୍ମଣଜନଙ୍କୁ ।
ଏରୂପେ କହି ସେ ବୋଇଲେ ଯାଅ ବାବୁ
ବୁଲ ସ୍ୱଇଚ୍ଛା ଯେଣେ ହେଉ ଯାଉ ସବୁ ।
ଏହାଶୁଣି ଶିଷ୍ୟେ ବ୍ୟାସଙ୍କ ପାଦେ ନମି
ସେହିକ୍ଷଣି ରାଜନ ହେଲେ ଶୂନ୍ୟଗାମୀ ।
ଯେଉଁଠାରେ ପବନମାନେ ରହୁଥିଲେ
ସେହିଠାରେ ଯାଇ ସମସ୍ତେ ଛୁଡ଼ାହେଲେ ।
ସେ ପବନମାନଙ୍କ ନାମମାନ ଯାହା ।
କହିବା ଶୁଣ ହେ ପାଣ୍ଡବ-ନରନାହା
ସାଧମାନଙ୍କର ସମାନ ନାମ ବାତ
ବୋଲନ୍ତି ଜାଣ ଯୁଧିଷ୍ଠିର ନୃପସୁତ ।
ସମାନ ପୁଣି ଉଦାନକୁ ସରଜିଲେ
ଉଦାନରୁ ପୁଣି ବ୍ୟାନ ଯେ ଜାତହେଲେ ।
ବ୍ୟାନଠିରୁ ଅପାନ ଅପାନରୁ ପ୍ରାଣ
ହୋଇଲେହିଁ ରାଜନ ସୁପ୍ରିୟନନ୍ଦନ ।
ପ୍ରାଣପବନଙ୍କର ନୋହିଲା ତ ସୁତ
ସେ ଏକାହେଲେ ପୁତ୍ରପାଇଁହିଁ ଦୁଃଖିତ ।
ପାଞ୍ଚ ପବନଙ୍କର ବାହାରେ ସାତୋଟି
ପବନ କଥା ଶୁଣ ଦେଇଣ ମନଟି ।
ପ୍ରବହ ପବନର ସକାଶରୁ ଧୂଆଁ
ଆକାଶ ଦେଶେ ଯାଏ ସଙ୍ଗେ ଯେନ ହୁଆ ।
ଆବହ ପବନ ସକାଶୁ ଗରଜନ
ଜନମି ବଜ୍ରଲ ସରଜେ ଘନ ଘନ ।
ଉଦ୍ବହ ପବନ ସମୁଦ୍ର ଜଳ ନଏ
ମେଘଙ୍କ ଘାତରେ ମହୀରେ ବରଷାଏ ।
ଦେବଙ୍କ ବିମାନକୁ ସଂବହ-ପବନ
ବହିଣ ରଖିଅଛୁ ଗଗନେ ରାଜନ ।
ବିବାହ ପବନ ଘାତରୁ ଉତପାତ
ହେଉଛନ୍ତି ଅବନୀମଣ୍ଡଳରେ ଜାତ ।
ପ୍ରାଣୀଙ୍କର ପ୍ରାଣଙ୍କୁ ଘେନି ସେ ଯାଉଛି
ପରିବହ ପବନ ତା ନାମ ହେଉଛି ।
ପରିବହ-ପବନ ପର୍ଯ୍ୟନ୍ତ ଯେ ଯାଇ
ଲେଉଟିବାକୁ ଆଉ ତାଙ୍କ ଶକ୍ତି ନାହିଁ ।
ଏ ସାତୋଟି ବାତ ଅଦିତିଙ୍କର ସୁତ
ସବୁବେଳେ ଭ୍ରମୁଅଛନ୍ତି ଏ ଜଗତ ।
ବିଷ୍ଣୁଙ୍କ ନିଃଶ୍ୱାସ ପବନ ଯେବେ ବହେ
ଜ୍ଞାନ ନ ରହଇଟି ଜାଣ କାହାଦେହେ ।
ଥାଉ ସେ ନର ଦେବ ମେରୁ ଗିରିବର
ସେ ପବନ ବାଜ ହୁଅଇ ଥରଥର ।
ତୁମ୍ଭଙ୍କୁ ମୁହିଁ ଯେଉଁରୂପେ କହିଲଇଁ
ଏରୂପେ ବେଦବ୍ୟାସ ଶିଷ୍ୟଙ୍କୁ ବତାଇ ।
କହିଅଛନ୍ତି ପୂର୍ବେ ଜାଣ ହେ ରାଜନ
ଏ କଥାରେ କିଛିହିଁ ସନ୍ଦେହ ନ ଘେନ ।
ଆହେ ଯୁଧିଷ୍ଠିର ବେଦାର୍ଥ ପୁଚ୍ଛିବାକୁ
ସେକାଳେ ଆସିଲେ ନାରଦ ଶୁକଠାକୁ ।
ଶୁକ ନାରଦଙ୍କୁ ଦେଖିଣ ଯଥାବିଧି
ମତେ ପୂଜାକଲେ ନିର୍ମଳ କରି ବୁଦ୍ଧି ।
ନାରଦ ବୋଇଲେ ହେ ତୁମ୍ଭର କି ଶ୍ରେୟ
କରିବି ତାହା କହ ବ୍ୟାସଙ୍କ ତନୟ ।
ନାରଦଙ୍କ ବଚନ ଶୁଣିକରି ଶୁକ
ବୋଇଲେ କହ ଯେ ହୋଇବ ହିତ ଲୋକ ।
ନାରଦ ବୋଇଲେ ହେ ସନତକୁମାର
ଋଷିଙ୍କି କହିଥିଲେ ଜାଣ ଋଷିବର ।
ବିଦ୍ୟା ସମାନ ଦୃଷ୍ଟି, ରାଗ ସମ ଦୁଃଖ
ସତ୍ୟ ସମ ତପସ୍ୟା, ତ୍ୟାଗ ସମ ସୁଖ ।
ନାହିଁ ଏ ଜଗତରେ ଶୁକ ମହାମତି
ମୋ କହିବା କଥାକୁ ହୃଦେ କର ସ୍ଥିତି ।
ମନୁଷ୍ୟଜନ୍ମ ପାଇ ବିଷୟେ ଆସକ୍ତ
ଯେ ହୋଏ ସେ ହୁଅଇ ନରକକୁ ଗତ ।

ବିଷୟ ଆସକ୍ତ ହେଲେ ଅନୁରାଗ
ବଢ଼ି ରହିଥାଏ ହୃଦୟମଧ୍ୟଭାଗ ।
କାମ କ୍ରୋଧ ଯାହାର ହୃଦୁ ଯାଇ ନାହିଁ
ଜପ ତପ କଲେ ସେ ତରିବଟି କେହ୍ନି ।
କ୍ରୋଧରୁ ତପ, ମତ୍ସରରୁ ସମ୍ପତ୍ତିକ
ରଖିଥିବ ହୃଦରେ ବନ୍ଧଣ ପ୍ରୀତିକ ।
ମାନ ଅବମାନରୁ ବିଦ୍ୟାକୁ ରଖିବ
ପ୍ରମାଦ ପଡ଼ିଥିଲେ ଆତ୍ମାକୁ ଜଗିବ ।
ଆନୃଶଂସ୍ୟ ଧର୍ମ ପରମବଳ କ୍ଷମା
ଆତ୍ମଜ୍ଞାନ ଜ୍ଞାନ ବୋଲାଏ ମହାତମା ।
ସତ୍ୟ ବ୍ରତପର ଯେ କଥା ଆଉ ନାହିଁ
ଆଉ ଗୁଡ଼ାଏ ମୂର୍ଖେ ନ ପାରିବ କହି ।
ଯେଉଁ ଲୋକ ସବୁ କଥାକୁ ଛାଡ଼ପାରେ
ହୁଅଇ ସେ ଲେଖା ପଣ୍ଡିତ ଜାଣିବାରେ ।
ଯେଉଁଲୋକ ଇନ୍ଦ୍ରିୟ ବଶ କରିଅଛି
ଜାଣ ଶ୍ରେଷ୍ଠ ତାର ସଙ୍ଗତେ ଗୋଡ଼ାଇଛି ।
ସବୁ ପ୍ରାଣୀଠାରୁ କରିବ ହିଂସା ଦୂର
ଅମିତ୍ରକୁ ଘେନିବ ମିତ୍ର ବୋଲି ମୋର ।
ଅକିଞ୍ଚନ କାମ ସନ୍ତୋଷ ଅଶ୍ୱପଲ୍ଲୀ
କରିବା କ୍ଷମାର ପରମ ଶ୍ରେଷ୍ଠ ଭାଳ ।
ଜାଣ ହେ ଶୁକରଷି ଜିତେନ୍ଦ୍ରିୟ ହୋଇ
ବିନ ହର ଧନ ରତନକୁ ନ ଚାହିଁ ।
ବ୍ରହ୍ମକୁ ଯେ ବଶ କରିବା ବିଚାରିବ
ସମସ୍ତ କଥାରୁ ସେ ଆସକ୍ତି ଛାଡ଼ିବ ।
ଶୁଭକର୍ମ କଲେ ଦେବତା ହୋଏ ଲୋକ
ଅଶୁଭକର୍ମ କଲେ ଭୁଞ୍ଜଇ ନରକ ।
ଶୁଭାଶୁଭ କର୍ମକୁ ଯେ ଲୋକ କରଇ
ମନୁଷ୍ୟଜନ୍ମ ପାଇ ଭବେ ବିହରଇ ।
ମୃତ୍ୟୁ ଜରା ଦୁଃଖେ ପୀଡ଼ିତ ହୋଇ ପ୍ରାଣୀ
ଭ୍ରମୁଛନ୍ତି ଏ ସଂସାର ନର୍କଶ୍ରେଣୀ ।
ଅହିତେ ହିତ ନଶ୍ୱରରେ ଅନଶ୍ୱର
ବୁଦ୍ଧି ଯା କରୁଅଛୁ କର ତାହା ଦୂର ।
ସ୍ନେହ ତନ୍ତୁରେ ତ ହୋଇଅଛୁ ବେଷ୍ଟିତ
କାଠ ତାହାକୁ ଧର୍ମ କାତିରେ ଭୁରିତ ।
ବନ୍ଧୁ ମିତ୍ର ଭାର୍ଯ୍ୟା କଥାରେ ଯେ ସେନେହ
କରଇ କେବେ ମୁକ୍ତ ନୁହେ ତା'ର ଦେହ ।

ପ୍ରାଣୀଏ ସ୍ନେହ ଜାଲେ ପଡ଼ି ଦୁଃଖ ପାଇ
ଦେଖ ହେ ନରକକୁ ଭୁଞ୍ଜୁଛନ୍ତି ଯାଇ ।
ସୁକୃତଧରମ ଖଣ୍ଡାରେ ପାପ ରଜ୍ଜୁ
କାଟିକରି ସୁଖ ଭୁଞ୍ଜଇ ଅତି ମଞ୍ଜୁ ।
ଅସ୍ଥି ଚର୍ମ ରକତ ପୂଯରେ ଗଠିତ
ହୋଇଣ ଏ ଦେହଟି ହୋଇଅଛି ଜାତ ।
ଏହାକୁ ଛାଡ଼ି ପୁଣ୍ୟଦେହ ପାଇବାକୁ
ଯତନ କର କିସ ପୁଛୁଛ ଆମ୍ଭଙ୍କୁ ।
ଯେଉଁ ଲୋକ ବ୍ରହ୍ମଙ୍କୁ ଦେଖୁଥାଇ ନେତେ
ପାପ ରହି ନ ପାରଇ ତାହାର ଗାତେ ।
ଇନ୍ଦ୍ରିୟ-ସଂଯମକୁ କରି ବହୁ ନର
ହେଉଛନ୍ତି ଶୁକ ହେ ବ୍ରହ୍ମଙ୍କ ଆକାର ।
ଶାନ୍ତି-ଶାସ୍ତ୍ର ପଢ଼ି ଯେ ଶାନ୍ତିକ ଜାଣଇ
ସୁଖଟି ସେ ଲୋକର ପଛେ ଥାଏ ରହି ।
ଶୋକ ଭୟ ମୂର୍ଖଲୋକକୁ ନିକ ପଡ଼େ
ପଣ୍ଡିତେ ତା ବୁଦ୍ଧିରେ ଯାନ୍ତି ଡେଇଁ ଗୋଡ଼େ
ପ୍ରିୟ ବିପ୍ରୟୋଗ ଯେ ଅନିଷ୍ଟ ସଂଯୋଗ
ମୂର୍ଖଲୋକମାନଙ୍କ ହୁଅଇଟି ଆଗ ।
ଗତ ଯେ କଥାରେ ପ୍ରବର୍ତ୍ତିଥାଏ ନିତି
ତା ଦୋଷ ବୁଝି ଛାଡ଼ ଦେବାର ତା ନୀତି ।
ଗଲା କଥାକୁ ଯେହୁ କରୁଥାଏ ଶୋକ
ତାହାକୁ କେହି ନ ବୋଲନ୍ତି ଭଲଲୋକ ।
ଶରୀର ମାନସିକ ଦୁଃଖ ଉପସ୍ଥିତ
ହୋଇଲେ ନ ଭାଳିବ ଧର୍ମେ ଦେଇ ଚିତ୍ତ ।
ଜାଣିବା ଲୋକମାନେ ଦୁଃଖ ଯେବେ ହୋଏ
ବୁଦ୍ଧିବଳେ ତେବେ ତା କରନ୍ତିଟି କ୍ଷୟେ ।
ଶରୀରେ ଦୁଃଖ ହେଲେ ଅଉଷଧ ଖାଇ
ବଇଦେ ହାତ ନେଇ ଦେଖାନ୍ତି ଡକାଇ ।
ଯଉବନ ସୁନ୍ଦରପଣ ଧନ ରତ୍ନ—
ଠାରେ ପଣ୍ଡିତମାନେ ନ କରନ୍ତି ଯତ୍ନ ।
ଦେଶଯାକରେ ଯେଉଁ ବିପତ୍ତି ପଡ଼ିବ
ଏକା ହୋଇ ଜଣେ ତହିଁକି ନ ଭାଳିବ ।
ସୁଖ ଦୁଃଖ ଦୁଇ ଯେ ଲୋକ ଛାଡ଼ିଦିଏ
ବ୍ରହ୍ମକୁ ଲଭଇ ସେ କିଞ୍ଚିତ ଉପାୟେ ।
ଧନ-ମଦ ପିଇ ପ୍ରାଣୀଏ ମତ୍ତ ହୋଇ
ବୋଲନ୍ତି ମୋ ପରି ଲୋକରେ କେହ୍ନି ନାହିଁ ।

ଏହି ସକାଶୁଁ ଧନ ହେଲେ ଅନାଦର
କରୁଥାନ୍ତି ଜାଣିବାରଟି ଯେତେ ନର ।
କ୍ଷୟ ବୃଦ୍ଧି ଜନ୍ମ ମରଣ ସୁଖ ଦୁଃଖ
ସବୁଙ୍କୁ ଲଗିଛି ଜାଣ ହେ ଋଷିଶିଖ ।
ମର୍ତ୍ତ୍ୟ ଜାତହୋଇ ଦେହକୁ ନିତ୍ୟ ବୋଲି
ଯେ ବୋଲନ୍ତି ମୂର୍ଖଟି ବୋଲି ତାକୁ ଭାଳି ।
କାମରେ ଅତୃପତ ହୁଏ ଯାର କାୟେ
ତାହାକୁ ଜାଣ ମୃତ୍ୟୁ ବାଘପରି ଥାଏ ।
ଧନବନ୍ତ ଲୋକ ଯେ କରୁଥାଏ ଭୋଗ
ରହିଥିବ ନିତ୍ୟ ବୋଲି ଏ ମହାଭାଗ ।
ଜିତେନ୍ଦ୍ରିୟ ହୋଇ ସଂସାର ଯେ କରଇ
ସୁଖ ପଣ୍ଡିତଟି ତାହାକୁ ଶୁକ କହି ।
ସୁଖରୁ ଭ୍ରଷ୍ଟ ଯେ କାଳରେ ହୋଏ ନର
ସେ କାଳରେ ବୁଦ୍ଧିଟି ହୁଅଇ ଅନ୍ତର ।
ଆତ୍ମାକୁ ଭାବନା ଯେ ନର କରିଥାଏ
ଦୁଃଖଟି ଛୁଇଁ ନ ପାରଇ ତା'ର କାୟେ ।
ଚଉଷଠି ରୋଗରୁ ରୋଗଟିଏ ଘୋଟି
ନାଶକରି ଦିଅନ୍ତି ପ୍ରାଣୀଙ୍କ ଦେହଟି ।
ରାଜ ଧନ ଲୋକର ଆୟୁଷ ନିଅନ୍ତି
ଦେବା ପଦଟିକ କେବେ ସେ ନ ଜାଣନ୍ତି ।
କରମ ଫଳ ଯେବେ ହେଉଥାନ୍ତା ସିଦ୍ଧ
ବୁଦ୍ଧିମନ୍ତେ ଥାଆନ୍ତେ ହୋଇଣ ପ୍ରସିଦ୍ଧ ।
ଅଧମମାନେ ସବୁ କାମନାକୁ ପାଇ
ରହିଛନ୍ତି ସର୍ବେ ଆଖିରେ ଦେଖୁଥାଇଁ ।
ଧରମବନ୍ତ ଲୋକେ କରି କରି କର୍ମ
ନ ପାଇ ଧନ ଶେଷେ ପାନ୍ତି ଘୋରଶ୍ରମ ।
ସବୁ ରେତ ସ୍ତ୍ରୀ ଗର୍ଭରେ ତ ନ ରହେ
ଦଇବ ବଳରେ ଯେଉଁଥରରେ ରହେ ।
ଆମ୍ବ ବଉଳକେଣ୍ଡା ରହେ ଯେଉଁରୂପେ
ଝଡ଼ କେତେ ବହଇ ଜାଣ ସେହିରୂପେ ।
ତପସ୍ୟା କରି ଲୋକ ଉପୁଜାଇ ସୁତ
ଦୁଷ୍କୃତ ହେଲେ କୁଳକୁ ସେ କରେ ହତ ।
ଗର୍ଭ ମୂତ୍ର ପୁରୀଷ ଆହାର ପରାୟେ
ଜାଣ୍ଡି ନୁହନ୍ତି ପେଟରେ ପଡ଼ି ରାୟେ ।
ଦଇବ ଛଡ଼ା ଯେବେ ବ୍ୟାଧି ଉପୁଜଇ
ଧନ ରହି ଦେଇ ତା ପାରେ କେ ଘୁଞ୍ଚାଇ ।

ବଇଦେ ସେ ବ୍ୟାଧି ଭଲ ହୋଇବ ବୋଲି
ଟଙ୍କା ନେଇଣ ଘରେ ଖାଆନ୍ତି ନ ଭାଳି ।
ଶୁଣ୍ଠି ପିପଳିରେ ପକାଇ ଅଭ୍ରଗୁଣ୍ଡା
ଖୁଆନ୍ତି ବଢ଼ାକରି ତାହା ଗୁଣ୍ଡା ଗୁଣ୍ଡା ।
ଜାଣିଥାନ୍ତି ଏ ବ୍ୟାଧି କରିବ ମରଣ
ଏଣୁ ଭଲ ଔଷଧ ନ ଦିଅନ୍ତି ଜାଣ ।
ନିତି ଥରେ ଆସିଣ ନାଡ଼ିକା ଟିପନ୍ତି
ନାନାଜାତି ଔଷଧମାନ ବତାଅନ୍ତି ।
ଏହି ଅଧର୍ମରୁ ବଇଦେ ଅନ୍ତକାଳେ
ବ୍ୟାଧି ପୀଡ଼ା ପାଇ ବସନ୍ତି ଯମ-ଆଳେ ।
ଯମ ପୁଣି ବୈଦ୍ୟଙ୍କୁ ନରକେ ପକାଇ
ଲୁହା ଠେଙ୍ଗା ମୁଣ୍ଡରେ ପିଟନ୍ତି ନଠାଇ ।
ରାଜା ହେଲା ଲୋକକୁ ରୋଗ ନ ଡରଇ
ଏହି ସକାଶୁଁ ସମ୍ପତ୍ତିରେ କାର୍ଯ୍ୟନାହିଁ ।
ଉଦ୍ୟୋଗ କରିଲେ କେତେବେଳେ ଫଳ
କେତେବେଳେ ଗଣନା ହୁଏ ବା ନିଷ୍ଫଳ ।
ଜନମ ମରଣକୁ ଥିଲେ ଔଷଧ
ମର୍ତ୍ତ୍ୟବାସୀଏ ହେଉଥାଆନ୍ତେ ବିବୁଧ ।
ଭୋଗ କରିବାକୁ ସବୁରି ଇଚ୍ଛାଥାଏ
ବିଧାତା ଯା କରୁଥାଏ ତା ହେଉଥାଏ ।
କେ ଘୋଡ଼ା ଚଢ଼ିଅଛି କେ ଘୋଡ଼ାପରିଡ଼ା
ଘୋଡ଼ାବାଗ ଧରି ଆଗରେ ହୋଏ ଛିଡ଼ା ।
ଧନ ଥାଇଣ ଶତ ରଣ୍ଡି ଘରେ ରଖି
ତାହାଙ୍କ ମୁଖ ଦେଖି ହେଉଥାନ୍ତି ଦୁଃଖୀ ।
ଏହି ସକାଶୁଁ ଜାଣ ଛାଡ଼ି ସବୁ କଥା
ଚିନ୍ତାକର ବ୍ରହ୍ମ ଫେଡ଼ିବେ ମନବ୍ୟଥା ।
ନାରଦଙ୍କ ବଚନ ଶୁକଋଷି ଶୁଣି
କି କହିଲେ ବୋଲି ତା ନ ପାରିଲେ ଜାଣି ।
ଦୁଇଆଖିକ ଭାଲପଟରେ ଘୋପିଲେ
ଧୀରହୋଇ ହୃଦୟ ମଧ୍ୟରେ ଖୋପିଲେ ।
ମୁହୂର୍ତ୍ତକ ଅନ୍ତର ହୃଦେ ହେଲା ଜ୍ଞାନ
ବ୍ରହ୍ମଭାବନାରେ ଯେ ଶୁକ କଲେ ମନ ।
ମନକଲେ ବ୍ରହ୍ମା ତପରେ ପାଇ ନୋହେ
ଭୁଛାଇଁ ପଡ଼ି ମୁହିଁ ଭ୍ରମୁଅଛି ମୋହେ ।
ଯୋଗବଳେ ବ୍ରହ୍ମଙ୍କୁ କଲେ ଦରଶନ
ତାଙ୍କ ସ୍ୱରୂପରେ ମୁଁ ହେବି ଯାଇ ଲୀନ ।

ଯୋଗ ଆଶ୍ରୟ କରି ସୂର୍ଯ୍ୟଙ୍କ ଦେହରେ
ରହିବି ମୁଁ ନ ପଡ଼ି ସଂସାର-ମୋହରେ ।
ଚନ୍ଦ୍ରର ପରି ସୂର୍ଯ୍ୟ ନୁହନ୍ତି ତ କ୍ଷୀଣ
ଏ ସକାଶୁଁ ରହିବି ସୂର୍ଯ୍ୟ-ଅପଘନ ।
ଏତେ ବୋଲି ସେ ତିନି ଲୋକଙ୍କୁ ଡାକଲେ
ମୋ ଯୋଗବଳ ତୁମ୍ଭେ ଦେଖ ସେ ବୋଇଲେ
ସବୁ ପ୍ରାଣୀଠାରେ ହୋଇବି ପରବେଶ
ଯୋଗବଳରେ ମୁହିଁ କରିଛି ସାହସ ।
ଏହା କହିଣ ନାରଦଙ୍କ ସନମତେ
ବାପଙ୍କ ପାଶେ ଶୁକ ମିଳିଲେ ଭରତେ ।
ବାପଙ୍କୁ ବୋଇଲେ ମୁଁ କରି ଯୋଗଧ୍ୟାନ
ଯାଉଅଛି ସହିକି ହେବ ମୋର ମନ ।
ବ୍ୟାସ ବୋଇଲେ ହେ ଟିକଏ ବାବୁ ରହ
ତୁମ୍ଭଙ୍କୁ ଦେଖିବାକୁ ବଳୁଛି ମୋ ସ୍ନେହ ।
ଶୁକ ଯେ ବାପଙ୍କର ବଚନ ଶୁଣିଲେ
କଇଳାସପର୍ବତ ଶିଖରକୁ ଗଲେ ।
ଟେକାଆସନରେ ବସିଣ ଶୁକ ଋଷି
ନେତ୍ର ଦୁଇ ଭାଲପଟ୍ଟରେ ଦେଇ ଖୋସି ।
ଜୀବଟିକି ଯୋଗରେ ନିବେଶନ କଲେ
ପରମଆତ୍ମାରୂପ ନୟନେ ଦେଖିଲେ ।
ପୁଣି ଯୋଗବଳରେ ଆକାଶକୁ ବୋଲି
ବାହାରିଲେ ସେ ଶୂନ୍ୟମାର୍ଗରେ ନ ଭାଳି ।
ନାରଦଙ୍କୁ ପୁଣି ଦେଖିଣ ଆକାଶରେ
ନମସ୍କାର କରିଲେ ଅତ୍ୟନ୍ତ ତୋଷରେ ।
ବୋଇଲେ ଯୋଗମାର୍ଗ କରି ଏବେ ମୁହିଁ
ଯାଉଅଛି ତୁମ୍ଭ ପ୍ରସାଦେ ଋଷିସାଇଁ ।
ନାରଦ ଅନୁଜ୍ଞାରେ ଦେଖି ତିନିଲୋକ
ଉପରକୁ ଗମିଲେ ଋଷିଙ୍କ ତିଳକ ।
ନିର୍ଭୟ ହୋଇ ଶୁକ ଯାନ୍ତେ ଶୂନ୍ୟମାର୍ଗେ
ଦେବେ ପୁଷ୍ପବୃଷ୍ଟି କରିଲେ ମହାବେଗେ ।
ଦେବେ ଯକ୍ଷ କିନ୍ନର ସର୍ପ ଅପସରୀ
ଏ ବଡ଼ ତପୀ ବୋଲି ଗଲେ ଅପସରି ।
ମନେ ସେ କଲେ ଆଜଯାଏ ଏ ରୂପରେ
ଏପରି କେହି ଯାଇ ନାହାନ୍ତି ଯୋଗରେ ।
ଆକାଶ-ମାର୍ଗେ ଏ କାହାରି ନାହିଁ ଦେଖା
ଏ କଏ ସେ ଏହାରି ମହିମା ଅଲେଖା ।

ଉର୍ବଶୀ ପୂର୍ବେ ଚନ୍ତ୍ର ବ୍ୟାସ ସୁତ ବୋଲି
ଜାଣି ତାଙ୍କ ଠାଙ୍କରେ ହେଲେ ବୋଲାବୋଲି ।
ଦେଖ ବ୍ୟାସ କେତେ ନିଷ୍ଠୁର କର୍ମ କଲେ
ଏ ପରି ପୁତ୍ରଙ୍କୁ ଯୋଗରେ ନିବେଶିଲେ ।
ଉର୍ବଶୀଙ୍କ ବଚନ ଶୁଣି ଶୁକଋଷି
ଦେଲେ ଗୃହପଟ୍ଟରେ ନୟନ ନିବେଶି ।
ଦେବତାଏ କରି ଯୋଡ଼ିଣ ମୁଖେ ସ୍ତୁତି
ଶୁକଙ୍କୁ ଉଚାରିଲେ ହୋଇଣ ବିନତି ।
ସେହି କାଳରେ ବନ ଗିରିକି ଗୁହିଁଲେ
ଶୁକ ମହାଋଷି ଏ ବଚନ ଭାଷିଲେ ।
ପିତା ଯେତେବେଳେ ଡାକିବେ ଶୁକ ବୋଲି
ତୁମ୍ଭେ ତ ପ୍ରତିଧ୍ୱନି କରିବ ନ ଭାଳି ।
ଏହା ଶୁଣିଣ ବନ ଗିରି ମହୋଦଧି
ବୋଇଲେ ଯା ବୋଲୁଛ କରିବୁ ଅବଧି ।
ସତ୍ତ୍ୱ ରଜ ତମ ଛାଡ଼ି ଏ ତିନିଗୁଣ
ଭାବିଲେ ବ୍ରହ୍ମ ହୃଦେ ସେ ଶୁକ ବ୍ରାହ୍ମଣ ।
ଶୁକ ବ୍ରହ୍ମଭାବନା କଲା ସମୟରେ
ମହାଉତପାତ ଯେ ହୋଇଲା ମହୀରେ ।
ଗିରିଶୃଙ୍ଗମାନ ପଡ଼ିଲେ ଟଳେ ଝଡ଼ି
ବଜ୍ରଧ୍ୱନି ପରାୟେ ଛାଡ଼ିକରି ରଡ଼ି ।
ନିର୍ଘାତ ପଡ଼ିବାରେ ହିମାଳୟ ଶୃଙ୍ଗ
ମାନେ ଯାକୋଡ଼ାଇ ଦେଲା ନିଜର ଅଙ୍ଗ ।
ହୁଅଣାରେ ବହ୍ନି ଉଡ଼ିଲେ ଘୃତ ନେଇ
ନ ଜଳିଲେ ଅଗ୍ନି ଦେବତା ଦୁଃଖୀ ହୋଇ ।
ସେ ସମୟରେ ହିମାଳୟ ମେରୁଗିରି
ଶୃଙ୍ଗ ଲଗାଲଗି ହୋଇଲେ ଦଣ୍ଡଧାରୀ ।
ଶତଯୋଜନ ସେହି ଶୃଙ୍ଗ ଗୃହପଠ
ସମାନ ଉତ୍ସର୍ଗ ହେ ଜାଣ ପାଣ୍ଡୁଶ୍ରେଷ୍ଠ ।
ଶୁକଙ୍କୁ ବାଟ ନ ଛାଡ଼ିବା ମନେ କରି
ରହିଲେ ସେ ଆକାଶ ମଣ୍ଡଳ ଆବୋରି ।
ଶୁକ ଯୋଗବଳରେ ଯାଆନ୍ତେ ସେ ବାଟେ
ଫାଟିଗଲେ ସେ ଦୁଇଗିରି ପଟପାଟେ ।
ଏହା ଦେଖିଣ ଦେବଋଷି ହୋଇ ଗୋଟି
ବୋଇଲେ ଧନ୍ୟ ଧନ୍ୟ ବ୍ୟାସଙ୍କ ବେଟାଟି ।
ଶୁକ ଯିବାବେଳେ ଆକାଶ ଗଙ୍ଗାରେ
ଅପସରୀମାନେ ଅତ୍ୟନ୍ତ ସରାଗରେ ।

ଲଙ୍ଗଳା ହୋଇ ବସ୍ତ୍ରମାନ ତଳେ ଥୋଇ
ଗାଧୋଉଥିଲେ କର ଧରାଧରି ହୋଇ ।
ଶୁକ ସେମାନଙ୍କ ମଧ୍ୟରେ ପଶିଗଲେ
ସେମାନେ ସେହିରୂପେ କ୍ରୀଡ଼ା କରୁଥିଲେ ।
ବ୍ୟାସ ଯେ ଶୁକଙ୍କର ଯିବାକାଳ ଜାଣି
ଧାଇଁଲେ ପଛେ ପଛେ ଋଷି-ଶିରୋମଣି ।
ହା ପୁତ୍ର ଗଲୁ ବୋଲି ପାଡ଼ି ଉଚ୍ଚେ ଡକା
ନୟନ କୋଣୁଁ ଅଶ୍ରୁ ମୁଞ୍ଚିଲେ ସେ ଏକା ।
ଏହି ସମୟରେ ସେ ଶୁକ ମହର୍ଷି
ବ୍ରହ୍ମଙ୍କ ସ୍ୱରୂପରେ ବ୍ରହ୍ମେ ଗଲେ ମିଶି ।
ବେଦବ୍ୟାସ ଶୁକଙ୍କ ଯିବା ବାଟେ ବାଟେ
ଗମିଲେ ହେ ରାଜନ ଜାଣ ଯୋଗ ଆଣ୍ଟେ ।
ପର୍ବତ ଫାଟି ଯାଇଅଛି ତାହା ଦେଖି
କି କଲ ପୁତ୍ର ବୋଲି ସ୍ତବ୍ଧ କଲେ ଆଖି ।
ସେହିଠାବରେ ବ୍ୟାସ ଡାକନ୍ତେ ପୁତ୍ରକୁ
ପ୍ରତିଧ୍ୱନି କଲେ ବେଗେ ସେ ବଚନକୁ ।
ସେହିକାଳୁ ହେ ଆଜଯାଏ ନରରାଣ
ପ୍ରତିଧ୍ୱନି କରୁଅଛନ୍ତି ଜାଣ ବନ ।
ପୁଅକୁ ଚିନ୍ତା କରି ପର୍ବତରେ କ୍ଷଣେ
ରହିଲେ ବେଦବ୍ୟାସ ଦୁଃଖରେ ଆପଣେ ।
ଦେଖିଲେ ମନ୍ଦାକିନୀକୂଳରେ ଲଙ୍ଗଳା
ହୋଇ ଅପସରା ଖେଳନ୍ତି ଭେଳା ଭେଳା ।
ବ୍ୟାସଙ୍କୁ ସେମାନେ କରିଣ ଦରଶନ
ଓଷ୍ଠରେ ଲୁଗା ଦେଇ ପିନ୍ଧିଲେ ବସନ ।
କାହିଁ ପଡ଼ିଲଇଁ ଗୋ ବୋଲିଣ ବୋଇଲେ
ମୁଣ୍ଡମାନ ତଳକୁ ଦେଇଣ ରହିଲେ ।
ପୁଅଙ୍କ ନିକଟ ଆପଣା ଯତିପଣ
ସେହିଠାରେ ଜାଣିଲେ ବ୍ୟାସ ଋଷିରାଣ ।
ମନେ କଲେ ପୁତ୍ରଙ୍କୁ ଖୋଜିବା କପାଇଁ
ଆମ୍ଭ ଯତିପଣ ତ ପାକ ହୋଇ ନାହିଁ ।
ମହାଦେବ ବେଦବ୍ୟାସଙ୍କଠାକୁ ଗଲେ
ବ୍ୟାସଙ୍କୁ ଚାହିଁ କରି ଏମନ୍ତ କହିଲେ ।
ପୂର୍ବରେ ତ ତୁମ୍ଭେ ହେ ପାଇଥିଲ ପୁତ୍ର
ଯୋଗବଳେ ସେ କଲା ଦେହକୁ ପବିତ୍ର ।
ଦେବେ ନ ପାଇବା ଗତିକି ସେ ପାଇଲେ
ତୁମ୍ଭେ କି ପାଇବ ତା ପୁତ୍ରକୁ ଲୋଡ଼ିଲେ ।
ଯେତେକାଳ ଗିରି ସମୁଦ୍ର ରହିଥିବ
ତେତେକାଳ ତୁମ୍ଭର କୀର୍ତ୍ତି ରହିବ ।
ମୋ ପ୍ରସାଦୁଁ ଶୁକଙ୍କ ଛାୟାଟିକ ନେସେ
ଦେଖୁଥିବଟି ଆହେ ବ୍ୟାସ ମହାମତେ ।
ଏରୂପେ ବର ପାଇ ବ୍ୟାସ ଋଷିବର
ଆସିଲେ ଯେଉଁଠାରେ କରିଥିଲେ ଘର ।
ନାରଦ ବେଦବ୍ୟାସଠାରୁ ଏହା ଶୁଣି
ଆହେ ଯୁଧିଷ୍ଠିର ହୋଇଲି ମୁଁ ବଖାଣି ।
ତୁମ୍ଭର ଆଗରେଟି ଏହା ମନେ କର
ଯେ ସନ୍ଦେହ ଅଛି ତା ଏବେ ଦୂର କର ।
ଶୁକଙ୍କର ଚରିତ ଯେ ଜନ ଶୁଣଇ
ପବିତ୍ର ହୋଇ କରି ସ୍ୱର୍ଗରେ ବସଇ ।
ଏଠାରେ ଶୁକାନୁପତନ ହେଲା ଶେଷ
କହଇ କୃଷ୍ଣସିଂହ ଧରାକୋଟ-ଈଶ ।



## ନାରଦ ନାରାୟଣ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ପୁଚ୍ଛିବାକୁ କଥାଏ ହେଉଛି ମୋ ସ୍ନେହ ।
ଗୃହୀ ବ୍ରହ୍ମଚାରୀ ଯେ ବାନପ୍ରସ୍ଥ ଭିକ୍ଷୁ
ଏଥିରେ କେ ବର୍ଣ୍ଣର କରଇ ମୁମୁକ୍ଷୁ ।
କେଉଁ ଦେବତାକୁ ସେ ଆଶ୍ରୟ କରଇ
ଏ କଥା ପିତାମହ କହ ତ ବତାଇ ।
ସ୍ୱର୍ଗ ମୋକ୍ଷ ଦୁହେଁ ହୁଅନ୍ତି କି ରୂପରେ
ଏହା ମଧ୍ୟ ମୋତେ କହିବା ହେବ ଥରେ ।
କି ବିଧିରେ ଦେବତା ପିତୃଙ୍କର ହୋମ
କରଇ ନର ହେବାପାଇଁ ପୂର୍ଣ୍ଣକାମ ।
ମୁକ୍ତ ହୋଇଲେ ଲୋକ କି ଗତିକି ପାଏ
ମୋକ୍ଷ କେଉଁ ସ୍ୱରୂପ ଆହେ ରଥିରାୟେ ।
ସ୍ୱର୍ଗକୁ ଗଲେ ଲୋକ କରେ କି ବେଭାର
ଦେବତାମାନଙ୍କର ଅଟଇ କେ ବର ।
ପିତୃମାନଙ୍କର ବା ପିତା କେ ଅଟଇ
ଦେବ ପିତୃମାନଙ୍କରେ ବଡ଼ କେ ବୋଲାଇ ।
ଏହା ତୁମ୍ଭଠାରୁ ଶୁଣିଲେ ରଥି ଈଶ
ଜାଣ ନୋହିବ ମୁହିଁ ସନ୍ଦେହ-ମାନସ ।
ଭୀଷ୍ମ ବୋଇଲେ ଆହେ ଶଏ ସମ୍ବତ୍ସରରେ
କହି ନ ପାରିବ ଏହା ମୁଁ ବଚନରେ ।

ଯାହାଠାରେ ପ୍ରସନ୍ନ ହେବେ ଭଗବାନ
କହିପାରେ ଏହା ବା ତାହାର ବଦନ ।
ଆଦ୍ୟେ ସ୍ୱାୟମ୍ଭୁବ ମନୁରେ ସତ୍ୟଯୁଗ
ପ୍ରକାଶ ହୁଅନ୍ତେ ରାଜନ ମହାଭାଗ ।
ନର ନାରାୟଣ ସେ ହରି କୃଷ୍ଣ ନାମ
ହୋଇ ଧରମ କଲେ ଗୃହେଟି ଜନମ ।
ନର ନାରାୟଣ ବଦରୀ ଆଶ୍ରମରେ
ଆଠଚକ-ଲଗା ସୁନାର ଶଗଡ଼ରେ ।
ବସି କରିଣ ଦେହ ମାଂସକୁ ଶୁଖାଇ
ତପ କଲେ ଆଖିକ ଭାଲେ ଖୋଷିଦେଇ ।
ନର ନାରାୟଣ ଦୁହିଙ୍କି ଯେ ଦେଖଇ
ଇହଜଣି ପରେ ସେ ପୂଜାକୁ ଲଭଇ ।
ନର ନାରାୟଣଙ୍କ ପାଇ ସୀଉକାର
ମେରୁପରବତରୁ ହୋଇଣ ବାହାର ।
ଗନ୍ଧମାଦନ କରି ତାଙ୍କର ସମୀପେ
ରହିଲେ ଆହେ ଜାଣ ଯୁଧିଷ୍ଠିର ଆପେ ।
ନର ନାରାୟଣଙ୍କ ସମୀପରେ ଦିନେ
ପରବେଶ ହୋଇଲେ ନାରଦ ସୁମନେ ।
ନର ନାରାୟଣଙ୍କ ପୂଜାବିଧି ଦେଖି
ନାରଦ ମହରଷି ହୋଇ ମହାସୁଖୀ ।
ଭାବିଲେ କାହାକୁ ଏ କରନ୍ତି ଭଜନ
ସବୁଙ୍କୁ ତ କରିଅଛନ୍ତି ସରଜନ ।
ଏହିରୂପେ ଭାବନା କରି ମୁନିବର
ନମସ୍କାର କରି ସେ ଦୁହିଙ୍କ ପୟର ।
ବୋଇଲେ ହି ଜଗତ ପିତା ହୋଇ ତୁମ୍ଭେ
କାହାକୁ ପୂଜୁଛ କହ ତ ପୂଛୁ ଆମ୍ଭେ ।
ନର ନାରାୟଣ ବୋଇଲେ ହେ ନାରଦ
ବ୍ରହ୍ମ ଅଟନ୍ତି ଆମ୍ଭର ମୋକ୍ଷ ପଦ ।
ପିତାମାତା ଦୁହେଁ ଯେ ଆମ୍ଭରଟି ସେହି
ଏଣୁ ତାଙ୍କୁ ପୂଜୁଁ ଆମ୍ଭେ ବେଦଭାଇ ।
ପିତାମାତା ଦୁହିଁଙ୍କ ପୂଜା ଲୋକମାନେ
କରିବାରୁ ମଧ ପୂଜୁଁ ଆମ୍ଭେମାନେ ।
ବ୍ରହ୍ମା ଶଙ୍କର ମନୁ ଦକ୍ଷ ଭୃଗୁଧର୍ମ
ମରୀଚ ଅତ୍ରି କ୍ରତୁ ପରମେଷ୍ଠୀ ସୋମ ।
ବଶିଷ୍ଠ ଯମ ସୂର୍ଯ୍ୟ ଅଙ୍ଗିରା କର୍ଦ୍ଦମ
ପୁଲହ କ୍ରୋଧ ଆଦ ଋଷିଙ୍କ ଉତ୍ତମ ।

ପୂଜୁଛନ୍ତି ଆମ୍ଭ ପିତା ବ୍ରହ୍ମପାଦେ
ନ ପଡ଼ିବାକୁ ଜାଣ ସଂସାର ପ୍ରମାଦେ ।
ଏତିନଲୋକେ ଯେତେ ପ୍ରାଣୀ ରହିଛନ୍ତି
ସବୁରି ତାତ ମାତ ବ୍ରହ୍ମଟି ଅଟନ୍ତି ।
ଯେତେ ଋଷି ଦେବଙ୍କ କହିଲଇଁ ନାମ
ଭଜୁଛନ୍ତି ବ୍ରହ୍ମାକୁ ଛାଡ଼ିସବୁ କାମ ।
ଗୁଣ କର୍ମହୀନ ହୁଅନ୍ତି ଯେତେ ନର
ମୁକତି ହୁଅଇଟି ତାଙ୍କର ଶରୀର ।
କ୍ଷେତ୍ରଜ୍ଞ ବୋଲକରି ଯାହାକୁଟି କହି
ମୁକତ ହେବା ଲୋକ ଗତି ଜାଣ ସେହି ।
ତୁମ୍ଭର ଆମ୍ଭଠାରେ ଭକ୍ତି ଥାଏ ରହି
ଏଣୁ ଏହା ତୁମ୍ଭଙ୍କୁ କହିଲୁଁ ଫିଟାଇ ।
ନାରଦ ବୋଇଲେ ହେ ତୁମ୍ଭର ଯେ ତାତ
ତାଙ୍କୁ ଦେଖିବାକୁ ହେଉଛି ମୋର ଚିତ୍ତ ।
ତୁମ୍ଭେ ଅବା ବୋଲିବ ନ ପାରିବ ଦେଖି
ଧରମରେ ତ ବୁଦ୍ଧି ଅଛି ମୁହିଁ ରଖି ।
ତପ ଗୁରୁସେବା କରି ମୋ ଦେହପାପ
କରି ଦେଇଅଛ ଦେଖ ହେ ତୁମ୍ଭେ ଲୋପ ।
ନାରଦ ବାଣୀରେ ବୋଇଲେ ନାରାୟଣ
ଶ୍ୱେତନାମଦ୍ୱୀପକୁ କର ହେ ଗମନ ।
ନାରାୟଣଙ୍କର ବଚନ ଶିରେ ଘେନି
ଶ୍ୱେତଦ୍ୱୀପେ ଗଲେ ନାରଦ ମହାମୁନି ।
ଶ୍ୱେତଦ୍ୱୀପେ ଦେଖିଲେ ଛନ୍ତି ଯେତେ ଜନ
ସବୁଙ୍କର ଅଟଇ ଶୁକଳବରନ ।
ସମସ୍ତେ ଅନିନ୍ଦ୍ରିତ ଅନାହାର ହୋଇ
ଦିନ ନେଉଛନ୍ତି ଅତ୍ୟନ୍ତ ସୁଖ ବହି ।
ସବୁଙ୍କର ଦେହ ଯେ ସୁବାସରେ ପୂରି
ରହିବାରୁ ହୋଇଛି ସେ ଭ୍ରମର-ପୁରୀ ।
ଯୁଧିଷ୍ଠିର ବୋଇଲେ ଶ୍ୱେତଦ୍ୱୀପ ଯାତ
୍ରରୂପେ କମ୍ପା ହେଲ ଭୀଷ୍ମ ମହାମତ ।
ଭୀଷ୍ମ ବୋଇଲେ ମୁଁ ବାପାଙ୍କ ପାଶୁଁ ଯାହା
ଶୁଣିଛି କହିବ ତା ଶୁଣ ନରନାହା ।
ପୂର୍ବକାଳରେ ଉପରିଚର ରାଜା ହେଲେ
ନାରାୟଣ ବରେ ସେ ପୃଥିବୀ ପାଳିଲେ ।
ସୂର୍ଯ୍ୟଙ୍କଠାରୁ ବଇଷ୍ଣବବିଧି ପାଇ
ବିଷ୍ଣୁଙ୍କୁ ତୋଷିଲେ ପୂଜାରେ ଜାଣ ସେହି ।

ବିଷ୍ଣୁ ତୋଷ ହେବାରୁ ନିଜ ପିତାମହ—
ମାନଙ୍କୁ ପୂଜିଲେ ସେ ନୃପ ବହୁ ସ୍ନେହ ।
ନାରାୟଣ ଭକତ ହେବାରୁ ସେ ନୃପ
ଇନ୍ଦ୍ରଙ୍କ ଆସନେ ବସିଲେ ଛାଡ଼ି ତାପ ।
ସମସ୍ତ ବଇଷ୍ଣବେ ତାହାଙ୍କୁ ମାନିଲେ
ତାହାଙ୍କ ଘରେ ଭାତ ନିଠାଇ ଖାଇଲେ ।
ସପତଋଷି ଯେଉଁ ଶାସ୍ତ୍ର କରିଥିଲେ
ସେ ଶାସ୍ତ୍ର ତାଙ୍କୁ ବୃହସ୍ପତି ପଢ଼ାଇଲେ ।
ଉପରିଚର ରାଜା ଯେବେ ଅଶ୍ୱମେଧ
ଯାଗ କଲେ ମନରେ ବହିକରି ସଧ ।
ବୃହସ୍ପତି ତାଙ୍କର ହୋତା ହୋଇକରି
ଯାଗ କରାଇଲେ ପାଣ୍ଡବ-ଦଣ୍ଡଧାରୀ ।
ଏକେତ ଦ୍ୱିତ ତ୍ରିତ ସଦସ୍ୟ ସେ ଥିଲେ
ଏ ବାହାରେ ଆନ ଋଷିଏ ମଧ ହେଲେ ।
ସେହି ଯାଗରେ ପଶୁମାନଙ୍କର ବେକ
ନ ମୋଡ଼ିଲେ ଧର୍ମରେ ରଖିକରି ଦକ ।
ଧାନମାନ ହୋମଭାଗ କରିଣ ଦେବ—
ମାନଙ୍କୁ ଦେଇକରି ବଢ଼ାଇଲେ ଭାବ ।
ବିଷ୍ଣୁ ତାହାଙ୍କ ଯାଗ ଦେଖି ତୋଷ ହେଲେ
ମୂର୍ତ୍ତିମନ୍ତ ହୋଇ ସେ ଯାଗେ ଦେଖାଦେଲେ ।
ଅଦୃଶ୍ୟ ହୋଇ ତାଙ୍କ ଭାଗ ଘେନିଯାଇ
ଏକା ହୋଇ ବିଷ୍ଣୁ ଭୁଞ୍ଜିଲେ ସୁଖ ପାଇ ।
ବିଷ୍ଣୁଙ୍କର ଏ ରୀତି ଦେଖି ବୃହସ୍ପତି
ନୃପତିଙ୍କି କହିଲେ ହୋଇ କୋପମତି ।
ମୋ ଦେବା ଭାଗ ବିଷ୍ଣୁ ଅଦୃଶ୍ୟେ ଯା ନେଲେ
ଏଥିକି ସେ କାରଣ କରିବି ତା ଭଲେ ।
ଯୁଧିଷ୍ଠିର ବୋଇଲେ ବିଷ୍ଣୁ ନିଜ ଭାଗ
ଅଦୃଶ୍ୟେ କପାଁ ନେଲେ କହ ମହାଭାଗ ।
ଭୀଷ୍ମ ବୋଇଲେ ହେ ନିଅନ୍ତେ ଭାଗ କରି
କ୍ରୋଧ ତା ହେଲେ ବୃହସ୍ପତି ତପସ୍ୱୀର ।
ଋଷିଏ ତା ଦେଖି ବୋଇଲେ ବୃହସ୍ପତି
ତୁମ୍ଭର ଏ କଥାଟିଏ ଅଟଇ ଅନୀତି ।
କୃତଯୁଗ ସମସ୍ତେ ଛାଡ଼ିଛନ୍ତି କ୍ରୋଧ
ତୁମ୍ଭେ କ୍ରୋଧ ହେଉଛ ଅଟ କି ଦୁର୍ବୋଧ ।
ଯାହାଠାରେ କୃପା କରନ୍ତି ଭଗବାନ
ସେ ଏକା କରିପାରେ ତାହାଙ୍କୁ ଦର୍ଶନ ।
ଏକେତ ଦ୍ୱିତ ତ୍ରିତ ବୋଲେ ବ୍ରହ୍ମାଙ୍କର
ମନୁଜାତ କୁମର ଆମ୍ଭେ ମାନ କର ।
ଉତ୍ତରକୁ ଯାଇ ମୁକତ ହେବାପାଇଁ
ତପ କଲୁଁ ପାଦ ଗୋଟିକେ ଛିଡ଼ା ହୋଇ ।
ଦେବଙ୍କର ଦେବ ଲକ୍ଷ୍ମୀଙ୍କ ପ୍ରାଣପତି
ନୋହିଲେ ସେ ତପରେ ଆମ୍ଭ ନେତ୍ରେ ସ୍ଥିତି
ଆମ୍ଭ ମନ ଥିଲା ତାହାଙ୍କ ଦରଶନ
କରିବା ପାଇଁ ଜାଣ ଦ୍ୱିଜଙ୍କୁ ରାଜନ ।
ଆମ୍ଭେ ସେହି ସକାଶୁଁ ନ ଦେଖିଲେ ହେଲେ
ଦେଖିବା ଇଚ୍ଛାରେ ତପସ୍ୟା କଲୁଁ ଭଲେ ।
ସେହିକାଳେ ଶୁଭିଲା ଅଶରୀରୀ ଗୀର
ଏଠାରେ ବସି ବୃଥା ତପସ୍ୟା ନ କର ।
ଶ୍ୱେତଦ୍ୱୀପରେ ଲୋକେ ଧାର୍ମିକ ଅଛନ୍ତି ।
ସେଠାରେ ନାରାୟଣ ବିଷ୍ଣୁ ରହିଛନ୍ତି ।
ମନ ଥିଲେ ସେଠାକୁ କର ହେ ଗମନ
କରିବ ତାହାଙ୍କର ରୂପ ଦରଶନ ।
ଏରୂପେ ଆକାଶ-ବଚନ ଶୁଣି କର୍ଣ୍ଣେ
ସେହିଠାକୁ ଗମିଲୁଁ ସର୍ବେ ହୃଷ୍ଟମନେ ।
ଶ୍ୱେତଦ୍ୱୀପ ନିବାସୀମାନଙ୍କର ତେଜ
ଦେଖି ଭାଜିଗଲା ଆମ୍ଭର ନେତ୍ରଓଜ ।
ବିସ୍ମରିଲୁଁ ରୂପ ଆମ୍ଭର ପାକ ନାହିଁ
ଏହାଙ୍କୁ ଦେଖିବାକୁ ଶକ୍ତ ହେବ କାହିଁ ।
ଏବେ ଭାବି ସେଠାରେ ଏକାନ୍ତରେ ରହି
ତପସ୍ୟାରେ ସଢ଼ାଇ ହେଲୁଁ ନିଜ ଦେହୀ ।
ତପ ଅନ୍ତେ ଦେଖିଲୁଁ ଶ୍ୱେତବାସୀ ଲୋକେ
ପୂର୍ବେ ମୁହିଁ କରି କରନ୍ତି ଜପ ଥୋକେ ।
କେତେ ବା ଉତ୍ତରକୁ କରି ନିଜ ମୁଖ
ତପ କରୁଅଛନ୍ତି ଲଭି ମହାସୁଖ ।
ସବୁଙ୍କର ଦେହ କଳଙ୍କ ବିବର୍ଜିତ
ମୃଗଙ୍କର ଶୋଭାକୁ କରୁଅଛି ହତ ।
ପ୍ରଳୟକାଳସୂର୍ଯ୍ୟ ପ୍ରାୟେ ତେଜରାଜି
ସେମାନଙ୍କ ଦେହରେ ରହିଅଛି ମଜ୍ଜି ।
ପୁଣି ନେତ୍ରେ ଦେଖିଲୁ ଶହେ ସୂର୍ଯ୍ୟପରି
ତେଜଟାଏ ସେ ଦ୍ୱୀପଯାକେ ଗଲା ପୂରି ।
ତାହାକୁ ଦେଖି ଶ୍ୱେତଦ୍ୱୀପ ନିବାସୀଏ
ନମୋନମଃ ବୋଲିଣ ଧାଇଲେ ସଭିଏ ।

ଏତେକ ମାତ୍ର ଆମ୍ଭେମାନେ ଦେଖିଅଛୁଁ
ତେଣିକି କି ହେଲା ନ ଜାଣେ କର୍ଣ୍ଣ ଚକ୍ଷୁ ।
ଏମନ୍ତ ସମୟରେ ବହିଣ ପବନ
ପୃଷ୍ଠରେ ପୂରାଇଲା ଶ୍ୱେତଦ୍ୱୀପ ସ୍ଥାନ ।
ହରିଙ୍କ ଆସିବା ବିଷୟ ଆମ୍ଭେ ଜାଣି
ଘଷିଣ ଗୁହାରିଲୁ ଆଖିରେ ଦୁଇ ପାଣି ।
ତେବେହେଁ ଆମ୍ଭଙ୍କୁ ନୋହିଲେ ସର୍ବ ଦୃଶ୍ୟ
ଭାବିଲୁଁ ଆମ୍ଭ ଦେହେ ଅଛି ପାପଲେଶ ।
ସହସ୍ର ସଂଖ୍ୟା ଲୋକ ବିଷ୍ଣୁ ସେବା କରି
ଧାଇଁଥିଲେ କାହାକୁ ନେତ୍ରରେ ନ ହେରି ।
ଏକାଳେ ଆକାଶବଚନ ଶୁଣି କାନେ
ପରବେଶ ହୋଇଲା ଆହେ ମହାମୁନେ ।
ଶ୍ୱେତଦ୍ୱୀପର ନିବାସୀଙ୍କି ତ ଦେଖିଲ
ବିଷ୍ଣୁଙ୍କୁ ନ ଦେଖିଲୁ ବୋଲି ଦୁଃଖ କଲ ।
ଏଥିକି କହୁଥାଇ ବିଷ୍ଣୁ ରୂପୀ ସେହି
ଭାଗ୍ୟ ହୋଇଲେ ବିଷ୍ଣୁଙ୍କୁ ଦେଖିବ ଯାଇ ।
ତୁମ୍ଭେମାନେ ଏବେ ହେ ଲେଉଟିଣ ଯାଅ
ଦେଖିବା ଇଚ୍ଛାଟିକି ମନୁ ଛାଡ଼ି ଦିଅ ।
ତ୍ରେତାଯୁଗେ ଦେବଙ୍କ କାର୍ଯ୍ୟସିଦ୍ଧି ପାଇଁ
ସହାୟ ହେବ ତୁମ୍ଭେ ଜାଣ କହୁଥାଇଁ ।
ଏରୂପେ ଆକାଶ ବଚନ ଶୁଣି କାନେ
ତୁନି ହୋଇ ରହିଲୁ ଆସି ଆମ୍ଭ ସ୍ଥାନେ ।
ତୁମ୍ଭେ ହେ ଶ୍ରୁବିଖଣ୍ଡେ କରଦେଶେ ଲଡ଼ି
ହୋଧ କରୁଅଛ ଯେ ଲାଜଟିକି ଛାଡ଼ି ।
ବିଷ୍ଣୁ କେହି ତୁମ୍ଭଙ୍କୁ ଦେବେ ଦରଶନ
ତପସ୍ୟା ତୁମ୍ଭର ତ ହୋଇନାହିଁ ପୂର୍ଣ୍ଣ ।
ଦେବ ଦାନବଙ୍କର ପୂଜିତ ମୁରାରି ।
ତାଙ୍କ ରୂପ ଲୋକ କି ପାରେ ନେତ୍ରେ ହେରି ।
ଏକତ ଦ୍ୱିତ ତ୍ରିତ ବଚନକୁ ମାନି
ମହାଲାଜକୁ ପାଇ ବୃହସ୍ପତି ମୁନି ।
ଗର୍ବଟିକି ହୃଦରୁ କରିଣ ଅନ୍ତର
ସାରିଦେଲେ ଯାଗ ପାଣ୍ଡବ-ନରବର ।
ଧର୍ମରେ ପ୍ରଜା ପାଳି ବସୁ ସ୍ୱର୍ଗେ ରହି
ଥିଲେ ବ୍ରହ୍ମଶାପେ ପାତାଳେ ହେଲେ ଯାଇ ।
ତେବେହେଁ ତାଙ୍କର ହୃଦୟୁ-ଜ୍ଞାନ ଛାଡ଼ି
ନ ଗଲା, ଜପିଲେ ବିଷ୍ଣୁଙ୍କୁ ହରବଡ଼ି ।

ଏହି ସକାଶୁ ପୁଣି ଭେଦି ମହୀତଳ
ମାଡ଼ିବସିଲେ ସେହୁ ବ୍ରହ୍ମାଙ୍କ ମଣ୍ଡଳ ।
ଯୁଧିଷ୍ଠିର ବୋଇଲେ ବସୁ କାହିଁପାଇଁ
ସ୍ୱର୍ଗ ତେଜି ରହିଲେ ରସାତଳେ ଯାଇ ।
ଏହା ମୋତେ କହିବା ହେଉ ପିତାମହ
ଶୁଣିବାକୁ ମୋହର ବଳୁଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ପୂର୍ବେ ଦେବେ ଭଲେ
ଅଜାମାର ଯାଗକୁ କରିବ କହିଲେ ।
ଋଷି ବୋଇଲେ ସେ ଯେ ଅଧର୍ମ ଅଟଇ
ଧାନ୍ୟଯାଗର ତୁଲେ ସରି ହେବ କେହି ।
ଏରୂପେ ଋଷିମାନେ ହେଉଥିଲେ କଥା
ପାଇଗଲେ ସେଠାକୁ ବସୁ ମହାରଥା ।
ଋଷିମାନେ ବସୁଙ୍କୁ ଦେଖି ସମାଦରେ
ବସାଇଲେ ପାଶରେ ଅତି ପ୍ରମୋଦରେ ।
ଦେବଙ୍କୁ ବୋଇଲେ ଆସିଲେ ବସୁଈଶ
କହିବେଟି ଯାହା ଯେ ସବୁରି ନିର୍ଯ୍ୟାସ ।
ଏହିରୂପରେ ଦେବ ଋଷିଏ ବିସ୍ତରି
ବୋଇଲେ କହ ତ ହେ ବସୁ ଦଣ୍ଡଧାରୀ ।
ଧାନ୍ୟ ଅଜା ଦୁଇ ଯାଗରେ କିଏ ବଡ଼
କହ ତ ହୋଇଛି ଆମ୍ଭର ଗୋଳ ବଡ଼ ।
ବସୁ ବୋଇଲେ ହେ କାହାର କେଉଁ ମତ
ଏହା ଆଗ ମୋ ଆଗେ ପ୍ରକାଶ କର ତ ।
ଋଷି ବୋଇଲେ ଆହେ ଦେବେ ପଶୁ ମାରି
ଯାଗ କଲେ ବୋଲନ୍ତି ହେବ ସ୍ୱର୍ଗ ପୁରୀ ।
ଆମ୍ଭେ ବୋଲୁଅଛୁଁ ଧାନ୍ୟେ ଯେ କରେ ଯାଗ
ସ୍ୱର୍ଗଲୋକରେ ସେ ବୋଲାଏ ମହାଭାଗ ।
ବସୁରାଜା ଦେବଙ୍କ ମତକୁ ଅନାଇଁ
କହିଲେ କଥା ହେ ପାଣ୍ଡବ-ନରସାଇଁ ।
ଋଷିଏ ବୋଇଲେ କହିଲ ପକ୍ଷ କରି
ଧର୍ମକୁ ଗୁହାରି କରି ବସୁ ଦଣ୍ଡଧାରୀ ।
ଏଣୁ ତୁମ୍ଭେ ସ୍ୱର୍ଗରୁ ଖସିଣ ପାତାଳ
ମଧ୍ୟରେ ବାସ କର ଆହେ ନରପାଳ ।
ଅନ୍ତଶେଷ ଗତି ତୁମ୍ଭର ହେବ ହାନ
ମିଥ୍ୟା କହି ପାତକ ଅର୍ଜିଲ ରାଜନ ।
ବସୁ ପାପବଶେ ରହିଲେ ହେଲେ ତଳେ
ମୁକତ ହେଲେ ବିଷ୍ଣୁ ପାଦସେବାବଳେ ।

ଦେବା ପାଇଁ ବସୁ ପାଇଲେ ଯେବେ ଶାପ
ତେବେ ଦେବତାଏ ଲଭିଲେ ମହାତାପ ।
ବସୁ ପାତାଳରେ ରହିବା ସମୟରେ ।
କହିଲେ ଆସିକରି ଏହା ତାଙ୍କୁ ଧୀରେ ।
ନାରାୟଣ ଦେବେ ଶରଣ ତୁମ୍ଭ ପଣ
ସେହି ପୁଣି ତୁମ୍ଭଙ୍କୁ ଦେବେ ସ୍ୱର୍ଗ ବାସ ।
ଆମ୍ଭ ହିତ କହି ଋଷିଙ୍କ ଶାପ ପାଇ ।
ତଳକୁ ତ ତୁମ୍ଭେ ଆସିଲ ନରଯାଇଁ ।
ଏଣୁ ଆମ୍ଭେ ତୁମ୍ଭଙ୍କୁ ଦେଉଅଛୁ ବର
ବସୋର୍ଧାରଭାଗଟି ହୋଇବ ତୁମ୍ଭର ।
ବସୋଧାରଭାଗକୁ ଖାଇ ଆମ୍ଭ ବୋଲେ
କ୍ଷୁଧା ପିପାସାକୁ ଜିଣିବ ତୁମ୍ଭେ ଭଲେ ।
ବ୍ରହ୍ମଲୋକେ ଯାଇ କରିବ ତୁମ୍ଭ ଘର
ବୋଲାଇବ ଭକତ ବିଷ୍ଣୁ ଦେବଙ୍କର ।
ଏହିରୂପେ ବର ଦେଇଣ ଦେବତାଏ
ସ୍ୱର୍ଗକୁ ଗଲେ ଆହେ ଯୁଧିଷ୍ଠିରରାୟେ ।
ସେହିଦିନୁ ବସୁ ସେବିଲେ ଦେବ ହରି
ସବୁ କଥାଯାକ ମନରୁ ଦୂର କରି ।
ବିଷ୍ଣୁ ବସୁରାଜାଙ୍କ ସେବାକୁ ଜାଣିଲେ
ଗରୁଡ଼କୁ ସେହିଁ ଏମନ୍ତ ଆଜ୍ଞା ଦେଲେ ।
ବ୍ରାହ୍ମଣ ଶାପେ ବସୁ ରହିଛନ୍ତି ତଳେ
ତୁମ୍ଭେ ତାଙ୍କୁ ରଖ ଆକାଶେ ଆମ୍ଭ ବୋଲେ ।
ଗରୁଡ଼ ବିଷ୍ଣୁଙ୍କର ମାନିଣ ବଚନ
ଭୂମି ଭେଦି ମିଳିଲେ ବସୁ ସନ୍ନିଧାନ ।
ବସୁଙ୍କୁ ଧରି ଶୂନ୍ୟମାର୍ଗରେ ଉଡ଼ିଲେ
ଆକାଶ ଦେଶେ ରଖିକରି ଛାଡ଼ିଗଲେ ।
ବିଷ୍ଣୁଙ୍କର କଟାକ୍ଷେ ସେହି ମୁହୂର୍ତ୍ତରେ
ବସୁ ଯାଇ ବସିଲେ ବ୍ରହ୍ମାଙ୍କ ପାଶରେ ।
ସେହି ଦେବରେଟି ଜାଣ ହେ ଯୁଧିଷ୍ଠିର
ଏହି କଥାରେ କିଛି ସନ୍ଦେହ ନ କର ।
କପଟ କରି କଥା ବସୁ ତ କହିଲେ
ବ୍ରାହ୍ମଣ ଶାପେ ଏଣୁ ତଳରେ ରହିଲେ ।
ବିଷ୍ଣୁ ସେବା କରି ପାଇଲେ ବ୍ରହ୍ମଲୋକ
ଏଣୁ ଧର୍ମଟି ଜାଣ ଅଟଇ ଅଧିକ ।
ଯେରୂପେ ନାରଦ ଦେଖିଲେ ଶ୍ୱେତଦ୍ୱୀପ
ସେ ରୂପେ ତା କହିବା ଜାଣ ଧର୍ମନୃପ ।

ନାରଦ ଶ୍ୱେତଦ୍ୱୀପ ନିବାସୀଙ୍କି ଦେଖି
କୃଷ୍ଣଙ୍କୁ ସ୍ତୁତି କଲେ ହୋଇ ଅତି ସୁଖୀ ।
ନିର୍ଗୁଣ ଅରୂପ ନେତ୍ରଜ୍ଞ ସନାତନ
ନିଷ୍କ୍ରିୟ ସ୍ୱାମୃତଯୋନି ତ୍ରିଗୁଣପ୍ରଧାନ ।
ଋତଧାମ ଆଦିଦେବ ଯେ ସଦସତ
ପୁରୁଷୋତ୍ତମାନଙ୍କ ପୁରୁଷ ଅବ୍ୟକ୍ତ ।
ବସୁଦେବ ପରଜାପତି ବନସ୍ପତି
ବ୍ରହ୍ମ ଗୁହ୍ୟ ପୂର୍ବନିବାସ ଯଶସ୍ୱତି ।
ସପ୍ତ ମହାଭାଗ ଦିକ୍‌ପତି ବାଚସ୍ପତି
ଯଜ୍ଞଗରଭ ଯଜ୍ଞ ଯୋନି ଦିବସ୍ପତି ।
ଯଜ୍ଞଭାଗ ମହାଯଜ୍ଞ ମରୁତ୍‌ପତି
ବୈକୁଣ୍ଠ ପୁରୁହୂତ ପଞ୍ଚକର୍ତ୍ତୃପତି ।
ଯଜ୍ଞସମ୍ଭବ ଯଜ୍ଞହୃଦ ମାୟାଧର
ପଞ୍ଚରାତ୍ରିକ ପରସ୍ୱାମୀ ଆଭାସୁର ।
ଯଜ୍ଞସୂତ ପରିନିର୍ମିତ ଯେ ବରୁଣ
ବିଶ୍ୱରୂପ ସୁସ୍ନାତ ଅବ୍ୟକ୍ତ ନିଧନ ।
ଯଜ୍ଞ ବ୍ରହ୍ମକାୟିକ ପଞ୍ଚଯଜ୍ଞଧର
ସାଂଖ୍ୟଯୋଗ ଅନାଦି ଯଜ୍ଞଭାଗହର ।
ବିଶ୍ୱେଶ ପରମଯାଜ୍ଞିକ ଜଗନ୍ନାଥ ।
ପଞ୍ଚାଗ୍ନି ତ୍ରିସୌପର୍ଣ୍ଣ ଓଁ କାରୋଽମୃତେଶୟ ।
ପ୍ରାଗ୍‌ଜ୍ୟୋତିଷ ଷଡ଼ଙ୍ଗାଧାର କର୍ଣ୍ଣଧର
ହିରଣ୍ୟେଶୟ ଜଷପୃଷ୍ଠ ବଷଟ୍‌କାର ।
ଜଗଦନ୍ୱୟ କୁଶେଶୟ ବ୍ରହ୍ମେଶୟ
ବିଶ୍ୱକ୍‌ସେନ୍ ଦେବଶୟ ପଦ୍ମେଶୟ ।
ବୈଖାନସ ତ୍ରିନାଚିକେତ ପୁରୁହୂତ
ଫେନପାଚାର୍ଯ୍ୟ ଦିଗଭାନୁପୁରୁଷ୍ଟୁତ ।
ପଞ୍ଚମହାକଳ୍ପ ଯୁଗାଦି ବ୍ରତଧର
ପୂର୍ବାଗର୍ଭ ଜ୍ୟେଷ୍ଠ ସମାଗାଅବଶିର ।
ଅନନ୍ତଗତି ବାଳଖିଲ୍ୟ ଭଗ୍ନଯୋଗ
ଯୁଗମଧ୍ୟ ଯୁଗନିଧାନାନନ୍ତଯୋଗ ।
ଅପରାଜିତ ବ୍ୟୋମ କୈଶିକାଖଣ୍ଡଳ ।
ଯାମ୍ୟ ମହାଯାମ୍ୟ ହେ ଭକତ ବତ୍ସଳ ।
ବ୍ରାହ୍ମଣ୍ୟଦେବାମଧ୍ୟେ ସମୁଦ୍ରାଧିବାସ
ଅବ୍ୟକ୍ତ ମଧ୍ୟ ବ୍ରତାବାସ ଦମାବାସ ।
ବିଦ୍ୟା ଆବାସ ଯଶୋବାସ ଲକ୍ଷ୍ୟବାସ
କାର୍ତ୍ତ୍ୟାବାସ ଶ୍ରୀବାସ ସର୍ବଭୂତେବାସ ।

ହରିହସ୍ତ ଯେ ପ୍ରମର୍ଦ୍ଦନ ମହାବୃକ୍ଷ
ମହତ ଯଜ୍ଞଭାଗ ହରିମେଧ ବୃକ୍ଷ ।
ବାସୁଦେବ ହେ ସର୍ବଛନ୍ଦକ ନିୟମ
ଶ୍ରୀ ହରି ହରି ଅଜ ନିବୃତ୍ତିଭରମ ।
ବରପ୍ରଦ ହେ ପୁରୋଡ଼ାଶ ଭାଗହର
ଅପ୍ରତର୍କ୍ୟ ବ୍ରହ୍ମାଗ୍ର୍ୟ ପ୍ରଜାସର୍ଗକର ।
ହିରଣ୍ମୟ ଚିହ୍ନଶିଖଣ୍ଡୀ ପ୍ରବଚନ
ଛିନ୍ନତୃଷ୍ଣା ଅଗ୍ରାହ୍ୟ ସର୍ବଦରଶନ ।
ପରଜାନାଶକର ପ୍ରବଚନଗତି
ମହାଭୂତ ମହାନିୟମ ସର୍ବଗତି ।
ବ୍ରହ୍ମରୂପ ବ୍ରାହ୍ମଣପ୍ରିୟ ଅବଜ୍ଞେୟ
ପୃଶ୍ନି ଗର୍ଭ ଯମ ବ୍ରତବୃତ୍ତ ବେଦନିସ୍ୟ ।
ଗଦାଧର ମହାଶରୀର ବିଶ୍ୱମୂର୍ତ୍ତି
ସର୍ବତୋବୃତ୍ତ ସୂର୍ଯ୍ୟାଚଳ ମହାମୂର୍ତ୍ତି ।
ଛିନ୍ନସଂଶୟ ମହାପବିନ ଈଶ୍ୱର
କରୁଛି ଦେଖିବାକୁ ତୁମ୍ଭଙ୍କୁ ଜ ହାର ।
ଏ ସ୍ତବକୁ ମହାପୁରୁଷସ୍ତବକ ବୋଲି
ନି କାଳେ ଗୁଣିଲେ ପାତକ ହୋଏ ଦଳି ।
ହେ ଯୁଧିଷ୍ଠିର ରାଜା ରଥିକୁଳରାଣ
ଏ ଅନ୍ତେ ଯା ହେଲା ତା ମନ ଦେଇ ଶୁଣ ।
ନାରଦଙ୍କର ସ୍ତୁତି ଘେନ ଭଗବାନ
ଛାଡ଼ା ହେଲେ ନାରଦଋଷି ସନ୍ନିଧାନ ।
ଶ୍ୱେତ ପୀତ ରକତ ଦିଶୁଅଛି କାନ୍ତି
ନିଉନ ହେଉଅଛି କୋଟି ସୂର୍ଯ୍ୟ ଦ୍ୟୁତି ।
ସହସ୍ରପାଦ ସହସ୍ରାକ୍ଷ ଶତଶିର
ଦଶଶତବାହୁ ଯେ ସହସ୍ରଉଦର ।
ହୋଇ ସୁଖେ ପ୍ରଣବ ଉଚାର କରନ୍ତି
ଦଣ୍ଡ କମଣ୍ଡଳୁ ଅଜିନ ବହିଛନ୍ତି ।
ଏହିରୂପେ ନାରଦ ଦେଖି ବିଷ୍ଣୁରୂପ
ମନେ କଲେ ଆଜ ଛାଡ଼ିଲା ମୋର ପାପ ।
ବିଷ୍ଣୁଙ୍କର ଶ୍ରୀପାଦପଦ୍ମରେ ସଯତ
ହୋଇ ସେ ମହାମୁନି କଲେ ଦଣ୍ଡବତ ।
ବିଷ୍ଣୁ ତାହାଙ୍କ ଦଣ୍ଡବତ ସେବା ଦେଖି
ବୋଇଲେ ଉଠ ହେ ନାରଦ ହୋଇ ସୁଖୀ ।
ମୋ ବିନା ଆନ କଥା ନ ଜାଣନ୍ତେ ତୁମ୍ଭେ
ତୁମ୍ଭଙ୍କୁ ଆସି ଦେଖାଦେଲୁଁ ଜାଣ ଆମ୍ଭେ ।

ମୋର ମୂର୍ତ୍ତିମାନେ ଧର୍ମଙ୍କ ସୁତ ହୋଇ
ଜନମିଛନ୍ତି ତାଙ୍କୁ ଭଜ ତୁମ୍ଭେ ଯାଇ ।
ଇଚ୍ଛାଥିଲେ ବର ମାଗ ହେ ଋଷିବର
ନୋହିଲେ ଯାଅ ମର୍ତ୍ତ୍ୟେ କରିଅଛ ଘର ।
ନାରଦ ବୋଇଲେ ମୁଁ ତୁମ୍ଭ ରୂପ ଦେଖି
ହେଲିଣି ସବୁ ଦୁଃଖମାନଙ୍କୁ ଉପେକ୍ଷି ।
ଆଉ ବର କରିଣ ମାଗିବାକୁ କିସ
ଥିଲା ପରି ତ ପାଉନାହିଁ ମୋ ମାନସ ।
ବିଷ୍ଣୁ ବୋଇଲେ ଆହେ ଶ୍ୱେତଦ୍ୱୀପେ ଯେତେ
ଲୋକ ଛନ୍ତି ମୋ ରୂପ ଜାଣ ଏ ସମସ୍ତେ ।
ଇନ୍ଦ୍ରିୟମାନଙ୍କେ ଅଟନ୍ତି ଅବଜ୍ଞେୟ
ଛାଡ଼ିଅଛନ୍ତି ସତ୍ତ୍ୱ ରଜ ତମ ତ୍ରୟ ।
ସବୁ ପ୍ରାଣୀଙ୍କର ଦେହରେ ରହିଥାନ୍ତି
ଦେହ ନାଶଗଲେ ନାଶକୁ ଭଜନ୍ତି ।
ଅଜ ନିତ୍ୟ ଶାଶ୍ୱତ ନିର୍ଗୁଣ ନିଷ୍କଳ
ଚଉବିଂଶପୁରୁଷ ନାମ ଋଷିବାଳ ।
ଋଷିମାନେ ଯୋଗରେ ଯାହା ଦେହେ ରହି
ଅଛନ୍ତି ସୁଖରେଠି ମୁକ୍ତିକ ପାଇ ।
ତାହାଙ୍କୁନି ହେ ବାସୁଦେବ ବିଷ୍ଣୁ ବୋଲି
ଶୁଭାଶୁଭକର୍ମ ଛାଡ଼ିଛନ୍ତି ଭାଳି ।
ପଞ୍ଚମହାଭୂତେ ରହିଲେ ଆତ୍ମା ଯାଇ
ଜନ୍ମ ହେଲ ବୋଲି ବଚନ ବାହାରଇ ।
ହେନ୍ତ ଆତମାଟିକ ବୋଲି ସଂକର୍ଷଣ
ବିଷ୍ଣୁ ବୋଲକରି ନାରଦ ଋଷି ଜାଣ ।
ପ୍ରଳୟରେ ପ୍ରାଣୀଏ ସଂକର୍ଷଣ ଦେହେ
ରହନ୍ତିଟି ଜାଣ ନ ପଡ଼ି ତୁମ୍ଭେ ମୋହେ ।
ସଂକର୍ଷଣଠାରୁ ହୋଇଲେ ପ୍ରଦ୍ୟୁମନ
ପ୍ରଦ୍ୟୁମନ କଲେ ଜଗତ ସରଜନ ।
ପ୍ରଦ୍ୟୁମନଙ୍କଠାରୁ ହେଲେ ଅନିରୁଦ୍ଧ
ଅହଙ୍କାର ନାମ ଯେ ତାଙ୍କର ପ୍ରସିଦ୍ଧ ।
ମୋହଠାରୁ ଏ ବ୍ରହ୍ମବିଷ୍ଣୁ ହୋଇ ଜାତ
ସର୍ଜନା ପାଳନା କରନ୍ତି ଏ ଜଗତ ।
ମୋର ହୃଦୁଁ ବ୍ରହ୍ମା ଜନ୍ମ ହୋଇଛନ୍ତି,
ମୋ ଲଲାଟୁଁ ଜନମ ହେଲେ ଉମାପତି ।
ଏକାଦଶ ରୁଦ୍ର ମୋ ଦକ୍ଷିଣ ପାର୍ଶ୍ୱରେ
ଲାଗିଅଛନ୍ତି ଅତି ମାନସ ତୋଷରେ ।

ବାମପାର୍ଶ୍ୱରେ ମୋର ଦ୍ୱାଦଶ ଆଦିତ୍ୟ
ଆଗରେ ଅଷ୍ଟବସୁ ହୋଇଛନ୍ତି ସ୍ଥିତ ।
ଅଶ୍ୱିନୀକୁମର ମୋ ରହି ପୃଷ୍ଠଦେଶ
ସ୍ତୁତିକ କେରଛନ୍ତି ବହୁଣ ଉଲ୍ଲାସ ।
ସପ୍ତଋଷି ବେଦ ଯଜ୍ଞ ପ୍ରଜାପତି
ଅମୃତ ମହୌଷଧି ପୃଥ୍ୱୀ ସରସ୍ୱତୀ ।
ସାବିତ୍ରୀ ଶିଖୀ ଧ୍ରୁବ ସର ଅମ୍ଭୋଧର
ନିୟମ ଯମ ତପ ସରିତ ସାଗର ।
ଏ ସମସ୍ତ ମୋହର ପାଖେଟି ଅଛନ୍ତି
ମୋ ବିନା ଏହାଙ୍କର ନାହିଁ କେହି ଗତି ।
ମୂର୍ତ୍ତିମନ୍ତ ଅମୂର୍ତ୍ତିମନ୍ତ ପିତୃମାନେ
ଅଛନ୍ତି ନାରଦ ଦେଖ ମୋ ଅପଘନେ ।
ଦେବତା ପିତୃଙ୍କର ପିତା ମୁଁ ଅଟଇ
ଯେ ପିତୃକାର୍ଯ୍ୟ କରେ ସେ ମୋତେ ତୋଷଇ
ହୟଗ୍ରୀବ ରୂପେ ମୁଁ ସମୁଦ୍ରରେ ଥାଇ
ହବ୍ୟ କବ୍ୟ ସୁଖେ ମୁଁ ମୁଖେ ହିଏ ଖାଇ ।
ମୋହରଠାରୁ ବ୍ରହ୍ମା ହୋଇ ଉତପତ୍ତି
ଯାଗ କରିଣ ମୋତେ ପୂଜା କରୁଛନ୍ତି ।
ମୁଁ ତାଙ୍କୁ ଦେଇଅଛି ବର କରି ଯାହା
ମୋହଠାରୁ ଏବେ ଶୁଣ ହେ ଋଷି ତାହା ।
କଳ୍ପ ଆଦ୍ୟେ ତୁମ୍ଭେ ମୋହର ପୁତ୍ର ହେବ
ଲୋକମାନଙ୍କରେ ଅଧ୍ୟକ୍ଷ ବୋଲାଇବ ।
ତୁମ୍ଭେ ଯେଉଁ କଥାକୁ କରିବ ମର୍ଯ୍ୟାଦା
ସବୁ ଲୋକଙ୍କର ସେ ହେବ ବ୍ରହ୍ମବିଦ୍ୟା ।
ଯେଉଁମାନେ ତୁମ୍ଭଙ୍କୁ ମାଗୁଥିବେ ବର
ତାଙ୍କୁ ଯା ବୋଲିବ ସେ ହୋଇବ ନିକର ।
ସୁର ଅସୁରଙ୍କର ହୋଇବ ଉପାସ୍ୟ
ବ୍ରାହ୍ମଣାଦି ଋଷିଏ ହେବେ ତୁମ୍ଭ ଦାସ ।
ଦେବକାର୍ଯ୍ୟ ପଡ଼ିଲେ କରିବ ନିଯୁକ୍ତ
ମୋତେ, ଦୈତ୍ୟକୁଳ କରିବ ମୁହିଁ ହତ ।
ଏହିରୂପେ ବ୍ରହ୍ମାଙ୍କୁ ବର ଦେଇ କରି
ନିବୃତ୍ତିପର ହୋଇ ଗଲି ତପଶ୍ଚାରି ।
ନିବୃତ୍ତିରୁ ବଡ଼ ନାରଦ ଋଷିବର
ସୁଖ ଥିବାପରି ନାହିଁ ଏ ମର୍ତ୍ତ୍ୟପୁର ।
ସାଙ୍ଖ୍ୟମାନେ ଯେ ମୋତେ କପିଳ ବୋଲନ୍ତି
ଯୋଗଶାସ୍ତ୍ରେ ହିରଣ୍ୟଗର୍ଭ ଉଚ୍ଚାରନ୍ତି ।

ଆକାଶେ ସୂର୍ଯ୍ୟ ହୋଇ କରେ ମୁଁ ସଞ୍ଚାର
ଔଷଧି ମାନଙ୍କ ଅଟେ ମୁଁ ଈଶ୍ୱର ।
ପ୍ରଳୟରେ ସବୁପ୍ରାଣୀଙ୍କି ଗର୍ଭେ ରଖି
ଏକାର୍ଣ୍ଣବ ଜଳରେ ହୋଇ ଅଛି ସୁଖୀ ।
ପ୍ରଳୟ ଅନ୍ତେ ପୁଣି ଜଗତ ସର୍ଜନା
ବ୍ରହ୍ମାରୂପେ କରିବ ମୁହିଁ ମହାମନା ।
ବାସୁଦେବମୂର୍ତ୍ତି ମୋହର ସଙ୍କର୍ଷଣ
ଦେବଙ୍କୁ ସର୍ଜନା କରିବେ ଋଷିଗଣ ।
ସଂକର୍ଷଣଙ୍କଠାରୁ ପ୍ରଦ୍ୟୁମନ ହେବେ
ପ୍ରଦ୍ୟୁମ୍ନ ପୁତ୍ର ଅନିରୁଦ୍ଧ ବୋଲାଇବେ ।
ଅନିରୁଦ୍ଧଙ୍କର ତନୟ ବ୍ରହ୍ମା ହୋଇ
ପ୍ରାଣୀଙ୍କି ସରଜିବେ ମୋର ଆଜ୍ଞା ପାଇ ।
ସୂର୍ଯ୍ୟଙ୍କର ଉଦୟ ଅସ୍ତ ହେଲି ପରି
ସୃଷ୍ଟି ସଂହାରକ ପାଳକ ତପଶ୍ଚାରି ।
ବରାହ ରୂପ ଧରି ପାତାଳରୁ ମୁହିଁ
ମହୀକି ଉଦ୍ଧରିବି ସନ୍ଦେହ ଏ ନାହିଁ ।
ହିରଣ୍ୟାକ୍ଷ ରାକ୍ଷସ ମୋର ଦୁଇଦାନ୍ତେ
ମରିକରି ଭେଟିବ ଯାଇ ପ୍ରେତପତେ ।
ନରସିଂହରୂପେ ହିରଣ୍ୟକଶିପୁର
ବୁକୁ ବିଦାରିବି ନାରଦ ଋଷିବର ।
ଅବଧ ହେବ ବଳି ସୁରାସୁରଙ୍କରେ
ବାମନରୂପେ ତାକୁ ସ୍ଥାପିବି ପାତାଳେ ।
ତ୍ରେତାଯୁଗେ ପରଶୁରାମ ମୁଁ ହୋଇତ
ସମସ୍ତ କ୍ଷତ୍ରିୟଙ୍କୁ ବିନାଶ କରିବି ।
ତ୍ରେତା ଦ୍ୱାପରର ସେ ସନ୍ଧ୍ୟାଂଶରେ ମୁହିଁ
ରଘୁକୁଳେ ଜନ୍ମିବି ରାମ ନାମ ବହି ।
ମୋ ଭାର୍ଯ୍ୟା ସୀତାଙ୍କୁ ହରିବ ଦଶଶିର
ବାନର ସହାୟରେ ହରିବି ତା ଶିର ।
କଳି ଦ୍ୱାପରର ସନ୍ଧିରେ ମୁଁ ମାଥୁର-
ପୁରେ ଜନମିବି ହେ ଋଷିକୁଳବର ।
ମଥୁରାରେ କଂସକୁ କରିଣ ସଂହାର
ସମୁଦ୍ରରେ କରିବି ଦ୍ୱାରକା ନଗର ।
ନରକ ଭୌମ ବାଣ ଆଦିଙ୍କି ସଂହାରି
ରୁଦ୍ରଙ୍କ ସଙ୍ଗେ ହେବ ଅସ୍ତ୍ର ସଂଗ୍ରାମରି ।
ସଉଭପୁରବାସୀମାନଙ୍କୁ ସଂହାର
କରିବି ତାଙ୍କୁ ବର ଦେଇଥିବେ ହର ।

ଗାର୍ଗତେଜେ କାଳଯବନ ଜାତ ହୋଇ
ମୋହ ଦେଖି ସେ ଭେଟିଯିବ ପ୍ରେତସାଇଁ
ଜରାସନ୍ଧ ରାଜା ମୋହର ବୁଦ୍ଧିବଳେ
ପ୍ରାଣ ଦେବେ ଭୀମସେନଙ୍କ କରତଳେ ।
ଯୁଧିଷ୍ଠିରଙ୍କର ଯାଗରେ ଶିଶୁପାଳ
ମୋ ଚକ୍ର ବାଜକରି ଲୋଟିବ ଭୂତଳ ।
ଅରଜୁନ ମୋହର ସହାୟ ହୋଇବେ
ଗାଣ୍ଡୀବବାଣମୁଖେ ବୀରଙ୍କୁ ଗିଳିବେ ।
ଅର୍ଜୁନଙ୍କ ହାତରେ କୁରୁଙ୍କୁ ସଂହାର
କରି, କରିବି ମୁଁ ରାଜନ ଯୁଧିଷ୍ଠିର ।
ନର ନାରାୟଣ ସେ ଋଷି ଅରଜୁନ
ମୁହିଁ ବୋଲି କରି ହେ ନାରଦ ଟି ଜାଣ ।
ଯାଦବଙ୍କୁ ଶେଷରେ ସଂହାର କରିବି
ଦ୍ୱାରକାକୁ ନାଶିଣ ନିଜପୁରେ ଯିବି ।
ହଂସ କୂର୍ମ ମତ୍ସ୍ୟ ନୃସିଂହ ପର୍ଶୁରାମ
ବରାହ କୃଷ୍ଣ କଲ୍କି ବାମନ ଶ୍ରୀରାମ ।
ଏମାନେ ମୋର ପ୍ରାଦୁର୍ଭାବଟି ଅଟନ୍ତି
ଦେବକାର୍ଯ୍ୟ ସରିଲେ ମୋଠାକୁ ଯାଆନ୍ତି ।
ଏହିରୂପେ ବହୁତ ପ୍ରାଦୁର୍ଭାବମାନେ
ରହିଲେଣି ଆସି ମୋହର ଅପଘନେ ।
ତୁମ୍ଭପରି ମୋତେ ନାହାନ୍ତି ବ୍ରହ୍ମା ଦେଖି
ଆହେ ଋଷିବର ଧନ୍ୟଟି ତୁମ୍ଭ ଆଖି ।
ଏରୂପେ ଆଜ୍ଞା ଦେଇ ଜଗତ-ଈଶ୍ୱର
ଲୁଚାଇ ଦେଲେ ତହିଁ ଆପଣା ଶରୀର ।
ନାରଦ ବିଷ୍ଣୁଙ୍କ ଆଜ୍ଞାରେ ବଦରିକା
ଆଶ୍ରମକୁ ଆସିଲେ ଛାଡ଼ି ମନୁଁ ଦକା ।
ଏରୂପେ ନାରଦ କହାଇ ଋଷିପନ୍ତି
କହିଛନ୍ତି ହୃଦୟେ ବହି ମହାପ୍ରୀତି ।
ଯୁଧିଷ୍ଠିର ବୋଇଲେ ଏ ବଡ଼ ଆଶ୍ଚର୍ଯ୍ୟ
ଏହା ଜାଣି ନାହାନ୍ତି ବ୍ରହ୍ମା ଦେବରାଜ ।
ବୋଲ ଯାହା ମୋହର ଆଗରେ କହିଲ
ମୋ ହୃଦୟ ମଧ୍ୟେ ତ ସନ୍ଦେହ ରଖିଲ ।
ନାରଦଙ୍କୁ ସୁତ ତ ବ୍ରହ୍ମା କରିଛନ୍ତି
ନାରଦ ତାଙ୍କଠୁଁ କି ହେଲେ ବଡ଼ ଯତି ।
ଭୀଷ୍ମ ବୋଇଲେ ଆହେ ବ୍ରହ୍ମାଙ୍କ ଗୋଚର
ସବୁ ହୋଇଛି ହେ ପାଣ୍ଡବ-ନରବର ।
ବ୍ରହ୍ମଲୋକରେ ଯେତେ ସିଦ୍ଧମାନ ଥିଲେ
ନାରଦ ବିଷ୍ଣୁକଥା ତାଙ୍କୁ ଶୁଣାଇଲେ ।
ସିଦ୍ଧଙ୍କରଠାରୁ ଶୁଣିଣ ଦିବାକର
ବାଲଖିଲ୍ୟ ଆଗରେ କଲେ ସେ ପ୍ରଚାର ।
ଗଣନାରେ ସେ ବାଲଖିଲ୍ୟ ଛଅଷଠୀ–
ସହସ୍ରଯାକ ସେ ଅଟନ୍ତି ତପୋନିଷ୍ଠୀ ।
ବାଲଖିଲ୍ୟାଙ୍କଠାରୁ ଜାଣ ଦେବଗଣ
ଶୁଣିଲେଟି ବିଷ୍ଣୁ ଦେବଙ୍କ ଆଚରଣ ।
ଦେବଙ୍କଠାରୁ ତା ଅସିତ ଶିକ୍ଷା କଲେ
ପିତୃଙ୍କର ଆଗରେ ବସିଣ ବାଢ଼ିଲେ ।
ମୋ ବାବୁ ପିତୃମାନଙ୍କରଠାରୁ ଶୁଣି
ମୋତେ କହିଛନ୍ତି ହେ ପାଣ୍ଡବ ନୃମଣି ।
ତୁମ୍ଭେ ପରାଶରବାରୁ ଶୁଣିଥିଲ ଯାହା
ବିସ୍ତାରି ତା କହିଲି ଶୁଣ ନରନାହା ।
ଯେଉଁମାନେ ବସି ଏ ପୁରାଣ ଶୁଣନ୍ତି
ସବୁ ଛାଡ଼ି ବ୍ରହ୍ମକୁ ଭଜନ କରନ୍ତି ।
ଏ ଆଖ୍ୟାନ କୃଷ୍ଣଭକତ ବିନା ଲୋକ
ଆଗରେ ଯେ କହଇ ପାଏ ସେ ନରକ ।
ମୋଠାରୁ ଯେତେ ଉପାଖ୍ୟାନ ନରବର
ଶୁଣିଲ ତହିଁରେ ଟି ଅଟଇ ଏ ସାର ।
ଯେଉଁ ଲୋକ ଏହାକୁ କର୍ଣ୍ଣରେ ଶୁଣଇ
ନୋହିଲେ ଏକମନ ହୋଇଣ ପଢ଼ଇ ।
ଇହ ପରଲୋକରେ ରହିଣ କୀରତି
ଭଗବାନ ଦେହରେ ମିଶଇ ଝଟତି ।
ରୋଗେ ଯେ ଆର୍ତ୍ତି ହୋଇ ଶୁଣେ ଏ ଆଖ୍ୟାନ
ରୋଗ ଛୁଇଁ ନ ପାରେ ତା'ର ଅପଘନ ।
କାମନା କଲି ଲୋକେ କାମନାକୁ ପାଏ
ମୋକ୍ଷକାମୀ ଲୋକ ମୁକତ ହୋଇଯାଏ ।
ଆହେ ଯୁଧିଷ୍ଠିର କୃଷ୍ଣଙ୍କୁ ସବୁଦିନେ
ସବୁ ଛାଡ଼ିଣ ପୂଜା କର ମୋ ବଚନେ ।
ଆହେ ଜନ୍ମେଜୟ ପାଣ୍ଡବ-ନରମଣି
ଭୀଷ୍ମଙ୍କଠାରୁ ଏ ଆଖ୍ୟାନକୁ ଶୁଣି ।
ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ ବୋଲିଣ ମନେ କଲେ
ଶ୍ରୀକୃଷ୍ଣଙ୍କ ପାଦେ ଶରଣାଗତ ହେଲେ ।
ନୈମିଷଅରଣ୍ୟେ ସଉତି ପୌରାଣିକ
କହୁଥିଲେ, ତା ଶୁଣୁଥିଲେ ଶଉନକ ।

ସିଦ୍ଧଙ୍କ କହିବା ଆଖ୍ୟାନ କହିସାରି
ବୋଇଲେ ଶୁଣ ହେ ସକଳ ତପସ୍ୱୀରି ।
ଜନ୍ମେଜୟ ଆଗରେ ବଇଶମ୍ପାୟନ
ଏହିରୂପେ କହିଲେ ଶୁଣିଛି ମୋ କାନ ।
ଏବେ ମୁଁ କହୁଅଛି ଭଜ କୃଷ୍ଣ ରୂପ
ଛାଡ଼ିଦେଇ ହୃଦରୁ ଯୋଗ ଜପ ତପ ।

—O—

## ନାରାୟଣଙ୍କର ପ୍ରବୃତ୍ତି ମାର୍ଗ

ଶୌନକ ବୋଇଲେ ଯେଯାଗରେଗୋବିନ୍ଦ
ଭାଗକୁ ନେଲେ ଆଗ ବହିଣ ଆନନ୍ଦ ।
ନିବୃତ୍ତିଧର୍ମ ଆଗ ସେ ତ କହୁଥିଲେ
ପଛେ କାହିଁପାଇଁ ପ୍ରବୃତ୍ତିଧର୍ମ କଲେ ।
ଦେବତାଙ୍କୁ ଯାଗରେ ଦିଆଇଲେ ଭାଗ
ଏହା ମୋହ ଆଗେ କହ ତ ମହାଭାଗ ।
ସଉତି ବୋଇଲେ ହେ ଜନ୍ମେଜୟ ଆଗେ
ବଇଶମ୍ପାୟନ ଯା କହିଲେ ସରାଗେ ।
ତାହା ତୁମ୍ଭ ଆଗରେ କରିବା ବଖାଣ
ମନ ଦେଇ ଶୌନକ ମହାଋଷି ଶୁଣ ।
ଜନମେଜୟ ରାଜା କଥାନ୍ତରେ ବସି
ବୈଶମ୍ପାୟନଙ୍କୁ ପୁଚ୍ଛିଲେ ହସି ହସି ।
ବ୍ରହ୍ମା ଆଦି ସାତଲୋକରେ ଯେତେ ଲୋକ
ଅଛନ୍ତି କରମରେ ହାରନ୍ତି ବିବେକ ।
ମୋକ୍ଷକୁ ତ ତୁମ୍ଭେ କହିଲ ବଡ଼କରି
ମୋକ୍ଷ ହୋଇବାର ତ ନ ଦେଖି କାହାରି ।
ମୋକ୍ଷଧର୍ମକୁ ଯେବେ ଦେବେ ଆଚରନ୍ତେ
ଅପସରାଙ୍କି ହେବ କମ୍ପା ବିହରନ୍ତେ ।
ମନୁଷ୍ୟ ହୋଇ ମୋକ୍ଷଧର୍ମ କରିବାର
ଜାଣୁଛି ବଡ଼ କଷ୍ଟ ଅଟେ ଋଷିବର ।
ପ୍ରଳୟେ ଦେବେ ତ ମରଣ ଭଜନ୍ତି
ମୋକ୍ଷ ଛାଡ଼ି ଅମୋକ୍ଷେ ଦେଖ ଦଉଡ଼ନ୍ତି ।
ଯାଗଆଦି କ୍ରିୟାରେ ଖାଇ ହବିର୍ଭାଗ
ଆପଣା ଦେହଟିରେ ବଳାଅନ୍ତି ରାଗ ।
ଜାଣିବାର ହୋଇ ଏ କଥା କାହିଁପାଇଁ
ଦେବେ ଆଚରିଲେ କହ ତାହା ବତାଇ ।
ବଇଶମ୍ପାୟନ ବୋଲେ ଜନ୍ମେଜୟ
କହିଅଛନ୍ତି ପରାଶରଙ୍କ ତନୟ ।
ଯାହା ମୋହର ଆଗେ ତାହା ତୁମ୍ଭ ଆଗେ
କହିବି ମନଦେଇ ଶୁଣ ହେ ସରାଗେ ।
ବେଦବ୍ୟାସ ଗୋସାଇଁ ପାଞ୍ଚଶିଷ୍ୟ କଲେ
ଚାରିବେଦ ତୁଲେ ଭାରତ ପଢ଼ାଇଲେ ।
ତୁମ୍ଭେ ପଚାରିଲାର ପରି ଆମ୍ଭେମାନେ
ପଚାରିଲୁ ଦିନେ ବ୍ୟାସଙ୍କ ସନ୍ନିଧାନେ ।
ବ୍ୟାସ ବୋଇଲେ ମୁଁ ତ୍ରିକାଳଜ୍ଞାତା ଅଟେ
ଯାହା ପଚାରୁଛ ଅଛି ମୋ କଣ୍ଠତଟେ ।
ପରମ ଆତ୍ମା ବୋଲି ଯାହାକୁଟି କହି
ଆପଣା କର୍ମେ ମହାପୁରୁଷନ୍ତି ସେହି ।
ମହାପୁରୁଷଙ୍କରଠାରୁ ଅବ୍ୟକତ
ଜାତ ହେଲେ ପ୍ରଧାନ ନାମ ତାଙ୍କ ଖ୍ୟାତ
ଅବ୍ୟକତରୁ ଜାଣ ବ୍ୟକତ ଅଟଇ
ଅନିରୁଦ୍ଧ ନାମକୁ ଜଗତରେ କହି ।
ବ୍ୟକ୍ତ ହୋଇ ବ୍ରହ୍ମାଙ୍କୁ କଲେ ଯେ ନିର୍ମାଣ
ଅହଙ୍କାର ବୋଲି ତ ତାଙ୍କ ନାମ ଜାଣ ।
ପଞ୍ଚମହାଭୂତେ ଯେ ଅହଙ୍କାରୁ ଜାତ
ହୋଇଲେଟି ହୋଇବାପାଇଁ ଏ ଜଗତ
ମହାଭୂତେ ପଞ୍ଚଗୁଣଙ୍କୁ ଜାତ କଲେ
ତହୁଁ ଯେ ହେଲେ ତା କହିବା ଶୁଣ ଭଲେ
ପୁଲସ୍ତ୍ୟ କ୍ରତୁ ଅତ୍ରି ଅଙ୍ଗିରା ବଶିଷ୍ଠ ।
ସ୍ୱାୟମ୍ଭୁବ ପୁଲହ ମରୀଚି ବଶିଷ୍ଠ ।
ଏହି ଆଠୋଟି ଆଠପ୍ରକୃତି ବୋଲନ୍ତି
ବିଶ୍ୱ ଜାତ କରିବା କର୍ତ୍ତାଟି ଅଟନ୍ତି ।
ବ୍ରହ୍ମାଙ୍କର କ୍ରୋଧରୁ ରୁଦ୍ର ଜାତ ହେଲେ
ଆପଣା ପରି ରୁଦ୍ର ଦଶଗୋଟି ସର୍ଜିଲେ ।
ଏକାଦଶ ରୁଦ୍ର ଯେ ଆଠ ଦେବଋଷି
ବ୍ରହ୍ମାଙ୍କ ସମୀପେ ପୁଚ୍ଛିଲେ ଏହା ହସି ।
ଆମ୍ଭଙ୍କୁ ସର୍ଜନା କରିବା ଲୋକ ତୁମ୍ଭେ
କିରୂପେ ପାଳନା କରିବୁଁ କହ ଆମ୍ଭେ ।
ବ୍ରହ୍ମା ବୋଇଲେ ଆହେ ମହାପୁରୁଷଙ୍କୁ
ପଚାରିବା ଏହା ସେ କହିବେ ଆମ୍ଭଙ୍କୁ ।
କହିଲେ ତୁମ୍ଭ ଆମ୍ଭ ବଳ ହେବ କ୍ଷୟ
ଆମ୍ଭେ ତ ଜାଣି ନ ପାରିବା ଏ ନିର୍ଣ୍ଣୟ ।
ବ୍ରହ୍ମାଙ୍କର ବଚନ ଋଷିଏ ଶୁଣିଲେ
କ୍ଷୀର ସମୁଦ୍ର ତୀରେ ଆସିଣ ମିଳିଲେ ।

ଦିବ୍ୟ ବରଷକରେ ସହସ୍ର ବରଷ
ତପ କଲେ ଶୁଖାଇ ଦେହର ମାଉଁସ ।
ବ୍ରହ୍ମା ମଧ୍ୟ ଦେବଙ୍କ ମଧ୍ୟେ ତପ କଲେ
ଘୃତବାହୁକୁ ଉପରକୁ ଟେକିଥିଲେ ।
ତପ-ସିଦ୍ଧ ହୁଅନ୍ତେ ଆସି ନାରାୟଣ
ବୋଇଲେ ଦେବେ ମୋର ବଚନକୁ ଶୁଣ ।
ପ୍ରବୃତ୍ତିଯୁକ୍ତ କର୍ମ କଲେ ତୁମ୍ଭେମାନେ
ରହିବଟି ବଳ ତୁମ୍ଭର ଅପଘନେ ।
ବ୍ରହ୍ମା ତିନିଲୋକଯାଙ୍କର ଗୁରୁ ହେବେ
ଯାଗରେ ପୂଜା ମୋତେ କର ତୁମ୍ଭେ ସର୍ବେ ।
ଏରୂପେ ହେଲେ ମୁଁ କରିବ ତୁମ୍ଭ ଶ୍ରେୟ
ଛୁଡ଼ ଦିଅ ସମସ୍ତେ ହୃଦୟରୁ ଭୟ ।
ଏହା ଶୁଣିଣ ଦେବେ ବ୍ରହ୍ମାଙ୍କର ତୁଲେ
ବଇଷ୍ଣବ ନାମକ ଯାଗ ଆରମ୍ଭିଲେ ।
ବିଷ୍ଣୁଙ୍କୁ ଆଗ ଭାଗ ଦେଇ ଋଷିମାନେ
ପଛେ ଦେଲେ ଦେବଙ୍କ ଭାଗ ତୋଷମନେ ।
ସେକାଳେ ଅନ୍ତର୍ଦ୍ଧାନେ ଥାଇ ନାରାୟଣ
ବୋଇଲେ ଦେବେ ମୋର ବଚନକୁ ଶୁଣ ।
ଯେଉଁ ଭାଗ ମୋତେ ହେ ଦେଲ ଏ ଯାଗରେ
ଖାଇଲି ଟି ଜାଣ ତାହା ମୁଁ ସର୍ବଗରେ ।
ପ୍ରୀତ ହୋଇ ତୁମ୍ଭଙ୍କୁ ପ୍ରବୃତ୍ତି-ମାରଗ
ଦେଇଛୁ ସଂସାରେ ବାଢ଼ ତା ମହାଭାଗ ।
ପ୍ରତିଯୁଗରେ ତୁମ୍ଭେ ମୋତେ ପୂଜା କରି
ପ୍ରବୃତ୍ତିମାର୍ଗଙ୍କରେ ହେବ ଅଧିକାରୀ ।
ମୋତେ ଯେଉଁ ରୂପରେ ଦେଲ ତୁମ୍ଭେ ଭାଗ
ତୁମ୍ଭେ ସେହିରୂପେ ଖାଇବ ଯାଗଭାଗ ।
ମହୀରେ ମନୁଷ୍ୟ ତ ବହୁତ ଜନ୍ମିବେ
ଯାଗ ଭାଗ ଦେଇ ତୁମ୍ଭଙ୍କୁ ସ୍ୱର୍ଗ ଯିବେ ।
ଯାଗ ନିମିତ୍ତରେ ଅଉଷଧି ନିର୍ମିତ
ହୋଇଛୁ ଦେବେ ତହିଁ ହୋଇବେ ତୃପତ ।
ମରୀଚ ଅତ୍ରି କ୍ରତୁ ବଶିଷ୍ଠ ପୁଲହ
ଅଙ୍ଗିର ପୁଲସ୍ତ୍ୟ ଏ ସାତ ଋଷିସିଂହ ।
ପ୍ରବୃତ୍ତିଧରମରେ ହୋଇବେ କରତା
କର୍ମୀ ଲୋକେ ଏହାଙ୍କୁ ବୋଲିବେ ଦେବତା
ସନାତନ ସନକ କପିଳ ସନନ୍ଦ
ସନତ୍କୁମାର ସନନ୍ଦ ତପୋବନ୍ତ ।

ମୋକ୍ଷଶାସ୍ତ୍ର କରତା ହୋଇବେ ଏମାନେ
ପ୍ରବୃତ୍ତିକଥାଟିକି ନ ଜାଣି ସ୍ୱପନେ ।
ପ୍ରବୃତ୍ତି ନିବୃତ୍ତିରେ ମର୍ମ ତ ଦିଓଟି
ଯେ ଯାହା କରିବ ସେ ଭୁଞ୍ଜିବ ଫଳଟି ।
ଏ ବ୍ରହ୍ମା ମୋହଠାରୁ ହୋଇଛନ୍ତି ଜାତ
ବରରେ ପାଳିବେ ତୁମ୍ଭଙ୍କୁ କରି ସୁତ ।
ତାଙ୍କ ଲଲାଟରୁ ଯେ ରୁଦ୍ର ଜାତ ହୋଇ—
ଛନ୍ତି ସେ ମଧ୍ୟ ବର ଦେବେ ତୋଷ ବହି ।
ସତ୍ୟଯୁଗରେ ପଶୁହିଂସା ନ କରିବ
ପିଠୋଉପଶୁ ମାରି ଯାଗେ ବଳ ଦେବ ।
ଚତୁଷ୍ପାଦଧର୍ମ ତ ଏ ଯୁଗ ଅଟଇ
ଛେଳିବେକ ମୋଢ଼ିବା ଅଧିକାର ନାହିଁ ।
ତ୍ରେତାଯୁଗେ ଧର୍ମ ତ ହେବେ ପାଦେ ହୀନ
ଏଣୁ ଯାଗେ ନ ନେବ ପଶୁଙ୍କ ଜୀବନ ।
ଦ୍ୱାପରରେ ଦୁଇପାଦ ଧରମ ହାନ—
ହେବାରୁଟି ନେବେ ସେ ପଶୁ ପ୍ରାଣ ଯେନ
କଳିଯୁଗେ ପାଦକେ ଧର୍ମ ତ ରହିବ
ଯାଗ କରିବାର କଥାଟି ନିବର୍ତ୍ତିବ ।
ଏହା ଶୁଣି ଦେବଙ୍କ ତୁଲେ ଋଷିଗଣ
ବୋଇଲେ ଶୁଣ ଆରେ ଜଗତ କାରଣ ।
କଳିଯୁଗେ ଧର୍ମ ତ ପାଦକେ ରହିବ
କହ ଆମ୍ଭମାନଙ୍କ କି ଦଶା ହୋଇବ ।
ଶ୍ରୀହରି ବୋଇଲେ କଳିରେ ଧର୍ମ ଯହିଁ—
ଥିବ ବାସ କରିବ ତୁମ୍ଭେମାନେ ତହିଁ ।
ତେବେ ତୁମ୍ଭମାନଙ୍କୁ ହାରିବ ଅଧର୍ମ
ସବୁକାଳେ ପ୍ରକାଶୁଥିବ ତେଜକର୍ମ ।
ଏରୂପେ ଭଗବାନଠାରୁ ବାଣୀ ଶୁଣି
ପାଦେ ନମି ମେଲାଣି ହେଲେ ସେହିକ୍ଷଣି ।
ଯାନ୍ତେ ଦେବତା ଏ ରହିଲେ ଚତୁର୍ମୁଖ
ଏକା ହୋଇ ଦେଖିବାପାଇଁ ହରି ମୁଖ ।
ବ୍ରହ୍ମାଙ୍କର ରହିବା ନାରାୟଣ ଜାଣି
ହୟଗ୍ରୀବ ମୂର୍ତ୍ତିକି ଧରି ସେହିକ୍ଷଣି ।
ବ୍ରହ୍ମାଙ୍କର ଆଗରେ ହେଲେ ଆସି ଛିଡ଼ା
ବାହାରୁଛି ଶ୍ରୀମୁଖୁଁ ବେଦ ବଡ଼ା ବଡ଼ା ।
ବ୍ରହ୍ମା ସେ ହୟଗ୍ରୀବ ମୂରତିକି ଦେଖି
କର ଦୁଇ ଯୋଡ଼ି ରହିଲେ ହୋଇ ସୁଖୀ ।

ବିଷ୍ଣୁ ବୋଇଲେ ହେ ତୁମ୍ଭଙ୍କୁ ଦେଇ ଭାର
ନିଶ୍ଚିନ୍ତ ହୋଇଅଛୁ ଜାଣ କୃଶଧର ।
ଦେବକାର୍ଯ୍ୟକୁ ଯେବେ ନ ପାରିବ କରି
ତେବେ ତା ମୁଁ କରିବ ଭବେ ଅବତରି ।
ଏହା କହି ବିଷ୍ଣୁ ହୁଅନ୍ତେ ଅନ୍ତର୍ଦ୍ଧାନ
ଆସିଲେ ଚତୁର୍ମୁଖ ବାହୁଡ଼ି ସ୍ୱସ୍ଥାନ ।
ଏରୂପେ ପ୍ରବୃତ୍ତି ନିବୃତ୍ତି ମାର୍ଗ ଦୁଇ
କରିଛନ୍ତି ଜାଣ ହେ ଜଗତଗୋସାଇ ।
ଯୁଗଆଦ୍ୟେ ସର୍ଜନା ଯୁଗାନ୍ତେ ସଂହାର
କରିବା କରତାଟି ହରି ମନେକର ।
ତୁମ୍ଭେମାନେ ଏବେ ହରିଙ୍କ ପାବେ ନମ
ବାଧିପାରିବ ନାହିଁ ଏ ସଂସାର ତମ ।
ଜ୍ଞାନଚକ୍ଷୁ ବିନା ହରିଙ୍କି କେବେ ଲୋକ
ଦେଖି ତ ନ ପାରଇ କଲେହେ ବିବେକ ।
ଆହେ ପଞ୍ଚଶିଷ୍ୟେ ମୋ ବଚନକୁ ମାନ ।
ହରି ନାମ ଉଚ୍ଚାରି ଛାଡ଼ ଆନ ବାଣୀ ।
ବେଦବ୍ୟାସଙ୍କର ମୁଖରୁ ଏ ବଚନ
ଶୁଣି ଆମ୍ଭେ କଲୁ ଶ୍ରୀହରିଙ୍କି ଭଜନ
ଏହା ପଚାରିଲ ଅପାରକାଳେ ତୁମ୍ଭେ
ଯାହା ଜାଣିଥିଲୁଁ କହିଲୁ ତାହା ଆମ୍ଭେ ।
ଯେଉଁ ଲୋକ ଏହାକୁ କର୍ଣ୍ଣରେ ଶୁଣଇ
କାମନା ସିଦ୍ଧି ପାଇ ସ୍ୱର୍ଗରେ ବସଇ ।
ଅପୁତ୍ରିକଙ୍କର ହୁଅଇ ପୁତ୍ର ଜାତ
ଧନ ଧାନ୍ୟ ଆଦି ଯେ ବଢ଼ଇ ବହୁତ ।
ଚାରିବର୍ଣ୍ଣ ଶୁଣିଲେ ଯେ ଯାହା ବୃତ୍ତିରେ
ପାରଙ୍ଗମ ହୁଅନ୍ତି ବ୍ୟାସଙ୍କ ମତରେ ।
ବାଟରେ ଯାଉଁ ଯାଉଁ କଲେ ଏହା ଚିନ୍ତା
ହୁଅନ୍ତି ତାଙ୍କୁ ଯାଇ ସାହାଟି ଦେବତା ।

●

## କୃଷ୍ଣାର୍ଜୁନ ସମ୍ବାଦ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ବିଷ୍ଣୁଙ୍କୁ ସ୍ତୁତି କଲେ ବ୍ୟାସ ତପୋଧନ ।
ଯେଉଁ ନାମମାନଙ୍କ ତାହା ମହାମତେ
କହିଥିଲେ ମୋଠାରେ ଦୟାଟି କଞ୍ଚିତେ ।
ଶୁଣିଲେ ସେହି ନାମ ମୋ ହୃଦରୁ ପାପ
ଛାଡ଼ିଯିବ ମଣୁଛି ହୋଇବ ନିଷ୍ପାପ ।
ବଇଶମ୍ପାୟନ ବୋଇଲେ ନରୋତ୍ତମ ।
କହିଛନ୍ତି କୃଷ୍ଣ ପାର୍ଥଙ୍କୁ ଯେଉଁ ନାମ ।
ସେହି ନାମକୁ ତୁମ୍ଭ ଆଗରେ ପ୍ରକାଶି
କହିବା ଶୁଣ ତୁମ୍ଭେ ମାନସ ନିବେଶି ।
ଅରଜୁନ ଦିନେ ଶ୍ରୀକୃଷ୍ଣଙ୍କୁ ଏକାନ୍ତେ
ବସାଇ କରି ଏହା ପୁଚ୍ଛିଲେ ସୁଚିତ୍ତେ ।
ବେଦରେ ପୁରାଣରେ ତୁମ୍ଭର ଯେ ନାମ ।
ପ୍ରକାଶ ହୋଇଅଛି କହ ଯଦୁତ୍ତମ ।
କୃଷ୍ଣ ବୋଇଲେ ଆହେ ଋଗବେଦ ଶାସ୍ତ୍ର—
ମାନଙ୍କେ ମୋର ନାମ ହୋଇଛି ବିଖ୍ୟାତ ।
ବହୁତ ପ୍ରକାରରେ ତାହା ତୁମ୍ଭ ଆଗେ
କହିବା ଯେବେ ତୁମ୍ଭେ ପଚାରି ସରାଗେ ।
ନାରାୟଣ ଦେବେ ମୋ କାରଣ ଅଟନ୍ତି
ଆଗ ତାଙ୍କୁ ନମୁଛି ହୃଦେ ବହି ପ୍ରୀତି ।
ସୃଷ୍ଟି ସ୍ଥିତି ପ୍ରଳୟକର୍ତ୍ତା ସେ ଅଟନ୍ତି ।
ଅନିରୁଦ୍ଧ ବିଷ୍ଣୁଙ୍କ ତାତ ସେ ବୋଲନ୍ତି ।
ପ୍ରଳୟରାତି ବ୍ରହ୍ମକ୍ଷଣେ ଅନିରୁଦ୍ଧ
ନାଭିରୁ ପଦ୍ମ ଜାତ କଲେ ବହି ସଧ ।
ଯେହି ପଦ୍ମରୁ ପିତାମହ ଉପୁଜିଲେ
ହୁଅନ୍ତେ କ୍ରୋଧ ପୁଣି ରୁଦ୍ର ଜାତ ହେଲେ ।
ଅନିରୁଦ୍ଧବିଷ୍ଣୁ ସେ ଦୁହିଙ୍କି ଯେ ଦେଖି
ଏ ବଚନ କହିଲେ ହୋଇ ଅତି ସୁଖୀ ।
ବ୍ରହ୍ମା ରୁଦ୍ର ତୁମ୍ଭେ ଦୁହେଁତ ବୋଲାଇବ
ସରଜନା ସଂହାର କରତା ହୋଇବ ।
ଶୁଣ ଆହେ ଅର୍ଜୁନ ଏ ହେନ ଶିବଙ୍କୁ
ନାରାୟଣ ବୋଲଣି କହି ବଚନକୁ ।
ଶିବଙ୍କୁ ପୂଜା କଲେ ନାରାୟଣ ଦେବ
ତା ଭକତି ହେନନ୍ତି ହୃଦେ ବହି ଭାବ ।
ବିଶ୍ୱଯାକର ମୁହିଁ ଆତ୍ମା ତ ଅଟଇ
ମୋର ଆତ୍ମା ଅଟନ୍ତି ଉମାଦେବୀସାଇଁ ।
ଏହି ସକାଶରୁ ହେ ପାଣ୍ଡବ ଅର୍ଜୁନ
ତାହାଙ୍କୁଟି ପୂଜା କରଇ ପ୍ରତିଦିନ ।
ମୁଁ ପୂଜା ନ କଲେଟି ଭ୍ରମି ଲୋକମାନେ
ଆଉ ପୂଜ ନ ଯିବେ ଶିବ ସନ୍ନିଧାନେ ।
ଶିବଙ୍କୁ ଯେ ଜାଣଇ ମୋତେ ସେ ଜାଣଇ
ସେ ଆମ୍ଭେ ଏକ ଆତ୍ମା ଜାଣ ପାର୍ଥ ଭାଇ ।

ସେ ଅ   ହେବାରୁ ଦେଖାଇ ଅସମୟ
ମାଗେଁବ ତାହାକୁ ହୋଇ ମୁଁ ବିନୟ ।
ଶିବଙ୍କ ବର ପାଇବାରୁ ପ୍ରଦ୍ୟୁମନ
ହୋଇଲେଟି ଅର୍ଜୁନ ମୋହର ନନ୍ଦନ ।
ରୁଦ୍ରଙ୍କୁ ମିଶି ଚତୁର୍ଦ୍ଦଶ ଲୋକେଶ୍ୱର
ମୁହିଁଟି ଜାଣ ଆହେ ଅରଜୁନ ବୀର ।
ମୋର ଭକତମାନେ ଚ୍ଛାରିଟି ପ୍ରକାର
ହୁଅନ୍ତି ତହିଁରେ ଏକାନ୍ତ ଭକ୍ତସାର ।
ନିଷ୍କାମକର୍ମ ଯେଉଁମାନେଟି କରନ୍ତି
ମୋହର ସେ ଅତ୍ୟନ୍ତ ପୀରତି ବଢ଼ାନ୍ତି ।
ଫଳକାମୀ ଲୋକ ମୋ ଭକତରେ ଊଣା
ହୋଇ ମୋର ମାୟାବଶରେ ହୁଏ ବଣା ।
ଜ୍ଞାନୀ ଭକତେ ଛାଡ଼ି ନ ପାରନ୍ତି ମୋତେ
ଆନ ଭକ୍ତେ ଦେବଙ୍କୁ ପୂଜନ୍ତି ନିରତେ ।
ତୁମ୍ଭେ ଆମ୍ଭେ ଦୁହେଁତ ନର ନାରାୟଣ
ଅସୁର ମାରିବାକୁ ଜନ୍ମିଥାଇ ଜାଣ ।
ନାର ବୋଲିକରିଟି ସଲିଳକୁ କହି
ପ୍ରଳୟରେ ଆଶ୍ରୟ ମୋଠାରେ କରଇ ।
ଏଣୁ ନାରାୟଣ ବୋଲିଏ ମୋର ନାମ
ଜାଣ ହେ ଅରଜୁନ ନରଙ୍କ ଉତ୍ତମ ।
ଜଗତକୁ ଆଛନ୍ନ କରିବାରୁ ମୁହିଁ
ବାସୁଦେବ ବୋଲଣ ନାମ ଅଛି ବହି ।
ଆକାଶ ପୃଥିବୀର ଅଟଇ ବ୍ୟାପକ
ଏଣୁ ବିଷ୍ଣୁ ନାମ ମୋ ବୀରଙ୍କ ତିଳକ ।
ଦମ କରଣ ଲୋକେ ମୋହଠାରୁ ସିଦ୍ଧି
ପାଆନ୍ତି, ଦାମୋଦର ନାମ ମୋ ପ୍ରସିଦ୍ଧି ।
ପୃଶ୍ନି ଶବଦ ଅର୍ଥ ଜଳ, ଘିଅ, ଅନ୍ନ
ବେଦେ ପ୍ରବର୍ତ୍ତିଇ ହେ ଜାଣ ଅରଜୁନ ।
ଏମାନେ ତ ମୋହର ଗର୍ଭରେ ଅଛନ୍ତି
ତେଣୁ ପୃଶ୍ନିଗର୍ଭ ବୋଲି ମୋତେ କହନ୍ତି ।
ସୂର୍ଯ୍ୟ ଚନ୍ଦ୍ର କିରଣ ମୋହରଟି କେଶ
ହୋଇବାରୁ କେଶବ ମୋ ନାମ ପ୍ରକାଶ ।
ବୃହସ୍ପତି ଶାପରେ ଦୀର୍ଘତମା ଋଷି
ଜନ୍ମକାଳରୁ ଅନ୍ଧ ହୋଇଥିଲେ ବସି ।
କେଶବ ନାମ ମୋର କରନ୍ତେ କୀର୍ତ୍ତିନ
ନୟନ କଲି ତାଙ୍କ ଜଗତ ଦର୍ଶନ ।

ଜଗତକୁ ଅନଳ ସମଟି କରଣ
ମୋ କହିବାରୁ ଏହା ଅରଜୁନ ଜାଣ ।
ଅରଜୁନ ବୋଇଲେ ଅଗ୍ନି ସୋମ ଦୁଇ
ଏକ ହେଲେ କିମ୍ପା କହ ତ ଯଦୁସାଇଁ ।
ଶ୍ରୀକୃଷ୍ଣବୋଇଲେ ହେ ମୋ ତେଜୁଁ ସେ ଜାତ
ତା ତୁମ୍ଭଙ୍କୁ କହିବା ଶୁଣ ଦେଇ ଚିତ୍ତ ।
ପ୍ରଳୟର ଶେଷରେ ନାରାୟଣ ଦେବ
ହରିଙ୍କି ଜାତ କଲେ ହୃଦେ ବହି ଭାବ ।
ସେ ହରିଟି ଦୁଇନେତ୍ରରୁ ଅଗ୍ନି ସୋମ
ଦୁହିଙ୍କି ଜାତ କଲେ କରି ସୃଷ୍ଟି କାମ ।
ସୋମ ଦ୍ୱିଜ ଅଗ୍ନି ଯେ କ୍ଷତ୍ରିୟ ଅଟଇ
ଅଗ୍ନିଙ୍କି ପ୍ରତି ସୋମ ଅଧିକଟି ଭାଇ ।
ବ୍ରାହ୍ମଣ କରମ ଶ୍ରଦ୍ଧା ତପ ବାକ୍ୟ—
ବଳେ ମାଟିଯାକ ରହିଛି ହୋଇ ଏକ ।
ମାତାଠାରୁ ଗୁରୁ, ସତ୍ୟରୁ ନାହିଁ ଧର୍ମ
ବର୍ଣ୍ଣଙ୍କରେ ଶ୍ରେଷ୍ଠଟି ଅଟଇ ବ୍ରାହ୍ମଣ ।
ଯେଉଁ ରାଜ୍ୟର ଜାଣ ବ୍ରାହ୍ମଣେ ଉତ୍ପନ୍ନ
ହୁଅନ୍ତି ସେହି ରାଜ୍ୟ ନାଶ ହୋଏ ପୂର୍ଣ ।
ସୁର ଅସୁରଙ୍କରୁ ବ୍ରାହ୍ମଣ ଅଧିକ
ହିତ୍ୱରିଲେ ଅଟନ୍ତି ସେ ମୋ ଦେହଯାକ ।
ସବୁ ଅସୁରଙ୍କ ନିଗ୍ରହ ଅନୁଗ୍ରହ
କରନ୍ତି ବ୍ରାହ୍ମଣେଟି ନ ବହିଣ ମୋହ ।
ଅହଲ୍ୟାଙ୍କୁ ବାସବ ଧରଷଣା କଲେ
ଗୌତମ ଶାପରେ ସହସ୍ରଯୋନି ହେଲେ ।
ଏ ଛଡ଼ା ବୃଷଣ ଛିଡ଼ନ୍ତେ ଶାପ ପାଇ
ବୃଷଣ କଲେ ମେଷବୃଷଣକୁ ନେଇ ।
ଅଶ୍ୱିନୀକୁମାରେ ଚ୍ୟବନ ଭାଗ ଦେଲେ
ବାସବ ତାହା ଆସିକରି ନିଷେଧିଲେ ।
ସେହି ସକାଶୁ କ୍ରୋଧ ହୋଇ ଋଷିବର
ସ୍ତମ୍ଭ କରିଦେଲେ ବଜ୍ରକୁ ଇନ୍ଦ୍ରଙ୍କର ।
ବୃହସ୍ପତିଙ୍କର ଶାପରେ ସମୁଦ୍ରରେ
ରହିଲେ ନାନା ଜୀବ ବହୁ ସଂକୀର୍ଣ୍ଣରେ ।
ଅସୁରଙ୍କ ଭଣଜା ତ୍ୱାଷ୍ଟ୍ର ଋଷିବର
ପୁରୋହିତ ହୋଇଲେ ଯାଇ ଦେବଙ୍କର ।
ଯାଗରେ ସେ ସୁରଙ୍କୁ ଭାଗ ଦେଇ ସାରି
ଅସୁରଙ୍କୁ ଦେଲେ ସେ ଆଚ୍ଛନ୍ନତା କରି ।

ତ୍ୱାଷ୍ଟ୍ରଙ୍କ ଏ ଚରିତ ଅସୁରମାନେ ଦେଖି
ମହାଭୟ ଲଭିରେ ମନେ ହୋଇ ଦୁଃଖୀ ।
ହିରଣ୍ୟକଶିପୁଙ୍କୁ ଆଗେ ଚଳାଇଲେ
ତ୍ୱାଷ୍ଟ୍ର ମାତାଠାକୁ ଅସୁରମାନେ ଗଲେ ।
ବୋଇଲେ ଭଗ୍ନୀଯୋଗେ ଆମ୍ଭ ଭଣଜାଟି
ଦେବଙ୍କୁ ଭାଗ ଦେଲେ ଧରିଣ ଶ୍ରୀବୃଟି ।
ଆମ୍ଭଙ୍କୁ ଲୁଚାଇଣ ପଛେ ଭାଗ ଦେଲେ
ଦେବତାଙ୍କର ବଳ ବୃଦ୍ଧି କରାଇଲେ ।
ଯେରୂପେ ତୁମ୍ଭ ସୁତ ଛାଡ଼ି ପୁରନ୍ଦର
ଆମ୍ଭ କଥା କରିବେ ସେରୂପରେ କର ।
ଭାଇଙ୍କ ବଚନକୁ ଭଗିମା ସ୍ୱୀକାର –
କରି ଡାକ କହିଲେ ଶୁଣରେ କୁମର ।
ସହୋଦରମାନଙ୍କୁ ଛାଡ଼ିଣ ସାବତ
ମାମୁଁଙ୍କଠାରେ କମ୍ପା ବଳାଉଛୁ ଚିତ୍ତ ।
ଏବେ ମୋ ବୋଲକର ଦେବେ ଛାଡ଼ି ଦେଇ
ମୋ ଭାଇଙ୍କର କାର୍ଯ୍ୟ କର ପ୍ରୀତି ବହି ।
ବିଶ୍ୱରୂପ ମାତାଙ୍କ ବଚନ ଶୁଣିଲେ
ଦେବଙ୍କୁ ଛାଡ଼ି ଅସୁରଙ୍କୁ ସେ ଭଜିଲେ ।
ହିରଣ୍ୟକଶିପୁ ତା ଦେଖି ସୁଖୀ ହୋଇ
ରଖିଲେ ତାଙ୍କୁ ପୁରୋହିତଭାଗ ଦେଇ ।
ବଶିଷ୍ଠ ହୋଇଥିଲେ ଆଗ ପୁରୋହିତ
ଏହା ଦେଖି ସେ ଦୁଃଖ ହେଲା ତାଙ୍କ ଚିତ୍ତ ।
ବୋଇଲେ ଯାଗ ଯେବେ କରିବ ରାଜନ
ନ ସରୁଁ ଯାଗ ତେବେ ହୋଇବ ନିଧନ ।
ସେରୂପେ ହିରଣ୍ୟକଶିପୁ ବଧ ହେଲା
ମୁହୂର୍ତ୍ତ କ୍ଷଣ ଲବ କାଷ୍ଠା ନ ଗଡ଼ିଲା ।
ବିଶ୍ୱରୂପ ତପସ୍ୟା କରନ୍ତେ ଏକାନ୍ତେ
ଭୟ ଜାତ ହୋଇଲା ଇନ୍ଦ୍ରଙ୍କର ଚିତ୍ତେ ।
ଅପସରମାନଙ୍କୁ ଡକାଇ ଆଣିଲେ
ବିଶ୍ୱରୂପ ତପସ୍ୟା ଭାଙ୍ଗ ହେ ବୋଇଲେ ।
ସେ କହିଲେ ତୁମ୍ଭ ଆଜ୍ଞାରେ ପୁରନ୍ଦର
ବିଶ୍ୱରୂପ ସୁରତେ ମଜ୍ଜିବେ ଆମ୍ଭର ।
ଏତେ କହି ଅପସରାଏ ବାହାରିଲେ
ବିଶ୍ୱରୂପ ତପସ୍ଥାନରେ ଯାଇ ହେଲେ ।
ଦେଖିଲେ ବିଶ୍ୱରୂପ କରୁଛନ୍ତି ତପ
ଛାଡ଼ି ଦେଇ ହୃଦରୁ ହୃଦୟ ସନ୍ତାପ ।

ଅପସରାମାନେ ତାହା ଦେଖି ହସିଲେ
କି ତପ କରୁଛି ଗୋ ଏ ଋଷି ଭାଷିଲେ ।
ବିଶ୍ୱରୂପଙ୍କ ନିକଟକୁ ଯାଇ ଭଲ
ଗାଇଲେ ନାନା ଗୀତ କଣ୍ଠ ଦେଇ ମେଳ ।
ତାଳ ମୃଦଙ୍ଗ ବୀଣାକୁ ବଜାଇଲେ
ନସ୍ପନ ତାଳ ଦେଇ କରିଣ ନାଚିଲେ ।
ବଦନକୁ ଊରୁଦେଶରେ ପ୍ରକମ୍ପାଇ
ହସ୍ତକର ଭଙ୍ଗୀରେ ତର୍ଜ୍ଜିଲେ ନିଠାଇ ।
ସେମାନଙ୍କର ବଳା ପାହୁଡ଼ ଶବଦ
ନିନ୍ଦିଲା ମଧୁରେ ମଦନରାଜା ବାଦ୍ୟ ।
ବିଶ୍ୱରୂପ ତା ଦେଖି କାମେ ଦୁଃଖୀ ହେଲେ
କେଉଁଠାରୁ ଆସିଛ କହ ଗୋ ବୋଇଲେ ।
ସେ ବୋଇଲେ ତୁମ୍ଭେ ଋଷି ତ ମୁନିବର
ତପ କର ଆମ୍ଭଙ୍କୁ କସ ପଚାରୁଛ ।
ଏତେ ବୋଲି ତାହାଙ୍କୁ ପୋଟାଳି ପକାଇ
ମୁଖେ ଚୁମ୍ବ ଦେଲେ ସମସ୍ତେ ପ୍ରୀତି ବହି ।
ସେ ସକାଶୁଁ ବିଶ୍ୱରୂପଙ୍କ ଗଣ୍ଡରୋମ
ଉଲ୍ଲସାଇ ହେଲା ଜଗତ ଥିଲା କାମ ।
ତାହା ଦେଖି ସେ ନାରୀମାନେ ପାଇ ସୁଖ
ଋଷି କଟିକକ୍ଷରେ ଚଳାଇଲେ ନଖ ।
ଋଷିଙ୍କି ଏହିରୂପେ ଉଚାଟ କରାଇ
ବାହାରିଲେ ସ୍ୱର୍ଗକୁ ଅତି ତ୍ୱରା ହୋଇ ।
ଋଷି ବୋଇଲେ ଆଗ ରହ ମୋର ପାଖେ
ନ ଯାଅ ମୋତେ ଛାଡ଼ି ଦେଇ କାମ ମୁଖେ ।
ତୁମ୍ଭଠାରୁ ସୁରତ ଭୋଗ କରି ନାହିଁ
ଯିବ ବୋଇଲେ ମୁଁ ବା ଛାଡ଼ିଦେବ କେହି
ଅପସରାମାନେ ବୋଇଲେ ପୁରନ୍ଦର
ଆମ୍ଭର ଅଟନ୍ତି ସେ ପତି ମୁନିବର ।
ତାହାଙ୍କରିଠାକୁ ନ ଯିବୁଁ ଯେବେ ଏବେ
କାହିଁ ଗଲେ ବୋଲି ସେ ଆମ୍ଭଙ୍କୁ ଚଳିବେ ।
ବିଶ୍ୱରୂପ ବୋଇଲେ ଜପ କରି ମୁହିଁ
ମାରିଦେବି ମୁଁ ନିଶ୍ଚେ ଶଚୀଦେବୀ ସାଇଁ ।
ଏତେ ବୋଲି ସେ ପଇତାରେ ଦେଇ ହାତ
ଜପିଲେ ଦୃଷ୍ଟି ନିବେଶିଣ ଶୂନ୍ୟପଥ ।
ଏ ସକାଶୁଁ ତ୍ୱାଷ୍ଟ୍ରଙ୍କ ତିନୋଟି ବଦନ
ବେଳକୁବେଳ ବଢ଼ିଲେ ହେ ଅରଜୁନ ।

ମୁଖକର୍ତେ ଜଳ ଯେ ମୁଖକରେ ସୋମ
ପିଇ କରି ସେ ଋଷି ହୋଇ ପୂର୍ଣ୍ଣକାମ ।
ଆର ମୁଖ ଦୁଇପାଟିକି ମେଲି ଦେଇ
ଦେବଙ୍କୁ ଖାଇବାକୁ ରହିଲେ ସେ ଗ୍ରହିଁ ।
ଏହା ଦେଖିଣ ଇନ୍ଦ୍ରଦେବଙ୍କୁ ଘେନିଲେ
ବ୍ରହ୍ମାଙ୍କର ଛାମୁରେ ଯାଇ ଜଣାଇଲେ ।
ବିଶ୍ୱରୂପ ମେଲି ଅଛନ୍ତି ଦୁଇପାଟି
ବୁଡ଼ାଇ ଦେବାପାଇଁ ଦେବତାଙ୍କ ସୃଷ୍ଟି ।
ଏଥିକୁ ଯେ ଆମ୍ଭର ଶ୍ରେୟକୁ ଆସିବ
ତାହା କର ହେ ପିତାମହ ବହି ଭବ ।
ବ୍ରହ୍ମା କହିଲେ ଆହେ ଇନ୍ଦ୍ର ମହାଭାଗ
ଦଧୀଚିଙ୍କି ତାଙ୍କର ଅସ୍ଥି ଯାଇ ମାଗ ।
ସେହି ଅସ୍ଥିରେ ବଜ୍ର ସଜାଡ଼ିଣ ତୁମ୍ଭେ
ମାର ବିଶିରକୁ ଯେ ବୋଲୁଅଛୁଁ ଆମ୍ଭେ ।
ଏହା ଶୁଣିଣ ଇନ୍ଦ୍ର ହୋଇଣି ମେଲାଣି
ଦଧୀଚିଙ୍କ ପାଶରେ ମିଳିଲେ ସେକ୍ଷଣି ।
ବିନୟ ହୋଇ ମାଗନ୍ତେ ତାହାଙ୍କ ହାଡ଼
ଦଧୀଚି ତ ଅଟନ୍ତି ଋଷିଙ୍କର ବଡ଼ ।
ଇନ୍ଦ୍ରଙ୍କୁ ବୋଇଲେ ଛାଡ଼ୁଛି ପ୍ରାଣ ମୁହିଁ
ନେଇ ହାଡ଼ ବଜ୍ର ସଜାଡ଼ ଶଚୀସାଇଁ ।
ଏତେକ କହି ଋଷି ଛାଡ଼ନ୍ତେ ପରାଣ
ତାଙ୍କ ଅସ୍ଥିରେ କଲେ ବଜ୍ର ସୁରରାଣ ।
ସେହି ବଜ୍ରରେ ବିଷ୍ଣୁ ପ୍ରବେଶ ହୋଇଲେ
ଧରନ୍ତେ ଇନ୍ଦ୍ର ବଜ୍ର ବିଷ୍ଣୁରୂପ ହେଲେ ।
ତ୍ୱାଷ୍ଟ୍ରଙ୍କର ହୋଇଥିଲା ତ ତିନି ମୁଣ୍ଡ
ବଜ୍ର ପେଷି ଇନ୍ଦ୍ର ତା କଲେ ତିନିଖଣ୍ଡ ।
ବିଶ୍ୱରୂପ ଦେହ ମନ୍ଥନ୍ତେ ବୃତ୍ରାସୁର
ଜାତ ହୋଇଣ କଲେ ଇନ୍ଦ୍ରଙ୍କୁ ସମର ।
ଇନ୍ଦ୍ର ସେ ବୃତ୍ରାସୁର ପ୍ରାଣକୁ ହରନ୍ତେ
ବ୍ରହ୍ମହତ୍ୟା ତାଙ୍କୁ ଘୋଟିଲା ମହାମତେ ।
ଏ ସକାଶୁଁ ଚିତ୍ତରେ ମହାଭୟ ପାଇ
ପଦ୍ମମୃଣାଳରେ ଲୁଚିଲେ ଶଚୀସାଇଁ ।
ମାନ ସରୋବରରେ ଥିଲା ସେ ପଦ୍ମଫୁଟି
ତା ବାସରେ ବେଢ଼ି ଆସନ୍ତି ଭୃଙ୍ଗସୃଷ୍ଟି ।
ଇନ୍ଦ୍ରଙ୍କ ଅସ୍ତ ହେବା ଯୋଗୁଁ ଦେବଙ୍କର
ସ୍ୱରେ ରଜ ତମ କଲା ଆସି ଘର ।
ସମସ୍ତଙ୍କୁ ସମସ୍ତେ ଧରଷଣା କଲେ
ଋଷିମାନେ ସେ ଯାଗ କରି ନ ପାରିଲେ ।
ସେ ସକାଶୁଁ ନହୁଷ ନୃପଙ୍କୁ ଡକାଇ
ସ୍ୱରଗ ନଗରରେ କରାଇଲେ ସାଇଁ ।
ନହୁଷ ପାଳିବାରେ ସୁଖୀ ହୋଇ ଦେବେ
ଚିନ୍ତକ ଭୁଲିଇ ବସିଲେ ଘରେ ସର୍ବେ ।
ନହୁଷ ଶଚୀଙ୍କର ମୁରତିକି ଦେଖି
ଶଚୀଙ୍କଠାକୁ ଗଲେ କାମେ ହୋଇ ଦୁଃଖୀ ।
କହିଲେ ଦେବଙ୍କର ହେଲି ଇନ୍ଦ୍ର ମୁହିଁ
ମୋତେ କିମ୍ପା ନ ଭଜୁ ଚାରୁଚନ୍ଦ୍ର ମୁହିଁ ।
ଶଚୀ ବୋଇଲେ ଆହେ ଚନ୍ଦ୍ରବଂଶପୁଅ
ହୋଇ କିମ୍ପା ଏତେ ଅନ୍ୟାୟ କଥା କହ ।
ମୋହର ପତି ଜାଇକରି ବସିଛନ୍ତି
କିରୂପେ ତୁମ୍ଭର ବଳିଲା ମୋତେ ମତି ।
ନହୁଷ ହୋଇଲେ ହେ ଇନ୍ଦ୍ରଙ୍କ ଭାରିଯା
ସିନା ତୁମ୍ଭେ ମୁହିଁତ ହେଲନି ବିଡ଼ୋଜା ।
ମୋ ସଙ୍ଗେ ବସି ରତିରସ ଭୋଗ କର
ମଦନ ସନ୍ତାପକୁ ହୃଦୁ ଦୂରକର ।
ଶଚୀ ବୋଇଲେ ମୁହିଁ କରିଛି ତ ବ୍ରତ
ତା ସରିଲେ ତୁମ୍ଭଙ୍କୁ ଦେବି ମୁଁ ସୁରତ ।
ଶଚୀଙ୍କର ବଚନ ହେଲା ଘନରସ
ତୋଷିଲା ନହୁଷଙ୍କ ଚାତକ ମାନସ ।
ଶଚୀଙ୍କର ସୁରତି ମନେ ମନେ ଭାବି
ବାହାରିଲେ ଭାବଣ ହେଲା ମୋ ବଲ୍ଲଭୀ ।
ନହୁଷଙ୍କ ଯିବା ଉତ୍ତାରୁ ପୁରନ୍ଦର
ଭାରିଯା ଗଲେ ଯହିଁ ଥିଲେ ଦ୍ୱିଜବର ।
ବୃହସ୍ପତି ଦେବତାମାନଙ୍କର ପତି
ତାହାଙ୍କର ଆଗେ କଲେ ଏ ସୁକତି ।
ନହୁଷ ମୋ ରତି ଇଚ୍ଛାରେ ଆସିଥିଲେ
ବଞ୍ଚାଇ ପଠାଇ ଦେଲି ମୁଁ ତାଙ୍କୁ ଭଲେ ।
ନହୁଷ ଭୟୁ ମୋତେ ନ ରଖିବ ଯେବେ
ତୁମ୍ଭର ଆଗେ ପ୍ରାଣ ଛାଡ଼ିବି ମୁଁ ତେବେ ।
ବୃହସ୍ପତି ବୋଇଲେ ସ୍ମର ଉପଶ୍ରୁତି
ସେ ତୁମ୍ଭର ପତିଙ୍କି କରିବେ ପ୍ରାପତି ।
ଏହା ଶୁଣିଣ ଶଚୀ ଏକମନ ହୋଇ
ଭାବନ୍ତେ ଉପଶ୍ରୁତି ମିଳିଲେକ ଯାଇ ।

ଶଚୀ ବୋଇଲେ ଆହେ ଉପଶ୍ରୁତି ଥରେ
ଦେଖାଅ ମୋ ପତି ଅଛନ୍ତି କି ରୂପରେ ।
ଉପଶ୍ରୁତି ସେକ୍ଷଣି ଶଚୀଙ୍କି ଘେନିଲେ
ମାନ ସରୋବରରେ ଇନ୍ଦ୍ରଙ୍କୁ ଦେଖାଇଲେ ।
ଇନ୍ଦ୍ର-ପଚ୍ଛରିଲେ ଗୋ କାହିଁକି ଆସିଲ
କହ ଶଚୀ ତୁମ୍ଭେ ହୋଇଅଛ ଟିକି ଭଲ ।
ଶଚୀ ବୋଇଲେ ହେ ନହୁଷ ମୁହଁପୋଡ଼ା
ମୋ ସୁରତି ନିତି ସେ କରୁଅଛି ଲୋଡ଼ା ।
ଏହି ସକାଶୁ ମୁଁ ଆସିଛି ତୁମ୍ଭଠାକୁ
ମାରି ଯାଇଁ ସୁଖରେ ଏବେ ସେ ପାପୀକୁ ।
ଇନ୍ଦ୍ର ବୋଇଲେ ହେ ତାକୁ ମୁଁ ନମାରିବି
ନହୁଷର ବିନାଶ ବଚନେ କରିବି ।
ତୁମ୍ଭେ ତାହାକୁ ଯାଇ ବୋଲ ଋଷି-ଯାନେ
ଆସିବ ଥିଲେ ରତି ଇଚ୍ଛା ତୁମ୍ଭ ମନେ ।
ଏରୂପେ ଇନ୍ଦ୍ର କହିବାରୁ ଶଚୀ ଆସି
ନହୁଷଙ୍କ ଆଗେ କହିଲେ ହସି ହସି ।
ଋଷି ଯାନେ ମୋ ପାଶେ ଆସିବ ନାଗର
ଯେବେ ମୋ ରତି ଇଚ୍ଛା ଅଛଟି ତୁମ୍ଭର ।
ନହୁଷ ଶୁଣିଣ ଅଗସ୍ତି ଆଦି ଋଷି—
ମାନଙ୍କୁ ବୁହାଇଲେ ଯାନମଧ୍ୟେ ବସି ।
ନହୁଷଙ୍କ ରୀତି ଅଗସ୍ତି ମୁନି ଦେଖି
ନିଷେଧିଲେ ତାଙ୍କୁ ମନରେ ହୋଇ ଦୁଃଖୀ ।
ନହୁଷ କାମ-ମଦେ ମତ୍ତ ହୋଇଥିଲେ
ଅଗସ୍ତିଙ୍କ ଦେହରେ ପଦାଘାତ କଲେ ।
ଏ ସକାଶୁଁ ଅଗସ୍ତି ମୁନି ଶାପ ଦେଲେ
ସାପ କରି ନହୁଷରୂପକୁ ରଖିଲେ ।
ନହୁଷଙ୍କବିନାଶ ହେବା ଦେଖି ଦେବେ
ବିଷ୍ଣୁଙ୍କଠାରେ ଯାଇ କହିଲେ ସରବେ ।
ବ୍ରହ୍ମହତ୍ୟାଭୟେ ଲୁଚିଲେ ଶଚୀ ପତି
ତାହାଙ୍କୁ ଦେଇ ପ୍ରଭୁ କରି ଆମ୍ଭ ପତି ।
ବିଷ୍ଣୁ ବୋଇଲେ ଆହେ ଇନ୍ଦ୍ର ଅଶ୍ୱମେଧ
ଯାଗ କରି ହୁଅନ୍ତୁ ତୁମ୍ଭର ବିବୁଧ ।
ଏହା ଶୁଣିଣ ଦେବେ ଶଚୀଙ୍କି ଡାକିଲେ
ଇନ୍ଦ୍ରଙ୍କୁ ଯାଇ ତୁମ୍ଭେ ଆଣ ଗୋ ବୋଇଲେ
ଶଚୀ ଦେବତାଙ୍କର ବୋଲରେ ମାନସ
ସରୋବରରୁଁ ଆଣିଲେ ଦେବକୁଳ-ଈଶ ।

ଅଶ୍ୱମେଧଯାଗ କରାଇ ଅଙ୍ଗିରସ
ଇନ୍ଦ୍ରଙ୍କ ବ୍ରହ୍ମହତ୍ୟା କରିଦେଲେ ନାଶ ।
ବ୍ରାହ୍ମଣ ଅପରାଧ କରି ସୁର-ପତି
ଭୁଞ୍ଜି ନ ପାରିଲେ ଆପଣାର ବିଭୂତି ।
ଆନ ଲୋକ କଲେ ବ୍ରାହ୍ମଣ ଅପରାଧ
ତାହାଙ୍କୁ କମ୍ପା ପୀଡ଼ା ନ ଦେବେ ବିବୁଧ ।
ଆହେ ଅର୍ଜୁନ ଏହି କଥାମାନ ଜାଣି
ସେବା କରୁଥିବ ଦେଖିଲେ ଦ୍ୱିଜଶ୍ରେଣୀ ।
ଦିନେ ଭରଦ୍ୱାଜ ଗଙ୍ଗା-ତୀରେ ଯାଇ
ଆଚମନକୁ କରୁଥିଲେ ଶୁଦ୍ଧି ପାଇଁ ।
ଏପରି ସମୟରେ ବିଷ୍ଣୁଙ୍କୁ ଦେଖିଲେ
ତାହାଙ୍କ ହୃଦସ୍ଥଳେ ଗୋଡ଼େ ମାଇଲେ ।
ବିଷ୍ଣୁ ଦ୍ୱିଜ ବୋଲିଣ ନ ଲଙ୍ଘି ତାହାଙ୍କୁ
ଶ୍ରୀବତ୍ସ କରି କହିଲେ ସେ ଗୋଡ଼କୁ ।
ଭୃଗୁଙ୍କର ଶାପରେ ହୁତାଶନ ଦେବ
ଗ୍ରାସିଲେ ସକଳ ପଦାର୍ଥ ବହି ଭାବ ।
ଅଦିତି ଗର୍ବ ହୋଇ ପାକ କରିଥିଲେ
ଦେବତାଙ୍କର ବଳ ବଢ଼ିବାକୁ ଭଲେ ।
ଏ ସମୟେ ବୁଧ ଆସିଲେ ତାଙ୍କଠାକୁ
କହିଲେ ଅନ୍ନ ଦିଅ ଆମ୍ଭଙ୍କୁ ଖାଇବାକୁ ।
ଅଦିତି ବୋଇଲେ ଅନ୍ନ ମୋ ପୁତ୍ର ବିନା
ଆନକୁ ଦେବି ନାହିଁ ହେ ବୁଧ ସୁମନା ।
ବୁଧ ତ ଦ୍ୱିଜରୂପ ଧରି ଆସିଥିଲେ
ଏହା ଶୁଣିଣ ଅଦିତିଙ୍କି କ୍ରୋଧ ହେଲେ ।
ଅଦିତି-ଗର୍ଭେ ହାତ କରନ୍ତେ ପ୍ରହାର
ମରି ପୁତ୍ର ହେଲା ମାର୍ତ୍ତଣ୍ଡ ନାମ ତା'ର ।
ଦକ୍ଷ ନୃପତିଙ୍କଠାରେ ଷାଠିଏ ଝିଅ ହେଲେ
ତାହା ଦେଖି ଦକ୍ଷ ବହୁତ ଚିନ୍ତା କଲେ ।
କଶ୍ୟପକୁ ତେର ଯେ ଧରମଙ୍କୁ ଦଶ
ମନୁଙ୍କୁ ଦେଲେ ଦଶ, ଚନ୍ଦ୍ରେ ସତାଇଶ ।
ସତାଇଶ ନକ୍ଷତ୍ର ପତି ଚନ୍ଦ୍ର ହୋଇ
ରୋହିଣୀ ମୂର୍ତ୍ତି ଦେଖି ମତି ହେଲେ ବାଇ ।
ତା ସହି ନ ପାରି ଚନ୍ଦ୍ରଙ୍କ ଘରଯାଏ
ଦକ୍ଷପ୍ରଜାପତିଙ୍କି କହିବେ ସଭିଏଁ ।
ଆମ୍ଭଙ୍କୁ ଦିନେ ହସି କଥା ନ କହନ୍ତି ।
ରୋହିଣୀଙ୍କି ଘେନି ସେ ନିତି ମାତିଥାନ୍ତି ।

ଦକ୍ଷ ତାହା ଶୁଣିଣ ଚନ୍ଦ୍ରଙ୍କୁ ଡାକଲେ
କିଛି ନୁହେଁ ତ ତୁମ୍ଭେ ବୋଲିଣ ବୋଇଲେ
ସତାଇଶି ଭାରିଯା ତୁମ୍ଭେ ତ କରିଛ
ରୋହିଣୀ-ମୁଖ ସ୍ନେହିଁ ଯାଙ୍କୁ କର ପଛ ।
ଏ କିଛି ଭଲକଥା ନୁହେ କଳାକାର
ଆଜ୍ଞୁଁ ସବୁଠାରେ ସମାନବୁଦ୍ଧି କର ।
ନୋହିଲେ ରାଜଯକ୍ଷ୍ମା ରୋଗେ ହୋଇ ଘାଣ୍ଟି
ମେଲି କରି କହି ନ ପାରିବଟି ପାଟି ।
ଚନ୍ଦ୍ର ଦକ୍ଷଙ୍କର ତ ବୋଲ ନ ଘେନଲେ
ଦକ୍ଷଶାପରେ ରାଜଯକ୍ଷ୍ମାକୁ ଲଭିଲେ ।
ପ୍ରଭାସ ତୀର୍ଥରେଟି ଚନ୍ଦ୍ର କରି ସ୍ନାନ
ଛଡ଼ାଇଲେ ରାଜଯକ୍ଷ୍ମାକୁ ଅରଜୁନ ।
ଆଜ ଚନ୍ଦ୍ର ଦକ୍ଷଙ୍କ ଶାପେ କ୍ଷୀଣ ହୋଇ
ଉଦୟ ହେଉଛନ୍ତି କେତେ ଦେଖୁଥାଇଁ
ହୃଦୟରେ ତାଙ୍କର ରହିବାରୁ କଳା
ବୋଲୁଛନ୍ତି ମାନବେ ମେଳଦେଇ ଗଳା ।
ସ୍ଥୂଳଶିରା ଋଷି ମେରୁର ପୂର୍ବୋତ୍ତର—
ଭାଗେ ତପ କରୁଥିଲେ ହେ ପାର୍ଥ ବୀର ।
ଶୀତଳ ହୋଇ ବାତ ବହି ତାଙ୍କ ଦେହ
ଉଲ୍ଲାସ କରାଇଲା ଛଡ଼ାଇଣ ମୋହ ।
ବୃକ୍ଷମାନେ ସେକାଳେ ନିଜ ପୁଷ୍ପ ଫଳ
ଆଛନ୍ନ କରନ୍ତେ ସେ ମହରଷି ବାଳ ।
କ୍ରୋଧ ହୋଇ ବୋଇଲେ ଆଜ୍ଞୁଁ ବୃକ୍ଷମାନେ
ବରଷକରେ ମଞ୍ଜି ହୋଇବେ ସୁମନେ ।
ନାରାୟଣ ବଡ଼ବା ମୁଖ ନାମ ବହି ।
ଋଷି ହୋଇଥିବେ ପୂର୍ବରେ ଶୁଣିଥାଇଁ ।
ସମୁଦ୍ରଙ୍କୁ ତାଙ୍କର ପାଖକୁ ଡାକଲେ
ସମୁଦ୍ର ତାହାଙ୍କ ବଚନ ନ ଶୁଣିଲେ ।
ଏହି ସକାଶରୁ ସେ ମହାକ୍ରୋଧ ବହି
ଲୁଣିଆଁ କଲେ ଜଳ ଝୁଲାକୁ ପକାଇ ।
ସେ ଦିନୁ ସେ ଜଳ ପିଇଲେ ନରମାନେ
ସେହିକ୍ଷଣି ବାନ୍ତି ଯେ କରନ୍ତି ବଦନେ ।
ହିମାଳୟ ଝିଅ ଉମାଙ୍କୁ ଭୃଗୁ ଋଷି
ମାଗିଲେ ବିଭାପାଇଁ ହୋଇଣ ଲାଳସୀ ।
ସେ ବୋଇଲେ ମୁଁ ତ ରୁଦ୍ରଙ୍କୁ ବରିଅଛି
ତୁମ୍ଭଙ୍କୁ ଦେବ ନାହିଁ ବୁଝିତା ମୃଗାକ୍ଷୀ ।

ଭୃଗୁ ବୋଇଲେ ଆହେ ଆଜ୍ଞୁଁ ରତ୍ନସ୍ଥାନ
ହୋଇଣ ହିମାଳୟ ବଞ୍ଚ ତୁମ୍ଭେ ଦିନ ।
ଏହିରୂପରେ ବ୍ରାହ୍ମଣଙ୍କ ମାହାତମ୍ୟ
ଅଟଇ ଏହି ମହୀମଧରେ ଉତ୍ତମ ।
ଅଗ୍ନି ସୋମାତ୍ମକଯାକ ତ ମୁଁ ଧରିଛି
ମୋ କରିବାରୁ ଜାଣ କୁନ୍ତୀଦେବୀ ବତ୍ସି
ଈଶ୍ୱର ହୋଇ ତିନି ଲୋକର ଉଲ୍ଲାସ
କରିବାରୁ ମୋ ନାମ ଅଟେ ହୃଷୀକେଶ ।
ଲୋକଙ୍କର ନିୟନ୍ତା ହେବାରୁ ଈଶାନ
ବର ଦେବାରୁଟି ବରଦ ମୋର ନାମ ।
ଯାଗଭାଗକୁ ହରି ହରିତବର୍ଣ୍ଣକୁ
ବହିବାରୁ ହରିଟି ବୋଲନ୍ତି ଆମ୍ଭଙ୍କୁ ।
ଧାମ ଶବଦ ତ ସାରରେ ପ୍ରବର୍ତ୍ତଇ
ଲୋକସାର ହେବାରୁ ଋତଧାମ କହି ।
ମୋତେଟି ଅରଜୁନ ବୀର ମନେ କର
ଏ କଥାରେ କିଛିହିଁ ସନ୍ଦେହ ନ କର ।
ପୃଥିବୀ ଉଦ୍ଧାରିତା ସକାଶରୁ ମୁହିଁ
ଗୋବିନ୍ଦ ନାମଟିକ ଜାଣ ଅଛି ବହି ।
ଯଜ୍ଞ ଯାଗେ ମୋତେ ବହୁତ ଧ୍ୟାନ କଲେ
ଏ ହେତୁ ଶିପିବିଷ୍ଟ ସମସ୍ତେ ବୋଇଲେ ।
ଜନମ ମରଣରୁ ହେବାରୁ ବାହାର
ଅଜ ନାମ ମୋର ଅର୍ଜୁନ, ମନେ କର ।
ମିଥ୍ୟା ନ କହିବାରୁ ସତ୍ୟ ମୋର ନାମ
ସବୁବେଳେ ହୋଇଥାଏ ମୁଁ ପୂର୍ଣ୍ଣକାମ ।
ସତ୍ତ୍ୱ ଚ୍ୟୁତ ନୋହିବାରୁ ମୁହିଁ ସତ୍ତ୍ୱତ
ବୋଲାଏ ଜାଣ ଆହେ ଇନ୍ଦ୍ରଙ୍କର ସୁତ ।
ଲୁବ୍ଧା ହୋଇଣ ମୁହିଁ ଚଷିବାରୁ ମହୀ
ଏ ଜଗତଯାକରେ କୃଷ୍ଣ ବୋଲାଅଇଁ ।
ଦେଖୁଛ ତ ନୟନେ ମୋହର ବଚନ
ତମାଳଦଳଟିକ କରୁଛି ନିନ୍ଦନ ।
ଧରମ ଚ୍ୟୁତ ନୋହିବାରୁ ମୁଁ ଅଚ୍ୟୁତ
ସର୍ବବ୍ୟାପୀ ହେବାରୁ ଅଧୋକ୍ଷଜ ଖ୍ୟାତ ।
ଘୃତ ଅର୍ଚ୍ଚି ହେବାରୁ ଘୃତାର୍ଚ୍ଚି ବୋଲଇ ।
ବେଦ ମଧ୍ୟ ମୁଖରେ ଏହା ଅଛି କହି ।
ପୀତ ଶ୍ଳେଷ୍ମା ବାୟୁ ବୋଲନ୍ତି ତିନି ଧାତୁ
ସେହି ମୁହିଁ ହେବାରୁ ମୋ ନାମ ତ୍ରିଧାତୁ ।

ଧର୍ମ ସ୍ୱରୂପଟି ମୁଁ ହୋଇବାରୁ ଲୋକେ
ବୃଷ ବୋଲି କରି ବୋଲନ୍ତି ମୋତେ ଶ୍ଳୋକେ
କପି ବୋଲି କରି ଯା ବରାହକୁ କହି
ବୃଷ ନାମ ଧରମରେ ତ ଅଛି ରହି ।
ଏ ଦୁଇକଥା ଯୁକ୍ତ ହେବାରୁ ବିବସ୍ତ୍ର
ବୃଷାକପି ଏ ନାମ ମୋହରଟି ସ୍ୱଚ୍ଛ ।
ଆଦି ଅନ୍ତ ମଧ୍ୟ ନ ଥିବାରୁ ଯେ ମୁହିଁ
ଜଗତ ମଧ୍ୟରେ ଅନନ୍ତ ବୋଲାଅଇଁ ।
ଶ୍ରୁତିକଥା ଶୁଣିବାରୁ ମୁଁ ଶ୍ରୁତଶ୍ରବା
ବୋଲାଏଁ ଅରଜୁନ ଆଉ କି କହିବା ।
ଏକଶୃଙ୍ଗ ବରାହ ହୋଇ ମୁଁ ମହୀଟି
ଟେକିବାରୁ ଏକଶୃଙ୍ଗମୋର ନାମଟି ।
ବରାହରୂପେ ତିନି କକୁଦଟି ମୋର
ଥିଲା ଏଣୁ ତ୍ରିକକୁଦ ମୁଁ ମନେକର ।
ସକଳଲୋକ କରିବାରୁ ଟି ବିରଞ୍ଚି
ନାମ ଦେଇଅଛନ୍ତି ଧାତା ମୋତେ ପାଞ୍ଚି ।
ସାଙ୍ଖ୍ୟମାନେ ଯେ କପିଳ ବୋଲନ୍ତି
ଯୋଗୀମାନେ ହିରଣ୍ୟଗର୍ଭ ଉଚ୍ଚାରନ୍ତି ।
ଋକ୍ ଯଜୁ ସାମ ଅଥର୍ବ ଚତୁରବେଦ
ମୋତେ ବୋଲନ୍ତିଟି ହୋଇଣ ସୁଖପ୍ରଦ ।
ଧରମଙ୍କର ପୁଅ ହେବାରୁ ଧର୍ମଜ
ବୋଲନ୍ତି ଜାଣ ଅରଜୁନ ବୀର ରାଜ ।
ନର ନାରାୟଣ ବଦରୀ ଆଶ୍ରମରେ
ଶଗଡ଼ରେ ବସି ତପନ୍ତି ନିଶ୍ରମରେ ।
ସେହି ସମୟେ ଦକ୍ଷପ୍ରଜାପତି ଯାଗ
କରି ରୁଦ୍ରଦେବଙ୍କୁ ନ ଦେବାରୁ ଭାଗ ।
ଦକ୍ଷଯାଗ ଭାଙ୍ଗିବାପାଇଁ ରୁଦ୍ର ଶୂଳ
ଫିଙ୍ଗନ୍ତେ ସେ ଶୂଳ ଯେ ହୋଇଣ ପ୍ରବଳ ।
ଦକ୍ଷଯାଗକୁ ନାଶି ନାରାୟଣ ଉରେ
ବାଜି ସେ ନିନ୍ଦା କଲା ବଜ୍ରକୁ ଧ୍ୱନିରେ ।
ଏ ସକାଶୁଁ ନାରାୟଣଙ୍କ କେଶ ଫିଟି
ଯିବାରୁ ମୁକ୍ତକେଶ ବୋଲାଏ କରୀଟୀ ।
ଏ ଅନ୍ତେ ନାରାୟଣ କରନ୍ତେ ହୁଁ କାର
ଆଶ୍ରା କଲା ସେ ଶୂଳ ଯାଇ ଶିବକର ।
ଶିବ କ୍ରୋଧ ହୋଇ ନର ନାରାୟଣ–
ଠାକୁ ଧାଇଁ ଆସିଲେ କରିବାକୁ ରଣ ।

ନାରାୟଣ ତା ଦେଖି ଶିବ ହାବୁକାଟି
ମାରନ୍ତେ ନୀଳକଣ୍ଠ ଶିବ ହୋଇଲେଟି ।
ନର ସେ ସମୟେ ଶିବଙ୍କ ନାଶ ପାଇଁ
ଈଷୀକାଟି ଧରି ମନ୍ତ୍ରିଲେ କ୍ରୋଧବହି ।
ସେ ଇଷୀକା ନରଙ୍କ ମନ୍ତ୍ରରେ ପରଶୁ
ହୋଇଣ ନିନ୍ଦା କଲା ସୂର୍ଯ୍ୟଙ୍କର ଅଂଶୁ ।
ନରଙ୍କ ହାତୁଁ ଫିଙ୍ଗି ଶିବ ଦେହ ବାଜି
ସେ ପରଶୁ ପଡ଼ିଲା ମହୀ ତଳେ ଭାଜି ।
ଏଣୁ ଖଣ୍ଡପରଶୁ ନାମ ମହେଶ୍ୱର
ବୋଲନ୍ତି ପାର୍ଥ ଏଥି ସନ୍ଦେହ ନ କର ।
ଅରଜୁନ ବୋଇଲେ ଆହେ ପୀତବାସ
ହରି ହର ଦୁହେଁ ଯୁଝିଲେ ବହି ରୋଷ ।
ଏ ଦୁଇରେ ବିଜୟ ହୋଇଲା କାହାର
କହ ତ ଶୁଣିବାକୁ ହୁଏ ମନ ମୋର ।
ଶ୍ରୀକୃଷ୍ଣ ବୋଇଲେ ହେ ରୁଦ୍ର ନାରାୟଣ
ଯୁଦ୍ଧ ଦେଖି ଭୟ ଲଭିଲେ ଲୋକଗଣ ।
ନିଉଡ଼ିଲେ ଘିଅ ଯେ ନ ଜଳିଲେ ଅଗ୍ନି
ଭୟେ ଦେବଶ୍ରେଣୀ ରହିଲେ ହୋଇ ତୁନି ।
ବ୍ରହ୍ମା ଆସନ ମଧ୍ୟୁ ଟଳି ପଡ଼ିଗଲେ
ଶେଷଦେବ ଧରାକୁ ଧରି ନ ପାରିଲେ ।
ହିମାଳୟ ପର୍ବତ ଶିଖରୁ ଶୃଙ୍ଗ ଧାଡ଼ି
ଧଡ଼ ପଡ଼ ହୋଇ ପଡ଼ିଲା ତଳେ ଗଡ଼ି ।
ଏରୂପେ ଉତ୍ପାତ ନ ସହି ଦେବଲୋକ
ସଙ୍ଗତରେ ଘେନିଣ ସାବିତ୍ରୀ ନାୟକ ।
ରୁଦ୍ର ହରିଙ୍କ ଯୁଦ୍ଧସ୍ଥାନରେ ମିଳିଲେ
ଆହା କି କର୍ମ ହେଲା ବୋଲି ବିଚାରିଲେ ।
ରୁଦ୍ରଙ୍କୁ ବୋଇଲେ ହେ ନର ନାରାୟଣ
ଏ ତିନିଲୋକଙ୍କର ଅଟନ୍ତି କାରଣ ।
ଦୁହେଁ ଏକରୂପ ପୁଣି ଯେ ଏକତନୁ
ତୁମ୍ଭେ କ୍ଷମା ଯୁଝୁଛ ତାଙ୍କ କରି ମନ୍ୟୁ
ତାହାଙ୍କ ପ୍ରସନ୍ନ ନୋହିଲେ ତିନିଲୋକ—
ଯାକଙ୍କର ମୃତ୍ୟୁ ମୋଡ଼ିବ ନିଶ୍ଚେ ବେଗ ।
ଏହି ରୂପରେ ବ୍ରହ୍ମା କରନ୍ତେ ସ୍ତୁତି
ସତ ବୋଲି ମନେ କରିଣ ଉମାପତି ।
ନାରାୟଣ ଦେବଙ୍କୁ କରାଇ ପ୍ରସନ୍ନ
କହିଲେ ନ ଜାଣି ମୁଁ କଲି ଆୟୋଧନ ।

ନାରାୟଣ ବୋଇଲେ ତୁମ୍ଭର ଆମ୍ଭର
ଭେଦ ନାହିଁଟି ଆହେ ରୁଦ୍ର ମନେ କର ।
ତୁମ୍ଭକୁ ଯେ ଜାଣଇ ମୋତେ ସେ ଜାଣଇ
ତୁମ୍ଭର ଯେ ଭକ୍ତ ମୋହର ଭକ୍ତ ସେହି ।
ତୁମ୍ଭର ଶୂଳଘାତ ମୋହର ହୃଦରେ
ଶ୍ରୀବତ୍ସଚହ୍ନ ହୋଇ ରହୁ ନିରନ୍ତରେ ।
ମୋ ହାତୁକା ତୁମ୍ଭର କଣ୍ଠେ ତ ବାଜିଛି
ନୀଳକଣ୍ଠ ନାମ ବହ ମୁଁ ବୋଲୁଅଛି ।
ଏରୂପେ ଶିବ ନର ନାରାୟଣ ତିନି
ଯୁଦ୍ଧରୁ ନିବର୍ତ୍ତିଲେ ପ୍ରୀତି ମନେ ଘେନି ।
ଦେବେ ତାହା ଦେଖିଣ ଆନନ୍ଦ ହୋଇଲେ
ବ୍ରହ୍ମାଙ୍କୁ ଘେନି ଯେଝା ସ୍ଥାନକୁ ଗମିଲେ ।
ଗୋଲୋକ ବ୍ରହ୍ମଲୋକ ଆଦି ଯେତେ ଲୋକ
ଅଛି ତହିଁ ଜାଣ ମୁଁ ଅଟଇ ନାୟକ ।
ମୁଁ ରଖିଥିବା ଘେନି ଭାରତେ ବିଜୟ—
ପାଇଲେ ନଷ୍ଟେଁ କର ଜାଣ ହେ ବିଜୟ ।
ଯୁଦ୍ଧରେ ତୁମ୍ଭ ଆଗେ ଧାଇଁଥାନ୍ତି ଯେହି
ମୋ କ୍ରୋଧୁ ଜାତ ରୁଦ୍ରଦେବ ଜାଣ ସେହି ।
ସେହି ତ ଆଗ କରିଥାଆନ୍ତି ସଂହାର
ପୁଣି ପଛରେ ତୁମ୍ଭେ ବିନ୍ଧ ବାର ଶର ।
ଏହାର ପ୍ରକାଶରୁ ତୁମ୍ଭର ଶରଟା
ତେଜଅଗ୍ନିରେଟି ଦହଇ ଚରୁ ଲତା ।
ଶିବଙ୍କୁ ନମସ୍କାର କର ମୁଁ ବୋଲୁଛି
ପ୍ରତଥର ଜୟ ହୋଇବ କୁନ୍ତୀ ବହ୍ନି ।
ଶୌନକ ବୋଇଲେ ହେ ନର ନାରାୟଣ ।
ଦେଖିବାକୁ ଗଲେ ନାରଦ ଋଷିରାମ ।
ଶ୍ୱେତଦ୍ୱୀପର ନାରାୟଣ ଆଜ୍ଞା ପାଇ
କି କଲେ ସେ ଋଷି କହ ତ ତା ବତାଇ ।
ସଉତି ବୋଇଲେ ହେ ଲକ୍ଷେ ତ ଶ୍ରୀଭାରତ
ମର୍ତ୍ତ୍ୟରେ ରଖିଛନ୍ତି ବ୍ୟାସ ତପୋବନ୍ତ ।
ଲକ୍ଷେକେ ସାର ନାରାୟଣୀୟ ଅଟଇ
ଦହିଲେ ବହୁଣୀଟି ଯେରୂପେ ହୁଅଇ ।
ଭଗବାନଙ୍କଠାରୁ ବଡ଼ ହୋଇ କଥା
ଅଛି ବୋଲି ବାଢ଼ି ନାହାନ୍ତି ଗୁଣମଥା ।
ଆମ୍ଭମାନଙ୍କର ବୋଲିବା ଶକ୍ତି କାହିଁ
କିସ ପଚାରୁଛ ଶୌନକ ଋଷିସାଇଁ ।

ନାରାୟଣ କଥାରେ ଫଳଇ ଯେ ଫଳ
ଯେରୂପେ ଆଉ କାହିଁ ନ ଫଳଇ ଫଳ ।
ଏହିରୂପେ ଜନ୍ମେଜୟଙ୍କୁ ମହାଋଷି
ବଇଶମ୍ପାୟନ କହିଲେ ହୋଇ ତୋଷୀ ।
ଜନ୍ମେଜୟ ବୋଇଲେ ମୋ ପୂର୍ବପୁରୁଷ
ମାନଙ୍କର ଧନ୍ୟଟି ବଳ ପଉରୁଷ ।
କୃଷ୍ଣ ସହାୟରୁ ନିର୍ମୂଳ ଶତ୍ରୁକୁଳ
କରି ହସ୍ତିନାରେ ହୋଇଲେ ମହୀପାଳ ।
ନାରଦ ମହାଋଷି ଶ୍ୱେତଦ୍ୱୀପେ ଯାଇ
ନୟନେ ଯା ଦେଖିଲେ ଜଗତ ଗୋସାଇଁ ।
ଏଥିରୁ ବଡ଼ ଭାଗ୍ୟ ହୋଇ କଥା ଅଛି
ବୋଲିବାରୁ ବଚନ ତୁଣ୍ଡ୍ରୁ ନ ଆସୁଛି ।
ଏହା ଉତ୍ତରୁ ନର ନାରାୟଣାଶ୍ରମେ
କାହିଁକିଟି ଗଲେ ନାରଦ ରହେ ଶ୍ରମେ ।
କେତେ କାଳ ବା ତହିଁ ରହିଲେ ନାରଦ
ଏହାକୁ ଜାଣିଥିଲେ ମୋ ଆଗରେ ବଦ ।
ଏହା ଶୁଣିଣ ବଇଶମ୍ପାୟନ ଋଷି
ବ୍ୟାସଙ୍କୁ ନମସ୍କାର କରି ହସି ହସି ।
ବୋଇଲେ ରାଜନ ହେ ନର ନାରାୟଣ
ଆଶ୍ରମ ପାଶେ ଯହିଁପାଇଁଟି ଗମନ ।
ନାରଦ ମହର୍ଷି କଲେ ତା ତୁମ୍ଭ ଆଗେ
କହିବା ବସି ଶୁଣ ମାନସ ସରାଗେ ।
ଶ୍ୱେତଦ୍ୱୀପ ହରିଙ୍କି କରି ଦରଶନ
ମେରୁ ଶିଖେ ଗଲେ ନାରଦ ତପୋଧନ ।
ମେରୁଶିଖରୁ ଗନ୍ଧମାଦନେ ଗମିଲେ
ତଦନ୍ତେ ନର ନାରାୟଣଶ୍ରମେ ହେଲେ ।
ଦେଖିଲେ ନର ନାରାୟଣଙ୍କର ରୂପ
କୋଟିସୂର୍ଯ୍ୟ ପ୍ରଭାକୁ କରୁଅଛି ଲୋପ ।
ବିଷ୍ଣୁଙ୍କ ଚିହ୍ନାଯାକ ବହିଅଛି ଅଙ୍ଗ
ଶୋଭାରେ ତୁଚ୍ଛ ହୋଇଯିବଟି ଅନଙ୍ଗ ।
ମହାପୁରୁଷଙ୍କର ଲକ୍ଷଣଟି ଯେତେ
ତାହାଙ୍କୁଠାରେ ଜାଣ ରହିଅଛି ତେତେ ।
ନାରଦ ମନେ କଲେ ଶ୍ୱେତଦ୍ୱୀପବାସୀ
ତେଜକୁ ଯାଙ୍କ ତେଜ ଦେଉଅଛି ନାଶି ।
ସାକ୍ଷାତେ ଏ ଅଟନ୍ତି ବିଷ୍ଣୁଙ୍କ ସ୍ୱରୂପ
ଦେଖିଲି ଯାଙ୍କୁ ଯାହା ଗୁଡ଼ିଲା ମୋ ପାପ ।

ଏହିରୂପେ ଅନେକ କଥା ମନେ କରି
ସେ ଦୁହିଙ୍କି ନମି ନାରଦ ତପସ୍ୱୀ ।
ତାଙ୍କ ସମୀପରେ ପକାଇ କୁଶାସନ
ବସିଲେ ବୀଣା କରେ ଧରି ତପୋଧନ ।
ତପଶେଷରେ ନର ନାରାୟଣ ଋଷି
ବସିଛନ୍ତି ଦେଖିଲେ ନାରଦ ମହର୍ଷି ।
ପାଦ୍ୟ ଅର୍ଘ୍ୟ ଘେନି ଦୁହେଁ ସେ ନାରଦଙ୍କୁ
ପୂଜା କଲେ ହୃଦରେ ବହି ପ୍ରମୋଦକୁ ।
ଏଥୁଅନ୍ତେ ସେ ନାରାୟଣ ମହରଷି
ସେ ନାରଦଙ୍କୁ ପଚାରିଲେ ହସି ହସି ।
ଶ୍ୱେତଦ୍ୱୀପେ ଆପଣ ଯିବା ଯେ ହୋଇଲେ
ଦେଖିଥିଲେ ବିଷ୍ଣୁ କହିବା ହେଉ ଭଲେ ।
ଆମ୍ଭ ଦୁହିଙ୍କି ସେ ସର୍ଜନା କରିଛନ୍ତି ।
ଚଉଦଭୁବନର ପିତା ସେ ବୋଲାନ୍ତି ।
ନାରଦ ବୋଇଲେ ମୁଁ ଶ୍ୱେତଦ୍ୱୀପଙ୍କରେ
ଯେଉଁରୂପେ ଦେଖିଲି ବିଷ୍ଣୁଙ୍କୁ ନୟନରେ ।
ସେହିରୂପେ ଦିଶୁଛ ତୁମ୍ଭେ ଦୁଇ ଭାଇ
ମୋର ଏ କଥାରେଟି ଆନ କିଛି ନାହିଁ ।
ତୁମ୍ଭ ଦୁହିଁଙ୍କି ମୁହିଁ ବିଷ୍ଣୁଙ୍କ ସମୀପେ
ଦେଖିଛି ସାକ୍ଷାତେ ନୟନେ ଶ୍ୱେତଦ୍ୱୀପେ ।
ତୁମ୍ଭ ଦୁଇ ବିନା ତ ବିଷ୍ଣୁଙ୍କ ସଦୃଶ
ଆନ ହେବା ବୋଲି କହିବ କାହା ଭାଷ ।
ବିଷ୍ଣୁଙ୍କଠାରୁ ଅବତାରମାନ ମୁହିଁ
ଯେ ହେବ ହୋଇଛି ତ ଶୁଣି ଆସିଲଇଁ ।
ଶ୍ୱେତଦ୍ୱୀପରେ ଯେତେ କରିଛନ୍ତି ଚର
ଶୁକ୍ଳବରନଟି କେତେକ ଶରୀର ।
ବଇଷ୍ଣବମାନେ କରନ୍ତି ଯେତେ କର୍ମ
ତା ମଧ୍ୟ ଘେନୁଛନ୍ତି ଶ୍ରୀପୁରୁଷୋତ୍ତମ ।
ତାଙ୍କ ଆଜ୍ଞା ଘେନି ମୁଁ ଏଠାକୁ ଆସିଲି
ତୁମ୍ଭର ଦୁହିଙ୍କର ପାଦରେ ନମିଲି ।
ନର ନାରାୟଣ ବୋଇଲେ ଋଷିବର
ଧନ୍ୟ ଅଟ ଯାହା ଦେଖିଲ ଚକ୍ରଧର ।
ବ୍ରହ୍ମାଦ୍ଦି ଦେବତାଙ୍କୁ ସେ ଦେଖା ନ ଯାନ୍ତି
ବଡ ପୁଣ୍ୟ ନ କଲେ କେହି ନ ଦେଖନ୍ତି ।
ଭକତଙ୍କୁ ଅଧିକ ତାଙ୍କର ପ୍ରିୟ ହୋଇ
ନାହିଁ ଯା ବୋଲନ୍ତି ସନ୍ଦେହ ଏଥି ନାହିଁ ।

ଆମ ଦୁହିଙ୍କର ବିନା ତାହାଙ୍କ ସ୍ଥାନ
ଦେଖିବାକୁ ଜାଣ ମହୀରେ ନାହିଁ ଆନ ।
ସହସ୍ରେ ସୂର୍ଯ୍ୟ ତେଜ ବିଷ୍ଣୁଙ୍କ ସ୍ଥାନଟି
ଜାଣ ଆହେ ନାରଦ ସତ କହୁଛିଟି ।
ବିଷ୍ଣୁଙ୍କଠାରୁ କ୍ଷମା ହୋଇଅଛି ଜାତ
କ୍ଷମାରେ ନାରଦ ହୋଇଛି ଭୂମି ଯୁତ ।
ବିଷ୍ଣୁଙ୍କରଠାରୁ ଯେ ରସ ଜନମିଛି ।
ଜନକୁଟି ଦ୍ରବ୍ୟ ସେ କରାଇ ଦେଉଛି ।
ବିଷ୍ଣୁଙ୍କରଠାରୁ ହୋଇଣ ତେଜ ଜାତ
ସୂର୍ଯ୍ୟଙ୍କ ତେଜକୁ କରୁଛି ପ୍ରଦୀପିତ ।
ସ୍ପରଶ ତାଙ୍କଠାରୁ ଜନମ ପାଇଛି
ପବନକୁ ଘେନି ଜଗତେ ବିହରୁଛି ।
ତାଙ୍କଠାରୁ ଶବଦ ହୋଇକରି ଜାତ
ଦେଖ ତ ହୋଇଅଛି ଆକାଶେ ବ୍ୟାପିତ ।
ମନ ତାହାଙ୍କଠାରୁ ଜନମକୁ ପାଇ
ରହିଲା ଘର କରି ତାଙ୍କଠାରେ ଯାଇ ।
ଯେଉଁମାନେ ବିଷ୍ଣୁଙ୍କୁ କରଥାନ୍ତି ଧ୍ୟାନ
ସୂର୍ଯ୍ୟ ଦ୍ୱାର ହୁଅନ୍ତି ଜାଣ ତପୋଧନ ।
ପ୍ରଦ୍ୟୁମ୍ନ ଅନିରୁଦ୍ଧ ସଙ୍କର୍ଷଣ ଦେହେ
କ୍ରମରେ ସେ ରହନ୍ତି ନ ପଡ଼ଣ ମୋହେ ।
ଏକାନ୍ତେ ବାସୁଦେବ ଦେହରେ ମିଶନ୍ତି ।
ଜଳରେ ଜଳପରି ନିମଜ୍ଜି ରହନ୍ତି ।
ଧର୍ମକୁଳେ ଜନମ ହୋଇ ଆମ୍ଭେମାନେ
ବିଷ୍ଣୁଙ୍କୁ ଭଜୁଅଛୁଁ ଜାଣ ଏହି ସ୍ଥାନେ ।
ବିଷ୍ଣୁ ଅବତାର ମହୀରେ ଯେବେ ହେବ ।
ବହୁ ପ୍ରାଣୀଙ୍କର ମଙ୍ଗଳ ଉପୁଜିବ ।
ଶ୍ୱେତଦ୍ୱୀପେ ତୁମ୍ଭ ତୁଲରେ ଦେଖା ହୋଇ
ଅଛୁଁ କଥାବାର୍ତ୍ତା ଆମ୍ଭର ହୋଇ ନାହିଁ ।
ନର ନାରାୟଣଙ୍କଠାରୁ ଏ ବଚନ
କର୍ଣ୍ଣେ ଦେଶେ ଶୁଣି ନାରଦ ତପୋଧନ ।
ପୁଣି ଯେ ବଦରିକାଶ୍ରମରେ ରହିଲେ
ସହସ୍ର ସମ୍ବତ୍ସର ବିଷ୍ଣୁଙ୍କୁ ଜପିଲେ ।
ଏଥୁ ଅନନ୍ତରେ ନାରଦ ମହାଦ୍ୱିଜ
ମହାତୋଷେ କରିଲେ ଦେବ ପିତୃକାର୍ଯ୍ୟ ।
ନର ତାହା ଦେଖି ପୁଚ୍ଛିଲେ ନାରଦଙ୍କୁ
ଦେବ ପିତୃ କରମ କହ ତ ଆମ୍ଭଙ୍କୁ ।

ନାରଦ ବୋଇଲେ ମୁଁ ତୁମ୍ଭଠାରୁ ଶୁଣି
ପୂଜୁଛି ବିଷ୍ଣୁ ଦେବତାଙ୍କୁ ପୁଣି ପୁଣି ।
ବିଷ୍ଣୁ ଦେବଙ୍କ ନାତି ଅଟଇ ତ ମୁହିଁ
ପିତୃକାର୍ଯ୍ୟ ଏଣୁଟି ବସିଣ କରଇଁ ।
ଶାସ୍ତ୍ର ତ ଲେଖିଅଛି ପିତା ପ୍ରପିତାଙ୍କୁ
ପିଣ୍ଡକୁ ଦେଉଥିବ ବହ୍ନିଣ ଭାବକୁ ।
ଏଣୁ ତଳେ କୁଶ ପକାଇ ବଡ଼ାଟିଏ
ପିଣ୍ଡ ଦେଉଅଛୁ ତାହାଙ୍କୁ ଋଷିରାୟେ ।
ତୁମ୍ଭଙ୍କୁ ପଚାରୁଛୁ ପିତୃନାମ ପିଣ୍ଡ
କାହିଁ ପାଇଁ ବିଖ୍ୟାତ ହେଲା ଏ ବ୍ରହ୍ମାଣ୍ଡ ।
ଏହା ମୋହର ଆଗେ ଆହେ ନାରାୟଣ
ମହର୍ଷିବର ତା କର ହେ ବଖାଣ ।
ନାରାୟଣ ବୋଇଲେ ବ୍ରହ୍ମାଙ୍କ କୁମର
ଆଜ୍ଞା ହେଲା ଆମ୍ଭଙ୍କୁ ତୁମ୍ଭ ପୁଚ୍ଛିବାର ।
ବରାହରୂପେ ହରି ମହୀ ଉଦ୍ଧରିଲେ
ନିଜସ୍ଥାନରେ ରଖି ଦାନ୍ତ ଝାଡ଼ିଦେଲେ ।
ସେ ଦାନ୍ତୁଁ ତିନୋଟି ପିଣ୍ଡୁଳାମାଟି ପଡ଼ି—
ବାର ତଳରେ ଦେଖି କୁଶ ଦେଲେ ପାଡ଼ି ।
ସେ କୁଶରେ ସେ ତିନିପିଣ୍ଡେ ଯାଇ ରହି—
ବାରୁ ସନ୍ତୋଷ ହୋଇ ବରାହଗୋସାଇଁ ।
ଆପଣାକୁ ଯେ ପିତୃକଳପନା କଲେ
ଦେହରୁ ତିଳ କାଢ଼ି ପିତୃଙ୍କୁ ତା ଦେଲେ ।
ପିତା ପିତାମହ ପ୍ରପିତାମହ ତିନି
ବୋଲି ଏ ତିନିପିଣ୍ଡ ଲୋକେ ଥିବେ ଘେନି ।
ଏହିରୂପେ ବରାହ କରିବାରୁ ଋଷି
ପିଣ୍ଡକୁଟି ପିତୃ ବୋଲିକରଣ ଭାଷି ।
ଯେଉଁମାନେ ପିତୃଦେବଙ୍କୁ ପୂଜୁଥାନ୍ତି
ବିଷ୍ଣୁଙ୍କ ପୂଜାଫଳ ଅଲଭ୍ୟେ ଲଭନ୍ତି ।
ଏହିରୂପେ ନାରଦ ନାରାୟଣ ବାଣୀ
ମହାତୋଷ ହୋଇଲେ କର୍ଣ୍ଣଦେବ ଶୁଣି ।
ନର ନାରାୟଣଙ୍କ ପାଦରେ ନମିଲେ
ଆପଣା ଆଶ୍ରମକୁ ବୋଲି ସେ ଗମିଲେ ।
ଆହେ ଜନମେଜୟ ନର ନାରାୟଣ
କଥା ଯା ଶୁଣିଲ ତରିଲ ତୁମ୍ଭେ ଜାଣ ।
ଥାଉ ସାକ୍ଷାତରେ କର୍ମର ବା ମନରେ
ବିଷ୍ଣୁଙ୍କୁ ଦ୍ୱେଷ କଲେ ପଡ଼ଇ ନର୍କରେ ।

ନର-ନାରାୟଣ ଦ୍ୱେଷୀଙ୍କ ନାହିଁ ଗତି
ତା ଘେନି ମଧ୍ୟ ପିତୃ ନରକକୁ ଯାନ୍ତି ।
ବେଦବ୍ୟାସ ନାରାୟଣ ମୂରତି ହୋଇ
ଥିବାରୁ ଭାରତ ଶ୍ଳୋକରେ ଛନ୍ତି କହି ।
ବିଷ୍ଣୁ ବିନା ଆନ ଲୋକ ଏହି ଭାରତ
କରିବା ଥାଉ ଶୁଣି ନ ପାରେ ଏ ତତ୍ତ୍ୱ ।
ଧ୍ରୁବପଦ ପ୍ରତିଆଖ୍ୟାନେ ମନ ଦେଇ
ଜାଣ ଆହେ ଜନ୍ମେଜୟ ସତ୍ୟ କହୁଥାଇ ।
ଏବେ ଅଶ୍ୱମେଧଯାଗର ସମାପତି
କର ହେ ଜନ୍ମେଜୟ ନୃପ ବହି ପ୍ରୀତି ।
ବଇଶମ୍ପାୟନ ବଚନେ ଜନ୍ମେଜୟ
ଯାଗ ସମାପ୍ତରେ ନିବେଶି ମନ ଲୟ ।
ଋଷିଙ୍କି ବୋଇଲେ ହେ ଯାଗ ବେଗେ ସାର
ସମାପତିକାଳ ତ ହେଲାନି ଆମ୍ଭର ।
ଏହା କହି ଯେ ବଇଶମ୍ପାୟନ ମୁଖ
ଚାହିଁ ପୁଣି ପୁଚ୍ଛିଲେ ନରକୁଳଶିଖ ।



## ମଧୁକୈଟଭ ସଂହାର

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଶୁଣିଲି ମୁହିଁ ସବୁ ଧର୍ମର ଆଖ୍ୟାନ ।
ପୂର୍ବେ ତ କହିଥିଲ ହୟଗ୍ରୀବମୂର୍ତ୍ତି
ହୋଇଣ ଥିଲେ ରମାଦେବୀଙ୍କର ପତି ।
ହୟଗ୍ରୀବ ବିଷ୍ଣୁଙ୍କୁ ଦେଖି ପିତାମହ
କି କଲେ ତା କହ ମୋଠାରେ ଥିଲେ ସ୍ନେହ
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଶୁଣ ତା ମୋହଠାରୁ ଦେଇ ମନ ଲୟ ।
ପୂର୍ବେ ଯୁଧିଷ୍ଠିର ବ୍ୟାସଙ୍କୁ ନେତ୍ରେ ଦେଖି
ହୟଗ୍ରୀବ କଥା ପୁଚ୍ଛିଲେ ହୋଇ ସୁଖୀ ।
ବ୍ୟାସ ବୋଇଲେ ହେ ରାଜନ ଯୁଧିଷ୍ଠିର
ପଞ୍ଚଭୂତଦେହେ ଦେବତା ମନୁଷ୍ୟର ।
କେବଳ ନାରାୟଣ ଦେବଙ୍କ ନୁହନ୍ତି
ପଞ୍ଚଭୂତଶରୀରେ ରାଜନ ଉତ୍ପତ୍ତି ।
ପ୍ରଳୟ କାଳେ ପଞ୍ଚମହାଭୂତେ ଲୋପ
ହୋଇଲେ ତ ଆହେ ପାଣ୍ଡବକୁଳ-ନୃପ ।
ବ୍ରହ୍ମକୁ ଅନିରୁଦ୍ଧ ବିଷ୍ଣୁ ଜାତ ହେଲେ ।
ପ୍ରଳୟ-ଜଳେ ଶେଯ କରି ସେ ଶୋଇଲେ ।

ପ୍ରଳୟ ଅନ୍ତେ ନାଭିପଦ୍ମରୁ ବ୍ରହ୍ମାଙ୍କୁ
ଜାତ କଲେ ସେହୁ ଜଗତ ସର୍ଜିବାକୁ ।
ନାଭିପଦ୍ମରେ ଜଳବିନ୍ଦୁ ଦୁଇଗୋଟି
ପଡ଼ନ୍ତେ ଜାତ ହେଲେ ଦାନବ ଯୋଡ଼ିଟି ।
ତାହାଙ୍କର ନାମ ଯେ ମଧୁ କଇଟଭ
ସ୍ମରିଲେ ତାହାଙ୍କ ପିତା ପଦ୍ମନାଭ ।
ତାମସ କର୍ମରେ ବ୍ରହ୍ମାଙ୍କ ବେଦ ସ୍ମରି
ଲୁଟି ନେଇଗଲେ ସେ ଦୈତ୍ୟ ନ ବିଚାରି ।
ବେଦ ଲୁଟିନିଅନ୍ତେ ବ୍ରହ୍ମା ଦୁଃଖୀ ହୋଇ
ଅନିରୁଦ୍ଧ ବିଷ୍ଣୁଙ୍କୁ ଜଣାଇଲେ ଯାଇ ।
ଆହେ ପ୍ରଭୁ ମଧୁ କଇଟଭ ଏ ଦୁହେଁ
ବେଦ ନେଇଗଲେ ମୁଁ ମରୁଅଛୁ ମୋହେ ।
କେଉଁରୂପେ ସଂସାର କରିବି ସର୍ଜନା
ଏହା ମୋତେ ଥରେ କହ ତ ମହାମନା ।
ଏହିରୂପେ ଜଣାଇ ଦୁଇକର ଯୋଡ଼ି
ସ୍ତୁତି କଲେ ବିଷ୍ଣୁଙ୍କ ପାଦ ତଳେ ପଡ଼ି ।
ମନ ଚକ୍ଷୁ ବଚନ କର୍ଣ୍ଣ ନାସା ପାଦ
ଏମାନରୁ କ୍ରମେ ଜନ୍ମିଛୁ ବହି ମୋଦ ।
ଏ ସଂସାରଯାକ ସର୍ଜନା କରିଅଛୁ
ଏଥିରେ ମୋ ବାଧା କେ କରିନାହିଁ କିଛୁ ।
ଏବେ ମୁଁ ସାକ୍ଷୁଆଳ ଜନ୍ମେ ନାଭି ଦେଶ
ପଦ୍ମରୁ ତୁମ୍ଭରଠି ହୋଇଲି ପ୍ରକାଶ ।
ମଧୁ କଇଟଭରେ ଦେଖିଣ ମୋତେ ଊଣା
ମୋ ବେଦ ଲୁଟିନେଲେ କରି କୁଳି ବଣା ।
ଏବେ ମୋର ବେଦ ଆପଣ ଯେବେ ଦେବ
ତେବେ ମୋ ହାତେ ସୃଷ୍ଟି ସର୍ଜନାହୋଇବ
ନୋହିଲେ ହୋଇ ନାହିଁ ଆହେ ନରହରି
ଦିଅ ବା ନ ଦିଅ ମୁଁ କଲି ତ ଗୁହାରି ।
ଏହା ଶୁଣିଣ ଅନିରୁଦ୍ଧ ବିଷ୍ଣୁ ତୋଷ
ଲଭି ହୃଦପୂରେ ଗୁଡ଼ଲେ ନିଦା ଆଶ ।
ହୟଗ୍ରୀବମୂର୍ତ୍ତିକି ଆପଣେ ଧଇଲେ
ଜ୍ୟୋତିରେ ଚନ୍ଦ୍ରଙ୍କର କାନ୍ତିକ ନାଶିଲେ ।
ସେ ହୟଗ୍ରୀବଙ୍କ ନକ୍ଷତ୍ର ଦେବବାସ
ମୂର୍ଦ୍ଧା ହୋଇଲେଟି ହେ ଜାଣ ନରଈଶ ।
ଆକାଶ ପାତାଳ ଏ ହୋଇ ବେନି କାନ
ପୃଥ୍ୱୀ ଦେବୀ ଲଲାଟ ହୋଇଲେଟି ଜାଣ ।

ଗଙ୍ଗା ସରସ୍ୱତୀ ସେ ଭ୍ରୂଲତା ହୋଇଲେ
ଚନ୍ଦ୍ର ସୂର୍ଯ୍ୟ ଏ ଦୁହେଁ ଚକ୍ଷୁ ବୋଲାଇଲେ ।
ସନ୍ଧ୍ୟା ତାହାଙ୍କର ହୋଇଲାଟି ନାସିକା
ସ୍ୱଜ୍ୟୋତି ଜିଭ ହୋଇଲା ଜାଣ ଏକା ।
ପିତୃମାନେ ତାଙ୍କର ଦନ୍ତ ବୋଲାଇଲେ
ଗୋଲୋକ ବ୍ରହ୍ମଲୋକ ଓଷ୍ଠଟି ହୋଇଲେ ।
କାଳରାତ୍ରି ହୟଗ୍ରୀବଙ୍କ ଗ୍ରୀବାଦେଶ
ଆଶ୍ରେ କରି ଫୁଲାଇ ଦେଲେ ହୃଦଦେଶ ।
ଏହିରୂପେ ସେ ହୟଗ୍ରୀବମୂର୍ତ୍ତି ହୋଇ
ପାତାଳରେ ପ୍ରବେଶ ହେଲେ ତହୁଁ ଯାଇ ।
ହୟଗ୍ରୀବ ମଧୁ କଇଟଭ ସେ ବେଦ
ରଖିଥିଲେ ଲୁଚାଇ ହୃଦେ ବହି ମୋଦ ।
ଯୋଗବଳେ ତାହାଙ୍କୁ ଉଚାଟ କରାଇ
ନେଲେ ବେଦକୁ ଆଣି ଜଗତଗୋସାଇଁ ।
ବ୍ରହ୍ମାଙ୍କୁ ବୋଇଲେ ହେ ନିଅ ତୁମ୍ଭ ବେଦ
ବ୍ରହ୍ମା ସେ ବେଦ ପାଇ ହୋଇଲେ ପ୍ରମୋଦ
ଏ ଅନ୍ତେ ବ୍ରହ୍ମା ସୃଷ୍ଟି ସରଜନା କଲେ
ଅନିରୁଦ୍ଧ ବିଷ୍ଣୁ ଯେ ନିଶ୍ଚିନ୍ତେ ବୋଇଲେ ।
ସେ ମଧୁ କଇଟଭ ହୟଗ୍ରୀବ ବେଦ
ନେଲେ ବୋଲିଣ ଜାଣ ହୋଇ କ୍ରୋଧଛନ୍ଦ
ଅନିରୁଦ୍ଧ ବିଷ୍ଣୁଙ୍କ ପାଶକୁ ଅଇଲେ
ଆଛା ଅଛ ବୋଲିଟି ଅଟ୍ଟହାସ୍ୟ କଲେ ।
କହିଲେ ଆମ୍ଭେ ନେବା ବେଦ ତୁମ୍ଭେ ଆଣି
ଶୋଇଲେ ନିଶ୍ଚିନ୍ତ କି ହେବ ଚକ୍ରପାଣି ।
ଉଠ ଉଠ ଏବେ ହେ କରିବା ସମର
ବୁଝ ତ ବଳ ଆମ୍ଭ ଦୁଇ ଭାଇଙ୍କର ।
ବିଷ୍ଣୁ ତାହାଙ୍କ ଯୁଦ୍ଧଇଚ୍ଛାଟିକି ଜାଣି
ଯୁଦ୍ଧ କଲେ ଦୁଇ ବାହୁକୁ ଦେଇ ଟାଣି ।
ବିଷ୍ଣୁଙ୍କ ବଳେ ମଧୁ କଇଟଭ ଦଳ—
ହୋଇ ପ୍ରାଣ ଗୁଡ଼ିଲେ ପାଣ୍ଡବ ବୋବାଳ ।
ବ୍ରହ୍ମା ବେଦ ପାଇଣ ସ୍ଥାବର ଜଙ୍ଗମ
ମାନଙ୍କୁ ସର୍ଜିଲେ ହେ ନୃପତି ଉତ୍ତମ ।
ବିଷ୍ଣୁ ତାହାକୁ ଦେଖି ହୋଇ ମହାସୁଖୀ
ଅନ୍ତର୍ଦ୍ଧାନ ହୋଇ ଶୋଇଲେ ବୁଜି ଆଖି
ଏହିରୂପରେ ବିଷ୍ଣୁ ହୟଗ୍ରୀବ ମୂର୍ତ୍ତି
ହେଲେ ଶୁଣିଲ ନ ପାଣ୍ଡବ ନରପତି ।

ଆଉ ମୋତେ କସ ପୁଚ୍ଛିବା ଇଚ୍ଛା ତୁମ୍ଭେ
କରିଥିଲେ ପୁଚ୍ଛ କହିବା ତାହା ଆମ୍ଭେ ।
କାର୍ଯ୍ୟକୁ ସୃଷ୍ଟିଣ ଜଗତକର୍ତ୍ତା ହରି
ବିହରନ୍ତି ଜଗତେ ନାନା ମୂର୍ତ୍ତି ଧରି ।
ଯାଗ ମନ ସତ୍ୟ ଯେ ପ୍ରବୃତ୍ତି ନିବୃତ୍ତି
ଧରମ ତ ଯୋଗ ସାଙ୍ଖ୍ୟ କାଳର ଗତି ।
ଗନ୍ଧ ରସ ସ୍ପରଶ ରୂପ ଶବ୍ଦ କୀର୍ତ୍ତି
ଗିରି ଆଦି ଜାଣନ୍ତି ନାରାୟଣମୂର୍ତ୍ତି ।
ନାରାୟଣ ମହିମା ନ ଜାଣୁଛି କେହି
ନାରାୟଣ ମାୟାରେ ହୋଇନ୍ତି ସର୍ବେ ମୋହି ।
ଦଇବ ପିତୃକର୍ମେ ବିଷ୍ଣୁ ହିଁ ଆଶ୍ରୟ
ଅଟନ୍ତି ଜାଣ ଆହେ ଧର୍ମଙ୍କ ତନୟ ।
ସବୁ ପ୍ରାଣୀଙ୍କଠାରେ ରହିବାରୁ ହରି
ବାସୁଦେବ ନାମଟିକ ଅଛନ୍ତି ଧରି ।
ବିଷ୍ଣୁଙ୍କର ଗତିକ ପାଇବାରୁ ଜନ
ଥିବାପରି ଦେଖୁନାହାନ୍ତି ମୋ ନୟନ ।
ଜ୍ଞାନବନ୍ତ ଋଷିଏ ଜ୍ଞାନ ବଳେ କେତେ
ଦେଖନ୍ତି ବିଷ୍ଣୁଙ୍କ ମୂରତିକ ନେତେ ।

—●—

## ଏକାନ୍ତ-ଭକ୍ତ ଚରିତ

ଜନ୍ମେଜୟ ବୋଇଲେ ଏକାନ୍ତ ଭକ୍ତଙ୍କୁ
ପାଆନ୍ତି ସୁଖ ହରି କହ ତା ଆମ୍ଭଙ୍କୁ ।
ଏକାନ୍ତ ଭକ୍ତ ଧର୍ମ କଇଛି କେ ଲୋକ
ତାହାକୁ କହ ମୋତେ ହେ ଋଷିତିଳକ ।
ବଇଶମ୍ପାୟନ ବୋଇଲେ ହେ ରାଜନ
ଏକାନ୍ତ ଭକ୍ତକଥା ପାର୍ଥେ ଜନାର୍ଦ୍ଦନ ।
ଯୁଦ୍ଧ ଦାଣ୍ଡେ ଗୀତରେ କହି ଯାଇଛନ୍ତି
କେବଳ ଅରଜୁନ ତାହା ଜାଣିଛନ୍ତି ।
ଋଷିଙ୍କ ଠାରୁ ଲେ କୃଷ୍ଣ ଖ୍ୟାତି ଟି ଏକାନ୍ତ
ଭକତ କଥା ଶୁଣିଛନ୍ତି ଦେଇ ଚିତ୍ତ ।
ବେଦବ୍ୟାସ ଋଷି ଏକାନ୍ତ ଭକ୍ତ କଥା
କହି ମୋର ଛଡ଼ାଇଛନ୍ତି ହୃଦବ୍ୟଥା ।
ଏଣୁ କରି ତା ଜାଣିଅଛି ହେ ରାଜନ
ଏ କଥାରେ କିଛି ସନ୍ଦେହକୁ ନ ଦେନ ।
ନାରାୟଣ ମନରୁ ବ୍ରହ୍ମଙ୍କୁ ସର୍ଜିଲେ
ଯେବେ ତେବେ ଏକାନ୍ତ ଭକ୍ତି କରିଥିଲେ ।
ତାଙ୍କଠୁ ସେ ଧର୍ମ ଫେନପ ଋଷିମାନେ
ବସିକରି ଶିକ୍ଷା କରିଲେ ତୋଷମନେ ।
ଫେନପଙ୍କଠାରୁ ପାଇଣ ବୈଖାନସେ
ଚନ୍ଦ୍ରଦେବତାଙ୍କୁ ଦେଲେକ ସେ ହରଷେ ।
ଚନ୍ଦ୍ରଠାରୁ ସେ ଧର୍ମ ହେଲା ଅନ୍ତର୍ଦ୍ଧାନ
ଆନ ଜନଙ୍କର ଯେ ନ ଶୁଣିଲା କାନ
ଚକ୍ଷୁରୁ ଜାତ ବ୍ରହ୍ମା ଏକାନ୍ତ ଭକତ
କଥା ବିଷ୍ଣୁଠାରୁ ଶୁଣିଲେ ଦେଇ ଚିତ୍ତ ।
ସେ ଧର୍ମଟି ନେଇ ରୁଦ୍ରଙ୍କୁ ସମର୍ପିଲେ
ରୁଦ୍ର ବାଲଖିଲ୍ୟମାନଙ୍କୁ ନେଇ ଦେଲେ ।
ସେ ଧର୍ମଟି ବାଲଖିଲ୍ୟଙ୍କଠାରୁ ଲୋପ
ହୋଇଗଲା ଜାଣ ହେ ଜନ୍ମେଜୟ ନୃପ ।
ବଚନରୁ ବ୍ରହ୍ମା ଯେବେ ଜାତ ହୋଇଲେ
ନାରାୟଣଙ୍କର ଠାରୁଟି ସେ ଶିଖିଲେ ।
ଏକାନ୍ତଭକ୍ତ ଧର୍ମକୁ ହେ ନରଈଶ
ମୋ କହିବାରୁ ଜାଣ ଦେଇଣ ମାନସ
ସୁପର୍ଣ୍ଣ ମୁନି ବ୍ରହ୍ମାଠାରୁ ତିନଥର
ଶିକ୍ଷା କରିଣ ଶିଖାଇଲେ ସେ ସମୀର
ପବନଙ୍କଠାରୁ ବିଘଶାସୀ ଋଷି—
ମାନେ ସେ ଧର୍ମକୁ ଶିଖିଲେ ଘୋଷି ଘୋଷି ।
ଋଷିଙ୍କଠାରୁ ମହୋଦଧି ତା ପାଇଲେ
ତାହାଙ୍କଠାରୁ ଆଉ କେହି ନ ଜାଣିଲେ ।
କର୍ଣ୍ଣରୁ ଯେବେ ବ୍ରହ୍ମା ଉତପତ୍ତି ହେଲେ
ଏକାନ୍ତ ଧର୍ମ ବିଷ୍ଣୁଠାରୁ ସେ ଶିଖିଲେ ।
ଯେହି ଧର୍ମବଳେ ବ୍ରହ୍ମାଣ୍ଡ ସରଜନା
କରିଲେ ପିତାମହ ବ୍ରହ୍ମ ମହାମାନା ।
ନାରାୟଣ ଦେବଙ୍କୁ ମନରେ ପୂଜାନ
କଲେ ପ୍ରୀତି ବହି ବର୍ଣ୍ଣିଜ ଅବଚ୍ଛିନ୍ନ ।
ସ୍ୱାରୋଚିଷମନୁଙ୍କୁ ଏକାନ୍ତ ଭକ୍ତିଟି
ଶିଖାଇଲେ ହୃଦରେ ରାଗ କରି ଗୋଟି ।
ସ୍ୱାରୋଚିଷ ଯେ ମନୁ ପୁତ୍ର ଶଙ୍ଖପଦ
ଆଗେ ବସି କହିଲେ ବହି ଅତି ମୋଦ ।
ଶଙ୍ଖପଦ ସୁତ ସୁବର୍ଣ୍ଣାଭ ଯେ ଥିଲେ
ଶଙ୍ଖପଦଠାରୁ ସେ ଭକତି ଶିଖିଲେ ।
ସୁବର୍ଣ୍ଣଭଙ୍କଠାରୁ ଏକାନ୍ତ ଭକତ
କଥାଟି ହେ ରାଜନ ହେଲା ଅନ୍ତର୍ହିତ ।

ନାସିକା ମଧ୍ୟୁଁ ବ୍ରହ୍ମା ଯେବେ ଜାତ ହେଲେ
ନାରାୟଣଠାରୁ ସେ ଭକତି ଶିଖିଲେ ।
ବ୍ରହ୍ମାଙ୍କଠାରୁ ତାହା ସନତକୁମାର
ଶିଖି ଅତିଶୟ ସନ୍ତୋଷେ ନୃପବର ।
ସାରଣ-ବ୍ରହ୍ମାଙ୍କୁଟି ତାହା ଶିଖାଇଲେ
ସାରଣ ତାହା ଯାଇ ରୈଭ୍ୟଙ୍କୁ କହିଲେ ।
ରୈଭ୍ୟଙ୍କ ସୁତ କୁକ୍ଷି ରୈଭ୍ୟଠାରୁ ଶିଖି
ମରିଗଲେ ରାଜନ ହୃଦମଧ୍ୟେ ରଖି ।
ସେ ଧର୍ମ ତ କାହାକୁ ନୋହିଥିଲା ଜଣା
ଏଣୁ ସେ ସେହିଠାରୁ ହୋଇଲା ଅଜଣା ।
ଅଣ୍ଡରୁ ଜାତ ବ୍ରହ୍ମା ଏକାନ୍ତ ଭକତ
କଥା ବିଷ୍ଣୁଠାରୁ ଶୁଣିଲେ ଦେଇ ଚିତ୍ତ ।
ବର୍ହିଷଦ ମୁନଙ୍କୁ ତାହା ଶିଖାଇଲେ
ବର୍ହିଷଦ ଜ୍ୟେଷ୍ଠ ଦ୍ୱିଜଙ୍କୁ ପଢ଼ାଇଲେ ।
ଜ୍ୟେଷ୍ଠଙ୍କରୁ ଶିଖିଲେ ଅବିକମ୍ପ ନୃପ
ଅବିକମ୍ପଠାରୁଟି ଧର୍ମ ହେଲା ଲୋପ ।
ପଦ୍ମରୁ ଯେବେ ବ୍ରହ୍ମା ଉତପତ୍ତି ହେଲେ
ଏକାନ୍ତ ଭକ୍ତି ବିଷ୍ଣୁଠାରୁଟି ଶିଖିଲେ ।
ଦକ୍ଷପ୍ରଜାପତିଙ୍କ ଦେଲେ ବେଦପତି
ଦକ୍ଷ ଦେଲେ ସୂର୍ଯ୍ୟଙ୍କୁ କହି ଅତି ପ୍ରୀତି ।
ବିବସ୍ୱାନମନୁ ଆଗରେ ସୂର୍ଯ୍ୟ ତାହା
କହିଲେ ଏକାନ୍ତରେ ହୋଇଣ ଉତ୍ସାହା ।
ବିବସ୍ୱାନ ଆପଣ ପୁତ୍ର ବୈବସ୍ୱତ-
ମନୁଙ୍କୁ ଶିଖାଇଲେ ହୋଇ ହୃଷ୍ଟଚିତ୍ତ ।
ବଇବସ୍ୱତଠାରୁ ଇକ୍ଷ୍ୱାକୁ ଏକାନ୍ତ—
ଧର୍ମକୁ ଶିଖିଲେ ରାଜନ ଦେଇ ଚିତ୍ତ ।
ଇକ୍ଷ୍ୱାକୁଙ୍କଠାରୁ ଏ ତିନଲୋକଯାକ
ଧରମ ବ୍ୟାପିଲା ହେ ହସ୍ତିନା-ନାୟକ ।
ପ୍ରଳୟରେ ଧରମ ଲୋପ ହୋଇଅଛି
ପ୍ରଳୟ ନୋହିଥିବାଯାକ ପ୍ରକାଶିଛି ।
ଏହି ଏକାନ୍ତଧର୍ମ ସାକ୍ଷାତେ ନାରଦ
ବିଷ୍ଣୁଙ୍କଠାରୁ ଶିଖି ହେଲେ ମହାମୋଦ ।
ବୈଷ୍ଣବମାନଙ୍କେ ପ୍ରଧାନ ଯେ ଅଟଇ
ଏକାନ୍ତଧର୍ମ କଥା ସେହିଟି ଜାଣଇ ।
ଏକବ୍ୟୂହ ଦ୍ୱିବ୍ୟୂହ ତ୍ରିବ୍ୟୂହ ଚୌବ୍ୟୂହ
ହୁଅନ୍ତି ହରି ଯୁଗଭେଦେ ବହି ସ୍ନେହ ।

ଅକର୍ତ୍ତା କର୍ତ୍ତା କାର୍ଯ୍ୟ ଅକାର୍ଯ୍ୟଟି ହରି —
ବିନା ଆନଲୋକକୁ କୋଳିଟି ନ ପାରି ।
ଯେତେବେଳେ ତାଙ୍କର ହୁଅଇ ଯେ ଇଚ୍ଛା
ତେତେବେଳେ ତାହା କହନ୍ତି ନୃପବତ୍ସା ।
ଏକାନ୍ତଭକ୍ତ ରତ ହେଲେ ଲୋକଯାକ
ସତ୍ୟଯୁଗ ହେ ହେବ ଅବନୀ-ନାୟକ ।
କୃଷ୍ଣ ଜିଷ୍ଣୁ ଦୁହେଁ ଋଷିଙ୍କ ଭୁଲେ ଶୁଣି
ଅଛନ୍ତି କହିଛନ୍ତି ବ୍ୟାସ ଋଷିମଣି ।
ଯୁଧିଷ୍ଠିର ନୃପତି ଆଗରେ ନରେଶ
ମୋ କଥାରେ କିଛି ନ ଘେନ ଶଙ୍କା ଲେଶ
ବ୍ୟାସଙ୍କୁ ଏ କଥା ନାରଦ କହିଛନ୍ତି
ନାରଦଙ୍କ ପରିଟି ନାହିଁ ଆଉ ଯତି ।
ଜନ୍ମେଜୟ ବୋଲେ ଏକାନ୍ତ ଧର୍ମ ଛାଡ଼ି
ଆନ ଧର୍ମ ଲୋକେ ଆଣନ୍ତି କମ୍ପା ଲୋଡ଼ି ।
ବଇଶମ୍ପାୟନ ବୋଇଲେ ସାତ୍ତ୍ୱିକ
ରାଜନ ତାମସଟି ଏ ଅବନୀଯାକ ।
ମାତ୍ର ତ ରହିଛି ଏକାନ୍ତଭକତଟି
କଥା କରପରେ କରିବେ ଲୋକସଷି ।
ସାତ୍ତ୍ୱିକଧର୍ମ ଯେଉଁ ଲୋକଟି ଜାଣଇ
ନାରାୟଣଦେବଙ୍କୁ ତାହାର କରଇ ।
ସାଙ୍ଖ୍ୟ ଯୋଗ ସମାନ ସାତ୍ତ୍ୱିକଧରମ
ଜାଣ ଆହେ ଜନମେଜୟ ନରୋତ୍ତମ ।
ନାରାୟଣଦେବଙ୍କ ଅନୁଗ୍ରହ ଥିଲେ
ସାତ୍ତ୍ୱିକଧର୍ମ ଲୋକ ଅଚରଇ ଭଲେ ।
ରାଜସ ତାମସରେ ଯୁକ୍ତ ଯେଉଁ ନର
ପ୍ରବୃତ୍ତଧରମ କରେ ସେ ବ୍ୟବହାର
ରାଜସ ତାମସକୁ ବ୍ରହ୍ମା ରୁଦ୍ର ଦୁହେଁ
ଅବଚ୍ଛିନ୍ନେ ଗୃହିଣ ଥାଆନ୍ତି ସ୍ନେହେ ।
ଜନ୍ମେଜୟ ବୋଇଲେ ରଜ ତମ ପୁଣ
ଯାହାଠାରେ ଅଛି ହେ ଋଷିକୁଳଗଣ ।
କିରୂପେ ସେ ହରିଙ୍କି ଭଜେ ମହାମତେ
କହିବାହେଉ ଥରେ ସୁପ୍ରସନ୍ନଚିତ୍ତେ ।
ବୈଶମ୍ପାୟନ ତହୁଁ ବୋଇଲେ ନିଷ୍କ୍ରିୟ
ହେଲେ ଲୋକ ହୁଅଇ ହରିଙ୍କର ପ୍ରିୟ ।
ସାଙ୍ଖ୍ୟଯୋଗ ବେଦ ଯେ ପଞ୍ଚରାତ୍ର ଶାସ୍ତ୍ର
ନାରାୟଣଙ୍କର ଏ ଜାଣ ନୃପପୁତ୍ର ।

ବୈଷ୍ଣବଧର୍ମ ତୁମ୍ଭ ଆଗେ କହିଲଇଁ
ସାମର୍ଥ୍ୟ ଥିଲେ ବେଗେ କର ନରସାଇଁ ।
ଏ ଧର୍ମ ଯୁଧିଷ୍ଠିର ରାଜାଙ୍କୁ ବେଦବ୍ୟାସ
କହିଛନ୍ତି ଜାଣ ହେ ନରକୁଳଈଶ ।
ଏ ଧର୍ମକୁ ମାୟାରେ ପାଷଣ୍ଡି ହୋଇ ନରେ
ନ କରନ୍ତି ଭାବନା ଥରେଟି ମନରେ ।
କୃଷ୍ଣଟି ତିନିଲୋକ ସଂହାର କାରକ
ବୋଲିଣ କର ନୃପବର ହେ ବିବେକ ।
ଜନ୍ମେଜୟ ବୋଇଲେ ସାଙ୍ଖ୍ୟ ପଞ୍ଚରାତ୍ର—
ଯୋଗ ଆଦି ପ୍ରବର୍ତ୍ତି ଅଛନ୍ତି ଜଗତ ।
ଏକନିଷ୍ଠ ପୃଥକନିଷ୍ଠାକେ ଅଛନ୍ତି
ଏହା ମୋତେ କହିବା ହେଉ ମହାମତି
ଏହାକୁ ଶୁଣିକରି ବଇଶମ୍ପାୟନ
ଶତ୍ରୁନ୍ୟଦେଶକୁ ଗୁହିଁ ହୋଇଲେ ମଉନ ।
କହିଲେ ନାରାୟଣ ସର୍ଜିତ ଯେ ବ୍ୟାସ
ମୋ ମସ୍ତକ ଲୋଟୁ ତାହାଙ୍କ ପାଦଦେଶ ।
ତାଙ୍କର ପ୍ରସନ୍ନରେ ତୁମ୍ଭେ ପଚାରିବା
କଥାଟିକି କେତେ ଅବା ହେ ଉଚ୍ଚାରିବା
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହୁଅଛ ତ କଥା ମନ କରି ଆନ ।
ପରାଶରଙ୍କର ତନୟ ବ୍ୟାସ ହେଲେ
ନାରାୟଣଙ୍କର ସୁତ ସେ କେହ୍ନେ ହେଲେ ।
ବଇଶମ୍ପାୟନ ବୋଇଲେ ହିମାଳୟ—
ତଟେ ରହି ସତ୍ୟବତୀଙ୍କର ତନୟ ।
ଶ୍ରୀମହାଭାରତକୁ ଶ୍ଲୋକ ନିର୍ଭାକଲେ
ଆମ୍ଭ ପାଞ୍ଚଶିଷ୍ୟଙ୍କୁ ତାହା ପଢ଼ାଇଲେ ।
ସୁମନ୍ତୁ ଜୈମିନି ପୈଳ ଶୁକ ମୁହିଁ
ପଢ଼ିଲୁ ଜାଣ ହେ ହସ୍ତିନା ନରସାଇଁ ।
ଶିଷ୍ୟମାନଙ୍କରେଟି ହୁଅନ୍ତେ ଆବୃତ
ବ୍ୟାସ କଲେ ବ୍ରହ୍ମାଙ୍କ ଦେହ-ଶୋଭା ହତ ।
ସେହିକାଳରେ ଆମ୍ଭେ ପଚାରିଲୁଁ ତାଙ୍କୁ
ଆହେ ନୃପବର ତାହାଙ୍କର ଜନ୍ମକୁ ।
ବ୍ୟାସ ତହୁଁ ବୋଇଲେ ଆହେ ସବୁ ଶିଷ୍ୟ
ନାରାୟଣଙ୍କଠାରୁ ମୁଁ ହୋଇଛି ପ୍ରକାଶ ।
ଯେଉଁରୂପେ ତାହା ସେରୂପେ ତୁମ୍ଭ ଆଗେ
କହିବି ବସି ଶୁଣ ସମସ୍ତେ ସରାଗେ ।

ସପ୍ତମବ୍ରହ୍ମା ତ ନାଭିପଦ୍ମୁଁ ଜାତ
ହେଲେ ହୋଇବାକୁ ଜଗତ-ଜନ-ତାତ ।
ବିଷ୍ଣୁ ତାଙ୍କୁ ବୋଇଲେ ସର୍ଜ ପ୍ରଜାକୁଳ
ସେ ବୋଇଲେ ତହିଁକି ନାହିଁ ମୋର ବଳ ।
ତାହା ଶୁଣି ବିଷ୍ଣୁ କରନ୍ତେ ମନେ ଚିନ୍ତା
ପାଇଗଲେ ଆସି ବୁଦ୍ଧିରେ ସେ ଦେବତା ।
ବୁଦ୍ଧି ବୋଇଲେ ମୁହିଁ କି କରିବି ହରି
ଆଜ୍ଞାକୁ ଦିଅ ମୋତେ ବିଳମ୍ବ ନ କରି ।
ବିଷ୍ଣୁ ବୋଇଲେ ହେ ବ୍ରହ୍ମାଙ୍କ ଦେହେ ରହି
ସେ ହେଉଛନ୍ତି ପ୍ରାଣୀ ସର୍ଜନାରେ ମୋହି ।
ବିଷ୍ଣୁଙ୍କ ବୋଲରେ ହେ ବ୍ରହ୍ମାଙ୍କ ଦେହରେ
ବୁଦ୍ଧି ପରବେଶ ହୋଇଲେ ସୁମନରେ ।
ପାଆନ୍ତେ ବୁଦ୍ଧି ବ୍ରହ୍ମା ହୋଇକରି ତୋଷ
ସର୍ଜିବି ପ୍ରଜା ବୋଲି ଆରମ୍ଭିଲେ ନିଶ ।
ବ୍ରହ୍ମା ତ ବ୍ରାହ୍ମଣର ସଂଜ୍ଞା ବହିଥିଲେ
କର୍ମମତ ହେବାରୁ ନିଶଟି ଧଇଲେ ।
ବିଷ୍ଣୁ ସେକାଳେ ମନେ କଲେ ପରମେଷ୍ଠି
ସର୍ଜନା କରିବେ ତ ବସି ପ୍ରଜାସୃଷ୍ଟି ।
ଏହି ସକାଶୁଁ ଦୈତ୍ୟ ଦାନବ ଉରଗ
ଜାତ ହୋଇ ନାଶ କରିବେ ଧର୍ମଭାଗ ।
ଉପାୟଟିଏ ଆମ୍ଭେ ତହିଁକି ନ କରି
ଥିଲେ ପ୍ରାଣୀମାନ ତ ନଷ୍ଟେ ଯିବେ ସରି ।
ଏହିରୂପେ ଅନେକ କରିଣ ଭାବନା
ହୋଇବି ଅବତାର କଲେ ସେ କାମନା ।
ଉଚ୍ଚାରନ୍ତେ ସରସ୍ୱତୀଙ୍କି ସେ ଗୋବିନ୍ଦ
ସାରସ୍ୱତ ଜନ୍ମିଲେ ବହିଣ ଆନନ୍ଦ ।
ଅପାନ୍ତରତମା ତାଙ୍କର ଅଟେ ନାମ
ମୋ କହିବାରୁ ଜାଣ ନୃପତି-ଉତ୍ତମ ।
ତାଙ୍କୁ ଆଜ୍ଞା ଦେଲେ ଜଗତପ୍ରଭୁ ହରି
ତୁମ୍ଭେ ବେଦ-ବିଭାଗେ ହୁଅ ଅଧିକାରୀ ।
ସ୍ୱାୟମ୍ଭୁବମନୁ ହୁଅନ୍ତେ ପରାପର
କଲେ ବେଦବିଭାଗ ହୋଇ ତୋଷତର ।
ତାହା ଦେଖିଣ ଭଗବାନ ତୋଷ ହେଲେ
ଅପ୍ରଧୃଷ୍ୟ ତୁମ୍ଭେ ହୋଇବ ଆଜ୍ଞା ଦେଲେ ।
ସବୁ ମନ୍ୱନ୍ତରେ ଯେ ବେଦର ବିଭାଗ
ତୁମ୍ଭେ ହେ କରୁଥିବ ବହିଣ ସରାଗ ।

ତୁମ୍ଭଠାରୁ କୁରୁକୁଳରେ କଳିଯୁଗ—
ହୁଅନ୍ତେ ଜନ୍ମିବେ କୁରୁଏ ମହାଭାଗ ।
ତୁମ୍ଭ ବିନା ସେମାନେ ପୃଥ୍ୱୀ ଲୋଭ କରି
ମରାମରି ହୋଇ ମରିବେ ଶସ୍ତ୍ର ଧରି ।
କଳିଯୁଗ ସକାଶୁ କୃଷ୍ଣବର୍ଣ୍ଣ ହେବ
କୃଷ୍ଣ ଦ୍ୱୈପାୟନ ନାମକୁ ଯେ ବହିବ ।
ସବୁଶାସ୍ତ୍ରଯାକ ଜାଣିଲେ ହେଲେ ତୁମ୍ଭେ
ରାଗକୁ ନ ଛାଡ଼ିବ କହୁଅଛୁଁ ଆମ୍ଭେ ।
ଶିବଙ୍କ ବରେ ଯେଉଁ ପୁତ୍ର ହେବ ଜାତ
ସେ ହେବ ତୁମ୍ଭ କୁଳେ ରାଗ ବିବର୍ଜିତ ।
ବଶିଷ୍ଠଙ୍କର ନାତି ପରାଶର ଋଷି
ତାହାଙ୍କ ଭାର୍ଯ୍ୟା ସତ୍ୟବତୀ ସୁରୁକେଶୀ
ହୋଇ କନ୍ୟାକାଳେ ଯମୁନା-ତୀରେ ଜାତ—
କରିବେଟି ତୁମ୍ଭଙ୍କୁ ଏହା ଜାଣ ସତ୍ୟ—
ବ୍ରହ୍ମାଙ୍କ ଦିନଶେଷଯାଏ ଥିବ ଜୀଇ
ସବୁ ପୁରାଣଙ୍କର କରତା ବୋଲାଇ ।
ସୂର୍ଯ୍ୟଙ୍କ ପୁଅ ଶନୈଶ୍ଚର ଯେବେ ମନୁ
ହେବେ ତେବେ ଭଜିବ ସପ୍ତଋଷି ମନୁ ।
ଏଣୁ ଅପାନ୍ତରତମାଙ୍କୁ ଅନିରୁଦ୍ଧ
ବିଷ୍ଣୁ ଆଜ୍ଞା ଦେଇଅଛନ୍ତି ବହି ସଧ
ଶୁଣ ହେ ଶିଷ୍ୟମାନେ ଅପାନ୍ତରତମ
ଅଟଇଟି ଜାଣ ପୂର୍ବରେ ମୋର ନାମ ।
ବିଷ୍ଣୁଠାରୁ ପୂର୍ବୁ ତ ଜନମ ହୋଇଛି
ଏଣୁ ବିଷ୍ଣୁ ପୁତ୍ର ଜଗତେ ବୋଲାଉଛି ।
ବିଷ୍ଣୁ ବୋଲିଣ ମୋତେ ବୋଲନ୍ତି ପଣ୍ଡିତେ
ଯେଣୁ ଏହାକୁ ଶୁଣି ଥାଆନ୍ତି ସମସ୍ତେ ।
ପଚାରିବାରୁ [illegible] ବ୍ୟାସଙ୍କ ଜନମ
କହିଲି ତ ଏବେ ହେ ହୁଅ ପୂର୍ଣ୍ଣକାମ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ପୂର୍ବେ ଯା ପୁଚ୍ଛିଲ କହିବା ମନଦିଅ ।
ସାଙ୍ଖ୍ୟ ଯୋଗ ଯେ ପଞ୍ଚରାତ୍ର ପାଶୁପତ
ବେଦାନ୍ତ ଏମାନେ ଅଟନ୍ତି ନାନାମତ ।
କପିଳମହର୍ଷି ସାଂଖ୍ୟ କହିଛନ୍ତି
ଯୋଗଶାସ୍ତ୍ର ହିରଣ୍ୟଗର୍ଭ କଲେ ଖ୍ୟାତି ।
ଅପାନ୍ତରତମା କରିଅଛନ୍ତି ବେଦ
ପାଶୁପତକୁ କଲେ ଶିବ ବହୁ ମୋଦ ।
ପଞ୍ଚରାତ୍ର-ବକ୍ତା ଅଟନ୍ତି ମୁରାରି
ଆନନ୍ଦଲୋକେ ହାତେ ସେ ନୁହେଁ ଦଣ୍ଡଧାରୀ ।
ଜ୍ଞାନ-ଶାସ୍ତ୍ରମାନଙ୍କେ ନାରାୟଣ ସାର
ମୋ କହିବାରୁ ଜାଣ ନୃପତି-ଶେଖର ।
ଅଜ୍ଞାନିଏ କେବେ ବିଷ୍ଣୁଙ୍କୁ ନ ଜାଣନ୍ତି ।
ଶୁଣିଲେ ଶାସ୍ତ୍ର ମୁଣ୍ଡ ପୋତି ଦେଉଥାନ୍ତି ।
ସଂସାରଗତିଟି ସେହି ଅଟନ୍ତି ନାରାୟଣ
ଆଉ କେ ହେବ ତାଙ୍କ ବିନା ନରରାଣ—
ପଞ୍ଚରାତ୍ର କରିବା ଲୋକେଟି ଏକାଙ୍ଗ —
ଭକ୍ତିକରି ପାନ୍ତି ଶ୍ରୀହରି ଅଙ୍ଗସଙ୍ଗ ।
ଜନ୍ମେଜୟ ବୋଇଲେ ଲୋକମାନେ ଏକ
ବହୁତ କି କହ ହେ ଋଷିଙ୍କ ନାୟକ ।
ଏହା ଶୁଣିଣ ବଇଶମ୍ପାୟନ ଋଷି
ଜନ୍ମେଜୟ ଆଗେ କହିଲେ ହସି ହସି ।
ସାଙ୍ଖ୍ୟଯୋଗ ଶୁଣିବା ପୁରୁଷ ବହୁତ ।
ଏ ଅବନୀଯାକରେ ହୋଇଛନ୍ତି ଖ୍ୟାତ ।
ବେଦେ ଯେଉଁ ପୁରୁଷ ରହିଣ ଅଛନ୍ତି
ଏକ ପୁରୁଷ ବୋଲି ତାହାଙ୍କୁ କହନ୍ତି ।
ଏ ବିଷୟରେ ବ୍ରହ୍ମା ଶିବଙ୍କ ସମ୍ବାଦ
ଯା ପଡ଼ିଛି କହିବା ଶୁଣ ବହୁ ମୋଦ ।
କ୍ଷୀର ସମୁଦ୍ରଙ୍କ ମଧ୍ୟରେ ଏକା ହୋଇ
ବୈଜୟନ୍ତୀ ଶୈଳେ ସାବର୍ଣ୍ଣୀଦେବା ସାଇଁ ।
କରନ୍ତେ ଚିନ୍ତା ବ୍ରହ୍ମା କପାଳରୁ ଶିବ
ଜନମିଲେ ନିନ୍ଦି ସୂର୍ଯ୍ୟଙ୍କର ପ୍ରଭାବ ।
ବ୍ରହ୍ମାଙ୍କର ପାଦକୁ ବେନି କରେ ଧରି
ଛିଡ଼ାହେଲେ ଆଗରେ ନମସ୍କାର କରି ।
ବ୍ରହ୍ମା ପଚାରିଲେ ତୁମ୍ଭର ଜପ ତପ
କହ ତ ବାବୁ ହୋଇ ନାହିଁଟିକି ଲୋପ ।
ରୁଦ୍ର ବୋଇଲେ ଆହେ ତୁମ୍ଭର ପ୍ରସାଦେ
ଜପ ତପ କରୁଅଛୁ ମୁଁ ଅପ୍ରମାଦେ ।
ତୁମ୍ଭ ରୂପ ଦେଖି ଆସିଲି ତୁମ୍ଭ ପାଶେ
ତୁମ୍ଭେ କେତେ କାଳ ରହିବ ଏହି ଦେଶେ ।
କି କାରଣ ଏଥି ଅଛ ହେ କୁଣ୍ଡଧର
ମୋର ଆଗରେ ଏହା କର ତ ପ୍ରଚାର ।
ବ୍ରହ୍ମା ବୋଇଲେ ମୁଁ ବିରାଟ ପୁରୁଷଙ୍କୁ
ଆସିଅଛି ଏଠାକୁ ଚିନ୍ତା କରିବାକୁ ।

ରୁଦ୍ର ବୋଇଲେ ଆହେ ସବୁ ପୁରୁଷଙ୍କୁ
ସରଜନ୍ତୁ ଗୋଚର ହୋଇଛୁ ତୁମ୍ଭଙ୍କୁ ।
ଏବେ କେଉଁ ପୁରୁଷଙ୍କୁ ହେ କର ଚିନ୍ତା
କହ ତ ହେ ତାହା ଜଗତଜନ ପିତା ।
ବ୍ରହ୍ମା ବୋଇଲେ ମୁହିଁ ନିର୍ଗୁଣ-ପୁରୁଷ
ଭାବନା କରୁଛୁ ହେ ପାର୍ବତୀଙ୍କ ଈଶ ।
ଭାବନା ଅପ୍ରମେୟ ସର୍ବଙ୍କ ଶାଶ୍ୱତ
ହୋଇ ଅଛନ୍ତି ସେ ମୋହର ନିଜ ତାତ ।
ତୁମ୍ଭେ ଆମ୍ଭେ ଦୁହେଁ ନ ପାରୁ ତାଙ୍କୁ ଦେଖି
ଆନ ଲୋକଙ୍କର ଅଛି ବା କାହିଁ ଆଖି ।
ଜ୍ଞାନୀ ଲୋକ ନେତ୍ରକୁ ଜ୍ଞାନରେ ଗୋଚର
ହୁଅନ୍ତି ସେ କେବଳ ରୁଦ୍ର ମନେ କର ।
ସକଳ ପ୍ରାଣୀଙ୍କର ଦେହରେ ଅଛନ୍ତି ।
କର୍ମରେ ସେ ଲିପତ କେବେହେଁ ନୁହନ୍ତି ।
ସବୁଙ୍କର ଅନ୍ତର୍ଯ୍ୟାମୀ ସେ ଗୋବିନ୍ଦ
ସବୁବେଳରେ ହୋଇଥାଆନ୍ତି ସେ ଆନନ୍ଦ ।
ବହୁତ ପାଦ ଆଖି ହାତ ତାହାଙ୍କର
ଏତେ ତେତେ ବୋଲିଣ ଉଚ୍ଚାରି ନ ପାରି ।
କ୍ଷେତ୍ର ନାମକୁ ବହିଅଛି ତ ଶରୀର
ତାହା ତ ହୋଇଅଛି ତାହାକୁ ଗୋଚର ।
ଏଣୁ କ୍ଷେତ୍ରଜ୍ଞଟି ତାହାକୁ ବୋଲନ୍ତି
ତାକୁ ଜାଣିବାପାଇଁ ନାହିଁ କା ଶକତି ।
ମହାପୁରୁଷ ଜାଣ ତାହାଙ୍କର ନାମ
ଅନ୍ୟାନ୍ୟ ପୁରୁଷେଟି କାରଣଟି ଜାଣ ।
ଆଜ ସୂର୍ଯ୍ୟ ପବନ ସମୁଦ୍ର କାରଣ
ପରାୟେ ସେ ପୁରୁଷ କାରଣଟି ଜାଣ ।
ମନ୍ତବ୍ୟ ମନ୍ତା ବେଦ୍ୟ ବୋଧା ବୋଧମୟ
ରସମୟ ରସଜ୍ଞ ସ୍ପର୍ଶୀ ସ୍ପର୍ଶମୟ ।
ଦ୍ରଷ୍ଟବ୍ୟ ଦ୍ରଷ୍ଟା ଘ୍ରାତା ଘ୍ରେୟ ଶ୍ରବଣୀୟ
ଶ୍ରବତା ନିର୍ଗୁଣ ସଗୁଣ ଜ୍ଞାତା ଜ୍ଞେୟ ।
ଏରୂପେଟି ପରମାଆତ୍ମା ପୁରୁଷଙ୍କୁ
ବୋଲିକରି କହନ୍ତି କି ପୁଚ୍ଛ ଆମ୍ଭଙ୍କୁ ।
ତୁମ୍ଭେ ଆମ୍ଭେ ଦେବେ କରିବା ଯେବେ ଯାଗ
ଆଗ ସେ ପୁରୁଷଙ୍କୁ ଦେବା ଯାଚ ଭାଗ ।
ହେଲା ନାରାୟଣୀୟ ଏଠାରେ ସମାପ୍ତି
ଚିନ୍ତାକରି ମନରେ ବଶିଷ୍ଠଙ୍କ ନାତି ।
ବେଦବ୍ୟାସ ଗୋସାଇଁଙ୍କର ପାଦଦେଶ
କହଇ ଗୀତେ କୃଷ୍ଣସିଂହ ନରଈଶ ।

—*—

## ଉଞ୍ଛବୃତ୍ତି ବ୍ରାହ୍ମଣ ଚରିତ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ସବୁ ଧର୍ମେ ବଡ଼ ଯେ ତାହା ମୋତେ କହ ।
ଭୀଷ୍ମ ବୋଇଲେ ଆହେ ଧରମ ସମାନ
ଧରମ କଲା ଲୋକ ବସେ ସ୍ୱର୍ଗସ୍ଥାନ ।
ଯେ ଯେଉଁ ଧରମକୁ ଆଚରଣ କରେ
ସେ ଧର୍ମକୁ ସେ ବଡ଼ ଘେନଇ ମନରେ ।
ଏ ବିଷୟେ ନାରଦ ଇନ୍ଦ୍ର ଆଗେ ଯାହା
କହିଛନ୍ତି ଶୁଣ କହିବା ଏବେ ତାହା ।
ସବୁ ଲୋକ ବୁଲି ନାରଦ ଋଷିବର
ସ୍ୱର୍ଗପୁରେ ଯାଇ ଭେଟିଲେ ପୁରନ୍ଦର ।
ଇନ୍ଦ୍ରଙ୍କଠାରୁ ଯଥାବିଧି ପୂଜାପାଇ
ଇନ୍ଦ୍ର ପାଶେ ବସିଲେ ପଦ୍ମାସନ ହୋଇ ।
ଇନ୍ଦ୍ର ବୋଇଲେ ଆହେ କି ଆଶ୍ଚର୍ଯ୍ୟ ଦେଖି
ଆସିଛ ନାରଦ ତା କହି କର ସୁଖୀ ।
ନାରଦ ବୋଇଲେ ହେ ଗଙ୍ଗାଙ୍କର ତୀର-
ନିକଟେ ଅଛି ମହା ପଦ୍ମ ନାମେ ପୁର ।
ତହିଁ ଦ୍ୱିଜ ଜଣେ ହୋଇଣ ଜିତକ୍ରୋଧ
କୁଳଧର୍ମ ଆଶ୍ରେ କରନ୍ତେ ବହୁ ସଧ ।
ପଣ୍ଡିତମାନଙ୍କ ଧର୍ମକୁ ଅନୁସରି
ସ୍ଥିର କରି ଜିତୁ ନ ପାରି ତପସ୍ୟାସି ।
ବହୁତ ଚିନ୍ତା କରି ଶୁଖାଇଣ ମନ
ବସିଥିଲେ ସେଠାକୁ ଆସିଲେ ବ୍ରାହ୍ମଣ—
ଜଣେ ଛତା ଖେଦା କରଦେଶରେ ବହି
କାନ୍ଧରେ ଦୋଷଡ଼ାକୁ ଅଛନ୍ତି ଲମ୍ବାଇ ।
କାଟିଅଛନ୍ତି ଅଙ୍ଗମାନଙ୍କରେ ଚିତା
ମାଜିଅଛନ୍ତି ରୁପା ପରାୟେ ପଇତା ।
ସେ ଦ୍ୱିଜଙ୍କୁ ଦେଖିଣ ମହାପଦ୍ମପୁର
ଦ୍ୱିଜଙ୍କ ହୃଦରେ ଆନନ୍ଦ କଲା ଘର ।
ଦ୍ୱିଜଙ୍କୁ ଯଥାବିଧିରେ ସେ ପୂଜାକଲେ
ପାଦ୍ୟ ଅର୍ଘ୍ୟ ଦେଇ ଆସନେ ବସାଇଲେ ।
ବୋଇଲେ କଥାଟିଏ ମନେ ବିସ୍ମରିଛି
କହିବା ହେବ ମୋତେ ସତ୍ୟ ମୁଁ ବୋଲୁଛି ।

ବସୁସ ଆଉଁଣ୍ଡ କ କଲେ ପରଲୋକ—
ଲୋକରେ ବସିବ ମୁଁ ଛାଡ଼ି ଦୁଃଖ-ଶୋକ ।
ଏହା ମୋହର ଆଗରେ କହିବ ବତାଇ
ଜାଣିଥିଲେ ଆହେ ବ୍ରାହ୍ମଣକୁଳସାଇଁ ।
ଅତିଥି ଦ୍ୱିଜ ଶୁଣି ବୋଇଲେ ମୋ ମୋହ
ହେଉଅଛି ଆହେ କ ପୁତ୍ର ବନ୍ଧୁ ସ୍ନେହ ।
ମୋକ୍ଷ ଯୋଗଫଳ ସନ୍ନ୍ୟାସ ବାନପ୍ରସ୍ଥ
ବ୍ରହ୍ମଚର୍ଯ୍ୟ ରାଜଧର୍ମ ପୁଣି ଗାର୍ହସ୍ଥ୍ୟ ।
ଏ ଆଦି ଯେତେ ଧର୍ମ ଅଛନ୍ତି ସଂସାରେ
ଆଶ୍ରୟ କରିଛନ୍ତି ନରେ ପ୍ରତ୍ୟେକରେ ।
ପିତା ମାତା ସେବାକରି ତ କେତେ ଲୋକ
ଦେଖୁଅଛନ୍ତି ଯାଇ ସୁରଙ୍କ ନାୟକ ।
କେତେ ଲୋକ ଯୁଦ୍ଧ-ଅନଳେ ଦେହ-ହୋମ
କରି ବସୁଅଛନ୍ତି ସୁଖେ ସ୍ୱର୍ଗ ଗ୍ରାମ ।
କେତେ ଲୋକ ଅହିଂସା ସତ୍ୟ ଉଞ୍ଛବ୍ରତ
କରି ଦେଖୁଛନ୍ତି ନୟନେ ପୁରୁହୂତ ।
ଏହା ଶୁଣିକରି ପବନେ ମେଘ ପରି
ହେଉଛି ମୋ ବୁଦ୍ଧି ହେ ଜାଣ ତପସ୍ୱୀରେ ।
ଧର୍ମରେ ଥିବା ଯେବେ ତୁମ୍ଭର ମାନସ
ଦେବ ମାନେ ତୁମ୍ଭଙ୍କୁ ଧର୍ମ-ଉପଦେଶ ।
ନୈମିଷ-ଅରଣ୍ୟେ ଗୋମତୀ-ନଦୀ-ତୀରେ
ପଦ୍ମନାଭ-ନାଗ ଅଛନ୍ତି ନିର୍ଭୟରେ ।
ତୁମ୍ଭେ ମୋ ବୋଲକରି ତାଙ୍କଠାକୁ ଯାଇ
ଧରମଉପଦେଶ କରି ତୋଷ ବହି ।
ବ୍ରାହ୍ମଣ ବୋଇଲେ ମୁଁ ତୁମ୍ଭ ଉପଦେଶ
କରିବି ଆହେ ଜାଣ ଦ୍ୱିଜକୁଳ-ଈଶ ।
ଆଜ ରାତି ମାତ୍ରକ ଥାଅ ମୋର ପାଖେ
କାଲି ଯାଅ ଯହିଁ ଇଚ୍ଛା ହୋଇବ ସୁଖେ ।
ସୂର୍ଯ୍ୟ ଆସିଣ ଏବେ ହୋଇଲେଣି ଅସ୍ତ
ହେବେ ନରମାନେ ଅନ୍ଧାର-ରାହୁ ଗ୍ରସ୍ତ ।
ତୁମ୍ଭେ ଗଲେ ଯେ ଏତେବେଳେ ବାଘ-ମୁଖେ
ପଡିଯିବ, ଖାଇବ ସେ ତୁମ୍ଭଙ୍କୁ ସୁଖେ ।
ଏହା ଶୁଣି ଦ୍ୱିଜ ବୋଇଲେ ହୋଇ ହୋଇ
ଯା କହୁଛ ମନକୁ ପାଉଅଛି ଭାଇ ।
ଏତେକ ବେଲୁ ତହିଁ ପୁଆଇ ରଜନୀ
ସକାଳୁଁ ବାହାରିଲେ ଉଠି ହୋଇ ତୁନୀ ।

ତଦନ୍ତେ ମହାପଦ୍ମ ନାମ ପୁରି ଦ୍ୱିଜ
ଯିବାକୁ ଭଗହୋଇ ହୋଇକରି ସଜ ।
ଇଷ୍ଟଦେବତାଙ୍କୁ ସେ ନମସ୍କାର କରି
ବାହାରିଲେ ନଇମିଷକୁ ଅନୁସରି ।
ନଦୀ ବନ ପର୍ବତ ବହୁତ ଲଙ୍ଘିଂଲେ
ବାଟ ମଧ୍ୟେ ସେ ମୁନି ଜଣଙ୍କୁ ଭେଟିଲେ ।
ସେ କହିଲେ ନଇମିଷକୁ ଯେଉଁ ବାଟ
ସେହି ବାଟେ ଗଲେ ସେ ଦ୍ୱିଜକୁଳ ଭଟ ।
ନଇମିଷ-ଅରଣ୍ୟେ ପ୍ରବେଶ ହୋଇଲେ
ସପ ମାନଙ୍କ ସ୍ଥଳ ସମୀପରେ ହେଲେ ।
ଦେଖିଲେ ନାଗ-ପତ୍ନୀ ହୋଇଛନ୍ତି ଠିଆ
ତାଙ୍କୁ ଦେଖି ଦ୍ୱିଜର ଉଲ୍ଲସିଲା ହିଆ ।
ମୁହିଁ ବ୍ରାହ୍ମଣ ବୋଲି କହିଣ ତାହାଙ୍କୁ
ଆଗରେ ଛିଡ଼ା ହେଲେ ଛାଡ଼ିଣ ଭୟକୁ ।
ବ୍ରାହ୍ମଣକୁ ନିରେଖି ନାଗଙ୍କ ଭାରିଯା
ଆନନ୍ଦରେ ଦ୍ୱିପୂଣ ପୂଜାଇଲେ ମଙ୍ଗା ।
ଆସନଟି ଆଣି ବସିବାକୁ ଦେଲେ
ଆଉ କିସ କରିବି ବୋଲି ପଚାରିଲେ ।
ସେ ବୋଇଲେ ତୁମ୍ଭର ପତି କାହିଁଛନ୍ତି
ତାହାଙ୍କୁ କହିଦିଅ ଆସନ୍ତୁ ମୋ କତି ।
ସେ କହିଲେ ମୋ ସ୍ୱାମୀ ସୂର୍ଯ୍ୟ-ରଥ ବାହି
ଗଲେ, ସେ ଆସିବେ ଛ ଆଠଦିନ ରହି ।
ଦ୍ୱିଜ ବୋଇଲେ ମୁଁ ଆସିଛି ତାଙ୍କଠାକୁ
ନ ଦେଖିଲେ ତାହାଙ୍କୁ ନ ଯିବି ଘରକୁ ।
ବହୁତ ବିଷୟ ତ ଅଛି ତାଙ୍କଠାରେ
ଅଛି କଥାବାରତା ହେବ ବସି ଥରେ ।
ଗୋମତୀ ପୁଳିନ ଏଠାକୁ ନିକଟ
ତହିଁ ବସି ତାହାଙ୍କୁ ଚାହିଁ ଥିବି ବାଟ ।
ଏହିରୂପେ ନାଗ-ପତ୍ନୀଙ୍କି ଦ୍ୱିଜ କହି
ଗୋମତୀ-ପୁଳିନରେ ରହିଲେଟି ଯାଇ ।
ବ୍ରାହ୍ମଣ ପୁଳିନେ ରହିଲେ ଏକା ହୋଇ
ସବୁ ସର୍ପମାନେ ତା ଦେଖି ଦୁଃଖୀ ହୋଇ ।
କେଉଁ ନାଗଠାକୁ ସେ ଦ୍ୱିଜ ଆସିଥିଲେ
ତାହାଙ୍କ ଭାରିଯାଙ୍କୁ ସଙ୍ଗତେ ଘେନିଲେ ।
ଦ୍ୱିଜବର ପାଶରେ ପରବେଶ ହୋଇ
ଆଶ୍ୱାସନା କରି କହିଲେ ପ୍ରୀତି ବହି ।

ଆସିବାର ତ ଆମ୍ଭଠାକୁ ଷଷ୍ଠଦିନ
ହେଲାଣି କ୍ଷମା କରୁନାହିଁ ହେ ଭୋଜନ ।
ଆମ୍ଭେ ଏବେ ତୁମ୍ଭଙ୍କୁ ଅତିଥି ସତ୍କାର
କରୁଛୁଁ ସନ୍ତୋଷରେ ହେନ ଦ୍ୱିଜବର ।
ତୁମ୍ଭେ ନ ଖାଇବାରୁ ଆମ୍ଭେ ହୋଇ ଦୁଃଖୀ
ନୟନରେ ଲୋତକ ପାରୁନାହୁଁ ରଖି ।
ବ୍ରାହ୍ମଣ ବୋଇଲେ ହେ ଆଠଦିନ ଯାଏ
ଆହାର ନ କରିବ ଜାଣ ହେ ସତ୍ୟଏଁ ।
ଆଠଦିନ ଉତ୍ତାରୁ ନ ଆସିଲେ ନାଗ
ଖାଇବି ମୁଁ ସତ୍ୟ କରୁଛି ହୃଦ ଭାଗ ।
ସନ୍ତାପ ତୁମ୍ଭେ ଆଉ ନ କର ମନରେ
ଘରକୁ ଯାଅ ବୋଲୁଅଛି ସୁମନରେ ।
ଏହିରୂପେ ବ୍ରାହ୍ମଣ ଅନୁଜ୍ଞାକୁ ପାଇ
ଗଲେ ସବୁ ସର୍ପେ ଘରକୁ ପ୍ରୀତିବହି ।
କେତେ କାଳ ଅନ୍ତେ ସୂର୍ଯ୍ୟଙ୍କ ଅନୁଜ୍ଞାରେ
ଆସିଲେ ପଦ୍ମନାଭ ଆପଣା ସ୍ଥାନରେ ।
ଭାର୍ଯ୍ୟାଙ୍କୁ ପୁଚ୍ଛିଲେ ଦେବ ଅତିଥିଙ୍କି
ପୂଜୁଅଛଟି କି ଗୋ ବର୍ତ୍ତଣ ପ୍ରୀତିକି ।
ନାଗ-ପତ୍ନୀ ବୋଇଲେ ଶିଷ୍ୟର ଆଚାର୍ଯ୍ୟ
ବ୍ରାହ୍ମଣର ବେଦ ବଡ଼ ହେ ନାଗ-ରାଜ ।
ରାଜା ଲୋକ ରଞ୍ଜନ, ଭୃତ୍ୟ ଆଜ୍ଞା-ନାଶୀ
ହୋଇଲେଟି ଧରମ ଅଛି ବୋଲିପାରି ।
ଗୃହୀ ଲୋକ ଅତିଥିଜନଙ୍କୁ ପୂଜିଲେ
ଏ ସଂସାର-ସମୁଦ୍ର ତରିପାରେ ଭଲେ ।
ଭାର୍ଯ୍ୟାମାନଙ୍କ ପତିବ୍ରତା-ଗୁଣ
ଥିଲେ ପତିଙ୍କିଠି ତାରନ୍ତି ନାରୀଗୁଣ ।
ତୁମ୍ଭ କହିଥିବାର କଥାଟିକି ମାନି
ସତମାର୍ଗେ ଚାଲିଥାଏଁ ମୁଁ ହୋଇ ତୁମ୍ଭ ।
ତୁମ୍ଭ ଯିବା ମଧ୍ୟେ ବ୍ରାହ୍ମଣଟିଏ ଆସି-
ଥିଲେ ତାଙ୍କ ଦେଖି ମୁଁ ହୋଇ ଅତିତୋଷୀ ।
ପାଦ୍ୟ ଅର୍ଘ୍ୟ ଦେଇ ବିଧିରେ ପୂଜା କଲି
ଖାଇବାକୁ ଭକ୍ଷ୍ୟ ସାମଗ୍ରୀ ଆଣିଦେଲି ।
ସେ ବୋଇଲେ ତୁମ୍ଭ ପତିଙ୍କି ନ ଦେଖିଲେ
ଭୋଜନ ନ କରିବ ମୁଁ ତୁମ୍ଭର ବୋଲେ ।
ଏତେ ବୋଲି ଗୋମତୀ-ପୁଲିନେ ଅଛନ୍ତି
ଆଜ୍ଞା ହେଲା ଆସିବା ବୋଇଲେ ପଣ୍ଡିତ ।

ଚାଲ ଏବେ ହେ ତୁମ୍ଭେ ଆମ୍ଭେ ଦୁହେଁ ଯିବା
ଆସିଅଛନ୍ତି ଦ୍ୱିଜେ କାହିଁକି ବୁଝିବା
ନାଗ ବୋଇଲେ ସେ ଦେବତା କି ମନୁଷ୍ୟ
ଥିଲେ ତା ମୋର ଆଗେ କର ଗୋ ପ୍ରକାଶ ।
ଦେବତା ବିନା ଆନ ଲୋକ ମୋହଠାକୁ
ଆସି ନ ପାରଇଟି କହିଲି ତୁମ୍ଭଙ୍କୁ ।
ନାଗପତ୍ନୀ ବୋଇଲେ ଦେବ ସେ ନୁହନ୍ତି
କାର୍ଯ୍ୟ ପାଇଁ ସେ ତୁମ୍ଭଠାକୁ ଆସିଛନ୍ତି ।
ତୁମ୍ଭେ ଏ ଗୁମାନକୁ ମନୁ କର ଦୂର
ପୂଜା କର ଯାଇ ସେ ବିପ୍ରକୁଳବର ।
ତାହାଙ୍କ ଆଶା ଛେଦ କରି ନିଜ ନାଶ—
ନ କର ହେ ନାଗ ମୋହର ହେନ ଭାଷ ।
ଆଶା ଭଙ୍ଗନ କଲେ ବ୍ରହ୍ମହତ୍ୟା-ଦୋଷ
କରିଛନ୍ତି ଋଷିଏ ଶାସ୍ତ୍ରରେ ପ୍ରକାଶ ।
ବ୍ରାହ୍ମଣ ତ ଆସିଅଛନ୍ତି ଆଶା କରି ।
ତାଙ୍କୁ ଯାଇଁ ବୋଧ ହେ ନାଗ ନ ବିସ୍ମରି ।
ନାଗ ବୋଇଲେ ଗୋ ତୁମ୍ଭର ମୃଦୁ ଭାଷ ।
ଶୁଣିକରି ମୋହର କ୍ରୋଧ ହେଲା ନାଶ ।
ମୋ ଚକ୍ଷେ ଥିରେ ଆରେ ସ୍ୱରୁଚନ୍ଦ୍ର ମୁହିଁ
ଚୁମ୍ବ ଦିଅ ଯିବି ମୁଁ ଦ୍ୱିଜଠାକୁ ଧାଇଁ ।
ଦଶଶିର ସୀତାଙ୍କୁ ଚୋରି ନେଲାଗଲା
କ୍ରୋଧ ହେନ ସେ ଭଲମନ୍ଦ ନ ଜାଣିଲା ।
ରାମବାଣ-ସର୍ପକୁ ହୃଦ-ବନେ ଥୋଇ
ପଡ଼ିଲା ରଣାଙ୍ଗଣେ ଗୋଡ଼ ମେଲି ଦେଇ ।
ଏବେ ଦ୍ୱିଜଠାକୁ ମୁଁ ଯାଇଅଛି ସତ୍ୱରି
ତାଙ୍କ ମନୋରଥ ପୂର୍ଣ୍ଣ କରିବା ପାଇଁ ।
ଏରୂପେ ଭାର୍ଯ୍ୟାଙ୍କୁ କହିଣ ସତ୍ୱରେ
ଭିଡ଼ିଲେ ତାଙ୍କୁ ସର୍ପବର ହୃଦଭରେ ।
ମୁଖରେ ଚୁମ୍ବ ଦେଇ ହୋଇଣ ମେଲାଣି
ଗଲେ ଯେଉଁଠାରେ ଥିଲେ ସେ ଦ୍ୱିଜମଣି ।
ବ୍ରାହ୍ମଣଙ୍କୁ ଦେଖିଣ ନମସ୍କାର କଲେ
କି କାର୍ଯ୍ୟରେ ଆସିବା ହୋଇଛ ପୁଚ୍ଛିଲେ ।
ବ୍ରାହ୍ମଣ ବୋଇଲେ ମୁଁ ପଦ୍ମନାଭ ନାଗ-
ଠାକୁ ଆସିଛି ଆହେ କହିଣ ସତ୍ୱର ।
ସେ ସାପକୁ ନ ଦେଖିଲେ ମୁଁ ଯାଇ ନାହିଁ
ଏଥି ବ୍ରତ କରି ମୁଁ ଏଠାଥି ଅଛି ରହି ।

ନାଗ ବୋଇଲେ ମୁହିଁ ପଦ୍ମନାଭ ନାଗ
କି କାର୍ଯ୍ୟେ ଆସିଅଛ କହ ମହାଭାଗ ।
ଦ୍ୱିଜ ବୋଇଲେ ମୁହିଁ ପଚାରିବି ଯାହା
ତାହା ମୋତେ କହ ହେ ନାଗକୁଳ-ନାହା
ପଛେ ମୋର ଆସିବା କାର୍ଯ୍ୟକୁ କହିବି
ତେବେ ଜାଣ ମୋ ମନ ଉଲ୍ଲାସ ହୋଇବ
ସୂର୍ଯ୍ୟଙ୍କର ରଥ ଯେ ବାହୁଥାଅ ତୁମ୍ଭେ
କି ଆଶ୍ଚର୍ଯ୍ୟ ଦେଖିଲ କହ ପୁଚ୍ଛୁଁ ଆମ୍ଭେ ।
ନାଗ ବୋଇଲେ ହେ ସୂର୍ଯ୍ୟଙ୍କ କିରଣରେ
ରହିଅଛନ୍ତି ଦେବ ଯକ୍ଷ ନିରନ୍ତରେ ।
ସହସ୍ରସଂଖ୍ୟା ହୋଇ କହିବି ମୁଁ କିସ
ପଚାରୁଛ ମୋତେ ହେ ଦ୍ୱିଜକୁଳଈଶ ।
ଯେଉଁ ସୂର୍ଯ୍ୟ କିରଣେ ହେଉଅଛି ବୃଷ୍ଟି
ସେ ଗୁଣ କହିବାକୁ ଅଛି କାର ଦୃଷ୍ଟି ।
ଆଶ୍ଚର୍ଯ୍ୟ କଥାଟିଏ ତାଙ୍କ ପାଖେ ବହି
ଯା ଦେଖିଛି ତା ଶୁଣ କହିବା ବତାଇ ।
ସୂର୍ଯ୍ୟପରି ତେଜକୁ ବହିଣ ଗୋଟିଏ
ଆସିଲେ ସୂର୍ଯ୍ୟ ସମୀପକୁ ଦ୍ୱିଜ ରାୟେ ।
ସୂର୍ଯ୍ୟ ତାଙ୍କୁ ଦେଖି ବଢ଼ାଇ ଦେଇ ହାତ
ଧରିଲେ ତାହାଙ୍କ ଦକ୍ଷିଣ ଯେଉଁ ହାତ ।
ସେହିକ୍ଷଣି ସେ ଦୁହେଁ ମିଶାମିଶି ହୋଇ
ଏକ ଦେହୀ ହେଲେ ସେ ଜଣାଗଲା ନାହିଁ ।
ତାହା ଦେଖି କରି ସୂର୍ଯ୍ୟଙ୍କୁ କୃତ କୃତ—
ହୋଇ ପଚାରନ୍ତେ କହିଲେ ଦଇବତ ।
ଆଦିତ୍ୟ ଆମ୍ଭ ଆଗେ, ତାହା ତୁମ୍ଭ ଆଗେ
କହିବି ବସି ଶୁଣ ହେ ଦ୍ୱିଜ ସରାଗେ ।
ଉଞ୍ଛବୃତ୍ତି କରିଣ ଦ୍ୱିଜ ଜଣେ ଥିଲେ
ଦେହ ଛାଡ଼ି କରି ସେ ମୋ ଦେହେ ମିଶିଲେ
ଦେବ ଯକ୍ଷ ଗନ୍ଧର୍ବ କିନ୍ନର ଉରଗ
ପାଇ ନାହାନ୍ତି ମୋହର ଦେହଭାଗ ।
ଏ ବ୍ରାହ୍ମଣ ମହତ ଉଞ୍ଛବୃତ୍ତି କଲେ
ଏଣୁ ଆସି ମୋହର ଦେହରେ ମିଶିଲେ ।
ଏରୂପେ ଆଶ୍ଚର୍ଯ୍ୟ ସୂର୍ଯ୍ୟଙ୍କ ରଥେ ମୁହିଁ
ଥାଇ ଦେଖି ଅଛି ପାରିବ କେତେ କହି ।
ଦ୍ୱିଜ ବୋଇଲେ ମୁହିଁ ହୋଇଲି ସନ୍ତୋଷ
ଥାଅ ତୁମ୍ଭେ ମୁଁ ଯାଉଅଛି ମୋର ବାସ

ନାଗ ବୋଇଲେ ହେ ଆସିଛ ଯହିଁପାଇଁ
ତାହା କହି ଗଲେ ସନ୍ତୋଷ ହେବି ମୁହିଁ ।
ଆସିବାବେଳୁଁ ତୁମ୍ଭେ ହେ ଦ୍ୱିଜ-ଶେଖର
ପରିକର ତୁଲେ ମୁଁ ହେଲିଣି ତୁମ୍ଭର
ତୁମ୍ଭେ ମୋତେ ଆସିବା କାରଣ ନ କହି
ଗଲେ ମୁଁ ରହିପାରିବି କି ସୁଖ ପାଇ ।
ବ୍ରାହ୍ମଣ ବୋଇଲେ ହେ ତୁମ୍ଭର ଆମ୍ଭର
ଅନ୍ତର ନାହିଁ କିଛି ନାଗ ମନେ କର ।
ଧରମରେ ସଂଶୟ ଥିଲା ମୋର ରହି
କଥା ପ୍ରସଙ୍ଗେ ତ ତୁମ୍ଭେ ତାହା ଦେଲ କହି
ଏବେ ମୁଁ ଯାଉଅଛି ଉଞ୍ଛବୃତ୍ତି କରି
ନ ରଖି ପାଖେ ମୋତେ ଆଦର ବିସ୍ତରି ।
ଏହିରୂପେ ବ୍ରାହ୍ମଣ କହିଣ ସର୍ପଙ୍କୁ
ସେଠାରୁ ବେଗେ ଗଲେ ଭାର୍ଗବ ପାଶକୁ ।
ତାହାଙ୍କଠାରୁ ଉଞ୍ଛବୃତ୍ତି କରି ଶିକ୍ଷା
କହିଲେ ନାଗ ଦେଇଥିଲେ ଯେଉଁ ଦୀକ୍ଷା ।
ବ୍ରାହ୍ମଣଠାରୁ ଉଞ୍ଛବୃତ୍ତି ଭାରଗବ
ଶିକ୍ଷା କରି ହୃଦ-ପଦ୍ମରେ ବହି ଭାବ ।
ଜନକଙ୍କ ଘରେ ନାରଦ ଋଷି ଆଗେ
ବାଢ଼ି ବସିଲେ ତାହା କଥାର ପ୍ରସଙ୍ଗେ ।
ନାରଦେ ଇନ୍ଦ୍ରଲୋକେ ଇନ୍ଦ୍ରଙ୍କୁ ବସାଇ
ଉଞ୍ଛବୃତ୍ତି କଥାକୁ କହିଲେ ବତାଇ ।
ଇନ୍ଦ୍ର ମଧ୍ୟ ବସୁଙ୍କଠାରେ ଛାଡ଼ି ମାୟା
କହିଲେ ଉଞ୍ଛବୃତ୍ତି କଥା କରି ଦୟା ।
ପର୍ଶୁରାମ ତୁଲେ ମୁଁ ଯେବେ ଯୁଦ୍ଧ କଲି
ବସୁଙ୍କଠାରୁ ରାୟେ ଏ କଥା ଶୁଣିଲି ।
ତୁମ୍ଭେ ପଚାରିବାରୁ ହୋଇ ହୃଷ୍ଟପୁଷ୍ଟ
କହିଲି ଉଞ୍ଛବୃତ୍ତି କଥା ନୃପ-ଶ୍ରେଷ୍ଠ ।
ସବୁ ଧର୍ମଯାକରେ ଉଞ୍ଛବୃତ୍ତି ଧର୍ମ
ବଡ଼ ଅଟଇ ହେ ପାଣ୍ଡବ-ନରୋତ୍ତମ ।
ଏଠାରେ ମୋକ୍ଷଧର୍ମ ଉତ୍ତରାର୍ଦ୍ଧ ଶେଷ
କରିଲେ ବେଦବ୍ୟାସ ପରାଶର ଶିଷ୍ୟ ।
ଗିରବେଦେ ଅର୍ଥ ଜନ୍ମିଟି ଯେ ନ ଜାଣି
ଯାହା ମୁଁ ଗୀତ-ଛନ୍ଦେ ହୋଇଲି ବଖାଣି ।
ଏଥୁ ବଳି ଆଉ ତ ନାହିଁ ଉପହାସ
ସୁଜନମାନେ ମୋର ନ ଧରିବ ଦୋଷ ।

ମୋକ୍ଷଧର୍ମ ଅର୍ଥ ଅଗମ୍ୟ ପଣ୍ଡିତରେ
କେହ୍ବ ମେ ଅର୍ଥ ହେବ ଜାଣ ମୋ ମତରେ ।
ଅମୃତ-କୁମ୍ଭୁଁ କୁଶ-ଅଗ୍ରେ ସୁଧା ନେଲ—
ଯଦ୍ୟେ ଯେତେ ମୋର ବୁଦ୍ଧି ପ୍ରକାଶିଲ ।
ତେତେକ ମୁଁ ଗୀତରେ କରୁଛି ରଚନା
ଶୁଣି ଏହା ଜନେ ନୋହିବ କୋପମନା ।
ବାରଣ କରି କହୁ ନାହିଁ ତ ମୂରୁଖ—
ମାନେ ଯେବେ କରିବେ ମୋହଠାରେ ଦୁଃଖ ।
ତେବେ ତାଙ୍କ କଥାକୁ ଶୋଚନା ନ କରି
କହୁଛି ସାରାସାର ନାହିଁ ତ ତାଙ୍କରି ।
ନୀଳଗିରି-କନ୍ଦର-ମନ୍ଦିର-ବିହାରୀ
ଚତୁର୍ଦ୍ଧାମୂର୍ତ୍ତି ପୀତବସନଆଁ ହରି ।
ତୁମ୍ଭ ପଦ୍ମପାଦରେ ଲୋଟାଏ ମୋ ମାଥ
କହେ କୃଷ୍ଣସିଂହ ମୋ ମୁଣ୍ଡେ ମାଡ଼ ହାତ ।

**ସମାପ୍ତ**



ମୁଦ୍ରାକର—ଶ୍ରୀ ବିଦ୍ୟାଧର ସାହୁ, ବିଶ୍ୱବିଦ୍ୟା ପ୍ରେସ, ଅଲିଶା ବଜାର, କଟକ-୨

# କେତେକ ଉପାଦେୟ ଗ୍ରନ୍ଥ

| | |
|---|---|
| ଅଧ୍ୟାପକ ଗୌରୀକୁମାର ବ୍ରହ୍ମାଙ୍କ ଭୂମିକା ସହ ଭଞ୍ଜ ଗ୍ରନ୍ଥାବଳୀ ବନ୍ଧାଇ | ଟ ୩୧୫-୦୦ |
| ସିଦ୍ଧାନ୍ତ ଦର୍ପଣ ଅର୍ଥ ସହିତ ବନ୍ଧାଇ | ଟ ୧୦୬-୦୦ |
| ଭୃଗୁସଂହିତା ପୁରାସେଟ୍ ବନ୍ଧାଇ | ଟ ୩୪୫-୦୦ |
| ବଳରାମ ଦାସଙ୍କ ଦାଣ୍ଡି ବା ଦକ୍ଷିଣୀ ରାମାୟଣ ବନ୍ଧାଇ | ଟ ୩୦୦-୦୦ |
| ଅଷ୍ଟାଦଶ ପୁରାଣ | ଟ ୨୨୫-୦୦ |
| ଝହ୍ନାରିଲାଲ ଗୀତା ବନ୍ଧାଇ | ଟ ୮୬-୦୦ |
| ପାତଞ୍ଜଳ ଯୋଗ ଦର୍ଶନ ଅର୍ଥସହ | ଟ ୭୬-୦୦ |
| ତୁଳସୀଦାସ ରାମାୟଣ | ଟ ୧୮୦-୦୦ |
| ମନୁସଂହିତା ଅର୍ଥସହ ବନ୍ଧାଇ | ଟ ୬୧-୦୦ |
| ଭୀମଭୋଇ ଗ୍ରନ୍ଥାବଳୀ ବନ୍ଧାଇ | ଟ ୮୦-୦୦ |
| ଶ୍ରୀ ଚୈତନ୍ୟ ଚରିତାମୃତ ବନ୍ଧାଇ | ଟ ୭୬-୦୦ |
| ଶ୍ରୀ ଶ୍ରୀ ଦୁର୍ଗା ସପ୍ତସତୀ ଚଣ୍ଡୀ | ଟ ୨୬-୦୦ |
| ଶ୍ରୀ ଚୈତନ୍ୟ ଭାଗବତ | ଟ ୬୧-୦୦ |
| ଦାନ୍ ରାମାୟଣ ସେଟ୍ | ଟ ୧୬୦-୦୦ |
| ବେଣୁଧର ପଦ୍ୟାବଳୀ | ଟ ୬୧-୦୦ |
| ପୁରୋହିତ କର୍ମକାଣ୍ଡ ସେଟ୍ (ଆଠଖଣ୍ଡ) | ଟ ୩୦୦-୦୦ |
| ପଣ୍ଡିତ ସର୍ବସ୍ୱ | ଟ ୬୫-୦୦ |
| ଗଦାଧର ପଦ୍ଧତି | ଟ ୬୬-୦୦ |
| ଓଡ଼ିଶାର ରଙ୍ଗମଞ୍ଚ ଇତିହାସ | ଟ ୩୬-୦୦ |
| ନୃତ୍ୟ ବିଜ୍ଞାନ | ଟ ୫-୦୦ |

---

# ସୌପ୍ତିକ ଓ ଐଷିକ ପର୍ବ

## ବନ୍ଦନା

ଜୟ ଶ୍ରୀ ଜଗନ୍ନାଥ ନୀଳଗିରିକାର
ହୃଦନ୍ତର-ପାପକଳୁଷ ଷୋଭକାର ।
କର ବେନ ବ୍ୟାଜରେ କରକୁ ପ୍ରସାର
ବସିଛ ନେବ ପାପ-କମଳ ଉଦ୍ଧର ।
ଅଧର ରଙ୍ଗ ଗଇରିକ-ଟିହ ପର
ନେଉଅଛ ସବୁରି ନୟନକୁ ହରି ।
ସ୍ନାନ ଉତ୍ସବର କାଳରେ ମଦବାରି
ଢଳେ ଗଡ଼ ପଡ଼ଇ ତୁମ୍ଭ ଦେହେ ପୂରି ।
ମଣ୍ଡିତ ହୋଇ ନେତ୍ର-ମରନ୍ଦ-ଆହାର
ଖଣ୍ଡୁଛ ଦୁଃଖ ଇଷ୍ଟଦ୍ରଷ୍ଟ ସବୁଙ୍କର ।
ଭକ୍ତ-ଅନ୍ନ ଯାଚ ଦେଲେ ତା ଦଅ ସାର
ହୋଇଥାଅ ସାଗର-ନବତଟ ବୃଷ ।
ଛଣ୍ଡାଇଣ ତୁମ୍ଭେ ଲୋକଙ୍କ ଆଉଁବାର
ଯାଅ ନୀଳଗିରିକ ପୀତବାସଧର ।
ମହାମହିମା ହେ କମଳମାଳଧର
ଯେନ କୃଷ୍ଣସିଂହର କରିବା ଗୁହାର ।
ସାରି ଶଲ୍ୟ ଗଦା ଏ ଦୁଇ ପରବକୁ
ଗାବୁଅଛି ଏବେ ତ ସୌପ୍ତିକ ପର୍ବକୁ ।
ଗୀତ କରିବା ପାଇଁ ବସି ଅହର୍ନିଶି
ପ୍ରସନ୍ନ ହୁଅ ମୋତେ ହେ କଂସ-ବିନାଶି ।
ମୋ ମତରେ ମୂର୍ଖ କରିବ ଯେବେ ଗୀତ
କରିବେ ଉପହାସ ଶୁଣିଲେ ଜଗତ ।
ଏଣୁ ମୁଁ ପ୍ରତି ଗ୍ରନ୍ଥ ଆଦ୍ୟେ ଶ୍ରୀମୁଖରେ
ଜଣାଉଛି ପ୍ରସନ୍ନ ହୁଅ ମୋହଠାରେ ।

—○—

## କୃପ, କୃତବର୍ମା ଓ ଅଶ୍ୱତ୍ଥାମାଙ୍କର ମନ୍ତ୍ରଣା

ସଞ୍ଜୟ ବୋଇଲେ ହେ ଶୁଣ ଧୃତରାଷ୍ଟ୍ର
ଯେରୂପେ ହେଲା ତୁମ୍ଭ କୁରୁବଂଶ ନଷ୍ଟ ।
ଦକ୍ଷିଣମୁଖ ହୋଇ ଅଶ୍ୱତ୍ଥାମା କୃପ
କୃତବର୍ମା ସେଠାରୁ ଯାଇକରି ନୃପ ।

ଗହନବନେ ଯାଇ ହୋଇଲେ ଆଚ୍ଛନ୍ନ
ବଶୁରି ମନେ ପାଞ୍ଚାଳଙ୍କର ନିଧନ ।
ଆପଣା ରଥରୁ ଘୋଡ଼ାଙ୍କୁ ଫେଡ଼ିଦେଇ
ବୃକ୍ଷମୂଳମାନଙ୍କେ ବାନ୍ଧିଲେ ସେ ନେଇ ।
ଏକାଳେ ପାଣ୍ଡବ-ସଇନ-ଗରଜନ
ଶୁଣିଣ ଭାଜିଲେ ସେ ପୂର୍ବକୁ ରାଜନ ।
ମୁହୂର୍ତ୍ତିକ ଉତ୍ତରୁ ଆଶ୍ୱାସିତ ହୋଇ
ବସିଲେ ସେ ସ୍ଥାନୁଟିକରେ ନରସାଇଁ ।

ଧୃତରାଷ୍ଟ୍ର ବୋଇଲେ ଅସହନ-କର୍ମ
କରିଲେ ଭୀମ ଛାଡ଼ିକରି ଯୁଦ୍ଧ-ଧର୍ମ ।
ଅଯୁକ୍ତେ ହାଣବଳ ବହେ ସୁଯୋଧନ
ଯେନ ତ ପକାଇଲେ ତାହାର ଜୀବନ ।
ଏହାର ସକାଶରୁ ଭାବୁଅଛି ମୁହିଁ
ମୋ ହୃଦୟ କପାଇଁ ଫାଟି ଯାଉ ନାହିଁ ।

ଶଏ ପୁତ୍ର ମରାଇ ଆମ୍ଭେ ବୁଢ଼ା ବୁଢ଼ୀ
କେ ଅଛୁ ଆମ୍ଭ ହୃଦୁଁ ନେବ ଶୋକ କାଢ଼ି ।
ବଶୁଥିଲେ ତୁମ୍ଭଙ୍କୁ କହ ତ ସଞ୍ଜୟ
ହେଉଅଛି ମହାବିକଳ ମୋ ହୃଦୟ ।
ରାଜା ହୋଇଣ ଆଜଯାଏ ଧନ ନେଲୁଁ
ବୃଦ୍ଧ ଅବସ୍ଥାରେ ଅଭାଗ୍ୟ ଅରଜିଲୁ ।
ଭୀମଙ୍କ କହିବା ବଚନ ବୃଥିଖଣ୍ଡି
ଶୁଣିଲେ ସହିପାରିବ କି ମୋର ଗଣ୍ଡି ।
ମୋ ପୁଅ ବିଦୁରଙ୍କ କଥା ଥିଲେ ଶୁଣି
ଏ ଦୁଃଖ ନ ଦଅନ୍ତ ମୋତେ କୁଶପାଣି ।

କୃତବର୍ମା କୃପ ଦ୍ରୋଣି ମୋର ସୁତର
ମରଣ ଶୁଣି କି କଲେ ହେ ମନ୍ତ୍ରିବର ।
ତାହା ମୋ ଆଗରେ କହ ତ ପ୍ରକାଶ
ଶୁଣିବାକୁ ମୁହିଁଟି ହେଉଛି ଲାଳସୀ ।

ସଞ୍ଜୟ ବୋଇଲେ ହେ କହୁ ତ ଥିଲଇଁ
ମଧରୁ ଭୁଚ୍ଛା ଖଣ୍ଡେ ସୂଚ୍ଛ ନରସାଇଁ ।
କୃପ କୃତବରମା ଦ୍ରୋଣଙ୍କ ନନ୍ଦନ
ଆଶ୍ରେ କଲେ ଯାଇଣ ମହାଘୋରବନ ।
ସେ ବନେ ଦେଖିଲେ ସେ ବଟବୃକ୍ଷଟାଏ
ମଣ୍ଡି ହୋଇଅଛୁ ସେ ସହସ୍ରଶାଖାଏ ।
ଏହିକାଳରେ ଛାୟାଦେବୀଙ୍କର କାନ୍ତ
କ୍ରମେ କ୍ରମେ ଛଇଁଲେ ଅସ୍ତ-ପରବତ ।
ସେହିକ୍ଷଣି ପଶ୍ଚିମଦିଗ-ନାରୀ ଭାଲେ
ସିନ୍ଦୂର ମଣ୍ଡି ହେଲା ପରାୟେ ଦିଶିଲେ ।
ଏହା ଦେଖି ତୃମ୍ଭର ମହାରଥୀ ତିନ
ବସିଲେ ସନ୍ଧ୍ୟାରେ ଫଇତା ହସ୍ତେ ଦେନ ।
ସୂର୍ଯ୍ୟଙ୍କର ପ୍ରଭା ଯାଆନ୍ତେ ଭୂମି ଛାଡ଼ି
ଆସିଲା ନବଢ଼ ଅନ୍ଧାର ନଶି ମାଡ଼ି ।
ଚନ୍ଦ୍ରଙ୍କ କଳଙ୍କ ଅମୀୟେ ଧୋଇହେଲା
ଅନ୍ଧାର ବ୍ୟାଜେ କି ସେ ଅବା ପ୍ରସରିଲା ।
ଏ ନୋହିଲେ ଅନ୍ଧାର ରାହୁ ମେଲି ପାଟି
ଗିଳି ରବିଦେବଙ୍କୁ ହେଲା କି ଘୋଟି ।
ଆକାଶ-ବାସେ ରକ୍ଷନ୍ତି ବୃଷ୍ଟିପ୍ରାୟେ
ନେତ୍ରକୁ ଦିଶିଲେ ସବୁରି ନକ୍ଷତ୍ରୟେ ।
କାକ ଶୁକ ଶୁଣି ଉଲୁକ-କୋଳାହଳ
ଧ୍ୱନି ଆଶ୍ରୟ କଲେ ନଦୀଦେବୀ-କୋଳ ।
ଖଦ୍ୟୋତଙ୍କ ଜ୍ୟୋତିରେ ଅବନୀ-ମହିଳା
ମସ୍ତକେ କି ରତନ ବାଳୀ ମଣ୍ଡି ହେଲା ।
ଏ ରୂପେ ରଜନୀ ହୁଅନ୍ତେ ପ୍ରବର୍ତ୍ତିକ
ଶୋଇଲେ ଯେ ପାଡ଼ି ନାୟିକା ନାୟକ ।
କୃପ କୃତବର୍ମା ସେ ରଜନୀରେ ବସି
ପାଣ୍ଡବଙ୍କର ପରାକ୍ରମ ମନେ ଘୋଷି ।
ଭୟ ଶୋକ ଦୁହିଁଙ୍କି ହୃଦୟରେ ଧରି
ପଡ଼ିଲେ ଶୋଇ ନେତ୍ର ହୁଇ ବୁଜିକରି ।
ଦ୍ରୋଣସୁତ ନିଜର ପ୍ରତିଜ୍ଞା-ବଚନ ।
ସୁମରିଣ ମନକୁ କରି ଛନ ଛନ
ନିଦ୍ରା ନ ଯାଇ ସେ ବସିଲେ ଏକା ହୋଇ ।
ପଲକ ପକାଇବା କଥା ଛାଡ଼ିଦେଇ ।
ଦେଖିଲେ ସେ ବଟରେ ଶୋଇଛନ୍ତି କୁଆ
ତାକମାନଙ୍କରେଟି ଲଦିକରି ହିଆ ।

ଏହିକାଳେ ଉଲୁକଟାଏ ଉଡ଼ିଆସି
ଲୁଚି ବଟଡାଳେ ବସିଲା ଅଣ୍ଟେ ଘସି ।
ଦେଖିଲା ସେ ବୃକ୍ଷରେ ବସିଛନ୍ତି କୁଆ
ମାରିବି ବୋଲି ତାଙ୍କୁ ଫୁଲିଇଲା ହିଆ ।
ଶଙ୍କି ଧରି କାକମାନଙ୍କୁ ଦେଇ ମୋଡ଼ି
ଖାଇଲା ମାଂସ ରୋମ ଥଣ୍ଟେ ଦେଇ ଭେଡ଼ି ।
ସେ ସକାଶୁଁ କୁଆମାନଙ୍କ ମୁଣ୍ଡ ଗୋଡ଼
ସେ ଗଛ ତଳରେ ପଡ଼ିଲା ହୋଇ କୁଡ଼ ।
ଦ୍ରୋଣସୁତ ତାହା ନୟନେ ଦେଖୁଥିଲେ
ମୁଁ ଏରୂପେ କରିବି ବୋଲି ବିଚାରିଲେ ।
ଏ ଅନ୍ତେ ବୋଇଲେ ଉଲୁକ ହଳକାରୁ
ଆଜଠାରୁ ହୋଇଲା ମୋର ଶିକ୍ଷାଗୁରୁ ।
ପାଣ୍ଡୁସୁତମାନେ ତ ଜାଣି ବଳୀଆର
ତାଙ୍କୁ ମାରିବାକୁ ତ ବଳ ନାହିଁ ମୋର ।
ପାଞ୍ଚାଳମାନେ ସୁଖେ ଥିଲେ ସିନା ଶୋଇ
ତାହାଙ୍କୁ ଏ ରାତିରେ ଦେବି ମୁଁ ବଡ଼ାଇ ।
ନ୍ୟାୟେ ଯୁଦ୍ଧ କଲେ ସେ ଜିଣିବେ ପାଞ୍ଚାଳେ
ଏହି ସକାଶଛୁଟି ମାରିବି ମୁଁ କଳେ
ସଂଶୟିତ କଥାକୁ ନିଃସଂଶୟ କଥା
ବଡ଼ ବୋଲି ତ କହୁଅଛି ଶାସ୍ତ୍ର ପୋଥା ।
କ୍ଷତ୍ରିୟ ଧର୍ମ କରିଅଛି ଯେଉଁ ନର
ପର ହତ କଲେ କି ଦୋଷ ବା ତାହାର ।
ପାଣ୍ଡୁସୁତମାନେ ନିନ୍ଦିତ କର୍ମ କରି
ହେଲେ ଶତ୍ରୁ ମାରି ହସ୍ତିନା-ଦଣ୍ଡଧାରୀ ।
କହିଅଛନ୍ତି ଏହା ଜାଣିମା ମାନବ
ବଳରେ ନ ପାରିଲେ କଳରେ ମାରିବ ।
ଏହିରୂପେ ବିଚାର କରି ଦ୍ରୋଣସୁତ
ପାଞ୍ଚାଳଙ୍କୁ ମାରିବାପାଇଁ କରି ଚିତ୍ତ ।
କୃପ କୃତବର୍ମେ ଉଠାଇ ନରସାଇଁ
ଭାବିବା କଥା ତାଙ୍କୁ କହିଲେ ବତାଇ ।
କୃପ କୃତବର୍ମା ତା ଶୁଣିଣ ବଚନ
ନ କହି କଥା ତାଙ୍କୁ ହୋଇଲେ ମଉନ ।
ଦ୍ରୋଣସୁତ ବୋଇଲେ କି ବିଚାର ତୁମ୍ଭେ
ମାରିବା କି ତାହାଙ୍କୁ ଧର୍ମଯୁଦ୍ଧେ ଆମ୍ଭେ ।
ଦେଖ ଭୀମ ଯୁଦ୍ଧେ ନୃଶଂସ କାର୍ଯ୍ୟ କରି
ମାଇଲା ସୁଯୋଧନନୃପେ ଗଦା ଧରି ।

ପାଣ୍ଡୁସୁତେ ଉଡ଼ାଇ ବିଜୟ-ଚାମର
କରୁଛନ୍ତି ଯୁଦ୍ଧି ଫୁଲଇ କୋଳାହଳ ।
ଏ ବାହାରେ ଯେ ଶଙ୍ଖ ଦୁନ୍ଦୁଭି ବଜାଇ
ଥରେ ଥରେ ମଧ୍ୟ ନାଚନ୍ତି ତୋଷ ବହି ।
ପାଣ୍ଡୁସୁତମାନଙ୍କର ଏ ଚେଷ୍ଟା ଦେଖି
ଫୁଟି କପାଁ ନ ଯାଏ ଆମ୍ଭ ଦୁଇ ଆଖି ।
ପାଣ୍ଡୁତନୟମାନେ ହୋଇଣ ଦୁର୍ବଳ
କାଳବଶେ ଭାଙ୍ଗିଲେ କୁରୁଙ୍କର ବଳ ।
ତୁମ୍ଭେ ଦୁହେଁ ବିଗୃହରେ ଅଟ ତ କୋବିଦ
ଯେ ହେବ ଉଚିତ ତା ମୋ ଆଗରେ ବଦ ।
କୃପ ବୋଇଲେ ହେ ତୁମ୍ଭର କଥା ମଜ୍ଜା
ଶୁଣିଲି ମୁଁ, ମୋ କଥା ଶୁଣ ହେ ଭଣଜା
ସବୁ ପ୍ରାଣୀମାନେ ଦଇବ ପଉରୁଷ
କଥାରେଟି ଦ୍ରୌଣି ହୋଇଅଛନ୍ତି ବଶ ।
ଦଇବ ପଉରୁଷ ଦୁଇ ଯାର ମିଶେ
ଲୋକମାନଙ୍କରେ ଯଶସ୍ୱୀ ବୋଲାଏ ସେ ।
ପ୍ରବୃତ୍ତି ନିବୃତ୍ତିଟି ଦୈବ ପଉରୁଷ—
ଯୋଗରେ ହେଉଅଛି ଜାଣ ଦ୍ରୋଣଶିଷ୍ୟ ।
ଭୂମି ବିନା ପର୍ବତେ ବରଷିଲେ ଜଳ
କାର୍ଯ୍ୟ ବିନା ଅକାର୍ଯ୍ୟ କରଇ ସେ ଠୁଳ ।
ପୌରୁଷ ନ ଥାଇ ନେଉଁଲେ ଦୈବ ଫଳ
ତାହାଙ୍କ ସଦା ନିନ୍ଦା କରନ୍ତି ସଜ୍ଜନ ।
ସତ୍ତ ଦିନ ବସି ଦଇବ ପଉରୁଷ
ବୃଦ୍ଧ ଲୋକଙ୍କଠାରୁ କରିବ ଅଭ୍ୟାସ ।
ବୃଦ୍ଧଙ୍କ ବଚନେ ଯେ ପଉରୁଷ କରେ
ସକଳ କଥା ନିର୍ଭା ପଡ଼ଇ ତାହାରେ ।
କ୍ରୋଧ ଲୋଭ ଭୟେ ହେ ଅର୍ଥ ଇଚ୍ଛା କରେ
ଅପମାନ ପାଇ ଶ୍ରୀଭ୍ରଷ୍ଟ ହୁଏ ନରେ ।
ସୁଯୋଧନ ରଜା ରାଜ୍ୟରେ ଲୋଭୀ ହୋଇ
ଦଇବ ପୌରୁଷ ଦୁହିଁଙ୍କି ଛାଡ଼ିଦେଇ ।
ଶକୁନି କର୍ଣ୍ଣ ଦୁଃଶାସନର ବିଗ୍ରହରେ
ପଡ଼ିଣ ନାଶଗଲେ କାରଣ ପରୂହରେ ।
ଆମ୍ଭେ ଯେବେ ସୁଯୋଧନଙ୍କର ପରାଶ୍ରୟ
କରିବା କାର୍ଯ୍ୟ ନିନ୍ଦା କରିବେ ସର୍ବେ ।
ଯେଉଁ ଲୋକ ସୁହୃଦଜନଙ୍କୁ ପଚାରି
କରଇ କାର୍ଯ୍ୟ ନିନ୍ଦା ନୁହଇ ତାହାରି ।

ବୃଦ୍ଧମାନେ ଯାହାଙ୍କୁ ଦେଉଥିବେ ଶିକ୍ଷା
ତା କରିବ ତହିଁରେ ନ କରିବ କକ୍ଷା ।
ଚଳ ହେ ଗାନ୍ଧାରୀ ବିଦୁର ଧୃତରାଷ୍ଟ୍ର
ତିନିଙ୍କି ପଚାରିବା କେଉଁ କଥା ପୁଷ୍ଟ ।
ସେ ଯାହା ଆମ୍ଭଙ୍କୁ କହିବେ କର ବୋଲି
ତା କରିବା ଲୋକନିନ୍ଦାକୁ ନ ଭାଳି ।
ପୁରୁଷକାର କରି ଦଇବେ ଅସିଦ୍ଧ
ହେଲେ ସେ କଥା ଜାଣ ହେଲା ଅପ୍ରସିଦ୍ଧ ।
କୃପଙ୍କର ଧର୍ମବଚନ କର୍ଣ୍ଣେ ଶୁଣି
କହିଲେ ଶୋକାଗ୍ନି ଦଗଧ ଦ୍ରୌଣି ପୁଣି ।
ଭଲ ବା ମନ୍ଦ ହେଉ ଆପଣା ବୁଦ୍ଧିକ
କହୁଥାନ୍ତି ଲୋକେ ସଭାରେ ବସି ଠେକ ।
ସେ ବୁଦ୍ଧି ଯାକ ଯୋଗେ ହେଲେ ବିପରୀତ
ନାଶକୁ ସେ ଲୋକ ହୁଅଇ ଉପଗତ ।
ରୋଗ ଚିହ୍ନି ବୈଦ୍ୟ ଔଷଧ ଦେଲା ପ୍ରାୟେ
କାର୍ଯ୍ୟକୁ ବୁଝିଁ ବୁଦ୍ଧି କରନ୍ତି ସର୍ବେ ।
ବାଲ୍ୟ ଯଉବନ ଜରାରେ ତିନି ପ୍ରକାର
ବୁଦ୍ଧି ହେଉଅଛି ସବୁରି ମନେ କର ।
କାର୍ଯ୍ୟକୁ ବୁଝିଁ କରି ବୁଦ୍ଧି ଯେ ନିଶ୍ଚୟ
କରଇ କାର୍ଯ୍ୟ ତାର ହୁଅଇ ଉଦୟ ।
ଏବେ ମୋହର ଯେଉଁ ବୁଦ୍ଧି ହେଉଅଛି
ତା କହିବ ଶୁଣ ହେ ଭରଦ୍ୱାଜବଂଶି ।
ପ୍ରଜାପତି ପ୍ରଜାଙ୍କୁ ସୃଷ୍ଟି ଯେବେ କଲେ
ବର୍ଣ୍ଣେ ଗୁଣଟିଏ ଲେଖାଏଁ ରଖିଲେ ।
କ୍ଷତ୍ରିୟରେ ତେଜ ଯେ ବ୍ରାହ୍ମଣରେ ଦମ
ବୈଶ୍ୟେ ଦାକ୍ଷ୍ୟ ଶୂଦ୍ରେ ଶୁଶ୍ରୂଷଣ ଉତ୍ତମ ।
ଯେଣ୍ଡି ଛନ୍ତି ଏହା ନ ଥିଲେ ତାଙ୍କ ତହିଁ
ନିନ୍ଦନୀୟ ଲୋକରେ ହୁଅନ୍ତି ସେହି ।
ବ୍ରାହ୍ମଣ କୁଳରେ ମୁଁ ହୋଇଅଛି ଜାତ
ଦେଖୁଛ କରୁଛି ଅଧର୍ମ ବିପରୀତ ।
କ୍ଷତ୍ରିୟଧର୍ମ ଏବେ ଛାଡ଼ି ମୁଁ ବ୍ରାହ୍ମଣ୍ୟ
କର୍ମ କରେ ମୋହର ନ ହରିବ ପୁଣ୍ୟ ।
ଧନୁ ଧରି ବାବୁକୁ ମାରିବା ଶତ୍ରୁକୁ
ଦେଖି ତ ରଖି ପାରୁ ନାହିଁ ମୁଁ ଧୈର୍ଯ୍ୟକୁ ।
କ୍ଷତ୍ରୀଧର୍ମ କରି ଉତ୍ତମ ଲୋକ କାର୍ଯ୍ୟ
ଅନୁଜିବ ମୁହିଁ ହେ ଜାଣ କୃପଦ୍ୱିଜ ।

ପାଞ୍ଚାଳେ ତ ଆଜ ଆମ୍ଭଙ୍କୁ ହନ୍ତ ଜଣି
ଶୋଇଥିବେ ଶଯ୍ୟାଙ୍କ ଉପରେ ଦେଇ ପାଣି ।
ଆମ୍ଭେ ଆମ୍ଭ ଅଙ୍ଗରେ ଭରି ଏବେ ସଜ
ଶୂଳ ଦେଖାଇବା ତାହାଙ୍କୁ ପ୍ରେତରାଜ ।
କଣ୍ଠୀଦେଶୁଁ ଧାପେ କାଟିଣ ଖାପୁଁ ଖଣ୍ଡା
କାଟି ପକାଇବା ପାଞ୍ଚଳରଥୀଭେଣ୍ଡା ।
ଏ ରାତିକ ଭିତରେ ମାରି ପାଞ୍ଚାଳଙ୍କୁ
କରାଇବ ଆନନ୍ଦ ମୋ ପିତୃଲୋକଙ୍କୁ ।
ଏହା ଶୁଣି କୃପ ବୋଇଲେ ଦ୍ରୋଣସୁତ
ତୁମ୍ଭର ତ ହେଲଣି ଆସି ପାପ ଚିତ୍ତ ।
ନବର୍ତ୍ତାଇଣ ଆମ୍ଭେ କହିଲେ ନବର୍ତ୍ତି
ରହିବା ତୁମ୍ଭେ ବୋଲି ପାଉ ନାହିଁ ମତି ।
ଏ ରାତିକ ଏଠାରେ ପୁହାଇବ ସୁଖେ
କାଲି ଯାଇ ଶତ୍ରୁ ମାରିବ ଶରମୁଖେ ।
ଏହି କଥା ଆମ୍ଭ ବକ୍ଷରେ ଯେ ଗାଉଛି
ରଣ ଭୂମି ହୋଇଣ ଦ୍ରୋଣଙ୍କର ବହ୍ନି ।
ଶୋଇପଡ଼ ଟିକଏ ଦେହଶ୍ରମ ହର
ବୋଲୁଛି ସତ କାଲି କରିବା ସମର ।
ଆମ୍ଭର ତିନଙ୍କର ଦିବ୍ୟ ଅସ୍ତ୍ରବଳେ
ପାଞ୍ଚାଳମାନେ ଯିବେ ନିଶ୍ଚେ ଯମ ଆଳେ ।
ଇନ୍ଦ୍ର ହୋଇଲେ ଆମ୍ଭ ଆଗରେ ଠଉରି
ନ ପାରିବେ ଯୁଦ୍ଧରେ କରେ ବଜ୍ର ଧରି ।
ଯେବେ ଯୁଦ୍ଧେ ଆମ୍ଭଙ୍କୁ ଜିଣିଲେ ସେମାନେ
ତେବେ ଯାଇ ବସିବା ଇନ୍ଦ୍ରଙ୍କ ସଦନେ ।
ଏ ରାତି ନ ପାହିଲେ ତୁମ୍ଭର ସହାୟ
ହୋଇ ନ ପାରିବୁ ହେ ଦ୍ରୋଣଙ୍କ ତନୟ ।
ମାମୁଙ୍କର ବଚନ ଶୁଣି ଦ୍ରୋଣବେଟା
କହିଲେ କ୍ରୋଧ ଧରି ଦେହ କରି ମୋଟା
ରୋଗୀ କ୍ରୋଧୀ କାମୁକ ଲୋଭୀଙ୍କ ନୟନ
ନିଦ୍ରାକୁ କେବେ ନ ଭଜଇ ମାମୁ ଜାଣ ।
ବାପଙ୍କର ବଧ କରିଣ ସୁମରଣା
ମୋହର ବୁଦ୍ଧି ଏବେ ହୋଇଲଣି ବଣା ।
ଯୁଦ୍ଧ ହୋଇଲେ ମୁହିଁ ଶୋଇ ନ ପାରଇ
ନ ଯାଅ ତୁମ୍ଭେ, ମୁଁ ଯୁଝିବି ଏକା ହୋଇ ।
ସୁଯୋଧନ ନୃପତିଙ୍କର ଜାନୁ ଭଙ୍ଗ
ଦେଖିଲାବେଳୁ କ୍ରୋଧ ଜାଳୁଛି ମୋ ଅଙ୍ଗ ।
ଦ୍ରୁପଦଙ୍କର ସୁତେ ଜାଗରୁକ ନୋହି
ଅଛନ୍ତି ତ ତାହାଙ୍କୁ ଦେବି ମୁଁ ବଡ଼ାଇ ।
କୃଷ୍ଣ ଅର୍ଜୁନ ଜାଣିଲେ ଏହି କଥା
କାଟି ନ ପାରିବି ମୁଁ ପାଞ୍ଚାଳଙ୍କ ମଥା ।
କୃପ ବୋଇଲେ ଏହି ଦୁର୍ବୋଧ ଲୋକଙ୍କୁ
ହାଲଆ ହୁଅନ୍ତି ଲୋକେ କହିବାକୁ ।
ମେଧାବୀ ହୋଇ ଶିକ୍ଷା ନ କଲେ ବିନୟ
ନ ହୁଏ ଜାଣ କିଛି ଧର୍ମାର୍ଥ ନିଶ୍ଚୟ ।
ମୂର୍ଖଲୋକେ ପଣ୍ଡିତଲୋକେ ଉପାସନା
କଲେ ନୁହେ ତାହାର ଧର୍ମରେ ବାସନା ।
ଜାଣିବାଲୋକେ ଯେବେ ଜ୍ଞାନୀ ଲୋକ ପାଖେ
ବସଇ, ସେ ଜାଣଇ ଧର୍ମ ଇଚ୍ଛାସୁଖେ ।
ସୁହୃଦମାନଙ୍କର କହିବାର ହିତ
ଅଧର୍ମୀଲୋକମାନେ ମଣନ୍ତି ଅହିତ ।
ତୁମ୍ଭେ ମୋହର ପୁତ୍ରସମ ଅଟ ଯେଣୁ
କହୁଅଛି ବତାଇ ଏରୂପରେ ତେଣୁ ।
ଶୋଇଥିବ ଅପକୁ ଗୁଡ଼ିଥିବ ଯେହି
ତାହାକୁ ମାରିବାକୁ ଶାସ୍ତ୍ରେ ଲେଖୁନାହିଁ ।
ପାଞ୍ଚାଳମାନେ ପାଇଛନ୍ତି ନିଦ୍ରାମୃତ ।
ତୁମ୍ଭେ ଲୁଚିଯାଇ ତାହାଙ୍କୁ କଲେ ହତ ।
ଲୋକେ ବୋଲିବେ ଆହେ ଦ୍ରୋଣଙ୍କ ନନ୍ଦନ
ନ ପାରିବାରୁ କଲେ ଦୁର୍ବଳ-ବିଧାନ ।
ଅସ୍ତ୍ର ଜାଣିବାରେ ତୁମ୍ଭର ପରି ତୁମ୍ଭେ
ତୁମ୍ଭଙ୍କୁ ଏହା ସୁଛ କରୁନାହୁଁ ଆମ୍ଭେ ।
ବୀର-ପ୍ରକାଶରେ ରଣରେ ତାଙ୍କ ପ୍ରାଣ
ନେଲେ ପ୍ରଶଂସିବେ ତୁମ୍ଭଙ୍କୁ ବୀରଗଣ ।
ଏବେ ଯେଉଁ ବିଚାର କରିଛ ମନରେ
କଲେ ଦାଗ ରହିବ ତୁମ୍ଭର ଗାଲରେ ।
ଶୁକଳରେ ସିନା ଲଗଇ କଳାଗାର
କଳାକୁ କଳା କନ୍ତୁ କରେ ତ ସଂହାର ।

—o—

## ଅଶ୍ୱତ୍ଥାମାଙ୍କର ପ୍ରତିଜ୍ଞା

ଅଶ୍ୱତ୍ଥାମା ବୋଇଲେ ତୁମ୍ଭ ଏ କଥାକୁ
ଯୁକତି ନାହିଁ ମାମୁ ମୋର କହିବାକୁ ।
ପୂର୍ବେଁ ତ ପାଞ୍ଚାଳେ ଅଧର୍ମ କରି ଗୋଟି
କାଟିଛନ୍ତି ମୋହର ବାପାଙ୍କ ମୁଣ୍ଡଟି ।

ଶସ୍ତ୍ର ଛାଡ଼ିଣ ଦ୍ରୋଣ ଯୋଗଆସନରେ
ରଥରେ ବସି ଆଖି ଖୋମ୍ପିଣ ଭାଲରେ ।
ରହିଥିଲେ ଦ୍ରୁପଦସୁତ ମହାଭେଣ୍ଡା
କହ ତ କେଉଁ ଧର୍ମେ ପ୍ରହାରିଲା ଖଣ୍ଡା ।
ଅର୍ଜୁନ ଶିଖଣ୍ଡୀକି ଆଗରେ ଚଳାଇ
ଯୁଝିଲେ ଭୀଷ୍ମ ଥିଲେ ନିଃଶସ୍ତ୍ର ତ ହୋଇ ।
ତାହାଙ୍କର ପ୍ରାଣକୁ ମୁନଦଷା ବାଣ
ବରଗି ଘେନଗଲେ ଅଟେ କେଉଁ ଗୁଣ ।
କର୍ଣ୍ଣ ଭୁରିଶ୍ରବାଙ୍କୁ ମାଇଲେ ଯେରୂପେ
ତାହା ତ ନୟନରେ ଦେଖିଅଛ ଆପେ ।
ପୁନଶ୍ଚ ସୁଯୋଧନ ରଜାଙ୍କର ଊରୁ
ଗଦା ପିଟି ଭାଙ୍ଗିଲା ଭୀମ ହନ୍ତକାରୁ ।
ଏହିରୂପେ ପାଣ୍ଡବମାନଙ୍କ ଚରିତ
କହ କେଉଁ ଧର୍ମେ ସେ ହୋଇଛନ୍ତି ଜିତ ।
ମୋତେ ବୋଲୁଅଛ ରାତିରେ ମାରିବାକୁ
ଅଧର୍ମ ହେବ ବୋଲି ନ ଆସେ ମନକୁ ।
ଯେବେ ଅଧରମ ମାଇଲେ ତାଙ୍କୁ ହେବ
ତେବେ ମୁଁ କରିବ ତା କୃପଭୂମି ଦେବ ।
ଏରୂପେ କରି ମାମୁ ଆଗରେ ପ୍ରତିଜ୍ଞା
ଦ୍ରୋଣଙ୍କର ନନ୍ଦନ କ୍ରୋଧେ ଗୁଡ଼ ସଂଜ୍ଞା ।
ଏକା ହୋଇ ରଥେ ଯୋଚିଲେ ସ୍ଥିର ଅଶ୍ୱ
ବସିଲେ ତହିଁ ଯାଇ ଆଉଁଷିଣ କଶ ।
କୃପ କୃତବର୍ମା ତା ଦେଖି ଦୁଃଖୀ ହୋଇ
ଦ୍ରୋଣଙ୍କ ସୁତକୁ କହିଲେ ଏହା ଯାଇ ।
ତୁମ୍ଭେ ଆମ୍ଭେ ସମସ୍ତେ ହୋଇଥାଇଁ ସଙ୍ଗ
ଚାଲ ପାଣ୍ଡବଙ୍କୁ କରିବା ରଣରଙ୍ଗ ।
ଏହା କହିଣ କୃପ କୃତବର୍ମା ଦୁଇ—
ଶୀରେ ତାହାଙ୍କ ସଙ୍ଗେ ଗଲେ ନରସାଇଁ ।
ପାଣ୍ଡବଙ୍କ ବସାରେ ଯାଇ ପରବେଶ
ହେଲେ ସେ ତିନି ଶୀରେ ମୋଡ଼ିମୋଡ଼ି କଶ ।

—୦—

## ଅଶ୍ୱତ୍ଥାମାଙ୍କର ଭୈରବମାନଙ୍କ ସଙ୍ଗେ ଯୁଦ୍ଧ ଓ ପରାଜୟ

ଧୃତରାଷ୍ଟ୍ର ବୋଇଲେ ଅଶ୍ୱତ୍ଥାମା ଦ୍ୱାର—
ପାଶରେ ପ୍ରବେଶ ତ ହେଲେ ମନ୍ଦିରର ।
କୃପ କୃତବର୍ମା ତା ଦେଖି କିସ କଲେ
ଏହା ମୋ ଆଗରେ କହିବା ହେଉ ଭଲେ ।

ସଞ୍ଜୟ ବୋଇଲେ ହେ କୃପ କୃତବର୍ମା
ଦୁହିଁଙ୍କି ରଖିଦେଇ ଦ୍ରୋଣୀ ମହାତମା ।
ଶିବିର-ଦ୍ୱାରେ ଯାଇ ହେଲେ ପରବେଶ
କରିବାକୁ ପାଞ୍ଚାଳମାନଙ୍କୁ ବିନାଶ ।
ଦେଖିଲେ ଦ୍ୱାରେ ମହାକାୟ ମହାବଳ
ଭଇରବେ ଅଛନ୍ତି ହୋଇ ଦ୍ୱାରପାଳ ।
ସେ ଭଇରବ ବ୍ୟାଘ୍ରଚର୍ମକୁ କଟୀରେ
ପିନ୍ଧିଅଛନ୍ତି ଜାଣ ଅତ୍ୟନ୍ତ ଆଣ୍ଠରେ ।
ଏ ବାହାରେ କୃଷ୍ଣାଜିନକୁ ସ୍କନ୍ଧପାଶେ
ପକାଇ ଦେଇଛନ୍ତି ଲେଟେ ସେ ଭୂତେଶେ ।
ମହାନାଗ୍ରଟାଏ ଯେ ହୋଇଛି ପଇତା
ବଢ଼ାଉଛି ଦେଖିଲେ ପରଜନ-ଚିନ୍ତା ।
ବାହୁମାନଙ୍କରେ ଯେ ସାପମାନେ ଖଡ଼ୁ
ହୋଇ ହେଉଛନ୍ତି ଗଳନ ଲୁଡ଼ୁବୁଡ଼ୁ ।
ସହସ୍ର ସଂଖ୍ୟା ଦୀପ୍ତନେତ୍ରରେ ଭୂଷଣ
କରାଳ ଦଂଷ୍ଟ୍ରା ଭୟାନକ ମୁଖ ଜାଣ ।
ତାହାଙ୍କ ରୂପ ଦେଖି ଫାଟିବେ ପର୍ବତେ
ନର ଛାର ଛୁଡି ରହିବ ସତ୍ତ୍ୱ କେତେ ।
ନାଶା ଶ୍ରବଣରୁ ବାହାରୁଅଛି ନିଆଁ
ଏଣୁ କେ ଯେ ଆଗେ ନ ପାରେ ହୋଇ ଠିଆ
ଅଶ୍ୱତ୍ଥାମା ଭୂମ୍ବର ଦେଖି ସେ ଭୈରବ
ନ ଡରି କଲେ କରଧନୁ ଗୁଣରବ ।
ଦ୍ରୋଣଙ୍କ ନନ୍ଦନ ବନ୍ଧିବା କାଣ୍ଡରାଶି
ଭଇରବ ମୁରତି ମୁଖେ ଦେଲେ ଗ୍ରାସି ।
କାଣ୍ଡମାନ ବ୍ୟର୍ଥ ହେବାର ଜାଣି ଦ୍ରୋଣୀ
ଫିଙ୍ଗିଲେ ଶକ୍ତିଟାଏ କ୍ରୋଧେ ସେହିକ୍ଷଣି ।
ଉଲ୍‌କାପରି ଶକତି ମଣ୍ଡି ଯୁଦ୍ଧଦାଣ୍ଡ
ଭୈରବ ଅଙ୍ଗେ ବାଜ ହେଲା ଖଣ୍ଡଖଣ୍ଡ ।
ଶକ୍ତି ବ୍ୟର୍ଥ ଦେଖିଣ ଅଶ୍ୱତ୍ଥାମା ରାଗୀ
ହୋଇ ଖାପୁଁ ଖଣ୍ଡା କାଢ଼ିଲେ ଗର୍ଜେ ବେଗି ।
ଭଇରବଙ୍କର ବେକଦେଶରେ ନେଇ
ପ୍ରହାରନ୍ତେ ପଡ଼ିଲା ଦୁଇଖଣ୍ଡ ହୋଇ ।
ଫିଙ୍ଗନ୍ତେ ଦ୍ରୋଣସୁତ ଗଦା କ୍ରୋଧଭାବ
ବହି ତା ଭୈରବ ଖାଇଲେ କରି ରବ ।

—:୦:—

## ଅଶ୍ୱତ୍ଥାମାଙ୍କର ଶିବ ଚରଣରେ ଶରଣଭିକ୍ଷା

ଇତ୍ୟେ ଅଶ୍ୱତ୍ଥାମା ଦେଖିଲେ ଶଙ୍ଖ ଚକ୍ର
ଧରି ରହିଛନ୍ତି ଆକାଶେ ବିଷ୍ଣୁ ବକ୍ର ।
ମନେ କଲେ କୃପଙ୍କ ବୋଲି ମୁଁ ନ କଲି
ତହିଁର ଫଳ ଏବେ ଆସିଣ ଭୁଞ୍ଜିଲି ।
ଧର୍ମେ ମାରିବାର କଥାକୁ ଛାଡ଼ିଦେଇ
ଅଧର୍ମେ ମାରିବାକୁ ଆସିଲି ଯା ଧାଇଁ ।
ତାହା ହେନ ସିନା ହେଲି ଏ ପାପକର୍ମ
କ୍ଷୀଣ ହୋଇଗଲା ମୋହର ପରାକ୍ରମ ।
ପୂର୍ବରୁ ଗୁରୁ ଦେଇଛନ୍ତି ଉପଦେଶ
ନ ନାଶିବ ନରେଶ ଲୋକେ ବନ୍ଧ ଦ୍ୱେଷ ।
ଏ ବାହାରେ ଗାଈ ବ୍ରାହ୍ମଣ ସ୍ତ୍ରୀଜନ
ସଖା ମାତା ଗୁରୁଙ୍କ ନ ନେବ ଜୀବନ ।
ଦୁର୍ବଳ ଅନ୍ଧ ସୁପ୍ତ ଜଡ଼ ମତ୍ତୋନ୍ମତ୍ତ
ଯେ ହେବ ନ କରିବ ତାକୁ ଶସ୍ତ୍ରାଘାତ ।
ହଇବ ପଉରୁଷ ଦୁଇରେ ହଇବ
ବଡ଼ ଯାହା ବୋଲନ୍ତି ସକଳ ମାନବ ।
ଏ କଥା ଏତେ କାଳେ ଆସି ଜଣାଗଲା
ମୋ ବଳେ ପାଞ୍ଚାଳ ମାନଙ୍କ କ୍ଷୟ ହେଲା ।
ଏବେ ମହାଦେବଙ୍କ ପଶିଲି ଶରଣ
ସେ ଏକା ମୋତେ ଦେବେ ଜଣାଇ ଏ ରଣ
ଏରୂପେ ମନେ କରି ରଥରୁ ଓହ୍ଲାଇ
ଦ୍ରୋଣଙ୍କ ସୁତ ତଳେ ବସି ନରସାଇଁ ।
ଦୁଇ ହାତକୁ ଯୋଡ଼ି ହୃଦରେ ରଖିଲେ
ଆଖିକି ଖୋସି ଶିବମୂର୍ତ୍ତି ଧ୍ୟାନ କଲେ ।
ବଚନରେ ବୋଇଲେ ଉଗ୍ର ସ୍ଥାଣୁ ଶିବ
ସ୍କନ୍ଦପିତା ପିଙ୍ଗ ଜଟିଳ ଦୃପ୍ତ ଭବ ।
ବୃଷବାହନ ବିଶ୍ୱଶୃଙ୍ଗ ତନୁବାସ
ହିରଣ୍ୟବର୍ମ ବ୍ରହ୍ମସ୍ୱଷ୍ଟା କୃତ୍ତିବାସ ।
କୁବେରନକ୍ଷତ୍ରମୁଖ ଗଣାଧ୍ୟକ୍ଷ
ପାରିଷଦପ୍ରିୟ ଶୂନ୍ୟ ମହେଶ ହ୍ୟକ୍ଷ ।
ଗୌରୀ-ପ୍ରାଣେଶ୍ୱର ବରଦ ଶିତିକଣ୍ଠ
ଅମୋଘ-ବହୁରୂପ ଆଜ ନୀଳକଣ୍ଠ ।
ବିଶ୍ୱସ୍ୱରୂପ ହୁତ ହୁତ୍ୟ ହୂୟମାନ
ବିରୂପାକ୍ଷ ଗିରିଷ ଈଶ୍ୱର ଈଶାନ ।
ଶ୍ମଶାନବାସୀ ଶୁଭ୍ର ମହାଗଣପତି
ଖଟ୍ୱାଙ୍ଗଧାରୀ ଦୁର୍ନିବାର ଉମାପତି ।
ଅନନ୍ତ ଦକ୍ଷପ୍ରଜାପତି ଯଜ୍ଞହର
ଆହେ ଚନ୍ଦ୍ରମଉଳି ମୋତେ ରକ୍ଷାକର ।
ଭୂମି ବିନା ଯୁଦ୍ଧ-ବିପତ୍ତି-ଜଳ ପାରି
ହେବାକୁ ଶସ୍ତ୍ର-ଭେଳା ନାହିଁ ଯେ ମୋହରି ।
ମୋ ପାଞ୍ଚଭୂତ ଦେହ ମହାବଳ କରି
ଦେବି ମୁଁ ବୋଲୁଅଛି ମନରେ ବିଚାରି ।

—୦—

## ଗଣମାନଙ୍କର ଆବିର୍ଭାବ ଓ ଅଗ୍ନିକୁଣ୍ଡରେ ଅଶ୍ୱତ୍ଥାମାଙ୍କର ପ୍ରବେଶ

ଅଶ୍ୱତ୍ଥାମାଙ୍କର ଜାଣିଣ ଅଭିପ୍ରାୟ
ସୁନାବେଦୀଟିଏ ଗଉରୀଦେବୀ-ପ୍ରିୟ ।
ଅଗ୍ନି ଜ୍ୱଳିଲେ ସହିତ କରି ତାଙ୍କ ଆଗେ
ରଖାନ୍ତେ ଗଣ ଜନମିଲେ ନାନା ବାଗେ ।
ତ ହାଙ୍କର ଗଠନ ହୋଇଛି ଯେରୂପ
ଦେଖିଲେ ଜନ ଲଭିବଟି ମହାତାପ ।
ବ୍ୟାଘ୍ର ଭଲ୍ଲୁ କେଶରୀ ସର୍ପ କାଳ ଭେକ
ଅଜଗର କୁମ୍ଭୀର ହଂସ କୂର୍ମ ଶୁକ ।
ଦାବାଘାତ ବଲୁଆ ଶ୍ୱାନ ପାରା କଙ୍କ
କପୋତ ତିମି ହାଙ୍ଗି ଶିଶୁମାର ବକ ।
ଏମାନଙ୍କ ମୁଖକୁ ସେ ଯେ ବହିଛନ୍ତି
ଜାଣ ଆହେ ହସ୍ତିନା-ନାଥଙ୍କର ପତି ।
ହସ୍ତ ଉର ପୃଷ୍ଠମାନଙ୍କରେ ଯେ ମୁଖ
ବହିଣ ବଡ଼ ଇଲେ କେତେ ପ୍ରାଣୀ-ଦୁଃଖ ।
ସହସ୍ର ସଂଖ୍ୟା ଆଖି ଅଛି ତ ତାଙ୍କର
ତହିଁରୁ ଜାତ ହେଉଅଛି ବୈଶ୍ୱାନର ।
ଶତଘ୍ନୀ ଚକ୍ର ଯେ ମୂଷଳ ଭୁଷଣ୍ଡି
ଆଦି ଆୟୁଧ ସେ ଅଛନ୍ତି କରେ ମଣ୍ଡି ।
ଭେରି ଶଙ୍ଖ ଝର୍ଝର ଆନକ ଗୋମୁଖ
ବଜାଉଛନ୍ତି ମଧ୍ୟ ପାଇ ମହାସୁଖ ।
ଗୀତ ଗାଇ ଯେ ନୃତ୍ୟ କରି କରି ଧାଇଁ
ବସା ମାଂସ ଖାଇ ରକତ ହେଇ ପିଇ ।

ମହାଦେବଙ୍କ ସ୍ତୁତି ବଚନ ବଖାଣି
ଆସିଲେ ଯହିଁ ବସିଥିଲେ ହି ଜାଗଣି ।
ଅଶ୍ୱତ୍ଥାମା ଦେଖିକରି ସେ ଗଣବୃନ୍ଦ
ଭୟକୁ ନ ପାଇଣ ହୋଇଲେ ଆନନ୍ଦ ।
ଧନୁଶର ସମିଧ ପବନ୍ଧ କରିଣ
ଦେହକୁ ଆଦ୍ୟ ହବି କଲେ ସେ ବରଣ ।
ମହାଦେବଙ୍କ ମାୟାବେଦୀ ଅଗ୍ନିକୁଣ୍ଡେ
ପଡ଼ିବାକୁ ରାଜନ ମନ କରି ଝୁଣ୍ଡେ ।
ହାତ ଦୁଇ ଯୋଡ଼ି କହିଲେ ସେ ଶିବଙ୍କୁ
ଘେନ ବଳି କରି ମୋହର ଶରୀରକୁ ।
ଏରୂପରେ ରାଜନ କହି ଦ୍ରୋଣସୁତ
ଅଗ୍ନିକୁଣ୍ଡେ ପଡ଼ିଲେ ହୋଇବାକୁ ହତ ।

—o—

## ଶିବଙ୍କର ଅଶ୍ୱତ୍ଥାମାଙ୍କୁ ଖଣ୍ଡା ଦାନ

ଶିବ ତାହା ଦେଖିଣ ହୋଇ ମହାତୋଷ
ବୋଇଲେ ହେଲି ତୁମ୍ଭ ଭକ୍ତିରେ ମୁଁ ବଶ ।
କୃଷ୍ଣ ତ ଗଲାବେଳେ ଏ ଗଡ଼-ଦୁଆରେ
ରଖାଇ ଗଲେ ମୋତେ ଆରଧି ଭକ୍ତିରେ ।
ଏ ସକାଶୁ ପାଞ୍ଚାଳଗଣେ ଜଗିଥିଲି
ଏବେ ତୁମ୍ଭ ଭକ୍ତିରେ ସେ କଥା ଛାଡ଼ିଲି ।
ପାଞ୍ଚାଳଙ୍କର ଆଉ ନାହିଁ ତ ଆୟୁଷ
ମାରି ହାତସୁଖରେ ଯାଇ ଦ୍ରୋଣଶିଷ୍ୟ ।
ଅଶ୍ୱତ୍ଥାମା ରୁଦ୍ରଙ୍କ ଅଂଶ ତ ଅଟନ୍ତି
ଏଣୁ ରୁଦ୍ର ତାଙ୍କ ଦେହରେ କରିସ୍ଥିତି ।
ଅଶ୍ୱତ୍ଥାମା କରେ ଖଣ୍ଡାଟିଏ ଦେଲେ
ପାଞ୍ଚାଳଙ୍କୁ ଏଥିରେ ମାରି ହେ କହିଲେ ।
ରୁଦ୍ରଙ୍କ ପ୍ରଭାବରୁ ଅଶ୍ୱତ୍ଥାମା ବଳ
ପ୍ରକାଶନ୍ତେ ସେ ତେଜ ଜଳିଲା ଅନଳ ।
ଧୃତରାଷ୍ଟ୍ର ବୋଇଲେ ଶିବିରେ ଅଶ୍ୱତ୍ଥାମା
ଯାଆନ୍ତେ କସ କଂଲ ରୁଦ୍ରମହାତମା ।
ଭୋଜବଂଶ ବୀର ସେ କୃତବର୍ମା ସଙ୍ଗ
ହୋଇ ତ ଥିଲେ କଲେ ମହାରଣରଙ୍ଗ ।
ନୋହିଲେ ବା ପାଞ୍ଚାଳଙ୍କରେ ହତ ହୋଇ
କୃପ କୃତବର୍ମା ଭେଟନ୍ତେ ଜନୁସାଇଁ ।

—o—

## ଅଶ୍ୱତ୍ଥାମାଙ୍କର ରାତ୍ରରେ ପାଞ୍ଚାଳ ଶିବିରରେ ପ୍ରବେଶ

ସଞ୍ଜୟ ବୋଇଲେ ହେ ଶୁଣ ଧୃତରାଷ୍ଟ୍ର
ବର ପାଇଣ ଅଶ୍ୱତ୍ଥାମା ହୋଇ ହୃଷ୍ଟ ।
କୃପ କୃତବର୍ମାଙ୍କୁ ସମୀପକୁ ଡାକି
ବୋଇଲେ ଜଗିଥାଅ ତୁମ୍ଭେ ଦ୍ୱାରଟିକି ।
ଏକା ହୋଇ ମୁଁ ପଶୁଛି ଶିବିରରେ
କାଳଦଣ୍ଡ ପରି ଏ ଧନୁ ଧରି କରେ ।
କରିଥିବ ମଧ୍ୟଟି କାଳ ପରି ଗତି
ମୋ ଆଗରୁ ଆଜ ଯେ ଆସିବେ ବରତି ।
ତାହାଙ୍କୁ ତୁମ୍ଭେ ମୂନଢସା ବାଣ ବନ୍ଧି
ବେକରଠାରୁ ମୁଣ୍ଡଟିକି ଦେବ ଛେଦି ।
ଏତେ କହିଣ ଅଶ୍ୱତ୍ଥାମା ତ ଦୁଆରେ
ପଶିଲେ ଯାଇ ପାଞ୍ଚାଳଙ୍କର ଶିବିରେ ।
ପାଞ୍ଚାଳମାନଙ୍କର ବସାକୁ ଆଗ ହେଜି
ବାହାରିଲେ ଦ୍ରୋଣସୁତ କ୍ରୋଧରେ ମଜ୍ଜି ।
ପାଞ୍ଚାଳମାନେ ଯୁଦ୍ଧଭାଣ୍ଡେ ଶ୍ରମ ପାଇ
ଶୋଇଥିଲେ ହେ ରାଜେନ୍ଦ୍ର ମହା ସୁଖୀ ହୋଇ ।

—o—

## ଧୃଷ୍ଟଦ୍ୟୁମ୍ନ ବଧ

ଦ୍ରୋଣଙ୍କ ସୁତ ଅଶ୍ୱତ୍ଥାମା ମହାଯଶା ।
ଠଉରାଇ ଧୃଷ୍ଟଦ୍ୟୁମ୍ନଙ୍କର ବସା ।
ପାଦ ନ ଶୁଭଇ ତାଙ୍କର ଶୋଇବାର—
ଘରେ ଯାଇ ପ୍ରବେଶ ହୋଇ ମହାବୀର ।
ଦେଖିଲେ ଚନ୍ଦ୍ରାତପ ଟଣା ହୋଇଅଛି
ହସ୍ତୀ-ଦନ୍ତ ପଲଙ୍କେ ମଶାରି ପଡ଼ିଛି ।
ତହିଁରେ ଲମ୍ବି ଅଛି ହୋଇ ଗଣ୍ଡା ଗଣ୍ଡା
ପାଣି-ଆଣିଥିବା ମୁକୁତାର ଯେ ଫେଣ୍ଡା ।
ସେହି ଖଟର ଖୁରଆଡ଼କୁ ତୋରଣ
ଫୁଲରେ ହୋଇଛି ଜାଣ ହେ ମହାମନା ।
ହଂସତୁଳୀ ତୁଳୀ ଶେଯ ଉପରେ ପାଛୋଡ଼ା
ପଡ଼ିଅଛି ରାଜନ ହୋଇଣ ସଜଡ଼ା ।
ତହିଁରେ ଯେ ଶୁକଳ ଫୁଲର ପାଖୁଡ଼ା
ଅତର ମିଶା ହୋଇ ବହୁ ଅଛି ପଡ଼ି ।
ସେ ଶେଯରେ ଧୃଷ୍ଟଦ୍ୟୁମ୍ନ ନରବର
କାମିନୀ ସଙ୍ଗେ ଘେନ କଣି କାମରଣ ।

ଶୋଇଅଛନ୍ତ ମହା ଅଶଙ୍କତ ହୋଇ
ପ୍ରିୟା-କୁଚ-ଜଘନରେ କର ଭାର ଦେଇ ।
ଟୋକିଏ ପାଣି ପୃଷ୍ଠ-ମୂର୍ଚ୍ଛନାରେ ଥୋଇ
ନଜ ସ୍ତନଟିକ ତଳ୍ପିରେ ଲଦଦେଇ ।
ବାକ ହସ୍ତ କଙ୍କଣୀ ଉପରେ ପ୍ରିୟାର
ମସ୍ତକକୁ ଲଗାଇ ଛନ୍ତ ନରବର ।
ମନ୍ଦ ହୋଇଣ ପ୍ରିୟା ଶ୍ୱାସ ଛୁଲେ ଶ୍ୱାସ
ବହୁଛି ମିଶି ପଦ୍ମଗନ୍ଧର ସଦୃଶ ।
ସେ ବାତେ କମ୍ପୁଅଛି ଉପର ନଶୁଟି
ବୁଜି ତ ହୋଇଅଛି ନୟନ ଦୁଇଟି ।
ପୃଷ୍ଠ ଆଡ଼ର କଟୀ ମଧ୍ୟରୁ ବସନ
ନଦ୍ରାବଶେ କଖିଛି ପିଣ୍ଡପରେ ସ୍ଥାନ ।
ଏକାଳେ ସେଠାରେ ଦ୍ରୋଣଙ୍କ ପୁତ୍ର କୋହ
କହ୍ଳଣ ପାଇଗଲେ ଆହେ ନରସିଂହ ।
କ୍ରୋଧବଶେ ଜ୍ଞାନ ତ ପୂର୍ବୁ ଛାଡ଼ିଅଛି
ଆଉ ବା କହିବାକୁ କେଉଁ କଥା ଅଛି ।
ଅଶ୍ୱତ୍ଥାମା ଦେଖି ପାଦକୁ ଟେକି ଆଣ୍ଠେ
ପ୍ରହାରିଲେ ଧୃଷ୍ଟଦ୍ୟୁମ୍ନନ ପିଠିପଟେ ।
ବୋଇଲେ ଆରେ ବାଇ ତୋର ମୃତ୍ୟୁ ମୂର୍ତ୍ତି
ଆସିଅଛି ଦଅ ପାଳଟି ଥରେ ଗୁର୍ବି ।
ଧୃଷ୍ଟଦ୍ୟୁମ୍ନ ଅଶ୍ୱତ୍ଥାମାଙ୍କ ପଦାଘାତ
ପାଇବାକ୍ଷଣି ନଦ୍ରା ଚେତୁଁ କଲେ ହତ ।
ଅଶ୍ୱତ୍ଥାମା ଆସିଲେ ବୋଲି ମନେ କରି
ଉଠିବାବେଳେ ଦ୍ରୌଣି ତାଙ୍କ ବାଳ ଧରି ।
ଦୁଇହାତରେ ଥରକେତେ ଦେଇ ଝିଙ୍କି
ମୁଣ୍ଡକୁ ପେଷି ଦେଲେ ପକାଇ ପାଣିକ ।
ନଦ୍ରାକାଳ ଯେ ଧୃଷ୍ଟଦ୍ୟୁମ୍ନନଙ୍କୁ ଘୋଟି
ଥିଲା ତ ମହାରାଜ ଏଣୁ ସେ ବଳଟି ।
ଦେଖାଇ ନ ପାରି ରହିଲେ ଧୀର ହୋଇ
ବସିଲେ ଅଶ୍ୱତ୍ଥାମା ତାଙ୍କ ହୃଦେ ଯାଇ ।
ତେବର ଗୋଡ଼ଟିକ ଦେଇ କଣ୍ଠଦେଶେ
ମୁଣ୍ଡକୁ ମୋଡ଼ିବାକୁ ଭାବନ୍ତେ ମାନସେ ।
ଦ୍ରୁପଦଙ୍କର ସୁତ ମହାଦୁଃଖୀ ହୋଇ
ସମ୍ଭ୍ରୁ ଅଶ୍ୱତ୍ଥାମା ଦେହେ ନରସାଇଁ ।
ବୋଇଲେ ଶସ୍ତ୍ରେ ତୁମ୍ଭେ କର ମୋତେ ହତ
ତୁମ୍ଭ ଯେନ ଲଭିବ ମୁଁ ଲୋକ ପ୍ରଶସ୍ତ ।
କ୍ଷତ୍ରିୟମାନଙ୍କର କର୍ମ ଏ ନୁହଇ
ଅନ୍ୟାୟ କରୁଅଛ ଦ୍ୱିଜ ଜନ୍ମ ପାଇ ।
ଅବ୍ୟକ୍ତସ୍ୱରେ ଏହା କହି ଧୃଷ୍ଟଦ୍ୟୁମ୍ନ
ହୁଅନ୍ତେ ବଳେ ଦଳ ହୋଇଲେ ମଉନ ।
ଅଶ୍ୱତ୍ଥାମା ବୋଇଲେ ତୁମ୍ଭେ ଗୁରୁ ଦ୍ରୋଣ୍ଣ
ଅସ୍ତରେ ମୁଁ ତୁମ୍ଭଙ୍କୁ ମାରିବ କମ୍ପାଇଁ ।
ଏତେ ବୋଲି ତୁମ୍ଭର ଅଶ୍ୱତ୍ଥାମା ବୀର
କଲେ କ୍ରୋଧେ ଗୋଇଠା ଆଣ୍ଠୁଆ ପ୍ରହାର ।
ବଜ୍ର ପରି ସେ ଅଶ୍ୱତ୍ଥାମାଙ୍କ ଆଣ୍ଠୁଆ
ପାଇ ଧୃଷ୍ଟଦ୍ୟୁମ୍ନ ଯମଙ୍କ ପୁରେ ଠିଆ ।
ହୋଇଲେ ହେ ରାଜନ ଆଖି ଲେଉଟାଇ
ଜଭରୁ ଅଧେ ମଧ୍ୟ ଦଣ୍ଡେ କାଢ଼ିଦେଇ ।

—୦—

## ଅଶ୍ୱତ୍ଥାମାଙ୍କର ଶତ୍ରୁସୈନ୍ୟ ବିନାଶ

ଧୃଷ୍ଟଦ୍ୟୁମ୍ନଙ୍କର ପାଶରେ ସ୍ତ୍ରୀ ସକଳ
ଥିଲେ ତାହା ଦେଖିଣ ହୋଇଲେ ଆକୁଳ ।
ଚୋଟି ମେଲ ଉଚ୍ଚସ୍ୱରରେ ଛାଡ଼ି ଡକା
ରହିଲେ ଭିନ ହୋଇ ହୋଇଣ ଚାଟକା ।
ଯିବା ଲୋକମାନେ ଯେ ଅଶ୍ୱତ୍ଥାମା ବଳ
ଦେଖି ଭୂମି ହୋଇଲେ ସୁମରି କପାଳ ।
ସ୍ତ୍ରୀମାନେ ପ୍ରଥମ ରଡ଼ି ଯାହା କଲେ
ତା ଶୁଣି ପାଣ୍ଡବଙ୍କ ହଇନ ଉଠିଲେ ।
କି ହେଲା ବୋଲିକରି ହୋଇ ଅସ୍ତ୍ରପାଣି
ବାହାରିଲେ ବସାରୁ ହୋଇ ଚାଣି ଚୂଣି ।
ଏକାଳେ ଅଶ୍ୱତ୍ଥାମା ରଥକୁ ଆରୋହି
ସେଠାରୁ ଆନ ଠାକୁ ଗଲେ ନରସାଇଁ ।
ସ୍ତ୍ରୀମାନେ ପୁରୁଷମାନଙ୍କ ଚହଲ
ଶୁଣିକରି ଧୈର୍ଯ୍ୟ ଧରିଣ ନରପାଳ ।
ଡାକଲେ ଧୃଷ୍ଟଦ୍ୟୁମ୍ନ ଗୃହେ ଧାଇଁ ଆସ
ଦେଖ ଧୃଷ୍ଟଦ୍ୟୁମ୍ନ ଗଲେଣି ଯମବାସ ।
ରାକ୍ଷସ ମନୁଷ୍ୟ ଏ ଦୁଇରୁ କଥାଏ
ହୋଇଥିବ ମାରଣ କପଟ ଉପାୟେ ।
ରଥ ଚଢ଼ି ସେ ଏବେ ବାଣ୍ଡରେ ରହିଛି
ନଖ ଦୁଇଆଡ଼କୁ ମୋଡ଼ଣ ହସୁଛି ।

ଏହା ଶୁଣି ଯୋଦ୍ଧାଏ ଅଶ୍ୱତ୍ଥାମା ରଥ
ବେଢ଼ିଣ ଝିଙ୍କିଲେ ଧନୁକୁ ମାରି ହାତ ।
ଦ୍ରୌଣି ତାହା ନ ସହି ରୁଦ୍ରଅସ୍ତ୍ର କରି
ସେ ଯୋଦ୍ଧାମାନଙ୍କର ପ୍ରାଣ ନେଲେ ହରି ।
ଉତ୍ତମଔଜାଙ୍କ ଶୟନସ୍ଥାନେ ରଥ
ରଖି ରଥବରୁ ଓହ୍ଲାଇ ମହାରଥ ।
ଅଶ୍ୱତ୍ଥାମା ତାଙ୍କର ସମୀପକୁ ଗଲେ
ଧୃଷ୍ଟଦ୍ୟୁମନ ପରି ତାହାଙ୍କୁ ସେ କଲେ ।
ଯୁଧାମନ୍ୟୁ ତାହା ଦେଖିଣ ଗଦା ଧରି
ଅଶ୍ୱତ୍ଥାମା ପରେ ପିଟିଲେ ଆଣ୍ଠ କରି ।
ସେ ଘାଏ ଅଶ୍ୱତ୍ଥାମା ନୋହିଣ ବିକଳ
ମାଡ଼ ବସି ତାହାଙ୍କୁ ଦେଲେ ଯମଆଳ ।
ଏହିକ ପାରିକରି ଦ୍ରୋଣସୁତ ଭେଣ୍ଡା
କରଦେଶରେ ବନ୍ଧିକରି ମହଖଣ୍ଡା ।
ଶୋଇଥିବା ଲୋକମାନଙ୍କୁ ହରିଖଣ୍ଡ
ଚହିଁକଲେ କ୍ରୋଧରେ ଜାଳି ନିଜ ପିଣ୍ଡ ।
ସେ ମନୁଜମାନଙ୍କର ପରାଣକୁ ସ୍ୱପ୍ନେ
ଘେନଲେ ସେ ଏ ରୂପେ ମଧ୍ୟ ଖଣ୍ଡାଘାଏ ।
ଓଟ ଘୋଡ଼ା ହାତୀମାନେ ତ ଥିଲେ ଶୋଇ
ଖଣ୍ଡାଘାତେ ଯାଇଁ ଦେଖିଲେ ପ୍ରେତସାଇଁ ।
ବାକି ଯେ ଜୀଇଥିଲେ ଅଶ୍ୱତ୍ଥାମାଙ୍କର
ବଳ ଦେଖି ଭୟରେ ହୋଇଲେ ଆତୁର ।
ଅଶ୍ୱତ୍ଥାମା ଦ୍ରୋପଦୀସୁତଙ୍କୁ ସମୀପେ
ପାଇଗଲେ ଖଣ୍ଡାକୁ ନ ପୂରଇ ଖାପେ ।
ଦେଖିଲେ ସେହି ପକାଇଣ ପାଞ୍ଚ ଖଟ
ଶୋଇ ନିଶ୍ୱାସକୁ ଛାଡ଼ନ୍ତି କରି ମୋଟ ।
ଅଶ୍ୱତ୍ଥାମାଙ୍କର ଆସିବାର ସେ ଜାଣି
ଦ୍ରୌପଦୀଙ୍କ ସୁତେ ହୋଇଣ ଧନୁଷ୍ପାଣି ।
କାଣ୍ଡମାନଙ୍କରେ ଆକାଶ ଭୂମିଦେଶ
ଘୋଡ଼ାଇଲେ ପ୍ରାଣର ନୋହିବାକୁ ନାଶ ।
ପ୍ରଭଦ୍ରକମାନେ ଯେ ଶିଖଣ୍ଡୀକି ଘେନି
ଆସିଲେ ବେଗେ ଧାଇଁ ଯୁଦ୍ଧ ଶବ୍ଦ ଶୁଣି ।
ଅଶ୍ୱତ୍ଥାମା ନ ସହି ଦ୍ରୌପଦେୟ ଶର
ମହାଗରଜନ କଲେ ହେ ନରବର ।
ଫରି ଖଣ୍ଡା ଧରିଣ ଦ୍ରୌପଦେୟ ପାଶେ
ପରବେଶ ହୋଇଲେ ଗର୍ଜନ ସେ ରୋଷେ ।
ପ୍ରତିବିନ୍ଧ୍ୟଙ୍କର କୁକ୍ଷି ଦେଶରେ ଖଣ୍ଡା
ବାଜନ୍ତେ ଶୋଇଲେ ସେ ହୋଇ ବଡ଼ଭେଣ୍ଡା
ସୁତସୋମ ଯେ ଅଶ୍ୱତ୍ଥାମାଙ୍କୁ ଶକତି
ମାଇଲେ ଦେଖାଇଣ ଆପଣା ଶକତି ।
କର ଦେଶରେ ପୁଣି ବନ୍ଧି ଖଣ୍ଡା ଖଣ୍ଡେ
ଧାଇଁଲେ ଅଶ୍ୱତ୍ଥାମା ପାଶେ ଅତି ଚଣ୍ଡେ ।
ଅଶ୍ୱତ୍ଥାମା ସେରୂପେ ହୋଇ ଖଣ୍ଡାପାଣି
ଦେଲେ ତାହାଙ୍କ ଅସିଯୁକ୍ତ ବାହୁ ହାଣି ।
ପୁଣି ପାର୍ଶ୍ୱ ଦେଶରେ ପ୍ରହାରି ଖଡ଼ଗ
ନେଲେ ଜୀବନ ଦ୍ରୋଣସୁତ ମହାଭାଗ ।
ସତାନୀକ ଯେ ରଥଚକଟିଏ ଧରି
ମାଇଲେ ଅଶ୍ୱତ୍ଥାମା ବକ୍ଷେ ଆଣ୍ଠକରି ।
ତାଙ୍କୁ ତଳେ ପକାଇ ଦ୍ରୋଣସୁତ ଭେଣ୍ଡା
ହରଣ କଲେ ଶିର ପ୍ରହାରିଣ ଖଣ୍ଡା ।
ଶ୍ରୁତକର୍ମା ପରିଘ ଫିଙ୍ଗନ୍ତେଣ ଦ୍ରୌଣି
ଦେଲେ ଶ୍ରୁତକର୍ମାଙ୍କ ନାସିକାରେ ହାଣି ।
ଅଶ୍ୱତ୍ଥାମା ଖଣ୍ଡାଘାତରେ ଅଧେ ମୁଖ
ଛାଡ଼ି ମହୀଦେଶେ ଲୋଟିଲା ନରଶିଖ ।
ତାହା ଦେଖିଣ ଶ୍ରୁତକୀର୍ତ୍ତି କ୍ରୋଧ ହୋଇ
ଦେଲେ ଅଶ୍ୱତ୍ଥାମାଙ୍କୁ ଶରମୁଖେ ଛାଇ ।
ଅଶ୍ୱତ୍ଥାମା ଫରିରେ ଆଡ଼ି ଶରମାଳ
ଖଡ଼ଗେ ତାଙ୍କ ମୁଣ୍ଡ କଲେ ଦୁଇଫାଳ ।
ଶିଖଣ୍ଡୀ ପ୍ରଭଦ୍ରକେ ଘେନି ଆସିଥିଲେ
ଅଶ୍ୱତ୍ଥାମା ସଙ୍ଗେ ବହୁତ ଯୁଦ୍ଧକଲେ ।
ଅଶ୍ୱତ୍ଥାମା ଭୁରୁକୁ ପକାଇଣ କାଣ୍ଡେ
ଜାଣ ଆହେ ନୃପତି ଅତି ହସ୍ତଚଣ୍ଡେ ।
ଅତିଶୟ କ୍ରୋଧରେ ଆବିଷ୍ଟ ହୋଇଲେ
ଖଡ଼ଗେ ଶିଖଣ୍ଡୀକି ମାରି ପକାଇଲେ ।
ଏ ବାହାରେ ପ୍ରଭଦ୍ରକମାନଙ୍କ ପ୍ରାଣ
ଘେନି ପକାଇଲେ ସେ ପ୍ରହାରି କୃପାଣ ।
ବାକି ଯୋଦ୍ଧା ଯେତେକ ଥିଲେ ସ୍ୱପ୍ନେ ଜୀଇ
ଖଣ୍ଡାର ପ୍ରହାରରେ ପଡ଼ିଲେ ମହୀ ।
ଯେ ଜୀଇଥିଲେ କାଳସର୍ପିଙ୍କର ରୂପ
ଦେଖି ହୃଦୟରେ ଲଭିବେ ମହାତାପ ।
ସେ ରକତ-ନୟନା ରକତ-ବଦନା
ପାଶ-ହସ୍ତା କୃଷ୍ଣାଙ୍ଗୀ ରକତ ବସନା ।

ମନ୍ଦାର ଫୁଲମାଳା ଗଳାରେ ତାଙ୍କର
ପଡ଼ିଛୁ ଜାଣ ହେ ହସ୍ତିନା-ଦଣ୍ଡଧାରି ।
ପାଶେ ସେ ପାଣ୍ଡବ-ଯୋଦ୍ଧାଙ୍କୁ କରି ବନ୍ଦୀ
ନେଉଛନ୍ତି ଡକାପାଡ଼ି ମେ ଖୁନ୍ଦାଖୁନ୍ଦି ।
ଏ ସକାଶୁଁ ପାଞ୍ଚାଳମାନେ ଭଣଜାଙ୍କ
ଶୂଳରେ ଲଢିଲେଟି ମରଣ-ଆତଙ୍କ ।
ଅଶ୍ୱତ୍ଥାମା ଏକା ନ ପାରନ୍ତେଣ ମାରି
ମୋ କହିବାରୁ ଜାଣିଥାଅ ଭଲକରି ।
ପାଣ୍ଡବଙ୍କ ବସାରେ ଥିଲେ ଯେତେ ଲୋକ
ଉଠୁ ପାଦ ଛାଡ଼ି ଦେଖିଲେ ଯମଲୋକ ।
କେତେ ଲୋକମାନଙ୍କୁ ହୋଇ ଧନୁଷ୍ପାଣି
ଅଶ୍ୱତ୍ଥାମା ଶରରେ ପକାଇଲେ ହାଣି ।
କେତେ ଲୋକମାନଙ୍କ କାଳଗ୍ରହ ପାଶ
ପ୍ରହାର କରି ଦେଖାଇଲେ ଯମବାସ ।
ସେ ଶିବିର-ଶରରେ ଅଶ୍ୱତ୍ଥାମା-ହସ୍ତି
ପଶିଣ ମନ୍ଥି ଦେଲେ ଯୋଦ୍ଧା-ପଦ୍ମପନ୍ତି ।
ବାକି ଯେ ଶୋଇଥିଲେ ଶୁଣିଣ ଚହଳ
ଶୁଣି ନିଦ୍ରା ଛାଡ଼ିଣ ଉଠି ତତକାଳ ।
କସ ଏ ବୋଲି କରେ ଧନୁ ଖଣ୍ଡାବନ୍ଧି
ଯିବାକୁ ଖୋଜିଲେ ତା ପାରିଲେ ସେ ନାହିଁ ।
ସେକ୍ଷଣି ଜାଣିଲେ ପାଞ୍ଚାଳେ ନାଶ ଗଲେ
ଅଶ୍ୱତ୍ଥାମାଙ୍କର ଶରଜାଳରେ ଭଲେ ।
ସେହିକ୍ଷଣି ସେ ଯୋଦ୍ଧାମାନେ ହଗି ମୁତି
କାନ୍ଦିଲୁ ଆଉଜି ରହିଲେ ହୋଇ ଚିତ୍ତ ।
ଘୋଡ଼ା ହାତୀମାନେ ସେ ଛିଣ୍ଡାଇ ଦଉଡ଼ି
ପଳାଇଲେ ଶୋଇବା ଲୋକକୁ ସେ ମାଡ଼ି ।
ଏରୂପେ ସୈନ୍ୟ ନାଶ ଦେଖିଣ ରାକ୍ଷସେ
ଖାଇବା ମାଂସ ବୋଲି ଗରଜିଲେ ରୋଷେ ।
ହାତୀ ମନୁଷ୍ୟଙ୍କ ଯିବାରେ ଧୂଳି ଉଠି
ରହିଲା ତ ଆକାଶେ ହୋଇଣ ମଣ୍ଡଳୀ ।
ଏହି ସକାଶୁଁ ପର ଆପଣା ମନୁଷ୍ୟ
ଜାଣି ନ ପାରିଲେ ହେ ରାଜନ ନରେଶ ।
ସବୁଆଡ଼େ ଅଛନ୍ତି ଅଶ୍ୱତ୍ଥାମା ବୋଲି
ଆପଣା ଆପଣାରେ ହେଲେ ପେଲା ପେଲି ।
ଯୋଦ୍ଧାମାନେ ଖୋପରୁ କାଢ଼ି କରି ଖଣ୍ଡା
ହଣାହଣି ହୋଇ ଶୋଇଲେ ହୋଇ ଦଣ୍ଡା ।

ଯେଉଁମାନେ ଜୀବନ ରଖିବା ବସ୍ତୁର
ବସାରୁ ପଳାଇଲେ ଅଟେ ଦଣ୍ଡଧାରୀ ।
କୃପ କୃତବର୍ମାଙ୍କ ଆଗେ ସେ ପଡ଼ିଲେ
ଯମଙ୍କର ପାଦତଳକୁ ସେ ଗଡ଼ିଲେ ।
ବିକବଚ ବାଳ ଫିଟିଣ ନ୍ୟସ୍ତଶସ୍ତ୍ର
ହୋଇବା ଲୋକଙ୍କୁ ସେ କଲେ ମଧ୍ୟ ହତ ।
ଏ ବାହାରେ ଶିବିର ତିନପାଖେ ନିଆଁ
ଲଗାଇ ଜମ୍ବୁମନ କରି ହେଲେ ଠିଆ ।
ଅଶ୍ୱତ୍ଥାମା ସେ ଆଲୋକରେ ସୁଖେ ମଞ୍ଜି
ମାଇଲେ ଶତ୍ରୁକୁଳଯାକ ଖୋଜି ଖୋଜି ।
ସହସ୍ର ସଂଖ୍ୟା ହୋଇ ନାଚନ୍ତେ କବନ୍ଧ
ମହୀଦେବୀ ତହିଁରେ ହୋଇଗଲେ ରୁଦ୍ଧ ।
ଏହା ଦେଖି ପାଞ୍ଚାଳ ଅବଶେଷ ଲୋକେ
ମାତା ପିତା ସ୍ମରି କାନ୍ଦିଲେ ସକସକେ ।
ବୋଇଲେ ଅରଜୁନ ଥାଇ ଯେବେ ଏଥି
ଥାଆନ୍ତେ ଆମ୍ଭେ କିମ୍ପା ହୁଅନ୍ତେଇ ବ୍ୟଥୀ ।
ଦେବ ଯକ୍ଷ ଗନ୍ଧର୍ବ ରାକ୍ଷସ ମନୁଷ୍ୟ—
ମାନଙ୍କୁ ସେ ଏକା ପାରନ୍ତି କରି ନାଶ ।
ଯାହାର ସାହା ହୋଇଅଛନ୍ତି ଗୋବିନ୍ଦ
ତାହାଙ୍କୁ କେ କରିବ ଏବେଟି ହେ ମନ୍ଦ ।
ଧୃତରାଷ୍ଟ୍ରପୋଏ ଅଠରଦିନ ଯୁଝି
ଶୋଇଲେ ପ୍ରାଣ ହାରି କରି ରଣମଝି ।
ଏବେ କାହିଁ ଦାରୁଣ ରାକ୍ଷସେ ଅଇଲେ
ନିଷ୍କାରଣେ ଆମ୍ଭର ପ୍ରାଣକୁ ନାଶିଲେ ।
ଏହିରୂପେ ରଜନ କରି ସେ କାରୁଣ୍ୟ
ଶୋଇଲେ ମରଣକୁ କରିଣ ବରଣ ।
ଅଶ୍ୱତ୍ଥାମା ବଡ଼ ଦାରୁଣପଣ କଲେ
ତାହାଙ୍କୁ ମଧ୍ୟ ଯାଇ ହାଣି ପକାଇଲେ ।
ଭୂତ ପ୍ରେତ ପିଶାଚ ରାକ୍ଷସେ ତା ଦେଖି
ମାଂସ ଖାଇ ରକ୍ତ ପିଇଲେ ହୋଇ ସୁଖୀ ।
ରଜନୀ-ଅର୍ଦ୍ଧକାଳ ସରିକି ରାଜନ
ପାଣ୍ଡବ-ସୈନ୍ୟଯାକ ପାଇଲେ ନିଧନ ।
ହିମଣରେ ପୁଣି ଯେ ଅଛୁଣ ଉଦୟ
ହୁଅନ୍ତେ ସେ ଘୋର ଅନ୍ଧାର ହେଲା କ୍ଷୟ ।
ଅଶ୍ୱତ୍ଥାମା ଦେଖିଣ ଛାଡ଼ି ଯୁଦ୍ଧ-କୋପ
ଆସିଲେ ଯହିଁ ଥିଲେ କୃତବର୍ମା କୃପ ।

କହିଲେ ସେ ଦୁହିଁଙ୍କି ମାରି ଅକ୍ଷୌହିଣୀ
ସେନା ଆସୁଅଛୁ ମୁଁ ଜାଣ ଏହିକ୍ଷଣି ।
ସେ ଦୁହେଁ ଅଶ୍ୱତ୍ଥାମା-ମୁଖୁଁ ଏ ବଚନ
ଶୁଣିକରି ବୋଇଲେ ଆମ୍ଭେ ମଧ୍ୟ ଧନ୍ୟ ।
ବହୁତ ମାରି ଏହିଠାରେ ଅଛୁଁ ରହି
ଭୀମର ଆସିବାର କାଳକୁ ଅନାଇଁ ।
ଏରୂପେ କୁହାକୁହି ହୋଇ ତିନି ବୀରେ
ବାହାସ୍ଫୋଟମାନ କରିଲେ ଶରଧାରେ ।
ଧୃତରାଷ୍ଟ୍ର ବୋଇଲେ ଏ ବଳ ସଞ୍ଜୟ
କାହିଁ ରଖିଥିଲେ ଦ୍ରୋଣଙ୍କର ତନୟ ।
ଅଠରଦିନ ପାଣ୍ଡୁ ସୁତଙ୍କ ସଙ୍ଗରେ
ଯୁଦ୍ଧ କରିଣ ପଳାଇଲେ ଅତ୍ୟନ୍ତରେ ।
ଏବେ କଣ ଖାଇ ସେ ଚଣ୍ଡି କରି ମୋଟ
ଘୋରଯୁଦ୍ଧେ ମାଇଲେ ପାଣ୍ଡବଙ୍କ ଥାଟ ।
ଏହି କଥା ଭାବି ହୃଦୟମନ ହୋଇ
ଭୀମଙ୍କୁ ପୃଚ୍ଛୁ ଅଛୁ ମୁହିଁ ତାହି ତାହି ।
ସଞ୍ଜୟ ବୋଇଲେ ହେ କୃଷ୍ଣ ଅରଜୁନ
ନ ଥିବାରୁ ଦ୍ରୌଣି କଲେ ଏ କର୍ମମାନ ।
ଯେବେ ସେହି ଦୁହେଁ ସେସ୍ଥାନେ ବା ବସାନ୍ତେ
ଥାନ୍ତେ କି ହୁଅନ୍ତା ଏ କର୍ମ ଏହାଙ୍କରେ ।

—o—

## ମୁମୂର୍ଷୁ ଦୁର୍ଯ୍ୟୋଧନଙ୍କ ସହ ରଣଭୂମିରେ ଶେଷ ଆଲାପ

ଏବେ ଶୁଣ ଅଶ୍ୱତ୍ଥାମାଙ୍କର ଚରିତ
ଯୁଦ୍ଧେ ଯଶ କରି ଆନନ୍ଦ ଧରି ଚିତ୍ତ ।
କୃପ କୃତବର୍ମା ଏ ଦୁହିଁଙ୍କି ବୋଇଲେ
ଚାଲ ଦୁର୍ଯ୍ୟୋଧନେ କହିବା ଏହା ଭଲେ ।
ଯେବେ ସେ ମରିଥିବେ କପାଳ ଆଉଁଷି
ରହିବା ଆମ୍ଭେ ଯାଇ ହୋଇ ବନବାସୀ ।
ଅଶ୍ୱତ୍ଥାମାଙ୍କର ଶୁଣିଣ ଏ ଉତ୍ତର
ବାହାରିଲେ ଯେ କୃପ କୃତବର୍ମା ବୀର ।
ଦେଖିଲେ ସୁଯୋଧନ ଅଳ୍ପ ପ୍ରାଣ ବହି
ପଡ଼ିଛନ୍ତି ଆଖି ଦୁଇକ ଲେଉଟାଇ ।
ମୁଖ ଦେଇ ରକତଧାର ତାହାଙ୍କର
କାଳିମା ହୋଇ ହେଉଅଛନ୍ତି ବାହାର ।
ବୃକମାନେ ଶ୍ୱାନ ଶୃଗାଳ ବେଢ଼ିଛନ୍ତି
ଭୂମି ସୁଦ୍ଧ ରକ୍ତ ମାଉଁସେ ଚାଟଇ ମାତି ।
ଥରେ ଥରେ ସୁଯୋଧନଙ୍କର ପାଶକୁ
ଆସନ୍ତି ଶୁଙ୍ଘି ଶୁଙ୍ଘି ମାଂସ ଖାଇବାକୁ ।
ସୁଯୋଧନରାଜା ତାହାଙ୍କୁ ଦୁଇ ହାତେ
ଆଡ଼ଆଇ ହାତ ମାରନ୍ତି ନେଇ ମାଥେ ।
ଏହା ଦେଖି ଭୂମିର ନତ ମହାରଥୀ
ପାଇଲେ ହୃଦ-ପଦ୍ମମଧ୍ୟେ ଶୋକ-ବ୍ୟଥା ।
ସୁଯୋଧନ ଦେହରୁ ରକ୍ତ ପୋଛି ଦେଇ
କହିଲେ କୃପ ଦୁଇ ରଥୀଙ୍କି ଅନାଇ ।
ଦେଖ ସୁଯୋଧନ ନୃପତିଙ୍କର ଦୁଃଖ
ଏ ପୃଥ୍ୱୀ ଖଞ୍ଜିଥିଲା ଏହାଙ୍କୁ ମୁହୁଖ ।
ଦଇବ ବୋଲା ଆମ୍ଭ ମନରେ ନ ଥିଲା
ହେବାକୁ ଯେ ଯୋଗ୍ୟ ଥିଲା ତ ସେ ହୋଇଲା
ସୁଯୋଧନ ପତିଙ୍କ ପାଶରେ ପ୍ରମଦା
ପରିଏ ରହିଛନ୍ତି ଦେଖ ପ୍ରିୟ ଗଦା ।
ସହସ୍ରସଂଖ୍ୟା ଯାହା ପାଶେ ଥାନ୍ତା ସ୍ତ୍ରିୟ
ସେ ଏବେ ଏକା ଛନ୍ତି କରମ ଆଦରି ।
ଦିବ୍ୟ ପଲଙ୍କରେ ନୁହଇ ଯାଙ୍କ ନତ୍ର
ଶୋଇଛନ୍ତି ଏବେ ସେ ପାଇ ରଣପଦା ।
ଅଶ୍ୱତ୍ଥାମା କୃପଙ୍କ ବଚନ ଶୁଣିଣ
ବୋଇଲେ ଆହେ କୁରୁକୁଳ-ନରବଣ ।
ଶହ ପରି ପରାକ୍ରମକୁ ଅଙ୍ଗେ ବହି
ଭୀମ ଗଦାଘାତରେ ଶୋଇଲ ତ ମହୀ ।
ଏ ହେତୁ ଜାଣୁଛି ହେଲେହେଁ ମହାବଳ
ବଳ ନ ପାରି ତ ଘୋଟିଲେ ଆସି କାଳ ।
ଯୁଧିଷ୍ଠିର ଧାର୍ମିକ ହୋଇ ଆସୁଥିଲେ
ଭୀମ ଭୂମି ମୁଣ୍ଡକୁ ଗୋଇଠା ମାଇଲେ ।
କଛି ନ ବୋଲିଣ ସେ ହସ ହସ ହୋଇ
ରହିଲେ ଯାହା ଏହା କହି ନ ଯୋଗାଇ ।
ରାମ ଦୁର୍ଯ୍ୟୋଧନଙ୍କୁ ପ୍ରଶଂସି କହନ୍ତି
ଏପରି ଗଦାବିଦ୍ୟା କେହି ନ ଜାଣନ୍ତି ।
ଯା ଇଚ୍ଛା ତାହା ହେଉ କ୍ଷତ୍ରିୟଙ୍କ ଗତି
ପାଇଲ ଯୁଦ୍ଧେ ମରି କୁରୁକୁଳପତି ।
ଏରୂପେ କଥାବାର୍ତ୍ତା ହୋଇ ତିନି ବୀରେ
କହିଲେ ପୁଣି ସୁଯୋଧନଙ୍କ ଆଗରେ ।

ଆଜ୍ଞ ତୁମ୍ଭର ପିତା ମାତା ନରମାଷୀ
ହୋଇ ବନମଧ୍ୟେ ବୁଲିବେ ହୋଇ ଦୁଃଖୀ ।
ଧିକ ହେଉ କିନା ସେ କୃଷ୍ଣ ଅର୍ଜୁନଙ୍କୁ
ଏ କଷ୍ଟ ଯେତୁଁ ଦେଲେ ପ୍ରଭୁ ସେ ତୁମ୍ଭଙ୍କୁ ।
ଶତ୍ରୁଙ୍କ ଅଭିମୁଖେ ହୋଇଲ ଯେ ହତ
କୃତାର୍ଥ କଲ ରାଜ୍ୟେ ତୁମ୍ଭର ଜୀବତ ।
ଏହା ଦେଖି ତୁମ୍ଭର ସଙ୍ଗେ ଆମ୍ଭେ ମରି
ଯାଉ ନାହୁଁ କିମ୍ପା ହସ୍ତିନା ଦଣ୍ଡଧାରୀ ।
ଏଥିରୁ ବଳି ଆମ୍ଭ ଅଭାଗ୍ୟକୁ କଥା
ଖୋଜିଲେ ନଥିବ ରାଜନ ମହାରଥା ।
ତୁମ୍ଭରେ ହୀନ ହୋଇ ଆମ୍ଭେ ଏବେ ମହୀ
ବୁଲିବୁ ବୋଲି କର୍ମେ ଲେଖିଅଛି ବିହି ।
ଯାଉଛ ତ ସ୍ୱର୍ଗେ ଗାନ୍ଧାରଦେଶୀବଳା
କରିବ ଯୁଦ୍ଧେ ମଲ୍ଲଲୋକଙ୍କୁ ସଙ୍ଗୋଳା ।
ଏଅନ୍ତେ କହିଲେ ପାଣ୍ଡବ ପାଞ୍ଚ ଭାଇ
ସାତ୍ୟକ କୃଷ୍ଣ ଏକା ରହିଲେଟି ଜୀଇ ।
ଅକ୍ଷୌହିଣୀ ସେନାଙ୍କୁ ଏ ନଶିରେ ତିନ—
ଜଣ ଆମ୍ଭେ କରିଲୁଁ ମଯରଜସ୍ଥାମୀ ।
ଦ୍ରୁପଦରାଜ ସୁତ ମାନଙ୍କର ପ୍ରାଣ
ଦ୍ରୌପଦେୟ ତୁଲରେ ନେଲୁ ବୋଲି ଜାଣ ।
ସୁଯୋଧନ ବୋଇଲେ ଭୀଷ୍ମ ଦ୍ରୋଣ କର୍ଣ୍ଣ ।
ନେଇ ତ ନ ପାରିଲେ ଧୃଷ୍ଟଦ୍ୟୁମ୍ନ-ପ୍ରାଣ ।
ତୁମ୍ଭେ କେଉଁରୂପେ ମାଇଲ ଅଶ୍ୱତ୍ଥାମା
ଏ କଥା ପଶୁ ନାହିଁ ମୋହ କର୍ଣ୍ଣସୀମା ।
ଯେବେ ବା ମାରିଅଛ ତୁମ୍ଭର କୁଶଳ
କରନ୍ତୁ ବାଞ୍ଛା ମନେ ସର୍ବ ହରପାଳ ।
ଏବେ ଯାଅ ତୁମ୍ଭେ ମୁଁ ଯାଉଛି ସ୍ୱର୍ଗକୁ
ଯେବେ ଯିବ ସ୍ୱର୍ଗକୁ ଦେଖିବ ଆମ୍ଭଙ୍କୁ ।
ଏରୂପେ ତୁମ୍ଭ ସୁତ ବଚନରେ ବାଡ଼ି
ଦେଲେ ସେ ପ୍ରିୟ ପ୍ରାଣଟିକି ଦେହୁଁ ଛାଡ଼ି ।
ଦେଖି ସୁଯୋଧନ-ରାଜାଙ୍କର ବିନାଶ
ସେ ତିନ ମହାରଥୀ ଅଶ୍ରୁ ଧରି ଦୃଶ ।
ନିଜ ରଥବରମାନଙ୍କୁ ଆରୋହିଲେ
ସେଠାରୁ ଯାଇ ବନମଧ୍ୟରେ ରହିଲେ ।
ଅଶ୍ୱତ୍ଥାମାବୀରଙ୍କ ଆଚରିତ ଯାକ
ସାକ୍ଷାତରେ ଦେଖି ହେ ଅବନୀ-ନାୟକ ।
ରାତଶେଷେ ତୁମ୍ଭର ପାଶକୁ ଆସିଲି
ପଚାରିବାରୁ ତାହା ସମସ୍ତ କହିଲି ।
ତୁମ୍ଭ ଦୁର୍ମନ୍ତ୍ରଣାରୁ ପାଣ୍ଡୁ କୁରୁକୁଳ
ଯୁଦ୍ଧ କରି ସର୍ବେ ମଣ୍ଡିଲେ ଯମ ଆଳ ।
ବେଦବ୍ୟାସଙ୍କର ଦେବାର ଦିବ୍ୟଜ୍ଞାନ
ଥିଲା ମୋ ଦେହେ ଥିବାଯାଏ ଆୟୋଧନ ।
ଯେଉଁକ୍ଷଣି ସୁଯୋଧନ ହୋଇଲେ ହତ
ସେକ୍ଷଣି ସେ ଗଲା ହେ ଅମ୍ବିକାଙ୍କ ସୁତ ।
ଏରୂପେ କୁରୁକ୍ଷୟ ଶୁଣି ନରପତି
ପାଡ଼ିଲେ ଡାକ ନେତ୍ରେ ଧରି ମାର ଅତି ।
ସୌପ୍ତିକପର୍ବ ଏହିଠାରେ ବେଦବ୍ୟାସ
କରିଛନ୍ତି ଜାଣ ହେ ସୁଧୀଜନେ ଶେଷ ।
ଏହା ମୁଁ ନ ସାରି ଶଲ୍ୟାଦି ପର୍ବଦ୍ୱୟ
ବୋଲିବାରୁ ସୌପ୍ତିକ କରିବ ଉଦୟ ।

— ୧୦ —

## ଯୁଧିଷ୍ଠିରଙ୍କ ବିଳାପ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଶୁଣ ଏଥୁ ଅନ୍ତେ ଯେ କଥା ଦେଇ ମନ ।
ରାତ ଯୁଦ୍ଧରେ ଧୃଷ୍ଟଦ୍ୟୁମ୍ନ-ସାରଥି
ନ ମରି ଜୀଇଥିଲା ହୋଇ ଅତି ବ୍ୟଥୀ ।
ଦେଖି ସୂର୍ଯ୍ୟଦେବଙ୍କ କିରଣ ଆଲୋକ
ବାହାରିଲା ବସାମଧ୍ୟରୁ ଛାଡ଼ି ଦକ ।
ପାଣ୍ଡବ ରାଜାଙ୍କର ସମୀପେ ମିଳିଲା
ରାତରେ ହେବା କଥାମାନଙ୍କୁ କହିଲା
କୃପ କୃତବର୍ମା ଅଶ୍ୱତ୍ଥାମା ଏ ତିନ—
ବୀରେ ଗଲେ ରାତରେ କରେ ଶସ୍ତ୍ର ଘେନ ।
ଦ୍ରୌପଦେୟ ଧୃଷ୍ଟଦ୍ୟୁମ୍ନନାଦିଙ୍କ ପ୍ରାଣ
ହରିନେଲେ ଜାଣ ହେ ପାଣ୍ଡବରାଜନ ।
ଏ ବାହାରେ ଅକ୍ଷୌହିଣୀଏ ସେନା ଥିଲେ
ଏହାଙ୍କୁ ମଧ୍ୟ ଯମପୁରେ ବରିଗଲେ ।
ଦଇବ-ବଳେ ମୁହିଁ ପଶଣକୁ ରଖି
ଥିବାରୁ ରାତଶେଷେ ଆସିଲି ଏକାକୀ ।
ଯୁଧିଷ୍ଠିର ଶୁଣିଣ ପୁତ୍ରଙ୍କ ମରଣ
ପଡ଼ିଲେ ତଳେ ହୃଦେ ଧରିଣ କାରୁଣ୍ୟ ।
ସାତ୍ୟକଙ୍କ ତୁଲରେ ସ୍ୱର ଭାଇଯାକ
ଧାଇଁଲେ ଯୁଧିଷ୍ଠିରନୃପେ କରି ଶୋକ ।

ଚେତା ପାଇଣ ଯୁଧିଷ୍ଠିର ନରପତି
ବୋଇଲେ ଦଇବ କ ଦେଲୁ ତୁ ବିପତ୍ତି ।
ଭାଇ ମାନ ଅର୍ଜିଲି ପୁତ୍ର ପାଇଁ ରାଜ୍ୟ
ତାଙ୍କୁ ତ ଯେମରାଜ୍ୟ ଏବେ ସମରାଜ୍ଜ ।
ମୋ ଜୀବ ରଖିବାରେ କାର୍ଯ୍ୟ ନାହିଁ କିଛି
ନିଅ ପୁତ୍ରଙ୍କର ସଙ୍ଗତେ ମୁଁ ବୋଲୁଛି ।
ଜୟ ହେଲେ ଆମ୍ଭର ହୋଇଲା ଅଜୟ
ହୋଇଲେ ଯେବେ ପାଣିଦେବା ଲୋକକ୍ଷୟ ।
ଭୀଷ୍ମ-ଦ୍ରୋଣ-କର୍ଣ୍ଣ-ଅକୂପାରକୁ ପାର—
ହୋଇ ଦ୍ରୌଣି ଗୋଷ୍ପଦେ ପୁତ୍ରମଲେ ମୋ'ର
ଜାଣୁଛି ଯେକାଳେ ଅଦୃଷ୍ଟ ହୋଏ ବାମ
ଅନର୍ଥ ଘୋଟି ନ କରଇ ପୂର୍ଣ୍ଣକାମ ।
ଭୀଷ୍ମ ଦାବାଗ୍ନିରେ ମୋ ପୁତ୍ରମାନେ ବନ
ଦହନ ନୋହି ବ୍ୟର୍ଥେ ହୋଇଲେ ନିଧନ ।
ସାବଧାନ ନୋହିଲେ ବିଦ୍ୟା ଜାତି ତପ
ସବୁ ଲୋକଙ୍କରଟି ହୋଇଯାଏ ଲୋପ ।
ଭାଇ ବାବୁ ପୁଣେ ତ କୃଷ୍ଣାଙ୍କର ମଲେ
କରୁପେ ତାହାଙ୍କୁ ବୋଧିବ କହ ଭଲେ ।
ଆଜ ଯେ ପୁତ୍ର ଭ୍ରାତୃଶୋକରେ ଆକୁଳ
ହୋଇ କୃଷ୍ଣା ନଷ୍ଟେ ଦେଖିବେ ଯମ ଆଳ ।
ଏରୂପେ କାନ୍ଦି ଯୁଧିଷ୍ଠିର ନରବଣ
ନକୁଳକୁ ସ୍ମରିଣ କହିଲେ ବଚନ ।
ଯାଇ ତୁମ୍ଭେ ତାହାଙ୍କ ମାତୃଙ୍କ କୁଳରେ
ଦ୍ରୌପଦୀଙ୍କି ଆଣହେ ମୋଠାକୁ ବୋଇଲେ ।
ତାହା ଶୁଣିକରି ନକୁଳ ମହାରଥ
ଯିବାପାଇଁ ସେକ୍ଷଣି ଆରୋହିଲେ ରଥ ।
ଶିବିର ନିକଟେ ତ ଉପପ୍ଲବଗଡ଼
ବାହାରିଲେ ସେଠାକୁ ହୋଇ ତଡ଼ବଡ଼ ।
ନକୁଳଙ୍କ ଯିବା ଉତ୍ତାରୁ ଯୁଧିଷ୍ଠିର
ଗଲେ ଗୁଡ଼ଆସିବା ବସାକୁ ତାଙ୍କର ।
ବସାରେ ପୁଅମାନେ ସୁହୃଦଙ୍କ କୁଳେ
ମୁଣ୍ଡ କାନ୍ଧ ଛିଣ୍ଡାଇ ଶୋଇଛନ୍ତି ଭଲେ ।
ତାହାକୁ ଦେଖିକରି ପାଣ୍ଡବ ରାଜନ
ପାଡ଼ିଲେ ଉଚେ ଉକା ନେହେ ଧରି ବନ ।
ଧରନ୍ତେ ପାଣି ଯୁଧିଷ୍ଠିରଙ୍କର ଆଖି
ଯେଥିଲେ ପାଖେ ସେ ବୋଧିଲେ ହୋଇଦୁଃଖୀ

## ଅଶ୍ୱତ୍ଥାମାଙ୍କ ମସ୍ତକମଣି ପାଇଁ ଦ୍ରୌପଦୀଙ୍କ ପ୍ରାର୍ଥନା

ଉପପ୍ଲବଗଡ଼କୁ ନକୁଳ ଯେ ଗଲେ
ନ କହି କିଛି ପ୍ରିୟପ୍ରିୟାଙ୍କୁ ଆଣିଲେ ।
ଯୁଧିଷ୍ଠିରରାଜାଙ୍କ ଆଗେ ତାଙ୍କ କରି
ଭୂମୀ ହୋଇ ରହିଲେ ଶୋକ ମନେ ଧରି ।
ଦ୍ରୌପଦୀ ଦେଖି ଭ୍ରାତା ପୁତ୍ରଙ୍କ ନିଧନ
ସ୍ୱରଦଗପାଳକଙ୍କୁ ମନେ ମଣି ଶୂନ୍ୟ ।
ହା ପୁତ୍ରେ ମଲ ବୋଲି ଉଚେ କରି ରଡ଼ି
ପଡ଼ିଲେ ଅଣି ହୋଇ ତକ୍ତ ପାଦ ଛାଡ଼ି ।
ଭୀମ ସେ ସମୟେ ଦ୍ରୁପଦନନ୍ଦନାଙ୍କୁ
ଧଇଲେ ନାଶିବାକୁ ତାଙ୍କ ବମନାଙ୍କୁ ।
ଭୀମ ଆଶ୍ୱାସନା କରନ୍ତେଣ ଦ୍ରୌପଦୀ
ବସିଲେ ଧୈର୍ଯ୍ୟ ଜ୍ଞାନକୁ ସମ୍ପାଦି ।
ଯୁଧିଷ୍ଠିରନୃପେ ବୋଇଲେ ବଚନକୁ
ମରାଇଲ ତ ବହି ବାହାରେ ଧନୁକୁ ।
ଶୋଇବାଠାରେ ଅଶ୍ୱତ୍ଥାମା ବୀରପଣ
ଦେଖାଇ ମାରଗଲେ ମୋର ପୁତ୍ରଗଣ ।
ଏତେ ବେଳଯାଏ ଅଛନ୍ତି ସେହି ଜୀଇ
ଏଥିରୁ ଭାଗ୍ୟ ଆଉ ଅର୍ଜିବାକୁ ନାହିଁ ।
ଆଜ ମୁଁ ଜୀଇବାରେ କେଉଁ କାର୍ଯ୍ୟ ଅଛି
ଅନଶନ କରି ମରିବି ମୁଁ କହୁଛି ।
ଯେବେ ଅଶ୍ୱଥାମା ହୋଇବଟି ସହାର
ତେବେ ସତ୍ୟ କହୁଛି କରିବି ମୁଁ ଆହାର ।
ଏହିରୂପେ ପତିଙ୍କି କହିଣ ଦ୍ରୌପଦୀ
ବସିଲେ ଅନଶନ-ବ୍ରତକୁ ସମ୍ପାଦି ।
ଯୁଧିଷ୍ଠିର ଦେଖିଣ ଦ୍ରୌପଦୀ-ଶୋଚନା
ବୋଇଲେ ଦୁଃଖ ନ କର ଗୋ ସୁଲୋଚନା ।
ତୁମ୍ଭ ଭାଇ ପୁତ୍ରେ ତ କ୍ଷତ୍ରିଧର୍ମ କରି
ମରି ବସିଛନ୍ତି ସୁଖରେ ସ୍ୱର୍ଗପୁରୀ ।
ଅଶ୍ୱତ୍ଥାମା ଦେହ ତ ଅଛନ୍ତି ଲୁଚାଇ
ତାଙ୍କୁ ବା ଖୋଜିଲେ ପାଇବୁ ଆମ୍ଭେ କେହି ।
ଦ୍ରୌପଦୀ ବୋଇଲେ ହେ ଦ୍ରୋଣପୁତ୍ର-ମୁଣ୍ଡେ
ମଣି ଅଛି ମୁହିଁ ଶୁଣିଛି ତୁମ୍ଭ ତୁଣ୍ଡେ ।

ତାହାଙ୍କୁ ମାରି ମଣି ମୋତେ ଆଣିଦିଅ
ଯେବେ ଅଟ ତୁମ୍ଭେ ମୋହର ପ୍ରାଣ ପ୍ରିୟ ।
ଭୀମଙ୍କୁ ମଧ୍ୟ କହ୍ନି ଦ୍ରୁପଦଙ୍କ ସୁତା
ବୋଇଲେ ତୁମ୍ଭେ ଥାଇ ହେଲି ପୁତହନ୍ତା ।
ଏବେ ତୁମ୍ଭେ କ୍ଷତ୍ରିୟଧର୍ମ ଆଶ୍ରେ କରି
ଦିଅ ଦ୍ରୋଣପୁତ୍ରକୁ ଯୁଦ୍ଧବାଣ୍ଡେ ମାରି ।
ବିରାଟ ନଗର କୀଚକ ଦେଲା ପୀଡ଼ା
ତାକୁ ନାଶକଲ ଯୁଦ୍ଧରେ ହୋଇ ଛିଡ଼ା ।
ଏବେ ହେ ଦ୍ରୋଣପୁତ୍ର ସକାଶରୁ ଦୁଃଖୀ
ହେଉଛି, ତାକୁ ମାରି କର ମୋତେ ସୁଖୀ ।

—୦—

## ଭୀମଙ୍କର ଅଶ୍ୱତ୍ଥାମା ସଂହାରରେ ପ୍ରତିଜ୍ଞା ଓ ଯୁଦ୍ଧଯାତ୍ରା

ଦ୍ରୌପଦୀ-ବଚନ ନ ସହିପାରି ଭୀମ
ହୃଦୟରୁ ମଧ୍ୟରେ ଧରି ମହାତମ ।
ନକୁଳଙ୍କୁ ସାରଥି କରି ନିଜେ ରଥେ
ବାହାରିଲେ ଯିବା ପାଇଁ ଦ୍ରୌଣି ସାଥେ ।
ନକୁଳଙ୍କ ବାହୁବା-ବେଗରେ ଦୌଡ଼ାଏ
ଉଡ଼ିଗଲା ପରି ଗମିଲେ ଆହେ ସ୍ୱପ୍ନେ ।
ଅଶ୍ୱତ୍ଥାମାର ରଥଚକ ଚିହ୍ନ ଦେଖି
ଯାଆନ୍ତେ ସେହି ଦୁଇଭାଇ କ୍ରୋଧେ ମଜ୍ଜି ।

—୦—

## ଶ୍ରୀକୃଷ୍ଣ କର୍ତ୍ତୃକ ଅଶ୍ୱତ୍ଥାମାଙ୍କ ଚକ୍ରମାହାତ୍ମ୍ୟ ବର୍ଣ୍ଣନ

କୃଷ୍ଣ ଯୁଧିଷ୍ଠିରେ ବୋଇଲେ କ ବୃତ୍ତାନ୍ତ
ମରିବେଟି ଏହିକ୍ଷଣି ହେ ବାତ-ଚତ୍ର ।
ପୁତ୍ରଶୋକୁଁ ଏ ଶୋକ ପଡ଼ିବଟି ବଳ
ଉଠ ଭୀମ ପାଶକୁ ଯିବା ହେ ନ ଭଲ ।
ବ୍ରହ୍ମଶିର ଅସ୍ତ୍ର ତ ଦେଇଛନ୍ତି ଦ୍ରୋଣ
ତା ମାରି ଅଶ୍ୱତ୍ଥାମା ନେବେ ଭୀମ-ପ୍ରାଣ ।
ଅର୍ଜୁନଙ୍କୁ ମଧ୍ୟ ସେ ଅସ୍ତ୍ର ଦେଇଛନ୍ତି
ତେଣୁ ପାର୍ଥ ଜଗତ ଜିଣିଟି ପାରନ୍ତି ।
ପୁତ୍ରକୁ ଦେଇ ବ୍ରହ୍ମଶିର ଅସ୍ତ୍ରବାଣ
ଦୁଃଖ କରି ଦ୍ରୋଣ କହିଲେ ଯାହା ଶୁଣ ।
ଯୁଦ୍ଧରେ ବିପତ୍ତିକି ପାଇଲେ ରେ ବାବୁ
ମନୁଷ୍ୟଙ୍କୁ ଏ ଅସ୍ତ୍ର ପେଷି ନ ମାରିବୁ ।
ପୁଣି ବୋଇଲେ ତୁହି ଅଟୁ ମହାଦୁଷ୍ଟ
ଅବଶ୍ୟ ଏ ଶର ପେଶିବୁ ହୋଇ ରୁଷ୍ଟ ।
ଏହା ଶୁଣିଣ ଅଶ୍ୱତ୍ଥାମା ନେତ୍ରୁ ପାଣି
ତେଜ ବାବା ପାଶରୁ ଗଲେ ସେହିକ୍ଷଣି ।
ତୁମ୍ଭେ ଯେଉଁ ସମୟେ କଲ ବନବାସ
ସେ ସମୟେ ମୋଠାରୁ ଗଲେ ଦ୍ରୋଣଶିଷ୍ୟ ।
କହିଲେ ତପ କରି ଦ୍ରୋଣ ଦ୍ୱିଜବର
ଆଣିଲେ ଅଗସ୍ତିଠାରୁ ଯେ ବ୍ରହ୍ମଶର ।
ସେ ଅସ୍ତ୍ର ମୋତେ ଦେଇଅଛନ୍ତି ମୋ ପିତା
ହୋଇବାକୁ ଏ ତିନିଭୁବନରେ ଜେତା ।
ମୋଠାରୁ ଏବେ ତୁମ୍ଭେ ବ୍ରହ୍ମଶିର ନେଇ
ତୁମ୍ଭ ଚକ୍ର ଦିଅ ମୋ ଶ୍ରଦ୍ଧା ଅଛି ତହିଁ ।
ମୁହିଁ ବୋଇଲି ଦେବ ଯକ୍ଷ ମନୁଷ୍ୟରେ
ଭୟ ମୋହର ନୁହଇ ଦ୍ରୌଣି ମାନସରେ ।
ଧନୁ ଗଦା ଚକ୍ର ଶକ୍ତି ମୋର ଅଛି
ଯା ଇଚ୍ଛା ହେବ ତାହା ନିଅ ଦ୍ରୋଣବତ୍ସି ।
ବ୍ରହ୍ମଶିର ଅସ୍ତ୍ର ନାହିଁ ମୋହର ଲୋଡ଼ା
ମୁଁ କରି ନ ପାରେ ପ୍ରାଣୀଙ୍କ ଘରବୁଡ଼ା ।
ମୋଠାରୁ ଏହା ଶୁଣି ଦ୍ରୌଣୀ ତୋଷ ହୋଇ
ଡେବରି କରେ ଚକ୍ର ଉଠାଇଲେ ଯାଇ ।
ନ ଚଳନ୍ତେ ଚକ୍ର ଦକ୍ଷିଣ କରେ ଧରି
ଟେକିଲେ ଅଶ୍ୱତ୍ଥାମା ଦେହବଳ କରି ।
ମୋ ଚକ୍ର ଅୟୁଧ ତ ଅଟେ ବଳଆର
ନ ଚଳିଲେ ଟିକେ ହେ ଜାଣ ନରବର ।
ଶାନ୍ତ ହୋଇଣ ଦ୍ରୌଣୀ ମୁଖେ ଲାଜ ପାଇ
ପଡ଼ିଲେ ବସି ଦୁଇଗୋଡ଼ ଫାଡ଼ିଦେଇ ।
ତାହା ଦେଖିଣ ମୁହିଁ କହିଲି ତାହାଙ୍କୁ
ଜାଣିଅଛ ତ ତୁମ୍ଭେ ଅର୍ଜୁନ-ବଳକୁ ।
ଦେବ ଦଇତ ଯକ୍ଷ ରାକ୍ଷସ ମାନବ—
ମାନଙ୍କ ଯୁଦ୍ଧେ ସେ ପାରନ୍ତି ଭାଙ୍ଗି ଗର୍ବ ।
ପ୍ରାଣରୁ ଅଧିକ ସେ ଅଟନ୍ତି ମୋ ଭଲେ
ଦେବ ପ୍ରିୟ ଭାର୍ଯ୍ୟାକୁ ସେ ଇଚ୍ଛାକଲେ ।
ସେହି ତ ମୋତେ ଆଜଯାଏ ଚକ୍ରବର
ମାଗି ନାହାନ୍ତି ଆହେ ଦ୍ରୋଣଙ୍କ କୁମର ।
ବ୍ରହ୍ମଚର୍ଯ୍ୟ କରି ମୁଁ ବାରଟି ବରଷ
ଜାତ କରିଲି ପ୍ରଦ୍ୟୁମ୍ନ ନାମେ ଶିଷ୍ୟ ।

ସେ ମଧ୍ୟ ମୋତେ ଚକ୍ର ନାହାନ୍ତି ମାଗି
ନ ଜାଣି ତୁମ୍ଭେ ତହିଁ ହେଲ ଅନୁରାଗୀ ।
ରାମ ତୁଲେ ଯେତେ ଅନ୍ଧକ ବୃଷ୍ଣି ଛନ୍ତି
ଥାଉ ମାଗିବା, ସେ ଉଚ୍ଚରି ନ ପାରନ୍ତି ।
ତୁମ୍ଭେ ତ ମହାରଥୀମାନଙ୍କ ମଣ୍ଡନ
ଚକ୍ର ନେବାପାଇଁ କରିଛ କମ୍ପା ମନ ।
ଅଶ୍ୱତ୍ଥାମା ବୋଇଲେ ଚକ୍ରକୁ ମୁଁ ନେଇ
ତୁମ୍ଭ ସଙ୍ଗେ ଯୁଝିବା ଇଚ୍ଛାଥିଲି ତହିଁ ।
ଏବେ ତ ମୁଁ ବୁଝିଲି ତୁମ୍ଭ ପରାକ୍ରମ
ଯାଉଛୁ ଆଜ କି କରିବ ମୁଁ ସଂଗ୍ରାମ ।
ତୁମ୍ଭ ବିନା ଏ ଚକ୍ର ଧରିବାକୁ ମହୀ
ମଣ୍ଡଳରେ ଆଉ କେହି ତ ଦିଶୁନାହିଁ ।
ଏହା କହି ମୋଠାରୁ ରତନ ବସନ
ମେଲାଣି ପାଇ କରି ଦ୍ରୋଣଙ୍କ ନନ୍ଦନ ।
ମୁଣ୍ଡ ବାଳ ଆଉଁଷି ବାପଙ୍କ ଘରକୁ
ଆସିଲେ ପୃଷ୍ଠପଟେ ବହ୍ନଣ ଲଜକୁ ।
ଏହି ସକାଶରୁ ମୁଁ କହୁଛି ତୁମ୍ଭଙ୍କୁ
ଚାଲ ଆମ୍ଭେ ଯିବା ଭୀମଙ୍କୁ ଜଗିବାକୁ ।
ଅଶ୍ୱତ୍ଥାମା ବୁଦ୍ଧି ତ ଚଞ୍ଚଳ ଅଟଇ
ଭୀମଙ୍କର ବଳରେ ଯିବେ ଦଳ ହୋଇ ।
ଭୟେ ଭୀମଙ୍କୁ ସେ ପେଷିବେ ବ୍ରହ୍ମଶର
ଭୀମ ତା କରି ନ ପାରିବେଟି ସଂହାର ।

—o—

## ବ୍ୟାସ ଓ ନାରଦଂକର ଅସ୍ତ୍ର ପ୍ରତିସଂହାରପାଇଁ ଅଶ୍ୱତ୍ଥାମାଂକ ଉପଦେଶ

ଏହା କହି କୃଷ୍ଣ ଗରୁଡ଼ଧ୍ୱଜ ରଥେ
ବସିଲେ ଯୁଧିଷ୍ଠିର ପାର୍ଥ ଭେନ ସାଥେ ।
ବସିବାକ୍ଷଣି ହସ୍ତେ ଧରିଣ ପ୍ରତୋଦ
ବାହିଲେ ସେ ରଥକୁ ବହିଣ ପ୍ରମୋଦ ।
ରଥ ଯିବା ଘାତରେ ଚକ୍ର କଣ୍ଠ ରଡ଼ି
ରହିଲା କୁରୁଦେଶ-ଆକାଶକୁ ମାଡ଼ି ।
ଭୀମସେନବୀରଙ୍କ ରଥର ସମୀପେ
ଗରୁଡ଼ଧ୍ୱଜରଥ ହେଲା ଯାଇଁ ଧାପେ ।
ଭୀମ ତ ଅଶ୍ୱତ୍ଥାମା ବଧରେ ଉଦ୍ବେଗ
ହୋଇଥିଲେ ସେ ବର୍ଜି ନ ପାରଣ ରାଗ ।
ଦ୍ରୋଣିଙ୍କର ପାଖକୁ ଏକା ଧାଇଁ ଗଲେ
ପଛେ କୃଷ୍ଣ ଅର୍ଜୁନ ଛନ୍ତି ନ ଚର୍ଚ୍ଚିଲେ ।
ଦେଖିଲେ ଦ୍ରୋଣିପାଶେ ଛନ୍ତି ବେଦବ୍ୟାସ
କଟି ଦେଶେ ପିନ୍ଧିକରି ସେ ଚର୍ମବାସ ।
ଗଙ୍ଗା ଯାଉଅଛନ୍ତି ଦୁଇ ତଟ ଖାଇ
ସେ ଦୁହିଁଙ୍କର ସମୀପରେ ରହେ ବସି ।
ଗୁଣେରେ କାଣ୍ଡ ସନ୍ଧି ଝିଙ୍କି ବୃକୋଦର
ବୋଇଲେ ରହ ରହ ଦ୍ରୋଣଙ୍କ କୁମର ।
ଏ କାଳେ କୃଷ୍ଣ ଯୁଧିଷ୍ଠିର ଅରଜୁନ
ଆବୋରିଲେ ଯାଇ ଭୀମଙ୍କ ପୃଷ୍ଠସ୍ଥାନ ।
ଅଶ୍ୱତ୍ଥାମା ଭୀମ ଅର୍ଜୁନାଦିଙ୍କି ଦେଖି
ଦୁଃଖୀ ହୋଇ ଭୟରେ ବୁଜି ଦୁଇ ଆଖି ।
ବ୍ରହ୍ମଶର ଅସ୍ତ୍ରକୁ ନିଯୋଜନ କଲେ
ଈଷିକାଟିକେ ତାହା ଧରିଣ ଫିଙ୍ଗିଲେ ।
ବୋଇଲେ ଧନୁର୍ବେଦ ଅଟେ ଯେବେ ସତ
ସବୁ ପାଣ୍ଡବଙ୍କୁ ଏ ଅସ୍ତ୍ର କରୁ ହତ ।
ସେ ଈଷିକାଟି ଅଶ୍ୱତ୍ଥାମା ହାତୁ ଫିଟି
ଜାତ କରିଲା ଅଗ୍ନିଜ୍ୱାଳା କୋଟି କୋଟି ।
ଇଙ୍ଗିତରେ ପୂର୍ବରୁ କୃଷ୍ଣ ଦ୍ରୋଣି ହୃଦ
ଜାଣିପାରି ଥିଲେ ବହିଣ ଅପ୍ରମେଦ ।
ଅର୍ଜୁନେ ବୋଇଲେ ଦ୍ରୋଣଙ୍କ ବ୍ରହ୍ମଶର
ଅସ୍ତ୍ର ପ୍ରୟୋଗକୁ ହେ କର ଏବେ ବାର ।
ପାଣ୍ଡବଙ୍କୁ ଆସି ତ ପଡ଼ିଲା ବିପତ୍ତି
ନ ରଖିଲେ ସେଥି ବସିବେ ଯମକତି ।
ଅରଜୁନ ନ ଶୁଣି କୃଷ୍ଣଙ୍କ ଏ ବଚନ
ରଥବରୁ ଓହ୍ଲାଇ ପଢ଼ିଣ ବଚନ ।
ଆଚମନ ସାରିଣ ଦେହକୁ ପବିତ୍ର
କରି ଧନୁ ମଧ୍ୟରେ ବ୍ରହ୍ମଶର ଅସ୍ତ୍ର ।
ସନ୍ଧି ବୋଇଲେ ଯେ ଗୁରୁଙ୍କ ତୁଲେ ମୋର
ଭଲ ହୋଇଥାଉ ଦ୍ରୋଣଙ୍କ କୁମର ।
କେବଳ ତାହାଙ୍କର କରିବା ଅସ୍ତ୍ରକୁ
ମୋ ଅସ୍ତ୍ର ଦେଉ ଯାଇ ଦଶମ ଦଶାକୁ ।
ଏତେ କହି ପାର୍ଥ ଛାଡ଼ିଲେ ଅସ୍ତ୍ରବର
ବାହାରିଲେ ସେ ନନ୍ଦ ତ୍ରାସ ବଜ୍ରଳର ।
ଏହିକାଳେ ଉଲ୍କା ପଡ଼ିଲା କୋଟି କୋଟି
ଗିରି ତୁଳଦେ ବସୁନ୍ଧରା ଗଲେ ଫାଟି ।

ଦାରୁଣ ହୋଇ କର ବହ୍ନିଲ ପବନ
ସବୁ ପ୍ରାଣି-ହୃଦୟେ ଉପୁ କଲା ସ୍ଥାନ ।
ନାରଦ ବ୍ୟାସ ଲୋକହିତ ମନେକଲେ
ସେ ଅସ୍ତ୍ର ଦୁହିଙ୍କର ମଝିରେ ରହିଲେ ।
ବୋଇଲେ ଏହି ଅସ୍ତ୍ର ମନୁଷ୍ୟଙ୍କୁ କେହି
ମାରିବାର ଆମ୍ଭ ନୟନ ଦେଖି ନାହିଁ ।
ତୁମ୍ଭେ ଦୁହେଁ ଦ୍ୱିଜ ହେ କୁରୁକୁଳ ଜାତ
ହୋଇ ଏଡ଼େ ଅନ୍ୟାୟ ପଥେ ହେଲ ଗତ ।
ଅର୍ଜ୍ଜୁନ ସେ ଦୁହିଙ୍କ ବଚନ ମାନିଲେ
ଆପଣା କଲା ଅସ୍ତ୍ର ସଂହାରଣ ହେଲେ ।
ବୋଇଲେ ଦ୍ରୌଣି ଦେଖ ଆମ୍ଭ ନାଶ ପାଇଁ
ବ୍ରହ୍ମଶର ବରଗିଛନ୍ତି କ୍ରୋଧ ହୋଇ ।
ତୁମ୍ଭେ ତାଙ୍କୁ କହିଣ ନବର୍ତ୍ତିଅ ତାହା
ଆଜ କହିବାକୁ ଆମ୍ଭର ଅଛି ସାହା ।
ଆହେ ଜନମେଜୟ ଅରଜୁନ ବିନା
ନ ପାରିବେ ସେ ଅସ୍ତ୍ର ସଂହାରି ସୁମନା ।
ବ୍ରହ୍ମଚର୍ଯ୍ୟ ବିନାଟି ସେ ଅସ୍ତ୍ର ସଂହାର
ଯେ କରଇ ତାହାର କରେ ସେ ସଂହାର ।
ଅର୍ଜ୍ଜୁନ ପୂର୍ବେ ବ୍ରହ୍ମଚର୍ଯ୍ୟ-ବ୍ରତ ଧରି
ଲଭିଲେ ଅସ୍ତ୍ରବର, ପ୍ରୟୋଗ ନ କରି ।
ଥିଲେ ମହାଦୁଃଖକୁ ପାଇଲେ ସେ ହେଳେ
ଏଣୁ ତା ବରଗି ସଂହାରି ପକାଇଲେ ।

—୦—

## ଅଶ୍ୱତ୍ଥାମାଙ୍କର ଶିରୋମଣି ପ୍ରଦାନ

ଅଶ୍ୱତ୍ଥାମା ଆପଣା କଲା ଅସ୍ତ୍ରବର
ସଂହାରି ନ ପାରିଣ ହୋଇଲେ ଆତୁର ।
କହିଲେ ବେଦବ୍ୟାସ ନାରଦଙ୍କୁ ଚାହିଁ
ଏ ଅସ୍ତ୍ରର ସଂହାର ମୋତେ ନ ଆସଇ ।
ପାଣ୍ଡବଙ୍କୁ ମାରିବାପାଇଁ ଅସ୍ତ୍ରବର
ବରଗିଛି ତାଙ୍କୁ ଏ କରିବେ ସଂହାର ।
ବ୍ୟାସ ବୋଇଲେ ଆହେ ବ୍ରହ୍ମଶର ନ୍ୟସ୍ତ
କଲେ ପାର୍ଥ ନାଶିବାପାଇଁ ତୁମ୍ଭ ଶସ୍ତ୍ର ।
ଆମ୍ଭ ବୋଲେ ଏବେ ସେ ଅସ୍ତ୍ର ସଂହାରିଲେ
ତୁମ୍ଭେ କିମ୍ପା ନ ସଂହାରିବ କହ ଭଲେ ।
ତୁମ୍ଭେ ଅବା ବୋଲିବ ଶତ୍ରୁ ଅର୍ଜ୍ଜୁନର
ଯେବେ ନାଶ କରିପାରିଲା ଅସ୍ତ୍ର ମୋର ।
ତେବେ କିମ୍ପା ତା ସେ ସଂହାରି ପକାଇଲେ
ଏଥିର କାରଣ କହିବା ଶୁଣ ଭଲେ ।
ବ୍ରହ୍ମଶର ଅସ୍ତ୍ରରେ ବ୍ରହ୍ମଶର ଅସ୍ତ୍ର
ହତ ହେଲେ ବୃଷ୍ଟି ନ କରେ ଦ୍ରୋଣପୁତ୍ର ।
ବାରବରଷଟି ଯାଏ ତା ପରିମାଣ
ଏଣୁ ତ ଆମ୍ଭେ ନିବର୍ତ୍ତାଇଲୁଁଟି ଜାଣ ।
ଏବେ ତୁମ୍ଭେ ଆମ୍ଭ ବଚନକୁ ଘେନ
ସଂହାରି ବ୍ରହ୍ମ ଅସ୍ତ୍ରବର ହୁଅ ତୁନି ।
ତୁମ୍ଭ ମୁଣ୍ଡରେ ଯେଉଁ ମଣିଟି ରହିଛି
ଦିଅ ଘେନିଯାନ୍ତୁ ପାଣ୍ଡୁଙ୍କ ପାଞ୍ଚବହି ।
ଅଶ୍ୱତ୍ଥାମା ବୋଇଲେ ଶିରୋମଣି ମୋର
ଶୁଣୁ ଛି ନାହିଁ କୁରୁପାଣ୍ଡବ ଭଣ୍ଡାର ।
ଏ ମଣି ଥିଲେ କ୍ଷୁଧା ତୃଷା ବ୍ୟାଧି ମୋତେ
ଗ୍ରାସି ନ ପାରଇ ଜାଣ ହେ ମହାମତେ ।
ତୁମ୍ଭେ ତ ବୋଲୁଅଛ ପାଣ୍ଡବଙ୍କୁ ମଣି
ଦିଅ ବୋଲି, ପାରେ କି ଲଙ୍ଘି ତୁମ୍ଭ ବାଣୀ ।
ବୋଲୁଅଛି ଏ ଅସ୍ତ୍ର-ସ୍ରଷ୍ଟା ପାଣ୍ଡୁସୁତ
ନାରୀଙ୍କର ଗର୍ଭ-ଶରୀର କରୁ ହତ ।
ବ୍ୟାସ ବୋଇଲେ ଯେବେ ଏହି ପାପକଥା
ବିଚାରିଛ ତା କର ଦ୍ରୌଣି ମହାରଥୀ ।
ଦ୍ରୌଣି ବୋଇଲେ ମୋର ଆୟତ୍ତ ତ ନାହିଁ
ନିବର୍ତ୍ତାଇ ଏ ଅସ୍ତ୍ର କେବେ ନ ପାରଇଁ ।
ଏତେ ବୋଲି ପାଣ୍ଡବ-ସ୍ତ୍ରୀଙ୍କ ଗର୍ଭକୁ
ନାଶିବାକୁ ପେଶିଲେ ସେ ବ୍ରହ୍ମଶରକୁ ।
କୃଷ୍ଣ ବୋଇଲେ ଆହେ ଶୁଣ ଅଶ୍ୱତ୍ଥାମା
ନୋହିବଟି ଏ କଥା, ନ କର ଗରିମା ।
ବିରାଟ ଘରେ ଉତ୍ତରଙ୍କୁ ଦ୍ୱିଜ ଜଣେ
କହିଅଛନ୍ତି ଏହା ଶୁଣିଛୁଁ ଆମ୍ଭେମାନେ ।
କୁଳକ୍ଷୟକାଳରେ ତୁମ୍ଭ ପୁତ୍ର ଜାତ
ହେବାରୁ ହୋଇବ ତା ନାମ ପରୀକ୍ଷିତ ।
ସେ ଏକା କୁରୁମଣ୍ଡଳରେ ହୋଇ ରାଜା
ପାଇବଟି ସବୁ ପ୍ରାଣୀଙ୍କଠାରୁ ପୂଜା ।
ଅଶ୍ୱତ୍ଥାମା ବୋଇଲେ ପକ୍ଷଧର ତୁମ୍ଭେ
କହୁଅଛ ଯେ ଏହା ମାନିବୁ କି ଆମ୍ଭେ ।
ତୁମ୍ଭେ ଯେବେ ରଖିଛ ପାର୍ଥ-ବଧୂ-ଗର୍ଭ
ଆଜ ହେବ ସେ ଗର୍ଭ-ଜୀବନ ଦୁର୍ଲ୍ଲଭ ।

କୃଷ୍ଣ ବୋଇଲେ ସେ ପାଇଣ ବ୍ରହ୍ମାସ୍ତ୍ରକୁ
ମାରି ଜନ୍ମ ଲଭିବ ଦୀର୍ଘ ଆୟୁଷକୁ ।
ଆଜହୁଁ ତୁମ୍ଭେ ବାଳକ ଘାତୀ ବୋଲାଇ
ସହସ୍ର ତିନି ବର୍ଷ ପୃଥ୍ୱୀରେ ବୁଲିବ ।
କାହାରି କୁଳେ ତୁମ୍ଭେ ନୋହିବ ସଙ୍ଗ
ରହିବ ବନେ ଦୁଃଖ ସହି ନିଜ ଅଙ୍ଗ ।
ବ୍ୟାଧିଯୁତ ହେବାରୁ ରକ୍ତ ପୂଯ ନିତି
ହେଉଥିବ ତୁମ୍ଭ ଦେହରୁ ଉତପତ୍ତି ।
ଅଭିମନ୍ୟୁନନ୍ଦନ ପରୀକ୍ଷିତ ରାଜା
ହୋଇଣ ପାଳନା କରିବେ ସୁଖେ ପ୍ରଜା ।
ଷାଠିଏଟି ବରଷ ମହୀରେ ରହିବେ
ତଦନ୍ତେ ଉତ୍ତମଲୋକକୁ ଲଭିବେ ।
ବ୍ୟାସ ବୋଇଲେ ତହୁଁ ଆମ୍ଭର ବଚନ
ଲଙ୍ଘିବାରୁ ଯାହା କଲେ ଜନାର୍ଦ୍ଦନ ।
ସେରୂପେ ଦ୍ରୋଣଙ୍କ ନନ୍ଦନ ଫଳ ଭୁଞ୍ଜି
ରହୁ ଏ ମହୀଦେଶେ ମହାଦୁଃଖେ ମଜ୍ଜି ।
ଅଶ୍ୱତ୍ଥାମା ବୋଇଲେ କୃଷ୍ଣଙ୍କର ଶାପ
ସହସ୍ର ତିନି ସମ୍ବତ୍ସରେ ହେବ ଲୋପ ।
ତଦନ୍ତେ ମୁହିଁ ତ ରହିବି ତୁମ୍ଭ ପାଶେ
ଏହି ବରକୁ ମୋତେ ଦିଅ ଋଷି ତୋଷେ ।
ଏହା କହିଣ ଦ୍ରୌଣି ମୁଣ୍ଡରୁ ମଣିଟି
ଦେଲେ ପାଣ୍ଡବଙ୍କର ହସ୍ତଦେଶେ କାଟି ।
ମହତଭୟ ଧରି ପିନ୍ଧି କଷାବାସ
ବନମଧ୍ୟରେ ଯାଇ କଲେ ସେ ନିବାସ ।

—୦—

## ମଣି ନେଇ ପାଣ୍ଡବଙ୍କର
## ଦ୍ରୌପଦୀ-ହସ୍ତରେ ପ୍ରଦାନ

ପାଣ୍ଡବେ ବେଦବ୍ୟାସ ନାରଦଙ୍କୁ ଘେନି
ଆସିଲେ ଯହିଁ ଥିଲେ ଦ୍ରୁପଦ-ନନ୍ଦିନୀ ।
ଆର୍ତ୍ତ ହୋଇ ଦ୍ରୌପଦୀ ଡକା ପାଡ଼ୁଥିଲେ
ରଥରୁ ଓହ୍ଲାଇ ସେ ତାଙ୍କ ପାଶେ ଗଲେ ।
ଯୁଧିଷ୍ଠିରଙ୍କର ସମ୍ମତେ ବୃକୋଦର
ମଣି ଦେଲେ ନେଇଣ ଦ୍ରୌପଦୀଙ୍କ କର ।
ବୋଇଲେ ଦ୍ରୋଣପୁତ୍ର ମୁଣ୍ଡ ମଣି ଏହି
ଛାଡ଼ ପୁତ୍ରଶୋକ ଗୋ ସ୍ଫୁଟଚନ୍ଦ୍ରମୁହିଁ ।
ପୁତ୍ର ଭ୍ରାତୃ ମାରି ତୁମ୍ଭେ ତ ବଇରି—
ସିନ୍ଧୁ ପାରି ପାଇଲ ଏବେ ହୁଅ ଧୀର ।
ଦ୍ରୋଣପୁତ୍ର ଦ୍ୱିଜ ହେବାରୁ ନ ମାଇଲୁ
ତାହାଙ୍କର ମୁଣ୍ଡରୁ ମଣିଟି ଆଣିଲୁ ।
ଦ୍ରୌପଦୀ ବୋଇଲେ ମୁଁ ହୋଇଲି ଅନୃଣ
ଏ ମଣିକି ରଖନ୍ତୁ ଯୁଧିଷ୍ଠିରରାଣ ।
ତାହାଙ୍କୁ ମାରିଥିଲେ ବ୍ରହ୍ମହତ୍ୟା ଦୋଷ
ହେବା ଘେନି ମୋର ନୁହନ୍ତା ସ୍ୱର୍ଗବାସ ।
ଗୁରୁଙ୍କ ଉଚ୍ଛିଷ୍ଟ ବୋଲି ସେ ମଣିରତ୍ନ
ରଖିଲେ ଯୁଧିଷ୍ଠିର କରି ଅତି ଯତ୍ନ ।
ପୁଣି ସେ ମଣିବର ମସ୍ତକରେ ନେଇ
ରଖିଲେ ସନ୍ତୋଷେ ପାଣ୍ଡବନରସାଇଁ ।
ସେ ସକାଶୁ ଚନ୍ଦ୍ରଉଦୟ ପରବତ
ଶୋଭାକୁ ତାଙ୍କ ଶୋଭା ହୋଇଲା ସମତ ।

—୦—

## ଶ୍ରୀକୃଷ୍ଣଙ୍କ ମୁଖରେ ଅଶ୍ୱତ୍ଥାମାଙ୍କର
## ଶତ୍ରୁବିନାଶର କାରଣ ପ୍ରକାଶ

ଏ ଅନ୍ତେ ଯୁଧିଷ୍ଠିର ଦ୍ରୌପଦୀଙ୍କ ତୁଲେ
କୃଷ୍ଣଙ୍କର ମୁଖକୁ ଚାହିଁଣ ପୁଚ୍ଛିଲେ ।
ମହାରଥଙ୍କରେ ମୋ ପୁତ୍ରେ ଜିତ ହୋଇ
ଦ୍ରୋଣସୁତ ହସ୍ତରେ ମଲେ କିସ ପାଇଁ ।
ଧୃଷ୍ଟଦ୍ୟୁମ୍ନ ତ ଅତ୍ୟନ୍ତ ବଳୀୟାର
ଯେ କରିଥିଲେ ରଣେ ଦ୍ରୋଣଙ୍କୁ ସଂହାର ।
ତାହାଙ୍କୁ ଅଶ୍ୱତ୍‌ଥାମା ନ କରିଣ ଏକା
ମାଇଲେ କେମନ୍ତେ କହ ହୁଦୁଁ ଗୁଡ଼ ଦକା ।
ଶ୍ରୀକୃଷ୍ଣ ବୋଇଲେ ହେ ଶିବ-ବଳେ ଦ୍ରୌଣି
ତୁମ୍ଭ ସୁତମାନଙ୍କୁ ପକାଇଲେ ହାଣି ।
ଶିବଙ୍କର ପ୍ରସନ୍ନ ହୋଇଲେ ମହେନ୍ଦ୍ର
ହାରିବେ ଲୋକଙ୍କୁ ହେ ଜାଣ ନରଇନ୍ଦ୍ର ।
ଶିବଙ୍କର ସମସ୍ତ ମହାତମ୍ୟଯାକ
ଜାଣଛି ମୁଁ ତା ଶୁଣ ଅବନୀ-ନାୟକ ।
ଆଦ୍ୟ ମଧ୍ୟ ଅନ୍ତଟି ଶିବଙ୍କୁ କହନ୍ତି
ଶିବଙ୍କର କର୍ମରେ ସମସ୍ତେ ଅଛନ୍ତି ।
ପୂର୍ବେ ମହେଶଙ୍କୁ କହିଲେ କୁଶଧର
ପ୍ରାଣୀଙ୍କି ତୁମ୍ଭେ ଯାଇ ସରଜନା କର ।

ଅନ୍ନ ନ ଥିବାରୁ ପ୍ରାଣୀଙ୍କି ସରଜନା
ନ କରି ରୁଦ୍ର ଧେତ ହୋଇଣ ବିମନା ।
ଜଳ ମଧ୍ୟରେ ପଶି ଆରମ୍ଭିଲେ ତପ
ନାଶ ଯିବାପାଇଁକି ନିଜ ହୃଦ-ତାପ ।
ବ୍ରହ୍ମା ରୁଦ୍ର ପ୍ରଜାପତିଙ୍କ ମନ ଜାଣି
ଆଉ ପ୍ରଜାପତିଏ ସର୍ଜିଲେ ନୃମଣି ।
ତାହାଙ୍କୁ ବୋଇଲେ ମୋ ବୋଲେ ଏବେ ଯାଅ
ସୃଷ୍ଟି ଉଆଇବାକୁ ପ୍ରାଣୀଙ୍କି ଉଆଅ ।
ସେ ତହୁଁ ବୋଇଲେ ମୋ ଉପରେ ଅଗ୍ରଜ
ନ ଥିଲେ ଏହା ମୁଁ କରିବି ଦେବରାଜ ।
ବ୍ରହ୍ମା ବୋଇଲେ ହେ ତୁମ୍ଭରୁ ବଡ଼ ହୋଇ
ପୁରୁଷ ଥିଲ୍ପର ମୋତେ ଦିଶୁ ନାହିଁ ।
କେବଳ ରୁଦ୍ର ଥିଲେ ପଶି ମୋ ପାଣିରେ
ସର୍ଜନା କରି ପ୍ରାଣୀମାନଙ୍କୁ ପାଣିରେ ।
ବ୍ରହ୍ମାଙ୍କର ବୋଲେ ଯେ ଦକ୍ଷ ପ୍ରଜାପତି—
ଆଦି ସାତ ସର୍ଜନା କଲେ ପ୍ରଜାପତି ।
ସେ ସାତ ପ୍ରଜାପତିମାନେ ଚତୁର୍ବିଧ
ପ୍ରାଣୀଙ୍କି ସର୍ଜିଲେ ହେବାକୁ ମନବୋଧ ।
ସେ ପ୍ରାଣୀଏ ଖାଦ୍ୟ ନ ପାଇ ପ୍ରଜାପତି
ସାତଙ୍କୁ ଖାଇବାପାଇଁ ଧଳାଇଲେ ମତି ।
ତା ଦେଖି ପ୍ରଜାପତି ସାତେ ଭୟ କଲେ
ଆମ୍ଭଙ୍କୁ ରକ୍ଷା କର ବୋଲିଣ ବୋଇଲେ ।
ତୁମ୍ଭ ବୋଲେ ଆମ୍ଭେ ପ୍ରଜାଙ୍କୁ ସରଜିଲୁ
ଖଆଇବାକୁ ଆହାର ତ ନ ପାଇଲୁ ।
ତୁମ୍ଭେ ଯେବେ ତାହାଙ୍କୁ ଖଞ୍ଜିବ ଆହାର
ତେବେ ଜାଣ ରହିବ ଆମ୍ଭର ଶରୀର ।
ବ୍ରହ୍ମା ତାହା ଶୁଣି ପ୍ରାଣୀଙ୍କ ଅନୁରୂପ
ଆହାର ଖଞ୍ଜିଲେ ହେ ଯୁଧିଷ୍ଠିରନୃପ ।
ଏଣୁ ସେ ପ୍ରାଣୀମାନେ ସନ୍ତୋଷ ହୋଇଲେ
ପ୍ରଜାପତି ଦେବସ୍ଥାନରେ ବାସ କଲେ ।
ଶିବ ସେ ସମୟରେ ଜଳରୁ ବାହାରି
ଦେଖିଲେ ପ୍ରାଣୀ ରହିଛନ୍ତି ମହୀ ପୂରି ।
କ୍ରୋଧ ହୋଇ ନିଜ ଲିଙ୍ଗକୁ ଉପାଡ଼ିଲେ
ଭୂମିମଧ୍ୟଦେଶେ ଦେଖାଇ ଫିଙ୍ଗିଦେଲେ ।
ସେ ଲିଙ୍ଗ ଶିବଙ୍କର ପ୍ରଭାବରେ ବଢ଼ି
ଦେଖୁଁ ଦେଖୁଁ ରହିଲା ପୃଥ୍ୱୀଯାକ ମାଡ଼ି ।

ବ୍ରହ୍ମା ତାହା ଜାଣି ତାହାଙ୍କ ପାଶେ ଆସି
ବୋଇଲେ ତୁଚ୍ଛା ରୁଦ୍ର ନୁହ ମନେ ରୋଷୀ
କ୍ଷଣିକ ଜଳମଧ୍ୟେ କଲ ତୁମ୍ଭେ ବାସ
କାହିଁକି ଲିଙ୍ଗ ଉପାଡ଼ିଲ ବହି ରୋଷ ।
ଏଥିର ଯେ କାରଣ ମୁଁ ନ ଜାଣି ନାହିଁ,
ଏହା ମୋର ଆଗରେ କହ ତ ବତାଇ ।
ଶିବ ବୋଇଲେ ଆନରେ ସରଜନା
କଲ ତ ପ୍ରଜାଙ୍କୁ ହେ ବ୍ରହ୍ମ ମହାମନା ।
ଲିଙ୍ଗ ଥାଇ ମୋର ହୋଇବ ଆଉ କିସ
ଏଣୁ ସକାଶୁଁ ତାହା କଲି ମୁହିଁ ନାଶ ।
ଜଳମଧ୍ୟେ ରହିଲି ବୋଲି ଯା ପୁଚ୍ଛିଲ
ବିସ୍ତରି ମୁଁ ମନରେ ପ୍ରାଣୀଙ୍କର ଭଲ ।
ଆହାର ଦେବାପାଇଁ ତପ କରୁଥିଲି
ପୁଚ୍ଛୁଅଛ ହେ କୁଳଧର ତାହା ଭୁଲି ।
ଏରୂପେ କହି ମୁଞ୍ଜବାନ ପର୍ବତକୁ
ଗଲେ ରୁଦ୍ର ମହାତପସ୍ୟା କରିବାକୁ ।
ଏ ଅନ୍ତେ ସବୁ ଦେବେ ହୋଇ ଏକମନ
ଯଜ୍ଞ ଢିଲେ ଯାଗସାମଗ୍ରୀ ହେ ରାଜନ ।
ଯେଉଁ ଦେବତା ଯେଉଁ ଭାଗଟିକି ଯୋଗ୍ୟ
ତାହା କଳ୍ପନା କଲେ ବିହିଣ ସବୁଗ ।
ଅଛନ୍ତି ରୁଦ୍ର ବୋଲି ଦେବତାଏ ଜାଣି
ନ ଥିବାରୁ ତାଙ୍କୁ ଛାଡ଼ିଲେ ନୃପମଣି ।
ସେ କଥା ଜାଣିପାରି କରି ଉମାପତି
ସର୍ଜିଲେ ଧନୁ ତାଙ୍କ ନାଶେ ଦେଇ ମତି ।
ଅଙ୍ଗ ତୁଲେ ହଜିତ ହୋଇ ସବୁଯାଗେ
ସେ ଧନୁରେ ରାଜନ ରହିଲେ ସବୁଭାଗେ ।
ପାଞ୍ଚେ ଟି ହାତ ଅଟେ ସେ ଧନୁ ପ୍ରମାଣ
ବଚନରେ ତା ବଳ ନୁହଇ କଥନ ।
ବଷଟକାର ହେଲେ ସେ ଧନୁର ଗୁଣ
କରିବାକୁ କ୍ଷଣେ ପ୍ରାଣୀଙ୍କ ମନ ଛନ୍ନ ।
ଶିବ ସେ ମହାଧନୁ କରପୁଟେ ବହି
ଦେବଙ୍କ ନାଶକୁ ଆସିଲେ କ୍ରୋଧେ ଧାଇଁ ।
ଦେବଙ୍କ ହସ୍ତ ଧନୁ ଦେଖି ମହୀ-ଆଳି
ଥରଥର ହୋଇଲେ ଶାନ୍ତି ମନେ ଗଳି ।
ଆକାଶଯାକ ନେତ୍ରେ ଦିଶିଲେ ଅନ୍ଧାର
ଭୟ ପାଇଣ ନ ବହିଲେଟି ସମୀର ।

ଦେବତାମାନେ ଉଚପାତେ ଭୟ ପାଇ
ଚେଷ୍ଟା ଯା କଲେ, ସେ ଆପୁଣ୍ତ ତାଙ୍କ ନାହିଁ
ଯାଗର ହୃଦୟକୁ ଟାଣି ମାରଗଣ
ବନ୍ଧିଲେ ମହାରୁଦ୍ର ସାକ୍ଷାତେ ଆପଣ ।
ସେ ଯାଗ ଶିବ ବାଣ ବନ୍ଧିବାର ଦେଖି
ମୃଗରୂପେ ପଳାଇଗଲେ ହୋଇ ଦୁଃଖୀ ।
ଶିବ ସେ ଯାଗ ମୃଗ ସଙ୍ଗତେ ଗୋଡ଼ାଇ
ଆକାଶକୁ ବୋଲି ଗଲେ ସେ ନରସାଇଁ ।
ଯାଗ ନାଶ ଦେଖିଣ ଦେବଙ୍କ ଚେତନ
ଛାଡ଼ିଦେଲା ତାହାଙ୍କ ହୃଦୟ-ସଦନ ।
ସୂର୍ଯ୍ୟଙ୍କ ଦୁଇବାହୁ ଭର୍ଗଙ୍କ ନୟନ
ପୂଷାଙ୍କର ଦନ୍ତକୁ ଶିବ କଲେ ଭଗ୍ନ ।
ତା ଦେଖି ଦେବତା ଯଜ୍ଞାଙ୍ଗେ ପଳାଇଲେ
କେତେ ଦେବେ ତାଟକା ହୋଇଣ ରହିଲେ ।
ଏହି ରୂପରେ ଶିବ ପରାକ୍ରମ କରି
ରହିଲେ ଯୁଧିଷ୍ଠିର ତିନଲୋକେ ପୂରି ।
ପୁଣି ଧନୁର୍ଗୁଣ ଛିଣ୍ଡାଇ ରୁଦ୍ରଦେବ
ଧନୁକୁ ଦେଲେ ନେଇ ଆକାଶରେ ଠାବ ।
ଦେବେ ଯେ ଶିବଙ୍କର ପାଦରେ ପଡ଼ିଲେ
ଏଣୁ ଶିବ ତାହାଙ୍କୁ ସଦୟ ହୋଇଲେ ।
ନିଜ କ୍ରୋଧାନଳକୁ ସମୁଦ୍ରେ ସେ ନେଇ
ରଖିଲେ ଦାବାଗ୍ନି ବୋଲାଏ ନରସାଇଁ ।
ସୂର୍ଯ୍ୟଙ୍କ ବାହୁ ଭର୍ଗଦେବଙ୍କ ନୟନ
ପୂଷାଙ୍କ ଦନ୍ତ ଦେଲେ ହୋଇଣ ପ୍ରସନ୍ନ ।
ମୃଗରୂପ ହୋଇ ଯେ ଯାଗ ଯାଇଥିଲେ
ତାହା ଆଣି ଦେବତାମାନଙ୍କୁ ସମର୍ପିଲେ ।
ଦେବତାମାନେ ତାହା ଦେଖି ସୁଖୀ ହୋଇ
ଯାଗ କଲେ ରୁଦ୍ରଦେବଙ୍କୁ ଭାଗ ଦେଇ ।
ଶିବଙ୍କ ପ୍ରସନ୍ନେ ହୁଅନ୍ତି ଲୋକେ ଭଲ
ଅପ୍ରସନ୍ନ ହେଲେ ସେ କରନ୍ତି ନିର୍ମୂଳ ।
ମହାଦେବଦେବଙ୍କୁ ଆରାଧିଣ ଦ୍ରୋଣୀ
ପୁତ୍ରଙ୍କ ଭୂଲେ ପାଞ୍ଚାଳଙ୍କୁ ଗଲେ ହାଣି ।
ଏକା ଅଶ୍ୱତ୍ଥାମାଙ୍କ ପରାକ୍ରମ ଏହା
କେବେ ନୁହନ୍ତା ଆହେ ଜାଣ ନରନାହା ।
ଏହିଠାରେ ସୌପ୍ତିକ ଐଷିକ ସମାପ୍ତି
କରିଲେ ପରାଶର-ସୁତ ବ୍ୟାସଯତି ।
ତାହାଙ୍କର ମହିମା ସୁମରିଣ ହୃଦେ
ଏ ଗୀତ କଲେ କୃଷ୍ଣସିଂହନୃପ ମୋଦେ ।

ସୌପ୍ତିକ ଓ ଐଷିକ ପର୍ବ ସମାପ୍ତ

—)୦(—

# ସ୍ତ୍ରୀ ପର୍ବ

## ବନ୍ଦନା

ଜୟ ହେ କୃଷ୍ଣବ୍ରଜ-ବିପିନ-ଗଗନ—
କଳାକର ଗୋପିକା-କୁମୁଦ-ଜୀବନ ।
ବ୍ରଜଦେବୀ-ଚିତ୍ତ-ଚକୋର-ଉଲ୍ଲାସନ
ପ୍ରେମ-ଚନ୍ଦ୍ରିକାରେ କର ହେ ପ୍ରତିଦିନ ।
ଶ୍ରୀରାଧାନନ୍ଦ-ଅକୂପାର-ବରଧନ
ବଲ୍ଲବୀନାରୀ-ମାନ-ଅନ୍ଧାର ମର୍ଦ୍ଦନ ।
ସୁଖ-ଅମୃତକୁ କରିଣ ଯେ ସେଚନ
କରିଛ ଯଶୋଦାଙ୍କ ତାପକୁ ମୋଚନ ।
ସକଳ-କେଳିକଳାମାନଙ୍କ ନିଧାନ
ସଖୀ-ଉଡୁ-ଅଳଙ୍କରଣ ଯେ ବିଧାନ ।
ପୂର୍ଣ୍ଣମାସୀଙ୍କର ସାଳନ୍ୟ ବିଖଣ୍ଡନ
ଶ୍ରୀବୃନ୍ଦାବନ-ରାସ ମଣ୍ଡଳ-ମଣ୍ଡନ ।
ରୂପମଞ୍ଜରୀଙ୍କର ଅତି ଆମୋଦନ
ତିନିଭୁବନ-ମନ-ନୟନ-ରଞ୍ଜନ ।
ମୋ ହୃଦ-ଉଦୟାଦ୍ରି-ଶିଖେ କରି ସ୍ଥାନ
କର ମହାଭାରତ ଅର୍ଥ ପ୍ରକାଶନ ।

—୦—

## ଧୃତରାଷ୍ଟ୍ରଙ୍କର ବିଳାପ ଓ ସଞ୍ଜୟଙ୍କର ସାନ୍ତ୍ୱନା ଦାନ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ପୁତ୍ର ହତ ଶୁଣିଣ ଗାନ୍ଧାରୀ-ପ୍ରାଣ-ଧନ ।
କେଉଁ କଥା କଲେ ବସି ସେ ବିବାଗରେ
ପ୍ରକାଶ କର ତାହା ମୋହର ଆଗରେ ।
ଯୁଧିଷ୍ଠିର ପୁତ୍ର ଦୁଃଖରେ ଦୁଃଖୀ ହୋଇ
କିସ ବିଚାର କଲେ ଯେ୍ନ ସ୍ମରଣାଇ ।
କୃପ କୃତବର୍ମା ଦ୍ରୋଣଙ୍କର କୁମର
ଏଥିଅନ୍ତେ କି କଲେ ଆହେ ମୁନିବର ।
ସଞ୍ଜୟ ପୂର୍ବପର ଧୃତରାଷ୍ଟ୍ରଙ୍କର
ଆଗେ ନ କହିଲେ କି ପ୍ରଶ୍ନ ଉତ୍ତର ।
ଏହି କଥାମାନ ଶୁଣିବାପାଇଁ ମତି
ହେଉଛି କହ ବଇଶମ୍ପାୟନ ଯତି ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ସୁଯୋଧନରାଜା ଯାଆନ୍ତେ ଯମ-କ୍ଷୟ ।
ସଞ୍ଜୟ ଧୃତରାଷ୍ଟ୍ର ସମୀପକୁ ଗଲେ
କାହିଁକି କାନ୍ଦୁଅଛ ବୋଲିଣ ବୋଇଲେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଅଠର ଅକ୍ଷୌହିଣୀ
ସୈନ୍ୟ ଘେନିଣ ମଲେ କରିଣ ଆରଣି ।
ଏହି ସକାଶରୁଟି ଜାଣୁଅଛ ମୁହିଁ
ସହାୟରେ ନୃପତି କାର୍ଯ୍ୟ କିଛି ନାହିଁ ।
ଦଇବ ଯାହା କରୁଥାଏ, ହୁଏ ତାହା
ବୃଥା ଯା ଭାବୁଛ, ଏ ବ୍ୟର୍ଥ ନରନାହା ।
ଏବେ ପୁତ୍ର ଜ୍ଞାତିମାନଙ୍କ ପ୍ରେତକାର୍ଯ୍ୟ
କରି ଘରେ ସୁଖେ ବସ ହେ ମହାରାଜ ।
ଧୃତରାଷ୍ଟ୍ର ଶୁଣିଣ ସଞ୍ଜୟଙ୍କ ବାଣୀ
ମହୀମଧ୍ୟେ ଢଳିପଡ଼ିଲେ ସେହିକ୍ଷଣି ।
ଧୃତରାଷ୍ଟ୍ର ବୋଇଲେ ପୁତ୍ରଭୁଲେ ବନ୍ଧୁ
ମରିଇଲେ ବୁଦ୍ଧିକି କରିଣ ଅସାଧୁ ।
ଦଇବଠାରେ ଆଉ କିଛୁ କାର୍ଯ୍ୟ ନାହିଁ
କି କହ ସଞ୍ଜୟ, କରିବ କିସ ମୁହିଁ ।
ସୁହୃଦମାନଙ୍କର ନ ଘେନିଲି ବୋଲ
ତହିଁର ଅନୁରୂପ ଫଳୁଛି ତ ଫଳ ।
ସୁଯୋଧନ କର୍ଣ୍ଣ ଦ୍ରୋଣଙ୍କର ବିନାଶ
ଶୁଣି ଉଡ଼ିଛୁ ଏବେ ମୋହର ସାହସ ।
ପୂର୍ବେ ପାପ କରିବା ମୋତେ ଜଣା ନାହିଁ
ପୂର୍ବ ଜନ୍ମପାପେ ଭୋଗିଲି ଏହା ମୁହିଁ ।
ମୋହଠାରୁ ପାପୀ ଦୁଃଖୀ ହୋଇ ନର
ମହୀରେ ନଥିବ ସଞ୍ଜୟ ମନ୍ତ୍ରିବର ।
ଏହିରୂପେ କହନ୍ତେ ଗାନ୍ଧାରୀ ବିହାରୀ
କହିଲେ ତାଙ୍କୁ ପୁଣି ସଞ୍ଜୟ ବିଚାରି ।
ପୁରାଣ ବେଦକୁ ତ ଶୁଣିଛ ନରେଶ
ତା ଶୁଣିକରି କର ଏ ଶୋକ ବିନାଶ ।
କହିଲୁ ଯେବେ ବସିକରି ଆମ୍ଭେମାନେ
ନ ଶୁଣିଲ ତାହା ରାଜନ ତୁମ୍ଭେ କାନେ ।
ସୁଯୋଧନ ଯେଉଁ ବଳରେ ଗର୍ବୀ ହୋଇ
ଲୋଭ ମୋହ ଦୁର୍ବୁଦ୍ଧି ହୃଦୟରେ ଥୋଇ ।
ଦୁଃଶାସନ ଶକୁନି କର୍ଣ୍ଣଙ୍କ ଭୁଲେ
ବିଚାର କରି ଏହା ଅର୍ଜିଲେ ସେ ଭଲେ ।
ଭୀଷ୍ମ ଦ୍ରୋଣ ବିଦୁର ଗାନ୍ଧାରୀ ବଚନ
ନ ଘେନିବାରୁ ମଲେ ଜାଣ ଦୁର୍ଯ୍ୟୋଧନ ।
ଅଧର୍ମ ବିନା ଧର୍ମ ନ ଛୁଇଁଲେ ଅଙ୍ଗେ
ବିକାଇଲେ ମତି ସେ ଏକା ରଣରଙ୍ଗେ ।
ତୁମ୍ଭେ ତ ବୁଦ୍ଧିମନ୍ତ ଜାଣିଛ ଏ କଥା—
ଯାଉ ଏବେ ବିଚାର ଛାଡ଼ି ହୃଦ ବ୍ୟଥା ।
ପୁତ୍ର ଯେନି ତ ଲୋଭ-ବୀଜକୁ ଆଣିଲ
ହୃଦୟ-କେଦାରରେ ରୋପଣକୁ କଲ ।
ତହିଁରୁ ଅଧରମ-ବୃକ୍ଷ ଉପୁଜିଲା
ଫଳ ତୁମ୍ଭ କୁଳ ନିର୍ମୂଳ କରିଦେଲା ।
ନିଆଁ ଟିକି ପଣନ୍ତେ ଧରିଣ ଆପଣ
ପୋଡ଼ିଗଲା ବେଳକୁ କଲ ତ କାରୁଣ୍ୟ ।
କୃଷ୍ଣଙ୍କର ପ୍ରଭାବେ ପଡ଼ି ତୁମ୍ଭ ଲୋକ
ଯାଇ ତ ଦେଖିଗଲେ ପ୍ରେତଙ୍କ ନାୟକ ।

—୦—

## ଧୃତରାଷ୍ଟ୍ର ଓ ବିଦୁରଙ୍କର ଧର୍ମ ସମ୍ବନ୍ଧରେ କଥୋପକଥନ

### (୧) ସଂସାରର ଗହନ ସହିତ ତୁଳନା

ବିଦୁର ବୋଇଲେ କି ବୋଲି ନରବର
ଏହିରୂପେ ଲାଗିଛି ସବୁ ଦେହୀଙ୍କର ।

ଜନମ ହେଲେ ଲୋକ ମରଣ ପାଉଛି
ଏଥିରେ କହିବାକୁ କେଉଁ କଥା ଅଛି ।
ଯମ ତ ଶୂର ଭୀରୁମାନଙ୍କୁ ମାରନ୍ତି
ଶୂର କମ୍ପା ଯୁଦ୍ଧୁଁ ଛାଡ଼ିବ ସତ୍ୟେ ମନ୍ତ ।
କାଳକୁ ଅତିକ୍ରମି ନ ପାରଇ ନର
କାଳ ନୋହୁଥିବାଯାକଟି କରେ ଡର ।
ଶୋକ କଲେ ମଲା ଲୋକ ତ ନ ଆସଇ
କାହିଁକି ତୁମ୍ଭେ ବସି ମରୁଛ ବୋବାଇ ।
କାଳ ତ ସବୁଙ୍କୁ ନେଉଛି ବାଳ ଧରି
କାଳର ପ୍ରିୟ କରି କଥାଏ ନ ହେରି ।
ଶାସ୍ତ୍ରପ୍ରମାଣରେ ତୁମ୍ଭର ପୁତ୍ରମାନେ
ବସିଲେଣି ଯାଇ ଇନ୍ଦ୍ରଙ୍କ ସନ୍ନିଧାନେ
ଉତ୍ତମ ଆଚରଣ କରି ପୁତ୍ରଗଣ
ଯୁଦ୍ଧ ଅଭିମୁଖରେ ଛାଡ଼ିଲେ ଜୀବନ ।
ଏଥିନ୍ତୁ ଭାଗ୍ୟ ହୋଇ କଥା ଆଉ ନାହିଁ
ଥିଲା ପରି ରାଜନ ମୋତେ ଦିଶୁ ନାହିଁ ।
ଯୁଦ୍ଧ କରିବାଟି ନୁହଇ ନିଷ୍ଫଳ
ଅବଶ୍ୟ ତହୁଁ ସତ୍ୟେ ଫଳେ ମହାଫଳ ।
ମଲେ ସ୍ୱର୍ଗ, ଜିଣିଲେ ଜୀରତି ଭୂଲୋକେ
ପାଇକରି ଲୋକ ଯେ ବସଇ ନିଃଶଙ୍କେ ।
ଯେରୂପେ ମଲେ ଲୋକ ପାଇ ଭୋଗ ସ୍ୱର୍ଗ
ଯାଗ କଲେ ସେରୂପେ ନୁହଇଟି ଭୋଗ ।
ସ୍ୱର୍ଗକୁ ଯିବାକୁ ସୋପାନ କରି ଯୁଦ୍ଧ
ଖଞ୍ଜିଛନ୍ତି ବିଧିର ସକଳ ବିବୁଧ ।
ଶୋକରେ ଅଭିଭୂତ ହୋଇ ମହାରାୟେ
ନ ଛାଡ଼ ତୁମ୍ଭ ପ୍ରାଣ-ରକ୍ଷିବା-ଉପାୟେ ।
ମାତା ପିତା ପୁତ୍ର ବୋଲିଟି ବୋଲୁଥାନ୍ତି
ମଲେ ଆଉଥରେ ଆସି ସେ ନ ଦେଖନ୍ତି ।
ଅସଂଖ୍ୟ ଦୁଃଖ ଭୟ ଶୋକ ପ୍ରନ୍ଦନ
ମୂର୍ଖଲୋକ ଦେହରେ କରଇଟି ସ୍ଥାନ ।
ଶୋଇଥିବା ଲୋକକୁ ଜଗିଅଛି କାଳ
କାଳକୁ ରାଜନଟି ନାହିଁ କାହା ବଳ ।
ଦ୍ରବ୍ୟରୂପ ଯୌବନ ଆରୋଗ୍ୟ ଜୀବିତ
ଭାରିଯା ପୁତ୍ର ମିତ୍ର ବୋଲନ୍ତି ଅନିତ୍ୟ
ଜାଣିବା ଲୋକମାନେ ଏ କଥାମାନଙ୍କୁ
ଭୋଗ କରିଣ ନ ଆଣନ୍ତିଟି ମନକୁ ।

ସାଧାରଣ ସମ୍ବନ୍ଧେ ଘଟେ ଯେଉଁ ଚିନ୍ତା
ତହିଁକି ତୁମ୍ଭେ ଏକା କର କପାଁ ଚିନ୍ତା ।
ଚିନ୍ତା ନ କରିବାର ଶୋକକୁ ଔଷଧ
କହିଛନ୍ତି ଏହା ବିଦୁର କରି ବୁଧ ।
ଅସନ୍ତୁଷ୍ଟ ଲୋକ ମୋହକୁ ପାଉଥାନ୍ତି
ପଣ୍ଡିତଙ୍କଠାରେ ସେ ନାହିଁଟି ନୃପତି ।
ଜ୍ଞାନରେ ମନୋଦୁଃଖ ଔଷଧେ ବେଦନା
ନାଶୁଥିବ ସୁବୁଦ୍ଧି ହେବଟି ଯେ ଜନା ।
ପୂର୍ବକଲା କରମ ନ ଛାଡ଼ଇ ସଙ୍ଗ
ସୁଖ ଦୁଃଖକୁ ଭୋଗ କରୁଥାଏ ଅଙ୍ଗ ।
ଆପଣାର ଆପେ ଯେ ପାପ ପୁଣ୍ୟ ସାକ୍ଷୀ
ହୁଅଇ ବୋଲି ଜାଣ ଶାସ୍ତ୍ର ଅଛି ଲେଖି ।
ଏହି କଥାକୁ ଜାଣି ବୁଦ୍ଧିମନ୍ତମାନେ
ଶୁଭକର୍ମ କରୁଥାଆନ୍ତି ଅବିଚ୍ଛିନ୍ନେ ।
ଧୃତରାଷ୍ଟ୍ର ବୋଇଲେ ଗଲା ମୋର ଶୋକ
ଆଉ କହି ଛଡ଼ାଅ ହୃଦେ ଥିବା ଦକ ।
ଇଷ୍ଟକଥା ଛାଡ଼ି ଅନିଷ୍ଟ କଥାଯାକ
କରି ଏବେ ମାନସେ କରୁଅଛି ଶୋକ ।
ଦୁଃଖ ସୁଖ ଦୁହିଙ୍କି ସମ ଯେ ମଣଇ
ଜାଣୁଅଛି ତାହାକୁ ଗତି ଛାଡ଼ି ନାହିଁ ।
ବିଦୁର ବୋଇଲେ ହେ ଚିନ୍ତା ଯେ କରଇ
କଦଳୀଗଛ ପରି ସାର ତାର ନାହିଁ ।
ଜାଣିବା ନ ଜାଣିବା ଜନ୍ତୁ ଯେତେ ଜନ
ଧ୍ରୁବ ମରଣଟି ଅଟଇ ସମାନ ।
ଶରୀର ପ୍ରାଣୀଙ୍କର ଅଟଇଟି ପର
କାଳରେ ଜାଣ କରୁଛଇ ସେ ଘର ।
ପୁରୁଣା ଛାଡ଼ି ନୂଆ ଟିକିଲା ପରାୟେ
ଦେହ ଛାଡ଼ି ଜୀବଟି ଆନ ଦେହ ପାଏ ।
ସୁଖ ଦୁଃଖ ସୁକୃତକର୍ମରେ ଲୋକର
ହେଉଅଛି ହେ ନରବର ମନେ କର ।
ମାତା ଗର୍ଭରେ ଥାଇ ହୁଅନ୍ତି କେ ମୃତ
ଜାତ ହୋଇ କେ ଜୀଏ ଦିନ ପାଞ୍ଚ ସାତ ।
ବାଲ୍ୟ ପଉଗଣ୍ଡ କିଶୋର ଯଉବନ
ଏ ଭିତରେ ବା କେତେ ହୁଅନ୍ତି ନିଧନ ।
ଯେଉଁମାନେ ଆୟୁଷବନ୍ତ ହୋଇଥାନ୍ତି
ଅଶୀ ଭିତରେ ସେହୁ ଲଭନ୍ତି ମରଣ ।

ଏଥୁଁ ବଳପଡ଼ିଲେ ଶଏଟି ବରଷ
ଆୟୁଷ ପ୍ରମାଣ ହେ ଜାଣ ନରଈଶେ ।
ଏହା ଜାଣିଣ ଲୋକେ ଲୋଭ ପ୍ରେମେ ବୁଡ଼ି
ଅରଜୁଥାନ୍ତି ଧନ ଅବିଦ୍ୟାରେ ପଡ଼ି ।
ଯୁକ୍ତି ଜ୍ଞାନଯୋଗ-ଭେଳାରେ ନରବର
ହୁଅନ୍ତି ସସାର ସମୁଦ୍ରକୁ ପାର ।
କର୍ମଭୋଗ କରି ସଂସାରୀ ଜନମାନେ
ସଂସାର ଗହନେ ମଜ୍ଜନ୍ତି ଅବିଚ୍ଛିନ୍ନେ ।
ଧୃତରାଷ୍ଟ୍ର ବୋଇଲେ ସଂସାର-ଗହନ
କାହାକୁ ବୋଲି ତାହା ବିଦୁର ବଖାଣ ।
ବିଦୁର ବୋଇଲେ ହେ ଜନ୍ମ ପ୍ରାଣୀଙ୍କର
ନିସ୍ତାଯାକ କହିବା ଶୁଣ ନରବର ।
ସ୍ତ୍ରୀ ପୁରୁଷର ସଂଯୋଗରେ ରକତ
ବୀର୍ଯ୍ୟ ଭୁଲେ ଗର୍ଭମଧ୍ୟକୁ ହୁଏ ଗତ ।
ପାଞ୍ଚମାସ ସରକ କଲ୍ଲୋଳ ବୋଲାଏ
ପାଞ୍ଚଦିନ ସମ୍ପୂର୍ଣ୍ଣେ ଗର୍ଭ ବୋଲି ଘୟେ ।
ମାଂସ ରକତକୁ ଯେ ଷମରେ ସେ ବହି
ମାତାଗର୍ଭେ ବଢ଼ଇ ମହାଦୁଃଖ ପାଇ ।
ଜନ୍ମକାଳରେ ବାତ ବଳରେ ଯୋନିର
ଦ୍ୱାରକୁ ଆଗ୍ରାକଟରେ ମସ୍ତକ ବାହାର ।
ହଇଚବେଳେ ପୁଣି ଭୂମିକ ସେ ଛୁଇଁ
କ୍ଷୀର ପିଇ ଅନ୍ନକୁ ଖାଇଣ ବଢ଼ଇ ।
ଗ୍ରହେ ଧାଆଁନ୍ତି ଦେବାପାଇଁ ତାକୁ ପୀଡ଼ା
ସେ ଶୋଇବା କାନ୍ଥଦୁଆରେ ହୋଇ ଛିଡ଼ା ।
ତହିଁରୁ ଯେବେ ବଞ୍ଚିଯାଏ ସେ ବାଳକ
ଘୋଟନ୍ତି ଦେହେ ଆସି ସବୁ ବ୍ୟାଧିଯାକ ।
ଇନ୍ଦ୍ରିୟପାଶରେ ତ ବନ୍ଧା ହୋଇଥାଏ
ନାନା ବିପତ୍ତିରେ ଏଣୁ ସେ ଘାଣ୍ଟି ହୁଏ ।
ଆପଣାର ଦୋଷଗୁଣକୁ ଲଭି ସୁଖ
ପରଦୋଷ କହଇ ହୋଇଣ ବିମୁଖ ।
ଯମଲୋକକୁ ଯିବାଯାଏ ସେହିପରି
କଥା ବସି ଆଚରେ ନଷ୍ଟ ଦଣ୍ଡଧାରି ।
ଯେତେବେଳେ ତାହାକୁ ଯମଦୂତଗଣ
ବାନ୍ଧନ୍ତି, ତେତେବେଳେ ବସ୍ତ୍ରରେ ସେ ଧର୍ମ ।
ଏ ସଂସାର-ଶାସ୍ତ୍ରକୁ ଜାଣନ୍ତି ଯେମାନେ
ବସିଛନ୍ତି ଯାଇ ସେ ଜାଣ ସ୍ୱର୍ଗସ୍ଥାନେ ।

ଧୃତରାଷ୍ଟ୍ର ବୋଇଲେ ଧର୍ମର ଗହନ
ବୁଦ୍ଧ ମାର୍ଗ ମୋ ଆଗେ ବିଦୁର ବଖାଣ ।
ବିଦୁର ବୋଇଲେ ସଂସାର-ଗହନକୁ
କହିବା ଯେବେ ତୁମ୍ଭେ ପୁଚ୍ଛୁଛ ଆମ୍ଭଙ୍କୁ ।
ମହାଭୟଙ୍କର ସେ ଗହନବନକୁ
ଦ୍ୱିଜଟିଏ ଗଲା ବିହାର କରିବାକୁ ।
ସେ ବନରେ ଦେଖିଣ ଦୁଷ୍ଟ ଜନ୍ତୁପନ୍ତି
ପଳାଇବ ବୋଲି ସେ ବିପ୍ର ଗଲା ମତି ।
ଆପଣାର ରକ୍ଷକ ନ ଦେଖି କାହାକୁ
ମହାଭୟରେ ଥରିଲା ସେ ଗାତ୍ରକୁ ।
ଶବରଣୀ ଜଣେ ସେ ଅରଣ୍ୟରେ ଥାଇ
ଜାଲରେ ଦେଇଅଛି ଆକାଶକୁ ଛୁଇ ।
ପାଞ୍ଚମୁଣ୍ଡ କହିଣ ସାପେ ହୋଇ ରୁଣ୍ଡ
ପୂରିଛନ୍ତି ଜାଣ ସେ ବନ ମଧ୍ୟଖଣ୍ଡ ।
କୂପଟିଏ ଅଛି ତୃଣରେ ହୋଇ ଘୋଡ଼ି
ତହିଁରେ ସେ ଦ୍ୱିଜଟି ପଡ଼ିଲା ଅଜାଡ଼ି ।
ତୃଣକୁ ଦୁଇଗୋଡ଼େ ଗମ୍ଭୁଡ଼ି ଧଇଲା
ତଳକୁ ଶିର କରି ଓଲଟି ପଡ଼ିଲା ।
ଦେଖିଲା ସେ ଦ୍ୱିଜଟି କୂପପାଖେ ରହି
ଅଛି ହାତୀଟିଏ ଛଅଟି ମୁଖ ହୋଇ ।
ଏ ବାହାରେ ତାର ହୋଇଛି ବାରଗୋଡ଼
ଚାଲିବାବେଳେ ବାଜେ ହୋଇ ଲଡ଼ବଡ଼ ।
ପୁଣି ଲତା ବୃକ୍ଷ ସେ ହାତୀର ଦେହଟି—
ଯାକରେ ହୋଇଅଛି ନୃପଟିଖ ଗୋଟି ।
ସେ ଲତାର ଶିଖା ପୁଷ୍ପରେ ମଧୁକରେ
ବସିଅଛନ୍ତି ମଧୁପାନର ଲୋଭରେ ।
କୂପ ତୃଣ ଧରି ରହିବା ଦ୍ୱିଜମୁଖେ
ପଡ଼ିଲା ହସ୍ତିସ୍ଥିତ ଲତାମଧୁ ସୁଖେ ।
ତେତେବେଳେ ସେ ଦ୍ୱିଜ ମନଟି ତୃପତ
ନୋହିଲା ହେ ଜାଣ ହସ୍ତିନା ନରପତ ।
କୃଷ୍ଣ ଶୁକ୍ଳ ମୂଷା ସେ କୂପ ତୃଣ ମୂଳ
ରେକଟି ହଅନ୍ତି ଦେଖାଇ ଦନ୍ତବଳ ।
ସାପ ଶବରଣୀ ଯେ ହାତୀ ତୃଣ ପାତ
ମଧୁଲୋଭ ମୂଷା ସକାଶୁଁ ଭୟ ଜାତ ।
ଛଅପ୍ରକାର ହୋଇ ସୁଯୋଧନତାତ
ହେଲେ ହେଁ ନ ଛାଡ଼େ ଜୀବ-ଆଶା ତନ୍ତ ।

ଧୃତରାଷ୍ଟ୍ର ବୋଇଲେ ହେ ଦ୍ୱିଜ ଉପସୁତ
ହେଲା ତ କେଉଁରୂପେ ହେବ ସେ ମୁକତ ।
ବିଦୁର ବୋଇଲେ ଯା ବନ ବୋଲି ମୁହିଁ
କହିଲି ସଂସାରଟି ଅଟେ ନରସାଇଁ ।
ସାପ ବୋଲି ମୁଁ ଯାହା କହିଲି ରାଜନ
ବ୍ୟାଧି ବୋଲିକରି ତାହାକୁ ମନେ ଘେନ ।
ସେ ବନମଧ୍ୟେ କହିଲି ମୁଁ ଯେଉଁ ସ୍ତ୍ରୀ
ରୂପ-ବଳ-ନାଶିନୀ ଜରା ନାମ ତାର ।
କୂପଟି ପ୍ରାଣୀମାନଙ୍କର ଅଟେ ଦେହ
ସେ କୂପତଳେ ଜୀବଘାତୀ ନରସିଂହ ।
ହାତୀ ସମ୍ବତ୍ସର ଛ ମୁଖ ଷଡ଼ ଋତୁ
ଦ୍ୱାଦଶପାଦ ବାରମାସଙ୍କର ହେତୁ ।
କୃଷ୍ଣ ଶୁକ୍ଳ ମୂଷା ଯେ ରଜନୀ ଦିବସ
ମୋ କହିବାରୁ ଜାଣ ଆହେ ନରଈଶ ।
ଭ୍ରମରମାନେ କାମମଧୁ-ତାମରସ
ତହିଁରେ ବସିଛନ୍ତି ପ୍ରାଣୀ ଏ ବିଶେଷ ।
ଧୃତରାଷ୍ଟ୍ର ବୋଇଲେ ଏ ବାହାରେ ଆଉ
ଜାଣିଥିଲେ ମୋ ଆଗେ ତା କହିବା ହେଉ ।

## (୨) ମୁକ୍ତି-ମାର୍ଗ

ବିଦୁର ବୋଇଲେ ହେ ସଂସାର ମୁକତି
ମାରଗକୁ କହିବା ଶୁଣ ଦେଇ ମତି ।
ସଂସାରାବର୍ତ୍ତ-ଜଳେ ଅଜ୍ଞାନୀ ବୁଡ଼ନ୍ତି
ପଣ୍ଡିତେ ହରିନାମ ଭେଳାରେ ତରନ୍ତି ।
ସଂସାର-ବନେ ପ୍ରାଣୀ ମୃଗ ମାନସିକ
ଦୈହିକ ବ୍ୟାଳ ବ୍ୟାଧ ଗାନ୍ଧାରୀ-ନାୟକ ।
କର୍ମପାଶମୁଖରେ ପଡ଼ ପ୍ରାଣୀଜନ
ବିଷୟବିଷାନଳେ ହୁଅନ୍ତି ଦହନ ।
ଜରା ଯେତେବେଳେ ଦେହରେ ରହେ ଘୋଟି
ଲୋଭ ବିନା ସବୁର ନିବର୍ତ୍ତିର ବୃଷ୍ଟି ।
ବରଷ ମାସ ପକ୍ଷ ଲୋକର ଆୟୁଷ
ନାଶ କରି ହୁଅଇ କାଳର ସଦୃଶ ।
ଜ୍ଞାନୀ ବିନା ଅଜ୍ଞାନୀ କାଳର ନିର୍ଣ୍ଣୟ
ନ ଜାଣଇ ଜାଣ ହେ ଅମ୍ବିକା ତନୟ ।
ରାଜ୍ୟ-ନାଶ ସୁହୃଦ-ନାଶ ପୁତ୍ର ନାଶ
ଅଧର୍ମରୁ ସ୍ୱପ୍ନେ ହୋଏଟି ପ୍ରକାଶ ।
ଜ୍ଞାନ-ଔଷଧରେ ସାଧି ଏ ଦୁଃଖ-ବ୍ୟାଧି
ନାଶୁଛନ୍ତି ରାଜନ ବସିଣ ଅବଧି ।
ଜ୍ଞାନ ବିନା ବଳ ବାନ୍ଧବ ମିତ୍ର ଧନ
ଯୋଗେ ନୁହଇ ନୃପ ଦୁଃଖ ବିମୋଚନ ।
ଦମ ତ୍ୟାଗ ଅପ୍ରମାଦକୁ ଅଶ୍ୱ କରି
ମନ-ରଥରେ ଯେହୁ ଯୋଚଇ ବିଚାରି ।
ଶୀଳ-ଦଉଡ଼ିକ ଧରିଣ ସେହି ଲୋକ
ସେ ରଥରେ ବସିଣ ଦେଖଇ ବ୍ରହ୍ମଲୋକ ।
ସମସ୍ତ ପ୍ରାଣୀଙ୍କୁ ଯେ ଅଭୟ ଦେଇଛି
ସହସ୍ରେ ଯାଗଫଳ ତା ସଙ୍ଗତେ ଅଛି ।
ପ୍ରାଣୀମାନଙ୍କରେ ହେବାର ଦୟାପର
ସବୁ-ଧର୍ମ-ସାର ଅଟଇ ନରବର ।
ସ୍ଥୂଳଦୃଷ୍ଟି ଲୋକ ଏ ମହୀରେ ଭ୍ରମନ୍ତି
ସୂକ୍ଷ୍ମଦୃଷ୍ଟି ଲୋକେ ସଂସାରୁ ତରିଯାନ୍ତି ।
ବିଦୁରଙ୍କଠାରୁ ଶୁଣିଣ ଏ ବଚନ
ଧୃତରାଷ୍ଟ୍ର ପଡ଼ିଲେ ହୋଇ ହତଜ୍ଞାନ ।
ଧୃତରାଷ୍ଟ୍ର ନୃପଙ୍କୁ ମୋହଯିବା ଦେଖି
ବିଦୁରାଦି ଧଇଲେ ହୋଇ ଅତି ଦୁଃଖୀ ।
ଆଶ୍ୱାସନା କରିଣ ମୁଖେ ସିଞ୍ଚି ପାଣି
ବୋଇଲେ ମୋହ ଛାଡ଼ି ଉଠ ନରମଣି ।
କାହିଁପାଇଁ ବସିଣ କରୁଛ ରୋଦନ
ଆସିବେ କି ଜୀଇ ତୁମ୍ଭର ସୁଯୋଧନ ।
ଧୃତରାଷ୍ଟ୍ର ବୋଇଲେ ନରଜନ୍ମ ହୋଇ
ଭାରିଯା ଯେ କରଇ ଧିକ ସେ ଅଟଇ ।
ଭାରିଯା ପରିଗ୍ରହ କଲେ ହୁଏ ପୁତ୍ର
ପୁତ୍ର-ନାଶେ ଶୀର୍ଣ୍ଣ ହୁଅଇ ଦୁଃଖେ ଗାତ୍ର ।

—o—

## ବେଦବ୍ୟାସଙ୍କର ଉପଦେଶ ଦାନ

ବେଦବ୍ୟାସ ଗୋସାଇଁ ସେ ସମୟେ ଆସି
ବୋଇଲେ ନୃପ ପୁତ୍ର ଶୋକରେ ଲଳସୀ ।
ମର୍ତ୍ତ୍ୟକୁ ତ ଅନିତ୍ୟ ବୋଲନ୍ତି ପଣ୍ଡିତେ
ଏହା ଜାଣି କିମ୍ପା ଧରିଛ ଚିନ୍ତା ଚିତ୍ତେ ।
ଅଧର୍ମ-ବୃକ୍ଷ ମୂଳ ତୁମ୍ଭର ପୁତ୍ରଟି
ପାଣ୍ଡବେ ଧର୍ମ-ପରଶୁରେ ଦେଲେ କାଟି ।
ବିଦୁର ଯେତକ କହିଲେ ଧର୍ମଗିର
ନ ଘେନିଲ ତୁମ୍ଭେ ତା ପୂର୍ବେ ନରବର ।

ଏଣୁ ଜାଣୁଅଛୁଁ ଦଇବ ଥିଲା କର
ନୋହିଲେ ଏହା କମ୍ପା ହେଲା ଦଣ୍ଡଧାରୀ ।
ଦେବଙ୍କ କାର୍ଯ୍ୟ ଯା ପ୍ରତ୍ୟକ୍ଷେ ମୁଁ ଶୁଣିଛି
କହିବା ତାହା ଶୁଣ ଅମ୍ବିକାଙ୍କ ବହ୍ନି ।
ଦଇବେ ମୁଁ ଦିନେ ସ୍ୱର୍ଗକୁ ଯାଇଥିଲି
ଦେବଙ୍କ ତୁଳେ ଋଷିବୃନ୍ଦଙ୍କୁ ଦେଖିଲି ।
ପୃଥିବୀ ତ ଦେବତା ସଙ୍ଗତରେ ଥିଲେ
ଦେବତାଙ୍କୁ ଅନାଇଁ ଏହା ସେ କହିଲେ ।
ବ୍ରହ୍ମଲୋକେ ପ୍ରତିଜ୍ଞା କରିଥିଲ ଯାହା
ବୋଲୁଅଛୁ ଏବେ ହେ ଦେବେ କର ତାହା ।
ଏହା ଶୁଣିଣ ବିଷ୍ଣୁ ବୋଇଲେ ମହୀକି
କହୁଥାଇ ତା ଆମ୍ଭେ ଭାଳୁଛୁ କାହିଁକି ।
ଧୃତରାଷ୍ଟ୍ରଙ୍କ ପୁତ୍ର ସୁଯୋଧନ ବୀର
କରିବ ତୁମ୍ଭ କାର୍ଯ୍ୟ କରି ଦୁଃଖ ଦୂର ।
ତୁମ୍ଭେ ଅବା ବୋଲିବ କରୂପରେ କାର୍ଯ୍ୟ
ସେ କରିବେ ତାହା ଶୁଣ ହେ ତୁମ୍ଭେ ଆଜ ।
ସୁଯୋଧନ ଯୁଧିଷ୍ଠିରଙ୍କ ରାଜ୍ୟ ହରି
କପଟେ ହୋଇବେ ହସ୍ତିନା ଦଣ୍ଡଧାରୀ ।
ନ ଦେଇ ଭାଗ ତାଙ୍କୁ ଆରମ୍ଭିବେ ଗୋଳ
ସେହି ହେତୁ ମରିବେ ସର୍ବ ମହୀପାଳ ।
ତୁମ୍ଭେ ଏବେ ଯାଇ ଆପଣା ସ୍ଥାନେ ରହି
ସୁଖେ ବସିଥାଅ ପ୍ରାଣୀଙ୍କି ପୃଷ୍ଠେ ବହି ।
ଦେବଙ୍କ ନିଯୋଗରେ କଳିଅଂଶୁ ଜାତ
ସୁଯୋଧନ ନାମେଟି ହୋଇ ତୁମ୍ଭ ସୁତ ।
ମହୀ ଲୋଭରେ ମହୀପତିଙ୍କି ମରାଇ
ଏବେ ବସିଅଛନ୍ତି ସ୍ୱର୍ଗରେ ସେ ଯାଇ ।
ଏ କଥାଯାକ ସିନା ନାରଦ ଜାଣନ୍ତି
ମୋତେ ତ ମଧ୍ୟ ହୋଇଥିଲା ଏ ପ୍ରତୀତି ।
ଏବେ କହୁଁଥାଇଁ ଛାଡ଼ିଣ ରାଜ୍ୟ ଶୋକ
କର ଧରମ କଥାମାନଙ୍କୁ ଆଲୋକ ।
ପାଣ୍ଡବେ ତୁମ୍ଭରେ ନୁହନ୍ତି ଅପରାଧୀ
ତାହାଙ୍କୁ ଦୁଃଖ କରିବାର ନୁହେ ବିଧି ।
ନାରଦ ମୁଖୁଁ ବଂଶ ବିନାଶ ପାଣ୍ଡବେ
ଶୁଣିଣ ରାଜସୂୟେ କାନ୍ଦିଲେ ସରବେ ।
ଏ ସକାଶୁ ତୁମ୍ଭର ପୁଅର ଦୁଷ୍ଟକୁ
ପୃଷ୍ଠକୁ ପକାଇ ସେ କହନ୍ତି କଥାକୁ ।

ତେବେ ହେଲେ ତ ତୁମ୍ଭ ପୁତ୍ର ନ ଘେନିଲା
ରାଜ୍ୟଲୋଭୀ ହୋଇଣ ପ୍ରାଣ ହରାଇଲା ।
ତୁମ୍ଭ ଶୋକ ଏବେ ଜାଣିଲେ ଯୁଧିଷ୍ଠିର
ନିଶ୍ଚୟେ ମରିବେ ରାଜନ ମନେକର ।
ଯୁଧିଷ୍ଠିର ବିହନେ ବାକି ଚାରିଭାଇ
ଯମପୁର ଯିବା, ସନ୍ଦେହ ଏଥି ନାହିଁ ।
ପୁରୁବ ପୁତ୍ରଙ୍କର ନାହାନ୍ତି ତ ବଂଶ
ପାଣ୍ଡୁପୁତ୍ରଙ୍କୁ ନ କର ରୋଷେ ନାଶ ।
ଯେବେ ପାଣି ପାଇବା ଆଶା ମନେ ଅଛି
ତେବେ କ୍ଷମା ହୁଅ ହେ ଅମ୍ବିକାଙ୍କ ବହ୍ନି ।
ଯୁଧିଷ୍ଠିର ରାଜା ଅଟନ୍ତି ଧର୍ମକାରୀ
ତୁମ୍ଭଙ୍କୁ ସେବିବେ ଜାଣୁଛି ପୁତ୍ର ପରି ।
ମୋହ ବୋଲରେ ଏବେ ରଖ ତୁମ୍ଭ ପ୍ରାଣ
ତୁମ୍ଭଙ୍କୁ ତ ସେବା କରିବେ ସବୁ ଜନ ।
ପୁତ୍ରଶୋକ-ଅଗ୍ନିକି ଜ୍ଞାନ ଜଳ ସିଞ୍ଚି
ଲିଭାଇ ପକାଅ ମୋ କଥା ମନେ ପାଞ୍ଚି ।
ଏ ରୂପେ ବ୍ୟାସଙ୍କ ବଚନ କର୍ଣ୍ଣେ ଶୁଣି
କହିଲେ ବ୍ୟାସଙ୍କୁ ଗାନ୍ଧାରୀ-ପ୍ରାଣ-ମଣି ।
ତୁମ୍ଭ ବୋଲେ ଏବେ ରଖିବି ମୁହିଁ ପ୍ରାଣ
ଶୋକ ନ କରିବି କହୁଛି ଋଷି ଜାଣ ।
ବ୍ୟାସ ଶୁଣିଣ ଧୃତରାଷ୍ଟ୍ରଙ୍କ ଭାରତୀ
ଅନ୍ତରହିତ ହେଲେ ସେଠାରୁ ଝଟତି ।
ଏହିଠାରେ ହି ଶୋକ ଛାଡ଼ି ସ୍ତ୍ରୀପର୍ବ
ପ୍ରକାଶ କଲେ ବ୍ୟାସ ମହିମା ଅଖର୍ବ ।

—o—

## କୁରୁ-ବିଧବା ନାରୀଙ୍କ ଶୋକ

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
କହିବା ସ୍ତ୍ରୀପର୍ବ ଦିଅ ମନ ଲୟ ।
ବିଦୁରଙ୍କ କହିବା ଉତ୍ତାରୁ ସଞ୍ଜୟ
ବୋଇଲେ ଶୁଣ ହେ ଗାନ୍ଧାରୀଦେବୀ-ପ୍ରିୟ ।
ପୁତ୍ର ବାନ୍ଧବଙ୍କର କର ପ୍ରେତ କାର୍ଯ୍ୟ
ନୋହିଲେ ଉପୁଜିବ ଏଥୁଁ ବଡ଼ ଲାଜ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରପତି
ବୋଇଲେ ଆଣ ରଥ ବିଦୁର ସୁମତି ।
ଗାନ୍ଧାରୀ କୁନ୍ତୀ ତୁଳେ ବଧୂଙ୍କୁ ଅଣାଅ
ଦେଖିବେ ସେ ଯାଇ ଯେ ଯାହା ପୁତ୍ର ପ୍ରିୟ

ନୃପତିଙ୍କ ଅଜ୍ଞାକୁ ମସ୍ତକରେ ଘେନ
ବିଦୁର ରଥ ଆଣି ଦେଲେ ସେହିକ୍ଷଣି ।
ଏ ବାହାରେ ଗାନ୍ଧାରୀ କୁନ୍ତୀଙ୍କ ସଙ୍ଗରେ
ବଧୂଙ୍କୁ ଅଣାଇଲେ ବିଦୁର ବେଗରେ ।
ଧୃତରାଷ୍ଟ୍ରରାଜାଙ୍କୁ ଦେଖି ସ୍ତ୍ରୀରିକୁଳ
ପାଡ଼ିଲେ ଡାକ ନେତ୍ରେ ଧାରକର ଜଳ ।
ବିଦୁର ବୋଇଲେ ଗୋ ନ କାନ୍ଦ ବଧୂଏ
ତୁମ୍ଭ କପାଳରେ ତ ଏହା ଦେବତାଏ ।
ଲେଖିଥିଲେ ଯୁବା କାଳରେ ହେବ ରଣ୍ଡ
ତା ଆନ କରିବାକୁ କେ ଅଛି ବ୍ରହ୍ମାଣ୍ଡ ।
ବାଳ ବୃଦ୍ଧ ସ୍ତ୍ରୀରି ପୁରୁଷ ଯେତେ ଥିଲେ
ହସ୍ତିନାରେ ସମସ୍ତେ ତା ପୁଣି ରହିଲେ ।
ବୋଇଲେ ସୂର୍ଯ୍ୟ-କର ଯାହାଙ୍କ ଦେହରେ
ନ ପଡ଼ଇ ସେ ଏବେ ଚଳନ୍ତି ଦାଣ୍ଡରେ ।
ଆହେ ଜନ୍ମେଜୟ ହସ୍ତିନା-ନରନାରୀ
ଏ ରୂପେ ବୋଲି ବାହାରିଲେ କାନ୍ଦକରି ।
ସ୍ତ୍ରୀରିମାନେ ହୋଇଅଛନ୍ତି ଏକବସ୍ତ୍ର
ଫିଟିଣ ବାଳ ଲୋଟୁଅଛି ପୃଷ୍ଠପଟ୍ଟ ।
ଏହିରୂପେ ସହସ୍ର ସଂଖ୍ୟା ନାରୀ ଧରି
ବାହାରିଲେ ଯେ ଧୃତରାଷ୍ଟ୍ର ଦଣ୍ଡଧାରୀ ।
ସ୍ୱରବର୍ଣ୍ଣଯାକ ଏକଠା ହୋଇଥିଲେ
ଧୃତରାଷ୍ଟ୍ରନୃପଙ୍କ ସଙ୍ଗତେ ଗମିଲେ ।
ସ୍ତ୍ରୀରିମାନଙ୍କର କାନ୍ଦିବାର ରଡ଼ିଟି
ଆକାଶ-ଅଙ୍ଗଣରେ ରହିଲା ଚହଟି ।
ଧୃତରାଷ୍ଟ୍ର ରାଜନ ହସ୍ତିନାରୁ କ୍ରୋଶେ
ଯାଇକରି ମିଳିଲେ କୃପ ଦ୍ରୌଣି ପାଶେ ।
କୃତବର୍ମା ମଧ୍ୟ ତାହାଙ୍କ ପାଶେ ଛନ୍ତି
ନୟନରୁ ଲୋତକଧାରା କରି ବାନ୍ତି ।
ଧୃତରାଷ୍ଟ୍ରଙ୍କୁ ଦେଖି ସେହି ତିନ ରଥୀ
କହିଲେ ଏ ବଚନ ହୋଇ ମହା ବ୍ୟଥୀ ।
କୁରୁ ରଥୀ କହନ୍ତି ଆମ୍ଭେ ତିନିଜଣ
ଜୀଇଁଅଛୁଁ ଆଉ ସମସ୍ତେ ମଲେ ଜାଣ ।
ତୁମ୍ଭ ପୁତ୍ର ଯୁଦ୍ଧେ ଦୁଷ୍କର କର୍ମ କଲେ
ପୁଅ ଭାଇଙ୍କ ଘେନ ସ୍ୱର୍ଗପୁର ଗଲେ ।
ଗାନ୍ଧାରୀଙ୍କି ଅନାଇଁ କୃପ ଦ୍ୱିଜବର
ବୋଇଲେ ଆଗୋ ମାତ ଶୋକ କର ଦୂର ।
ଉତ୍ତମ ଲୋକଙ୍କୁ ତୁମ୍ଭ ପୁତ୍ରମାନେ
ଲଭିଲେଣି, ଦୁଃଖ ଧରୁଛ କମ୍ପା ମନେ ।
ଅଧରମରେ ଭୀମ ସୁଯୋଧନ ପ୍ରାଣ
ନଅନ୍ତେ ଯାହା କଲୁଁ ଆମ୍ଭେ ତାହା ଶୁଣ ।
ରାତ୍ରିକାଳରେ ପାଣ୍ଡବଙ୍କ ବସାଘରେ
ପଶିଣ ପାଞ୍ଚାଳଙ୍କୁ ହାଣିଲୁ ଖଣ୍ଡାରେ ।
ଏ ବାହାରେ ଦ୍ରୌପଦୀଦେବୀଙ୍କର ସୁତ
ପ୍ରାଣକୁ ଦେଲୁ ନେଇ ଯମଙ୍କର ହସ୍ତ ।
ଏବେ ଗୋ ଆମ୍ଭଙ୍କୁ ଅନୁଜ୍ଞା ଦିଅ ମାଏ
ଲୁଚିବୁଁ ଆମ୍ଭେ ଯାଇ ପାଣ୍ଡବଙ୍କ ଭୟେ ।
ଗାନ୍ଧାରୀ ବୋଇଲେ ଉଚିତ ଯେବେ ତୁମ୍ଭେ
ଯାଅ ରହିଲେ କି ପାରିବୁଁ ରଖି ଆମ୍ଭେ ।
ଏହା ଶୁଣି ସେ ତିନି ଜଣ ସୁଖ ପାଇ
ଗଙ୍ଗାଙ୍କ ସମୀପକୁ ନେଲେ ରଥ ବାହି ।
ସେହିଠାରେ ବସି ବସ୍ତ୍ର ଛଣ୍ଡାଇଲେ
କୃପ କୃତବର୍ମା ଯେ ଯାହା ପୁରେ ଗଲେ ।
ଅଶ୍ୱତ୍ଥାମା ବ୍ୟାସଙ୍କ ଶାପ ପାଇଥିଲେ
ସେହି ଏକା ବ୍ୟାସଂକ ଆଶ୍ରମେ ରହିଲେ ।

—o—

## ଶ୍ରୀକୃଷ୍ଣଙ୍କର ଉପଦେଶ ଦାନ

ଧୃତରାଷ୍ଟ୍ରରାଜାଙ୍କ ଆସିବାର ଶୁଣି
ଭାଇଙ୍କି ସଙ୍ଗେ ଘେନ ପାଣ୍ଡବ ନୃମଣି ।
ରଥରେ ବସି ଧୃତରାଷ୍ଟ୍ରଙ୍କ ପାଶକୁ
ବାହାରିଲେ ତାଙ୍କୁ ପ୍ରବୋଧ କରିବାକୁ ।
କୃଷ୍ଣ ଭୁଲ ସାତ୍ୟକ ଯୁଯୁତ୍ସୁଙ୍କ ସଙ୍ଗେ
ରହିଥିଲେ ସଜ ଧନୁକୁ ବନ୍ଧି ଅଙ୍ଗେ ।
ଦ୍ରୌପଦୀ ପାଞ୍ଚାଳଙ୍କ କାମିନୀଙ୍କି ଧରି
ବାହାରିଲେ ପତିଙ୍କ ପଛେ ଦୁଃଖ କରି ।
କୁରରୀପକ୍ଷୀ ପରି କୁରୁଙ୍କ ବଧୂଏ
କାନ୍ଦୁଛନ୍ତି ଦେଖିଲେ ଯୁଧିଷ୍ଠିର ରାୟେ ।
ଯେ ଯାହାର ନାମ ସେ ପାଞ୍ଚଭାଇ କହି
ଧୃତରାଷ୍ଟ୍ର ପାଦେ ପଡ଼ିଲେ ଯାଇ ଶୋଇ ।
ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ କରି କୋଳ
ବୋଇଲେ କାହିଁ ଅଛି ଭୀମ ମହାବଳ ।
ଧୃତରାଷ୍ଟ୍ରଙ୍କର ଦୁଷ୍ଟଭାବକୁ ଜାଣି
ଭୀମଙ୍କୁ ଆଡ଼ଆଇ ଦେବ ଚକ୍ରପାଣି ।

ଆଖଡ଼ାରେ ଲୁହାଭୀମଟି ରଚ୍ଛ ଆଣି
ଧୃତରାଷ୍ଟ୍ର କୋଳରେ ଦେଲେ ସେହିକ୍ଷଣି ।
ଭୀମ ବୋଲି ମନେ କରିଣ ଧୃତରାଷ୍ଟ୍ର
ଭାଙ୍ଗିଲେ ସେ ଲୁହାଭୀମକୁ ହୋଇ ରୁଷ୍ଟ ।
ଅୟୁତେ ନାଗବଳ ଧୃତରାଷ୍ଟ୍ରରାଜା
ବହନ୍ତି ସେ କ୍ରୋଧରେ ଥରାଇଣ ମଜ୍ଜା ।
ଲୁହାଭୀମ ଭାଙ୍ଗନ୍ତେ ରକ୍ତ ମୁଖେ ବାନ୍ତି
କରି ମୋହ ଯାଇଣ ପଡ଼ିଲେ ସେ କ୍ଷିତି ।
ସଞ୍ଜୟ ତାହା ଜାଣି ହୋଇ ମନେ ହୃଷ୍ଟ
ବୋଇଲେ ହେ ନୃପତି ତୁମ୍ଭେ ବଡ଼ ନଷ୍ଟ ।
ହୃଦରୁ ଧୃତରାଷ୍ଟ୍ର କ୍ରୋଧ କରି ଶାନ୍ତ
ମଲୁ ଭୀମ ବୋଲି କାନ୍ଦିଲେ ବହୁ ପ୍ରୀତି ।
ଶ୍ରୀକୃଷ୍ଣ ବୋଇଲେ ହେ ନ କାନ୍ଦ ରାଜନ
ଅଛି ଜୀଇଁ ତୁମ୍ଭ ପୁତ୍ତୁରା ଭୀମସେନ ।
ତୁମ୍ଭ ମନ ଜାଣି ମୁଁ ତୁମ୍ଭ ପୁତ୍ର ଲୁହା—
ଭୀମ କରିଥିଲୁ, ତା କରିଦେଲି ଠିଆ ।
ତାହା ତୁମ୍ଭେ ନ ଜାଣି ଭାଙ୍ଗିଦେଲ
କାନ୍ଦୁଛ ହୃଦୟକୁ କରି ଜରଜର୍ଜ୍ଜ ।
ରାଜ୍ୟଲୋଭରେ ପୁତ୍ରମାନଙ୍କୁ ମରାଇ
ଅଛ ତ ଅଧରମ ରୁଣ୍ଡାଇବା ପାଇଁ ।
ଭୀମକୁ ମାରିଲେ କି ଜୀଇଯିବେ ସୁତେ
ଏ କଥା ବିଚାରି ନ କଲ ଆହେ ଚିତ୍ତେ ।
ଯାଉ ତ ଥିଲା ନୃପ-ମୁଖୁଁ ରକ୍ତ ବହି
ପରିକରେ ତହୁଁ ଦେଲେ ତା କରେ ଧୋଇ ।
ପୁଣି ତାଙ୍କୁ କହିଲେ ଶ୍ରୀକୃଷ୍ଣ ବଚନ
ଧର୍ମ ଜାଣି ଅଧର୍ମ କରୁଛ ରାଜନ ।
ବିଦୁର ଭୀଷ୍ମ ଦ୍ରୋଣ କୁଳରେ ବତାଇ
କେତେ ଧର୍ମ ତୁମ୍ଭଙ୍କୁ କହିଛୁ ମୁଁ ଯାଇଁ ।
ତାହା ନ ଶୁଣିବାରୁ ପାଇ ଦୁଃଖଦଶା
ଦେଲ ପୁତ୍ରମାନଙ୍କୁ ଯମପୁରେ ବସା ।
ଦେଶ କାଳ ବିଭାଗ ନୃପ ହୋଇ ଜାଣି
ନ ଜାଣିଲେ ଦୁଃଖ ହୁଅଇ ତାହାରି ।
ମିତ୍ରଲୋକ ବଚନ ନ ଶୁଣିଲେ ନର
ବହୁତ ଦୁଃଖ ଭୋଗ କରେ ତା ଶରୀର ।
ଆପଣା ଅପ୍ରାଧରୁ ଅର୍ଜିଅଛ ଏହା
ଭୀମର ନାହିଁ ଦୋଷ ଏଥେଁ ନରନାହା ।

ତୁମ୍ଭ ପୁତ୍ର ସଭାରେ ଦ୍ରୌପଦୀଙ୍କି ନେଇ
ଲଙ୍ଗଳା କଲ ଜାଣିଛ ତ ନରସାଇଁ ।
ତେତେବେଳେ ଏକା ସେ ତୁମ୍ଭ ସୁତ-ପ୍ରାଣ
ନେଇଥାନ୍ତେ ଧର୍ମକୁ ରକ୍ଷିଲେଟି ଜାଣ ।
ଧୃତରାଷ୍ଟ୍ର ବୋଇଲେ ପୁତ୍ରସ୍ନେହେ ମୁହିଁ
ଅଧର୍ମ ବୁଦ୍ଧି କଲି ଜାଣ ଯଦୁସାଇଁ ।
ତୁମ୍ଭ ବୁଦ୍ଧିରେ ଯା ବଞ୍ଚିଲେ ଭୀମସେନ
ଏହି ମୋହର ଭାଗ୍ୟ ବୋଲି କରି ଘେନ ।
ଯେ ଯୋଗ ଥିଲା ହୋଇଗଲା ସେ ଶ୍ରୀପତି
ଏବେ ଭୀମ ଆସିଣ ବସୁ ମୋର କତି ।
ପବିତ୍ର କରିବାକୁ ଏଣିକି ଦେହକୁ
ନାହିଁ ପାଣ୍ଡୁପୁତ୍ରଙ୍କ ବିନା କହିବାକୁ ।
ଏହା କହିଣ ବୀର ପୁତ୍ତୁରଙ୍କୁ ଧରି
ଆଶ୍ୱାସନା କଲେ ହସ୍ତିନା-ଦଣ୍ଡଧାରୀ ।

—ଃ୦ଃ—

## ଯୁଧିଷ୍ଠିର, ଭୀମ ଓ ଦ୍ରୌପଦୀଙ୍କ ସହ ଗାନ୍ଧାରୀ ଓ କୁନ୍ତୀଙ୍କର ମିଳନ

ଧୃତରାଷ୍ଟ୍ର ନୃପଙ୍କ ଆଜ୍ଞାରେ ପାଣ୍ଡବେ
ଗାନ୍ଧାରୀଙ୍କଠାକୁ ସେ ବାହାରିଲେ ସର୍ବେ ।
ଯୁଧିଷ୍ଠିର ଆସିବା ଜାଣିଣ ଗାନ୍ଧାରୀ
ବସିଲେ ତାଙ୍କୁ ଶାପ ଦେବା ଇଚ୍ଛାକରି ।
ଗାନ୍ଧାରୀଙ୍କର ମନ ଜାଣି ବେଦ ବ୍ୟାସ
ହେଲେ ଗାନ୍ଧାରୀଙ୍କର ସମୀପେ ପ୍ରବେଶ ।
ବୋଇଲେ ଯୁଧିଷ୍ଠି ନୃପଙ୍କୁ ନୁହ କ୍ରୋଧ
ମୋ ବଚନ ଶୁଣ ହେ ହୁଅ ଏବେ ବୋଧ ।
ତୁମ୍ଭର ପୁଅ ଯେତେବେଳେ ଯୁଦ୍ଧପାଇଁ
ଅନୁଜ୍ଞାକୁ ମାଗିଲେ ଦଣ୍ଡବତ ହୋଇ ।
ତେତେବେଳେ ତୁମ୍ଭେ କହିଥିଲ, ଯାର ଧର୍ମ
ଥିବ ତାର ହେବ ନିଶ୍ଚେ ଯୁଦ୍ଧେ କର୍ମ ।
ପାଣ୍ଡୁସୁତେ ଧର୍ମରେ ଥିବାରୁ ଜିଣିଲେ
ଅଧର୍ମରୁ ତୁମ୍ଭର ପୁତ୍ରେ ନାଶ ଗଲେ ।
ସେହି କଥା ସୁମରି ଏ◌ବେ ପାଣ୍ଡବଙ୍କୁ
କହ ରକ୍ଷି ହର୍ଷଣ ହରସେ କଥାକୁ ।
ଗାନ୍ଧାରୀ ବୋଇଲେ ଆସୂୟା ରହୁ ନାହିଁ
ପୁତ୍ର ଶୋକ ବଳ ପଡ଼ୁଛି ଋଷିସାଇଁ ।

କୁନ୍ତୀଦେବୀଙ୍କର ଯେ ଉଦରେ ଏ ପୁତ୍ର
ସେହିରୂପେ ଜାଣୁଛୁ ପାଣ୍ଡବେ ମୋ ପୁତ୍ର ।
ଦୁର୍ଯୋଧନ କର୍ଣ୍ଣ ଶକୁନିଙ୍କ ବୁଦ୍ଧିରେ
କୁରୁମାନେ ପଶିଲେ ଯମଙ୍କ ନଗରେ ।
ଭୀମ ଯା ଦୁର୍ଯୋଧନ-ଊରୁ ଯୁଦ୍ଧେ ଭାଙ୍ଗି
ଦେଲେ ଅଧର୍ମେ, ସେ ହୋଇ ମୋ ହୃଦ-ଶଙ୍ଗୀ
କ୍ରୋଧକୁ ବଢ଼ାଉଛୁ ଆହେ ଚକ୍ରିବର
ପୁଣି ଦେଖୁଥିଲେ ତା ବସି ଚକ୍ରଧର ।
ଭୀମ ଶୁଣି ଗାନ୍ଧାରୀଙ୍କର ଏ ବଚନ
ବୋଇଲେ ମୁଁ ତ ତୁମ୍ଭ ପୁତ୍ରର ସମାନ ।
ନ ଜାଣି ଅପରାଧ ଯେତେ ଯେ କରିଛୁ
ତା କ୍ଷମା କର ଏବେ ତୁମ୍ଭଙ୍କୁ ମାଗୁଛୁ ।
ତୁମ୍ଭ ପୁତ୍ର ବଳେ ମୁଁ ଯୁଦ୍ଧେ ପୀଡ଼ା ପାଇ
ଅଧର୍ମରେ ମାଇଲି ସନ୍ଦେହ ତ ନାହିଁ ।
ସେ ତ ଅଧରମ ପୂର୍ବରୁ କରିଥିଲେ
ଅଧର୍ମ ମୁହିଁ ସିନା ପଛେ କଲି ଭଲେ ।
ତୁମ୍ଭଙ୍କ ତ ସମସ୍ତ ହୋଇଛି ଗୋଚର
ଛଷ୍ଟ ଗୁଡ଼ଣ ଏବେ ମାନସେ ବସ୍ତୁର ।
ଗାନ୍ଧାରୀ ବୋଇଲେ ହେ କହିଲ ଯା ଭୀମ
ଯେବଣ ମୁହିଁ ତାହା ନାଶ କର ତମ ।
ଯାହା ଦୁଃଶାସନର ରକତ ପିଇଲ
କହିବାକୁ ତୁମ୍ଭର ଏବେ ହେଲା ଭଲ ।
ଭୀମ ବୋଇଲେ ମୁଁ ରକତ ପିଇ ନାହିଁ
ମୁଖ ମାତ୍ର ରକତେ ଦେଇଛୁ ଲଗାଇ ।
ଦୁଃଶାସନ ଦ୍ରୌପଦୀଦେବୀ-କେଶ ଧରି
ଯେତେବେଳେ ସଭାକୁ ନେଲେ ଝିଙ୍କି କରି ।
ତେତେବେଳେ ଯା କରିଥିଲି ମୁଁ ପ୍ରତିଜ୍ଞା
ତାହା କରୁପେ ମାତା କରନ୍ତୁ ଅବଜ୍ଞା ।
ଗାନ୍ଧାରୀ ବୋଇଲେ ଶଏଟି ମୋର ପୁତ୍ର
ରଖିଥାନ୍ତ ହେ ଯେବେ ଗୋଟିକ ଜୀବିତ ।
ତେବେ ମୋର ଏରୂପେ ନୁହନ୍ତାଟି ଶୋକ
ଜାଣ ହେ ବାବୁ ଭୀମ ବୀରଙ୍କ ନାୟକ ।
ଏବେ ଯୁଧିଷ୍ଠିରରାଜ ଅଛନ୍ତିଟି କାହିଁ
ତାହାଙ୍କୁ ଦିଅ ଭୀମ ମୋତେ ହେ ଦେଖାଇ ।
ଶୁଣିଣ ଯୁଧିଷ୍ଠିର ଗାନ୍ଧାରୀ-ବଚନ
ବୋଇଲେ ଅଛି ମାତ ତୁମ୍ଭ ସନ୍ନିଧାନ ।
ତୁମ୍ଭ ପୁତ୍ରଘାତକକୁ ମାରନ୍ତୁ ମୁହିଁ
ମୋତେ ଶାପ ଦିଅ ଗୋ ମାତ କ୍ରୋଧ ହୋଇ
ଯୁଧିଷ୍ଠିରଙ୍କର ଏ ବିନୟ ବଚନ
କର୍ଣ୍ଣେ ଶୁଣି ଗାନ୍ଧାରୀ ହୋଇଲେ ମଉନ ।
ଯୁଧିଷ୍ଠିର ପାଦେ ପଡ଼ିବା କାଳ ଜାଣି
ଆଖିରୁ ଲୁଗା କାଢ଼ି ଦେଇ ସେହିକ୍ଷଣି ।
ଯୁଧିଷ୍ଠିର ଅଙ୍ଗୁଳି-ଅଗ୍ରକୁ ଚାହିଁଲେ
ପୋଡ଼ିଯିବେ ବୋଲି କରୁଣା ଦୟା କଲେ ।
ଚାହିଁବା ମାତ୍ରକରେ ଯୁଧିଷ୍ଠିରଙ୍କର
ନଖଯାକ ପୋଡ଼ିଗଲା ହେ ନରବର ।
ଦେଖି ଯୁଧିଷ୍ଠିରଙ୍କ ଅର୍ଜୁନ ସେ ଦଶା
ଶ୍ରୀକୃଷ୍ଣ ପଛଆଡ଼େ କଲେ ଯାଇ ବସା ।
ଗାନ୍ଧାରୀ ଜାଣିପାରି ପାଣ୍ଡବଙ୍କ ଭୟ
ବୋଧକଲେ ତାହାଙ୍କୁ ହୋଇଣ ସଦୟ ।
ଏ ଅନ୍ତେ ଗାନ୍ଧାରୀଙ୍କ ଅନୁଜ୍ଞାକୁ ପାଇ
କୁନ୍ତୀ ପାଖେ ଗଲେ ପାଣ୍ଡବ ପାଞ୍ଚଭାଇ ।
କୁନ୍ତୀ ଚାହିଁଣ ପାଞ୍ଚ ପୁତ୍ରଙ୍କ ବଦନ
ଦେଖିଲି ବୋଲି ବାହୁ କଲେ ସେ ରୋଦନ
ଏ ବାହାରେ ପୁତ୍ରମାନଙ୍କ କାଣ୍ଡଘାଆ—
ମାନଙ୍କୁ ଆଉଁଶିଲେ ପାଖେ ହୋଇ ଠିଆ ।
ପୁତ୍ରଶୋକେ ଦ୍ରୌପଦୀଦେବୀ କାନ୍ଦୁଥିଲେ
ଏ ଅନ୍ତରେ ତାହାଙ୍କୁ କୁନ୍ତୀ ଅନାଇଲେ ।
ଦ୍ରୌପଦୀ ବୋଇଲେ ଗୋ ଆଜ ନାତିମାନେ
ନ ଆସିଲେ ମାତ ତୁମ୍ଭର ସନ୍ନିଧାନେ ।
ପୁତ୍ର ହୀନ ହୋଇ ବୋଲାଇ ମହା ଦେଈ
କେଉଁ ସୁଖ ଅଛି ମରିବ ନଷ୍ଟେ ମୁହିଁ ।
କୁନ୍ତୀ ଦ୍ରୌପଦୀଙ୍କର ଶୁଣି ଏ ବଚନ
ଉଠାପାଡ଼ ବୋଧିଲେ କରି ଆଲିଙ୍ଗନ ।
ଏ ଅନ୍ତେ ବଧୂ ପୁତ୍ର ସଙ୍ଗେ ଧରି କୁନ୍ତୀ
ଗଲେ ଯହିଁ ଥିଲେ ଗାନ୍ଧାରୀ ମହାସତୀ ।
ଗାନ୍ଧାରୀ ବୋଇଲେ ଦ୍ରୌପଦୀ ଶୋକ ଛାଡ଼
ତୁମ୍ଭଠାରୁ ମୋ ଦୁଃଖ ହୋଇଅଛି ବଡ଼ ।
କାଳବଶେ ସବୁ ପ୍ରାଣୀଙ୍କି ଏହିରୂପେ
ଖଞ୍ଜିଅଛି ଏ ଦଶା ବିହି ଜାଣ ଆପେ ।
ତୁମ୍ଭ ଆମ୍ଭ ଦୁହିଙ୍କ ଶୋକ ନାଶିବାକୁ
ଏ ମର୍ତ୍ତ୍ୟମଣ୍ଡଳରେ ନ ଦେଖି କାହାକୁ ।

ନ ଯେନ ବିଦୁରଙ୍କ କହିବା ବଚନ
ହୋଇଲଣି ଜାଣ ତ ଆମ୍ଭେ ଦୁଃଖସ୍ଥାନ ।
ଦ୍ରୌପଦୀଙ୍କି ପ୍ରବୋଧ ସାରଣ ଗାନ୍ଧାରୀ
ଅନାଇଲେ କୁରୁକୁ ଦିବ୍ୟଚକ୍ଷୁ ଧରି ।
ଗାନ୍ଧାରୀଙ୍କ ପତିବ୍ରତା ଜାଣିଣ ବ୍ୟାସ
ଦେଇଥିଲେ ଜନମେଜୟ ଦିବ୍ୟ ଦୃଶ୍ୟ ।
ସେହି ବଳରେଟି ଗାନ୍ଧାରୀ ରଣଭୂମି
ଦେଖିଲେ ବସିବାର ଠାବରୁ ନ ଯାଇ ।
ବିଲୁଆ କାକ ଗୃଧ୍ର ଭୂତ ପ୍ରେତଗଣ—
ମାନଙ୍କରେ ସେ ଭୂମି ହୋଇଛି ଆକୀର୍ଣ୍ଣ ।
ବାଳ ଫିଟିଯାଇ ପକାଇ କର-ଖଣ୍ଡା
ପଡ଼ିଛନ୍ତି ଦଣ୍ଡା ହୋଇଣ କେତେ ଭେଣ୍ଡା ।
କେତେ ଲୋକଙ୍କର ବା ନାକ କାନ କର
କାଣ୍ଡଘାଏ ଛୁଡ଼ି ଯାଇଛି ନରବର ।
ମହତ ମତ୍ତହସ୍ତୀ କୁଳ ଅଶ୍ୱପନ୍ତି
ପଡ଼ିଛନ୍ତି ହୋଇଣ ଦେହ ଜନ୍ତାଜନ୍ତି ।

—o—

## ରଣଭୂମିରେ ବିଳାପ ଦୃଶ୍ୟ

ଏ ଅନ୍ତେ ବ୍ୟାସଙ୍କର ଅନୁଜ୍ଞାକୁ ପାଇ
କୁଳବଧୂଯାକକୁ ଆଗରେ ଚଳାଇ ।
କୃଷ୍ଣାଦି ଯେନ ଧୃତରାଷ୍ଟ୍ର ବାହାରିଲେ
ଦେଖିବା ଯୁଦ୍ଧଭୂମି ବୋଲି ମନେକଲେ ।
ଦେଖିଲେ ଯୁଦ୍ଧଭୂମି ପୂରିଛି ଶବରେ
ବିଲୁଆଏ ଯେ ବେଢ଼ିଅଛନ୍ତି ଲୋଭରେ ।
ଭୂତ ପ୍ରେତ ପିଶାଚମାନେ ହୋଇ ଗୋଟି
ରକତ ମାଂସ ଖାଇ ନାଚନ୍ତି ଚହଟି ।
ଧୃତରାଷ୍ଟ୍ରଙ୍କର ଯେ ବଧୂକୁଳଯାକ
ପତିଙ୍କ ମୁଖ ଚାହିଁ କରିଣ ଆଲୋକ ।
କର ଦୁଇକ ନେଇ କପାଳରେ ମାରି
ପଡ଼ିଲେ ଶୋଇ ଚଳେ ହା ନାଥ ଉଚ୍ଚାରି ।
ଗାନ୍ଧାରୀ ବୋଇଲେ ହେ ଆସ ଯଦୁପତି
ଦେଖ ବଧୂକୁଳ ମୋହର କାନ୍ଦୁଛନ୍ତି ।
ପୁଅ ଭାଇ ପତି ପିତୃଏ ତ ମୋ ମରି—
ଅଛନ୍ତି, ଏଣୁ ଖୋଜୁଅଛନ୍ତି ଏ ନାରୀ ।
ଗଦା ଶକ୍ତି ଭୁଷଣ୍ଡି ମୁଷଳ ଛେଲ ଚହ
ବାଜ କେତେ ଯୋଦ୍ଧା ମୁଖକୁ କରି ବହ ।
କହୁଣୀ ଭୁଲେ ଦୁଇ ଆଖୁ ଚକେ ଥୋଇ
ଦେଖ ତ ଭେଟି ଯାଇଛନ୍ତି ପ୍ରେତସାଇଁ ।
ଜୟଦ୍ରଥ କଣ୍ଠ ଯେ ଅର୍ଜ୍ଜୁନକୁମର
ମରିବା ଦେଖି ଦୁଃଖ ବଢ଼ୁଛି ମୋହର ।
ମହାରଥୀଙ୍କରେ ଏ ସିଦ୍ଧି ଅଟନ୍ତି
ଭଲ ତ ଅଛ ପେଷାଇଲ ଯମକନ୍ତି ।
କୁରୁ ପାଣ୍ଡବଙ୍କ ହିତେ ଯେ ଆସିଥିଲେ
ବିଲୁଆଙ୍କୁ ତାଙ୍କ ମାଂସକୁ ଦେବା ହେଲେ ।
ଛଡ଼ାଇ ଶେଯ ନୃପକୁଳକୁ ଶୁଆଇ
ଧୂଳିରେ ମତ ଚୋଷ କଲ ଯଦୁସାଇଁ ।
ଭାଟମାନେ ଯାହାଙ୍କୁ କରୁଥାନ୍ତି ସ୍ତୁତି
ବିଲୁଆ ବୋବାଇଲେ ଏବେ ତାଙ୍କ କତି ।
ନୃପତିଏ ଅଳଙ୍କାର ଯା ବହିଛନ୍ତି
ଲୋକ ପରି ବିଲୁଆ କୁଆ ତା କାଢ଼ନ୍ତି ।
ଖାଇଲା ପରାଏ ଯୋଦ୍ଧାଏ ମଟମଟ
ଚୁହିଁ ଅଛନ୍ତି ଦାନ୍ତେ ଭିଡ଼ି ଓଷ୍ଠପୁଟ ।
ଶକ୍ତି ଗଦା ଖଣ୍ଡାକୁ ଧରି ଶୋଇଛନ୍ତି
ପ୍ରିୟ-କୋଳ ପ୍ରିୟା ଭାର୍ଯ୍ୟାକୁ ଯେ ନନ୍ଦନ୍ତି ।
ମଲେ ହେଲେ ବହିଅଛନ୍ତି ଶକ୍ତିପନ୍ତି
ବିଲୁଆ କୁଆଟି ଭରସି ନ ପାରନ୍ତି ।
ଯେଉଁ ସ୍ତ୍ରୀମାନେ ସୂର୍ଯ୍ୟଙ୍କୁ ନ ଦେଖନ୍ତି
ସେ ଏବେ ଲାଜ ଛାଡ଼ିଦେବ ଯଦୁପତି ।
ଅକ୍ଷେହିତଙ୍କ ପରି ପଡ଼ି ମହୀକ୍ଷିତ—
ମାନଙ୍କ ଉଠାବନ୍ତି କଲେ ଧରି ହସ୍ତ ।
ଯେଉଁ ନୃପତିଙ୍କର ମୁଣ୍ଡ ଅଛି ଛିଡ଼ି
ଲଭିଛି ତ ଗଣ୍ଠି ହୋଇଣ ସାଙ୍କୋଡ଼ି ।
ତାହାକୁ ଚିହ୍ନିବାକୁ ଭ୍ରମି ପରମୁଣ୍ଡ
ଲଗାନ୍ତି ଦେଖ ନାରୀମାନେ ହୋଇ ଛୁଣ୍ଡ ।
କୁରରୀପକ୍ଷୀ ପରି କେତେ ନାରୀ ଡାକି
ପାଡ଼ି ରହିଅଛନ୍ତି ହୋଇଣ ଚାଟକା ।
ମୋହର ବଧୂମାନଙ୍କର ଯେଉଁ ଶୋକ
ହୋଇଛି ତା ଦେଖିଲେ ଭାଜୁଛି ବିବେକ ।
ପୂର୍ବଜନ୍ମ ପାତକ ନ ଥିଲେ ମୋହର
ପୁତ୍ର ନାତି ମରଣ ପାରନ୍ତି କି ହେବ ।
ଏହିରୂପେ ଗାନ୍ଧାରୀ କହିଣ ବହୁତ
ସୁଯୋଧନ-ସମୀପେ ହେଲେ ଉପଗତ ।

ସୁଯୋଧନଂକର ଶବକୁ ନେତ୍ରେ ଦେଖି
ଗାନ୍ଧାରୀ ନ ପାରିଲେ ଅଶ୍ରୁ ନେତ୍ରେ ରଖି ।
ଗାନ୍ଧାରୀ-ଲତା ଶୋକ-ପରଶୁର ଘାତେ
ସେକ୍ଷଣି ମହୀରେ ପଡ଼ିଲେ ମହୀପତେ ।
ପୁଣି ଚେତା ପାଇଣ ପୋଛାଳି ପୁତ୍ରକୁ
ବୋଇଲେ ବାବୁ ଛାଡ଼ିଗଲୁ ତ ଆମ୍ଭଙ୍କୁ ।
କୃଷ୍ଣଙ୍କ ବୋଇଲେ ହେ ଯୁଦ୍ଧେ ସୁଯୋଧନ
ଯେତେବେଳେ ମାଗିଲା ଅନୁଜ୍ଞା-ବଚନ ।
ସେତେବେଳେ ଏହାକୁ କହିଅଛି ମୁହିଁ
ଧର୍ମ ଥିଲେ ଶତ୍ରୁକୁ ଜିଣ ବାବୁ ତୁହି ।
ଜାଣୁଛି ଅଧରମ ସକାଶୁ ମୋ ସୁତ
ଭୀମଂକର ଗଦାବାଡ଼ିରେ ହେଲା ହତ ।
ଏ ବଚନ ସୂର୍ଯ୍ୟ ହୋଇଣ ମୋର ହୃଦ—
କମଳ-ମୁଦ ଭାଙ୍ଗି କରୁଅଛି ମୁଦ ।
ଧୃତରାଷ୍ଟ୍ର ନୃପତି ପୁତ୍ରହୀନ ହୋଇ
କି କରି ବଞ୍ଚିବେ ରୁକ୍ମିଣୀ ପ୍ରାଣସାଇଁ ।
ନୃପତିଗଣଂକର ମସ୍ତକମଣ୍ଡନ
ହୋଇ ମୋ ପୁତ୍ର କଲା ଧୂଳିରେ ଶୟନ ।
ସହସ୍ର ସଂଖ୍ୟା ସ୍ତ୍ରୀ ଯା ଜଗିଥାନ୍ତି ପୂର୍ବେ
ଏବେ ତ ବିଲୁଆଏ ବେଢ଼ିଛନ୍ତି ଗର୍ବେ ।
ଦେଖ କୃଷ୍ଣ ଲକ୍ଷ୍ମଣ ମାତାର ଯୌବନ
ଭଜ ନାହିଁ, କିରୂପେ ନେବଟି ଏ ଧନ ।
ପୁତ୍ରର ହତ ଦେଖି ଯା ମୋର ଏ ଦେହ
ରହିଛି, ପଥର ହେଲା କି କୃଷ୍ଣ କହ ।
ଆହା ଦଇବରେ କି ଦଶା ଦେଲୁ ମୋତେ
ବୃଦ୍ଧକାଳେ ଯେ ଛାଡ଼ିଗଲେ ସବୁ ସୁତେ ।
ବେଦଶାସ୍ତ୍ର ଯେବେଟି ଅଟଇ ପ୍ରମାଣ
କରିବେ ପୂଜା ମୋ ପୁତ୍ରଙ୍କୁ ସୁରଗଣ ।
ଭୀମଂକର ଦେଖ ନିଷ୍ଠୁର ମରମଟି
ଦେଇଛନ୍ତି ମୋହ ପୁତ୍ରଂକ ମୁଣ୍ଡ ପିଟି ।
ମୋର ବଧୂକୁଳ କହ୍ନଡ଼ ସୁନା ବାହି
କାନ୍ଦୁଛନ୍ତି ମାଧବା ଧୈର୍ଯ୍ୟ ଛାଡ଼ିଦେଇ ।
ନକ୍ଷତ୍ର ପରି ମୋର ପୁତ୍ରଂକ ମସ୍ତକ—
ଟୋପର ଦିଶୁଛି ନେତ୍ରକୁ ଜକଜକ ।
ମୋ ଭାଇ ଶକୁନିର ଯେନ ଏତେ କଥା
ଉପୁଜିଲା, ପାଇଲି କୃଷ୍ଣ, ପୁତ୍ରବ୍ୟଥା ।

ମୋ ବଧୂମାନଂକର ବଦନ-ସରୋଜ
ଏତେକାଳେ ଧଇଲା ଲୋଚକ ଘନଜ ।
ପତିଂକ ନେତ୍ର ହରୁ ଉଡ଼ିଯିବା ଭୟେ
ବୁଝି ନପାରି ବସିଛନ୍ତି ଯଦୁରାୟେ ।
ମହୀ-ମଣ୍ଡଳା ମୋ ପୁତ୍ରଂକ ଅଙ୍ଗସଙ୍ଗ
ପାଇ ଭଡ଼ ଧରି ରହିଛି ଦେଖ ଅଙ୍ଗ ।
ଦେଖ ଦୁଃଶାସନ ବିକର୍ଣ୍ଣ ଦୁଇ ସୁତ
ମୋହର ଶୋଇଛନ୍ତି ଯୁଦ୍ଧେ ହୋଇ ହତ ।
ବିକର୍ଣ୍ଣ ଦୁଇହାତେ ବାଜବାଣ ଗୁଣ
ଚର୍ମକୁ ତ ଆଣ୍ଠେ କରିଅଛି ଦ୍ୱିଗୁଣ ।
ଏଣୁକରି ବିଲୁଆ କୁଆଏ ରେକଟି
ଗିଳିବା ବେଳେ ଆଖି ବୁଜନ୍ତି ଚଗଟି ।
ମଲାଠାରେ ମୋ ପୁତ୍ରେ ଦେଖି ମୋ ବଧୂଏ
ଶାଗୁଣାଙ୍କୁ ଉଡ଼ାଉଛନ୍ତି କରବାଏ ।
ଦୁର୍ମୁଖର ମୁଣ୍ଡ କୁକୁର ଅଧେ ଖାଇ—
ଦେଲେ ହେଲେ ଅଷ୍ଟମୀ-ଚନ୍ଦ୍ରକୁ ନିନ୍ଦଇ ।
ଚିତ୍ରସେନ ଦେହକୁ ବେଢ଼ିଣ ଶ୍ୱାପଦ
ରହିଛନ୍ତି ମାଂସରେ ବଳାଇ ପ୍ରମୋଦ ।
ବିଂବିଶତି ଶୋଇଲା ପ୍ରାୟେ ତା ଭାରିଯା
ପାଖରେ ରହିଅଛି ଦେଖ ଯଦୁରାଜା ।
ଦୁଃସହକୁ ପୋଛାଳି ଅଛି ତାର ନାରୀ
ଗନ୍ଧର୍ବକୁ ଗନ୍ଧର୍ବୀ ପରି ଲୁହଧାରି ।
ଦେଖ କୃଷ୍ଣ ତୁମ୍ଭ ଭଣଜା ଅଭିମନ୍ୟୁ
ପାରେ ହେ ଭାଙ୍ଗି ଯୁଦ୍ଧେ ଇନ୍ଦ୍ରଂକର ମନ୍ୟୁ ।
ତୁମ୍ଭେ ଥାଉଁ ଥାଉଁ ସେ ହୋଇଣ ଅନାଥ
ଧୂଳିରେ ଗଡ଼ାଇଲା ଦେହ ତୁଲେ ମାଥ ।
ଅର୍ଜୁନ ଗାଣ୍ଡୀବଧନୁକୁ ଧରି କରେ
ରଖି ନ ପାରିଲା ତ ଏହାକୁ ସମରେ ।
ଧିକ ହେଉ କିନ ପାର୍ଥର ଦେହବଳ
ଏହାକୁ ଦେଖି ହୃଦ ହେଉଛି ବିକଳ ।
ମଲେ ହେଲେ ଅଭିମନ୍ୟୁର ଦେହକାନ୍ତି
ଭାଙ୍ଗି ପକାଉଅଛି ସୂର୍ଯ୍ୟଂକର ଜ୍ୟୋତି ।
ଉତ୍ତରା-ହୃଦ-ହାଣ୍ଡିରୁ ଶୋକ-କ୍ଷୀର
ଉଛୁଳି ପଡ଼ୁଅଛି ଦେଖ ଦାମୋଦର ।
ଉତ୍ତରା ଅଭିମନ୍ୟୁ ମୁଖରୁ ରକତ
ପୋଛୁଛି ଚୁମ୍ବି ଦେଉଛି ହୋଇ ଆସକତ ।

ଏହା ଦେଖିବାକୁ ମୋ କର୍ମେ କୁଶଧାର
ଲେଖିଥିଲା କି ଆହେ ରୁକ୍ମିଣୀ-ବିହାରୀ ।
ତୁମ୍ଭେ ଥାଉଁ ଥାଉଁ ପାଣ୍ଡବ କୁଳଙ୍କର
ମଣୁଅଛୁ ଆଶ୍ଚର୍ଯ୍ୟ ଏକଥା ହେବାର ।
ମୋର ପୁଅଙ୍କ ତୁଲେ ଆପଣା ଭଣଜା
ମରାଇଲ କୃଷ୍ଣ ହେ ନ ପାଇଲ ଲଜ୍ଜା ।
ଆହା ପତି ବୋଲି ଉତ୍ତରା କର ଦୁଇ
ହୃଦେ ଲଦି ଭୂମିରେ ଲୋଟାଉଛି ଦେଖ ।
ପୁଣ ଯେ ବୋଲୁଅଛି ରଣଭୂମି-ନାରୀ
ମୋର ପତିକି ବଳେ କଲୁତ ଚୋହରି ।
ମୁଁ ପିନା ଧରି ପୂର୍ବେ ଶୋଇଥାଏଁ କୋଳେ
ତୁ ଶୁଆଇଲୁ ଏବେ ଯୁଦ୍ଧ-ଉତ୍ସବଳେ ।
ସପତ୍ନୀ ହିଂସା ମୋଠାରୁ ଦୂର କରି
ଛାଡ଼ ମୋ ପତିଙ୍କି, ବସନ୍ତୁ କୋଳେ ଧରି ।
ମୁଁ ତାଙ୍କ ପ୍ରୀତିରେ ହୋଇଛି ଆସକତ
ଏହା ନ ଭାଙ୍ଗ ତୁ, ଧରମ ହେବ ହତ ।
ପତି ଦୁଇ ଭାର୍ଯ୍ୟା କଲେ ତ ହୁଏ ପାଳ
ଏ ଧର୍ମ ଛାଡ଼ନ୍ତୁ ଦେବି ମୁଁ ତୋତେ ଗାଳି ।
ଅଭିମନ୍ୟୁ ମୁଖ-ଚନ୍ଦ୍ରରେ କାକ-ପକ୍ଷ
ପଡ଼ିବାରୁ ହୋଇଛି କଳଙ୍କେ ସେ ଲକ୍ଷ ।
ବିରାଟର ନନ୍ଦନୀ ତାହା ଆଡ଼ଆଇ
ବୋଲଇ ମୋ ଅଦୃଷ୍ଟେ କି ଲେଖିଲ ବିହି ।
ଏ ପୁଭାବପୁରେ ପାଇଲି ପତିକଷ୍ଟ
କେ ମୋତେ ବୋଧିବ କଲେ ମୁଁ ମନେରୁଷ୍ଟ ।
ଦ୍ରୋଣ କୃପ କର୍ଣ୍ଣ ଯେ ଶଲ୍ୟ ଅଶ୍ୱତ୍ଥାମା
ପୋଡ଼ନ୍ତି ଏହାଙ୍କର କ୍ଷତ୍ରିୟ-ଗାରିମା ।
ଏ ପିଲାକୁ ଏକା ଦେଖି ଯା ବେଢ଼ିକରି
ମାଇଲେ ଯେ ଯାହାର ଶସ୍ତ୍ରକୁ ପ୍ରହାରି ।
ଏ ଅଧର୍ମକୃତି ନ ସହି କୁଶଧର
ଭସ୍ମ ଯା କରିଦେଲ ବଂଶକୁ ମୋହର ।
ଏ ପରି ପୁତ୍ରକୁ ହରାଇ ଅରଜୁନ
କାହିଁପାଇଁ ଜୀବ ରଖିଛି ଜନାର୍ଦ୍ଦନ ।
ଶୁଣ କୃଷ୍ଣ ଉତ୍ତରା ବୋଲୁଅଛି ଯାହା
ମଲ ତ ପାଞ୍ଚବାବୁ ହୋଇଥାଉଁ ସାହା ।
ମାମୁ ଦୁହେଁ ତୁମ୍ଭର ବିପୁରଜିତାରି
ହୋଇ ତ ଯୁଦ୍ଧେ ନ ପାରିଲେ ରକ୍ଷାକରି ।

ଏବେ ତ ଯୁଦ୍ଧେ ମରି ଅର୍ଜିଲ ସ୍ୱର୍ଲୋକ
ଭୋଗକର ରମ୍ଭାଦି ଅପସରାଯାକ ।
ମୁଁ ତ ହୀନ ପାମରୀ ଅଟେ ଅସୁନ୍ଦରୀ
ଏ ସକାଶୁ ମୋତେ ଗଲ କି ଛାଡ଼ିକରି ।
ଉତ୍ତରାର ଏହି ବିକଳ ରଡ଼ି ଶୁଣି
ବୋଧିଅଛନ୍ତି ମତ୍ସ୍ୟଦେଶ-ନାରୀଶ୍ରେଣୀ ।
ଏହା କେଉଁରୂପେ ତୁମ୍ଭର ଦୁଇ ଆଖି
ଦେଖୁଛି ହେ କୃଷ୍ଣ କହ ତ ନୋହି ଦୁଃଖୀ ।
ବିରାଟଙ୍କୁ ଦେଖି ବିରାଟ ନାରୀଗଣ
କରୁଅଛନ୍ତି କୃଷ୍ଣ ଉଚ୍ଚରେ କାରୁଣ୍ୟ ।
ବୋଲୁଅଛନ୍ତି ବଚନେ, ହେଇ ମତ୍ସ୍ୟସାଇଁ
କିରୂପେ ମଲ କୁରୁ-ସାଗରକୁ ପାଇ ।
ଲକ୍ଷ୍ମଣ ସୁଦକ୍ଷିଣ ଉତ୍ତରକୁମର
ଦେଖି ପିଣ୍ଡ ଛାଡ଼ି ଗମିଲେ ଯମପୁର ।
ଦୁଃଶାସନ-ବେଟା କେ ସୁବର୍ଣ୍ଣନ ମୋଟା
ଦେହୁଁ ବହି ରକ୍ତ ହେଲାଣି ଗଣ୍ଡିକୁଟା ।
ଅରଜୁନ-ପବନ କର୍ଣ୍ଣ ଘନାଘନ
ଶୋଇଅଛନ୍ତି ଦେଖ ହୋଇ ହୀନମାନ ।
କର୍ଣ୍ଣଙ୍କର ଭାରିଯାମାନେ ହୋଇ ଗୋଟି
ଖୋଜୁଅଛନ୍ତି କର୍ଣ୍ଣବୀରର ମୁଣ୍ଡଟି ।
ଅର୍ଜ୍ଜୁନ ତ କର୍ଣ୍ଣର ମୁଣ୍ଡକୁ ଉଡ଼ାଇ
ଦେଇଛି ଶରେ ଏହା ପାଇବେ ସେ କାହିଁ ।
ଏହି ସକାଶୁ ପରମାନଙ୍କର ମୁଣ୍ଡ
ବଣା ହୋଇ କରନ୍ତି କର୍ଣ୍ଣ ଦେହେ ରୁଣ୍ଡ ।
ଗୁରୁଶାପ ଯୋଗୁ କର୍ଣ୍ଣଙ୍କ ରଥଚକ
ଲାଗିବାରୁ କାଟିଲା ଅର୍ଜ୍ଜୁନଟି ବେକ ।
ଏ ନୋହିଲେ କର୍ଣ୍ଣଙ୍କ ଇନ୍ଦ୍ରକୁ ସନ୍ତତି
ନ ପାରନ୍ତା ମାରି, ସେ ବଳ ବହେ ଅତି ।
ବୃଷସେନ ଆଦି କର୍ଣ୍ଣର ସବୁ ବହୁା
ମଲେ କର୍ଣ୍ଣ ପାଣି ପତର କରି ପୋଛା ।
ଅବନ୍ତୀଦେଶରାଜା ଭୀମ ହସ୍ତେ ମରି
ହୋଇଛନ୍ତି ଦେଖ ବିଲୁଆ ତୋଷକାରୀ ।
ପ୍ରତୀପଙ୍କର ପୁଅ ବାହ୍ଲିକ ବୁଢ଼ାଟି
ପଡ଼ିଛନ୍ତି ଭୂମିରେ ଛାଡ଼ିଣ ମୁଣ୍ଡଟି
ସେ ମୋହର ବୋଲନ୍ତି ଗୋସାଇଁଶ୍ୱଶୁର
ବୃଦ୍ଧକାଳରେ ମଲେ କରିଣ ସମର ।

ମୋ ଦୁହିତା ଦୁଃଶିଳା ପତିଜୟଦ୍ରଥ
ଦେଖ ପଡ଼ିଛନ୍ତି ଗଣ୍ଡିରେ ନାହିଁ ମାଥ ।
ବଲୁଆଏ ଯେ ଶିରମାନଙ୍କୁ ରେକତି
ପକାଇ ମାଉଁସ ଗିଳନ୍ତି ମେଲି ପାଟି ।
ଆହା ଆହା ବୋଲଣ ମୋ ଦୁଃଶିଳା ଝିଅ
ଦେଖ କୃଷ୍ଣ ମାରନ୍ତି ହୃଦେ କରହସ୍ତ ।
ଶଲ୍ୟ କୃଷ୍ଣ ସଙ୍ଗତେ ବଳରେ ସମାନ
ମୁଁ ବୋଲି ସଭାମଧ୍ୟେ କରନ୍ତି ଗୁମାନ ।
ଯୁଧିଷ୍ଠିରରାଜାଙ୍କ ଶକତିକି ପାଇ
ମରଣ ବିପତ୍ତି ଲଭିଲେ କହ କେହ୍ନି ।
ଶଲ୍ୟ ତ ଜିହ୍ୱା ଦେଇଛନ୍ତି ହାତେ କାଢ଼ି
ପକ୍ଷୀଏ ଖାଉଛନ୍ତି ତାକୁ ଅଣ୍ଟେ ଭିଡ଼ି ।
ଏହା ଦେଖିଣ ମଦ୍ରଦେଶ ନାରୀକୁଳ
ତକା ପାଡ଼ୁଅଛନ୍ତି ହୋଇଣ ଆକୁଳ ।
ଭଗଦତ୍ତରାଜା ଅଙ୍କୁଶଟାଏ ବାନ୍ଧି
ମସ୍ତ-ମହାଗଜର କୋଳରେ ଛନ୍ତି ଶୋଇ ।
ଶ୍ୱାପଦରେ ମାଂସ ହେଲଣି ଛିନ୍ନ ଭିନ୍ନ
ଅଳଙ୍କାର ତ ଛୁଡ଼ୁ ନାହିଁ ଅପଘନ ।
ଅରଜୁନଙ୍କୁ ପ୍ରାଣ ସଂଶୟ ଏ କରି
ଅର୍ଜୁନ ବାଣରେ ଦେଖିଲେ ଯମପୁରି ।
ଦେଖ ହେ କୁରୁମାନଙ୍କର ପିତାମହ
ଭୀଷ୍ମ ଶୋଇଛନ୍ତି ହୃଦରେ ବହି ମୋହ ।
ଦେହଯାକ ଗଳି ତ ରହିଛି ନାରାଚ
ତେବେହେଲେ ସୂର୍ଯ୍ୟ ପରିପ୍ରାୟ ଦିଶେ ତେଜ ।
ପୁଣି ଅରଜୁନଙ୍କ ବିନ୍ଧା କାଣ୍ଡ ତିନି
ହୋଇଅଛି ଦେବବ୍ରତଙ୍କ ଶିରସ୍ଥାଣୀ ।
ଏତେ ଦୁଃଖକୁ ପାଇ ଭୀଷ୍ମ ମହାବୀର
ପଡ଼ିଛନ୍ତି ପ୍ରାଣକୁ ରଖି ଦାମୋଦର ।
ଦେଖିଅଛ ତ ଭୀଷ୍ମ ପାଣ୍ଡବଙ୍କ ପ୍ରେମେ
ପୂରିବାରୁ କହିଲେ ମୃତ୍ୟୁ ଛୁଡ଼ ତମେ ।
ପାଣ୍ଡବମାନେ ବଡ଼ ଅକରମ କଲେ
କୁଳବୁଢ଼ାଟାକୁ ତ ମାରିପକାଇଲେ ।
କୁରୁ ପାଣ୍ଡବଙ୍କର ଗୁରୁ ହୋଇ ଦ୍ରୋଣ
ଯୋଗ ଥିଲା ଯୁଦ୍ଧ ହେବାକୁ ମୁଣ୍ଡହାଣ ।
ଶୋଇଛନ୍ତି ପଇତା କାନ୍ଧରେ ପକାଇ
ମହାଦେବୀ-ଘଇତା ପରି ଶୋଭା ବହି ।

ଦ୍ରୌଣଙ୍କର ବାହୁବଳରେ ସୁଯୋଧନ
ବୋଲୁଥାଇ ରାଜ୍ୟରେ ହୋଇବ ରାଜନ ।
ମୁଣ୍ଡକାଟ ପଡ଼ିଲେ ହେଲେ ଦ୍ରୋଣଗୁରୁ
ଶରାସନ ତ ଛୁଡ଼ୁ ନାହାନ୍ତି ହାତରୁ ।
ଦ୍ରୌଣଙ୍କର ପାଦକୁ କୁରୁ ପାଣ୍ଡୁକୁଳ
ସେବୁଥିଲେ ପାଇବା ପାଇଁ ବିଦ୍ୟାବଳ ।
ଏବେ ସେ ପାଦ ଦୁଇ ବଲୁଆ କୁକୁରେ
ଧରିଛନ୍ତି ମୁଖରେ ଖାଇବା ଲୋଭରେ ।
ଦ୍ରୋଣଙ୍କର ଭାରଯା କୃପଙ୍କର ଭଗ୍ନୀ
ତକା ପାଡ଼ୁଛନ୍ତି ପତିଙ୍କ ସ୍ନେହ ଘେନି ।
ଏହିକାଳେ ଋଷିଏ ହୋଇକରି ମେଳ
ଭାଙ୍ଗିବା ରଥକାଠଯାକ କରି ଠୁଳ ।
ଚିତା ଛୁଡ଼ି ଦ୍ରୌଣଗୁରୁଙ୍କୁ ଦାହ କଲେ
କୃପଙ୍କୁ ଘେନି ଗଙ୍ଗାତୀରକୁ ସେ ଗଲେ ।
ଭୂରିଶ୍ରବା ନାମ ଯେ ସୋମଦତ୍ତ ବହ୍ନି
ଶରେ ମୁଣ୍ଡ କଟାଇ ଦେଖ ପଡ଼ିଛନ୍ତି ।
ସୋମଦତ୍ତ ତାହାଙ୍କ ସମିପକୁ ଲାଗି
ଅଛନ୍ତି ସେ ହୋଇ ପୁତ୍ରରେ ଅନୁରାଗୀ ।
ଭୂରିଶ୍ରବା ମାତା ବୁଢ଼ୀଙ୍କ ମୋହ ଭରି
କାନ୍ଦୁଛନ୍ତି ପତି ପୁତ୍ରକୁ କୋଳେ ଧରି ।
ଏ ବାହାରେ ଭୂରିଶ୍ରବାଙ୍କ ନାରୀକୁଳ
ଦେଖ କୃଷ୍ଣ ଧରି ଅଛନ୍ତି ନେତ୍ରେ ଜଳ ।
ବୋଲୁଛନ୍ତି ପତି-କରକୁ ହୃଦେ ଥୋଇ
କୁଚ ମରଦନ ନ କର କାହିଁପାଇଁ ।
ଗାନ୍ଧାର ଦେଶରାଜା, ସହଦେବ ହାତ—
ଶରରେ ଦେଖ କୃଷ୍ଣ, ହୋଇଛନ୍ତି ହତ ।
ମଗଧଦେଶପତି ଜୟତ୍ସେନ ନୃପ
ଶୋଇଛନ୍ତି ଦେଖ ଜ୍ଞାନକୁ କରି ଲୋପ ।
ବୃହଦ୍ବଳ ନୃପଙ୍କ ଦେହକୁ ଆଉଁଷି
କାନ୍ଦୁଛନ୍ତି ତାଙ୍କ ଭାରଯା ସ୍ୱରୁକେଶୀ ।
ଧୃଷ୍ଟଦ୍ୟୁମ୍ନଙ୍କର ପୁତ୍ରେ ଦ୍ରୋଣବାଣେ
ମରି ଦେଖ ପଡ଼ିଅଛନ୍ତି ଏଣେ ତେଣେ ।
ଏ ଛଡ଼ା ପାଞ୍ଚାଳ କେକୟ ଦ୍ରୋଣଶର
ପାଇ ଦେଖ ଯାଇଅଛନ୍ତି ଯମପୁର ।
ଦ୍ରୋଣ ସିଂହ ହସ୍ତେ ଦ୍ରୁପଦ-ମତ୍ତହସ୍ତୀ
ମରି ଶୋଇଛନ୍ତି ମାଧବ ହୋଇ ଚିତ ।

ମହାରଥୀ ଧୃଷ୍ଟକେତୁ ଯୁଦ୍ଧରେ ମାଥ
ଦେଇ ପଡ଼ିଅଛନ୍ତି ହୋଇଣ ଅନାଥ ।
ଧୃଷ୍ଟକେତୁନନ୍ଦନ ଦେଖ ସ୍ନେହବଳେ
ମରିପଡ଼ିଛନ୍ତି ବାପଙ୍କ ପାଦତଳେ ।
ମୋ ପୁତ୍ରେ ମଧ୍ୟେ ମୋ ନାତିଙ୍କି କୋଳେଧରି
ଯୁଦ୍ଧେ ମରି ମଣ୍ଡିଲେ ଯାଇ ସ୍ୱର୍ଗପୁରୀ ।
ଅବନ୍ତୀଦେଶରାଜ ବିନ୍ଦ ଅନୁବିନ୍ଦ
ପଡ଼ିଛନ୍ତି ଶାଳ ପରାଯେ ହେ ଗୋବିନ୍ଦ ।
ଯେଉଁମାନେ ଯୁଦ୍ଧରେ ମାରିବେ ଦେବଙ୍କୁ
ସେମାନେ ମଲେ ଆମ୍ଭ ଅଦୃଷ୍ଟବାମକୁ ।
ଏହିରୂପେ କାନ୍ଦଣ ଶକୁନି-ଭଗିନୀ
ଆଶ୍ରୟ କଲେ ଯାଇ ସେ ଯୁଦ୍ଧ ଅବନୀ ।
ପୁଣି ଧୈର୍ଯ୍ୟ ହୋଇ ସେ ଉଠିଣ ବସିଲେ
କୃଷ୍ଣଙ୍କୁ କ୍ରୁଦ୍ଧ ନେତ୍ର ଦେଖି ରଙ୍ଗ କଲେ ।
କହିଲେ ଆହେ ହରି ତୁମ୍ଭ ଉପାୟରେ
ପାଣ୍ଡବ କୁରୁ ଗଲେ ଯମଙ୍କ କ୍ଷୟରେ ।
ଦୁଇକୁଳର ବନ୍ଧୁ ତୁମେ ହୋଇଥିଲ
କାହିଁପାଇଁ ଏଡ଼େ ଅନ୍ୟାୟ ଆଚରିଲ ।
ଯେବେ ମୁଁ ପତିବ୍ରତା ସ୍ତ୍ରୀ ହୋଇଥିବି
କରିବ ଭୋଗ ଏବେ ଯାହା ମୁଁ କହିବି ।
ପାଣ୍ଡବ କୁରୁ ମରା ମରି ହୋଇ ମଲେ
ଆପଣ ଥାଉଁ ନିବାରିବା ତା ନୋହିଲେ ।
ଏ ଘେନ ଛତିଶି ବରଷେ ଜନାର୍ଦ୍ଦନ
ଜ୍ଞାତି ମାରି ପାରିବ ଆପଣେ ନିଧନ ।
ତୁମ୍ଭ କୁଳନାରୀମାନେ ହୋଇକରି ରାଣ୍ଡୀ
ଆମ୍ଭ ପରି କାନ୍ଦିବେ ହୋଇଣ ଦରାଣ୍ଡୀ ।
କୃଷ୍ଣ ଏହା ଶୁଣି ହୋଇଲେ ହସ ହସ
ହୋଇ ମୋ ବିନା କେ କରିବ ତାଙ୍କୁ ନାଶ
ବଜ୍ରହସ୍ତ ହୋଇ ସାକ୍ଷାତେ ଦେବରାୟେ
ଲଙ୍ଘି ନ ପାରିବେ ଯଦୁଙ୍କ ବାଳଟିଏ ।
ତୁମ୍ଭ ବୋଲବାର ବଚନ ମୋର ମନ—
କଥା ଅନୁରୂପ ଗାନ୍ଧାରୀ ହେଲା ଜାଣ ।
ଅମୃତାରେ ତ ତୁମ୍ଭେ ଖଣ୍ଡ ବତାଇଲ
ତୁମ୍ଭ ହାତେ ଆଉ ନୋହିବ କିଛି ଭଲ ।
ମଲା ଲୋକଙ୍କୁ ତ ଚିନ୍ତି ତ ଲୋକଶୋକ
କରିବା ନୁହଇ କହନ୍ତି ଶାସ୍ତ୍ର ଯାକ ।

ବ୍ରାହ୍ମଣୀର ପୁତ୍ର ହୋଇବ ଯେବେ ଜାତ
ତପବଳରେ ଉଦ୍ଧରଇ ତାର ଗାତ୍ର ।
କ୍ଷତ୍ରିୟସୁତ ହେଲେ ସତକର୍ମ କରି
ଯୁଦ୍ଧରେ ମରି ଭୋଗକରେ ସ୍ୱର୍ଗ ଶ୍ରୀ ।
ବୈଶ୍ୟସ୍ତ୍ରୀ ଗୃହତନୟ-ପାଳଇ ପଶୁକୁ
ଏ ବାହାରେ ମଧ୍ୟ କରଇ ବଣିଜକୁ ।
ଶୂଦ୍ରର ପୁଅ ହେଲେ ଗୋଡ଼ ଘଷି ଘଷି
ମଲେ ହୁଏ ଯାଇଣ ସ୍ୱର୍ଗପୁରବାସୀ ।
ଗାଈର ପୁଅ ହେଲେ ବହଇ ବହୁତ
ଭୁରଙ୍ଗୀପୁତ୍ର ଗତି ନନ୍ଦାକରେ ବାତ ।
ଏରୂପେ କୃଷ୍ଣଙ୍କର ମୁଖରୁ ଗାନ୍ଧାରୀ
ଶୁଣି ତୁନି ହେଲେ ହସ୍ତିନାଦଣ୍ଡଧାରି ।
ଯୁଧିଷ୍ଠିର ବୋଇଲେ ପୁଛନ୍ତେ ନରନାହା
ପଚାରୁଅଛ ମତେ ଯାହା ଶୁଣ ତାହା ।
ଛଅଷଠି କୋଟି ଯେ କୋଡ଼ିଏ ସହସ୍ର
ଏକ ଲକ୍ଷ ଲୋକ ଯୁଦ୍ଧରେ ଗଲେ ନାଶ ।
ଅଭିମୁଖ ହୋଇଣ ଆହେ ନରପତି
ଚଉଦ ସହସ୍ର ଅଲକ୍ଷ୍ୟ ଶସ୍ତ୍ରଘାତି ।
ଏକ ଲକ୍ଷ ଯେ ପଞ୍ଚସ୍ତ୍ରୀ ସହସ୍ର ଟି
ଲୋକ ମଲେ ଯୁଦ୍ଧେ ଦେଖାଇ ଦେଇ ପିଠି
ଧୃତରାଷ୍ଟ୍ର ବୋଇଲେ କାର କେଉଁ ଲୋକ
ହେଲା ଏହା କହ ତ ପାଣ୍ଡବ-ନାୟକ ।
ଯୁଧିଷ୍ଠିର ବୋଇଲେ ଯୁଦ୍ଧେ ଯେ ହୃଷ୍ଟ ମଲେ
ସ୍ୱର୍ଗରେ ସେ ଇନ୍ଦ୍ରଲୋକକୁ ଭୋଗ କଲେ ।
ଅଲ୍ପ ଶୁଝାଇବା ବୋଲିଣ ମଲେ ଯେତି
ଗନ୍ଧର୍ବଲୋକେ ସେ ବସିଲେ ସୁଖେ ଯାଇ ।
ନିବୃତ୍ତ ହୋଇ ଯେତକ ନରଗଣ
ପଶୁଁ ପଶୁଁ ଶରଣ ପାଇଲେ ମରଣ ।
ଯକ୍ଷଲୋକେ ତାଙ୍କୁ ଆବୋରି କରି ନେଲେ
ଉତ୍ତମ ସ୍ଥାନମାନ ଦେଖାଇ ରଖିଲେ ।
ଲଜ୍ଜ୍ୟାକୁ ଧରି ନିଜ ଧର୍ମକୁ ଆଚରି
ଯେ ମଲେ ତାଙ୍କୁ ନେଲେ ଜାଣ କୁଶଧାରୀ ।
ଘାଉଆ ହୋଇ ଘରେ ପାଇଲେ ଯେ ନାଶ
ଉତ୍ତରକୁରୁ ହେଲା ସେମାନଙ୍କ ବାସ ।
ଧୃତରାଷ୍ଟ୍ର ବୋଇଲେ ତୁମ୍ଭେ ତ ବାଳକ
କିରୂପେ ଜାଣିଲ ଏ ଜ୍ଞାନକଥାଯାକ ।

ଏହା ମୋହର ଆଗେ କହ ତ ବିସ୍ତାରି
ଶୁଣିବାକୁ ଇଚ୍ଛା ହେଉଛି ମୋହରି ।
ଯୁଧିଷ୍ଠିର ବୋଇଲେ ଯେବେ ବନବାସ
କରିଥିଲୁ ଲୋମଶ ଆସି ମୋର ପାଶ ।
ଯମୁନାର ତୀରରେ ଦିବ୍ୟଚକ୍ଷୁ ମୋତେ
ଦେଇଥିଲେ ଜାଣ ରାଜନ ମହାମତେ ।
ଏହା ଶୁଣିଣ ଧୃତରାଷ୍ଟ୍ର ସୁଖ ପାଇ
ବୋଇଲେ ଶୁଣ ହେ ପାଣ୍ଡବ-ନରସାଇଁ ।
ଅନାଥ ସନାଥରେ ଛନ୍ତି ଯେତେ ମରି
ଏହାଙ୍କୁ ଥାଇ ହେ ଦିଆଅ ଦାହ କରି ।

—o—

## ମୃତ ବୀରଙ୍କର ଜଳକ୍ରିୟା

ଯୁଧିଷ୍ଠିର ଯେ ଧୃତରାଷ୍ଟ୍ରଙ୍କ ବଚନେ
ଡକାଇ ପରିଜନ କହିଲେ ବଦନେ ।
ତୁମ୍ଭେମାନେ ଯାଅ ଏ ମରିବା ଲୋକଙ୍କୁ
ଦାହ କରାଅ ପାଳ ମୋହର ଆଜ୍ଞାକୁ ।
ଏହା ଶୁଣି ଯୁଯୁତ୍ସୁ ବିଦୁର ସଞ୍ଜୟ
ସୁଧର୍ମା ଧୌମ୍ୟ ଇନ୍ଦ୍ରସେନ ଭୃତ୍ୟଚୟ ।
ହାତରେ ରଥକାଠି ଆଦି ଅଣାଇଲେ
ନିଆଁ ଜାଳିଣ ଯୁଦ୍ଧ-ଶବକୁ ପୋଡ଼ିଲେ ।
ଏବାହାରେ ଉତ୍ତମ ଜନଙ୍କୁ ଚନ୍ଦନ
କାଠରେ ଅଗ୍ନି ଜାଳି କଲେ ସେ ଦହନ ।
ସୁଯୋଧନ ଦୁଃଶାସନାଦି ଭ୍ରାତୃଗଣ—
ମାନଙ୍କୁ ଦାହ କଲେ ଅଣାଇ ଚନ୍ଦନ ।
ତ୍ରିଗର୍ତ୍ତ ବୃହନ୍ତ ସୃଞ୍ଜୟ ସୋମଦତ୍ତ
ଭୂରିଶ୍ରବା ଶଲ୍ୟ ଦ୍ରୁପଦ ଭଗଦତ୍ତ ।
କର୍ଣ୍ଣ କର୍ଣ୍ଣପୁତ୍ର ଧୃଷ୍ଟକେତୁ କୈକେୟ
ଘଟୋତ୍କଚ ଯେ ଅଳଂବୃଷ ଦ୍ରୌପଦେୟ ।
ଜରାସନ୍ଧ ଯେ ଯୁଧାମନ୍ୟୁ ବୃହଦ୍‌ବଳ
ଉତ୍ତମୌଜା ବିରକ୍ଷେ ଯେ ମଧନ୍ୟା ଗଳ ।
ଅଚଳ ଶକୁନି ବୃଷକ ଜୟଦ୍ରଥ
ଅଭିମନ୍ୟୁ ଧୃଷ୍ଟଦ୍ୟୁମ୍ନାଦି ମହାରଥ ।
ଏମାନଙ୍କୁ ଅଗୁରୁ ଚନ୍ଦନ ତୁଳସୀ
ଚିତାରେ ଦାହ କଲେ ହେବାକୁ ସ୍ୱର୍ଗବାସୀ ।
କୁରୁକ୍ଷେତ୍ର ମଧ୍ୟରେ ଶବ ହୋଇ କେହି
ପଡ଼ିବାର ନେତ୍ରକୁ ଦିଶିଲେଟି ନାହିଁ ।

ଏହା କରିସାରିଣ ଧୃତରାଷ୍ଟ୍ର ତୁଲେ
ଯୁଧିଷ୍ଠିର ଗଙ୍ଗାତୀରକୁ ବାହାରିଲେ ।
ସ୍ନାନ ଅନ୍ତେ ଦେଇ ପ୍ରେତଙ୍କୁ ତିଳବାରି
ଛଦନ୍ତ ବସନ ପିନ୍ଧିଲେ ଯେ ଯାହାରି ।
କୁଳ-ରମଣୀମାନେ ଥିଲେ ସଙ୍ଗତରେ
ଭୂଷଣ କାଢ଼ି ସ୍ନାନ କରି ଗଙ୍ଗାତୀରେ ।
ଅଞ୍ଜଳି କରି ଯେଝା ପତି ତନୟଙ୍କୁ
ଜଳଦାନ କଲେ ମିଶାଇଣ ତିଳକୁ ।
ପାଣ୍ଡୁତନୟେ ଜଳଦାନ ଦେଲା କାଳେ
କୁନ୍ତୀ ତାଙ୍କୁ କହିଲେ ଅଶ୍ରୁ ରଖି ଡୋଳେ ।
ସୂର୍ଯ୍ୟଙ୍କର ଆଡ଼ରେ ମୋ ଉଦରୁଁ ଜାତ
ହେବାରୁଛି କର୍ଣ୍ଣ ତୁମ୍ଭର ଜ୍ୟେଷ୍ଠ ଭ୍ରାତ ।
ତାହାକୁ ଜଳ ତୁମ୍ଭେ ନ ଦେଇ କାହାକୁ
ଦେଉଛ ଜଳ ଆଗ କହ ତ ଆମ୍ଭଙ୍କୁ ।
ଯୁଧିଷ୍ଠିର ମାତା ମୁଖରୁ ଏହା ଶୁଣି
ଶୋକ କରି ତାହାଙ୍କୁ କହିଲେ ଏ ବାଣୀ ।
କର୍ଣ୍ଣ ଯେଉଁରୂପେ ସୂର୍ଯ୍ୟଙ୍କ ଆଡ଼େ ଜାତ
ତୁମ୍ଭ ଗର୍ଭରୁ ହୋଇଥିଲେ ଆଗୋ ମାତ ।
ଅରଜୁନ ସିନା କର୍ଣ୍ଣଙ୍କ ସଙ୍ଗେ ରଥୀ
ଯୁଦ୍ଧ କଲେ ଭେଟ ହୁଅନ୍ତା ଯମସାଥି ।
ତା ପରି ପୁଅକୁ ଜାଣି ତ ମରାଇଲ
ଭାଇ ବୋଲି ତ ମୋତେ ପୂର୍ବରୁଁ ନ କହିଲ ।
ପୁତ୍ର-ନାଶ ସ୍ତକେ କର୍ଣ୍ଣ-ନାଶ କଥା
ବଢ଼ାଉଛି ଅଧିକେ ମୋ ହୃଦରେ ବ୍ୟଥା ।
କର୍ଣ୍ଣ ଯେବେ ଆମ୍ଭ ପାଶରେ ଥାନ୍ତେ ରହି
କୁରୁଏ ଆମ୍ଭ ସଙ୍ଗେ ଯୁଝନ୍ତେ କପାଇଁ ।
ଏହିରୂପେ କହି ଅନେକ ଯୁଧିଷ୍ଠିର
ପାଅ ହେ କର୍ଣ୍ଣ ବୋଲି ଦେଲେ ତିଳ ନୀର ।
ବଧୂ ବୋଲି କର୍ଣ୍ଣ ଭାର୍ଯ୍ୟାଙ୍କୁ ଅଣାଇଲେ
ତାଙ୍କ ହାତେ କର୍ଣ୍ଣଙ୍କୁ ଜଳ ଦିଆଇଲେ ।
ଏରୂପେ ଜଳକ୍ରିୟା ସାରି ଯୁଧିଷ୍ଠିର
ବାହାରିଲେ ବସାକୁ ହୋଇ ତତପର ।

—o—

## ଶେଷକଥା

ଏହି ଶଲ୍ୟାଦି ପର୍ବ ନିତ ଯେ ଶୁଣଇ
କୋଟିଏ ଯୁଗଯାଏ ସ୍ୱର୍ଗେ ସେ ରହଇ ।
ଗର୍ଭ ହେଉ ନ ଥିବା ନାରୀଏ ଶୁଣିଲେ
ଉତ୍ତମ ପୁତ୍ରକୁ ସେ ପ୍ରସବନ୍ତି ଭଲେ ।
ଏହି ଠାବରେ ଶଲ୍ୟ ଆଦି ପର୍ବତ୍ରୟ
ଶେଷ କରିଲେ ପରାଶରଙ୍କ ତନୟ ।
ଏ ପର୍ବଙ୍କରେ ଦୁଃଖ ଶୋକ ଯୁଦ୍ଧପର୍ଷ୍ଟି
ସୂର୍ଯ୍ୟଙ୍କୁ ସମାପର୍ତ୍ତ-ରହୁମୁନଙ୍କ ସ୍ଥିତି ।
କହଇ ଶାନ୍ତିପର୍ବଙ୍କରେ ରାଜଧର୍ମ
କହିବେ ଜାଣିବାକୁ ନୃପମାନେ କର୍ମ ।
ଏ ବାହାରେ ଯେ ମୋକ୍ଷ ଦାନ ଧର୍ମ ଦୁଇ
ଶାନ୍ତିପର୍ବ ମଧ୍ୟେ ଅଛନ୍ତି ଖ୍ୟାତ ହୋଇ ।
ଏ କାଳକୁ ଲେଖାରେ ହୋଇଛି ପ୍ରକାଶ
ଶକା ଅଟ ଛଅ ଉତ୍ତର ସତରଶ ।
ରାମଚନ୍ଦ୍ର ସିଂହଙ୍କ ତନୟ ସନ୍ତତ
କରି ମୋହର ନାମ କୃଷ୍ଣସିଂହ ଖ୍ୟାତି ।
ଧରାକୋଟମଣ୍ଡଳ ନରଙ୍କରେ ରାଜା
ହେବାର ଅଧରମେ ବୁଡ଼ାଇଣ ମଜ୍ଜା ।
ଅନିତ୍ୟ ବିତ୍ତ ପୁତ୍ର ସ୍ତ୍ରୀ ହିତ କରି
ଇଚ୍ଛାକଲି ହରିନାମକୁ ନ ଉଚ୍ଚାରି ।
ବିଷୟ-ମଦିରାରେ ହୋଇ ଆସକତ
ପିଇବାକୁ ନିତ୍ୟ ପ୍ରବର୍ତ୍ତିଲାଣି ଚିତ୍ତ ।
ଅସାଧୁ ସଙ୍ଗତରେ ବସି ଅହର୍ନିଶି
ହିନ ନେଲି ମୁଁ ଗୀତ ନୃତ୍ୟରଙ୍ଗେ ରସି ।
ଜାଣୁଅଛି ତ କାଳ ଚପିଦେବ ଗଳା
ତେବେହେ ନ ବହିଲି ହରିନାମ ମାଳା ।
ବେଳକୁ ବେଳ ଆସି ଆୟୁ ହେଲା ଶାନ୍ତ
ନ ଗଲା ଦୁଷ୍ଟକଥା ଆଚରଣ ମତି ।
ନ ପଢ଼ି ଶାସ୍ତ୍ର ମୂର୍ଖପଣେ ଗର୍ବ ବହି
ଭାରତକୁ ଗୀତରେ ରଚନା କରଇ ।
ଏହା ଶୁଣି ସୁଜନେ ନ କରିବ ହାସ
ହୋଇଛି ଏଥି ହରିନାମକୁ ପ୍ରକାଶ ।
ଶାମୁକାରୁ ମୁକୁତା ଜାତ ହେଲା ପରି
ମୋ ମୁଖରୁ ଜାଣ ଏ ଅଛନ୍ତି ବାହାରି ।
ଏହି କଥା କହିବା ଅଭିପ୍ରାୟ ମୋର
ଘେନ ଦୋଷ କ୍ଷମା କରିବ ସାଧୁନର ।
ମୋ ଭାରରେ ଅପାର ସଂସାର-ସିନ୍ଧୁକୁ
ତରିବାକୁ ଭେଳା କରିଛି ଭାରତକୁ ।
ହେ ଶ୍ୟାମ ନଟବର-ବେଶଧର ହରି
ବଲ୍ଲବ-କାମିନୀଙ୍କ ଚିତ୍ତ-ଅପହାରି ।
ବଳୁଣାଳୟଙ୍କର ସୁତା-ସୁଖକାରି
କଳାପି-ପିଚ୍ଛ-ଚୂଡ଼ା ପୀତବାସ-ଧାରି ।
ଗୋବର୍ଦ୍ଧନ-ଧର ହେ କାଳୀୟ-ବଇରି
ବକ-ଅଘ-ଚିରି ମୁରାରି ନରହରି ।
ହିରଣ୍ୟ-ଦୁଃଖ-ହରି ନିକୁଞ୍ଜ ବିହାରି
ମାତଙ୍ଗାର୍ତ୍ତି-ନାଶନ ଅନଳ-ନିବାରି ।
ତୁମ୍ଭ ମହିମାକୁ ହେ ଅନନ୍ତ-ତଳପ
କରିପାରିବ କି ମୋ ମୁଖରେ ଜଳପ ।
ଭାରତ-ଗୀତରେ ରଖାଇ ଏ କଳପ
ପୂର୍ଣ୍ଣ କର ମୋର ମାନସ-ସଂକଳପ ।
ଏହା ଜଣାଉଛି ଏ ମୋର ପ୍ରଳାପ
ସାଧୁ ସଙ୍ଗତରେ ନାହିଁ ମୋ ସଂକଳପ ।
ଏଣୁ ତୁମ୍ଭ ଛାମୁରେ କରୁଛି ବିଳାପ
କେମନ୍ତେ ଘୁଞ୍ଚିବ ହେ ମୋ ଆଧି-କଳାପ ।
ଏଥିକି ମୋତେ ବୁଦ୍ଧି ଦେଇ ଜନାର୍ଦ୍ଦନ
ସ୍ଥିର କର ଯାହା ଉଡ଼ୁଛି ମୋର ମନ ।
ଭକତ-ଜନ-ବନ୍ଧୁ ରାଧା-ପ୍ରାଣଧନ
ଘେନ ମୋର ଏତେକ ଜଣାଣ ବଚନ ।
ଜଣା ନୋହିବାଛୁଟି ତୁମ୍ଭର କୀର୍ତ୍ତନ
କିଣା ହୋଇକରି ଯେ କୃଷ୍ଣସିଂହ-ମନ
ବିଷୟ-ବିଷେ ଭ୍ରମି କଳୁଷ କୀର୍ତ୍ତନ
କରୁଅଛି ଅନବରତେ ହେ ନର୍ତ୍ତନ ।

—ଶଲ୍ୟ ପର୍ବ ସମାପ୍ତ—

—)ଃ୦ଃ(—

ମୁଦ୍ରଣ—ପୁସ୍ତକ ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସପ, କଟକ-୨

# ଅନୁଶାସନ ପର୍ବ

# ସୂଚିପତ୍ର

# ମ ହା ଭା ର ତ

## ଅନୁଶାସନ ପର୍ବ

## ( ଦାନଧର୍ମ )

—※—

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।
ଭୀଷ୍ମ ଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଲାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃକୁରୁନଦୀ କୈବର୍ତ୍ତକଃ କେଶବଃ ।

※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※ ※

### କାଳ-ବ୍ୟାଧ-ସର୍ପ ମୃତ୍ୟୁ ଗୌତମ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ତୁମ୍ଭ କଥାରେ ମୋ ବଳିଲା ଅତିସ୍ନେହ ।
ଶୁଣିଲେ ହେଲେ ନ ଶୁଣିଲା ପରି ମୁହିଁ
ମଣୁଅଛି ତୁମ୍ଭ କଥାକୁ ଶ୍ରଦ୍ଧା ବହି ।
ମୁଁ ତ ତୁମ୍ଭମାନଙ୍କ ତୁଲରେ ସଂଗ୍ରାମ
କରି ଅରଜିଛି ମହତ ପାପକର୍ମ ।
ଧର୍ମରେ ନୃପତି ତ ଏଣୁ ମୋର ମତି
ହେଉନାହିଁ ଜାଣ ହେ ପ୍ରତିପଙ୍କ ନାତି ।
ତୁମ୍ଭ ଦେହରେ ଦେଖି ଅରଜୁନ-କାଣ୍ଡ
ଘାଣ୍ଟି ହେଉଅଛି ମୋହର ହୃଦ ଖଣ୍ଡ ।
ରକତେ ଜରଜର କରି ନିଜ ଅଙ୍ଗ
ମୋଠାରେ ମନ କିଛି କରନାହିଁ ଖଙ୍ଗ ।
ଏହା ଦେଖିକରିଣ ମୁଁ ଦୁର୍ବୁଦ୍ଧି କେହ୍ନି
ଜୀଇବି ଆହେ ପିତାମହ ରଥୀସାଇଁ ।
ମୋ ପାଇଁ କେତେ ରାଜା କୁରୁକାଣ୍ଡେ ମୁଣ୍ଡ
ଗଣ୍ଡି କଟାଇଣ ଶୋଇଲେ ରଣ-ଦାଣ୍ଡ ।
ଏଡ଼େ ନିନ୍ଦାକର୍ମ କରି ତ ଅଛି ମୁହିଁ
ଏଣୁ ସିନା ବୋଲେ ନୋହିବି ନରସାଇଁ ।
ତୁମ୍ଭର ଏ ଅବସ୍ଥା ଯାହା ଦେଖିଲନ୍ତି
ବୋଲନ୍ତି ଭାଗ୍ୟବନ୍ତ ଦୁର୍ଯ୍ୟୋଧନ ଭାଇ ।
ମୁଁ ଯେବେ ଯାଇଥାନ୍ତି ଯୁଦ୍ଧ-ଦାଣ୍ଡେ ନାଶ
ତେବେ କି ତୁମ୍ଭ ଦୁଃଖ ଦେଖନ୍ତା ମୋ ଦୃଶ ।
ବିଧାତ ମୋତେ ପାପକର୍ମା କରି ମହୀ
ମଧ୍ୟେ ଜାତ କରିଛି ସନ୍ଦେହ ଏଥି ନାହିଁ ।
ଏ ଦେହଟି ଯେରୂପେ ହୋଇବ ମୁକତ
ସେରୂପେ ପିତାମହ ମୋ ଆଗେ କହ ତ ।
ଭୀଷ୍ମ ବୋଇଲେ ଆହେ ଯୁଧିଷ୍ଠିର ବାଇ—
ହେଲା ପରି କଥା କହୁଛ କାହିଁପାଇଁ ।
ସବୁଠାକୁ ଈଶ୍ୱର ଅଟନ୍ତି କାରଣ
ତୁମ୍ଭେ କହ କିମ୍ପା ମାରିଚ ବିଦ୍ଧ ବାଣ ।
ମୃତ୍ୟୁ-ଗଉତମୀ-କାଳ-ଶବର-ସର୍ପ—
ସମ୍ବାଦରୁ କହିବା ଶୁଣ ବସି ନୃପ ।
ଗଉତମୀ ବ୍ରାହ୍ମଣୀଙ୍କର ପୁଅଟିଏ
ଥିଲା ସେ ବାଣ୍ଡି ହେଲାଠାରେ ନୃପବରେ୍ୟ ।
ସେ ପୁଅର ପାଦ ପଡନ୍ତେ ସର୍ପ-ମୁଖେ
ସର୍ପ ଦନ୍ତଘାତ କରିଲା ତହିଁ ସୁଖେ ।
ବିଷଘାତେ କୁମର ହୋଇ ଥରହର
ମଣିଲା ସେ ଗୋଡ଼କୁ ଯେସନେ ପଥର ।

ଧଇଲା ସାପ ବୋଲି ମାତା ଆଗେ କହି
ଦେଲା ତା'ର ଦୁଇ ଆଖିକି ଲେଉଟାଇ ।
ଏହା ଦେଖି ଅର୍ଜ୍ଜୁନ ନାମେ ବ୍ୟାଧ କ୍ରୋଧ
ହୋଇ ସାପକୁ କରିବାକୁ ବଧ ।
ଗଉତମୀ ନାଗ ପାଖରେ ଆଣି ଦେଲା
ଏ ସାପ ତୁମ୍ଭ ପିଲା ମାଇଲା କହିଲା ।
ଗଉତମୀ ବୋଇଲେ ନ ମାର ଏ ସାପ
ପୂର୍ବରେ ମୁହିଁ କରିଥିଲି ମହାପାପ ।
ସେ ସକାଶୁଁ ପୁତ୍ର ପଡ଼ିଲା ଏହା ମୁଖେ
ମୁଁ ସାପକୁ କ୍ଷମା ମାରିବି ମନଦୁଃଖେ ।
ପୂର୍ବଜନ୍ମ ପାତକ ହେତୁ ହୋଇ ରାଣ୍ଡୀ
ଭାବୁଛି କା ଘରେ ଧୋଇବି କଳାହାଣ୍ଡି ।
ଏ ସାପ ମାଇଲେ ଜଅନ୍ତା ପୁତ୍ର ଯେବେ
ମାର ବୋଲି ମୁହିଁ ବୋଲନ୍ତି ସିନା ତେବେ ।
ତୁଚ୍ଛା ମରାଇଲେ ସାପକୁ ନରକକୁ
କାଟିବ ସିନା ଶଠି, ଆସୁଛି ମନକୁ ।
ଲୁବ୍ଧକ ବୋଇଲା ଜାଣିଲି ତୁମ୍ଭ କଥା
ପୁତ୍ର ମରିଲା ବୋଲି ନାହିଁ କିଛି ବ୍ୟଥା ।
ଏ କ୍ଷୁଦ୍ର ସର୍ପୁଟିକି ପକାଇବି ମାରି
ଭାବୁଅଛି ମୁହିଁ ତୁମ୍ଭଙ୍କୁ ନ ପଚାରି ।
ଗଉତମୀ ବୋଇଲେ ପିଟିଲେ ମୋ ମୁଣ୍ଡ
ମାର ବୋଲି ନ ଉଚ୍ଚାରିବି ମୋର ତୁଣ୍ଡ ।
ବ୍ରାହ୍ମଣଘର ଝିଅ ଅଟଇ ତ ମୁହିଁ
କ୍ରୋଧାନ୍ଧ ହୋଇବାର ଉଚିତ ନୁହଇ ।
କ୍ଷତ୍ରିୟଘର ଝିଅଠାରେ ସିନା କ୍ରୋଧ
ଅଛି ବୋଲି ଜଗତେ ହୋଇଛି ପ୍ରସିଦ୍ଧ ।
ଲୁବ୍ଧକ ବୋଇଲା ପାପୀକି ମାଇଲେ
ବଡ଼େ ପୁଣ୍ୟ ବୋଲି କହନ୍ତି ଲୋକେ ଭଲେ ।
ଏ ସାପ ତ କରିଛି ବହୁ ପ୍ରାଣୀ ନାଶ
ଏଣୁ ଏହାକୁ ମାଇଲେ ନାହିଁ କିଛି ଦୋଷ ।
ଗଉତମୀ ବୋଇଲେ ଶୁଖାଇଣ ମୁଖ
ଦେଖ ସାପ ପଡ଼ିଛି ହୋଇଣ ନିରେଖ ।
ଏହା ଦେହରେ ଯେବେ ପିଟାଇବି ବାଡ଼ି
ବସିବ ମୋ ବେକରେ ପ୍ରାଣଟିକି ଛାଡ଼ି ।
ଏହି ସକାଶୁଁ ଅନ୍ତକାଳରେ ନରକ
ମୋହର ହୋଇବ ହେ ବ୍ୟାଧଙ୍କ ନାୟକ ।
ବ୍ୟାଧ ବୋଇଲା ଆହେ ବୃତ୍ର ଅସୁରକୁ
ମାରି ଇନ୍ଦ୍ର ପାଇଲେ ସ୍ୱରଗ-ସ୍ଥାନକୁ ।
ମହାଦେବ ଦେବ ଯେ ଦକ୍ଷଙ୍କର ଯାଗ
ନାଶ କରିଣ ତହୁଁ ଅରଜିଲେ ଭାଗ ।
ଏହି ସକାଶରୁ ସିନା ମୁଁ କହୁଅଛି
ମରାଅ ଏ ସାପ ମୋ ହାତେ ଦ୍ୱିଜ-ବହି ।
ଏ ରୂପରେ ବହୁତ ପ୍ରବର୍ତ୍ତାଇ ବ୍ୟାଧ
କହନ୍ତେ ଗଉତମୀ ନୋହି କରି ବୋଧ ।
ଧରମକୁ ଚାହିଁଣ ଅଧରମ କଥା
ହେବ ବୋଲି ତାହା ଛାଡ଼ିଲେ ଲଭି ବ୍ୟଥା ।
ସର୍ପ ସେହି କାଳେ ପକାଇ ନିଃଶ୍ୱାସକୁ
କହିଲା ଏ ବଚନ ଅନାଇ ବ୍ୟାଧକୁ ।
ମୃତ୍ୟୁ-ଦେବତାର ବୋଲରେ ମୁଁ ଆସିଲି
ବ୍ରାହ୍ମଣପିଲାଟିର ଗୋଡ଼ ଚାବି ଦେଲି ।
ଏଥିପାଇଁ କ୍ଷମା କରୁଅଛ କ୍ରୋଧ
ବିସ୍ମରିଣ ହୃଦ ମଧ୍ୟରେ ମୋର ବଧ ।
ବ୍ୟାଧ ବୋଇଲା ତୁ ମୃତ୍ୟୁର ଚାକର
ନୋହୁ ତେବେ କ୍ଷମା ବୋଲି କଲୁ ତାହାର ।
ତା ମନ ଥିବାରୁ ତୁ ଚାବି ବ୍ରାହ୍ମଣକୁ
ପ୍ରାଣ ଉପରେ ଜଟି କହୁଛୁ ଆମ୍ଭଙ୍କୁ ।
ହାଣ୍ଡି ଗଢ଼ିବାକୁ ଯେରୂପେ ଦଣ୍ଡ ଚକ୍ର
କାରଣ ପରି ହେଲୁ ବୁଦ୍ଧି କରି ବକ୍ର ।
ଏହି ସକାଶରୁ ପ୍ରହାରି ତୋତେ ବାଡ଼ି
ମାରିବି କହୁଅଛି ହୃଦୟକୁ ଫେଡ଼ି ।
ସାପ ବୋଇଲା ଆହେ ଦଣ୍ଡ-ଚକ୍ରଟି
ନ ଥିଲେ କୁମ୍ଭାର କି ଗଢ଼ିପାରେ ମାଟି ।
ଯେବେ ମୋତେ କାରଣ ବୋଲୁଅଛ ତୁମ୍ଭେ
ତୁମ୍ଭେ କାରଣ କି ନୋହୁଛ ବୋଲୁ ଆମ୍ଭେ ।
ବ୍ୟାଧ ବୋଇଲା ତୁ ଯା ଇଚ୍ଛା ତାହା କହ
ମାରିବି ତୋତେ ତୁ ମାରିଛୁ ଦ୍ୱିଜ-ପୁଅ ।
ସାପ ବୋଇଲା ଆହେ ଲୁବ୍ଧକ ଭାଇ
ଏଡ଼େ ପାପକଥା କହୁଛୁ କାହିଁପାଇଁ ।
ଋତ୍ୱିକେ ହୋମ କରି ନ ପାଆନ୍ତି ଫଳ
ଯେରୂପେ ସେରୂପ ମୋ ଶ୍ଳେବାଇବା ବଳ ।
ଅଟଇ ହେ ଦ୍ୱିଜକୁ ବ୍ୟାଧ ମହାରଥା
ଜାଣ ମୋ କଥାରୁ ନ କହ ମୋତେ କଥା ।

ଏହିରୂପେ ସାପ କହିବା ସମୟରେ
ମୃତ୍ୟୁ ପାଇଗଲେ ସେ ସାପ ସମୀପରେ ।
ବୋଇଲେ ରେ ସର୍ପ କ କହୁ ବାଇ ହୋଇ
କାଳ ବୋଲରେ ତୋତେ ବରଗିଲି ମୁହିଁ ।
କାଳ ଯେଉଁ ଠାବକୁ ନେଉଥାଏ ମୋତେ
ସେହିଠାକୁ ଯାଉଥାଏଁ ମୁଁ ଅନାୟତ୍ତେ ।
ସ୍ଥାବର ଜଙ୍ଗମରେ ମିଶି ତିନିଲୋକ
କାଳ ସକାଶରୁ ଲଭନ୍ତି ଦୁଃଖ ସୁଖ ।
କାଳରେ ହୋଇଛନ୍ତି ଧର୍ମସ୍ତେ ସର୍ଜନା
କାଳ ଯୋଗୁ ବିନାଶ ଯାଇଛନ୍ତି ସିନା ।
ଏହା ଜାଣି ମୋତେ ନ ଦିଅ ତୁଚ୍ଛା ଦୋଷ
ମୁଁ ଦୋଷୀ ହେଲେ କି ନୋହିବ ତାରଦୋଷ
ସାପ ବୋଇଲା ହେ ମୁଁ କିଛି ନ ଜାଣଇ
ତୁମ୍ଭ ବୋଲେ ହିଁ ଜନ୍କୁ କାମୋଡ଼ିଛି ମୁହିଁ ।
କାଳ ତ ସବୁ ପ୍ରାଣୀଙ୍କରେ ଅଟେ ବଡ
ତା ଦୋଷ ବୁଝିଲେ ଆମ୍ଭର ହେବ ହୁଡ଼ ।
ଯହିଁ କହୁଁ ମୃତ୍ୟୁ ସର୍ପ କହିଲା ବ୍ୟାଧକୁ ।
ଶୁଣିଲ ତ ମୃତ୍ୟୁ ଦେବତା ବଚନକୁ ।
ମୋତେ କମ୍ପାଇ ମାରିବାକୁ ଚହୁଁଅଛ
ଛାଡ଼ ଦିଅ ଏବେ ଚଳିବି ମୁହିଁ ଗଛ ।
ବ୍ୟାଧ ବୋଇଲା ତୁହି ମୃତ୍ୟୁ ସଙ୍ଗେ ସଙ୍ଗୀ
ହୋଇ ମାରୁଛୁ କେତେ କହି କହି ଭଙ୍ଗ ।
ମୃତ୍ୟୁଦେବତାଟି ଅଟଇ ବଡ଼ ନଷ୍ଟ
ଦେଖିଲେ ତାହାକୁ କରନ୍ତି ପ୍ରାଣ ଭ୍ରଷ୍ଟ ।
ମୃତ୍ୟୁ ବୋଇଲେ ଆରେ ବ୍ୟାଧ ଆମ୍ଭ ଦୋଷ
ବିଚାର କର ମନେ ନୋହିବଟି ଲେଶ ।
ଲୁବ୍ଧକ ବୋଇଲା ଯେବେ ପରବଶ
ତୁମ୍ଭେ ମୁଁ ଯାହା ପଚାରୁଛି ତା ପ୍ରକାଶ ।
କହ ତ ମୋର ଆଗେ ଆହେ ମୃତ୍ୟୁଦେବ
ତେବେ ତୁମ୍ଭଠାରେ କରିବ ମୁଁ ଭାବ ।
ହରଷ କ୍ରୋଧ କେଉଁରୂପେ ପ୍ରାଣୀଙ୍କର
ହେଉଅଛି ଜାତ ହୃଦରେ ନିରନ୍ତର ।
ଏହା ଜାଣିବାକୁ ମୋହର ଇଚ୍ଛା ଅଛି
ଜାଣିଥିଲେ ତାହାକୁ କହ ମୋତେ କିଛି ।
ମୃତ୍ୟୁ ବୋଇଲେ ହେ ହରଷ କ୍ରୋଧ ଦୁଇ
କାଳ କରୁଛନ୍ତି ସନ୍ଦେହ ଏଥି ନାହିଁ ।
ଏ ତିନିଙ୍କ ସମ୍ବାଦ ପଡ଼ିବାର ଜାଣି
କାଳ ଆସି କହିଲେ ପାଣ୍ଡବ- ନୃମଣି ।
ଏହି ବ୍ରାହ୍ମଣ ପୂର୍ବେ କରିଥିଲା ପାପ
ତା'ର ପାପରେ ଆମ୍ଭେ କଲୁଁ ତାକୁ ଲୋପ ।
ଯେ ଯାହା କରିଥାଏ ଭୁଞ୍ଜଇ ସେ ତାହା
କେବଳ ସାର ହୋଇ ରହଇଟି ଆହା ।
ପୂର୍ବର କରମକୁ ଘେନି ଆମ୍ଭେ ଫଳ
ଦେଉଥାଉଁ ମନେକର ହେ ବ୍ୟାଧବାଳ ।
ମୁଁ ଇ ଖିରି ପରାୟଣ କର୍ମ କର୍ତ୍ତା ଦୁଇ
ନିତି ସମ୍ବନ୍ଧିଟି ହୋଇଛୁ କହୁଥାଇଁ ।
ଗଉତମୀ ବୋଇଲେ ବ୍ୟାଧ ତୁ ଦୁର୍ବୋଧ
କହିଲାଠାରେ କାଳ କମ୍ପା ନୋହୁ ବୋଧ ।
ମୋ ପୁତ୍ର ପୂର୍ବେ କରମକୁ ଅନୁସରି
ସାପ ମୁଖରେ ପଡ଼ିକରି ଗଲା ମରି ।
ସାପକୁ ମୋର ବୋଲେ ବନ୍ଧନୁଁ ଫିଟାଅ
ମୃତ୍ୟୁ କାଳ ଦୁହିଁଙ୍କି ସନ୍ତୋଷ କରାଅ ।
କାଳ ମୃତ୍ୟୁ ସର୍ପ ଏ ତିନିହେଁଟି ଜାଣ
ଶିଶୁର ମରଣରେ ନୁହନ୍ତି କାରଣ ।
ଗଉତମ ବଚନ ଘେନିଣ ଲୁବ୍ଧକ
ସାପକୁ ଫେଡ଼ିଦେଲା କରିଣ ବିବେକ ।
ଏ ଅନ୍ତେ ଯେ ଯାହା ସ୍ଥାନକୁ ଯୁଧିଷ୍ଠିର
ଗମିଲେ ଆନନ୍ଦ ହୃଦେ ହୋଇ ଘର ।
ଏହି ସକାଶରୁ ଯେ କହୁଅଛି ମୁହିଁ
ଭାରତ ଯୁଦ୍ଧକର୍ତ୍ତା କାଳଟି ଅଟଇ ।
ଦୁର୍ଯ୍ୟୋଧନ ତୁମ୍ଭଙ୍କୁ କରିଅନ୍ତେ ଗୋଳ
ଧଇଲା ଆସି ଜାଣ କାଳ ଆମ୍ଭ ବାଳ ।
ଏରୂପେ ଭୀଷ୍ମଙ୍କ କହିବା ବାଣୀ ଶୁଣି
ବିଗତ-ଶୋକ ହେଲେ ପାଣ୍ଡବ-ନୃମଣି ।
କାଳ-ଶବର-ସର୍ପ-ମୃତ୍ୟୁ-ଗଉତମୀ
ସମ୍ବାଦକୁ ସାରିଲେ ବ୍ୟାସ ଋଷିସ୍ୱାମୀ ।
ସେ ବ୍ୟାସଙ୍କ ପଦ-କମଳେ କୃଷ୍ଣସିଂହ
ନରପତି ମନଭୃଙ୍ଗ କରଇ ସ୍ନେହ ।

—*—

## ସୁଦର୍ଶନ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଗୃହସ୍ଥ କି ଧର୍ମ
କଲେ ମୃତ୍ୟୁଦେବକୁ ଜିଣେ ହୋଇ ବାମ ।

ଏହା ମୋର ଆଗରେ ଜାଣିଲେ ବତାଇ
କହ ହେ ପିତାମହ ଗଙ୍ଗରଇଁ ମୁହିଁ ।
ଗାଙ୍ଗ ବୋଇଲେ ଆହେ ମନୁଙ୍କର ପୁତ୍ର
ଇକ୍ଷ୍ୱାକୁ ନାମ ବହି ହୋଇଲେ ସେ ଖ୍ୟାତ
ଇକ୍ଷ୍ୱାକୁଙ୍କଠାରୁ ଯେ ଶଏ ପୁତ୍ର ହେଲେ
ସମସ୍ତେ ସୂର୍ଯ୍ୟ ପର ତେଜକୁ ବହିଲେ ।
ଇକ୍ଷ୍ୱାକୁଙ୍କର ଦଶୁଆଳ ପୁତ୍ର ନାମ
ଦଶାଶ୍ୱ ବୋଲି କହି ଜାଣ ନୃପୋତ୍ତମ ।
ମହିଷ୍ମତୀ ପୁରରେ ରାଜା ସେ ହୋଇଲେ
ମହେଶ୍ୱର ପର ବିକ୍ରମକୁ ସେ ବହିଲେ ।
ଦଶାଶ୍ୱ ନୃପଙ୍କର ମଦିରାଶ୍ୱ ପୁତ୍ର
ହୋଇଲେ କୁଳ କରିବାକୁଟି ପବିତ୍ର ।
ଧନୁର୍ବେଦ ବେଦକୁ ସାଙ୍ଗୋପାଙ୍ଗ କରି
ଗୁରୁଠାରୁ ଶିଖାଇଲେ ସେ ଶ୍ରଦ୍ଧା ଭରି ।
ମଦିରାଶ୍ୱଙ୍କ ପୁତ୍ର ଦ୍ୟୁତିମାନ ହେଲେ
ଦ୍ୟୁତିମାନଙ୍କଠାରୁ ସୁବୀର ଜନମିଲେ ।
ସୁବୀରଙ୍କର ହେଲେ ସୁଦୁର୍ଜୟ ପୁତ୍ର
ସୁଦୁର୍ଜୟଙ୍କ ହେଲେ ଦୁର୍ଯ୍ୟୋଧନ ସୁତ ।
ଦୁର୍ଯ୍ୟୋଧନ ରାଜନ ଧରମରେ ମହୀ
ପାଳିବାରୁ ପ୍ରୀତ ହୋଇଣ ଶଚୀସାଇଁ ।
ସୁନା ଭୁଲେ ରତ୍ନମାନଙ୍କୁ ବରଷିଲେ
ସେ ନୃପବରଙ୍କର ହୃଦ ଉଲ୍ଲାସିଲେ ।
ଏ ସକାଶୁଁ ସେ ଦେଶ ଲୋକେ ଧନବନ୍ତ
ହୋଇ ସବୁ ବ୍ୟାଧିରେ ହେଲେ ବିବର୍ଜିତ ।
ଦୁର୍ଯ୍ୟୋଧନଙ୍କର ଉତ୍ତମ ଗୁଣ ଦେଖି
ନର୍ମଦାନଦୀ ଜଳ କାମେ ହୋଇ ଦୁଃଖୀ ।
କାମିନୀରୂପ ଧରି ଆସି ତାଙ୍କଠାକୁ
ମାଗିଲେ ସୁରତକୁ ଖେଳାଇ ଡୋଳାକୁ ।
ସେ ନୃପତିବର ତା ଶୁଣି ହସି ହସି
ବୋଇଲେ ଶୁଣ ଗୋ କୁଟିଳ ଚାରୁକେଶୀ ।
ସୁରତ ଇଚ୍ଛା କରି ଆସିଛ ତ ତୁମ୍ଭେ
ନାହିଁ କଲେ ପାପ ପାଇବୁଁ ସିନା ଆମ୍ଭେ ।
ଏହିରୂପେ ବୋଲନ୍ତେ ଫୁଲକାଣ୍ଡ ପାଣି
ବିନ୍ଧିଦେଲା ପାଞ୍ଚକାଣ୍ଡ ଗଣ୍ଡିକ ଟାଣି ।
ସେ ଘାତେ ନୃପବରେ ମର୍ମେ ଯାନ୍ତେ ଧରି
ନରମ ଅଙ୍ଗୀକି ଧଇଲେ କୋଳକରି ।

ଲାବଣ୍ୟ ଫଳକ ପରାୟେ ତାଙ୍କ ଗଣ୍ଡ
ଦିଶୁଥିଲା ତହିଁ ଲଗାଇ ନିଜ ତୁଣ୍ଡ ।
ଚୁମ୍ବନ ଦେଇ ଗୋଟିଗୋଟି ଧୀରେ ଧୀରେ
ଫିଟାଇ ଦେଲେ ନୀବିବନ୍ଧକୁ ସଧୀରେ ।
ସେ ନବୀନା ସଙ୍ଗତେ କରନ୍ତେ ସୁରତ
ହେଲା ତାଙ୍କଠାରୁ ଦୁହିତା ଉତପତ୍ତି ।
ସୁଦରଶନା ହେଲା ସେ ଝିଅଟି ନାମ
ମୋ କଥାରୁ ଜାଣ ପାଣ୍ଡବ-ନରୋତ୍ତମ ।
ସୁଦରଶନାର ସୁନ୍ଦରପଣ ଦେଖି
ଅଗ୍ନି କାମେ ବୁଜିଲେ ତାଙ୍କ ଦୁଇ ଆଖି ।
ବ୍ରାହ୍ମଣରୂପ ଧରି ନୃପଠାକୁ ଗଲେ
ଦିଅ ତୁମ୍ଭ ଝିଅକୁ ଆମ୍ଭଙ୍କୁ ବୋଇଲେ ।
ଦୁର୍ଯ୍ୟୋଧନ ରାଜନ ଭିକାରି ବ୍ରାହ୍ମଣ ।
ତାଙ୍କୁ ବୋଲି ସେକନ୍ୟା ନାହିଁ କଲେ ଜାଣ ।
ସେ ସକାଶୁ ଅଗ୍ନି ହୋଇଣ ଅତି ଦୁଃଖୀ
ବାହୁଡିଲେ ହୃଦମଧ୍ୟରେ କ୍ରୋଧ ରଖି ।
ସେଦିନଠୁ ସେ ରାଜା ହୋମ ଅଗ୍ନି ଲିଭି-
ରହିଲା ଯେଣୁ ତାଙ୍କୁ ନ ଦେଲେ ବଲ୍ଲଭୀ ।
ଏହା ଦେଖି ସେ ନୃପବର ଚିନ୍ତା କଲେ
ସବୁ ଋତ୍ୱିକଙ୍କୁ ଡକାଇ ଅଣାଇଲେ ।
କାହିଁପାଇଁକି ହୋମ ଅଗ୍ନି ଗଲେ ଲିଭି
କହ ତ ମୋତେ ତୁମ୍ଭେ ଏ କଥାକୁ ଭାବି ।
ତୁମ୍ଭ ଆମ୍ଭ ଦୁହିଁଙ୍କର ଅବା ଦୁଷ୍କୃତ
କି ଥିଲେ ଜାଣିଥିଲେ କର ତାହା ଖ୍ୟାତ ।
ଏରୂପେ ରାଜାଙ୍କ ବଚନ କର୍ଣ୍ଣେ ଶୁଣି
ସ୍ତୁତିକଲେ ଅଗ୍ନି ଦେବଙ୍କୁ ଦ୍ୱିଜଶ୍ରେଣୀ ।
ଅଗ୍ନି ସାକ୍ଷାତରେ ଦେଖାଇ ତାଙ୍କୁ ରୂପ
ବୋଇଲେ ତୁମ୍ଭ ନୃପ କରାଇଲେ କୋପ ।
ମୋହର ଆହେ ତୁମ୍ଭେମାନେ ଏହା ଜାଣି
ନ ଥିବାରୁ କହୁଛ ଏହି ସ୍ତୁତି ବାଣୀ ।
ବ୍ରାହ୍ମଣେ ବୋଇଲେ ସେ ତୁମ୍ଭଠାରେ କିସ
ଦୋଷ କରିଲେ ତାହା କର ତ ପ୍ରକାଶ ।
ଅଗ୍ନି ବୋଇଲେ ମୁଁ ଝିଅକୁ ତାହାଙ୍କର
ମାଗିଲି ମୋତେ ନାହିଁ କଲେ ନୃପବର ।
ଦ୍ୱିଜେ ଏହା ଶୁଣିଣ ବୋଇଲେ ରାଜାଙ୍କୁ
କାହିଁକି ନାହିଁ କଲ ଅଗ୍ନିଙ୍କି ଦେବାକୁ ।

ସୁଦରଶନା ଦୁହିତାକୁ ନୃପବର
ଏ ସକାଶୁଁ କ୍ରୋଧ ହୋଇଛ ତାହାଙ୍କର ।
ରାଜା ବୋଇଲେ ଆହେ ଏଥିପାଇଁ ଅଗ୍ନି
ନ ଜଳ ଯେବେ ରହିଛନ୍ତ ହୋଇ ତୁମ୍ଭ ।
ତେବେ ତାହାଙ୍କୁ ଦେବ ମୋହର ଝିଅକୁ
କରାଅ ତୁମ୍ଭେ ଯାଇ ତାଙ୍କ ପ୍ରସନ୍ନକୁ ।
କହୁଛ କଥାଏ ମାଗିବ ଯାହା ମୁହିଁ
ତା ଦେବେ ମୋତେ ନ କରିବେ କେବେନାହିଁ
ଏହା ଶୁଣି ଦ୍ୱିଜେ ଅଗ୍ନିଙ୍କ ପାଶେ ଗଲେ
ରାଜା ଦେବେ ଝିଅକୁ ବୋଲିଣ କହିଲେ ।
କେବଳ ମାଗୁଛନ୍ତ ତୁମ୍ଭଙ୍କୁ ଯେ ଯାହା
ତାହାକୁ ଦେବ ଆହେ ଅଗ୍ନି-ଦେବନାହା ।
ଅଗ୍ନି ବୋଇଲେ ହେ ପଚ୍ଚାର ଆସ ତାଙ୍କୁ
କ ମାଗୁଅଛନ୍ତ ସେ ଦେବ ମୁଁ ତାହାଙ୍କୁ ।
ଦ୍ୱିଜେ ଯାଇ ଅଗ୍ନିଙ୍କ ଉତ୍ତର ରାଜାଙ୍କୁ
କହନ୍ତେ ରାଜା ଯେ କହିଲେ ଏ କଥାକୁ ।
ଆମ୍ଭ ପୁରରେ ନିତ ଜଳୁଥିବେ ଅଗ୍ନି
ଅନ୍ୟାୟ ନ୍ୟାୟ ଦୁଇ କଥାକୁ ନ ଘେନ ।
ଦ୍ୱିଜଙ୍କ ମୁଖୁ ଅଗ୍ନି ପାଇ ସେ ବାରତା
ବୋଇଲେ ଜଳିବ ମୁଁ ଦିଅନ୍ତୁ ଦୁହିତା ।
ସୁଦରଶନା-ଦୁହିତାକୁ ସଜ କରି
ରାଜା ଦେଲେ ଅଗ୍ନିଦେବଙ୍କୁ ବିଭାକରି ।
ସୁଦରଶନାଠାରୁ ପାଇକରି ରତି
ବୈଶ୍ୱାନର ଦେବତା ହୋଇଣ ତୃପତି ।
ସେ ନୃପବର ପୁରେ ପ୍ରତି ମନ୍ଦିରରେ
ଜଳିଲେ ହେ ପାଣ୍ଡବରାଜା ନିରନ୍ତରେ ।
ସୁଦରଶନା ଆତ୍ମେ ସୁଦର୍ଶନ ନାମ
ପୁତ୍ର କରିଲେ ଅଗ୍ନି ଦେବଙ୍କ ଉତ୍ତମ ।
ବାଳକ ହୋଇ ସ୍ମୃତିବେଦକୁ ଜାଣିଲେ
ସୁଦରଶନ ଅଗ୍ନି ମନକୁ କିଣିଲେ ।
ଓଘବାନ ରାଜା ଯେ ଓଘବତୀ ଝିଅ
ଦେଲେ ଅଗ୍ନିଦେବ ପୁତ୍ରଙ୍କୁ ବଡ଼ ପ୍ରିୟ ।
ଓଘବତୀ ସଙ୍ଗତେ କୁରୁକ୍ଷେତ୍ରେ ରହି
ସୁଦରଶନେ କତା ହେଲେ ରତି-ସାଇଁ ।
ଓଘବତୀଙ୍କର ଦେଖିଣ ସେ ମୂରତି
ଅଗ୍ନିପୁତ୍ର ରତିରେ ନୋହିଣ ତୃପତି ।

ବୋଇଲେ ସବୁଦିନେ ଏ କନ୍ୟାକୁ ମୁହିଁ
କରୁଥିବ ସମ୍ଭୋଗ ଯେ ରୂପରେ ଯାଇଁ ।
ସେହି ରୂପରେ କରିବାର ମୋ ରତି
ପୂଜିଲେ ନ ଯୋଗାଏ ମୋତେ ପୁରୁହୂତ ।
ଏତେ ମନରେ କରି ଆପଣା ପ୍ରିୟାକୁ
କହିଲେ ହସିକରି ପ୍ରିୟ ବଚନକୁ ।
ଅତିଥିଙ୍କଠାରେ ଅପୂଜ୍ୟାକୁ ତୁମ୍ଭେ
କେବେ ନ କରିବଟି ବୋଲୁଅଛୁଁ ଆମ୍ଭେ ।
ଅତିଥି ଯେବେ ଆସି ମାଗେ ଦେହ-ଦାନ
ଦେବଟି ତୁମ୍ଭେ ଘେନ ମୋହର ବଚନ ।
ମୁଁ ନ ଥିଲେ ଥିଲେ ହେଲେ ଗୋ ଚନ୍ଦ୍ରମୁଖୀ
ଅତିଥିଙ୍କ ପୂଜା କରିବ ହୋଇ ସୁଖୀ ।
ଓଘବତୀ ବୋଇଲେ ବୋଲ ତୁମ୍ଭେ ଯାହା
ତାହା ମୁଁ କରିବ ଜାଣ ହେ ଦ୍ୱିଜନାହା ।
ଅଗ୍ନିଙ୍କର ପୁତ୍ରକୁ ମୃତ୍ୟୁଦେବ ଜଗି—
ରହିଲେ ଛିଦ୍ରାଜାଣି ନେବ ବୋଲି ବେଗି ।
ସୁଦରଶନ ଦିନେ ଯାନ୍ତେ କାଠପାଇଁ
ଅରଣ୍ୟ ମଧ୍ୟକୁ ପାଣ୍ଡବ-ନରସାଇଁ ।
ଏହିକାଳେ ସୁଦରଶନଙ୍କ ସ୍ଥାନକୁ
ଆସିଲ ଦ୍ୱିଜ ଜଣେ ଧରିଣ ଛତାକୁ ।
ସେହି ଦ୍ୱିଜଟି ହୋଇଅଛୁ ତ ଭେଣ୍ଡିଆ
ଏଣୁ ତା ବୁଦ୍ଧିଟି କରିଛୁ ଛଇଳିଆ ।
ସୁଦରଶନ ଭାର୍ଯ୍ୟା ଛଇଳୀକି ଦେଖି
କପଟେ ପିଛୁଡ଼ି ନ ପାରି ଦୁଇ ଆଖି ।
କହିଲ ସେ ନାରୀକି ଅତିଥି-ସତ୍କାର
କର ମୋତେ ଆସିଛୁ ମୁହିଁ ତୁମ୍ଭ ଘର ।
ଏହା ଶୁଣି ସେ ନାରୀ ପୂଜା ବିଧି କଲେ
କ କାର୍ଯ୍ୟ ମୁଁ କରିବ ବୋଲି ପଚ୍ଚାରିଲେ ।
ଶୁଣ ଯୁଧିଷ୍ଠିର ପାଣ୍ଡବ-ନରସାଇଁ
ସେ ବ୍ରାହ୍ମଣ କହିଲ ନାରୀକି ଗେଲାଇ ।
ଆଗୋ କମଳଜ-ନୟନୀ ମୋତେ ଚାହିଁ
ଘେନୁଅଛୁ ମୋର ପରାଣ ରତିନାହା ।
ଦେହ ଦେଇ କାମ ଜ୍ୱାଳାରୁ କରି ପାରି
ନୋହିଲେ ମୁଁ ତ ନଷ୍ଟେ ମଲିଟି ନାଗରୀ ।
ଓଘବତୀ ସମ୍ପତ୍ତି ବସ୍ତ୍ର ଅଳଙ୍କାର
ଯାଚିଲେ ନିଅ ବୋଲି କରି ଦ୍ୱିଜବର ।

ତେବେ ହେଲେ ସେ ଦ୍ୱିଜ ନୋହିଲା ତୃପତ
ବୋଇଲା ଦେହ ଦାନ ଦିଅ ଗୋ ଯୁବତୀ ।
ଭର୍ତ୍ତା ତ ପୂର୍ବୁ ତାଙ୍କୁ କହିଥିଲେ ତାହା
ତେଣୁ ସନମତ କରିଲେ ସେ ସୁଦେହା ।
ବ୍ରାହ୍ମଣର ଭୁଜରେ ମୁରତି-ବନ୍ଧରେ
ମାତି ବିହରିଲେ ଗୃହସ୍ଥ ନିବନ୍ଧରେ ।
ଏହି ସମୟରେ ସୁଦରଶନ କାଠ
ଘେନିଣ ଆସିଲେ ନ କରି ବନେ ମଠ ।
ମୃତ୍ୟୁ ତାଙ୍କ ପଛରେ ଅଛନ୍ତି ଗୋଡ଼ାଇ
ଆଜ ନେବି ବୋଲି ଆନନ୍ଦ ମନେ ବହି ।
ସୁଦରଶନ ଦ୍ୱାରେ ବସି ଓଘବତୀ
ଆସି ଏ କାଠ ନିଅ ଡାକଲେ ଝଟତି ।
ଦ୍ୱିଜ ତ ତାହାଙ୍କୁ ପୋଟଳି ଧରିଥିଲେ
ଏ ସକାଶୁଁ ପତିଙ୍କି କଥା ନ କହିଲେ ।
ସୁଦରଶନ ତାହା ନ ପାରିଣ ଜାଣି
କହିଲେ ଭାରିଯାକୁ ଡାକଣ ଏ ବାଣୀ ।
ପତିବ୍ରତା ହୋଇଣ ଆଜ ପତି ବୋଲ
ଭାଙ୍ଗିଲ ଏ ତୁମ୍ଭର ହୋଇଲ କି ହେ ଭଲ ।
ବ୍ରାହ୍ମଣ ତ ଓଘବତୀଙ୍କି ଧରିଥିଲେ
ଏହା ଶୁଣି ସୁଦରଶନଙ୍କୁ କହିଲେ ।
ଅତିଥି-ପୂଜା ମୋତେ ତୁମ୍ଭର ଭାରିଯା
କରୁଛନ୍ତି ନ ଭାଙ୍ଗ ଧର୍ମେ ତୁମ୍ଭ ମଜ୍ଜା ।
ସୁଦରଶନ ଶୁଣି ବ୍ରାହ୍ମଣ-ବଚନ
ଈର୍ଷାଟିକି ମନରୁ କରିଣ ମୋଚନ ।
ବ୍ରାହ୍ମଣଙ୍କୁ ବୋଇଲେ ମୋର ଭାରିଯାକୁ
ଭୋଗକର ସୁଖେ ହେ ଛାଡ଼ିଣ ଶଙ୍କାକୁ ।
ଅତିଥି ପୂଜା ମୁଁ ତ କରିଅଛି ବ୍ରତ
ତୁମ୍ଭର ଯେ ସନ୍ତୋଷ ସେ ମୋହର ମତ ।
ପଞ୍ଚମହାଭୂତଙ୍କ ଭୁଲେ ବୁଦ୍ଧି ମନ
କାଳ ଦିଗ ଦେହରେ କରି କରି ସ୍ଥାନ ।
ସୁକୃତ ଦୁଷ୍କୃତ ଲୋକର ଜାଣୁଛନ୍ତି
ମୁଁ ଏହା ଜାଣି କେହ୍ନି ହେବି କୋପମତି ।
ଏହି କାଳରେ ସ୍ୱରିଦଗରୁ ଶବଦ
ଶୁଭିଲା ସତ୍ୟ ଅଗ୍ନି ପୁତ୍ର ଯାହା ବଦ ।
ବ୍ରାହ୍ମଣ ତାହା ଶୁଣି କାମ ଆଶା ଛାଡ଼ି
ଆସିଲେ ଅଗ୍ନି ପୁତ୍ର ପାଶେ ଲୁଗା ଭିଡ଼ି ।

ବୋଇଲେ ମୂର୍ତ୍ତି ଧର୍ମ ଅଟେ ଆହେ ଦ୍ୱିଜ
ଆସିଥିଲ ତୁମ୍ଭ ଭାଙ୍ଗିବ ବୋଲି ଓଜ ।
ସତ୍ୟବ୍ରତି ଏହାକୁ ସତ କରି ଜାଣ
ତୁମ୍ଭ ସତ୍ୟ ଦେଖି ସନ୍ତୋଷ ହେଲା ମନ ।
ମୃତ୍ୟୁଦେବ ତୁମ୍ଭ ପଛେ ଯା ଥିଲେ ରହି
ଏବେ ପଳାଇବେ ଘରକୁ ଲାଜ ପାଇ ।
ତୁମ୍ଭର ଯେହୁ ହୋଇ ଅଛନ୍ତି ବନିତା
ସେ ଅଟନ୍ତି ଜାଣ ହେ ଅତି ପତିବ୍ରତା ।
ତୁମ୍ଭର ବଚନରେ ମୋ ସଙ୍ଗେ ସୁରତି
କରିବାକୁ ଇଚ୍ଛା କଲେ ନୋହି ଦୁଃଖ ମତି ।
ଏ ଯାହାକୁ ଯାହା ବଚନରେ ବୋଲିବେ
ସେହି ଫଳ ସେମାନେ ଭୋଗକୁ କରିବେ ।
ଲୋକଙ୍କର ପବିତ୍ର ହେବାପାଇଁ ଓଘ—
ବତୀ ନଦୀ ହେବେ ଏ ବହି ଜଳ ସଂଘ ।
ତୁମ୍ଭରଠାରେ ନିଜ ରୂପକୁ ଦେଖାଇ
ତୁମ୍ଭଙ୍କୁ ମୋହିବେ ସେ ରତିରସ ଦେଇ ।
ଏ ଭାରିଯା ବଳରେ ତୁମ୍ଭେ ପୁଣ୍ୟଲୋକ—
ମାନଙ୍କୁ ଅରଜିବ ଛାଡ଼ି ମନୁ ଶୋକ ।
ମରଣକୁ ଭୟ ଯେ କରୁଅଛ ତୁମ୍ଭେ
ନ ମରିବ କେବେହେଁ ବୋଲୁଅଛୁ ଆମ୍ଭେ !
ଗୃହସ୍ଥ ଧର୍ମେ ରହି ମୃତ୍ୟୁ ଯା ଜିଣିଲ
ଏ ଜଗତ ମଧ୍ୟରେ ଭଲ ବୋଲାଇଲ ।
ତୁମ୍ଭ ଭାର୍ଯ୍ୟା ତୁମ୍ଭ ସେବାରେ ମୋହ ଦ୍ରୋହ
ରାଗ ତନ୍ଦ୍ରା ଜିଣି ଜିଣିଲେ ମଧ୍ୟ ସ୍ନେହ ।
ଏହି ସମୟରେ ଶୁକଳ ଘୋଡ଼ା ଯୋକ୍ତ
ରଥ ପାଇଗଲା ହୁଅନ୍ତେ ପୁଣ୍ୟପରସ୍ତ ।
ସାକ୍ଷାତେ ପୁରନ୍ଦର ରଥେ ବସିଛନ୍ତି
ପ୍ରଳୟ-ଅଗ୍ନି ପରି ବହ୍ନିଣ ଦୀପିତ ।
ସୁଦରଶନ ଓଘବତୀଙ୍କର କର
ଦୁଇ ହାତରେ ଧରି ଶଚୀଙ୍କର ବର ।
ସେହି ରଥବର ଉପରେ ବସାଇଲେ
ଦେଖୁଥିଲେ ଧର୍ମ ସ୍ୱର୍ଗକୁ ଘେନିଗଲେ ।
ଏହାକୁ କହି ଭୀଷ୍ମ କହିଲେ ଅତିଥି
ଲୋକଙ୍କୁ ପୂଜୁଥିବ ଗୃହୀ ନୋହି ବ୍ୟର୍ଥୀ ।
ତେବେ ସିନା ତାହାର ସୁକୃତ ପ୍ରକାଶ
ହୁଅଇ, ପାଛନ୍ତେ ଯାଇ ଲଭେ ସ୍ୱର୍ଗବାସ ।

ଅତିଥିଙ୍କ ପୂଜା ଯେ ଜନ ନ କରଇ
ଅତିଥିଙ୍କ ଦୃଷ୍ଟିତେ ନରକେ ପଡ଼ଇ ।
ଯେଉଁ ଲୋକ ସୁଦରଶନଙ୍କ ଆଖ୍ୟାନ
ଶୁଣଇ ପୁଣ୍ୟଲୋକ ପାଏ ସେ ସୁଜନ ।
ସୁଦରଶନ-ଉପଖ୍ୟାନ ବ୍ୟାସ ଯନ୍ତ
ସାରଲେ କହେ କୃଷ୍ଣସିଂହ ନରପତ ।

—❋—

## ବିଶ୍ୱାମିତ୍ର ଜନ୍ମ ବୃତ୍ତାନ୍ତ

ଯୁଧିଷ୍ଠିର ବୋଇଲେ ଶୁନବର୍ଣ୍ଣେ ସାର
କହିଲ ତ ହେ ପିତାମହ ଦ୍ୱିଜବର ।
ବିଶ୍ୱାମିତ୍ର କ୍ଷତ୍ର ସ୍ୱକୁଳେ ଜାତ ହୋଇ
ବ୍ରାହ୍ମଣର ଜାତିକି ଆଣିଲେ ଛଡ଼ାଇ ।
ଏହା ତ ଶୁଣିଛୁଁ ଲୋକଙ୍କଠାରୁ ଆମ୍ଭେ
ଏଥିର ଯେ କାରଣ ଅଛି କହ ତୁମ୍ଭେ ।
ବିଶ୍ୱାମିତ୍ର ତପୋବଳରେ ବଶିଷ୍ଠଙ୍କ
ଶଏ ପୁତ୍ର ମାଇଲେ ହୋଇଣ ନିଃଶଙ୍କ ।
ପୁତ୍ରଙ୍କ ଶୋକରେ ବଶିଷ୍ଠ ଦୁଃଖୀ ହୋଇ
ରଜ୍ଜୁବଦ୍ଧ ହୋଇ ପଡ଼ିଲେ ଜଳେ ଯାଇ ।
ବିଶ୍ୱାମିତ୍ର ଋଷିଙ୍କ କ୍ରୋଧରୁ ରାକ୍ଷସ—
ମାନେ ମହୀ ମଧ୍ୟରେ ହୋଇଲେ ପ୍ରକାଶ ।
କୁଶିକଙ୍କ ବଂଶରେ ବିଶ୍ୱାମିତ୍ର ପର
ନାହାନ୍ତି ହୋଇ ଆଉ କେହି ଦଣ୍ଡଧାରୀ ।
ଋଚୀକଙ୍କ ପୁଅ ଯେ ଶୁନଃଶେଫ ଯାଗ
ବଳକ ଦେଉଥିଲେ କରି ଅନୁରାଗ ।
ବିଶ୍ୱାମିତ୍ର ଋଷି ରଖିଲେ ତାଙ୍କ ପ୍ରାଣ
ଏ କଥା କହନ୍ତି ଯେ ଛନ୍ତି ପୁରାତନ ।
ବିଶ୍ୱାମିତ୍ରଙ୍କର ପଚୁଶ ପୁତ୍ର ଥିଲେ
ଜ୍ୟେଷ୍ଠ ଭାଇଟିର ପାଦରେ ନ ନମିଲେ ।
ଏହି ସକାଶୁ ବିଶ୍ୱାମିତ୍ର କ୍ରୋଧ ହୋଇ
ଶାପ ଦେଇଣ ଦେଖାଇଲେ ପ୍ରେତସାଇଁ ।
ତ୍ରିଶଙ୍କୁଙ୍କ ପାଇଁ ସେ ଅନୁସ୍ୱର୍ଗ କଲେ
ଦକ୍ଷିଣ ଦଗରେଟି ନେଇଣ ରଖିଲେ ।
ବିଶ୍ୱାମିତ୍ରଙ୍କର ଭଗିନୀ କଉଶିକା—
ନଦୀ ହୋଇଲେ ବାଞ୍ଛି ଭାଇଙ୍କ ପ୍ରୀତିକି ।
ରମ୍ଭା ବିଶ୍ୱାମିତ୍ର ତପ ବିଘ୍ନ କଲେ
ତାଙ୍କ ଶାପେ ପଥର ହୋଇଣ ରହିଲେ ।
ଧ୍ରୁବ ବ୍ରହ୍ମଋଷି ମଧ୍ୟରେ ଗାଧିସୁତ
ରହି ତେଜରେ ଦିନ୍ଦୁ ଅଛନ୍ତି ଆଦିତ୍ୟ ।
କ୍ଷତ୍ରିୟ ହୋଇ ସେହି ଦେହରେ ବ୍ରାହ୍ମଣ
କି ରୂପରେ ହେଲେ ସେ ରଥିକୁଳ ଗଣ ।
ଚଣ୍ଡାଳ ଯୋନିଜନ୍ମ ହେବାରୁ ମାତଙ୍ଗ
କରି ନ ପାରଲେ ସେ ବ୍ରାହ୍ମଣଙ୍କ ସଙ୍ଗ ।
ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ବ୍ରହ୍ମଋଷି ହେବାର ବିଶ୍ୱାମିତ୍ରଙ୍କର ।
ଭରତବଂଶେ ଆଜମୀଢ଼ ରାଜା ହେଲେ
ଆଜମଢ଼ଙ୍କଠାରୁ ଜହ୍ନୁ ଜନମିଲେ ।
ଜହ୍ନୁଙ୍କର ଝିଅ ଯେ ହୋଇବାରୁ ଗଙ୍ଗା
ଜାହ୍ନବୀ ବୋଲକରି ହେଲା ତାଙ୍କ ସଂଜ୍ଞା ।
ଜହ୍ନୁଙ୍କର ଯେ ସିନ୍ଧୁଦ୍ୱୀପ ପୁତ୍ର ହେଲେ
ସିନ୍ଧୁଦ୍ୱୀପ ବଳକାଶ୍ୱଙ୍କୁ ଜାତ କଲେ ।
ବଳକାଶ୍ୱଙ୍କର ବଲ୍ଲଭ ହେଲେ ପୁତ୍ର
କୁଶିକଟି ଅଟନ୍ତି ବଲ୍ଲଭଙ୍କ ସୁତ ।
କୁଶିକଙ୍କଠାରୁ ଯେ ଗାଧି ଜନମିଲେ
ନୋହିଲା ପୁତ୍ର ତାଙ୍କ ବୟସ ସାରଲେ ।
ଏହି ସକାଶୁଁ ନୃପ ବଡ଼ ଦୁଃଖୀ ହୋଇ,
ବନମଧ୍ୟେ ରହିଲେ ଘର କରି ଯାଇ ।
ବନମଧ୍ୟରେ ରହି ଗାଧି ନରପତ
ରତି ରସେ ମାତନ୍ତେ ଘେନିଣ ଯୁବତୀ ।
ସେ ସକାଶୁଁ ଜାତ ହୋଇଲା କନ୍ୟୋତ୍ତମା
ବୋଇଲା ସେହିଟି ସତ୍ୟବତୀ ବାମା ।
ଚ୍ୟବନଙ୍କର ପୁଅ ଯେ ଋଚୀକ ଥିଲେ
ସେହି କନ୍ୟାକୁ ଆସି ଗାଧିଙ୍କି ମାଗିଲେ ।
ଗାଧି ସେ କନ୍ୟାକୁ ନ ଦେଲେ ଋଚୀକଙ୍କୁ,
ନ ଦେଖିଲେ ତାଙ୍କଠାରେ ସେ ଧନକୁ ।
ଏହି ସକାଶରୁ ଋଚୀକ ମହାଋଷି
ନ ପାଇ ସେହି ଶୁକ୍ଳଚକ୍ଷଣ ସୁକେଶୀ ।
ପଛ ପିଠିକରି ଲେଉଟି ଯିବାବେଳେ
ଗାଧି ଏହା ଦେଖି କହିଲେ ତାଙ୍କୁ ବଳେ ।
ଧନ ଥିଲେ ଆମ୍ଭଙ୍କୁ ଦେଇକରି କନ୍ୟା
ଘେନିଯାଅ ଆହେ ଋଚୀକ ମହାମନା ।
ଋଚୀକ ବୋଇଲେ ଯା ଇଚ୍ଛା ଅଛି ମାଗ
ଦେବି ମୁହିଁ ତାହା ହେ ନୃପ ମହାଭାଗ ।

ଋଚୀକଙ୍କର ଏ ବଚନେ ଗାଧି ରାଜା
ଆନନ୍ଦରେ ଫୁଲାଇ ଦେଇ ନିଜ ମଜ୍ଜା ।
ବୋଇଲେ ଶ୍ୟାମବର୍ଣ୍ଣ ଶୁକ୍ଳ ଦଶଶତ
ଘୋଡ଼ା ମୋତେ ଦିଅ ହେ ଚ୍ୟବନଙ୍କ ସୁତ ।
ଋଚୀକ ଏହା ଶୁଣି ସନମତ କଲେ
ଆଣିଦେବି ମୁଁ ନୃପ ବୋଲିଣ ବୋଇଲେ ।
ଜଳସ୍ୱାମୀ ବରୁଣ ପାଶକୁ ସେ ଯାଇ
ଶ୍ୟାମବର୍ଣ୍ଣଘୋଡ଼ା ମାଗିଲେ ପ୍ରୀତି ବହି ।
ବରୁଣ ବୋଇଲେ ଋଚୀକଋଷି ଯାଅ
ମାଗି ଯେବେ ଆସିଛ ମୋ ଆଗେ ନ ଥାଅ ।
ଯେଉଁ ସ୍ଥାନରେ ଶ୍ୟାମକର୍ଣ୍ଣ ଘୋଡ଼ା ଇଚ୍ଛା—
କରିବ ସେଠି ସେ ମିଳିବ ମନୁବାଞ୍ଛା ।
ଏହା ଶୁଣି ଋଚୀକ ମୁନି ତୋଷ ବହି
ସେଠାରୁ ସେହିକ୍ଷଣି ଆସିଲେ ନ ରହି ।
ଗଙ୍ଗା-ତୀରେ ବସି କରନ୍ତେ ଋଷ ଧ୍ୟାନ
ମିଳିଲେ ଦଶଶତ ଘୋଡ଼ା ଶ୍ୟାମକର୍ଣ୍ଣ ।
ସେ ଘୋଡ଼ାମାନଙ୍କ ଦେହରୁ ଚନ୍ଦ୍ର ସରି
କଲେ ଯୁଧିଷ୍ଠିର ହୋଇବ ସ୍ଥିର ପରି ।
ଯେଉଁଠାରୁ ସେ ଘୋଡ଼ାମାନେ ହେଲେ ଜାତ
ସେଠାରେ ଅଶ୍ୱତୀର୍ଥ ନାମ ହେଲା ଖ୍ୟାତ ।
ଋଚୀକ ମୁନୀନ୍ଦ୍ର ଗାଧିଙ୍କ ସେହି ଘୋଡ଼ା
ଦେଲେ ପ୍ରୀତି ବହି ଆଗରେ ହୋଇ ଛିଡ଼ା ।
ବୋଇଲେ ନରପତି ମଦନ ମୋ ପ୍ରାଣ
ନେଇଅଛୁ କନ୍ୟାଗୋଟିକ ବେଗେ ଆଣ ।
ଶ୍ୟାମକର୍ଣ୍ଣ ଘୋଡ଼ାଯାକକୁ ଗାଧି ଦେଖି
ଆପଣାର ଝିଅ ସୁବଦନୀ ଚନ୍ଦ୍ରମୁଖୀ ।
କରାଇଣ ସଜ ସେ ଋଚୀକଙ୍କୁ ଦେଲେ
ଆଜଠୁଁ ହେଲେ ଜୁଆଇଁ ବୋଲିଣ କହିଲେ ।
ଋଚୀକ ସେହି କନ୍ୟା ପାଣିକ ପାଣିରେ
ଧଇଲେ ବେଦମନ୍ତ୍ର ଉଚ୍ଚାରି ବାଣୀରେ ।
ସତ୍ୟବତୀ ଋଚୀକଙ୍କୁ ବଲ୍ଲଭ କରି
ନେଲେ ମନ ହରି ସେ ହୋଇ ପରିତୁଷ୍ଟ ।
ସତ୍ୟବତୀଙ୍କର ଯେ ସେବାରେ ଋଚୀକ—
ମହାମୁନି ବିଗତ କରି ହୃଦ-ଶୋକ ।
ବୋଇଲେ କିସ ଇଚ୍ଛା ସୁନ୍ଦରୀ-ଚନ୍ଦ୍ରମୁହିଁ
ମାଗ ବର କରି, ତା ତୋତେ ଦେବି ମୁହିଁ ।

ସତ୍ୟବତୀ ଏହା ଶୁଣିଣ ବହି ପ୍ରୀତି
କହିଲେ ଯାଇ ମାତା ଆଗରେ ଯୁକତି ।
ମାତା ବୋଇଲେ ଗୋ ମୋ ପାଇଁ ମାଗ ବର
ଯେରୂପେ ହେବ ଭାଇ ନିକଟେ ତୁମ୍ଭର ।
ଏହା ଶୁଣିଣ ସତ୍ୟବତୀ ଧାଇଁଗଲେ
ମାତାଙ୍କ କଥାଯାକ ପତିଙ୍କି କହିଲେ ।
ଋଚୀକ ବୋଇଲେ ସେ ଯେବେ ପୁତ୍ର ଇଚ୍ଛା
କରିଛନ୍ତି ତାଙ୍କର ହେଉ ବେଗେ ବାଞ୍ଛା ।
ତୁମ୍ଭ ଲେଖାରେ ସେ ହୋଇବ ଆତ୍ମ ଶଳା
ପରିହାସ କରିବା ଧରି ଓଷ୍ଠ ଗଳା ।
ତୁମ୍ଭ ଆଡ଼େ ମୋର ମୋ ପରି ପୁତ୍ର ହେବ
ମୋର କୁଳଯାକକୁ ପବିତ୍ର କରିବ ।
ସଙ୍କେତଟିଏ ଯାହା କହୁଥାଇଁ ଆମ୍ଭେ
ଶୁଣିଥାଅ ମନକୁ ଦେଇକରି ତୁମ୍ଭେ ।
ମାତାର ତୁଲେ ଋତୁସ୍ନାତା ଯେଉଁ ଦିନ
ହୋଇବ ଗୋ କାମିନୀ-କୁଳର ରତନ ।
ସେହିଦିନଟି ଯାଇ ଅଶ୍ୱତ୍ଥ ତଳିର
ଗଛକୁ ପୋଟାଳିବ ମୋର ବୋଲ କରି ।
କେତଳ କହୁଥାଇଁ ଉଦୁମ୍ବର ଗଛ
ପୋଟାଳିଲେ ହେବ ତୁମ୍ଭର ମନୁବାଞ୍ଛ ।
ଯୋଡ଼ିଏ ଚରୁ ମନ୍ତ୍ରପୂତ କରି ମୁହିଁ
ରଖି ଯାଉଛୁ ତା ଖାଇବ ପ୍ରୀତି ବହି ।
ଆଗକୁ ଯେଉଁ ଚରୁ ଥୁଆଁ ହୋଇଥିବ
ତାହାକୁ ତୁମ୍ଭେ କଦାପି ନ ଭେଦ ଭୁଞ୍ଜିବ ।
ସତ୍ୟବତୀ ଏହା ଶୁଣିଣ ମାତା ଆଗେ
କହିଲେ ପୁଣି ଯାଇ ଅତ୍ୟନ୍ତ ସରାଗେ ।
ମାତା ବୋଇଲେ ହେ ଜୁଆଇଁ ଯେବେ ମୋର
ବୋଇଲେଣି ତେବେ ହୋଇଲାଣି କୁମର ।
ଏରୂପେ କୁହାକୁହି ହୋଇ ଋତୁସ୍ନାତା
ବୋଇଲେ ଏକାବେଳକରେ ଝିଅ ମାତା ।
ମାତା ବୋଇଲେ ତୋ ଚରୁ ମୋତେ ଦିଅ
ମୋହର ଚରୁ ନେଇ ଆଗୋ ଝିଅ ଖାଅ ।
ଝିଅ ବୋଇଲେ ହେ ମାଗୁଛ ଯେବେ ତୁମ୍ଭେ
ନାହିଁ ବୋଲି କରି ପାରିବୁ କିବା ଆମ୍ଭେ ।
ତୁମ୍ଭେ ତ ଅଟ ମୋର ଗର୍ଭଧାରୀ ମାତା
ତୁମ୍ଭ ଭଲ ନ କରି କରିବ କି ଶତ୍ରୁତା ।

ଏତେ ବୋଲି ବରଙ୍କ କହିବା କଥାଟି
ଅନ୍ୟଥା କଲେ ସେ ବନିତା ତରୁଣୀଟି ।
ଋଚୀକ ଭାରିଯାଙ୍କ ଗର୍ଭଜ୍ୟୋତି ଦେଖି
କହିଲେ ଏ ବଚନ ହୋଇ ଅତି ଦୁଃଖୀ ।
ମୋ ବୋଲଟି ଆନ କରି ତ ପୁତ୍ର ଇଚ୍ଛା
କଲ ତୁମ୍ଭ ଗର୍ଭ ନୋହିବ ମୁନିବତ୍ସା ।
ତୁମ୍ଭର ମାତାଙ୍କର ଯେ ହେବ କୁମର
ହୋଇବ ସେହି ଦ୍ୱିଜମାନଙ୍କରେ ସାର ।
ମୁଁ ତ ପୂର୍ବୁ ଚରୁ ସେରୂପେ ସଜାଡ଼ିଛି
ତା ଆନ କରିବାକୁ କା'ର ଶକ୍ତି ଅଛି ।
ଏହା ଶୁଣି କାଟିଲି ଲତା ପରି ହୋଇ
ସତ୍ୟବତୀ କାନ୍ଦି ପଡ଼ିଲେ ତଳେ ଶୋଇ ।
ପୁଣି ଯେ ସତ୍ୟବତୀ ଚେତା ପାଇ ଉଠି
ଭର୍ତ୍ତାଙ୍କୁ କହିଲେ କପାଳେ ମାରି ମୁଷ୍ଟି ।
ଅଦୃଷ୍ଟ ଅନୁରୂପେ ଅର୍ଜିଲି ମୁଁ ଫଳ
ମୋତେ ଉଦ୍ଧର ଆହେ ମୁନି ତପଃଶୀଳ ।
ମୋ ନାତି ପଛକରେ କ୍ଷତ୍ରିୟ ହୋଇବ
ମୋ ପୁଅ ହେଲେ ମୋତେ ମହାନନ୍ଦ ହେବ
ଋଚୀକ ବୋଇଲେ ଗୋ ତୁ ମୋ ପ୍ରାଣସଖୀ
ତୋର ଦୁଃଖ ଦେଖି ହେଲଇ ବଡ଼ ଦୁଃଖୀ ।
ଯେବେ ବୋଲୁଅଛୁ ଗୋ ନାତି ତୋ କ୍ଷତ୍ରିୟ
ହୋଇ ଯୁଦ୍ଧ କରି କରିବ ମହୀ ଜୟ ।
ଆହେ ଯୁଧିଷ୍ଠିର ପାଣ୍ଡବ ନରପତି
ହେଲେ ଯମଦଗ୍ନିଙ୍କ ମାତା ସତ୍ୟବତୀ ।
ଗାଧି ଭାରିଯା ଜାତ କଲେ ଯେଉଁ ପୁତ୍ର
ତାହାଙ୍କର ନାମଟି ହେଲା ବିଶ୍ୱାମିତ୍ର ।
ବିଶ୍ୱାମିତ୍ର ସେ ଚରୁ ବଳରେ କ୍ଷତ୍ରିୟ
ହୋଇ କରି ତପରେ ଜିଣି ମୁନିଚୟ ।
ବ୍ରହ୍ମାଙ୍କଠାରୁ ବର ପାଇଣ ବ୍ରାହ୍ମଣ
ହୋଇକରି ଜାଣିଲେ ସକଳ ପୁରାଣ ।
ବିଶ୍ୱାମିତ୍ରଙ୍କର ଯେତେକ ପୁତ୍ର ହେଲେ
ଲୋକମାନଙ୍କର ସେ ଗୋତ୍ରକର୍ତ୍ତା ହେଲେ ।
ସେ ପୁତ୍ରମାନଙ୍କର ନାମମାନ ଯାହା
କହିବା ଶୁଣ ତା ପାଣ୍ଡବ-ନରନାହା ।
ମଧୁଚ୍ଛନ୍ଦ ବାଳପଥ ଯେ ଦେବବ୍ରତ
ଉଲୂକ ବଭ୍ରୁ ଯାଜ୍ଞବଳ୍କ୍ୟ ମହାବ୍ରତ ।
ବଲ୍‌ଗୁଜଙ୍ଘ ଶକୁନ୍ତ କୂର୍ଚ୍ଚାମୁଖ ସ୍ଥୂଳ
ବିଖ୍ୟାତ ବଜ୍ରରୁଚ ଅକ୍ଷୀଣ ମୂଢଳ ।
ସୈନ୍ଧବାୟନ ଶିଳାଯୂପ ବକ୍ଷୋଗ୍ରୀବ
ସାଲଙ୍କାୟନ ଶୁଚ ଚକ୍ରକ ଗାଲବ ।
ହିରଣ୍ୟାକ୍ଷ କାରିଷୀ ଆଦ୍ରକ ଜାବାଳ
ବାଭ୍ରିବାୟସ ଉପଗହନ ବାହୁଳ ।
ଆଶ୍ୱଲାୟନ ଗାର୍ଗ୍ୟ ନାରଦ ସୁଶ୍ରୁତ
ତାଡ଼କାନୟନ ମାରୁତନ୍ତବ୍ୟ ଫଶ୍ରିତ୍ୟ ।
ନବତଙ୍କ ବକନଖ ଯେ ନୈକଦୃକ
ଜଘର୍ ଶାମାୟନ ଗୃମ୍ଭେୟ ନାଟକ ।
ମୁଦ୍‌ଗଳ ଅମୋରୁହ କପିଳ ବିଭୂତି
ଉଜ୍ଜ୍ୱୟୋନ ଅସୁରାୟଣି ସୂତ ସୂତି ।
ଶିରୀଷୀ ଉଜ୍ଜୟନ ନାରଦୀ ସବଳ
ଗାନ୍ଧର୍ବ ଲାଳାଢ୍ୟ ମାର୍ଗମ ବାତଘନ ।
ଶିତି ସୁରକୃତ୍ ଆରଣି ଅମସ୍ୟାଣୀ
ପର ଗୌରବ ତନ୍ତୁ ଯତି ଉଦାପେକ୍ଷୀ ।
ବିଶ୍ୱାମିତ୍ରଙ୍କର ଏମାନେ ହୋଇ ସୁତ:
ତେଜ ଓଜ ବଳେ ଜଗତେ ହେଲେ ଖ୍ୟାତ ।
ସବୁ ବେଦଯାକ ସମଗ୍ର କରି ପଢ଼ି
ବଢ଼ାଇଲେ ଅନ୍ତଶୟରେ ବାକ-ପୌଢ଼ି ।
ବିଶ୍ୱାମିତ୍ରଙ୍କର ଜନମ ଯୁଧିଷ୍ଠିର
ଶୁଣିଲ ଆଉ ଇଚ୍ଛା କ ଥିଲେ ପଚାର ।
ବିଶ୍ୱାମିତ୍ର-ଆଖ୍ୟାନ ହେଲା ସମାପତି
କହଇ କୃଷ୍ଣସିଂହ ନୃପ ବହି ପ୍ରୀତି ।

—*—

## ଇନ୍ଦ୍ର ଶୁକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆନୃଶଂସ୍ୟ ଭକ୍ତ
ଲୋକର ଗୁଣ ପିତାମହ କର ଉକ୍ତ ।
ଭୀଷ୍ମ ବୋଇଲେ ଆହେ ଶୁଆ ଇନ୍ଦ୍ରଙ୍କର
ଯେ କଥା ସମ୍ବାଦ ପଢ଼ିଛି ନରବର
ତାହା ତୁମ୍ଭର ଆଗେ କରିବା ପ୍ରକାଶ
ମୋହଠାରୁ ଶୁଣ ହେ ଦେଇଣ ମାନସ ।
କାଶୀରାଜା ଦେଶରେ ବ୍ୟାଧ ଜଣେ ଥିଲା
କାଣ୍ଡମାନଙ୍କରେ ସେ ବିଷକୁ ବୋଳିଲା ।
ମୃଗ ମାରିବାରେ ହୋଇଣ ଆସକତ
ବନମଧ୍ୟରେ ଯାଇ ହେଲା ଉପଗତ ।

ଦେଖିଲି ବନମଧ୍ୟେ ମୃଗ ଚରୁଅଛି
ଭସ୍ମ ତାହାର ମନୁଁ ଦେଇଣ ମୂରୁଛି ।
ଶବର ଆଗୁ ମାଂସ-ଲୋଭୀ ହୋଇଥିଲା
କାଣ୍ଡେ ମୃଗଗଣ୍ଡିକ ଓଟାର ବିନ୍ଧିଲା ।
ସେହି କାଣ୍ଡଟି ମୃଗଗଣ୍ଡିକ ନ ପାଇ
ରହିଲା ଗଛଟାକେ ଅଧେ ଗଳିଯାଇ ।
ସେହି କାଣ୍ଡେ ତ ବିଷ ବୋଳା ହୋଇଥିଲା
ଏ ସକାଶରୁ ସେ ଗଛଟି ମରିଗଲା ।
ସେ ଗଛରେ କୋରଡ଼ କରି ଶୁଆଟିଏ
ରହିଥିଲି ବହୁତ କାଳରୁ ନରବର୍ଯ୍ୟେ ।
ସେ ବୃକ୍ଷର ମରଣ-ଅବସ୍ଥାକୁ ଦେଖି
ଶୁଆ ଅନ୍ନ ଛାଡ଼ିଲି ହୋଇ ଅତି ଦୁଃଖୀ ।
ଶୁଆ ଆଉ ନ ଖାଇବାର ଜାଣି ସୁର
ପତି ସେଠାକୁ ଆସିଲେ ନରବର ।
ବ୍ରାହ୍ମଣ ବେଶ ହୋଇ ଛତା କାନ୍ଧେ ବହି
ଶୁଆ ଚିହ୍ନି ନ ପାରିବାକୁ ନରସାଇଁ ।
କହିଲେ ଆହେ ଶୁଆ କାହିଁପାଇଁ ଅନ୍ନ
ଭୋଜନ ନ କରିଣ ଦେହ କଲ କ୍ଷୀଣ ।
ଏହି ବୃକ୍ଷର ଅସ୍ତ ଦଶା ତ ହେଲାଣି
ତୁମ୍ଭେ କମ୍ପା ରହିଛ ଏଥେ ହୋଇ ଭୂମି ।
ଜେଣାର କ ବଳାହେ ଭାଜନ ତୁମ୍ଭର
କହ ସତ୍ୟ କରି ଆମ୍ଭଙ୍କୁ ପକ୍ଷୀବର ।
ତୁମ୍ଭ ଜାତିଲୋକେ ତ ବହୁତ ଉଡନ୍ତି
ହାଲିଆ ହେଲେ ଥରେ ମଧ୍ୟରେ ପଡନ୍ତି ।
ତୁମ୍ଭେ ସେମାନଙ୍କରୁ ହୋଇଲକି ଊଣା
କାହିଁପାଇଁ ବା କରିଅଛ ବୁଦ୍ଧିବଣା ।
ଶୁକ ବୋଇଲେ ହେ ଆପଣ ପୁରନ୍ଦର
ଆସିଲ ଯା ମୋଠାକୁ ବଡ଼ ଭାଗ୍ୟ ମୋର ।
ଇନ୍ଦ୍ର ଶୁକଙ୍କର ଯେ ଚିହ୍ନିବାର ଜାଣି
ବୋଇଲେ ଧନ୍ୟ ଧନ୍ୟ ଅଟ ପକ୍ଷୀମଣି ।
ଏବେ ମୁଁ ବୋଲୁଅଛି ଏ ବୃକ୍ଷ ଛାଡ଼ିଦେଇ
ଆନ ବୃକ୍ଷରେ ଘର କର ତୁମ୍ଭେ ଯାଇ ।
ଶୁକ ବୋଇଲେ ଆହେ ଦେବଙ୍କ ଈଶ୍ୱର
ତୁମ୍ଭ ଆଜ୍ଞା ଭାଙ୍ଗି ପାରେ କି ମୋହ ଛାର ।
ମୁଁ ଯାହା କହିବି ତା ଟିକେ ମନ ଦେଇ
ଶୁଣ ଆହେ ଶଚୀଦେବୀଙ୍କ ପ୍ରାଣସାଇଁ ।
ଏହି ବୃକ୍ଷରେ ମୋର ବାପେ ରହିଥିଲେ
ଏହି ବୃକ୍ଷ-କୋଡ଼ରେ ମୋତେ ଜାତ କଲେ ।
ଏହି ବୃକ୍ଷେ ଥାଇ ମୋ ହେଲି ପୁଷ୍ଟ ନାଥ
ପଡ଼ିଲି ତ ଏବେ ଏ ବୃକ୍ଷକୁ ବିପତ୍ତି ।
କୃତଘ୍ନ ନାସ୍ତିକ ନୋହେ ମୁଁ ପୁରନ୍ଦର
ଏ କାଳେ କିରୂପେ ଛାଡ଼ିବି ବୃକ୍ଷବର ।
ସମୟରେ ମୋତେ ଏ ଦେଇଥିଲି ବାସ
ଏହା ନାଶ ଦେଖି ମୁଁ ନ କରୁଛି ଗ୍ରାସ ।
ଶୁକର ଅନୃଶଂସ ବାକ୍ୟେ ପୁରନ୍ଦର
ସୁଖ ପାଇ ଶୁକକୁ ଯାଚିଲେ ସେ ବର ।
ଶୁକ ବୋଇଲେ ମୁଁ ମାଗୁଛି ଏହି ବର
ଆଜ୍ଞା ଦିଅ ଜୀଉ ବନେ ଏ ବୃକ୍ଷବର ।
ଶୁକର ଦୃଢ଼ ଭକ୍ତି ଜାଣି ଶଚୀସାଇଁ
ଅମୃତ ସିଞ୍ଚି ଦେଲେ ବୃକ୍ଷକୁ ଜିଆଇ ।
ଶୁକର ସେହି କର୍ମ ସକାଶରୁ ବର୍ମ
ପ୍ରକାଶିଲା ଅନ୍ତେ ପାଇଲା ସ୍ୱର୍ଗ-ଗ୍ରାମ ।
ଇନ୍ଦ୍ର ଶୁକ ସମ୍ବାଦ ହେଲା ସମାପତ
କହଇ କୃଷ୍ଣସିଂହ ନରକୁଳ-ପତି ।



## ବ୍ରହ୍ମା ବଶିଷ୍ଠ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଦୈବ ପଉରୁଷ
ଏଥିରେ କେ ଅଟଇ କହ ତ ବିଶେଷ ।
ଭୀଷ୍ମ ବୋଇଲେ ଆହେ ବ୍ରହ୍ମା ବଶିଷ୍ଠଙ୍କ—
ସମ୍ବାଦକୁ ଶୁଣ ହେ ନୃପତି-ତିଳକ ।
ବଶିଷ୍ଠ ପଚାରିଲେ ମାନୁଷ ଦଇବ
ଏଥିରେ କିଏ ବଡ଼ କହ ଆହେ ଦେବ ।
ବ୍ରହ୍ମା ବୋଇଲେ ହେ ପୁରୁଷକାର ବିନା
ଦୈବ ସିଦ୍ଧ ନୋହେ ବଶିଷ୍ଠ ମହାମନା ।
କ୍ଷେତ୍ର ବୋଲି ପୁରୁଷକାରକୁଟି କହି
ଦଇବ ତହିଁ ମଧ୍ୟେ ବୀଜଟି ଅଟଇ ।
କ୍ଷେତ୍ର ବୀଜ ସଂଯୋଗୁ ଯେହ୍ନେ ଶସ୍ୟ ହୋଏ
ସେହିରୂପେ ପୌରୁଷ ଦଇବ ଋଷିବର୍ଯ୍ୟେ ।
ଶୁଭ ପାପକର୍ମ ଯେ ଯାହା ଆଚରଇ
ସେ ତାହା ଫଳ କରି ଅଙ୍ଗରେ ଭୁଞ୍ଜଇ ।
କରମ କରିଥିଲେ ରୂପ-ରତ୍ନ ମିଳେ
କର୍ମ ବିନା ଦଇବ ବଳେ ସେ ନ ମିଳେ ।

ପୌରୁଷ ଥିବାରୁ ଇନ୍ଦ୍ରାଦି ଦେବତାଏ
କ୍ରୀଡ଼ା କରୁଛନ୍ତି ସ୍ୱର୍ଗେ ବସିଣ ସଭଏ ।
ବ୍ରାହ୍ମଣର ଶୁଦ୍ଧି, କ୍ଷତ୍ର ଯୁଦ୍ଧର ବିକ୍ରମ
ବୈଶ୍ୟର ପୌରୁଷ, ଶୁଦ୍ରର ସେବା ଧର୍ମ ।
ଅଟନ୍ତି ଏ ସ୍ୱଭାବେ ସ୍ୱଭାବଜାତଙ୍କର
ବଶିଷ୍ଠ ମହର୍ଷି ଟିକ ଏ ଲକ୍ଷ୍ମୀଙ୍କର ।
ଅକର୍ମଶୀଳ କ୍ଲୀବ ଅଦାତା ନିଷ୍କ୍ରିୟ
ତପସ୍ୱୀ ଅସୁର ଯେତେ ନରଚୟ ।
ଅଛନ୍ତି ତାହାଙ୍କୁଟି ନ ଭଜେ ସମ୍ପତ୍ତି
ଜାଣ ଆହେ ବଶିଷ୍ଠଋଷି ମହାମତି ।
ତିନିଲୋକ ସର୍ଜନା ବିଷ୍ଣୁ କରିଛନ୍ତି
ସେହି ମଧ୍ୟ ବସିଟି ତପ କରୁଛନ୍ତି ।
ଦଇବକୁ ଅବଲମ୍ବନା କରି ଲୋକ
ସେ ତୁମ୍ଭ ହେଉଛୁ ସେ ବଡ଼ ଅବିବେକ ।
ଏ ମର୍ତ୍ତ୍ୟରେ ଯେତିକ କରେ ଶୁଭକର୍ମ
ତେତିକ ସ୍ୱର୍ଗରେଟି ପ୍ରକାଶଇ ଧର୍ମ ।
ମନୁଷ୍ୟ ହୋଇ ଯେବେ ଦେବ-ଦେହ ପାଏ
ତେତେବେଳେ ଦୁଃଖରେ କ୍ଷୀଣ କରେ କାୟେ
ଭାବୁଥାଏ ସୁକୃତ ଗଲେ ଦେବ-ପଦ
ଯିବ, ପୁଣି ପାଇବି ନରକ-ବିପଦ ।
କାହିଁପାଇଁ ଘଡ଼ିକ କ୍ଷଣିକ ସୁକର୍ମ
ନ କରି ପାରିଲି ଯା କଲି କି ଅକର୍ମ ।
କରମ ଯେତେ ଦିନକୁଟି କରିଥାଏ
ଯେତିକ ଦିନେ ସ୍ୱର୍ଗେ ବସି ସୁଖ ପାଏ ।
ଶତ୍ରୁ ମିତ୍ର ଦୁଇ ଏ ଆଶାଠାରେ ଅଛି
ଜାଣିବା ଜନ ଆତ୍ମାଟିକିଟି ଭଜୁଛି ।
ଯଯାତି ରାଜା ସ୍ୱର୍ଗପୁରୁଁ ପଡ଼ୁଥିଲେ
ନାତିଙ୍କ ପୁଣ୍ୟବଳେ ସ୍ୱର୍ଗରେ ବସିଲେ ।
ପୁରୁରବା ରାଜା ଯେ ଶୁଭକର୍ମ କରି
ବ୍ରାହ୍ମଣ-ଶାପୁ ତରିଗଲେ ସ୍ୱର୍ଗପୁରୀ ।
ଅଶ୍ୱମେଧ ଯାଗ କରିଣ ସଉଦାସ
ରାକ୍ଷସତନୁ ଛାଡ଼ି କଲେ ସ୍ୱର୍ଗବାସ ।
ଅଶ୍ୱତ୍ଥାମା ପରଶୁରାମ ନିଜ କର୍ମ—
ବଳରୁ ଜାଣ ନ ଦେଖିଲେ ସ୍ୱର୍ଗଗ୍ରାମ ।
ଶତ ଶତ ଯାଗକୁ ବସୁ କରୁଥିଲେ
ମିଥ୍ୟା କହିବାରୁଟି ପାତାଳେ ରହିଲେ ।

ବଳି ଧର୍ମ-ପାଶରେ ହୋଇକରି ବନ୍ଧ
ବିଷ୍ଣୁ ବଳେ ପାତାଳେ ହେଲେ ଯାଇ ରୁଦ୍ଧ ।
ବଇଶମ୍ପାୟନ ଯେ ମହର୍ଷି ହୋଇ
ବ୍ରାହ୍ମଣ ପ୍ରାଣ ନେଲେ କ୍ରୋଧ ହୃଦେ ଥୋଇ ।
ଦଇବ ଯେବେ ପୌରୁଷକୁ ହେଲା ବଡ଼
ତେବେ କର୍ମ ତେଜେ ଲୋକର ହେଲା ହୁଡ଼ ।
ବ୍ରାହ୍ମଣକୁ ଗାଈ ଦେବାରେ ନୃପ ରାଜା
ଏଣୁ ଅ ହେଲେ ଶାଶ ଥିରଏଟି ମଜ୍ଜା ।
ପାଣ୍ଡବଙ୍କ ରାଜ୍ୟକୁ ଦୁର୍ଯ୍ୟୋଧନ ନେଲେ
ପଉରୁଷ ଦେଖାଇ ପାଣ୍ଡବେ ଆଣିଲେ ।
କର୍ମରେ ଯୁକ୍ତ ହେଲେ ବଢ଼ଇ ଦଇବ
କହୁଛି ସତ ହେ ବଶିଷ୍ଠ ଋଷିଦେବ ।
ଏହା ଜାଣି ପୁରୁଷକାରକୁ ଆଚର
ଲଭିବ ତୁମ୍ଭେ ସବୁ ଫଳଙ୍କର ସାର ।
ଯୁଧିଷ୍ଠିର ବୋଇଲେ ଶୁଭକର୍ମ ଫଳ
କହ ତ ହେ ମୋ ଆଗେ ଭୀଷ୍ମ ଧର୍ମଶୀଳ ।
ଭୀଷ୍ମ ବୋଇଲେ ତାହା କହିବା ତୁମ୍ଭଙ୍କୁ
ଶୁଣ ହେ ନୃପବର ଦେଇଣ ମନକୁ ।
ଯେ ଯେଉଁ ଅବସ୍ଥାରେ ଶୁଭାଶୁଭ କର୍ମ
କରେ ସେ ଅବସ୍ଥା ସେ ଭୁଞ୍ଜେ ନରୋତ୍ତମ ।
କର୍ମକୁ ପ୍ରତି ପାଞ୍ଚଇନ୍ଦ୍ରିୟ ଆତ୍ମାଟି
ସାକ୍ଷୀ ହେବାକୁଟି ବିଧାତା ଅଛି ଗୋଟି ।
ବାଟ-ଶ୍ରାନ୍ତ ଲୋକକୁ ଦିଅଇ ହେ ଅନ୍ନ
ପୁଣ୍ୟଫଳ ତାହାର ହୁଅଇ ରାଜନ ।
ତପ କରି ଜଳରେ ଯେ ନର ଶୋଇଛି
ଉତ୍ତମ ଖଟ ଶେଯ ତାହାକୁ ମିଳୁଛି ।
ବକଳ ପିନ୍ଧିଛି ଯାହାର କଟିଦେଶ
ଆର ଜନ୍ମେ ପିନ୍ଧେ ସେ ସରୁ ଝୀନବାସ ।
ଯେଉଁ ତପୀ ଯୋଗ-ଆସନେ ବସିଥାଏ
ଆର ଜନ୍ମରେ ଦିବ୍ୟ ଆସନ ସେ ପାଏ ।
ଯେଉଁ ଲୋକ ଗୁଡ଼ ଗୋରସ ନ ଭୁଞ୍ଜଇ
ବ୍ରତ କରି ମଲେ ସୁନ୍ଦର ସେ ହୁଅଇ ।
ଆମିଷ ଯେଉଁ ଲୋକ କରଇ ଆହାର
ମରିଲେ ପଶୁ ପୁଣ ହୁଅଇ ତାହାର ।
ଚଳକୁ ମୁଣ୍ଡି କରି ଯେହୁ ତପ କରେ
ଯାହା ଇଚ୍ଛା କରେ ମିଳଇ ସେ ତାହାରେ ।

ଅତିଥିଙ୍କ ପାଦ୍ୟ ଆସନ ଦେଇ ପୂଜା
ଯେ କରଇ ତାହାଙ୍କୁ ପୂଜନ୍ତ ବଡ଼ୋଜା ।
ବୀର ଆସନ ବୀରଶଯ୍ୟା ଯେ କରଇ
ଅକ୍ଷୟଲୋକ ତା'ର ଅଧୀନ ହୁଅଇ ।
ତପସ୍ୟା କଲେ ଭୋଗ ବ୍ରହ୍ମଚର୍ଯ୍ୟେ ପ୍ରାଣ
ବଢ଼ଇ ଏବେ ଜାଣ ଯୁଧିଷ୍ଠିର ରାଣ ।
ଯେବଣ ଲୋକ ହିଂସା କଥାଟି ଛାଡ଼ୁଛି
ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ଆରୋଗ୍ୟ ସେ ପାଉଛି ।
ଫଳମୂଳ ଖାଇ ଯେ ତପେ ବଞ୍ଚେ ଦିନ
ମଲେ ନରମାନଙ୍କେ ହୋଏ ସେ ରାଜନ ।
ପତ୍ର ଖାଇ କରି ଯେ ତପ ଯେତୁ କରେ
ରମ୍ଭାକୁ ଯେମନ କରି ସ୍ୱର୍ଗରେ ବିହରେ ।
ଶାଗ ଖାଇ ତପସ୍ୟାକୁ ଯେ କରୁଅଛି
ମଲେ ଗାଈ ମହିଷି ପତି ସେ ହେଉଛି ।
ତପ କରଣ ଯେଉଁ ଲୋକ ପାଣି ପିଏ
ଭୃଗୁ ପାତକରେ ସେ ଅନ୍ନକୁ ନ ଖାଏ ।
ଏମାନେଟି ନୃପକୁଳରେ ଜନ୍ମ ହୋଇ
ରାଜା ହୁଅନ୍ତି ହେ ସନ୍ଦେହ ଏଥି ନାହିଁ ।
ତୃଷ୍ଣାକୁ ଯେଉଁ ଲୋକ ଛାଡ଼ିଅଛି ସୁଖ
ତା ସଙ୍ଗେ ରହିଥାଏ ପଛେ ରଖି ଦୁଃଖ ।
ପୂର୍ବକର୍ମ ଅନୁରୂପରେ ନରପତି
ଫଳ ଏ ଲୋକରେଟି ହେଉଛି ପ୍ରାପତି ।
ଗାଈ ପଛେ ବାଛୁରି ଗୋଡ଼ାଇଲା ପରି
ପୂର୍ବକର୍ମ ଅଛି ପ୍ରାଣୀଙ୍କି ଅନୁସରି ।
ଯେଉଁକାଳରେ ଯେ ଯେଉଁ କର୍ମ କରିଥାଏ
ସେହିକାଳରେ ଜାଣ ସେ କର୍ମ ସେ ପାଏ ।
ଅସ୍ଥି ଛାଡ଼ି ମାଂସ ଅଲଗା ଯେବେ ହୋଏ
ତେବେ ଲୋକ ଶାନ୍ତି ହେଉଥାଏ ମୋହେ ।
ବାୟୁ ପ୍ରୀତି ହେଲେ ପ୍ରୀତି ପ୍ରଜାପତି
ହୁଅନ୍ତି ହେ ଜାଣ ପାଣ୍ଡବ ନରପତି ।
ମାତାଙ୍କୁ ସେବା କଲେ ମହି ହୋଇ ପ୍ରୀତ
ଶସ୍ୟ ତାହାର ବଢ଼ାଅନ୍ତିଟି ବହୁତ ।
ବ୍ରାହ୍ମଣ ପ୍ରୀତି ହେଲେ ବ୍ରହ୍ମା ତୋଷ ବହି
ହିଅନ୍ତି ତାକୁ ଆଣି ଦେହରେ ମିଶାଇ ।
ମାତା ପିତା ବିପ୍ର ଆଦର ଯେ ନ କରେ
ପଡ଼ଇଟି ଜାଣ ସେ ଘୋର ନରକରେ ।

ଏହି ବଚନ ଶ୍ରୀଷ୍ମଙ୍କର କର୍ଣ୍ଣ ବେନି
ଯୁଧିଷ୍ଠିରଙ୍କର ସନ୍ତୋଷ ହେଲା ଶୁଣି ।
କରମଫଳ ହେଲା ଏହିଠାରେ ଶେଷ
କହଇ କୃଷ୍ଣସିଂହ ଧରାକୋଟ ଈଶ ।

—✱—

## ବାନର ଶୃଗାଳ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆହେ ରଥୀଶିଖ
ନମ୍ରଅଛ ତୁମ୍ଭେ ଦେଖିଲେ କାହାମୁଖ ।
ବିପତ୍ତିରେ କେଉଁ କଥାରେ ରହେ ମନ
ଏହା କହ ଯେବେ ମୁଁ ତୁମ୍ଭର ଅଧୀନ ।
ଯାହାଠାରେ ତୁମ୍ଭର ହେଉଥାଏ ସ୍ପୃହା
ତାହା ଶୁଣିବାକୁ ମୋ ବଢ଼ୁଛି ଉତ୍ସାହ ।
ଭୀଷ୍ମ ବୋଇଲେ ଆହେ ଯେ ବେଦ ପଢ଼ୁଛି
ସଭା ମଧ୍ୟରେ ବସି ସତ୍ୟ ଯେ କହୁଛି ।
ବିଦ୍ୟା ଗୁଣ ଜ୍ଞାନେ ଅଟନ୍ତି ଯେ ସମ୍ପୂର୍ଣ୍ଣ
ବ୍ରାହ୍ମଣକୁ ଦେଉଅଛନ୍ତି ଯେତୁ ଅନ୍ନ ।
ସେହିମାନଙ୍କଠାରେ ମୁହିଁ ଅଛି ସ୍ପୃହା
କରୁଅଛଇ ଜାଣ ଆହେ ନରନାହା ।
ଶୂର ବୀର ପ୍ରୀତିକ ବେଶୀ ଦାନ ଶୂର
ଶଏକରେ ଗୋଟିଏ କଷ୍ଟ ଯେ ଥିବାର ।
ବ୍ରାହ୍ମଣ ଜନ୍ମ ଯେବେ ପାଇଥାନ୍ତି ମୁହିଁ
ଧନ୍ୟ ବୋଲନ୍ତି ହେ ସନ୍ଦେହ ଏଥି ନାହିଁ ।
ତୁମ୍ଭରୁଁ ପ୍ରିୟ ହୋଇ ମୋର ସଂସାରେ
କେହି ନାହିଁ ଏହା ମୁଁ କହୁଛି ସତ୍ୟରେ ।
କେବଳ ବ୍ରାହ୍ମଣଙ୍କୁ ଦେଖିଲେ ମୋ ବୁଦ୍ଧି
ନିର୍ମଳି ରହଇ ହେ ରାଜନ ଅବଧି ।
ବ୍ରାହ୍ମଣ ପରି ମୋର ନୁହେ କେହି ପ୍ରିୟ
ଜାଣ ଆହେ ପାଣ୍ଡୁନୃପଙ୍କ ତନୟ ।
ଅଳପ କରି ମୁଁ ବ୍ରାହ୍ମଣେ ଅପରାଧ
କରିବାର ଜାଣି ନାହିଁ ହେ ନୃପସିଦ୍ଧ ।
ମୋତେ ଯାହା ଲୋକେ ବ୍ରାହ୍ମଣ୍ୟ ବୋଲଥାନ୍ତି
ଏଥିରେ ମୁହିଁ ଜାଣ ହେଉଛି ତୃପତି ।
ଯେଉଁ ରୂପରେ ସ୍ତ୍ରୀଙ୍କର ପତି ଗତି
ସେରୂପେ କ୍ଷତ୍ରିୟର ବ୍ରାହ୍ମଣ ଅଟନ୍ତି ।
କ୍ଷତ୍ର ପୁତ୍ରକୁ ଶଏ ବରଷ ହୋଇଥିବ
ଦଶବରଷର ଦ୍ୱିଜକୁ ସେ ନମିବ ।

ରଜ୍ଞ ସନ୍ତ ସତ୍ୟବନ୍ତ ଦ୍ୱିଜଙ୍କୁ ଦେଖି
ସୁଜନେ ହେବ ସେ ହେଉଥିବ ସୁଖୀ ।
ଗରୁଡ଼ ଯେଉଁରୂପେ ରଖେ ଗାଈଚୟ
ସେହିରୂପେ ଦ୍ୱିଜଙ୍କୁ ରଖିବ କ୍ଷତ୍ରୀୟ ।
ବ୍ରାହ୍ମଣଙ୍କର କାର୍ଯ୍ୟ ପଡ଼ିବଟି ଯେବେ
ପ୍ରାଣ ନ ରଖିବ ଅଙ୍ଗରେ ଜାଣ ତେବେ ।
ଯୁଧିଷ୍ଠି ବୋଇଲେ ବ୍ରାହ୍ମଣଙ୍କୁ ଦେଲେ
ନ ଦେଲେ କେଉଁ ଲୋକ ହୋଏ କହ ଭଲେ
ଭୀଷ୍ମ ବୋଇଲେ ଆହେ ବ୍ରାହ୍ମଣଙ୍କୁ ଦେବ
ବୋଲି ବୋଲିଥାଏ ନ ଦିଏ ଯେହୁ ଭବ ।
ତାହାର ସବୁ ପୁଣ୍ୟପାକ ଯାଏ ନାଶ
ଅନ୍ତକାଳେ ହୁଅଇ ନରକଟି ବାସ ।
ସହସ୍ରେ ଶ୍ୟାମବର୍ଣ୍ଣ ଘୋଡ଼ା ଯେବେ ଦିଏ
ତେବେ ସେ ପାପରୁଟି ଲୋକ ତରିଯାଏ ।
ଏ ବିଷୟେ ଶୃଗାଳ-ବାନର ସମ୍ବାଦ
ଅଛି ତା କହୁଥାଇଁ ଶୁଣ ବହି ମୋଦ ।
ମଡ଼ାଟାଏ ଯେ ଦେହଯାକକୁ ଫୁଲାଇ
ମଶାଣି ଭୂମି ମଧ୍ୟେ ଥିଲା ଲମ୍ବ ହୋଇ ।
କୋଶେ ପରିଯନ୍ତେ ସେ ମଡ଼ାର ଦୁର୍ଗନ୍ଧ
ଗନ୍ଧ ନାକପୁଡ଼ାକୁ କରୁଥିଲା ରୁଦ୍ଧ ।
ବିଲୁଆ ସେ ବାସନା ଗନ୍ଧେ ହୋଇ ବାଇ
ଧାଇଁଲା ସେ ମଡ଼ାକୁ ରେକଟିବା ପାଇଁ ।
ମଡ଼ାର ସମୀପରେ ଯହୁଁ ପାଇଗଲା
ବଳେ ତା'ର ଜଙ୍ଘରୁ ଲାଳ ଜନମିଲା ।
ସେ ଲାଳକୁ ଶୋଷକ-ଦେଇଣ ବିଲୁଆ
ମଡ଼ାମାଂସ ଗିଳଣ ଫୁଲାଇଣ ହିଆ ।
ଏହି କାଳେ ବାନରଟାଏ ତହିଁ ଆସି
ବିଲୁଆକୁ କଥା କହିଲା ହସି ହସି ।
ଏ ମଡ଼ା ମାଉଁସ କରୁଛି ବଡ଼-ବାସ
କରୁପରେ ବିଲୁଆ କରୁଛୁ ତୁ ଗ୍ରାସ ।
ଦେଖୁଥାଇ ତ ସିଂହ ଗୁଡ଼ିକ ଫୁଲାଇ
ହାଣିକ ମାରି ସଜ ମାଉଁସ ଖାଅଇ ।
ତୁ ବିଲୁଆ ହେବାରୁ ପୋଚରା ମାଉଁସ
ଖାଉଛୁ କରି ନ ପାରିଣ ଜୀବ ନାଶ ।
ବିଲୁଆ ବୋଇଲା ମୁଁ ବ୍ରାହ୍ମଣଙ୍କୁ ଦେବ
ବୋଲିଥିଲି ପୁଣି ନ ଦେଲି କସ ଭବ ।
ଏହି ସକାଶରୁ ମୁଁ ହୋଇଲି ବିଲୁଆ
ଖାଉଅଛି ଜାଣ ହେ ମାଉଁସ ପୁଲିଆଁ ।
ଏହା ଶୁଣି ବାନର ହୋଇଣ ମଉନ
ମନେ କଲା କରମ ଅଟଇ ପ୍ରଧାନ ।
ଆହେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ଆଗରେ
ଏହା କହୁଥିଲେ ଦ୍ୱିଜେଟି ସଭାଗରେ ।
ତାଙ୍କ ପାଖେ ବସି ତ ଶୁଣିଥିଲି ମୁହିଁ
ତୁମ୍ଭେ ପଚାରିବାରୁ ଏବେ କହିଲଇଁ ।
ବ୍ରାହ୍ମଣଙ୍କୁ ଦେବ ବୋଲିଣ ଯେ ନ ଦିଏ
ସବୁ ସୁକୃତ ତା କ୍ଷଣକେ ନାଶ ଯାଏ ।
ବ୍ରାହ୍ମଣ ସନ୍ତୋଷରେ ଆୟୁ ଯଶ ପୁଣ୍ୟ
ବଢ଼ି ପୂର୍ଣ୍ଣ ହୁଅଇ ଘରେ ଧନ ଧାନ୍ୟ ।
ବୈଶାଖ-ସୂର୍ଯ୍ୟ ଅଗ୍ନି ପରି ତେଜରାଜ
ରହିଥାଏ ବ୍ରାହ୍ମଣ ଦେହେଟି ବିରାଜ ।
ଏହା ଜାଣି ବ୍ରାହ୍ମଣ ପୂଜା ପ୍ରତିଦିନ
କରୁଥିବ ଶକ୍ତିକ ଗୃହିଁଟି ରାଜନ ।
ବାନର ଶୃଗାଳ ସମ୍ବାଦ ହେଲା ଶେଷ
କହେ କୃଷ୍ଣସିଂହ ନରେଶ ବହି ତୋଷ ।

—❋—

## ଶୂଦ୍ରର ଧର୍ମଶିକ୍ଷା

ଯୁଧିଷ୍ଠିର ବୋଇଲେ ଜାତି ଊଣା ଲୋକ-
ଗଣେ ଉପଦେଶ ଦିଏ ଯେ ଗୁଡ଼ ଦକ ।
ଧରମ କଥା ଆହେ ଭୀଷ୍ମ ମହାମତି
କହ ତାହାରଟି ହୁଅଇ କେଉଁ ଗତି ।
ଭୀଷ୍ମ ବୋଇଲେ ହେ ଋଷିଏ ମୋତେ ଯାହା
କହିଅଛନ୍ତି ତାହା ଶୁଣ ନୃପ-ନାହା ।
ଜାତିହୀନ ଲୋକର ହୁଅଇ ଯେ ଗୁରୁ
ନରକ ତାକୁ ଦେଖି ହୁଏ ଜାଣ ଖୁରୁ ।
ହିମାଳୟ ପାଶରେ ଅଛି ବ୍ରହ୍ମାଶ୍ରମ
ତହିଁ ଯାହା ହୋଇଛି ନୃପତି-ଉତ୍ତମ ।
ତାହା ତୁମ୍ଭ ଆଗରେ କହିବା ବଡ଼ାଇ
ତୁମ୍ଭଙ୍କୁ ନ କହିବା-କଥା ତ ମୋ ନାହିଁ ।
ସେ ବ୍ରହ୍ମ ଆଶ୍ରମରେ ଯତି ପନ୍ତ ପନ୍ତ
ବସିଣ ନିତି ବେଦପାଠକୁ ପଢ଼ନ୍ତି ।
ଦଇବେ ଶୂଦ୍ରେ ଜଣେ ଆସି ସେହିଠାକୁ
ନମସ୍କାର କଲା ସେ ବ୍ରାହ୍ମଣମାନଙ୍କୁ ।

ଦେବତା ପରି ମୁନିଙ୍କର ରୂପ ଦେଖି
ସେ ଶୂଦ୍ର ଆନନ୍ଦରେ ହୋଇ ମହାସୁଖୀ ।
ସେ ମୁନିମାନଙ୍କର ଶ୍ରେଷ୍ଠ ଯେଉଁ ମୁନି
ତାହାଙ୍କୁ ସେବା କଲା ହୋଇଣ ଦଣ୍ଡି ମ ।
ତୁମ୍ଭ ଧର୍ମ ଦେଖି ଧରମେ ମୋର ମନ
ହେଉଛି, ଦୀକ୍ଷା ଦିଅ ମୋତେ ତପୋଧନ ।
ସେ ମୁନି ବୋଇଲେ ଶୂଦ୍ରଜନ୍ମ ପାଇ
ଦୀକ୍ଷାଟିରେ ଶରଧା କରୁ କାହିଁପାଇଁ ।
ତିନିବର୍ଣ୍ଣ ଯାକକୁ ସେବା ଯାଇ କର
କାମନା ତେବେ ସିଦ୍ଧ ହୋଇବ ତୋହର ।
ଏହା ଶୁଣିଣ ଶୂଦ୍ର ବଦନ ଶୁଖାଇ
ତାଙ୍କଠାରୁ ସେକ୍ଷଣି ଗଲା ଚୋର ହୋଇ ।
ଖଣ୍ଡିଦୂର ଯାଇ ଆଶ୍ରମଟିଏ କଲା
ତା ମନକୁ ବସି ତପସ୍ୟା ଆଚରିଲା ।
ହୋମ ଦାନ କରି ଦେବଙ୍କୁ ଦେଲା ବଳି
ନୋହିଲା ସେ କାହାରି ସଙ୍ଗେ ବାକ-କଳି ।
ଅତିଥିଏ ଆସିଲେ ତାହା ଆଶ୍ରମକୁ
ଦେଲା ଫଳମୂଳ ତାହାଙ୍କୁ ଖାଇବାକୁ ।
କେତେ କାଳ ଅନ୍ତେ ସେଠାକୁ ମୁନିଜଣେ
ଆସିଲେ ବାଟ ପଡ଼ିଥିଲା ବନେ ବନେ ।
ଋଷିଙ୍କି ଦେଖି ଶୂଦ୍ର ହୋଇ ଅତି ତୋଷ
ପୂଜା କଲା ତାହାଙ୍କୁ ହୋଇ ତାଙ୍କ ଦାସ ।
ଋଷି ତା'ର ସେବାରେ ମହାସୁଖୀ ହୋଇ
ଗଲେ ହେଲେ ଆସୁଥାଆନ୍ତି ପୁଣି ଧାଇଁ ।
ଦିନେ ସେ ଶୂଦ୍ର ମୁନିବରଙ୍କୁ ବୋଇଲା
ପିତୃକାର୍ଯ୍ୟ କରିବାକୁ ମୋ ମନ ହେଲା ।
ମୋତେ ଅନୁଗ୍ରହ କର ହେ ମୁନିବର
ଯେରୂପେ ପିତୃକାର୍ଯ୍ୟ ହୋଇବ ମୋହର ।
ମୁନି ତାହା ଶୁଣି ବୋଇଲେ ତୋର ମନ
ଯାହା ହେଉଛି ତାହା କରିବଟି ଜାଣ ।
ଏହା ଶୁଣି ସେ ଶୂଦ୍ର ଗାଧୋଇ ଆସିଲା
କୁଶ ଆଣିଣ ମୁନିଙ୍କ ଆଗରେ ବସିଲା ।
ଦକ୍ଷିଣକୁ ସେ କୁଶ ଆଗ କରି ଶୂଦ୍ର
ବୋଇଲା ଆହେ ମୁନି ବାଞ୍ଛା ମୋର ଭଦ୍ର ।
ମୁନି ବୋଇଲେ ଆହେ ଦକ୍ଷିଣକୁ କୁଶ
ଅଗ କରି ଥୋଇଲେ ହୁଏ ବଡ଼ ଦୋଷ ।

ପୂର୍ବକୁ ଅଗ କରି କୁଶ ଦିଅ ଥୋଇ
ତୁହି ମଧ୍ୟ ବସ ଉତ୍ତରମୁଖ ହୋଇ ।
ସେହିରୂପେ ଶୂଦ୍ର କରନ୍ତେ ନିରପତି
ମୁନି ଦେଲେ ବେଦମନ୍ତ୍ରକୁ ବହି ପ୍ରୀତି ।
ସେ ବେଦମନ୍ତ୍ର-ବଳେ ପିତୃଙ୍କର କାର୍ଯ୍ୟ
ଶୂଦ୍ର କଲା ହୃଦୟମଧ୍ୟୁ ଛାଡ଼ି ଲାଜ ।
ଶୂଦ୍ରକୁ ପିତୃକାର୍ଯ୍ୟ କରାଇ ସେ ଋଷି
ହୋଇଲେ ଯାଇ ତହୁଁ ନିଜସ୍ଥାନ ବାସୀ ।
କେତେ କାଳ ଗଲା ଉତ୍ତାରୁ ଶୂଦ୍ର ଜୀବ
ଅଭାବ କଲେ ଜୀବମାନଙ୍କେ ଯେ ଧବ ।
ସେହି ସୁକୃତର ବଳରେ ସେହି ଶୂଦ୍ର
ରାଜା ହୋଇ ମହୀରେ ଅରଜିଲା ଭଦ୍ର ।
ଶୂଦ୍ରକୁ ଉପଦେଶ ଦେବା ମୁନି ମତି
ପୁରୋହିତ ହେଲେ ପାଣ୍ଡବ-ଦଣ୍ଡଧାରୀ ।
ଦୁହେଁ ଯାକ କର୍ମରେ ହୋଇ ବିଦ୍ୟାବନ୍ତ
ଏ ଜଗତ ଲୋକ ମଧ୍ୟରେ ହେଲେ ଖ୍ୟାତ ।
ଦ୍ୱିଜ ଜ୍ୟୋତିଃଶାସ୍ତ୍ର ଅଥର୍ବବେଦ ଜାଣି
ସଭାମଧ୍ୟେ ବାଣୀ କହିଲେ ହୋଇ ଠାଣି ।
ଯେଉଁ ଶୂଦ୍ର ଜନମ ରାଜା ହୋଇଥିଲେ
ସେହି ବ୍ରାହ୍ମଣକୁ ସେ ପୁରୋହିତ କଲେ ।
ଧର୍ମରେ ରାଜ୍ୟଟିକ କରିଣ ପାଳନା
ପୂର୍ଣ୍ଣ କରିଲେ ପ୍ରଜାମାନଙ୍କ କାମନା ।
ଧର୍ମକାର୍ଯ୍ୟଙ୍କରେ ସେ ପୁରୋହିତଙ୍କର
କରମ ଦେଖିଣ ହସିଲେ ନରବର
ପୁରୋହିତ ରାଜାଙ୍କ ହସିବାର ଜାଣି
କ୍ରୋଧରେ ହେଲେ ଦେହ ଶିରଯାକ ଟାଣି ।
ଏକାନ୍ତରେ ରାଜାଙ୍କ ସଙ୍ଗତେ ବସିଲେ
ଅନୁକୂଳ କଥା କହିଣ ଭୁଲାଇଲେ ।
ରାଜାଙ୍କ ପ୍ରସନ୍ନ ଜାଣି ସେ ପୁରୋହିତ
ମାଗିଲେ ମୋତେ ବର ଦିଅ ନୃପସୁତ ।
ରାଜା ବୋଇଲେ ହେ କି ବର ଅଛି ଇଚ୍ଛା
ମାଗ ତା ତୁମ୍ଭଙ୍କୁ ଦେବି ମୁଁ ମୁନି ବଚ୍ଛା ।
ପୁରୋହିତ ବୋଇଲେ ସତ୍ୟ କଲେ ତୁମ୍ଭେ
ଗୋଟିଏ ବର ଏକା ମାଗିବଇଁ ଆମ୍ଭେ ।
ରାଜା ସେହିକ୍ଷଣି ବୋଇଲେ ସତ୍ୟ ସତ୍ୟ
କଲି ମାଗ ମୋତେ ହେ ବର ପୁରୋହିତ ।

ପୁରୋହିତ ବୋଇଲେ କର୍ମ କଲାବେଳେ
ହସିଲ କିଆଁ ମୋତେ ଦେଖି ତୁମ୍ଭେ ତୋଳେ
ଏହି ସକାଶରୁ ପାଉଛୁ ମହା ଲାଜ
ନ ହସିବ କେବେ ମୋତେ ହେ ମହାରାଜ ।
ହସିବ କାରଣ ତୁମ୍ଭର ଥିଲେ ନୃପ ।
ତା କହି ମୋହର ଛଡ଼ାଅ ହୃଦ ତାପ ।
ରାଜା ବୋଇଲେ ମୁହିଁ ପୂର୍ବେ ଶୂଦ୍ର ହୋଇ-
ଥିଲି ତୁମ୍ଭେ ତ ହୋଇଥିଲ ଦ୍ୱିଜସାଇଁ ।
ତୁମ୍ଭ ଆମ୍ଭର ଦୁହିଙ୍କର ହେଲା ସାଙ୍ଗ
ତୁମ୍ଭ ମନ୍ତ୍ରେ ପବିତ୍ର କରି ମୁହିଁ ଅଙ୍ଗ ।
ମୋର ପିତୃକୁଳମାନଙ୍କୁ ପିଣ୍ଡ ଦେଲି
ଏହି ସୁକୃତରେ ମରନ୍ତେ ରାଜା ହେଲି ।
ମୋତେ ଉପଦେଶ ଦେବାରୁ ଆପଣ
ହୋଇଲେ ପୁରୋହିତ କୁଳରେ ବ୍ରାହ୍ମଣ ।
ତୁମ୍ଭେ କର୍ମ କଲାବେଳେ ମୋର ସେହି କଥା
ପଡ଼ିବାକ୍ଷଣି ହସ କରେ ପେଟ-ବ୍ୟଥା ।
ଏବେ ମୁଁ ବୋଲୁଅଛୁ ପୁରୋହିତ କର୍ମ
ଛାଡ଼ିଦିଅ ହେ ବିପ୍ର ନ ଅର୍ଜ ଅଧର୍ମ ।
ଯେତେ ଧନ ଇଚ୍ଛା ହେଉଛି ଘେନିଯାଅ
ତପ କରି ଦେହର ପାତକ ଛଡ଼ାଅ ।
ରାଜା ଏହିରୂପେ ପ୍ରସନ୍ନ ବାଣୀ କହି
ଦିଅନ୍ତେ ସେ ବ୍ରାହ୍ମଣ ମହାତୋଷ ବହି ।
ରାଜାଠାରୁ ବହୁତ ଧନ ରତ୍ନ ନେଲେ
ଘରଯାକୁ ତା ଖାଅ ବୋଲିଣ କହିଲେ ।
ଏ ବାହାରେ କହିଲେ ଆଗୋ ଚନ୍ଦ୍ରମୁହିଁ
ତୀର୍ଥବ୍ରତ କରିଣ ଯାଉଅଛୁ ମୁହିଁ ।
ତୁ ମୋର ପ୍ରୀତି ଗୁଣି ନୋହିବୁଟି କ୍ଷୀଣ
ଦେଇ ତ ଗଲି ତୋତେ ଖାଇବାକୁ ଧନ ।
ଏହା ଶୁଣି ବ୍ରାହ୍ମଣୀ ବୋଲେ ଧନ ମୋତେ
ଯେତେ ଦେଲେ ତୁମ୍ଭେ ତ ପଡ଼ୁଥିବ ଛତେ ।
ଦିନ ଦିନକର ହେ ତୁମ୍ଭର ପିରତି
ସୁମରିଲେ ତ ମୁହିଁ ମରୁଥିବି ନିତି ।
ଘରଯା ବାଣୀ ଶୁଣି ପୁରୋହିତ ଦ୍ୱିଜ
ବୋଇଲେ ସଖି ଆରେ ମଲଟି ମୁଁ ଆଜ
ତୋତେ ଛାଡ଼ି ଯାହା ମୁଁ ଯାଉଛୁ ତୀର୍ଥକୁ
ଏଥୁଁ ଦୁଃଖ ଅଛି କି କହିବି ତୁମ୍ଭଙ୍କୁ ।

ଏହିରୂପେ ସେ ପ୍ରିୟ ପ୍ରିୟ ହୋଇ କଥା
ରହିଲେ ତୁଷ୍ଣୀ ହୋଇ ପୋତି ଦେଇ ମଥା ।
ପୁରୋହିତ ତୀର୍ଥ ବ୍ରତକୁ କରିଗଲେ
ପୁରୋହିତିଆଣୀ ଯେ ଘରରେ ରହିଲେ ।
ତୀର୍ଥମାନଙ୍କରେ ସେ ପୁରୋହିତ ଦାନ
କରିଦେଲେ ଗାଈ ରତନ ବସ୍ତ୍ର ଧନ ।
ପୂର୍ବଜନ୍ମେ କର୍ମ କରିବା ଆଶ୍ରମରେ
ପ୍ରବେଶ ହୋଇ ସେ ବ୍ରାହ୍ମଣ ସୁମନରେ ।
ତପ ଜପ କରି ଛଡ଼ାଇ ପାପଯାକ
ଦେହ ଛାଡ଼ିଦେଇ ପାଇଲେ ସ୍ୱର୍ଗଲୋକ ।
ଆହେ ଯୁଧିଷ୍ଠିର ଶୂଦ୍ରକୁ ଉପଦେଶ
ଦେବାରୁଟି ବ୍ରାହ୍ମଣ ଧର୍ମ ହେଲା ନାଶ ।
ବ୍ରାହ୍ମଣ ଶୂଦ୍ରଟିକି ଉପଦେଶ ଦେଲେ
ନରକରେ ଯାଇ ପଡ଼ଇ ଜାଣ ଭଲେ ।
କ୍ଷତ୍ରିୟ ବୈଶ୍ୟ ଦୁଇ ବର୍ଣ୍ଣର ବ୍ରାହ୍ମଣ
କରମ କଲେ ଦୋଷ କିଛି ନାହିଁ ଜାଣ ।
ଏ ଦୁହେଁ ଜାଣ ଦଶକରମରେ ବ୍ରତ
ହୋଇକରି କନ୍ଧେ ବହନ୍ତି ଉପବୀତ ।
ଏ ଯେନ ଦ୍ୱିଜନ୍ମ କ୍ଷତ୍ରିୟ ବୈଶ୍ୟଜାତି
ହୁଅନ୍ତି, ଜଗତରେ ଦ୍ୱିଜ ବୋଲାଅନ୍ତି
ଦ୍ୱିରୁକ୍ତି କଥା ଭୟରେ ମୁନିମାନେ
ମଉନବ୍ରତ କରିଥାନ୍ତି ଅବଚ୍ଛିନ୍ନେ ।
ନିକୃଷ୍ଟ ଲୋକ ଉପଦେଶ ପୁଚ୍ଛୁଥିଲି
ତାହା ତ ମୋହଠାରୁ ନୃପତି ଶୁଣିଲି ।
ଆଉ କି ଇଚ୍ଛା ଥିଲେ ପଚ୍ଚର ନୃପତି
କହିବାକୁ ଇଚ୍ଛା ହେଉଛି ମୋର ମତି ।

—※—

## ଲକ୍ଷ୍ମୀ—ରୁକ୍ମିଣୀ ସମ୍ବାଦ

ଯୁଧିଷ୍ଠିର ବୋଇଲେ କିରୂପେ ପୁରୁଷ
ସ୍ତ୍ରୀଏ ହେଲେ ଲକ୍ଷ୍ମୀ କରନ୍ତି କନ୍ଧେ ବାସ ।
ଏହା ମୋର ଆଗେ କହ ତ ପିତାମହ
ଶୁଣିବାକୁ ମୋହର ବଳଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ନାରାୟଣ ଦେବ
କୋଳେ ଧରି ଲକ୍ଷ୍ମୀ ଦେବୀଙ୍କ ବହି ଭାବ ।

ଦ୍ୱାରକାରୁ କୃଷ୍ଣଙ୍କ ପାଶକୁ ଆସିଲେ
କୃଷ୍ଣ ତାହାଙ୍କୁ ଦେଖି ବିଧିରେ ପୂଜିଲେ ।
ହୀରାବନ୍ଧା ଦନ୍ତପଲଙ୍କଟିକ ନେଇ
ଦେଲେ ଯେ କୃଷ୍ଣ ତାଙ୍କୁ ବସିବାର ପାଇଁ ।
ସେ ପଲଙ୍କେ ବସନ୍ତେ ଲକ୍ଷ୍ମୀନାରାୟଣ
ରୁକ୍ମିଣୀ ସେହିକାଳେ ପୁଛିଲେ ବଚନ ।
ଲକ୍ଷ୍ମୀଦେବୀଙ୍କର ବଦନକୁ ଅନାଇଁ
ତୁମ୍ଭେ କା'ଠାରେ ଅଛ କହ ତା ବତାଇ ।
ଲକ୍ଷ୍ମୀ ବୋଇଲେ ଆଗେ ଯାହା ପଚାରୁଛ
ତା କହିବା ଶୁଣ ହୃଦୟ କରି ସ୍ୱଚ୍ଛ ।
ସତ୍ୟବାଦୀ ଆଳସ୍ୟହୀନ ଅକ୍ରୋଧନ
କାର୍ଯ୍ୟଦକ୍ଷ କୃତଜ୍ଞ ଜିତେନ୍ଦ୍ରିୟ ଜନ ।
ମାନଙ୍କର ନିକଟରେ ଥାଏ ମୁଁ ନିରତେ
ମୋତେ ସେ ରଖିଥାନ୍ତି ଏକା ଏ ବରତେ
ଶଙ୍କରକାରୀ ଚୌର କୃତଘ୍ନ ଉଦ୍‌ବୃତ
ଅକର୍ମଶୀଳ ନାସ୍ତିକ ନିଷ୍ଠୁର ଚଣ୍ଡ ।
ଏମାନଙ୍କଠାରେ ନ ରହେ ମୁହିଁ କେବେ
ମୋତେ ସେ ରଖି ନ ପାରନ୍ତି ଜାଣ ଭବେ ।
ତେଜ ବଳ ବୁଦ୍ଧି ଟି ଊଣା ଯାହାଙ୍କର
ନାହିଁଟି ସମ୍ବନ୍ଧ ଗୋ ତାଙ୍କର ମୋହର ।
ହୃଷ୍ଟ ରୁଷ୍ଟ ଅଳପକେ ଯେ ହୋଇଥାନ୍ତି
ତାହାଙ୍କଠାରେ କେବେ ନ କରେ ମୁଁ ପ୍ରୀତି ।
ସ୍ୱଧର୍ମସେବୀ କୃତଆତ୍ମା କ୍ଷମାପର
ଲୋକଙ୍କୁ ମୁଁ ଛାଡ଼ି ନ ପାରେ ମନେକର ।
କୁଳୀନା ସତ୍ୟବନ୍ତୀ ସୁପତିବ୍ରତା—
ନାରୀଠାରେ ଥାଏ ମୁଁ ନ କରଣ ଚିନ୍ତା ।
କଳିପ୍ରିୟା ଲଜ୍ଜାବିହୀନା ଭର୍ତ୍ତା ଦୋଷୀ
ନାରୀଙ୍କ ମୁଁ ଦେଖିଲେ ହେଉଥାଏ ଦ୍ୱେଷୀ ।
କୃଷ୍ଟି ମନ୍ତ୍ର-ନାରଦ ଯାଗ ବିଭୂଷଣ
କନ୍ୟା ଗୋଷ୍ଠ ନକ୍ଷତ୍ର ସବ୍ୱଧଯାନ ।
ମତ୍ତଗଜ ବୃଷଭ ପୁଷ୍କରିଣୀ ନୃପ
ଏମାନଙ୍କେ ଥାଏ ମୁଁ ଦେହୁଁ ଛାଡ଼ି ତାପ ।
ଯେଉଁ ଘରେ ଦେବତା ବ୍ରାହ୍ମଣ ଗାଈଙ୍କି
ପୂଜନ୍ତି ବହ୍ନକରି ଅତ୍ୟନ୍ତ ପ୍ରୀତିକି ।
ସେହି ଘରରେ ମୋର ଅଟଇଟି ସ୍ଥାନ
ରୁକ୍ମିଣୀ ରାଣୀ ଗୋ ନ ଭେଦ ମନେ ଆନ ।

ବୃତ୍ତିବନ୍ତ ଯେବେ ଯେ ଯାହା ଧର୍ମ କରି—
ଥିଲେ ତାହାଙ୍କୁ ମୋହର ଦୟା ଥାଏ ପୂରି ।
ଭାବରେ ସବୁଠାରେ କରିଛି ସଞ୍ଚାର
ଭାରିଯା ମୁଁ ଅଟଇ ନାରାୟଣଙ୍କର ।
ଶେଷ ହେଲା ରୁକ୍ମିଣୀ ଲକ୍ଷ୍ମୀଙ୍କ ସମ୍ବାଦ
କହେ କୃଷ୍ଣସିଂହ ନୃପତି ବହି ମୋଦ ।

—*—

## ଭଙ୍ଗାସ୍ୱନ- ସମ୍ବାଦ

କଥା ଶେଷରେ ଯୁଧିଷ୍ଠିର ନରମଣି
ପଚାରିଲେ ଭୀଷ୍ମଙ୍କୁ ଲାଜହୀନ ବାଣୀ ।
ସ୍ତିରି ତୁଲେ ପୁରୁଷ ହୋଇଲେ ସଂଯୋଗ
କାହା ସୁଖ ଅଧିକ କହ ମହାଭାଗ ।
ଭୀଷ୍ମ ବୋଇଲେ ପୂର୍ବେ ଭଙ୍ଗାସ୍ୱନ ରାଜା
ପୁତ୍ର ପାଇଁ ଯାଗରେ ବଳାଇଲେ ମଜ୍ଜା ।
ଇନ୍ଦ୍ରଦ୍ୱେଷ୍ଟ ଅଗ୍ନିଷ୍ଟୁତ ଯାଗ ସେ କଲେ
ଇନ୍ଦ୍ର ତ ଜାଣି ତାଙ୍କ ଛିଦ୍ରକୁ ଜଗିଲେ ।
ଭଙ୍ଗାସ୍ୱନ-ରାଜା ଅଚ୍ଛିଦ୍ରେ କଲେ ଯାଗ
ନ ପାଇଲେ ସେ ଛିଦ୍ରେ ଇନ୍ଦ୍ର ମହାଭାଗ ।
ଶତ ପୁତ୍ରଙ୍କୁ ଜାତ କରିଣ ସେ ରାଜା
ଆନନ୍ଦକୁ ନେଇ ଥୋଇଲେ ନିଜ ମଜ୍ଜା ।
କେତେ କାଳ ଅନ୍ତେ ସେ ନୃପତି ମୃଗୟା
କରି ଗଲେ ଜୀବରୁ ଛାଡ଼ିଦେଇ ଦୟା ।
ଇନ୍ଦ୍ର ଯେ ଛିଦ୍ର ନୃପ ମୋହ କରାଇଲେ
ଏଣୁ ଏକାଘୋଡ଼ାକେ ସେ ନୃପ ବୁଲିଲେ ।
ବୁଲୁଁ ବୁଲୁଁ ତୃଷାରେ ଆର୍ତ୍ତ ନୃପଶିଖ
ହୁଅନ୍ତେ ଦଇବର ହେଲେ ସର ପାଖ ।
ଘୋଡ଼ାକୁ ପାଣି ଦେଇ ଗଛେ ବାନ୍ଧିଦେଲେ
ନିଜେ ଯାଇ ସେ ସର ଭିତରେ ବୁଡ଼ିଲେ ।
ଗାଧୋଇ ପୋଛିପୋଛି ହୋଇନ୍ତେ କୂଳେ ଆସି
ହେଲେ ସେ ଉତ୍ତମ ସୁନ୍ଦରୀ ସୁରୁକେଶୀ ।
ମନରେ କଲେ ସ୍ତିରି ହୋଇକରି ଅଶ୍ୱ
ଚଢ଼ିବି କିରୂପେ ଆଉଁଶି କରେ ନିଶ ।
ମୋ ଲୋକମାନେମୋତେ ଦେଖି କି ବୋଲିବେ
ପୁତ୍ରମାନେ ଦେଖିଲେ ହାସେ ଉଡ଼ାଇବେ ।
ଭାରିଯାକୁ କିରୂପେ କରିବି ନୃପତି
ମୁହିଁ ତ ହୋଇଗଲି ଦଇବେ ଯୁବତୀ ।

ଏହିରୂପେ ବହୁତ କରଣ ସେ ମତି
କଷ୍ଟେ ମଷ୍ଟେ ବସିଲେ ଘୋଡ଼ାରେ ନୃପତି ।
ପୁତ୍ର ଭାର୍ଯ୍ୟାଙ୍କ ଭୁଲେ ପୁରବାସୀଯାକ
ଦେଖିକରି ହସିଲେ ହୃଦୁଁ ଗୁଡ଼ ଦକ ।
ବଚନରେ ବୋଇଲେ କାହୁଁ ସ୍ତ୍ରୀଠାଏ
ଘୋଡ଼ା ଚଢ଼ି ଆସୁଛୁ ଲାଜ ନାହିଁ ମୁହେଁ ।
ରାଜା ସ୍ତ୍ରୀ ହୋଇ ତ ଘୋଡ଼ା ଚଢ଼ିଥିଲେ
ଲାଜ ଲାଜ ପାଇ ଏ ବଚନ କହିଲେ ।
ମୃଗୟା କରିସାରି ବନ ମଧ୍ୟେ ସର
ଥିଲି, ତହିଁ ବୁଡ଼ାନ୍ତେ ମୋହର ଶରୀର ।
ପୁରୁଷରୂପ ଗୁଡ଼ି ସେକ୍ଷଣି ସ୍ତ୍ରୀରୂପ
ହେଲି, ମୋ ଅଦୃଷ୍ଟେ ଥିଲା ଏ ମହାପାପ ।
ଲୋକେ ଯେ ତାହା ଶୁଣି ପରତେ ନ ଚଲେ
ସେ ନୃପ ତାଙ୍କ ନାମ ତାହାଙ୍କୁ କହିଲେ ।
ନୃପଙ୍କ ମୁଖୁ ଭଙ୍ଗାସ୍ୱନ ନାମ ଶୁଣି
ଆହା କି ହେଲି ବୋଲି ମୁଞ୍ଚ ନେତ୍ରେଁ ପାଣି ।
ରାଜା ବୋଇଲେ ହେ ମନ୍ତ୍ରୀଏ ପୁତ୍ର ଭୁଲେ
ପାଳନା କର ରାଜ୍ୟ ଏବେ ମୋର ବୋଲେ ।
ବନମଧ୍ୟେ ରହି କରିବି ମୁହିଁ ତପ
ଛଡ଼ାଇବା ଯାଏ ଦେହରୁ ସ୍ତ୍ରୀ-ରୂପ ।
ଏହିରୂପେ କହିଣ ସେ ନୃପତି ମଣି
ପଶିଲେ ବନରେ ନ କହି ଆଉ ବାଣୀ ।
ବନମଧ୍ୟରେ ମୁନିଜଣଙ୍କୁ ସୁରତି
କରାନ୍ତେ ହେଲେ ଶଏ ପୁତ୍ର ଉତପତ୍ତି ।
ସେ ପୁଅଟିମାନଙ୍କୁ ଧରି ନୃପବର
ପୂର୍ବ କୁମରଙ୍କୁ କହିଲେ ଏ ଉତ୍ତର ।
ପୁରୁଷ ହେବାକାଳେ ତୁମ୍ଭେ ହେଲ ସୁତ
ସ୍ତ୍ରୀକାଳେ ଏ ପୁତ୍ରେ ମୋ ଗର୍ଭେ ହେଲେ ଜାତ
ଭ୍ରାତୃଭାବ ଘେନ ଦୁଇଶ ପୁତ୍ରଯାକ
ବାଣ୍ଟି ଖାଅ ଅବନୀ ହୋଇଣ ନିଃଶଙ୍କ ।
ବାପଙ୍କର ବଚନ ପୂର୍ବପୁତ୍ରେ ଘେନ
ସେ ପୁତ୍ରଙ୍କୁ ଭାଗ ଯେ ଦେଲେ ସେହିକ୍ଷଣି ।
ଇନ୍ଦ୍ର ସେ ରାଜାଙ୍କ ଦ୍ୱିଶତପୁତ୍ର ଦେଖି
ବିଚାରିଲେ ମନେ ମନେ ହୋଇଣ ଦୁଃଖୀ ।
ଯାଗ କରିଣ ଜାତ କଲି ଶଏ ସୁତ
ସ୍ତ୍ରୀ ହୋଇ ସେ ଏବେ କଲା ଶତସୁତ ।

ବିଚାରିଲେ ତ ବଡ଼ ଉପକାର କଲି
ରାଜାର ଅପକାର କିଛି ତ ନ କଲି ।
ଏରୂପେ ମନେ କରି ଦ୍ୱିଜରୂପ ହୋଇ
ଭଙ୍ଗାସ୍ୱନ ନୃପତି ପୁରେ ହେଲେ ଯାଇ ।
ଭାଇ ଭାଇଙ୍କରେ କରାଇଣ ବିଭେଦ
ଶଚୀଦେବୀ-ବଲ୍ଲଭ ବହିଲେ ପ୍ରମୋଦ ।
ନିତି ସବୁ ଭାଇଙ୍କ ବହିଣ ଉତ୍ସାହା
କହୁଥାନ୍ତି ସଭାରେ ବସି ବଜ୍ରବାହା ।
ଏକା ବାପୁ ପୁତ୍ରରେ ଭେଦ ତ ହେଉଛି
ଭିନ୍ନ ବାପୁ ପୁତ୍ରେ ଭେଦ କି ଦୋଷ ଅଛି ।
ପିତୃ ପିତାମହ ଅର୍ଜିତ ରାଜ୍ୟ ଭୋଗ
ହିଅ କମ୍ପା ତାପସପୁତ୍ରେ ବହି ରାଗ ।
ଏହିରୂପେ ଇନ୍ଦ୍ର କରନ୍ତେ ପଠାପଠି
ମଲେ ସେ ସବୁ ପୁତ୍ରେ ହୋଇ ପିଠାପିଠି ।
ପୁତ୍ରଙ୍କ ମୃତ୍ୟୁ ଶୁଣି ଭଙ୍ଗାସ୍ୱନ ନୃପ
କାନ୍ଦିଲେ ବୋଲି ଆହା କି ହେଲାରେ ବାପ ।
ତାପସୀଙ୍କ କାନ୍ଦିବାବେଳେ ଦ୍ୱିଜରୂପେ
ଇନ୍ଦ୍ର ସେଠାକୁ ଆସି ପୁଚ୍ଛିଲେଟି ଆପେ ।
କାହିଁପାଇଁକି ଆଗୋ ଗୁରୁଚନ୍ଦ୍ର ମୁହିଁ
ନୟନରୁ ଲୋତକ ଦେଉଛ ବୁହାଇ ।
ବ୍ରାହ୍ମଣର ଶୁଣିଣ ସ୍ନେହର ବଚନ
କହିଲେ ଏ ବଚନ ସେ ନୃପ-ରତନ ।
ଦୁଇଶ ପୁଅଯାକ ମୋର ମରାମରି
ହୋଇକରି ଦେଖିଲେ ଯମଙ୍କର ପୁରୀ ।
ଏହା କହି ଦୁଇଶପୁତ୍ରଙ୍କୁ ଜନମ
ଯେରୂପରେ କରିଥିଲେ ସେ ନୃପୋତ୍ତମ ।
ସେହିରୂପେ ସେ ଦ୍ୱିଜ ଆଗରେ କହିଲେ
ଗଦଗଦସ୍ୱର କରିଣ ବିଳପିଲେ ।
ଇନ୍ଦ୍ର ବୋଇଲେ ଆହେ ଇନ୍ଦ୍ରଦ୍ୱିଷ୍ଟ ଯାଗ
କଲରୁ ଏ ଦୁଃଖ ଅର୍ଜିଲ ମହାଭାଗ ।
ସ୍ତ୍ରୀରୂପକୁ ଧରିଣ ବନ ମଧ୍ୟେ ରହି
ବସିଅଛ ଦୁଇଶ ପୁତ୍ରଙ୍କୁ ହରାଇ ।
ମୁହିଁଟି ଅଟେ ଶଚୀ ଦେବୀଙ୍କର ବର
ଶୁଝାଇଲି ତୁମ୍ଭଙ୍କୁ ଯେ ଥିଲା ବଇର ।
ନୃପତି ଇନ୍ଦ୍ର ବୋଲି ବ୍ରହ୍ମାଣଙ୍କୁ ଜାଣି
ପାଆଁ ପଡ଼ି ଶୋଇଲେ ଯୋଡ଼ି ଦୁଇପାଣି ।

କହିଲେ ପୁତ୍ରକାମେ ଯେ କରିବ ଦୋଷ
ତୁମ୍ଭଠାରେ ଅର୍ଜିଲି ଯାହା ମୁଁ ଶଚୀଶ ।
ତାହା ଏବେ ତୁମ୍ଭଙ୍କୁ ମାଗୁଅଛୁ ମୁହିଁ
କ୍ଷମାକର ମୋହର ବଚନତ କି ଗୁହିଁ ।
ଇନ୍ଦ୍ର ତାହାଙ୍କର ବଚନରେ ସନ୍ତୋଷ—
ହୋଇକରି ମନରେ ହୋଇ ହସ ହସ ।
ବୋଇଲେ ନୃପକାଳ ପୁତ୍ରେ ଜୀଇବେ କି
ବୋଲ ଜୀଆଇବି ନ ରଖି କିଛି ବାକି ।
ନୋହିଲେ ସ୍ତ୍ରୀକାଳ ପୁତ୍ରଠାରେ ମନ
ଥିଲେ ତା କହ ତାଙ୍କୁ ଦେବି ଜୀବଦାନ ।
ଏହା ଶୁଣିଣ ନୃପବର ଜଣାଇଲେ
ସ୍ତ୍ରୀକାଳପୁତ୍ରେ ଜୀଅନ୍ତୁ ମୋର ଭଲେ ।
ବାସବ ତାହା ଶୁଣି ପାଇଣ ଆଶ୍ଚର୍ଯ୍ୟ
ବୋଇଲେ ଆହେ ଶୁଣ ନୃପକୁଳରାଜ ।
ପୁରୁଷକାଳ ପୁତ୍ରଗଣେ ଛାଡ଼ିଦେଇ
ସ୍ତ୍ରୀକାଳ ପୁତ୍ରଙ୍କୁ ଲୋଡ଼ିଲେ କମ୍ପାଇ ।
ଏଥିର ଯେ କାରଣ ସତ କରି ମୋତେ
କହିବା ହେଉ ଥରେ ରାଜ ମହାମତେ ।
ନୃପତି ବୋଇଲେ ମାତାର ପୁତ୍ରଠାରେ
ବାତ୍ସଲ୍ୟ ପୂରି ରହିଥାଏ ନିରନ୍ତରେ ।
ପିତାର ପୁତ୍ରଠାରେ ମାତାପରି ସ୍ନେହ
ନୁହଇ ଆହେ ଦେବରାଜ ଛାଡ଼ ମୋହ ।
ଏହାର ସକାଶରୁ ସ୍ତ୍ରୀକାଳ ସୁତ—
ମାନଙ୍କୁ ମଘବାନ ଦିଅ ହେ ଜୀବିତ ।
ଇନ୍ଦ୍ର ବୋଇଲେ ହେ ତୁମ୍ଭର ସତ୍ୟବାଣୀ
ମୋର ମନଟିକି ନେଲା ଜାଣ କଣି ।
ଦୁଇଶ ପୁତ୍ରଯାକ ଜୀଅନ୍ତୁ ତୁମ୍ଭର
ମନେ କମ୍ପାଇ ହେଉଥିବ ହରବର ।
ତୁମ୍ଭ ମନ ଅଛି ପୁରୁଷ ହେବାକୁ କି
ମାଗ ତା ଦେବି ମୁହିଁ କହିଣ ପ୍ରୀତିକି ।
ନୃପତି ବୋଇଲେ ମୁଁ ଥିବି ସ୍ତ୍ରୀ ହୋଇ
ପୁରୁଷ ହେବାର କାରଣ ଆଉ ନାହିଁ ।
ବାସବ ପଚାରିଲେ ପୁରୁଷଇ ଛାଡ଼ି
ସ୍ତ୍ରୀତ୍ୱ କମ୍ପା ତୁମ୍ଭେ ମାଗୁଅଛ ଲୋଡ଼ି ।
ନୃପତି ବୋଇଲେ ମଇଥୁନ ବେଳେ
ସ୍ତ୍ରୀ ସିନା ଭୁଞ୍ଜୁଥାଏ ସୁଖ ଭେଳେ ।
ପୁରୁଷର ସେରୂପେ ନୁହଇଟି ସୁଖ
ଆଉ କି ତୁମ୍ଭଙ୍କୁ କହିବି ସୁରଶିଖ ।
ଇନ୍ଦ୍ର ବୋଇଲେ ତେବେ ଏହିରୂପେ ହେଉ
ତୁମ୍ଭଙ୍କୁ ବୋଲିବାକୁ କଥା ନାହିଁ ଆଉ ।
ଏତେ କହିଣ ଦେବକୁଳଙ୍କ ଶିଖର
ଅନ୍ତର୍ଦ୍ଧାନ ହୋଇ ଗମିଲେ ସ୍ବର୍ଗପୁର ।
ଶୁଣ ହେ ଯୁଧିଷ୍ଠିର ରତିକାଳେ ସ୍ତ୍ରୀ
ମାନେ ଦିଅନ୍ତି ଅଙ୍ଗରୁ ଜ୍ଞାନ ହାରି ।
ପୂର୍ବେ ଶୁଣିଥିବାରୁ ପୁଚ୍ଛିବାରୁ ତୁମ୍ଭେ
ଏହି ଚରିତ ଜାଣ କହିଲୁଁ ଟି ଆମ୍ଭେ ।
ଏଠାରେ ଭଙ୍ଗାସ୍ୱନ ନୃପତି-ଆଖ୍ୟାନ
ସାରିଲେ ପରାଶର-ଋଷିଙ୍କ ନନ୍ଦନ ।
ତାହାଙ୍କର ସେ ପାଦ ପଦ୍ମ ଦୁଇ ଭାବି
କହଇ ଗୀତେ କୃଷ୍ଣସିଂହ ନୃପ କବି ।



## ଲୋକହିତ-କଥନ

ଯୁଧିଷ୍ଠିର ବୋଇଲେ ଲୋକର ହିତକଥା
ଭାବିଲେ କି କରିବ କହ ମହାରଥୀ ।
ଭୀଷ୍ମ ବୋଇଲେ ଆହେ ଦଶୋଟି କରମ
ଯା ଛାଡ଼ିବ ତାହା ଶୁଣ ହେ ନରୋତ୍ତମ ।
ପ୍ରାଣୀ ବିନାଶ ଚୌର୍ଯ୍ୟ-ପରସ୍ତ୍ରୀ-ଗମନ
ଏ ତିନୋଟି କାୟିକ-ପାପ ବୋଲି ଘେନ ।
ଦୁଷ୍କଥା ନିଷ୍ଠୁରତା ଖଳ ମିଥ୍ୟାଭାଷା—
କଥା ବାଚନିକ ପାପ ହେ ଦଣ୍ଡଧାରୀ ।
ପରଦ୍ରବ୍ୟରେ ସ୍ପୃହା ଅନିଷ୍ଟ-ଚିନ୍ତନ
ନାସ୍ତିକତା ମାନସ-ପାପ ବୋଲି ଜାଣ ।
ଏହାକୁ ଛାଡ଼ି ଶୁଭ କଥା ଯେ ଆଚରେ
ଯମ ତା ଭଲ ଛାଡ଼ି ମନ୍ଦ ନ ପଚାରେ ।
ଲୋକହିତ କଥନ ହେଲା ସମାପତି
କହଇ କୃଷ୍ଣସିଂହ ନୃପ କରି ପ୍ରୀତି ।



## ଶିବ ମାହାତ୍ମ୍ୟ

ଯୁଧିଷ୍ଠିର ବୋଇଲେ ଶିବଙ୍କ ଅଙ୍ଗକ୍ଷେପ୍ୟ
ନାମ ତ ଜଗତରେ ହୋଇଛି ଉଦୟ ।

ଆପଣ ତ ସବୁ ଶୁଣିବା ହୋଇଥିବେ
ତାହା ମୋର ଆଗରେ କହିବା ହୋଇବେ ।
ଗାଙ୍ଗେୟ ବୋଇଲେ ହେ ମହାଦେବଙ୍କର
ନାମମାନ କାହାକୁ ନୁହଇ ଗୋଚର ।
ଅସଂଖ୍ୟ ମହିମା ଅଟନ୍ତି ଉମାପତି
ତାଙ୍କ ନାମ କହିବାକୁ ମୋର ନାହିଁ ଶକ୍ତି ।
ପ୍ରକୃତି ପୁରୁଷର ଅଟନ୍ତି ସେ ପର
ଅଚିନ୍ତ୍ୟ ସେ ଅଟେ ଯୋଗୀମାନଙ୍କର ।
ଏହିରୂପେ ତ ମହାଦେବଙ୍କର ଗୁଣ
ଶତ ବରଷେ ତା କରିବ କେ ବଖାଣ ।
ନାରାୟଣ ବିନା ଆନରେ ଶିବ କଥା
କହିଲେ ନ ସରିବ ହେଲେ ଶତପୋଥା ।
ବଦରିକାଶ୍ରମରେ ନାରାୟଣ ଋଷି
ଶିବଙ୍କର ସେବାରେ ହୋଇଣ ତପସୀ ।
ଏ ତିନି ଜଗତରେ ପ୍ରସିଦ୍ଧ ହୋଇଲେ
ଶୁଣିଥାଇଁ ଋଷିଙ୍କଠାରୁ ଏହା ଭଲେ ।
କୃଷ୍ଣ ତିନିଲୋକଙ୍କ ହରତା କରତା
ଏ ବାହାରେ ମଧ୍ୟ ଅଟନ୍ତି ମାତା ପିତା ।
ତାହାଙ୍କୁ ପଚାର ସେ ଜାଣିଛନ୍ତି ତାହା
କହିବେ ତୁମ୍ଭ ଆଗେ ଆହେ ନରନାହା ।
ଏହା କହି ଯୁଧିଷ୍ଠିରଙ୍କୁ ଯଦୁମଣି
ମୁଖକୁ ଚାହିଁ ଭୀଷ୍ମ କହିଲେ ଏ ବାଣୀ ।
ଯୁଧିଷ୍ଠିର ପଚାରୁଛନ୍ତି ଶିବ-କଥା
କହିବାହେବ ତାଙ୍କୁ ଯଦୁ-ମହାରଥା ।
ଆମ୍ଭେମାନେ ତାହା ତୁମ୍ଭର ମୁଖୁଁ ଶୁଣି
ତରିବୁଁ ବୋଲି ଭାବୁଅଛୁ ଚକ୍ରପାଣି ।
ବ୍ୟାସ ଆଦି ଋଷିଏ ଅଛନ୍ତି ତ ପାଶେ
ସେହି ମଧ୍ୟ ଶୁଣି ମଜ୍ଜିବେ ସୁଖ-ରସେ ।
ଶ୍ରୀକୃଷ୍ଣ ବୋଇଲେ ହେ ଭୀଷ୍ମ କି ପଚାର
ଶିବଙ୍କର ଗୁଣ ତ ଅଟେ ଅଗୋଚର ।
ମନୁଷ୍ୟ ହୋଇକରି କହିବ କେ ତାହା
ମୋହର କହିବାକୁ ନୋହୁଛି ଉତ୍ସାହା ।
ଯେତେକ ଜାଣଇଁ ମୁଁ କହିବି ତେତେକ
ଶୁଣ ମନ ଲୟ ଦୁହିଙ୍କି କରି ଏକ ।
ଏହିରୂପେ ଭୀଷ୍ମଙ୍କୁ ବଚନରେ କହି
ଆଚମନ ସାରି ଯଦୁକୁଳ-ସାଇଁ ।

ପୂର୍ବକୁ ମୁଖ କରି ବସି ପାଦାସନେ
ବଖାଣି ବସିଲେ ତା ସୁମନେ ବରନେ ।
ହେ ଯୁଧିଷ୍ଠିର ନୃପ ଭୀଷ୍ମ ରଥୀଗଣ
ଶାମ୍ବ ପୁତ୍ର ହେବା ପାଇଁ ମୁଁ ଦେବଗଣ ।
ପତି ଉମାପତିଙ୍କି ସେବାରେ ଯେରୂପ ।
ଦେଖିଅଛ ତାହା କହିବି ସେହିରୂପେ ।
ପ୍ରଦ୍ୟୁମ୍ନ ଶମ୍ବରାସୁରକୁ କରି ନାଶ
ଦ୍ୱାରକାରେ ଆସି ହୁଅନ୍ତେ ପରବେଶ ।
ପୁତ୍ରାର୍ଥୀ ହୋଇ ଜାମ୍ବବତୀ ମୋହଠାକୁ
ଆସିକରି କହିଲେ ମୋତେ ବଚନକୁ ।
ଆପଣଙ୍କ ପରି ମୋହର ହେବ ସୁତ
ଏଥିକ ଯେ ଉପାୟ ତା କର ତୁରିତ ।
ଇଚ୍ଛାକଲେ ତିନିଲୋକ ତ ସର୍ଜିପାର
ତୁମ୍ଭଙ୍କୁ ଏ କଥା ବା ଅଟେ କେତେକର ।
ଶିବଙ୍କ ସେବା କରି ରୁକ୍ମିଣୀ ଗର୍ଭରୁ
ପୁତ୍ର ଜାତ କଲ ହେ କୃଷ୍ଣ ଯଦୁମେରୁ ।
ସେରୂପେ ମୋ ଗର୍ଭରୁ ପୁତ୍ର ପ୍ରୀତ ହୋଇ
ଜାତ କର ମାଗୁଛି ହୋଇଣ ବିନୟୀ ।
ଏରୂପେ ଜାମ୍ବବତୀ ବଚନକୁ ଶୁଣି
କହିଲି ମୁଁ ତାଙ୍କୁ ମଧୁରେ ହସି ବାଣୀ ।
ତପ କରି ମୁହିଁ ଯାଉଛି ତୁମ୍ଭ ସୁତ
ହେବାକୁ ଜାମ୍ବବତୀ, ନୁହ ଦୁଃଖ ଚିତ୍ତ ।
ଏହା ଶୁଣିଣ ଜାମ୍ବବତୀ ମୋ ମଙ୍ଗଳ
ବହୁତ ବାଞ୍ଛା କଲେ ପାଣ୍ଡବ ନୃପାଳ ।
ଏ ବାହାରେ କହିଲେ ସାବଧାନ ହୋଇ
ବାଟେ ଯାଇ ତପସ୍ୟା କର ମୋର ପାଇଁ ।
ଏରୂପେ ଜାମ୍ବବତୀ ମଙ୍ଗଳ ବାଞ୍ଛନ୍ତେ
ସେଠାରୁ ଉଠିକରି ଗଲି ମୁଁ ତୁରିତେ ।
ବଳଦେବ ଯେ ଉଗ୍ରସେନ ପିତା ମାତା
ଏହାଙ୍କୁ କହିଲି ମୁଁ ଏସବୁ ବାରତା ।
ତାହାଙ୍କ ସମ୍ମତିରେ ହିମାଳୟ ଗଲି
ଉପମନ୍ୟୁଙ୍କର ଆଶ୍ରମକୁ ଦେଖିଲି ।
ସେ ଆଶ୍ରମ ହୋଇଛି ଦ୍ୱିଜରେ ସେବିତ
ମଧୁରେ ଭୃଙ୍ଗ ପିକ କରୁଛନ୍ତି ରୁତ ।
ଫୁଟିଅଛନ୍ତି ତହିଁ ନାନା ପୁଷ୍ପଶ୍ରେଣୀ
ନେଇଛନ୍ତି ଭୃଙ୍ଗମାନଙ୍କ ମନ କିଣି ।

କୁନ୍ଦ ଧବ ଜମ୍ବୁ ପାଟଳ କୁରୁବକ
ବରୁଣ ବଟ ବିଲ୍ୱ ଅସନ କେତେକ ।
ଅତିମୁକ୍ତକ ଆମ୍ର କକୁଭ ଅଶୋକ
ବଦରୀ ତାଳ ଆଜ୍ଞ ପିୟାଳ ମଧୂକ ।
ପୁନ୍ନାଗ ନାରକେଳ ଚମ୍ପକ କଦମ୍ବ
କୋବିଦାର ପନସ କପିତ୍ଥ ଯେ ଧବ ।
ଏ ଆଦି ବୃକ୍ଷମାନେ ସେ ଆଶ୍ରମେ ଛନ୍ତି
ଫଳ-ପୁଷ୍ପ-ଭରବର ମହୀରେ ଲୋଟନ୍ତି ।
ଗଜ ସିଂହ ବାନର ସର୍ପ ଭାଲୁ ବାଘ
ମୟୂର ମୃଗ ଯୂଥଙ୍କେ ସେ ବନେ ରଙ୍ଗ ।
ହୋଇଛୁ ଜାଣ ହେ ଦ୍ରୌପଦୀ ପ୍ରାଣସାଇଁ
ମନୁଷ୍ୟ ଯିବା ସ୍ଥାନ ସେ କେବେ ନୁହଇ ।
ଗନ୍ଧର୍ବ ଯକ୍ଷ କିନ୍ନରରେ ସେ ଆକୀର୍ଣ୍ଣ
ହୋଇକରି ମୋହୁଛୁ ସବୁ ପ୍ରାଣୀମନ ।
ଅପସରଙ୍କୁ ବେଶେ କରି ତୋରି
ଲତା ତଳେ ଛନ୍ତି ଗନ୍ଧର୍ବେ ଉରି ଖରି ।
ପଦ୍ମରେ ଅଳଂକୃତ ହୋଇ ବହୁ ସର
ରହିଛନ୍ତି ତହିଁରେ କରି ରସପୁର ।
ଗଙ୍ଗା ମଧ୍ୟ ଆଶ୍ରମ ନିକଟକୁ ଲଗି
ବହି ଯାଉଅଛନ୍ତି ତଞ୍ଚଳତା ଭଙ୍ଗି ।
ଅଶ୍ମକୁଟ ଦନ୍ତୋଲୁଖଳିକ ଅମ୍ବୁକ
ମରୀଚପ ଫେନପ ଧୂମପ ଉଷ୍ମପ ।
କ୍ଷୀରପ ଗୋଚରୀ ଅଶ୍ୱତ୍ଥଙ୍କ ଫଳଭକ୍ଷ
ହୋଇ ମୁନି ତହିଁ ଅଛନ୍ତି ଲକ୍ଷ ଲକ୍ଷ ।
ଋଷିମାନଙ୍କର ପ୍ରଭାବରେ ବଇର
ଛାଡ଼ିଛନ୍ତି ତହିଁରେ ଯେତେ ବନଚର ।
ସେହି ଆଶ୍ରମେ ଉପମନ୍ୟୁଙ୍କୁ ଦେଖିଲି
ହେ ମୁଁ କନ୍ଦର୍ପ ଜିଣିବ ମନେ କଲି ।
ଶୁଣି ବାନ୍ଧିଅଛନ୍ତି ମସ୍ତକେ ସେ ଜଟା
ତହିଁ ଉପରେ ବାନ୍ଧିଦେଇ ଲୁଗାପଟା ।
ତେଜରେ ସୂର୍ଯ୍ୟ ଅଗ୍ନି ଦୁହିଙ୍କି ଭିଡ଼ନ
କରୁଅଛନ୍ତି ସେହି ମହାତପୋଧନ ।
ମୁଁ ତାଙ୍କ ପାଦ ଧରି କଲି ନମସ୍କାର
ସେ ଉପମନ୍ୟୁ ମୁନି କହିଲେ ଉତ୍ତର ।
ଶୁଭ ହୋଇ ତୁମ୍ଭ ଆସିବା ହେଲା ଟିକ
ଆଗ ଏହା କହ ନ ରଖି କଥା ବାକି ।
ଉପମନ୍ୟୁଙ୍କୁ ମୁହିଁ ବୋଇଲି ଗୋସାଇଁ
ତୁମ୍ଭେ ଅଛନ୍ତି କି ଆଶ୍ରମେ ଭଲ ହୋଇ ।
ଆମ୍ଭେ ଆସିବାର ବାଟରେ କଣ୍ଟା ଲଟା
କରି ନାହାନ୍ତି କଷ୍ଟ ହେ ଜାଣ ଖଟା ।
ଉପମନ୍ୟୁ ବୋଇଲେ ତୁମ୍ଭେ ଯହିଁପାଇଁ
ଆସିଛ ତାହା ମୁଁ ଜାଣିଲି ଯଦୁସାଇଁ ।
ତପ କରିଣ ମହାଦେବଙ୍କୁ ଆରାଧ
ହୋଇବ ପୁତ୍ର ହୋଇ ଉତ୍ତମ ସୁବୋଧ ।
ଶିବ ଏହିଠାରେ ଉମାଙ୍କ ସଙ୍ଗତେ
କ୍ରୀଡ଼ା କରୁଅଛନ୍ତି ରହିଛନ୍ତି ନିରତେ ।
ଏହିଠାରେ ଶିବଙ୍କୁ ଆରାଧନା କରି
ଋଷିଏ ହୋଇଛନ୍ତି ମନୋରଥୁଁ ପାରି ।
ଶୁଭ ଦେଇ ଅଶୁଭ ନାଶ କରିବାକୁ
ରୁଦ୍ର ବିନା ନ ଦେଖି ଦେବରେ ଆନକୁ ।
ହିରଣ୍ୟକଶିପୁଟି ଅର୍ବୁଦେ ବରଷ
ଭୁଞ୍ଜିଲେ ତ୍ରିଲୋକ ରୁଦ୍ରଙ୍କୁ କରି ତୋଷ ।
ହିରଣ୍ୟକଶିପୁଙ୍କ କୁମର ମନ୍ଦର
ରୁଦ୍ରଙ୍କଠାରୁ ହେ ପାଇକରି ବର ।
ଅର୍ବୁଦେ ବରଷଟି ଦେବଙ୍କ ସଙ୍ଗରେ
ଯୁଦ୍ଧ କଲେ ନ ହାରି ଯୁଦ୍ଧ-ପ୍ରାଙ୍ଗଣରେ ।
ବିଷ୍ଣୁ ଚକ୍ର ଇନ୍ଦ୍ରବଜ୍ର ସେ ମନ୍ଦର—
କୁମର ଅଙ୍ଗେ ବାଜି ହୋଇଗଲା ଚୂର ।
ଅସୁର କ୍ରୋଧେ ଦେବେ ହୁଅନ୍ତେ ପୀଡ଼ିତ
ସେବା କରିଲେ ଆସି ଉମାଦେବୀକାନ୍ତ ।
ଶିବଙ୍କର ପ୍ରସନ୍ନେ ସେ ଅସୁରକୁଳ
ତଳକୁ ଦଳିଲେ ଇନ୍ଦ୍ରାଦି ଦିଗପାଳ ।
ବିଦ୍ୟୁତ୍ପ୍ରଭ ନାମେ ଦାନବ ଜଣେ ଥିଲା
ଶିବଙ୍କ ବରେ ତିନିଲୋକ-ପ୍ରଭୁ ହେଲା ।
ଏ ବାହାରେ ଶିବ ସେବକ ତାଙ୍କୁ କଲେ
ମହେଶ୍ୱର ଆୟୁତଟି ପୁତ୍ର ତାକୁ ଦେଲେ ।
କୁଶଦ୍ୱୀପରେ ତାକୁ କରାଇ ରାଜନ
କଲେ ସବୁ ଅସୁରମାନଙ୍କ ମଣ୍ଡନ ।
ଶତମୁଖ ଅସୁର ମାଉଁସ କାଟିଲା
ହୋମ କରି ରୁଦ୍ରଦେବଙ୍କୁ ତୋଷ କଲା ।
ଶିବ ଯେ ଦେଲେ ତାକୁ ବୋଇଲେ ତୋ ବଳ
ସବୁଦିନେ ଥିବ ତୁ ନୋହିବୁ ଦୁର୍ବଳ ।

ବ୍ରହ୍ମାଙ୍କର ପୁତ୍ର ପୁତ୍ରଙ୍କୁ ଦଶ ଶତ—
ସହସ୍ର ପୁତ୍ର ଦେଲେ ଉମାଦେବୀ-କାନ୍ତ ।
ଯାଜ୍ଞବାଲ୍କ୍ୟ ଋଷି ଶିବଙ୍କୁ ଆରାଧିଲେ
ମହତ ଜ୍ଞାନକୁ ସେ ହୃଦେ ସମ୍ପାଦିଲେ ।
ବେଦବ୍ୟାସ ଶିବଙ୍କୁ ଆରାଧନା କରି
ହେଲେ ସେ ମହତ କୀର୍ତ୍ତିରେ ଅଧିକାରୀ ।
ବାଳଖିଲ୍ୟ ଋଷିଏ ଶିବଙ୍କ ଆଜ୍ଞାରେ
ଗରୁଡ଼ଙ୍କୁ ଜନମ କଲେଟି ମନ୍ତ୍ରରେ ।
ଶିବଙ୍କ କ୍ରୋଧେ ନାଶ ଯାଇଥିଲେ ପ୍ରାଣୀ
ତାହାଙ୍କ ସନ୍ତୋଷୁଁ ବଞ୍ଚିଲେ ନଦୀଶ୍ରେଣୀ ।
ଅତ୍ରିଙ୍କର ଭାର୍ଯ୍ୟା ଭର୍ତ୍ତାଙ୍କୁ ଛାଡ଼ିଲେ
ନିରାକାର ହୋଇଣ ଭୂମିରେ ଶୋଇଲେ ।
ତିନଶ ବରଷ ପର୍ଯ୍ୟନ୍ତ ଯତ୍ନୁ କରି
ନିଜ ଦେହଟିକି ସେ କରିଦେଲେ କୃଶ ।
ଶିବ ତାଙ୍କୁ ପ୍ରସନ୍ନ ହୋଇ ବର ଦେଲେ
ସେ ବଳେ ଦୁର୍ବାସା ପୁତ୍ରଙ୍କୁ ଜାତ କଲେ ।
ବିକର୍ଣ୍ଣ ଶିବଙ୍କ ପ୍ରସନ୍ନେ ସିଦ୍ଧି ପାଇ
ରହିଲେ ହେ ଜାଣ ରୁକ୍ମିଣୀଦେବୀସାଇଁ ।
ଶାକଲ୍ୟ ନବଶତ ବରଷ ଶିବଙ୍କୁ
ସେବାକରି କଲେ ସେ ସମସ୍ତ ଗ୍ରନ୍ଥକୁ ।
ଏ ବାହାରେ ଶିବଙ୍କ ବରେ ସୂତ୍ରକର୍ତ୍ତା
ପୁତ୍ର ଜାତ କଲେ ସେ ଋଷି ବେଦବେତ୍ତା ।
ସାବର୍ଣ୍ଣି ଋଷି ଷଷ୍ଠୀଶତ ସମ୍ବତ୍ସର
ତପ କରି କରି ତୋଷିଲେ ଦିଗମ୍ବର ।
ଏହି ହେତୁ ସେ ଋଷି ଗ୍ରନ୍ଥକର୍ତ୍ତା ହେଲେ
ଏ ବାହାରେ ଅଜର ଅମର ହୋଇଲେ ।
ପୂର୍ବେ ଇନ୍ଦ୍ର ମହାଦେବଙ୍କୁ ଆରାଧିଲେ
ଦେବତାମାନଙ୍କର ଅଧିପତି ହେଲେ ।
ମହାଦେବଙ୍କର ଆଗରେ ଯେ ନାରଦ
ବୋଇଲେ ସବୁ ପ୍ରାଣୀଙ୍କର ସୁଖପ୍ରଦ ।
ତେଜ ଓଜରେ ସେ ସମସ୍ତ ଋଷିଙ୍କରେ
ଅଧିକ ହୋଇଲେ ସେ ସମସ୍ତ ପ୍ରକାରେ ।
ମୁହିଁ ଯେଉଁ ରୂପେ ସେବିଅଛି ଶିବଙ୍କୁ
ତା କହିବା ଶୁଣ ହେ କେଶବ ତୁମ୍ଭଙ୍କୁ ।
ସତ୍ୟଯୁଗରେ ବ୍ୟାଘ୍ରପାଦ ଋଷିବର
ଥିଲେ ତାହାଙ୍କର ମୁଁ ହୋଇଲି କୁମର ।

ମୋହର ସାନଭାଇ ଧୌମ୍ୟ ଋଷି ସାଇଁ
ପାଣ୍ଡବର ପୁରୋହିତଟି ତାଙ୍କୁ କହି ।
ଦିନେ ମୁଁ ମୁନିଙ୍କର ଆଶ୍ରମକୁ ଗଲି
ଗାଈଦୁହାଁ । ହେଉଥିଲା ତାହା ଦେଖିଲି ।
ସେ ଦୁଧକୁ ଦେଖି ହୋଇଲା ମୋର ଲୋଭ
ପିଇଲେ ଏହା ହେବ ଅବା ମୋର ଲାଭ ।
ସେଠାରୁ ଆସିକରି ବୋଇଲି ମାତାଙ୍କୁ
ଦୁଧଭାତ ଦେବ ଗୋ ଆଜଟି ଆମ୍ଭଙ୍କୁ ।
ମାତା ତାହା ଶୁଣିଣ ପିଠୋଉ ବାଟିଲେ
ପାଣିରେ ଗୋଳି ଦୁଧ ବୋଲି ଆଣିଦେଲେ ।
ତାହା ପିଇଣ ମୁହିଁ ଜାଣିଲି ପିଠୋଉ
ମାତାଙ୍କୁ ନିନ୍ଦାକରି ନ ବୋଇଲି ଆଉ ।
ଟିକିଏ ଭୁମ୍ବା ହୋଇ କି ଦେଲେ ଗୋ ମାତ
ପଚାରିଲି କହି ତ କରି ମୋତେ ସତ ।
ମାତା ଏହାକୁ ଶୁଣି ହୋଇଣ ତାଟକା
ଆଖିରୁ ନୀର ମୁଞ୍ଚି ପାଡ଼ିଲେ ସେ ଡ଼କା ।
ବୋଇଲେ ଆରେ ପୁତ୍ର ନ ପାଇ ମୁଁ ଦୁଧ
ପିଠୋଉ-ପାଣି ଦେଇ କଲି ତୋତେ ବୋଧ ।
କନ୍ଦ ମୂଳ ଫଳ ତ ଆହାର ଆମ୍ଭର
ଆମ୍ଭେ ଲୋଡ଼ିଲେ କି ମିଳନ୍ତା ଗାଈ କ୍ଷୀର ।
ମହାଦେବ ଦେବଙ୍କୁ ପରସନ୍ନ କଲେ
ଦୁଧ ଘୃତ ବାବୁ ଖାଇବୁ ବସି ଭଲେ ।
ମାତାଙ୍କୁ ପଚାରିଲି ମହାଦେବ କିଏ
ପରସନ୍ନ ହୁଅନ୍ତି ସେ କେଉଁ ଉପାୟେ ।
ତାଙ୍କର ଗୁଣବର୍ଣ୍ଣ ଅବା କି ପ୍ରକାର
ଜାଣିଥିଲେ ମାତ ତା, ମୋ ଆଗେ ପ୍ରଚାର ।
ମାତା ବୋଇଲେ ଆରେ ଦୁର୍ବିଜ୍ଞେୟ ହର
ତାହାଙ୍କୁ କେବେ ଦେଖି ନ ପାରନ୍ତି ନର ।
ଦେବ ଯକ୍ଷ କିନ୍ନର ବଳରେ ସେ ଧୃଷ୍ୟ
ନୁହନ୍ତି ତାଙ୍କୁ କେହି ଧର୍ଷିବ ମନୁଷ୍ୟ ।
ମୁନିଙ୍କଠାରୁ ଶିବ-କର୍ମ ଯା ଶୁଣିଛି
ଶୁଣ ଆରେ ବତ୍ସ ତା ତୋତେ କହୁଅଛି
ବ୍ରହ୍ମା ବିଷ୍ଣୁ ରୁଦ୍ର ଛଳରେ ତିନିଲୋକ
ରୂପକୁ ଧରିଥାନ୍ତି ପାର୍ବତୀ-ନାୟକ ।
ଅନେକଟି ପାଦ ତିନିନେତ୍ର ବହୁମୁଖ
ଅଟନ୍ତି ଜାଣ ଦେବ ରୁଦ୍ର ଦେବ-ଶିଖ ।

ଅର୍ଦ୍ଧଚନ୍ଦ୍ର ତାଙ୍କର କପାଳରେ ଥାଏ
ବୋଲ ହୋଇଥାନ୍ତି ସେ ପାଉଁଶକୁ କାଯେ ।
ସବୁ ପ୍ରାଣୀଙ୍କର ଅନ୍ତର-ଆତ୍ମା ସେହି
ଶର୍ବ ବୋଲକରି ଯେ ତାହାଙ୍କୁଟି କହି ।
ଚକ୍ର ଗଦା ପଟ୍ଟିସ ଶୂଳ ଖଡ଼ଗକୁ
ବହିଥାଆନ୍ତି କରେ ବହି ସେ ମେଦକୁ ।
ସର୍ପପୂଡ଼ାଏ ପୁଣି ହୃଦରେ ଗୁଡ଼ାଇ
କୁଣ୍ଡଳ କରି କେତେ ଥାଆନ୍ତି ଲମ୍ବାଇ ।
ବୃଷଭ ଗୋଟିକ ଉପରେ ଥାନ୍ତି ଚଢ଼ି
ରହିଥାନ୍ତି ଘୂମାଇ ଯେହ୍ନେ ଥାଉ ବୁଢ଼ୀ ।
ଉନମତ୍ତ ମତେ ଯେ ଜାଗ୍ରତ ସୁଷୁପ୍ତ
ଅଟନ୍ତି ଜାଣ ସେ ଉମା ଦେବୀ କାନ୍ତ ।
ଦେଇଅଛନ୍ତି ଦେଉଛନ୍ତି ମାଗୁଛନ୍ତି
ଧ୍ୟାନ ଯୋଗ ଦୁହିଙ୍କି ସାଧନ କରନ୍ତି ।
ବେଦୀମଧ୍ୟେ ଅଗ୍ନିରେ ସ୍ୱରୂପେ ହୋଇ ଦୃଶ୍ୟ
ହେଉଥାଆନ୍ତି ଥରେ ଥରେ ସେ ଅଦୃଶ୍ୟ ।
ଶ୍ୟାମ କୃଷ୍ଣ ପାଣ୍ଡୁର ରୂପ ବହୁଥାନ୍ତି
ଋଷିକନ୍ୟାମାନଙ୍କ ସଙ୍ଗତେ କ୍ରୀଡ଼ନ୍ତି ।
ଏକ ମୁଖ ସେ ଦୁଇ ମୁଖ ତିନମୁଖ
ବହୁ ମୁଖକୁ ବହିଥାନ୍ତି ବହୁ ସୁଖ ।
ରେ ପୁତ୍ର ଏରୂପେ ଅଟନ୍ତି ଉମାସାଇଁ
ତୁମ୍ଭେ ତାହାଙ୍କୁ ଭଜ କଷ୍ଟକଥା ପାଇଁ ।
ମାତାଙ୍କର ବଚନ ଶୁଣିଣ ମୁରାରି
ଶିବଙ୍କୁ ସେବିଲ ମୁଁ ସବୁ ଦୂର କରି ।
ଦିବ୍ୟ ବରଷରେ ଯେ ସହସ୍ର ବରଷ
ଶିବଙ୍କ ତୋଷ ପାଇଁ ଦେହ କରି କୃଶ ।
ଫଳ ଖାଇଣ ଶହେ ବରଷ ରହିଲି
ପତ୍ର ଖାଇ ଦ୍ୱିଶତ ବରଷ ସାରିଲି ।
ତିନଶ ବରଷଟି ପିଇଲି ସମୀର
ଶହେ ବରଷ ମୁହିଁ ହେଲି ନିରାହାର ।
ମୋହର ଏହି ଭକ୍ତି ଜାଣି ସଦାଶିବ
ଆସିଲେ ଇନ୍ଦ୍ରରୂପେ ମୋହଠାକୁ ଦେବ ।
ଅପସ୍ୱରମାନେ ସେ ସଙ୍ଗତେ ଅଛନ୍ତି
କୋଟି କୋଟି ଗନ୍ଧର୍ବେ ଆଲଟ ପକାନ୍ତି ।
ଐରାବତ ହସ୍ତୀ କାନ୍ଧେ ପୁରନ୍ଦର
ବସି ଟେକାଇଣ ଅଛନ୍ତି ଛତ୍ରବର ।

ମୋତେ ବୋଇଲେ ଆହେ ତପକର କେତେ
ମାଗ ବର ଦେବି ମୁଁ ଆସିଛି ସୁବ୍ରତେ ।
ମୁଁ ବୋଇଲି ଶିବଙ୍କ ବିନା ଆନ ଦେବ
ବରରେ ଶଚୀ-ବର ନାହିଁ ମୋର ଭାବ ।
ତ୍ରିଭୁବନ ରାଜ୍ୟ ମିଳିବ ମୋତେ ଯେବେ
ଶିବଙ୍କର ବିନା ତା ଇଚ୍ଛାନାହିଁ ଲଭେ ।
ଶିବ ବର ନ ଦେଲେ ଏଠାରେ ମିଳାଇ
ତପକରି ଯିବ ମୋ ବ୍ରତ ଶଚୀ-ସାଇଁ ।
ବ୍ରହ୍ମଲୋକ ରୁଦ୍ରଙ୍କ ବର ବିନା ହେଲେ
ଇଚ୍ଛା ନ କରଇଁ ତାହା ମୁଁ ଜାଣ ଭଲେ ।
ଶିବଙ୍କର ଦାସର ଦାସର ମୁଁ ଦାସ
ହେବି ବୋଲି ଜାଣ କରିଛି ମନେ ଆଶ ।
ଯେତେ ଥର ମୁହିଁ ହେଉଣ ଥିବି ଜାତ
ଶିବଙ୍କ ଦାସ ହେବି ଏ ମୋହର ଚିତ୍ତ ।
ଇନ୍ଦ୍ର ବୋଇଲେ ହେ ଶିବଙ୍କ ବିନା ଆନ
ଦେବଙ୍କୁ କମ୍ପା କରୁନାହିଁ ହେ ଭଜନ ।
ଏଥିରେ କି କାରଣ ଅଛି ତାହା ମୋତେ
କହ ତ ମୁହିଁ ପଚାରୁଛି ହେ ସୁବ୍ରତେ ।
ଉପମନ୍ୟୁ ବୋଲେ ଅସନ୍ତ ସନ୍ତ ବ୍ୟକ୍ତ
ଅବ୍ୟକତ ଏକ ଅନେକ ନିତ୍ୟ ନିତ୍ୟ ।
ଏରୂପେ ଯାହାଙ୍କୁ ବୋଲନ୍ତି ମୁଁ ତାହାଙ୍କୁ
ଭଜୁଅଛି ଇନ୍ଦ୍ର କହିବି କି ତୁମ୍ଭଙ୍କୁ ।
ସୁରମାନଙ୍କର ଈଶ୍ୱର ଯେ ବୋଲନ୍ତି
ସରଜନା କରିଛନ୍ତି ଯେ ବେଦପନ୍ତି ।
ଅଗ୍ନି ଜଳ ପବନ ପୃଥିବୀ ଆକାଶ
ଯାହା ସକାଶରୁ ହୋଇଅଛି ପ୍ରକାଶ ।
ବୁଦ୍ଧି ମନ ମହତତତ୍ତ୍ୱ ଆଦି କଥା ।
ସରଜିଅଛନ୍ତି ଶିବ ମହାରଥ୍ୟ ।
ତୁମ୍ଭେ ସେହି ଦେବଙ୍କୁ ଆରାଧନା କରି
ଶଚୀଙ୍କ ତୁଲେ ପାଇଲଟି ସ୍ୱର୍ଗ-ପୁରୀ ।
ଦିଗ-ବସନ ଊର୍ଦ୍ଧ୍ୱରେତା କାମଜିଣା
ଅଟନ୍ତିଟି ଜାଣ ହେ ଶିବ ମହାମନା ।
ଅର୍ଦ୍ଧନାରୀଶ୍ୱର ବୋଲନ୍ତିଟି ତାହାଙ୍କୁ
ଆନଠାବରେ ଏ ଅଛି କି କହ ଆମ୍ଭଙ୍କୁ ।
ପ୍ରତ୍ୟକ୍ଷରେ ଦେଖ ଏ ଜଗତର ପ୍ରାଣୀ
ବହିଅଛନ୍ତି ଅଙ୍ଗରେ ଲିଙ୍ଗ ଭଗଶ୍ରେଣୀ ।

ଶିବଙ୍କ ଲିଙ୍ଗ ଛାଡ଼ି ଆନ ଲିଙ୍ଗ ପୂଜା
କରୁଛନ୍ତି କଏ ହେ କହ ଦେବରାଜା ।
ଚକ୍ର ପଦ୍ମ ବଜ୍ର ଶଙ୍ଖକୁ ବହି ଜନ
ହୋଇ ତ ନାହାନ୍ତି ହେ ମର୍ତ୍ତ୍ୟରେ ଜନମ ।
ଶିବମସ୍ତୁ ସୃଷ୍ଟି ହେବାରୁ ଭଗ ଲିଙ୍ଗ
ବହି ଅଛନ୍ତି ଦେଖ ସବୁଙ୍କର ଅଙ୍ଗ ।
ପୁରୁଷମାନେ ସବୁ ଈଶ୍ୱର ସର୍ଜନା
ସ୍ତ୍ରୀଙ୍କି ସର୍ଜିଛନ୍ତି ଉମା ଶୁଭାଙ୍ଗନା ।
ଏହି ସକାଶରୁ ଶିବଙ୍କଠାରୁ ବର
ମରଣ ହୁହେଁ ହେଲେ ଶ୍ରେୟ ହେବ ମୋର ।
ଯାଅ ଯାଅ ଭୁମ୍ଭରେ କାର୍ଯ୍ୟ ମୋର ନାହିଁ
ଶୁଣ ହେ ଶଚୀଦେବୀଙ୍କର ପ୍ରାଣସାଇଁ ।
ଏହିରୂପେ ଇନ୍ଦ୍ରଙ୍କୁ କହିକରି ମୁହିଁ
ଶିବଙ୍କୁ ଧ୍ୟାନ କଲି ଅତି ଦୁଃଖୀ ହୋଇ ।
ସେହିକ୍ଷଣି ଦେଖିଲି ସେ ଐରାବତ
ମୋ ନେତ୍ରକୁ ଦିଶିଲା ବୃଷଭ ସହିତ ।
ହଂସ କୁନ୍ଦ ଇନ୍ଦୁ ପରାୟେ ତା'ର କାନ୍ତି
ପ୍ରକାଶି ଭାଙ୍ଗୁଅଛି ଶୁକ୍ଳଯାକ ଜ୍ୟୋତି ।
ବଜ୍ରସାର ପରାୟେ ଦିଶୁଅଛି ସିଂହ
ଦେଖିଲେ ପ୍ରାଣୀଙ୍କର ହେବ ତାହା ମୋହ ।
ସୁବର୍ଣ୍ଣମାଳାରେ ସେ ବୃଷଭ ଦେହଟି
ମଣ୍ଡି ହୋଇ ଭାଙ୍ଗୁଛି ଆଦିତ୍ୟ-ପ୍ରଭାଟି ।
ସେ ବୃଷଭ ଉପରେ ଶିବ ଉମା ଦୁଇ
ବସିଅଛନ୍ତି ସୂର୍ଯ୍ୟ-ଚନ୍ଦ୍ର ପ୍ରଭା ବହି ।
ସେ ଦୁହିଙ୍କ ତେଜ ଦେଖିଲାକ୍ଷଣି ମୁହିଁ
ବୁଜିଦେଲି ଦୁଇ ପଲକ ସହୁସାଇଁ
ସେ ତେଜ ସେହିକ୍ଷଣି ହୋଇଗଲା ଶାନ୍ତ
ଦେଖିଲି ଶିବ ଉମା ଦୁହିଙ୍କୁ ମୋ ନେତ୍ର ।
ଶିବଙ୍କର ହୋଇଛି ଅଠରଟି ଭୁଜ
ସେ ଭୁଜ ଭାଙ୍ଗ ଦେଉଅଛି ବଜ୍ର ଓଜ ।
ଶୁକ୍ଳଫୁଲ ଶୁକ୍ଳଚନ୍ଦନ ଶୁକ୍ଳବାସ
ଶୁକ୍ଳ ଉପବୀତେ ଶୋଭିତ ଅଙ୍ଗଦେଶ ।
ଗଣମାନେ ଚାରିପାଶରେ ବେଢ଼ିଛନ୍ତି
ଗୀତ ବାଦ୍ୟ ନୃତ୍ୟରେ ମନକୁ ହରନ୍ତି ।
ବାଳଚନ୍ଦ୍ର ତାଙ୍କର ହୋଇଛି ମୁକୁଟ
ତ୍ରିସୂର୍ଯ୍ୟ ପରି ତିନି ନେତ୍ର ପରକଟ ।

ରତ୍ନଙ୍କରେ ଭୂଷିତ ସୁନାପଦ୍ମମାଳା—
ଟାଏ ଲମ୍ବି ରହିଛି ମଧ୍ୟ ତାଙ୍କ ଗଳା ।
ସକଳ ଅସ୍ତ୍ରମାନେ ମୂର୍ତ୍ତିମନ୍ତ ହୋଇ
ଦେଖିଲି ତାଙ୍କ ପାଶେ ଛନ୍ତି ସହୁଯାଇଁ ।
ଇନ୍ଦ୍ରାୟୁଧ ପରି ପିନାକ ମହାଧନୁ
ପାଖେ ରହି ଭାଙ୍ଗୁଛି ତେଜରେ ସେ ଭାନୁ ।
ସେ ଧନୁରେ ସମସ୍ତ ମୁଣ୍ଡ ବହି ସର୍ପ
ରହିଅଛି ତା ବିଷ ଅଟଇ ଅମାପ ।
କାଳାନଳସୂର୍ଯ୍ୟ ପରାୟେ ଭାତିରେ
ଶର ରହିଅଛି ସେ ଧନୁର କଣ୍ଠରେ ।
ସହସ୍ରସଂଖ୍ୟା ଶିର ଜିହ୍ୱା ଉଦରକୁ ;
ବହିଣ ପାଶୁପତ ସେବନ୍ତି ଶିବଙ୍କୁ ।
ସବୁ ଶସ୍ତ୍ରଯାକେ ସେ ଅଧିକ ଅଟନ୍ତି
ପ୍ରଳୟ କରିବାର କର୍ତ୍ତା ସେ ବୋଲନ୍ତି ।
ପାଶୁପତ ଅସ୍ତ୍ରରେ ଶିବ ତ୍ରିପୁର
ପୋଡ଼ି ପକାଇଲେଟି ଜାଣ ଚକ୍ରଧର ।
ସମୁଦ୍ରଜଳ ପିଇ ପାରଇ ସେ ଶୂଳ
ସେ ଅଛନ୍ତି ମହାଦେବଙ୍କ କରତଳ ।
ଯେଉଁ ପରଶୁରେ ପରଶୁରାମ ବୀର
ନେଇଥିଲା ପ୍ରାଣ କ୍ଷତ୍ରିୟମାନଙ୍କର ।
ସେହି ପରଶୁ ମୂର୍ତ୍ତିମନ୍ତ ହୋଇ ଶିବ—
ସମୀପରେ ଥିଲେ ହୃଦରେ ବହି ଭାବ ।
ଶିବଙ୍କ ଦକ୍ଷପାଶେ ହଂସଯୁକ୍ତ-ଯାନେ
ରହିଛନ୍ତି ବ୍ରହ୍ମା ଶିବଙ୍କ ସନ୍ନିଧାନେ ।
ଶଙ୍ଖଚକ୍ର ଧରିଣ ଚଢ଼ି ପକ୍ଷୀବର
ବାମ ପାଖେ ଥିଲେ କମଳା ଦେବୀ-ବର ।
ମୟୂରବାହନରେ କାର୍ତ୍ତିକେୟ ବୀର
ଶକ୍ତି ଘଣ୍ଟା ଧରି ଦିଶୁଛନ୍ତି ଘୋର ।
ଦ୍ୱିତୀୟ ମହାଦେବ ପ୍ରାୟେ ଆଗେ ନନ୍ଦୀ
ଶୂଳ ଧରି ଅଛନ୍ତି ତେଜକୁ ସମ୍ବାହି ।
ବାସବ ଆଦି ଦେବେ ସକଳ ମନୁଏ
ଭୃଗୁ ଆଦି ଋଷିଏ ଅତି ଶରଧାଏ ।
ଶିବଙ୍କର ଆଗ ପଛରେ ରହିଛନ୍ତି
ନାନାଜାତି ସ୍ତୁତିରେ ଶିବଙ୍କୁ ମୋହନ୍ତି ।
ଏରୂପେ ଶିବଙ୍କର ଦେଖିଣ ମୂରତି
ହେ କୃଷ୍ଣ ମୁଁ ମଧ୍ୟ ଶିବଙ୍କୁ କଲି ସ୍ତୁତି ।

ଆହେ ଦେବାଧିଦେବ ଶଙ୍ଖ ବେଶଧର
ଶଙ୍ଖରୂପ ଶଙ୍ଖ ଶୁକ୍ଳଅମ୍ବରଧର ।
ରକ୍ତ ଧ୍ୱଜପତାକା ଶୁକ୍ଳ କର୍ମରତ
ପୀତଧ୍ୱଜ ପତାକା କୃଷ୍ଣାଷ୍ଟମୀରତ ।
ରକ୍ତବରଣ କୃଷ୍ଣାଜିତ ଉତ୍ତରଶାସ୍ତ୍ର
ରକ୍ତମାଲ୍ୟାନୁଲେପନ ଶୁକଳକାସ୍ତ୍ର ।
ଉଚ୍ଛ୍ରିତଛତ୍ର ମହାଦେବ କୃଷ୍ଣଦାସ
ଶଙ୍ଖ ଶୂଳଧର କୃଷ୍ଣକୁଞ୍ଚିତକେଶ
ଶୁକ୍ଳବର୍ଣ୍ଣ ଅରୁଣ ପୀତାମ୍ବରଧର
ଅଦ୍ଧାହାର ପିଙ୍ଗଳ ରକ୍ତାମ୍ବରଧର ।
ପିନାକପାଣି ଶୁକ୍ଳଭସ୍ମ-ଅବଲିପ୍ତ
ପୀତ ମାଲ୍ୟାନୁଲେପନ ଅଣନହସ୍ତ ।
ରକ୍ତସୂତ୍ରଧର ଅନୁର୍ଦ୍ଧିଷ୍ଟାଭିଧାନ
ସନ୍ଧ୍ୟାରାଗପ୍ରନ୍ତର ଅଗମ୍ୟଗମନ ।
ଗଣଗୀତ ମାରଗଗଣ ନିତ୍ୟବ୍ରତ
ଶ୍ୟାମ ଗୌରସ୍ୱରୂପ ଗଣବୃନ୍ଦରତ ।
ରକ୍ତାଗ୍ରବାସା ରକ୍ତସୁମାଳ ବିଚିତ୍ର
ନାଗନରଦେହ ସ୍ୱରେନ୍ଦ୍ର ଅର୍ଦ୍ଧପୀତ ।
ଶ୍ୱେତାଭ୍ରବର୍ଣ୍ଣ ଅର୍ଦ୍ଧଚନ୍ଦନ ବିଳିପ୍ତ
ବୃଷବାହନ ଅର୍ଦ୍ଧଗନ୍ଧ ଅନୁଳିପ୍ତ ।
ଆଦିତ୍ୟବର୍ଣ୍ଣାଦିତ୍ୟନୟନ ମୂର୍ଦ୍ଧାନ୍ତ
ଆଦିତ୍ୟରୂପାଦିତ୍ୟ-ପ୍ରତିମା ମହେନ୍ଦ୍ର ।
ଜଟାଜଳମିଶ୍ରିତ ପଦ୍ମାଅର୍ଦ୍ଧମାଳ
ସ୍ତ୍ରୀପୁଂସ ସ୍ୱରୂପ ସୌମ୍ୟବନ୍ତ ଧର ।
ସୌମ୍ୟଦଂଷ୍ଟ୍ରା ସୌମ୍ୟରୂପ-ଆନନ ସୌମ୍ୟ
ସର୍ବଭୂଷଣ ଅର୍ଦ୍ଧପାଣ୍ଡୁ ପୀତବର୍ଣ୍ଣ ।
ଗଜପତି ଅର୍ଦ୍ଧକେୟୂର ବାତବେଗ
ସର୍ବରୂପଧର ବିଶାଖସ୍କନ୍ଦବେଗ ।
ଜଳଧରନିନାଦ ଯଜ୍ଞ ବିଧ୍ୱଂସନ
କାଳଦଣ୍ଡଧର ବିଚିତ୍ର ଆଭରଣ ।
ମଣିବିଭୂଷିତ ମୂର୍ଦ୍ଧା ଅନଳ ରୂପ
ଅର୍ଦ୍ଧଚନ୍ଦ୍ର ଭୂଷିତ ପବନ ସ୍ୱରୂପ ।
ପ୍ରଚଣ୍ଡବେଗ ବ୍ରହ୍ମଶିର ଅପହର୍ତ୍ତା
ବ୍ରହ୍ମଦଣ୍ଡ କାନ୍ତ ହେ ମନ୍ମଥଦର୍ପହର୍ତ୍ତା ।
ତ୍ରିରୂପଧର ଯୋଗୀ ବନ୍ଧୁ ମାୟାଧର
ଅଗ୍ନି ମୁଖ ନେତ୍ର ତ୍ରିଗୁଣ ବିଶ୍ୱେଶ୍ୱର ।

ସହସ୍ର ଶଶିଚକ୍ଷୁ କାମାଙ୍ଗ ବିନାଶ
ତ୍ରିପୁରଧାଙ୍ଗ ସର୍ବସୁରଙ୍କର ଈଶ ।
ଅନନ୍ତ ଦିଗମ୍ବର କୁସୁମାଗ୍ରଶିଖ
କାଞ୍ଚନମାଳ ଶିବ ସୁକୁସୁମଶିଖ ।
ଗିରିମାଳ ସୁରରମାଳ ଅଧିବାସ
ସର୍ପକଣ୍ଠୋପହାର ଜଗତନିବାସ ।
ଗୋଚର ଅନ୍ତରତ ଭୂଚର ଭୂଧର
ସହସ୍ର ଶତଚକ୍ଷୁ ଅଥର୍ବ ହେ ହର ।
ତ୍ରିନେତ୍ର ନେତ୍ର ସର୍ବ ଆର୍ତ୍ତି ନାଶକର
ବୀଜ କ୍ଷେତ୍ରପାଳକ ଭୁବନ ଖେଚର ।
ଅନ୍ଧକାନ୍ତକ ବିଶ୍ୱମାୟାଙ୍ଗ ହେ ଭବ
ବିଶ୍ୱରୂପ ଭବବନ୍ଧ ନାମ ପର ସର୍ବ ।
ଏହିରୂପେ ସ୍ତୁତି କରି ମୁଁ ଉମାବର—
ପସ୍ତୁଳକୁ କଲି ହେ କୃଷ୍ଣ ନମସ୍କାର ।
ବୋଇଲେ ଦେବଙ୍କରେ ବ୍ରହ୍ମା ଅଟ ତୁମ୍ଭେ ।
ରୁଦ୍ରଙ୍କରେ ନୀଳ ଲୋହିତ ଅଟ ତୁମ୍ଭେ ।
ସାଙ୍ଖ୍ୟଶାସ୍ତ୍ରଙ୍କରେ ପୁରୁଷ ଅଟ ତୁମ୍ଭେ
ଯୋଗଶାସ୍ତ୍ରଙ୍କରେ ବୋଲୁଅ ଶିବ ତୁମ୍ଭେ
ଆଶ୍ରମାନଙ୍କେ ଗୃହସ୍ଥାଶ୍ରମୀ ତୁମ୍ଭେ
ଈଶ୍ୱରଯାକେ ମହେଶ୍ୱର ଅଟ ତୁମ୍ଭେ ।
ଯକ୍ଷମାନଙ୍କରେ କୁବେର ଦେବ ତୁମ୍ଭେ
ଯଦୁମାନଙ୍କରେ ଶ୍ରୀକୃଷ୍ଣ ଅଟ ତୁମ୍ଭେ ।
ପର୍ବତମାନଙ୍କରେ ମେରୁ ଗିରି ତୁମ୍ଭେ
ନକ୍ଷତ୍ରମାନଙ୍କରେ କଳାକର ତୁମ୍ଭେ ।
ଋଷିମାନଙ୍କରେ ବଶିଷ୍ଠ ଋଷି ତୁମ୍ଭେ
ଗ୍ରହମାନଙ୍କେ ପୁଣି ଛାୟାକାନ୍ତ ତୁମ୍ଭେ ।
ଅରଣ୍ୟପଶୁଙ୍କରେ ସିଂହ ଅଟ ତୁମ୍ଭେ
ଗ୍ରାମ୍ୟପଶୁମାନଙ୍କେ ବୃଷଭଟି ତୁମ୍ଭେ ।
ଅଦିତି ପୁଅରେ ବାମନ ଦ୍ୱିଜ ତୁମ୍ଭେ
ଅଷ୍ଟ ବସୁଙ୍କରେ ପାବକଦେବ ତୁମ୍ଭେ ।
ପକ୍ଷୀମାନଙ୍କରେ ଗରୁଡ଼ପକ୍ଷୀ ତୁମ୍ଭେ
ସାପମାନଙ୍କରେ ଅନନ୍ତସର୍ପ ତୁମ୍ଭେ ।
ବେଦମାନଙ୍କେ ପୁଣି ସାମବେଦ ତୁମ୍ଭେ
ଯଜୁର୍ବେଦ ଶତରୁଦ୍ରୀୟ ଅଟ ତୁମ୍ଭେ ।
ଯୋଗୀଙ୍କରେ ସନତ୍କୁମାର ଯୋଗୀ ତୁମ୍ଭେ
ସୁରଙ୍କରେ କପିଳ ଜ୍ଞାନୀ ଅଟ ତୁମ୍ଭେ ।

ଦେବତାମାନଙ୍କରେ ଇନ୍ଦ୍ର ଅଟ ତୁମ୍ଭେ
ପିତୃଙ୍କଠାରେ ପୁଣି ଦେବରାଜ ତୁମ୍ଭେ ।
ଲୋକଯାକରେ ବ୍ରହ୍ମଲୋକ ଅଟ ତୁମ୍ଭେ
ସବୁ ଗତିରେ ସାର ମୋକ୍ଷଗତି ତୁମ୍ଭେ ।
ସମୁଦ୍ର ମଧ୍ୟେ କ୍ଷୀର-ମହୋଦଧି ତୁମ୍ଭେ
ବର୍ଣ୍ଣମାନଙ୍କ ମଧ୍ୟେ ଦ୍ୱିଜ ଅଟ ତୁମ୍ଭେ ।
ଦ୍ୱିଜମାନଙ୍କରେ ଦୀକ୍ଷିତ ଅଟ ତୁମ୍ଭେ
ତୁମ୍ଭଙ୍କୁ କି ସ୍ତୁତି ବା କରିବୁଁ ଟି ଆମ୍ଭେ ।
ଏ ମୋହର ମନୋରଥକୁ ସିଦ୍ଧି କର ।
ନମସ୍ତେ ନମସ୍ତେ ନମସ୍ତେ ବିଶ୍ୱେଶ୍ୱର ।
ନ ଜାଣି ଅପରାଧ ଯେତେ ମୁଁ କରିଛି
କ୍ଷମାକର ହେ ଜଣାମଣା ମୁଁ କରୁଛି ।
ତୁମ୍ଭ ରୂପ ଦେଖି ମୁଁ ହୋଇଲି ମୋହିତ
ମନେ କଲି ଏକା ଅଟନ୍ତି ପୁରୁହୂତ ।
ଏହି ସକାଶରୁ ଯେ ଅର୍ଘ୍ୟ ପାଦ୍ୟ ଦୁଇ
ଦେଇ ପୂଜା ନ କଲି ଉମାଦେବୀସାଇଁ ।
ଏରୂପେ ଶିବଙ୍କୁ କରନ୍ତେ ଜଣାମଣା
ହେଲା ପୁଷ୍ପବୃଷ୍ଟି ମୋ ମୁଣ୍ଡେ ଅକଳନା ।
ଦେବେ ସେହିକାଳେ ଦୁନ୍ଦୁଭି ବଜାଇଲେ
ପବନ ବହି ମୋତେ ଲୋଭି କରାଇଲେ ।
ମୋହର ଏ ଭକତି ଜାଣିକରି ହର
ବୋଇଲେ ଦେଖ ଦେବେ ଭକ୍ତି ମୁନିଙ୍କର ।
ଏହାଶୁଣି ଦେବେ ବୋଇଲେ ହୋଇ ହୋଇ
ଏଥିରେ କହିବାକୁ କଥା କିଛି ନାହିଁ ।
ଯାହା ଇଚ୍ଛା କରିଅଛନ୍ତି ଏହୁ ବର
ତାହା ଦିଅ ଏହାଙ୍କୁ କି ପଚ୍ଚୁର ହର ।
ଏହା ଶୁଣିଣ ଶିବ ବୋଇଲେ ବ୍ରାହ୍ମଣ
କି ଇଚ୍ଛା କରିଅଛ କର ତା ବଖାଣ ।
ତୁମ୍ଭ ଭକତିରେ ମୁଁ ଅତି ପ୍ରୀତ ହୋଇ
ଆସିଛି ଯା ମାଗିବ ତାହା ମୁଁ ଦେବଇଁ ।
ମୁଁ କହିଲି ତୁମ୍ଭ ରୂପକୁ ମୋହ ପଥେ
ରଖି ସଙ୍ଗୀ ହୋଇଛି ସୁଖରସସାଥେ ।
ଯେବେ ମୋତେ ହେ ବର ଦେବା ଇଚ୍ଛା ଅଛି
ତୁମ୍ଭ ପାଦ ଦୁଇ ମୁଁ ନ ପାଶରିବ ମୂର୍ଚ୍ଛି
ଏହି ମତ ମୋର ହୋଇଛି ସୁରେଶ୍ୱର
ଏହି ତ ବର କରି ମୋତେ ଆଜ୍ଞା: କର
ତିନକାଳର କଥାଯାକ ମୁଁ ଜାଣିବି ।
ସଂସାର କୁଣ୍ଡେ ପଡ଼ି ଘାଣ୍ଟି ମୁଁ ନୋହିବି ।
ବନ୍ଧୁଙ୍କୁ ଯେନ ଭଲ ଦୁଧଭାତ ନିତି
ଭୁଞ୍ଜୁଥିବ ତହିଁରେ ବଳାଛି ମୋ ପ୍ରୀତି ।
ମୁଁ ଯେଉଁଠାରେ ଯାଇ କରିବଟି ଘର
ସେହିଠାବରେ ବିଜେ କରିଥିବ ହର ।
ଏହା ଶୁଣିଣ ହର ଦେଲେ ମୋତେ ବର
ଅଜର ଅମର ହେ ହୁଅ ଦ୍ୱିଜବର ।
କନ୍ଦର୍ପ ପରି ତୁମ୍ଭ ହୋଇବ ମୂରତି
ନାଶିବ ସେ ଜ୍ୟୋତି ପ୍ରଳୟଅଗ୍ନି କାନ୍ତି ।
ଦୁଧଭାତ ଖାଇବାକୁ ଯେ ତୁମ୍ଭ ମନ
ଥିଲା କ୍ଷୀରସମୁଦ୍ର ଥିବ ସନ୍ନିଧାନ ।
ନଳପେ ସରସନ୍ତେ ବନ୍ଧୁଙ୍କର ତୁଲେ
ଦୁଧଭାତ ଖାଇଥିବ ହେ ତୁମ୍ଭେ ଭଲେ ।
ଚିନ୍ତା କରିଲେ ମୁଁ ତୁମ୍ଭଙ୍କୁ ହେବ ଦୃଶ୍ୟ
କଳ୍ପଅନ୍ତ ହେବ ମୋ କଇଳାସେ ବାସ ।
ତୁମ୍ଭଠାରୁ ଯେତେକ ହେବେ ଉତପତ୍ତି
କଳ୍ପେଯାଏଁ ରହିବେ ତାଙ୍କର ସନ୍ତତି ।
ଏରୂପେ ମୋତେ ବର ଦେଇ ଉମାବର
ଲୁଚ୍ଚଇଲେ ସେକ୍ଷଣି ଆପଣା ଶରୀର ।
ଆହେ କୃଷ୍ଣ ଯେରୂପେ ଶିବଙ୍କୁ ଦେଖିଲି
ପଚ୍ଚରିବାରୁ ତୁମ୍ଭେ ସେରୂପେ କହିଲି ।
ଆପଣ ତ ପ୍ରତ୍ୟକ୍ଷେ ଦେଖିବା ହେଉଛି
ଅପୂର୍ବ ହୋଇ ମୋତେ କେଉଁ ଦ୍ରବ୍ୟ ଅଛି ।
ଯେତେ ବୃକ୍ଷ ଲତା ଅଛି ମୋ ଆଶ୍ରମରେ
ଫଳପୁଷ୍ପ ବହିଥାନ୍ତି ନିରନ୍ତରେ ।
ଉପମନ୍ୟୁଙ୍କର ମୁଖରୁ ଏହିମାନ
ଶୁଣିକରି ତାଙ୍କୁ ମୁଁ କହିଲି ବଚନ ।
ଧନ୍ୟ ଧନ୍ୟ ଅଟ ହେ ଉପମନ୍ୟୁ ମୁନି
ନିହଛ ଯେଣୁ ତୁମ୍ଭେ ସଙ୍ଗେ ଶିବ ଯେନ ।
ତୁମ୍ଭଙ୍କୁ ଅନୁଗ୍ରହ କଲାପରି ମୋତେ
ଅନୁଗ୍ରହ କରନ୍ତେ କି ସେ ମହାତ୍ମତେ ।
ଉପମନ୍ୟୁ ବୋଇଲେ ଗୋବର୍ଦ୍ଧନଧର
ଛ' ମାସପୂର୍ଣ୍ଣେ ହେ ଦେଖିବ ଦେବ ହର ।
ଦିବ୍ୟଚକ୍ଷୁବଳେ ଗୋଚର ଏ ହୋଇଛି
ଏଥିରେ ସନ୍ଦେହ ନ କର ତୁମ୍ଭେ କିଛି ।

ଉମା ଭୁଲରେ ହର ଦେବଶିଷ୍ଟ ବର
ଦେବେ ଯାଚ ତୁମ୍ଭଙ୍କୁ ରୁକ୍ମିଣୀଙ୍କ ବର ।
ମୁଁ ବୋଇଲ ଯେବେ ଏରୂପେ ଋଷି ତୁମ୍ଭେ
ବୋଲୁଅଛ ଶିବ ଦେଖିବୁଁ ତେବେ ଆମ୍ଭେ ।
ଉପମନ୍ୟୁ ବୋଇଲେ ଶିବ ଦେଖିବାକୁ
ମନ୍ତ୍ରେକ ଦେବା ତେବେ ହରି ହେ ତୁମ୍ଭଙ୍କୁ
ଏରୂପେ ତାଙ୍କ ଆମ୍ଭ ହୋନ୍ତେ କଥାବାର୍ତ୍ତା
ଆଠଦିନ ଗଲା ପାଣ୍ଡବ-ଧର୍ମବେତ୍ତା ।
ଆଠଦିନ ଉତ୍ତାରୁ ଦଣ୍ଡୀ ମୁଣ୍ଡୀ ହୋଇ
କୁଶ ଧରି ପିନ୍ଧିଲି କୃଷ୍ଣାଜିନ ମୁହିଁ ।
ଉପମନ୍ୟୁଙ୍କର ଯେ ସମୀପକୁ ଗଲି ।
ଶିବଙ୍କୁ ଦେଖିବାର ମନ୍ତ୍ରଟି ଶିଖିଲି ।
ମାସେ ଫଳ ଆହାର କରିଣ ବରତ
କଲି ମୁଁ ଦେଖିବାକୁ ଉମାଦେବୀ କାନ୍ତ
ଦ୍ୱିତୀୟମାସ ଜଳ ପିଇଣ ରହିଲି
ତିନିମାସ ପବନ ଆହାରକୁ କଲି ।
ଷଡ଼ମାସ ଏକାଗୋଡ଼କେ ହୋଇ ଛିଡ଼ା
ଗଡାଇଲି ଯେ ଜପାମାଳି ଭିଡ଼ାଭିଡ଼ା ।
ଷଡମାସେ ପୂର୍ଣ୍ଣେ ଦେଖିଲି ତେଜ ମୁହିଁ
ସହସ୍ର ସୂର୍ଯ୍ୟଜ୍ୟୋତି ଦେଉଛି ଛପାଇ ।
ସେ ତେଜ ମଧ୍ୟରେ ଦେଖିଲି ନୀଳମେଘ
ସେ ମେଘରେ ଅଛନ୍ତି ବହୁ ବିଦ୍ୟୁତସଙ୍ଘ ।
ମେଘର ଉପରରେ ସେ ଶିବ ପାର୍ବତୀ
ବସିଛନ୍ତି ପ୍ରକାଶି ନିଜ ଦେହ ଜ୍ୟୋତି ।
ମନେ କଲି ଇନ୍ଦ୍ରକୁ କେବା ସୂର୍ଯ୍ୟଦେବ
ଏ ମେଘର ମଧ୍ୟେ କି କରିଛନ୍ତି ଠାବ ।
ପ୍ରଥମ ଗଣମାନେ ଛନ୍ତି ଚଉପାଶେ
ଗୀତ ବାଦ୍ୟ ନୃତ୍ୟ କରନ୍ତି ସେ ହରଷେ
ଏଗାରଶ ରୁଦ୍ର ଯେ ହୋଇକରି ଗୋଟି
ତାଙ୍କୁ ସ୍ତୁତି କରନ୍ତି ଯୋଡ଼ିଣ ହାତୁଟି ।
ଇନ୍ଦ୍ରାଦି ଦେବତାଏ ହୋଇ ଏକମନ
ବନ୍ଦନା କରୁଛନ୍ତି ସେ ଶିବଚରଣ ।
ଇନ୍ଦ୍ର ବିଷ୍ଣୁ ବ୍ରହ୍ମା ତାହାଙ୍କ ପାଖେ ରହି
ରଥନ୍ତରସାମ ଗାଆନ୍ତି ପ୍ରୀତି ବହି ।
ବ୍ରହ୍ମର୍ଷି ଦେବର୍ଷି ପୃଥିବୀ ଆକାଶ
ନକ୍ଷତ୍ର ଗ୍ରହଗଣ ମାସ ଅର୍ଦ୍ଧମାସ ।

ଋତୁ ରାତ୍ରି ବରଷ ଅୟନ ନିମିଷ
ମୁହୂର୍ତ୍ତ ଯୁଗ ସବୁ ବିଦ୍ୟା ସବୁ ଦିଶ ।
ବେଦ ସନତ୍କୁମାର ସୋମ ଇତିହାସ
ମରୀଚି କ୍ରତୁ ଭୃଗୁ ବୃହସ୍ପତି ବ୍ୟାସ ।
ବଶିଷ୍ଠ କାଶ୍ୟ ଦକ୍ଷ କାଶ୍ୟପ ପାବକ
ଯଜ୍ଞଦ୍ରବ୍ୟ ହରି ପରଜାଙ୍କ ପାଳକ ।
ନଦୀ ସର୍ପ ସାଗର ପର୍ବତ ଦକ୍ଷିଣା
ବେଦମାତା ପ୍ରଜ୍ଞା ଭୂଲରେ ଦେବକନ୍ୟା ।
ଏମାନେ ରୁଦ୍ରଙ୍କର ପାଦ ଦୁଇ ଧରି
ନମନ୍ତି ଦେଖି ପାଣ୍ଡବ-ଦଣ୍ଡଧାରୀ ।
ଗନ୍ଧର୍ବ ଅପସରାମାନେ ବୀଣାଧର
ଗୀତ ଗାଇ ନଅନ୍ତି ଶିବ ମନ ହରି ।
ଏରୂପେ ମୋର ଆଗେ ଶିବ ହେଲେ ଛିଡ଼ା
ପଡ଼ିଛନ୍ତି ହୃଦରେ ତାଙ୍କ ସାପଭିଡ଼ା ।
ଶିବଙ୍କର ରୂପ ମୋ ଦୁଇଆଖି ଦେଖି
ବୁଜି ହୋଇଗଲା ରାଜନ ହୋଇ ଦୁଃଖୀ ।
ଶିବ ତାହା ଜାଣି ବୋଇଲେ କୃଷ୍ଣ ରହ
ଗୁଡ଼ିଦିଅ ହୃଦମଧ୍ୟରୁ ଏବେ ମୋହ
ତୁମ୍ଭରଠାରୁ ପ୍ରିୟ ହୋଇଅଛି କେହି
ଏ ମହୀମଣ୍ଡଳରେ ମୋତେ ଦିଶୁନାହିଁ ।
ଶିବଙ୍କ ଏ ବଚନେ ତାଙ୍କୁ ନମସ୍କାର
ଗୃହିଁକରି କଲି ମୁଁ ଜାଣ ଯୁଧିଷ୍ଠିର ।
ବହୁତ ମୁଁ ବିନୟ ହୋଇ କଲି ସ୍ତୁତି
ଏ ବାହାରେ ବୋଇଲି ଏ ଜଗତପତି ।
ତୁମ୍ଭେ ହେ ପାର୍ବତୀ-ବଲ୍ଲଭ ମନେ ଜେନ
ସତ୍ତ୍ୱ ରଜ ତମ ତୁମ୍ଭର ଏ ତ୍ରିଗୁଣ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ବରୁଣରୂପୀ ତୁମ୍ଭେ
ଧାତା ତ୍ୱଷ୍ଟା ତୁମ୍ଭଙ୍କୁ ବୋଲୁ ଆହେ ଆମ୍ଭେ ।
ତିନିଲୋକଯାକର ତୁମ୍ଭେ ମାତା ପିତା
ଅଟ ତୁମ୍ଭେ ସ୍ଥାବର-ଜଙ୍ଗମ-କରତା ।
ଯାଗରେ ଯେତେ ସାମଗୀତ ଲେଖିଅଛି
ତହିଁ ତୁମ୍ଭେ ବୋଲି ମୁଁ ମନେ ଭାବୁଅଛି ।
ଯାଗ ଦାନ ଅଧ୍ୟୟନ ବରତ ନିୟମ
କୀର୍ତ୍ତି ଶିରୀ ଦ୍ୟୁତିରେ ତୁମ୍ଭେ ଅଧିକାରୀ
କାମ କ୍ରୋଧ ମୋହ ଲୋଭ ଆଧି ବ୍ୟାଧି
ମତ୍ସର ତୁମ୍ଭ ପୁଣ ଏ ମୋହର ବୁଦ୍ଧି ।

ସବୁ ଗୁଣମାନଙ୍କରେ ଯେ ତୁମ୍ଭେ ଆତ୍ମା
ତୁମ୍ଭଙ୍କୁ ବୋଲନ୍ତି ସମସ୍ତେ ପରମାତ୍ମା ।
ତୁମ୍ଭଙ୍କୁ ଯେଉଁ ଦ୍ୱିଜ ସେବେନ ହୃଦୟରେ
ନପଡ଼ଇ ଜାଣ ସେ ସଂସାର-ମାୟାରେ ।
ସମସ୍ତଙ୍କୁ ବ୍ୟାପିଣ ତୁମ୍ଭେ ରହିଅଛ
ତୁମ୍ଭଙ୍କୁ ଗୃହିଁଲେ ସଂସାର ଅଟେ ମିଛ ।
ଏରୂପେ ମୁହିଁ ସ୍ତୁତି ଶିବଙ୍କୁ କରନ୍ତେ
ସିଂହନାଦ କରିଲେ ପ୍ରାଣୀଏ ସମସ୍ତେ ।
ତିନଲୋକସାକ ସେକାଳରେ ଶିବଙ୍କୁ
ନମିଲେ ହୃଦରେ ବହି ପ୍ରମୋଦକୁ ।
ମୋହ ମୁଣ୍ଡରେ ପୁଷ୍ପ ପଡ଼ିଲା ଅମାପ
ବାତ ବହି ଛଡ଼ାଇଲା ମୋ ଦେହ ପାପ ।
ସବୁ ଦେବତାଙ୍କୁ ଅନାଇଁ ଉମାପତି
ମୋତେ ଏହା କହିଲେ ବହି ମହାପ୍ରୀତି ।
ଆଠ ବର ଆମ୍ଭଙ୍କୁ ମାଗ କୃଷ୍ଣ ତୁମ୍ଭେ
ଦେବୁଁ ଏହା ତୁମ୍ଭଙ୍କୁ ଜାଣ ହେ ନନ୍ଦ ମ୍ନେ ।
ଏହା ଶୁଣି ମୁହିଁ ପ୍ରସନ୍ନମନା ହୋଇ
ଶିବଙ୍କୁ ଜଣାଇଲି ଅତି ଭକ୍ତ ହୋଇ ।
ଧରମଦାର୍ଢ୍ୟ ଶତ୍ରୁନାଶ ଯଶ ସତ୍ତ୍ୱ
ତୁମ୍ଭର ସନ୍ନିକର୍ଷ ଯୋଗ ବହୁ ସୁତ ।
ପ୍ରିୟତ୍ୱକୁ ମିଶାଇ ଏ ଆଠୋଟି ବର
ଦିଅ ମୋତେ ପ୍ରସନ୍ନ ହେଲେ ଯେବେ ହର ।
ଶିବ ବୋଇଲେ ତେବେ ଏରୂପରେ ହେଉ
ତୁମ୍ଭର ମନୋରଥ ଆଜୁଁ ସିଦ୍ଧ ହେଉ ।
ଉମା ବୋଇଲେ ମୁଁ ତୁମ୍ଭଙ୍କୁ ଆଠବର
ଦେବି ଇଚ୍ଛା କରୁଛି ମାଗ ଚକ୍ରଧର ।
ମୁଁ ମାଗିଲି ପିତୃ ପ୍ରସାଦ ଦାକ୍ଷ୍ୟ ଶାନ୍ତି
ଦ୍ୱିଜଠାରେ ଅକ୍ରୋଧ ଭୋଗ କୁଳପ୍ରୀତି ।
ଶତସୁତ ମାତୃ ପ୍ରସାଦ ବର କରି
ଦିଅ ଗୋ ଯେବେ ଇଚ୍ଛା ହେଉଛି ଗଉରି ।
ଗଉରି ବୋଇଲେ ହେ ବୋଲୁଅଛ ଯାହା
ମୁଁ ବୋଲୁଛି ତୁମ୍ଭର ହେଉ ବୋଲି ତାହା ।
ମୋ ବଚନ କେବେ ତ ମିଥ୍ୟା ହେବ ନାହିଁ
ଏବେ କେମ୍ପା ମିଥ୍ୟା ହୋଇବ ଯଦୁସାଇଁ ।
ଏ ବାହାରେ ସନ୍ତୋଷେ ଆଉ ଆଠ ବର
ଦେଉଛି ତା ସୁଦୃଢ଼େ ଶଙ୍ଗ ଚକ୍ରଧର ।

ତୁମ୍ଭର ତ ମହତ ପ୍ରଭାବ ହୋଇବ
ଥାଉ ମିଥ୍ୟା କହିବା ଶୁଣିବା ନୋହିବ ।
ସହସ୍ର ଷୋଳ ତୁମ୍ଭ ଘରଯା ହୋଇବେ
ତାହାଙ୍କର ପ୍ରିୟତ୍ୱ ଆପଣ କରିବେ ।
ସହସ୍ର ସାତ ଦ୍ୱିଜ ତୁମ୍ଭ ଘରେ ନିତି
ଅନ୍ନ-ଖାଇ କରିଣ ଲଭୁଥିବେ ପ୍ରୀତି ।
ସବୁକାଳରେ ଧନ ଧାନ୍ୟାଦିରେ ପୂର୍ଣ୍ଣ
ହୋଇବ ତୁମ୍ଭର ହେ ଜାଣ ଜନାର୍ଦ୍ଦନ ।
ତୁମ୍ଭର କମନୀୟ ଶରୀରକୁ ଦେଖି
ମୁନିମାନେ ପିଚ୍ଛୁଡ଼ି ନ ପାରିବେ ଆଖି ।
ବନ୍ଧୁଏ ତୁମ୍ଭଠାରେ ସବୁକାଳେ ପ୍ରୀତି
କରିଣ ରହିଥିବେ ଆହେ ଯଦୁପତି ।
ଏହିରୂପେ ହର ପାର୍ବତୀ ଦେଇ ବର
ଅନ୍ତର୍ଦ୍ଧାନ ହୋଇଗଲେ ହେ ଯୁଧିଷ୍ଠିର ।
ଶିବ ବର ଦେଇ ଯାଆନ୍ତେ ଉପମନ୍ୟୁ
କହିଲେ ମୋତେ ତୋଷେ ଫୁଲାଇ ସ୍ୱତନୁ ।
ଶିବଙ୍କର ସମାନ ଦେବତା ନାହାନ୍ତ:
ଶିବଙ୍କୁ ସେବିଲେଟି ମିଳେ ସର୍ବଭୂତି ।
ଏହା କହିଣ ଉପମନ୍ୟୁ ମହାମୁନି
କହିଲେ ସତ୍ୟଯୁଗେ ତଣ୍ଡୀ ନାମେ ମୁନି ।
ମହାଦେବ ଦେବଙ୍କୁ କଲେ ଆରାଧନା
ସହସ୍ର ଦଶସମ୍ବତ୍ସର ମହାମନା ।
ମହାଦେବ ଦେବଙ୍କୁ ନେତ୍ରପଥେ ଦେଖି
ସେ ଋଷି ସ୍ତୁତିକଲେ ହୋଇ ମହାସୁଖୀ ।
ପ୍ରଧାନ କାରଣଟି ବୋଲନ୍ତି ଯାହାଙ୍କୁ
ବନ୍ଦନୀୟ ହେଉଛି ମୁଁ ତାଙ୍କର ପାଦକୁ ।
ପବିତ୍ରମାନଙ୍କ ପବିତ୍ର ତୁମ୍ଭେ ହର
ଗତି ଅଟ ହେ ଗତିମନ୍ତମାନଙ୍କର ।
ତେଜମାନଙ୍କରେ ମହତ ତେଜ ତୁମ୍ଭେ
ତପରେ ତୁମ୍ଭେ ବଡ଼ ତପୀ ଜାଣୁ ଆମ୍ଭେ ।
ବ୍ରହ୍ମା ବିଷ୍ଣୁ ତୁମ୍ଭ ମହିମା ନ ଜାଣନ୍ତି
ମୁଁ ତୁମ୍ଭଙ୍କୁ ମୁଖେ କରିବି କହ ସ୍ତୁତି ।
ତୁମ୍ଭଠାରେ ରହିଅଛନ୍ତି ବିଶ୍ୱଯାକ
ତୁମ୍ଭେ ତ ପ୍ରାଣୀଙ୍କ ପାଳକ ସଂହାରକ ।
ବ୍ରହ୍ମ କାଳ ପୁରୁଷ ତିନି ତୁମ୍ଭ ମୂର୍ତ୍ତି
ତୁମ୍ଭଙ୍କୁ ଭଜି ରହିଅଛନ୍ତି ପାର୍ବତୀ ।

ସତ୍ତ୍ୱ ରଜ ତମ ସ୍ୱରଗ ମୋକ୍ଷ କାମ
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଚନ୍ଦ୍ର ତପନ ଯମ ।
କୁବେର ଭୂମି ବାୟୁ ଜଳ ଊର୍ଦ୍ଧ୍ୱ ଅଧ
ନଭ ଅଗ୍ନି ବୁଦ୍ଧି ବରୁଣ ମତି କ୍ରୋଧ ।
ବିଧାତା ମନୁ ଅନୃତକରମ ସତ୍ୟ
ଏ ସର୍ବ ତୁମ୍ଭେ ହେ ପାର୍ବତୀଦେବୀ-କାନ୍ତ ।
ଦେହକୃତ ଦେହଭୃକ ଦେହର ଗତି
ତୁମ୍ଭଙ୍କୁ ଟି ସମସ୍ତ ପ୍ରାଣୀଏ କହନ୍ତି ।
ପ୍ରାଣକୃତ ପ୍ରାଣଭୃତ ଯେ ପ୍ରାଣୀଗତି
ପ୍ରାଣଦ ମଧ୍ୟ ତୁମ୍ଭେ ଅଟ ଉମାପତି ।
ସମସ୍ତ ଭୁବନକୁ କର ତୁମ୍ଭେ ଜାତ
ଆଠ ମୂରତିରେ ଧରିଛ ଉମାକାନ୍ତ ।
ଏରୂପେ ତଣ୍ଡୀଋଷି ଶିବେ କଲ ସ୍ତୁତି
ରହନ୍ତେ ମଉନେ, କହିଲେ ଉମାପତି ।
ଅକ୍ଷୟ୍ୟ ଅବ୍ୟୟ୍ୟ ଯେ ତେଜୋଯୁକ୍ତ ହୋଇ
ରହିବ ସୂତ୍ରକର୍ତ୍ତା ଗୁଣ ପୁତ୍ର ପାଇ ।
ଆଉ କି ମନୋରଥ କହ ତଣ୍ଡୀଋଷି
ମାଗ ତା ଦେବି ମୁଁ କହୁଛି ହସି ହସି ।
ତଣ୍ଡୀ ବୋଇଲେ ହେ ତୁମ୍ଭର ପାଦେ ଭକ୍ତି
ଥିଲେ ସବୁ ସମ୍ପତ୍ତି ହେବ ମୋତେ ପ୍ରାପ୍ତି ।
ଏରୂପେ ବର ଦେଇ ହେଲେ ଅନ୍ତର୍ଦ୍ଧାନ
ପାର୍ବତୀଦେବୀଙ୍କ ଅଟନ୍ତି ଯେ ଜୀବନ ।
ତଣ୍ଡୀଋଷି ବର ପାଇ ମୋହଠାକୁ ଆସି
ଶିବ-ନାମମାନ କହିଲେ ହୋଇ ତୋଷି ।
ବ୍ରହ୍ମା ଦଶସହସ୍ର ନାମ ଶିବଙ୍କର
କହିଛନ୍ତି ବେଦରେ ଜାଣ ଚକ୍ରଧର ।
ଶିବଶାସ୍ତ୍ରମାନଙ୍କେ ସହସ୍ରେଟି ନାମ
ଶିବଙ୍କର ଖ୍ୟାତ ହେ ପୁରୁଷ-ଉତ୍ତମ ।
ତଣ୍ଡୀ ଯେ ଦଶଶତ ନାମ ମୋର ଆଗେ
କହିଅଛନ୍ତି ବସିକରି ଯେତେ ବାଗେ ।
ସେରୂପେ ତୁମ୍ଭଙ୍କୁ ମୁଁ କରିବି ପ୍ରକାଶ
ମୋ ଠାରୁ ଶୁଣ ହେ ଯଦୁକୁଳ-ଈଶ ।
ଏହା କହିଣ ମୋତେ ଉପମନ୍ୟୁଋଷି
ପୂର୍ବକୁ ମୁଖ କରି ଧ୍ୟାନ କଲେ ବସି ।
ଶିବଙ୍କର ସହସ୍ର ନାମଙ୍କ ସଂଗ୍ରହ
ପରକାଶ କରିଲେ ଆଗ ବଳି ସ୍ନେହ ।

ଦଶସହସ୍ରରେ ସହସ୍ର ଗୋଟି ନାମ
ସାର ଅଟଇ ହେ ପାଣ୍ଡବ-ନରୋତ୍ତମ ।
ଯେ ସହସ୍ର ନାମକୁ ଉପମନ୍ୟୁ ଋଷି
ତଣ୍ଡୀଙ୍କଠାରୁ ଶୁଣିଛନ୍ତି ଏକା ବସି ।
ଉପମନ୍ୟୁ ମୋତେ ଶୁଣିବା ନାମମାନ
ପରକାଶ କଲେ ବହିଣ ସ୍ନେହ ମନ ।
କହିଲେ ଅଭକ୍ତ ଲୋକଙ୍କୁ ଶିବଙ୍କର
ଏ ନାମ ମାନ କହିବ ଜ୍ଞାନବନ୍ତ ନର ।
ଶିବଙ୍କରଠାରେ ଅସୂୟା କରେ ଯେହି
ନରକରେ ପଡ଼ଇ ନିଶ୍ଚେ ଜାଣ ସେହି ।
ବ୍ରହ୍ମା ଶିବସହସ୍ର ନାମ ସ୍ତବରାଜ
କହି କହିଛନ୍ତି ହେ ଜାଣ ନୃପରାଜ ।
ବ୍ରହ୍ମଲୋକେ ଆଗ ଏ ସ୍ତବରାଜ ଥିଲେ
ପଛନ୍ତେ ଦେବଲୋକେ ପ୍ରକାଶ ହୋଇଲେ ।
ଦେବଙ୍କଠାରୁ ଶୁଣି ତଣ୍ଡୀ ମହର୍ଷି
ଉପମନ୍ୟୁ ଋଷିଙ୍କି କହିଲେ ସେ ତୋଷି ।
ଉପମନ୍ୟୁ ମୋ ଆଗେ କହିଛନ୍ତି ଯାହା
ଶୁଣି ବସି ତାହା ପାଣ୍ଡବ-ନରନାହା ।
ବ୍ରହ୍ମଙ୍କରେ ଯେ ବ୍ରହ୍ମ, ପରଙ୍କରେ ପର
ତେଜଙ୍କରେ ତେଜ, ତପୀରେ ତପୀବର ।
ଶାନ୍ତଙ୍କରେ ଶାନ୍ତ ଦ୍ୟୁତିଙ୍କର ଦ୍ୟୁତି
ଋଷିଙ୍କରେ ଋଷି, ଧୀମନ୍ତଙ୍କରେ ମତି ।
ପ୍ରଭୁଙ୍କରେ ପ୍ରଭୁ, ଯେ ଯାଗଙ୍କରେ ଯାଗ
ଯୋଗୀଙ୍କେ ଯୋଗୀ, ରୁଦ୍ରେ ରୁଦ୍ର ମହାଭାଗ ।
ଶିବଙ୍କରେ ଶିବ, କାରଣରେ କାରଣ
ଏରୂପେ ରୁଦ୍ରଦେବ ତାଙ୍କ ନାମ ଶୁଣ ।
ସହସ୍ର ଅଷ୍ଟୋତ୍ତର ନାମ ହେ ନୃପଳ
କହିବି ତୁମ୍ଭ ଆଗେ ହେଉଛି ମୋ ପ୍ରୀତି ।

—❋—

## ଶିବ ସହସ୍ର ନାମ

ସ୍ଥିର ସ୍ଥାଣୁ ପ୍ରଭୁ ବରପ୍ରଦ ପ୍ରବର
ଶିଖଣ୍ଡୀ ହରିଣାକ୍ଷ ସର୍ବଭୂତହର ।
ଜଟୀ ଚର୍ମୀ ସରବ ଅଙ୍ଗ ସର୍ବକର
ଅର୍ଦ୍ଧନ ସର୍ବଆତ୍ମା ଅଭିବାଦ୍ୟ ହର ।
ସର୍ବଲୋକ ପରଜାପତି ଭୀମ ଧ୍ରୁବ
ଶଶାନବାସୀ ମହାଯଶା ତରି ସର୍ବ ।

ଭବ ସର୍ବବଖ୍ୟାତ ତପସ୍ୱୀ ନିଯୁତ
ଲୋକପାଳକ ଭୂତଭାବନ ଶାଶ୍ୱତ ।
ନିୟମାଦ୍ଧକର ପ୍ରଚ୍ଛନ୍ନ ମହାକର୍ମା
ନିୟମାଶ୍ରିତ ମହାହନୁ ସର୍ବକର୍ମା ।
ଅନ୍ତର୍ହିତଆତ୍ମା ପ୍ରସାଦ ମହାରୂପ
ମହାକାୟ ଯେ ହୟଗର୍ଦ୍ଦଭି ସ୍ୱରୂପ ।
ଭଗବାନ ପରବ ଭାବନା ଖେଚର
ସର୍ବଭୂତଆତ୍ମା ସୁପବନ ଗୋଚର ।
ମହାନ୍ତ ବିଶ୍ୱରୂପ ମହାତ୍ମା ପ୍ରବୃତ୍ତି
ବୃଷରୂପ ଆଦି ଯେ ସ୍ୱୟମ୍ଭୁ ନିବୃତ୍ତି ।
ଚନ୍ଦ୍ର ସୂର୍ଯ୍ୟ ଶନି ଅଗ୍ନି ଉମାପତି
ରାହୁ ନିଧି ଧୋମ କେତୁ ଯେ ଗ୍ରହପତି ।
ମହାବଳ ସୁବର୍ଣ୍ଣରେଖା ବିଶାଳାକ୍ଷ
ନମସ୍କର୍ତ୍ତା ମୃଗବାଣାର୍ପଣ ସହସ୍ରାକ୍ଷ ।
ଅନଘ ହିଗବାସ ନକ୍ଷତ୍ରସାଧକ
ଦଶବାହୁ ସୁତୀର୍ଥ ସୁଧାନସାଧକ ।
ଅନମିର୍ଷୁ ଯେ ନୀଳକଣ୍ଠ ଗ୍ରହରୂପ
ଯୋଜ୍ୟ ସମ୍ୱତ୍ସର କର ହେ ବିଶ୍ୱରୂପ ।
ପରମତପ କାମ ସର୍ବ ଭାବକର
ମହାରେତା ଯେ ସ୍ୱୟଂ ଶ୍ରେଷ୍ଠ ଖଟ୍ୱାଙ୍ଗଧର ।
କପାଳବନ୍ତ ବାଳଦାହନ ସୂତପା
ସର୍ବ ଜ୍ଞାତ ଖଡ଼୍ଗୀ ପଟ୍ଟିଶୀ ଘୋରତପା ।
ଧନ୍ୱୀ ବାଣ ଶ୍ରୀକର କମଣ୍ଡଳୁଧର
ବୃଷବାହନାଶନି ଶତଘ୍ନୀ ସୁବୀର ।
ଗଣଙ୍କ ପତି ଗଣ ମନ୍ତ୍ର ମହାବୀଜ
ସୁବକ୍ତ୍ର ପ୍ରମାଣ ହେ ଆୟୁଧୀ ସୁବୀଜ ।
ଊର୍ଦ୍ଧ୍ୱଲିଙ୍ଗ ଉତ୍ଥାନଶାୟୀ ସ୍ରୁବହସ୍ତ
ଉଷ୍ଣୀଷୀ ହରିକେଶ ବିନତ ମହାନ୍ତ ।
ଉଦଗ୍ର ଦୀର୍ଘ ତେଜୋନିଧି ତେଜସ୍କର
ସିଦ୍ଧାନ୍ତ ମୁଣ୍ଡ କୃଷ୍ଣ ସର୍ବ ଶୁଭଙ୍କର ।
ଅଜ ଊର୍ଦ୍ଧ୍ୱରେତା କପର୍ଦ୍ଦୀ ଗତିଧାରୀ
ଶିଶ୍ନମନୁ ନଭସ୍ଥଳ ଯେ ପ୍ରେତଚାରୀ ।
ଭବ ସୁବର୍ଚ୍ଚସ ଗଜହା ବ୍ୟାଳରୂପ
ଶରବାସୀ ରୁଦ୍ର ତ୍ରିଜଟୀ ମହାତପ ।
ସେନାପତି ବିଭୁ ଦୈତ୍ୟହା ବହୁରୂପ
ଶିବରୂପ କାଳ ସିଂହଶାର୍ଦ୍ଦୂଳ ରୂପ ।

ଆର୍ଦ୍ରଚର୍ମାମ୍ବର ଆବୃତ୍ତ ଅହସ୍ପତ
ଲୋକଧାତା ଚର ଯୋଗୀ ଗୁଣ-ଆକର ।
ମହାନାଦ ସ୍ୱର୍ଗନୁ ସର୍ବକାମ ବର
ଚତୁଷ୍ପଥ ମନ୍ତ୍ରବିତ ରଜନୀ-ଚର ।
ଭୂତେଶ ତ୍ରିଦଶ ଅମିତ ମହେଶ୍ୱର
ନୃତ୍ୟପ୍ରିୟ ଅଭାଗ୍ୟ ଶିବ ବହୁଧର ।
ଗତି ବ୍ୟବସାୟ ଯେ ପାଶ ଭୂତଚାରୀ
ଯଜ୍ଞହା ଧର୍ଷଣାତ୍ମା ତେଜ ଉପହାରୀ ।
ଗିରନ୍ତୁ ହନନ୍ତ ସହସ୍ରହସ୍ତ ନିତ୍ୟ
ଜୟ ବ୍ରଜସନ ବଳହା ନିତ୍ୟନର୍ତ୍ତ ।
ଦକ୍ଷଯଜ୍ଞପହାରୀ ସୁସହ ନର୍ତ୍ତକ
ସର୍ବଲାଳସ ଘୋର କାମବିନାଶକ ।
ମଧ୍ୟମ ଅଧର୍ଷଣ ଅର୍ଥ ଅତନ୍ଦ୍ରିତ
ଘୋର ଘୋଷାବର ନ୍ୟଗ୍ରୋଧରୂପ ହିତ ।
ବଳବାହନ ହେ ଗମ୍ଭୀର ବୃଷକର୍ଣ୍ଣ
ମହାକାୟ ଅଜିତ ସୁତୀକ୍ଷ୍ଣଦଶନ ।
ସୁତୀକ୍ଷ୍ଣଚାପ ହର ଯଜ୍ଞ ମହାନନ
ନ୍ୟଗ୍ରୋଧ ଯେ ସଂଯୁଗପୀଡ଼ନବାହନ ।
ସାହା ହର୍ଯ୍ୟଶ୍ୱ ଯଜ୍ଞ ବିଷ୍ଣୁ ପ୍ରସାଦିତ
ବଡ଼ବା ମୁଖ ଜଟୀ କର୍ମକାଳବିତ ।
ହୁତାଶ ସହାୟ ସମୁଦ୍ର ବିଶ୍ୱକ୍‌ସେନ
ପ୍ରଶାନ୍ତ ଆତ୍ମା ଉଗ୍ରତେଜା ହୁତାଶନ ।
ମହାତେଜ ଜନ୍ୟ ବିଜୟକାଳ ବିତ
ସର୍ବବିଗ୍ରହ ମୁଣ୍ଡୀ ଜ୍ୱାଳୀ ତ୍ରିଦଶୀତ !
ବିଶ୍ୱବାହୁ ମୂର୍ଦ୍ଧଗବଳୀ ଶିଖୀ ସିଦ୍ଧି
କାଳକଣ୍ଟକଂଠ ଯେ ତାଳୀ ଗୁଣବୁଦ୍ଧି ।
ପ୍ରଜାପତି ବିଭାଗ ଜ୍ୟୋତିଷାମୟନ
କାଳଯୋଗୀ ଲୟ ନିପାଶ ନିମୋଚନ ।
ପଶୁପତି ହେ ବସୁବେଗ ବିମୋଚନ
ଗୁହାନବାସୀ ଗୁହ ଖଳୀ ସୁମରଣ ।
ହିରଣ୍ୟକବଚ ସମୁଦ୍ଭବ ମୁଣ୍ଡିଜ
ସର୍ବଭୂର୍ଯ୍ୟନିନାଦୀ ଅଗମ ମେଢ଼୍ର ଜ ।
ଲୋକଚାରୀ ନିଶାଚାରୀ ଯେ ବଳଚାରୀ
ଯୁଦ୍ଧେ ଶତ୍ରୁ ନାଶୀ ସର୍ବଦା ମହାଚାରୀ ।
ତ୍ରିକାଳଧୃକ ସୁତ ଦୁର୍ବାଧା ବନ୍ଧନ
ତରଙ୍ଗବିତ ଶାଙ୍ଖ୍ୟପ୍ରସାଦ ସ୍କନ୍ଦନ ।

ବିଭାଗଙ୍କ ଅତୁଲ୍ୟ ଦୁର୍ବାସା ଅମର
ବାସବ ସର୍ବବାସ ହୈମ ହେମକର ।
ଧର୍ମୋତ୍ତମ ସରବ-ସାଧୁ-ବିଷେବିତ
ବିଷାରଦ ଅଯଜ୍ଞ ଯଜ୍ଞଭାଗବିତ ।
ବଳରୂପଧୃକ ସୁବଳ ସର୍ବଧାତା
ସର୍ବକାମଦ ମୁଖ୍ୟାମୁଖ୍ୟ ସର୍ବସ୍ରଷ୍ଟା ।
ରୌଦ୍ରରୂପ ଅଂଶୁ ଆଦିତ୍ୟ ଲୋହିତାକ୍ଷ
ସର୍ବଫଳ ପ୍ରସାଦ-ଆକାର ମହାକ୍ଷ ।
ବିଜୟାକ୍ଷ ଅବଶ ଦେହ ମହାଭାଗ
ନଭୋନିର୍ବି ରୂପ କାହାଳୀ ମନୋବେଗ ।
ସର୍ବତୋମୁଖ ବହୁରଶ୍ମି କର୍ତ୍ତା ଖଗ
ସର୍ପଚୀରନିର୍ବାରସିନ ସର୍ବଯୋଗ ।
ସକଳ କାମବର ଅଭୋଗ ବୈଣବୀ
ଆତମ-ନିରାଲୋକ ସଂଭଗ୍ନ ପଣବୀ ।
ସହସ୍ରଦ ପଶୁପତି ହେ ନିଶାଚର
ସୁବର୍ଚ୍ଚସ୍ୱୀ ସଂଗ୍ରହ ଉପଦେଶକର ।
ପକ୍ଷୀର ପକ୍ଷରୂପ ହରି ମୁନି କାମ
ମଦନ ଯଶ ବାମଦେବୋନ୍ମାଦ ବାମ ।
ସୁସିଦ୍ଧ ମହର୍ଷି ସିଦ୍ଧାର୍ଥ ପ୍ରାଗ୍‌ଦକ୍ଷିଣ
ସିଦ୍ଧସାଧକ ଭିକ୍ଷୁ ଅଶ୍ୱତ୍ଥ ବାମନ ।
ଭିକ୍ଷୁ ରୂପ ବିପଣ ମୃଦୁ ଅନ୍ତ ଧାତ୍ର
ଅବ୍ୟୟ ଯେ ବିଶ୍ୱକର୍ମୀ ମଧୁ ବଜ୍ରହସ୍ତ ।
ନିତ୍ୟଶ୍ରମପୂଜିତ ତାଳ ବିଶାଂପତି
ଷଷ୍ଠଭାଗ ତମ୍ଭସ୍ତମ୍ଭନ ଗବାଂପତି ।
ମହାସେନ ବିଶିଖ ବୃତ୍ତାବୃତ୍ତକର
ବିଛପ୍ରତ୍ୟ ଅର୍ଥକର ଯେ ନନ୍ଦୀଶ୍ୱର ।
ମଧୁକନେତ୍ର ନନ୍ଦୀ ନନ୍ଦନ ଈଶ୍ୱର
ପିନାକଧୃକ ସର୍ବବାସୀ ନନ୍ଦକର ।
ଶ୍ରୀ ସ୍ୱବାସୀ ତାର ବିଗ୍ରହମନ୍ତ କାଳ—
ନିଗ୍ରହ ନିମିତ୍ତ ନିମିତ୍ତ ନନ୍ଦୀ ବଳ ।
ଚିତ୍ରୁରକ ନନ୍ଦବର୍ଦ୍ଧନ ସର୍ବସ୍ରଷ୍ଟା
ଈଶାନ ଚତୁର୍ମୁଖ କାଳ ବ୍ରହ୍ମସ୍ରଷ୍ଟା ।
ଇତିହାସ ସଙ୍କଳ୍ପ ବାଜକର୍ତ୍ତା ମାଳୀ
ଯୁଗାବର୍ତ୍ତ ହନ୍ତା ଗୌତମ ବ୍ରହ୍ମା କଳୀ ।
ଲୋକରତା ପରଂବ୍ରହ୍ମ ମହାଲିଙ୍ଗ
ବଳବାନ ଶଣ୍ଢ ଅକ୍ଷର ସ୍ଥୂଳଲିଙ୍ଗ ।

ଅମିତ୍ରଜିତ ବେଦକାର ଲିଙ୍ଗାଧ୍ୟକ୍ଷ
ଗତାଗତ ଅଙ୍ଗ-ଲୁବ୍‌ଧ ସୁରାଧ୍ୟକ୍ଷ ।
ବାଲ୍‌ଧାମ୍ନାନୁଗତ ଶୁଦ୍ଧ ଯୋଗାଧ୍ୟକ୍ଷ
ମହାମେଘ-ବାସୀ ଶଙ୍କର ବୀଜାଧ୍ୟକ୍ଷ ।
ମହାକରତା ଅନୌଷଧ ନିଶାକର
ମହାଦନ୍ତ ବିଦ୍‌ବାନ ବୈଶ୍ୟବଶକର ।
ଅନ୍ତଧୂମ ହୁତ ହବି ଅନଳ ଜ୍ୱାଳ
ଦସ୍ୟୁାଦନ୍ତ ବୈଦନ୍ତ ଶୁଦ୍ଧମହାଜ୍ୱାଳ ।
ମାନ୍ୟ ବହୁପ୍ରସାଦ ସ୍ୱପ୍ନ ମହାଘୋର
ମୃଗାଳୟ ମହାଦଂଷ୍ଟ୍ର ଯେ ବଶୀକର ।
ଭଗହାରୀ ସମରମର୍ଦ୍ଦନ ଦର୍ପଣ
ଅମିତ ନିତ ନିତ୍ୟ ଅର୍ଚ୍ଚସ୍ୱୀ ଭୂଷଣ ।
ଧୂମକେତନ ମାଳ ସ୍ୱସ୍ତିଦ ମହାଙ୍ଗ
ସ୍ୱସ୍ତି ଭାବ ଭାଗୀ ମାରବ-ଗ୍ରୀବୋତ୍ସଙ୍ଗ ।
କୃଷ୍ଣବରନ ମାତାଗର୍ଭପରାୟଣ
ମହାପଦ ସୁବର୍ଣ୍ଣ ଇନ୍ଦ୍ରିୟ ଶୋଭନ ।
ଅନ୍ତରଆତ୍ମା ମହାହସ୍ତ ମହାକାୟ
ମହାକରନ ମହାଯଶ ନିଶାଳୟ ।
ମହାହନୁ ମହାମୂରଧା ଭଗକର
ମହାନାଶ ଯେ ମହାକମ୍ବୁ ମନ୍ତ୍ରକାର ।
ଲଘୁ ମହାନ୍ତକ ଲମ୍ବନ ମହାମାନ୍ତ
ମହାଗ୍ରୀବ ଶ୍ମଶାନଭାକ ମହାନେତ୍ର ।
ମହୋରସ୍କ ମହାବକ୍ଷା ଲମ୍ବିତ ଓଷ୍ଠ
ମହାମାୟା ହେ ପୟୋନିଧି ମହାଓଷ୍ଠ ।
ମହାଜିହ୍ୱ ଶିବ ପ୍ରସାଦ ମହାମୁଖ
ମହାରୋମା ହେ ମହାକେଶ ମହାନଖ ।
ମହାଜଟ ମହାତପସ୍ୱୀ ଅସ୍ନେହନ
ବୃଷକେତୁ ଅନଳ ସାମାନ୍ୟ ସ୍ନେହନ ।
ମେରୁଧାମା ଗଣ୍ଡଳୀ ଦେବଅଧିପତି
ଅଥର୍ବଶୀର୍ଷ ବାୟୁବହନ ସ୍ତୁପତି ।
ପ୍ରସାଦ ଅଭିଗମ୍ୟ ଜଙ୍ଗମ ପ୍ରକାଶ
କନକ ସୁଦର୍ଶନ ଅଜିତ ଦ୍ୱାଦଶ ।
ସକଳ ଉପକାର ନାଭି ପ୍ରିୟ ସ୍ଥିର
କାଞ୍ଚନଛବି ଅମୋଘାର୍ଥ ନନ୍ଦକର ।
ମକର ଭାବ ଯଜ୍ଞ ଯଜ୍ଞସମାହିତ
ଆଢ୍ୟ ଭୂତବାହନ ସୂତ କଳ ନକ୍ତ ।

ଲୋକପାଳ କାଳ ପୂଜିତ ଶୁକ୍ଳ ଗଣ
ଭସ୍ମମାୟ ସଗଣ ନିଶୁକ୍ଳ ସ୍ଥାପନ ।
ସମ୍ପନ୍ନ ଭସ୍ମୀଭୂତ ତରୁ ସ୍ୱପୂଜିତ
ଭସ୍ମଗୋପତା ଶୁଚି ଭୂତନିଷେବିତ ।
ପାଦଭୂଜଗୁହ୍ୟ କପିଶ ପରସନ୍ନ
ଗିରିସାଧମ ଋକ୍‌ସହସ୍ରାମିତେକ୍ଷଣ ।
ମହାତ୍ମା ଗଣକ ଆଲୋକ ଆଶ୍ରମସ୍ଥ
ବିଶ୍ୱକରମମତି ଆୟୁ ନିତ୍ୟାବସ୍ଥ ।
ବୃଷାକାର ତ ମ୍ରେଷ୍ଟ ଯଜୁ ଅମ୍ବୁଜାଳ
ବିଶାଳଖ ପର ଅପର କପିଳ ।
ସୁନିଷ୍ଠଳ ଗନ୍ଧର୍ବ ପରଶ୍ୱଧାୟୁଧ
ଅଦ୍ଧତ ତାର୍କ୍ଷ୍ୟ ସୁବିଜ୍ଞେୟ ମହାକ୍ରୋଧ ।
କୁମ୍ନବାଣା ଯେ ସୁଶାରଦା ସୁବାନ୍ଧବ
ବଂଶକର ବଂଶର ଅନୁକାଶ ଦେବ ।
ଊର୍ଦ୍ଧ୍ୱରେତା ଜଳେଶୟ ବଂଶନିନାଦ
ସର୍ବସ୍ୱରୂପ ଉଗ୍ର ମାୟାବୀ ସୁହୃଦ ।
ବନ୍ଧନକର୍ତ୍ତା ସର୍ବ ଗୀଦନ ଅନଳ
ମହାଦଂଷ୍ଟ୍ର ବହୁଧାନିନ୍ଦିତ ଅନଳ ।
ମହାଆୟୁଧ ଅନିନ୍ଦିତ ଯେ ଯଜ୍ଞାରି
ସୁବନ୍ଧନ ବିମୋଚନ ଯେ ସଯଜ୍ଞାରି ।
ସୁରାରିହା ଅମ୍ବ ଶଙ୍କର ବିଶ୍ୱଦେବ
ଶଙ୍କାହରାଧନ ସୁରେଶ ମହାଦେବ ।
ଅଜୈକପାଦ ଆନଳଭ ଚେକିତାନ
କପାଳୀ ଧୂମକେତୁ ସ୍କନ୍ଦ ବୈଶ୍ରବଣ ।
ବିଷ୍ଣୁ ଧନ୍ୱନ୍ତରି ନିଶଙ୍କୁ ଅବଜିତ
ବିଧାତା ଶନି ତ୍ୱଷ୍ଟା ଶିବ ଧ୍ରୁବ ମିତ୍ର ।
ଅର୍ଯ୍ୟମା ବାୟୁ ବର୍ଣ୍ଣବିଭାବାସବତା
ଉଷଙ୍ଗୁ ବିଭୂହବ ପ୍ରଭାତ ବିଧାତା ।
ସର୍ବଗ ରବି ଭୂବଭାବନ ଅନଳ
ମାନ୍ଧାତା ସର୍ବକାମଗୁଣାବହାନଳ ।
ଶଶାଙ୍କ ବହ୍ନି ବଳବାନ ପଦ୍ମନାଭ
ପ୍ରଶାନ୍ତ ପୁରାଣ ବଣିଜ ମହାଗର୍ଭ ।
ପୁଣ୍ୟଚଞ୍ଚୁ ସର୍ବ ଆଶ୍ରୟ କୃତକର୍ତ୍ତା
ହେମବନ୍ତ ଗିରି ସଂଶୟ କୁଳକର୍ତ୍ତା ।
ଗୁଣଔଷଧ ଦର୍ଭବୃକ୍ଷ ସୁଖାସକ୍ତ
କୁଳହାରୀ ଦେବଦେବ ବେ କୁରୁଭୂତ ।

ସର୍ବପ୍ରାଣୀ-ପତି ସର୍ବରତ୍ନନନ୍ଦଦ
ନଦସତ କୃତୁନିବାସୀ ବହୁପ୍ରଦ ।
କୈଳାସଗିରିବାସୀ ଶର୍ଦ୍ଧଜ୍ଞା ବକୁଳ
ବହୁଳବିଦ୍ୟ ବୃହସିଂହଗ ଅଲୋଳ ।
ମହୌଷଧି ସିଦ୍ଧାର୍ଥକାରୀ ଲୋକମ୍ବିତ
ସିଦ୍ଧାର୍ଥଧର ମହାଜନ୍ତ ସତକୃତ ।
ଚନ୍ଦନ ଛନ୍ଦ ସାରଗ୍ରୀବ ଅହୋରାତ୍ର
ସିଂହନିନାଦ ସିଂହଦଂଷ୍ଟ୍ର ଆନନ୍ଦିତ ।
ଭୂତପତି ତରୁବିଭୂ ଜଟଟକାଳ
ପ୍ରଭାବାତ୍ମ ଗାନ୍ଧାର ତପଃଶକ୍ତି କାଳ ।
ସିଂହବାହନ ନବଚନ୍ଦ୍ର ସଭାବନ
ସର୍ବଭୂତବାହିତା ସାରଙ୍ଗ ଭୋଜନ ।
ଭୂତାଳୟ ସଞ୍ଜାତ ଅମୋଘ ଗୋପାଳୀ
ସର୍ବଭୂତନିଳୟ ହର କେତୁମାଳୀ ।
ପ୍ରାଣରକ୍ଷା ଅଶ୍ୱ ଗୋପତି ଧୃତିମନ୍ତ
ଗୁହାପାଳ ହିରଣ୍ୟବାହୁ ମତିମନ୍ତ ।
ଯୁଗାଧିପ ଗୋଚର୍ମବାସ ଜିତକାମ
ସୁବାସ ମହାହର୍ଷ ପ୍ରକୃଷ୍ଟାରି ଗ୍ରାମ ।
ଆବେଶ ଭବ ଦକ୍ଷ ଚଳବେଦାୟ
ସର୍ବ-ଗନ୍ଧସୁଖାବହ ଜିତ-ଇନ୍ଦ୍ରୟ ।
ଅପ୍‌ସରାଗଣସୁସେବିତ ମହାନୃତ
ଯୁକ୍ତବାହୁ ଦେବ ପରିଧ୍ରୁବ ନିତ୍ୟ ।
ନୈକସ ଅନୁଚର ରତି ମହାଧାତୁ
ଅତିବୃଦ୍ଧ ମହାତପଣା ମହାକେତୁ ।
ଯୋଗବର୍ଦ୍ଧନବୃଦ୍ଧ ବପୁ ମହାଗୀତ
ବସୁଶ୍ରେଷ୍ଠ ମହାକମଳ ହରିଯୁକ୍ତ ।
ଶିବରାହାରୀ ସରବଲକ୍ଷଣାଲକ୍ଷିତ
ସର୍ବପାର୍ଶ୍ୱ ମୁଖୀ ଖେଚର ହର ବାତ ।
ମହାବଳ ଆତ୍ମାର ସହାୟ ଆଷାଢ଼
ରଥଯୋଗୀ ଅକ୍ଷ ଜୀବସ୍ଥାନ ସୁଷାଢ଼ ।
ଅସମାମ୍ନାୟ କର୍ତ୍ତା ଦେବାସୁର ପତି
ତୀର୍ଥଦେବ ତୋରଣ ସମାମ୍ନାୟ ପତି ।
ମହାରଥ ମନ୍ତ୍ରର ସୁଭାଗ ଜୀବନ
ବହୁକେଶ ଶଶିହର ସୁଲୋକନ ।
ମହାର୍ଣ୍ଣବନିପାତବିଦ ବ୍ୟକ୍ତାବ୍ୟକ୍ତ
ତପୋନିଧି ବିଶାଳ ସୁଧା ରହ ଗତ ।

ଅଷ୍ଟରେହଣ ଯୋଗ ମହାନାଗହନ
ପ୍ରଭୂତରତ୍ନାଙ୍କ ପଣ୍ଡିତ ନିବେଦନ ।
ସର୍ବଶ୍ରୟୁକ୍ରମ ସେନାକଳ୍ପ ସ୍ୱରୂପ
ପାଦ ମୂଳ ନ୍ୟାୟନିର୍ବାଣ ମହାରୂପ ।
ଅଚଳୋପମ ଶତଜିହ୍ୱ ବାହୁମାନ
ମହାକଳପ ବିଷଣାଙ୍କ ମହାମାନ ।
ବିସ୍ତାରଲବଣ କୂପେନ୍ଦୁ ଯୁଗକର
ମଣିବନ୍ଧ ତ୍ରିଯୁଗ ବାୟୁ ଜଟାଧର ।
ସର୍ବ ଆୟୁଧ ସହ ଶୀଳଧାଶ୍ୱ ଶର
ସୁଖ ଜାତ ସଫଳୋଦୟ ସୁଗନ୍ଧାର ।
ବିଶାଳ ଧନୁ ଛଳ ଊର୍ଦ୍ଧ୍ୱ ସହନନ
ମହାନ ଖ୍ୟାତଲୋକ ମହାବିଳୁର୍ବାଣ ।
ସର୍ବଲୋଚନ ପୁଷ୍କ ମୁଣ୍ଡ ତଳସ୍ଥଳ
ଛତ୍ରୀ ଦଣ୍ଡୀ କୁଣ୍ଡୀ ବିରୂପ କରସ୍ଥାଳୀ ।
ସହସ୍ର ପାଦ ବଜ୍ରୀ ହର୍ଯ୍ୟକ୍ଷ କକୁଭ
ତ୍ରିକକୁନ୍ମନ୍ତ୍ର ବଧୋତ୍ଥାନ ପଦ୍ମଗର୍ଭ ।
ସକଳ ଦେବମୟ ସୁମୁଖ ଅମୃତ
ସହସ୍ର ବାହୁ ଗୁରୁ ସକଳ ବିକୃତ ।
ସହସ୍ରମୂର୍ଦ୍ଧା କୃଷ୍ଣପିଙ୍ଗଳ ପବିତ୍ର
ବ୍ରହ୍ମଦଣ୍ଡ ବିନିର୍ମାତା ଯେ ତ୍ରୟନେତ୍ର ।
ଶତଘ୍ନ ପାପଶକ୍ତିମାନ ବ୍ରହ୍ମକୃତ
ଗଭସ୍ତି ଜଳୋଦ୍ଭବ ସର୍ବ ଲୋକକୃତ ।
ବ୍ରହ୍ମା ବ୍ରହ୍ମବିଦ ସର୍ବାଙ୍ଗ ମହାଗଭ
ଅନନ୍ତରୂପ ବର ଦ୍ୱିଜ ବ୍ରହ୍ମଗର୍ଭ ।
ଉମା ବଲ୍ଲଭ ତିଗ୍ମତେଜା ଊର୍ଦ୍ଧ୍ୱାତ୍ମା
ମନୋଯବ ଚନ୍ଦନୀ ଶରଣ୍ୟାନେକାତ୍ମା ।
ବାତରଂହା ପଦ୍ମନାଳାଗ୍ର ପଶୁପତି
ଦେବେନ୍ଦ୍ର ସୁରଭ୍ୟୁତ୍ତରଣ ଉମାପତି ।
କର୍ଣ୍ଣିକାରମହାସ୍ରଗ୍ୱୀ ତ୍ରିଅକ୍ଷ ନର
ପିନାକଧୃକ୍ ସର୍ବସାଧାରଣ ବର ।
ଉମାଧବ ଜାହ୍ନବୀଧୃକ୍ ପ୍ରଯତାତ୍ମା
ପ୍ରଧାନଧୃକ୍ ମହାପ୍ରସଙ୍ଗ ପରମାତ୍ମା ।
ବରବରାହ ଶ୍ୱେତପିଙ୍ଗଳ ଦମନ
ଋତୁ ସମ୍ବତ୍ସର ଯେ ସାଙ୍ଖ୍ୟସମାପନ ।
ନିମେଷ କଳା କାଷ୍ଠ ମାସ ଲବ ମାତ୍ର
ମୁହୂର୍ତ୍ତ ଅହକ୍ଷପା ପକ୍ଷ ବିଶ୍ୱକ୍ଷେତ୍ର ।

ପ୍ରଜାବୀଜ କନିଷ୍ଠ ଗୋବୃଷ ଈଶ୍ୱର
ପର୍ଯ୍ୟୟନର ଆଦ୍ୟ ନିର୍ଗମ ବିସ୍ତାର ।
ଆଦିତ୍ୟ ବସୁ ଲିଙ୍ଗ ପୁଣି ବିବସ୍ୱାନ
ଧୃଷ୍ଣୁ ଆତ୍ମା ଚନ୍ଦ୍ରଚରାତ୍ମା ଭଗବାନ ।
ମୀନ ସଳନ୍ଦ ବ୍ୟାସ ଅମୃତ ନିର୍ବାଣ
ବରେଣ୍ୟ ତ୍ରିପିଷ୍ଟପ ବରଦ ହ୍ଲାଦନ ।
ସାଧୁଋଷି ସୁମହାସ୍ୱନ ସଦସତ
ଦେବ ବ୍ରହ୍ମଲୋକ ବ୍ୟକ୍ତ ଅବ୍ୟକ୍ତ ।
ଦେବଭକ୍ତ ଗଣାଶ୍ରୟ ମୋକ୍ଷଦ୍ୱାର
ପବଗତି ପିତା ମାତା ସରଗଦ୍ୱାର ।
ପ୍ରଜାଦ୍ୱାର ଦେବଅସୁର ନମସ୍କୃତ
ପିତାମହ ଦେବଅସୁର ଏହାମାତ୍ର ।
ସର୍ବଦେବତାମୟ ଦେବାସୁରେଶ୍ୱର
ଅଚିନ୍ତ୍ୟ ବିଶ୍ୱ ଦେବାସୁର ମହେଶ୍ୱର ।
ଦେବାଧିଦେବ ଦେବଋଷିଈଡ୍ୟାମ୍ବର
ନରଭର୍ଷ ସୂକ୍ଷ୍ମ ବିବୁଧ- ଅଗ୍ରଭର ।
ଦେବଆତ୍ମା ଦେବ ଅସୁରବରପ୍ରଦ
ଦେବ ଅସୁରପରାୟଣ ବ୍ୟାଘ୍ର ବୈଦ୍ୟ ।
ଇଭମାତଙ୍ଗେଶ୍ୱର ଉଦ୍ଭିଦ ବିରାଜ
ଦେବସିଂହ ଆତ୍ମସମ୍ଭବ ସଲଳଜ ।
ଦେବାସୁରଗଣ ଅଧ୍ୟକ୍ଷ ତପୋମୟ
ଦେବାସୁରଗଣ ଅଗ୍ରଣୀ ନିରାମୟ ।
ଶୁଚି ବ୍ରତାଧିପ ଅଚିନ୍ତ୍ୟ ସତ୍ୟବ୍ରତ
ଦେବତା ସୁରଗୁରୁସିଦ୍ଧାର୍ଥ ଜଗତ ।
ସରବଦେବ ବଜ୍ରୀ ଶୋଭନ ସୁଯୁକ୍ତ
ଗୁହ କାନ୍ତ ପ୍ରାସଗ୍ରଭବ ବିମୁକ୍ତ ।
ପରମବ୍ରହ୍ମ ସିଦ୍ଧକୃତାର୍ଥ ଅବ୍ୟୟ
ସୁପର୍ବନ ଶ୍ରୀମାନ ଶୃଙ୍ଗୀ ଶୃଙ୍ଗୀପ୍ରିୟ ।
ଶ୍ରୀବରଧନ ସର୍ବପାବନ ବିରାମ
ରାଜରାଜ ନିଜସରଗ ଅଭିରାମ ।
ବିଶ୍ୱଦେବ ବ୍ରହ୍ମବର୍ଚ୍ଚସ ପରଂଗତ
ତ୍ରିବିକ୍ରମ ବଭ୍ରୁ ସ୍ଥାବର ଭୂତପତି ।
ସର୍ବସାଧନ ଲଲାଟାକ୍ଷ ସୁରଗଣ
ନିୟମଇନ୍ଦ୍ରିୟବରଧନ ହରିଣ ।
ଏରୂପେ ନାମଙ୍କରେ ସ୍ତୁତି କଲ ବୋଲି
ମୋ ଆଗେ ତଣ୍ଡୀ ଋଷି କହିଥିଲେ ଭଲ ।

ଏ ସହସ୍ରନାମ ଦେବରେ ସୁଦୁର୍ଲ୍ଲଭ
ମନୁଷ୍ୟଙ୍କୁ ଏ କେହ୍ନେ ହୋଇବଟି ସୁଲଭ ।
ଏ ସ୍ତବ ଶିବଙ୍କର ସର୍ମୀପେ ବରଷେ
ପଢ଼ିଲେ ଘରେ ବସେ ସେ ପୂର୍ଣ୍ଣିମାନସେ ।
ବ୍ରହ୍ମା ଏ ସ୍ତବ ଇନ୍ଦ୍ର ଦେବତାଙ୍କୁ କହିଲେ
ଇନ୍ଦ୍ର ପୁଣି ମୃତ୍ୟୁଦେବତାଙ୍କୁ କହିଲେ ।
ମୃତ୍ୟୁ ହେଁ ରୁଦ୍ରମାନଙ୍କୁ ବହି ପ୍ରୀତି
କହିଲେ ଏ ସ୍ତବ କୃଷ୍ଣ ମହାମତି ।
ରୁଦ୍ରଙ୍କଠାରୁ ପୁଣି ଚଣ୍ଡୀ ପାଇ ସ୍ତବ
ଶୁକ୍ରଙ୍କୁ କହିଲେଟି ବହି ମହାଭାବ ।
ଶୁକ୍ର ଗଉତମଋଷିଙ୍କି ପଢ଼ାଇଲେ
ଗଉତମ ଶିଷ୍ୟ ବୈବସ୍ୱତ ହୋଇଲେ ।
ସାଧନାରାୟଣଙ୍କୁ ମନୁ ଏ ସ୍ତବଙ୍କୁ
ଉପଦେଶ ଦେଲେ ବହିଣ ସରାଗକୁ ।
ସାଧନାରାୟଣଙ୍କଠାରୁ ଯମରାଜ
ଶିକ୍ଷା କଲେ ବଢ଼ାଇବାକୁ ତେଜ ଓଜ ।
ନାଚକେତ ଯମଙ୍କଠାରୁ ସ୍ତବ ନେଲେ
ମାର୍କଣ୍ଡେୟ ମହଋଷିଙ୍କି ନେଇ ଦେଲେ ।
ମାର୍କଣ୍ଡେୟଙ୍କର ସନ୍ତୋଷେ ମୋର କାନ
ଦୁଇ ଶୁଣିଲେ ଜାଣ ହେ ଯଦୁନନ୍ଦନ ।
ଆଜ ମୁହିଁ ତୁମ୍ଭଙ୍କୁ ଦେଲି ଏ ସ୍ତବକୁ
ପଢ଼ି ଯାଅ ମନରେ ପଢ଼ିବା ଫଳକୁ ।
ସ୍ୱର୍ଗକର ଆରୋଗ୍ୟକର ଧନକର
ଅଟଇ ଏ ସ୍ତବ ଶ୍ରୀକୃଷ୍ଣ ମନେକର ।
ବ୍ରହ୍ମବ୍ରତୀ ହୋଇ ଯେ ବରଷେ ପଢ଼ଇ
ସେ ଅଶ୍ୱମେଧ ଫଳ ଅବଶ୍ୟ ଲଭଇ ।
ଶିବଙ୍କର ସହସ୍ରେ ଏରୂପେଟି ନାମ
ସମ୍ପନ୍ନ କଲେ ବ୍ୟାସ ଋଷିଙ୍କ ଉତ୍ତମ ।
ତାଙ୍କ ପାଦ-କମଳ-ଯୁଗ ମନେ ଧ୍ୟାଇ
କୃଷ୍ଣସିଂହ ନରେଶ ଏ ସ୍ତବ କହଇ ।

—※—

## ଶିବ ନାମ କୀର୍ତ୍ତନର ଫଳ ଲାଭ

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
କହି ତୁନି ହୁଅନ୍ତେ ଦେବକୀ-ତନୟ ।
ବ୍ୟାସ ବୋଲେ ଆହେ ଯୁଧିଷ୍ଠିର ରାଜା
ଏ ସ୍ତବକୁ ପଢ଼ି ପାଇବ ତୁମ୍ଭେ ପୂଜା ।
ପୁତ୍ର ପାଇଁ ପୂର୍ବେ ମୁଁ ଏହା ପଢ଼ିବାରୁ
ଶିବଙ୍କୁ ଦେଖିଲି ମୋ ନେତ୍ର ନୋହି ଖାରୁ ।
ଶିବ-ବରେ ସବୁ କାମନା ସିଦ୍ଧ କରି
ଅଛି; ମୋହପରି ହୁଅ ହେ ଦଣ୍ଡଧାରୀ ।
ଇନ୍ଦ୍ରଙ୍କର ସଖା ଯେ ଗୃତ୍ସମଶୀର୍ଷ ଋଷି
କହିଲେ ସେ ଧର୍ମସୁତଙ୍କୁ ହସି ହସି ।
ଗୋକର୍ଣ୍ଣରେ ଶଏ ବରଷ ତପ କରି
ଦେଖିଲି ନେତ୍ରେ ଶିବ ତୁଲେ ଜନ୍ମନାଶୀ ।
ଯେ ଦୁହିଙ୍କ ପ୍ରସାଦେ ହୋଇ ମୁଁ ପବିତ୍ର
କରିଲି ଶଏ ପୁତ୍ରଙ୍କୁଟି ମୁହିଁ ଜାତ ।
ସେ ଶଏ ପୁତ୍ରଙ୍କର ବର୍ଷ ଲକ୍ଷେ ଠାଏ
ଆୟୁଷ ହେଲା ହେ ପାଣ୍ଡବକୁଳରାୟେ ।
ବାହ୍ଲୀକ ବୋଇଲେ ମୁଁ ବ୍ରହ୍ମହତ୍ୟା କଲି
ଶିବଙ୍କୁ ସେବ୍ୟକରି ତାହା ଛଡ଼ାଇଲି ।
ପର୍ଶୁରାମ ବୋଇଲେ ମାତାଙ୍କୁ ହିଂଜଙ୍କୁ
ମାରିବା ଭୟେ ସେବା କଲି ମୁଁ ଶିବଙ୍କୁ ।
ଯେଉଁ ନାମ ଆମ୍ଭଙ୍କୁ କହିଲେ ଗୋବିନ୍ଦ
ସେ ନାମେ ସ୍ତୁତି କଲି ବହି ମୁଁ ଆନନ୍ଦ ।
ତୋଷ ହୋଇ ଶିବ ପରଶୁ-ଅସ୍ତ୍ର ଦେଲେ
ବଜ୍ରପ୍ରୟ ଚିରଜୀବୀ ହୁଅ ହେ ବୋଇଲେ ।
ଶିଖଣ୍ଡୀ ବୋଇଲେ ମୁଁ ଶିବ ଆଜ୍ଞା ପାଇ
ବାହାରିଅଛି ଏବେ ହୋଇ ଋଷି ସାଇଁ ।
ବିଶ୍ୱାମିତ୍ର ବୋଇଲେ ଆରାଧି ମୁଁ ହର
ବ୍ରାହ୍ମଣ ବୋଇଲେ ହେ ରାଜା ମନେକର ।
ଦେବଳ ବୋଲେ ଇନ୍ଦ୍ରଙ୍କ ଶାପ ପାଇ
କ୍ଷୀଣ କରିଥିଲି ଆୟୁଷ ଧର୍ମ ଦୁଇ ।
ଶିବଙ୍କର ପ୍ରସନ୍ନେ ପାଇଲି ମୁଁ ତାହା
ଜାଣ ଆହେ ପାଣ୍ଡବକୁଳ-ନରନାହା ।
ଗୃତ୍ସମଦ ଋଷି ବୋଇଲେ ଯୁଧିଷ୍ଠିର
ଶୁଣ ଏକମନେ ମୋ କହିବା ଉତ୍ତର ।
ବଶିଷ୍ଠ ମୋତେ ମୃଗ କରି ଦେଇଥିଲେ
ଶିବ-ବରେ ଦେଖ ମୁଁ ଋଷି ହେଲି ଭଲେ ।
ଜୈଗୀଷବ୍ୟ ବୋଇଲେ ଆରାଧି ଶିବଙ୍କୁ
ପାଇଅଛି ମୁଁ ଅଷ୍ଟ ଐଶ୍ୱର୍ଯ୍ୟ ଫଳକୁ ।
ଗାର୍ଗ ବୋଇଲେ ମୁଁ ଚଉଷଠିକଳା
ଶିବବଳେ ଶିଖିଲି ପାଣ୍ଡୁ ନୃପବଳା ।

ଏ ବାହାରେ ସହସ୍ର ନାମ ମୋତେ ଦେଲେ
ଶତପୁତ୍ର ମୋଠାରୁ ଜାତ କରାଇଲେ ।
ପରାଶର ବୋଇଲେ ଶିବ ପ୍ରସନ୍ନରେ
ବ୍ୟାସ ପୁତ୍ର ହୋଇ ହେଲେ ମୋ ଆଶ୍ରମରେ ।
ସାବର୍ଣ୍ଣିମନୁରେ ଏ ସପ୍ତଋଷି-ହେଲେ
ଏ ବାହାରେ ଅଜର ଅମର ହୋଇଲେ ।
ପୁରାଣମାନଙ୍କର ହୋଇଲେ ଏ କର୍ତ୍ତା
ବେଦ-ବିଭାଗରେ ହୋଇଲେ ମଧ୍ୟ ବେତ୍ତା ।
ମାଣ୍ଡବ୍ୟ ବୋଇଲେ ମୁଁ ଶୂଳେ ବସିଥିଲି
ଶିବଙ୍କ ଆଜ୍ଞାରେ ଶୂଳରୁ ମୁକ୍ତ ହେଲି ।
ଅବ୍ଦ କୋଟି ବଞ୍ଚୁଛି ଶିବଙ୍କ ବଚନେ
ଝାଇଲି ମହୀରେ ରାଜନ ଯେନ ମନେ ।
ଗାଲବ ବୋଇଲେ ମୁଁ ବିଶ୍ୱାମିତ୍ର ବୋଲେ
ବାପଙ୍କୁ ଦେଖିବାକୁ ଗଲି ମୁହିଁ ଭଲେ ।
ମୋହ ଯିବାର ଜାଣି କହିଥିଲେ ମାତ
ନ ଯାଅ ବାପଙ୍କୁ ତୁ ନ ଦେଖିବୁ ସୁତ ।
ଏହା ଶୁଣି ମହାଦେବଙ୍କୁ ସେବା କଲି
ଶିବଙ୍କ ବରେ ଯାଇ ବାପଙ୍କୁ ଦେଖିଲି ।
ପୁଣି ଶିବ ବୋଇଲେ ମାତା ପିତା ତୁଲେ
ଅମର ହୋଇ ରହ ଏ ମୋହର ବୋଲେ ।
ବାପେ ଏହା ଶୁଣିଣ ହୋଇ ମୋତେ ତୋଷ
ପରଶଂସା କଲେ ଫୁଲାଇ ହୃଦ-ଦେଶ ।
ଏରୂପେ ଶିବଙ୍କର ମହିମାକୁ ଶୁଣି
ମହତ ଆଶ୍ଚର୍ଯ୍ୟକୁ ପାଇଲେ ନୃମଣି ।
ପାଣ୍ଡବଙ୍କର ଜ୍ୟେଷ୍ଠ ଧର୍ମଙ୍କ ନନ୍ଦନ
ଜାଣ ଆହେ ଜନମେଜୟ ନରରାଣ ।
ଶ୍ରୀକୃଷ୍ଣ ବୋଇଲେ ପାଣ୍ଡବକୁଳ-ରାଜା
ନୁହଇ ପାପୀଙ୍କ ଶିବଙ୍କଠାରେ ମଜ୍ଜା ।
ସୁକୃତବନ୍ତ ଲୋକେ ସେବ ଉମାପତି
ପାଦତଳେ ଆଣି ରଖନ୍ତି ସ୍ୱର୍ଗଭୂତି ।
ମନରେ ଶିବଙ୍କୁ ଯେ ପଶଇ ଶରଣ
ତାକୁଟି ବାନ୍ଧି ନ ପାରନ୍ତି ଯମଗଣ ।
ବ୍ରହ୍ମନ୍ତ କାଟଯାଏ ଶିବଙ୍କୁ ସେବନ୍ତି
ଶିବଙ୍କର ପ୍ରସାଦେ ପ୍ରମାଦୁ ତରନ୍ତି ।
ସୂର୍ଯ୍ୟ ଚନ୍ଦ୍ର ଆକାଶ ବାୟୁ ଭୂମି ଜଳ
ବସୁ ବିଶ୍ୱବିଧାତା ଅର୍ଯ୍ୟମା ଅନଳ ।
ଶୁକ୍ର ବୃହସ୍ପତି ଯେ ରୁଦ୍ର ସାଧ୍ୟ ଯମ
ହବ ରକ୍ଷା ଦୀକ୍ଷା ବ୍ରାହ୍ମଣ ପୁଣି ଧର୍ମ ।
ପୌରଭେଦ୍ୟ କାଳ ଯଶ ସୁବୁଦ୍ଧି ଦମ
ସାଙ୍ଖ୍ୟ ସୁପର୍ଣ୍ଣ ଗନ୍ଧର୍ବ ସ୍ଥୂଳ ସୂକ୍ଷ୍ମ ।
ସ୍ଥିତି ଶୁଭ ଅଶୁଭ ସପ୍ତର୍ଷି ଉଷ୍ମପ
ସୁଖ ଦୁଃଖ ସୁଯାମ ତୁଷିତ ସୋମପ ।
ଅସୁର ପିଶାଚ ଦାନବ ଗନ୍ଧର୍ବ
ଚାରଣ ସର୍ପ ଯକ୍ଷ ଦର୍ଶପ ଆଜ୍ୟପ ।
ଏ ଆଦି-କରତା ଅଟନ୍ତି ଉମାପତି
ଜାଣିଥାଅ-ଆହେ ପାଣ୍ଡବ-ନରପତି ।
ଏ ସ୍ତବ ପଢ଼ିଲେ ବର୍ଷେ ପର୍ଯ୍ୟନ୍ତେ
ଅଶ୍ୱମେଧଫଳ ହୁଅଇ ମହାମତେ ।
ବ୍ରାହ୍ମଣ ଏ ସ୍ତବକୁ ଏକମନ ହୋଇ
ପଢ଼ିଲେ ଶାସ୍ତ୍ର-ଉକ୍ତ ଧର୍ମକୁ ଜାଣଇ ।
କ୍ଷତ୍ରି ଏକମନେ ପଢ଼ିଲେ ଏ ଆଖ୍ୟାନ
ଅବନୀପାଳରେ ସେ ହୁଅଇ ରାଜନ ।
ପଢ଼ିଲେ ବୈଶ୍ୟ ପୁଣ୍ୟଫଳ ଟିକ ପାଏ
ଶୁଣିଲେ ଶୂଦ୍ର ବଡ଼ଲୋକ ହୋଇଯାଏ ।
ଏହି ରୂପେ ଯୁଧିଷ୍ଠିରଙ୍କୁ ଚକ୍ରଧର
କହି ତୁନି ହେଲେ ହେ ହସ୍ତିନା ନୃବର ।
ପରାଶର ନନ୍ଦନ ବେଦବ୍ୟାସ-ସତି
ଶତର୍ଷି ଋଷିଙ୍କର ଅଟନ୍ତି ଯେ ନାତି ।
ତାହାଙ୍କ ପାଦ ଧ୍ୟାଇ ଏ ମଘବାହନ—
ଆଖ୍ୟାନ କୃଷ୍ଣସିଂହ ନୃପ କଲେ ପୂର୍ଣ୍ଣ ।

—❋—

## ଅଷ୍ଟାବକ୍ର ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ଉପୁରିବ କଥାଏ ବଢ଼ୁଛି ମୋ ସ୍ନେହ ।
ବିବାହରେ ଏକଥା ହୋଇ ଧର୍ମାତ୍ମର
ଯା ବୋଲନ୍ତି କର ଏ କାରଣ ପ୍ରଚୁର ।
ସାକ୍ଷାତେ ଦେଖୁଥାଇଁ ଭାର୍ଯ୍ୟା ଗୃହସ୍ଥରେ
ଜଣେ ମଲେ ତ ଜଣେ ଥାଏ ଏ ସଂସାରେ ।
କେତେ ପୁଣି ଗୃହସ୍ଥଙ୍କ ସଙ୍ଗରେ ଯାଆନ୍ତି
କେତେ ପୁଣ ଗୃହସ୍ଥ ଆଗରେ ମରନ୍ତି ।
ଏହି ସକାଶୁଁ ଜାଣ ଆହେ ପିତାମହ
ଏ କଥାରେ ମୋହର ହେଉଛି ବଡ଼ ମୋହ ।

ଶାସ୍ତ୍ର ବୋଇଲେ ଆହେ ଅଷ୍ଟାବକ୍ର ଭଗ
ସମ୍ବାଦକୁ କହିବା ଶୁଣ ମହାଭାଗ ।
ଅଷ୍ଟାବକ୍ର ପୂର୍ବେ ବଦାନ୍ୟ ଋଷିଙ୍କର
ଝିଅକୁ ବରିବାକୁ ଗଲେ ନରବର ।
ସେହି ଝିଅର ନାମ ଅଟଇ ସୁପ୍ରଭା
ଦେଖିଲେ ତାକୁ ଦେବେ ହେବେ କାମଲୋଭା
ଅଷ୍ଟାବକ୍ରଙ୍କର ବିବାହ ମନ ଜାଣି
କହିଲେ ସେ ବଦାନ୍ୟ ଋଷି ହସି ବାଣୀ ।
ଉତ୍ତରଦିଗ ତୁମ୍ଭେ ବୁଲିକରି ଆସ
ପଛେ ବିଭା ହେବ ମୋ ଝିଅକୁ ଋଷିଶ ।
ଅଷ୍ଟାବକ୍ର ବୋଇଲେ ଉତ୍ତରକୁ ଯିବି
କିସ ଦେଖି ଆସି କହିବି କହ ଭାବି ।
ବଦାନ୍ୟ ବୋଇଲେ ହେ ହିମାଳୟଗିରି—
ଆର ପାଶରେ ଅଛି ଶିବଙ୍କର ପୁରୀ ।
ତାହା ଦେଖି ମାଳବନରେ ବୁଢ଼ୀ ଜଣେ
ଅଛନ୍ତି ତାକୁ ଦେଖି ଆସିବ ଆପଣେ ।
ଅଷ୍ଟାବକ୍ର ବୋଇଲେ ବୋଲୁଅଛ ଯେବେ
ଯାଉଅଛି ତାହା ଆସିବି ଦେଖି ତେବେ ।
ଏତେକ ବୋଲି ଅଷ୍ଟାବକ୍ର ମହାଋଷି
ହିମାଳୟ ଶିଖରେ ପ୍ରବେଶିଲେ ଆସି ।
ବିମଳା ନାମେ ତୀର୍ଥ ଯେ ଗିରିରେ ଥିଲେ
ସ୍ନାନ ତରପଣ ସେ ସେହିଠାରେ କଲେ ।
ରାତ୍ର ଶେଷରେ ଉଠି ପୁଣି ସ୍ନାନ ସାରି
ହୋମ କଲେ ସେ ଅଷ୍ଟାବକ୍ର ତପସ୍ବୀ ।
ହୋମ ଶେଷରେ କଇଳାସ-ଗିରି ପାଶ
ପରବେଶ ହେଲେ ଯାଇ ସେ ଋଷି ଈଶ ।
କଇଳାସଙ୍କର ଯେ ସୁବର୍ଣ୍ଣ ଦୁଆର
ଦେଖିଲେ ନୟନରେ ସେ ମହର୍ଷିବର ।
ମଣିଭଦ୍ରାଦି ତହିଁ ଯେତେ ଯକ୍ଷ ଥିଲେ
ଅଷ୍ଟାବକ୍ର ଋଷିଙ୍କି ଦେଖି ସୁଖୀ ହେଲେ ।
ଅଷ୍ଟାବକ୍ରଋଷିଙ୍କ ପାଦରେ ପୂଜନ
କରନ୍ତେ ତାଙ୍କୁ ଆଜ୍ଞାଦେଲେ ତପୋଧନ ।
ତୁମ୍ଭେ ଯାଇ କୁବେର ଦେବେ ଆସିବାର
ମୋହର କହ, ଆଉ ବିଳମ୍ବ ନ କର ।
ଏହା ଶୁଣି ଯକ୍ଷ ରାକ୍ଷସେ ଧାଇଁଗଲେ
କୁବେର ଦେବଙ୍କର ଆଗରେ କହିଲେ ।

ଆସିଅଛନ୍ତି ଅଷ୍ଟାବକ୍ର ତୁମ୍ଭଠାକୁ
ବୋଇଲେ ଭେଟାଇବୁଁ ଆଣିଣ ତାହାଙ୍କୁ ।
ଏହା ଶୁଣି କୁବେର ଧାଇଁ ଧଡ଼ପଡ଼େ
ପଡ଼ିଲେ ଲମ୍ବହୋଇ ଅଷ୍ଟାବକ୍ର ଗୋଡ଼େ ।
ଅଷ୍ଟାବକ୍ର ଋଷି କରନ୍ତେ ସୁକଲ୍ୟାଣ
ଉଠି ପଚାରିଲେ ତାହାକୁ ଯକ୍ଷ-ରାଣ ।
କେତେ କାର୍ଯ୍ୟେ ମୋଠାକୁ ଆସିଅଛ ତୁମ୍ଭେ
କହିଲେ ତାହା ଜାଣ କରି ଦେବୁଁ ଆମ୍ଭେ ।
ଆସ ମୋର ଘରକୁ ଆହେ ଋଷିବର
ପବିତ୍ର ହେବ ଦେଖି ପୁତ୍ର ଭାର୍ଯ୍ୟା ମୋର ।
ଏହା କହି କୁବେର ସଙ୍ଗେ ଋଷିବର
ଘେନିଗଲେ ଯହିଁ ସେ କରିଥିଲେ ଘର ।
ଦିବ୍ୟ ଆସନରେ ତାହାଙ୍କୁ ବସାଇଲେ
ଆପଣେ ମଧ୍ୟ ଯାଇ ଆସନେ ବସିଲେ ।
ତାହା ଦେଖିଣ ମଣିଭଦ୍ର ଆଦି ଯକ୍ଷ
ବସିଲେ ଯେଝା ସୁଖେ ପାଇ ମହାସୌଖ୍ୟ ।
ଏହି ସମୟରେ ଯେ କହିଲେ କୁବେର
ନାଚିବେ ଅପସରା ବୋଇଲେ ଋଷିବର ।
ଅଷ୍ଟାବକ୍ରଋଷି ତ କାମେ ହୋଇ ବାଇ
ଯାଇଥିଲେ କୁବେର ସମୀପକୁ ଧାଇଁ ।
କୁବେର ବୋଇଲେ ନାଚିବେ ବେଶ୍ୟାଗଣ
ତାହା ଶୁଣି ଆନନ୍ଦ ହୋଇ ଋଷିଗଣ ।
ବୋଇଲେ ଅଣାଅ ହେ ନାରୁଣୀ-ଗଣଙ୍କୁ
ଶୁଣିବା ସେ ପାଦ ଘାଗୁଡ଼ି-ବାଜଣାକୁ ।
ରମ୍ଭା ଅଲମ୍ବୁଷା ଘୃତାଚୀ ଉର୍ବଶୀ
ମିଶା ଚିତ୍ରାଙ୍ଗଦା ଯେ ରୁଚି ମିଶ୍ରକେଶୀ ।
ମନୋହରା ସୁକେଶୀ ସୁମୁଖୀ ବିଦ୍ୟୁତା
ପ୍ରଶର୍ମା ପ୍ରଭା ଦାନ୍ତା ହାସିନୀ ବିଦ୍ୟୋତ ।
ଏମାନେ କୁବେର ବଚନେ ନାଟସଜ
ହୋଇ ହୋଇଥିଲେ ଭାଙ୍ଗିବା । ଋଷି ଓଜ
ଋଷିଙ୍କ ବଚନ ଶୁଣିବା କ୍ଷଣି କାନେ
ଆସିଲେ କୁବେର ସଭାକୁ ତୋଷମନେ ।
ସେ ନାରୀମାନଙ୍କର ପାଦର ଘାଗୁଡ଼ି
ହେଲା ମଦନରାଜ ବାଦ୍ୟକୁ ଘଉଡ଼ି ।
କୁବେରଙ୍କ ସମୁଖେ ହୋଇକରି ଛିଡ଼ା
ମୁଖେ ବାସଦେଇ ଗୁଣିଲେ ପାନବିଡ଼ା ।

ତା ଜାଣି ଗନ୍ଧର୍ବେ ମାଦଳପୁଡ଼ା ଫେଇ
ବଧିକ କଧୀ ଦେଲେ ଦେବେ ଗୁଡ଼ିଆଇ ।
ଉପାଙ୍ଗ ଧରି ପଛେ ରଙ୍ଗ କରି ମୁଖ
ଫୁଙ୍କି ସ୍ୱର କରନ୍ତେ ହେଲା କର୍ଣ୍ଣସୁଖ ।
ମନ୍ଦିରା ଧରି ଜଣେ ଇନ୍ଦୀବର-ନେତ୍ରୀ—
ମାନବଙ୍କୁ ନଗ୍ନଇବା ଚିନ୍ତା କରି ମତି ।
ନାନାଜାତି ଉକୁଟମାନ ଉଚ୍ଚାରିଲା
ବେକ ଭଙ୍ଗି ମୁଣ୍ଡକୁ କାନ୍ଧେ ଗଡ଼ାଇଲା ।
ହାତ ଯୋଡ଼ିକକୁ ସେ ଦେଇଣ ବିସ୍ତାରି
ଗାଉଥାନ୍ତି ଉଚ୍ଚରେ ବୋଲଣ ଗିମାରି ।
ଏହିରୂପେ ସଙ୍ଗୀତ-ସ୍ଥଳରେ ଆରମ୍ଭ
କରନ୍ତେ ନୃତ୍ୟ ହରି ନେବପାଇଁ ଦମ୍ଭ ।
ନବ-ଜଳଧର ତମାଳ କେକ-ପୁଚ୍ଛ—
କେଶୀଏ ଆଳପିଲେ ରାଗ କରି ସ୍ୱଚ୍ଛ ।
ଆଦ୍ୟ ପ୍ରାନ୍ତ ମଧ୍ୟ ଲୟରେ କରି ସ୍ଥିତ
ଗାଇଲେ ଗଳା ମେଳି ଉଚ୍ଚରେ ସଙ୍ଗୀତ ।
ପାଞ୍ଚ ବିପଞ୍ଚୀର ଧ୍ୱନିକ ସେହି ଧ୍ୱନି
ଜଣିଲା ପରି ନରେ ନେଲେ କର୍ଣ୍ଣେ ଶୁଣି ।
ଚଳନ୍ତେ ଉରଜ ସମୀପେ ହାତ ଦେଇ
ଲମ୍ବାଇ ନାଚ ଫେରି ମାରି ପ୍ରୀତି ବହି ।
ମାଦଳକୁ ଜୁହାରି କୁବେର ଦେବଙ୍କୁ
ଜୁହାରିଲେ ସମସ୍ତେ ନୁଆଁଇ ମଥାକୁ ।
କର-ପଦ୍ମରେ ମୁଖ-ଚନ୍ଦ୍ର ଅଧିବାସ
କରନ୍ତେ ନେତ୍ର-ଭଙ୍ଗ ହୋଇ ଅତି ତୋଷ ।
ଦୁଇକର୍ଣ୍ଣ ପାଟଳୀ ଫୁଲେ ଅଧିକ୍ଷେପ
କରି କରାଇଲା କୁବେରଦେବ ତାପ ।
ଅଷ୍ଟାବକ୍ର ଋଷି ବେଶ୍ୟାଙ୍କ ନୃତ୍ୟ ଦେଖି
ପିଛୁଡ଼ି ନ ପାରିଲେ ତାଙ୍କ ବେନି ଆଖି ।
ଦିବ୍ୟ ବରଷରେ ବରଷଟିଏ ଶେଷ
ହେଲା ଋଷି ମଣିଲେ ହେଲେ କି ନିମିଷ ।
କାମ ମହୀପତି ଋଷିଙ୍କ ଘାତ ଜାଣି
ଚାପ ଧରି ଧାପେ ବିନ୍ଧିଲା ଶର-ଶ୍ରେଣୀ ।
ସେ କାଳେ କାମ ମନ୍ତ୍ରବଳେ ତା ଅମାପ
କରି କଲା କ୍ଷଣକେ ଋଷିଙ୍କର ତାପ ।
କୁବେର ବୋଇଲେ ହେ ଅଷ୍ଟାବକ୍ର ଋଷି
ଦେଖିଲେ ତ ନୃତ୍ୟ ମୋ ସଭାମଧ୍ୟେ ବସି ।

ନିମିଷକ ପରାଏ ସରିଲେ ବରଷ
କହ ନିବର୍ତ୍ତିଲା କି ନୃତ୍ୟରୁ ମାନସ ।
ଆମ୍ଭମାନଙ୍କରେ ତୁମ୍ଭେ ତ ପୂଜନୀୟ
ତୁମ୍ଭର ଯେ ସୁଖ ଆମ୍ଭର ସେହି ପ୍ରିୟ ।
ଅଷ୍ଟାବକ୍ର ବୋଇଲେ ଅପସରାଗଣ
ନୃତ୍ୟଦେଖି ବଶ ମୁଁ ହେଲି ଧନ-ରାଣ ।
ଏବେ ଯାଉଅଛୁ ମୁଁ ଉତ୍ତର ଦିଗକୁ
ମଙ୍ଗଳ ହୋଇଥାଉ କେଉଁ କଲ୍ୟାଣକୁ ।
ଏତେ ବୋଲି ସେଠାରୁ ଉଠି ଋଷି-ଈଷ
ଗମିଲେ ଯହିଁ ହେଥିଲେ କଇଳାସ ।
କଇଳାସ ଗିରିଙ୍କି ପ୍ରଦକ୍ଷିଣ କଲେ
ଦୁଇହାତ ମସ୍ତକେ ଯୋଡ଼ିଣ ନମିଲେ ।
ବହୁତ ଅଛୁ ତହିଁ ମୁନିଙ୍କ ଆଶ୍ରମ
ହରୁଛି ସେ ଦେଖିବା ଲୋକଙ୍କର ଶ୍ରମ ।
ସେ ଆଶ୍ରମ ନିକଟେ ସୁବର୍ଣ୍ଣ-ପଥର
ରତ୍ନରେ ମଣ୍ଡି ହୋଇ ଅଛନ୍ତି ଅପାର ।
ପୁଷ୍କରିଣୀ ମଧ୍ୟ ସମୀପେ ତା'ର ଅଛୁ
ଜଳଜନ୍ତୁଙ୍କରେ ସେ ମନକୁ ମୋହୁଛୁ ।
ରତନମୟ ଘର ହୋଇଛୁ ତ ସେହି
ପାଢ଼ିଲେ ଋଷି ଡକା ସେ ଦୁଆରେ ରହି ।
ଅତିଥି ହୋଇ ଅଷ୍ଟାବକ୍ର ଋଷିବର
ଆସିଛୁ ମୋତେ କରି କେ ଅଛ ସୂକ୍ଷ୍ମକର
ଏହା ଶୁଣି ସେ ଘରୁ ସାତଗୋଟି କନ୍ୟା
ବାହାରିଲେ ଦେହରେ ନିନ୍ଦା କରି ସୁନା ।
ଅଷ୍ଟାବକ୍ର ଋଷି କନ୍ୟାଙ୍କ ମୁଖ ଦେଖି
ଥରେ କାମ-ଶରେ ଥରିଲେ ହୋଇ ଦୁଃଖୀ ।
କନ୍ୟାମାନେ ସେ କଥା ଜାଣି ତ ପାରିଲେ
ଆସ ହେ ଋଷି ଆମ୍ଭ ଘରକୁ ବୋଇଲେ ।
ଋଷି ସେ ନ଼-ନାଶ ମୂରତିକି ଦେଖି
ରହିଁ ରହିଥିଲେ ସ୍ଥକିତ କରି ଆଖି ।
ଏହି ବଚନ-ଚନ୍ଦ୍ର ହସନ୍ତେ ଉଦୟ
ଉଲ୍ଲାସିଲା ଋଷିଙ୍କ ଚକୋର ହୃଦୟ ।
ଋଷି କନ୍ୟାଙ୍କର ସଙ୍ଗତେ ଯିବାବେଳେ
କନ୍ୟାଙ୍କର ପାଦ ଘାଗୁଡ଼ି ଧ୍ୱନି ହେଲେ ।
ଋଷିଙ୍କର ବେନି ପାଦକୁ ଦେଲା ଛନ୍ଦ
ମଦନ ତ ଥିଲା ଆଗରୁ ଶର ବିନ୍ଧ ।

ଏରୂପେ କଷ୍ଟେ ମଷ୍ଟେ ଯାଇ ଋଷିବର
ପ୍ରବେଶ ହେଲେ ଯାଇ ସେ କନ୍ୟାଙ୍କ ଘର ।
ଦେଖିଲେ ବୁଢ଼ୀ ଜଣେ ପିଠି କୁଜ ହୁଇ
ବାହାର କରି ଖଟେ ବସିଅଛି ଲଇଁ ।
ଦୁଇ ଆଖି ଦେଶରେ ଲଗାଇ କଜ୍ଜ୍ୱଳ
ଗ୍ଳୁହୁଁଛି ସବୁରି ମୁଖକୁ ଜଳ ଜଳ ।
ଭୂଲତା ବାଳଯାକ ଯାଇଅଛି ପାଚି
ତାହାମଧ୍ୟ ଡ଼ାକୁଛି ମନରେ କି ପାଞ୍ଚି ।
ପାନ କଳରେ ଯାକବାରେ ସେ ମାଙ୍କଡ଼
ଗଣ୍ଡରୁ ତା'ର ଗଣ୍ଡ ବୋଲୁଅଛି ବଡ଼ ।
ପିନ୍ଧିଅଛି ପୁଣି ସେ ସରୁ ଝୀନ ଶାଢ଼ୀ
ସେ ଶାଢ଼ୀ ମୁହିଁ ହୃଦେ ପଡ଼ିଅଛି ଘୋଡ଼ି ।
ଋଷିଙ୍କି ଦେଖିଣ ସେ ଉଠିଣ ଆସନୁଁ
ବୋଇଲା ଆସି ଖଟେ ବସ ଋଷି ସୂନୁ ।
ଅଷ୍ଟାବକ୍ର ବୋଇଲେ ଆଗୋ ନାରୀମାନେ
ଜଣାମଣା ଯାହା କରୁଛି ଶୁଣ କାନେ ।
ତୁମ୍ଭେମାନେ ସମସ୍ତେ ମୋ ପାଖରେ ରହି
ଥିଲେ ମୁଁ ହେଉଥିବି କାମଶରେ ଦହି ।
କହୁଅଛି ମୁହିଁ ଗୋଟିଏ ନବୀନାକୁ
ରଖି ମୋ ପାଶେ ଯାଅ ସର୍ବେ ଆନଠାକୁ ।
ଏହା ଶୁଣି ସେ ସାତକନ୍ୟା ଋଷିପାଦେ
ଦଣ୍ଡବତ କରିଣ ଅତ୍ୟନ୍ତ ପ୍ରମୋଦେ ।
ସେ ବୁଢ଼ୀ ନାରୀଟିକ ଋଷିପାଖେ ରଖି
ବାହାରି ଗଲେ ଥରେ ଗ୍ଳୁଳଦେଇ ଆଖି ।
ଅଷ୍ଟାବକ୍ର ବୋଇଲେ ସେ ବୁଢ଼ୀ•ନାରୀକ
ଶୁଅ ରାତ୍ର ତ ଆସି ହେଲାଣି ଅଧିକ ।
ଋଷି ଏହା ବୋଲବାକ୍ଷଣି ବୁଢ଼ୀ ସ୍ତ୍ରିରୀ
ଶୋଇଲା ଆନଠାରେ ଶେଯଟାଏ ପାରି ।
ଶୀତ ବ୍ୟାଜରେ ପୁଣି ଉଠିଣ ସେ ବୁଢ଼ୀ
ବସିଲା ଋଷି ଶେଯେ ତାଙ୍କ ଗଣ୍ଡି ଭିଡ଼ି ।
ଚଳାଇଣ ନଖ ସେ ବୋଇଲା ଋଷିଙ୍କି
ମୁଁ ଯୋଗ୍ୟ ନୋହିଲି କି ତୁମ୍ଭରି ଦାସୀକି ।
ମୋତେ କାମ୍ୟା ହସି ନ କହ ଋଷିବର
ଦେଖ ଦହୁଅଛି ମଦନ ମୋ ଶରୀର ।
ମୋହଠାରୁ ତୁମ୍ଭେ ଲଭିଲେ ସୁରତି
ଆଜ ମନ କରିବ ହୋଇଲି ମୁଁ ମୁକତି ।

ସ୍ତ୍ରିରୀଙ୍କର କନ୍ଦର୍ପ ହୁଏ ଯେବେ ଜାତ
ଜାଣୁଥିଲେ ଦେହ ସେ ମଣୁଥାନ୍ତି ହତ ।
ଜ୍ୟେଷ୍ଠମାସେ ତାତି ବାଳରେ ଗ୍ଳୁଳଗଲେ
ସେ ତାତି ନ ଜାଣନ୍ତି ମଧ୍ୟ କାମ ଭୋଳେ ।
ଅଷ୍ଟାବକ୍ର ବୋଇଲେ ମୁଁ ତ ପରସ୍ତ୍ରିରୀ
ଛୁଡ଼ିଛି ବସି ମୋତେ ନ ବଳାଅ ନାରୀ ।
ବୃଦ୍ଧ ନାରୀ ବୋଇଲା ସତ୍ୟରେ ବନିତା
ଥିବାରି ଅସ୍ଥ ଆହେ ଜାଣ ବେଦବେତ୍ତା ।
ସ୍ତ୍ରିରୀମାନେ ଗୃହସ୍ଥ ପୁରୁଷକୁ ଛାଡ଼ନ୍ତି
ମନକୁ ଯେ ଆସଇ ତାହାକୁ ଭଜନ୍ତି ।
ଋଷି ବୋଇଲେ ଆଗୋ ରତି ସୁଖ ଛାଡ଼ି
ଆନ କଥା ମାଗ କରିବି ଏହି ଘଡ଼ି ।
ବୃଦ୍ଧା ସ୍ତ୍ରିରୀ ବୋଇଲା ମୋଠାରୁ ସୁରତି
ଭୋଗ କାମ୍ୟା ଇଚ୍ଛା ନ କର ଋଷି•ସୁତ ।
ଋଷି ସେ ବୃଦ୍ଧା ସ୍ତ୍ରିରୀ ସ୍ୱରୂପକୁ ଦେଖି
କ୍ଷଣେ ଆଖି ବୁଜି ଭାବିଲେ ହୋଇ ଦୁଃଖୀ ।
ଏହି କାଳରେ ସୂର୍ଯ୍ୟ ଉଦୟ ହୁଅନ୍ତେ
ସେ ବୃଦ୍ଧା ହସିଣ ବୋଇଲା ମହାମତେ ।
ମନଟିରେ ଇଚ୍ଛା ହେ ହେଉଅଛି ଯାହା
ବୋଲ ମୁହିଁ ଆଣି ତୁମ୍ଭଙ୍କୁ ଦେବି ତାହା ।
ଋଷି ବୋଇଲେ ଆଗେ ସ୍ନାନପାଇଁ ପାଣି
ଶରଧା ଗ୍ଳୁରି ଆଣ ହେ ବୃଦ୍ଧା ତରୁଣୀ ।
ବୁଢ଼ୀ ତାହା ଶୁଣି କରିବ ସେହିରୂପେ
ବୋଲଣ ପାଣି ବୋହି ଆଣିଲେ ସେହିଁଆପେ ।
ସୁବାସିତ ତୈଳ ପିତଳ କଂସାଟିରେ
ପୁରାଇ ଥୋଇଦେଲେ ଋଷିଙ୍କ ଆଗରେ ।
ଋଷି ଅନୁଜ୍ଞାରେ ଋଷିଙ୍କ ମୁଣ୍ଡ ଧରି
ଘଷିଲା ସେହି ବୁଢ଼ୀ ଧୀର ଧୀର କରି ।
ତଦନ୍ତେ ସୁଖୀ ଭଦ୍ରାସନରେ ବସାଇ
ଢ଼ାଳିଲା ତାଙ୍କ ଦେହେ ପାଣିକୁମ୍ଭ ନେଇ ।
କରାଇ ସ୍ନାନ ଝୀନ ବାସେ ପୋଛି ଅଙ୍ଗ
ବୋଳଦେଲା ଆଣି ଉତ୍ତମ ଅଙ୍ଗରାଗ ।
ଏଥୁଅନ୍ତେ ସନ୍ଧ୍ୟା ସାରିଣ ଋଷିମଣି
କି କରିବ ବୋଲି ବୋଇଲେ ତାକୁ ପୁଣି ।
ବୁଢ଼ୀ ଠାଆପୀଢ଼ା ଋଷିଙ୍କ ପାଇଁ କରି
ବାଢ଼ିଦେଲା ଅନ୍ନ ସୁବର୍ଣ୍ଣ ଥାଳ ଭରି ।

ଭୋଜନ ସାରି ଋଷି ଆଚମନ କଲେ
ଗୁଆ ଖଣ୍ଡେ ଖେବାଇ ଘୁମାଇ ରହିଲେ ।
ନିଦ୍ରା ଶେଷକାଳେ ଦେଖନ୍ତେ ସନ୍ଧ୍ୟାକାଳ
ସେକ୍ଷଣି ସନ୍ଧ୍ୟାସାରି ଋଷିକୁଳ ବାଳ ।
ବୋଇଲେ ଶେଯଟିଏ ପାରି ବୁଢ଼ୀନାରୀ
ନିଦ୍ରା ମୋହର ନେଣେ ରହିଲଣି ପୂରି ।
ଋଷିଙ୍କ ବଚନେ ସେକ୍ଷଣି ଶେଯ ପାଡ଼ି
ଋଷିଙ୍କି ଶୁଆଇଣ ଦେଲା ଗୋଡ଼ ମାଡ଼ି ।
ଋଷିଙ୍କ ନିଦ୍ରା ଦେଖି ପାରି ଆନ ଶେଯ
ଶୋଇଲା ତାଙ୍କ ପାଖେ ଛାଡ଼ିଦେଇ ଲାଜ ।
ନିଶି ଅର୍ଦ୍ଧ ହୋଇବା ଜାଣି-ବୁଢ଼ୀ-ନାରୀ
ଶୋଇଲା ସେ ଋଷିଙ୍କ କୁଣ୍ଢି ଆଇ କରି ।
ନ ସହି ତାହା ଋଷି ବୋଇଲେ ବୁଢ଼ୀକି
ଛାଡ଼ ତ ଦେଇଅଛି ମୁଁ ପରସ୍ତ୍ରୀଙ୍କି ।
ସ୍ତ୍ରୀମାନଙ୍କର ତ ସ୍ୱତନ୍ତ୍ର ଧରମ
ନୁହଇ କମ୍ପା କରୁଅଛ ଏ ଅଧର୍ମ ।
ବୁଢ଼ୀ ବୋଇଲା ମୁଁ ହେଲଣି କାମେ ବାଇ
କାହିଁକି ବୋଲୁଅଛ ଋଷି ମୋତେ ନାହିଁ ।
ଗୋଡ଼ ଧରି ତୁମ୍ଭର ମାଗୁଛି ସୁରତି
କୃପା କର ମୋତେ ହେ ଋଷି ମହାମତି ।
ପରଦାରିକୁ ତୁମ୍ଭେ ଛାଡ଼ିଅଛ ଯେବେ
ବୋଲୁଛି ମୋ ପ୍ରାଣିଗ୍ରହଣ କର ତେବେ ।
ସ୍ୱତନ୍ତ୍ର ତ ମୁହିଁ ଅଟଇ ଋଷିବର
ଏଣୁ ଆତ୍ମଦାନେ ପ୍ରଭୁତ୍ୱ ହେଲା ମୋର ।
ଋଷି ବୋଇଲେ ଆହେ ସ୍ତ୍ରୀମାନଙ୍କର
ଆତ୍ମାଦାନଟିରେ ହେ ନାହିଁ ଅଧିକାର ।
ପିତା ଭର୍ତ୍ତା ପୁତ୍ର ବାଲ୍ୟରୁ ବୃଦ୍ଧଯାଏ
ପାଳନ୍ତି-ସ୍ତ୍ରୀଙ୍କି ଟି କହନ୍ତି ସଭିଏ ।
ବୁଢ଼ୀ ବୋଇଲା ମୁହିଁ ବ୍ରହ୍ମଚର୍ଯ୍ୟବ୍ରତ
କରିଛି ତା ଭଙ୍ଗ ତୁମ୍ଭେ ତ ବ୍ରହ୍ମପୁତ୍ର ।
ଏହା ଶୁଣିଣ ଅଷ୍ଟାବକ୍ର ମହର୍ଷି
ଟିକାଏ ଯାଏଁ ବସିଲେ ଆଖି ଖୋଷି ।
ମନେ କଲେ ଏଠି ଥିଲେ ଏ ବୁଢ଼ୀ ରାଣ୍ଡି
ଦଆଇବ ମୋତେ ମଦନ ରାଜଦଣ୍ଡେ
ଏହାକୁ ଛାଡ଼ି ମୁହିଁ ଯିବି ଆନଠାକୁ
ନାହିଁ ମୋହର କଥା କଛିନ୍ତୁବୋଧିବାକୁ ।

ଋଷି ଭାବନ୍ତେ ବୁଢ଼ୀ ଲୁଚାଇ ସ୍ୱରୂପ
ଛୁଡ଼ା ହେଲା ଆଗରେ ଧରି କନ୍ୟାରୂପ ।
ଯୁଧିଷ୍ଠିର ବୋଇଲେ ଋଷିଙ୍କ ଶାପକୁ
ନ ଡରିଲା କମ୍ପା ସେ କହ ତ ଆମ୍ଭଙ୍କୁ ।
ଧୌମ୍ୟ ବୋଇଲେ ଆହେ ଅଷ୍ଟାବକ୍ରଋଷି
ଭିତରେ ସେହି ବୁଢ଼ୀ ହୁଅନ୍ତେ ଲାଳସୀ ।
ଅଷ୍ଟାବକ୍ର ପୁଛିଲେ ଆଗୋ ବୁଢ଼ୀରାମା
ଭୁଚ ତ ହୋଇଅଛୁ ମୋଠାରେ ରତିକାମ ।
ବୁଢ଼ୀରୂପ ଛାଡ଼ି କାହିଁକି କନ୍ୟାରୂପ
ଧଇଲୁ ସତ କହ ଛାଡ଼ି ହୃଦତାପ ।
ବୁଢ଼ୀ ବୋଇଲା ମୁଁ ଉତ୍ତରଦିଗ ଋଷି
ତୁମ୍ଭର ମନ ହରୁଥିଲି ପାଶେ ବସି ।
ସ୍ତ୍ରୀମାନଙ୍କ ଜାଣିଥାଅ ଏହି ଗୁଣ
ବୁଢ଼ୀ ହୋଇଲେ କାମ ବଢଇ ଦ୍ୱିଗୁଣ ।
ବିବାହ ଇଚ୍ଛା ଯେ କରିଛ ତପସ୍ୱୀଶ
ବୁଢ଼ୀ ହେଲେ ସ୍ତ୍ରୀଙ୍କ ଏକୁଟିଆ କରି ।
ନ ଯିବଟି ତୁମେ ହେ ନାହିଁ ତପୋଧନ
ଭରିଯାରଠାରେ ବିଶ୍ୱାସ କରି ମନ ।
ଏକା ହୋଇଲେ ପରପୁରୁଷରେ ମତି
ବଳାତ୍ତ କାମରୁ ସେ ନ ପାରି ନିବର୍ତ୍ତି ।
ବଦାନ୍ୟ ଋଷିଙ୍କୁ ମାଗିଲ ଝିଅ ତୁମ୍ଭେ
ସେ ପେଷିଲେ ଏହା କହିବୁଁ ବୋଲି ଆମ୍ଭେ
ଏବେ ତ ଆମ୍ଭଠୁଁ ଶୁଣିଲ ଋଷିବର
ବିଭା ହୁଅ ଝିଅ ବଦାନ୍ୟ ଋଷିଙ୍କର ।
ଶୁଣି ବୁଢ଼ୀଠାରୁ ଋଷି ଏ ବଚନକୁ
ଆସିଲେ ସେହିକ୍ଷଣି ନିଜ ଆଶ୍ରମକୁ ।
ଦେହଶ୍ରମ ହରି ବଦାନ୍ୟ ଋଷିପାଶ ।
ଗଲେ ପୁଣି ସେ ଅଷ୍ଟାବକ୍ର ଋଷିଈଶ ।
ତାହାଙ୍କୁ ବୋଇଲେ ମୁଁ ତୁମ୍ଭର ବୋଲରେ
ଗଲି ଉତ୍ତରକୁ ହେ ଅତି ସତ୍ୱରରେ ।
ଉତ୍ତରଦିଗ ବୁଢ଼ୀ ତୁଲେ କଥାବାର୍ତ୍ତା
ହୋଇ ଆସିଲି ଆହେ ଜାଣ ବେଦବେତ୍ତା ।
ଏହା ଶୁଣି ଶୁଭ ନକ୍ଷତ୍ରେ ଋଷିବର
ବିଭା କଲେ ଝିଅକୁ ହୋଇ ତୋଷଭର ।
ଅଷ୍ଟାବକ୍ର ଋଷି କନ୍ୟାକୁ ବିଭା ହୋଇ
କାମଦୁଃଖ ମନରୁ ଦେଲେ ପାସୋରାଇ ।

ଶେଷ ହୋଇଲା ଅଷ୍ଟାବକ୍ର ଋଷିଙ୍କର
ସମ୍ବାଦ କହେ କୃଷ୍ଣସିଂହ ନରବର ।

—*—

## ବ୍ରାହ୍ମଣ ସମ୍ବନ୍ଧୀୟ କତିପୟ ପ୍ରଶ୍ନ

ଯୁଧିଷ୍ଠିର ବୋଇଲେ ଦେବାକୁ କେ ପାତ୍ର
ତାହା ମୋତେ କହ ତ ଶାନ୍ତନୁଙ୍କ ପୁତ୍ର ।
ଭୀଷ୍ମ ବୋଇଲେ ଆହେ ନିଜ ବୃତ୍ତେ ଥିଲେ
ଜାଣ ଦେବ ତାହାକୁ ଯାଚକର ଭଲେ ।
ଯୁଧିଷ୍ଠିର ବୋଇଲେ ହୋଇ ଶ୍ରଦ୍ଧାଯୁତ
କୁଦ୍ୱିଜେ ଦାନ ଦେଲେ ଦୋଷ କି କହ ତ ।
ଭୀଷ୍ମ ବୋଇଲେ ଆହେ ହୋଇ ଶ୍ରଦ୍ଧାଯୁତ
ଅପାତ୍ରେ ପାତ୍ରେ ଦେଲେ ହୁଅଇ ମୁକତ ।
ଯୁଧିଷ୍ଠିର ବୋଇଲେ କବ୍ୟଦାନେ ଦ୍ୱିଜ—
ମାନଙ୍କ ଲେଖିଣ ବୁଝିବ ତେଜ ଓଜ ।
ଆନ ଦାନ ଦେଲେ ବ୍ରାହ୍ମଣ ଭଲ ମନ୍ଦ
ଯେ ବୁଝଇ କରେ ସେ ଧର୍ମ ସଙ୍ଗେ ଦ୍ୱନ୍ଦ୍ୱ ।
ଭୀଷ୍ମ ବୋଇଲେ ହେ ଯେ ଦ୍ୱିଜ ବେଦବାଦୀ
ତାହାଙ୍କୁ ଦେବ ଦାନ ହୋଇ ନିର୍ବିବାଦୀ
ଯୁଧିଷ୍ଠିର ବୋଇଲେ ବିଦ୍ୟାବନ୍ତ ଦ୍ୱିଜ
ଜାଣି କେଉଁଣ କରିଥିବ ତେଜ ଓଜ ।
ସେ କେଉଁରୂପେ ଦାନଯୋଗ୍ୟ ହୋଏ ପିତା
କହ କହ ତାହା ଗୁଡ଼ୁ ମୋ ହୃଦଚିନ୍ତା ।
ଗାଙ୍ଗେୟ ବୋଇଲେ ଯେ ଏତେ କଥା ଥାଇ
ଦ୍ୱିଜ ହେଲେ ଦାନ ଦେବ ହେ ନରସାଇଁ
ଋଜୁ ସତ୍ୟବାଦୀ ହ୍ରୀମନ୍ତ ଆନୃଶଂସ୍ୟ
ଗୁଣବନ୍ତଙ୍କୁ ଦାନ ଦେବଟି ବିଶେଷ ।
ଏ ବିଷୟେ ପୃଥ୍ୱୀ କାଶ୍ୟପ ମାର୍କଣ୍ଡେୟ
ଅଗ୍ନିଙ୍କର ସମ୍ବାଦ ଧର୍ମଙ୍କ ତନୟ ।
କହିବା ତୁମ୍ଭ ଆଗେ ଶୁଣିଲେ ସତ୍ୱରେ
ସଂଶୟଛେତ୍ତା ହେବ ତୁମ୍ଭେ ମହାବୀରେ ।
ପୃଥିବୀ ବୋଇଲେ ହେ ବେଦ ଯେ ଜାଣଇ
ପାପ କଲେ ତାକୁ ସେ ବାଧି ନ ପାରଇ ।
କାଶ୍ୟପ ବୋଇଲେ ହେ ଜାଣୁ ସବୁ ବେଦ
ସବୁ ଶାସ୍ତ୍ର ବଖାଣ କରୁ ବହି ମୋଦ ।
ଦ୍ୱିଜ ଯେବେ ନିଜ ବୃତ୍ତିରୁ ଆନ ବୃତ୍ତି
ଆଚରେ ତରି ନ ପାରେ ହେ ଜାଣ ଛିତି ।
ଅଗ୍ନି ବୋଇଲେ ଅହେ ପର କୀର୍ତ୍ତି-ଶ୍ରେଣୀ
ଲୁଣ୍ଠଇ ନିଜ କୀର୍ତ୍ତି ହୋଇଲେ ବଖାଣି ।
ନିଜର ଏ କଥାଟି ନୁହେ ଜାଣ ଧର୍ମ
ଏହା ସକାଶୁଁ ଜାତ ହୁଅଇ ଅଧର୍ମ ।
ମାର୍କଣ୍ଡେୟ ବୋଇଲେ ଶତ ଅଶ୍ୱମେଧ
ସତ୍ୟ ତୁଲେ ସରି ନୁହଇ କର ବୋଧ ।
ଏ ପ୍ରକାଶରୁ ଜାଣ ଦ୍ୱିଜ ଯେ ହୋଇବ
ସବୁ ଶାସ୍ତ୍ର ଜାଣି ସତ୍ୟକୁ ଆଚରିବ ।
ଏହିରୂପେ ସେ ଋଷିଜଣ କଥାବାର୍ତ୍ତା
ହୋଇଛନ୍ତି ଜାଣ ପାଣ୍ଡବ ଧର୍ମବେତ୍ତା ।
ଯୁଧିଷ୍ଠିର ବୋଇଲେ ବ୍ରତ କରିଥିବ
ଶ୍ରାଦ୍ଧ ବ୍ରାହ୍ମଣକୁ ଯେ ବ୍ରାହ୍ମଣ ଲୋଡ଼ିବ ।
ତେବେ କି କରିବ ସେ କହ ପିତାମହ
ଶୁଣିବାକୁ ମୋହର ବଳଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ବଇଦିକ ଦ୍ୱିଜ
ଶ୍ରାଦ୍ଧଦ୍ୱିଜ ବୋଇଲେ ଆହେ ମହାରାଜ ।
ତାହାର ସବୁ ବ୍ରତ ନାଶକୁ ଭଜଇ
ମୋ କଥାରୁ ଜାଣ ପାଣ୍ଡବ ନରସାଇଁ ।
ଯୁଧିଷ୍ଠିର ବୋଇଲେ କହିଲ ତ ଧର୍ମ
ଅନେକ ମତରେ ହେ ରଥୀଙ୍କ ଉତ୍ତମ ।
ଏଥିରେ କେଉଁ ଧର୍ମ କାରଣ ଅଟଇ
ଏହା ଥରେ କହିବାହେଉ ତ ବତାଇ ।
ଭୀଷ୍ମ ବୋଇଲେ ଆହେ ଆନୃଶଂସ୍ୟ ଦମ
ଅକ୍ରୋଧ ଆର୍ଜବ ଅହିଂସା ସତ୍ୟ ଶମ ।
ଏହାକୁ କଲେ ଦ୍ୱିଜ ଧାର୍ମିକ ବୋଲନ୍ତି
ଏଥିରୁ ଆନ ହେଲେ ନରକେ ପଡ଼ନ୍ତି ।
ବୈଶ୍ୱଦେବ କରି ଯେ ବ୍ରହ୍ମସ୍ୱ ଭିକ୍ଷା
ନ ଦିଏ ତାହାରଟି ନର୍କେ ହୋଏ ରକ୍ଷା ।
ଯୁଧିଷ୍ଠିର ବୋଇଲେ ବ୍ରହ୍ମଚର୍ଯ୍ୟ ଶୌଚ
ଏଥିରୁ କେଉଁ କଥା ଅଟେ କହ ଉଚ ।
ଭୀଷ୍ମ ବୋଇଲେ ଆହେ ମଦ୍ୟ ମାଂସ ଦୁଇ
ଛାଡ଼ିବାର ବ୍ରହ୍ମଚର୍ଯ୍ୟକୁ ବଡ଼ କହି ।
ଶାନ୍ତି ଯାହାର ଅଛି, ଅଛି ତା'ର ଶୁଦ୍ଧି
ବୋଲିକରି ଜାଣ ହେ ନୃପ ଗୁଣନିଧି ।
ଯୁଧିଷ୍ଠିର ବୋଇଲେ ଧର୍ମ ଅର୍ଥ କାମ
କେଉଁକାଳେ କାହାକୁ କରିବ ବଖାଣ

ଭୀଷ୍ମ ବୋଇଲେ ଆହେ ଆସକତ ନୋହି
ପ୍ରାତୁଁ ଅର୍ଥଚିନ୍ତା କରିବ ନରସାଇଁ ।
ମଧ୍ୟାହ୍ନକାଳେ ଧର୍ମଚିନ୍ତାକୁ କରିବ
ପଛେ କାମକଥାରେ ଆସକତ ହେବ ।
ଗୁରୁଙ୍କଠାରୁ ମିଥ୍ୟା ରାଜାଠାରେ ଖଳ
କହିଲେ ବ୍ରହ୍ମହତ୍ୟା ଅର୍ଜେ ଲୋକ ମଞ୍ଜ ।
ଅଗ୍ନି ଦେବ ଦ୍ୱିଜ ତିନିଙ୍କି ଛାଡ଼ଇ
ବ୍ରହ୍ମହତ୍ୟା ପାପ ଯେ ଅରଜ ଆଣଇଁ ।
ଯୁଧିଷ୍ଠିର ବୋଇଲେ ସାଧୁ କେଉଁ ଜନ
କେଉଁ ଜନମାନଙ୍କୁ ଦେବଟି ଭୋଜନ ।
ଭୀଷ୍ମ ବୋଇଲେ ଆହେ ଅକ୍ରୋଧନ ସତ୍ୟ
ଧର୍ମପର ଦ୍ୱିଜଟି ସାଧୁ ପାଣ୍ଡୁ ପୁତ୍ର ।
ଏହା ବାହାରେ ସ୍ୱୀୟ କରମ ନିରତ
ସୁବିଦ୍ୟାବନ୍ତ ସତ୍ୟବାଦୀ ଲଜ୍ଜାବନ୍ତ ।
ଜିତେନ୍ଦ୍ରିୟ ଅଲୁବ୍ଧ ଦ୍ୱିଜେ ଦେଲେ ଫଳ
ବଡ଼ ହୁଅଇ ହେ ପାଣ୍ଡବ- ନୃପବାଳ ।
ଋକବେଦ-ଜ୍ଞାତ ଦ୍ୱିଜେ ଯେ ଦିଏ ଦାନ ।
କୁଳକୁ ବଢ଼ାଏଟି ଜାଣ ସେହି ଜନ ।
ଗୁଣବନ୍ତ ଦ୍ୱିଜକୁ ଡ଼କାଇ ଆଣାଇ
ପୂଜିବ ଧର୍ମେ ଯାର ବୁଦ୍ଧି ଥିବ ରହି ।
ଏଠାରେ ବହୁ ପ୍ରଶ୍ନ ହେଲା ଆସି ଶେଷ
କହଇ କୃଷ୍ଣସିଂହ ନରକୁଳ-ଈଶ ।

---*---

## ସ୍ୱର୍ଗ ନରକ ଗମନ

ଯୁଧିଷ୍ଠିର ବୋଇଲେ ଦୈବ ପିତୃକର୍ମେ
କି ଦେଲେ କିସ ଫଳ ଲେଖାହୋଏ ଧର୍ମେ
କେଉଁକାଳେ ଏ ଦୁଇ କର୍ମକୁ କରିବ
ଏହା ମଧ୍ୟ ମୋତେ ହେ କହିବା ହୋଇ
ଭୀଷ୍ମ ବୋଇଲେ ହେ ପୂର୍ବାହ୍ନେ ଦେବକର୍ମ
ଅପରାହ୍ନେ ଲୋକେ କରିବ ପିତୃକର୍ମ ।
ମଧ୍ୟାହ୍ନରେ ଅତିଥିମାନଙ୍କୁ ପୂଜିବ
ତେବେଟି ଲୋକ ମୁକ୍ତ ଜୀବ ବୋଲାଇବ
ପରୋଚ୍ଛିଷ୍ଟ କଳପୂର୍ବ ପରିଭୁକତ
ବାଳ ପୋକପକା ଯେ କୁକୁର ଭକ୍ଷିତ ।
ନ ଭୁଞ୍ଜି ଛୁଙ୍କି ଦେବ ଅନ୍ନେ ନରଗ୍ରାସ
ନ କରିବ ତାହାଟି ପାଆନ୍ତି ରାକ୍ଷସ ।

ସୋମବିକ୍ରୟୀ କୁଷ୍ଠୀ ନପୁଂସ ନର୍ତ୍ତକ
ଅପସ୍ମାରୀ ଅନ୍ଧ ଯେ ଚୌର ଚିକିତ୍ସକ ।
ଅଗ୍ନିସେବା ବିହୀନ ଶୂଦ୍ର ଅଧ୍ୟାପକ
ଯୋଧକ ଶୂଦ୍ର ହୋତୃ କଥକ ଗାୟକ ।
ବେଶ୍ୟାପତି ବେଦବିକ୍ରୟୀ ସନ୍ଧ୍ୟାହୀନ
ଅପରିଚିତ ଋଣକାରୀ ଯେ ବ୍ରାହ୍ମଣ ।
ଏହାଙ୍କୁ ଆଣି ଶ୍ରାଦ୍ଧ ବିପ୍ର ଯେ କରଇ
ଇହ ପର ଦୁଇରେ ଅଧର୍ମ ଲଭଇ ।
ସାବିତ୍ରୀ ଜପକାରୀ କ୍ରିୟାବନ୍ତ ବ୍ରତୀ
ଅହିଂସକ ଅତିଥିଜ୍ଞାତା ଅଗ୍ନିହୋତ୍ରୀ ।
ଏହାଙ୍କୁ ଶ୍ରାଦ୍ଧରେ ଭୋଜନ କରାଇଲେ
ସ୍ୱର୍ଗରେ ପିତୃଙ୍କୁ ପୂଜନ୍ତି ଦେବେ ଭଲେ ।
ଅବ୍ରତୀ ଚୌର ପିଲବିକା ଦ୍ୱିଜ ସୋମ-
ପାୟୀ ହେଲେ ନ ତରେ ଜାଣ ନରୋତ୍ତମ ।
ଋଷିକର୍ମେ ଅରଜ ଅତିଥିଙ୍କ ପୂଜା
ଯେଉଁ ଲୋକ କରେ ସେ ସ୍ୱର୍ଗେ ପାଏ ପୂଜା
ଦଇବ ପିତୃକର୍ମେ ପୁଣ୍ୟାହବାଚନ
କରିବ ଆଦ୍ୟେ ସ୍ଥାପି ପ୍ରଣବ ବ୍ରାହ୍ମଣ ।
କ୍ଷତ୍ରିୟ ପ୍ରଣବକୁ ବରଜନ କରି
ପୁଣ୍ୟାହବାଚନ କରିବ ଦଣ୍ଡଧାରୀ ।
ତିନିବରନ ଜାତକର୍ମ ଆଦି କର୍ମ
କରିବା ଲେଖିଛି ଶାସ୍ତ୍ର ହେ ନରୋତ୍ତମ ।
ମୁଞ୍ଜ ମୌର୍ବୀ ବଲ୍ୱଜ କ୍ରମେ ତିନି ବର୍ଣ୍ଣ
ମେଖଳ କରିବ ବ୍ରତରେ ସେ ଉତ୍ତମ ।
ଯୁଧିଷ୍ଠି ବୋଇଲେ କାହାକୁ ଦେଲେ ଫଳ
ହୁଅଇ ତାହା କହ ଶାନ୍ତନୁଙ୍କ ବାଳ ।
ଭୀଷ୍ମ ବୋଇଲେ ହେ ଦରିଦ୍ର ବ୍ରାହ୍ମଣକୁ
ଦେଲେ ବଡ଼ ଧରମ କି ପୁଚ୍ଛ ଆମ୍ଭଙ୍କୁ ।
ନିଜ ବୃତ୍ତେ ଥାଇ ଯେ ଦ୍ୱିଜ ହେବ କୃଶ
ତାକୁ ମଧ୍ୟ ଦେବ ହେ ନରକୁଳ ଈଶ ।
ଯାହା କରିଲେ ଭୋଗ ହୁଅଇ ନରକ
କହିବା ସେ କଥା ହେ ପାଣ୍ଡବ ନାୟକ ।
କେଶ କ୍ଷୀର ଶତ୍ରୁଙ୍କର ଯେ ବିକ୍ରୟକ
ପ୍ରାପତ ସେତୁ ଗୃହମାନଙ୍କ ଭଞ୍ଜକ ।
ଅକୃତଜ୍ଞ ପରବୃତ୍ତି ଉପଜୀବକ
ଅନାଥା ବାଳା ବୃଦ୍ଧ ଧାତା ସ୍ତ୍ରୀ ବଞ୍ଚକ ।

ଗର୍ଯ୍ୟା-ଅଗ୍ନି ଭୃତ୍ୟ ଅତିଥି-ତ୍ୟାଗକାରୀ
ମିଥ୍ୟାବାଦୀ ପରସ୍ତ୍ରୀଗାମୀ କାଣ୍ଡକାରୀ ।
ବେଦବହସ୍କୀ ବେଦଦୂଷକ ସୂଚକ
ଉପାଧ୍ୟାୟ-ବର୍ଜକ ମାର୍ଗ ନିରୋଧକ ।
ବେଦବିରୋଧୀ ପାଷାଣ୍ଡ ସର୍ବ ବଞ୍ଚକ
ବିଷମବ୍ୟବହାର ପଶୁଙ୍କ ବନ୍ଧକ ।
ବୃତ୍ତି ଅନୁରାଗ ଦୁହ୍ୟଙ୍କର ଛେଦନ୍ତ
ପରଦ୍ରବ୍ୟାପହାରୀ ଲୋକଙ୍କ ହିଂସକ ।
ଅରକ୍ଷକ ନୃପତି ଅଧମ ଅଦାତା
ବେଦଲେଖକ ଚରସଙ୍ଗମ ତ୍ୟକତା ।
ବୃଷଭ ନାସିକାଭେଦକ ପ୍ରାଜ୍ଞ କ୍ଷାନ୍ତ
ଏମାନଙ୍କୁ ନରକ ହୁଅଇ ପ୍ରାପତ ।
ସ୍ୱର୍ଗଲୋକଙ୍କର ବସିବାର ଧରମ-
ମାନଙ୍କୁ ଶୁଣ ହେ ପାଣ୍ଡବ-ନରୋତ୍ତମ ।
ମଙ୍ଗଳାଚାରଯୁକ୍ତ ଧୀର କ୍ଷମାବନ୍ତ
ପରଦାର ଯେ ମଦ୍ୟ ମାଂସ ବିନିବୃତ୍ତ ।
ଆଶ୍ରମ ଗୃହ-ଦେଶ-ନରକ-କାରକ
ବସନ-ଆଭରଣ-ଅନାଦ୍ଧ-ନାୟକ ।
ସର୍ବହିଂସା ନିବୃତ୍ତ ସହସ୍ର ରକ୍ଷକ
ଜିତେନ୍ଦ୍ରିୟ ଜନନୀ-ପିତାଙ୍କ ସେବକ ।
ଭ୍ରାତୃସ୍ନେହୀ ସୁରସ ରାଜ ଧାନ୍ୟଦାତା
ସ୍ୱର୍ଣ୍ଣ-ଗାଈ-ଯାନ-ବାହନ-ବସ୍ତ୍ରଦାତା ।
ବଳବନ୍ତ ଆଢ୍ୟ ଗୃହ ଭୂମିର ଦାତା
ସର୍ବଭୂତାଶ୍ରିର ଆରାମ କୂପକର୍ତ୍ତା ।
ଏମାନ ମଲେ ସ୍ୱର୍ଗେ ପାନ୍ତି ପୂଜା ଯାଇ
ଏ କଥାରେ ରାଜନ ସନ୍ଦେହ ତ ନାହିଁ ।
ହେଲା ସ୍ୱର୍ଗ ନରକ ଯିବା ସମାପତ
କହଇ କୃଷ୍ଣସିଂହ ଧରାକୋଟ ପତି ।

—*—

## ବ୍ରହ୍ମ ବଧ

ଯୁଧିଷ୍ଠିର ବୋଇଲେ ହିଂସା ନ କରିବ
ବ୍ରହ୍ମହତ୍ୟା କରୁପେ ନର ଅରଜିବ ।
ଏହା ମୋହର ଆଗେ କହ ପିତାମହ
ଶୁଣିଲେ ମୁଁ ଛାଡ଼ିବ ହୃଦୟରୁ ମୋହ ।
ଭୀଷ୍ମ ବୋଇଲେ ହେ ଏ କଥା ମୋତେ ବ୍ୟାସ
ଯାହା କହିଅଛନ୍ତି ଶୁଣ ତା ନରେଶ ।
ବ୍ରାହ୍ମଣଙ୍କୁ ଭିକ୍ଷାଦେବାପାଇଁ ଡାକିବ
ନ ଦେଇ ତାଙ୍କୁ ଯେବେ ଦ୍ୱାରୁ ଘଉଡ଼ିବ ।
ତେବେ ତାହାର ଜାଣ ବ୍ରହ୍ମହତ୍ୟା ହୋଏ
ଏ କଥାରେ ସନ୍ଦେହ କିଛି ନାହିଁ ରାୟେ ।
ଗାଈ ପାଣିକି ପିଉଥିବ ଅଡ଼ାଇଲେ
ସହସ୍ର ବ୍ରହ୍ମହତ୍ୟା ଫଳ ହୋଏ ଭଲେ ।
ବେଦ ଶାସ୍ତ୍ର ଗ୍ରନ୍ଥେ ଦୂଷିତ ବୁଦ୍ଧି ଯାର
ବ୍ରହ୍ମ-ବଧ ଦୋଷ ଅଲଭ୍ୟେ ହୋଏ ତାର ।
ଅପରୂପ ବରକୁ ନ ଦିଏ ଯେ କନ୍ୟା ।
ବ୍ରହ୍ମବଧ ଦୋଷ ପାଏ ସେ ମହାମନା ।
ବ୍ରାହ୍ମଣଙ୍କ ମରମଭେଦୀ ଯାର ବାଣୀ
ବ୍ରହ୍ମହତ୍ୟାକାରୀରେ ତାହାକୁଁ ଗଣି ।
ଅନ୍ଧ ଶ୍ରେଷ୍ଠ ଜଡ଼ ପଦାର୍ଥ ଯେତୁ ଖାଏ
ବସିଲଠାରେ ରାୟେ ବ୍ରହ୍ମହତ୍ୟା ପାଏ ।
ଘର ଅରଣ୍ୟ ଗ୍ରାମ ପୁରରେ ଯେ ନିଆଁ
ଲଗାଏ, ତା'ର ଦେହେ ବ୍ରହ୍ମହତ୍ୟା ଥୁଆ ।
ବ୍ରହ୍ମବଧ ବର୍ଣ୍ଣନା ଏଥେ ସମାପତ
ହେଲା କହଇ କୃଷ୍ଣସିଂହ ନରପତି ।

—*—

## ତୀର୍ଥଧର୍ମ

ଯୁଧିଷ୍ଠିର ବୋଇଲେ ପୁଣ୍ୟତୀର୍ଥ କଥା
ଯା ଜାଣିଛ ତା ମୋତେ କହ ମହାରଥୀ ।
ଭୀଷ୍ମ ବୋଇଲେ ହେ ଅଙ୍ଗିରା ତୀର୍ଥ ଧର୍ମ
ଯା କହିଛନ୍ତି ତାହା ଶୁଣ ନରୋତ୍ତମ ।
ଗୌତମ ଅଙ୍ଗିରା ଋଷିଙ୍କ ପାଶେ ଯାଇ
ତୀର୍ଥକଥା ପୁଚ୍ଛିଲେ ମନେ ଶ୍ରଦ୍ଧା ବହି ।
ଅଙ୍ଗିରା ବୋଇଲେ ହେ ଚନ୍ଦ୍ରଭାଗାଙ୍କରେ
ଯେ ସ୍ନାନ କରଇ ସେ ନ ପଡ଼େ ନର୍କରେ ।
ପୁଷ୍କର ପ୍ରଭାସରେ ବୁଡ଼ାଏ ଯେ ମଥା
ଇନ୍ଦ୍ର ପୂଜନ୍ତି ତାଙ୍କୁ ଛାଡ଼ି ହୃଦୁଁ ବ୍ୟଥା ।
କାଶ୍ମୀରଦେଶ ନଦୀ ନଦେ ସ୍ନାନ କଲେ
ସମସ୍ତ ପାତକରୁ ତରିଯାଏ ଭଲେ ।
କ୍ଲେଶଶଯୁ ହିରଣ୍ୟବିନ୍ଦୁରେ ନରେଶ
ସ୍ନାନ କଲେ କରଇ ପାତକକୁ ନାଶ ।

ଗନ୍ଧମାଦନଙ୍କ ସମୀପେ ଇନ୍ଦ୍ର ବାପୀ
ତହିଁରେ ସ୍ନାନ କଲେ ହୁଅଇ ନିଷ୍ପାପୀ ।
କୁରଙ୍ଗରେ ଯେ କରତୋୟା ନଦୀ ଛନ୍ତି
ଅଶ୍ୱମେଧ ଫଳ ସେ ନରଙ୍କୁ ଦିଅନ୍ତି ।
ଗଙ୍ଗାଦ୍ୱାର କୁଶାବର୍ତ୍ତ କନଖଳ
ନୀଳପର୍ବତ ଯେ ବିଲ୍ୱକଙ୍କ ତଳ ।
ଯା ଦେହଯାକରେ ଲାଗିଛୁ ନରଗଣ
ପୁଣ୍ୟବନ୍ତଙ୍କରେ ଯେ ଶ୍ରେଷ୍ଠ ବୋଲି ଜାଣ ।
ଭଗୀରଥି ଗଙ୍ଗାରେ ସ୍ନାନ କଲକ୍ଷଣି
ଦେଖଇ ନଭ ବେଦନେକେ ସୁରଶ୍ରେଣୀ ।
ସପ୍ତଗଙ୍ଗା ତ୍ରିଗଙ୍ଗା ଚନ୍ଦ୍ର ମାର୍ଗଙ୍କରେ
ସ୍ନାନ କଲେ ଅମୃତ ପିଅଇ ମୁଖରେ ।
ମହାଶ୍ରମ ମହାହ୍ରଦରେ ସ୍ନାନ କଲେ
ମାସକରେ ସିଦ୍ଧି ଲଭଇ ଲୋକ ଭଲେ ।
କନ୍ୟାକୂପ ବଳାକା ଏଥେଁ କଲେ ସ୍ନାନ
ଦେବପୁରେ ହୋଏଟି କୀରତି ମଣ୍ଡନ ।
ଦେବିକା ସୁନ୍ଦରିକା ହ୍ରଦେ ସ୍ନାନ କଲେ
କାମଳ ମୂରତିକ ଜଣିପାରେ ଭଲେ ।
ମଙ୍ଗଳବାରରେ ମହାଗଙ୍ଗାରେ ଯା ମାଥ
ବୁଡ଼ିଛୁ ଜାଣ ସ୍ୱର୍ଗେ ଅର୍ଜେ ପୁରୁଷାର୍ଥ ।
ବୈମାଣିକ କର୍ଣ୍ଣିକ ଆଶ୍ରମେ ଯାଇ
ତୀର୍ଥ ଅଛୁ ତହିଁରେ ସ୍ନାନ ଯେ କରଇ ।
ଅପସରକୁଳକୁ ନିତ ନିଜ ସ୍ଥାନ
ଜାଣଇ ରତି ଯୁଦ୍ଧେ ପୁଷ୍ପଧନୁ-ହାତ ।
ବିପାଶା କାଳକାରେ ସ୍ନାନ କରି ତିନ-
ଦିନ ରହିଲେଟି ହୁଅଇ ପୁଣ୍ୟସ୍ଥାନୀ ।
କୃତ୍ତିକା ଆଶ୍ରମରେ ସ୍ନାନ କରି ପିତୃ-
ଗଣେଶ ପୂଜା କଲେ ପୂଜନ୍ତି ଦେବଭର୍ତ୍ତୃ ।
ମହାହ୍ରଦଙ୍କରେ ଯେ ସ୍ନାନ କରେ ତିନ—
ଦିନ ଉପବାସରେ ଦେଖେ ଇନ୍ଦ୍ରସ୍ଥାନ ।
ଦେବଦାରୁ ବନରେ ସାତଦିନ ସ୍ନାନ
କଲେ ଦେବଲୋକରେ ବସଇଟି ଜାଣ ।
କୁଶସ୍ତମ୍ଭ ଶରସ୍ତମ୍ଭ ଯେ ଦ୍ରୋଣଶର୍ମ—
ପଦେ ସ୍ନାନ କରିଲେ ପ୍ରକାଶଇ ଧର୍ମ ।
ଚିତ୍ରକୂଟ ଜନସ୍ଥାନରେ ମନ୍ଦାକିନୀ
ସ୍ନାନକଲେ ହୁଅଇ ରାଜ ଲକ୍ଷ୍ମୀ-ସ୍ୱାମୀ ।
ଶ୍ୟାମାଶ୍ରମେ ପକ୍ଷେ ରହି ଯେ କରେ ସ୍ନାନ
ଅନ୍ତର୍ଦ୍ଧାନ ଗତିକ ଜାଣଇ ସେ ଜାଣ ।
କଉଶିକୀ ନଦୀରେ ସ୍ନାନ ଯେ କରଇ
ଗନ୍ଧର୍ବଲୋକରେ ସେ ନିର୍ଭୟେ ହସଇ ।
ପବନ ଗନ୍ଧତାରକରେ ନିରାହାର—
ହୋଇ ମାସେ ସ୍ନାନ କରିଲେ ତରେ ନର ।
ଏହା ବାହାରେ ଅନ୍ତର୍ଦ୍ଧାନ ଫଳ ପାଏ
ଦେଖି ନ ପାରନ୍ତି ଲୋକେ ତା'ର କାୟେ ।
ମାତଙ୍ଗବାପୀ ନିଇମିଷେ ଯେ ବୁଡ଼ନ୍ତି
ପୁରୁଷମେଧ ଫଳ ଅଲଭ୍ୟେ ସେ ପାନ୍ତି ।
ଗଙ୍ଗାହ୍ରଦ ଉତ୍ପଳାବନ ତୀର୍ଥଙ୍କରେ
ଅଶ୍ୱମେଧ ଫଳ ହୁଅଇ ସ୍ନାନ କଲେ ।
କାଳଞ୍ଜର ପର୍ବତେ ଗଙ୍ଗା-ଯମୁନାଙ୍କ
ତୀର୍ଥ ଅଛୁ ହରି ସେ ପାରନ୍ତି ପାତକ ।
ଷଷ୍ଟିହ୍ରଦରେ ସ୍ନାନ କଲେ ଅନ୍ନଦାନ—
ଫଳ ହୁଅଇ ଆହେ ଗଉତମ ଘେନ ।
ପ୍ରୟାଗ ନାମେ ଯେଉଁ ତୀର୍ଥ ରହିଛନ୍ତି
ତିନକୋଟି ଦଶସହସ୍ର ତୀର୍ଥ ଯାନ୍ତି ।
ମାଘ-ପଉର୍ଣ୍ଣମୀ ଦିନ ହେ ନରୋତ୍ତମ
ତହିଁ ସ୍ନାନ କଲେ ହୁଅଇ ପୂର୍ଣ୍ଣକାମ ।
ମରୁଦ୍ଗଣ ବୈବସ୍ୱତ ତୀର୍ଥେ ସ୍ନାନ
କଲେ ପାତକରୁ ତରଇ ପାପୀଜନ ।
ବ୍ରାହ୍ମ-ସରେ ସ୍ନାନ କରିଲେ ସୋମଲୋକ
ଅଲଭ୍ୟରେ ଯାଇ ଲଭଇ ନରଲୋକ ।
ଉତ୍ପାଦକ ଅଷ୍ଟବକ୍ର ତୀର୍ଥରେ ଶୁଦ୍ଧ
ଫଳ ପାଏ ସ୍ନାନରେ ପୂଜନ୍ତି ବିବୁଧ ।
ଅଶ୍ୱପୃଷ୍ଠରେ ଗୟା ନୀରନ୍ଧ୍ର ତୀର୍ଥେ
ସ୍ନାନ କଲେ ଲୋକ ନ ବସେ ଯମସାଥେ ।
ଅଗ୍ନିସରେ କଳବିଙ୍କରେ ସ୍ନାନ କଲେ
ଅଗ୍ନିକନ୍ୟାପୁରେ ବସଇ ଯାଇ ଭଲେ ।
କରବୀରପୁର ବିଶାଳା ଦେବହ୍ରଦ
ସ୍ନାନରେଟି ଲୋକ ଲଭଇ ବ୍ରହ୍ମପଦ ।
ପୁନରାବର୍ତ୍ତନନ୍ଦା ମହାନନ୍ଦେ ଯାଇ
ସ୍ନାନକଲେ ନନ୍ଦନ ବନରେ ବସଇ ।
କାର୍ତ୍ତିକ ପୌର୍ଣ୍ଣମୀରେ ଉର୍ବଶୀ ତୀର୍ଥରେ
ଲୋହିତ୍ୟନଦୀ ଜଳେ ଯେହୁ ସ୍ନାନକରେ ।

ପୁଣ୍ଡରିକ ଯାଗକୁ କରିବାର ଫଳ
ତାହାର ହୁଅଇ ହେ ଜାଣ ଦ୍ୱିଜ ବାଳ ।
ରାମହ୍ରଦ ବିପାଶା ନଦେ ସ୍ନାନ କଲେ
ନରହାରରେ ବାରିଦାନ ତରେ ଭଲେ ।
ମହାହ୍ରଦେ ସ୍ନାନ କଲେ ଯେଉଁ ନର
ହୋଇଅଛି ସେହି ଋଷିଙ୍କରେ ଈଶ୍ୱର ।
ବିନ୍ଧ୍ୟପର୍ବତରେ ତପସ୍ୟା ଯେ କରଇ
ମାସକ ଭିତରେ ସେ ସିଦ୍ଧିକି ଲଭଇ ।
ନର୍ମଦା ସୂର୍ପାରକୋଦକେ କଲେ ସ୍ନାନ
ରାଜସୂୟ ଫଳକୁ ଲଭଇଟି ଜନ ।
ଜମ୍ବୁ ମାର୍ଗରେ ସ୍ନାନକଲେ ସିଦ୍ଧି ହୋଏ
କୋକାମୁଖରେ ଗାଧୋଇଲେ ତରିଯାଏ ।
ବୃଣ୍ଡାଲକାଶ୍ରମରେ ଶାଗ ଖାଇ ନର
ରହିଲେ ବାବୁ ହୋଏ ଦଶୋଟି କନ୍ୟାର ।
ପ୍ରଭାସ-ତୀର୍ଥେ ଅମାବାସ୍ୟା ଦିନ ସ୍ନାନ
କଲେ ଦେବତା ଜାଣ ହୋଇଯାଏ ଜନ ।
ଉଜ୍ଜାନକ ଯେ ଆର୍ଷ୍ଟିଷେଣ ପିଙ୍ଗାଶ୍ରମ
ଦେଖିଲେ ପାପୀ ଲୋକ ହୁଏ ପୁଣ୍ୟୋତ୍ତମ ।
କୁଲ୍ୟାରେ ସ୍ନାନ କରି ଅଘମର୍ଷଣ
ଜପିଲେ ଅଶ୍ୱମେଧଫଳ ହୋଏ ଜାଣ ।
ପିଣ୍ଡାରକେ ଗାଧୋଇ ରାତିଏ ରହିଲେ
ଅଗ୍ନିଷ୍ଟୋମ ଫଳ ପ୍ରାପତ ହୋଏ ଭଲେ ।
ଧର୍ମାରଣ୍ୟରେ ବ୍ରହ୍ମ ସର ରହିଅଛି
ନରଙ୍କୁ ପୁଣ୍ଡରୀକ-ଫଳ ସେ ଦେଉଛି ।
ମଇନାକ ପର୍ବତେ ସ୍ନାନ କରି ସନ୍ଧ୍ୟା
କଲେ ସ୍ତ୍ରୀ ପୁରୁଷ ନୁହନ୍ତି କେବେ ବନ୍ଧ୍ୟା ।
ନନ୍ଦାକୁଣ୍ଡ ଉତ୍ତରମାନସ କାଳୋଦ
ନଦରେ ସ୍ନାନକଲେ ଛୁଟେ ପାପମଦ ।
ନନ୍ଦୀଶ୍ୱରଙ୍କର ମୂର୍ତ୍ତିକି ଯେ ଦେଖଇ
ନିଷ୍ପାପୀ ବୋଲି କରି ତାହାକୁଟି କହି ।
ସ୍ୱର୍ଗମାର୍ଗମାନଙ୍କେ ସ୍ନାନକରି ଦେହ
ଛାଡ଼ିଲେ ବ୍ରହ୍ମଲୋକେ ବସେ ବହି ସ୍ନେହ ।
କାମ କ୍ରୋଧ ଲୋଭ ତିନିଙ୍କି ଛାଡ଼ିଦେଇ
ତୀର୍ଥ କଲେ ସମସ୍ତ ଫଳକୁ ଲଭଇ ।
ନ ଯିବା ତୀର୍ଥ ଯାକୁ ସୁମରଣା କଲେ
ହୃଦୟରେ ଫଳ ପ୍ରାପତ ହୋଏ ଭଲେ ।

ଏ ଆଖ୍ୟାନ ଚରିତ ବସି ଯେ ଶୁଣଇ
ଉତ୍ତମକୁଳେ ଜନ୍ମ ଅଲଭ୍ୟେ ଲଭଇ ।
ଆଙ୍ଗିରସ ତୀର୍ଥଯାତ୍ରାର ସମାପତ
ହୋଇଲା କହଇ କୃଷ୍ଣସିଂହ ନରପତ ।

—※—

## ଗଙ୍ଗାମାହାତ୍ମ୍ୟ

ଏଥୁଅନ୍ତେ ଯେଉଁ ଚରିତ ଜନ୍ମେଜୟ
ନୃପତି, ଶୁଣ ଦେଇକରି ମନ ଲୟ ।
କ୍ଷମାରେ ବିରଞ୍ଚି, ବୁଦ୍ଧିରେ ବୃହସ୍ପତି
ବଳରେ ଶଚୀପତି ସମ ମହାମତି ।
ଅତ୍ୟନ୍ତ ଜାଣ ଯେଉଁ ଭୀଷ୍ମ ଅରଜୁନ—
କାଣ୍ଡେ ଶରଶଯ୍ୟାରେ ହୋଇଣ ମଗନ ।
କାଳ ହେଲେ ପ୍ରାଣ ଛାଡ଼ିବା ଇଚ୍ଛା ବହି
ରହିଥିଲେ ଧରମକଥାଯାକ କହି ।
ପାଣ୍ଡବକୁଳ ରାଜା ଯୁଧିଷ୍ଠିର ଆଗେ
ଏହିକାଳେ ଋଷିଏ ଆସିଲେ ସର୍ବେ ।
ଋଷିବର ବଶିଷ୍ଠ ପ୍ରମତି ସମ୍ବର୍ତ୍ତ
ଉଶନା ବୃହସ୍ପତି ଧୌମ୍ୟ ଯବକ୍ରୀତ ।
ଅକୃତବ୍ରଣ ଭୃଗୁ ପୁଲହ ପୁଲସ୍ତ୍ୟ
ବିଶ୍ୱାମିତ୍ର ଗୌତମ ସୁମନ୍ତ ଅଗସ୍ତ୍ୟ ।
ବ୍ୟାସ ଶୁକ ଚ୍ୟବନ କାଶ୍ୟପ ଅଙ୍ଗିର
ରୈଭ୍ୟ ଭରଦ୍ୱାଜ ସେ ଋତ୍ତୁ ସ୍ଥୂଳଶିର ।
ଦୁର୍ବାସା ଜମଦଗ୍ନି ନାରଦ ଗାଲବ
କଣ୍ୱ ମେଧାତିଥି ଯେ ମାର୍କଣ୍ଡେୟ ଧ୍ରୁବ ।
ଶତାନନ୍ଦ ସୁଧନ୍ୱା ପର୍ବତ ସ୍ଥୂଳାକ୍ଷ୍ୟ
ଏକତ ଦ୍ୱିଜ ତ୍ରିତ ନିତମ୍ବ ଶବଳାକ୍ଷ ।
ପରଶୁରାମ ଦମ କଚ କୃଶ ଋଷି ।
ଏହିମାନେ ତ ଯାଇଥିଲେ ପୂର୍ବୁ ଆସି ।
ପୁଣି ଭୀଷ୍ମଙ୍କଠାରେ କରି ସ୍ନେହମନ
ବସିଲେ ତାଙ୍କ ପାଶେ ପରୀକ୍ଷିତ ଜାଣ ।
ଭୀଷ୍ମ ସେହି ଋଷିମାନଙ୍କଠାରୁ କଥା
ଶୁଣି କରି ଛାଡ଼ିଦେଲେ ହୃଦୟ ବ୍ୟଥା ।
ଭୀଷ୍ମଙ୍କର ସନମତରେ ଋଷିମାନେ
ଅନ୍ତରଧାନ ହୋଇଗଲେ ସେହିସ୍ଥାନେ ।
ଋଷିମାନେ ଯିବା ଅନ୍ତରେ ଯୁଧିଷ୍ଠିର
ପଚାରିଲେ ଭୀଷ୍ମଙ୍କୁ ହୋଇ ସ୍ନେହଭର ।

କେଉଁ ପ୍ରଦେଶ କେଉଁ ନଦୀ ମଧ୍ୟବତ
ବଡ଼ ଅଟେ କହ ତ ଶାନ୍ତନୁଙ୍କ ସୁତ ।
ଭୀଷ୍ମ ବୋଇଲେ ଆହେ ଶୀଳାବୃତ୍ତି ସିଦ୍ଧ
ସମ୍ବାଦ ଏ ବିଷୟେ ହୋଇଅଛି ସିଦ୍ଧ ।
ପୂର୍ବରେ ସିଦ୍ଧ ଜଣେ ମହୀକି ବୁଲିଲେ
ଶୀଳାବୃତ୍ତି ଲୋକର ଘରକୁ ଆସିଲେ ।
ଶୀଳାବୃତ୍ତିଠାରୁ ଆଦର ଭାବ ପାଇ
ତା ଘରେ ସେ ରାତ୍ରିକ ରହି ସୁଖ ବହି ।
ଶୀଳାବୃତ୍ତି ସିଦ୍ଧଙ୍କୁ ତୁମ୍ଭେ ଯା ପୁଚ୍ଛିଲ
ତା ପୁଚ୍ଛିଲେ ହୃଦୟ କରି ସେ ଉତ୍ଫୁଲ୍ଲ ।
ସିଦ୍ଧ ବୋଇଲେ ଆହେ ଗଙ୍ଗା ଯହିଁ ଛନ୍ତି
ସେହି ଆଶ୍ରମ ଦେଶ ପ୍ରସିଦ୍ଧ ବୋଲନ୍ତି ।
ଗଙ୍ଗାକୁ ସେବା କଲା ପରି ଭିନ୍ନ ଲୋକ—
ଙ୍କରେ ପୁଣ୍ୟନାହି ହେ ଦ୍ୱିଜଙ୍କ ନାୟକ ।
ଗଙ୍ଗାଙ୍କ ଜଳ ଛୁଇଁ ଯେ କରଇ ସ୍ନାନ
ସେ ମଧ୍ୟ ପୁଣ୍ୟବନ୍ତେ ହୁଅଇ ପ୍ରଧାନ ।
ଅସ୍ଥି ଯେତେ ଦିନ ଗଙ୍ଗାରେ ରହିଥାଏ
ତେତିକ ସହସ୍ର ବରଷ ସ୍ୱର୍ଗ ହୋଏ ।
ଚନ୍ଦ୍ରସ୍ନାନଗତି ପରିଯେ ଗଙ୍ଗାସ୍ନାନ
ଦେଖ ଅଟଇ ଆହେ ଦ୍ୱିଜ ମନେ ଘେନ ।
ଗଙ୍ଗା ତୀରେ ମାସେ ରହିବା ପୁଣ୍ୟ ତୁଲେ
ଆନ ପୁଣ୍ୟ ଯୋଡି ନ ପାରଇଟି ଭଲେ ।
ଚଳକୁ ମୁଣ୍ଡ କରି ଗଙ୍ଗା ତୀରେ ଯାଇ
ଯେ ଜପ କରୁଛି ପବିତ୍ର ଅଟେ ସେହି ।
ତୁଳାର ଅଗ୍ନି ପରି ପାତକ କୁଳକୁ
ଗଙ୍ଗାଙ୍କରେ ସ୍ନାନ ଦିଏ ବିନାଶକୁ ।
ବ୍ରହ୍ମହତ୍ୟା ଗୋହତ୍ୟା ଆଦି ନାଶଯାଏ
ଏଥିରେ କହିବାକୁ ନାହିଁ କଥାଟିଏ ।
ପିତୃଙ୍କର ସ୍ୱାଧା ଦେବଙ୍କର ଅମୃତ
ପରିଯେ ଗଙ୍ଗାଜଳ ପ୍ରାଣୀଙ୍କର ହିତ ।
ଶ୍ରେୟକାମୀ ହୋଇଲେ ଗଙ୍ଗା ବିନା ଆନ
ସେବାରେ ନୋହେ ପୂର୍ଣ୍ଣ ଦ୍ୱିଜମନେ ଘେନ ।
ନଦୀମାନଙ୍କ ମଧ୍ୟେ ଗଙ୍ଗା ଅଟେ ବର
ଲୋକମାନଙ୍କ ପୁଣି ବ୍ରହ୍ମଲୋକ ସାର ।
ଗଙ୍ଗାମୃତ୍ତିକାକୁ ମସ୍ତକରେ ଘେନିଲେ
ସୂର୍ଯ୍ୟତେଜ ପରି ପ୍ରକାଶେ ତେଜ ଭଲେ ।

ଗଙ୍ଗାଙ୍କ ଲହରୀରେ ବାଜଣ ପବନ
ଲଗିଲେ ପବିତ୍ର କରଇ ଅପାବନ ।
ଗଙ୍ଗାଙ୍କୁ ନୟନରେ ଦେଖିଲେ ବିପତ୍ତି
ପ୍ରାଣୀମାନଙ୍କୁ କେବେ ବାଧି ନ ପାରନ୍ତି ।
ପିତୃ ଦେବତାଙ୍କୁ ଗଙ୍ଗାରେ ତରପଣ
କଲେ ଦ୍ୱିଜ ମୁକ୍ତ ହୁଅଇ ଦ୍ୱିଜରାଣ ।
ହାତ ଗୋଡ଼ ଥାଇ ଯେ ଗଙ୍ଗା ଯାଇନାହିଁ
ତହିଁ କ କାର୍ଯ୍ୟ ଅଛି ହେ ଦ୍ୱିଜ ଗୋସାଇଁ ।
ପୁଣି ଯିବାବେଳେ ଯେ ସ୍ମରେ ଗଙ୍ଗାଙ୍କୁ
ଦିଅନ୍ତି ଗଙ୍ଗା ତାକୁ ଉତ୍ତମ ଲୋକକୁ ।
ଗଙ୍ଗ ବିଯୋଗକୁ ପ୍ରତି ଜନମ ସୁତ
ବିଯୋଗ ହେଲେ ଦୁଃଖ ନ ବଢ଼ଇ ଶତ ।
ପୂର୍ଣ୍ଣଚନ୍ଦ୍ର ଦେଖିବା ପ୍ରାୟେ ଗଙ୍ଗାଙ୍କର
ଦରଶନ ଅଟଇ ଦ୍ୱିଜ ମନେକର ।
ପୁଣ୍ୟବନ୍ତ ହେବାରୁ ତିନ ଲୋକେ ଖ୍ୟାତି
ସମାନ ହୋଇଛି ହେ ଜାଣ ମହାମତି ।
ବିଶ୍ୱରୂପା ତ୍ରିପଥଗା ହିମାଦ୍ରି ସୁତା
ହର ଭାବସା ମଧୁପ୍ରବା ଋଷି ସୁତା ।
ବିଷ୍ଣୁପଦୀ ତ୍ରିଦିବମାତା ବିଶ୍ୱତୋୟା
ଦିବଷ୍ଟୁତା ଭୂଧର ମାତ ପ୍ରିୟତୋୟା ।
ଅମୃତା ବ୍ରହ୍ମକାନ୍ତା ପୁଣି ମଧୁମତୀ
ଶିଷ୍ଟା ଶ୍ରୀପ୍ରୟା ଗଙ୍ଗାଙ୍କ ନାମଟି କହନ୍ତି ।
ସହସ୍ରେ ମୁଖ ହେଲେ ଗଙ୍ଗା ଗୁଣଗଣ
ଅବା କେହି ପାରନ୍ତା ମୋହର ବଚନ ।
ଯେତେକ ଜାଣିଥିଲି କହିଲି ତେତେକ
ହୃଦୟେ କରି ଆହେ ଦ୍ୱିଜଙ୍କ ନାୟକ ।
ନକ୍ଷତ୍ର ନଦୀ ବାଲି କଳନା ହୋଇବ
ଗଙ୍ଗାଙ୍କର ଗୁଣ ଯେ କଳନା ନୋହିବ ।
ଏରୂପେ ଗଙ୍ଗାଙ୍କର ଗୁଣ ଖ୍ୟାତି କହି
ଗମିଲେ ସେହିଠାରୁ ଅନ୍ତର୍ଦ୍ଧାନ ହୋଇ ।
ଆହେ ଯୁଧିଷ୍ଠିର ରାଜନ ଏବେ ତୁମ୍ଭେ
ଗଙ୍ଗାଙ୍କୁ ସେବା କର ବୋଲୁଅଛୁ ଆମ୍ଭେ ।
ଏରୂପେ ଭୀଷ୍ମ ମୁଖୁ ଗଙ୍ଗା କଥା ଶୁଣି
ମହାହୃଷ୍ଟ ହେଲେ ପାଣ୍ଡବ ନରମଣି ।
ଗଙ୍ଗାଙ୍କର ଚରିତ ଶୁଣଇ ଯେ ନର
ହୁଅଇ ସେ ସମସ୍ତ ଦୁଃଖ ସିନ୍ଧୁ ପାର ।

## ମତଙ୍ଗ ଗର୍ଦ୍ଦଭ ସମ୍ବାଦ

ଯୁଧିଷ୍ଠିର ବୋଇଲେ କ୍ଷତ୍ରିୟ ବୈଶ୍ୟ ଶୂଦ୍ର
କି କରମ କରିଲେ ଅରଜନ୍ତି ଭଦ୍ର ।
ବ୍ରାହ୍ମଣ ହୁଅନ୍ତି କେ କହ ପିତାମହ
ଶୁଣିବାକୁ ମୋର ବଳଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ଚଣ୍ଡାଳଣୀ ଜନ୍ମ—
ପ୍ରାନ୍ତରେ ବ୍ରାହ୍ମଣ ହୁଅଇ ଜୀବ ଜାଣ ।
ଦ୍ୱିଜ ଜଣଙ୍କର ମତଙ୍ଗ ପୁତ୍ର ହେଲେ
ଦିନେ ସେ ଗଧ-ଯୋଚା ରଥକୁ ଚଢ଼ିଲେ ।
ସେ ଗଧର ନାକକୁ ବଜାଇଣ ବାଡ଼ି
ବୋଇଲେ ନିଅ ମୋ ରଥକୁ ବେଗେ ଭିଡ଼ି ।
ଗଧ ସେ ପାଞ୍ଚଣ ବାଡ଼ରେ ପାଡ଼ ଡକା
ବୋଇଲା ଆଗୋ ମାତ ମଲିଟି ମୁଁ ଏକା ।
ଗଧ-ମାତା ଶୁଣିଣ ବୋଇଲା ରେ ବାଳ
ନ କାନ୍ଦ ତୁମ୍ଭ ତୋତେ ମାରୁଛି ଚଣ୍ଡାଳ ।
ବ୍ରାହ୍ମଣ ହୋଇଥିଲେ ମର୍ମସ୍ଥାନେ ବାଡ଼ି
ପିଟିଣ ଛାଡ଼ନ୍ତା କି ଯାଅ ବୋଲି ଭିଡ଼ି ।
ଏହା ଶୁଣି ମାତଙ୍ଗ ରଥୁ ଓହ୍ଲାଇଲେ
ଗଧୁଣୀର ପାଶକୁ ଯାଇ ପଚାରିଲେ ।
କାହିଁ ପାଇଁ ମୋତେ ତୁ ବୋଇଲୁ ଚଣ୍ଡାଳ
ମୁହିଁ ତ ହୋଇଅଛି ଦ୍ୱିଜକୁଳ-ବାଳ
ଗଧୁଣୀ ବୋଇଲା ହେ ଭଣ୍ଡାରିକ ମାତ
ସୁରତ କରାଇ ତୁମ୍ଭଙ୍କୁ କଲା ଜାତ ।
ଏ ସକାଶୁଁ ବ୍ରହ୍ମଭାବ ତୁମ୍ଭ ଦେହେ ନାହିଁ
ନିଷ୍ଠୁରବୁଦ୍ଧି ଜାତ ନୁହନ୍ତା କପାଇଁ ।
ଗଧୁଣୀଠୁ ଶୁଣି ମତଙ୍ଗ ଏ ବଚନ
କ୍ଷଣେ ପରଯନ୍ତେ ହୋଇଣ ସେ ମଉନ ।
ପିତାଙ୍କ ସମୀପକୁ କହିବାକୁ ଗଲେ
ପିତାଙ୍କୁ ସେ ଗଧୁଣୀ ବଚନ କହିଲେ ।
ବୋଇଲେ ଆହେ ତାତ, ମାତ ତ ଭଣ୍ଡାରି
ଆଉଣ୍ଟିରେ ମୋତେ ଅଛନ୍ତି ଜାତ କରି ।
ମୁଁ ଆଉ ଘରେ ରହି କରିବିଟି କିସ
ଯାଉଛି ତପ କରି ଜାଣ ହେ ଦ୍ୱିଜେଶ ।
ଏରୂପେ ବାପାଙ୍କୁ କହି ସେ ଦ୍ୱିଜବେଟା
ତପ କରିଲେ ଘର କରି ଘୋର ଲଟା ।

ଇନ୍ଦ୍ର ତାହା ଦେଖି ମତଙ୍ଗବେଟା ପାଶେ
ଆସିକରି ବୋଇଲେ ମାଗ ବର ତୋଷେ ।
ମତଙ୍ଗ ବୋଇଲେ ମୁଁ ବ୍ରାହ୍ମଣ ହେବାକୁ
ତପ କରୁଅଛି ତା ଦିଅ ହେ ଆମ୍ଭକୁ ।
ଇନ୍ଦ୍ର ବୋଇଲେ ଆହେ ବ୍ରାହ୍ମଣ ହେବାର
ବଡ଼ କଷ୍ଟ ଅଟେ ମତଙ୍ଗ ମନେ କର ।
ଚଣ୍ଡାଳ-ଜନମ ତ ଅଛ ତୁମ୍ଭେ ପାଇ
ତୁମ୍ଭ ମାତା ଦୋଷେ, ବ୍ରାହ୍ମଣ ହେବ କେହି ।
ବୋଲୁଅଛି ମୁଁ ଆନ ବର ମୋତେ ମାଗ
ଏହି କଥାରୁ ଛାଡ଼ ଦେଇଣ ସବେଗ ।
ଇନ୍ଦ୍ରଙ୍କର ବଚନ ନ ଘେନି ମତଙ୍ଗ
କ୍ରୋଧରେ ନିଜ ଅଙ୍ଗ କରିଦେଇ ରଙ୍ଗ ।
ଏକା ଗୋଡ଼କରେ ହେ ଶଏଟି ବରଷ
ଛିଡ଼ା ହୋଇ ତପରେ ଦେଲେ ସେ ମାନସ ।
ଏହା ଦେଖିଣ ଇନ୍ଦ୍ର ପୁଣି ତାଙ୍କଠାକୁ
ଆସିକରି ବୋଇଲେ ଛାଡ଼ ତପସ୍ୟାକୁ ।
ସର୍ବଙ୍କ ଯୋନିଜନ୍ମ ଆଗ ପ୍ରାଣୀ ପାଏ
ପଛେ କେତେକାଳେ ଚଣ୍ଡାଳଜନ୍ମ ହୋଏ ।
ବହୁତ କାଳଯାଏ ଅଧର୍ମେ ଦଉଡ଼—
ଥିବାରୁ ଲୋକେ ତାଙ୍କୁ ବୋଲୁଥାନ୍ତି ହାଡ଼ି ।
ଏରୂପେ ଜନ୍ମ ବହି କଲେ ପାପ କର୍ମ
ଶୂଦ୍ର ଯୋନିରେ ହୁଅଇ ଯାଇ ଜନ୍ମ ।
ତିରିଶ ଯୁଗଯାଏ ଶୂଦ୍ର ପୁତ୍ର ହୋଇ
ଥରକୁଥର ଜନ୍ମ ହୁଏ ମୃତ୍ୟୁ ପାଇ ।
ଷାଠିଏ ଯୁଗଯାଏ ହୁଅଇ ସେ ବୈଶ୍ୟ
ଧନ ରହୁଥାଏ ବଣିଜେ ହୋଇ ବଶ ।
ବୈଶ୍ୟଜନ୍ମ ଶେଷରେ କ୍ଷତ୍ରିୟ ହୁଅଇ
ମହୀ ପାଇ ବସଇ ଛତ୍ରକୁ ଫୁଲାଇ ।
ସାରଣ ସତ୍ୟଯୁଗ କ୍ଷତ୍ରିୟ ଧର୍ମରେ
ଜନମ ହୋଇ ବଳରାମଙ୍କ ଗୋତ୍ରରେ ।
ବଳରାମଗୋତ୍ରୀ ଉତ୍ତରୁ ଯଜ୍ଞ୍ୟଜନ୍ମ
ପାଇକରି ପୁଣି ଶ୍ରୋତ୍ରୀୟ ହୋଏ ଜାଣ ।
ବ୍ରାହ୍ମଣ ଜନ୍ମ ଯେବେ ପୁଣ୍ୟ ପାରେ କରି
ଚଉରାଶି ଯୋନିଜନ୍ମରୁ ଯାଏ ତରି ।
ବ୍ରାହ୍ମଣ ହୋଇ ଯଦି କରଇ ଦୁଷ୍କୃତ
ହୀନକୀଟ ଯୋନିରେ ହୁଏ ଆସି ଜାତ ।

ଏହି ସକାଶରୁ ବ୍ରାହ୍ମଣ ହେବା ଛାଡ଼
ଆନ ବର ମାଗ ହେ ମାୟାରେ ନ ପଡ଼ ।
ଏହା କହି ମଘବା ଯାଆନ୍ତେ ସ୍ୱର୍ଗକୁ
ମତଙ୍ଗ ନ ଶୁଣିଣ ଇନ୍ଦ୍ରଙ୍କ କଥାକୁ ।
ମହତ ତପସ୍ୟାରେ କରିଣ ଲାଳସ
ସହସ୍ର ବରଷକୁ କରିଦେଲେ ଶେଷ ।
ଇନ୍ଦ୍ର ତା ନ ସହି ଆସିଲେ ତ୍ୱରା ହୋଇ
ଛିଡ଼ାହେଲେ ଆଗରେ ଗ୍ରୀବା ଟେକିଦେଇ ।
ମତଙ୍ଗ ଇନ୍ଦ୍ରଙ୍କର ଆସିବାର ଜାଣି
ବୋଇଲେ ପୂଚ୍ଛିବି ଯାହା କହ ସୁରମଣି ।
ମୁଁ ତ କଲି ସହସ୍ର ବର୍ଷ ଘୋର ତପ
କିମ୍ପା ଛାଡ଼ ନାହିଁ କହ ମୋ ଦେହପାପ ।
ଇନ୍ଦ୍ର ବୋଇଲେ ଆହେ ଶୂଦ୍ରବୀର୍ଯ୍ୟେ ଜାତ
ହେବାରୁ ପାପ ତପେ ହେଉନାହିଁ ହତ ।
ଇନ୍ଦ୍ରଙ୍କଠାରୁ ଏହା ଶୁଣି ଶୋକକରି
ଗୟା ତୀର୍ଥେ ଯାଇ ମାତଙ୍ଗ ତପସ୍ୱୀ ।
ଏକ ପାଦ କରିଅଙ୍ଗୁଷ୍ଠେ ଛିଡ଼ା ହେଲେ
ବରଷ ଶତ ପୂର୍ଣ୍ଣଯାଏ ତପ କଲେ ।
କୃଶ ହୋଇ ଯାଆନ୍ତେ ନ ପାରି ସମ୍ଭାଳି
ଦ୍ୱିଜପଣ ମତଙ୍ଗ ଯେ ପଡ଼ିଲେ ଢଳି ।
ଇନ୍ଦ୍ର ସେହି ସମୟେ ପୋଟାଳି ତାହାଙ୍କୁ
ବୋଇଲେ ଛାଡ଼ିଦିଅ ମତଙ୍ଗ ତପକୁ ।
ବ୍ରାହ୍ମଣ ହୋଇବାର ଏ ଜନ୍ମରେ ତୁମ୍ଭେ
କେବେହେଁ ନୁହଇ ହେ ଜାଣିଅଛୁଁ ଆମ୍ଭେ ।
ମତଙ୍ଗ ବୋଇଲେ ଆହେ ହେ ଦେବସିଂହ
ବ୍ରାହ୍ମଣ ନୋହିଲେ ମୁଁ ଛାଡ଼ିଦେବି ଦେହ ।
ଏହା କହି ବୋଇଲେ ଦୈବ ଯା କରିଛି
ତା ଭୋଗ ହେବ ମୁଁ କରିବି କିନା ଛି ଛି ।
ମାତା ମୋର ଶୂଦ୍ର ଘଇତା କରାଇଲା
ତପସ୍ୟା କଲେ ହେଁଲେ ସେ ଦୋଷ ନ ଗଲା
ଯେବେ ତୁମ୍ଭେ ବର ଦେବ ହେ ବଜ୍ରଧର
ଯାହା ମୁଁ ବୋଲିବି ତା ମୋର ପୂର୍ଣ୍ଣ କର ।
କାମରୂପୀ ହୋଇ ମୁଁ ସଞ୍ଚାର କରିବି
ବ୍ରାହ୍ମଣ କ୍ଷତ୍ରିୟରେ ପୂଜାକୁ ପାଇବି ।
ଏ ଜଗତ ଯାକରେ ମୋର କୀର୍ତ୍ତିଗୋଟି
ପୂରି ରହିବ ଆହେ ଏ ମୋର ମନଟି ।

ଇନ୍ଦ୍ର ବୋଇଲେ ଆହେ ଛନ୍ଦୋବେଦ ନାମ
ବହିଣ ତୁମ୍ଭେ ହେବ ଜଗତେ ଉତ୍ତମ ।
ଏରୂପେ ବର ଦେଇକରି ଶଚୀପତି
ସେଠାରେ ଲୁଚିଲେ ସେକ୍ଷଣି ମୂରତି ।
ଏହା କହି କହିଲେ ଶାନ୍ତନୁତନୟ
ବର ପାଇ ମତଙ୍ଗ ପାଇ ପୂଜାଚୟ ।
ଦେହଟିକ ଛାଡ଼ି ଉତ୍ତମସ୍ଥାନ ପାଇ
ବସିଲେ ହୃଦମଧ୍ୟୁଁ ଦୁଃଖକୁ ଛଡ଼ାଇ ।
ଆହେ ଯୁଧିଷ୍ଠିର ବ୍ରାହ୍ମଣ ହୋଇବାର ।
ଦୁର୍ଲ୍ଲଭ ଅଟେ ଏହା ଶୁଣିଲେକର୍ଣ୍ଣରେ ।
ମତଙ୍ଗ ଇନ୍ଦ୍ରଙ୍କ ସମ୍ବାଦ ହେଲା ଶେଷ
କହଇ କୃଷ୍ଣସିଂହ ନରକୁଳ ଈଶ ।

—※—

## ବୀତହବ୍ୟ ଉପାଖ୍ୟାନ

ଯୁଧିଷ୍ଠିର ବୋଇଲେ ବୀତହବ୍ୟ ନୃପ
କେଉଁ କର୍ମକୁ କରି ଛଡ଼ାଇଣ ପାପ ।
ବ୍ରାହ୍ମଣ ହେଲେ ଏହା କହ ମୋର ଆଗେ
ଶୁଣିବାକୁ ତାହା ମୁଁ ପୁଚ୍ଛୁଛି ସରାଗେ ।
ଭୀଷ୍ମ ବୋଇଲେ ଆହେ ବୈବସ୍ୱତଙ୍କର
ଶର୍ଯ୍ୟାତି ନାମ ବଂଶ ହୋଇଲେ କୁମର ।
ଶର୍ଯ୍ୟାତଙ୍କ ହେଲେ ହୈହୟ କାଳଜଙ୍ଘ
ପୁତ୍ର ହୋଇ ବଳରେ ନିନ୍ଦା କଲେ ସିଂହ ।
ହଇହୟଙ୍କର ଯେ ବୀତହବ୍ୟ ହେଲେ
ବୀତହବ୍ୟ ଶତ ପୁତ୍ରଙ୍କୁ ଜାତ କଲେ ।
କାଶୀଦେଶରେ ହେଲେ ହର୍ଯ୍ୟଶ୍ୱ ରାଜା
ସେ ଦେଶ ନରେ କଲେ ତାଙ୍କ ପାଦେ ପୂଜା
ହର୍ଯ୍ୟଶ୍ୱ ନୃପତିଙ୍କି ବୀତହବ୍ୟ ସୁତ—
ମାନେ ଯୁଦ୍ଧଦାଣ୍ଡରେ କରିଗଲେ ହତ ।
ହର୍ଯ୍ୟଶ୍ୱଙ୍କର ସୁଦେବ ଯମସ୍ୱତ
ଥିଲେ ସେ କାଶୀଦେଶେ ହେଲେ ମହୀକ୍ଷିତ ।
ବୀତହବ୍ୟ ପୁତ୍ର ତ ପୂର୍ବୁଁ ଜଣିଥିଲେ
ସୁଦେବଙ୍କୁ ମଧ୍ୟ ଯୁଦ୍ଧରେ ସେ ମାଇଲେ ।
ସୁଦେବ ଯମପୁର ଯାନ୍ତେ ଦିବୋଦାସ
ହେଲେ ସୁଦେବଙ୍କ ରାଜ୍ୟରେ ନରଈଶ ।
ବୀତହବ୍ୟ ପୁତ୍ରେ ଯେ ଦିବୋଦାସଠାକୁ
ଆସିଥିଲେ ହେ ପାଣ୍ଡବରାଜ ଯୁଝିବାକୁ ।

ଦିବୋଦାସ ନୃପତି ସେମାନଙ୍କ ତୁଲେ
ଧନୁ ଧରଣ ମିଶାମିଶି ଯୁଦ୍ଧ କଲେ ।
ଶଏ ଦିନ ଉତ୍ତାରେ ବଳ ହତ ଦେଖି
ଦିବୋଦାସ ରାଜା ହୋଇଣ ମହା ଦୁଃଖୀ ।
ଘର ଛାଡ଼ି ସେ ଭରଦ୍ୱାଜଙ୍କ ଆଶ୍ରମ
ଆଶ୍ରେ କଲେ ଜାଣ ପାଣ୍ଡବ ନରୋତ୍ତମ ।
ଭରଦ୍ୱାଜ ତାହାଙ୍କୁ ଆସନେ ବସାଇ
ବୋଇଲେ କିମ୍ପାଇ ଆସିଲ ନରସାଇଁ ।
ତାହା କହ ମୋହର ଆଗରେ ପ୍ରକାଶି
ମୋ ବୋଲେ ତର ତୁମ୍ଭେ ଦୁଃଖ-ଜଳରାଶି ।
ଦିବୋଦାସ ବୋଇଲେ ଯୁଦ୍ଧରେ ମୋ ବଂଶ
ବୀତହବ୍ୟ ରାଜେ ଯେ କରିଦେଲେ ନାଶ ।
ଭରଦ୍ୱାଜ ବୋଇଲେ ଛାଡ଼ ଏହି ଭୟ
ଯାଗ କରି କରିବି ତୁମ୍ଭ ପୁତ୍ରୋଦୟ ।
ଏବେ ତୁମ୍ଭଠାରୁ ଯେଉଁ ପୁତ୍ର ହେବ
ବୀତହବ୍ୟ ପୁତ୍ରଙ୍କ ପରାଣକୁ ନେବ ।
ଏରୂପେ ଭରଦ୍ୱାଜ ବଚନରେ କହି
ଯାଗ କଲେ ଦିବୋଦାସଙ୍କ ପୁତ୍ର ପାଇଁ ।
ଯାଗବଳେ ଦିବୋଦାସଙ୍କ ପ୍ରତର୍ଦ୍ଦନ ।
ହୋଇଲେ ଯୁଧିଷ୍ଠିର ଜାଣ ହେ ନନ୍ଦନ ।
ଧନୁର୍ବେଦକୁ ସେହୁ ସାଙ୍ଗୋପାଙ୍ଗ କରି
ଶିକ୍ଷାକଲେ ଅଳପକାଳେ ସେ ବୀରବର ।
ଭରଦ୍ୱାଜ ଋଷିଙ୍କ ଅନୁଜ୍ଞାରେ ରଥ
ଚଢ଼ି କରି ଦିନେ ସେ ହୋଇ ଧନୁ ହାତ ।
ବୀତହବ୍ୟଙ୍କର ପୁତ୍ରଙ୍କୁ ମାରିବାକୁ
ବାହାରିଲେ ହୃଦରେ ବହିଣ ରାଗକୁ ।
ଗଙ୍ଗାକୁ ପାର ହୋଇ ବୀତହବ୍ୟ ପୁର—
ପାଶେ ଯାଇ ମିଳିଲେ ପ୍ରତର୍ଦ୍ଦନ ବୀର ।
ପ୍ରତର୍ଦ୍ଦନଙ୍କ ଆସିବାର ଶୁଣିକରି
ଧାଇଁଲେ ବୀତହବ୍ୟ-ସୁତେ ଧନୁ ଧରି ।
ପ୍ରତର୍ଦ୍ଦନ ଓ ବୀତହବ୍ୟ ପୁତ୍ରଙ୍କର
ମହାଭୟଙ୍କର ଯେ ହୋଇଲା ସମର ।
ପ୍ରତର୍ଦ୍ଦନ-ଦେହକୁ ବୀତହବ୍ୟ ସୁତେ
ଜଳଧାରା ପରାଏ ବର୍ଷିଲେ ଶରତେ ।
ପ୍ରତର୍ଦ୍ଦନ ବଜ୍ର-ଅନଳ ପରି କାଣ୍ଡ
ବର୍ଷି ତାଙ୍କ କାଣ୍ଡକୁ କଲେ ଖଣ୍ଡ ଖଣ୍ଡ ।
ଏରୂପେ କରି ସାରି ବୀତହବ୍ୟ ମୁଣ୍ଡ
କାଟି ଗଡ଼ାଇଦେଲେ ଯୁଦ୍ଧ ଭୂମିଦାଣ୍ଡ ।
ସ୍ୱପୁତ୍ରମାନଙ୍କର ପଶ୍ଚିମ-ଅବସ୍ଥା
ଯୁଦ୍ଧରେ ଦେଖି ବୀତହବ୍ୟ ପାଇ ବ୍ୟଥା ।
ଭୃଗୁଋଷିଙ୍କ ଆଶ୍ରମକୁ ବୋଲି ଗଲେ
ଆହେ ଋଷିବର ରଖ ଏବେ ବୋଇଲେ ।
ଭୃଗୁ ବୋଇଲେ ଆହେ ଆସ ନୃପବର
ରକ୍ଷାସ୍ଥାନ ଆଜ ହୋଇବ ମୁଁ ତୁମ୍ଭର ।
ଏହା ଶୁଣିଣ ବୀତହବ୍ୟ ନରଶିଖ
ଭୃଗୁଙ୍କ ସମୀପକୁ ଗଲେ ବହି ସୁଖ ।
ଭୃଗୁଙ୍କ ସନମତେ ଆସନକୁ ଆଣି
ବସ ବୋଲି ପାରି ଦିଅନ୍ତେ ଶିଷ୍ୟଶ୍ରେଣୀ ।
ବୀତହବ୍ୟ ରାଜନ ବସି ସେ ଆସନେ
ନ କହି କଥା କିଛି ରହିଲେ ମଉନେ ।
ପ୍ରତର୍ଦ୍ଦନ ଶୁଣିକରି ଏହି ବାରତା
ଧାଇଁଲେ ସେ ଯୁଦ୍ଧରେ ଅତ୍ୟନ୍ତ ତ ବେଗ୍ର ।
ବୀତହବ୍ୟ ନୃପବରଙ୍କୁ ମାରିବାକୁ
ଆସିଲେ ପ୍ରତର୍ଦ୍ଦନ ଭୃଗୁ-ଆଶ୍ରମକୁ ।
ଆଶ୍ରମ ଦ୍ୱାରରେ କହିଲେ ଭୃଗୁଋଷି—
ଦରଶନରେ ହୋଇଅଛି ମୁଁ ଲାଳସୀ ।
କେ ଅଛ ଏଠାରେ ଭୃଗୁଙ୍କୁ ଯାଇ କହ
ତାଙ୍କୁ ଦେଖି କୃତାର୍ଥ କରିବି ମୁଁ ଦେହ ।
ଭୃଗୁ ତା ଜାଣିପାରି ବାହାରି ଦ୍ୱାରକୁ
ପଚାରିଲେ କିମ୍ପା ଆସିଛ ମୋ ସ୍ଥାନକୁ ।
ସତ କରି ତାହା ମୋ ଆଗରେ ବଖାଣ
ଶୁଣିବା ମନ ମୋ ହେଉଛି ନରରାଣ ।
ପ୍ରତର୍ଦ୍ଦନ ବୋଇଲେ ବୀତହବ୍ୟ ସୁତ
ମାନେ ମୋର ପୂର୍ବପୁରୁଷ କରି ହତ ।
ଆମ୍ଭଦେଶ ଲୋକଙ୍କୁ ଉଚ୍ଛନ୍ନ କରିଲେ
ଏ ବାହାରେ ଆମ୍ଭ ଭଣ୍ଡାର ଦୂର କଲେ ।
ଦଇବେ ସେ କୁଳେ ହୋଇଣ ମୁହିଁ ଜାତ
ବୀତହବ୍ୟ ସୁତଙ୍କୁ ଯୁଦ୍ଧେ କଲି ହତ ।
ବୀତହବ୍ୟ ଆସିଅଛନ୍ତି ତୁମ୍ଭଠାକୁ
ଦିଅ ତାଙ୍କୁ ଛାଡ଼ି ସେ ଯୁଝନ୍ତୁ ଆମ୍ଭଙ୍କୁ ।
ସେ ମୋତେ ମାରି ଅବା ପାନ୍ତୁ ଲୋକେ ପୂଜା
ନୋହିଲେ ମୁଁ ମାରିବି ମୋହର ଏ ମନସା ।

ଭୃଗୁ ବୋଇଲେ ଆହେ ପ୍ରତର୍ଦ୍ଦନ ବାଇ
ହେଲା ପର କଥା କହୁଛ କାହିଁପାଇଁ ।
ବ୍ରାହ୍ମଣ ଆଶ୍ରମେ କ୍ଷତ୍ରିୟ ରହିବାର
ଆଜଯାଏ ତ ଶୁଣା ନ ଥିଲା ଆମ୍ଭର ।
ପ୍ରତର୍ଦ୍ଦନ କହିଲେ ନୋହିବ କହୁ ସୁଖୀ
ତାର ଦୁଃଖେ ଆପଣ ହୋଇକର ଦୁଃଖୀ ।
ବ୍ରାହ୍ମଣ ବୋଲକର ବୋଇଲନ୍ତି ଯେବେ
ବାହୁଡ଼ି ଯାଉଅଛୁ ଜାଣ ମୁହିଁ ତେବେ ।
ଏତେ ବୋଲିଣ ବୀତହବ୍ୟଙ୍କୁ ଡାକିଲେ
ବ୍ରାହ୍ମଣ ହୋଇ ଯାଇଥାଅ ହେ ବୋଇଲେ ।
ବ୍ରାହ୍ମଣ ପୂଜାପାତ୍ର ଅଟନ୍ତି ତ ମୋର
ଏଣୁ ନ ମାରିବ ଜାଣ ହେ ନରବର ।
ଏରୂପରେ କହିଣ ପ୍ରତର୍ଦ୍ଦନ ବେଗି
ବାହୁଡ଼ିଲେ କହୁ ସେ ନୋହିଣ ବିରାଗୀ ।
ଭୃଗୁଙ୍କର ବୋଲିବା ମାତ୍ରକେ ପାଣ୍ଡବ
ବୀତହବ୍ୟ ପାଇଲେ ବ୍ରାହ୍ମଣଙ୍କ ଭାବ ।
ବୀତହବ୍ୟଙ୍କର ଯେ ଗୃତ୍ସମଦ ସୁତ
ହୋଇ ଋକବେଦରେ ହେଲେ ସେ ଶିକ୍ଷିତ ।
ଗୃତ୍ସମଦଙ୍କର ସୁଚେତା ହୋଇଥିଲେ
ସୁଚେତାଙ୍କଠାରୁ ବର୍ଚ୍ଚା ଉପୁଜିଲେ ।
ବିହବ୍ୟ ହୋଇଲେ କୁମର ବର୍ଚ୍ଚାଙ୍କର
ବିହବ୍ୟ ଜାତ କଲେ ବାହବ୍ୟ ନୃବର ।
ବାହବ୍ୟଙ୍କର ହେଲେ ବିତତ୍ୟ ନନ୍ଦନ
ବିତତ୍ୟଠାରୁ ସତ୍ୟ ଜନ୍ମ ହେଲେ ଜାଣ ।
ସତ୍ୟଙ୍କର ଯେ ସନ୍ତ ନନ୍ଦନ ହୋଇଲେ
ଶ୍ରବା ନାମେ ପୁତ୍ର ମହୀରେ ଖ୍ୟାତ କଲେ ।
ଶ୍ରବାଙ୍କର ତମ ଯେ ହୋଇଲେ କୁମର
ପ୍ରକାଶ ହୋଇଲେ ନନ୍ଦନ ତମଙ୍କର ।
ବାଗୀନ୍ଦ୍ର ପ୍ରକାଶଙ୍କଠାରୁ ଜନମିଲେ
ପ୍ରମତି ନାମରେ ସେ ପୁତ୍ରଟିଏ କଲେ ।
ପ୍ରମତି ଘୃତାଚୀଙ୍କଠାରେ ପ୍ରବର୍ତ୍ତିଲେ
ତାଙ୍କ ଆଉରେ ରୁରୁନାମ ପୁତ୍ର କଲେ ।
ରୁରୁ ପ୍ରମଦ୍ୱରା କନ୍ୟାକୁ ବିଭା ହେଲେ
ତାଙ୍କ ଗର୍ଭେ ଶୁନକ ଋଷି ଜନ୍ମାଇଲେ ।
ଶୁନକଋଷି ସୁତ ହୋଇଲେ ଶୌନକ
ସେ ଶୁଣିବେ ଭରତ ବଂଶ କଥାଯାକ ।

ଶୁଣ ହେ ଯୁଧିଷ୍ଠିର ଭୃଗୁଙ୍କ ପ୍ରସାଦେ
ବୀତହବ୍ୟ ରାଜା ନ ପଡ଼ି ପରମାଦେ ।
ବ୍ରାହ୍ମଣତ୍ୱ ପାଇ ଏରୂପେ ବଂଶ କରି
ଅନ୍ତଃକାଳେ ଯାଇ ଦେଖିଣ ସ୍ୱର୍ଗପୁରୀ ।
ବୀତହବ୍ୟ ଉପାଖ୍ୟାନ ହୋଇଲା ଶେଷ
କୃଷ୍ଣସିଂହ ନୃପ ସୁମରେ ରାଧାଈଶ ।

—*—

## ନାରଦ ବାସୁଦେବ ସମ୍ବାଦ

ଯୁଧିଷ୍ଠିର ବୋଇଲେ ତିନିଲୋକେ ପୂଜ୍ୟ
କେଉଁ ଲୋକମାନେ ହେ କହ ରଥୀରାଜ ।
ଭୀଷ୍ମ ବୋଇଲେ ହେ ନାରଦ ବାସୁଦେବ
ସମ୍ବାଦକୁ କହିବା ଶୁଣ ନରଦେବ ।
ଶ୍ରୀକୃଷ୍ଣ ଦିନେ ନାରଦଙ୍କୁ ନେତ୍ରେ ଦେଖି
ନମସ୍କାର କରି ପୁଚ୍ଛିଲେ ହୋଇ ସୁଖୀ ।
କାହାକୁ ନମସ୍କାର କର ମୁନିବର
ଶୁଣିବାକୁ ମାନସ ହେଉଛି ମୋହର ।
ଏହା ଶୁଣି ନାରଦ ଫୁଲାଇଣ ମଜ୍ଜା
ବୋଇଲେ ଶୁଣ ଆହେ ଯଦୁକୁଳ ରାଜା ।
ବିଷ୍ଣୁ ଲକ୍ଷ୍ମୀ ବ୍ରହ୍ମା ପୃଥିବୀ ସରସ୍ୱତୀ
ଶମ୍ଭୁ ଅଗ୍ନି ସ୍କନ୍ଦ ପବନ ବୃହସ୍ପତି ।
ପର୍ଜ୍ଜନ୍ୟ ଜଳ ଚନ୍ଦ୍ର ଆଦିତ୍ୟ ବରୁଣ
ଏହାଙ୍କୁ ଯେ ନମେ ତାଙ୍କୁ ମୁଁ ନମେ ଜାଣ ।
ନିତ୍ୟ ଦେବପରାୟଣ ଜନେ ମୁଁ ପୂଜଇ
ଏ ବାହାରେ ତପସ୍ୱୀ ଲୋକେ ଯଦୁସାଇଁ ।
ଦେବତାଙ୍କୁ ମଧ୍ୟ ଯେ କରଇ ପୂଜନ
ସେ ମୋହର ନିତ୍ୟରେ ଅଟଇ ବନ୍ଦନ ।
ଶସ୍ୟ ଧନ ଗାଈ ପୃଥ୍ୱୀ ଯେ ଦାନ ଦିଏ
ମୋହର ମସ୍ତକଟି ତା ପାଏ ଲୋଟାଏ ।
ଫଳ ମୂଳ ଖାଇ ଯେ ବନରେ ରହଇ
ମୋହର ବନ୍ଦ୍ୟ ସବୁବେଳେ ସେ ହୁଅଇ ।
ଯାଗ ଦେବାଧ୍ୟୟନେ ଯୁକ୍ତ ଯେତେ ନର
ତେତେକଙ୍କୁ ବନ୍ଦନ କରେ ଚକ୍ରଧର ।
ହବ୍ୟ କବ୍ୟ କରି କରେ ଯେ ଗୁରୁଭକ୍ତି
ତାକୁ ବନ୍ଦଇ ମୁଁ ନ କରି କହୁ ଉକ୍ତି ।
ଶୀତ ଉଷ୍ଣ ଦୁଃଖ ସୁହା ଯେତେକ ନର
ସେତେ ନରପାଦେ ଲୋଟଇ ମୋର ଶିର ।

ଦେବତା ଅତିଥିଙ୍କ ପୂଜଣ କପୋତ—
ବୃତ୍ତି ଯେ କରେ ତାକୁ ନମେ ମୁଁ ଅଚ୍ୟୁତ ।
ଶିଷ୍ଟାଚାରରେ ଥାଇ ଯେ ଧର୍ମ ଅର୍ଥ କାମ
ବଢ଼ାଏ ତାକୁ ମୋର କୋଟି ନମୋନମଃ ।
ପୁଣ୍ୟଶୀଳ ଅଲୁବ୍ଧ ବେଦଯୁକ୍ତ ନର-
ମାନଙ୍କର ପଦ୍ମର ଘେନେ ମୋର ଶିର ।
ମୋଠାରୁ ଶୁଣି ହରି ଏ ଲୋକମାନଙ୍କୁ
ପୂଜା କରି ପାଇବ ଉତ୍ତମ ଲୋକକୁ ।
ଅତିଥିଙ୍କ ପୂଜା କରଇ ଯେଉଁ ନର
ମହତ ଦୁର୍ଗତିରୁ ହୁଅଇ ସେ ପାର ।
ଏକା ଦେବତାଙ୍କୁ ଆଶ୍ରୟ କଲେ ତରି
ଦେବ ଦୁଇ ଆଶ୍ରାରେ ନାଶ ଯାଇ ହରି ।
ବ୍ରାହ୍ମଣଙ୍କୁ ଯତନବନ୍ତ ହୋଇ ଦାନ
ଦେଇ ନମଇ ଯେ ସେ ତରେ ଭଗବାନ ।
ବାଲ୍ୟରୁ ବ୍ରହ୍ମଚାରୀ ହୋଇ ଯେ ରହିଛୁ
ଏତେ ତୋତେ ପୁଣ୍ୟ ନ ପାରବଇ ବାଛୁ ।
ଦେବ ପିତୃ ଅତିଥି ଭୃତ୍ୟେ ଦେଇ ଅନ୍ନ
ଭୋଗକଲା ଲୋକ ନ ଯାଏ ପାପସ୍ଥାନ ।
ଅଗ୍ନିଙ୍କି ଘରେ ରଖି କରିଛୁ ଯେ ଯାଗ
ତାହାକୁ ବାଧି ନ ପାରଇ ପୀଡାରୋଗ ।
ମାତାପିତା ଗୁରୁଙ୍କୁ ଯେ ସେବା କରୁଛୁ
ଏ ସଂସାର ଦୁର୍ଗୁଁ ସେ ଅଲଭ୍ୟେ ତରୁଛୁ ।
ଏରୂପେ ନାରଦ ଶ୍ରୀକୃଷ୍ଣ ଆଗେ କହି
ରହିଲେ ଆହେ ଯୁଧିଷ୍ଠିର ଶୁନ ହୋଇ ।
କୃଷ୍ଣ ତାଙ୍କଠାରୁ ଶୁଣି ସେ ଆଚରଣ
କଲେ ସେପରି ସ୍ଥଳ କର ହେ ରାଜନ ।
ଶ୍ରୀକୃଷ୍ଣ ନାରଦ ସମ୍ବାଦ ହେଲା ଶେଷ
କୃଷ୍ଣସିଂହ ନରେଶ ସ୍ମରେ ପୀତବାସ ।

—*—

## ଶ୍ୟେନ କପୋତ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଶରଣାର୍ଥୀ ପ୍ରାଣୀ
ରଖିଲେ କେଉଁ ଫଳ ହୁଏ ରଥୀମଣି ।
ଭୀଷ୍ମ ବୋଇଲେ ଆହେ କପୋତକୁ ଦେଖି
ଭକ୍ଷଣେ ଧାଇଁଲା ଛଞ୍ଚାଣ ହୋଇ ସୁଖୀ ।
ବୃଷଦର୍ଭ ରାଜାଙ୍କ ହେଲା କୋଳଗତ
ମହାଭୟକୁ ପାଇକରି ସେ କପୋତ ।
ବୃଷଦର୍ଭ ରାଜା ସେ କପୋତକୁ ଦେଖି
କୋଳମଧ୍ୟେ ରଖିଲେ ହୋଇ ଅତି ସୁଖୀ ।
ବୋଇଲେ କାହିଁପାଇଁ କୋଳରୁ କପୋତ
ଗତ ହେଲୁ ମୋ ଆଗେ ପ୍ରକାଶ କର ତ ।
ତୋହର ପାଇଁ ପ୍ରାଣ ରାଜ୍ୟ ଧନ ଦୁଇ
ଛାଡ଼ିଦେବି ଏଥିରେ ସନ୍ଦେହ ତ ନାହିଁ ।
ସେହି ସମୟରେ ଯେ ଦୁଇଡେଣା ପାରି
ଶ୍ୟେନ ଧାଇଁ ଆସି ଦେଖିଣ ଦଣ୍ଡଧାରୀ ।
ବୋଇଲା ହେ ନୃପ କପୋତ ମୋର ଭକ୍ଷ୍ୟ
ନ କର ମୋଠାରୁ ଏହାକୁ ତୁମ୍ଭେ ରକ୍ଷ ।
ମୋ ଭକ୍ଷ୍ୟ ପଦାର୍ଥ ଧରିଛ କମ୍ପା ତୁମ୍ଭେ
ଛାଡ଼ିଦିଅ ତାହାକୁ ଖାଇଯିବୁଁ ଆମ୍ଭେ ।
ଭୋକରେ ମୋ ପେଟ ହେଉଛି କଲବଲ
ରଖିଛ ଯା ଏହାକୁ ଏ ତ ନୋହେ ଭଲ ।
ଏ କପୋତ ମାଂସ ବିନା ହେ ନରପତି
କ୍ଷୁଧା ମୋହର କେବେ ନୋହିବଟି ଶାନ୍ତ ।
ମୋ ନଖ ବାଜିଣ କପୋତ ପିଠିଯାକ
ଘାଆ ହୋଇଅଛି ହେ ଅବନୀ ନାୟକ ।
ରାଜା ବୋଇଲେ ହେ କପୋତ ମାଂସ ଲୋଭ
ନ କର ଏ କପୋତ ହେଲା ମୋ ବଲ୍ଲଭ ।
ଆନ ମାଂସ ମାଗ ତୁମ୍ଭଙ୍କୁ ମୁହିଁ ଦେବି
କହୁଛି ସତ୍ୟ କରି ଏହାକୁ ନ ଦେବି ।
ବ୍ରତ କରୁଛି ମୁହିଁ ଆପଣାର ପ୍ରାଣ
ଦେଇ ପରପ୍ରାଣକୁ କରିବି ରକ୍ଷଣ ।
ଏ କପୋତ ମୋଠାରେ ଶରଣ ପଶିଛି
ରଖିବି ଏହାକୁ ମୁଁ ପ୍ରାଣକୁ ମୂରୁଛି ।
ଛଞ୍ଚାଣ ବୋଇଲେ କପୋତ ମାଂସ ବିନା
ଆନ ମୁଁ ନ ଭକ୍ଷେ ରାଜନ ମହାମନା ।
କପୋତକୁ ଯେବେ ହେ ରଖିଅଛ ତୁମ୍ଭେ
ତେବେ ତୁମ୍ଭର ମାଂସ ଦିଅ ବୋଲୁଁ ଆମ୍ଭେ ।
କପୋତର ମାଉଁସ ସଙ୍ଗତରେ ତୁଳ
ଅଧିକ ମାଗିଲେ ମୁଁ ଦେବ ମୋତେ ଗାଳି ।
ରାଜା ଏହା ଶୁଣିଣ ଆନନ୍ଦ ହୋଇଲେ
ମାଂସ କାଟି କପୋତ ସଙ୍ଗତରେ ତୁଳିଲେ ।
ଅନ୍ତଃପୁର ନାରୀଏ ତାହା ଶୁଣିକରି
ପାଡ଼ିଲେ ଉଚ୍ଚେ ଡାକ ହେହେ ମାରି ଧରି ।

ପାଶେ ଥିବା ସେବକ ଲୋକେ ହାହାକାର
କରନ୍ତେ ଶବଦ ଆକାଶେ କଲା ଘର ।
ପୃଥ୍ୱୀ-ଦେବୀ ମଧ୍ୟ ସେ ସତ୍ୟକର୍ମ ଦେଖି
ଥରଗଲେ ଭୟରେ ବୁଜି ଦେଲେ ଆଖି ।
ଆକାଶ ଯାକ ମେଘେ ହୁଅନ୍ତେ ଆଚ୍ଛନ୍ନ
ଦେଖି ଯେ ନ ପାରିଲ ଜଗକୁ ନୟନ ।
ଦୁଇବାହୁ ହୃଦୟରୁ କାଟିଣ ମାଉଁସ
ତୁଳନ୍ତେ ନୋହିଲ ସେ କପୋତ ସଦୃଶ ।
ତା ଦେଖି ଯେତେ ଥିଲ ମାଉଁସ ଦେହରେ
ତାହା କାଟି କପୋତ ସଙ୍ଗତେ ତୁଳିଲେ ।
ସେ ସମାନ ନୁହନ୍ତ ଆପଣେ ତୁଳନାରେ
ବସିଲେ ପରାଣକୁ ଛାଡ଼ିଣ ହେଳାରେ ।
ଇନ୍ଦ୍ରାଦି ଦେବତାଏ ତା ଦେଖି ଆକାଶ-
ମାର୍ଗେ ରହି ବୋଇଲେ ଧନ୍ୟ ହେ ନରେଶ ।
ଆକାଶରେ ଅନେକ ଦୁନ୍ଦୁଭି ବାଜିଲା
ଅପସରମାନଙ୍କ ନୃତ୍ୟ ପ୍ରବର୍ତ୍ତିଲା ।
ଧୀର ଧୀର ହୋଇଣ ବହିଲା ସମୀର
ପୁଷ୍ପବୃଷ୍ଟି ହେଲା ସେ ନୃପତିଙ୍କ ଶିର ।
ଏ ସମୟେ ଆକାଶୁ ବିମାନ ଆସନ୍ତେ
ତହିଁ ସେ ନୃପଶିଖ ବସି ତୋଷଚିତ୍ତେ ।
ଦେବତା ଗନ୍ଧର୍ବରେ ହବ୍ୟପୂଜା ପାଇ
ଦେହ ଧରି ଭେଟିଲେ ଶଚୀ ଦେବୀ ସାଇଁ ।
ଏହା ତ ଜାଣିଲ ହେ ଯୁଧିଷ୍ଠିର ରାଜ
ଶରଣାର୍ଥୀ ରଥ ଦେଖାଇ ତେଜ ଓଜ ।
ବୃଷଦର୍ଭ ରାଜାଙ୍କ ଚରିତ ଅନଳ
ପାପ-ତୃଣରାଶିକି କରେଟି କବଳ
ଏହି ସକାଶୁ ଏ ଚରିତ ସାବଧାନ
ହୋଇଣ ଶୁଣିବ ଯେ ହେବା ପୁଣ୍ୟଜନ ।
ଶ୍ୟେନ କପୋତୀୟ-ଆଖ୍ୟାନ-କୁଠାରରେ
ପାତକ-ତୃଣବନ କାଟ ଏହିଠାରେ ।
ଆହେ ଯୁଧିଷ୍ଠିର ପାଣ୍ଡବ-ନରପତି
କହଇ କୃଷ୍ଣସିଂହ ନୃପ ବହି ପ୍ରୀତି ।

—*—

## ବ୍ରାହ୍ମଣ ମାହାତ୍ମ୍ୟ

ଯୁଧିଷ୍ଠିର ବୋଇଲେ ନୃପମାନଙ୍କର
କେଉଁ କଥା ବଡ଼ ଅଟଇ କରିବାର ।
ଭୀଷ୍ମ ବୋଇଲେ ଆହେ ବ୍ରାହ୍ମଣ ପାଳନା
ରାଜାର ବଡ଼ ଧର୍ମ ଅଟେ ମହାମନା ।
ଶ୍ରୋତ୍ରୀୟ ବୃଦ୍ଧ ଦ୍ୱିଜ ଦେଖିଲେ ପୂଜିବ
ଏଥିରୁ ଶ୍ରେୟସ୍କଥା ନାହିଁ ନରଦେବ ।
ବ୍ରାହ୍ମଣ-ସନ୍ତୋଷରେ ରାଜାର ଆୟୁଷ
ଯଶ ବଢ଼ଇ ହେ ପାଣ୍ଡବ-ନରଈଶ ।
କ୍ରୋଧ ହେଲେ ବ୍ରାହ୍ମଣ ରାଜା ତୁଲେ ରାଜ୍ୟ
ନାଶ କରଇ ଆହେ ଜାଣ ମହାରାଜ ।
ବ୍ରାହ୍ମଣେ ତ ଅଟନ୍ତି ଅତ୍ୟନ୍ତ ସାହସୀ
କହୁଥାଆନ୍ତି କଥା ଭଙ୍ଗି ଟିରେ ବସି ।
ଏ ସକାଶୁଁ ତାହାଙ୍କୁ ନ ଯିବ ବିଶ୍ୱାସ
ସେବାକୁ କରୁଥିବ ହୋଇକରି ଦାସ ।
ବ୍ରାହ୍ମଣଙ୍କ ହାତରେ ନୋହି ବିଦ୍ୟାଟାଏ
ଏ ମହୀରେ ନାହିଁ ପାଣ୍ଡବ ନରବର୍ଯ୍ୟେ ।
ନୃତ୍ୟରୁ ବେଦ ପଢ଼ାଯାଏ ସେ ଜାଣନ୍ତି
ଖଟ ମିଛ ସତ ତିନଙ୍କି ଆଚରନ୍ତି ।
ଦେବତା ଆଦି ପ୍ରାଣୀ-ସମାଜେ ବ୍ରାହ୍ମଣ
ପୁରୋହିତ ହୁଅଇ ଜାଣ ନରରାଣ ।
ତିନିଲୋକ ଯାକରେ ବିପ୍ରେ ଲଂଘିବାକୁ
ଥିଲା ପରି ନୟନେ ନ ଦେଖି କାହାକୁ ।
ଅଦେବଙ୍କ ଦେବତା, ଦେବଙ୍କୁ ଅଦେବ
ବ୍ରାହ୍ମଣଟି କରୁଛି ଆହେ ନରଦେବ ।
ବ୍ରାହ୍ମଣ-ଗଣେ ଅପବାଦ ଯେ ଦିଅଇ
ସେ ନାଶ ଯିବାରେ ସନ୍ଦେହ କିଛି ନାହିଁ ।
ବ୍ରାହ୍ମଣ ଯାହାକୁଟି ହୁଅଇ ସନ୍ତୋଷ
ତାହାର ହୁଏ ବୃଦ୍ଧି ମହୀରେ ବିଶେଷ ।
ଯବନ ଶକ କାମ୍ବୋଜାଦି ନୃପ ଥିଲେ
ନ ସେବି ଦ୍ୱିଜଙ୍କୁଟି ଶୂଦ୍ର ବୋଲାଇଲେ ।
ଉମାଶର ଦ୍ରାବିଡ଼ କଳିଙ୍ଗ ମହିଷକ
ବ୍ରାହ୍ମଣଙ୍କୁ ସେବି ପାଇଲେ ନାଗ-ଲୋକ ।
ବ୍ରାହ୍ମଣଠାରୁ ଜୟ କଥା ଛାଡ଼ିଦେଇ
ଅଜୟ କଥାଟି ଲୋଡ଼ିବ ନରସାଇଁ ।
ବ୍ରାହ୍ମଣଙ୍କୁ ମାଇଲେ ସବୁ ପ୍ରାଣୀ ହତ-
ଦୋଷ ଆସି କରି ହୁଅଇ ପରିପତ ।
ବ୍ରାହ୍ମଣ ଅପବାଦ ନ ଶୁଣିବ କାନେ
ଶୁଣିଲେ ଲୋକ ଯାଇ ପଡ଼େ ନର୍କ ସ୍ଥାନେ ।

ଚନ୍ଦ୍ର ତପନ ମହୀ ପରାପ୍ତେ ଦୁର୍ଦ୍ଧର
ବ୍ରାହ୍ମଣ ଅଟଇ ରାଜନ ମନେ କର ।
ସୁଖ ଦୁଃଖ ଦୁଇ ବ୍ରାହ୍ମଣ ଦେଇପାରେ
ଏଣୁ ବ୍ରାହ୍ମଣଙ୍କୁ ପୂଜିବ ନିରନ୍ତରେ ।
କ୍ଷତ୍ରିୟ ମହାରଥ ବେଦପଢ଼ା ଦ୍ୱିଜ
ଯା ରାଜ୍ୟରେ ଅଛନ୍ତି ବଢ଼ଇ ତା ଓଜ ।
ବ୍ରାହ୍ମଣ ଯାହା ଖାଏ ତା ଖାଏ ଦେବତା
ଶୁଣିଛ ତ ତା ନାମ ଭୂମିରେ ଦେବତା ।
ଯାହା ଅନ୍ନ ବ୍ରାହ୍ମଣ ନ ଖାଏ ରାଜନ
ପିତୃଦେବ ତା ଅନ୍ନ ଗ୍ରହନ୍ତି ନାହିଁ ଜାଣ ।
ବ୍ରାହ୍ମଣ ତୋଷ ହେଲେ ପିତୃଦେବ ତୋଷ
ହୁଅନ୍ତି ଜାଣ ଆହେ ନରକୁଳ ଈଶ ।
ବ୍ରାହ୍ମଣଙ୍କୁ ଯେ ଅନୁଗତ ହୋଇଥାଏ
ପରାଭବ ତାହାକୁ ନ ବାଧଇ ରିପୁ ।
କ୍ଷତ୍ରିୟମାନେ ତେଜୋବଳ କରିଥାନ୍ତି
ବ୍ରାହ୍ମଣଙ୍କୁ ଦେଖିଲେ ଗ୍ଳାଉଣ ହୁଅନ୍ତି ।
ଭୃଗୁ ତାଳଜଙ୍ଘଙ୍କୁ, ଅଙ୍ଗିରା ନୃପଙ୍କୁ
ଭରଦ୍ୱାଜ ଯେ ବୀତହବ୍ୟ ତନୟଙ୍କୁ ।
ସାଧି କରି ପକାଇଲେ ହେ ନରରାଣ ।
ଆଉ କାହାର ଅବା ରହିବ ଗୁମାନ ।
ପୃଥିବୀ କୃଷ୍ଣଙ୍କର ସମ୍ବାଦ ଯା ଅଛି
ତା କହିବା ଶୁଣ ହେ ପାଣ୍ଡୁ ନୃପବର୍ଯ୍ୟ ।
ଶ୍ରୀକୃଷ୍ଣ ପଚାରି କେଉଁ କର୍ମ କଲେ
ପାତକ ଯାଏ ତା ମହୀ କହ ତାହା ଭଲେ ।
ପୃଥିବୀ ବୋଇଲେ ହେ ଜଗତ-ପାବନ
ବ୍ରାହ୍ମଣଗଣେ ସେବା କର ପ୍ରତିଦିନ ।
ବ୍ରାହ୍ମଣଙ୍କର ସେବା ହୋଇଣ ଦ୍ୱିହୁଡ଼
ପାତକ ଅନ୍ଧାରକୁ ହୁଅଇ ଘଉଡ଼ ।
ବ୍ରାହ୍ମଣେ ଯାହାକୁ କରନ୍ତି ପରଶଂସା
ତା'ର କନ୍ଧରେ ଲକ୍ଷ୍ମୀ କରିଥାନ୍ତି ବସା ।
ବ୍ରାହ୍ମଣ ପ୍ରଭାବରେ ହିମାଂଶୁ କଳଙ୍କ ।
ବୋହିବାରୁ ଯେ ବୋଲାଇଲେ ସେ ମୃଗାଙ୍କ
ସମୁଦ୍ର ମଧ୍ୟ ହୋଇଗଲେଟି ଲୁଣିଆ
ହେଲା ଭଗସହସ୍ର ଇନ୍ଦ୍ର ଦେହହିଁୟା ।
ଏହିରୂପେ କହନ୍ତେ ପୃଥିବୀ ବଚନ
ଜହ୍ନିଲ ଆଗୁ ବୋଲି ଗଲେ ଜନାର୍ଦ୍ଦନ ।
ତୁମ୍ଭେ ଏବେ ମୋ ବୋଲ କରି ଦ୍ୱିଜ ପୂଜା
ଏ ଜଗତ ଯାକରେ ହେବ ମହାରାଜା ।
ପୃଥିବୀ ବାସୁଦେବ-ସମ୍ବାଦ ସମାପ୍ତି
ହେଲା କୃଷ୍ଣସିଂହ ଭାବଇ ରାଧା-ପତି ।

—*—

## ବ୍ରାହ୍ମଣ ପୂଜା

ଏଥୁ ଅନନ୍ତରେ ଭୀଷ୍ମ କହିଲେ ବ୍ରାହ୍ମଣ
ସବୁରି ନମସ୍ୟ ହେ ଜାଣ ନରରାଣ ।
ବ୍ରାହ୍ମଣଙ୍କୁ ବ୍ରହ୍ମା ଯାହା କହିଅଛନ୍ତି
ତା କହିବା ଶୁଣ ହେ ପାଣ୍ଡବ ନୃପତି ।
ବେଦ ଅଧ୍ୟୟନ ତପସ୍ୟା ଜପ କର୍ମ
କରିଲେ ତୁମ୍ଭରଠି ପ୍ରକାଶିବ ଧର୍ମ ।
ଶୂଦ୍ର-କରମ କଲେ ଧର୍ମହୀନ ହୋଇ
ନରକରେଁ ବ୍ରାହ୍ମଣେ ପଡ଼ିବେଟି ଯାଇ ।
ହୋମ କଲେ ତୁମ୍ଭଙ୍କୁ ପୂଜି ସବୁ ନର
ତୁମ୍ଭଙ୍କୁ ଦେଇକରି କରିବେ ଆହାର ।
ନରଲୋକ ଦେବଲୋକରେ ତପ ବିନା
କେବେହେଁ ଜାଣ ସିଦ୍ଧ ନୁହଇ କାମନା ।
ବ୍ରାହ୍ମଣେ ତା ଶୁଣି ବୋଇଲେ ହୋଇ ହୋଇ
ନଷ୍ଟେ ନାଶଯିବୁଁ ନ କଲେ ବେଦ ସାଇଁ ।
ବ୍ରାହ୍ମଣଙ୍କୁ ଯେ ବ୍ରହ୍ମା ତଆରିବା ବାଣୀ
ଶୁଣିଲ ତ ମୋଠାରୁ ପାଣ୍ଡବ ନୃମଣି ।
ବ୍ରାହ୍ମଣଙ୍କ ନାନା ଜାତିରେ ହୋଏ ବଳ
ତାହା ମଧ କହିବା ଶୁଣ ନରପାଳ ।
ସିଂହ ବ୍ୟାଘ୍ର ବରାହ ମୃଗ ସର୍ପ ଗଜ
ଏମାନଙ୍କ ପରିଠି ବ୍ରାହ୍ମଣଙ୍କ ଓଜ ।
ବ୍ରାହ୍ମଣ ଅପ୍ରସନ୍ନେ ଅସୁରେ ପାତାଳ-
ତଳ ଆଶ୍ରୟ କରି ଆଶ୍ରେ କଲେ ଜଳ ।
ବ୍ରାହ୍ମଣେ ପ୍ରସାଦରୁ ଦେବେ ସ୍ୱର୍ଗବାସୀ
ହୋଇ ରମ୍ଭା ରତିରେ ହୋଇଲେ ଲାଳସୀ ।
ଆକାଶର ସ୍ଖଳଣ, ହିମାଦ୍ରୀ ସ୍ଖଳନ
ଗଙ୍ଗାଙ୍କର ବନ୍ଧନ ଯେରୂପେ ରାଜନ ।
ସେହିରୂପେ ବ୍ରାହ୍ମଣେ ମହିରେ ଦୁର୍ଜ୍ଜୟ
ମୋ କହିବାରୁ ଜାଣ ପାଣ୍ଡୁଙ୍କ ତନୟ ।
ପୃଥିବୀ ଭୋଗ ଇଚ୍ଛା ଥିଲେ ଦ୍ୱିଜରାଶି
ମାନଙ୍କୁ ପୂଜୁଥାଅ ରାଜା ଅହର୍ନିଶି ।

ବ୍ରାହ୍ମଣମାନଙ୍କର ପ୍ରତିଗ୍ରହେ ତେଜ
ଓଜ ନାଶଯାଏ ହେ ଜାଣ ମହାରାଜ ।
ପ୍ରତିଗ୍ରହ ନ କରିବାର ବ୍ରାହ୍ମଣଙ୍କୁ
ଦେଖିଲେ କରୁଥିବ ଆଦର ପୂଜାକୁ ।
ଏହି ବିଷୟରେ ଯେ ଶମ୍ବର ଅସୁର
ପୁରନ୍ଦରଙ୍କର ପଚାରିଛୁ ଯା ଉତ୍ତର ।
ତା କହିବା ତୁମ୍ଭଙ୍କୁ ଶୁଣ ମନ ଦେଇ
ଆହେ ଯୁଧିଷ୍ଠିର ହସ୍ତିନା-ନରସାଇଁ ।
ପୂର୍ବେ ଇନ୍ଦ୍ର ଆପଣା ରୂପ କରି ଲୋପ
ପୁଚ୍ଛିଲେ ଶମ୍ବର ଯିବାକୁ ମନତାପ ।
କି ବୃତ୍ତି କରି ତୁମ୍ଭେ ଜାତିଶ୍ରେଷ୍ଠ ହେଲ
କହ ତ ମୋତେ ହେ ଶମ୍ବର ମହାମଲ୍ଲ ।
ଶମ୍ବର ବୋଇଲେ ମୁଁ ବ୍ରାହ୍ମଣ-ଅସୂୟା
କରିନାହିଁ, ବ୍ରାହ୍ମଣେ ଛାଡ଼ିଅଛୁ ମାୟା ।
ବ୍ରାହ୍ମଣଙ୍କ ଚରଣ ଧଉତ କରଇ
ବ୍ରାହ୍ମଣେ ଦେଇ ସାରିଲେ ଯାଇଁ ଭୁଞ୍ଜଇ ।
ବ୍ରାହ୍ମଣେ ଯାହା ମୋତେ କରନ୍ତି ଆଜ୍ଞା
ସେ କଥାକୁ ମୁଁ କେବେ ନ କରେ ଅବଜ୍ଞା ।
ବ୍ରାହ୍ମଣଙ୍କ ମହିମା ଦେଖି ମୋର ବାପୁ
ଇନ୍ଦ୍ରଙ୍କୁ ପଚାରିଲେ କହିଲେ ସେ ସବୁ ।
ଶୁଣ ତାହା କହିବ ତୁମ୍ଭଙ୍କୁ ତାପସ
ଯେବେ ପୁଚ୍ଛିବାରେ ହେ ହୋଇଛୁ ଲାଳସ ।
କ୍ଷତ୍ରିୟ ଭୁଜବଳ, ବ୍ରାହ୍ମଣ ବାଗ୍‌ବଳ
ବଳ ଅଟଇଟି ଜାଣ ହେ ମହୀତଳ ।
ବ୍ରାହ୍ମଣର ପ୍ରବାସ କ୍ଷତ୍ରିୟର ଯୁଦ୍ଧ
ନୋହିଲେ ବୋଲନ୍ତି ସେ ମହୀରେ ଦୁର୍ବୋଧ
କନ୍ୟା ଗର୍ଭ ହେଲେ ଦୂଷିତ ଯେଉଁରୂପେ
ହୋଏ, ଦ୍ୱିଜଘରେ ରହିଲେ ସେହିରୂପେ
ଏହା ଜାଣି ଦ୍ୱିଜ ପ୍ରବାସ କରିବାର
ଉଚିତ ଅଟଇ ତାପସ ମନେକର ।
ଏରୂପେ ମୋ ପିତା ଇନ୍ଦ୍ରଙ୍କଠାରୁ ଶୁଣି
ପୂଜା କରିଲେ ଡାକ ଆଣି ଦ୍ୱିଜଶ୍ରେଣୀ ।
ଇନ୍ଦ୍ର ଶୁଣି ଶମ୍ବର ଅସୁର ବଚନ
ବ୍ରାହ୍ମଣଙ୍କ ପୂଜନେ ହୋଇଲେ ତନ୍ମନ ।
ବ୍ରହ୍ମଗୀତା ଶକ୍ର ଶମ୍ବରଙ୍କ ସମ୍ବାଦ
ସରିଲା କୃଷ୍ଣସିଂହ କହେ ବହି ମୋଦ ।

## ବ୍ରାହ୍ମଣ-ପରୀକ୍ଷା

ଯୁଧିଷ୍ଠିର ବୋଇଲେ ପ୍ରବାସୀ ସମୀପ
ଦ୍ୱିଜରେ କେ ପାତ୍ର ତା ରଥ୍ୟଧିପ ।
ଭୀଷ୍ମ ବୋଇଲେ ହେ ଅପୂର୍ବ ଚରେପିତ
ପାତ୍ର ଅଟଇ ଆହେ ଜାଣ ପାଣ୍ଡୁସୁତ ।
ଦୂରୁଁ ଆସିଥିବ କଉଡ଼ି ନେବା ପାଇଁ
ତାଙ୍କୁ ଦେଲେ ଜାଣ ସୁକୃତ କିଛି ନାହିଁ ।
ଋତ୍ୱିଜ ପୁରୋଧା ଆଚାର୍ଯ୍ୟ ବନ୍ଧୁମିତ୍ର
ସମ୍ବନ୍ଧୀଟି ଅଟନ୍ତି ଜାଣ ପୂଜାପାତ୍ର ।
ଏମାନେ ଯେବେ ଧର୍ମବନ୍ତ ନୋହିଥିବେ
ତେବେ ପୂଜା ଏହାଙ୍କୁ ନ କରିବ ଲବେ ।
କ୍ଷମା ସତ୍ୟ ଦମ ଅନଭିମାନ ଶମ
ଅହିଂସାବନ୍ତ ଯେ, ପାତ୍ରରେ ସେ ଉତ୍ତମ ।
ବେଦେ ଯେ ପ୍ରମାଣ ନ ବୋଲି ଶାସ୍ତ୍ର ଲଙ୍ଘେ
ସେହିଟି ଜାଣ ନରକେ ପଡ଼େ ଦୁଃଖସଙ୍ଗେ ।
ତର୍କବିଦ୍ୟା ଅନୁରକ୍ତ ଅତିବକ୍ତା
ହେତୁବାଦୀ ସର୍ବାଭିଶଙ୍କୀ କଟୁବକ୍ତା ।
ଏ ଲୋକମାନଙ୍କୁଟି ଶ୍ୱାନ ତୁଲେ ସରି ।
କରିବ ଯେ ହେବ ମହୀରେ ଦଣ୍ଡଧାରୀ ।
ଦେବତା ଋଷି ପୁତ୍ର ଅତିଥି ବ୍ରାହ୍ମଣ
ଏମାନଙ୍କର ଯେତୁ ଶୁଝିଅଛୁ ଋଣ ।
ଧର୍ମରୁ ସେ କେବେହେ ନୁହଇଟି ଦୂର
ମନେ କରିଥାଅ ପାଣ୍ଡବ-ନରବର ।
ବ୍ରାହ୍ମଣଙ୍କ ପାତ୍ର ପରୀକ୍ଷା ହେଲା ଶେଷ
କୃଷ୍ଣସିଂହ ନରେଶ ସ୍ମରେ ପୀତବାସ ।



## ପଞ୍ଚଚୂଡ଼ା ଅପ୍‌ସରା ସମ୍ବାଦ

ଯୁଧିଷ୍ଠିର ବୋଇଲେ ସ୍ତ୍ରୀଙ୍କ ସ୍ୱଭାବ
ଶୁଣିବାକୁ ମୋହର ବଳୁଅଛୁ ଭାବ ।
ଭୀଷ୍ମ ବୋଇଲେ ଆହେ ପୂର୍ବରେ ନାରଦ
ବୁଲୁଥିଲେ ମହୀକି ବହି ମନେ ମୋଦ ।
ପଞ୍ଚଚୂଡ଼ା ନାମରେ ଅପସରାଟିଏ
ଦେଖିଲେ ବାଟେ ଯାଉଁ ଯାଉଁ ଋଷିରାୟେ ।
ପଚାରିଲେ ତାହାକୁ ଆଗୋ ଅପସରୀ
କହ ଗୋ, ସ୍ତ୍ରୀଙ୍କ ସ୍ୱଭାବ ବିସ୍ତାରି ।

ଶୁଣିବାକୁ ମୋହର ହେଉଅଛୁ ମନ
ମୋତେ ତ ଗୋ ସେ କଥା ଅଟଇ ସ୍ୱପନ ।
ଅପସରୀ ବୋଇଲେ ମୁଁ ତ ସ୍ତ୍ରିରୀ ଜାତି
କହିବ କରୂପେ ହେ ତାହା ମହାମତି ।
ସ୍ତ୍ରିରୀମାନଙ୍କର ତ ସ୍ୱଭାବ ଅଳପ
କରୁଥାନ୍ତି ସବୁ କଥାକୁ ସେ ସଂକଳ୍ପ ।
ତହା କହିବାକୁ ମାଡ଼ୁଛି ମୋତେ ଲଜ
ନ ପଚ୍ଛର ମୋତେ ହେ ତପୀକୁଳରାଜ ।
ନାରଦ ବୋଇଲେ ହେ ସତଟି କହିଲେ
ତୁମ୍ଭେ ପାରହେବ ଶୁଣିବ ଜାଣ ଭଲେ ।
ମିଥ୍ୟାକଥା କହିଲେ ହୁଏ ସିନା ଦୋଷ
ଏଥିକ କମ୍ପା ହେଉଅଛ ମୁଖେ ବାସ ।
ଏହା ଶୁଣିଣ ଅପସରୀ ହସିଦେଇ
ବୋଇଲେ ଶୁଣ ଆହେ ନାରଦ ଗୋସାଇଁ ।
କୁଳୀନା ନାଥବନ୍ତୀ ରୂପବନ୍ତୀ ହୋଇ—
ଥିଲେ ନାରୀ ମର୍ଯ୍ୟାଦା ରଖନ୍ତିଟି ନାହିଁ ।
ସ୍ତ୍ରିରୀଜନ୍ମରୁ ପାପୀ ହୋଇ କଥା ଥିବା
ପର ହେଣୁ ନାହିଁ ବଚନେ କ କହିବା ।
ସ୍ତ୍ରିରୀଏ ମହାବୁଦ୍ଧିମନ୍ତ ହୋଇଥାନ୍ତି
ପତି ମୁଖ ଚାହିଁଲେ ଭୋଜନ କରନ୍ତି ।
ପତିର ଅସମସ୍ତ ଦେଖି ପରେ ରତି
କରନ୍ତି ଭୋଗ ସୁଖେ ଭଗ ଦେଇ ପାତି ।
ପତି ଯେଉଁ ପୁରୁଷ ସ୍ତ୍ରିରୀଙ୍କି ଜଗାଏ
ତାଙ୍କୁ ମଧ ମରାଇ ହୋନ୍ତି ଧାଏ ଧାଏ ।
ଉତ୍ତମ ପରିଜନ ପାଖେ ଥିବା ହେନ
ହୁଅନ୍ତିଟି ସ୍ତ୍ରିରୀଏ ମର୍ଯ୍ୟାଦାର ସ୍ଥାନ ।
ସୁନ୍ଦର ପୁରୁଷଙ୍କୁ ଛାଡ଼ି ଅସୁନ୍ଦର
ପୁରୁଷଙ୍କୁ ପାଚନ୍ତି ସ୍ୱଭାବ ତାଙ୍କର ।
ଜାତି କୁଳ ଧନକୁ ଚାହିଁ ସ୍ତ୍ରିରୀମାନେ
ରହି ନ ପାରନ୍ତି ସେ କେବେହି ସଦନେ ।
କୁଳସ୍ତ୍ରିରୀ ହୋଇଣ କରୁଥାନ୍ତି ଭୋଗ
ବେଶ୍ୟାସ୍ତ୍ରୀ ଦେଖିଲେ ବଡ଼ଇ ଅନୁରାଗ ।
ମନେ କରୁଥାଆନ୍ତି ଆମ୍ଭେ ବେଶ୍ୟା ହୋଇ
ଥିଲେ କରୁଥାଆନ୍ତେ ଘଇତା ନଠାଇ ।
ଦେଖ ଏମାନେ ବେଶ୍ୟା ହେବାରୁ ଯାହାକୁ
ମନ ଯା ହେଉଅଛି କରନ୍ତି ତାହାକୁ ।

କେମ୍ପା କଣା ଚେଷ୍ଟାରେ ସ୍ତ୍ରିରୀଙ୍କ ବରାଗ
କେବେ ନୁହଇ ହେ ନାରଦ ମହାଭାଗ ।
କେବଳ କହୁଚ ପୁରୁଷ ପଣ-ହୀନ
ଲୋକଙ୍କୁ ନ ଚାହାନ୍ତି କେବେ ସ୍ତ୍ରିରୀଜନ ।
ପ୍ରାଣୀମାନେ ତ ନିତି ମରଣ ଯାଆନ୍ତି
ପ୍ରେତପତି ନୃପତି କରି ନ ପାରନ୍ତି ।
ସେରୂପେ ସ୍ତ୍ରିରୀମାନେ ପାଉଥିଲେ ରତି
ବେଳକୁ ବେଳ ହେଉଥାନ୍ତି ଆଗକତି ।
ସୁନ୍ଦର ପୁରୁଷକୁ ଦେଖିଲେ ନାରୀଏ
ତିନ୍ତାନ୍ତି କରୁଲୁଗା କାମଶରଘାଏ ।
ଭୋଗ ଅଳଙ୍କାର ଭୋଜନ ଧନଧାନ୍ୟ
ରତିକ ଊଣା କରି ମଣନ୍ତି ସ୍ତ୍ରୀ ଜନ ।
ପୁରୁଷ ନ ପାଇଲେ ସ୍ତ୍ରିରୀ ସ୍ତ୍ରିରୀଙ୍କରେ
ଭଗ ମରାମରି ହୁଅନ୍ତି ଏକାନ୍ତରେ ।
ଅନ୍ତକ କ୍ଷୁରଧାର ବାତ ମୃତ୍ୟୁଦେବ—
ଠାରୁ ଅଧିକଟି ସ୍ତ୍ରିରୀଙ୍କର ସ୍ୱଭାବ ।
ବ୍ରହ୍ମ ସୃଷ୍ଟି କଲ ଦିନରୁ ସ୍ତ୍ରିରୀଙ୍କର
ଏ ଜାତି ସ୍ୱଭାବ ନାରଦ ମନେ କର ।
ଏରୂପେ ନାରଦ ସ୍ତ୍ରିରୀଙ୍କ କଥା ଶୁଣି
ଚିନ୍ତାଇଲେ କଉପୁନକ ଲଙ୍ଗ ଟାଣି ।
ଏଠାରେ ଥିଲେ ଭଲ ନାହିଁ ବିଚାରିଲେ
ଅନ୍ତର୍ଦ୍ଧାନ ହୋଇ ସେ ଆନଠାକୁ ଗଲେ ।
ପଞ୍ଚଚୂଡ଼ା ଉପାଖ୍ୟାନର ସମାପତି
ହୋଇଲା କହେ କୃଷ୍ଣସିଂହ ବହି ପ୍ରୀତି ।

—o—

## ବିପୁଳ ଉପାଖ୍ୟାନ

ଯୁଧିଷ୍ଠିର ବୋଇଲେ ନୂଆଘାସ ଦେଖି
ଯେରୂପେ ଗାଈ ଧାଏଁ ମନେ ହୋଇ ସୁଖୀ ।
ସେହିରୂପେ ସ୍ତ୍ରିରୀଏ ପରପୁରୁଷକୁ
ଦେଖିଲେ ଭାବନ୍ତି ଘଇତା କରିବାକୁ ।
ଶମ୍ବର ନମୁଚ ମାୟାରୁ ସ୍ତ୍ରିରୀମାୟା
ଅଧିକ ଅଟଇ ସେ ଅଟନ୍ତି ନିର୍ଦ୍ଦୟା ।
ହସୁଥିଲେ ହସନ୍ତି କାନ୍ଦିଲେ କାନ୍ଦନ୍ତି
ଅପ୍ରିୟକୁ ପ୍ରିୟବଚନରେ ବୋଧନ୍ତି ।
ଶୁକ୍ର ବୃହସ୍ପତିଙ୍କ ଶାସ୍ତ୍ରରୁ ଅଧିକ
ଅଟଇଟି ଜାଣ ସ୍ତ୍ରିରୀଙ୍କ ବୁଦ୍ଧି ଯାକ ।

ମିଥ୍ୟା କଥାଟିକି ହୁଅନ୍ତ ସତ କରି
ସତକୁ ମିଥ୍ୟା କରି ଯାନ୍ତ ହୋଇ ପାରି ।
ସ୍ତ୍ରୀଙ୍କ ସତ୍କାର ଅସତ୍କାର ହେଲେ
ପୁରୁଷଠାରେ ମନ ନ ବୁଝାନ୍ତ ଭଲେ ।
ଏ କଥା ଜାଣି ମୁଁ ସ୍ତ୍ରୀଙ୍କି ରଖିବାକୁ
ପଚ୍ଚାରୁଅଛୁ ଭୀଷ୍ମ ଉପାୟ ତୁମ୍ଭଙ୍କୁ ।
ପୂର୍ବରେ କେ କରୂପେ ସ୍ତ୍ରୀଙ୍କର ରକ୍ଷା
କରିଅଛୁ କହ ତ କରି କରି କକ୍ଷା ।
ଭୀଷ୍ମ ବୋଇଲେ ଆହେ ବଶୁଳ ସ୍ତ୍ରୀଙ୍କି
କହିବା ତୁମ୍ଭ ଆଗେ ରଖି କଥାଟିକି ।
ଆଗ ଶୁଣ ବ୍ରହ୍ମା ସ୍ତ୍ରୀଙ୍କି ସରଜନା
ଯେରୂପେ କଲେ ହେ ରାଜନ ମହାମନା ।
ପ୍ରଜାମାନେ ତ ବଡ଼ ଧାର୍ମିକ ହୋଇଲେ
ଦେବତାମାନଙ୍କର ଭୟ ସମ୍ପାଦିଲେ ।
ସହି ନ ପାରି ତହୁଁ ଦେବେ ଗୋଟି ହୋଇ
ଗୁହାରିଲେ ଯାଇ ସାବିତ୍ରୀ-ଦେବୀ ସାଇଁ ।
ଦେବତାମାନଙ୍କର ଦୁଃଖ ହେବ ନାଶ
ବିଚ୍ଚରି ମାନସରେ ତହୁଁ ଦେବ-ଈଶ ।
କୃତ୍ୟା କରି ସ୍ତ୍ରୀମାନଙ୍କୁ ଜାତ କଲେ
ଆସାଧୂତା ଗୁଣ ତାହାଙ୍କଠାରେ ଦେଲେ ।
ଏହି ସକାଶରୁ ସେ କାମରେ ଲେସାଇ
ପୁରୁଷଙ୍କୁ ସ୍ତ୍ରୀଏ ହୁଅନ୍ତ ଭୁଲାଇ ।
କନ୍ଦର୍ପର ସହାୟ କରି ବହି କ୍ରୋଧ
କରିଲେ ହୋଇବାକୁ ପ୍ରାଣୀଏ ଦୁର୍ବୋଧ ।
ଏହି ସକାଶରୁ ଯେ କାମ କ୍ରୋଧ ବଶ
ହୋଇଲେ ସବୁ ପ୍ରାଣୀମାନେ ହେ ନରେଶ ।
ସ୍ତ୍ରୀମାନଙ୍କରେ ପୀରତିକି ବଢ଼ାଇ
ସୁରତି ଇଚ୍ଛାକଲେ କାମେ ହୋଇ ବାଇ ।
ସ୍ୱେଚ୍ଛାଆସନ ଅଳଙ୍କାର ଅନ୍ନ ପାନ
ଦେଲେ ବ୍ରହ୍ମା ସ୍ତ୍ରୀଙ୍କି ହୋଇ ତୋଷମନ ।
ଏହା ବାହାରେ ରତି ଚକ୍ଷୁଭଙ୍ଗୀ ଦୁଇ
ସ୍ତ୍ରୀଙ୍କଠାରେ ବହି ରଖାଇଲେ ନେଇ ।
ସ୍ତ୍ରୀମାନଙ୍କର ରକ୍ଷଣ ପୁରୁଷରେ
କଷ୍ଟ ଅଟଇ ଜାଣ ନିର୍ବାହ ହେବାରେ ।
ଏବେ ଶୁଣ ବିପୁଳ ସ୍ତ୍ରୀ ରକ୍ଷାକଥା
ଆହେ ଯୁଧିଷ୍ଠିର ପାଣ୍ଡବ ମହାରଥା ।

ଦେବଶର୍ମା ଋଷିଙ୍କ ରତି ଭାର୍ଯ୍ୟା ହେଲେ
ରୂପରେ ସେ ତିନ ଜଗତକୁ ମୋହିଲେ ।
ଦେବଶର୍ମା ତାହା ଜାଣିଣ ସେ ଋଷିଙ୍କି
ଅହର୍ନିଶ ଜଗିଲେ ନ ଯାଇ କାହିଁକି ।
ଇନ୍ଦ୍ରଙ୍କର ସ୍ତ୍ରୀ ଲମ୍ପଟବୁଦ୍ଧି କଥା
ଦେବଶର୍ମା ହୃଦେ ତ କରିଥାନ୍ତ ପୋଥା ।
ଏହି ସକାଶରୁ ସେ ମହା ଭୟ କରି
ବସିଥାନ୍ତ ଭାରିଯାକୁ କୋଳେ ଧରି ।
ଯାଗ କରିବାକୁ ସେ ଦିନେ ବିଚ୍ଚରିଲେ
ଭାରିଯାକୁ ରଖିବି କରୂପେ ପାଞ୍ଚିଲେ ।
ପାଞ୍ଚୁ ପାଞ୍ଚୁ ବୁଦ୍ଧି ହୁଅନ୍ତେ ନରସାଇଁ
ଅଣାଇଲେ ବିପୁଳ ଶିଷ୍ୟଙ୍କୁ ଡକାଇ ।
କହିଲେ ଯାଗ କରିବାକୁ ମୁଁ ଯାଉଛୁ
ଜଗ ତୁମ୍ଭେ ମୋର ଭାର୍ଯ୍ୟାକୁ ମୁଁ ବୋଲୁଛୁ ।
ଇନ୍ଦ୍ର ତ ପରସ୍ତ୍ରୀ ଲମ୍ପଟ ଅଟନ୍ତ
କରୂପେ ସେ ଆସି ଭୋଗିବେ ମୋ ଯୁବତୀ ।
ବିପୁଳ ବୋଇଲେ ଇନ୍ଦ୍ରଙ୍କ କେତେ ରୂପ
ମୋ ଆଗେ କହ ଋଷି ଗୁଡ଼ ମନସ୍ତାପ ।
ଦେବଶର୍ମା ବୋଇଲେ କିରୀଟ ମୁକୁଟ
ବାନ୍ଧନ୍ତ ମସ୍ତକେ ଅରିତଦେବୀ ଝୁଟ ।
କେତେବେଳେ ବା ଶିଖା ଜଟା ଧରିଥାନ୍ତ
କେତେବେଳେ ଚ୍ଚଣ୍ଡାଳ ରୂପକୁ ବହନ୍ତ ।
ଶ୍ୟାମ କୃଷ୍ଣ ଗଉର ବର୍ଣ୍ଣ ତାହାଙ୍କର
ଇଚ୍ଛା ହେଲେ ତ ହେଉଥାଏ ମନେକର ।
ବଡ଼ ସାନ ଶୂଦ୍ର ଦ୍ୱିଜ ବୈଶ୍ୟ କ୍ଷତ୍ରିୟ
ହୋଇ ପାରନ୍ତ ସେ ଏ ଆଦି ବର୍ଣ୍ଣ ଚୟ ।
ଶୁଆ କୁଆ ବଲୁଆ ବଲଇମାଙ୍କଡ଼
ରୂପ ଧରି ପାରନ୍ତ ଦେବେ ସେ ତ ବଡ଼ ।
ତାହାଙ୍କୁ ଜଗି ଥିବ ଅତି ଯତ୍ନେ ତୁମ୍ଭେ
ଏହା ଜାଣିବାରୁଟି ଜାଣ ବୋଲୁ ଆମ୍ଭେ ।
ଏହିରୂପେ ବିପୁଳ ଋଷିଙ୍କି ତିଆରି
ଦେବଶର୍ମା ଆଶ୍ରମୁଁ ଗଲେ ଦଣ୍ଡଧାରୀ ।
ଗୁରୁ ବାଣୀ ଭାବି ବିପୁଳ ଋଷିବର
ଭାବିଲେ କରୂପେ ରଖିବି ଗୁରୁଦାର ।
ଇନ୍ଦ୍ର ତ ବଡ଼ ଖଣ୍ଡ ସବୁ ଦେବତାରେ
ଅଟନ୍ତ ସେ ବଡ଼ ଲମ୍ପଟ ବନ୍ଧତାରେ ।

ଏ ସକାଶୁ ତାଙ୍କୁ ଜଗିବା ହେବ କଷ୍ଟ
ନ ଜଗିଲେ ଯେ ଗୁରୁପତ୍ନୀ ହେବେ ଭ୍ରଷ୍ଟ ।
ଗୁରୁପତ୍ନୀ ଅଙ୍ଗରେ ଯେବେ ମୁଁ ରହିବି
ଏ ଯାହା କରୁଥିବେ ତେବେ ତା ଜାଣିବି ।
ଏହିରୂପେ ବିଚାରି କରଣ ବିପୁଳ
ଋଷିମାନଙ୍କେ ସେ ତ ମହା ଯୋଗଶୀଳ ।
ଯୋଗରେ ଗୁରୁପତ୍ନୀ ଦେହରେ ରହିଲେ
ଗୁରୁପତ୍ନୀ ତାହାକୁ ଜାଣି ନ ପାରିଲେ ।
ଇନ୍ଦ୍ର ଦେବଶର୍ମାଙ୍କ ଯିବା କଥା ଜାଣି
ହେଲେ କାମ ଶରରେ ସେମଯାକ ଟାଣି ।
ମନେ କରିଲେ ମହାଋଷି ଦେବଶର୍ମା
ଛାଡ଼ି ଯାଇଅଛନ୍ତି ମନୋହର ବାମା ।
ଏତେବେଳେ ଯାଇ କରିବି ତାଙ୍କୁ ଭୋଗ
ଭାଙ୍ଗିବ ମୋଠାରୁ ମଦନରଜା ରାଗ ।
ଏହିରୂପେ ମନ କରିଣ ଶଚୀ-ପତି
ଧଇଲେ କୋଟିକାମଗଞ୍ଜନ ମୂରତି ।
ଦେବଶର୍ମାଙ୍କର ଆଶ୍ରମକୁ ଆସିଲେ
ଦେବଶର୍ମା ଭାର୍ଯ୍ୟା ରୁଚିଙ୍କି ଦେଖାଦେଲେ ।
ରୁଚି ତାହାଙ୍କୁ ଦେଖି ପାଞ୍ଚେଟି ଯିବାକୁ
ଉଠନ୍ତେ ଲଗିଗଲା ପିଙ୍ଗୁଟି ତଳକୁ ।
ଇନ୍ଦ୍ର ସେହିକାଳେ ବୋଇଲେ ଆଗୋ ନାରୀ
କାମେ ମରୁଅଛୁ ତୋ ରୂପ ଦେଖିକରି
ତୋହଠାକୁ ମୁଁ ଆସିଅଛୁ ଆରେ ପ୍ରିୟା
ମୋତେ ଥରେ ତୁ ଉଡ଼ କଗାଇଣ ହିୟା ।
ବିପୁଳ ତ ଗୁରୁପତ୍ନୀଙ୍କ ଦେହେ ଥିଲେ
ଏ ସକାଶୁଁ କଥା ସେ କହି ନପାରିଲେ ।
ଗୁରୁପତ୍ନୀଙ୍କ ତହୁଁ ମଦନ-ବିକାର
ଜାଣିକରି ବିପୁଳ ମହର୍ଷି ବର ।
ଯୋଗବଳେ ତାଙ୍କର କାମ-ଦ୍ୱାର ରୁନ୍ଧି
ଦେଲେ, ନ ରହିଲା ତହିଁରେ କିଛୁ ସନ୍ଧି ।
ଇନ୍ଦ୍ର ତାଙ୍କ ବିକାର ନୋହିବାର ଜାଣି
ଡାକିଲେ ଆସ ଆଗୋ ନବୀନତରୁଣୀ ।
ବିପୁଳ ତ ଗୁରୁପତ୍ନୀଙ୍କ ଦେହେ ଥିଲେ
କାହିଁପାଇଁ ଆସିଛ ବୋଲି ପଚାରିଲେ ।
ଇନ୍ଦ୍ର ସେ ବାଣୀ ଶୁଣି ଶୁଖାଇଣ ମୁଖ
ଭାବିଲେ ମାଇଲା ତ ମୋତେ କାମମୂର୍ଖ ।
ଦିବ୍ୟଚକ୍ଷୁବଳରେ ଦେଖିଲେ ବିପୁଳ—
ଋଷିଙ୍କି ଗୁରୁପତ୍ନୀ-ଦେହେ ଦେବପାଳ ।
ମନେକଲେ ଆଜ ଯିବ ମୋ ସ୍ୱର୍ଗଶିରୀ
ଏ ନାରୀ ଦେହେ ତ ବିପୁଳ ତପସ୍ୱୀରୀ ।
ବ୍ୟାପି ରହିଅଛନ୍ତି କରିବି ମୁଁ କିସ
ଇଚ୍ଛା ସୁଖେ ଲେଉଡ଼ ଆଣିଲି ବିଷଗ୍ରାସ ।
ବିପୁଳ ଏହିକାଳେ ସ୍ୱରୂପକୁ ଧରି
ବୋଇଲେ ଶୁଣ ଆହେ ନମୁଚିବଇରୀ ।
ଆଜଠାରୁ ତୁମ୍ଭଙ୍କୁ ଦେବ ମନୁଷ୍ୟରେ
ପୂଜା ନ କରିବ କେ ଗୋଟିଏ ଆଦରେ ।
ଗଉତମ ରମଣୀ ଅହଲ୍ୟାକୁ ହରି
ରହିଛ ଦେହରେ ସହସ୍ରଯୋନି ଧରି ।
ତେବେ ହେଲେ ତୁମ୍ଭର ପରସ୍ତ୍ରୀ ଭୋଗ
କରିବାରେ ତ ବଡ଼ି ଅଛୁ ଅନୁରାଗ ।
ଦୟାକରି ଏବେ ରଖିଲି ତୁମ୍ଭ ପ୍ରାଣ
ଯାଅ ଯାଅ ବାହୁଡ଼ି ସ୍ୱର୍ଗେ ସୁରରାଣ ।
ମୋହର ଗୁରୁ ଯେବେ ଦେଖିବେ ତୁମ୍ଭଙ୍କୁ
ଦେବେଟି ପଠିଆଇ ଯମ-ନଗରକୁ ।
ଆଉ ଏରୂପେ ପୁଣି ବ୍ରାହ୍ମଣୀଙ୍କି ଦେଖି
ନୋହିବ କହୁଥାଇ କାମ-ଶରେ ଦୁଃଖୀ ।
ଅମର ବୋଲି ଯାହା କରିଛ ଗୁମାନ ।
ତପସ୍ୟାରେ ସାଧ ତା ହୋଇଯିବ ଜାଣ ।
ଏରୂପେ ବିପୁଳ ବଚନ କର୍ଣ୍ଣେ ଶୁଣି
ସୁ-ରମଣୀ ସୁରତି ମୂର୍ଚ୍ଛି ସୁରମଣି ।
ସୁରମଣୀ ପୁରି ସ୍ୱର୍ଗକୁ ଗମିଲେ
ସୁରମଣୀଗଣ-ଭୋଗେ ମନ ନ ଦେଲେ ।
ଏହିକାଳରେ ଯାଗ ସାରି ଋଷିବର
ଦେବଶର୍ମା ଆସିଲେ ଆଶ୍ରମେ ତାଙ୍କର ।
ବିପୁଳ ଗୁରୁଙ୍କର ପାଦଦେଶେ ନମି
ହୋଇଣ ମାନସରେ ଅତି ପୂର୍ଣ୍ଣକାମୀ ।
ଗୁରୁପତ୍ନୀଟିକି ଗୁରୁଙ୍କୁ ସମର୍ପିଲେ
ଗୁରୁଙ୍କ ଅନୁଜ୍ଞାରେ ତପ ଯାଇ କଲେ ।
କେତେ ଦିନ ଉତ୍ତାରେ ତପସ୍ୟାକୁ ସାରି
ଯେରୂପେ ଆସିଲେ ଆଶ୍ରମେ ବଜ୍ରଧାରୀ ।
ଯେରୂପେ ପୁଣି ଗୁରୁପତ୍ନୀଙ୍କି ବଚନ
କହିଲେ ସେ ହାରି ମଦନଶରେ ଜ୍ଞାନ ।

ସେହି ରୂପେ ବିପୁଳ ଗୁରୁଙ୍କୁ କହିଣ
କହିଲେ ଇନ୍ଦ୍ରଙ୍କୁ ଘଉଡ଼ିଦେଇ ଜାଣ ।
ଗୁରୁପତ୍ନୀଙ୍କ ଜଗିବାରେ ଗୁରୁ ସୁଖୀ
ହୋଇଣ ଆନନ୍ଦେ ଲୋତକ ଋଖି ଆଖି ।
ବୋଇଲେ ଆରେ ବାବୁ ମାଗ ମୋତେ ବର
ମନୋରଥ ସିଦ୍ଧ ମୁଁ କରିବି ତୋହର ।
ବିପୁଳ ବୋଇଲେ ମୋ ବୁଦ୍ଧି ଧରମକୁ
ନ ଛାଡ଼ିବ ଏ ବର ଦିଅ ହେ ଆମ୍ଭଙ୍କୁ ।
ଗୁରୁ ବୋଇଲେ ତେବେ ଏହିରୂପେ ହେଉ
ତୋଠାରୁ ପ୍ରିୟଶିଷ୍ୟ ନାହିଁ ମୋର ଆଉ ।
ଏହି ବର ପାଇ ବିପୁଳ ତପିବର
ବନରେ ରହି ପୁଣି ତପ କଲେ ଘୋର ।
ଦେବଶର୍ମା ନିଜର ଭାରିଯାକୁ ଧରି ।
ତପସ୍ୟା କଲେ ହୋଇ ବନାନ୍ତରଚାରୀ ।
ବିପୁଳ ତପ କରି ହୃଦେ ଗର୍ବ ବହି
ମୋ ପରି ନାହିଁ ବୋଲି ବୁଲିଲେ ସେ ମହୀ ।
ଏଅନ୍ତେ ଦେବଶର୍ମା ଭାର୍ଯ୍ୟା ରୁଚିଙ୍କର
ଭଗିନୀ ତ ଭାରିଯା ଚିତ୍ରରଥଙ୍କର ।
ଚିତ୍ରରଣ ଘରକୁ ଆକାଶ ମାର୍ଗରେ
ନାରୀ ଜଣେ ବାହାରିଗଲା ଅତି ଖରେ ।
ଯିବାବେଳେ ତା ମୁଣ୍ଡୁ ଫୁଲମାନ ଖସି
ପଡ଼ନ୍ତେ ଦେଖିଲେ ତା ଦେବଶର୍ମା ଋଷି ।
ଭାର୍ଯ୍ୟା ସେ ଫୁଲଯାକ ଗୋଟିଆଇ ଆଣି
ଖୋସିଲେ ନିଜ କେଶେ ସାଜି ଚିତ୍ରବେଣୀ ।
ରୁଚିଙ୍କର ଭଗିନୀ ପ୍ରଜାବତୀ ନାରୀ
ରୁଚିଙ୍କି ଦେଖିବାର ଇଚ୍ଛା ମନେକରି ।
ଲୋକ ପଠିଆଇଲେ ରୁଚିଭଗ୍ନି ପାଶ
ଦେଖିବା ପାଇଁ ମନ ଅଛି ଥରେ ଆସ ।
ସେ ଲୋକ ଆସି କରି କହନ୍ତେ ସେରୂପେ
ରୁଚିନାରୀ ଗଲେ ଭଗିନୀଘରେ ଆପେ ।
ରୁଚିଙ୍କ କେଶ ଫୁଲ ଦେଖିଣ ସୁମୁଖୀ
ପ୍ରଜାବତୀ ମାଗିଲେ ତାଙ୍କୁ ହୋଇ ସୁଖୀ ।
ଏହିରୂପେ ଫୁଲ ମୋ ନିମନ୍ତେ ଅଣାଅ
ଯେ ଆଣିବ, ମୋଠାରୁ ତାକୁ ଧନ ଦିଅ ।
ରୁଚି ଏହା ଶୁଣି ଭର୍ତ୍ତାଙ୍କ ପାଶେ ଯାଇ
କହିଲେ ଭର୍ତ୍ତାଙ୍କର ମୁଖକୁ ଅନାଇଁ ।
ଭଗିନୀ ମୋ ମସ୍ତକ ଫୁଲ ପରି ଫୁଲ
ମାଗୁଛନ୍ତି ଦେଲେ ସେ ହୋଇବେ ଉତ୍ଫୁଲ୍ଲ ।
ଏଥିକି ଯେ ବିଚାର କରି ତପସ୍ୱୀରାଯ
ଦିଅ ମୋତେ ଫୁଲ ଅଣାଇଁ ଏହିପରି ।
ଏହା ଶୁଣିଣ ଦେବଶର୍ମା ଋଷି ସାଇଁ
ବିପୁଳକୁ ଡାକି ଭଣିଲେ ଭାବି ହୋଇ ।
ବୋଇଲେ ତୁମ୍ଭ ଗୁରୁପତ୍ନୀ ମଥା ଫୁଲ—
ପରିପ୍ରେ ହେ ବିପୁଳ ଆଣ ଯାଇ ଫୁଲ ।
ବିପୁଳ ଗୁରୁଙ୍କ ବଚନ ନ ଲଙ୍ଘିଲେ
ଆଣିଦେବି ଗୁରୁ ଫୁଲ ମୁହିଁ ବୋଇଲେ ।
ଯେଉଁଠାରେ ଫୁଲ ଆକାଶୁଁ ଥିବ ଖସି
ସେହିଠାକୁ ବୋଲି ଗଲେ ସେ ମହରଷି ।
ସେହିରୂପରେ ସେ ନାରୀମୁଣ୍ଡଫୁଲ
ପଡ଼ିଥିଲା ଶୋଭାରେ ହୋଇ ଉତ୍ଫୁଲ୍ଲ ।
ବିପୁଳ ସେ ଫୁଲକୁ ଧରିବାର କାଳେ
ପୁରୁଷ ସ୍ତ୍ରୀ ଦୁଇ ତପ୍ତନେ ଦେଖିଲେ ।
ହାତକୁ ଧରାଧରି ହୋଇ ଯିବାପାଇଁ
ଗୋଳ କରୁଛନ୍ତି ସେ ଝିଙ୍କାଝିଙ୍କି ହୋଇ
ବଚନେ ବୋଲୁଛନ୍ତି ଯାର ଦୋଷ ହେବ
ବିପୁଳ ମିଥ୍ୟା ଭାଷ ଫଳ ସେ ଲଭିବ ।
ଏହା ଶୁଣି ବିପୁଳ ବଦନ ଶୁଖାଇ
ଭାବିଲେ ମୁଁ ପାପ କରି ତ କିଛି ନାହିଁ ।
ଏ ଦୁହେଁ ମୋତେ କାହିଁ ଦେଇଣ ଦୃଷ୍ଟାନ୍ତ
ଗୋଳ କରୁଅଛନ୍ତି ହୋଇ କ୍ରୋଧଚିତ୍ତ ।
ଏତେ ବୋଲି ତହୁଁ ପଦେ କେତେ ଯାଇ
ଦେଖିଲେ ଛ'ଜଣ ଖେଳନ୍ତି ପ୍ରୀତି ବହି ।
ସୁନା ସାର ସୁନା କାଠି ସେ କରିଛନ୍ତି
ଦାନମାନଙ୍କୁ ଡକା ପାଡ଼ିଣ ପକାନ୍ତି ।
ବଚନରେ ବୋଲନ୍ତି ହୁଡାଇଲେ ଖେଳ
ପାଇବ ସେ ବିପୁଳ ଦୁଷ୍କୃତର ଫଳ ।
ଏହା ଶୁଣି ବିପୁଳ ମନେ ଚିନ୍ତା କଲେ
ଗୁରୁପତ୍ନୀ ଦେହେ ତ ପଶିଥିଲି ଭଲେ ।
ଗୁରୁଙ୍କୁ ତ ତା ମୁହିଁ କହିନାହିଁ କିଛି
ଏଣୁ ମିଥ୍ୟାଦୋଷ ଯେ ମୋତେ ଲାଗିଅଛି ।
ଏହିରୂପେ ଅନେକ କରିଣ ବିଚାର
ଗୁରୁଠାକୁ ଆସି ବିପୁଳ ଋଷିବର ।

ଗୁରୁଙ୍କୁ ସେ ଆଣିବା ଫୁଲପାକ ଦେଲେ
ଗୁରୁଙ୍କ ପାଦପଦ୍ମ ଦୁଇରେ ନମିଲେ ।
ବିପୁଳଙ୍କୁ ଗୁରୁ ହୋଇଣ ହସ ହସ
ବୋଇଲେ ବାବୁ ସତ୍ୟ କରିଣ ପ୍ରକାଶ ।
ବନ-ଦେଶ ତ ଯାଇଥିଲ ଏକା ହୋଇ
କି ଦେଖିଲ ତାହା କହ ମୁଁ ଶୁଣିବଇଁ ।
ବିପୁଳ ବୋଇଲେ ମୁଁ ଯୋଡ଼ିଏ ପୁରୁଷ
ସ୍ତ୍ରୀ ଗ୍ରୀ ନେଖିଲି ଆହେ ଋଷିକୁଳ ଈଶ ।
ଏ ବାହାରେ ଛଅ ଜଣ ମୁଁ ଦେଖିଲି
କିଏ ସେ କହ ତାହା ଋଷିବର ଭଲି ।
ଗୁରୁ ବୋଇଲେ ସେ ପୁରୁଷ ସ୍ତ୍ରୀ ଗ୍ରୀ ଦୁଇ
ଦିନ ରାତ୍ରି ବୋଲି ଜାଣ ମୁଁ କହୁଥାଇଁ ।
ଯେଉଁ ଷଠ ଜଣ ଦେଖିଲ ଷଡ ଋତୁ
ବୋଲିକରି ଜାଣ ମନରେ କରି ହେତୁ ।
ସଭଙ୍କ ସୁକୃତ ଦୁଷ୍କୃତ କଥାଯାକ
ଗୋଚର ତାହାଙ୍କୁ ହେ ଋଷିଙ୍କ ତିଳକ ।
ଏହି ସକାଶୁଁ ଜାଣ ଲୁଗ୍ରିଇଣ ପାପ
କଲେ ହେଲେ ହୋଏଟି ପରଲୋକ ତାପ ।
ଗୁରୁପତ୍ନୀ ଦେହେ ପ୍ରବେଶ ତୁମ୍ଭେ କଲ
ଭୟ ପାଇ ମୋର ଆଗରେ ନ କହିଲ ।
ସେହି ହେନକରି ତ ମିଥ୍ୟାବାଣୀ ଦୋଷ
ଲଭିଲ ହେ ବିପୁଳ ଋଷିକୁଳ-ଈଶ ।
ଯେବେ ଗୁରୁପତ୍ନୀ ଦେହରେ ନ ରହନ୍ତ
କରନ୍ତା ରତିରେଗ ଶଚୀଦେବୀ-କାନ୍ତ ।
ମୋ ମର୍ଯ୍ୟାଦା ରଖିବା ସକାଶୁଁ ମୁଁ ତୋଷ
ହୋଇଣ ହେଲି ଜାଣ ତୁମ୍ଭର ମୁଁ ବଶ ।
ପ୍ରୀତି ବହି ଏବେ ଯେ ବୋଲୁଛି ତୁମ୍ଭଙ୍କୁ
ଆସ ମୋ ସଙ୍ଗେ ତୁମ୍ଭେ ଯିବା ହେ ସ୍ୱର୍ଗକୁ ।
ଏତେ ବୋଲି ଭାର୍ଯ୍ୟା ଶିଷ୍ୟ ସଙ୍ଗେ ହେନ
ହୋଇଲେ ତହୁଁ ଦେବଶର୍ମା ସ୍ୱର୍ଗଗ୍ରାମୀ ।
ଏ ଆଖ୍ୟାନ ଗଙ୍ଗାତୀରରେ ଯୁଧିଷ୍ଠିର
କହିଣ ଥିଲେ ମାର୍କଣ୍ଡେୟ ଋଷିବର ।
ତାହାଙ୍କଠାରୁ ମୁହିଁ ଶୁଣିଥିଲି ଯାହା
ତୁମ୍ଭ ଆଗେ କହିଲି ଜାଣିଥାଅ ତାହା ।
ଅସାଧୁ ସାଧୁଗୁଣ ସ୍ତ୍ରୀ ଗ୍ରୀଙ୍କଠି ଅଛି
ସ୍ତ୍ରୀ ଗ୍ରୀଙ୍କୁ ସବୁବେଳେ ବୋଲିବଟି ତୁଛ ।

କୋଟିକେ ଗୋଟିଏ ଅଛନ୍ତି ସତୀ ନାରୀ
ବନ ତୁଲେ ମହୀକି ଜାଣ ଛନ୍ତି ଧରି ।
ଦୁଷ୍ଟ ଲକ୍ଷଣ ତ ସ୍ତ୍ରୀ ଗ୍ରୀଙ୍କ ଅସାଧୁତା
ପୁରୁଷ କରୁଥିବେ ହୃଦେ ବିବେକ ତା ।
ଏହି ସକାଶୁଁ ଜାଣ ଈର୍ଷା ହିଂସା ସ୍ନେହ
ସ୍ତ୍ରୀ ଗ୍ରୀଙ୍କି ନ କରିବ ବହିକରି ମୋହ ।
ବିପୁଳଙ୍କର ବିନା ଆନ ଲୋକ ସ୍ତ୍ରୀ ଗ୍ରୀ
ରଖିଛି ବୋଲି ଶୁଣ ନାହିଁ ଦଣ୍ଡଧାରୀ ।
ବିପୁଳ-ଉପାଖ୍ୟାନ ହେଲା ସମାପତି
କହଇ କୃଷ୍ଣସିଂହ ଧରାକୋଟ-ପତି ।

—୦—

**ଚତୁର୍ବର୍ଣ୍ଣର ବିବାହ ଓ ଧନ ବିଭାଗ**

ଯୁଧିଷ୍ଠିର ବୋଇଲେ କାହାକୁ କନ୍ୟା ଦେବ
ପଚାରୁଛି ଏହା କହ ହେ ବିଜ୍ଞ ଭବ ।
ଭୀଷ୍ମ ବୋଇଲେ ଆହେ ଶୀଳ ବୃତ୍ତି ଗୁଣ
ଜାଣିକରି ବର କରିବ କନ୍ୟାଦାନ ।
କନ୍ୟା ବର ଦୁହିଙ୍କ ଏକ ମନ ଜାଣି
ବିଭା କଲେ ଗାନ୍ଧର୍ବ-ବିଭା ସେ ନୃମଣି ।
ଧନ ଦେଇ ଆଣି ବିବାହ ଘରେ ଦେଲେ
ଅସୁର-ବିବାହ ବୋଲନ୍ତି ତାକୁ ଭଲେ ।
ବନ୍ଧୁକୁ ମାରିଣ କନ୍ୟାକୁ ଆଣି ବିଭା
ହୋଇଲେ ପ୍ରକାଶେ ଆପଣା ବଳପ୍ରଭା ।
ରାକ୍ଷସ-ବିବାହ ବୋଲିଏ ସେ ରାଜନ
ମୋ କହିବାରୁ ଏହା ଭଲ କରି ହେନ ।
ପୈଶାଚିକ ଅସୁର ବିବାହ ଦୁହିଙ୍କି
କରିବା କଥା ନ ଆଣିବ ତ ମତକି ।
ବ୍ରାହ୍ମ୍ୟ କ୍ଷାତ୍ର ଗାନ୍ଧର୍ବ ବିବାହ କର୍ତ୍ତବ୍ୟ
ଅଟଇ ମନେକରି ଆହେ ନରଦେବ ।
ବ୍ରାହ୍ମଣ ତିନିବର୍ଣ୍ଣଯାକୁ ବିଭା ହେବ
କ୍ଷତ୍ରିୟ ଯେ ହେବ ସେ ଦୁଇବର୍ଣ୍ଣ ନେବ ।
ଦୁଇବର୍ଣ୍ଣ ନାରୀକି ଦ୍ୱିଜ ନାରୀବର
ଭାର୍ଯ୍ୟା ବୋଲିଏ ରାଜନ ମନେକର ।
ଶୂଦ୍ରସ୍ତ୍ରୀରୀ ଭୋଗ ବ୍ରାହ୍ମଣ ଯେବେ କରେ
ପ୍ରାୟଶ୍ଚିତ୍ତ କଲେ ଟି ସେ ପାତକୁଁ ତରେ ।
ବରକୁ ଯେ କନ୍ୟା ବୟସେ ହେବ ସାନ
ସେ ତାକୁ ବିଭା ହେବ ପାଣ୍ଡବ-ରାଜନ ।

ବାବୁ ଭାଇ ନ ଥିବା କନ୍ୟାକୁ ଯେ ବଭା
ହୋଏ ତା'ର ନ ପ୍ରକାଶଇ କୁଳପ୍ରଭା ।
ମାତା-ପିତା-ଭ୍ରାତା-ହୀନ ହୋଇଲେ କନ୍ୟା
କରିବ ସେ ଗୋଟିଏ ପତିରେ କାମନା ।
ମାତୃକୁଳରୁ ତିନିପୁରୁଷ ଅନ୍ତରେ
ବିଭା ହୋଇବ ଲୋକେ ଅତ୍ୟନ୍ତ ଯତ୍ନରେ ।
ସେ ରୂପେ ପିତୃସୀକୁଳରୁ ଯୁଧିଷ୍ଠିର
ଧରମ ଅଟଇଟି ବିଭା ହୋଇବାର ।
ଯୁଧିଷ୍ଠିର ବୋଇଲେ କନ୍ୟା ଦେବାପାଇଁ
ଧନକୁ ଆଣିଥିବ ପିତା ଲୋଭ ବହି ।
ଏହାମଧ୍ୟରେ ଯେତେ ଉତ୍ତମ କୁଳୀନ
ବର ଆସି ମିଳିବ ତହିଁ କି ବିଧାନ—
କରିବେ ପିତା, ଏହା କହ ମହାମତି
ଶୁଣିବାକୁ ମୋହର ବଳୁଅଛି ମତି ।
ଭୀଷ୍ମ ବୋଇଲେ ହେ, ଯେ ଦେଇଥିବ ଧନ
ତାକୁ ଛାଡ଼ି କରିବ କୁଳୀନେ ପ୍ରଦାନ ।
ଭଲ ବର ଛାଡ଼ି କଉଡ଼ିଲୋଭୀ ହୋଇ
କନ୍ୟା ଦେଲେ ଏଥୁ ପାତକ ଆଉ ନାହିଁ ।
କନ୍ୟା ଯେ କିଣଇ ବିକଇ ମହାଦୋଷ
ପାଅଇ ସେ ଜାଣ ହେ ପାଣ୍ଡବ-ନରେଶ ।
ବିକିବା କନ୍ୟାଠାରେ ହୁଏ ଯେତେ ପୁତ୍ର
କୁଳକୁ ପ୍ରାନ୍ତେ ସେ କରନ୍ତି ଅପବିତ୍ର ।
ପୁଅ ଝିଅ ବିକି ଯେ ଉଦର ପୋଷଇ
ସାତତାଳ ନରକ ଭିତରେ ମଜ୍ଜଇ ।
ଯୁଧିଷ୍ଠିର ବୋଇଲେ ପୁତ୍ରପର ଧନ
ସୁତାକୁ ପ୍ରାପତ କି ହୁଏ ତ ବଖାଣ ।
ଭୀଷ୍ମ ବୋଇଲେ ଆହେ ସୁତ ଯାର ନାହିଁ
ସୁତାକୁ ତାର ଧନ ପ୍ରାପତ ହୁଅଇ ।
ଯୁଧିଷ୍ଠି ବୋଇଲେ ବ୍ରାହ୍ମଣ ଚାରିବର୍ଣ୍ଣ
ଯାକରୁ ତ ଭାରିଯା କରିବ ଆଦାନ ।
ବୋଲି ମୋ ଆଗରେ କହିଲ ପିତାମହ
ଏହା ଜାଣି ମୁଁ ପଚାରୁଛି ବହି ମୋହ ।
ଚାରିବର୍ଣ୍ଣ ଭାରିଯା କଲେ ପୁତ୍ର ଜାତ
କିରୂପେ ଭାଗ ନେବା ତା ମୋତେ କହ ତ
ଭୀଷ୍ମ ବୋଇଲେ ଆହେ ତିନିବର୍ଣ୍ଣ ଝିଅ
ବିଭା ହୋଇ ଦ୍ୱିଜ କରିବ ଜାତ ପୁଅ ।

ଚତୁର୍ଥ ବର୍ଣ୍ଣ ଝିଅ ରତି ଭୋଗକଲେ
ବ୍ରାହ୍ମଣ ନରକରେ ପଡ଼େ ଜାଣ ଭଲେ ।
ଯେବେ ନ ଜାଣିଣ ଚତୁର୍ଥ ବର୍ଣ୍ଣ ଝିଅ
ଘରେ ରଖି ଦ୍ୱିଜ କରିବ ଜାତ ପୁଅ ।
ତେବେ ନିଜ ଧନକୁ ଦଶଭାଗ କରି
ଯେରୂପେ ବାଣ୍ଟିବ ତା ଶୁଣ ଦଣ୍ଡଧାରୀ ।
ଚାରିଭାଗ ସ୍ୱଜାତି ପୁତ୍ରେ ସମର୍ପିବ
ତିନିଭାବ କ୍ଷତ୍ରିୟ ପୁତ୍ରେ ଯାଚି ଦେବ ।
ଦୁଇଭାଗ ଦେବ ଯେ ବୈଶ୍ୟ ସ୍ତ୍ରୀ-ପୁତ୍ରକୁ
ଭାଗେ ଦେବ ଶୂଦ୍ରୀ ପୁତ୍ରକୁ ଖାଇବାକୁ ।
ସବର୍ଣ୍ଣସ୍ତ୍ରୀଠାରୁ ଯେତେ ପୁତ୍ର ଜାତ
ତେତେକକୁ ସମାନ ଭାଗଟି ପ୍ରାପତ ।
ତିନିବର୍ଣ୍ଣ ସ୍ତ୍ରୀର ପୁତ୍ର ଦ୍ୱିଜ ହୋଏ
ଚତୁର୍ଥବର୍ଣ୍ଣ ପୁତ୍ର ଶୂଦ୍ରଟି ବୋଲାଏ ।
ତ୍ରିବର୍ଗ ଭୋଜନୁ ଅଧିକ ଧନଧାନ୍ୟ
ହେଲେ ତାହାକୁ ଯାଗ କରିବ ବ୍ରାହ୍ମଣ ।
ବାବୁଘର ଯେ ଧନ୍ୟ ଭାର୍ଯ୍ୟା ଆଣିଥାଏ
ବାବୁ ଗୃହେଁ ଥାଏ ତା ଝିଅ ଦେନଯାଏ ।
ଯୁଧିଷ୍ଠିର ବୋଇଲେ ଶୁଦ୍ରସ୍ତ୍ରୀ ସୁତ
ବ୍ରାହ୍ମଣ ତ ନୁହଇ ଏ ତୁମ୍ଭର ମତ ।
କାହିଁ ପାଇଁ ବୋଇଲେ ଦେବ ଭାଗୁଟିଏ
ଏଥିରେ ହେଉଛି ସନ୍ଦେହ ମୋ ହୃଦୟେ ।
ବ୍ରାହ୍ମଣ-କ୍ଷତ୍ରୀ-ବୈଶ୍ୟ-ସ୍ତିରୀ ପୁତ୍ରମାନେ
ବ୍ରାହ୍ମଣ ତ ହୋଇଲେ ତୁମ୍ଭର ବଚନେ ।
କାହିଁ ପାଇଁ ଏହାଙ୍କ ଭାଗ କ୍ରମେ ଊଣା
ହେଲା ଏହା କହ ମୋ ହୁଏ ବୁଦ୍ଧି ବଣା ।
ଭୀଷ୍ମ ବୋଇଲେ ହେ ବ୍ରାହ୍ମଣମାନଙ୍କର
ମୂଳ ଭାରଯାଟି ବ୍ରାହ୍ମଣୀ ମନେ କର ।
ବ୍ରାହ୍ମଣୀ ଥାନ୍ତେ ଧର୍ମକାର୍ଯ୍ୟ ଆନ ଭାର୍ଯ୍ୟା ।
କରି ନ ପାରଇ ହେ ଜାଣ ମହାରାଜା ।
ଯେବେ କାମରେ ତାହା ବ୍ରାହ୍ମଣୀ ଅନ୍ୟଥା
କରଇ ତେବେ ଜାଣ ନ ରହେ ଏ ବ୍ୟବସ୍ଥା
ଏ ସକାଶରୁ ହେ ରାଜନ ବ୍ରାହ୍ମଣୀର
ତୁମ୍ଭର ଜ୍ୟେଷ୍ଠଭାଗ ନିଏ ମନେକର ।
କ୍ରମରେ ଊଣା ଊଣା କରି ଦୁଇଜାତି
ନାରୀଙ୍କର ପୁତ୍ରେ ଯେ ଭାଗଟି ନିଅନ୍ତି ।

ଯୁଧିଷ୍ଠି ବୋଇଲେ ବ୍ରାହ୍ମଣଧର ଭାଗ ।
ଶୁଣିଲି ଗୁଚିଲା ମୋ ହୃଦୁ ଶଙ୍କାଭାବ ।
ବାକି ତିନିବର୍ଣ୍ଣ ଅଛନ୍ତି ତାଙ୍କ ଧନ
ବିଭାଗ କହ ମୋତେ ଧୀଷ୍ମ ରଥୀବର ।
ଧୀଷ୍ମ ବୋଇଲେ ହେ କ୍ଷତ୍ରିୟ ବୈଶ୍ୟ ଭାର୍ଯ୍ୟା
କ୍ଷତ୍ରିୟର ବିହିତ ଜାଣ କୁରୁରାଜା ।
ଶୂଦ୍ରସ୍ତ୍ରୀ କେବଳ ଭୋଗ୍ୟା ବୋଲାଏ
ଧରମ କଥାକୁ ସେ ନ ଆସଇ ରାୟେ ।
କ୍ଷତ୍ରି ଧନଦ୍ରବ୍ୟ କରିବ ଆଠ ଭାଗ
କ୍ଷତ୍ରିୟର ପୁତ୍ରକୁ ଦେବ ଚାରିଭାଗ ।
ଏ ବାହାରେ ବାକୁରେ ଯୁଦ୍ଧ ସାମଗ୍ରୀ
ଘେନିଯିବ କ୍ଷତ୍ରିୟା-ସୁତ ନ ବିଚାରି ।
ବୈଶ୍ୟାଆଡ଼ର ପୁଅ ନେବ ତିନିଭାଗ
ଶୂଦ୍ରାପୁଅ ଭାଗେ ନେବ ହେ ନରଦେବ ।
ପିତାର ଦତ୍ତ ବିନା ଶୂଦ୍ରର ତନୟ
ଭାଗରେ କିଛି ନ ପାରଇ ବାଣୀତୟ ।
ବୈଶ୍ୟକୁ ଲେଖିଅଛି ସ୍ୱଜାତିରେ ଭାର୍ଯ୍ୟା
କରିବ ପୁଣି ସୁଖପାଇଁ ଶୂଦ୍ର ଭାର୍ଯ୍ୟା ।
ବୈଶ୍ୟ ଶୂଦ୍ରାଏ ଦୁହେ ପ୍ରସବିଲେ ସୁତ
ଯେ ରୂପେ ଭାଗ ନେବେ ଶୁଣ ଧର୍ମପୁତ୍ର ।
ବୈଶ୍ୟ ଧନଧନ କରିବ ପାଞ୍ଚଭାଗ
ସ୍ୱଜାତି ପୁତ୍ରଟିକି ଦେବ ଚାରିଭାଗ ।
ଗୋଟିଏ ଭାଗ ଶୂଦ୍ର ପୁତ୍ରକୁ ଦେବାର
ଧରମ ଅଟଇ ରାଜନ ମନେକର ।
ଶୂଦ୍ରରଠାରେ ଆନ ଜାତିର ଭାର୍ଯ୍ୟା
ସମ୍ଭବଇ ନାହିଁ ହେ ଜାଣ ମହାରାଜା ।
ଶଏପୁତ୍ର ହୋଇଲେ ଶୂଦ୍ରମାନଙ୍କର
ସବୁରି ହେବ ସମଭାଗେ ଅଧିକାର ।
କେବଳ କହୁଥାଇ ଚାରିବର୍ଣ୍ଣଙ୍କରେ
ଯେଉଁ ପୁତ୍ର ଜାତ ହୁଅଇ ସବର୍ଣ୍ଣରେ ।
ଜ୍ୟେଷ୍ଠଅଂଶ ତାଠାରେ ସମ୍ଭବଇ ରାଏ
ଗୁଚିଗଲା ହେ, ଥିଲେ ସନ୍ଦେହ-ହୃଦୟେ ।
ଏହିରୂପେ ମରୀଚି ନନ୍ଦନ କଶ୍ୟପ ।
କହିଛନ୍ତି ଜାଣ ହେ ପାଣ୍ଡୁକୁଳ ନୃପ ।
ଚାରି ବର୍ଣ୍ଣ ଧନ ବିଭାଗ ହେଲା ଶେଷ
କହଇ ଗୀତେ କୃଷ୍ଣସିଂହ ନରଈଶ ।

## ବର୍ଣ୍ଣସଙ୍କର ବୃତ୍ତାନ୍ତ

ଯୁଧିଷ୍ଠିର ବୋଇଲେ ଯେ ବର୍ଣ୍ଣସଙ୍କର
ହୋଏ ତାର କି କର୍ମ କର ତା ବିସ୍ତାର ।
ଧୀଷ୍ମ ବୋଇଲେ ହେ ସଙ୍କର ବର୍ଣ୍ଣ କର
ସର୍ଜନା କର ତ ନାହାନ୍ତି କୁଣ୍ଡୋଦରୀ ।
ବର୍ଣ୍ଣସଙ୍କରକୁ କରଇ ଜାଣ ଯେହି
ତାହା କଥା କହିବା ଶୁଣ ମନ ଦେଇ ।
ବ୍ରାହ୍ମଣ ସ୍ତ୍ରୀଠାରେ କ୍ଷତ୍ରି କଲେ ସୁତ
ବୋଲାଏଟି ତା ନାମ ଜଗତରେ ସୂତ ।
ବୈଶ୍ୟ-ବୀର୍ଯ୍ୟେ ବ୍ରାହ୍ମଣୀ ପୁତ୍ର ଜାତ କଲେ
ବୈଦେହକ ବୋଲି ତାହାକୁ ବୋଲି ଭଲେ ।
ବ୍ରାହ୍ମଣୀ ସ୍ତ୍ରୀ ଆଡେ ଶୂଦ୍ର କଲେ ସୁତ
ଚଣ୍ଡାଳ ବୋଲାଏ ଦ୍ରୌପଦୀଦେବୀ-କାନ୍ତ ।

ଏରୂପେ ବିଲୋମ ଭାର୍ଯ୍ୟା ତିନି ଜାତି
କଲେ ବର୍ଣ୍ଣସଙ୍କର ପୁତ୍ରେ ବୋଲାଅନ୍ତି ।
କ୍ଷତ୍ରିୟ ସ୍ତ୍ରୀଙ୍କର ବୈଶ୍ୟ ଆଡ଼େ ସୁତ
ହେଲେ ଭାଟ ବୃତ୍ତିରେ ପୋଷନ୍ତି ଜୀବିତ ।
କ୍ଷତ୍ରିୟ ସ୍ତ୍ରୀଠାରେ ଶୂଦ୍ର ପୁତ୍ର କଲେ
କେଉଟ ବୋଲି ତାକୁ କହି ରାଏ ଭଲେ ।
ବୈଶ୍ୟ ସ୍ତ୍ରୀଆଡ଼ରେ ଶୂଦ୍ର କଲେ ପୁତ୍ର
ବଢାଇ ବୋଲାଏ ସେ ଜାଣ ଏ ଜଗତ ।
ବର୍ଣ୍ଣସଙ୍କରଙ୍କର ପୁତ୍ର ଯେ ହୁଅଇ
ତାହାକୁଟି ହେ ରାଏ ସେହି ନାମ କହି ।
ଏ ବାହାରେ କ୍ରମରେ ହୁଅନ୍ତି ଏ ହୀନ
ମୋ କହିବାରୁ ଜାଣ ପାଣ୍ଡବ-ରାଜନ ।
ଚାରିବର୍ଣ୍ଣ ବିନା ସଙ୍କରମାନଙ୍କରେ
ଧର୍ମ ଅଛି ବୋଲି କେ ବୋଲିବ ଭୂଣ୍ଡରେ ।
ସଙ୍କରେ ଯେବେ ଦୟା ଧର୍ମପର ହୋଇ—
ହରନ୍ତି ଦିନ ତେବେ ତରନ୍ତି ସେ ଯାଇଁ ।
ଅବିଦ୍ୟା ବିଦ୍ୟାବନ୍ତ ଛନ୍ତି ଯେତେ ଜନ
କାମିନୀଟି ମୋହୁଛି ତେତେକର ମନ ।

ଏହି ସକାଶୁଁ ଜାଣ ଜାଗରୁକ ହୋଇ
ସ୍ତ୍ରୀଠାରେ ଥିବ ହେ ତୁମ୍ଭଙ୍କୁ କହଇଁ ।
ଯୁଧିଷ୍ଠି ବୋଇଲେ ସଙ୍କରବର୍ଣ୍ଣ ହୋଇ
ଆର୍ଯ୍ୟ ପରି ସଭାରେ କହି ବସିଥାଇ ।

ତାହାକୁ କିରୂପେ ଜାଣିବା ରଥୀବର
କହ ଶୁଣିବାକୁ ହେଉଛି ମନ ମୋର ।
ଭୀଷ୍ମ ବୋଇଲେ ହେ କରୁଷଯୋନ-ଜାତ
ଅବଶ୍ୟ ଅନାଗ୍ରହେ ବଳାଅଇ ଶତ୍ରୁ ।
ଅସଦବୃତ୍ତି ହେଲା ବ୍ରାହ୍ମଣର ପୂଜା ।
ଗୁଡ଼ ସଦବୃତ୍ତି ଶୂଦ୍ରକୁ କରେ ପୂଜା ।
ବର୍ଣ୍ଣମାନଙ୍କର ଏ ସଙ୍କରବର୍ଣ୍ଣନା
ଶେଷ କଲେ ବ୍ୟାସ ଋଷିଙ୍କ ମହାମନା ।
ତାହାଙ୍କର ପାଦ ଯୁଗଳ ମନେ ଧ୍ୟାୟି
କୃଷ୍ଣସିଂହ ନରେଶ ଏ ଗୀତ କହଇ ।

—*—

## ନାରଦ ମାର୍କଣ୍ଡେୟ ସମ୍ବାଦ

ଯୁଧିଷ୍ଠିର ବୋଇଲେ କେଉଁ ସ୍ତ୍ରୀଙ୍କଠାରେ
ପୁତ୍ର ଜନ୍ମିଲେ କି ବୋଲନ୍ତି ତାକୁ ଭଲେ ।
ଏହା ଶୁଣିବାକୁ ହେଉଛି ମୋର ମନ
କହିବା ହେଉ ମୋତେ ହେ ପିପଦ ପୂଜନ ।
ଭୀଷ୍ମ ବୋଇଲେ ଆହେ ଗଙ୍ଗା ଯମୁନାଙ୍କ—
ମଧ୍ୟରେ ନାରଦାଦ୍ଧ ଗୁଡ଼ ମନୁ ଶୋକ ।
ତୀର୍ଥଯାତ୍ରା କରିବା ପାଇଁ ଯାଉଥିଲେ
ମାର୍କଣ୍ଡେୟ ଋଷିଙ୍କ ତୁଲେ ଦେଖାହେଲେ ।
ଋଷି ମାନେ ମାର୍କଣ୍ଡେୟଙ୍କୁ କରି ପୂଜା
କି କରିବୁଁ ପୁଚ୍ଛିଲେ ତୋଷ ଧରି ମଜ୍ଜା ।
ମାର୍କଣ୍ଡେୟ ବୋଇଲେ ତୁମ୍ଭେ କି ପଚ୍ଚର
କହ ତ ମୋତେ ଯୋଗ ଧର୍ମର ବିସ୍ତର ।
ଋଷିଙ୍କ ସନମତେ ନାରଦ ମହର୍ଷି
ମାର୍କଣ୍ଡେୟ ଋଷିଙ୍କି କହିଲେକ ହସି ।
କେଉଁ କଥା ସଂଶୟ ହେଉଛି ତୁମ୍ଭର
ତାହାକୁ ମୋତେ ମାର୍କଣ୍ଡେୟ ହେ ପଚ୍ଚର ।
ମାର୍କଣ୍ଡେୟ ବୋଇଲେ ତିନିଯୁଗଙ୍କର
ଧରମ ପାଦେ ଉଣା ହୁଅଇ କ୍ରମରେ ।
କଳିଯୁଗ-ଲୋକେ ତ ଅତି ଧର୍ମହୀନ
କାହାକୁ ହବ୍ୟ କବ୍ୟ କରିବେ ସେ ଦାନ ।
ଏହା ମୋର ଆଗେ କହ ତ ଋଷିବର
ପ୍ରସନ୍ନ ଯେବେ ଚିତ୍ତ ହୋଇଛି ତୁମ୍ଭର ।

ନାରଦ ବୋଇଲେ ହେ ଦେବତା ପିତୃଙ୍କୁ
ମନ୍ତ୍ର ପଢ଼ିଣ ଦେଲେ ମିଳଇ ତାହାଙ୍କୁ ।
ମାର୍କଣ୍ଡେୟ ବୋଇଲେ ମନ୍ତ୍ରହୀନ ହୋଇ
ଦେଲେ ବଳି କି ହୋଏ କହ ତା ବତାଇ ।
ନାରଦ ବୋଇଲେ ହେ ଋଷି ଗୁଣବନ୍ତ
ବଳି ଯେବେ ଦିଅନ୍ତି କରି ମନ୍ତ୍ରହୀନ ।
ଅସୁର ରାକ୍ଷସ ପିଶାଚ ଭୂତଗଣ
କ୍ରମରେ ପାଆନ୍ତି ନିଃସନ୍ଦେହେ ଜାଣ ।
ମାର୍କଣ୍ଡେୟ ବୋଇଲେ ମୃତପ୍ତିଙ୍କି ସୁତେ
ପିଣ୍ଡ ଦେଲେ କେ ପାଏ କହ ତାହା ମୋତେ
ନାରଦ ବୋଇଲେ ହେ ପିଶାଚ ରାକ୍ଷସ
ମୃତପୁତ୍ର ପିଣ୍ଡକୁ କରନ୍ତି ଗ୍ରାସ ।
ମାର୍କଣ୍ଡେୟ ବୋଇଲେ ପିତୃ ଦେବ ଦୁଇ
କହ ତ ପୂଜା କଲେ କି ଫଳ ଲଭଇ ।
ନାରଦ ବୋଇଲେ ହେ ଇଷ୍ଟ ମନୋରଥ
ପାଇ ସେ ପୂଜା ବଳେ ପାଏ ପୁରୁଷାର୍ଥ ।
ମାର୍କଣ୍ଡେୟ ବୋଇଲେ ପିଣ୍ଡଦାନ ଖ୍ୟାତ ।
କହିଲ ତ ମୋତେ ନାରଦ ମହାମତ ।
ଦୁହିତା ପୁତ୍ରଙ୍କର ଧର୍ମ ଋଷିବର
କହ ତ ଶୁଣିବାକୁ ମନ ହୁଏ ମୋର ।
ନାରଦ ବୋଇଲେ ହେ ଯୁବାକନ୍ୟା ଘରେ
ରଖିଲେ ଲୋକ ପଡ଼େ ଯାଇ ନରକରେ ।
ହେ ଶ୍ରେୟ ସ୍ୱୟମ୍ବର କରେ ଯେଉଁ କନ୍ୟା
ଦ୍ୱିଜକୁ ବୋଲିବନ୍ତି ତାହାକୁ ନ ଅନ୍ୟା ।
ମାର୍କଣ୍ଡେୟ ବୋଇଲେ କନ୍ୟାକାଳ ସୁତ
କାହାକୁ ପିଣ୍ଡ ଦେବ କହ ତପୋବନ୍ତ ।
ନାରଦ ବୋଇରେ ହେ କନ୍ୟାକାଳ ପୁତ୍ର
ପିତୃଙ୍କୁ ପିଣ୍ଡ ଦେବ ଲେଖିଅଛି ଶାସ୍ତ୍ର ।
କନ୍ୟାକାଳେ ଗର୍ଭ ହୋଇ ଯେ ବିଭା ହୋଏ
ବିଭା ହୋଇ ଲୋକ ତା ପିଣ୍ଡ ପ୍ରାପ୍ତ ନୋହେ ।
ମାର୍କଣ୍ଡେୟ ବୋଇଲେ ଆହେ ଋଷିମଣି
କିଣି ଆଣି ମାଗି ଆଣି ବା ବଳେ ଆଣି ।
ନାରୀ ଆଡ଼େ ପୁରୁଷ କଲେ ପୁତ୍ର ଜାତ
କାହାର ସେ ବୋଲାଏ କହ ତପୋବନ୍ତ ।
ନାରଦ ବୋଇଲେ ଯେ କରେ ପୁତ୍ର ଜାତ
ତାହାର ସେହି ଜାଣ ବୋଲାଅଇ ସୁତ ।

ମାର୍କଣ୍ଡ ବୋଇଲେ କନ୍ୟାଏ ଶୁଭକାର୍ଯ୍ୟ—
କଥାକୁ କମ୍ପା ଯୋଗ୍ୟ ହେଲେ ତପୀରାଜ ।
ନାରଦ ବୋଇଲେ ହେ ଶୁଭକଥା ଯେତେ
କନ୍ୟା ସ୍ତ୍ରୀ ଶ୍ରୀ ଦେହରେ ରହିଥାଏ ତେତେ ।
ମାର୍କଣ୍ଡେୟ ବୋଇଲେ ପର ପୁରୁଷର—
ଆଡ଼େ ପର ସ୍ତ୍ରୀଏ କରନ୍ତି କୁମର ।
କାହାର ସେ ପୁତ୍ର ବୋଲାଏ ଋଷିମଣି ।
ଶୁଣିବାକୁ ଇଚ୍ଛା ହୋଏ ମୋ କର୍ଣ୍ଣ ବେନି ।
ନାରଦ ବୋଇଲେ ହେ ଯାର ଆଡ଼େ ସୁତ
ପତି ଥାଉଁ ହେଲେ କୁଣ୍ଡ ତା ନାମ ଖ୍ୟାତ ।
ପତି ମଲା ଉତ୍ତାରୁ ହୁଅଇ ଯେ ସୁତ
ଗୋଲକ ନାମ ତାର ହୁଅଇ ବିଦିତ ।
କୁଣ୍ଡ ଗୋଲକଙ୍କର ପିଣ୍ଡକୁ ରାକ୍ଷସେ
ଗ୍ରାସ କରି ଥାନ୍ତି ଫୁଲଅନ୍ତି ସନ୍ତୋଷେ ।
ମାର୍କଣ୍ଡେୟ ବୋଇଲେ ସ୍ତ୍ରୀଙ୍କ ଚଞ୍ଚଳ
କଥା ମୋତେ କହ ନାରଦ ବ୍ରହ୍ମବାଳ ।
ନାରଦ ବୋଇଲେ ହେ ଭଗଲିଙ୍ଗ ଦୁଇ
ବ୍ରହ୍ମାଙ୍କଠାରୁ ଯେ ଥିଲେ ବର ପାଇ ।
ଏହି ସକାଶରୁ ସେ ଦୁହିଁଙ୍କ ସଂଯୋଗ
ହେଲେ ହୁଅଇଟି ନରଙ୍କୁ ପାପ ଭୋଗ ।
ରଜ ହୋଇଲେ ଶୁଦ୍ଧ ବୋଲାଅନ୍ତି ନାରୀ
କହୁଛି ଜାଣ ମାର୍କଣ୍ଡେୟ ତପସ୍ବୀ ।
ମାର୍କଣ୍ଡେୟ ବୋଇଲେ ବହୁ ଭାର୍ଯ୍ୟା କଲେ
ପୁରୁଷ କି କରିବ କହ ତାହା ଭଲେ ।
ନାରଦ ବୋଇଲେ ହେ ନ ଥିବ ଯା ସୁତ
ଋତୁକାଳେ ତାକୁ ଭୋଗିଥାଇ କାନ୍ତ ।
ପୁତ୍ର ଥିବା ନାରୀକି ଋତୁରେ ସୁରତ
ନ କଲେ ନୁହଇଟି ଦୋଷ ପରାପତ ।
ବ୍ୟାଧିମନ୍ତ ପ୍ରବାସୀ ପତି ଯେବେ ହେବ
ଋତୁ-ଦୋଷ ତାକୁ ନ ଲାଗେ ଋଷିଦେବ ।
ମାର୍କଣ୍ଡେୟ ବୋଲେ ଅପୂର୍ବୀ ପୁତ୍ରବନ୍ତୀ
ଭାରିଯା ଛାଡ଼ିଲେ କି ଦୋଷ ହୁଏ ଯତି ।
ନାରଦ ବୋଇଲେ ହେ ଅପାପୀ ଭାର୍ଯ୍ୟାକୁ
ଛାଡ଼ିଲେ ଲୋକ ବାଟ କାଟନ୍ତି ନର୍କକୁ ।
ମାର୍କଣ୍ଡେୟ ବୋଇଲେ ମିଥ୍ୟା-ଅପବାଦ
ଦେଇ ଭାରିଯାକୁ ଯେ ଛାଡ଼େ ବହୁ ମୋଦ ।
ତାହାକୁ ଦୋଷ ହୋଏ ନୋହେ କି ପ୍ରାପତ
ଏହା ମୋତେ କହ ନାରଦ ମହାମତ ।
ନାରଦ ବୋଇଲେ ହେ ଅପବାଦ ଦେଇ ।
ମିଥ୍ୟାରେ ଯେ ଛାଡ଼େ ତାଠାରୁ ପାପୀ ନାହିଁ ।
ଏହିରୂପେ ନାରଦ ମୁଖ ବାଣୀ ଶୁଣି ।
ସନ୍ତୋଷ ହୋଇ ମାର୍କଣ୍ଡେୟ ଋଷିମଣି ।
ନାରଦ ମହର୍ଷି ବରଙ୍କୁ ପୂଜା କଲେ
ଯେ ଯାହାର ମନକୁ ତୀର୍ଥ କରିଗଲେ ।
ଏଠାରେ ମାର୍କଣ୍ଡେୟ ପୂଜା ସମାପତ
ହେଲା କହଇ କୃଷ୍ଣସିଂହ ନରପତ ।

—*—

## ଚ୍ୟବନ ଉପାଖ୍ୟାନ
## ଗୋ-ମାହାତ୍ମ୍ୟ

ଯୁଧିଷ୍ଠିର ବୋଇଲେ ପରର ପୀଡ଼ନ
ସହବାସେ କି ସ୍ନେହ ହୁଏ ତା ବଖାଣ ।
ଏ ବାହାରେ ଗାଈମାନଙ୍କର ମାହାତ୍ମ୍ୟ
କହିବ ଆହେ ଭୀଷ୍ମ ରଥିଙ୍କ ଉତ୍ତମ ।
ଭୀଷ୍ମ ବୋଇଲେ ଆହେ ଏଥିପାଇଁ ଯାହା
କହିବା ତା ଶୁଣ ପାଣ୍ଡବ ନରନାହା ।
ପୂର୍ବକାଳେ ଚ୍ୟବନ ବାରଟି ବରଷ
ଜଳମଧ୍ୟରେ ଯାଇ କରନ୍ତେ ନିବାସ ।
ସବୁ ଜଳଜନ୍ତୁ ଚ୍ୟବନ ଋଷିଙ୍କର
ବଶ ହୋଇଲେ ଆହେ ନୃପତି-ଶେଖର ।
ଗଙ୍ଗା-ଯମୁନାଙ୍କର ପ୍ରବାହ ଚ୍ୟବନ
ତପୋବଳରେ ଜାଣ କଲେଟି ନିଗ୍ରହନ ।
ଚ୍ୟବନଙ୍କୁ ପ୍ରଦକ୍ଷିଣ କରିଣ ଗଲେ
କେବେ ତାଙ୍କୁ ସ୍ରୋତରେ ଭସାଇ ନ ନେଲେ
କାଠ ପଡ଼ିଥିବା ପରାୟେ ଋଷିବର
ଜଳମଧ୍ୟେ ବସିଲେ ନେହେ ସବୁଙ୍କର ।
ଏରୂପେ କେତେ କାଳ କଲେ ଋଷି ତପ
ହେବା ପାଇଁ ଆପଣା ଦେହଟି ନିଷ୍ପାପ ।
ଏହି କାଳେ କେଉଟେ ଜାଲ ଧରିକରି
ଆସିଲେ ରାଜନ ସେଠାକୁ ମାଛ ମାରି ।
ଗଙ୍ଗା ଯମୁନାଜଳେ ଜାଲକୁ ଫିଙ୍ଗିଲେ
ମାଛ ଭୁଲେ ଋଷିଙ୍କି ଓଟାରି ଆଣିଲେ ।

ଜଟା ଚୀରବସନ ଧରିକରି ଋଷି
ଜାଲେ ପଡ଼ି ଦେଇଅଛନ୍ତି ଆଖି ଖୋଷି ।
କେଉଟମାନଙ୍କର ଏ ସକାଶୁଁ ନୃପ
ଅଧିକ ହୋଇକରି ବଢ଼ିଲା ସନ୍ତାପ ।
ଋଷିଙ୍କର ସେ ଦୁଇ ପାଦକୁ ଧରିଲେ
କ୍ଷମାକର ହେ ଦୋଷ ବୋଲିଣ କହିଲେ ।
ନ ଜାଣି ଆମ୍ଭେମାନେ ଜାଲରେ ତୁମ୍ଭଙ୍କୁ
ଆଣିଲୁ ଆହେ ଋଷିବର ଏ କୂଳକୁ ।
ତୁମ୍ଭର ଏବେ କେଉଁ ପ୍ରିୟ କଥା ଆମ୍ଭେ
କରିବୁ ତାହା ମହର୍ଷି କହ ତୁମ୍ଭେ ।
ଚ୍ୟବନ ବୋଇଲେ ମାଛଙ୍କ ତୁଲେ ଥିଲି
ମାଛ ତୁଲେ ଆସିଣ କୂଳରେ ପଡ଼ିଲି ।
ମାଛଙ୍କୁ ତୁମ୍ଭେମାନେ ଦେବ ଯେଉଁ ଦଶା
ଜାଣ ମୋହରଟି ହୋଇବ ସେହି ଦଶା ।
ନୋହିଲେ ବା ଏ ମାଛମାନଙ୍କର ସଙ୍ଗେ
ଆମ୍ଭର ଆତମାକୁ ବିକ୍ରୟ କର ତୁମ୍ଭେ ।
ଏରୂପେ ଋଷିଙ୍କର ବଚନକୁ ଶୁଣି
ଦୁଃଖ କରି ଯାଇ ସେଠାରୁ ଦାସଶ୍ରେଣୀ ।
ନହୁଷ ନୃପତିଙ୍କି ଋଷିଙ୍କ ବୃତ୍ତାନ୍ତ
କହିଲେ ଯୋଡ଼ିକରି ମସ୍ତକରେ ହସ୍ତ ।
ନହୁଷ ଶୁଣିକରି କେଉଟଙ୍କ ବାଣୀ
ଲଆର କରି ସୈନ୍ୟ ସେକ୍ଷଣି ନୃମଣି ।
ମନ୍ତ୍ରୀ ପୁରୋହିତଙ୍କୁ ସଙ୍ଗତେ ଘେନିଲେ
ଋଷି ଥିବାଠାରେ ସେ ପ୍ରବେଶ ହୋଇଲେ ।
ପୁରୋହିତ ହାତେ ଋଷିଙ୍କି ପୂଜାବିଧି
କରାଇଲେ ନୃପତି ଦେଖି ଶାସ୍ତ୍ରବିଧି ।
ଋଷିବରଙ୍କ ପାଦଦୁଇରେ ନମିଲେ
କି ପ୍ରିୟ କରିବି ମୁଁ କହ ଋଷି ଭଲେ ।
ଋଷି ବୋଇଲେ ଆହେ ନୃପତି ଶେଖର
ମାଛ ତୁଲେ ମୋତେ ଆପଣେ ମୂଲକର ।
କେଉଟମାନଙ୍କୁ ସେ କଉଡ଼ିକ ଦେଇ
ତୋଷ ମୋର ମନକୁ ଚନ୍ଦ୍ରବଂଶ-ସାଇଁ ।
ଏହାକୁ ଶୁଣିକରି ସହସ୍ର ସୁନଆ
ନୃପତି ଗଣିଦେଲେ ହୋଇକରି ଠିଆ ।
ଋଷି ବୋଇଲେ ହେ କି କଲ ନରବର
ମୋ ତୁଲେ କଲ ଗୁରୁ ସୁନଆଁ ନଜର ।

ଏହା ଶୁଣିଣ ରାଜା ଲକ୍ଷେ ସୁନଆଁକୁ
ଦେଲେ, ନିଅ ବୋଲିଣ ନିଷାଦମାନଙ୍କୁ ।
ଚ୍ୟବନ ବୋଇଲେ ନୁହେଁ ମୋତେ ସରି
ପଚ୍ଚାରି ମନ୍ତ୍ରୀମାନଙ୍କୁ ହେ ଦଣ୍ଡଧାରି ।

ଏହା ଶୁଣିଣ ରାଜା କୋଟି କୋଟି ସୁନା
ବୋଇଲେ କେଉଟଙ୍କୁ ଦିଅ ମହାମନା ।
ଋଷି ବୋଇଲେ ହେ ରାଜା କି ହେଲ ବାଇ
ସହସ୍ରେ କୋଟି ସୁନା ମୋ ସମ ନୁହଇ ।
ରାଜା ବୋଇଲେ ଆହେ ମୋ ରାଜ୍ୟରୁ ଅଧ
ନେଇକରି ହେ ଋଷି ନିଷାଦଙ୍କୁ ବୋଧ ।
ଋଷି ବୋଇଲେ ହେ ସମଗ୍ର ରାଜ୍ୟ ଦେଲେ
ମୋତେ ସରି ନୁହଇ ନୃପ ଜାଣ ଭଲେ ।
ମହାଋଷିମାନଙ୍କୁ ଡ଼କାଇ ପଚ୍ଚାରି
ସେ ତୁମ୍ଭଙ୍କୁ କହିବେ ଦେବାକୁ ବିଚ୍ଚାରି ।
ଏହିକାଳରେ ଗବିଜାତ ନାମେ ମୁନି
ଭେଟିଲେ ଆସିକରି ନହୁଷ ନୃମଣି ।
ରାଜାଙ୍କୁ ବୋଇଲେ ହେ କହିବି ଯେ କଥା
କରିବ କି ତା କହ ନୃପ ମହାରଥା ।

ନହୁଷ ବୋଇଲେ ହେ ଏ ଋଷିଙ୍କ ମୂଲ
କହିକରି ମହିରେ ରଖ କାର୍ତ୍ତି ଭଲ ।
ଏ ଋଷି କ୍ରୋଧ ହେଲେ ରାଜ୍ୟ ତୁଲେ ମୁହିଁ
ନିଶ୍ଚୟ ଜଳିଯିବି ଜାଣୁଛି ଗୋସାଇଁ ।
ଗବିଜାତ ଋଷି ବୋଇଲେ ଗାଈ ଦିଅ
ସନ୍ତୋଷ ହୋଇ ଯିବେ-ଭୃଗୁକୁଳ-ପୁଅ ।

ଏହା ଶୁଣି ନହୁଷ ରାଜା ହୃଷ୍ଟ ହେଲେ
ଚ୍ୟବନ ଋଷିଙ୍କର ସମୀପକୁ ଗଲେ ।
ବୋଇଲେ ଗାଈ ଦେଇ କିଣିଲି ତୁମ୍ଭଙ୍କୁ
ତୁମ୍ଭ କଥା ନାହିଁ ଆମ୍ଭଙ୍କୁ କହିବାକୁ ।
ଚ୍ୟବନ ବୋଇଲେ ଉଠୁଛି ତୋଷ ବହି
ଗାଈରୁ କାହିଁ ବଡ଼ ହୋଇ ମୂଲ ନାହିଁ ।
କହୁଅଛି ଆହେ ନହୁଷ ନରବର
କରୁଥିବ ଗାଈଙ୍କି ନିତି ନମସ୍କାର ।

ଗାଈମାନେ ଯେ ସବୁଠାକୁଟି କାରଣ
ଯାଗର ମୁଖ ବୋଲି ଜାଣ ନୃପରାଣ ।
ତେଜରେ ବପୁରେ ସେ ଅଗ୍ନିଙ୍କ ସମାନ
ଦେବେ ଗାଈ ଦେହରେ କରିଥାନ୍ତି ସ୍ଥାନ ।

ଗାଈମାନଙ୍କୁଟି ଯେ ସେବା କରୁଥାଇ
କଦାଚିତେ ଜାଣ ସେ ଦୁଃଖେ ନ ପଡଇ ।
ସ୍ୱର୍ଗକୁ ଯିବାକୁ ସୋପାନ ଗାଈ-ସେବା
ଆନ ପୁଣ୍ୟ ତାଙ୍କିକ ସମ ନୋହେ ବାବା ।
ଏଥୁଅନ୍ତେ କେଉଟେ ବୋଇଲେ ଋଷିଙ୍କି
ନିଅ ଗାଈ ଦେଉଛୁଁ ବହୁଣ ପ୍ରୀତିକ ।
ଋଷି ବୋଇଲେ ହେ ଘେନିଲି ତୁମ୍ଭ ଗାଈ
ମାଛକୁ ଘେନି ଯାଇ ଭେଟ ଶଚୀ-ସାଇଁ ।
ଏହି ରୂପରେ ଋଷି କହନ୍ତେ ବଚନ
ମାଛ ତୁଲେ କେଉଟେ ଲଭି ସ୍ୱର୍ଗସ୍ଥାନ ।
କେଉଟମାଛଙ୍କ ସ୍ୱର୍ଗକୁ ଯିବା ଦେଖି
ନହୁଷ ନରପତି କଲେ ଦେବଆଖି ।
ଚ୍ୟବନ ଗବିଜ ରାଜାଙ୍କ ଜାଣି ମନ
ବୋଇଲେ ମାଗ ବର ଦେବୁ ହେ ରାଜନ ।
ନହୁଷ ବୋଇଲେ ହେ ଧର୍ମରେ ମୋ ମନ
ଥିବାକୁ ମୋତେ ବର କର ହେ ପ୍ରଦାନ ।
ଋଷି ବୋଇଲେ ହେ ହୋଇବ ସେହିରୂପେ
ନ ପଡ଼ିବ ନୃପତି ତୁମ୍ଭେ ମହାତାପେ ।
ସମାପତି ଦୀକ୍ଷାଟି ହୁଅନ୍ତେ ଚ୍ୟବନ
କଲେ ତୋଷେ ଆପଣା ସ୍ଥାନକୁ ଗମନ ।
ଗବିଜ ମଧ୍ୟ ତାଙ୍କ ଆଶ୍ରମକୁ ଗଲେ
ନହୁଷ ବର ପାଇ ରାଜ୍ୟକୁ ଆସିଲେ ।
ଭୀଷ୍ମ ବୋଇଲେ ଆହେ ନୃପତି-ଶେଖର
ଶୁଣିଲ ତ ମାହାତ୍ମ୍ୟ ଗାଈମାନଙ୍କର ।
ଏକଠାରେ ରହିବା କଥା ନରସାଇଁ
କହିଲ ମୁହିଁ କଥା ମଧ୍ୟରେ ବତାଇ ।
ଆଉ କି ଇଚ୍ଛାଥିଲେ ନୃପତି ପଚର
ବ୍ୟର୍ଥକଥା ଗୁଡ଼ାଏ ହୃଦେ ନ ବିଚର ।
ଚ୍ୟବନ ଉପାଖ୍ୟାନ ହେଲା ସମାପତି
କହେ କୃଷ୍ଣସିଂହ ନୃପତି ବହି ପ୍ରୀତି ।

—*—

## ଚ୍ୟବନ କୁଶିକ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ବେଳକୁ ବେଳ ବଳିପଡ଼ୁଛି ମୋ ମୋହ ।
ପରଶୁରାମ ଋଷି ହୋଇଣ କ୍ଷତ୍ରିୟ—
ଧରମ ଆଚରଣ କାଇଲେ କ୍ଷତ୍ରିୟ ।
କ୍ଷତ୍ର ପୂର୍ବଶେ ଜାତ ହୋଇଣ ବିଶ୍ୱାମିତ୍ର
ବ୍ରାହ୍ମଣ ହେଲେ କେହ୍ନେ ହୋଇଣ ପବିତ୍ର ।
ଏହିମାନ ଶୁଣିଲେ ନ ଶୁଣିଲା ପରି
ପଚାରୁଛୁ ତୁମ୍ଭଙ୍କୁ ପୁନଃ ପୁନଃ କରି ।
ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
କହିବା ପଚାରିବା ପ୍ରଶ୍ନକୁ ଉତ୍ତର ।
ପୂର୍ବକାଳେ ଚ୍ୟବନ କୁଶିକଙ୍କ ପାଶେ
ପରବେଶ ଯାଇ ହୋଇଲେ ମହାତୋଷେ ।
କହିଲେ ତୁମ୍ଭ ଘରେ ରହିବି କୁଶିକ
ତୁମ୍ଭେ ତ ଅଟ ରାଜଋଷିରେ ନାୟକ ।
ଏହା ଶୁଣି କୁଶିକ ଅଣାଇ ଆସନ
ବୋଇଲେ ବସ ହେ ଚ୍ୟବନ ତପୋଧନ ।
କୁଶିକ ସନମତେ ଚ୍ୟବନ ଆସନେ
ବସିଲେ ରାଜ ପ୍ରାର୍ଥୀ ଥୋଇ ସନ୍ନିଧାନେ ।
କୁଶିକ ସୁନାଝରୀ ମଧ୍ୟେ ଜଳ ଭରି
ଭାର୍ଯ୍ୟା ସଙ୍ଗେ ଗୋଡ଼ ଧଇଲେ ପ୍ରୀତି ଧରି ।
ସେ ଗୋଡ଼ଧୂଆପାଣି ମଧ୍ୟେ ପିଇଲେ
ମଧ୍ୟେ ମସ୍ତକ ଉପରେ ନିବେଶିଲେ ।
ବୋଇଲେ ଯେ ଆଜ୍ଞା କରିବ ଋଷିବର
ତା କରିବି ହୋଇ ମୁଁ ତୁମ୍ଭର କିଙ୍କର ।
ମୋ ରାଜ୍ୟଯାକ ତୁମ୍ଭେ ଅଧିକାର କର
ବସ ମୋ ସିଂହାସନେ ହୋଇ ଦଣ୍ଡଧାରୀ ।
ଚ୍ୟବନ ବୋଇଲେ କହିବି ମୁଁ ଯାହା
ତା କର ଏହା ଛାଡ଼ି ନୃପକୁଳ-ନାହା ।
ଏହା ଶୁଣି ରାଜା ଭାରିଯା ତୁଲେ ମହୀ
କଲେ ମାନସରେ ଅତ୍ୟନ୍ତ ପ୍ରୀତ ବହି ।
ଚ୍ୟବନ ବୋଇଲେ ହେ ଭାର୍ଯ୍ୟା ତୁଲେ ତୁମ୍ଭେ
କରିବ ସେବା ଏହା ବୋଲୁଅଛୁଁ ଆମ୍ଭେ ।
ବ୍ରତଟିଏ ମୁହିଁ ତ କରିଅଛି ଯାହା
କରିବ ତୁମ୍ଭ ସେବା ମଧ୍ୟେ ସିଦ୍ଧ ତାହା ।
ରାଜା ବୋଇଲେ ଏ ଇଚ୍ଛା ତ ଥିଲା ମୋର
ଆଜ୍ଞା ହେଲା ତୁମ୍ଭେ ବୋଇଲ ମୁନିବର ।
ଏତେ ବୋଲି ଚ୍ୟବନ କରକୁ ଧଇଲେ
ଭିତର ଘରଟିରେ ନେଇ ବସାଇଲେ ।
ହୀରା-ଲଗା ପଲଙ୍କ ଗୋଟିଏ ଅଣାଇ
ଟି ଦେଲେ ଶୋଇବାପାଇଁ ସୁପାଟି ପକାଇ ।

ଏହି କାଳେ ସୂର୍ଯ୍ୟ ହୋଇଲେ ଆସି ଅସ୍ତ
କଲ ସନ୍ଧ୍ୟା-ନାଶ ହଗପାକକୁ ଗ୍ରସ୍ତ ।
ଋଷି ତାହା ଦେଖି ବୋଇଲେ ନୃପତିଙ୍କି
ପାଣି ଆଣ ସନ୍ଧ୍ୟାକୁ କରିବା ନାହିଁ କି ।
ଏହା ଶୁଣିଣ ରାଜା ପାଣି ଆଣି ଦେଲେ
ଋଷି ନାକ କାନକୁ ଛୁଇଁ ସନ୍ଧ୍ୟା କଲେ ।
ବୋଇଲେ ଆହେ ନୃପ ଅଣ ବେଗେ ଅନ୍ନ
ପେଟ ତ ଜଳୁଅଛୁ କରିବା ଭୋଜନ ।
ରାଜା ବୋଇଲେ କହ କି ଅନ୍ନକୁ ଇଚ୍ଛା
ଅଛୁ ତାହା ଦେବି ହେ ମୁନିକୁଳ-ବସ୍ତା ।
ଋଷି ବୋଇଲେ ଆହେ ଲୋଭ ନାହିଁ ମୋର
ଯା ଦେବ ତା ଭୁଞ୍ଜିବି ନୃପତି ଶେଖର ।
ବୋଲିବା ମାତ୍ରେ ଋଷି ରାଜା ଧାଇଁଗଲେ
ସରୁ ଭାତ ଥାଳୀଏ ଆଣିକରି ଦେଲେ ।
ଭୋଜନ ସାରି ଋଷି ବୋଇଲେ ଶୋଇବି
କଥା ବାର୍ତ୍ତା ଆଉ ମୁଁ ହୋଇ ନ ପାରିବି ।
ଏହା ଶୁଣିଣ ରାଜା ବୋଇଲେ ଗୋସାଇଁ
ପହୁଡ଼ ତୁମ୍ଭ ପାଦ ଘଷିଦେବି ମୁହିଁ ।
ମୁନି ବୋଇଲେ ଆହେ ଘଷିବ ତ ପାଦ
ମୋ ନିଦ୍ରାକୁ ଭାଙ୍ଗିଲେ ହେବଟି ବିପଦ ।
ତୁମ୍ଭେ ଦୁଇପ୍ରାଣୀ ମୋ ଦୁଇ ଗୋଡ଼ ଧର
ବସିଥିବ ଦୁଇ ଆଖିକି ମେଲିକରି ।
ଏହା କହି ଋଷି ଶୟନ ଯାଇ କଲେ
ନୃପତି ଭାର୍ଯ୍ୟା ତୁଲେ ଗୋଡ଼କୁ ଘଷିଲେ ।
ରାତି ପାହିଗଲେ ହେଲେହେଁ ଦଣ୍ଡଧାରୀ
ଉଠାଇଲେ ନାହିଁ ଋଷିଙ୍କି ଡରିକରି ।
ଏକୋଇଶ ଦିନ ରାତିକି କଡକରେ
ଶୋଇଲେ ସେହି ଋଷିବର ନିଃଶଙ୍କରେ ।
ରାଜା ଭାତ ପାଣି ନ ଖାଇ ସୁଖୀ ହୋଇ
ଋଷିଙ୍କି ଘଷୁଥିଲେ ନିଦ୍ରା ଛାଡ଼ି ଦେଇ ।
ଚ୍ୟବନ ଏକୋଇଶ ଦିନର ଉତ୍ତାରେ
ନିଦ୍ରାକୁ ନ ରଖିଣ ନୟନ ଦୁଇରେ ।
ଧଡ଼ପଡ଼ ହୋଇଣ ଶେଯରୁ ଉଠିଲେ
ଏକମୁହାଁ ହୋଇ ସେ ଦଣ୍ଡେ ପଳାଇଲେ ।
ରାଜା ଋଷିଙ୍କର ପଳାଇବାର ଦେଖି
ତାଙ୍କ ସଙ୍ଗେ ଧାଇଁଲେ ହୋଇ ମନେ ଦୁଃଖୀ ।

ନୃପତି ସଙ୍ଗେ ମହାଦେଈ ମଧ୍ୟ ଥିଲେ
ରହ ଋଷିବର ବୋଲିଣ ସେ ଡାକିଲେ ।
ଚ୍ୟବନ ଋଷି ତାଙ୍କ ଆଗ୍ରହକୁ ଜାଣି
ଶରୀରକୁ ଲୁଚ୍ଛାଇଦେଲେ ସେହିକ୍ଷଣି ।
ରାଜା ତ ଉପବାସେ ହୋଇଥିଲେ କ୍ଷୀଣ
ନ ଦେଖି ଋଷିଙ୍କି ସେ ହୋଇଲେ ଅଜ୍ଞାନ ।
କଚ୍ଛଡ଼ି ହୋଇ ମହୀତଳରେ ପଡ଼ିଲେ
ରୁହିରଣ୍ଡି ଚକକ ମେଞ୍ଚା କରିଦେଲେ ।
ଚେତା ପାଇକରି ନୃପତିବର ଉଠି
ଡାକିଲେ କାହିଁ ଗଲ ନ ଦେଖାଇ ପିଠି ।
ଆହେ ତପସ୍ୱୀ କୁଳଶେଖର ଚ୍ୟବନ
ଆମ୍ଭେତ ହୋଇଥିଲୁ ତୁମ୍ଭର ଅଧୀନ ।
ତୁମ୍ଭେ ଏତେ ଦଶା ଆମ୍ଭଙ୍କୁ ଦେଇକରି
ଯିବାର ଉଚିତ ହେ ନୁହେ ତପଶ୍ଚାରି ।
ଏତେ ବୋଲି ନୃପତି ହୋଇ ବାଇ ପରି
ଖୋଜିଲେ ଋଷିଙ୍କର ଯିବା ବାଟ ହେରି ।
ନ ଦେଖି ଚ୍ୟବନଋଷିଙ୍କ ଚିହ୍ନ ବର୍ତ୍ତି
ଆସିଲେ ନିଜପୁରେ ବାହୁଡ଼ି ରାଜନ ।
ଦେଖିଲେ ଯେଉଁଠାରେ ପୂର୍ବେ ଥିଲେ ଶୋଇ
ସେଠାରେ ଶୋଇଛନ୍ତି ଗୋଡ଼ ସେ ଲମ୍ବାଇ ।
କୁଶିକ ନୃପବର ପୁଣି ହୋଇ ତୋଷ
ଘଷିଲେ ଯେ ମୁନିବରଙ୍କ ପାଦଦେଶ ।
ଏକୋଇଶ ଦିନ କଡ଼କେ ଶୋଇଥିଲେ
ଆର କଡ଼େ ସେ ଋଷି ସେତିକି ଶୋଇଲେ ।
ନିଦ୍ରା ଅନ୍ତେ ନୃପଙ୍କୁ ବୋଇଲେ ତଇଳ
ଆଣି କରି ଘଷ ମୋହର ଜଟାବାଳ ।
ରାଜା ତାଙ୍କ ବଚନେ ତୈଳ ଅଣାଇଲେ
ସେ ମୁନିବରଙ୍କର ଜଟାରେ ଘଷିଲେ ।
ମରଦନ ସାରି ତାଧୋଇବାକୁ ପାଣି
ଆଣି ଯାନ୍ତେ ଅଦୃଶ୍ୟ ହେଲେ ଋଷିମଣି ।
କାହିଁଗଲେ ବୋଲି ଖୋଜନ୍ତେ ନରପତି
ଦେଖିଲେ ସିଂହାସନେ ବସିଛନ୍ତି ଯତି ।
ମୁନିଙ୍କ ସନମତେ ନରପତି ଅନ୍ନ
ଦେଲେ କରିବାପାଇଁ ମୁନିଙ୍କୁ ଭୋଜନ ।
ମାଉଁସ ଶାଗ ପଣା ନାନାଜାତି ପିଠା
ଯେ ଫଳ ତାହାଙ୍କର ଘରେ ଥିଲା ମିଠା ।

ତାହା ମଧ୍ୟ ଋଷିଙ୍କି ଆଣିକରି ଦେଲେ
କରିବା ହେଉ ବସି ଭୋଜନ ବୋଇଲେ ।
ଋଷି ସେ ସାମଗ୍ରୀର ଉପରେ ଶେଯକୁ
ପକାଇ ଦେଲେ ତଳେ ଲଗାଇ ନିଆଁକୁ ।
ତଥାପି ସେ ରାଜା ନୋହିଲେ ତାଙ୍କୁ କ୍ରୋଧ
ମନେ କଲେ ଏ ଋଷି ଅତ୍ୟନ୍ତ ଦୁର୍ବୋଧ ।
ମୁନି ସେକ୍ଷଣି ଅନ୍ତର୍ହିତ ହୋଇଗଲେ
ରାଜାଙ୍କ ଅନ୍ତର୍ହିତ ସ୍ଥାନରେ ରହିଲେ ।
ପୂରବ ପରି ଅନ୍ନ ଥାଳୀରେ ବଢ଼ାଇ
ଦେଲେ ମୁନି ପାଇଁ ସେ ତଳକୁ ପକାଇ ।
ଚ୍ୟବନ ଋଷି ଏଥି ଛିଦ୍ର ନ ପାଇଲେ
ପୁଣି ନୃପଙ୍କର ଆଗରେ ଛିଡ଼ା ହେଲେ ।
ବୋଇଲେ ରଥଟିରେ ବସାଇଣ ମୋତେ
ଭାରିଯା ତୁଲେ ବୋହିନିଅ ମହାମତେ ।
ରାଜା ବୋଇଲେ ଆହେ ସଂଗ୍ରାମିକ, ଖେଳ-
ରଥୁଁ କେଉଁ ରଥେ ବସିବ ମୁନିବାଳ ।
ତାହା କହ ମୁହିଁ ତୁମ୍ଭଙ୍କୁ ଆଣିଦେବି
ଯହିଁକି ଇଚ୍ଛା ହେବ ତହିଁ ବୋହି ନେବି ।
ଚ୍ୟବନ ବୋଇଲେ ହେ ସଂଗ୍ରାମିକ ରଥ
ଆଣ ତହିଁ ବସିବି ରାଜା ମହାରଥ ।
ଏହା ଶୁଣିକରି ସେ ଯୁଦ୍ଧ ସାମଗ୍ରିରେ
ଭରିକରି ରଥ ଆଣିଲେ ଦଣ୍ଡଧାରୀ ।
ସେହି ରଥରେ ମୁନି ବସନ୍ତେ ଉଷତେ
ରାଜା ତାହା ବୋହିଲେ ଭାରିଯା ସଙ୍ଗତେ ।
ପଚାରିଲେ କେଉଁ ଆଡ଼କୁ ଇଚ୍ଛା ଅଛି
କହ ସେହି ଆଡ଼କୁ ରଥ ମୁଁ ନେଉଛି ।
ମୁନି ବୋଇଲେ ଆରେ ଧୀର ଧୀର କରି
ବୋହ ମୋ ବସିବା ରଥକୁ ଦଣ୍ଡଧାରୀ ।
ପ୍ରାଣୀଙ୍କି ମୁଁ ନୟନଯୁଗେ ଦେଖୁଥିବି
ଯାହାକୁ ଯାହା ମନ ହୋଇବ ତା ଦେବି ।
ରାଜା ଏହା ଶୁଣିଣ ଧନରତ୍ନମାନ
ଅଣାଇଲେ ବୋଲିବାରୁ ସେ ତପୋଧନ ।
ଋଷି କଣ୍ଟା ଲଉଡ଼ି ପାଞ୍ଚଣ ଟାଏ ଧରି
ପିଟିଲେ ସେ ରାଜା ଭାର୍ଯ୍ୟାକୁ ଆଣ୍ଟେ କରି ।
ତେବେ ହେଲେ ରାଜା ଚାଲିଲେ ମନ୍ଦ ମନ୍ଦ
ମନେ ନ ବିଚାରିଲେ ଏ ଋଷିଟା ମନ୍ଦ ।

ରାଜାଙ୍କ ଏ କଷ୍ଟଦଶାକୁ ଲୋକେ ଦେଖି
ଦୁଃଖ କଲେ ଅଶ୍ରୁ ବୁହାଇ ଦୁଇଆଖି ।
ଧର୍ମକୁ ଅନାଇଣ ନୃପତି-ତିଳକ
ଦେଖି ସହୁଛନ୍ତି ପାଞ୍ଚଣ ବାଡ଼ିମାକ ।
ଋଷି ସେହି କାଳରେ ଡାକିଣ ଲୋକଙ୍କୁ
ଦେଲେ ଯାଚି ଧନ ରତନ ବସନକୁ ।
ରାଜାଙ୍କର ସେ ନିର୍ବିକାର ଗୁଣ ଜାଣି
ରଥରୁ ଫେଇ ଧେଇ ତାଙ୍କୁ ସେହିକ୍ଷଣି ।
ବୋଇଲେ ଯା ଇଚ୍ଛା ଅଛି ତା ବର ମାଗ
ତୁମ୍ଭପରି ନାହିଁ ମହୀରେ ମହାଭାଗ ।
ରାଜା ବୋଇଲେ ଆହେ କି ମାଗିବୁଁ ବର
ତୁମ୍ଭ ସନ୍ତୋଷରୁ ହେଲଣି ସବୁ ମୋର ।
ଋଷି ବୋଇଲେ ମୁଁ ଯାଉଛି ତପ କରି
ଘରକୁ ବାହୁଡ଼ିଣ ଯାଅ ଦଣ୍ଡଧାରୀ ।
ଏଠାକୁ କାଲି ଆସି ଦେଖିବ ହେ ମୋତେ
ଆଉ କିଛି ବିଚାର ନ କରିଟି ଚିତ୍ତେ ।
ହୃଦୟରେ ଆଉ କରିବ ନାହିଁ କ୍ରୋଧ
ନବୋଲିବହେମୋତେ କେବେହେଁ ଦୁର୍ବୋଧ ।
ଯେତେବେଳରେ ଯାହା ବିଚାର କରିବ
ସେତେବେଳେ ତାହା ହେବ ହେ ନରଦେବ ।
କୁଶିକ ବୋଇଲେ ହେ କ୍ରୋଧ କାହିଁପାଇଁ
କରିବୁଁ ଆହେ ଋଷି କୁଳର ଗୋସାଇଁ ।
ଆପଣଙ୍କ ପ୍ରସାଦେ ଆମ୍ଭର ଯେ ଦୁଃଖ
ଥିଲା, ସେ ଗଲା ଏବେ ପାଇଲୁ ତ ସୁଖ ।
ଏହା କହିଣ ରାଜା ନମସ୍କାର କଲେ
ଋଷିଙ୍କି ଛାଡ଼ି ନିଜ ପୁରକୁ ଆସିଲେ ।
ଋଷି ପ୍ରସାଦରେ ନବୀନ ଯଉବନ
ପାଇଲେ ଭାର୍ଯ୍ୟା-ତୁଲେ ସେ ନରରାଜନ ।
ଋଷି ବନ ମଧ୍ୟରେ କରି ଦିବ୍ୟପୁର
ରହିଲେ ତହିଁ ମଧ୍ୟେ ଜାଣ ଯୁଧିଷ୍ଠିର ।
ରାତ୍ରି ଅନ୍ତେ ରାଜା ପୂର୍ବାହ୍ନ କର୍ମ ସାରି ।
ନିଜ ଭାରିଯାକୁ ଯେ ସଙ୍ଗତରେ ଧରି ।
ଗଲେ ଯହିଁ ଥିଲେ ଚ୍ୟବନ ଋଷିବର
ହୋଇଛି ତ ଯୁବାବୟସ ତାହାଙ୍କର ।
ଦେଖିଲେ ମଣି ସୁନାମାନଙ୍କେ ନିର୍ମିତ
ହୋଇକରି ପ୍ରସାଦ ହୋଇଛି ସ୍ଥାପିତ ।

ସେ ପ୍ରାସାଦର ସନ୍ନିକଟେ ପୁଷ୍କରଣୀ
ଅଛନ୍ତି, ତହିଁ ଭାସୁଛନ୍ତି ହଂସଶ୍ରେଣୀ ।
ନାନା ଜାତି ପାଦପମାନେ ଫୁଲ ଫଳ--
ଭର ପାଇ ସେ ଲୋଟୁଛନ୍ତି ମହୀତଳ ।
ବଇଡୂର୍ଯ୍ୟ ସମ୍ବଳିତ ସେ ଭୂମି ହୋଇଛି
ଦେଖିବା ଜନଙ୍କର ମନକୁ ହରୁଛି ।
ନାନା ଜାତି ଘରେ ନାନା ଜାତି ଶେଯ
ଖଟ ପଲଙ୍ଗ ମଧ୍ୟ ଅଛି ଭକ୍ଷ୍ୟ ଭୋଜ୍ୟ ।
ଶୁଆ ଶାରୀ କୋଇଲି ଆଦି ପକ୍ଷୀମାନେ
ଧ୍ୱନି କରି କର୍ଣ୍ଣ ମୋହନ୍ତି ଅବଚ୍ଛିନ୍ନେ ।
ଅପସରା-ସମାଜ ଗନ୍ଧର୍ବଙ୍କୁ ଧରି
କେତେ ଠାରେ ବୀଣା ବଜାନ୍ତି ରାଗକରି ।
ରାଜା ଏହି ରୂପେ ଆଶ୍ଚର୍ଯ୍ୟ ବନେ ଦେଖି
ବିଚାରିଲେ ମନରେ ହୋଇ କିଛି ସୁଖୀ ।
ମୋତେ ଅବା ପିତ୍ତ-ବିକାର କରୁଅଛି
ଏଣୁ ଅବା ଆଖିକି ଏରୂପେ ଦିଶୁଛି ।
ଏହି କାଳେ ଦେଖିଲେ ଦିବ୍ୟ ବିମାନରେ
ଶୋଇଛନ୍ତି ଚ୍ୟବନ ଋଷି ସୁମନରେ ।
ଆନନ୍ଦ ହୋଇ ତାଙ୍କ ପାଶେ ନୃପବର
ଯାଆନ୍ତେ ନ ଦେଖିଲେ ତାଙ୍କର ଶରୀର ।
ପୁଣି ଆନଠାରେ ବସିଣ ସେହି ଋଷି
ଦେଇଛନ୍ତି ନେତ୍ରକୁ ଭାଲପଟେ ଖୋଷି ।
ଏରୂପେ ଯୋଗରେ ଚ୍ୟବନ ଋଷିବର
ହରି ଘେନଗଲେ ମନଟି ନୃପତିର ।
କି କଲେ ଋଷି ବୋଲି ନୃପ ଦୁଇ ଆଖି
ବୁଜି କରି ପୁଣି ଚାହାନ୍ତେ ଦୁଇ ଆଖି ।
ନ ଦିଶିଲା ଅଗ୍ରେ ନେତ୍ରକୁ ସେହି ପୁର
ଅନ୍ତର୍ଦ୍ଧାନ କରି ତା ଦେଲେ ଋଷିବର ।
ଉଇ ବଳ ଘାସ କୁଶ ପାଦପପନ୍ତି
ଏହିତାଇ କେବଳ ଦେଖିଲେ ନୃପତି ।
ଭାରିଜାଙ୍କୁ ବୋଇଲେ ଋଷିଙ୍କ ମହିମା
ସଙ୍ଗତେ ଦିଶୁନାହିଁ ସୁଷମା ଉପମା ।
ତିନି ଲୋକ ରାଇଜ ହେବାର ପ୍ରତି କି
ତପୋବଳ ବଡ଼ ଆସୁଛି ମୋ ମତିକ ।
ଇଚ୍ଛା କଲେ ଚ୍ୟବନ ମହାଋଷିବର
କ୍ଷଣକରେ କରି ପାରନ୍ତି ଏ ସଂସାର ।

ସେ ଚ୍ୟବନ ଋଷି ରାଜାଙ୍କ ଚିନ୍ତା ଜାଣି
ବୋଇଲେ ମୋ ପାଶକୁ ଆସ ନୃପମଣି ।
ଏହା ଶୁଣି ରାଜା ଚ୍ୟବନ ପାଶେ ଯାଇଁ
ପଡ଼ିଲେ ହାତ ଯୋଡ଼ି ଗୋଡ଼କୁ ଲମ୍ବାଇ ।
ମୁନି ବୋଇଲେ ଏବେ ଉଠ ଉଠ ନୃପ
କେତେ ଗୋଡ଼ତଳେ ପଡ଼ୁଛ କରି ତାପ ।
ତୁମ୍ଭ ସେବାରେ ମୁହିଁ ବଶ ହୋଇଅଛି
କି ଇଚ୍ଛା ଅଛି ମାଗ ତୋଷେ ମୁଁ ଦେଉଛି ।
ରାଜା ବୋଇଲେ ଯା ତୁମ୍ଭଙ୍କୁ ସେବାକରି
ପ୍ରଶଂସା ନେଲି ମୁଁ ମହୀରେ ତପସ୍ବୀରି ।
ଏଥିରୁ ଜାଣୁଅଛି ସବୁ ଭାଗ୍ୟ ଯୋଗ୍ୟ
ହେଲିନି ମୁହିଁ ଆହେ ଋଷି ମହାଭାଗ ।
ଯେବେ ମୋଠାରେ ପ୍ରୀତି ବଢ଼ିଛି ତୁମ୍ଭର
ମୋ ହୃଦୟ ସଂଶୟ କରି ଋଷି ଦୂର ।
ଋଷି ବୋଇଲେ ଆହେ କି ସଂଶୟ ତୁମ୍ଭେ
କରିଅଛ, ତାହା କହତ ବୋଲୁ ଆମ୍ଭେ ।
ରାଜା ବୋଇଲେ ହେ ମୋଠାରେ ଏତେ ଖତି
କଲ କାହିଁପାଇଁ କହ ତ ତାହା ଯତି ।
ଋଷି ବୋଇଲେ ମୁହିଁ ସେଥିର କାରଣ
କହିବି ଯେବେ ତୁମ୍ଭେ ପୁଚ୍ଛ ନରରାଣ ।
ପୂର୍ବରେ ଦେବ ସମାଗମେ ଯାହା ପିତା--
ମହ କରିଥିଲେ ହେ ଶୁଣ ମହୀ-ଭର୍ତ୍ତା ।
ବ୍ରାହ୍ମଣ କ୍ଷତ୍ରିୟଙ୍କ ବିରୋଧେ ଶଙ୍କର
ହୋଇବ କୁଳ କହିଛନ୍ତି କୁଶଧର ।
ତେଜୋବୀର୍ଯ୍ୟ-ଯୁକତ ହୋଇ ତୁମ୍ଭ ନାତି
ବ୍ରାହ୍ମଣ ହୋଇ ହେବେ ଏ ମହୀରେ ଖ୍ୟାତି ।
ଏହା ଜାଣି ମୁହିଁ ଆସିଲି ତୁମ୍ଭଠାକୁ
ତୁମ୍ଭର କୁଳ ନାଶ କରିଣ ଦେବାକୁ ।
ତୁମ୍ଭେ ତ ମୋ ବୋଲିବା ପରି ସେବା କଲ
ଏଣୁ ତୁମ୍ଭଙ୍କୁ ମୋର ନ ପାଇଲି ବଳ ।
ଯେତେ ପ୍ରକାରେ ମୁଁ ତୁମ୍ଭଙ୍କୁ କଲି ମାୟା
ଛୁଇଁ ନ ପାରିଲା ସେ ଜାଣ ତୁମ୍ଭ କାୟା ।
ତୁମ୍ଭର ମନ ବିହ୍ୱଳିତ ହେବା ପାଇଁ
କୁରୁଡ଼ା ମଧ୍ୟ ମୁଁ ତୁମ୍ଭଙ୍କୁ ପିଟିଲଇଁ ।
ତୁମ୍ଭଙ୍କୁ ପ୍ରତି ତୁମ୍ଭ ଭାରିଯାଟି ବଡ଼
ନ ବୋଇଲେ କିଛି ଯା ସହି ଏତେ ମାଡ଼ ।

ବନରେ ଯାହା ଦେଖାଇଲ ଦିବ୍ୟପୁର
ସ୍ୱର୍ଗ ବୋଲି କରି ତା ରାଜା ମନେକର ।
ପୁର ଦେଖି ମନରେ ହୋଇଲ ଯେ ସ୍ପୃହା
ତାହା ମଧ୍ୟ ଜାଣିଲି ଜାଣ ନରନାହା ।
ରାଜତ୍ୱକୁ ମନରୁ ଦେଇଣ ମୁରୁଚ୍ଛି
ଭାବିଲି ହୋଇକଲି ମୁଁ ବ୍ରାହ୍ମଣବୃତ୍ତି ।
ଏ କଥା ତୁମ୍ଭଠାରେ ନି ସମ୍ଭବେ ଜାଣ
ତୁମ୍ଭର ନାତି ବୋଲାଇବଟି ବ୍ରାହ୍ମଣ ।
ତିନିଲୋକ ଯାକରୁ ଭସ୍ମକୁ ସେ ଦେବେ
ଏକା ଏ ମହୀରେ ସେ ଯତି ବୋଲାଇବେ ।
ଏବେ ମନ ଅଛି ଯା ତାହା ମାଗ ବର
ତୀର୍ଥଯାତ୍ରା କରି ମୁଁ ଯିବି ନରବର ।
କୁଶିକ ବୋଇଲେ ମୋ ନାତିଠାରୁ କୁଳ--
ଯାକ ଦ୍ୱିଜ ହେବେ ବୋଇଲ ତପଃଶୀଳ ।
କିରୂପରେ ମୋ ନାତି ବ୍ରାହ୍ମଣ ହୋଇବେ
ଏହା ମଧ୍ୟ ମୋତେ ହେ କହିବା ହୋଇବେ ।
ଚ୍ୟବନ ବୋଇଲେ କ୍ଷତ୍ରିୟେ ଆମ୍ଭ ବଂଶ--
ମାନଙ୍କୁ ଶସ୍ତ୍ରେ ଅସ୍ତ୍ରେ କରିବେ ବିନାଶ ।
ଆମ୍ଭ କୁଳରେ ଊର୍ବ ଋଷି ଜାତ ହେବେ
ତେଜରେ ସେ ଆଦିତ୍ୟ ଦେବଙ୍କୁ ଜିଣିବେ ।
ତିନିଲୋକ ବିନାଶ ପାଇଁ ସେ କ୍ରୋଧରେ
ଅଗ୍ନି ଜାତ କରିବେ ସେ ଋଷି ମୁଖରେ ।
ସେ ଋଷିଙ୍କର କ୍ରୋଧଅଗ୍ନି ତିନିଲୋକ-
ଯାକ ପୋଡ଼ିଦେବ ହେ ଅବନୀ ନାୟକ ।
କେତେ କାଳ ଅନ୍ତରେ ଊର୍ବ ମହାଋଷି
ଅଗ୍ନିଙ୍କି ଦେବେ ମହୋଦଧିରେ ନିବେଶି ।
ସେ ଅଗ୍ନିଟି ବଡ଼ବାଅଗ୍ନି ବୋଲାଇବେ
ମହୋଦଧି ଜଳକୁ ଶୁଖାଇ ପିଇବେ ।
ଊର୍ବଙ୍କର ଦେହେ ଋଚୀକ ନାମେ ସୁତ
ଧନୁର୍ବେଦରେ ସେହୁ ହୋଇବେ ପଣ୍ଡିତ ।
ଋଚୀକଙ୍କର ପୁତ୍ର ଜମଦଗ୍ନି ହେବେ
ଋଚୀକଙ୍କର ଧନୁର୍ବେଦକୁ ସେ ଶିଖିବେ ।
ତୁମ୍ଭ ପୁତ୍ର ଝିଅକୁ ଜମଦଗ୍ନି ବିଭା
ହୋଇ ପ୍ରକାଶିବେ ସେ କାମ ପରି ଶୋଭା ।
ସେ ଭାରିଯାଆଡ଼େ କ୍ଷତ୍ରିୟକର୍ମା ସୁତ
କରିବେ ଜାତ ଜମଦଗ୍ନି ତପୋବନ୍ତ ।

ଋଚୀକ ଚରୁବଳେ ତୁମ୍ଭ ସୁତଙ୍କର
ବିଶ୍ୱାମିତ୍ର ହୋଇବେ ଜାଣ ହେ କୁମର ।
କ୍ଷତ୍ରିୟ ହୋଇକରି ବ୍ରାହ୍ମଣ ହୋଇବେ
ଇନ୍ଦ୍ରାଦି ଦେବତାଙ୍କୁ ତପରେ ଜିଣିବେ ।
ଏହିରୂପେ କୁଶିକ ଚ୍ୟବନ ବଚନ
ଶୁଣି ହୃଦ ମଧ୍ୟକୁ କରିଣ ପ୍ରସନ୍ନ ।
ବୋଇଲେ ହେ ଋଷି ତୁମ୍ଭର ବାଣୀ ପରି
ହେବ ମୋ କୁଳେ ପୁତ୍ର ଅଛି ଭାଗ୍ୟ କରି ।
ମୋ କୁଳଯାକ ଋଷି ବ୍ରାହ୍ମଣ ହୋଇବେ
ଏହି ବର ମୋତେ ସନ୍ତୋଷେ ଦେବାହେବେ ।
ଏହା ଶୁଣି ଚ୍ୟବନ ବୋଲେ ହେଉ ହେଉ
ଆଜଠାରୁ ତୁମ୍ଭର ହୃଦ-ବ୍ୟଥା ଯାଉ ।
ରାଜାଙ୍କ ଅନୁଜ୍ଞାରେ ଚ୍ୟବନ ମହର୍ଷି
ତୀର୍ଥ ଯାତ୍ରାକୁ କରିଗଲେ ହସି ହସି ।
ଭୀଷ୍ମ ବୋଇଲେ ହେ ପାଣ୍ଡବ ନରବର
ଶୁଣିଲ ଏବେ ରାମ ବିଶ୍ୱାମିତ୍ରଙ୍କର ।
ଚରିତଯାକ ସବୁ ଆଉ କିସ ଇଚ୍ଛା
ଅଛି ତାହା ମୋତେ କର ହେ ବସି ପୃଚ୍ଛା ।
ଚ୍ୟବନ କୁଶିକ ସମ୍ବାଦ ହେଲା ଶେଷ
କୃଷ୍ଣସିଂହ ନୃପ ସୁମରେ ରାଧା-ଈଶ ।

--*--

## ଦାନ ମାହାତ୍ମ୍ୟ

ଯୁଧିଷ୍ଠିର ବୋଇଲେ ଜ୍ଞାତି କୋଟିକୋଟି
ଭୁଲରେ ମାରି ରାଜପୁତ୍ର ରାଜା କୋଟି ।
ରାଜ୍ୟଲୋଭୀ ହୋଇ ମୁଁ ହୋଇଛି ଯେ ରାଜା
ଏ ସକାଶୁଁ ପାପଭୟରେ ଥରେ ମଜ୍ଜା ।
ଏ ମହୀ ସ୍ତ୍ରୀଯାକ ପତି-ପୁତ୍ର-ହୀନେ
ହୋଇଛନ୍ତି ମୋତେ ନିନ୍ଦିବେ ଅବିଚ୍ଛିନ୍ନେ ।
ତୁମ୍ଭେ ହେ ଆମ୍ଭମାନଙ୍କର ପିତାମହ
ତୁମ୍ଭ ପ୍ରାଣ ନେଲୁ ରାଜ୍ୟରେ କରି ସ୍ନେହ ।
ବ୍ରାହ୍ମଣ ଗୁରୁ ଦ୍ରୋଣ ଅଟନ୍ତି ଆମ୍ଭରି
ତାହାଙ୍କର ମୁଣ୍ଡ କାଟିଲୁଁ ବାଳ ଧରି ।
ଏ ଦୁଷ୍କୃତଯାକ ଏ ମହୀ ତୀର୍ଥଯାକ
ବୁଲିଲେ ଯିବା ପରି ନୋହୁଛି ବିବେକ ।
ଏଥିକି ତୁମ୍ଭେ ଉପଦେଶ ଦେଲ ପିତା
ତପ କରିବି ମୁହିଁ ଛାଡ଼ି ରାଜ୍ୟ ଚିନ୍ତା ।

ଭୀଷ୍ମ ଯୁଧିଷ୍ଠିରଙ୍କ ବଚନକୁ ଶୁଣି
ବୋଇଲେ ଶୁଣ ଆହେ ପାଣ୍ଡବ ନୃପମଣି ।
ତପ ବଳେ ସ୍ୱର୍ଗସମ୍ପତ୍ତି ପାଦତଳେ
ମିଳଇ ଶନ୍ତା କ୍ଷମା ଧର ହୃଦସ୍ଥଳେ ।
ମୌନବ୍ରତ କଲେ ମହୀରେ ରାଜା ହୋଇ
ବ୍ରହ୍ମଚର୍ଯ୍ୟ କରିଲେ ଆୟୁଷ ବଢ଼ଇ ।
ପର୍ଣ୍ଣାସନ ପୟୋଭକ୍ଷଣ ତୃଣାଶନ
ଯାଗ ଉପବାସ ଗୋଦାନ ଅନଶନ ।
ଏହାକୁ ଗୋଟିଏ ଗୋଟିଏ ଲୋକ କଲେ
ସ୍ୱର୍ଗପୁରେ ପୂଜା ପାଏ ସେ ଯାଇ ଭଲେ ।
ଫଳ ମୂଳ ଖାଇ ଯେ ପୋଷଇ ଉଦର
ସନ୍ଦେହ ନାହିଁ ତାର ହେବା ନୃପବର ।
ଗୁରୁର ସେବା କରିଥାଏ ପୂର୍ବେ ସେହି
ସବୁ ଶାସ୍ତ୍ରଯାକ ସେ ଅଲଭ୍ୟ ଲଭଇ ।
ନିତ୍ୟ ଶ୍ରାଦ୍ଧ କରିଲେ ହୁଅଇ ସନ୍ତତି
ଶାଗ ଖାଇ ରହିଲେ ମିଳେ ଗାଈ ଅତି ।
ତପୋବଳରେ ଯେହୁ ଯୋଗ ସାଧିଥାଏ
ଆଭରଣ ବସନ ଶଯ୍ୟାକୁ ସେ ପାଏ ।
ଅଗ୍ନିରେ ଯେଉଁ ଲୋକ ପଶିଣ ମରଇ
ତାହାକୁ ଆଦର କରନ୍ତି ଦେବ ସାଇଁ ।
ଗୋରସାଦି ରସ ଯେ ଛାଡ଼ିଅଛି ନୃପ
ଇହ ଲୋକେ ସୌଭାଗ୍ୟ ବଢ଼େ ତା ଅମାପ ।
ଆମିଷ ଛାଡ଼ିଲେ ଆୟୁଷବନ୍ତ ସୁତ
କୂଳେ ଜାତ କରେ ହେବାକୁ ଆତ୍ମହିତ ।
ଜଳମଧ୍ୟେ ଯେ ପଶି ତପ କରିଥାଏ
ମଲେ ହୁଏ ଲୋକମାନଙ୍କରେ ସେ ରାଏ ।
ବ୍ରାହ୍ମଣଙ୍କୁ ସେବା କରିଲେ ରାଜ୍ୟ ଦ୍ୱିଜ
ଭାବକୁ ପାଏ ଜାଣ ଆହେ ମହାରାଜ ।
ଜଳଦାନକୁ ଦେଲେ କୀର୍ତ୍ତି ଉପୁଜଇ
ଅନ୍ନଦାନକୁ ଦେଲେ କାମିନୀ ମିଳଇ ।
ପ୍ରାଣୀଙ୍କି ଶାନ୍ତ କରି କହଇ ଯେ କଥା
ତାକୁ ନ ଲାଗଇ ରାଜନ ଶୋକ ବ୍ୟଥା ।
ଦୀପ ଦାନକୁ ଦେଲେ ଚକ୍ଷୁଷ୍ମନ୍ତ ହୋଏ
ଚନ୍ଦନ ଫୁଲ ଦେଇଥିଲେ କୀର୍ତ୍ତି ପାଏ ।
କେଶ ନଶ ନଖ ଯେ ରଖିଥାଏ ନିତି
ଅସଂଖ୍ୟ ହୋଇକରି ବଢ଼େ ତା ସନ୍ତତି ।

କନ୍ୟା ଦାନ ଦେଇଣ ଥିଲେ ଦାସୀଦାସ
ବହୁତ ମିଳଇ ନହି ଜାଣ ନରଈଶ ।
ଫଳ ପୁଷ୍ପକୁ ଯେଉଁ ଲୋକ ଦେଇଥାଏ
କଇଳାସେ ଯାଇ ଯେ ରହଇ ହେ ରାଏ ।
ସୁବର୍ଣ୍ଣଶୃଙ୍ଗୀ ଗାଈ ସହସ୍ରେ ଯେ ଦେଇଛି
ଦେବଲୋକ ତାହାର ଅଲଭ୍ୟ ହେଉଛି ।
ସ୍ୱର୍ଣ୍ଣ ଶୃଙ୍ଗେ ମଣ୍ଡି କପିଳାଗାଈ ଦାନ
ଯେ ଦେଉଛି ତା ଗାଈ କାମଦୁହା ଧେନ ।
ଗାଈ ଦେହେ ଯେତେକ ରୋମ ରହିଥାଏ
ସେତେକାଳ ନର ସ୍ୱର୍ଗରେ ପୂଜାପାଏ ।
ସୁବର୍ଣ୍ଣଶୃଙ୍ଗ କରି ତଳ ଧେନୁ ଦାନ
ଦେଲେ ଯେ ବସୁଲୋକ ହୁଅଇ ରାଜନ ।
କନ୍ୟାଦାନ ଭୂମିଦାନକୁ ଯେ ଦେଇଛି
ଇନ୍ଦ୍ରଲୋକ ତାହାର ଜାଣ ହେଉଅଛି ।
ବ୍ରାହ୍ମଣଙ୍କୁ ଗୃହଦାନ ନେବାର ଲୋକ
ଉତ୍ତରକୁରୁରେଟି ହୁଅଇ ନାୟକ ।
ଘୋଡ଼ାଦାନ ଦେବାର ଲୋକକୁ ବସୁଏ
ସମ୍ଭାବନା କରନ୍ତି ବହୁ କାଳଯାଏଁ ।
ସୁବର୍ଣ୍ଣଦାନ ଦେଲେ ସୁରଙ୍କରରଣ
ବୋଲନ୍ତି ସେବକଙ୍କୁ ତାଙ୍କୁ ଘେନଆଣ ।
ଛତ୍ରାଦାନେ ଘର ପାଣ୍ଢୋଇଦାନେ ଯାନ
ବସ୍ତ୍ରଦାନରେ ରୂପ ହୁଅଇ ରାଜନ ।
ପୁଷ୍ପ ଫଳ ସଂଯୁକ୍ତ ବାଛି ଦ୍ୱିଜେ ଦାନ
ଦେଲେ ରତନ ଘରେ ବହିରେଟି ଧେନ ।
ଅନ୍ନ ପାଣି ଦେବା ଲୋକକୁ ସବୁ ରସ
ପରାପତ ହେଉଛି ନରକୁଳଈଶ ।
ଫୁଲ ଧୂପ ଚନ୍ଦନ ବ୍ରାହ୍ମଣଙ୍କୁ ଦେଲେ
ରୋଗ ବ୍ୟାଧି ନ ପାରଇଟି ଜାଣ ଭଲେ ।
ଧାନ୍ୟରେ ପରିପୂର୍ଣ୍ଣ କରିଣ ସଦନ
ଦେଲେ ପାଏ ଉତ୍ତମ ଗୃହ ମନେ ଘେନ ।
ଶେଯଟିଏ ମୁରୁଲା ସହିତେ ଯେ ଦାନ
ଦେଇଥାଏ ମିଳେ ଉତ୍ତମ ସ୍ତ୍ରୀ ରାଜନ ।
ବୀରପଣ କରି ଯୁଦ୍ଧରେ ଯେ ମରଇ
ବ୍ରହ୍ମାଙ୍କ ପୁରେ ରହି ବ୍ରହ୍ମାଙ୍କୁ ସେବଇ ।
ଏରୂପେ ଭୀଷ୍ମଙ୍କ ବଚନ ତ ଶୁଣିଲେ
ଯୁଧିଷ୍ଠିର ଯୁଦ୍ଧରେ ମନ ନିବେଶିଲେ ।

ଭାଇଙ୍କି ଅନାଇଁ ବୋଇଲେ ପିତାମହ
ଯା କହିଲେ ସେ କଥାଟିରେ କର ସ୍ନେହ ।
ଏହା ଶୁଣି ପାଣ୍ଡବେ ଦ୍ରୌପଦୀଙ୍କ ତୁଲେ
ବୋଇଲେ ଆଜ୍ଞା ହେବ ଯୁଦ୍ଧ କରି ମଲେ ।
କ୍ଷତ୍ରି ଯେ କୁଳେ ଆମ୍ଭେ ହୋଇଛୁଁ ଜନମ
ଯୁଦ୍ଧରେ ମରିବାକୁ ହେବୁ କମ୍ପା ନମ୍ରଁ ।
ଯୁଧିଷ୍ଠିର ବୋଇଲେ ଆରାମ ତଡ଼ାଗ
ଫଳ ମୋତେ କହ ହେ ଭୀଷ୍ମ ମହାଭାଗ ।
ଭୀଷ୍ମ ବୋଇଲେ ହେ ଉତ୍ତମ ସ୍ଥାନ ଠିକେ
ପୋଖରୀ କରାଇବ ଧନ ଦେଇ ଲୋକେ ।
ପୋଖରୀ କରିଥିଲେ ତିନ ଲୋକେ ପୂଜା
ଲଭଇ ଏ ବାହାରେ ପୂଜନ୍ତି ସଭୋଜା ।
ପୋଖରୀ ମଧ୍ୟେ ଯେତେ ଦିନ ଥାଏ ଜଳ
ଯେତେଦିନ ଯାଏ ପିଅନ୍ତି ପ୍ରାଣୀକୁଳ ।
ଏ ସକାଶୁଁ କଲା ଲୋକର ସୁକୃତଟି ।
ବଢ଼ୁଥାଏ ନିତ ହୋଇଣ କୋଟି କୋଟି ।
ବରଷାକାଳେ ଯେବେ ପୋଖରୀରେ ଜଳ
ରହଇ ଜାଣ ହୋଏ ଅଗ୍ନିହୋତ୍ର ଫଳ ।
ଶରତକାଳେ ଜଳ ପୋଖରୀରେ ଥିଲେ
ସହସ୍ରେ ଗାଈଫଳ ଲଭଇ ସେ ଭଲେ ।
ହେମନ୍ତକାଳେ ଯେବେ ପୋଖରୀରେ ପାଣି
ଥାଏ ବହୁ ସୁବର୍ଣ୍ଣ ଯାଗଫଳେ ଗଣି ।
ଶିଶିରକାଳେ ପାଣି ଥିଲେ ଅଗ୍ନିଷ୍ଟୋମ
ଫଳ ଯେନ ହୋଏ ସେ ନରଙ୍କେ ଉତ୍ତମ ।
ବସନ୍ତରେ ଯାର ତଡ଼ାଗେ ପାଣି ଅଛି
ଅତିରାତ୍ରଯାଗ ଫଳଟି ସେ ପାଉଛି ।
ଗ୍ରୀଷ୍ମ କାଳେ ତଡ଼ାଗରେ ଥିଲେ ନୀର
ବାଜମେଧ ଫଳ ହୁଅଇ ନରବର ।
ଯାର ପୋଖରୀରେ ପିଅନ୍ତି ଗାଈ ପାଣି
ତା କୁଳଟି ଯାଆନ୍ତି ନରକକୁ ଜିଣି ।
ଯାହାର ପୋଖରୀରେ ମୃଗ ପକ୍ଷୀକୁଳ
ପିଅନ୍ତି ପାଣି ତାକୁ ପୂଜନ୍ତି ନୃପାଳ ।
ଜଳ କରିବାର କଥାରୁ କଥା ହୋଇ
ଏ ମହୀରେ ନାହିଁ ହେ ଜାଣ ନରସାଇଁ ।
ଭଣି ଜଳ ଦୀପ ଦାନ ଯେ ପରଲୋକ-
ଲୋକଙ୍କର ମଧ୍ୟରେ କରାଏ ନାୟକ ।
ସବୁ ଦାନଙ୍କରେ ପ୍ରଧାନ ଜଳଦାନ
ତା ଦେଉଥିବ ନିତ ହୋଇ ପ୍ରୀତମନ ।
ଏବେ ଶୁଣ ହେ ବୃକ୍ଷ ଲଗାଇବା ଫଳ
ମୋହଠାରୁ ଆହେ ପାଣ୍ଡବ-ନରପାଳ ।
ସ୍ଥାବର ଜାତି ଛଅ ପ୍ରକାର ହୁଅନ୍ତି
ତା କହିବା ତୁମ୍ଭଙ୍କୁ ଆଗ ନରପତି ।
ବୃକ୍ଷ ଗୁଳ୍ମ ଲତା ବଲ୍ଲୀ ତ୍ୱକସାର
ତୃଣ ମିଶି ହୁଅନ୍ତି ଛଅଟି ପ୍ରକାର ।
ଏ ଛଅ ଜାତିଙ୍କି ଯେ ମହୀରେ ରୋପଇ
ଇହ ପର ଦୁଇରେ କୀର୍ତ୍ତିକି ଲଭଇ ।
ଯେଉଁମାନେ ରୋପି ଥାଆନ୍ତି ବୃକ୍ଷପନ୍ତି
ପରଲୋକେ ତାଙ୍କର ସେ ପୁତ୍ର ହୁଅନ୍ତି ।
ପୁଷ୍ପରେ ଅତିଥିଙ୍କି ପୁଷ୍ପେ ଦେବତାଙ୍କୁ
କରିଥାନ୍ତି ସେ ସୁଖୀ ଫଳରେ ପିତୃଙ୍କୁ ।
ଏହି କଥାକୁ ଜାଣି ଲଗାଇବ ବୃକ୍ଷ
ଆହେ ଯୁଧିଷ୍ଠିର ନୃପତି ଲକ୍ଷ ଲକ୍ଷ ।
ତଡ଼ାଗ ବୃକ୍ଷ ଯାଗ କରଇ ଯେ ନର
ସ୍ୱର୍ଗେ ତାକୁ ପୂଜା କରନ୍ତି ପୁରନ୍ଦର ।
ଯୁଧିଷ୍ଠିର ବୋଇଲେ ଦାନେ କେ ଗରିଷ୍ଠ
ଏହା ମୋତେ କହ ହେ ଚନ୍ଦ୍ରଙ୍କ ବରିଷ୍ଠ ।
ଭୀଷ୍ମ ବୋଇଲେ ଆହେ ପ୍ରାଣୀଙ୍କି ଅଭୟ
ଏ ବାହାରେ କରିବ ଇଷ୍ଟ କଥାଚୟ ।
ବିପତ୍ତିରେ ଲୋକଙ୍କୁ ଦୟା କରିବାର
ଏହିଟି ବଡ଼ଦାନ ରାଜା ମନେକର ।
ସୂନା ଗାଈ ମହୀଦାନ ଯେହୁ ଦେଉଛି
ସହସ୍ର ସଂଖ୍ୟା ଦୁଷ୍କୃତରୁ ସେ ତରୁଛି ।
ଆପଣାର ଇଷ୍ଟ ହୋଇବ ଯେଉଁ କଥା
ଦେବ ତା ଗୁଣବନ୍ତ ଲୋକ ମହାରଥା ।
ଦରିଦ୍ର ଲୋକର ଯେ ଦରିଦ୍ରତା ହରେ
ତା ସୁକୃତ କହିଲେ ନୋହିବ କଥାରେ ।
ବିଦ୍ୟାବନ୍ତ ସ୍ୱାଧ୍ୟାୟବନ୍ତ ଯେତେ ଦ୍ୱିଜ
ଏହାଙ୍କୁ ଡାକକରି ପୂଜ ମହାରାଜ ।
ଋତ୍ୱିକ ପୁରୋହିତ ମୃଦୁ ଧର୍ମପର
ଦ୍ୱିଜଙ୍କଠାରେ ମଧ୍ୟ କରିବ ଆଦର ।
ବ୍ରାହ୍ମଣଠାରୁ ଶୂଦ୍ର ଯାଏ କ୍ରମେ ସେବା
କରୁଛନ୍ତି ଯେଉଁ ସ୍ଥାନେ ତା ପ୍ରଶଂସିବା—

ବଚନ କରିବାର ଅଛଇ ଉଚିତ
ଜାଣ ଆହେ ନୃପତିକୁଳ ଶ୍ରେଷ୍ଠ ସୁତ ।
କ୍ଷତ୍ରିୟମାନଙ୍କର ଦ୍ୱିଜଠାରେ ତେଜ
ତପଃ ଶାନ୍ତ ହୋଇଯାଏ ହେ ମହାରାଜ ।
ଆହେ ଯୁଧିଷ୍ଠିର ଯେରୂପେ ଦ୍ୱିଜେ ମୋର
ପ୍ରିୟ ସେହିରୂପରେ ତୁମ୍ଭେ ମନେକର ।
ଯୁଧିଷ୍ଠିର ବୋଇଲେ ଆସି ଯେ ମାଗିବ
ଯେ ନ ମାଗି ପାଶରେ ଛିଡ଼ା ହୋଇଥିବ ।
ଏ ଦୁଇରେ କାହାକୁ ଦେବଟି ହେ ଦାନ
ଏହା ମୋହର ଆଗେ କର ତା ବଖାଣ ।
ଭୀଷ୍ମ ବୋଇଲେ ଯେ ମାଗିବାର ଲୋକଙ୍କୁ
ନ ଦେଇ କରି ଦେବ ନ ମାଗିବାଟିକୁ ।
ଅଯାଚକ ବ୍ରାହ୍ମଣ ଲକ୍ଷକ କ୍ଷତ୍ରିୟ
ବଡ଼ ଅଟଇ ଆହେ ପାଣ୍ଡୁଙ୍କ ତନୟ ।
ଯେଉଁ ଦ୍ୱିଜ ଦେଖିଲେ ଟଙ୍କା ଦିଅ ବୋଲେ
ନ ଯାଏ ସେହି ଜାଣ ଗଣନାରେ ଭଲେ ।
ନ ମାଗିବା ଦ୍ୱିଜ ଗୋଟିଏ ରାଜ୍ୟେ ଥିଲେ
କୋଟିଏ ଦ୍ୱିଜ ଥିଲା ପରି ଜାଣ ଭଲେ ।
ଏରୂପେ ବ୍ରାହ୍ମଣଙ୍କୁ ନ କରିଣ ପୂଜା
ଆନଙ୍କୁ ପୂଜା କଲେ ନାଶଯାଏ ରାଜା
ଯୁଧିଷ୍ଠିର ବୋଇଲେ ଅକ୍ଷୟ କେଉଁ ଦାନ
ତା କହ ପିତାମହ ହୋଇଣ ପ୍ରସନ୍ନ ।
ଭୀଷ୍ମ ବୋଇଲେ ଆହେ ଯାଗ ଦାନ ଦୁଇ
କ୍ଷତ୍ରିୟ ଲୋକଙ୍କର ପାବନ ଅଟଇ ।
ଏହି ସକାଶରୁ ରାଜନ ପ୍ରତିଦିନ
ବ୍ରାହ୍ମଣଙ୍କୁ ଦେଖିଲେ ଦେଉଥିବ ଦାନ ।
ଗାଈ ଅନ୍ନ ଛତ୍ର ଯେ ବସନ ପାଣ୍ଡୋଇ
ଘିଅ ଦାନ ଦ୍ୱିଜଙ୍କୁ ସମର୍ପିବ ନେଇ ।
ଦ୍ରବ୍ୟ ଘରେ ରଖିଣ ପାଳିଲେ ରାଜ୍ୟକୁ
ନୃପତି ଲଭଇଟି ନରକ ପଥକୁ ।
ଦ୍ରବ୍ୟ ସଞ୍ଚୟକୁ ବ୍ରାହ୍ମଣ ଯେବେ କରେ
ଗରବ ମୋହ ଯୋଗେ ପଡ଼େ ନରକରେ ।
ବ୍ରାହ୍ମଣ ଶୀର୍ଣ୍ଣ ହେଲେ ଧର୍ମ ନାଶଯାଏ
ଧର୍ମ ନାଶ ହେବାରୁ ମରନ୍ତି ପ୍ରାଣୀଏ ।
ରାଜ୍ୟଲୋକଙ୍କଠାରୁ ଧନ ବହିଆଣି
ଯାଗ କରି ଦ୍ୱିଜଙ୍କୁ ଦେବ ନରମଣି ।

ବାଳକ ବୃଦ୍ଧ ଆଦି କୃପଣର ଧନ
କଦାଚିତେ ଆଣିବ ନାହିଁଟି ରାଜନ ।
ଯେଉଁ ରାଜା ଦେଶରେ ଭୋକରେ ବ୍ରାହ୍ମଣ
ରହଇ ସେ ରାଜାର ପାପ ହୋଏ ଜାଣ ।
ରାଜା ଯେ ଗୃହୁଁ ଥାଏ ପରଜନ ସ୍ତିରୀ
ଘେନିଗଲେ ମଲପରି ସେ ଦଣ୍ଡଧାରୀ ।
ଯେଉଁ ରାଜା ନ ଦେଇ ଲୁଟିକରି ନିଏ
ତାର ରାଜଗିରି ଅଳପେ ନାଶ ଯାଏ ।
ଯେଉଁ ରାଜା ଭାଷା ଧନକୁ ଧନ, ଆନ
ହୁଅଇ ନ ଗୃହ୍ନିଁବ ତାହାର ବଦନ ।
ପ୍ରଜାଙ୍କର ପାପ ଚତୁର୍ଥଭାଗ ପାଏ
ପୁଣ୍ୟ ମଧ୍ୟ ଚତୁର୍ଥଭାଗ ଜାଣ ନିଏ ।
ଏଠାରେ ଯୁଧିଷ୍ଠିର ପୁଚ୍ଛନ୍ତେ ପିତାମହ
ଭୀଷ୍ମ ତାଙ୍କୁ କହିଲେ ବହୁକରି ସ୍ନେହ ।
ସବୁ ଦାନ ଯାକକୁ ବାବୁ ମହୀଦାନ
ବଡ଼ ଅଟଇ ଏହା ହୃଦୟରେ ଘେନ ।
ଯେତେକାଳ ଯାଏ ପୃଥିବୀ ଥାଏ ରହି
ସେତେକାଳ ଜାଣ ସ୍ୱର୍ଗରେ ବସଇ ।
ପୃଥିବୀ ଦାନ ଦେଇ ଯୁଦ୍ଧରେ ପରାଣ
ଛାଡ଼ିଲେ କ୍ଷତ୍ରିୟର ଉତ୍ତମଗତି ଜାଣ ।
ପାପଗୃହୀ ମିଥ୍ୟାବାଦୀଙ୍କ ମହୀଦାନ
ପବିତ୍ର କରଇଟି ଜାଣ ହେ ରାଜନ ।
ପାପୀ ରାଜାଠାରୁ ସାଧୁଏ ମହୀଦାନ
ଘେନଛନ୍ତି ହୁଡ଼ି କରିବଟି ଆନ ଦାନ ।
ଏହି ସକାଶରୁ ଯେ ହେବ ମହୀସାଇଁ
ମହୀ ଦେଉଥିବ ଦ୍ୱିଜଙ୍କୁ ପ୍ରୀତି ବହି ।
ଭୂମି ହରଣଠାରୁ ନାହିଁ ବଡ଼ ଦୋଷ
ଜାଣ ହେ ପାଣ୍ଡବ ନୃପତିକୁଳଈଶ ।
ସମସ୍ତ ପାତକରୁ ଭୂମିଦାନ ତାରେ
ଭୂମି ହରଣଟି ପକାଏ ନରକରେ ।
ଭୂମିଦାନକୁ ଦେଲେ ଅଷ୍ଟରତ୍ନ ଦାନ
ଦେବାର ଫଳରୁ ଅଧିକ ହୋଏ ଜାଣ ।
ଗୁରୁପୂଜା ତପସ୍ୟା ଦେବପୂଜା ଯାଗ
ଅଲୋଭ ଆଦି ସେ ସୁକୃତ ମହାଭାଗ ।
ମଧ୍ୟରେ ରହିଅଛୁ ଆହେ ନରସାଇଁ
ତାହା ଆଣଇ ସେ ହୋଡ଼କୁ କୋଡ଼ଆଇ ।

ଭୂମି ଦେବା ଲୋକେ ଦେଖିଲେ କାଳଦଣ୍ଡ
ଧର ନେଇ ଆସନ୍ତି ପକାଇ ପଦଣ୍ଡ ।
ଦୁଃଖେ ମୃତପ୍ରାୟ ଯେ ଦ୍ୱିଜ ହୋଇଥାଏ
ତାକୁ ମହୀ ଦେଲେଟି ଯାଗଫଳ ହୋଏ ।
ପଡ଼ିଆ ଭୂମି ଆଉଁ ଉଠିଆଭୂମି ଦେଲେ
ସେ ସୁକୃତ କହି ନ ପାରଇଟି ଭଲେ ।
ଭୂମି ଦେବା ଲୋକର ଶସ୍ୟ ଆୟୁକରେ
ଫଳ ବଂଶ ବଢ଼େ ରାଜନ ଅଶେଷରେ ।
ଏହା ଜାଣିକର ପୂର୍ବରେ ପର୍ଶୁରାମ
କ୍ଷତ୍ରିୟଙ୍କୁ ଜିଣିଲେ କରଣ ସଂଗ୍ରାମ ।
ତାହାଙ୍କ ଭୂମିଯାକ ଏହାଙ୍କର କର
ଦାନ ଦେଲେ ତାକ କାଶ୍ୟପ ତପଶ୍ଚାରୀ ।
ରାଜାଙ୍କୁ ଭୂମି ଦେବା ଫଳ ଶୁଣାଇବ
ଭୂମିଦେବ ଭୂମିହରଣ ନଷେଧିବ ।
ସାଧୁ ଦ୍ୱିଜଙ୍କର ଅଟଇ ଏ ବେଭାର
ତୁମ୍ଭେ ତ ମୋଠାରୁ ଶୁଣିଲ ଯୁଧିଷ୍ଠିର ।
କୁଳୀନ ପୁଣ୍ୟକୃତ ଦାତା ବଳବନ୍ତ
ହୁଅନ୍ତି ମହୀଦାନ ଯୋଗୁ ମହୀକ୍ଷିତ ।
ବିଷ୍ଣୁ ଶିବ ବରୁଣ ବ୍ରହ୍ମା ଅଗ୍ନି ଚନ୍ଦ୍ର
ମହୀ ଦାନୀ ଲୋକର ବାଞ୍ଛୁଥାନ୍ତି ଭଦ୍ର ।
ଜଗତମାତା ପିତା ମହୀଟି ଅଟଇ
ମହୀରୁ ବଡ଼ ହୋଇ ଆଉ କେହି ନାହିଁ ।
ଇନ୍ଦ୍ର ଶତଯାଗ କରଣ ପୂର୍ବକାଳେ
ପଚାରିଲେ ବୃହସ୍ପତିଙ୍କି ଦେଖି ତୋଳେ ।
କେଉଁ ଦାନ ଦେଲେ ମିଳଇ ସ୍ୱର୍ଗଭୂତ
ଏହା ମୋତେ କହିବା ହେଉ ମହାମତି ।
ବୃହସ୍ପତି କହିଲେ ସ୍ୱର୍ଣ୍ଣ ଭୂମି ଗାଈ
ଯେ ହେଉଛି ସ୍ୱର୍ଗଟି ତାହାକୁ ମିଳଇ ।
ଭୂମିଦାନ ଲୋକ ଯୁଦ୍ଧରେ ମଲା ଲୋକ
ସମାନ ନୋହେ ଜାଣ ନରଙ୍କ ନାୟକ ।
ଭୂମିଦାନ ଦେବାର ଲୋକଟି ରଜଦ
ପୁରୁଷ ସ୍ୱର୍ଗ ନଏ କହି ଅଛି ମୋଦ ।
ରତନ ପୋତି ମହୀଦାନ ଯେ ଦିଅଇ
ତାକୁ ମହାପାତକ ବାଧି ନ ପାରଇ ।
ଗାଈ ଦାନ ଦେଲେ ସ୍ୱର୍ଗପୁରେ ବସେ
ଅପସରୀମାନଙ୍କ ତୁଲେ ମଧ୍ୟ ହସେ ।
ମହୁ ଦଧି ଯେ ଦୁଧ ଘିଅବୁହା ନଈ
ପୃଥ୍ୱୀ ଦେବା ଲୋକକୁ ଜାଣଟି ମିଳଇ ।
ରାଜା ହୋଇ ପୃଥ୍ୱୀ ପାଇବା ଇଚ୍ଛା ଯାର
ଥିବ ପୃଥ୍ୱୀରୀ ଦାନ ଦେବ ନିରନ୍ତର ।
ପାପ କରଣ ଯେଉଁ ଲୋକ ଭୂମି ଦିଏ
ପାତକ ତାକୁ ବାଧି ନ ପାରଇ ରାୟେ ।
ଅଗ୍ନିଷ୍ଟୋମ ଆଦ ଯାଗମାନର ଫଳ
ଭୂମିଦେବା ଲୋକଟି ପାଏ ନରପାଳ ।
ଭୂମିଦାନ ଦେଇଲ ଯେ କୁଳକୁ ତାରଇ
ହରିଲେ କୁଳ ଘେନି ନରକେ ପଡ଼ଇ ।
ପର ଦେଇଥିବା ଭୂମିକି ଯେ ହରଇ
ନରକ ହରଣନ ତାହାର ନୁହଇ ।
ରାଜ୍ୟଚ୍ୟୁତ ରାଜାକୁ ରାଜ୍ୟେ ଯେ ବସାଏ
ତା ସୁକୃତ କହି ନୁହଇ ଜାଣ ରାୟେ ।
ଶସ୍ୟ ହେଉଥିବା ଭୂମିକି ଯେ ଦିଅଇ
ନିଃସଂଶୟେ ରମ୍ଭାକୁ ଭୋଗ ସେ କରଇ ।
ଯୁଦ୍ଧରେ ତାତ ଟେକ ମରଇ ଯେ ନର
ଦେଖିଲେ ତାକୁ ପୂଜଥାନ୍ତି କୁଣ୍ଡଧର ।
ଭୂମିଦାନ ଦେବାର ଲୋକର ଆଗରେ
ଅପସରୀ ନାଚ କରନ୍ତି ସବୁରରେ ।
ଭୂମିଦେବା ଲୋକକୁ ହାତୀ ଛତ୍ର ଘୋଡ଼ା
ଉପସ୍ଥିତ ଯେ ହେଉଥାଏଟି ଅଲୋଡ଼ା ।
ଭୂମିଦାନ ସତ୍ୟ ସମାନ ଏ ମହୀରେ
ଅଧିକ ଅଟଇଟି ସମସ୍ତ ପ୍ରକାରେ ।
ବୃହସ୍ପତିଠାରୁ ଏରୂପେ ଇନ୍ଦ୍ର ଶୁଣି
ଦେଲେ ବୃହସ୍ପତିଙ୍କି ଦାନ ମହୀଶ୍ରେଣୀ ।
ଶ୍ରାଦ୍ଧ କରିବାବେଳେ ଭୂମିଦାନ ଫଳ
ଯେ କରଇ ତାହାର ହୁଅଇଟି ଭଲ ।
ବୃହସ୍ପତି ଇନ୍ଦ୍ର ସମ୍ବାଦ ହେଲା ଶେଷ
କୃଷ୍ଣସିଂହ ନୃପତି ଭାବେ ରାଧାଈଶ ।

—*—

## ଅନ୍ନଦାନ

ଯୁଧିଷ୍ଠିର ବୋଇଲେ କେଉଁଦାନ ଦେଲେ
ହୁଅନ୍ତି ଲୋକେ ତୋଷ କହ ପିତା ଭଲେ ।
ଭୀଷ୍ମ ବୋଇଲେ ହେ ନାରଦ ଋଷିବର
କହିଛନ୍ତି ଯାହା ତା ଶୁଣ ଯୁଧିଷ୍ଠିର ।

ଉତ୍ତମ କରି ଯହିଁ ଦିଏ ଅନ୍ନ ଦାନ
ଆଗକରି ସ୍ୱର୍ଗରେ ବସଇ ସେ ଜାଣ ।
ପ୍ରାଣ ତ ଲୋକଙ୍କର ରହଇ ଅନ୍ନରେ
ଏହି ସକାଶୁଁ ଅନ୍ନ ଦେବ ସୁମନରେ ।
କୁଟୁମ୍ବକୁ ଉପାସେ ରଖି ବ୍ରାହ୍ମଣକୁ
ଅନ୍ନ ଆଗ ଦେବଟି ଜାଣ ଖାଇବାକୁ ।
ବାଟଶ୍ରାନ୍ତ ଲୋକ ଆସିଲେ ଅନ୍ନ ମାଗି
ଅନ୍ନ ଆଣି ଦେବ ଘରକୁ ଯାଇ ବେଗି ।
ଚଣ୍ଡାଳ କୁକୁରଙ୍କୁ ଦେଲେ ଅନ୍ନଦାନ
ଦୁଃଖ ନୁହଇଟି ଜାଣ ଆହେ ରାଜନ ।
ପିତୃଦେବ ଅତିଥିଙ୍କି ଯେ ଅନ୍ନ ଦିଏ
ତା ପୁଣ୍ୟ ଗାଇଲେ ନ ସରିବ ହେ ରାୟେ ।
ପାତକୀ ଲୋକ ଅତିଥିଙ୍କି ଦେଲେ ଅନ୍ନ
କରଇ ସେହିକ୍ଷଣି ପାପକୁ ମୋଚନ ।
ଶୂଦ୍ରକୁ ଅନ୍ନ ଦେଲେ ମହାଫଳ ହୋଏ
ବ୍ରାହ୍ମଣକୁ ଦେଲେ ଯେ ଅକ୍ଷୟ ବୋଲିଏ ।
ଅନ୍ନଦାନ ଦେବା ଲୋକର ତୋଟାଯାକ
ଫଳ କୁସୁମରେଟି ହୁଅଇ ଅଧିକ ।
କୃଷୀ ବୃଷ୍ଟି ଆଶା କରିବାର ପରାୟେ
ପିତୃଏ ଅନ୍ନଦାନ ଚାହିଁଥାନ୍ତି ରାୟେ ।
ଅନ୍ନ ଯେ ଦେବା ଲୋକ ସୁନ୍ଦର ରୂପ ବହି
କାମିନୀ ଆଦି ସବୁ ଭୋଗକୁ କରଇ ।
ଅନ୍ନ ଯେ ଦେଉଅଛି ପ୍ରାଣ ସେ ଦେଉଅଛି
ବୋଲିକରି ଜାଣ ହେ କୁନ୍ତୀ ଜ୍ୟେଷ୍ଠବହ୍ନି ।
ବ୍ରାହ୍ମଣଙ୍କର ମୁଖ-କଆଁସରେ ଅନ୍ନ—
ମନ୍ତ୍ରି କ ପୋତଇଟି ଧୂଣ୍ୟବନ୍ତ ଜନ ।
ଅନ୍ନକୁ ନ ଖାଇଲେ ଯାଉଅଛି ପ୍ରାଣ
ଅନ୍ନରୁ ପ୍ରାଣକୁ ବଡ଼ କେ ନାହିଁ ଜାଣ ।
ଅନ୍ନ ଦେବା ଲୋକର ଓଜ ତେଜ କାନ୍ତି
ପରକାଶ ହେଉଥାଏଟି ଦିବା ରାତି ।
ତପନ କିରଣରେ ଜଳକୁ ନିଅନ୍ତି
ପବନ ମେଘେ ରଖି ବୃଷ୍ଟି କ କରାନ୍ତି ।
ଏ ଯେବେ ମହୀ ଓଦା ହୋଏ ନିରନ୍ତରେ
ଜାତ କରଇ ଶସ୍ୟ କଆଁସ ପଦାରେ ।
ସେହି ଶସ୍ୟକୁ ଲୋକେ ପାକ କରି ଖାଇ
ବସନ୍ତି ବଳ ପାଇ ଛାତିକି ଫୁଲାଇ ।

ଜାଣ ମୁଁ କହୁଥାଇଁ ଅନ୍ନ ଦେଲେ ପ୍ରାଣ—
ଦେବା ଫଳ ହୋଏ ପାଣ୍ଡବ ନରରାଣ ।
ଏରୂପେ ନାରଦ କହିବା ଦିନୁଁ ମୋତେ
ଅନ୍ନ ଦେଉଥିଲି ମୁଁ ନିତି ମହାମତେ ।
ତୁମ୍ଭେ ଯୁଦ୍ଧରେ ବନ୍ଧି ପକାଇବା ଦିନୁ
ଅନ୍ନ ଦେବାକୁ ତ ନ ଚଳେ ମୋର ତନୁ ।
ସେହି ଦିନୁ କେବଳ ଛାଡ଼ିଛି ଦେବାର
ଜାଣ ଆହେ ପାଣ୍ଡୁତନୟ ଯୁଧିଷ୍ଠିର ।
ବ୍ରାହ୍ମଣକୁ ଅନ୍ନ ଦିଅ ସ୍ୱରଗ ଭୁକ୍ତି
ନିକଟେ ମିଳିବ ତୁମ୍ଭଙ୍କୁ ନରପତି ।
ଅନ୍ନଦାନ ହେଲେ ହୁଅଇ ଯେଉଁ ଲୋକ
ତା କହିବା ଶୁଣ ହେ ପାଣ୍ଡବ-ନାୟକ ।
ରତନଯୁକ୍ତ ଦ୍ରବ୍ୟ ଘରଟି ମିଳଇ
ସୁରିତଟରେ ବାପୀ କୂପ ତୋଟା ଥାଇ ।
ଅନ୍ନ ପରବତେ ହୁଅଇ ଉପସ୍ଥିତ
ଘିଅ ଦୁଧ ଦହିରେ ହୋଇଣ ସଯୁକ୍ତ ।
ଏହି କଥା ଜାଣି ବିଶେଷି ଅନ୍ନଦେବ
ଅନ୍ନ ଦେବା କଥାରେ ହେଳା ନ କରିବ ।
ହେଲା ଅନ୍ନଦାନ ଚରିତ ସମାପତି
କହେ କୃଷ୍ଣସିଂହ ନୃପତି ବହି ପ୍ରୀତି ।

—*—

## ନକ୍ଷତ୍ରରେ ଦାନଫଳ

ଯୁଧିଷ୍ଠିର ବୋଇଲେ ନକ୍ଷତ୍ରମାନଙ୍କରେ
କି ଦାନ ଦେବା ପିତା କହ ସୁମନରେ ।
ଭୀଷ୍ମ ବୋଇଲେ ଆହେ ଦେବକୀ ନାରଦ
ସମ୍ବାଦ ଶୁଣ ନୃପବରେ ବହି ମୋଦ ।
କୃତ୍ତିକାରେ ପାୟସ ଭୋଗ କରାଇଲେ
ବିପ୍ରଙ୍କୁ ଦିବ୍ୟ ଲୋକ ମିଳେ ଜାଣ ଭଲେ ।
ରୋହିଣୀ ନକ୍ଷତ୍ରରେ ମାଂସ ଦଧି ଘିଅ—
ଚୟ ଦେଉଥିବ ଦ୍ୱିଜଙ୍କୁ ବହି ପ୍ରିୟ ।
ମୃଗଶିରରେ ଦୁହାଁଳୀ ଗାଈକି ଦାନ
ଦେଲେ ସ୍ୱରଗରେ ପୂଜନ୍ତି ମଘବାନ ।
ଆର୍ଦ୍ରା ନକ୍ଷତ୍ରରେ ଖେଚଡ଼ି ଖୁଆଇଲେ
ନରକ ତରି ସ୍ୱର୍ଗେ ବସେ ଯାଇ ଗେଲେ ।
ପୁନର୍ବସୁ ନକ୍ଷତ୍ରେ ଦ୍ୱିଜଙ୍କୁ ଖୁଆଇ
ଖାଇଲେ ବଡ଼ କୁଳେ ଜନମ ଲଭଇ ।

ପୁଷ୍ୟାନକ୍ଷତ୍ରରେ ଯେ ଦେଲେ ସୁନାଦାନ
ଶୋଭାରେ ଚନ୍ଦ୍ର ଦେବ ହୁଅନ୍ତି ନନ୍ଦନ ।
ଅଶ୍ଳେଷା ନକ୍ଷତ୍ରେ ବୃଷଭ ରୂପା ଦେଲେ
ସବୁ ଭୟଯାକ ଜିଣନ୍ତି ଲୋକେ ଭଲେ ।
ମଘା ନକ୍ଷତ୍ରେ ଜାଣ ତିଳ ପାତ୍ର ଦାନ
ଦେଲେ ହୋଏ ପୁତ୍ରବନ୍ତରେ ଲେଖା ଜନ ।
ପର ଲୋକରେ ମହା ତୋଷକୁ ଲଭଇ
ରମ୍ଭାଦି ଅପସରୀ ଘେନ ବିହରଇ ।
ପୂର୍ବା ଫାଲ୍‌ଗୁନୀରେ ଦ୍ୱିଜଙ୍କୁ ଫେଣୀ ଆଣି
ଖୁଆଇଲେ ଲଭଇ ଧନଭାଗ୍ୟ ଶ୍ରେଣୀ ।
ଷାଠିକାଧାନ ଭାତ ଘୃତ କ୍ଷୀର ଯୁକ୍ତ—
କରି ଦେଲେ ଉତ୍ତରାଫାଲ୍‌ଗୁନୀରେ ପୂତ ।
ହୋଇ ସ୍ୱର୍ଗପୁରରେ ବିହରଇ ସୁଖେ
ଆଗ ଚୁମ୍ବ ଦିଏ ଉର୍ବଶୀଙ୍କର ମୁଖେ ।
ହସ୍ତାନକ୍ଷତ୍ରେ ଜାଣ ହାତୀ ରଥ ଦାନ-
ଦେଲେ ଲୋକ ପାଏ ମହତ ପୁଣ୍ୟସ୍ଥାନ ।
ଚିତ୍ରା ନକ୍ଷତ୍ରରେ ବୃଷଭ ଦାନ ଦେଲେ
ନନ୍ଦନରେ ବସଇ ଅପସରୀ କୁଳେ ।
ସ୍ୱାତି ନକ୍ଷତ୍ରରେ ଯେ ଇଷ୍ଟ ଧନ ଦାନ
ଦେଲେ ଇହ ପରରେ ହୁଏ କୀର୍ତ୍ତିସ୍ଥାନ ।
ବିଶାଖା ନକ୍ଷତ୍ରେ ଶଗଡ଼େ ଧାନ ଦେଲେ
ପିତୃଦେବ ତୋଷି ସ୍ୱର୍ଗରେ ବସେ ଭଲେ ।
ଅନୁରାଧା ନକ୍ଷତ୍ରେ ବସ୍ତ୍ର ଅନ୍ନ ଦାନ
ଦେଲେ କରଇ ସ୍ୱର୍ଗପୁରରେ ସଦନ ।
ଜ୍ୟେଷ୍ଠା ନକ୍ଷତ୍ରରେ କୋଶଳା ଶାଗ ମୂଳା
ଦାନ ଦେଲେ ପୁଣ୍ୟ ବଢ଼ଇ ଭେଳା ଭେଳା ।
ମୂଳା ନକ୍ଷତ୍ରେ ଜାଣ ବ୍ରାହ୍ମଣକୁ ମୂଳ—
ଫଳକୁ ଦେଲେ କୁଳ ହୁଅଇ କୁଶଳ ।
ପୂର୍ବାଷାଢ଼ା ନକ୍ଷତ୍ରେ ବ୍ରାହ୍ମଣଙ୍କୁ ଦହି—
ଯେ ଦିଏ ଭଲକୁଳେ ଜନ୍ମ ହୁଏ ସେହି ।
ଉତ୍ତରାଷାଢ଼ା ନକ୍ଷତ୍ରରେ ଫେଣୀ ମହୁ
ଖୁଆଇଲେ ଦ୍ୱିଜଙ୍କୁ ପୁଣ୍ୟ ହୋଏ ବହୁ ।
ଅଭିଜିତା ନକ୍ଷତ୍ରେ ଦୁଧ ମହୁ ଘିଅ
ଖୁଆଇଲେ ଦ୍ୱିଜଙ୍କୁ ହୁଏ ଦେବପ୍ରିୟ ।
ଶ୍ରବଣା ନକ୍ଷତ୍ରେ କମ୍ବଳ ଲୁଗା ଦେଲେ
ଶୁକଳ ଯାନେ ସ୍ୱର୍ଗପୁରେ ଯାଏ ଭଲେ ।
ଧନିଷ୍ଠା ନକ୍ଷତ୍ରେ ବୃଷଭ ଯୁକ୍ତ ଯାନ
ବସ୍ତ୍ର ଦେଲେ ହୁଅଇ ମହୀରେ ରାଜନ ।
ଶତଭିଷା ନକ୍ଷତ୍ରେ ଅଗୁରୁ ଚନ୍ଦନ
ଦେଲେ ଅପସରୀ ଲୋକରେ କରେ ସ୍ଥାନ ।
ପୂର୍ବାଭାଦ୍ରପଦେ ଝୁଡ଼ୁଙ୍ଗ ଦାନ ଦେଲେ
ସବୁ ଲକ୍ଷ୍ୟ ତାକୁ ମିଳଇ ଜାଣ ଭଲେ ।
ଉତ୍ତରଭାଦ୍ର ନକ୍ଷତ୍ରରେ ମୋଷ ମାଂସ
ଦେଲେ ପିତୃଲୋକେ ହୁଅନ୍ତି ଜାଣ ବଶ ।
ରେବତୀନକ୍ଷତ୍ରରେ ଗାଈ ଦାନ ଦେଲେ
ପରଲୋକେ ଆଦର କରନ୍ତି ଦେଖିଲେ ।
ଅଶ୍ୱିନୀରେ ଅଶ୍ୱସଂଯୁକ୍ତ ରଥ ଦେଲେ
ରାଜକୁଳେ ଜନମ ଲଭଇ ସେ ଭଲେ ।
ଦ୍ୱିଜା ନକ୍ଷତ୍ରରେ ଯେ ଦିଏ ତିଳ ଧେନୁ
ଗାଈ ମିଳିବାରେ ଫୁଲଏ ସେହି ତନୁ ।
ଏହିରୂପେ ନାରଦ ମୁଖରୁ ଦେବକୀ
ଶୁଣି ହୃଦରେ ବହି ମହତ ପ୍ରୀତିକି ।
ବଧୂଙ୍କର ଆଗରେ ଏମାନେ କହିଲେ
ବଧୂମାନେ ଶୁଣି କରିଣ ତୋଷ ହେଲେ ।
ହେଲା ନକ୍ଷତ୍ରଙ୍କରେ ଦେବା ଦାନ ଶେଷ
କହଇ କୃଷ୍ଣସିଂହ ନରକୁଳଈଶ ।



## ଦାନ ବିବରଣ

ଭୀଷ୍ମ ବୋଇଲେ ସୁବର୍ଣ୍ଣ ଦାନ ଦେଇ
ଯେ ଅଛି ସବୁ ଦାନଫଳ ସେ ଲଭଇ ।
ସୁବର୍ଣ୍ଣଦାନ ଆୟୁଷ୍କର ହୋଇ ଦାନ
ଥିଲା ପରି ତ ଦିଶୁ ନାହିଁ ହେ ରାଜନ ।
ସବୁ ଦାନ ଯାକରେ ଜଳ ଦାନ ବର
ଏ ମତଟି ଅଟଇ ମନୁ ନୃପଙ୍କର ।
ଜଳଦାନଟି ବଡ଼ ହୋଇବାର ଜାଣି
କରୁଥିବ ଯେ ଲୋକ କୂପ ବାପୀ ଶ୍ରେଣୀ ।
ଯାହାର ପୋଖରୀରେ ପିଏ ଗାଈ ପାଣି
ତାହାକୁଟି ବୋଲି ଲୋକରେ ପୁଣ୍ୟମଣି ।
ଗ୍ରୀଷ୍ମକାଳେ ଯାହାର ପୋଖରୀରେ ଜଳ
ଥାଏ ତାହାକୁ ପୂଜୁଥାନ୍ତି ଦେବପାଳ ।
ଘିଅ ଦେଲେ ଦ୍ୱିଜଙ୍କୁ ବୃହସ୍ପତି ପୂଷା
ଅଶ୍ୱିନୀ ଭବ ଅଗ୍ନି କରନ୍ତି ପ୍ରଶଂସା ।

ଆଶ୍ୱିନ ମାସେ ବ୍ରାହ୍ମଣେଙ୍କୁ ଘିଅ ଦେଲେ
ସୁନ୍ଦର ରୂପ କହି ଗୃଲନ୍ତି ଗେଲେ ।
ବ୍ରାହ୍ମଣଙ୍କୁ ଘିଅରେ ମିଶାଇ ପାୟସ
ଯେ ଦିଏ ତାହାକୁଟି ଡରନ୍ତି ରାକ୍ଷସ ।
ବ୍ରାହ୍ମଣ ଲୋକେ ଜଳପାତ୍ର ଦେଇଥିଲେ
ବାଧି ପାରଇ ନାହିଁ ବିପତ୍ତି ପଡ଼ିଲେ ।
ବ୍ରାହ୍ମଣଙ୍କୁ ରାନ୍ଧିବାକୁ ଯେ କାଠ ଦିଏ
ଶତ୍ରୁକୁଳ ମସ୍ତକମଣ୍ଡଳ ବୋଲାଏ ।
ଛତା ଦେଲେ ଦ୍ୱିଜଙ୍କୁ ହୁଏ ପୁତ୍ର ଶିଶୁ
ବ୍ୟାଧି ନ ପାରଇ ଦେହରେ ଘର କରି ।
ଗ୍ରୀଷ୍ମ ବରଷାରେ ଦେଲେ ଛତା ଦାନ
ମନରେ ପାପ କରି ନ ପାରଇ ସ୍ଥାନ ।
ସବୁ ଦାନଯାକରେ ଶଗଡ଼ ଦାନଟି
ଅଧିକ ତ ଶାଣ୍ଡିଲ୍ୟ ଋଷିଙ୍କ ମତଟି ।
ପାଣ୍ଡୋଇ ଦାନ ଦେଇଥିଲେ ଗ୍ରୀଷ୍ମରେ
ତରିଯାଏ ନର ପଡ଼ିଲେ ବିଷମରେ ।
ଯୁଧିଷ୍ଠିର ବୋଇଲେ ରାଶି ଭୂମି ଗାଈ
ଦାନଫଳ ଥରେ ତା କହିଲ ବତାଇ ।
ଆଜ ଥରେ ତାହାକୁ ଶୁଣିବାକୁ ମନ
ହେଉଛି କହ ମୋତେ ରଥୀଙ୍କ ରାଜନ ।
ଭୀଷ୍ମ ବୋଇଲେ ଆମ୍ଭେ ରାଶିଦାନ ଦେବା
ଲୋକଙ୍କୁ ପିତୃଙ୍କ ସନ୍ତୋଷ କି କହିବା ।
ମାଘ ମାସେ ଦ୍ୱିଜ ଯେ ଦିଏ ତିଳଦାନ
ନ କରେ ସେ କେବେ ନରକ ଦରଶନ ।
କଶ୍ୟପ ଋଷିଙ୍କର ଗାତ୍ରରୁ ରାଶିଏ
ସମ୍ଭବବାରୁ ଦାନ ବଡ଼ଟି ସେ ରାସ୍ୟେ ।
ଅପଭ୍ରମ୍ଯ ଶଙ୍ଖଲିଖିତ ରାଶିଦାନ
ଦେବାରୁ ସ୍ୱର୍ଗପୁରେ କଲେ ଯାଇ ସ୍ଥାନ ।
କୁଶିକ ଋଷି ତିଳାଗ୍ନିରେ ହୋମ କରି
ବସିଲେ ସେ ସ୍ୱର୍ଗପୁରରେ ମୋଦ ଧରି ।
ପୂର୍ବେ ଦେବେ ବ୍ରହ୍ମାଙ୍କ ସମୀପକୁ ଗଲେ
ଯାଗ କରିବା ପାଇଁ ଭୂମିକି ମାଗିଲେ ।
ବ୍ରହ୍ମା ବୋଇଲେ ମୁହିଁ ଦେଉଛି ତୁମ୍ଭଙ୍କୁ
ମହୀ, ତୁମ୍ଭେ କର ଏବେ ଯାଇ ଯାଗକୁ ।
ଏହା ଶୁଣିଣ ଦେବେ ବ୍ରହ୍ମାଙ୍କୁ ନମିଲେ
ମହୀକି ଆସି ଯାଗ ଦ୍ୱାର ଭିଆଇଲେ ।

ଅଗସ୍ତ୍ୟ ଭୃଗୁ କଣ୍ୱ ଅତ୍ରି ବୃଷାକପି
ଆସିଲେ ଦେବଙ୍କ ଯାଗେ ଏ ଆଦି ତପୀ ।
ଦେବତାଏ ଋଷିକୁଳଙ୍କୁ ନେହେ ଦେଖି
ବେଦ ପଢ଼ି ଯାଗ କରିଲେ ହୋଇ ସୁଖୀ ।
ବ୍ରହ୍ମା ତ ଦେବତାଙ୍କୁ ଭୂମି ଦେଇଥିଲେ
ଏଣୁ ଋଷିମାନଙ୍କୁ ଭୂମିଦାନ ଦେଲେ ।
ଏହି ସକାଶରୁ କହୁଛି ଯୁଧିଷ୍ଠିର
ଭୂମି ଦେବା ଲୋକ ଦୁଃଖରୁ ହୋଏ ପାର ।
ଉହ ଦେଇ ଦ୍ୱିଜଙ୍କୁ ଘର ଯେ କରାଏ
ପୁଣ୍ୟଲୋକରେ ସେହୁ ସ୍ଥାନ ପାଏ ରସ୍ୟେ ।
ଗାଈଙ୍କର ନିମନ୍ତେ ଘର ଯେ ଦେଇଛି
ତା ସପତକୁଳ ଯାକକୁ ସେ ତାରିଛି ।
ପରସ୍ଥାନରେ ଶ୍ରାଦ୍ଧ କଲେ ପର ପିତୃ—
ମାନେ ତାହା ପାଆନ୍ତି ଜାଣ କରି ହେତୁ ।
ଏହା ଜାଣି ଲୋକ ଯା ଘରେ ରହିଥିବ
ତାଠାରୁ କିଣିଲେ ପିଣ୍ଡକୁ ବାଢ଼ିବ ।
ବନ ପର୍ବତ ପୁଣି ନଦୀ ତୀର୍ଥଙ୍କରେ
ଶ୍ରାଦ୍ଧ କରଣ ପିଣ୍ଡ ଦେବ ନିଃଶଙ୍କରେ ।
ଏବେ ଶୁଣ ଗୋ ଦାନ କଥା ମହାରାଜ
ଯା କଲେ ସବୁ ପାପୁ ହୁଅନ୍ତି ବରଜ ।
ସବୁ ତପସ୍ୱୀଙ୍କର ପ୍ରତିକଟି ଗାଈ
ଅଧିକ ବୋଲନ୍ତି ଜାଣ ମହୀସାଇଁ ।
ଗାଈଙ୍କି ଧେନ ଶିବ ହରିବାକୁ ତାପ
ପୂର୍ବକାଳେ ବସି କଲେଟି ବହୁ ତପ ।
ଶୃଙ୍ଗ ବାଳ ପସୁ ପୁଚ୍ଛାଗ୍ର ମୂତ୍ର ଚମ
ଆଦି ଅଟଇ ଜାଣ ଗାଈଙ୍କ ଉତ୍ତମ ।
ବ୍ରାହ୍ମଣଙ୍କ କୁଳେ ସହିତ ହୋଇ ଗାଈ
ବ୍ରହ୍ମଲୋକରେ ସେ ବସନ୍ତି ସୁଖ ପାଇ ।
ଏହି ସକାଶୁଁ ଗୋ ବ୍ରାହ୍ମଣ ଶୁଣ ଏକ
ବୋଲକରି କହନ୍ତି ଅବନୀ ନାୟକ ।
ରନ୍ତିଦେବ ରାଜା ସେ ପୂର୍ବେ ଯାଗ କଲେ
ଗାଈଚର୍ମରେ ଚର୍ମଣ୍ୱତୀ ନଦୀ କଲେ ।
ଗାଈଙ୍କି ଯେ ବ୍ରାହ୍ମଣ ମାନଙ୍କୁ ଦିଅଇ
ବିପତ୍ତିରୁ ନିଃସନ୍ଦେହରେ ସେ ତରଇ ।
ସହସ୍ରେ ଗାଈ ଦେଲେ ନୁହଇ ନରକ
ଶତ୍ରୁଙ୍କ ହୃଦରେ ଥୁଆଏ ନେଇ ଦକ ।

ଗାଈଙ୍କ କ୍ଷୀରକୁ ଅମୃତ ବୋଲି କହି
ତାହାହେଲେ ଅମୃତ ଦେବା ଫଳ ପାଇ ।
ବୃଷଭ ଯେ ଦିଅଇ ଦ୍ୱିଜଙ୍କୁ ରାଜନ
ଶଚୀପତିବଲ୍ଲଭ ହୁଅଇ ସେ ଜାଣ ।
ଗାଈମାନେ ପ୍ରାଣୀମାନଙ୍କର ପରାଣ
ଗାଈକି ଦେଲେ ପ୍ରାଣ ଦେଲା ପରି ଜାଣ ।
ଗାଈବିନା ବୃଷୀ ନାସ୍ତିକ ବ୍ରାହ୍ମଣଙ୍କୁ
ଯେ ଦେବ ଗାଈ, ଯିବ ସେ ବଡ଼ ନର୍କକୁ ।
ରୋଗିଣୀ ଗ୍ଲେଟି କାଣୀ ଯେ ବା ଗାଈ ଛାଡ଼ି
ଯେ ଭଲ ହେବ ଦେବ ଦ୍ୱିଜେ ଆଣି ଲୋଡ଼ି ।
ସହସ୍ରଦଶ ଗାଈ ଦ୍ୱିଜଙ୍କୁ ଯେ ଦିଏ
ଆସନରେ ତାଙ୍କୁ ବସାନ୍ତି ଦେବରାୟେ ।
ଶତସହସ୍ର ଯେ ଦେଇଛି ଗାଈ ଦାନ
ଅକ୍ଷୟ ଲୋକରେ ସେ କରେ ଯାଇ ସ୍ଥାନ ।
ଗୋଦାନ ତିଳଦାନ ଭୂମିଦାନ କଥା
ଶୁଣିଲ ତ ଆହେ ପାଣ୍ଡବ ମହାରଥୀ ।
ଏବେ ହେ ଶୁଣ ଅନ୍ନଦାନର ଚରିତ
ଆହେ ମହୀକ୍ଷିତିମଣ୍ଡଳ ପାଣ୍ଡୁସୁତ ।
ଅନ୍ନଦାନ ଦେଇ ତରିଲେ ଦେବରାଜା
ସ୍ୱର୍ଗପୁରେ ବସିଲେ ତୋଷ କରି ମଜ୍ଜା ।
କ୍ଷୁଧାର୍ତ୍ତ ଲୋକଙ୍କୁ ଯେ ଅନ୍ନଦାନ ଦିଏ
ବ୍ରହ୍ମ ଲୋକେ ଯାଇ ସେ ପାଦକୁ ପକାଏ ।
ଅନ୍ନ ଦେଲା ପରି ସୁନା ଯେ ଲୁଗା ଦାନ
ନୁହଇଟି ଜାଣ ହେ ପାଣ୍ଡବ ରାଜନ ।
ଯାହା ଲୋକ ଖାଇବ ଦେବଙ୍କୁ ତା ଦେବ
ଯେବେ, ତେବେ ଏ ସଂସାରରୁ ସେ ତରିବ ।
କାର୍ତ୍ତିକମାସ ଶୁକ୍ଳପକ୍ଷେ ଅନ୍ନଦାନ
ଯେ ଦିଏ ସେ ହୋଏଟି ପୁଣ୍ୟର ଭାଜନ ।
ଭୋଜନ ନ କରି ଯେ ଅତିଥିଙ୍କି ଅନ୍ନ
ଦେଇଛି ତା' ପୁଣ୍ୟ ନୁହଇ କଥନ ।
ଯୁଧିଷ୍ଠିର ବୋଇଲେ ଜଳଦାନ ଫଳ
କହିବା ହେଉ ଆହେ ଭୀଷ୍ମ ଧର୍ମଶୀଳ ।
ଭୀଷ୍ମ ବୋଇଲେ ଆହେ ଅନ୍ନ ଜଳଦାନ
ଦାନଯାକରେ ଜାଣ ଅଟଇ ମଣ୍ଡନ ।
ଅନ୍ନଦାନ ଦେଲେ ବଢ଼ଇ ତେଜୋବଳ
ଜାଣିଥାଅ ଆହେ ପାଣ୍ଡବ-ନରପାଳ ।
ଶିବି ରାଜା ଦେହ ମାଉଁସ କାଟି ଦେଲେ
ତ୍ରିଜଗତ ମଧ୍ୟେ ଉତ୍ତମ ବୋଲାଇଲେ ।
ସେ କଥାରୁ ଉତ୍ତମ ଅଟଇ ଅନ୍ନଦାନ
ଦେବାର ଆହେ ଜାଣ ପାଣ୍ଡବ-ରାଜନ ।
ଚନ୍ଦ୍ର ଔଷଧି ଅମୃତ ଜଳୁଁ ଜାତ ।
ହୋଇଅଛନ୍ତି ହେ ପାଣ୍ଡବ-ନରନାଥ ।
ଏହି ସକାଶୁ ଯେବେ ଦେବ ଜଳଦାନ,
ଧର୍ମ-କୀର୍ତ୍ତି-ଆୟୁଷକର ହେବ ଜାଣ ।
ଯୁଧିଷ୍ଠିର ବୋଇଲେ ତିଳ ଦୀପ ଅନ୍ନ
ବସ୍ତ୍ରଦାନକୁ ପୁଣି କରହେ ବଖାଣ ।
ଭୀଷ୍ମ ବୋଇଲେ ଆହେ ଯମ ବ୍ରାହ୍ମଣର
ସମ୍ବାଦ ଯା ଅଛି ତା ଶୁଣ ନରବର ।
ଗଙ୍ଗା ଯମୁନାର ତଟରେ ଯାମୁନ—
ଗିରିଟିଏ ଥିଲା ବୃକ୍ଷରେ ହୋଇ ଘନ ।
ତହିଁ ତଳେ ପର୍ଣ୍ଣଶାଳାରେ ଶାସନଟି
କରିଥିଲେ ବ୍ରାହ୍ମଣମାନେ ହୋଇ ଗୋଟି ।
ଯମ ଦିନେ ଦୂତକୁ ଡକାଇ ଆଣିଲେ
ପର୍ଣ୍ଣଶାଳା ଗ୍ରାମକୁ ଯିବୁ ତୁ ବୋଇଲେ ।
ସେଠାରେ ରହିଅଛନ୍ତି ଶର୍ମିଳ ବ୍ରାହ୍ମଣ
ତାହାଙ୍କୁ ମୋର ଧର୍ମପୁରକୁ ଘେନିଆଣ ।
ସେ ବ୍ରାହ୍ମଣର ପଡ଼ଶାରେ ସେହିପରି
ଦ୍ୱିଜ ଛନ୍ତି, ତାଙ୍କୁ ଆସିବୁ ଛାଡ଼ିକରି ।
ଏହା ଶୁଣି ଦୂତ ମସ୍ତକେ କରି ହେଲା
ଯିବି ମୁଁ ବୋଲିକରି ସେହିଠାକୁ ଗଲା ।
ଯମ ଯେ ଦ୍ୱିଜଙ୍କୁ କହିଲେ ଆଣିବାକୁ
ତାଙ୍କୁ ଛାଡ଼ି ଆଣିଲା ପଡ଼ଶା ଦ୍ୱିଜଙ୍କୁ ।
ଯମ ସେ ବ୍ରାହ୍ମଣଙ୍କୁ ଦେଖିଣ ଦୂତକୁ
ବୋଇଲେ କାହିଁପାଇଁ ଆଣିଲୁ ଏହାଙ୍କୁ ।
ମୁଁ ତ ତୋତେ ଆଗରୁ କହିଥିଲି ନାହିଁ
ତୋ ମତରେ ଭ୍ରମି ହେଲୁ କି ପ୍ରେତସାଇଁ ।
ବ୍ରାହ୍ମଣ ସେକାଳ ବୋଇଲେ ଆହେ ଯମ-
ନୃପତି ହେଲା ମୋର ଭାଗ୍ୟଟି ଉତ୍ତମ ।
ଆସିଲିନ ମୁହିଁ ତ ଛାଡ଼ି ମର୍ତ୍ତ୍ୟପୁର
ବୋଲି ତୁମ୍ଭର ପାଖେ କରିବି ମୁଁ ଘର ।
ମର୍ତ୍ତ୍ୟପୁରେ ଯିବାକୁ ମନ ହେଉନାହିଁ
ଆୟୁଷକୁ ଏଠାରେ ସାରିଦେବି ମୁହିଁ ।

ଯମ ବୋଇଲେ ମୁଁ ଜାଣଇ ଧରମକୁ
ନ ଜାଣଇ ଦ୍ୱିଜବର ମୁହିଁ କାଳକୁ ।
ଏ ସକାଶୁଁ କହିଲି ଘରଟିକି ଯାଅ
କାଳ ହେଲେ ଆସି ମୋ ସଙ୍ଗେ ଭେଟ ହୁଅ ।
ଆଉ କି ଇଚ୍ଛାଥିଲେ କହ ବିପ୍ରବର
ତାହା ମୁଁ କରିଦେବି ସନ୍ଦେହ ନ କର ।
ବ୍ରାହ୍ମଣ ବୋଇଲେ ମୁଁ ମର୍ତ୍ତ୍ୟେ ତ ଯାଉଛି
କି କଲେ କରିବ ହେ କହ ଧର୍ମବସ୍ତି ।
ଯମ ବୋଇଲେ ଆହେ ଦେଲେ ବରଦାନ
ହୋଇବ ତୁମ୍ଭେ ଆମ୍ଭ ମାନସ-ମୋହନ ।
ବୈଶାଖ ପୂର୍ଣ୍ଣିମୀ ଦିନ ଯେ ରାଣି ଦିଏ
ଏହା ବାହାରେ ରାଶିଖଜା ଯେ ଖୁଆଏ ।
ସେ ଜେନ ମୋର ଦଣ୍ଡୁଁ ହୁଅଇ ସେ ପାର
ତରଇ ଅଳପକେ ନର୍କ ଦୁସ୍ତର ।
ଜଳଦାନ ଦେଇଣ ଖୋଳାଇ ପୋଖରୀ
ତା ତଟେ ବୃକ୍ଷ ଲଗାଇବ ଯତ୍ନ କରି ।
ଏରୂପେ ଯମଙ୍କର ଶୁଣିଣ ବଚନ
ଯିବାକୁ ଘରକୁ ସେ ଦ୍ୱିଜ କଲେ ମନ ।
ଯମଙ୍କର ଆଜ୍ଞାରେ ଯମଦୂତେ ନେଲେ,
ସେ ଦ୍ୱିଜଙ୍କୁ ନିଜ ଘରରେ ଛାଡ଼ିଦେଲେ ।
ପଡ଼ଶାଘର ଶର୍ମିଳ ଦ୍ୱିଜଙ୍କ କର
ଧରିକରି ଆଣିଲେ ଦୂତ ଯମଙ୍କର ।
ଯମ ସେ ଦ୍ୱିଜଟିକି ନୟନରେ ଦେଖି
ଆସନୁଁ ଉଠି ପୂଜା କଲେ ହୋଇ ସୁଖୀ ।
ଏ ବାହାରେ ଧରମ ଉପଦେଶ ଦେଲେ
ଘରଟିକି ଯାଅ ହେ ବୋଲିଣ ବୋଇଲେ ।
ଦ୍ୱିଜ ଯମ ବୋଇଲେ ନିଜ ଘରେ ଆସି
ଯମଙ୍କ କହିବାର କଥା କଲେ ଘୋଷି ।
ଯମ ଦୀପଦାନକୁ ପିତୃ ବ୍ରତପାଇଁ
ପ୍ରଶଂସିଛନ୍ତି ହେ ପାଣ୍ଡବ-ନରସାଇଁ ।
ସେହି ଦିନରୁ ଦୀପଦାନ ଦେଇ ନର
ପିତୃଙ୍କୁ ଉଦ୍ଧାରଣ କରନ୍ତି ସଂସାର ।
ରତନ ଦାନ ବ୍ରାହ୍ମଣଙ୍କୁ ଯେ ଦିଅଇ
ବ୍ରାହ୍ମଣ ଯାଗ କଲା ଫଳ ସେ ଲଭଇ ।
ବ୍ରାହ୍ମଣ ଯେବେ ପ୍ରତିଗ୍ରହ କରି ଦାନ
ଦିଏ ତାର ଫଳ ହୁଅଇ ଅକଥନ ।

ଲୁଗାଦାନ ଦେଲେ ଉତ୍ତମ ରୂପ ବହି
ଉତ୍ତମ ଭୋଗଇ ଉତ୍ତମ ବେଶ ହୋଇ ।
ଯୁଧିଷ୍ଠିର ବୋଇଲେ ଦାନଙ୍କ ବିଧାନ
ବିଶେଷି ମୋତେ କହ ରଥୀଙ୍କ ରାଜନ ।
ଭୀଷ୍ମ ବୋଇଲେ ଆହେ ଗାଈ ପୃଥ୍ୱୀ ବିଦ୍ୟା
ଦେବାର ଲୋକଟିକୁ ତରଇ ଅବିଦ୍ୟା ।
ଗୋଦାନରୁ ବଡ଼ ହୋଇଣ ଦାନ ନାହିଁ
ଏହା ଜାଣି ଗାଈ ପୂଜିବ ପ୍ରୀତି ବହି ।
ଗାଈଙ୍କର ଦେହରେ ଗୋଡ଼ ନ ମାରିବ
ଗାଈଙ୍କର ପାଦକୁ ଛୁଇଁଣ ନମିବ ।
ପାଣି ପିଇବାକାଳେ ଗାଈଙ୍କି ଟି ମାର-
ଦେଲେ ଲୋକ ହୁଅଇ ପୁଣ୍ୟ ନାଶକାରୀ ।
ଦେଖୁଛ ତ ଗାଈ-ଗୋବର ଦେବ ଘର
ଶୁଦ୍ଧ ହୋଇ ଯାଉଅଛି ହେ ଯୁଧିଷ୍ଠିର ।
ବରଷେ ପର୍ଯ୍ୟନ୍ତେ ନ ଭୁଞ୍ଜି ପର ଗାଈ
ମୁଖେ ଦେଲେ ଘାସ ପାତକରୁ ତରଇ ।
ଉତ୍ତମ ପାତ୍ରଟିକି ଦେବ ଗାଈଦାନ
ସେ ହେବ ନରଙ୍କେ ବିବେକବନ୍ତ ଜନ ।
ବ୍ରାହ୍ମଣର ଦ୍ରବ୍ୟ ହରିଲେ ସବୁ ଦାନ
ସୁକୃତ କ୍ଷଣକରେ ହୁଅଇଟି ଆନ ।
ବ୍ରାହ୍ମଣର ଦ୍ରବ୍ୟ ହରଣେ ନୃଗ ନୃପ
ଶୁଣ ତା କହିବା ପାଇଲେ ଯେଉଁ ତାପ ।
ପୂର୍ବରେ ଦ୍ୱାରକାରେ ଥିଲା ମହାକୂପ
ତୃଣରେ ପୋତି ହୋଇ ହେ ପାଣ୍ଡବ ନୃପ ।
ଯଦୁମାନେ ତୃଷାର୍ତ୍ତ ହୋଇ ସେ କୂପକୁ
ଗଲେ ଆହେ ରାଜନ ପାଣି ଆଣିବାକୁ ।
ଦେଖିଲେ ସେ କୂପେ ପଡ଼ିଛି କୃକଳାସ
ଠିଆକରି ସେ ଦେଇଅଛି ପୁଚ୍ଛଦେଶ ।
ଯାଦବେ ସେହି କୃକଳାସକୁ ବାନ୍ଧିଲେ
କୂପରୁ କାଢ଼ିବାକୁ ସମସ୍ତେ ଝିଙ୍କିଲେ ।
ଟିକେ କୃକଳାସକୁ ନ ପାରିଣ ଟାଳି
ବିସ୍ମୟ ହୋଇକରି ବସିଲେ ସେ ଭାଳି ।
ବସୁଦେବ-ତନୟ ଗୋବର୍ଦ୍ଧନଧର
କଲେ କୃକଳାସକୁ କୂପରୁ ବାହାର ।
କୃକଳାସ କୃଷ୍ଣ ଛୁଇଁବା ମାତ୍ରକରେ
ଧରି ଦିବ୍ୟରୂପ ରହିଣ ଆଗରେ ।

କହିଲେ ହେ ନରବର ମୁଁ ନୃଗ ନୃପ
କରି ଅଛନ୍ତି ଜାଣ ଯାଗକୁ ଅମାପ ।
ଶ୍ରୀକୃଷ୍ଣ ବୋଇଲେ ହେ ଲକ୍ଷ ଲକ୍ଷ ଗାଈ
ଦେଇଅଛ ତ ଯାଗ କରି ପ୍ରୀତି ବହି ।
କାହିଁ ପାଇଁ ହୋଇଲେ ଏଣ୍ଡୁଅ-ସ୍ୱରୂପ
ତାହା ମୋ ଆଗରେ ପ୍ରକାଶି କହ ନୃପ ।
ନୃପ ବୋଇଲେ ସେ ସହସ୍ରେ ଗାଈ ନିତି
ଦଅଇ ତ ଦ୍ୱିଜଙ୍କୁ ମୁହିଁ ବହି ପ୍ରୀତି ।
ଦ୍ୱିଜଙ୍କ ଗାଈଟିଏ ମୋହର ଗାଈରେ
ମିଶିଗଲା ଦେଲି ନଜାଣି ଦ୍ୱିଜକରେ ।
ଯେ ବ୍ରାହ୍ମଣର ଜାଣ ହଜିଥିଲା ଗାଈ
ସମ୍ଭାଳିଲା ଯାଇଣ ସେ ବ୍ରାହ୍ମଣ ତହିଁ ।
ବୋଇଲା ମୋର ଗାଈ ତୋ ଘରେ ତ ଅଛି
ଦିଅ ମୋତେ ଏବେ ଜାଣ ମୁଁ ମାଗୁଅଛି ।
ଦ୍ୱିଜ ବୋଇଲେ ମୁଁ ତୋ ଘରୁ ଆଣିନାହିଁ
ଦେଇଅଛନ୍ତି ନୃଗରାଜା ମୋତେ ଗାଈ ।
ଏହିରୂପେ ସେ ଦୁଇ ଦ୍ୱିଜେ ଗୋଳ ହେଲେ
ମୋହଠାକୁ ଆସିଣ ଗୁହାରି ସେ କଲେ ।
ଯାହାର କରେ ଦେଇଥିଲି ମୁଁ ଯେ ଗାଈ
ତାହାଙ୍କୁ ବୋଇଲି ମୁଁ ଦେବି ଶଏ ଗାଈ ।
ସେ ଗାଈଟି ଦ୍ୱିଜଙ୍କୁ ବାହୁଡ଼ାଇ ଦିଅ
ଏ ବାହାରେ ଧନ ରତନ ମଧ୍ୟ ନିଅ ।
ପ୍ରତିଗ୍ରାହୀ ବୋଇଲେ ଗାଈ ଦେବି ନାହିଁ
ତୁମ୍ଭର ମନ ଥିଲେ ଦିଅ ବଳେ ନେଇ ।
ଏତେ ବୋଲିକରି ସେ ଆପଣା ଘରକୁ
ବାହାରିଗଲେ ନ ଶୁଣି ମୋ ବଚନକୁ ।
ଯେ ଦ୍ୱିଜର ଗାଈ ନ ଜାଣି ଦେଇଥିଲି
ତାହାଙ୍କୁ ମୁହିଁ କର ଯୋଡ଼ିଣ କହିଲି ।
ଦେଉଅଛି ଶହେ ସହସ୍ର ଗାଈ ଦ୍ୱିଜ
ନ ଭାଙ୍ଗ ତୁମ୍ଭେ ମୋର ଧରମରୁ ଓଜ ।
ବ୍ରାହ୍ମଣ ବୋଇଲେ ମୁଁ ଆଜଯାଏ ରାଜା
ଘେନି ତ ନାହିଁ ଜାଣ ରାଜାଠାରୁ ପୂଜା ।
ତୁମ୍ଭଠାରୁ କେମନ୍ତେ ସହସ୍ରେ ଗାଈ ନେବି
ଜାଣୁ ଜାଣୁ ଅଧର୍ମ କଥା ଆଚରିବି ।
ଏହି ସକାଶରୁ ମୋ ଗାଈ ମୋତେ ଦିଅ
ତୁମ୍ଭର ଧନଯାକ ଘରେ ରଖିଥାଅ ।

ଏତେ ବୋଲିଣ ଦ୍ୱିଜ ତମ ତମ ହୋଇ
ବାହାରିଗଲେ ମୋର ମୁହଁକୁ ନ ଚାହିଁ ।
ଏହି ସମୟରେ ମୁଁ ପାଇଲି ମରଣ
ଭେଟିଲି ଯାଇକରି ପ୍ରେତଙ୍କର ରାଣ ।
ଯମ ମୋତେ ଦେଖି ଆଦରେ ପୂଜା କଲେ
ଆସ ପୁଣ୍ୟବନ୍ତ ରାଜନ ହେ ବୋଇଲେ ।
ଏ ବାହାରେ ବୋଇଲେ ତ ଜାଣି ଯେ ପାପ ।
କରିଛ କରିବ ସେ ନୃପ ତୁମ୍ଭେ ତାପ ।
ଶୁଭ ଅଶୁଭରୁ କାହାକୁ ଆଗ ଇଚ୍ଛା
ଅଛି ତାହା କହ ହେ ନୃଗ ନୃପବଚ୍ଛା ।
ମୁଁ ବୋଇଲି ଆଗ ଅଶୁଭ ଭୁଞ୍ଜି ସାରି
ପଛେ ଶୁଭ ଭୁଞ୍ଜିବି ପ୍ରେତ ଦଣ୍ଡଧାରୀ ।
ଏହା ଶୁଣି ପଡ଼ ବୋଲନ୍ତେ ମୋତେ ଯମ
ପଡ଼ିଲି ମୁଁ ତଳେ ହେ ଯଦୁଙ୍କ ଉତ୍ତମ ।
ଏହିକାଳେ ଶୂନ୍ୟରେ କାଳଦଣ୍ଡପାଣି
ଥାଇକରି ମୋତେ କହିଲେ ଉଚ୍ଚେ ବାଣୀ ।
ସହସ୍ରେ ବରଷ ଅନ୍ତରେ ଜନମିବେ ।
କୃଷ୍ଣ ତୁମ୍ଭଙ୍କୁ ଏହି ପାପରୁ ତାରିବେ ।
ଆହେ କୃଷ୍ଣ ସେହି ଦିନୁ ମୁଁ କୃକଳାସ
ହୋଇ ଏ କୂପ ମଧ୍ୟେ କରିଥିଲି ବାସ ।
ତୁମ୍ଭ ପ୍ରସାଦୁଁ ଏବେ ନାଶିଲା ପାତକ
ଆଜ୍ଞା ଦିଅ ହେ ଏବେ ଯିବି ମୁହିଁ ନାକ ।
ଏହା ଶୁଣି କୃଷ୍ଣ ବୋଇଲେ ଯାଅ ରାଜା
ସ୍ୱର୍ଗପୁରେ ତୁମ୍ଭଙ୍କୁ ପୂଜନ୍ତୁ ବଡ଼ୋଜା ।
ଏହିରୂପେ କୃଷ୍ଣଙ୍କଠାରୁ ଆଜ୍ଞା ପାଇ
ନୃଗ ରାଜା ଭେଟିଲେ ଯାଇ ଶଚୀସାଇଁ ।
ଦିବ୍ୟ ବିମାନକୁ ଆରୋହି ଯୁଧିଷ୍ଠିର
ମୋ କହିବାରୁ ଏହା ହୃଦୟରେ କର ।
ନୃଗ ରାଜା ସ୍ୱର୍ଗକୁ ଯାଆନ୍ତେ ଗୋବିନ୍ଦ
ଯଦୁଙ୍କୁ ଆଜ୍ଞା ଦେଲେ ବହିଣ ଆନନ୍ଦ ।
ବ୍ରାହ୍ମଣ ଦ୍ରବ୍ୟକୁ ଆଜୁଁ ନ ହରିବ
ହରିଲେ ନୃଗ ରାଜା ପରାୟେ ହୋଇବ ।
ପର ଗାଈ ହରଣ ଫଳ ଯୁଧିଷ୍ଠିର
ଶୁଣିଲ ତ ଜଗିବ ତହିଁ ନରନ୍ତର ।
ଏଠାରେ ବାସୁଦେବ ନୃଗଙ୍କ ସମ୍ବାଦ
ସରିଲା କୃଷ୍ଣସିଂହ କହେ ବହି ମୋଦ ।

## ଗୋଦାନ ଫଳ

ଯୁଧିଷ୍ଠିର ବୋଇଲେ ଗାଈଦାନ ଦେଲେ
କି ଫଳ ହୋଏ ତା ବିସ୍ତାରି କହ ଭଲେ ।
ଭୀଷ୍ମ ବୋଇଲେ ହେ କହିବା ପାଣ୍ଡୁସୁତ
ଶୁଣ ସମ୍ବାଦ ଉଦ୍ଦାଳକ-ନାଚିକେତ ।
ଉଦ୍ଦାଳକ ଋଷି ଦୀକ୍ଷାକୁ ଆଚରିଲେ
ପୁଅ ନାଚିକେତକୁ ଡକାଇ ବୋଇଲେ ।
ଶୁଣ ଆରେ ନାଚିକେତ ମୋହର ବାବା
ଆଜଠାରୁ ମୋତେଟି କରୁଥିବୁ ସେବା ।
ନାଚିକେତ ବାପାଙ୍କ କହିବା ମାପିକେ
ସେବାକଲେ ରାଜନ ଅତ୍ୟନ୍ତ ନିଃଶଙ୍କେ ।
ଦିନେ ଉଦ୍ଦାଳକ ବୋଇଲେ ନାଚିକେତ
ସ୍ନାନକରି ମୁହିଁ ତ ଆସିଲି ତୁରିତ ।
ନଦୀ-ଘାଟରେ କୁଶପାଣି ମୋ ପଡ଼ିଛି
ଯାଅ ନେଇଆସ ମୋ ନାଚିକେତ ବହି ।
ନାଚିକେତ ନଦୀ-ଘାଟକୁ ଧାଇଁଗଲେ
ନ ପାଇ କୁଶପାଣି ବାପାଙ୍କୁ କହିଲେ ।
ନଦୀର ପ୍ରବାହରେ କୁଶପାଣି ଦୁଇ
ଭାସିଗଲା ପିତା କି କରିବଇଁ ମୁହିଁ ।
କୁଶ ପାଣି ନ ପାଇ ଉଦ୍ଦାଳକ ମୁନି
ପୁଅକୁ ଶାପ ଦେଲେ ଧର୍ମକୁ ନ ମାନି ।
ଯମକୁ ନିକଟରେ ଦେଖିବୁ ତୁ ଯାଇ
ମୋତେ କୁଶପାଣି ତ ଆଣିଦେଲୁ ନାହିଁ ।
ଏହା ଶୁଣିଣ ନାଚିକେତ ପଡ଼ି ତଳେ
ପ୍ରାଣ ଛାଡ଼ି ଯମଙ୍କୁ ଦେଖିଲେ ସେ ଡୋଳେ ।
ଉଦ୍ଦାଳକ ନାଚିକେତଙ୍କର ମରଣ
ଦେଖିକରି ଉଚ୍ଚରେ କଲେଟି କାରୁଣ୍ୟ ।
କିସ ଖାଇବା ବୋଲି ସେ ଋଷି ବୋଇଲେ
ସେ ଦିନଟିଯାକ ସେ ଉପାସେ ରହିଲେ ।
ଉଦ୍ଦାଳକ ଅଶ୍ରୁଧାରରେ ନାଚିକେତ
ଦେହ ଧୋଇଗଲା ହେ ଜାଣ ପାଣ୍ଡୁସୁତ ।
ନାଚିକେତ ଯମରାଜାଙ୍କୁ ନେଣେ ଦେଖି
ଧଡ଼ପଡ଼ ହୋଇ ଉଠିଲେ ହୋଇ ସୁଖୀ ।
ବାପାଙ୍କୁ ବୋଇଲେ ହେ କିପାଇଁ କାନ୍ଦୁଛ
ଦେଖି ଆସିଲି ମୁହିଁ ସୂର୍ଯ୍ୟଙ୍କର ବତ୍ସ ।

ବାପ ବୋଇଲେ ରେ ବାବୁ ମୋ ଭାଗ୍ୟହେଲା
ଯାହା ତୋର ଗଣ୍ଡିରେ ପରାଣ ରହିଲା ।
ନାଚିକେତ ବୋଇଲେ ମୁଁ ତୁମ୍ଭ ବୋଲେଗଲି
ଯମରାଜାଙ୍କର ସଭାକୁ ମୁଁ ଦେଖିଲି ।
ସେ ସଭାଟି ଅଟଇ ସହସ୍ରେ ଯୋଜନ
ଦୀର୍ଘ ପ୍ରସ୍ଥ ଜାଣ ହେ ପିତା ତପୋଧନ ।
ଯମ ମୋତେ ଦେଖି ବହୁତ ତୋଷ ହେଲେ
ଆସନ ଦେଇ ସମୀପରେ ବସାଇଲେ ।
ବହୁତ ପ୍ରକାରରେ କଲେ ମୋତେ ପୂଜା
ତୁମ୍ଭ ପୁତ୍ର ବୋଲି ହେ ଜାଣ ଯମରାଜା ।
ଯମଙ୍କୁ ମୁଁ ବୋଇଲି ଯେଉଁ ଲୋକ ଯୋଗ୍ୟ
ହେବି ମୁଁ ତାହା ମୋତେ ଦିଅ ମହାଭାଗ ।
ଯମ ବୋଇଲେ ହେ ବାପାଙ୍କ ବୋଲେମୋତେ
ଆସିକରି ସିନା ଦେଖିଲ ମହାମତେ ।
ମର ବୋଲିଥିଲେ ତ ତୁମ୍ଭଙ୍କୁ ରଖନ୍ତୁ
ତୁମ୍ଭରି ଅନୁରୂପ ଲୋକଙ୍କୁ ଦିଅନ୍ତୁ ।
ଏବେ ଯାଅ ଲେଉଟି କାନ୍ଦୁଛନ୍ତି ବାବୁ
ଯାହା ଇଚ୍ଛା ଅଛି ମାଗ ହେ ତାହାଦେବୁଁ ।
ମୁଁ ବୋଇଲି ପୁଣ୍ୟଲୋକକୁ ଇଚ୍ଛା ମୋର
ହେଉଛି ଦେଖିବାକୁ ଦିଅ ଏହି ବର ।
ମୋହର ବୋଲ ନେଇ ଯାନରେ ବସାଇ
ପୁଣ୍ୟଲୋକକୁ ଦେଖାଇଲେ ମୋତେ ନେଇ ।
ଦେଖିଛି ଆହେ ପିତା ନୟନେ ଯେ ଘର
ଆମ୍ଭର ଏ ଘରକୁ ମଣୁଅଛି ସାର ।
ଶେଯ ଯାନ ବସନ ଭୋଜନ ସାମଗ୍ରୀ
ସେ ଘରଟିମାନଙ୍କରେ ତ ଅଛି ପୂରି ।
କ୍ଷୀର ଦହି ଘୃତନଦୀ ତହିଁ ଅନେକ
ଦେଖିବାବେଳୁ ମୋତେ ଲାଗୁନାହିଁ ଭୋକ ।
ଯମଙ୍କୁ ପୁଚ୍ଛିଲି ଏ ପୁରମାନଙ୍କରେ
କେ ରହିବ ତାହା କହ ତ ମୋ ଆଗରେ ।
ଯମ ବୋଇଲେ ହେ ଗୋରସ ବ୍ରାହ୍ମଣଙ୍କୁ
ଯେଉଁମାନେ ଦେଇଛନ୍ତିଟି ଭୋଜନକୁ ।
ସେହିମାନେ ଆସିଣ ଏ ଘରେ ରହିବେ
ଦୁଧ ଦହି ଘିଅ ନଦୀଙ୍କି ସେ ଭୁଞ୍ଜିବେ ।
ପାଣି ବୁଝିଣ ଦେଇଥିଲେ ଗାଈଦାନ
ଏ ସ୍ଥାନରେ ଆସି କରଇ ଜାଣ ସ୍ଥାନ ।

ବେଦ ପଢି ତପଧ୍ୟା କରିଥାଏ ଯେହ୍ନ
ପାପ ବୋଲକର ତାହାକୁ ଜାଣ କହ୍ନ ।
ପୋଷିଥିବା ଗାଈଙ୍କ ଦିଅଇ ଯେ ଦାନ
ତାର ପୁଣ୍ୟ ବଚନେ ନୁହଇ କଥନ ।
ତିରାତ୍ର ଉପବାସ କରି ଯେବେ ନର
କଳା ଗାଈ ଦିଅଇ ଦ୍ୱିଜଙ୍କର କର ।
ତା ସଙ୍ଗରେ ଯେବେ ବାଛୁରୀଟି ଥାଏ
ତା ସୁକୃତ ଅନେକ ବଢେ ଋଷିରାୟେ ।
ବଳଦଟିଏ ଭଲ କରି ଦାନ ଦେଲେ
ଦଶଗାଈ ଫଳ ଲଭଇ ଲୋକ ଭଲେ ।
ଏହା ଶୁଣି ଯମଙ୍କୁ ପଚାରିଲି ପିତା
ଯମଙ୍କ କଥାରେ ହୃଦରେ ବହି ଚିନ୍ତା ।
ଯାହାର ଗାଈ ନାହିଁ ସେ ଗୋଦାନ ଫଳ
କିରୂପେ ପାଇବେ କହ ତ ଧର୍ମବାଳ ।
ଯମ ବୋଇଲେ ହେ ନ ଥିଲେ ଗାଈ ଘୃତ
ଧେନୁ ଦେବ ଦ୍ୱିଜଙ୍କୁ ଶୁଣ କରି ଚିତ୍ତ ।
ଘୃତଧେନୁ ଯେବେ ନ ମିଳେ ତିଳଧେନୁ
ଦେଲେ ମଧ୍ୟ ଲୋକ ଲଭଇ ପୁଣ୍ୟତନୁ ।
ତିଳଧେନୁ ଅଭାବେ ଜଳଧେନୁ ଦେଲେ
କ୍ଷୀର ନଦୀ ପ୍ରତି ତୁଅଇ ସେ ଭଲେ ।
ଏହା ଶୁଣିଣ ମୁହିଁ କହିଲି ଯମଙ୍କୁ ।
ମୋର ଭାଗ୍ୟ ହେଲା ଯା ଦେଖିଲି ତୁମ୍ଭଙ୍କୁ ।
ଆହେ ପିତା ତୁମ୍ଭ ଶାପରୁ ଛାଡ଼ି ଚିନ୍ତା
ଯମଙ୍କ ତୁଲେ ଯାଇ ହେଲି କଥାବାର୍ତ୍ତା ।
ଯମ ମୋତେ ଧରମ ଉପଦେଶ ଦେଲେ
ପୁଣ୍ୟଲୋକମାନେ ଯେ ମୋତେ ଦେଖାଇଲେ
ଏବେ ମୁଁ କହୁଛି ତୁମ୍ଭଙ୍କୁ ସତ୍ୟ କରି
ଗୋଦାନୁ ବଡ ହୋଇ ନାହିଁ ତିନପୁରୀ ।
ଆଜ ଦିନଠାରୁ ମୁଁ ନିତ କରି ଦାନ
ଲଭିବି ଯାଇ କରି ମହାସୁଖ ସ୍ଥାନ ।
ଯମ ତ ପାଙ୍କେ ଗାଈ ଦେବ କହିଛନ୍ତି
ଦେଉଥିବି ଗାଈ ମୁଁ ଦେଖି ଭଲ ଯନ୍ତି ।
ଏରୂପେ ଯମଙ୍କର ମୁଖରୁ ଶୁଣିଲି
ଯମଙ୍କର ଚରଣ ଧରିଣ ନମିଲି ।
ଯମଙ୍କର ସମ୍ମତେ ଆସିଲି ତୁମ୍ଭଠାରୁ
ତୁମ୍ଭେ ତ କାରଣ ମୋ ଅଟ ଏ ପିଣ୍ଡକୁ ।
ଆଉ କହିବାପାଇଁ ଅଛି କେଉଁ କଥା
ଏତେ ବୋଲି ସୁତ ରହିଲେ ପୋତି ମଥା ।

—*—

## ଗୋଲୋକ ପ୍ରଶ୍ନ ସମାପ୍ତର

ଯୁଧିଷ୍ଠିର ବୋଇଲେ ଗୋଲୋକ ଗାଈଦାନେ
ହୋଏ ବୋଲି ମୋତେ ଯେ କହିଲ ବଚନେ
ଏ ସକାଶୁଁ ବୋଲୁଛି ଆହେ ପିତାମହ
ଗୋଲୋକର କଥା ପ୍ରକାଶି ମୋତେ କହ ।
ଭୀଷ୍ମ ବୋଇଲେ ଆହେ ଇନ୍ଦ୍ର ବ୍ରହ୍ମାଙ୍କର
ସମ୍ବାଦକୁ କହିବା ଶୁଣ ଯୁଧିଷ୍ଠିର ।
ଇନ୍ଦ୍ର ଦିନେ ବ୍ରହ୍ମାଙ୍କ ସମୀପକୁ ଗଲେ
ବ୍ରହ୍ମାଙ୍କର ପାଦରେ ନମି ପଚାରିଲେ ।
କେଉଁ ସୁକୃତ କଲେ ନରମାନଙ୍କର
ଗୋଲୋକ ହେଉଅଛି କହ କୃଷ୍ଣଧର ।
ଗୋଲୋକରେ ବାଞ୍ଛା କି ଅପୂର୍ବ ମିଳଇ
ତାହାକୁ ମଧ୍ୟ ମୋତେ କହ ତ ବତାଇ ।
ଅଳ୍ପ ଦେଲେ ବହୁତ ଫଳ ହୋଏ କିସ
କଲେ ଆହେ କହ ସାବିତ୍ରୀ ଦେବୀ ଈଶ ।
ଗାଈଦାନେ ଦେଲେ ଦକ୍ଷିଣା କିସ ଦେଇ
ଏହା ଶୁଣିବାକୁ ମୋରମନ ଅଛି ଧାଇଁ ।
ବ୍ରହ୍ମା ବୋଇଲେ ଆହେ ତୁମ୍ଭେ କିନା ଆନ
ଏ କଥା ନ ପୁଚ୍ଛନ୍ତି ବସି ସନ୍ନିଧାନ ।
ପଚାରିବାରୁ ତୁମ୍ଭେ ଶୁଣ ମନ ଯାହା
ହେଉଅଛି, କହି ତା ନୋହେ ଶଚୀନାହା ।
ପତିବ୍ରତା ସ୍ତ୍ରୀଏ ଲଭନ୍ତି ଗୋଲୋକ
ସେ ଲୋକ କଥା ଶୁଣ ଶଚୀଙ୍କ ନାୟକ ।
ବାପୀସର ନଦୀ ଅରଣ୍ୟ ପରବତ
ଗୋଲୋକରେ ରହିଛି ଜାଣ ଅପ୍ରମିତ ।
ଏ ବାହାରେ ଯେ ଦ୍ରବ୍ୟ ଘରମାନ ଅଛି
ତା ହେଲେ ମୋ ଘର ବୋଲିବ ତୁଚ୍ଛ ତୁଚ୍ଛ ।
ଗୋଲୋକରୁ ଯାତଲୋକରେ ବଳି ଲୋକ
ଥିଲା ପରି ତ ନହେଉନାହିଁ ମୋ ବିବେକ ।
କ୍ଷମାଶୀଳ ଗୁରୁଭକତ ନରମାନେ
ସେ ଲୋକରେ ବସନ୍ତି ଯାଇ ତୋଷମନେ ।
ସବମାଂସ ଅଭକ୍ଷ୍ୟ ବ୍ରାହ୍ମଣ ସେବକ
ସତ୍ୟବାଦୀ ଜନନୀ-ଜନକ ଅର୍ଚ୍ଚକ ।

ଗାଈ ବ୍ରାହ୍ମଣ ଅକ୍ରୋଧନ ଦୟାବନ୍ତ
ପୁରୁଷେଷ ଦାନ ନିରତ କ୍ଷମାବନ୍ତ ।
ଏମାନେଟି ଅଲଭେ ଗୋଲକକୁ ଯାଇ
ସୁଖଭୋଗ କରି ରହନ୍ତି ସ୍ୱର୍ଗ ପାଇ ।
ମିତ୍ରଦ୍ରୋହୀ ବ୍ରାହ୍ମଣାପରାଧୀ ଗୁରୁଘ୍ନ
ଅନୃଜୁ ଧର୍ମଦ୍ୱେଷୀ କପଟୀ କୃତଘ୍ନ ।
ମିଥ୍ୟାବାଦୀ ପାରଦାରିକ ଯେ ବ୍ରହ୍ମହା
ଏହାଙ୍କୁ ଗୋଲୋକ ନ ମିଳେ ଶଚୀନାହା ।
ନିଜ ଅର୍ଥେ ଗାଈ କିଣି ଯେ ଦିଏ ଦାନ
ମଲେ ହୋଏ ଗୋଲୋକେ ଘର ନିଜ ସ୍ଥାନ ।
ଜୁଆରେ ଧନ ଜିଣି ଗାଈ କିଣି ଦାନ
ଦେଲେ ଲଭଇଟି ଲୋକ ଗୋଲୋକ ଜାଣ ।
ଗାଈ ଘେନି ଗାଈଦାନକୁ ଯେ ଦିଅଇ
ଅକ୍ଷୟ ଲୋକରେ ସେ ଯାଇଟି ବସଇ ।
ଜନ୍ମକାଳୁଁ ସତ୍ୟ କହୁଛି ଯେଉଁ ନର
ଗାଈଦେବା ଫଳଟି ହୁଅଇ ତାହାର ।
ବ୍ରାହ୍ମଣଙ୍କୁ ଦେଇଣ ସତ୍ୟ ରତ ହୋଇ
ଯେବେ ଲୋକ ଗାଈମାନଙ୍କୁ ସେବୁଥାଇ ।
ଗୋଟିଏ ଗାଈ ଦେଲେ ତେବେଟି ତାହାର
କୋଟିଏ ଗାଈ ଫଳ ହୁଏ ମନେକର ।
କ୍ଷତ୍ରିୟ ଯେବେ ଧର୍ମଗୁଣ ଯୁତ ହୋଇ
ଗୋଟିଏ ଗାଈ ଦେଲେ ଅଲଭ୍ୟେ ତରଇ ।
ସହସ୍ର ଗାଈଫଳ ହୁଅଇ ତାହାର
ମୋ କହିବାରୁ ପୁରନ୍ଦର ମନେକର ।
ବୈଶ୍ୟ ଧର୍ମଗୁଣ ସମ୍ପାଦିଣ ଗୋଟିଏ
ଦେଲେ ଗାଈ ପାଞ୍ଚଶ ଦେବା ଫଳ ପାଏ ।
ବିନୀତ ହୋଇ ଶୂଦ୍ର ଏକ ଗାଈ ଦେଲେ
ଶଏ ଗାଈଫଳ ଲଭଇ ଜାଣ ଭଲେ ।
ଗାଈ ଦେଖି ନିତି ଯେ କରେ ନମସ୍କାର
ରାଜସୂୟ ଯାଗର ଫଳ ହୋଏ ତାର ।
ବରଷେ ପରିଯନ୍ତେ ଗାଈ ଯେ ଖୁଆଇ
ଖାଇଲେ ତା ପୁଣ୍ୟ କହିବ କେତେ ମୁହିଁ ।
ଆପଣେ ବିକ ହୋଇ କଲେ ଗାଈଦାନ
ବଡ଼ଇ ପୁଣ୍ୟ ଜାଣ ହୋଇ ଅକଥନ ।
ଯୁଦ୍ଧରୁ ଗାଈ ଆଣି ଦାନ ଯେ ଦିଅଇ
ସେହି ମଧ୍ୟ ସେପରି:ଫଳକୁ ଲଭଇ ।

ନ ପାଇ ଯେବେ ଗାଈ ଦେବ ତିଳ ଧେନୁ
ମନଥିଲେ ଧରିବା ପାଇଁ ଦେବତନୁ ।
କାଳ ପାତ୍ର ଜାଣିଣ ଭଲ ଗାଈ ଦାନ
ଦେଲେ ପୁଣ୍ୟ ହୁଅଇ ହେ ପାକଶାସନ ।
ଅକାଳେ ଅପାତ୍ରରେ ବୁଢ଼ୀ ଗାଈ ଦେଲେ
ପାତକୀ ହୋଇ ଲୋକ ନର୍କେ ପଡ଼େ ଭଲେ ।
ନନ୍ଦଙ୍କେ ଗଙ୍ଗାତିରି ଗାଈଙ୍କେ କପିଳା
ବଡ଼ ଅଟେ ଜାଣ କଶ୍ୟପଙ୍କ ବଳା ।
ଭଲ ଗାଈ ବଳଦ ଦାନ ଯେ ଦିଅଇ
ଦଶ ଧେନୁ ଦେବାର ଫଳ ସେ ଲଭଇ ।
ବନରେ ଦ୍ୱିଜଙ୍କୁ ଗାଈଙ୍କି ଯେ ରଖଇ
ଅଶ୍ୱମେଧ ଯାଗ ଫଳକୁ ସେ ଲଭଇ ।
ଇନ୍ଦ୍ର ବୋଇଲେ ହେ ଜାଣି ଯେ ଗାଈ ହରେ
ଅର୍ଥ ପାଇଣ ଅବା ବିକି ଦିଏ ନରେ ।
ଏଥିରେ କେଉଁ ପାପ ହୁଏ କୁଶଧର
ମୋ ଆଗରେ କର ତା ବଚନେ ବିସ୍ତାର ।
ବ୍ରହ୍ମା ବୋଇଲେ ଆହେ ଘାତକ ଖାତକ
ଏ ବାହାରେ ଅନୁମୋଦକ ଯେଉଁ ଲୋକ ।
ଗାଈ ଦେହରେ ରୋମ ଯେତେକଟି ଥାଏ
ତେତେକ କାଳ ରହେ ନରକେ ସେ ରୌପ୍ୟେ ।
ଗାଈକି ଚୋରାଇ ଯେ ଦିଏ ବ୍ରାହ୍ମଣକୁ
ଭୋଗ କରଇ ସେହି ଘୋର ନରକକୁ ।
ଗୋଦାନରେ ସୁନାଦକ୍ଷିଣା କହିଛନ୍ତି
ଏହାକୁ ଜାଣି ସୁନା ଦେବ ବହି ପ୍ରୀତି ।
କୁଳର ପାବନଟି ଅଟେ ସୁନାଦାନ
ଏହା ଜାଣିଣ କରୁଥିବ ନିତି ଜନ ।
ଆହେ ଯୁଧିଷ୍ଠିର ଏହି ରୂପେ ଇନ୍ଦ୍ରଙ୍କୁ
କହିଲେ କୁଶଧର ପାପୁ ତରିବାକୁ ।
ଇନ୍ଦ୍ର ଆସିଣ ଦଶରଥଙ୍କୁ କହିଲେ
ଦଶରଥ ରାମଚନ୍ଦ୍ରଙ୍କୁ ଶିଖାଇଲେ ।
ରାମଚନ୍ଦ୍ର ଲକ୍ଷ୍ମଣକୁ ଏହି କଥାକୁ
କହିଲେ ଦେଖି ତାଙ୍କ ଭ୍ରାତୃ ଭକତକୁ ।
ଲକ୍ଷ୍ମଣଠାରୁ ଯେ ଋଷିଏ ଶିଖିଲେ
ଋଷିଙ୍କଠାରୁ ଗୁରୁ ମୋହର ଶୁଣିଲେ ।
ଗୁରୁଙ୍କଠାରୁ ମୁଁ ତ ଶିକ୍ଷା କରିଥିଲି
ପଚ୍ଛରିବାରୁ ସବୁ ତୁମ୍ଭଙ୍କୁ କହିଲି ।

ଯେ ଲୋକ ବ୍ରାହ୍ମଣସଙ୍ଗରେ ଏହା କହେ
ସେ ତରଇ ନ ପଡ଼ ଏ ସଂସାର-ମୋହେ ।
ଯୁଧିଷ୍ଠି ବୋଇଲେ ନିଯ୍ମ ଅଧ୍ୟୟନ
ବ୍ରତ ଅଧ୍ୟାପନା ଯେ ଅପ୍ରତିଗ୍ରହଣ ।
ସତ୍ୟ ବ୍ରହ୍ମଚର୍ଯ୍ୟ ପିତୃମାତୃଭକ୍ତି
ଶୂରତା ଫଳ ମୋତେ କହ ମହାମତି ।
ଭୀଷ୍ମ ବୋଇଲେ ହେ ଅଖଣ୍ଡବ୍ରତଙ୍କର
ନିତ୍ୟରେ ଫଳ ବଢୁଥାଏ ଯୁଧିଷ୍ଠିର ।
ବେଦାଧ୍ୟାୟୀ ଲୋକର ଇହ ପର ଦୁଇ—
ମଧ୍ୟରେ ସୁଖ ଅଛି ଜାଣ ନରସାଇଁ ।
ଇନ୍ଦ୍ରିୟ ନିଗ୍ରହ କରନ୍ତି ଯେଉଁ ଲୋକ
ତାହାକୁ ବାଧି ନ ପାରଇ ଦୁଃଖ ଶୋକ ।
ଦାନର ଅପେକ୍ଷାରେ ଇନ୍ଦ୍ରିୟ ନିଗ୍ରହ
ଅଧିକ ବୋଲି ଜାଣ ହୃଦୁ ଛାଡ଼ି ମୋହ ।
ବେଦକୁ ଯେଉଁ ଦ୍ୱିଜ ଦ୍ୱିଜଙ୍କୁ ପଢାଏ
ଅକ୍ଷୟ ଲୋକରେ ସେ ମଲେ ଘର ପାଏ ।
କ୍ଷତ୍ରିୟ ଯଜନ-ସମର-ବେଦ ଦାନ—
ଯୁକ୍ତ ହେଲେ ମୁକତ ହୁଅଇ ରାଜନ ।
ସ୍ୱକର୍ମରତ ହେଲେ ବୈଶ୍ୟ ମହାମତି
ପାଅଇ ହେ ଜାଣ ପାଣ୍ଡବ ନରପତି ।
ଶୁଦ୍ର ସେବା ଯେବେ କରଇ ତିନିବର୍ଣ୍ଣ
ବହଇ ସେ ଏକାନ୍ତେ ଯାଇ ଇନ୍ଦ୍ରକର୍ଣ୍ଣ ।
ଯାଗ ଦମ ସତ୍ୟ ସମର ବୁଦ୍ଧି ଦାନ
ଆର୍ଜବ କ୍ଷମା ସମ ବେଦ ଅଧ୍ୟୟନ ।
ଗୁରୁ ପିତୃ-ମାତୃ ଶୁଶ୍ରୂଷା ସାଙ୍ଖ୍ୟଯୋଗ
ଅତିଥିପୂଜା ଭିକ୍ଷାଶୂର ମହାଭାଗ ।
ଉତ୍ତମ ସ୍ଥାନଟି ପାଆନ୍ତି ପରଲୋକେ
ବସନ୍ତି ଗୋଡ଼ ଦୁଇ ଲମ୍ବାଇ ନିଃଶଙ୍କେ ।
ସମସ୍ତ ତୀର୍ଥସ୍ନାନ ବେଦ ଅଧ୍ୟୟନ
ପ୍ରତିକଟି ସତ୍ୟ ଅଧିକ ବୋଲି ଘେନ ।
ଜନମକାଳୁ ମଲାଯାଏ ବ୍ରହ୍ମଚର୍ଯ୍ୟ
କରେ ଯେ ସ୍ୱର୍ଗ ତାକୁ ନୁହଇ ଆଶ୍ଚର୍ଯ୍ୟ ।
ଗୁରୁ ମାତାପିତାଙ୍କ ପାଦ ଯେ ସେବଇ
ରମ୍ଭାଙ୍କ ଧରଣ କୋଳେ ସେ ବସଇ ।
ମୋହରଠାରୁ ସବୁ ଶୁଣିଲତ ବାବୁ
ଧରମ କର ଆଉ ନାହିଁ, କି କହିବୁଁ ।

ଏହିଠାରେ ଗୋଲୋକ ପ୍ରଶ୍ନ ସମାପତି
ହୋଇଲା କହଇ କୃଷ୍ଣସିଂହ-ନରପତି ।

—*—

## ଗୋ ଜନ୍ମଚରିତ

ଯୁଧିଷ୍ଠି ବୋଇଲେ ଗାଈଙ୍କ ଦେବା ବିଧି
କହ ତ ମୋର ଶୁଣିବାକୁ ହୋଏ ବୁଦ୍ଧି ।
ଭୀଷ୍ମ ବୋଇଲେ ଆହେ ନ୍ୟାୟ ଗାଈଦାନ
ଦେଲେ ପାପୁଁ ମୁକ୍ତ ହୁଅଇ ନର ଘେନ ।
ବୃହସ୍ପତି ମାନଧାତାଙ୍କୁ କହିଥିଲେ
ଗାଈ ଦାନ ବିଷୟ ଯୁଧିଷ୍ଠିର ଭଲେ ।
ମାନ୍ଧାତାଙ୍କ ଆଗରେ ବୃହସ୍ପତିଙ୍କର
କହିବାରୁ ପୁଣି ଯେତେକ ନରବର ।
ଗାଈଦାନ ଦେଲେ ତାହାଙ୍କ ନାମମାନ
କହିବା ତୁମ୍ଭଙ୍କୁ ହେ ପାଣ୍ଡବ-ରାଜନ ।
ଉଶୀନର ଯେ ବିଶ୍ୱଗଶ୍ୱ ଭଗୀରଥ
ନୃପ ମୁଚୁକୁନ୍ଦ ବଳ ମନୁଜ-ନାଥ ।
ଭୂରିଦ୍ୟୁମ୍ନ ସୋମ ଭରତ ପୁରୁରବା
ରାମଚନ୍ଦ୍ର ଦିଲୀପ ଦ୍ୱିଜେ କରି ସେବା ।
ନ୍ୟାୟ-ଅର୍ଜିତ ଧନ ଗାଈମାନ ଦେଲେ
ଅନ୍ତଃକାଳରେ ସ୍ୱର୍ଗପୁରରେ ବସିଲେ ।
ଭୀଷ୍ମଙ୍କଠାରୁ ଶୁଣି ଗୋଦାନ ବିଷୟ
ଗୋଦାନେ ଯୁଧିଷ୍ଠିର ରଖିଣ ହୃଦୟ ।
ଭୀଷ୍ମ ବୋଇଲେ ହେ ଗୋଦାନ ବିସ୍ତାର
କରି ଆଉ ଥରେ କହତ ରଥୀବର ।
ଭୀଷ୍ମ ବୋଇଲେ ହେ କି ପୁଛ ପାଣ୍ଡୁସୁତ
କହି ତ ଥାଇଁ ତାହା ରଖିଥାଅ ଚିତ୍ତ ।
ଯୁଧିଷ୍ଠିର ବୋଇଲେ ନ କହିଲେ ତାହା
କପିଳା ଗାଈଦାନ କହ ରଥୀନାହା ।
ଭୀଷ୍ମ ବୋଇଲେ ଆହେ ଦକ୍ଷଙ୍କୁ ଅନାଇଁ
ପୂର୍ବରେ କହିଲେ ସାବିତ୍ରୀ-ଦେବୀସାଇଁ ।
ପ୍ରାଣୀମାନଙ୍କୁ ଆଗେ ସରଜନା କର
ମୋର ଆଗରେ ବସି ନ କହ ଉତ୍ତର ।
ଦକ୍ଷ ପ୍ରଜାପତି ଯେ ଏହା ଶୁଣିକରି
ବ୍ରହ୍ମାଙ୍କର ଆଗରୁ ଯାଇଣ ବାହାରି ।
ମନକଲେ ଆଚର ଚଉ ନର ଦ୍ୱିଜ
ହମେ ଏହାଙ୍କର ବଢିଛି ଉଜ ତେଜ ।

ଦ୍ୱିଜେ ଯାଗକଲେ ଅମୃତପାନ ଦେବେ
କରି ସ୍ୱର୍ଗେ ବସନ୍ତି ଅତି ତୋଷଭାବେ ।
ଅମୃତ ତ ଗାଈଙ୍କ କ୍ଷୀରଟିକ କହି
ଅମୃତ ସରଜିବ ଆଗ ପ୍ରୀତି ବହି ।
ଏତେ ଶିବ ମୁଖରେ ଅମୃତ ପିଇଲେ
ଉଦ୍‌ଗାରନ୍ତେ ତାହା ସୁରଭି ଜାତ ହେଲେ ।
ସୁରଭିରଠାରୁ ବୃଷଭ ଗାଈକୁଳ
ଜନମ ହେଲେ ହେ ପାଣ୍ଡବ-ନରପାଳ ।
ଗାଈଏ ବାଛୁରିମାନଙ୍କୁ କ୍ଷୀର ପାନ
କରାନ୍ତେ ବାହାର ବାଛୁରି ମୁଖୁଁ ଫେନ ।
ପିନାକପାଣିଙ୍କର ମସ୍ତକେ ପଡ଼ିଲେ
ମହାଦେବ ତାହା ନ ସହି କ୍ରୋଧ ହେଲେ ।
ନୟନ-ଅନଳେ ଗାଈଙ୍କି ଦହିବାକୁ
ଚାହିଁଲେ ରୁଦ୍ରଦେବ ଛାଡ଼ି ଉପ୍ରଧକୁ ।
ଶିବଙ୍କ ଦୃଷ୍ଟି ଯେତେ ଗାଈରେ ପଡ଼ିଲା
ତେତେ ଗାଈଙ୍କ ଦେହ କପିଳ ଦିଶିଲା ।
ପ୍ରଜାପତି ଆସିଣ କହିଲେ ଶିବଙ୍କୁ
ଭୁଲ୍ଲା ତ କ୍ରୋଧ କଲ ଗାଈଟିମାନଙ୍କୁ ।
ଗାଈମାନେ ଯେ ଦୁଧ-ବ୍ୟାଜରେ ଅମୃତ
ବର୍ଷିଲେ ଜଗତ କରୁଛନ୍ତି ଖ୍ୟାତ ।
ଅଗ୍ନି ବାତ ବାଛୁରି ସ୍ୱର୍ଣ୍ଣ ସଦା ଶୁଚି
ବୋଲି ରଖ ଆଜହୁଁ ହୃଦୟରେ ପାଞ୍ଚି ।
ମୁଁ ଏବେ ଦେଉଅଛୁ ବୃଷଭ ଗୋଟିଏ
ତା ଚଢି ଯାଅ ଆସ ହୁଅ ଦେବରାୟେ ।
ଶିବ ତାହା ଶୁଣି କ୍ରୋଧକୁ ଉପେକ୍ଷିଲେ
ତାଙ୍କ ବୋଲେ ବୃଷଭ ବାହନକୁ କଲେ ।
ସେହିଦିନୁ ବୃଷଧ୍ୱଜ ଉମାପତି
ବୋଲାନ୍ତି ଜାଣ ଆହେ ପାଣ୍ଡବ ନୃପତି ।
କପିଳା ଗୋ-ଦାନ ସେ ଦିନୁ ଗାଈଦାନ-
ମାନଙ୍କରେ ବିଶେଷ ହେଲା ହେ ରାଜନ ।
ଗାଈମାନଙ୍କର ଏ ଜନମ ଚରିତ
ଶୁଣିଲେ ଲୋକ କରେ ପାତକକୁ ହତ ।

—*—

### ଗୋ ମାହାତ୍ମ୍ୟ

ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ସମ୍ବାଦ ସୌଦାସ ବଶିଷ୍ଠ ଋଷିଙ୍କର ।
ସଉଦାସ ବୋଇଲେ ଏ ତିନି ଲୋକରେ
ପବିତ୍ର କେ ଅଟଇ କହ ତ ଆଗରେ ।
ବଶିଷ୍ଠ ବୋଇଲେ ପବିତ୍ର ଅଟେ ଗାଈ
ଗାଈଦାନୁ ଆଉ ମହୀରେ ବଡ ନାହିଁ ।
ଗାଈଙ୍କଠାରେ ଯାଗମାନେ ରହିଛନ୍ତି
ଗାଈଙ୍କୁ ପୂଜିଲେ ସେ ହୁଅଇ ନୃପତି ।
ଗାଈଙ୍କର ଦେହ ତ ଲକ୍ଷ୍ମୀଙ୍କ ସଦନ
ଗାଈ ଯହିଁ ଥାନ୍ତି ଥାଆନ୍ତି ଲକ୍ଷ୍ମୀ ଜାଣ ।
ଦଶ ଗାଈ ପ୍ରତି ଗୋଟିଏ ଗାଈ ଦେଲେ
ମହତ ଫଳକୁ ସେ ଲଭେ ଜାଣ ଭଲେ ।
ଶଏଗାଈ ପ୍ରତି ଦଶୋଟି ଗାଈଦାନ
ଦେଲେ ସେ ଫଳ ପାଏ ସଉଦାସ ଜାଣ ।
ସହସ୍ରେ ଗାଈ ଯାହା ଘରେ ଥିବ ରହି
ଶଏ ଗାଈ ଦେବ ଯେ ଦ୍ୱିଜେ ପ୍ରୀତି ବହି ।
ସମସ୍ରେ ଗାଈ ଥାଇ ଯାଗ ସେ ନ କରେ
ପଡ଼ଇଛି ଯାଇ ସେ ଘୋର ନରକରେ ।
ଶଏ ଗାଈ ଥିଲେ ଯେ ଅନଳ ଆଧାନ
ନ କରେ ସେହିରୂପେ ହୁଅଇଛି ଜାଣ ।
ସମ୍ପତ୍ତି ଥାଇ ଯେବେ କୃପଣ ହୁଅଇ
ତା ମାଂସ ପେଷଣୀରେଟି ପେଷଇ ।
କପିଳା ଗାଈକି ସବତ୍ସା କରିଦେଲେ
ଇହ ପର ଲୋକକୁ ଜିଣେ ଲୋକ ଭଲେ ।
ଶଏ ଗାଈ ତୁଲେ ବୃଷଭ ଦାନ ଦେଲେ
ଥରକୁଥର ସୁଖ ବଢୁଥାଏ ଭଲେ ।
ସାୟଂ ପ୍ରାତଃକାଳେ ଗାଈଙ୍କି ନମସ୍କାର
କରୁଥିବ ସୁମରି ନାମ ତାହାଙ୍କର ।
ଶୋଇବାବେଳେ ବୋଲୁଥିବ ମୋର ଗାଈ
ଆଗରେ ଦେଉଥିବ ଘାସକୁ ପକାଇ ।
ଅନିଷ୍ଟ ସ୍ୱପ୍ନ ଯେବେ ଦେଖିବ ରାତିରେ
ଗାଈ ନାମ ଜପିବ ଏକାନ୍ତ ମନରେ ।
ଗୋମୟ ଲଗାଇଣ କରନ୍ତି ଯେ ସ୍ନାନ
ଶୁଦ୍ଧ ହୁଅଇ ଜାଣ ତାଙ୍କ ଅପଘନ ।
ସମ ବିଷମରେ ଯେ ଗୋନାମ କୀର୍ତ୍ତନ
କଲେ ମୁକତି ହୋଇଯାଏ ଜାଣ ଜନ ।
ପୂର୍ବେ ଗାଈ ଲକ୍ଷେ ବରଷ ତପ କଲେ
ତା ଜାଣି ଆସି ବ୍ରହ୍ମା ତାଙ୍କୁ ବର ଦେଲେ ।

ଥାଉ ତୁମ୍ଭ କ୍ଷୀର, ତୁମ୍ଭର ବସ୍ତ୍ର ମୂତ୍ର
ଯେ ନର ଛୁଇଁବ ହୋଇବ ପବିତ୍ର ।
ତୁମ୍ଭଙ୍କୁ ଯେ ଦାନ କରଣ ଦ୍ୱିଜେ ଦେବ
ମୋହର ସମୀପରେ ଯାଇ ସେ ବସିବ ।
ଗାଈମାନେ ଏରୂପେ ବ୍ରହ୍ମାଙ୍କଠାରୁ ବର
ପାଇବାରୁ ପବିତ୍ର ହେଲେ ମନେ କର ।
ଏହା ତ ଜାଣିଲ ହେ ସଉଦାସ ନୃପ
ମନ ଥିଲେ ଛାଡ଼ିବାକୁ ଏ ମହାପାପ ।
କପିଳା ଗାଈ ପୃଷ୍ଠେ ଦ୍ରବ୍ୟ ଲୁଗା ଥୋଇ
ସବତ୍ସା କରିଦିଅ ବ୍ରାହ୍ମଣଙ୍କୁ ନେଇ ।
ବ୍ରହ୍ମାଙ୍କ ସମୀପେ କରିବ ଯାଇ ସ୍ଥାନ
କରିବେ ପିତାମହ ତୁମ୍ଭଙ୍କୁ ପୂଜନ ।
ଲୋହିତବର୍ଣ୍ଣା ଗାଈ ବାଛୁରି ଦାନରେ
ସୂର୍ଯ୍ୟଲୋକରେ ପୂଜାଲଭେ ଲୋକ ଭଲେ ।
ଶୁକ୍ଳଗାଈ ଶୁକ୍ଳବାଛୁରି ଦେଲେ ଦାନ
କରନ୍ତି ଆଦର ତାଙ୍କୁ ପାକଶାସନ ।
ସମବର୍ଣ୍ଣା ଗାଈ ବାଛୁରି ତୁଲେ ଦେଲେ
ସୋମଙ୍କର ଲୋକରେ ବୁଲଇ ସେ ଗେଲେ ।
କଳାଗାଈ ଦାନ ଦ୍ୱିଜେ ଦେଇଅଛି
ଅଗ୍ନିଙ୍କର ସମୀପେ ଜାଣ ସେ ବସିଛି ।
ଧୂମ୍ରବର୍ଣ୍ଣା ଗାଈକ ଦେଲେ ଯମଲୋକ
ହୁଅଇ ଆରେ ଜାଣ ନୃପତି ନାୟକ ।
ଫେନପରି ବର୍ଣ୍ଣ ଗାଈଟି ଦାନ ଦେଲେ
ବରୁଣ ସମ୍ଭାବନା କରନ୍ତି ଦେଖିଲେ ।
ସୁବର୍ଣ୍ଣବରନିଆ ଗାଈ ଯାକ ଦିଆ
କୁବେରଙ୍କ ପୁରେ ହୁଅନ୍ତି ଯାଇ ଠିଆ ।
ପଳାଳବରନିଆଁ ଗାଈ ଦାନ ଦେଲେ
ପିତୃଲୋକରେ ପୂଜା ଲଭଇଟି ଭଲେ ।
ଶଉରିବର୍ଣ୍ଣା ଗାଈ ଦେଲେ ବସୁଲୋକ
ଲଭଇଟି ନର ଛାଡ଼ିଣ ହୁଦୁଁ ଦକ ।
କମ୍ବଳବର୍ଣ୍ଣ ଗାଈ ଦ୍ୱିଜେ ଦେଲେ ଦାନ
ସାଧ୍ୟଲୋକରେଟି କରଇ ଯାଇ ସ୍ଥାନ ।
ରତ୍ନ ଅଳଂକୃତ ବୃଷଭ ଦାନ ଦେଲେ
ମରୁତଲୋକରେଟି ବସେ ଯାଇ ଭଲେ ।
ଧରା ହୋଇ ନ ଥିବା ବତ୍ସା ଦେଲେ ଦାନ
ପ୍ରଜାପତି ଲୋକରେ ବସଇ ସେ ଜାଣ ।
ବୟସ ଥିବା ବୃଷଭଙ୍କୁ ଦେଲେ ଦାନ
କରାଏ ଗନ୍ଧର୍ବମାନଙ୍କୁ ସେ ଅଧୀନ ।
ଗୋଦାନ ଦେବା ଲୋକମାନଙ୍କୁ ଅପସରା—
ମାନେ ବଡ଼ ହରନ୍ତ ରତି ଦେଇ କରି ।
ଗାଈ ଦେବା ଲୋକ ସ୍ୱର୍ଗରେ ବସିଥାଏ
ସ୍ୱର୍ଗକୁ ଚ୍ୟୁତ ହେଲେ ବଡ଼ଲୋକ ହୋଏ ।
ଦୁଇ ସନ୍ଧ୍ୟା ଅନ୍ତରେ ଦେହ ଶୁଦ୍ଧ କରି
ଜପିବଇଁ ଗାଈମାନଙ୍କର ନାମ ଧରି ।
ବୋଲିବ ମୋ ଘରରେ ମୋ ହୃଦେ ଗୋ ମାତ
ବିଜେକର ହୋଇଣ ବାଛୁରି ସମେତ ।
ଏରୂପେ କରୁଥିଲେ ଦିନ ପାପ ଯାଏ
ରାତିରେ କଲେ ରାତି ପାପ ଯାଏ ସ୍ୱୟେ ।
ଧେନୁ ପ୍ରମାଣରେ ଯେ ତିଳ ଜଳ ଧେନୁ
ଦେଲେ ଯମ ଦଣ୍ଡି ନ ପାରେ ତା'ର ତନୁ ।
ରୋମ ଶୃଙ୍ଗ ମାଂସ ମେଦରେ ଗାଈକୁଳ
ନିର୍ଭା କରୁଛନ୍ତି ଯାଗ ମହୀପାଳ ।
ଏରୂପେ ସୌଦାସ ବଶିଷ୍ଠ ମୁଖୁଁ ଶୁଣି
ଗାଈଦାନ ଦେଲେ ଡକାଇ ଦ୍ୱିଜଶ୍ରେଣୀ ।
ତୁମ୍ଭେ ସେହିରୂପେ ହେ ଯୁଧିଷ୍ଠିର ରାଜା
ଦ୍ୱିଜଙ୍କୁ ଗାଈ ଦେଇ କର ପାଦେ ପୂଜା ।
ଯୁଧିଷ୍ଠି ବୋଇଲେ ଲୋକରେ କେ ପବିତ୍ର
କହ ମୋତେ ସେ କଥା ଶାନ୍ତନୁଙ୍କ ପୁତ୍ର ।
ଭୀଷ୍ମ ବୋଇଲେ ହେ ଗାଈଙ୍କ ବଡ଼ ହୋଇ
ପବିତ୍ର ଥିଲା ପରି ମୋତେ ଦିଶୁନାହିଁ ।
ପୂର୍ବେ ଯେ ଶୁକ ବେଦବ୍ୟାସଙ୍କୁ ନମିଲେ
କେଉଁ ଯାଗ ଯାଗରେ ବଡ଼ ପଚାରିଲେ ।
ବ୍ୟାସ ବୋଇଲେ ଆହେ ଗୋମେଧ ଅଶ୍ୱର
ଶ୍ରେଷ୍ଠଟି ଅଟଇ ଶୁକ ମନେ କର ।
ପୂର୍ବକାଳେ ଗାଈଙ୍କ ଥିଲା ନାହିଁ ଶିଙ୍ଘ
ବ୍ରହ୍ମାଙ୍କ ପ୍ରସନ୍ନରେ ପାଇଲେ ସେ ଶିଙ୍ଘ ।
ସେହିଦିନରୁ ଗାଈମାନେ ଶିଙ୍ଘ ବାନ୍ଧି
ବୁଲୁଅଛନ୍ତି ମହାସୁଖ ପାଏ ମହୀ ।
ଗାଈଦାନ ଦେବା ଲୋକଙ୍କର ଗୋଲୋକ
ଅଲଭ୍ୟରେ ହୁଅଇ, ଦିଅ ଗାଈଯାକ ।
ମଣି ରତ୍ନ ନିର୍ମିତ ପୁରମାନଙ୍କରେ
ଗାଈଦେବା ଲୋକ ରହଇ ନିଃଶଙ୍କରେ ।

ଗାଈର ମୂତ୍ର ଦୁଧ ଘିଅକୁ ତତାଇ
ଚନ୍ଦନ ଲେଖାରେ ପିଅ ପ୍ରୀତି ବହି ।
ଏ ବାହାରେ ପିଇଣ ଚନ୍ଦନ ବାତ
ରହିଲେ ବ୍ରହ୍ମହତ୍ୟା ପାପୁଁ ହୋଏ ମୁକ୍ତ ।
ବେଦବ୍ୟାସଠାରୁ ଏରୂପେ ଶୁକ ଶୁଣି
ପୂଜା କଲେ ଗାଈମାନଙ୍କୁ ନରମଣି ।
ଯୁଧିଷ୍ଠିର ବୋଇଲେ ଗାଈଙ୍କ ବିଷ୍ଠାରେ
ରହିଲେ ଲକ୍ଷ୍ମୀ ଦେବୀ କହ କିରୂପରେ ।
କୃଷ୍ଣ ବୋଇଲେ ଆହେ ଧର ଦିବ୍ୟରୂପ
ଆସିଲେ ଗୋଷ୍ଠେ ଲକ୍ଷ୍ମୀ ଗୁଡ଼ ମନୁଁ ତାପ ।
ଗାଈମାନେ ଲକ୍ଷ୍ମୀଙ୍କ ସ୍ୱରୂପକୁ ଦେଖି
ରହିଲେ ଅନାଇଁ ତରଟି ଦେଇ ଆଖି ।
ପଚାରିଲେ ସେ, କେଉଁଠାରୁ ଆଗୋ ମାତା
ଆମ୍ଭଠାକୁ ଆସିଲ ସତ୍ୟରେ କହ ତା ।
ଲକ୍ଷ୍ମୀ ବୋଇଲେ, ଲକ୍ଷ୍ମୀ ମୋର ନାମ ବହି
ଆସିଅଛି ତୁମ୍ଭଙ୍କୁ ଦେଖିବାର ପାଇଁ ।
ଦାନବମାନେ ଘୋର ଅନ୍ୟାୟ ତ କଲେ
ରଖିଲେ ତୁମ୍ଭ ପାଶେ ରହିବ ମୁଁ ଭଲେ ।
ଇନ୍ଦ୍ର ଆଦି ଦେବଙ୍କେ ମୋର ହେଲେ ଦୃଷ୍ଟି
ଶୋଭରେ ଜଳକର ପାଳନ୍ତୁ ଏ ସୃଷ୍ଟି ।
ଯାହାଠାରେ ମୋହର ଦୃଷ୍ଟି ନ ପଡ଼ଇ
ତା ନାଶ ଯିବାରେ ସନ୍ଦେହ କିଛି ନାହିଁ ।
ଗାଈମାନେ ବୋଇଲେ ତୁମ୍ଭେ ତ ଚଞ୍ଚଳ
ତୁମ୍ଭଙ୍କୁ ରଖିବାରେ ଅଛି କେଉଁ ଫଳ ।
ଠାଏ ହୋଇଣ ଯେବେ ରହିଥାନ୍ତ ତୁମ୍ଭେ
ତେବେ ଜାଣ ସମୀପେ ରଖନ୍ତୁଟି ଆମ୍ଭେ ।
ଲକ୍ଷ୍ମୀ ବୋଇଲେ ମୁହିଁ ଦେବଟେ ଦୁର୍ଲ୍ଲଭ
ଭାଗ୍ୟବଳେ ତୁମ୍ଭଙ୍କୁ ହୋଇଛି ସୁଲଭ ।
ତୁମ୍ଭେ କମ୍ପାଇଁ ମୋତେ ନାହିଁ କରୁଅଛ
ମୋ ମହିମା ନ ଜାଣିବାରୁ ଦୋଷ ବାଛ ।
ଲୋକେ କହିଅଛନ୍ତି ସ୍ୱଇଚ୍ଛାରେ ଆସି
ରହିବ ବୋଇଲେଟି ଲୋକ ହୋଏ ଦୋଷୀ ।
ସେହି କଥା ଆସି ଫଳିଲା ମୋହଠାରେ
ତୁମ୍ଭମାନଙ୍କର ଏ ବଚନ କୁଠାରେ ।
ଗାଈଏ ବୋଇଲେ ଛାଡ଼ ଏ ରୁକ୍ଷକଥା
ତୁମ୍ଭ ରୂଢ଼ ଶୁଣି ପାଉଅଛୁଁ ଆମ୍ଭେ ବ୍ୟଥା ।

ଗୁଡ଼ାଏ କହିବାରେ କାର୍ଯ୍ୟ କିସ ଅଛି
ଯାଅ ଯହିଁ ତୁମ୍ଭର ମନ ହେଉଅଛି ।
ଲକ୍ଷ୍ମୀ ବୋଇଲେ ମୁହିଁ ଧରିଣ ଚରଣ
ତୁମ୍ଭରେ ପଶୁଅଛି ଗାଈଏ ଶରଣ ।
ମୋତେ ରକ୍ଷାକର ନ କର ଆଉ ନାହିଁ
ବାହୁଡ଼ିଗଲେ ମୋତେ ପୂଜା କାହିଁ ନାହିଁ ।
କୁତ୍ସିତ ଅଙ୍ଗଟିକେ ଦିଅ ମୋତେ ଠାବ
ଯେବେ ନାହିଁ ତୁମ୍ଭର ମୋହଠାରେ ଭାବ ।
ଏହିରୂପେ କମଳା କହନ୍ତେ ବିନୟୀ
ପୁଣି ଗାଈମାନେ କହିଲେ ତାଙ୍କୁ ରହିଁ ।
ଯେବେ ବୋଲୁଅଛ ଗୋ ଲକ୍ଷ୍ମୀଦେବୀ ଘର
କର ଆମ୍ଭ ବିଷ୍ଠା ମୂତ୍ରରେ ନିରନ୍ତର ।
ଏ କଥା ଶୁଣି ଲକ୍ଷ୍ମୀ ସନମତ କଲେ
ଅନ୍ତର୍ହିତ ହୋଇଣ ସେଇଠାରୁ ଗଲେ ।
ଗାଈମାନଙ୍କ ବିଷ୍ଠା ମୂତ୍ର ମହାତମ
ଶୁଣିଲ ତ ଏବେ ହେ ନରଙ୍କ ଉତ୍ତମ ।
ଗାଈଙ୍କି ଯେନ ଯାଗବିଧି ଯେ କରଇ
ତା ପୁଣି ଏତେ ତେତେ କେତେ କହିବଇଁ ।
ଦୈତ୍ୟମାନଙ୍କର ପୀଡ଼ାକୁ ଦେବେ ରଡ—
ଗଲେ ଯେ ସ୍ଥାନେ ରହିଥିଲେଟି ବିରଞ୍ଚି ।
ମୂତ୍ର ଗନ୍ଧ ତୁଲେ ବହନ୍ତେ ଗନ୍ଧବହ
ସ୍ୱଗନ୍ଧେ ପୂରିଗଲା ବ୍ରହ୍ମାଙ୍କର ଦେହ ।
ଇନ୍ଦ୍ର ସେକାଳେ ବ୍ରହ୍ମାଙ୍କର ମୁଖ ଚାହିଁ
ପଚାରିଲେ ଗାଈଏ ସ୍ୱର୍ଗରେ ନ ରହି ।
ସବୁଲୋକ ଉପରେ କଲେ କମ୍ପା ଘର
ଏହା ମୋତେ ବତାଇ କହ କୁଶଧର ।
ବ୍ରହ୍ମା ବୋଇଲେ ହେ ଗାଈଙ୍କ ମହାତମ
କହିବା ଶୁଣ ଦେବମାନଙ୍କ ଉତ୍ତମ ।
ଗାଈମାନେ ଯାଗର ସ୍ୱରୂପ ଅଟନ୍ତି
ଗାଈ ଦୁଧ ଘିଅରେ ବଡ଼ ଆମ୍ଭ ପ୍ରୀତି ।
ଗାଈଙ୍କର ପୁତ୍ରମାନଙ୍କର ବଳରେ
ପ୍ରଜାଏ ଧନ ଅର୍ଜ୍ଜି ବଞ୍ଚନ୍ତି ସୁଖରେ ।
ଗାଈଏ ତ ମିଥ୍ୟାବଚନ ନ ଜାଣନ୍ତି
ତପ କରି ବହୁ ପୁଣ୍ୟ ସେ ଅର୍ଜିଛନ୍ତି ।
ଏହି ସକାଶରୁ ଯେ ଆମ୍ଭର ଉପରେ
ଘର କରି ରହିଲେ ନ ପଡ଼ି ତାପରେ ।

ଗାଈମାନେ ମସ୍ତକ ଯେଉଁ କାରଣରେ
ଗଲେ ତା କହିବା ହେ ଶୁଣ ସୁମନରେ ।
ଅଦିତି ଯେକାଳେ ଗର୍ଭରେ ବାମନଙ୍କୁ
ଧରିଲେ ସେକାଳେ ସୁରଭି ତପସ୍ୟାକୁ—
କଲେ କଇଳାସ ଶିଖରେ ଏକାଦଶ—
ସହସ୍ର ବରଷ ହେ ନୃପ ଦେବଈଶ ।
ସୁରଭିଙ୍କ ତପରେ ମୁହିଁ ହୋଇ ଦୁଃଖୀ
ସେଠାକୁ ଗଲି ହେ ସହସ୍ର ଯୋନିଆଖି ।
ସୁରଭିଙ୍କି ବୋଇଲି କ୍ଷମା ତପ କର
ଯାହା ଇଚ୍ଛା ହେଉଅଛି ତାହା ମାଗ ବର ।
ସୁରଭି ବୋଇଲେ ତୁମ୍ଭେ ଯା ତୋଷ ହେଲ
ହେଲାନି ଜାଣ ମୋର ସବୁ କଥା ଭଲ ।
ଏହା ଶୁଣିଣ ମୁହିଁ ବୋଇଲି ସୁରଭି
ତୁମ୍ଭେ ଅଟ ମୋହର ହୃଦୟ ବଲ୍ଲଭି ।
ତୁମ୍ଭଙ୍କୁ ମୁହିଁ ଦେଉଅଛି ଯାଚି ବର
ମୋ ଲୋକର ଉପରେ କର ତୁମ୍ଭେ ଘର ।
ମୋହର ପ୍ରସାଦରୁ ଅମର ହୋଇବ
ତୁମ୍ଭ ଲୋକ ଲୋକେ ଗୋଲୋକ ବୋଲାଇବ ।
ତୁମ୍ଭ ପୁତ୍ର ଦୁହିତା ମନୁଷ୍ୟ ଲୋକରେ
ଉତ୍ତମ କର୍ମକୁ କରିବେ ନିଃଶଙ୍କରେ ।
ମନରେ ଚିନ୍ତା କରେ ଦଇବ ମାନୁଷ—
ଭୋଗ ତୁମ୍ଭେ କରିବ କରଣ ବିଶେଷ
ଜରା ମୃତ୍ୟୁ ଅଗ୍ନି ତ ତୁମ୍ଭଙ୍କୁ ଝଟିବେ
ତୁମ୍ଭର ଥିବା ସ୍ଥାନଟିକେ ସେ ନ ଯିବେ ।
ଦିବ୍ୟ ଘର ଦିବ୍ୟ ବିମାନ ଦିବ୍ୟ ତୋଠା
ରହିଥିବ ତୁମ୍ଭ ସମୀପେ ହୋଇ ମୋଠା ।
ବ୍ରହ୍ମଚର୍ଯ୍ୟ ତପସ୍ୟା କରିଥିବ ଯେହି
ତୁମ୍ଭ ଲୋକେ ଯାଇ ବସିବ ଜାଣ ସେହି ।
ଏହା ତ ମୋଠାରୁ ଶୁଣିଲ ଶଚୀବର
କର ଆଜୁଁ ଗାଈଙ୍କ ପାଦରେ ଆଦର ।
ଏରୂପେ ଇନ୍ଦ୍ର ଶୁଣି ବ୍ରହ୍ମାଙ୍କ ବଚନ
ସେଦିନୁଁ ଗାଈଙ୍କି ପୂଜିଲେ ପ୍ରତିଦିନ ।
ଯେଉଁ ଲୋକ ଏହା ଶ୍ରଦ୍ଧାରେ ଦ୍ୱିଜ ଆଗେ
କହେ ତା ପିତୃଏ ବସନ୍ତି ସ୍ୱର୍ଗଭାଗେ ।
ପୁରୁଷ ସ୍ତ୍ରୀ ଶିଖି ଭକ୍ତି କରି ଏ ଚରିତ
ଶୁଣିଲେ ଜଗତେ ବୋଲାନ୍ତି ପୁତ୍ରବନ୍ତ ।
ବିଦ୍ୟା ଧନ କନ୍ୟା ଧରମ କୀର୍ତ୍ତି ସୌଖ୍ୟ
ଏ ଚରିତ ଶୁଣିଲେ ବଢ଼ଇ ଅସଂଖ୍ୟ ।
ଗୋଲୋକ ପ୍ରଶ୍ନ ହେଲା ଏଠାରେ ସମାପ୍ତି
କୃଷ୍ଣସିଂହ ନୃପ ସୁମରେ ଶିଶୁପତି ।

—*—

## ସୁବର୍ଣ୍ଣ ଦାନ

ଯୁଧିଷ୍ଠିର ବୋଇଲେ ବେଦଉକ୍ତ ଧର୍ମ—
ମାନ ତୁମ୍ଭଠାରୁ ଶୁଣିଲି ନରୋତ୍ତମ ।
ଏହା ବାହାରେ ଗାଈ ଭୂମିଦାନ ବିଧି
କହିଲ ତ ବତାଇ ଭୀଷ୍ମ କୃପାନିଧି ।
ଏବେ କହ ସୁବର୍ଣ୍ଣଦାନର ଚରିତ
ଶୁଣିବାକୁ ତହିଁକି ହେଉଅଛି ମୋ ଚିତ୍ତ ।
ଭୀଷ୍ମ ବୋଇଲେ ହେ ସୁବର୍ଣ୍ଣ ଯେଉଁରୂପେ
ଜନମ ହେଲା ତାହା କହିବା ସଂକ୍ଷେପେ ।
ବାପଙ୍କ ଦଶାହେ ବାପାଙ୍କ ନିସ୍ତା ପାଇଁ
ଗଙ୍ଗାଦ୍ୱାରେ ଗଲି ମୁଁ ଅତି ଭକ୍ତ ହୋଇ ।
ସେଠାରେ ଗଙ୍ଗାଙ୍କର ସହାୟକୁ ପାଇ
କରି ପୂର୍ବ ଷୋଡ଼ଶେ ସମାପତି ମୁହିଁ ।
ଉତ୍ତର ଷୋଡ଼ଶେ ବାପଙ୍କୁ ଦେଲି ପିଣ୍ଡ
କରି ସବୁ ଋଷିଙ୍କି ମୋ ପାଖରେ ରୁଣ୍ଡ ।
ବାପେ ମୋ ପିଣ୍ଡ ଦେବା ସମୟେ ହାତଟି
ବଢ଼ାଇଲେ ଘେନସିବାକୁ ପିଣ୍ଡଟି ।
ମନେ କଲି ପିଣ୍ଡ ଦିଅନ୍ତି ସିନା କୁଶେ
କିରୂପେ ଦେବି ମୁଁ ବାପଙ୍କ କରଦେଶେ ।
ଏହିରୂପେ ଆହେ ବସ୍ତର ଦଣ୍ଡଧାରୀ
କୁଶରେ ପିଣ୍ଡଟି ଥୋଇଲି ଧୀରକରି ।
ମୁଁ ପିଣ୍ଡ ଦେବାକ୍ଷଣି ବାପଙ୍କ ବାହାଟି
ଦେଖି ନ ପାରିଲି ମୋ ନୟନ ଦିଅଟି ।
ସେହିଦିନ ରାତିରେ ଦେଖିଲି ସ୍ୱପନେ
ପିତୃଏ ଆସି କହିଲେ ମୋ ସନ୍ନିଧାନେ ।
ଶାସ୍ତ୍ର ବିଧି ମାନି ନ ଦେଇ ହାତେ ପିଣ୍ଡ
କୁଶେ ଯା ଦେଲ ଏଣୁ ଜିଣିଲ ବ୍ରହ୍ମାଣ୍ଡ ।
ଗାଈ ଭୂମି ଦୁଇ ତ କରିଅଛ ଦାନ
ଦକ୍ଷିଣା ସୁନା ଦେଇ ତୋଷ ଆମ୍ଭ ମନ ।
ସୁନା ଦାନ ଦେଲେ ଯେ କୋଡ଼ିଏ ପୁରୁଷ
ତଳ ଉପରକୁ ତରନ୍ତି ଆହେ ଶିଷ୍ୟ ।

ପିତୃମାନେ ଏରୂପେ କହି ଅନ୍ତର୍ଦ୍ଧାନ
ହୁଅନ୍ତେ ଫେଡ଼ିଦେଲେ ମୋହର ନୟନ ।
ଦେଖିଲି ମୋ ପାଶେ ଗୋଟିଏ କେହି ନାହିଁ
କି କଥା ଏ ବୋଲି ଭାବିଲି ନରସାଇଁ ।
ପିତୃଏ ସ୍ୱପନେ ଯେରୂପେ କହିଥିଲେ
ସେରୂପେ ସୁବର୍ଣ୍ଣ ଦକ୍ଷିଣା ଦେଲି ଭଲେ ।
ସୁବର୍ଣ୍ଣଦାନ ବିଷୟରେ ଆଉ କଥା—
ଅଛି ତା କହିବା ହେ ଶୁଣ ମହାରଥୀ ।
ପର୍ଶୁରାମ ମହୀକି ଏକୋଇଶ ଥର
ଯୁଦ୍ଧେ ଜିଣି ମହୀକି କରି ତାହାଙ୍କର ।
ଅଶ୍ୱମେଧ ନାମରେ ଯାଗ ଆରମ୍ଭିଲେ
ଦ୍ୱିଜଙ୍କୁ ଦକ୍ଷିଣା ତୁଲେ ତା ଦାନ ଦେଲେ ।
ତେବେହେଁ ତାଙ୍କର ନୋହିଲେ ମନ ଶୁଦ୍ଧ
ଭାବିଲେ କରିଛି କ୍ଷତ୍ରିୟ ବହୁ ବଧ ।
ଋଷିଙ୍କି ପଚାରିଲେ କେଉଁ କଥା କଲେ
କହ ଲୋକ ତରଇ ଏ ସଂସାର ଭଲେ ।
ଋଷିଏ ବୋଇଲେ ହେ ଦ୍ୱିଜଙ୍କୁ ସତ୍କାର
କରି ତାହାଙ୍କୁ ପୁଚ୍ଛ ଧର୍ମକୁ ଆଚର ।
ତାହା ଶୁଣି କାଶ୍ୟପ ବଶିଷ୍ଠଙ୍କୁ ପୂଜ
ପଚାରିଲେ ଧରମ ରାମ ଦୁଃଖେ ମଜ୍ଜି ।
ଋଷିଏ ବୋଇଲେ ସୁବର୍ଣ୍ଣଦାନ ଦିଅ
ପାତକରୁ ତରିବ ଭୃଗୁକୁଳ ପୁଅ ।
ଏ ଅନ୍ତରେ ବଶିଷ୍ଠ ବୋଇଲେ ହେ ରାମ
କହିବା ଶୁଣ ବସି ସୁବର୍ଣ୍ଣ ଜନମ ।
ଏ ଜଗତ କାରଣ ସୁନାଟିକୁ କହି
ସୁନା ଅଗ୍ନି ଦୁହେଁ ଅଟନ୍ତି ଏକଦେହୀ ।
ଏହା ଜାଣିକରି ଦେବତା ନରମାନେ
ମଣ୍ଡି ହୋଇଥାନ୍ତି ସୁନାକୁ ମୁଣ୍ଡସ୍ଥାନେ ।
ଭୂମି ଗାଈ ରତ୍ନକୁ ସୁବର୍ଣ୍ଣ ଅଧିକ
ଅଟଇ ଜାଣ ରାମ କ୍ଷତ୍ରିୟ ତିଳକ ।
ଦାନରେ ସୁବର୍ଣ୍ଣର ବଡ଼ ହୋଇ ନାହିଁ
ନ ପଚାରି ଦ୍ୱିଜଙ୍କୁ ଦିଅ ପ୍ରୀତି ବହି ।
ଦକ୍ଷିଣା କରି ଦ୍ୱିଜେ ସୁବର୍ଣ୍ଣକୁ ଦେଲେ
ମହାଫଳ ବସି ଲଭନ୍ତି ଇନ୍ଦ୍ର ତୁଲେ ।
ମହାଦେବ ଦେବ ଯେ କାଳେ ବିଭା ହେଲେ
କନ୍ୟା ଘେନିଣ ହିମାଳୟରେ ରହିଲେ ।
ସେହି କାଳରେ ଦେବେ କହିଲେ ରୁଦ୍ରଙ୍କୁ
ଡରୁଛୁ ଦେଖି ଆମ୍ଭେ ତୁମ୍ଭର ବିଭାକୁ ।
ତୁମ୍ଭ ଦୁହିଁଙ୍କଠାରୁ ହୋଇଲେ ଅପତ୍ୟ
ନାଶ କରିଦେବ କ୍ଷଣକେ ଏ ଜଗତ ।
ଏହି ଭୟେ ଆମ୍ଭେ ମାଗୁଛୁ ବର କରି
ରତିରେ ବୀର୍ଯ୍ୟ ନ ଛାଡ଼ିବ ଶୂଳଧାରୀ
ତୁମ୍ଭ ବୀର୍ଯ୍ୟ ଯେବେ ଖସିବ ତିନିଲୋକ—
ଯାକ ନାଶ ଯିବାକୁ କରୁଛନ୍ତି ଶୋକ ।
ଶଙ୍କର ବୋଇଲେ ମାଗୁଛ ଯେବେ ତୁମ୍ଭେ
ବୀର୍ଯ୍ୟ ଉତ୍ସର୍ଗକୁ ନ କରିବୁଟି ଆମ୍ଭେ ।
ଏହା କହିଣ ଶିବ ରେତକୁ ଊର୍ଦ୍ଧ୍ୱକୁ
ନେବାରୁ ଊର୍ଦ୍ଧ୍ୱରେତା ବୋଲାଟି ତାହାଙ୍କୁ ।
ପାର୍ବତୀ ତାହା ଶୁଣି ମହାକ୍ରୋଧ ହୋଇ
ବୋଇଲେ ପୁତ୍ର ହେବା ନପାରିଣ ସହି ।
ପତିଙ୍କି ଆସି ମୋର ନିବର୍ତ୍ତାଇ ଦେଲ
ଏଥିକି ଉଚିତ ଯା ପାଇବସେ ଫଳ ।
ଆଜହୁଁ ତୁମ୍ଭମାନଙ୍କ ଭାର୍ଯ୍ୟାଠାରେ
ପୁତ୍ର ଜାତ ନୋହିବ ମୋର ବଚନରେ ।
କେବଳ ଅଗ୍ନି ଦେବ ନ ଥିବାରୁ ତହିଁ
ସେ ଶାପ ବାଧି ତାଙ୍କୁ ନ ପାରିଲା ଯାଇ ।
ଏଅନ୍ତେ ଶିବ ଉମା ସଙ୍ଗେ ବିହରିଲେ
ରେତକୁ ଧନୁ କଚ୍ଛି ମହୀରେ ପଡ଼ିଲେ ।
ଅଗ୍ନି ସେ ରେତଟିକ କଲେ ପ୍ରତିଗ୍ରହ
ମହାଦେବାଙ୍କଠାରେ କରିଣ ସେନେହ ।
ଏକାଳେ ତାରକ ଅସୁର ଜାତ ହୋଇ
ଦେବଙ୍କର ବଳକୁ ପକାଇଲା ଦହି
ଋଷିମାନଙ୍କର ସେ ଆଶ୍ରମ ଭାଙ୍ଗିଲା
ଋଷିଙ୍କି ପୋଡ଼ି ହାଡ଼ ମାଂସ ରଗଡ଼ିଲା ।
ଏ ସକାଶୁ ଦେବ ଋଷିଏ ପାଇ ପୀଡ଼ା
ବ୍ରହ୍ମାଙ୍କ ପୁରେ ଗଲେ ହୋଇ ଏକ ଭିଡ଼ା ।
ହେଲା ଦାନଧର୍ମ ପୂର୍ବାର୍ଦ୍ଧ ସମାପତ
କହଇ କୃଷ୍ଣସିଂହ ନରକୁଳ ପତି ।

—*—

## ସୁବର୍ଣ୍ଣ ଜନ୍ମ

କହିଲେ ଦେବ ଆହେ ଜଗତ ଈଶ୍ୱର
ଆମ୍ଭ ବଳ ଦଳିଲା ତାରକା ଅସୁର ।

ତାହା ଯେଜ୍ନ ଆମ୍ଭର ହେଉଛି ଏ ଭୟ
ଯେଜ୍ନ‌ଯିବ ଛଡାଇ ଅପସର୍ଗଚୟ ।
ବ୍ରହ୍ମା ବୋଇଲେ ହେ ତୁମ୍ଭଙ୍କ ତାକୁ ସୃଷ୍ଟି
ସରଜିଛି କହ କିରୂପେ ମାରିବଇଁ ।
ବୃକ୍ଷଟିଏ ପୋତି ତା କାଟି କି ହେ ମୂଳ
କହ ତ ମୋତେ ଆଗ ସର୍ବଲୋକପାଳ ।
ବେଦଧର୍ମ ଉଚ୍ଛନ୍ନ ନୋହିବାକୁ ମୁହିଁ
ବିଧାନ କରିଅଛି କାହିଁକି କପାଇଁ ।
ଦେବେ ବୋଇଲେ ଆହେ ତୁମ୍ଭଠାରୁ ବର
ପାଇଅଛି ତ ବଳୀ ତାରକ ଅସୁର ।
ଏ ସକାଶୁଁ ତାରକ ବଳ ଅଧିକ ହୋଇ
ଆମ୍ଭ ବଳ ବେଙ୍ଗକୁ ଗିଳିଲା ଗୋସାଇଁ ।
ପାର୍ବତୀ ତ ଆମ୍ଭଙ୍କୁ ଦେଇଛନ୍ତି ଶାପ
ଆମ୍ଭେ ମଲେ ଆମ୍ଭର ପିଣ୍ଡ ହେବ ଲୋପ ।
ବ୍ରହ୍ମା ବୋଇଲେ ହେ ଅଗ୍ନିଙ୍କି ଶାପ ଦେଇ
ନାହାନ୍ତି ଜାଣ ଉମାଦେବୀ କ୍ରୋଧ ହୋଇ ।
ଅଗ୍ନି ଶିବ ବୀର୍ଯ୍ୟରେ କରିବେ କୁମର
କରିବ ସେହି ପୁତ୍ର ତାରକ ସଂହାର ।
ଅଗ୍ନି ଦେବତାଙ୍କୁ ସମ୍ବାଦ ଯାଇ ବେଗେ
ସବୁ କାର୍ଯ୍ୟ ପାଇବ ବସି ସ୍ୱର୍ଗ ଭୋଗେ ।
ଅଗ୍ନିରୁ ଯେଉଁ ପୁତ୍ର ଜନମ ହୋଇବ
ତାରକ ଅସୁରକୁ ମାରି ପକାଇବ ।
ଏରୂପେ ବ୍ରହ୍ମାଙ୍କ ବଚନ କର୍ଣ୍ଣେ ଶୁଣି
ଗଲେ ଅଗ୍ନି ଦେବଙ୍କୁ ଖୋଜ ଦେବଶ୍ରେଣୀ ।
ଅଗ୍ନି ଦେବତାଙ୍କୁ ନ ଦେଖିଣ ନୟନେ
ବସିଲେ ସବୁ ଦେବେ ସୁବିଷାଦ ମନେ ।
ଏହିକାଳେ ବେଙ୍ଗ କହିଲା ଦେବତାଙ୍କୁ
ଅଗ୍ନି ଜଳେ ଲୁଚିଛଇ ଅଛନ୍ତି କାହାକୁ ।
ତୁମ୍ଭେ କାହିଁପାଇଁ ବିଷାଦ କରୁଅଛ
ମୁଁ କହିଲି ବୋଲିଟି ନ କହିବ ଖଚ ।
ଏତେ ବୋଲି ବେଙ୍ଗ ପଶନ୍ତେ ଜଳେ ଯାଇ
ଅଗ୍ନି ତାହା ଜାଣି ବୋଇଲେ କ୍ରୋଧ ହୋଇ ।
ମୁଁ ଲୁଚି ଥିବାର ଯା କହିଲୁ ଦେବଙ୍କୁ
ହେଜ୍ନ ବେଙ୍ଗ ତୋତେ ମୁଁ ଦେଉଛି ଶାପକୁ ।
ଆଜିଠାରୁ ତୋହର ଜିଭ ଯାଉ ଛିଡ଼ି
ଏତେ ବୋଲି ଅଗ୍ନି ସେଠାରୁ ଗଲେ ଉଡ଼ି ।

ଦେବେ ବୋଇଲେ ହେ ନ ଡର ବେଙ୍ଗଗଣ
ଆମ୍ଭେ ଯା ବୋଲୁଛୁ ତା ମନଦେଇ ଶୁଣ ।
ଜିଭ ନ ଥିଲେ ହେ ପାଡ଼ିବ ତୁମ୍ଭେ ଡକା
ତାହାକୁ ଶୁଣି ଲୋକେ ହୋଇବେ ତାଟକା ।
ଭୂମି ମଧ୍ୟରେ ବିଳ କରି ରହିଥିବ
ବର୍ଷି ଆସିଲେ ତୁମ୍ଭେ ସଞ୍ଚାର କରିବ ।
ଏହିରୂପେ ବେଙ୍ଗକୁ ଅନୁଗ୍ରହ କଲେ
ନେଟେ ଅଗ୍ନି ଦେବଙ୍କୁ ଖୋଜ ବାହାରିଲେ ।
ଦେବଙ୍କ ଶ୍ରମ ଜାଣି ହାତୀଟିଏ ଆସି
ଅଶ୍ୱତଥେ ଛନ୍ତି ବୋଲି ତାକୁ ଦେଲା ଦର୍ଶି ।
ଅଗ୍ନି ସେ ହାତୀଟିର କହିବା ଜାଣିଲେ
ଆଜହୁଁ ହୀନଜିଭ ବହିବ ବୋଇଲେ ।
ଅଶ୍ୱତଥକୁ ଛାଡ଼ି ଶମୀକି ଆଶ୍ରେ କରି
ରହିଲେ ଅଗ୍ନି ଦେବ ଦେବ ଭୟ କରି ।
ଦେବେ ବୋଇଲେ ହେ ହୋଇଲେ ହୀନଜିଭ
ଉଦର ପୋଷିବାର ହୋଇବ ସୁଲଭ ।
ଅଗ୍ନି ତ ଶମୀଗଛ ମଧ୍ୟରେ ରହିଲେ
ଶୁଆ ତା ଜାଣିପାରି ଦେବଙ୍କୁ କହିଲେ ।
ଅଗ୍ନି କ୍ରୋଧ ହୋଇଣ ବୋଇଲେ ଶୁଆକୁ
ଆଜୁ ଛାଡ଼ିବୁ ତୁହି କହିବା କଥାକୁ ।
ଏରୂପେ ଶାପ ଦେଇ ଜିଭ ଲେଉଟାଇ
ଦେଲେ ମଧ୍ୟ ଅଗ୍ନି ଦେବତା କ୍ରୋଧ ହୋଇ ।
ଶୁଆର ଏ ଦଶାକୁ ଶୁଣିକରି କାନେ
କର୍ଣ୍ଣଦେଶେ ହାତକୁ ଦେଲେ ଦେବଗଣେ ।
ବୋଇଲେ ଅଗ୍ନି ଦେବ କପାଇଁ ଏ ପାପ-
କଥା ଆଚରନ୍ତି ହୃଦରେ କରି କୋପ ।
ଏତେ ବୋଲି ଦେବେ ଶୁଆକୁ ଡକାଇଲେ
କିଛି ଭୟ ନ କର ବୋଲିଣ ବୋଇଲେ ।
ବାଳକ ପରାୟେ ତୁ କଥାକୁ କହିବୁ
ଯେ ଯାହା ପଢ଼ାଇବ ତାହା ତୁ ପଢ଼ିବୁ ।
ଶୁଆ ସନ୍ତୋଷ ହୋଇ ବୋଇଲା ଗୋସାଇଁ
ଆସ ଶମୀଗଛରେ ଛନ୍ତି ଅଗ୍ନି ରହି ।
ଏହାକୁ ଶୁଣି ଦେବେ ଧଡପଡ଼େ ଗଲେ
ଶମୀଗଛକୁ ବେଢ଼ି କରିଣ ବସିଲେ ।
ଅଗ୍ନି ଶମୀଗଛରୁ ପଡ଼ିଣ ବାହାରି
ଦେବତାଙ୍କୁ କହିଲେ ଭୟ ହୃଦେ ଧରି ।

କାର୍ଯ୍ୟପାଇଁ ତୁମ୍ଭେ ଆସିଛ ଆମ୍ଭପାଖକୁ
କହିବାହେଉ ତାହା ପଚ୍ଛରେ ତୁମ୍ଭଙ୍କୁ ।
ଦେବେ ବୋଇଲେ ହେ ଗୋଟିଏ କଥା ଅଛି
ତାହା କହିବୁ କର ଆମ୍ଭଙ୍କୁ ନ ପୁଚ୍ଛି ।
ଅଗ୍ନି ବୋଇଲେ ହେ ନଯୁକ୍ତ ଅକାର୍ଯ୍ୟରେ
କଲେ ତା କାର୍ଯ୍ୟ କରିବୁ କି ଆମ୍ଭେ ଥରେ ।
ଦେବେ ବୋଇଲେ ଆହେ ତାରକକୁ କରି
ଗୁଡ଼ି ଆସିଛୁ ଜାଣ ଆମ୍ଭେ ସ୍ୱର୍ଗପୁରୀ ।
ତୁମ୍ଭେ ତାଙ୍କୁ ମାରି ଆମ୍ଭଙ୍କୁ ସ୍ୱର୍ଗ ଦିଅ
ଖ୍ୟାତ କରି ତିନଲୋକରେ କାର୍ତ୍ତିଚୟ ।
ଆମ୍ଭେ ତ ଶାପ ପାଇ ହେଲୁ ଅପୁତ୍ରିକ
ଏଣୁ ଭାଙ୍ଗି ଗଲା ଆମ୍ଭର ବାଳଯାକ ।
ପୁତ୍ରଟି ଶିବଙ୍କ ତେଜେ ଜାତ କରି
ତା ହାତେ ତାରକକୁ ଦିଅ ବେଗେ ମାରି ।
ଏହା ଶୁଣି ଅଗ୍ନି ଗଙ୍ଗାଙ୍କଠାକୁ ଗଲେ
ଶିବବୀର୍ଯ୍ୟ ଗଙ୍ଗାଙ୍କଠାରେ ଉତ୍ସର୍ଗିଲେ ।
ଗଙ୍ଗା ଶିବଙ୍କର ତେଜକୁ ଗର୍ଭେ ଧରି
ହୋଇଲେ ସେ ଜାଣ ମହତ ପୀଡ଼ାକାରୀ ।
ସେହିକାଳେ ଅସୁରଟାଏ ଗରଜିଲା
ସେଦେହ ଗଙ୍ଗାଙ୍କର ଭୟ ଉପୁଜିଲା ।
ଗଙ୍ଗା ସେ ଗର୍ଭଟିକି ପେଟରେ ଉତ୍ସର୍ଗ
କଲା ପ୍ରାପ୍ତେ ହୋଇଲେ ଜାଣ ମହାଭାଗ ।
ଅଗ୍ନି ଦେବତାଙ୍କୁ ବୋଇଲେ ଏ ଗର୍ଭକୁ
ଜାଣ ମୋହର ବଳ ନାହିଁ ଧରିବାକୁ ।
ଏତେ ବୋଲିଣ ଗଙ୍ଗା ମେରୁଗିରି ଶିଖେ
ଗର୍ଭକୁ ଉତ୍ସର୍ଗି ବସିଲେ ମହାସୁଖେ ।
ଅଗ୍ନି ପଚାରିଲେ ହେ ଜାହ୍ନବୀ ଗର୍ଭକୁ
ଛାଡ଼ିଲ ତ ହେଲା କହ ସେ କି ବର୍ଣ୍ଣକୁ ।
ଗଙ୍ଗା ବୋଇଲେ ମୁଁ ଛାଡ଼ିଲା ଯେଉଁ ଗର୍ଭ
ଏ ଅବନୀ ମଣ୍ଡଳେ ଅଟେ ସେ ଦୁର୍ଲ୍ଲଭ ।
ତୁମ୍ଭଙ୍କୁ ପ୍ରତି ତେଜେ ଅଧିକ ସେ ହେବ
ଆଉ ମୋତେ ନ ପଚାର ହେ ଅଗ୍ନିଦେବ ।
ଏରୂପେ ଗଙ୍ଗା କହି ହେଉଁ ଅନ୍ତର୍ହିତ
ନିଜସ୍ଥାନେ ଚଳିଲେ ଅଗ୍ନି ଦଇବତ ।
ଶରବଣେ ରହିଣ ଗଙ୍ଗାଙ୍କ ଗର୍ଭଟି
ବଢ଼ିଲେ ନିଦା କରି ଆଦିତ୍ୟ ପ୍ରଭୃତି ।

କୃତ୍ତିକାମାନେ ଦେଖି ବାଳକ ସ୍ୱରୂପ
କରାଇଲେ ସ୍ତନ୍ୟପାନ ଘୁଞ୍ଚିଣ ତାପ ।
କୃତ୍ତିକାଙ୍କର କ୍ଷୀରପାନ ତ ସେ କଲେ
ଏଣୁ ସେ କାର୍ତ୍ତିକେୟ ଭବେ ବୋଲାଇଲେ ।
ଖସିପଡ଼ିଥିବାରୁ ଶିବଙ୍କର ରେତ
ସ୍କନ୍ଦ ନାମ ହୋଇଲେ ଜଗତେ ବିଦିତ ।
ପର୍ବତଗୁହାଟିରେ ରହିବାରୁ ଗୁହ
ବୋଲି ନାମ ଦେଲେଟି ଦେହେ ବହି ସ୍ନେହ
ଆହେ ପରଶୁରାମ ଗଙ୍ଗାଙ୍କ ଗର୍ଭଟି
ପଡ଼ିବାବେଳେ ସୁନା କରିଦେଲା ମାଟି ।
ସେହିଦିନୁ ଅଗ୍ନି ହିରଣ୍ୟରେତା ହେଲେ
ଗରଭ ପଡ଼ିଥିବା ମାଟି ସୁନା ହେଲେ ।
ଅଗ୍ନିଙ୍କର ପୁତ୍ରଟି ହେବାରୁ ସୁବର୍ଣ୍ଣ
ହୋଇଲେ ଏ ଜଗତ ଜନଙ୍କ ପାବନ ।
ପୂର୍ବକାଳେ ରୁଦ୍ର ବାରୁଣୀତନୁ ବହି
ବାହାରନ୍ତେ ଦାଣ୍ଡରେ କଉତୁକୀ ହୋଇ ।
ତାଙ୍କଠାକୁ ଦେବ ପ୍ରଣବ ବଷଟ୍‌କାର
ଆସିକରି ନମିଲେ ତାଙ୍କର ପୟର ।

ମହାଦେବ ଯେ ସେମାନଙ୍କୁ ନେଇ ଦେଖି
ଯାଗ ଆରମ୍ଭ କଲେ ହୋଇ ଅତି ସୁଖୀ ।
ତିନଲୋକରେ ଯେତେ ଦେବତାଏ ଥିଲେ
ଶିବଙ୍କର ଯାଗକୁ ଦେଖିଣ ଆସିଲେ ।
ଦେବରମଣୀ ଦେବକନ୍ୟାଏ ତ ଥିଲେ
ସେମାନେ ମଧ୍ୟ ଯାଗ ଦେଖି ବାହାରିଲେ ।
ଶିବ ସେହି କନ୍ୟାଙ୍କୁ ଦେଖି ରେତୋତ୍ସର୍ଗ
କରନ୍ତେ ସେ ରେତ ପଡ଼ିଲା ମହାଭାଗ ।
ପୂଷା ସେ ରତକୁ ଭୂମିରୁ ଧରି ପୋଛି
ଅଗ୍ନିକୁଣ୍ଡେ ପକାଇଲେ ତାହାପୋଛି ।
ସେ ବୀର୍ଯ୍ୟ ସକାଶୁ ତୈଜସ ଦ୍ରବ୍ୟଯାକ
ଜାତ ହୋଇଲା ଆହେ ଦ୍ୱିଜଙ୍କ ନାୟକ ।
କାର୍ତ୍ତିକେୟ ଦେବ ଯେ ଯୁବା ଅବସ୍ଥାକୁ
ବହନ୍ତେ ନାଶିଲେ ତାରକ ଅସୁରକୁ ।
ଅଗ୍ନିରୁ ସୁନା ଜାତ ହେବାରୁ ପବନ
ହେଲା ତ ହେ ଶୁଣିଲ ଭୃଗୁଙ୍କର ପୁତ୍ର ।
ବ୍ରାହ୍ମଣଙ୍କୁ ଏବେ ହେ ଡକାଇଣ ଆଣ
ଯାହାକୁ ଯେତେ ମନ ଦିଅ ସୁନାଦାନ ।

ବଶିଷ୍ଠଙ୍କ ବାଣୀ ପରଶୁରାମ ଶୁଣି
ଦାନ ଦେଲେ ସୁନା ଡକାଇ ଦ୍ୱିଜଶ୍ରେଣୀ ।
ଭୀଷ୍ମଙ୍କୁ ବୋଲୁଁ ଥାଇଁ ରଜା ଯୁଧିଷ୍ଠିର
ଦିଅ ସୁନାଦାନ ଡ଼କାଇ ଦ୍ୱିଜବର ।

—*—

## ତାରକ ବଧ

ଯୁଧିଷ୍ଠିର ବୋଇଲେ ତାରକ ବଧ ମୋତେ
ବିସ୍ତାର କୁହ ଆହେ ଭୀଷ୍ମ ମହାମତେ ।
ଭୀଷ୍ମ ବୋଇଲେ ଆହେ ଦେବଙ୍କ ବୋଲରେ
ଗଙ୍ଗାଙ୍କ ଗର୍ଭ କୃତ୍ତିକାଏ ସରାଗରେ ।
କ୍ଷୀରପାନ ଦେଇଣ ପାଳନାକୁ କଲେ
ମୋ କହିବାରୁ ଜାଣ ଯୁଧିଷ୍ଠିର ଭଲେ ।
ଗଙ୍ଗାଦେବୀଙ୍କ ଗର୍ଭ କାର୍ତ୍ତିକେୟ ବଳୀ
ବଳ ପାଇ ଭବେ ବୋଲନ୍ତେ ମହାବଳୀ ।
ଋଷିମାନେ ଗନ୍ଧର୍ବମାନେ ବିନୟରେ
ସ୍ତୁତି କରିଲେ ଆସି ରହିଣ ଆଗରେ ।
ଛ'ମୁଖ ବାରଭୁଜ କାର୍ତ୍ତିକେୟଙ୍କର
ଦେଖି ଦେବତାଏ ହୋଇଲେ ତୋଷଭର ।
କାର୍ତ୍ତିକେୟଦେବଙ୍କ କ୍ରୀଡ଼ାବସ୍ଥା ଜାଣି
ଦେଲେ ଯେ ଦେବେ ନାନାବିଧ ପକ୍ଷିଶ୍ରେଣୀ ।
ଏ ବାହାରେ ବାହନ କରି ମୟୂରକୁ
ଦେଲେ ମାନସରେ ବ୍ରହ୍ମଣ ସରାଗକୁ ।
ଗାଈକ ସୁରଭି, କୁକ୍କୁଟକୁ ବରୁଣ
ମେଷକୁ ନିଶାପତି, ଛାଗକୁ ଜ୍ୱଳନ ।
ବରାହ ମହିଷେ, ରାକ୍ଷସେ ପୁଷ୍ପ ଫଳ—
ଅବନୀ, ଶକଟେ ସୁଧନ୍ୱା ମହାବଳ ।
ସିଂହ ବ୍ୟାଘ୍ରମାନଙ୍କୁ, ଶଚୀଦେବୀ କାନ୍ତ
ଦେଲେ ମାନସରେ ହୋଇଣ ଅତି ପ୍ରୀତ ।
ଦେବେ ସେନାପତି କରିଣ କାର୍ତ୍ତିକେୟ
ଦେବଙ୍କୁ କରିଲେ ଆଗ ତାରକାକ୍ଷୟ ।
ତଦନ୍ତେ ତାହାକୁ ମରାଇ ପକାଇଲେ
ଆନନ୍ଦ ହୋଇ କରି ସ୍ୱର୍ଗପୁରେ ଗଲେ ।
ତାରକାସୁର ବଧ, ସୁବର୍ଣ୍ଣ ଉତ୍ପତ୍ତିକି
ସରଳ କହେ କୃଷ୍ଣସିଂହ ନରପତି ।

—*—

## ଶ୍ରାଦ୍ଧ ବିଧାନ

ଯୁଧିଷ୍ଠିର ବୋଇଲେ ଶ୍ରାଦ୍ଧର ବିଧାନ
କହ ମୋତେ ହେ ଭୀଷ୍ମ ରଥୀଙ୍କ ମଣ୍ଡନ ।
ଭୀଷ୍ମ ବୋଇଲେ ଆହେ ଶ୍ରାଦ୍ଧର ବିଧାନ
ଶୁଣ ତାହା କହିବା ପାଣ୍ଡବ ରାଜନ ।
ଦେବାସୁର ମନୁଷ୍ୟ କିନ୍ନର ଗନ୍ଧର୍ବ
ସବୁରନ୍ତି ପିତୃ ପୂଜ୍ୟ ହେ ନରଦେବ ।
ପିତୃଙ୍କୁ ପ୍ରତିମାସ ଅମାବାସ୍ୟା ଦିନ
ଶ୍ରାଦ୍ଧ କରୁଥିବ ହୋଇଣ ତୋଷମନ ।
ପ୍ରତି ତିଥି ଶ୍ରାଦ୍ଧ ଫଳ ହେ ମହୀପତେ
ପରକାଶି କହିବା ଶୁଣ ଏକଚିତ୍ତେ ।
ପ୍ରତିପଦା ଦିନ ପିତୃଙ୍କୁ ଯେ ପୂଜଇ
ଦିବ୍ୟସ୍ତ୍ରୀ ଘେନି ସେ ଏକାନ୍ତେ ବସଇ ।
ଦ୍ୱିତୀୟାରେ ପୂଜା କରିଲେ ଝିଅ ହୋଏ
ତୃତୀୟାରେ ପୂଜିଲେ ବହୁ ଅଶ୍ୱ ପାଏ ।
ଚତୁର୍ଥୀ ଦିନ ଯେବେ ପିତୃଙ୍କୁ ପୂଜନ୍ତି
ତାଙ୍କ ଘରେ ବହୁତ ପଶୁଏ ବଢ଼ନ୍ତି ।
ପଞ୍ଚମୀ ଦିନ ଶ୍ରାଦ୍ଧ କଲେ ବହୁପୁତ୍ର
ଜାତ ହୋଇ କୁଳକୁ କରନ୍ତି ପବିତ୍ର ।
ଷଷ୍ଠୀ ଦିନରେ ପିତୃଶ୍ରାଦ୍ଧ ଯେବେ କରି
ରହିଥାଏ ସେ ମଲ୍ଯାଏ ତେଜ ପୂରି ।
ସପ୍ତମୀ ଦିନରେ ଶ୍ରାଦ୍ଧ କଲେ ନର
କୃଷି ଧାନ ଯାକ ଯେ ବଢ଼ଇ ତାହାର ।
ଅଷ୍ଟମୀ ଦିନ ଯେବେ ଶ୍ରାଦ୍ଧ ଲୋକ କରେ
ଲାଭ ଲଭଇ ସେ ରାଜନ ବାଣିଜ୍ୟରେ ।
ନବମୀରେ ଶ୍ରାଦ୍ଧ କରିଲେ ମିଳଇ ପଶୁ
ଦଶମୀ ଶ୍ରାଦ୍ଧଟିରେ ବଢ଼ଇଟି ବସ୍ତୁ ।
ଏକାଦଶୀ ଶ୍ରାଦ୍ଧରେ ପୁତ୍ର ଉପୁଜଇ
ଦ୍ୱାଦଶୀ ଶ୍ରାଦ୍ଧ କଲେ ସୁବର୍ଣ୍ଣ ମିଳଇ ।
ତ୍ରୟୋଦଶୀ ଦିନରେ ଶ୍ରାଦ୍ଧ କରେ ନର
ଜ୍ଞାତିମାନଙ୍କରେ ହୁଅଇ ଜାଣ ବର ।
ଚତୁର୍ଦ୍ଦଶୀ ଦିନ ଶ୍ରାଦ୍ଧ ଯେହୁ କରଇ
ଜାଣିକରି ପୁତ୍ରମାନଙ୍କୁ ସେ ମାରଇ ।
ଅମାବାସ୍ୟା ଶ୍ରାଦ୍ଧରେ ପୂର୍ଣ୍ଣକାମ ହୋଇ
ବସଇଟି ନର ସ୍ୱରଗ ପୁରେ ଯାଇ ।

ଶୁକ୍ଳପକ୍ଷକୁ କୃଷ୍ଣପକ୍ଷ ସାର
ଶ୍ରାଦ୍ଧ କରିବାକୁ ଅଟଇ ମନେ କର ।
ପୂର୍ବାହ୍ନରେ ପ୍ରତକ୍ଷ ଅପରାହ୍ନ କାଳେ
ଶ୍ରାଦ୍ଧ କଲେ ବସଇ ବସଇ ପୁଣ୍ୟ ଆଳେ ।
ଯୁଧିଷ୍ଠିର ବୋଇଲେ ପିତୃଙ୍କୁ କ ଦେଲେ
ଅକ୍ଷୟ ହୋଏ ପିତାମହ କହ ଭଲେ ।
ଭୀଷ୍ମ ବୋଇଲେ ଆହେ ତିଳ ଯବ ମୂଳ ।
ଫଳରେ ତୃପତ ହୁଅନ୍ତି ପିତୃକୁଳ
ମାଛ ମାଂସ ପ୍ରତକ୍ଷ ଗଣ୍ଡା ମାଉଁସରେ
ପିତୃଏ ବସନ୍ତି ଅଧିକ ସନ୍ତୋଷରେ ।
ଯମ ଶଶବିନ୍ଦୁଙ୍କୁ ଯେଉଁ ନକ୍ଷତ୍ରରେ
ଶ୍ରାଦ୍ଧ କରିବାକୁ କହିଲେ ସୁମନରେ ।
ସେହି ନକ୍ଷତ୍ରମାନ କହିବା ତୁମ୍ଭଙ୍କୁ
ତୁମ୍ଭେ ଦିଅ ହେ ଆମ୍ଭ କଥାରେ ମନକୁ ।
କୃତ୍ତିକା ନକ୍ଷତ୍ରରେ ଶ୍ରାଦ୍ଧ କଲେ ପୁତ୍ର
ଜାତ କରଣ ଲୋକ ହୁଅଇ ପବିତ୍ର ।
ରୋହିଣୀ ମୃଗଶିରା ନକ୍ଷତ୍ରରେ କଲେ
ଓଜ ତେଜ ବଢ଼ାଇ ସୁଖେ ବସେ ଭଲେ ।
ଆର୍ଦ୍ରା ନକ୍ଷତ୍ରରେ ଶ୍ରାଦ୍ଧ କଲେ କ୍ରୂର—
କର୍ମକୁ ଆଚରଇ ଜାଣନ୍ତି ହୋ ନର ।
ପୁନର୍ବସୁ ଶ୍ରାଦ୍ଧରେ ବହୁ ଧନ୍ୟ ଧାନ୍ୟ
ଘରଟିରେ ରଖାଇ କର ପରିପୂର୍ଣ୍ଣ ।
ଧନକାମୀ ଲୋକ ଯେ ପୁଷ୍ୟା ନକ୍ଷତ୍ରରେ
ଶ୍ରାଦ୍ଧ କରନ୍ତି ଅତ୍ୟନ୍ତ ଯତନରେ ।
ଅଶ୍ଳେଷା ନକ୍ଷତ୍ରରେ ହୁଏ ବୀରସୁତ
ଶ୍ରାଦ୍ଧ କଲେ ଜାଣ ପାଣ୍ଡବ ଧର୍ମସୁତ ।
ମଘା ନକ୍ଷତ୍ରେ ଶ୍ରାଦ୍ଧ ଯେ ନର କରଇ
କୁଳଶ୍ରେଷ୍ଠ ବୋଲଣ ତାହାକୁଟି କହି ।
ପୂର୍ବାଫାଲଗୁନୀରେ ଶ୍ରାଦ୍ଧ କଲେ ନର
ସୁଭଗ ହୁଅଇ ରଜନ ମନେକର ।
ଉତ୍ତରଫାଲଗୁନୀ ନକ୍ଷତ୍ରରେ କଲେ
ଅପତ୍ୟ ବୃଦ୍ଧି ମର୍ତ୍ତ୍ୟେ କରେ ଲୋକ ଭଲେ ।
ହସ୍ତା ନକ୍ଷତ୍ରରେ ଲଭଇ ସବୁ ଫଳ
ଶ୍ରାଦ୍ଧ କଲେ ଜାଣ ହେ ପାଣ୍ଡବ ନୃପାଳ ।
ଚିତ୍ରାରେ ରୂପବନ୍ତ ପୁତ୍ରକୁ ଲଭଇ
ସ୍ୱାତୀରେ ଶ୍ରାଦ୍ଧ କଲେ ବାଣିଜ୍ୟ ବଢ଼ଇ ।
ବିଶାଖା ନକ୍ଷତ୍ରରେ ହୁଏ ବହୁ ପୁତ୍ର
ଅନୁରାଧା ନକ୍ଷତ୍ରେ ଜଣେ ଦ୍ୱିଜଗୋତ୍ର ।
ଜ୍ୟେଷ୍ଠା ନକ୍ଷତ୍ରେ ଶ୍ରାଦ୍ଧ ଯେ ଲୋକ କରଇ
ମହତ ଆଧିପତ୍ୟକୁଟି ସେ ଲଭଇ ।
ମୂଳା ନକ୍ଷତ୍ରେ ଜାଣ ଆରୋଗ୍ୟକୁ ପାଏ
ପୂର୍ବାଷାଢ଼ାଶ୍ରାଦ୍ଧରେ କୀର୍ତ୍ତି ଖ୍ୟାତ ହୁଏ ।
ଉତ୍ତରାଷାଢ଼ା ନକ୍ଷତ୍ରରେ ଛାଡ଼େ ଶୋକ
ଅଭିଜିତ ରକ୍ଷେ ବିଦ୍ୱାନ ହୁଏ ଲୋକ ।
ଶ୍ରବଣାରେ ଶ୍ରାଦ୍ଧ କରିଲେ ପାଏ ନାକ
ମୋ କହିବାରୁ ଜାଣ ପାଣ୍ଡବ ନାୟକ ।
ଧନିଷ୍ଠାରେ ଶ୍ରାଦ୍ଧ କଲେ ରାଜ୍ୟ ପାଏ
ଶତଭିଷା ନକ୍ଷତ୍ରେ ବଇଦ୍ୟ ବୋଲାଏ ।
ପୂର୍ବଭାଦ୍ର ନକ୍ଷତ୍ରେ ଶ୍ରାଦ୍ଧ ଯେ କରଇ
ଅଜ ମେଷାଦି ତାକୁ ବହୁତ ମିଳଇ ।
ଉତ୍ତରଭାଦ୍ର ପଦେ ଶ୍ରାଦ୍ଧ କଲେ ନର
ସହସ୍ର ସଂଖ୍ୟା ଗାଈ ହୁଅଇ ତାହାର ।
ରେବତୀ ନକ୍ଷତ୍ରରେ କଂସା ତମ୍ବା ମିଳେ
ଅଶ୍ୱିନୀରେ ରଜା ହୁଅଇ ଘୋଡ଼ାକୁଳେ ।
ଦ୍ୱିଜା ନକ୍ଷତ୍ରେ ଜାଣ ଶ୍ରାଦ୍ଧ ଯେ କରଇ
ନାକ କାନ ରୋମ ସେ ଦିଅଇ ପରୁଇ ।
ଶଶବିନ୍ଦୁ ରଜା ଏରୂପେ ଶ୍ରାଦ୍ଧ ବିଧି
ଶୁଣିଣ ଶ୍ରାଦ୍ଧ କରିବାରେ କରି ବୁଦ୍ଧି ।
ଶ୍ରାଦ୍ଧ କରି ମହୀକି ଜିଣି ପକାଇଲେ
ମୁଁ ଏକା ରଜା ଅଛି ବୋଲି ମନେକଲେ ।
ଯୁଧିଷ୍ଠିର ବୋଇଲେ କେଉଁ ବ୍ରାହ୍ମଣଙ୍କୁ
ଶ୍ରାଦ୍ଧ ଦ୍ୱିଜ କରିବ କହ ତା ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ସେହୁ ଜାଣିବାର ହେବ
ବ୍ରାହ୍ମଣ ଭଲମନ୍ଦ ଦାନେ ନ ବୁଝିବ ।
ଅପାତ୍ର ଦ୍ୱିଜ କରେ ଦାନ ଯେବେ କରି
ସ୍ୱର୍ଗପୁରେ ପୂଜା କରନ୍ତି ବଜ୍ରଧାରୀ ।
କେଉଁ ଦ୍ୱିଜଟିକି କରିବ ଶ୍ରାଦ୍ଧ ଦ୍ୱିଜ
ତାହାକୁ ବୁଝିବ ପାଣ୍ଡବକୁଳ ରାଜ ।
କ୍ଲୀବ ରାଜଯକ୍ଷ୍ମା ଲୁଣହା ବାର୍ଦ୍ଧୁଷିକ
ପଶୁପାଳ ସର୍ବହସ୍ତୀ ସାମୁଦ୍ରିକ ।
ଗୁରୁତଲ୍ପଗାମୀ ପିତୃବିଦ୍ୱେଷୀ ହର୍ତ୍ତା
ସଦ୍ରକଣ୍ଟଶୀଳ ଦୁଷ୍କର୍ମା ପରିବେତ୍ତା ।

ରାଜଭୃତ୍ୟ ଶିଳ୍ପୀ ଉପଜୀବୀ ତୈଳିକ
ମିତ୍ରଦ୍ରୋହୀ ପାରଦାରିକ ସୂଚକ ।
ଗ୍ରାମପ୍ରେଷ୍ୟ ଜ୍ୟୋତିଷ ପୁଣି ସୂପକାର
ଏ ଦ୍ୱିଜଙ୍କୁ ଛାଡ଼ିବ ଶ୍ରାଦ୍ଧେ ନୃପବର ।
ଏହି ମାନଙ୍କୁ ଶ୍ରାଦ୍ଧ ବ୍ରାହ୍ମଣ ଯେ କରେ
ବିଷ୍ଠା ଭୁଞ୍ଜାଏ ସେହି ପିତୃଙ୍କ ମୁଖରେ ।
ଶ୍ରାଦ୍ଧ ବ୍ରାହ୍ମଣର ଭୋଜନକାଳେ କଣା
ନପୁଂସକ ଦେଖିଲେ ଧର୍ମ ହୋଏ ଊଣା ।
ମୁଣ୍ଡେ ଲୁଗା ବାନ୍ଧି ପାଣ୍ଡୋଇ ମାଡ଼ିଥାଇ
ଦକ୍ଷିଣକୁ ମୁଖକୁ କରି ଯେ ଭୁଞ୍ଜଇ ।
ସେହି ଭୋଜନଯାକ ଅସୁରେ ପ୍ରାପତ
ହୁଅନ୍ତି ହେ ଜାଣ କୁନ୍ତୀଙ୍କ ଜ୍ୟେଷ୍ଠସୁତ ।
କୁକୁର ଫକ୍ତି ବାହ୍ୟଲୋକ ଗୁହ୍ନିଁ ଦେଲେ
ପିତୃଙ୍କୁ ସେ ପ୍ରାପତ ନୁହେ ଜାଣ ଭଲେ ।
ଏହାକୁ ଜାଣନ୍ତି ଯେ ବେଢ଼ାଇଣ ଲୁଗା
କରନ୍ତି ଶ୍ରାଦ୍ଧଟିକ ହୋଇଣ ଅଲଗା ।
ରାଶି ନ ପକାଇଣ ଶ୍ରାଦ୍ଧ ଯେ କରଇ
ଏ ବାହାରେ ମାନସେ ମଧ୍ୟ କ୍ରୋଧ ହୋଇ ।
ତାହା ଶ୍ରାଦ୍ଧ ପିଶାଚ ରାକ୍ଷସେ ପ୍ରାପତ
ହୁଅଇ ଜାଣ ଯୁଧିଷ୍ଠିର ଧର୍ମବନ୍ତ ।
ଋତୁକାଳଗାମୀ ମାତୃପିତୃଭକତ
ଧାର୍ମିକ ଜିତେନ୍ଦ୍ରିୟ ସର୍ବ ଭୂତେ ହିତ ।
କ୍ରୋଧ-ବିହୀନ ସତ୍ୟବାଦୀ ବ୍ରହ୍ମଚାରୀ
ଛନ୍ଦୋଗ ବେଦବିଦ ତୀର୍ଥସ୍ନାନକାରୀ ।
ଏମାନଙ୍କୁ ଶ୍ରାଦ୍ଧ ବ୍ରାହ୍ମଣ କଲେ ରାଜେନ୍ଦ୍ର
ଅମୃତ ଭୋଜନଟି କରନ୍ତି ପିତୃଏ ।
ଯୁଧିଷ୍ଠିର ବୋଇଲେ ଶ୍ରାଦ୍ଧ ଯେ କରୁଛି
ଏ ବାହାରେ କି ଦେବ ବୋଲିଣ କହୁଛି
କି ଛାଡ଼ିବ ଏହା କହ ତ ପିତାମହ
ଶୁଣିବାକୁ ମୋହର ବଳଅଛି ସ୍ନେହ ।
ଭୀଷ୍ମ ବୋଇଲେ ଆହେ ଅତ୍ରି ଋଷିଙ୍କର
ଦତ୍ତାତ୍ରେୟ ନାମରେ ହୋଇଲେ କୁମର ।
ଦତ୍ତାତ୍ରେୟଙ୍କର ଯେ ନିମି ପୁତ୍ର ହେଲେ
ନିମିଙ୍କର ପୁତ୍ର ଶ୍ରୀମାନ ବୋଲାଇଲେ ।
ଦୁସ୍ତର ତପ କରି ଶ୍ରୀମାନ ମହର୍ଷି
ଅନ୍ତଃକାଳେ ହୋଇଲେ ସ୍ୱର୍ଗପୁରବାସୀ ।

ନିମି ଶ୍ରୀମାନଙ୍କର ମରଣକୁ ଦେଖି
ନିତି ଡକା ପାଡ଼ିଲେ ଅଶ୍ରୁ ଝରି ଆଖି ।
ଅମାବାସ୍ୟା ଦିନ ଭିଆଇ ସାମଗ୍ରୀ
କରିବି ଶ୍ରାଦ୍ଧ ମୁଁ ଭାବିଲେ ତପସ୍ଥାରୀ ।
ବିପ୍ରର ଅନ୍ତେ ସାତଦ୍ୱିଜ ଡକାଇଲେ
କୁଶ ପାଡ଼ି ପୁତ୍ରନାମରେ ପିଣ୍ଡଦେଲେ ।
ଏରୂପେ ଶ୍ରାଦ୍ଧ କରି ସାରି ଋଷିବର
ଚିନ୍ତାକଲେ ମନରେ ବସି ନିରନ୍ତର ।
କୌଣସି ଋଷିଏ ନାହାନ୍ତି ଶ୍ରାଦ୍ଧ କରି
ଶ୍ରାଦ୍ଧେ ମୁଁ ପିଣ୍ଡ ଦେଲି ପୁତ୍ରେ ନ ବିଚାରି ।
ଏହିକାଳେ ଅତ୍ରି ଋଷି ସେ ଋଷି ଠାକୁ
ଆସିଲେ ହେ ରାଜନ ଜାଣ ଦେଖିବାକୁ ।
ଦେଖିଲେ ଅତ୍ରି ଋଷି ପୁତ୍ରେ ଦୁଃଖୀ ହୋଇ
ଅଛନ୍ତି ବସି ନିମି ମୁଣ୍ଡ ପୋତି ଦେଇ ।
ଅତ୍ରି ବୋଇଲେ ହେ ନ ଡର ମୁନିବର
ବ୍ରହ୍ମା କହିଛନ୍ତି ହେ ଶ୍ରାଦ୍ଧ କରିବାର ।
ବ୍ରହ୍ମା ଯେଉଁ ଶ୍ରାଦ୍ଧ ବିଧିକି କହନ୍ତି
ତା କହିବା ତୁମ୍ଭଙ୍କୁ ଶୁଣ ଦେଇ ମତି ।
ଆଗ ଅଗ୍ନି ବରଣ କରି ମନ୍ତ୍ର ବାଛି
ପଛେ ଉତ୍ସର୍ଗିବ ପତ୍ରରେ ଅନ୍ନ ବାଢ଼ି ।
ବରୁଣ ଅଗ୍ନି ସୋମ ମଧ୍ୟକ ବିନତି—
ହୋଇକରି ମୁଖରେ କରିବଟି ସ୍ତୁତି ।
ଭେଦୁଅ କଟା ଧାନେ ନ କରିବ ଶ୍ରାଦ୍ଧ
ପିତୃଲୋକେ ତା ପାଇ ନୁହନ୍ତିଟି ବୋଧ ।
ହେଙ୍ଗୁ ଲଉ ସଜନା ପିଆଜ ରସୁଣ
ଇକ୍ଷୁ କଳାଜିରା ସୈନ୍ଧବ ଜମ୍ବୁ ଲୁଣ ।
କୁଆଁମଇତା ଆଦି ଫଳ ଯେ ପୋଟଳ
ଶ୍ରାଦ୍ଧରେ ଏହା ନ ବାଛିବ ଋଷିବାଳ ।
ଏହିରୂପେ ନିମିକି କହି ଅତ୍ରି ଋଷି
ବ୍ରହ୍ମାଙ୍କ ସମୀପକୁ ଗଲେ ହସି ହସି ।
ଶ୍ରାଦ୍ଧବିଧାନ ନିମି ଶୁଣି ଶ୍ରାଦ୍ଧ କଲେ
ସେ ଦିନୁ ଋଷିଏ ତା ଶୁଣି ଆଚରିଲେ ।
ଚାରିବର୍ଣ୍ଣ ଯାକ ଯେ ପିତୃ ଦେବତାଙ୍କୁ
ଦିଅନ୍ତେ ପିତୃଏ ଅଜୀର୍ଣ୍ଣ ବିକାରକୁ ।
ଲଭିକରି ଚନ୍ଦ୍ରଙ୍କ ସମୀପକୁ ଗଲେ
ଆମ୍ଭର ରୋଗ ଭଲ କର ହେ ବୋଇଲେ ।

ଚନ୍ଦ୍ର ବୋଇଲେ ହେ ବ୍ରହ୍ମାଙ୍କଠାକୁ ଯାଅ
ସେ କରିବେ ତୁମ୍ଭମାନଙ୍କର ଯେ ଶ୍ରେୟ ।
ଚନ୍ଦ୍ରଙ୍କ ବଚନେ ପିତୃଏ ତୋଷ ହେଲେ
ମେରୁଶୃଙ୍ଗରେ ବ୍ରହ୍ମାଦେବଙ୍କ ଭେଟିଲେ ।
କହିଲେ ଶ୍ରାଦ୍ଧଅନ୍ନ ଖାଇ ପିତୃଗତ
ରୋଗୀ ହେଲୁ ଆମ୍ଭଙ୍କୁ ଉଦ୍ଧର ଆପଣ ।
ବ୍ରହ୍ମା ବୋଇଲେ ହେ ଅଗ୍ନିଙ୍କି ମୁଁ କହିବ
ପୂର୍ବ ଜାଣ ପିତୃଏ ତୁମ୍ଭ ଭଲ ବାଞ୍ଛା ।
ଅଗ୍ନି ବୋଇଲେ ହେ ଶ୍ରାଦ୍ଧରେ ମୋରତୁଲେ
ଭୁଞ୍ଜିଲେ ଯାଇଟି ବସିବ ଘରେ ଭଲେ ।
ଏହା ଶୁଣି ପିତୃଏ ଫୁଲ୍ଲଇଣ ଚିତ୍ତ
ଭୋଜନ କଲେ ଶ୍ରାଦ୍ଧଅନ୍ନ ବହି ପ୍ରୀତ ।
ଏହାଜାଣି ଲୋକ ଅଗ୍ନିଙ୍କି ଆଗଦେଇ
ପଛେ ପିତୃଗଣେ ଦିଅନ୍ତି ପିଣ୍ଡ ନେଇ ।
ପିତୃ ମାତାମହ ଯେ ପ୍ରପିତାମହଙ୍କୁ
କ୍ରମରେ ଦେବ ପିଣ୍ଡ ବହି ସରାଗକୁ ।
ପ୍ରତି ପିଣ୍ଡେ ଗାୟତ୍ରୀ ପଢି ଚନ୍ଦ୍ର ନାମ
ଧରିକରି ଛୁଇଁବ ହେ ନର ଉତ୍ତମ ।
ପିଣ୍ଡ ଦେଲେ ପିତୃଏ ମୁକତି ହୁଅନ୍ତି
ନ ପାଇଲେ ପିଣ୍ଡକୁ ନରକେ ପଡ଼ନ୍ତି ।
ପିଣ୍ଡହୀନ ହୋଇବାରୁଟି ହୋଇ ଦୋଷ
ପିତୃଙ୍କ ବଳଆର ନାହିଁ ହେ ନରେଶ ।
ଏଠାରେ ହେଲା ଶ୍ରାଦ୍ଧକଳ୍ପ ସମାପତି
କହଇ କୃଷ୍ଣସିଂହ ନରକୁଳପତି ।

---*---

## ବୃଷାଦର୍ଭି ସମ୍ବାଦ

ଯୁଧିଷ୍ଠିର ବୋଇଲେ ତପ ଉପବାସ
କାହାକୁ ବୋଲି ପିତା କର ତ ପ୍ରକାଶ ।
ଭୀଷ୍ମ ବୋଇଲେ ଆହେ ମାସ ଉପବାସ
କଲେ ତପନ ବୋଲିଟି ହେ ନରେଶ ।
ତ୍ୟାଗକୁଟି କେବଳ ତପ ବୋଲି କହି
ତ୍ୟାଗ କରୁଣ ଥିବ ମାଉଁସ ନ ଖାଇ ।
ଅତିଥିପ୍ରିୟ ବିଘସାଶୀ ବ୍ରହ୍ମଚାରୀ
ହୋଇ ରହିଥିବ ମନକୁ ଧୀର କରି ।
ଏ ବାହାରେ ଅସ୍ୱପ୍ନ ସବୁ କାଳେ ହେବ
ତିଳବେଟି ଜଗତେ ପବିତ୍ର ବୋଲାଇବ ।

ଯୁଧିଷ୍ଠିର ବୋଇଲେ ଏ ହୋଏ କି ରୂପରେ
କହତ ପିତାମହ ତାହା ମୋ ଆଗରେ ।
ଭୀଷ୍ମ ବୋଇଲେ ହେ ତତେ ତ କହିଥାଇଁ
ଆଉ କେତେ କହିବା ପୁଚ୍ଛ ନରସାଇଁ ।
ଯୁଧିଷ୍ଠିର ବୋଇଲେ ଦିବା ନିବା ଲୋକ
ବିଶେଷି କହ ମୋତେ ରଥୀଙ୍କ ନାୟକ ।
ଭୀଷ୍ମ ବୋଇଲେ ଆହେ ସାଧୁ ଦେବା ଦାନ
ଯେଜନଲେ ବ୍ରାହ୍ମଣ ବୋଲାଏ ପୁଣ୍ୟଜନ ।
ଅସାଧୁଠାରୁ ଯେବେ ଦାନକୁ ଘେନଇ
ଆରକ ପୁଣ୍ୟ ଜନ ନାଶକୁ ବହଇ ।
ବୃଷାଦର୍ଭି ନୃପତି ସପତ ଋଷିଙ୍କି
ପଚାରିଲେ ହୃଦୟେ ବହିଣ ପ୍ରୀତିକି ।
ତୁମ୍ଭର ପରି ଆହେ ଯୁଧିଷ୍ଠିର ନୃପ
କହିବା ତା ତୁମ୍ଭଙ୍କୁ ଛାଡ଼ି ମନସ୍ତାପ ।
ଜମଦଗ୍ନି ଭରଦ୍ୱାଜ ବିଶ୍ୱାମିତ୍ରାଦି
କଶ୍ୟପ ବଶିଷ୍ଠ ଗୌତମ ଅରୁନ୍ଧତୀ ।
ଏମାନେ ଶୁଦ୍ଧା ତୁଲେ ଘେନ ଶୁଦ୍ରସ୍ତ୍ରୀ ସି
ବାହାରିଲେ ପୁଣ୍ୟସ୍ଥାନକୁ ତପ କରି ।
ଏଥି ସମୟରେ ଯେ ଇନ୍ଦ୍ର ଦଇବତ
ଅନାବୃଷ୍ଟି କି କରି ନାଶିଲେ ଜଗତ ।
ଶିବିଙ୍କ ପୁଅ ଶୈବ୍ୟ ଯାଗ କରୁଥିଲେ
ଋତ୍ୱିଜଙ୍କ ପୁଅକୁ ଦକ୍ଷିଣା ସେ ଦେଲେ ।
ସେ ପୁଅଟି ଆୟୁଷ ହୋଇବାରୁ ଊଣା
ଯମ ତାର ପାଞ୍ଚ ପୋଛିଲେ କରି ଗଣା ।
ସେ ପୁଅଟି ମରନ୍ତେ ଦ୍ୱିଜେ ବିରାଗରେ
ସପତଋଷି ମହୀ ବୁଲିଯାଉଥିଲେ ।
ସେ ପୁଅ ଶବ ଦେଖି ମହାସୁଖୀ ହେଲେ ।
ପକାଇଦେଲେ ନେଇ ଶ୍ମଶାନଭାଗରେ ।
ପିତଳ ହାଣ୍ଡିଟିରେ କରି ତାହା ପାକ
ଖାଇବାକୁ ବସିଲେ ଛାଡ଼ି ଲୋକ ଦକ ।
ବୃଷାଦର୍ଭିରାଜା ତ ମହୀ ବୁଲୁଥିଲେ
ଋଷିଙ୍କର ଏ ଚେଷ୍ଟା ନୟନେ ଦେଖିଲେ ।
ବୋଇଲେ ମୋଠାରୁ ଯା ଇଚ୍ଛା ଅଛି ନିଅ
ଏ ଅଭକ୍ଷ୍ୟ ଦ୍ରବ୍ୟ ଭକ୍ଷିବା ଛାଡ଼ିଦିଅ ।
ବ୍ରାହ୍ମଣରୁ ମୋହର ପ୍ରିୟ ନୋହାଇ ମହୀ
ମଧ୍ୟରେ କଥା ଅଛି ମୋତେ ବିଶୁ ନାହିଁ ।

ତୁମ୍ଭର ଏ ଦୁର୍ଗତି ଦେଖି ମୋ ନୟନ
ଫୁଟିଗଲା ପରି ମଣୁଛି ରୁଷି ଯେନ ।
ଋଷିଏ ବୋଇଲେ ରାଜନ ପ୍ରତିଗ୍ରହ
କଲେ ଦ୍ୱିଜ ସାର୍ଥ ନ ପାରେ କରି ଦେହ ।
ଏହି ସକାଶରୁ ଯେ କହୁଛୁ ତୁମ୍ଭଙ୍କୁ ।
ଆଉ ଥରେ ରାଜା ତା ନ ବୋଲ ଆମ୍ଭଙ୍କୁ ।
ରାଜା ତ ମାଉଁସ ନ ଖାଅ ବୋଲିଥିଲେ
ଏଣୁ ତାହାକୁ ଛାଡ଼ିଦେଇ ମଧ୍ୟ ଗଲେ ।
ଋଷିଙ୍କର ନିସ୍ପୃହା ଦେଖିଣ ନୃପତି
ବରଗିଲେ ସେବକଜନଙ୍କୁ ଝଟତି ।
ବନମଧ୍ୟେ ଗଛମାନଙ୍କ କୋରଡ଼ରେ
ସୁନା ରୂପା ରଖାଇଲେ ସେ ସଜାଡ଼ରେ ।
ବୃକ୍ଷେ ସୁନା ରଖାଇବାର ଋଷିଗଣ
ଜାଣିପାରି ତାହା ନ ଛୁଇଁଲେଟି ଜାଣ ।
ବଶିଷ୍ଠ ବୋଇଲେ ସୁନା ଯେ ନିଅଇ
ମହତ ପାପ ପାଇ ନର୍କ ସେ ଲଭଇ ।
କଶ୍ୟପ ବୋଇଲେ ହେ ପାଇଥିଲେ ଧନ ।
କେତେବେଳେ ସନ୍ତୋଷ ନୁହଇଟି ଧନ
ଭରଦ୍ୱାଜ ବୋଇଲେ ଲୋକର ପ୍ରାର୍ଥନା
ବଢ଼ୁଥାଏ ନିତି ହୋଇଣ ନାନାମନା ।
ଗୌତମ ବୋଇଲେ ଲୋକର ପୂର୍ଣ୍ଣକାମ
ନୋହିଥିବାରୁ ବଢ଼ୁଥାଏ ଧନେ ପ୍ରେମ ।
ବିଶ୍ୱାମିତ୍ର ବୋଇଲେ କାମନା କରୁଥିଲେ
କାମନା ବୃଦ୍ଧି ହେଉଥାଏ ଜାଣ ଭଲେ ।
ଯମଦଗ୍ନି ବୋଇଲେ ନ କଲେ ପ୍ରତିଗ୍ରହ
ତପ ରହାଇ ରହି ନ ପାରଇ ମୋହ ।
ଅରୁନ୍ଧତୀ ବୋଇଲେ ଦ୍ରବ୍ୟକୁ ପ୍ରତି ତପ
ଅଧିକ ଅଟଇ ଛଡ଼ାଏ ଯେଣୁ ପାପ ।
ଶୁ ଦ୍ରୀ ବୋଇଲେ ଆହେ ଉଗ୍ର ପ୍ରତିଗ୍ରହ
କଲେ ହୁଅଇ ଭୟ ଜାତ ହୋଇ ମୋହ ।
ପଶୁସଖ ବୋଇଲେ ବ୍ରାହ୍ମଣର ଧର୍ମ
ଅଟଇ ଏକା ବିଗ୍ରହିଲେ ଅନୁତ୍ତମ ।
ଏହିରୂପେ ଋଷିଏ କଥାବାର୍ତ୍ତା ହୋଇ
ଆନଠାକୁ ଗଲେ ସେଠାରୁ ବେଗ ହୋଇ ।
ରାଜାଙ୍କର ଲୋକେ ତ ଜଗି ରହିଥିଲେ
ଋଷିଙ୍କ କଥାଯାକ ରାଜାଙ୍କୁ କହିଲେ ।

ରାଜା ତାହା ଶୁଣିଣ ଅତି କ୍ରୋଧ ହୋଇ
ବୋଇଲେ ମୋଦ୍ରବ୍ୟନନେଲେ ଯେବେସେହି ।
ତାହାଙ୍କର କାଳେ କରିବି ମୁହିଁ ନାଶ
ଯେବେ ହୋଇଥିବି ମୁଁ ନୃପକୁଳ ଶିଷ୍ୟ ।
ଏତେ ବୋଲି ଘରେ ଆହାବନୀୟ ଅଗ୍ନି
ହୋମ କରିଲେ ନୃପ ମନ୍ତ୍ରମାନ ଗୁଣି ।
ସେହି ଅଗ୍ନିରୁ କୃତ୍ୟା ସ୍ତ୍ରୀ ହେଲା ଜାତ
ତେଜରେ ନିନ୍ଦାକଲା ପ୍ରଳୟ ଆଦିତ୍ୟ ।
ବୃଷାଦର୍ଭି ତାହା କୁ କୃତ୍ୟା ନାମ ଦେଲେ
ଯାତୁଧାନୀ ବୋଲି ରାଜନ ଜାଣି ଭଲେ ।
ବୃଷାଦର୍ଭି ରାଜାଙ୍କୁ ବୋଇଲା କୃତିହା
କହ କେ ହୋଇଛି ହେ ତୁମ୍ଭର ଦ୍ରୋହୀ ।
ବୃଷାଦର୍ଭି ବୋଇଲେ ସପତଋଷିଙ୍କି
ମାରି ଶୁ ଦ୍ରୀ ତୁଲେ ବହିଣ ପ୍ରୀତିକ ।
ଏ ବାହାରେ ଅରୁନ୍ଧତୀଙ୍କର ପରାଣ
ଶୁଦ୍ରୀ ତୁଲେ ନେବ କାକୁ ନ ପୁଛି ଣ ।
କେବଳ କହୁଛି ଋଷଙ୍କ ନାମ ଜାଣି
ମାରିବଟି ଯେତେକ ଛନ୍ତି ଗଣି ଗଣି ।
କୃତ୍ୟା ଏହା ଶୁଣିଣ ସ୍ୱୀକାର କଲା
ଋଷିଙ୍କି ମାରିବାକୁ ଯୋଗୀରୂପେ ଗଲା ।
ଋଷିମାନେ ବନରେ ଫଳ ମୂଳ ଖାଇ
ବସିଛନ୍ତି ଛୁଡି ଫୁଲାଇ ମାରି ହାଇ ।
ଯେତେବେଳେ ଋଷିଏ ଦେଖିଲେ ଯୋଗନେତ୍ରେ
କୁକୁର ଯେନ କୃତ୍ୟା ଆସୁଛି ସଙ୍ଗତେ ।
ଅରୁନ୍ଧତୀ ଦେଖି ସେ ଯୋଗୀସ୍ୱରୂପଙ୍କୁ
କହିଲେ ଅନାଇଁଣ ସେ ଋଷିମାନଙ୍କୁ ।
ତୁମ୍ଭଙ୍କୁ ପ୍ରତି ଯୋଗୀ ହୋଇଅଛୁ ମୋଟା
ଦେଖ ହେ ମାଡ଼ି ଆସୁଅଛି କଣ୍ଠା ଲଟା ।
ବଶିଷ୍ଠ ବୋଇଲେ ତପୀ ତ ଏ ନୁହନ୍ତି
କୁକୁର ଯେନ ସଙ୍ଗେ ଏଣୁ ଆସୁଛନ୍ତି ।
ଯାହା ଇଚ୍ଛା ତାହା ତ କରୁଛନ୍ତି ଗ୍ରାସ
କମାଇଁ ଏହାର ହେ ଦେହ ହେବ କୃଶ ।
ଅତ୍ରି ବୋଇଲେ ଆହେ ଆମ୍ଭ ପରି ବନେ
ଥିଲେ ମାଂସ ବହି ନ ଥାନ୍ତେ ଅପଘନେ ।
ବିଶ୍ୱାମିତ୍ର ବୋଇଲେ ହୋଇ ନିର୍ଲଜ୍ଜଧା
ଧରିଛନ୍ତି କା ଖରେ ମାଉଁସ କଳସୀ ।

ଜମଦଗ୍ନି ବୋଇଲେ ନ ଥିବାରୁ ଚିନ୍ତା
ହୋଇଛୁ ଏ ଯୋଗୀଟି ଅଟଇ ବଳବନ୍ତା ।
କଶ୍ୟପ ବୋଇଲେ ଯୋଗୀ କି ମାଗୁଥିଲେ
ନେଇକ ଏ ମାଂସ କମ୍ପା ବହୁଥାନ୍ତା ଭଲେ ।
ଭରଦ୍ୱାଜ ବୋଇଲେ ନାହିଁ ଶୋକ ଦୁଃଖ
ଯୋଗୀର ଏଣୁ ପୂରିଅଛୁ ଗଣ୍ଡି ପାଖ ।
ଗଉତମ ବୋଇଲେ ପଛରେ ଝୁଲିଳ
ବୁଜୁଳା ତ ବହିଛୁ ନାହିଁ କମ୍ପା ବଳ ।
ଏରୂପେ ଋଷି କଥାବାର୍ତ୍ତା ହେଉଥିଲେ
ଯୋଗୀ ଯାଇ ଋଷିଙ୍କ ଚରଣେ ନମିଲେ ।
ଋଷିମାନେ ଯେ ଯୋଗୀଠାରୁ ସମ୍ଭାବନା
ପାଇ ସେଠାରୁ ଗଲେ ଜାଣ ମହାମନା ।
ଦେଖିଲେ ବାଟରେ ପୋଖରୀଟାଏ ଅଛି
ଜଳଜନ୍ତୁଚୟେ କେବଳ ସେ ପୂରିଛି ।
ନାନା ଜାତି ପଦ୍ମ ଫୁଟିବା ସୁବାସରେ
ଭ୍ରମରେ ରହିଛନ୍ତି ତା ଚାରିପାଶରେ ।
ପଶୁଗଣ ଶୁଦ୍ରା ତ ସଙ୍ଗେ ରହିଥିଲେ
ତାଙ୍କୁ ଛେନ ଋଷି ମୃଣାଳ ଆଣିଗଲେ ।
ଦେଖିଲେ ସେ ପୋଖରୀ ତୀରରେ କୃତ୍ତିକା
ହୋଇଅଛନ୍ତି ଏକା ହୋଇ କରି ଠିଆ ।
ଋଷିଏ ପଚାରିଲେ କାହିଁକି ଏଠାରେ
ରହିଛ କହ ଯିବ ଏବେ କେଉଁଠାରେ ।
ଯାତୁଧାନୀ ବୋଇଲେ ଜଗିଛି ପଦ୍ମ ମୁଁ
ଯାଅ ଋଷିମାନେ ହେ ହୋଇ ତୁମ୍ଭେ ତୁମ୍ଭ ।
ଋଷିଏ ବୋଇଲେ ହେ କ୍ଷୁଧାନଳେ ଦେହ
ଦଗ୍ଧ ହେଉଅଛି, ହେଉଛି ମଧ୍ୟ ମୋହ ।
ବୋଇଲେ ତୁମ୍ଭେ ଆମ୍ଭେ ମୃଣାଳକୁ ଆଣି
ଭୋଜନ ସାରକରି ଯିବୁ ଏହିକ୍ଷଣି ।
ଯାତୁଧାନୀ ବୋଇଲେ କହି ନାମମାନ
ଖାଇଣ ମୃଣାଳକୁ ରଖ ହେ ଜୀବନ ।
ଅତ୍ରି ଯାତୁଧାନୀକ କୃତ୍ୟା ବୋଲି ଜାଣି
କହିଲେ ତାହା ଆଗେ ଉଚ୍ଚାରି ଏ ବାଣୀ ।
ଯେଉଁ ରାତି ବେଦ ନ ପଢ଼ଇଟି ମୁହିଁ
ସେହି ରାତି ମୋହର ଶତ୍ରୁଟି ଅଟଇ ।
ଏଣୁ କରିଣ ଅତ୍ରି ନାମ ମୁଁ ବହିଛି
ସତକରି ଜାଣ ତୁମ୍ଭଙ୍କୁ କହୁଅଛି ।

ବଶିଷ୍ଠ ବୋଇଲେ ମୁଁ ସମସ୍ତଙ୍କୁ ବର
ଦେବାରୁ ମୋ ନାମ ବଶିଷ୍ଠ ମନେକର ।
କଶ୍ୟପ ବୋଇଲେ ମୁଁ କାଶଫୁଲ ବର୍ଣ୍ଣ
ହେବାରୁ କଶ୍ୟପଟି ମୋର ନାମ ଛେନ ।
ଭରଦ୍ୱାଜ ବୋଇଲେ ପୁତ୍ର ଭାରଯାକୁ
ପୋଷେଁତ ଭରଦ୍ୱାଜ ବୋଲନ୍ତି ଆମ୍ଭଙ୍କୁ ।
ଗୌତମ ବୋଇଲେ ଗାଈ ମୋ ଦେହୁଁ ଜାତ
ହେବାରୁ ଗଉତମ ନାମ ମୋର ଖ୍ୟାତ ।
ବିଶ୍ୱାମିତ୍ର ବୋଇଲେ ଅମିତ୍ର ମୋ ଦେବେ
ହେବାରୁ ବିଶ୍ୱାମିତ୍ର ବୋଲନ୍ତିଟି ସର୍ବେ ।
ଯମଦଗ୍ନି ବୋଇଲେ ଅଗ୍ନିପରି ମୁହିଁ
ହେବାରୁ ଯମଦଗ୍ନି ନାମ ଅଛି ବହି ।
ଅରୁନ୍ଧତୀ ବୋଇଲେ ଭର୍ତ୍ତା ଅନୁସରି
ହେବାରୁ ଅରୁନ୍ଧତୀ ନାମଟି ମୋହରି ।
ଶୁଦ୍ରା ବୋଇଲେ ତହୁଁ ଗଣ୍ଡ ବଡ ଛେନ
ଗଣ୍ଡା ନାମଟିକ ଅଛଇ ମୁହିଁ ମାନ ।
ପଶୁସଖ ବୋଇଲେ ପଶୁ ପାଳିବାରୁ
ପଶୁସଖ ନାମ ଦେଲେ ମୋତେ ଗୁରୁ ।
ଶୁନସଖ ବୋଇଲେ ଧର୍ମଙ୍କର ସଖା
ହେବାରୁ ଶୁନସଖ ନାମ ମୋର ଲେଖା ।
ଯାତୁଧାନୀ ବୋଇଲେ ମୋହର ଆଗରେ
ଶୁନସଖ ନାମକୁ କହ ଆଉ ଥରେ ।
ଶୁନସଖ ବୋଇଲେ ଥରେ ମୋର ନାମ ।
କହିଲି ବୁଝି ନ ପାରିଲୁ ତୁ ଅଧମ ।
ଏହି ସକାଶୁଁ ତୋତେ ବୋଲୁଅଛି ମୁହିଁ
ଦେହ ତୋର ରହୁ ପାଉଁଶ ହୋଇ ମହୀ ।
ଏତେ ବୋଲିଣ ଶୁନସଖ ଋଷିବର
ଦଣ୍ଡକୁ ପ୍ରହାରିଲେ ମୁଣ୍ଡରେ ତାହାର ।
ଯାତୁଧାନୀ-ମୁଣ୍ଡେ ବାଜନ୍ତେ ଦଣ୍ଡ ଯାଇ
ପଡ଼ିଲା ସେ ମହୀରେ ଭସ୍ମରୂପ ହୋଇ
ଯାତୁଧାନୀ ମରିବା ଅନ୍ତେ ଋଷିଗଣ
ମୃଣାଳକୁ ଆଣିଲେ ଖାଇବାକୁ ଜାଣ ।
ମୃଣାଳକୁ ପୋଖରୀ-ତୀରରେ ରଖିଲେ
କୃତାଞ୍ଜଳି ହୋଇ ପିତୃଙ୍କୁ ପାଣି ଦେଲେ ।
ତରପଣ ସାରି ମୃଣାଳ ଖାବାଇକୁ
ଆସନ୍ତେ ନ ଦେଖିଲେ ନେଟେ ମୃଣାଳକୁ ।

ଋଷିଏ ପରସ୍ପରେ ଶଙ୍କା ମନେ କଲେ
ମୃଣାଳ ନେବାକୁ ନିୟମ ଆରମ୍ଭିଲେ
ଅତ୍ରି ବୋଇଲେ ହେ ଗାଈଙ୍କି ଯେହୁ ପାଦ ।
ମାରେ, ମୁହିଁ ପାଇବି ତାହାର ବିପଦ ।
ବଶିଷ୍ଠ ବୋଇଲେ ଶରଣାଗତ ନାଶ
ଦୋଷ ହେବ ମୋର ଦେହରେ ପରକାଶ ।
କଶ୍ୟପ ବୋଇଲେ କୂଟସାକ୍ଷୀ ହୋଇ
ଅଛୁ ଯେ, ତାର ଦୋଷ ପାଇବଇଁ ମୁହିଁ ।
ଭରଦ୍ୱାଜ ବୋଇଲେ ଅଗୁରୁ ଅପାଠ
ଫଳ ହୋଇ ମୋହର ମୁଣ୍ଡେ ପଡୁ କାଠ ।
ଜମଦଗ୍ନି ବୋଇଲେ ପାଣିରେ ମୁତଇ
ଯେ ଲୋକ, ତା ଦୋଷଟି ମୁହିଁ ପାଇବଇଁ ।
ଗଉତମ ବୋଇଲେ ଏକା କୂପେ ଦ୍ୱିଜ
ଶୂଦ୍ର ପିଇବାର ପାଇବ ପାପ ବୀଜ ।
ବିଶ୍ୱାମିତ୍ର ବୋଇଲେ ବହୁ ପୁତ୍ର ଥାଇ
ନିର୍ଦ୍ଧନ ହେବା ଲୋକ ଫଳ ମୁଁ ଲଭଇ ।
ଅରୁନ୍ଧତୀ ବୋଇଲେ ଶାଶୁ-ଅପବାଦ
ଯେ ଦିଏ, ମୋତେ ହେଉ ତାହାର ବିପଦ ।
ଗଣ୍ଡା ବୋଇଲେ ଆହେ ମିଥ୍ୟା କନ୍ୟାବିକ
ଦୋଷଟିକ ଜାଣ ପାଇବି ମୁହିଁ ଏକା ।
ପଶୁସଖ ବୋଇଲେ ଚୋରିଇଛୁ ଯେହୁ
ଦେବଙ୍କୁ ଅନମ୍ର ଫଳକୁ ନେଉ ସେହୁ ।
ଶୁନସଖ ବୋଇଲେ ଚୋରିଇଛୁ ଯେହୁ
ବ୍ରାହ୍ମଣକୁ ଝିଅ ବିବାହ କରି ସେହୁ ।
ଋଷିମାନେ ବୋଇଲେ ନେଲ ତ ମୃଣାଳ
ଏହେତୁ ଏରୂପେ କହୁଛ ମେଲି ଗଳ ।
ଶୁନସଖ ବୋଇଲେ ତୁମ୍ଭେ ଜାଣିବାକୁ
ଚୋରାଇଛୁ ମୃଣାଳ କି ପୁଚ୍ଛ ଆମ୍ଭଙ୍କୁ ।
ବୃଷାଦର୍ଭି ନୃପତି ବୋଇଲେ କୃତ୍ୟା ହା
ଆସି ହୋଇଥିଲା ପୋଖରୀ କୂଳେ ଠିଆ ।
ତୁମ୍ଭର ପ୍ରାଣମାନ ନିଅନ୍ତା ସେ ବଳେ
ତୁମ୍ଭଙ୍କୁ ରକ୍ଷା କଲି ମାରି ତାକୁ ହେଳେ ।
ଇନ୍ଦ୍ରଦେବ ବୋଇଲେ ମୋତେ ମନେକରି
ଆସ ଏବେ ସମସ୍ତେ ଯିବା ସ୍ୱର୍ଗପୁରି ।
ଏହା ଶୁଣି ଋଷିଏ ଆନନ୍ଦ ହୋଇଲେ
ପଶୁସଖ ତ୍ୟଜିଲେ ସ୍ୱର୍ଗପୁରକୁ ଗଲେ ।

ଆହେ ଯୁଧିଷ୍ଠିର କ୍ଷୁଧାରେ ହେଲେ ଆର୍ତ୍ତି
ଖାଇବାରେଟି ହୋଇଥିବ ଜାଗରତି ।
ସକଳ ଅବସ୍ଥାରେ ଲୋଭକୁ ଛାଡ଼ିବ
ଲୋଭରୁ ପରମାଦ ନାହିଁ ନରଦେବ ।
ଏ ଚରିତକୁ ଯେଉଁ ଲୋକଟି ଶୁଣଇ
ଦେବ ପିତୃଙ୍କର ପ୍ରୀତିକି ସେ କରଇ ।
ବୃଷାଦର୍ଭି ଋଷି ସମ୍ବାଦ ଉପଦେଶ୍ୟ
କହେ କୃଷ୍ଣସିଂହ ନୃପତି ହେଲା ପୂର୍ଣ୍ଣ ।

—※—

## ଅଗସ୍ତି ସମ୍ବାଦ

ଭୀଷ୍ମ ବୋଇଲେ ଏ ନିୟମ ବିଷୟରେ
ଆହୁରି କଥା ଅଛୁ ଶୁଣ ସୁମନରେ ।
ଅଙ୍ଗିରା ଶୁକ୍ର ଭୃଗୁ ଅଗସ୍ତ୍ୟ ପଣ୍ଡିତ
ଜମଦଗ୍ନି ଗାଲବ ଗୌତମ ବିଶ୍ୱାମିତ୍ର ।
ଅଷ୍ଟକ ଭରଦ୍ୱାଜ ନାରଦ ବଶିଷ୍ଠ
ଅରୁନ୍ଧତୀ ବାଳଖିଲ୍ୟ ଋଷି ଗରିଷ୍ଠ ।
ଦିଲୀପ ଧୁନ୍ଧୁମାର ଯଯାତି ନହୁଷ
ଶିବି ପୁରୁ ଯେ ଅମ୍ବରୀଷ ନରଈଶ ।
ଏ ସାତ ନୃପତିଙ୍କି ଘେନି ଋଷିମାନେ
ବାହାରିଲେ ତୀର୍ଥଯାତ୍ରାକୁ ଇଚ୍ଛି ମାନେ ।
ସବୁ ତୀର୍ଥମାନଙ୍କୁ ନୟନରେ ହେରି
କଉଶିକୀ ନଦୀରେ ସ୍ନାନ ଦାନ କରି ।
ମାଘ ପଉର୍ଣ୍ଣମୀ ଦିବସ ବ୍ରହ୍ମସର
ଦେଖିବାକୁ ଗଲେ ସେ ହୋଇଣ ସତ୍ୱର ।
ବ୍ରହ୍ମସର ତୀର୍ଥରୁ ମୃଣାଳ ଭାଙ୍ଗିଲେ ।
ଏ ବାହାରେ ବାଛିଣ ପଦ୍ମକୁ ତୋଳିଲେ ।
ଅଗସ୍ତ୍ୟ ବୋଇଲେ ହେ ଏ ପଦ୍ମ ନେବାକୁ
ଯୋଗ୍ୟ ନୁହ କେବେହେ କହୁଛୁ ତୁମ୍ଭଙ୍କୁ ।
ମୋ ଆଗରେ କେ ନେଇଅଛ ତାହା କହ
ସ୍ୱର୍ଗକୁ ଯିବି ବେଗେ ଦଳୁଛି ମୋ ମୋହ
ଋଷି ବୋଇଲେକ ଚୋରାଇ ନାହୁଁ ଆମ୍ଭେ
ଆମ୍ଭଠାରେ ଶଙ୍କା ନ କର କହୁଁ ତୁମ୍ଭେ ।
ଏରୂପେ ବୋଲି କଲେ ସେ ଯାହା ନିୟମ
ତା କହିଲେ ନ ସରିବ ହେ ନରୋତ୍ତମ ।
ତଳେ ତ ଋଷିଙ୍କ ନିୟମ କହିଥିଲି
ଏଣୁ କହିବାକୁ ହାଲିଆ ହେଲା ମୁଖ

ଇନ୍ଦ୍ର ଅଗସ୍ତ୍ୟଙ୍କ ମୁଖକୁ ଅନାଇଲେ
ଯେଉଁ ନିୟମ ତାହା କଲେ ଶୁଭ ଭଲେ ।
ଯେ ତୁମ୍ଭର ଆଣିଛୁ ପଦ୍ମକୁ ଗୋପାଇ
ତାହାକୁ ପୂଜନ୍ତୁ ସାବର୍ଣ୍ଣୀଦେବ ସାଇଁ ।
ଅଗସ୍ତ୍ୟ ବୋଇଲେ ନେଇଛ ତୁମ୍ଭେ ପଦ୍ମ
ଜାଣିଲି ମୁଁ ତୁମ୍ଭ ବୁଦ୍ଧି ଟି ବଡ଼ ଛଦ୍ମ ।
ଇନ୍ଦ୍ର ବୋଇଲେ ଆହେ ତୁମ୍ଭମାନଙ୍କର
ମୁଖପଦ୍ମରୁ ଶୁଣିବାକୁ ମନ ମୋର ।
ହୁଅନ୍ତେ ମୁହିଁ ନେଲି ତୁମ୍ଭ ପଦ୍ମବର
ଜାଣ ଆହେ ଅଗସ୍ତ୍ୟ ନାମ ତପସ୍ଥାଶ୍ରୀ ।
ଏବେ ମୁଁ ଦେଉଅଛୁ ତୁମ୍ଭର ପଦ୍ମକୁ
ମୋହଠାରୁ ଛାଡ଼ ହୃଦୟୁ କ୍ରୋଧକୁ ।
ଏହିରୂପରେ ଇନ୍ଦ୍ର ଅଗସ୍ତ୍ୟଙ୍କୁ କହି
ପଦ୍ମଟିକି ଦେଲେ ତାହାଙ୍କୁ ପ୍ରୀତି ବହି ।
ଅଗସ୍ତ୍ୟ ସେ ପଦ୍ମକୁ ଧରିକରି କରେ
ଅଧରେ ମନ୍ଦହାସ ପ୍ରକାଶିଲେ ଥରେ ।
ଋଷିଏ ତା ଦେଖି ସେଠାରୁ ଆନଠାକୁ
ବାହାରିଲେ ତୀର୍ଥଙ୍କେ ସ୍ନାନ କରିବାକୁ ।
ଯେଉଁ ଲୋକ ଏହି ଆଖ୍ୟାନକୁ ପଢ଼ଇ
ମୁକ୍ତପାପ ହୋଇ ସ୍ୱର୍ଗରେ ବସଇ ।
ପୁଷ୍କରସୈନ୍ୟ ବ୍ୟାସ କଲେ ସମାପତି
କହଇ ଗୀତେ କୃଷ୍ଣସିଂହ ନରପତି ।

—*—

## ଛତା ଓ ପାଣ୍ଡୋଇରଜନ୍ମ-ବୃତ୍ତାନ୍ତ

ଯୁଧିଷ୍ଠିର ବୋଇଲେ ପାଣ୍ଡୋଇ ଛତାକୁ
କାହିଁପାଇଁ କି ଦେବ ବ୍ରାହ୍ମଣମାନଙ୍କୁ ।
କେଉଁମାନେ ବା ତାହା କରିଛନ୍ତି ଦାନ
ସେ କଥା ମୋତେ କହ ରଥୀଙ୍କ ରାଜନ ।
ଭୀଷ୍ମ ବୋଇଲେ ଆହେ ଜମଦଗ୍ନି ଋଷି ।
ପୂର୍ବେ କାଣ୍ଡମାନ ବିନ୍ଧିଲେ ମୁନି ଉଷି ।
ରେଣୁକା ସେ କାଣ୍ଡମାନଙ୍କୁ ଗୋଟିଆଇ
ଆଣି ଦେଉଥାନ୍ତି ପତିଙ୍କି ଭିଡ଼ି ହୋଇ ।
ଜମଦଗ୍ନି ମୁଁ ବିନ୍ଧି ପାରେ ତ ଗୁମାନ
ବହିଥାନ୍ତି ଏଣୁ ବିନ୍ଧନ୍ତି ଅବିଚ୍ଛିନ୍ନ ।
ଦିନେ ଜ୍ୟେଷ୍ଠମାସରେ ଖରାରେ ବିନ୍ଧିଲେ
ରେଣୁକାକୁ କାଣ୍ଡ ଗୋଟା ଆଣ ଯାବାଇଲେ
ରେଣୁକା ଖରାଟିରେ ସନ୍ତପତ ହୋଇ
ରହିଲେ ଗଛତଳେ କାଣ୍ଡ ଆଣିଯାଇ ।
ମୁହୂର୍ତ୍ତେ ମାତ୍ର ତହିଁ ବିଳମ୍ବ ସେ କଲେ
କାଣ୍ଡଟି ଘେନି ଭର୍ତ୍ତା ସମ୍ମୁଖରେ ମିଳିଲେ ।
ଜମଦଗ୍ନି ତାଙ୍କର ବିଳମ୍ବକୁ ଜାଣି
କ୍ରୋଧ ହୋଇ ଗାଳିଦେଲେ ଶିରଟାଣି ।
ରେଣୁକା ବୋଇଲେ ଖରାକୁ ଡ଼ରି କରି
ରହିଲେ କ୍ଷଣେ ବୃକ୍ଷ ମୂଳ ଆଶ୍ରା ଧରି
ଏଥିପାଇଁ ଯେବେ ଟଳିବ ମୁନିବର
କି କରିବି ତ ବାମ କରମ ମୋହର ।
ଏ ବଚନ ଶୁଣି ଧନୁରେ ଯୋଖି କାଣ୍ଡ
ଜମଦଗ୍ନି ଗୃହି ରହିଲେ ମାରକଣ୍ଡ ।
ଭାର୍ଯ୍ୟାକୁ କହିଲେ ତୋତେ ଯେ ଦେଲା ବ୍ୟଥା
ଏହିକ୍ଷଣି ଦେଖ କାଟୁଛି ତା'ର ମଥା ।
ସୂର୍ଯ୍ୟ ଏ କଥା ଜାଣି ଦ୍ୱିଜରୂପୀ ହୋଇଲେ
ଜମଦଗ୍ନିଙ୍କ ଆଗେ ରହିଣ କହିଲେ ।
କାହିଁକି ଋଷି ହେ ଧନୁରେ ଯୋଖି କାଣ୍ଡ
ହେଉଅଛ ସୂର୍ଯ୍ୟଙ୍କୁ କ୍ରୋଧରେ ପ୍ରଚଣ୍ଡ ।
ସୂର୍ଯ୍ୟଦେବ କିରଣେ ନେଇ ଜଳ ରାଶି
କରୁଛନ୍ତି ମହୀରେ ଅନ୍ନକୁ ବରଷି ।
ତାହା ଖାଇ ପ୍ରାଣୀଏ ରଖି ନିଜ ପ୍ରାଣ
ଯେ ଯାହାର ଧର୍ମକୁ କରୁଛନ୍ତି ଜାଣ ।
ଏଡ଼େକ ଦେବତାଙ୍କୁ ପକାଇଲେ କାଣ୍ଡେ
ପାଇବଟି ତୁମ୍ଭେ ଶୁଣିଲେ ନିନ୍ଦା ଦାଣ୍ଡେ ।
ଏହା ଶୁଣିଣ ଜମଦଗ୍ନି ଋଷିବର
ବୋଇଲେ ନେବି ପ୍ରାଣ ଦ୍ୱିଜ ମୁଁ ସୂର୍ଯ୍ୟର ।
ସୂର୍ଯ୍ୟ ଦ୍ୱିଜରୂପ ଗୋଟିକ ଛାଡ଼ିଦେଇ
ଆଗରେ ଛିଡ଼ା ହେଲେ ସ୍ୱରୂପ ଦେଖାଇ ।
ବୋଇଲେ ମୁଁ ତ ବେଗେ କରିବି ଗମନ
ପାଇବ କି ମୋତେ ତୁମ୍ଭର କାଣ୍ଡମୁନ ।
ଜମଦଗ୍ନି ବୋଇଲେ ଟିକେ ଥାଅ ରହି
ଲୋଟାଇବି ତୁମ୍ଭଙ୍କୁ ମହୀଦେଶ ମୁହିଁ ।
ସୂର୍ଯ୍ୟ ବୋଇଲେ ମୁଁ ପଶିଛି ଶରଣ ।
ଛାଡ଼ ମୋଠାରୁ କ୍ରୋଧ ଋଷିକୁଳରାଣ ।
ଯମଦଗ୍ନି ବୋଇଲେ ନ ମାରିବି ମୁହିଁ
ଭୟକୁ ନ ପାଅ ହେ ଛାୟାଦେବୀ ସାଇଁ ।

ଶରଣାଗତଙ୍କୁ ମାଇଲେ ବଡ଼ ଦୋଷ
ବୋଲି ଶାସ୍ତ୍ରମାନଙ୍କେ ହୋଇଛୁ ପ୍ରକାଶ ।
ତୁମ୍ଭଙ୍କୁ ପଚ୍ଛରୁଛୁ,ତୁମ୍ଭ କାରଣକୁ
କି ଉପାୟ ଅଛୁ ତା କହ ତ ଆମ୍ଭଙ୍କୁ ।
ସୂର୍ଯ୍ୟ ତା ଶୁଣି ଛତା ପାଣ୍ଢୋଇକି ଦେଲେ
ରଖିବ ଏହା ଶିର ପାଦକୁ ବୋଇଲେ ।
ଆଜଠାରୁ ଛତା ପାଣ୍ଢୋଇ ଦେଲେ ଦାନ
ତାକୁ ନ ବାଧିବ ମୋହର କିରଣ ।
ଏହା କହି ଭୀଷ୍ମ ବୋଇଲେ ଯୁଧିଷ୍ଠିର
ପାଣ୍ଢୋଇଛତା ଦିଅ ଦ୍ୱିଜ ନିରନ୍ତର ।
ମଲେ ସ୍ୱର୍ଗପୁରରେ ଏ ସୁକୃତ ହେନ
ପୂଜା କରିବେଟି ତୁମ୍ଭଙ୍କୁ ସୁରମଣି ।
ହେଲା ଏଠିଛତା ପାଣ୍ଢୋଇ ଦାନ ଶେଷ
କହେ କୃଷ୍ଣସିଂହ ନରେଶ ବହି ତୋଷ ।

—*—

## ବୈଶ୍ୱଦେବ ବିଧି

ଯୁଧିଷ୍ଠିର ବୋଇଲେ ଗୃହସ୍ଥ ଧର୍ମ କହ
ବଳାତ ତହିଁରେ ମୋ ପିତାମହ ସ୍ନେହ
ଭୀଷ୍ମ ବୋଇଲେ ହେ ପୃଥ୍ୱୀଙ୍କି ପୂର୍ବେ ହରି
ସ୍ତୁତି କରଣ ଯାହା ଅଛନ୍ତି ପଚରି ।
ତାହାର ତୁମ୍ଭର ଆଗେ କରିବା ପ୍ରକାଶ
ସେହି ବିଷୟେ ଆହେ ନରକୁଳ ଈଶ ।
ପୃଥିବୀ ବୋଇଲେ ହେ ଯାଗରେ ଦେବଙ୍କୁ
ଆତିଥ୍ୟରେ ନରଙ୍କୁ ଇଚ୍ଛାରେ ପୂଜକୁ ।
ପୂଜା କରିବାଟି ଅଟଇ ଉଚିତ
ମୋ କଥାରୁ ଜାଣ ଦେବକୀଦେବୀ-ସୁତ ।
ନିତ୍ୟେ ଅଗ୍ନି ଦେବଙ୍କୁ କରିବେ ସେବନ
ନ ଦେଲେ ବଳି ନକରିବେଟି ଭୋଜନ ।
ଅନ୍ନ ଜଳ ଫଳ ମୂଳରେ ପିତୃକୁଳ
ଶ୍ରାଦ୍ଧ କରୁଥିବ ହୋଇଣ ଅବିକଳ ।
ନିତ ବୈଶ୍ୱଦେବଙ୍କୁ କରିବ ବିଧିରେ
ନ ରଖିବ ଦୁର୍ବୁଦ୍ଧି କଥାକୁ ବୁଦ୍ଧିରେ ।
ଯେଉଁ ଦ୍ୱିଜ ଦୁଆରେ ରହିଥିବ ଆସି
ଗ୍ରାସ ଦେଇ ତହୁଁ କରିବ ତାକୁ ତୋଷି ।
ଆଗ୍ରୟ୍ୟ ପିତୃ ଯେତେ ମାଗିବେ ଯେ ଯାହା
ଘରତେ ଥିଲେ ଦେଖାଇକରି ଦେବ ତାହା
କୁକୁର କୁଆ ଚଣ୍ଡାଳକୁ ଦାଣ୍ଡେ ନେଇ
ବଳି ଦେବ ହେ ନମୋନମ ବୋଲି କହି ।
ଦିନରେ ରାତିରେ ଯେ ବୈଶ୍ୱଦେବ କରେ
ତାହାକୁ ନେଇ ପୂଜା କରନ୍ତି ସ୍ୱର୍ଗରେ ।
ପୃଥ୍ୱୀଠାରୁ ଶୁଣି ସେ ଦିନୁଁ ବାସୁଦେବ
ବୈଶ୍ୱଦେବ କରିଲେ ବହି ମହାଭାବ ।
ବୈଶ୍ୱଦେବ-ବିଧି ହୋଇଲା ସମାପତ
କୃଷ୍ଣସିଂହ ନୃପତି ରଚେ ସୁଧା-ପତ ।

*

## ଦୀପଦାନ

### (୧)

ଯୁଧିଷ୍ଠିର ବୋଇଲେ ଦୀପଦାନ ମହି —
ମଧ୍ୟେ ହେଲା କିରୂପେ କହ ଶୁଣିବଇ ।
ଭୀଷ୍ମ ବୋଇଲେ ହେ ସୁବର୍ଣ୍ଣ ନାମେ ଦ୍ୱିଜ
ଥିଲେ,କରିଲେ ସେ ମହତ ତେଜ ଓଜ ।
ଦିନେ ସ୍ୱାୟମ୍ଭୂବଙ୍କ ଭୁଲେ ମେରୁଗିରି—
ଶିଖରେ ବସିକଥା ହୋଇ ଦଣ୍ଡଧାରୀ
ପୁଚ୍ଛିଲେ ମନୁଙ୍କୁ ଫୁଲରେ ପୂଜାକଲେ
କି ଫଳ ହୁଅଇ ତା କହ ମୋତେ ଭଲେ ।
ମନୁ ବୋଇଲେ ଆହେ ବଳି ଶୁକ୍ରଙ୍କର
ଏ ବିଷୟେ ସମ୍ବାଦ ଅଛୁ ଦ୍ୱିଜବର ।
ବଳି ବୋଇଲେ ଆହେ ପୁଷ୍ପ ଧୂପ ଦୀପ
ଫଳ ମୋତେ କହ ଛଡ଼ାଅ ଗୁରୁତାପ
ଶୁକ୍ର ବୋଇଲେ ଆହେ ଧର୍ମ ତପ ଦୁଇ
ହୁଅନ୍ତେ ଜାତ ହେଲେ ଅଉଷଧି ମହି ।
ଔଷଧ ଦ୍ୱିପ୍ରକାର ବିଷ ଅମୃତକୁ
ଭଜିଲେ ଆଣି ଏବେ ରାଜନ ମନକୁ ।
ଅମୃତ ଔଷଧ ମଙ୍ଗଳକୃତ ହେଲେ
ଅମଙ୍ଗଳ ବିଷ ଔଷଧି ବୋଲାଇଲେ ।
ଔଷଧି ବୃକ୍ଷୁଁ ଯେତେ ହୋଇଛନ୍ତି ପୁଷ୍ପ
ତା ଦେଲେ ଦେବେ ତୋଷ ହୁଅନ୍ତି ଅମାପ ।
ଉଗ୍ର ଅଉଷଧିଙ୍କି ଆରାଧିଲେ ଦୈତ୍ୟ
ଅନୁଗ୍ର ଔଷଧି ପୂଜିଲେ ଦଇବତ ।
ଏହିରୂପେ ଇଷ୍ଟ ଅନିଷ୍ଟ ଗନ୍ଧ ଦୁଇ
ବାଣ୍ଟିନେଲେ ସେ ଦେବ ଦୈତ୍ୟ ଦୁଇଭାଇ ।

ପଦ୍ମ ଅକଣ୍ଟକ ଯେ ଶୁକ୍ଳ କୁସୁମ
ଦେବଙ୍କର ଭାଗ ଏ ଜାଣ ଦୈତ୍ୟୋତ୍ତମ ।
ସକଣ୍ଟକ ରକତ ପୁଷ୍ପ ଦଇତଙ୍କୁ
ଦେଲେ ଲଭନ୍ତି ସେହି ଅତ୍ୟନ୍ତ ଶୋକକୁ ।
ଶ୍ମଶାନ ଫୁଲ ଦେବଆୟତନ ଫୁଲ
ନ ଲଗାଇଲେ ନୁହଇ କଷ୍ଟ ଭଲ ।
ବାସରେ ଦେବତା ଦେଖିଲେ ଯକ୍ଷ ରକ୍ଷ
ଭୋଗ କଲେ ନାଗ ପାଆନ୍ତି ଅତି ସୌଖ୍ୟ ।
ମନୁଷ୍ୟମାନଙ୍କର ଏ ତିନ କଥାରେ
ମହାପୀରତି ବଢ଼ଇ ନିରନ୍ତରେ ।
ଗୁଗ୍ ଗଳ ଧୂପ ଦେବତାଙ୍କ ପ୍ରିୟ ହୋଏ
ଅଗୁରୁ ଧୂପ ତୋଷ ଯକ୍ଷ ଭୋଗୀଏ ।
ଦଇତମାନଙ୍କୁ ସଲ୍ଲକୀ ଧୂପ ମୂଳ
ଅଟଇ ତା ପାଇଲେ ପ୍ରକାଶନ୍ତି ବଳ ।
ଦୀପଦାନ ଦେଲେ କେବଳ ଦେବକୁଳ
ପାଇ ବଢ଼ାଅନ୍ତି ପ୍ରାଣୀଙ୍କ ଚକ୍ଷୁବଳ ।
ଦୀପ ଲୁଚାଇବା ଲୋକ ଯେ ଅନ୍ଧ ହୋଏ
ଦୀପ ଦେବା ଲୋକଟି ତେଜସ୍ୱୀ ବୋଲାଏ ।
ଘିଅ ତେଲ ଉତ୍ତମ ମଧ୍ୟମ ଦ୍ୱିପକ୍ଷ
ଆନରେ ଦୀପ ଦେଲେ ନୁହେ ଜାଣ ମୋକ୍ଷ ।
ବନ ପରବତ ଯେ ତୋଟା ଚତୁଷ୍ପଥ
ମାର୍ଗରେ ଦୀପ ଦେଲେ ହୋଏଟି କୃତାର୍ଥ ।
ବ୍ରାହ୍ମଣ ଦେବତାଙ୍କୁ ଆଗ ବଳି ଦେଇ
ଭୋଜନ କଲେ ପଛେ ମହାସୁଖ ପାଇ ।
ଭୀଷ୍ମ ବୋଇଲେ ଆହେ ବଳି ଶୁକ୍ରଙ୍କର
କଥା ଶୁଣି ମନୁ ସୁବର୍ଣ୍ଣ ଦ୍ୱିଜବର ।
ଆଗେ ମହାତୋଷେ କହିଲେ ପୁଷ୍ପଧୂପ
ଦୀପ ଦାନ କଥା ପାଣ୍ଡବକୁଳ ନୃପ ।
ସୁବର୍ଣ୍ଣଦ୍ୱିଜ ପୁଣି ନାରଦ ଆଗରେ
କହିଲେ ନାରଦ ମୋ ଆଗେ ସ୍ୱର୍ଗରେ ।
କହିଲେ ହସ୍ତିନାକୁ ଆସି ମହାମନା
ମୋ କହିବାରୁ ଜାଣ ଭୀମାର୍ଜ୍ଜୁନ ନନା ।
ତୁମ୍ଭେ ତ ମୋଠାରୁ ଶୁଣିଲ ଯେ ଚରିତ
ଆଚରଣ କର ହେଉଛି ଯେବେ ଚିତ୍ତ ।
ସୁବର୍ଣ୍ଣମାନଙ୍କ ସମ୍ବାଦ ହେଲା ଶେଷ
କହଇ କୃଷ୍ଣସିଂହ ନୃପ ବହୁ ତୋଷ ।

## ଦୀପଦାନ
## (୨)

ଯୁଧିଷ୍ଠିର ବୋଇଲେ ଧୂପ ଦୀପ ବଳି
ବିସ୍ତାରି କହ ମୋତେ ଭୀଷ୍ମ ମହାବଳୀ ।
ଭୀଷ୍ମ ବୋଇଲେ ହେ ନହୁଷ ଦେବ ଈଶ
ହୋଇଣ କଲେ କଥା ଦେବତା ମନୁଷ୍ୟ ।
ଧୂପ ଦୀପ ବଳି ମର୍ତ୍ତ୍ୟରେ କଲି ପୂର୍ବ
ସ୍ୱର୍ଗପୁରେ କଲେ ନହୁଷ ଦଣ୍ଡଧାରୀ ।
ମୁଁ ଇନ୍ଦ୍ର ହେଲି ବୋଲି କରି ଅହଂକାର
ସବୁ କର୍ମ ତ୍ୟାଗ କଲେ ସେ ନରବର ।
ଯାନେ ବସି ଋଷିମାନଙ୍କୁ ବୁହାଇଲେ
କାହାକୁହିଁ ଆଉ ତ ନଜର ନ କଲେ ।
ଏରୂପେ ତେତେଦିନ ଯାନ୍ତେ ନହୁଷଙ୍କ
ଯାନ ବୋହିଯିବାକୁ ଋଷିଙ୍କ ନାୟକ ।
ଅଗସ୍ତି ବାହାରନ୍ତେ ଭୃଗୁ ତାଙ୍କ ପାଶେ
ଆସି କରି ବଚନ ପ୍ରକାଶିଲେ ରୋଷେ ।
ନହୁଷ ଦୁଷ୍ଟକାରୀ ହୋଇ ପାପଆତ୍ମା
ଆମ୍ଭ କନ୍ଧେ ଯାଉଛି ବୋଲଇ ମହାତ୍ମା ।
ଅଗସ୍ତି ବୋଇଲେ ବ୍ରହ୍ମାଙ୍କଠାରୁ ବର
ପାଇଛି ତ ନହୁଷ ନରପତିବର ।
ଏହି ସକାଶୁଁ ତୁମ୍ଭେ ଆମ୍ଭେ ତାକୁ ଶାପ
ଦେଇ ନ ପାରିଣ ଲେଖିଲେ ଯାଏ କୋପ ।
ତେବେ ଏଥିକି ହେ ଉପାୟ ଅଛି ରଖି
ଯେବେ ତାହା କରି ଆମ୍ଭଙ୍କୁ କର ସୁଖୀ ।
ଭୃଗୁ ବୋଇଲେ ଆହେ ମୋତେ କୃଶଧାରୀ
କହିଛନ୍ତି ତାହା ନହୁଷ ନାଶକାରୀ ।
ଆଜ ଦେଖ ନହୁଷ ଗର୍ବ କରି ଲୋପ
କରିବଟି ଆଣି ଇନ୍ଦ୍ରଙ୍କୁ ସୁର-ନୃପ ।
ଯୋଗବଳେ ମୋତେ ଦିଶୁଛି, ଗୋଇଠାଏ
ତୁମ୍ଭ ମୁଣ୍ଡେ ମାରିବ ସେ ନହୁଷ ରାୟେ ।
ତେତିକିବେଳେ ମୁଁ ବୋଲିବି ହୁଅ ସାପ
କଳିରେ ନହୁଷ ପାପୀ ତୁ ବଡ଼ ପାପ ।
ଅଗସ୍ତ୍ୟ ବୋଇଲେ ହେ ତୁମ୍ଭର କଥାକୁ
ଶୁଣି କରି ଆସିଲା ଆନନ୍ଦ ମନକୁ ।
ଏହିରୂପେ କଲେ ନହୁଷ ନରପତି
ସାପଟିଏ ହୋଇଣ ପଡ଼ିବ ଧରତୀ ।

ଏହି ସମୟରେ ଯେ ନହୁଷ ରାଜନ
ଆସି ଅଗସ୍ତିଙ୍କି ଯିବାକୁ କଲା ଉଷ ।
ଭୃଗୁ ତାହା ଶୁଣି ବୋଇଲେ ଅଗସ୍ତିଙ୍କି
ରହୁଅଛୁ ଆଶ୍ରେ କରି ତୁମ୍ଭ ଜଟାଟିକି ।
ଅଗସ୍ତି ବୋଇଲେ ହେ ପାଣ୍ଡଶ୍ରୁ ଯା ମନ
ତାହା କର କପ ପୁଚ୍ଛନ୍ତି ତପୋଧନ ।
ବୋଇଲେ ଏହା ସହୁଁ ଅଗସ୍ତି ମହର୍ଷି
ଭୃଗୁ ତାଙ୍କ ଜଟା ଭିତରେ ଗଲେ ପଶି ।
ଅଗସ୍ତି ମହାଋଷି ନହୁଷଙ୍କ ପାଶେ
ମିଳି ତାଙ୍କ ଯାନ ବୋହିଲେ ମହାକ୍ଲେଶେ ।
ମନ୍ଦ ମନ୍ଦ ହୋଇଣ ଗୁଲନ୍ତେ ନହୁଷ
ମାଇଲେ ଗୋଇଠା ଅଗସ୍ତ୍ୟ ମୁଣ୍ଡଦେଶ ।
ଅଗସ୍ତ୍ୟଙ୍କ ଜଟାରେ ଭୃଗୁ ଲୁଚିଥିଲେ
ନହୁଷଙ୍କୁ ସାପ ତୁ ହୁଅରେ ବୋଇଲେ ।
ଆହେ ଯୁଧିଷ୍ଠିର ଅଦୃଶ୍ୟ ହୋଇବାରୁ
ଭୃଗୁ ଶାପ ଦେଲେ ନୋହିଲା କିଛି ଯାରୁ ।
ନହୁଷ ଦୃଷ୍ଟିପାତେ ଅଗସ୍ତି ତ ଥିଲେ
ମାଇଲେ ହୋଇ ଗୋରୁ ପରି ତୁନି ହେଲେ
ଭୃଗୁଙ୍କର ଶାପରେ ନହୁଷ ନୃପତି
ତଳେ ଆସି ପଡ଼ିଲେ ହୋଇ ସାପମୂର୍ତ୍ତି ।
ନହୁଷ ବୋଇଲେ ହେ ଭୃଗୁ ଋଷିଗଣ
କେବେ ଯିବ ଏ ଶାପ ମୋ ଆଗେ ବଖାଣ ।
ଭୃଗୁ ବୋଇଲେ ଆହେ ଯୁଧିଷ୍ଠିର ତୁଲେ
କଥାହେଲେ ତୁମ୍ଭେ ଆସିବ ସ୍ୱର୍ଗେ ଭଲେ ।
ଅଗସ୍ତି ମନେ କଲେ କଲି ଇନ୍ଦ୍ର କାର୍ଯ୍ୟ
ହୋଇଲି ମୁହିଁ ଆଜ ଋଷିକୁଳେ ରାଜ ।
ଆହେ ଯୁଧିଷ୍ଠିର ନହୁଷ ନୃପତିଙ୍କୁ
ମୁକତ କରିଛ କି କହିବା ତୁମ୍ଭଙ୍କୁ ।
ଭୃଗୁ ମହର୍ଷି ଯେ ନହୁଷଙ୍କୁ ଶାପ
ଦେଇ ବ୍ରହ୍ମା ଆଗେ କହିଲେ ଛାଡ଼ ତାପ ।
ଭୃଗୁଠାରୁ ଶୁଣି ନହୁଷ ପଡ଼ିବାର
ହୃଦଦେଶେ ତୋଷକୁ ଥୋଇ କୁଶଧର ।
ଦେବତାଙ୍କୁ ବୋଇଲେ ଶଚୀଙ୍କ ପ୍ରାଣେଶ—
ଆଣି କର ସ୍ୱର୍ଗପୁରରେ ନରଈଶ ।
ଏହିରୂପେ ବ୍ରହ୍ମା କହନ୍ତେ ଦେବତାଏ
ଇନ୍ଦ୍ରଙ୍କୁ ନେଇ କଲେ ସ୍ୱର୍ଗପୁର ରାୟେ ।

ଜାଣ ହେ ଯୁଧିଷ୍ଠିର ଦୀପ ଦାନ ଦେଇ
ନହୁଷ ହୋଇଥିଲେ ସ୍ୱର୍ଗେ ଦେବସାଇଁ ।
ଧର୍ମଭକ୍ତି-ମତ୍ତ ହୋଇ ନ ଦେବାରୁ ତାହା
ମହୀରେ ପଡ଼ି ହେଲେ ସର୍ପଙ୍କର ନାହା
ଅଗସ୍ତି ଭୃଗୁଙ୍କ ସମ୍ବାଦ ଦୀପ ଦାନ
ଦେବାର ସମାପତି କଲେ ନୃପଗଣ ।
କୃଷ୍ଣସିଂହ ଏଠାରେ ଗୀତ ଅତି ତୋଷେ
ସୁଜନଙ୍କ ମାନସ ଉଲ୍ଲାସିବା ଆଶେ ।

—୧୦୧—

## ବ୍ରହ୍ମସ୍ୱ-ହରଣ

ଯୁଧିଷ୍ଠିର ବୋଇଲେ ଦ୍ୱିଜ-ଧନହାରୀ-
ମାନଙ୍କୁ କି ଗତି ହେ ପିତା ତା ବିସ୍ତାରି ।
କହ ତ ମୋର ଆଗେ ତାହା ଶୁଣିବାକୁ
ହେଉଅଛି ମନ ମୁଁ କହୁଅଛି ତୁମ୍ଭଙ୍କୁ ।
ଋଷି ବୋଇଲେ ହେ ଚଣ୍ଡାଳ ଗଧ ଛେଳି
ଆଦି ଧୂଳି ହୋଇଣ ଅଙ୍ଗଟିରେ ବୋଳି ।
ଗାଈଙ୍କ ଗୋଡ଼ଧୂଳି ପଡ଼ିବା ବେଳକୁ
କି ପାପ ଏ ବୋଲିଣ ଝାଡ଼ଇ ଦେହକୁ ।
ଏହି କଥା କ୍ଷତ୍ରିୟ ଜଣେ ନେତ୍ରେ ଦେଖି
ପୁଚ୍ଛିଲେ ଯାଇ ଚଣ୍ଡାଳକୁ ନୋହି ସୁଖୀ ।
କୁକୁର ଗଧ ଛେଳି ଧୂଳି ବୋଳିଦେଇ
ଗାଈଧୂଳି ବେଳକୁ ଝାଡ଼ୁଛୁ କିମ୍ପାଇଁ ।
ଚଣ୍ଡାଳ ବୋଇଲା ହେ ବ୍ରାହ୍ମଣର ଗାଈ
ପୂର୍ବେ ରାଜା ହରନ୍ତେ ମନେ ବୋଧ ବହି ।
ସେ ଗାଈଧୂଳି ଯାଇ ପଡ଼ନ୍ତେ ସୋମରେ
ବ୍ରାହ୍ମଣେ ତା ପାନ ନ କରି ଦମନରେ ।
ବୋଇଲେ ଆଜୁଁ ହେଲା ସୋମଟି ଅଶୁଦ୍ଧ
ଯେ ପିଇବ ନୋହିବ ତା ଦେହଟି ଶୁଦ୍ଧ
ବ୍ରାହ୍ମଣ ଗାଈଠାରୁ ଦହି ଦୁଧ ଘିଅ
ଖାଇଲେ ଲୋକ ଭୋଗିବ ନରକଚୟ ।
ଏହିରୂପେ ଦ୍ୱିଜେ ବୋଲିବା ସମୟେ
ସେ ଗାଈଧୂଳି ପଡ଼ିଗଲା ମୋ ଅନ୍ନରେ ।
ପେଟବିକଳେ ମୁଁ ସେ ଅନ୍ନ ଦେଲି ଖାଇ
ହାତ ପୋଛି ପୁଣି ବସିଲି ତୁନି ହୋଇ ।
ଯାଗ ଯିବା ଉତ୍ତାରୁ ପାଆନ୍ତେ ମରଣ
ଜନ୍ମୁପତି କଲା ଚଣ୍ଡାଳ ମୋତେ ଜାଣ ।

ପୂର୍ବ ସୁକୃତରୁ ମୁଁ ପୂର୍ବଜନ୍ମ କଥା
କହିଲି ଜାଣ ହେ ଋଷିପୁତ୍ର ମହାରଥା ।
ସେ ସୁକୃତ ଯେବେ ପୁଚ୍ଛିବ ତୁମ୍ଭେ ମୋତେ
ତା କହି ନ ପାରିବି ମୁହିଁ କଦାଚିତେ ।
ଏବେ ମୁଁ ବୋଲୁଅଛି ବ୍ରାହ୍ମଣର ଧନ
ନ ହରିବ କେବେହିଁ ହୋଇ ମୋହ ମନ ।
ହରିଲେ ମୋହଠାରୁ ହେବ ହୀନ ଜାତି
କରିବ ଭୋଗ ନିତି ନରକ ସମ୍ପତ୍ତି ।
ବ୍ରାହ୍ମଣ ଗାଈଧୂଳି ପଡିବାରୁ ସୋମ
କଣାବକା ଲୋକେ ଛୁଇଁଲେ ନରୋତ୍ତମ
ଅଭିମାନ ମଧ୍ୟ ଅଟଇ ମହାଦୋଷ
ଅଭିମାନ କରିଲେ ଯାଏ ଲୋକ ନାଶ ।
ମୋହ ପଛରେ ଯେଉଁ କୁକୁରଟି ଅଛି
ଅଭିମାନ କରିଟି ଏ ଜନ୍ମ ପାଇଛି ।
ଏ ଜନ୍ମରୁ କିରୂପେ ମୁକତ ହୋଇବି
ବୋଲି ମୁହିଁ ନିତି ଯେ ବସିଥାଏ ଭାବି ।
ଆପଣ ଜାଣିଥିଲେ ଏ ଜନ୍ମ ଯିବାକୁ
କାରଣ ମୋତେ କହ ବହି ସୁଦୟାକୁ ।
ଋଷିପୁତ୍ର ବୋଇଲେ ବ୍ରାହ୍ମଣ ପାଇଁ ପ୍ରାଣ
ଛାଡ଼ିଲେ ଏ ଚଣ୍ଡାଳ ଜନ୍ମ ଯିବ ଜାଣ ।
ଏହା ଶୁଣି ଚଣ୍ଡାଳ ବ୍ରାହ୍ମଣ କାର୍ଯ୍ୟରେ
ମରିଲା ଯୁଦ୍ଧଦାଣ୍ଡେ ଅତ୍ୟନ୍ତ ତେଜରେ ।
ସେ ସକାଶୁଁ ତାହାର ହେଲା ଭଲ ଗତି
ସ୍ୱର୍ଗପୁରରେ ପୂଜା କଲେ ଶଚୀ ପତି ।
ଏଣୁ ହେ ଯୁଧିଷ୍ଠିର ନୃପ ମହାରାଜ
ନମୁଥିବ ଦେଖିଲେ ବ୍ରାହ୍ମଣ ସମାଜ ।
ବ୍ରାହ୍ମଣଙ୍କର ଧନ ଆଣିବାକୁ ମନ
ନ କରିବ ଜାଣିବାବନ୍ତ ହେଲେ ଜନ ।
ଶେଷ ହେଲା ଋଷିପୁତ୍ର ଚଣ୍ଡାଳ ସମ୍ବାଦ
କହେ କୃଷ୍ଣସିଂହ ନୃପତି ବହି ମୋଦ ।

—*—

## ଇନ୍ଦ୍ର, ଗୌତମ ସମ୍ବାଦ

ଯୁଧିଷ୍ଠିର ବୋଇଲେ ସବୁ ସୁକୃତିଏ
ଏକ ଲୋକେ ବସନ୍ତିକି ରଥୀବର୍ଯ୍ୟେ ।
ଭୀଷ୍ମ ବୋଇଲେ ଆହେ ପୁଣ୍ୟ ପାପ ଦୁଇ
ମର୍ତ୍ତ୍ୟକୁ ବ୍ରହ୍ମ ଲୋକ ଭୋଗକୁ କରଇ ।
କ

ମାତୃଶୂନ୍ୟ ହୋଇଣ ବନ ମଧ୍ୟଟିରେ ।
ପଡ଼ିଥିଲା ଯେ ହାତୀ ପିଲାଟି ମ୍ଳାନରେ ।
ଗୌତମ ଦ୍ୱିଜ ତହିଁ ବୁଲିଯାଇଥିଲେ
ସେ ପିଲାକୁ ଦେଖିଣ ଦୟାମତି ହେଲେ ।
ଲଇ ଖଣ୍ଡିକେ ସେ ହାତୀର ବାନ୍ଧି ବେକ
ଆଣିଲେ ନିଜ ଘରେ ଛାଡ଼ି ହୃଦୁଁ ଦୁଃଖ ।
ଘାସ ପାଣି ପତର ଗୁଡ଼ିକ ହାତୀକି
ଦେଇ ବଢ଼ାଇଲେ ବହି ଅତି ପ୍ରୀତିକି ।
ଇନ୍ଦ୍ର ସେ ହାତୀଟିର ସ୍ୱରୂପକୁ ଦେଖି
ନେବି ବୋଲି ମନେ ବିଚାରି ହୋଇ ସୁଖୀ ।
ଧୃତରାଷ୍ଟ୍ର ନରପତିଙ୍କର ସ୍ୱରୂପରେ
ହାତୀ ନେବାରପାଇଁ ଆସିଲେ ସତ୍ୱରେ ।
ଶଚୀଦେବୀଙ୍କର ଯେ ପରାଣ ଈଶ୍ୱର
ତାହାଙ୍କୁଟି ବୋଲନ୍ତି ସୁରଙ୍କ ଈଶ୍ୱର ।
ଗଉତମ ଦ୍ୱିଜ ହାତୀକି ନେବା ଜାଣି
ବୋଇଲେ ଆହେ ଧୃତରାଷ୍ଟ୍ର ନରମଣି ।
ପୁତ୍ର ପରାୟେ ମୁଁ ପାଳିଛି ହାତୀଟିକି
ନେବା ହେଉଅଛି ତୁମ୍ଭର ଉଚିତ କି ।
ଧୃତରାଷ୍ଟ୍ର ରାଜା ବୋଇଲେ ଗାଈ ଶତ
ତୁମ୍ଭେ ନିଅ ମୋଠାରୁ ରତନ ବହୁତ ।
ଏ ହାତୀଟିକି ନେବା ମନ ମୋ ହେଉଛି
ଏ ବିଷୟେ ନାହିଁ ନ ବୋଲ ତୁମ୍ଭେ କିଛି ।
ଗୌତମ ବୋଇଲେ ମୋ ଧନ ନାହିଁ ଲୋଡ଼ା
ଏ ହାତୀ ଧନରୁ ମୋ ଅଟେ ବଡ଼ୁଁ ବଡ଼ା ।
ଧୃତରାଷ୍ଟ୍ର ବୋଇଲେ ରାଜା ନୁହଁ ତୁମ୍ଭେ
ଗୋଳ କମ୍ପା କରୁଛ ହାତୀ ନେଲେ ଆମ୍ଭେ ।
ଆମ୍ଭେ ତ ନରପତିକୁଳେ ଅଟୁଁ ଶ୍ରେଷ୍ଠ
ହାତୀଟିକି ନେବୁ ମନରେ ନୁହ ରୁଷ୍ଟ ।
ଗଉତମ ବୋଇଲେ ମଲେ ମୁଁ ଯମକୁ
କହିବ ତୁମ୍ଭେ ନେଲି ବୋଲି ମୋ ହାତୀକୁ ।
ସେହି ତ ପ୍ରେତଙ୍କରେ ରଜା ବୋଲାଅନ୍ତି
ନ୍ୟାୟ କରିଣ ମୋତେ ଦିଆଇବେ ହାତୀ ।
ଜୀଇ ତ ଅଛି ଏବେ କିରୂପରେ ତୁମ୍ଭେ
ହାତୀକି ନେବ ନାହିଁ ବୋଲୁଁ ବୋଲୁଁ ଆମ୍ଭେ
ଧୃତରାଷ୍ଟ୍ର ବୋଇଲେ ମୋର ନାହିଁ ପାପ
କିସ କରି ପାରିବ ମୋତେ ଯମନୃପ ।

ଦ୍ୱିଜ ବୋଇଲେ କୁବେର ଲୋକେ ହେଲେ
ହାତୀ ପାଇଁ ଗୋଳ କରିବ ତୁମ୍ଭେ ଭୁଲେ ।
ଧୃତରାଷ୍ଟ୍ର ବୋଇଲେ ଅତିଥି-ସତ୍‌କାର
ବ୍ରାହ୍ମଣଙ୍କୁ ସ୍ଥାନ,ଭୃତ୍ୟଙ୍କୁ ବାଣ୍ଟିବାର ।
ଯେ କରନ୍ତି, ତାର କୁବେରଲୋକ ହୋଏ
ସ୍ୱପନେ ଏହା ମୁଁ ନ ଜାଣେ ଦ୍ୱିଜବର୍ଯ୍ୟେ ।
ଦ୍ୱିଜ ବୋଇଲେ ମେରୁରେ ଜମ୍ବୁବୃକ୍ଷ
ଅଛି ସବୁ ବୃକ୍ଷରୁ ଅଟଇ ସେ ମୁଖ୍ୟ
ସେ ବୃକ୍ଷତଳେ ତୁମ୍ଭ ଆମ୍ଭ ହେବ ଗୋଳ ।
ହାତୀ ପାଇଁ ଜାଣ ହେ ମହୀଦେବପାଳ।
ଧୃତରାଷ୍ଟ୍ର ବୋଇଲେ ତପୀ ସତ୍ୟବାଦୀ
ଦ୍ୱିଜେ ସେଠା ପାଆନ୍ତି ହୋଇ ନବବାଦୀ ।
ମୁହିଁ ତ ନୃପକୁଳେ ହୋଇଛି ଜନମ
ସ୍ୱପନେ ସୁଦ୍ଧା ଜାଣି ନାହିଁ ସେ ଧରମ
ଦ୍ୱିଜ ବୋଇଲେ ମୁଁ ନନ୍ଦନବନେ ହାତୀ
ମାଗିନେବି ତୁମ୍ଭଠାରୁ ହେ ନରପତି ।
ଧୃତରାଷ୍ଟ୍ର ବୋଇଲେ ନୃତ୍ୟ ଗୀତ ପ୍ରିୟେ
ହୋଇ ବସି କରେ ଯେ ଦେବାର୍ଚ୍ଚନ ଚର୍ଯ୍ୟେ ।
ତାହା ସିନା ନେଇ ସେ ନନ୍ଦନବନଟି
ଦିଅନ୍ତି ସୁଖ ପାଇ ସବୁ ଦେବସୃଷ୍ଟି ।
ଗଉତମ ବୋଇଲେ ଉତ୍ତରକୁରୁରୁ
ଆଣିବି ତୁମ୍ଭଠୁଁ ହାତୀ ମୁଁ ନୋହେ ଖରୁ ।
ଧୃତରାଷ୍ଟ୍ର ବୋଇଲେ ଅହିଂସ୍ର ଅମାଂସାଦ
ସେବା ଲୋକଟି ସେ ସ୍ଥାନରେ ପାଏ ମୋଦ
ଗଉତମ ବୋଇଲେ ଚନ୍ଦ୍ରଲୋକୁଁ ମୁହିଁ
ତୁମ୍ଭଠାରୁ ହାତୀ ଆଣିଛି ମୁଁ ଛଡ଼ାଇ
ଧୃତରାଷ୍ଟ୍ର ବୋଇଲେ କ୍ଷମା ଦାନଶୀଳ
ଲୋକର ଯେ ସ୍ଥାନ ହେ ଜାଣ ଦ୍ୱିଜବାଳ
ବ୍ରାହ୍ମଣ ବୋଇଲେ ହେ ସୂର୍ଯ୍ୟ ଲୋକେ ଗଲେ
ଛାଡ଼ିବି କି ହାତୀକି ଜାଣ ତୁମ୍ଭେ ଭଲେ ।
ଧୃତରାଷ୍ଟ୍ର ବୋଇଲେ ଗୁରୁସେବାରତ
ଲୋକଙ୍କୁ ସିନା ସ୍ଥାନ ଦିଅନ୍ତି ଆଦିତ୍ୟ ।
ଦ୍ୱିଜ ବୋଇଲେ ମୁହିଁ ବରୁଣ ଲୋକରୁ
ତୁମ୍ଭଠୁ ହାତୀକି ଆଣିବି ନୋହି ଖରୁ ।
ଧୃତରାଷ୍ଟ୍ର ବୋଇଲେ ଚାତୁର୍ମାସ୍ୟ ଯାଗ—
କଲା ଲୋକ ସେ ଲୋକ ପାଏ ମହାଭାଗ

ଗଉତମ ବୋଇଲେ ଇନ୍ଦ୍ର-ଲୋକ ଯାଇ
ଆଣିବି ଜାଣିଥାଅ ହାତୀକି ଛଡ଼ାଇ ।
ଧୃତରାଷ୍ଟ୍ର ବୋଇଲେ ଶୂର ସ୍ୱର୍ଗ ହୋଏ
ଏ ବାହାରେ ଶହେ ବରଷ ସେହୁ ଜୀଏ ।
ଗଉତମ ବୋଇଲେ ବ୍ରହ୍ମଲୋକେ ମୁହିଁ
ଗଲେ ହାତୀ ଆଣିବି ସନ୍ଦେହ ତ ନାହିଁ ।
ଧୃତରାଷ୍ଟ୍ର ବୋଇଲେ ରାଜସୂୟ ଯାଗ—
କଲା ଲୋକର ସେ ଲୋକଟି ହୋଏ ଭାଗ ।
ଗଉତମ ବୋଇଲେ ଗୋଲକକୁ ଗଲେ
ଛାଡ଼ିବି ନାହିଁ ହାତୀ ଜାଣ ମୁହିଁ ଭଲେ ।
ଧୃତରାଷ୍ଟ୍ର ବୋଇଲେ ଯେହୁ ଗାଈ ଦାନ
ଦିଅଇ ସେ ଲୋକଇ ହୁଅଇ ସେ ସ୍ଥାନ ।
ଏ ବାହାରେ ପ୍ରଭାସ ଆଦି ତୀର୍ଥଙ୍କରେ
ସ୍ନାନ ଯେ କରିଥିଲେ ଯାଏ ଗୋଲକରେ ।
ଗଉତମ ବୋଇଲେ ତୁମ୍ଭ କଥା ଶୁଣି
ବୁଝୁଅଛି ନଶ୍ଚେ ଅଟ ହେ ସୁରମଣି ।
ଇନ୍ଦ୍ର ବୋଇଲେ ମୁଁ ଅଟଇ ମଘବାନ
କରିବି କହ ଯାହା ହୁଏ ତୁମ୍ଭ ମନ ।
ଗଉତମ ବୋଇଲେ ମୋ ହାତୀଟି ମୋତେ
ଦେଲେ ମୁଁ ସବୁ ପାଇଲି ହେ ମହାମତେ ।
ଇନ୍ଦ୍ର ବୋଇଲେ ଆହେ ନିଅ ତୁମ୍ଭହାତୀ
ମୋଠାରୁ ଗଉତମ ନ ଛାଡ଼ିବ ପ୍ରୀତି ।
ଗଉତମ ବୋଇଲେ ମଙ୍ଗଳ ତୁମ୍ଭର
ହେଉ ପୁରନ୍ଦର ଦିଅ ମୋ କରିବର ।
ଏହା ଶୁଣି ଇନ୍ଦ୍ର ହାତୀଙ୍କ ତାଙ୍କୁଦେଲେ
ତାହାଙ୍କ ହାତ ଧରି ସ୍ୱର୍ଗପୁର ଗଲେ ।
ଇନ୍ଦ୍ର ଗଉତମ-ସମ୍ବାଦ ହେଲା ଶେଷ
କୃଷ୍ଣସିଂହ ନୃପତି କହେ ବହିତୋଷ

—*—

## ଅନଶନ ବ୍ରତ

ଯୁଧିଷ୍ଠିର ବୋଇଲେ ତପେ କେଉଁ ତପ
ସାର ଅଟଇ ଆହେ କହ ରଥୀଧିପ ।
ଭୀଷ୍ମ ବୋଇଲେ ତହୁଁ ଅନଶନ ପରି
ତପନାହିଁ ଜାଣ ପାଣ୍ଡବ ଦଣ୍ଡଧାରୀ ।
ଭଗୀରଥ ରାଜନ ସ୍ୱର୍ଗ ଗୋଲୋକକୁ
ଅତିକ୍ରମି ଗଲେ ଯେ ଋଷିଙ୍କ ଲୋକଙ୍କୁ

ପିତାମହ ବହ୍ନିଲୋକରେ ଭଗୀରଥ
ରାଜାଙ୍କୁ ଦେଖିକରି କରି ପୁରୁଷାର୍ଥ ।
ବୋଇଲେ ଏ ଲୋକ ଆସିଲ କି ରୂପରେ
ତା କହ ଶୁଣିବା ମୋ ଆଗେ ସେ ରୂପରେ ।
ଭଗୀରଥ ବୋଇଲେ ଶତ ଶତ ଯାଗ
କରି ଦ୍ୱିଜଗଣେ ଦେଇଛି ରତ୍ନଭାଗ ।
ଗଙ୍ଗାତୀରରେ ରହି ଶଏ ସମ୍ବତ୍ସର
ତପ କରି ଶୀର୍ଣ୍ଣ କରିଛି ମୁଁ ଶରୀର ।
ଲକ୍ଷ ଲକ୍ଷ ଘୋଡ଼ା ପୁଷ୍କର ତୀର୍ଥେ ରହି ।
ଦାନ ଦେଇଅଛି ବ୍ରାହ୍ମଣଙ୍କୁ ଡକାଇ ।
ସହସ୍ରେ କନ୍ୟା ବେଶ କରି ଦ୍ୱିଜେ ଦାନ
ଦେଇ ମୁଁ ତୋଷିଅଛି ତାହାଙ୍କର ମନ ।
ଗୋମେଧ ଯାଗରେ ଅର୍ବୁଦ ଦଶ ଗାଈ
ସୁନାପାନ ଦୁହାଁ ଦେଇଅଛଇ ମୁହିଁ ।
ଯାଗ ଗୋଟିକରେ ସୁନଆଁ ଆଠକୋଟି
ଦେଇଅଛି ଦ୍ୱିଜଙ୍କୁ ମୋ ହାତ ବଉଟି ।
କାନକଳା ଦେଲପରି ଯେ ଘୋଡ଼ା ଗୋଟି
କରି ଦେଇଅଛି ମୁଁ ସତରଶ କୋଟି ।
ସତର ସହସ୍ର ମୁଁ ଐରାବତ ସମ
ହାତୀ ଦାନ ଦେଲି ଦ୍ୱିଜଙ୍କୁ ବହି ପ୍ରେମ ।
ସହସ୍ର ଦଶ ରଥ ଯୋଚି ଚାରି ବାଜି
ଦେଇଛି ଦ୍ୱିଜେ ମୁଁ ଆନନ୍ଦ ଜଳେ ମଜ୍ଜି ।
ଆଠଥର ମୁହିଁ କରିଛି ରାଜସୂୟ
ଜିଣିଣ ମହୀତଳ ନରପତିଚୟ ।
ସହସ୍ର ଶତ ଯାଗ କରି ଦଶ ଶତ
ବୃଷଭ ଦେଇ ମୁଁ ତୋଷିଛି ଦ୍ୱିଜ ଚଉ ।
ହିରଣ୍ୟ ରତ୍ନ ଗିରି ଲକ୍ଷ ଲକ୍ଷ ଗ୍ରାମ
ଦେଇଛି ଡକାଇ ଅଣାଇ ଦ୍ୱିଜୋତ୍ତମ ।
ସରବମେଧ ନରମେଧ ବିଶ୍ୱଜିତ
ଯାଗ କରିଛି ମୁଁ ନାହିଁ ତା ପରମିତ ।
ସକଳ ତୀର୍ଥଙ୍କରେ ଶତ ଶତ ଗାଈ
ରତ୍ନ ଦାନ ଦେଇଛି ହେ ସାବନ୍ତୀ-ସାଇଁ ।
ଏ ସୁକୃତମାନରୁ ବହ୍ନିଲୋକ ମୋର
ନୋହିଲା ଜାଣ ଆନହେ ଦେବ କୁଶଧର ।
ଇନ୍ଦ୍ରଙ୍କରେ ଗୁପତ ଅନସନ-ବ୍ରତ
ତ କରିବାରୁ ହେଲା ଏ ସ୍ଥାନ ପ୍ରାପତ ।
ଏହି ସକାଶରୁ କହୁଛି ମୁଁ ତୁମ୍ଭଙ୍କୁ
ନାହିଁ ବ୍ରତେ ଅଧିକଟି ଅନଶନକୁ ।
ଏହା ଶୁଣିଣ ବ୍ରହ୍ମା ସନ୍ତୋଷ ହୋଇଲେ
ତୁମ୍ଭପରି ତୁମ୍ଭେଟି ଅଟ ହେ ବୋଇଲେ ।
ଭଗୀରଥ-ବ୍ରହ୍ମା-ସମ୍ବାଦ ହେଲା ଶେଷ
ନୃପ କୃଷ୍ଣସିଂହଙ୍କୁ ରଖ ରାଧା-ଈଶ ।

—*—

## ଆୟୁ ବିବରଣ

ଯୁଧିଷ୍ଠିର ବୋଇଲେ ଶତାୟୁ ପୁରୁଷ
ହୋଇ କିମ୍ପା ବାଳ-ବୟସେ ହୋଏ ନାଶ ।
ଏହା ମୋର ଆଗେ କହ ତ ପିତାମହ
ଶୁଣିବାକୁ ମୋହର ବଳଅଛି ସ୍ନେହ ।
ଭୀଷ୍ମ ବୋଇଲେ ହେ ଆୟୁଷବନ୍ତ ହୀନ—
ଆୟୁଷ କଥାଟି କହିବା ନୃପ ଶୁଣ ।
ଆଚାରବନ୍ତ ଲୋକ ଆୟୁ ଶିରୀ କୀର୍ତ୍ତି
ଜନଙ୍କଟି ବିଖ୍ୟାତ କରଇ ଏକ୍ଷିତି ।
ଦୁରାଚାର ହେଲେ ଏ ତିନକଥା ନାଶ
କରି ନକଟରେ ଲଭଇ ଯମବାସ ।
ପାପୀ ଲୋକ ଆଚାର ଯେବେ ଆଚରଇ
ତେବେଟି ତାକୁ ପାପ ବାଧି ନ ପାରଇ ।
ସାଧୁଙ୍କର ମାରଗ ଅଟେଟି ଆଚାର
ମୋ କହିବାରୁ ଜାଣ ପାଣ୍ଡବ ନୃବର ।
ନାସ୍ତିକ ଗୁରୁତଳ୍ପଗାମୀ କ୍ରିୟାହୀନ—
ଲୋକେ ଦୁରାଚାରେ ଯାଆନ୍ତି ଲେଖା ଜାଣ ।
ଆଚାରବନ୍ତ ଲୋକ ବର୍ଷଶତ ଜୀଏ
ଆଚାରହୀନ ହେଲେ ହରାଏ ସେ କାୟେ ।
ଜିତକ୍ରୋଧନ ସତ୍ୟବାଦୀ ଅହିଂସକ
ଅସୂୟାହୀନ ଅକପଟ ଯେଉଁ ଲୋକ ।
ସେହି ଲୋକ ଶତ ବରଷ ଜାଣ ଜୀଏ
ଆୟୁଷ ଭୋଗ ହେଲେ ନାକ-ଲୋକ ପାଏ ।
ଟେକାମର୍ଦ୍ଦୀ ତୃଣଛେଦୀ ଯେ ନଖଖିଆ
ଲୋକ ଯମପୁର ନିକଟେ ହୋଏ ଠିଆ ।
ବ୍ରାହ୍ମମୁହୂର୍ତ୍ତରୁ ଉଠିଣ ଶୁଦ୍ଧ ହୋଇ
ପୂର୍ବର ପରି ସନ୍ଧ୍ୟା ଯେ ଦ୍ୱିଜ କରଇ ।
ସେ ଦ୍ୱିଜଠାରେ ଆୟୁ ହୁଅଇ ପ୍ରସିଦ୍ଧ
ଯେଣୁ କରିଥାଏ ନିତ ସେ ଦେହ ଶୁଦ୍ଧ ।

ସୂର୍ଯ୍ୟଙ୍କର ଉଦୟ ଅସ୍ତକୁ ଚାହିଁଲେ
ଅପୁଷହୀନ ହୋଇ ଯାଏ ଜାଣ ଭଲେ ।
ପରସ୍ତ୍ରୀଶାଠାକୁ ଗମନ ଯେହୁ କରେ
ବରଷ ଶତ ଆୟୁ ଦିନକେ ସେ ସାରେ ।
ପ୍ରାତଃକାଳୁ ଦନ୍ତ ଧାବନ ଦେବପୂଜା
ଯେ କରନ୍ତି ତାକୁଟି ଡରେ ଯମରାଜା
ଗାଈ ନୃପନ୍ତ ବୃଦ୍ଧ ଦୁର୍ବଳ ଗର୍ଭିଣୀ
ଲୋକକୁ ଦେଖି ବାଟ ଛାଡ଼ିବ ସେକ୍ଷଣି ।
ଚତୁଃଷ୍ପଥେ ଥିବା ବୃକ୍ଷକୁ ପ୍ରଦକ୍ଷିଣ
କରି କରୁଥିବ ଦେଖିଲେ ଗୋ ବ୍ରାହ୍ମଣ ।
ପରର ବସ୍ତ୍ର ପିନ୍ଧି ପରର ପାଣ୍ଡୋଇ
ମାଡି କରି ନ ଯିବ ଭ୍ରମରେହିଁ କାହିଁ ।
ଅମାସ୍ୟା ପୌର୍ଣ୍ଣମୀ ଅଷ୍ଟମୀ ଚତୁର୍ଦ୍ଦଶୀ
ଏଥେ ନ ବସିବ ନଗନା-ରତେ ରସି ।
ପୃଷ୍ଠମାଂସ ବୃଦ୍ଧମାଉଁସ ନ ଖାଇବ
ଲୋକ ଅପବାଦକୁ ମୁଖେ ନ ଗାଇବ ।
ଲୋକର ମରମକୁ ବାଧିବ ଯେ କଥା
ତା ପଡ଼ିଲେ ହୃଦରେ ହେଉଥିବ ବ୍ୟଥା ।
ସବୁ ଶାପ୍ନକପ୍ରତ୍ତ ବଚନ ଶାୟକ
ଅଧିକ ଅଟଇ ହେ ଅବନୀ ନାୟକ ।
ବାକ୍ୟ-ଶଲ୍ୟ ଯେବେହି ହୃଦରେ ବାଜଇ
ପ୍ରାଣଥିବା-ଯାକହି ସେ ନ ବାହାରଇ ।
ରୂପ ଦ୍ରବ୍ୟ ଶରୀର ବିଦ୍ୟାହୀନ ଲୋକ
ମାନଙ୍କର ନୋହିବ କେବେ ଆକ୍ଷେପକ ।
ପୁତ୍ରଶିଷ୍ୟ ବିନା ଆନ ଦେହରେ ମାଡ
ମାଇଲେ ରାଜନ ହେ ହୁଏ ଦୋଷ ବଡ଼ ।
ଜଡଭକ୍ଷବୃତ୍ତିକି କରଇଟି ଯେହି
ଆୟୁଷ ଥାଉଁ ଥାଉଁ ଜାଣ ସେ ମରଇ ।
ମୂତ୍ର ପୁରୀଷର ଉତ୍ସର୍ଗପରେ ପାଦ
ଗୁହ୍ୟଦ୍ୱାର ଲିଙ୍ଗ ଧୋଇବ ବିହି ମୋଦ ।
ଅଶୁଦ୍ଧଦ୍ରବ୍ୟ ଲୋକ ଶୁଦ୍ଧ ବୋଲି ଆଣି—
ଦେଲେ ତାହା ଘେନଲେ ଦୋଷରେ ନଘେନ
ଯେ ଲୋକ ଦିଅଇ ଯେ ଲୋକେ ଯାଏ ନାଶ
ଘେନିବା ଲୋକଟିର ବଢ଼େ ଆୟୁ ଯଶ ।
ଖେଚଡ଼ି ଯାଉ ମାଂସ ଚକୁଳି ପାୟସ
ନ କରିବ ଖାଇବାକୁ ହେ ନରଈଶ ।

ଯେବେ ଏହା କରିବ ଦେବ ପିତୃ ଦେଇ ।
ଖାଇଲେ ହେ ରାଜନ କିଛି ଦୋଷ ନାହିଁ ।
ଦାନ୍ତ ଘଷି ନିତ୍ତ ଦ୍ୱିଜଙ୍କୁ ଦେବ ଦାନ
ଯେବେ, ତେବେ ସାଧୁ ବୋଲିଏ ଜାଣ ଜନ ।
ସୂର୍ଯ୍ୟଙ୍କର ଉଦୟ ପର୍ଯ୍ୟନ୍ତେ ଶୋଇଲେ
ପ୍ରାୟଶ୍ଚିତ୍ତ ସେ ଦିନ କରିବଟି ଭଲେ ।
ମାତା ପିତା ଗୁରୁଙ୍କୁ ସକାଳୁ ଜୁହାର
କଲେ ଲୋକ ମହୀରେ ହୁଏ ଆୟୁଷ୍କର ।
ପର୍ବ ତିଥିଙ୍କରେ ଯେ କାଷ୍ଠଙ୍କରେ ଦାନ୍ତ
ଘଷିବ, ଦୋଷରେ ସେ ହୋଇବ ଲକ୍ଷିତ ।
ଅଶୁଦ୍ଧ ହୋଇକରି କଲେ ଦେବ-ପୂଜା
ଅନ୍ତଃକାଳେ ନେଇ ଦଣ୍ଡଇ ଯମରାଜା ।
ଅଜ୍ଞାନ ନାରୀ ଗର୍ଭସ୍ତ୍ରୀଶକ ମୈଥୁନ
ଯେ କରେ ତାହାରଟି ନର୍କ ହୋଏ ସ୍ଥାନ ।
ପୂର୍ବ ଦକ୍ଷିଣ ଦିଗେ କରିଣ ମସ୍ତକ
ଶୋଇଥିବ ନିତ୍ତ ହେ ଅବନୀ-ନାୟକ ।
ଭାଙ୍ଗିଯିବା ଖଟ ପିଢ଼ାରେ ନ ବସିବ
ବସିଲେ ଜାଣୁ ଜାଣୁ ଦୋଷ ଅରଜିବ ।
ଆସନକୁ ଗୋଡ଼ରେ ଓଟାରିଣ ଆଣି
ନ ବସିବ ଯେ ଥିବ ଧର୍ମ-ଶାସ୍ତ୍ର ଜାଣି ।
ଉଲଗ୍ନ ହୋଇ ରାତ୍ତ ଧରିଣ ନଗନା
ନ ଶୋଇବ କେବେହେଁ ହୋଇ କାମମନା ।
ସ୍ନାନ କଲି ଲୁଗା ଚିପୁଡ଼ି ଝାଡ଼ିଦେଇ
ଘୋଡ଼ି ନୋହିବ ଯେ ପାଣ୍ଡବ ନରସାଇଁ ।
ନିତ୍ୟରେ ଓଦାଲୁଗା ପିନ୍ଧେ ଯେଉଁ ନର
ଦୋଷ ଘେନ ଆୟୁଷ ହୀନ ହୋଏ ତା'ର ।
ଋତୁମତୀ ସ୍ତ୍ରୀଶକ ନ କହିବ କଥା
କହିଲେ ପାପ ଆସି ଘୋଟେ ମହାରଥା ।
ମୂତ୍ର ପୁରୀଷକୁ ପାଣିରେ ଯେ ଛାଡଇ
ଆୟୁଷ ଶିର୍ଘ ଦୁଇକଥା ସେ ନାଶଇ ।
ଭୁଞ୍ଜିବଇଚ୍ଛା ଥିଲେ କରି ଆଚମନ
କରିବ ତୁନୀ ହୋଇ ବସିଣ ଭୋଜନ ।
ଭୁଞ୍ଜି ସାରି ଦ୍ୱାଦଶ ଆଚମନ କରି
ପେଟକୁ ଆଉଁସିବ ହରି ନାମ ଧରି ।
ପୂର୍ବକୁ ମୁହଁକରି କରିବ ଭୋଜନ
ନିନ୍ଦା କରିବ ନାହିଁ କଦାଚିତେ ଅନ୍ନ ।

ପୂର୍ବମୁଖେ ଭୁଞ୍ଜିଲେ ଆୟୁବନ୍ତ ହୋଏ
ଦକ୍ଷିଣମୁଖ ହେଲେ ଯଶସ୍ୱୀ ବୋଲାଏ ।
ପଶ୍ଚିମ ମୁଖ ହେଲେ ବଢ଼େ ଧନ ଧାନ୍ୟ
ଉତ୍ତର ମୁଖେ ସତ୍ୟ ବଢ଼ଇ ରାଜନ ।
ଏରୂପରେ ଶୁଣ ଦଗରେ ଶୁଣ କଥା ।
ଅଛି ଭୁଞ୍ଜିବାରେ ପାଣ୍ଡବ ମହାରଥୀ ।
ଚମୁ ବାଳ ପାଉଁଶ ଖପରା ଅଙ୍ଗାର
ଉପରେ ନ ବସିବ ଜ୍ଞାନବନ୍ତ ନର ।
ବସିକରି ଭୁଞ୍ଜିବ, ନ ଖାଇବ ଚାଲି
ପାଉଁଶ ଗୋବରରେ ନ ମୁଛିବ ଗାଲି ।
ଓଦା ଗୋଡେ ଭୁଞ୍ଜିବ ଓଦା ଗୋଡ଼ଟିରେ
ଶୋଇଲେ ମହାଦୋଷ ଥାଏ ସେ ମହୀରେ ।
ଆର୍ଦ୍ରପାଦ ହୋଇ ଭୁଞ୍ଜଇ ଯେଉଁ ନର
ଶଏବରଷଟି ଆୟୁଷ ବଢ଼େ ତାର ।
ଅଗ୍ନି ଗାଈ ଦ୍ୱିଜେ ଅଇଁଠା ହାତେ ଯାଇ
ନ ଛୁଇଁବ, ଛୁଇଁଲେ ପାପଟି ବଢ଼ଇ ।
ସୂର୍ଯ୍ୟଚନ୍ଦ୍ର ନକ୍ଷତ୍ର ତିନଙ୍କି ଉଚ୍ଛିଷ୍ଟ—
ଭ୍ରଷ୍ଟ ହୋଇ ଚାହିଁଲେ ହୁଏ ଆୟୁ ନଷ୍ଟ ।
କୁଳବୃଦ୍ଧ ଆସିଲେ ଉଠି ନମସ୍କାର
କରୁଥିଲେ ଆୟୁଷ ପାଉଥାଏ ନର ।
ଭଙ୍ଗା କଂସା ଏକା ଲୁଗାରେ ଯେ ଭୋଜନ
ନ କରିବ, କଲେ ହୁଅଇ ଆୟୁହୀନ ।
ଲଙ୍ଗଳା ହୋଇକରି ଜଳମଧ୍ୟେ ପଶି
ସ୍ନାନକୁ ନ କରିବ ଏକାନ୍ତରେ ବସି ।
ଭୋଜନ କଲାବେଳେ ଶିର ନ ଛୁଇଁବ
ଛୁଇଁବ ଯେବେ ଆୟୁ ଊଣା ହୋଇଯିବ ।
ବାଳ ଧରି ଲୋକର ମୁଣ୍ଡରେ ବଧାକୁ
ଶାସ୍ତ୍ର କହିଅଛି ଜାଣ ନ ମାରିବାକୁ
ଦୁଇହାତେ ନିଜ ମୁଣ୍ଡକୁ କୁଣ୍ଡାଇ
ଦେଲେ ଲକ୍ଷ୍ମୀ ଆୟୁଷ ଦୁଇ ନ ରହଇ ।
ଅନଧ୍ୟାୟ ତିଥିରେ ପଢ଼ଇ ଯେ ପାଠ
ତାହାକୁ ବୋଲନ୍ତି ହେ ଏ ମହୀରେ ଶଠ ।
ସୂର୍ଯ୍ୟ ଗାଈ ଅଗ୍ନିଙ୍କି ଚାହିଁ ଯେ ମୁତଇ
ଅଳପକେ ଯାଇ ଯମକୁ ସେ ଭେଟଇ ।
ଦିବସରେ ଉତ୍ତର ରାତିରେ ଦକ୍ଷିଣ
ଆଡ଼କୁ ଚାହିଁ କରି ମୁତିବଟି ଜାଣ ।

ବ୍ରାହ୍ମଣ କ୍ଷତ୍ରିୟ ସର୍ପକୁ ଦେଖି ସାନ
ନ କରିବ ମନରେ ହେବେ ଅପମାନ ।
ଗୁରୁ ଭୁଲେ ନିର୍ବନ୍ଧ ନ କରିବ କଛୁ
ଗୁରୁଙ୍କୁ ବୋଧୁଥିବ କ୍ରୋଧକୁ ମୁରୁଛୁ ।
ଗୁରୁ ନିନ୍ଦା କଲେ ମନୁଷ୍ୟ ଆୟୁଚୟ
ନାଶଯାଏ ଏଥିରେ ନାହିଁଟି ସଂଶୟ ।
ଘରକୁ ଖଣ୍ଡଦୂର ଉତ୍ତରେ ମୂତ୍ରକୁ
ଉତ୍ସର୍ଗି ପକାଇବ ତହିଁ ଅଇଁଠାକୁ ।
କଇଁ ପଦ୍ମ ଛାଡ଼ି ଶୁକଳ ଫୁଲଯାକ
ମଣ୍ଡନଟି କରିବ ଆପଣା ମସ୍ତକ ।
ସ୍ନାନକରି ଚନ୍ଦନ ଅଙ୍ଗେ ବୋଳିଦେବ
ଦେହେ ହେମାଳ ଗୋଟିଏ ଲଗାଇବ ।
ଦୋଷଡ଼ା ଲୁଗାଟିକି ପିନ୍ଧା ନ କରିବ
ପିନ୍ଧାଟିକି ଦୋଷଡ଼ା କଲେ ଦୋଷ ହେବ ।
ଆନ ଧରିଥିବା ଲୁଗାକୁ ନ ପିନ୍ଧିବ
ପିନ୍ଧିଥିବା ଲୁଗା ପକାଇ ନ ଶୋଇବ ।
ଯେଉଁ ଦିବସ ଉପବାସ ବ୍ରତ ହେବ
ସେ ଦିନ ଆଭରଣ ଯତନେ ଭରିବ ।
ଉଦ୍ଧୃତ ସାର ଦଧି ଯେ ଦୁଧ ଭକ୍ଷଇ
ତାହାର ଥିଲେ ଆୟୁ ଶେଷକୁ ଭଜଇ
ପିପ୍ପଳ ବଟ ଉଦୁମ୍ବର କାଉଁରିଆ
ଶାଗ ଯେ ଖାଏ ଯମପୁରେ ହୋଏ ଠିଆ ।
ଛେଳିମଂସ ଶୁଖିଲା ମାଉଁସ ଅଭକ୍ଷ୍ୟ
ତା ଭକ୍ଷିବା ଲୋକର ନୁହେ କେବେ ମୋକ୍ଷ ।
ହାତରେ ଧରି ଲୁଣ ଭୋଜନ ଯେ କରେ
ତାକୁ ଜାଣିବ ଏ ମରିବ ନିକଟରେ ।
ଛତୁଆ ଦହି ରାତେ କେଭେ ନ ଖାଇବ
ପାତ୍ରଟିରେ ପୂରାଇ କାଳକ ରଖିବ ।
ତଳେ ରଖି ଖାଇବା ସାମଗ୍ରୀ ଖାଇଲେ
ଅସୁରଭୋଜନଟି ବୋଲାଏ ସେ ଭଲେ ।
କ୍ଷୀରୀ ତିଅଣକୁ ହାପୁଡ଼ି ଖାଇବାର
ବଡ଼ ଦୋଷ ଅଟେ ରାଜନ ମନେ କର ।
ଏକା ପଙ୍କ୍ତିରେ ସମାନ ହୋଇ ବସି
ଭୁଞ୍ଜିଲେ ଆୟୁ ଶିରୀ ବଢ଼ଇ ବିଶେଷି ।
ଉତ୍ତମଦ୍ରବ୍ୟ ମିଛ ଭୃତ୍ୟଙ୍କୁ ନ ଦେଇ
ଯେ ଭୋଜନ କରଇ ମହାଦୋଷୀ ସେହି ।

ପତିତ ଲୋକକଥା ସଂସର୍ଗ ବର୍ଜନ
କରୁଥିବ ହେବ ଯେ ଜ୍ଞାନବନ୍ତ ଜନ ।
ବୃଦ୍ଧ ଜ୍ଞାତି ଦୀନ ମିତ୍ରଙ୍କୁ ଘରେ ଠାବ
ଦେଉଥିବ ହୃଦରେ ରଖିକରି ଭାବ ।
ଶୁଆ ଶାରୀ ଅପରପା ଘରରେ ଥିଲେ
ହେବ ଶୁଭ ବୋଲିଣ ବିଚାରିବ ଭଲେ ।
କପୋତ ଗୃଧ୍ର ଶିବ ଆସିଲେ ଘରକୁ
ଦାନ କରିଣ ଦେବ ଧନ ବ୍ରାହ୍ମଣଙ୍କୁ ।
ବଡଲୋକମାନଙ୍କ ସଙ୍ଗେ ସଙ୍ଗୀ ହୋଇ
ତାହାଙ୍କ ଗୁପ୍ତ ଦାଣ୍ଡେ ନ କହିବ ଯାଇ ।
କହିଲେ ନିକଟରେ ବାଜେ ବେକେ ଖଣ୍ଡା
ଡାକଇ ଯମ ତାକୁ ଆସ ବୋଲି ଭେଣ୍ଡା ।
ସନ୍ଧ୍ୟାବେଳେ ହୋଇଲେ ଶୟନ ଭୋଜନ
ନ କରିବ ଯେହୁ ଜାଣିବାବନ୍ତ ଜନ ।
ଭୁଞ୍ଜି ସାରିଣ ବେଶ ରାତ୍ରକାଳେ ଶ୍ରାଦ୍ଧ
କଲେ ସୁଖୀ ନୁହନ୍ତି ତାହାକୁ ବିବୁଧ ।
ସତକୁଳେ ଜାତ ଲକ୍ଷଣଯୁତ କନ୍ୟା
ବିବାହ ହେବ ହେ ରାଜନ ମହାମନା ।
କଦାଚିତେ ଅଗମ୍ୟା ସ୍ତ୍ରୀଙ୍କୁ ରମଣ
ନ କରିବ, କଲେ ଆୟୁଷ ହୁଏ କ୍ଷୀଣ ।
ଶିର ସ୍ନାନ କରିଲେ ପିତୃଦେବ କାର୍ଯ୍ୟ
ଯେ କରଇ ତାହାର ବଢେ ତେଜ ଓଜ ।
ଜ୍ୟୋତିଷରେ ନିଷେଧ ନକ୍ଷତ୍ର ଯାକରେ ।
ନ କରିବ କାମ୍ୟ ଶ୍ରାଦ୍ଧକୁ ନିଃଶଙ୍କରେ ।
ପୂର୍ବ ଉତ୍ତର ଦିଗେ ମୁଖ କରି କ୍ଷୌର
ହେଲେ ଅୟୁଷ୍ମନ୍ତ ହୁଅଇ ଜାଣ ନର ।
କ୍ଷୌର ହୋଇ ଯେ ଜନ ନ କର ସ୍ନାନ
ଆୟୁଷ ହୀନ ତାର ହୁଏ ନିଶ୍ଚେ ଜାଣ ।
ପରର ଅପବାଦ ନ କହିବ ମୁଖେ
କହଇ ଯେ ପନ୍ତେ ପ୍ରାନ୍ତେ ସେ ମହାଦୁଃଖେ ।
କାଣୀ ଖୋଟି କୁଜ ଯେ କନ୍ୟାକୁ ଛାଡ଼ିବ
ସୁନ୍ଦର ହେବା କନ୍ୟା ଲୋଡ଼ି ବିଭାହେବ ।
ନିକୃଷ୍ଟବର୍ଣ୍ଣ ଉତ୍କୃଷ୍ଟାକୁ ଛାଡ଼ିଦେଇ
ସଦୃଶରେ ବିଭା ହୋଇବ ପ୍ରୀତି ବହି ।
ଅପସ୍ମାର ରୋଗୀର ଘରରୁ କନ୍ୟାକୁ
ଆଣି ବିଭାହେଲେ ଲଭଇ ସେ ରୋଗକୁ ।

ସବୁକାଳରେ ଦାର ରକ୍ଷାକୁ କରିବ
ଦାରଠାରୁ ଯେ ଈର୍ଷାଭାବକୁ ଛାଡ଼ିବ ।
ପରନାରୀ ସଙ୍ଗେ ଯେ କରଇ ସୁରତି
କୃମି ଜନ୍ମ ତାହାକୁ ଦିଏ ଜନୁପତି ।
ଅନିମନ୍ତ୍ରିତ ହେଲେ ନଯିବ ଯାଗକୁ
ଗଲେ ନ କରନ୍ତି ଯାଗରେ ଆଦରକୁ ।
ଏକା ହୋଇଣ ରାତ୍ର ଦିବସରେ ବାଟ
ଯେ ଚାଲଇ ତାହାକୁ ପଡଇ ସଙ୍କଟ ।
ମାତା ପିତା ଗୁରୁ ଯେ ବୋଲୁଥିବେ ଯାହା
ନ ବିଚାରି କିଛିହିଁ କରୁଥିବ ତାହା ।
ଧନୁର୍ବେଦ ବେଦରେ ବ୍ରହ୍ମଚାରୀ ହୋଇ
ଯତନ କରୁଥିବ ଶିଖିବାର ପାଇଁ ।
ହାତୀ ଘୋଡ଼ା ଚଢ଼ିବା କାର୍ଯ୍ୟେ ନିରଳସ
ହୋଇଣ ରହିଥିବ ତହିଁରେ ମାନସ ।
ରାଜା ଯେବେଟି ଶତ୍ରୁ ଭୃତ୍ୟଙ୍କର ଅଧୃଷ୍ୟ
ହୁଅଇ ଧନ୍ୟ ତାକୁ ବୋଲନ୍ତି ମନୁଷ୍ୟ ।
ଯୁକ୍ତି ଶାସ୍ତ୍ର ଶବଦ କଳାଶାସ୍ତ୍ରରେ ଜ୍ଞାନ—
ହୋଇବାରଟି ନୃପ ଅଟଇ ବିଧାନ ।
ଏ ବାହାରେ ଶାସ୍ତ୍ରରେ ପୁରାତନ କଥା
ନିତି ଶୁଣୁଥିବ ହୃଦରୁ ଛାଡ଼ି ବ୍ୟଥା ।
ପତ୍ନୀ ରଜସ୍ୱଳା ହୋଇଲେ ଦିନଚାରି
ତ୍ୟାଗ ତାକୁ କରିବ ଧର୍ମକୁ ବିଚାରି ।
ଚତୁର୍ଥ ଦିବସରେ ରାତ୍ରିରେ ସଙ୍ଗମ
କଲେ ଦୋଷ ନାହିଁ ହେ ନୃପତି ଉତ୍ତମ ।
ଆପଣା ସମର୍ଥ୍ୟକୁ ଚାହିଁ ଯାଗ ଦାନ
କରୁଥିବ ନିତି ଜାଣିବାବନ୍ତ ଜନ ।
ଅନ୍ତଃକାଳ ହୋଇଲେ ହୋଇ ବ୍ରହ୍ମଚାରୀ
ବନମଧ୍ୟେ ଯାଇ ରହିବ ଘର କରି ।
ସଂକ୍ଷେପେ ମୋଠାରୁ ଶୁଣିଲ ଆୟୁଷ୍କର —
କର୍ମକୁ ହେ ପାଣ୍ଡବକୁଳ ନରବର ।
ଆଚାରଠାରୁ ବଡ଼ ହୋଇ ବିଚାରିଲେ
କଥା ନାହିଁ ଆହେ ବିଜନ ଜାଣ ଭଲେ ।
ଆଚାର ସକାଶରୁ ଆୟୁ ଶିରୀ କାମ
ସିଦ୍ଧି ହୁଅଇ ଆହେ ନୃପତି ଉତ୍ତମ ।
ପ୍ରାଣୀଙ୍କ ହିତପାଇଁ ପୂର୍ବେ ଚଉବାହା
କହିଛନ୍ତି ଏହା ପାଣ୍ଡବକୁଳ ନାହା ।

ଆପୁଷ୍କର ଆଗ୍ଭର କଥା ହେଲା ଶେଷ
କହଇ କୃଷ୍ଣସିଂହ ନରକୁଳ-ଈଶ ।

—*—

## ଜ୍ୟେଷ୍ଠ ଓ କନିଷ୍ଠର କର୍ତ୍ତବ୍ୟ

ଯୁଧିଷ୍ଠିର ବୋଇଲେ ଜ୍ୟେଷ୍ଠ କନିଷ୍ଠର
ବେଭାର କହ ମୋତେ ରଥୀଙ୍କ ଶେଖର ।
ଭୀଷ୍ମ ବୋଇଲେ ହେ ତୁମ୍ଭେ ତ ଅଟ ଜ୍ୟେଷ୍ଠ
ପାଳନା କର ଭାଇମାନେ ତ କନିଷ୍ଠ ।
ଗୁରୁଙ୍କର ଦୋଷକୁ ଶିଷ୍ୟଜନ ମୁଖେ
କହିଲେ ପଡ଼ଇଟି ଯାଇ ମହାଦୁଃଖେ ।
କୁଳର ଭଲମନ୍ଦ ଲାଗଇ ଜ୍ୟେଷ୍ଠକୁ
କନିଷ୍ଠ ତ ପାଳଇ ଜ୍ୟେଷ୍ଠର ଆଜ୍ଞାକୁ ।
ଜ୍ୟେଷ୍ଠଭାଇ ଆଗ ଛାଡ଼ିଲେ କନିଷ୍ଠକୁ
କିଛି ନୋହେ ବୋଲିଟି ବୋଲନ୍ତି ଜ୍ୟେଷ୍ଠକୁ ।
ସେହି ଦୋଷେ ଜ୍ୟେଷ୍ଠର ଗୁଣ ଉଡ଼ିଯାଏ
ପାଣି ବେଗୁନିଆଁ ଫୁଲଟିର ପରାଏ ।
କନିଷ୍ଠ ହୋଇ ଜ୍ୟେଷ୍ଠଲୋକେ ଅତିକ୍ରମ
କଲେ ଯେ ନାଶଯାଏ ଅରଜ ଅଧର୍ମ ।
କନିଷ୍ଠକୁ ଜନେ ଭାଗ ନ ଦେଇ ଜ୍ୟେଷ୍ଠ
ଭୋଗକଲେ ଜଗତେ ବୋଲଏଟି ନଷ୍ଟ ।
ବାବୁ ସାନପୁଏ ଅଧିକ ଊଣା କରି
ଭାଗ ଦେଲେ ହୁଅଇ ନର୍କେ ଅଧିକାରୀ ।
ପିତା ଆଚାର୍ଯ୍ୟ ପ୍ରତି ମାତା ଅଟେ ବଡ଼
ତା ସେବାରେ କେବେହେ ନକରିବ ହୁଡ଼ ।
ବାବୁଗଲା ଉତ୍ତାରୁ ଘର ଅଧିକାରୀ
ଜ୍ୟେଷ୍ଠ ପୁଅ ହୋଏ ପାଣ୍ଡବ-ଦଣ୍ଡଧାରୀ ।
ସାନପୁଅମାନେ ଯେ ସେବିଣ ତାହାକୁ
ସାହୁଥାନ୍ତି ଦିନଟି ଲଭି ହରଷକୁ ।
ଘରେ ଯେବେ ଜ୍ୟେଷ୍ଠ ଭଉଣୀ ରହିଥାଏ
ମାତୃ ପରି ତାହାକୁ ମାନନ୍ତି ସଭିଏ ।
ଜ୍ୟେଷ୍ଠଭାଇର ଭାରିଯାକୁ ମାତୃପରି
ମାନିଥିବ କନିଷ୍ଠ ଆହେ ଦଣ୍ଡଧାରୀ ।
ଏହିରୂପରେ ଜ୍ୟେଷ୍ଠ କନିଷ୍ଠ ବିଧାନ
ଯେତେ ଅଛି କହି କେ ପାରିବ ରାଜନ ।
ହେଲା ଜ୍ୟେଷ୍ଠ କନିଷ୍ଠ ବୃତ୍ତି ସମାପତି
କହଇ କୃଷ୍ଣସିଂହ ଧରାକୋଟ-ପତି ।

## ଉପବାସ ଫଳ

ଯୁଧିଷ୍ଠିର ବୋଇଲେ ଗଙ୍ଗାନନ୍ଦନଙ୍କର—
ଉପବାସେ କାହିଁକି ବୁଦ୍ଧି ରଥୀବର—
ହେଉଅଛି ଏହା କହ ତ ମୋର ଆଗେ
ସଂଶୟ ହେଉଅଛି ମୋର ହୃଦଭାଗେ ।
ଉପବାସ କଲେ ହୁଅଇ କେଉଁ ଫଳ
ଏହା ମୋତେ କହିବ ଶାନ୍ତନୁଙ୍କ ବାଳ ।
ଉପବାସ କରିଣ ରହିଥିବ ଯେହି
କି ଦେବ ଦ୍ୱିଜ କରେ ପ୍ରୀତିକି ସେ ବହି ।
ଭୀଷ୍ମ ବୋଇଲେ ଆହେ ଅଙ୍ଗିରଙ୍କୁ ପୃଚ୍ଛି
ଉପବାସ ବିଧିଯାକ ମୁଁ ଜାଣିଅଛି ।
ବ୍ରାହ୍ମଣ କ୍ଷତ୍ରିୟର ଉପବାସ ଧର୍ମ
ଅଟଇ ଏ ଦୁଇ ତିନି ଦିନ ନରୋତ୍ତମ ।
ବୈଶ୍ୟ ଶୂଦ୍ରଙ୍କର ଏ ଉଚିତ ନୁହଇ
ଏଥିରେ କହିବାକୁ କଥା କିଛି ନାହିଁ ।
ଦିନେ ଛଡ଼ା ଭକ୍ଷଣ କରିବା ବୈଶ୍ୟର—
ଶୂଦ୍ରର ଧର୍ମ ହେ ରାଜନ ମନେ କର ।
ପଞ୍ଚମୀ ଷଷ୍ଠୀ ପୌର୍ଣ୍ଣମୀରେ ଉପବାସ
ଯେ କରୁଛି ତା ଧନ ବଢ଼ଇ ବିଶେଷ
କୃଷ୍ଣପକ୍ଷ ଅଷ୍ଟମୀ ଚତୁର୍ଦ୍ଦଶୀ ଦିନ
ନ ଖାଇଲେ ହୁଅଇ ବଳବନ୍ତ ଜନ ।
ମାର୍ଗଶିର ମାସରେ ଏକାବେଳେ ଖାଇ
ଯେ ରହିଛି ବ୍ୟାଧି ପାପରୁ ମୁକ୍ତ ସେହି ।
ପୌଷମାସରେ ବେଳେ ଖାଅଇ ଯେ ଅନ୍ନ
କୀର୍ତ୍ତି ଲଭି ଲଭଇ ସୁନ୍ଦର-ବରନ ।
ମାଘମାସେ ଏକାବେଳକେ ଯେ ଭୁଞ୍ଜଇ
ଉଚ୍ଚକୁଳେ ଜନ୍ମ ମହତ ଆଚରଇ ।
ଫାଲଗୁନ ମାସରେ ଖାଇଲେ ଏକାବେଳେ
ସ୍ତ୍ରୀମାନେ ନାରୀଗଣ ତାକୁ ସ୍ନେହ ତୋଳେ
ଚୈତ୍ରମାସେ ବେଳେ ଖାଇଲେ ସୁନାମଣି
ଘରରେ ରଖିଥାଏ କହି ପୁଚ୍ଛି ବାଣୀ ।
ବୈଶାଖରେ ଥରେ ଭୋଜନ କଲେ ନର
ଜ୍ଞାତିଙ୍କରେ ପାଏ ସେ ବହୁତ ଆଦର ।
ଜ୍ୟେଷ୍ଠମାସେ ବେଳେ ଭୁଞ୍ଜିଲେ ଐଶ୍ୱର୍ଯ୍ୟ
ଉପସ୍ଥିତ ହୋଏ ହେ ଜାଣ ମହାରାଜ ।

ଆଷାଢ଼ରେ ବେଳେ ଖାଇଲେ ଧନ ଧାନ୍ୟ
ମୁହାଦରେ ମଧ୍ୟ ହୁଅଇ ପରିପୂର୍ଣ୍ଣ ।
ଶ୍ରାବଣରେ ବେଳେ ଖାଇଲେ ବହୁପୂଜା
କରଇଛି ତାହାକୁ ନେଇକରି ରାଜା ।
ଭାଦ୍ରବରେ ଏକବଳତ କଲେ ଧନ
ବହୁତ ଘରେ ଆଣି ରଖଇଛି ଜନ ।
ଆଶ୍ୱିନମାସେ ଏକାବେଳେ ଯେ ଭୁଞ୍ଜଇ
ହାତୀ ଘୋଡା ପିଠିରେ ବସେ ହନ୍ତ ଯାଇ ।
କାର୍ତ୍ତିକରେ ବେଳେ ଖାଇଲେ ହୋଏ ସୁର
ଭୋଗ କରଇ ସେ ବହୁତ ନକ୍ଷତ୍ରର ।
ମାସକରେ ପକ୍ଷେ ନ ଖାଇ ପକ୍ଷେ ଖାଏ
ଯେଉଁ ନର, ତାହାର ବହୁ ପୁତ୍ର ହୋଏ ।
ବାରବରଷ ଯେହୁ ତନୋଟି ଦିବସ
ମାସକୁ ମାସ କରୁଥାଏ ଉପବାସ ।
ମଲେ ସେ ରାଜକୁଳେ ଜନମ ହୁଅଇ
ରାଜା ହୋଇ ଅବନୀ ଭୋଗକୁ କରଇ ।
ଦିବସରେ ରାତରେ ଭୁଞ୍ଜିଛି ବରଷ
ରହି ଲୋକ ମଲେ ଲଭଇ ସ୍ୱର୍ଗବାସ ।
ମୋହିନୀ ଅପସରାଙ୍କଠାରୁ ରତି ଭୋଗ
କରଇ ସେ ସରାଗ-ମନରେଛି ଆଗ ।
ଏଥୁଅନନ୍ତରେ ବ୍ରହ୍ମ ଲୋକକୁ ଯାଇ
ସହସ୍ରେ ସମ୍ୱତ୍ସର ତହିଁରେ ରହଇ ।
ଇହଲୋକେ ବା ଯେବେ ହୁଅଇ ଜନମ
ଖ୍ୟାତ କରେ ଲୋକ ମହତ ମହାତମ ।
ବରଷେ ଏକାବେଳେ ଖାଇ ଯେ ରହଇ
ସହସ୍ରଦଶବର୍ଷ ସ୍ୱର୍ଗରେ ବସଇ ।
ବରଷେ ପର୍ଯ୍ୟନ୍ତେ ଯେ କରେ ଚତୁର୍ଥ
ଜାଣ ସେ ପାଏ ସ୍ୱର୍ଗ ପୁରେ ପୁରୁଷାର୍ଥ ।
ବରଷେ ଷଷ୍ଠକାଳ କଲେ ସ୍ୱରଗୁଣ
ସହସ୍ରଦଶକାଳ ସ୍ୱର୍ଗେ ରହେ ଜାଣ ।
ଅଷ୍ଟକାଳ କଲେ ଗୋମେଧ ଫଳପାଏ
ପାଞ୍ଚସହସ୍ର ସେ ବରଷ ସ୍ୱର୍ଗେ ରହେ ।
ପକ୍ଷେ ଥରେ ବରଷେ ଗ୍ରାସ କଲେ ନର
ଷାଠିଏସହସ୍ର ବରଷ ହୋଏ ସୁର ।
ମାସକୁମାସ ସମ୍ୱତ୍ସରର ପାଣି ପିଇ
ରହିଛି ଯେ ନର ସ୍ୱର୍ଗପୁରରେ ଯାଇ ।
ସତୁରି ସମ୍ୱତ୍ସର କରେ ଦ୍ରବ୍ୟ ଭୋଗ
ତଦନ୍ତେ ଜନମ ହୁଏ ମହାଭାଗ ।
ମାସେ ସେ ଅନଶନ ବ୍ରତକୁ କରଇ
ଲକ୍ଷେ ବରଷ ସେହି ସ୍ୱର୍ଗରେ ରହଇ ।
ବ୍ୟାଧିମନ୍ତ ହୋଇ ନ ଖାଇ ଯେହୁ ମରେ
ତାହାକୁଛି ପୂଜା କରନ୍ତ ସ୍ୱର୍ଗ ପୁରେ ।
ଦୁର୍ବଳ ବ୍ୟାଧିମନ୍ତ ଘାଉଆ ଜନଙ୍କୁ
ଯେ ପାଳୁଛି,ଯାଉଛି ସେ ମଧ୍ୟ ସ୍ୱର୍ଗକୁ ।
ମାତାଠାରୁ ସୁହୃଦ ବେଦଠାରୁ ଶାସ୍ତ୍ର
ଅନଶନୁ ତପ ନାହିଁ ହେ ପାଣ୍ଡୁ ପୁତ୍ର ।
ଉପବାସ କରଣ ଋଷି ଦେବକୁଳ
ସ୍ୱର୍ଗ ଭୋଗ କରୁଛନ୍ତିଛି ନରପାଳ ।
ଏ ଚରିତକୁ ଯେଉଁ ଲୋକ ବଖାଣଇ
ଦୁଃଖ ତାକୁ ସ୍ୱପନେ ଛୁଇଁ ନ ପାରଇଁ ।
ସବୁ ପାତକରୁ ସେ ହୁଅଇ ମୁକତ
ଅନ୍ତେ ପୂଜା କରନ୍ତି ନେଇ ପୁରୁହୂତ ।
ଯୁଧିଷ୍ଠି ବୋଇଲେ ଦରିଦ୍ର ଲୋକ ଯାଗ
କରିତ ନ ପାରିବ ଏ ଅବନୀ ଭାଗ ।
କି କଥା କଲେ ସେ ପାଇବ ଯାଗ ଫଳ
ଏହା ମୋତେ କହ ତ ଶାନ୍ତନୁଙ୍କ ବାଳ ।
ଭୀଷ୍ମ ବୋଇଲେ ହେ ଅଙ୍ଗିରା ମୋତେ ଯାହା
କହିଅଛନ୍ତି ତାହା ଶୁଣ ନରନାହା ।
ଦିବସେ ରାତରେ ଯେ ଭୁଞ୍ଜେ ଛବରଷ
ତାହାର ହୋଏ ଯାଗଫଳଟି ପ୍ରକାଶ ।
ତିନ ବରଷ ଯେହୁ ଏକା ଥରେ ଭୁଞ୍ଜେ
ଅଗ୍ନି ଷ୍ଟୋମ ଯାଗର ସୁକୃତ ସେ ମଞ୍ଜେ ।
ବରଷେ ଦୁଇଦିନେ ଥରେ ଯେ ଭୁଞ୍ଜଇ
ଅତିରାତ୍ର ଯାଗର ଫଳ ସେ ଲଭଇ ।
ତିନଦିନରେ ଥରେ ଭୁଞ୍ଜିଲେ ବରଷେ
ବହୁତ ସୁନା ଯାଗ ଫଳକୁ ପାଏ ସେ ।
ବାରମାସ ଯାକ ଚତୁର୍ଥ କାଳ କଲେ
ବାଜପେୟ ଯାଗଫଳ ସେ ପାଏ ଭଲେ ।
ପଞ୍ଚମଦିବସରେ ବର୍ଷେ ବେଳେ ଖାଇ
ଯେହୁ ଅଛି ଦ୍ୱାଦଶାହଯାଗଫଳ ପାଇ ।
ଦ୍ୱିକାଳ ସ୍ନାନକରି ଛ' ଦିନରେ ବେଳେ
ଖାଇଲେ ଗବାମୟ ଫଳ ଲଭେ ଭଲେ ।

ସାତଦିନେ ବେଳେ ବରଷେ ଯେ ଖାଅଇ
ବହୁ ସୁନାଯାଗ ଫଳକୁ ସେ କିଣଇ ।
ଆଠଦିନେ ଥରେ ବରଷେ ଯେ ଭୁଞ୍ଜଇ
ପୌଣ୍ଡରୀକଯାଗଫଳକୁ ସେ କିଣଇ ।
ନଅ ଦିନରେ ବରଷେ ଥରେ ଖାଇଲେ
ଲେଖା ହୋଏ ତା ଫଳ ଅଶ୍ୱମେଧ ତୁଲେ ।
ଦଶଦିନ ବେଳେ ଖାଇଲେ ଅଶ୍ୱମେଧ
ସହସ୍ର ଫଳ ତାଙ୍କୁ ଦିଅନ୍ତି ବିବୁଧ ।
ଏଗାରଦିନେ ବେଳେ ଭୁଞ୍ଜିଲେ ସେପରି
ଫଳ ପାଆନ୍ତି ହେ ପାଣ୍ଡବ ଦଣ୍ଡଧାରୀ ।
ବାରଦିନଟିରେ ବେଳାଏ ଯେ ଆହାର
ଖାଏ ସର୍ବମେଧ ଫଳ ହୁଅଇ ତାହାର ।
ତେରଦିନରେ ବେଳେ ଖାଇଲେ ଦେବସୂତ୍ର
ଯାଗଫଳ ପାଏ ହେ ଜାଣ ପାଣ୍ଡୁପୁତ୍ର ।
ଚଉଦଦିନେ ବେଳେ ଭୁଞ୍ଜିଲେ ମହାମେଧ
ଯାଗଫଳ ରହେ ତା ଠାରେ କରି ସଧ ।
ପନ୍ଦରଦିନେ ବେଳେ ବରଷେ ଯେ ଖାଏ ।
ରାଜସୂୟ ଯାର ଫଳକୁ ସେହୁ ପାଏ ।
ଷୋଳଦିନେ ବେଳେ ଖାଇଲେ ନର ଅନ୍ନ
ସୋମଯାଗର ଫଳ ହୁଅଇ ଅଧୀନ ।
ସତରଦିନରେ ଯେ ବେଳାଏ ଭୁଞ୍ଜଇ
ସବୁ ଦେବଙ୍କର ଲୋକେ ସେ ବିହରଇ ।
ଅଠରଦିନେ ଥରେ ଭୁଞ୍ଜେ ଯେବେ ନର
ସାତଲୋକଙ୍କରେ କରଇ ଅଧିକାର ।
ଊଣେଇଶି ଦିନେ ଭୋଜନ ଯେ କରେ
ସେ ମଧ୍ୟ ଯାଇ ସାତଲୋକରେ ବିହରେ ।
କୋଡ଼ିଏ ଦିନ ପୂର୍ଣ୍ଣେ କରେ ଯେ ଭୋଜନ
ଆଦିତ୍ୟ ଲୋକରେ ସେ ଲଭେ ଯାଇ ସ୍ଥାନ
ଏକୋଇଶି ଦିନରେ ଥରେ ଯେ ବରଷେ
ଖାଏ, ସେ ଚନ୍ଦ୍ରଲୋକେ ବସେ ଯାଇ ତୋଷେ
ବାଇଶି ଦିନେ ସମ୍ବତ୍ସରେ ଯେ ଆହାର
କଲେ ବସୁଲୋକଟି ହୁଅଇ ତାହାର ।
ତେଇଶିଦିନେ ଯେ ବରଷେ ବେଳେ ଖାଏ
ପବନ ରୁଦ୍ର ତାଙ୍କୁ ପୂଜନ୍ତିଏ ରାୟେ
ଚବିଶ ଦିନେ ସମ୍ବତ୍ସରେ ହେ ଆହାର
ବେଳେ କରେ ତାଙ୍କୁ ପୂଜନ୍ତି ଦିବାକର ।

ପଚିଶି ଦିନେ ଯେ ବରଷେ ବେଳେ ଖାଏ
ଅମୃତ ଆହାରୀଟି ସ୍ୱର୍ଗେ ସେ ବୋଲାଏ ।
ଛବିଶ ଦିନେ ଯେ ବରଷ ଖାଏ ଅନ୍ନ
ସପ୍ତମରୁତଙ୍କ ଲୋକେ ଯେ କରେ ସ୍ଥାନ
ସତାଇଶି ଦିନେ ବରଷେ ଏକାବେଳେ
ଖାଇକରି ରହିଲେ ରହେ ସ୍ୱର୍ଗଆଳେ ।
ଅଠାଇଶି ଦିନରେ ବେଳେ ଯେ ଆହାର
ବରଷେ କରେ ଋଷିଲୋକ ହୋଏ ତା'ର ।
ଅଣତିରିଶି ଦିନେ ବେଳେ ଯେ ଭୁଞ୍ଜଇ
ବରଷେ, ତା ପୁଣ୍ୟ କହି ମୁଁ ନ ପାରଇ
ତିରିଶି ଦିନେ ଥରେ ଗ୍ରାସ କଲେ ଅନ୍ନ
ବରଷେ ମାଡ଼ିବସେ ବ୍ରହ୍ମାଙ୍କ ଆସନ ।
ଆହେ ଯୁଧିଷ୍ଠିର ପାଣ୍ଡବ-ନରପତି
ଏହିରୂପେ ବ୍ରତ ଯେ କରେ ବହି ପ୍ରୀତି ।
ମଣି ରତ୍ନ-ସଂଯୁକ୍ତ ହଂସଯୋଗ୍ୟ-ଯାନେ
ବସି ବିହରଇ ସେ ସୁଖେ ସ୍ୱର୍ଗସ୍ଥାନେ ।
ଏ ବାହାରେ ଆଦିତ୍ୟ ବରୁଣ କୁବେର
ବସୁ ରୁଦ୍ର ମରୁତ ଯକ୍ଷ ବୈଶ୍ୱାନର ।
ଋଷି ବ୍ରହ୍ମା ଆଦି ଯେତେକ ଅଛି ଲୋକ
ଏମାନଙ୍କ ମଧ୍ୟରେ ହୁଅନ୍ତି ନାୟକ ।
ଶତକୋଟି ପଦ୍ମ ସହସ୍ର ସମ୍ବତ୍ସର—
ରହିଛି ସେ ଲୋକରେ ଭୟ କରି ଦୂର ।
ଅପସରୀ କିନ୍ନରୀ ଗାନ୍ଧର୍ବୀ ସୁରତି
ସମ୍ଭୋଗ କରୁଥାଏ ନିତି ବହି ପ୍ରୀତି ।
ଦିନକର ଠାରୁ ତିରିଶିଦିନ ଯାଏ
କ୍ରମରେ ସୁକୃତ ଅଧିକ ଅଟେ ରାୟେ ।
ପଚାରିବାରୁ ତୁମ୍ଭେ ଜାଣିଥିଲି ଯାହା
କହିଲି ନିଃସଂଶୟ କରି ଜାଣ ତାହା ।
ଏଠାରେ ହେଲା ଉପବାସ-ବିଧି ଶେଷ
କହଇ କୃଷ୍ଣସିଂହ ଧରାକୋଟ-ଈଶ ।

—*—

## ତୀର୍ଥ ଓ ଉପବାସ କୀର୍ତ୍ତନ

ଯୁଧିଷ୍ଠିର ବୋଇଲେ ସବୁ ତୀର୍ଥଙ୍କରେ
ବଡ଼ କେ ଅଟଇ ତା କହି ମୋ ଆଗରେ ।
ଭୀଷ୍ମ ବୋଇଲେ ହେ କହିବା ମହାଶୁଦ୍ଧି—
ତୀର୍ଥଙ୍କୁ ରାୟେ ଧୀର କରି ଶୁଣ ବୁଦ୍ଧି ।

ସତ୍ୟକୁ ଆଚରି ମାନସ ତୀର୍ଥେ ସ୍ନାନ
କରିବ, ଯେ ହେବ ଜାଣିବାବନ୍ତ ଜନ ।
ମମତା ଅହଙ୍କାର ଯାହାଠାରେ ନାହିଁ
ତୀର୍ଥ ବୋଲିକରି ତାହାକୁ ଜାଣ କହି ।
ଇନ୍ଦ୍ରିୟ ନିଗ୍ରହେ ଲୋକରି ତୀର୍ଥ ସ୍ନାନ
ସରି ନୋହେ ଜାଣ ହେ ପାର୍ଥିବରାଜନ ।
ମନ ଚରିତ ଶୁଦ୍ଧ ପ୍ରଭୃତି ଜ୍ଞାନଶୁଦ୍ଧି
ଅଧିକ ବୋଲି ସିନା କହିଛନ୍ତି ବିଧି ।
ଶରୀର ପରି ମହୀଦେଶେ କେତେ ଶୁଦ୍ଧ
ତୀର୍ଥ ଅଛି ଜାଣେ ହେ ନୃପକୁଳ ସିଦ୍ଧ ।
ତୀର୍ଥଙ୍କ କୀର୍ତ୍ତନେ ପାତକ ହୋଏ ଧ୍ୱଂସ
ଅନ୍ତଃକାଳେ ଯାଇ ହୁଅଇ ସ୍ୱର୍ଗ ବାସ ।
ସାଧୁଏ ପରିଗ୍ରହ କରିବାରୁ ମହୀ
ତୀର୍ଥକୁ ପୁଣ୍ୟ ବୋଲିକରି ଜାଣ କହି ।
ଦେହ ଶଉଚ ତୀର୍ଥ ଶଉଚ ଯେ କରେ
ତା'ର ମୁକତି କହି ନୁହଇ ତ୍ରୁଣ୍ଡରେ ।
ଯୁଧିଷ୍ଠିର ବୋଇଲେ ଉପବାସଙ୍କରେ
କେ ଅଧିକ ଫଳ ତା କହ ମୋ ଆଗରେ
ଭୀଷ୍ମ ବୋଇଲେ ବ୍ରହ୍ମା ଯାହା କହିଛନ୍ତି ।
ଏ ବିଷୟେ ତାହା କହିବା ନରପତି ।
ମାର୍ଗଶିର ମାସର ଦୁଆଦଶୀ ଦିନ
ଉପବାସ କରି ଯେ କେଶବ-ପୂଜନ ।
କରଇ ତା'ର ଫଳ ଅଶ୍ୱମେଧ ସରି
ହୁଅଇ ହେ ଜାଣ ପାଣ୍ଡବ ଦଣ୍ଡଧାରୀ ।
ପୌଷମାସ ଦ୍ୱାଦଶୀଦିନ ଉପବାସ
କରି ଯେ ପୂଜେ ନାରାୟଣ ଦେବ ଈଶ ।
ବାଜପେୟଫଳ ଲଭି ସେ ସ୍ୱର୍ଗ ଯାଏ
ଆଦର କରନ୍ତି ତାକୁ ଦେବ ସମୂହେ ।
ମାଘମାସ ଦ୍ୱାଦଶୀଦିନ ଉପବାସ
କରି ମାଧବଙ୍କୁ କରେ ଯେ ପୂଜି ତୋଷ ।
ରାଜସୂୟର ଫଳ ତାହାରଠି ହୋଇ
ସେହି ବଳେ ସେ କୁଳଯାକ ଉଦ୍ଧାରଇ ।
ଫାଲ୍‌ଗୁନମାସ ଦ୍ୱାଦଶୀରେ ଗୋବିନ୍ଦଙ୍କୁ
ପୂଜିଲେ ପାଏ ଅତିରାତ୍ରର ଫଳକୁ ।
ଚଇତ୍ର ଦ୍ୱାଦଶୀରେ ଉପବାସ କରି
ବିଷ୍ଣୁ ଦେବତାଙ୍କୁ ପୂଜିଲେ ଦଣ୍ଡଧାରୀ

ପୌଣ୍ଡରୀକ ଯୋଗଫଳକୁ ଲଭି ନର
ମାଡ଼ିବସେ ଯାଇ ସୁଖରେ ସ୍ୱର୍ଗପୁର ।
ବୈଶାଖ ଦ୍ୱାଦଶୀରେ ମଧୁସୂଦନଙ୍କୁ
ଉପବାସ କରିଣ ପୂଜିଲେ ପ୍ରାଣକୁ ।
ତାରଇଟି ପାଇଣ ଅଗ୍ନିଷ୍ଟୋମ ଫଳ
ମୋ କହିବାରୁ ଜାଣ ପାଣ୍ଡବ ନୃପାଳ ।
ଜ୍ୟେଷ୍ଠମାସର ଦ୍ୱାଦଶୀରେ ଉପବାସ
କରି ତ୍ରିବିକ୍ରମେ ପୂଜାରେ କଲେ ତୋଷ ।
ଗୋମେଧ ଯାଗଫଳ ପାଇ ସ୍ୱର୍ଗଆଳ
ଲଭଇ, ପୂଜା ତହିଁ କରନ୍ତି ଦିକ୍‌ପାଳ ।
ଆଷାଢ଼ ଦ୍ୱାଦଶୀରେ ଉପବାସ କରି
ବାମନଙ୍କୁ ଯେହୁ ପୂଜନ୍ତି ଦଣ୍ଡଧାରୀ ।
ନରମେଧ ଯାଗଫଳ ହୋଏ ତାର
ଏହି କଥାରେ କିଛି ସନ୍ଦେହ ନ କର ।
ଶ୍ରାବଣ ଦ୍ୱାଦଶୀରେ କରି ଉପବାସ
ଶ୍ରୀଧରଙ୍କୁ ପୂଜିଲେ ଲଭେ ସ୍ୱର୍ଗ ବାସ ।
ଭାଦ୍ରବ ମାସ ଦ୍ୱାଦଶୀରେ ହୃଷୀକେଶ
ଦେବଙ୍କୁ ଯେ ପୂଜଇ କରି ଉପବାସ ।
ତାହା ଧର୍ମ ବଚନେ ନ ପାରିବି କହି
ସୌତ୍ରାମଣିଯାଗ ଫଳକୁ ପାଏ ସେହି ।
ଆଶ୍ୱିନ ଦ୍ୱାଦଶୀରେ କରି ଉପବାସ
ନମଇଁ ଯେ ପଦ୍ମନାଭଙ୍କ ପାଦଦେଶ ।
ପୂଜା କରିଣ ଯଥାବିଧିରେ ରାଜନ
ଗୋଦାନ ଫଳ ହୋଏ ତାହାରଠି ସେନ ।
କାର୍ତ୍ତିକ ଦ୍ୱାଦଶୀରେ ଯେ ପୂଜେ ଶ୍ରୀଧର
ଉପବାସେ ହୁଏ ମହତ ଫଳ ତାର ।
ଏହିରୂପେ ବରଷେ ଯେ ପୂଜା କରିଛି
ବହୁତ ସୁନାଯାଗ ଫଳ ସେ ଲଭିଛି ।
ଏ ବ୍ରତ ସମାପତି ହେବ ଯେଉଁ ଦିନ
ସେହି ଦିନ କରିବ ବ୍ରାହ୍ମଣ ଭୋଜନ ।
ଏଥିରୁ ବଡ଼ ହୋଇ ଉପବାସ ନାହିଁ
ଆପଣେ ବିଷ୍ଣୁ କହିଛନ୍ତି ଶ୍ରୀମୁଖରେ କହି ।
ବିଷ୍ଣୁନାମ ଦ୍ୱାଦଶୀ ହେଲା ଏଠି ଶେଷ
କହଇ କୃଷ୍ଣସିଂହ ନରକୁଳ ଈଶ ।

—※—

## ନାରୀଙ୍କର ବସ୍ତ୍ର-ଅଙ୍ଗ-ପୂଜାବିଧି

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ସ୍ତ୍ରୀଙ୍କର ରୂପ ସୌନ୍ଦର୍ଯ୍ୟ ମୋତେ କହ ।
ଭୀଷ୍ମ ବୋଇଲେ ଆହେ ମାର୍ଗଶିର ମାସେ
ମୂଳାନକ୍ଷତ୍ର ରେ ହରିଙ୍କ ପାଦ ତୋଷେ ।
ପୂଜାଏ ଯେ ନାରୀ ସୌଭାଗ୍ୟ ରୂପକାରୀ —
ହୁଅଇ ଜାଣ ହେ ପାଣ୍ଡବ ଦଣ୍ଡଧାରୀ ।
ରୋହିଣୀ ନକ୍ଷତ୍ରରେ ବସ୍ତ୍ରଙ୍କର ଜଙ୍ଘ
ପୂଜିଲେ ଲଭନ୍ତି ନାରୀଏ ପୁଣ୍ୟ-ସଙ୍ଘ ।
ଅଶ୍ୱିନୀରେ ଦୁଇ ଶକ୍ରାକ ପୂଜାକଲେ
ମହତ ଫଳ ନାରୀ ଲଭଇଟି ଭଲେ ।
ଉତ୍ତର ପୂର୍ବାଷାଢ଼ା ନକ୍ଷତ୍ରେ ଉରୁକୁ
ଦୁଇଫାଲ୍‌ଗୁନୀ ନକ୍ଷତ୍ରରେ ଗୁହ୍ୟକୁ ।
କୃତ୍ତିକାରେ କଟୀ, ଉଦର ଅନୁରାଧା
ଦୁଇଭାଦ୍ରପଦେ ନାଭିକି ବହି ଶ୍ରଦ୍ଧା ।
ପୂଜାଏ ଯେଉଁନାରୀ ହୁଏ ପୁଣ୍ୟକାରୀ
ବୋଲଣ ଜାଣ ହେ ପାଣ୍ଡବ ଦଣ୍ଡଧାରୀ ।
ବିଶାଖାରେ ବାହୁ, ହସ୍ତାରେ ଯେ ହସ୍ତକୁ
ପୁନର୍ବସୁ ନକ୍ଷତ୍ରେ ଅଙ୍ଗୁଳିମାନଙ୍କୁ ।
ଅଶ୍ଳେଷାରେ ଯେ ନଖ,ଜ୍ୟେଷ୍ଠାରେ ଗ୍ରୀବାକୁ
ଶ୍ରବଣାରେ ଶ୍ରବଣ, ପୁଷ୍ୟାରେ ମୁଖକୁ ।
ସ୍ୱାତିରେ ଦନ୍ତ ଓଷ୍ଠ ମଘାରେ ନାସିକା
ହାସ ଶତଭିଷାରେ ପୂଜାଇବ ଏକା ।
ରେବତୀ ମୃଗଶିରା ଏଥେ ଦୁଇ ଆଖି ।
ଧନିଷ୍ଠାରେ ଯେ ପୃଷ୍ଠ ପୂଜାଇବ ଦୁଃଖୀ—
ନୋହିକରଣ ଯେଉଁ ସୁମୁଖୀ-ରତନ
ତାହାର ସୁକୃତ ଅଧିକ ହୋଏ ଜାଣ ।
ଚିତ୍ରାରେ ଲଲାଟକୁ ହ ଜାରେ ଶିରକୁ
ଆର୍ଦ୍ରାରେ ବେଳକୁ ପୂଜାଇ ଚୋଖକୁ-
ଲଭଣ ଯେଉଁ ନାରୀ ପତି ସେବା କରେ
ମଲେ ଖୋଜ ତାହାଙ୍କୁ ନଅନ୍ତି ନାକରେ ।
ଏରୂପେ ନକ୍ଷତ୍ରଙ୍କେ ଯାଶ ପୂଜା ବିଧି
ଗିଅ ଦେବ ହ ଜଙ୍କୁ ଲେଖିଅଛୁ ବ୍ୟାଧି ।
ଘିଅ ଦେଲେ ବ୍ରତ ନୋହେ ତାର ହାନି
ମହତ ଫଳ ଲଭନ୍ତି ନାରୀଜନ ।

ବସ୍ତ୍ରଙ୍କ ଅଙ୍ଗ ପୂଜା-ବିଧି ହେଲା ଶେଷ
କୃଷ୍ଣସିଂହ ନରେଶ ସ୍ମରେ ରାଧା ଈଶ ।

—*—

## ଜୀବର କର୍ମଫଳ ଭୋଗ

ଯୁଧିଷ୍ଠିର ବୋଇଲେ ଦେହ ଛାଡ଼ି ଲୋକ
ଯାଇଅଛନ୍ତି ଦେଖୁଥାଉଁ ତ ଅନେକ ।
କି କଲେ କି ନ କଲେ ସୁଖ ଦୁଃଖ ଦୁଇ
ଭୋଗକରେ ତା ମୋତେ କହତ ବତାଇ ।
ଭୀଷ୍ମ ବୋଇଲେ ଆହେ ଦେଖ ବୃହସ୍ପତି
ଆସୁଛନ୍ତି ପାଣ୍ଡବରାଜ, ତୁମ୍ଭ କତି ।
ତାହାଙ୍କୁ ପଚାର ସେ କହିବେ ତୁମ୍ଭକୁ
ଯାଉ ନାହିଁ ମନ ଏହା କହିବାକୁ ।
ଦେବଙ୍କର ଗୁରୁଙ୍କୁ ଦେଖି ନୟନରେ
ପୂଜିଲେ ପାଣ୍ଡୁସୁତମାନେ ସୁମନରେ ।
ଆସନେ ବସାଇଁ ପାଣ୍ଡବ-ଦଣ୍ଡଧାରୀ
ପଚାରିଲେ ଭୀଷ୍ମଙ୍କୁ ପଚାରିବା ପରି ।
ବୃହସ୍ପତି ବୋଇଲେ ଲୋକ ଏକା ହୋଇ
ଜନମ ମରଣ ଏ ଦୁହିଁଙ୍କ ଲଭଇ ।
ବନ୍ଧୁମାନେ ଜନ୍ମ ମରଣେ ସୁଖ
କେବଳ କରନ୍ତି ଜାଣ ହେ ନରଶିଖ ।
ପାପ ପୁଣ୍ୟ ଏ ଦୁହେଁ ସାଙ୍ଗରେ ଥାଆନ୍ତି
କର୍ମକୁ ଅନୁରୂପ ଭୋଗକୁ କରାନ୍ତି ।
ଧର୍ମ ସବୁ କଥାରୁ କରପାରେ ପାର
ଧର୍ମଦେନ ଲୋକ ଭୁଞ୍ଜଇ ସ୍ୱର୍ଗପୁର ।
ଜୀଇଥିଲେ ଧର୍ମ ଅର୍ଥ କାମ ଏ ତିନି
ସାଧୁଲୋକେ ବୁଲୁଥାଆନ୍ତି ସଙ୍ଗେ ଘେନି ।
ଯୁଧିଷ୍ଠିର ବୋଇଲେ ଦେହର ନିଶ୍ଚୟ
କହତ ମୋତେ ଆହେ ଅଙ୍ଗିରା ତନୟ ।
ଦେହ ତ ପୋଡ଼ିଦେଲେ ଅଦୃଶ୍ୟକୁ ପାଏ
ଧରମ କେହ୍ନେ ତାହା ସଙ୍ଗତେଟି ଯାଏ ।
ବୃହସ୍ପତି ବୋଇଲେ ଜୀବ ସଙ୍ଗେ ଧର୍ମ
ଗୋଡ଼ାଇଯାଏ ଜାଣ ନୃପତି-ଉତ୍ତମ ।
ଧର୍ମରେ ଯୁକ୍ତ ହେଲେ ସୁଖଭୋଗୁଥାଏ
ଅଧର୍ମେ ଯୁକ୍ତ ହେଲେ ଦୁଃଖ ଲଭେ ରାୟେ ।
ଯୁଧିଷ୍ଠି ବୋଇଲେ କିରୂପେ ହୋଏ ଖାଜ
ତାହା ମୋତେ କହ ହେ ଦେବଙ୍କ ଆଚାର୍ଯ୍ୟ ।

ବୃହସ୍ପତି ବୋଇଲେ ପାଞ୍ଚ ମହାଭୂତ ।
ଦେହେ ଥାଇଣ ଅନ୍ନ ଖାଆନ୍ତି ନରତ ।
ଏ ସକାଶୁଁ ପୁରୁଷଙ୍କର ରେତ ହୋଏ
ରଜ ଭୁଲେ ମିଶିଲେ ଗର୍ଭ ସେ ବୋଲାଏ ।
ଯୁଧିଷ୍ଠି ବୋଇଲେ ହୁଣ୍ଡଲେ ଦେହ ଜୀବ
ପଞ୍ଚଭୂତଙ୍କର ତ ନ ପାଅଇ ଭାବ ।
ଜୀବନ ଗଲାକ୍ଷଣି ଯାନ୍ତି ପଞ୍ଚଭୂତ ।
କାଠ ପର ପିଣ୍ଡ ପଡ଼ଇ ହୋଇ ମୃତ ।
କେଉଁଠାରେ ରହି ସେ ସୁଖ ଦୁଃଖ ଦୁଇ
ଭୋଗ କରଇ ଏହା କହ ତ ବତାଇ ।
ବୃହସ୍ପତି ବୋଇଲେ ଧରି ଆନ ଦେହ
ଜୀବ ଜନ୍ମି ସଂସାରେ ଭ୍ରମେ ବନ୍ଧି ମୋହ ।
ଯେଉଁ କରମ କଲେ ଯେଉଁ ଯୋନି ଜନ୍ମ
ହୋଏ ତାହା ଶୁଣ ହେ ନୃପତି ଉତ୍ତମ ।
ଚାରିବେଦ ପଢ଼ିଲେ ହେଲେ ପାପ ଦାନ
ଘେନଲେ ଗଧ-ଜନ୍ମ ପାଏ ଦ୍ୱିଜ ଜନ ।
ପନ୍ଦର ବରଷଟି ମଧ୍ୟରେ ଭ୍ରମଇ
ତଦଅନ୍ତେ ବଳଦ-ଜନ୍ମକୁ ଲଭଇ ।
ବର୍ଷ ସାତ ଜୀଇ ବଳଦ-ଜନ୍ମ ତେଜି
ହୋଏ ବ୍ରହ୍ମରାକ୍ଷସ ଦୁଃଖ ଜଳେ ମଜ୍ଜି ।
ତିନମାସ ଜୀଇଣ ଜୀବନ ତେଜଇ
ତଦଅନ୍ତେ ବ୍ରାହ୍ମଣ-ଜନ୍ମକୁ ଲଭଇ ।
ପତିତ ବ୍ୟକ୍ତିଙ୍କର ହେଲେ ପୁରୋହିତ
କୃମି-ଜନ୍ମ ପାଇ ବଞ୍ଚଇ ବର୍ଷ ସାତ ।
ତଦଅନ୍ତେ ପାଞ୍ଚ ବରଷ ଗତ ହୋଏ
ବରଷ ପାଞ୍ଚ ନଏ ଘୁଷୁରିର କାୟେ ।
ପାଞ୍ଚବରଷ ପୁଣି ହୁଅଇ କୁକୁଡ଼ା
ବିଲୁଆ ହୋଇ ପାଞ୍ଚ ବର୍ଷ ଖାଏ ମଡ଼ା ।
ବିଲୁଆ ଜନ୍ମ ଯେବେ ଯାଅଇ ତାହାର
ହୁଅଇ କୁଣିଆଡେ଼ କୁତାର କୁମର ।
ବରଷେ ଜୀଇକରି ପ୍ରାଣକୁ ଛାଡ଼ଇ
ବ୍ରାହ୍ମଣ ହୋଇକରି ମହୀରେ ଜନ୍ମଇ ।
ଗୁରୁଠାରେ ପାପ ଶିଷ୍ୟ ଯେବେ କରେ
ତିନଥର ଜନ୍ମ ହୁଅଇ କୁଯୋନିରେ ।
ଶିଷ୍ୟ ଯେବେ ଗୁରୁଭାରଯା ଇଚ୍ଛେ ଭୋଗ
ଜନରେ ତେବେ ଅରଜଇ ପାପଭାଗ ।
କୁକୁର କୃମି ଜନ୍ମ ହୋଇଣ ବ୍ରାହ୍ମଣ
ତୃତୀୟ ଥର ହୋଏ ନରପତି ଜାଣ ।
ଗୁରୁ ଯେବେ ଶିଷ୍ୟଙ୍କୁ ନିସ୍ତାରଣେ ମାରେ
ହିଂସ୍ର ଜନ୍ତୁ ହେଇଣ ଜନ୍ମଇ ମହୀରେ ।
ମାତା ପିତା ଅବଜ୍ଞା କରଇ ଯେ ସୁତ
ଗଧ କୁମ୍ଭୀରଙ୍କଠାରେ ସେ ହୋଏ ଜାତ ।
ତଦଅନ୍ତେ ପୁଣି ସେ ମନୁଷ୍ୟ ହୁଅଇ
ଦୁଃଖ-ଭାଗୀ ହୋଇଣ ଦିନକୁ ହରଇ ।
ମାତା ପିତା କ୍ରୋଧ କରାଏ ଯେଉଁ ସୁତ
ଗଧ ଶ୍ୱାନ ବିଲଇ କୁଳେ ହୋଏ ଜାତ ।
ଏ ଅନ୍ତେ ପୁଣି ନର କୁଳରେ ଜନ୍ମଇ
ଧର୍ମ ଅଧରମ ଦୁହିଁଙ୍କି ନ ଜାଣଇ ।
ମାତାପିତା ଦୁହିଁଙ୍କି ଦେଇଛି ଯେ ଗାଳି
ଶାରି ଜନ୍ମ ତାକୁ ଦିଆଏ ବେଦଶାଳୀ ।
ମାତା ପିତା ଦୁହିଁଙ୍କି ମାରଇ ଯେ ମାଡ
ତାହାରଟି ଯମ ଭାଙ୍ଗଇ ଆଗ ହାଡ଼ ।
କରିଛି ଝୀଙ୍କ ପାପ ଜନମକୁ ପାଇ
ପୁଣି ଜନ୍ମ ହୋଏ ମନୁଷ୍ୟରୂପ ବହି ।
ରାଜାର ଦୋଷୀକ ଯେ ରାଜା ଅନ୍ନ ଖାଇ
ସେବା କରେ ବାନର-ଜନ୍ମ ସେ ଲଭଇ ।
ତଦଅନ୍ତେ ମୂଷା କୁକୁର ଯୋନି ପାଏ
କ୍ରମରେ ପୁଣି ନରକୁଳେ ଜନ୍ମ ହୋଏ ।
ରଖ.ଇଥିବା ଦ୍ରବ୍ୟ ନ ଦେଇ ଯେ ଖାଏ
ଯାଏ ନରକକୁ ସେ ଭୋଗ କରେ ରାୟେ ।
କୃମି ମୃଗ ଛେଳି ଜନମ ଭୋଗ କରି
ପୁଣି ହୋଏ ମହୀରେ ଦୁଇପଦଧାରି ।
ଅସୂୟାକାରିକ ସାରଙ୍ଗ ପକ୍ଷୀ ହୋଏ
ବିଶ୍ୱାସଘାତୀ ଲୋକ ମାଛଜନ୍ମ ପାଏ ।
କ୍ରମରେ କୀଟ ଛେଳି ମୃଗ ଜନ୍ମ ହୋଇ
ପରକାଶ ହୁଅଇ ନର ହୋଇ ମହୀ ।
ଧାନ୍ୟାଦି ହରଣକୁ କରେ ଯେଉଁ ନର
ନିଃସନ୍ଦେହେ ମୂଷା ଜନମ ହୋଏ ତା'ର ।
କୁକୁର ଘୁଷୁରି ମୃଗର ଜନମକୁ
ଲଭି ଲଭେ ମହୀରେ ମନୁଷ୍ୟ-ତନୁକୁ ।
କଙ୍କ ବକ ଉରଗ ଶୃଗାଳ ଶାଗୁଣା
ଜନ୍ମ ପାଏ ଯେ କରେ ପରସ୍ତ୍ରୀ ଧର୍ଷଣା ।

ଭାଇର ଭାରିଯାକୁ ଭୋଗ ଯେ କରଇ
କୋଇଲ ହୋଇ ଆମ୍ବଡାଳେ ସେ ବୋବାଇ
ସଖା ଗୁରୁ ରାଜା ଭାରିଯା ଯେ ହରଇ
ଶୂକର ଝିଙ୍କ କୀଟ ଜନ୍ମ ସେ ଲଭଇ ।
ଯାଗ ଦାନ ବିବାହ ବିଘ୍ନ କଲା ନର
କୃମି ଜନ୍ମ ପାଏ ହେ ଜାଣ ଯୁଧିଷ୍ଠିର ।
କନ୍ୟାଟିଏ ଜଣକୁ ଯାଚି ଆନ ଜଣ
ବିଭା କରିଲେ କୃମି ଜନ୍ମ ପାଏ ଜାଣ ।
ଦେବ ପିତୃ ପ୍ରଭୁ କାର୍ଯ୍ୟ ଯେ ନ କରଇ
କୁଆ ହୋଇ ବିଷ୍ଠା ଭୁଞ୍ଜଇ ନଠିଆଇ ।
ପୁଣି ହୋଏ କୁକୁଡା ସାପ କୁଳେ ଜାତ
ମନୁଷ୍ୟତନୁ ପାଏ ଦେହ ହେଲେ ଅନ୍ତ ।
ବଡଭାଇଙ୍କ ଯେହୁ ଅବଜ୍ଞା କରଇ
ମଲେ କ୍ରୌଞ୍ଚ ଯୋନିରେ ଜନ୍ମ ସେ ଲଭଇ
ଶୂଦ୍ର ହୋଇ ବ୍ରାହ୍ମଣୀ ହରଇ ଯେ ରାଗେ
ଘୁଷୁରି କୃମି ଶ୍ୱାନ ଜନମକୁ ପାଏ ।
କୃତଘ୍ନ ଲୋକ ଯେବେ ମରଇ ରାଜନ
ଯମ ତା ମାଂସକୁ ଦଣ୍ଡରେ କରେ ଛିନ୍ନ ।
ନାନାଜାତି ନରକମାନଙ୍କେ ପକାଏ
ବହୁ ଦୁଃଖ ଦେଇଣ କୃମି-ଜନ୍ମ ଦିଏ ।
ଦଧି ମାଛ ମଦ୍ୟ ଚୋରଇଥିବା ଲୋକ
ଡାହୁଁସ ପ୍ଲବ ହୋଇ ହୁଏ ପକ୍ଷୀ ବକ ।
ଫଳ ମୂଳ ପିଠାକୁ ଚୋରାଇବା ଲୋକ ।
ପିମ୍ପୁଡି ବୋଲାଏ ହେ ପାଣ୍ଡବ ନାୟକ ।
କ୍ଷୀର ଚୋରାଇଥିଲେ ହୁଅଇ ଛଭିର
ପିଠୋଉଚୋର କୁମ୍ଭାଟୁଆ ଦଣ୍ଡଧାରୀ
କଂସା ଲୁହା ଚୋର ଯେ ହାରିତ ବାୟସ
ଜନ୍ମକୁ ଲଭଇ ପାଣ୍ଡବ-ନରେଶ ।
ରୁପା ଚୋରାଇଥିଲେ କପୋତ ହୁଅଇ
ସୁନା ଚୋରାଇଲେ ନରକ ଭୋଗୁଥାଇ ।
ବସ୍ତ୍ର ପଟ୍ଟବସ୍ତ୍ରକୁ ଚୋରାଅଇ ଯେହି
ଶୁଆ ହଂସ ହେବାରେ ସନ୍ଦେହଟି ନାହିଁ ।
ଗନ୍ଧାଦି ଚୋରାଇଲେ ଚୁଚୁନ୍ଦ୍ରୀ ହୋଏ
ଚୁଚୁ ବୋଲିବାରେ ସମୟ ତା'ର ଯାଏ ।
ମାଲପୁଆଚୋର ଲୋକ ହୁଏ ଅସରଳା
କାନ୍ଥରେ ରହିଥାଏ କରି ପିଲଭେଳା ।

ଶସ୍ତ୍ର ଧରି ନ ଥିବା ଲୋକକୁ ଯେ ହାଣଇ
ବଧ ହୋଇବାରେ ସନ୍ଦେହ ତା'ର ନାହିଁ ।
ମୃଗ ମୀନ ବାଘ ଜନ୍ମକୁ ସେହୁ ପାଏ
ମୃତ୍ୟୁକାଳହେଲେ ଶସ୍ତ୍ରରେ ପ୍ରାଣ ଦିଏ ।
ଯେ ଲୋକ ଅବୋଧ ସ୍ତ୍ରିଶିଶୁ ବଧକରେ
କୃମି ହୋଇ ସେ ଘୋରନର୍କ ଭୋଗକରେ ।
ବଡାଭାତ ଚୋରାଇ ଯେହୁ ଖାଇଥାଏ
ମହୀମଧ୍ୟେ ଯେ ଗଣ ଗଣା ମାଛି ହୋଏ ।
ଘିଅ ଚୋରାଇବାର ଲୋକ ପାଣିକୁଆ
ହୋଇ ଜଳ ମଧ୍ୟରେ ହୋଇଥାଏ ଠିଆ ।
ମାଛ ମାଉଁସ ଚୋର ଲୋକ କୁଆ ହୋଇ
ପ୍ରାତଃକାଳ ହୋଇଲେ ଅଇଁଠା ଭକ୍ଷଇ ।
ପାପକୁ ଯେହୁ ଲୁଚେ କରଇଟି ହିତ
ଜନ୍ମିଲେ ସେ ହୋଏ ମହୀରେ ବ୍ୟାଧିବନ୍ତ ।
ପାପ ନ କରିଥିବା ଲୋକଟି ଅରୋଗୀ
ଧର୍ମୀ ହୋଇ ହୁଅନ୍ତି ଭୋଗ ଅନୁରାଗୀ ।
ଏହିରୂପେ ରମଣୀମାନେ କଲେ ପାପ
ଏହି ଫଳ ହୁଅଇ ଜାଣ ଆହେ ନୃପ ।
ପାପକଲେ ପୁରୁଷ ସ୍ତ୍ରିଙ୍କର ଜନ୍ମ
ଶୁଣିଲ ତ ମୋଠାରୁ ନୃପତି-ଉତ୍ତମ ।
ଏଥିକି ବୁଝିକରି ପୁଣ୍ୟକର୍ମ କର
ଅନ୍ତଃକାଳରେ ଯାଇ ଭେଟ ପୁରନ୍ଦର ।
ଯୁଧିଷ୍ଠିର ବୋଇଲେ ଶୁଭକର୍ମ କିସ
ପାପ କରି କିରୂପେ ଲଭେ ସ୍ୱର୍ଗବାସ
ବୃହସ୍ପତି ବୋଇଲେ ଅଧର୍ମ ଯେ କରେ
ନ ଜାଣି ପାଶପ ବାଧି ନ ପାରେ ତାଠାରେ ।
ଅଧର୍ମ କରି ଦ୍ୱିଜଗଣେ ଯେ କହଇ
ଦ୍ୱିଜଙ୍କୁ ସେ ଅଧର୍ମ ଦେଇଣ ତରଇ ।
ବ୍ରାହ୍ମଣଙ୍କୁ ନାନା ପ୍ରକାରେ ଦେଲେ ଦାନ
ପାପରୁ ମୁକ୍ତ ହୋଇ ଯାଅଇଟି ଜାଣ ।
ଦାନ ଯା କରେ ଅନ୍ନଦାନ ପରି ମହୀ
ମଣ୍ଡଳରେ ଦାନ ନାହିଁ ହେ ନରସାଇଁ ।
ପାପୀ ଯେବେକେ ଦଶସହସ୍ର ବ୍ରାହ୍ମଣ
ଭୁଞ୍ଜାଏ ଘରେ ପାପୁଁ ମୁକ୍ତ ହୋଏ ଜାଣ
ବ୍ରାହ୍ମଣ ମାଗିଆଣି ବ୍ରାହ୍ମଣଙ୍କୁ ଦେଲେ
ଏ ସଂସାର ମଧ୍ୟରୁ ତରଇ ସେ ଭଲେ ।

ବ୍ରାହ୍ମଣଙ୍କୁ ଯେବେ କ୍ଷତ୍ରିୟ ଅନ୍ନ ଦିଏ
ସ୍ୱର୍ଗପୁରେ ବସଇ ଧରି ଦେବକାୟେ ।
ବୈଶ୍ୟ ଶ୍ରଦ୍ଧାର୍ଜ୍ଜିତ ଅନ୍ନକୁ ଭୁଞ୍ଜାଇଲେ
ଦ୍ୱିଜଙ୍କୁ, ଦେବେ ତାକୁ ପୂଜନ୍ତି ଭଲେ ।
ଶୂଦ୍ର ସେବା କରିଣ ଅରଜିବା ଅନ୍ନ
ବ୍ରାହ୍ମଣଙ୍କୁ ଦେଲେ ବୋଲାଏ ସେହି ଧନ୍ୟ ।
ସବୁକାଳରେ ନ୍ୟାୟ ଅର୍ଜିତ ଧନଟି
ଦେବାର ଦ୍ୱିଜକୁ ଉଚିତ ବୋଲାଏଟି ।
ଅନ୍ନଦାନ ନ ଦେବା ଧନଟି କି ବ୍ୟର୍ଥ
କରି ମଣୁଥିବ ସେ ହେବ ନରନାଥ ।
ଦଶଶତ ଦ୍ୱିଜ ଭୋଜନ କଲେ ତୋଷେ
ସଂସାର ବାଧି ତାକୁ ନ ପାରଇ ଲେଶେ ।
ଦାନସାକରେ ଜାଣ ମୂଳ ଅନ୍ନଦାନ
ମୋ କହିବାରୁ ଜାଣ ପାଣ୍ଡବ ରାଜନ ।
ଯୁଧିଷ୍ଠିର ବୋଇଲେ ଅହିଂସା ଇନ୍ଦ୍ରିୟ
ସଂଯମ ତପ ଗୁରୁସେବାରେ କେ ଶ୍ରେୟ ।
ବୃହସ୍ପତି ବୋଇଲେ ଧର୍ମର ଦୁଆର
ଏ ସମସ୍ତ ଅଟନ୍ତି ଆହେ ଯୁଧିଷ୍ଠିର ।
ଏଥିରେ ଯେ ଅହିଂସାବ୍ରତ କରିଥାଏ
ତା'ର ପୁଣ୍ୟ କହିଲେ ନ ସରିବ ରାଏ ।
ଆପଣା ପରି ପରକଥା ଯେ ଦେଖଇ
ମହା ପୁଣ୍ୟବନ୍ତ ବୋଲନ୍ତି ତାକୁ କହି ।
ସୁଖ ଦୁଃଖ ପ୍ରିୟ ଅପ୍ରିୟ ନିରାକୃତ
ଦାନେ ନିଜ ପର କରିବ ପରେ ମତ ।
ସଂସାର ଚକ ହେଲା ଏହିଠାରେ ଶେଷ
କହଇ କୃଷ୍ଣସିଂହ ନୃପ ବହି ତୋଷ ।

—୦—

## ମାଂସ ଭକ୍ଷଣ ଦୋଷ

ଯୁଧିଷ୍ଠିର ବୋଇଲେ ଆହେ ପିତାମହ
ମନ ବଚନେ ଯେ ହିଂସାକୁ କରେ ସ୍ନେହ ।
ସେ କରୁପେ ତରି ଯାଅଇ ସଂସାରକୁ
କହିବାହେଉ ଜାଣିଥିଲେ ଏ କଥାକୁ ।
ଭୀଷ୍ମ ବୋଇଲେ ଆହେ ମନ ବଚନରେ
କର୍ମରେ ମାଂସକୁ ଯେ ଛାଡ଼େ ନିରନ୍ତରେ ।
ତାହାରନ୍ତି ମୁକତ ହୁଅଇ ରାଜନ
ବାଧି ନ ପାରଇ ତାକୁ ଏ ପାପମାନ ।
ହିଂସାକଲା ଲୋକନ୍ତି ପାପଜନ୍ମ ପାଏ
କହିବାକୁ ଏଥିରେ ନାହିଁଟି କଥାଏ ।
ଆପଣା ମାଂସ ପରି ମଣି ଖାଦ୍ୟମାଂସ
ଛାଡ଼ିଦେବ ଧର୍ମେ ଯା ବୁଦ୍ଧି ଥିବ ଲେଶ ।
ବଡ଼ ବଡ଼ ଲୋକେ ପରର ପ୍ରାଣ ପାଇଁ
ନିଜ ପ୍ରାଣ ଦେଇ ବସିଲେ ସ୍ୱର୍ଗେ ଯାଇ ।
ଯୁଧିଷ୍ଠିର ବୋଇଲେ ଶ୍ରାଦ୍ଧରେ ମାଉଁସ
ଦେଲେ ପିତୃଦେବେ ହୁଅନ୍ତି ବୋଲି ତୋଷ
ଆପଣ ତ ଭୁଣ୍ଡରେ କହିବା ହୋଇଲେ
ଏବେ କମା ତାହାକୁ ନିଷେଧିଲ ଭଲେ ।
ଜୀବକୁ ମାରି କିଣି ଖାଇବାର ଦୁଇ
କଥାରେ କେ ଦୋଷ କହ ତା ଶୁଣିବଇଁ ।
କେଉଁ କଥା କରିଲେ ଆୟୁଷ ଲକ୍ଷଣ
ବଢ଼େ ତା ଶୁଣିବାକୁ ହେଉଛି ମୋ ମନ ।
ଭୀଷ୍ମ ବୋଇଲେ ହେ ମାଉଁସ ଭକ୍ଷଣର
ଅଧର୍ମକୁ କହିବା ଶୁଣ ନରବର ।
ରୂପଧନ ଆୟୁ ବୁଦ୍ଧି ଯେ ବଢ଼ାଇ
କାହାଠାରେ ହିଂସା ମାନସେ ନ ଭଜଇ ।
ମାସେ ମାସେ ଅଶ୍ୱମେଧ ଯେ କରିଥାଏ
ମାଂସଛଡ଼ା ଲୋକ ତା ସଙ୍ଗେ ସରି ହୋଏ ।
ପ୍ରାଣୀଙ୍କି ନ ମାରଇ ନ ମରାଏ ପରେ
ମାଂସ ଆହାରକୁ ଚେତଣ ନିରନ୍ତରେ ।
ଯେଉଁ ଲୋକ ଅଛି ହେ କୁନ୍ତୀଦେବୀ ବହ୍ନି
ତାହାକୁ ଜାଣ ମହା ପୁଣ୍ୟବନ୍ତ ଗଛି ।
ପର ମାଂସ ଖାଇ ଯେ ନିଜ ମାଂସ ପୁଷ୍ଟ
କରଇ ଧର୍ମ ତାକୁ କରେ ବଡ଼ ରୁଷ୍ଟ ।
ମାଂସ ଖାଇଣ ଦିନାକେତେ ଯେ ନିବେଦ
ହୋଇ ଛାଡ଼ଇ ସେ ଲଭଇ ମୁଖ୍ୟପଦ ।
ପ୍ରାଣୀଙ୍କଠାରୁ ହିଂସା ଦରଜ ଅଭୟ
ଯେ ଦିଏ ପ୍ରାଣୀଙ୍କି ଲଭେ ସେ ସୁଖଚୟ
ଆପଣା ପ୍ରାଣ ପରି ପର ପ୍ରାଣ ଇଷ୍ଟ
ଅଟଇ ହେ ଜାଣ ନୃପତିକୁଳ-ଶ୍ରେଷ୍ଠ ।
ଜ୍ଞାନ ଥିବା ଶଏ ବରଷର ଲୋକକୁ
ମାରିବୁ ବୋଇଲେ କାନ୍ଦୁଛି ବୁକୁ ଦୁକୁ ।
ଯୁବା ଲୋକଟାକୁ ଯେ ପାଇବାର ମାରି
ତା ଭୟକୁ କି ବଚନରେ କହିପାରି ।

ପରମ ସତ୍ୟ ତପ ଅଟଇ ଅହିଂସା
ବୋଲି ଜାଣ ଆହେ ପାଣ୍ଡବ ମହାଯଶା ।
ମାଂସଖିଆ ଲୋକ ତ ରାକ୍ଷସ ଅଟନ୍ତି
ଗାଈଙ୍କ ଘାସପରି ରକ୍ତକୁ ମଣନ୍ତି ।
ଘାତକ ଖାଦକର ସମଦୋଷ ରାୟେ
ଏଥେଁ କଥା କିଛି ବିଚାର ନ ଯୋଗାଏ ।
ଲୋକ ଖାଇବାକୁ ମୃଗକୁ ଲୋକ ମାରି
ଆଣି ବିକ୍ରିଅଛି କଉଡ଼ି ଇଚ୍ଛାକରି ।
ହିଂସା କଲି ଲୋକର ବୁଦ୍ଧି ହୋଏ ବଣା
ଏହା ଜାଣି ମାଂସ କରିବ ସ୍ନେହ ଉଣା ।
ଯେଉଁମାନେ ପ୍ରାଣୀଙ୍କି ହିଂସା କରୁଥାନ୍ତି
ପାପ ପରି ଜାଣ ଅଟେଟି ତାଙ୍କ ମତି ।
ମାଂସ ଖାଇକରି ଯେ ହରଇଟି ଧନ
ଉଦ୍‌ବେଗ ତାହାକୁ ଲାଗୁଥାଏ ଜାଣ ।
ଘାତକ ସାହାସୀ କରେ ତ ନ ମାରଇ
ଧର୍ମ କିଣି ଆଣିବା କଥାରେ ଲଭଇ ।
ଖାଇବା ଲୋକ ଖାଏ କରି ଅନୁରାଗ
ଏ ସକାଶୁଁ ତିନହେଁ ପାନ୍ତି ପାପ ଭାଗ ।
ଜୀବହିଂସାରେ ଯେ ଆନନ୍ଦ ପାଉଥାଏ
ତାକୁ ମଧ୍ୟ ପାତକ ଲାଗଇ ହେ ରାୟେ ।
ସୁବର୍ଣ୍ଣ ଗାଈ ଭୂମି ଦାନକୁ ଭୋଜନ
ମାଂସ ନ କରିବାର ଅଧିକ ରାଜନ ।
ଅପ୍ରୋକ୍ଷଣ ମାଂସ ଭୋଜନ ନ କରିବ
ଭୋଜନ କଲେ ଯାଇ ନରକେ ପଡ଼ିବ ।
ପ୍ରୋକ୍ଷଣ ମାଉଁସକୁ ବ୍ରାହ୍ମଣଙ୍କୁ ଦେଇ
ଭୋଜନ କଲେ ଅଳ୍ପ ପାତକ ହୁଅଇ ।
ଲୋକ ଖାଇବାପାଇଁ ଆଣଇ ଯେ ମାରି
ତା ପାତକ ବଡ଼ ପାଣ୍ଡବ-ଦଣ୍ଡଧାରୀ ।
ମାଉଁସ ଲୋଭରେ ଯେ କରଇଟି ଯାଗ
ନରକଟି ତାହାର ଭୋଗ ହୋଏ ଆଗ ।
କିଣା ବିକା ଅଣା ପାତକ ଖିଆଲୋକ
ପାତକ ପାଆନ୍ତି ହେ ଅବମାନାସୂକ ।
ଦେବଙ୍କେ ଲୋକର ପ୍ରବୃତ୍ତି ହେବାପାଇଁ
ପ୍ରାଣୀହିଂସା ଲେଖିଛନ୍ତି ହେ ନରସାଇଁ ।
ପୂର୍ବକଳ୍ପେ ଧାନ୍ୟରେ ଋଷିମାନେ ଯାଗ
କରିଣ ଅରଜୁଥିଲେ ଟି ପୁଣ୍ୟଭାଗ ।
ଅଭକ୍ଷ ମାଉଁସକୁ ଭକ୍ଷ ବୋଲି କହି
ଋଷିଙ୍କି ବସୁରାଜା ତଳେ ପଡ଼ି ଯାଇ ।
ପ୍ରାଣୀଙ୍କ ଖାଇବାକୁ ଦୋଷ ହେବ ଭାଳି
ପ୍ରୋକ୍ଷଣ କଲେ ବନ ମୃଗେ ତପଃଶାଳୀ ।
ଅଗସ୍ତି ତ ମହାମୁନିଙ୍କର ଶେଖର
ଏଣୁ ତହିଁ ଦୋଷ ନାହିଁ ହେ ଯୁଧିଷ୍ଠିର ।
ଶତ ସମ୍ବତ୍ସର ତପସ୍ୟାର ସମାନ
ମାଂସ ଛାଡ଼ିବାର ରାଜନ ମନେ ଘେନ ।
ବାରମାସ ତ୍ୟାଗ ନ କଲେ କାର୍ତ୍ତିକରେ
ମାଉଁସକୁ ଛାଡ଼ିବ ଲେଖିଛି ଶାସ୍ତ୍ରରେ ।
କାର୍ତ୍ତିକ ମାସଯାକ ଛାଡ଼ି ନ ପାରିଲେ
ଶୁକ୍ଳପକ୍ଷ ହେଲେ ଛାଡ଼ିବ ମାଂସ ଭଲେ ।
ପକ୍ଷଟିଏ ନ ପାଳିଲେ ଯେ ଦିନଟିଏ
କାର୍ତ୍ତିକରେ ଛାଡ଼ିଲେ ସୁକୃତଟି ହୋଏ ।
ବର୍ଷକେ ଚାରିମାସ ଛାଡ଼ଇ ଯେ ମାଂସ
କୀର୍ତ୍ତି ଆୟୁବଳକୁ କରେ ସେ ପ୍ରକାଶ ।
ମାଂସ ଛାଡ଼ିବାରୁ ସୁକୃତ ହୋଇ କଥା
ଏ ମହୀରେ ନାହିଁ ହେ ନୃପ ମହାରଥା ।
ନାଭାଗ ଆରଣ୍ୟ ଅମ୍ବରୀଷ ରାୟ
ଦିଲୀପ ରଘୁ ପୁରୁ ଜନକ ସଞ୍ଜୟ ।
ମୁଚୁକୁନ୍ଦ ଶିବି ମାନ୍ଧାତା ଉଶୀନର
ହରିଶ୍ଚନ୍ଦ୍ର ଆୟୁ ଯେ କାର୍ତ୍ତବୀର୍ଯ୍ୟ ବୀର ।
ନିମି ନୀଳ ପୃଥୁ ଇକ୍ଷ୍ୱାକୁ ବୀରସେନ
ସୁବାହୁ ଧୁନ୍ଧୁ ଅଜ ବସୁ ବିଶ୍ୱକ୍‌ସେନ ।
ରାମ ଶଶବିନ୍ଦୁ ଯେ ଶମ୍ଭୁ ଯୁବନାଶ୍ୱ
ଅନିରୁଦ୍ଧ ଯଯାତି ସୋମ ବିରୁପାର୍ଶ୍ୱ ।
ଶ୍ୟେଣଚିତ୍ର ଭରତ ଦୁଷ୍ମନ୍ତ କରୁଷ
ଅଳପ କ୍ଷୁପନୃପ ହର୍ଯ୍ୟଶ୍ୱ ନହୁଷ ।
ବୃକ ରଇବତ ଯେ ରନ୍ତିଦେବ କୃପ
ଯେ ତାହା ସାମର୍ଥ୍ୟକୁ କରି ଅନୁରୂପ ।
ସଗରାଦି ନୃପେ ମାଂସରୁ ଅନୁରାଗ
କାର୍ତ୍ତିକରେ ଛାଡ଼ି ବସିଲେ ସ୍ୱର୍ଗଭାଗ ।
ଏରୂପେ ଆହୁରି ଅନେକ ରାଜାମାନେ
ରମ୍ଭାଦି ସୁମନାଙ୍କୁ ଧର୍ମିଲେ ସୁମନେ ।
ଯୁଧିଷ୍ଠିର ବୋଇଲେ ମିଠାଇକି ଛାଡ଼ି
ନଠାଇ ଯାହା ମାଂସ ଖାଆନ୍ତି ରଗଡ଼ି ।

ଏହି ସକାଶରୁ ବୋଲୁଛନ୍ତି ମୁହିଁ ପିତା
ପ୍ରଭୃତି ପିତାମହ ମାଉଁସଟି ମିଠା ।
ଭୀଷ୍ମ ବୋଇଲେ ଆହେ ଜିହ୍ୱାରେ ମାଉଁସ
ରସ ଯେବେ ଲାଗଇ ହୋଏ ସେ ଉଲ୍ଲାସ ।
ମାସେ ପକ୍ଷେ ଯେବେ କେ ମାଉଁସ ନ ଖାଇ
ସ୍ୱପନରେ ରାଜନ ମାଉଁସ ଦିଶଇ ।
ଜିହ୍ୱା ସୁଖ ପାଇ ହେବାରୁ ଜୀବହିଂସା
ଯେନ ମାଉଁସେ ଜାଣ ଦୋଷ କଲା ବସା ।
ଜାଣିବାବନ୍ତ ଜନ ଅହିଂସା କର୍ମକୁ
କରୁଥିବଟି କରି ଅତି ଯତନକୁ ।
ମନ୍ତ୍ର ପୂତ କରିଣ ଶ୍ରାଦ୍ଧରେ ମାଉଁସ
ଦେଲେ ଦୋ'ଷ ନାହିଁ ହେ ଜାଣ ନରଈଶ ।
ଯାଗରେ ପଶୁବେକ ମୋଡି ଅଗ୍ନିକୁଣ୍ଡେ
ପୋଡ଼ି ମାଉଁସକୁ ଖାଇଲେ ଖଣ୍ଡେ ଖଣ୍ଡେ ।
ଦ୍ୱିଜେ ବୋଲି ଏହାକୁ ବ୍ରହ୍ମା କହିଛନ୍ତି
ମାଉଁସରେ କି ଦୋଷ ଅଛି ହେ ନୃପତି ।
କ୍ଷତ୍ରିୟ ଚୋଟି ଛପି ମୃଗ ନ ମାରିବ
ବନେ ବୁଲି କାଣ୍ଡରେ ବିନ୍ଧିଣ ଖାଇବ ।
ଗୋଟିଏ ମୃଗ ମାରି କ୍ଷତ୍ରିୟକୁ ମାଂସ
ଦେଲେ ତା ଖାଇଲେ କ୍ଷତ୍ରିୟ ପାଏ ଦୋଷ
ଅଗସ୍ତି ବନମୃଗ ବଧ କରିବାରୁ
ମାରିବ ମୃଗ ରାଜା ନୋହି କଛି ଭୀରୁ ।
ଦୟାବନ୍ତଠାରେ ଧାର୍ମିକ ହୋଇ ମହୀ-
ମଧ୍ୟରେ ଥିଲା ପରି ମୋତେ ଦିଶୁନାହିଁ ।
ଏହି ସକାଶୁ ଜାଣ ଅହିଂସା ଲକ୍ଷଣ
ଧରମ ବଡ ବୋଲି ଜାଣ ନରରାଣ ।
ଯେ ଲୋକ ଅଭୟ ଲୋକଙ୍କୁ ଦେଉଥାଏ
ତାକୁ ଭୟ ଦେଇ ନ ପାରେ ଜନ୍ତୁରାୟେ ।
ମରିବାପାଇଁ ସବୁ ପ୍ରାଣୀଏ ଡରନ୍ତି
ଏହା ଜାଣି ଛାଡ଼ିବ ମାରିବାରୁ ପ୍ରୀତି ।
ଯେ ଯେଉଁ ଜନ୍ତୁର ମାଉଁସ ଖାଇଥାଏ
ସେହି ଜନ୍ତୁ ତା ମାଂସ ପରଲୋକେ ଖାଏ ।
ମୋ ମାଂସ ଏ ଖାଇଛି ମୁଁ ଏହାର ମାଂସ
ଖାଇବି ବୋଲିବାରୁ ବୋଲାଏ ମୁହିଁ ମାଂସ ।
ଏ ମାଂସ ଅଭକ୍ଷଣ କଥା ଯେ ଶୁଣଇ
ନୋହିଲେ ବା ଦ୍ୱିଜଙ୍କୁ ବସାଇଶୁଣାଇ ।
ଇହ ପର ଦୁଇରେ ଲଭେ ମହାକୀର୍ତ୍ତି
ଅନ୍ତକାଳେ ଭୋଗ କରଇ ସ୍ୱର୍ଗଭୂତି ।
ହୋଇଲା ମାଂସ-ଅଭକ୍ଷଣ ସମାପତି
କହଇ କୃଷ୍ଣସିଂହ ଧରାକୋଟ ପତି ।

—*—

## କୀଟ ଉପାଖ୍ୟାନ

ଯୁଧିଷ୍ଠି ବୋଇଲେ ଅକାମ ସକାମରେ
ମରିଅଛନ୍ତି ଯୁଦ୍ଧ କରି ଯେତେ ନରେ ।
ସେମାନଙ୍କର ଯେଉଁ ଗତି ପିତାମହ
ହୁଅଇ ତାହା ମୋର ଆଗେ ତୁମ୍ଭେ କହ ।
ଯୁଦ୍ଧେ ଗଣ୍ଡ ମଧ୍ୟେ ବାଜିଲେ ଆସି କାଣ୍ଡ ।
ପୋଡ଼ିଯାଏ ଥରେ ହେ ପିତା ତାକୁ ଖଣ୍ଡ ।
ଭୀଷ୍ମ ବୋଇଲେ ଆହେ ପୂର୍ବେ କୀଟଟିଏ
ପଳାଉଥିଲା ଦାଣ୍ଡେ ଶଗଡ଼ର ଭୟେ ।
ବେଦବ୍ୟାସ ଋଷି କୀଟକୁ ନେତେ ଦେଖି
କାହିଁକି ପଳାଉ ବୋଇଲେ ହୋଇ ଦୁଃଖୀ
କୀଟ ବୋଇଲା ମୁଁ ଶଗଡ଼-ଧ୍ୱନି ଶୁଣି
ପଳାଇଛି ଭୟରେ ବ୍ୟାସ ଋଷି ମଣି ।
ମନୁଷ୍ୟମାନଙ୍କ ମୃତ୍ୟୁ ତ ଦୁଃଖକର
ମୋହର ଡରିବାକୁ ମୋତେ କି ପଚାର ।
ବେଦବ୍ୟାସ ବୋଇଲେ ପୋକ ଅଛୁ ହୋଇ
ମଲେ ତ ଭଲ ହେବୁ ମଣୁଅଛୁ ମୁହିଁ ।
କୀଟ ବୋଇଲା ହେ ଯା ଦେହ ତାକୁ ବଡ଼
ଏରୂପେ ଋଷି ମୋତେ ବଚନେ ନ ଛଡ଼ ।
ପୂର୍ବକାଳେ ମୁହିଁ ଶୂଦ୍ର ହୋଇଥିଲି
ଅବ୍ରହ୍ମଣ୍ୟ ହୋଇଣ କ୍ରୂରକର୍ମ କଲି ।
ଦେବ ପିତୃ ଅତିଥି ନ କରିଣ ପୂଜା
ଏକା ମୁହିଁ ଖାଇ ସନ୍ତୋଷ କଲି ମଜା ।
ପର ସମ୍ପତ୍ତିକି ଦେଖଇ ଯେବେ ଆଖି
ଫୁଟିଗଲା ପରି ସେ ହେଉଥାଏ ଦୁଃଖୀ ।
ଏହି ଅଧର୍ମରୁଟି କୀଟ ମୁଁ ହୋଇଲି
ଗୋଟିକ ଧର୍ମରୁ ଏ କଥାଟି ଜାଣିଲି ।
ତାହା ତୁମ୍ଭ ଆଗେ କହୁଛି ଋଷିବର
ପୂଜା କରିଛି ମୁଁ ଗୋଟିଏ ଦ୍ୱିଜବର ।
ଏବେ ମୁଁ କେଉଁ ରୂପେ ତରିବି ଗୋସାଇଁ
ଜାଣିଥିଲେ ସେ କଥା କହ ତ ବତାଇ ।

ବ୍ୟାସବୋଇଲେ ହେ ଯା ନାହିଁତାର ମୋହ
ଜାଣୁଅଛୁ କୃତାର୍ଥ ହେବ ତୋର ଦେହ ।
ତପୋବଳରେ ମୁହିଁ ତଉଲବ ତୋତେ
ସକଳ ହୋଇ ଲୁ ତ କହିଲୁନ ମୋତେ ।
ଦେବତା ଏ ହୋଇଲେ କର୍ମକୁ ଠି ସୃଷ୍ଟି
ଭୋଗ କରୁଅଛନ୍ତି ସୁଖ ଦୁଃଖ ଦୁଇ ।
ବ୍ୟାସଋଷିଙ୍କଠାରୁ ଶୁଣି ଏ ବଚନ
ତୋଷ କରି କୀଟ ରହିଲା ନିଜ ମନ ।
କେତେକାଳ ଅନ୍ତରେ ମରଣକୁ ପାଇ
ନାନାଜାତି ଯୋନିରେ ଜନ୍ମ ହେଲା ଯାଇ ।
ସବୁ ଜାତି ଜନ୍ମେ ବ୍ୟାସଙ୍କୁ ପାଦେ ସେବା
କଲା ସେ ଯାହା, ତାହା କେତେଟି କହିବା ।
ଶୂଦ୍ର ବୈଶ୍ୟ ହୋଇ କ୍ଷତ୍ରିୟେ ଜନ୍ମ ଯେବେ
ହୋଇଲା କହିଲା ସେ ବ୍ୟାସ ଆଗେ ତେବେ
ଦେଖ ମୁଁ ରାଜାକୁଳେ ହୋଇକରି ଜାତ
ରଖିଅଛୁ ପାଖରେ ସଇନ ବହୁତ ।
ହାତୀ ଘୋଡ଼ା ରଥ ମନକୁ ଯେ ପାଉଛୁ
ତାହା ବାଛିକରି ମୁଁ ଆରୋହି ହାଉଛୁ ।
ଛତ୍ର ଚାମରରେ ଆଚ୍ଛନ୍ନ ମୋର ଦେହ
କୋଇଅଛୁ ସମସ୍ତେ କରୁଛନ୍ତି ସ୍ନେହ ।
ମାଂସ ତ ନୋହିଲେ ମୁଁ ଭାତ ନ ଭୁଞ୍ଜଇ
ଘିଅପିଠା ଖାଇବାରେ ମୋ ସଂଖ୍ୟା ନାହିଁ
ସକାଳୁ ମୋତେ ଉଠାଇବାରୁ ବନ୍ଦୀଏ
ମୋ ସ୍ତୁତି ମୁଖରେ ଗାଆନ୍ତି ଅହର୍ନିଶୟେ ।
ତୁମ୍ଭ ପ୍ରସାଦରୁ ହେଲା ମୋ ସୁଖଦଶା
କ କରିବି ତୁମ୍ଭର କହ ମହାଯଶା ।
ବେଦବ୍ୟାସେ ବୋଇଲେ ଶୂଦ୍ର ଜନ୍ମ ପାପ
ତୁମ୍ଭର ରାଜପୁତ୍ର ହୋଇନାହିଁ ଲୋପ ।
ଏ ଜନ୍ମର ଉତ୍ତାରୁ ବ୍ରାହ୍ମଣ ହୋଇବ
ଋକବେଦ ଯାକକୁ ମୁଖରେ ଗାଇବ ।
କହୁଥାଇଁ ମୋର ବୋଲରେ ଯୁଦ୍ଧ କରି
ବ୍ରାହ୍ମଣଙ୍କ ପାଇଁକି ଯାଅ ତୁମ୍ଭେ ମରି ।
ବ୍ରାହ୍ମଣ ହୋଇକରି ଜନମ ହୋଇବ
ମହତ କର୍ମ କରି ସ୍ୱର୍ଗକୁ ଲଭିବ ।
ଏହିରୂପେ ବ୍ୟାସଙ୍କଠାରୁ ଉପଦେଶ
ପାଇ ସେ ନୃପବର ହୋଇ ମହାତୋଷ ।

ବନ ମଧ୍ୟରେ ପଶି ଘୋର ତପ କଲେ
ବେଦବ୍ୟାସ ଗୋସାଇଁ ସେଠାକୁ ଆସିଲେ ।
ବୋଇଲେ ନୃପ ଆହେ ପ୍ରଜାକୁଳପାଳ
ମଲେ ତୁମ୍ଭେ ହୋଇବ ଦ୍ୱିଜକୁଳବାଳ ।
ବ୍ୟାସଙ୍କ ବଚନେ ସେ ତପକୁ ଛାଡ଼ିଲେ
ଘରକୁ ଆସି ପ୍ରଜାମାନଙ୍କୁ ପାଳିଲେ
କେତେକାଳ ଅନ୍ତେ କରନ୍ତେ ଦେହ ତ୍ୟାଗ
ବ୍ରାହ୍ମଣ ବୋଇଲେ ସେ ନୃପ ମହାଭାଗ ।
ବେଦବ୍ୟାସ ପୁଣି ଆସିଣ ତାଙ୍କଠାକୁ
ବୋଇଲେ ପାଇଲ ତ ବ୍ରାହ୍ମଣ ଦେହକୁ ।
ମୃତ୍ୟୁଠାରୁ ଏବେ ହେ ଦ୍ୱିଜ ଭୟ ଛାଡ଼
ଧର୍ମକଥାନ୍ତିରେ ଦଉଡ଼ ଧରଘଡ଼ ।
ଦ୍ୱିଜ ବୋଇଲେ ଏହା ଗଲା ମୋ ପାପନାଶ
ତୁମ୍ଭ ସକାଶରୁ ହେ ଦ୍ୱିଜକୁଳଈଶ ।
ଆହେ ଯୁଧିଷ୍ଠିର ବ୍ୟାସଙ୍କ ପ୍ରସାଦରେ
କୀଟ ବ୍ରାହ୍ମଣ ତ ହୋଇଲା ଏ ଲୋକରେ ।
ଶତ ଶତ ଯାଗ ବ୍ୟାସଙ୍କ ଅନୁଜ୍ଞାରେ
କରି ବ୍ରହ୍ମଲୋକେ ସେ ଗଲା ନିଃଶଙ୍କରେ ।
ରାଜାଏ ଯୁଦ୍ଧରେ ମଲେ ତ ଭଲଗତି
ହେଲା ତାହା କେତେ ଭାଳୁଛ ନରପତି ।
ଏଠାରେ ଶେଷ ହେଲା କୀଟ ଉପାଖ୍ୟାନ
କହଇ କୃଷ୍ଣସିଂହ ନରଙ୍କ ରାଜନ ।

—o—

## ମୈତ୍ରେୟ ଉପାଖ୍ୟାନ

ଯୁଧିଷ୍ଠିର ବୋଇଲେ ବିଦ୍ୟା ତପ ଦାନ
ଏଥିରେ କେ ଅଧିକ ତା ମୋତେ ବଖାଣ ।
ଭୀଷ୍ମ ବୋଇଲେ ଆହେ ବ୍ୟାସ ଋଷି ସାଇଁ
ମଇତ୍ରେୟଙ୍କୁ ଆସିଲେ ପ୍ରୀତି ବହି ।
ନିଜ ରୂପଟି କି ସେ କରିଣ ଆଚ୍ଛନ୍ନ
ମୋ କହିବାରୁ ଏହା ଯୁଧିଷ୍ଠିର ଜାଣ ।
ମଇତ୍ରେୟ ଋଷି ଯେ ବ୍ୟାସ ବୋଲି ଜାଣି
ବିଧିରେ ପୂଜା କଲେ ପାଣ୍ଡବ ନୃମଣି ।
ଏହା ବାହାରେ ମଇତ୍ରେୟ ଦେଲେ ଅନ୍ନ
ତାହା ଖାଇଣ ବେଦବ୍ୟାସ ତପୋଧନ ।
ଯିବାବେଳେ ଅଳପ ଅନାଇ ହସିଲେ
ମଇତ୍ରେୟ ଋଷି ତା ଦେଖି ମନ୍ତ୍ରିଲେ ।

ତୁମ୍ଭେ କମାଇଁ କହ ଆନନ୍ଦେ ହସିଲ
କହ ତ ବେଦବ୍ୟାସ ଋଷି ତପଃଶୀଳ ।
ବେଦବ୍ୟାସ ବୋଇଲେ ସଖ୍ୟ ସତ୍ୟ ଦାନ
ତିନଙ୍କି ଯେ ଆଚରେ ଜଗତେ ସେ ଧନ୍ୟ ।
ଭୋଗରେ ମୁଁ ତୁମ୍ଭଠାରୁ ଆସିଥିଲି
ଖାଇବାରୁ ବଡ ସନ୍ତୋଷ ହୋଇଗଲି ।
ଏହି ସକାଶରୁ ତୁମ୍ଭର ପୁଣ୍ୟ ଲୋକ
ହୋଇଲା ମଇତ୍ରେୟ ଋଷିଙ୍କ ନାୟକ ।
ବେଦରେ ଯେତେ କଥା ଖ୍ୟାତ ଅଛି ହୋଇ
ଦାନ ସେ ସବୁଙ୍କୁଟି ଅଧିକ ଅଟଇ ।
ଏହି ସକାଶରୁ ବ୍ରାହ୍ମଣେ ଦେଇ ଦାନ
ଯାଗ କର ଆହେ ମୈତ୍ରେୟ ତପୋଧନ ।
ମୈତ୍ରେୟ ବୋଇଲେ କହିବା ନୋହିଲା ଯାହା
ନ ମାନ ପାରଇ କ ମୋହ ଗୁର ତାହା ।
ତୁମ୍ଭ ଦରଶନରୁ ଗଲା ମୋର ପାପ
ତୁମ୍ଭେ ତ ସବୁ ଋଷିମାନଙ୍କ ଅଧିପ ।
ତପ ଶାସ୍ତ୍ର ଦୁଇରେ ପଣ୍ଡିତ ହୋଇଲେ
ବ୍ରାହ୍ମଣ ବୋଲିକରି କହି ତାକୁ ଭଲେ ।
ବ୍ରାହ୍ମଣଙ୍କୁ ନୃପତି କଲେ ପିତୃଦେବ
ତୃପତ ହୋଇଣ ବଡାନ୍ତ ଅତିଭାବ ।
ବ୍ରାହ୍ମଣଠାରୁ ବଡ ହୋଇ କେହି ନାହିଁ
ବ୍ରାହ୍ମଣଟି କୃତାର୍ଥ କରୁଅଛି ମହୀ ।
ବ୍ରାହ୍ମଣକୁ ନଦେଇ କରେ ଯେ ଭୋଜନ
ନରକ କୁଣ୍ଡେ ଯାଇ କରଇ ସେ ସ୍ନାନ ।
ଅନ୍ନରୁଟି ସମସ୍ତେ ଜନ୍ମ ହୋଇଛନ୍ତି
ଅନ୍ନରୁ ବଡ ହୋଇ ନାହିଁ ମହାମତି ।
ଏହିରୂପେ ଶୁଣିଣ ମଇତ୍ରେୟ ବାଣୀ
ପରଶଂସା କରିଲେ ବ୍ୟାସ ଋଷିମଣି ।
ବୋଇଲେ ଯାହା ହେଲା ଧର୍ମେ ତୁମ୍ଭ ଜ୍ଞାନ
ବୋଇଲେ ବଡ ଭାଗ୍ୟ ଅଟଇ ଏ ଜାଣ ।
ଦାନକୁ ମୁଁ ପ୍ରଶଂସା କରି କହୁଅଛି
ତ ପଃଶାସ୍ତ୍ର ତୁମ୍ଭେ ପ୍ରଶଂସ ଋଷିବହ୍ନି ।
ଏ ତିନକ ଏହି ତିନ ହେ ଅନୁରୂପ
କଥା ଅଟନ୍ତି ହେ ଛଡାଇବାକୁ ପାପ ।
ବ୍ରହ୍ମହତ୍ୟା ଗୋହତ୍ୟା ଗୁରୁସ୍ତ୍ରୀ ଗମନ
ଦୋଷ ତା'ପରେ ଜାଣ ହୋଇଯାଏ କ୍ଷୀଣ ।
ଦାନ ଦେବାର ଲୋକ ଇହ ପର ଦୁଇ
ଲୋକରେ ମହାସୁଖ ଗୋଟାକୁ ଲଭଇ ।
ଅନ୍ନଦାନ ଦେଲେ ସୁକୃତ ମାନଙ୍କର
ବ୍ରହ୍ମଲୋକ ହୁଅଇ ସନ୍ଦେହ ନ କର ।
ଆପଣ ତ କୁଳରେ ଜନ୍ମ ଅଛ ହୋଇ
ନ କହ ଅନୁରୂପ କଥାକୁ କମାଇଁ ।
କରିବାକୁ ତୁମ୍ଭର କଛି ମୋ ହୃଦୟ
ହେଉଛି ଜାଣ, ଏବେ ବୋଲ ମଇତ୍ରେୟ ।
ମଇତ୍ରେୟ ଶୁଣିଣ ବ୍ୟାସଙ୍କ ବଚନ
ବ୍ୟାସଙ୍କୁ ନମିଲେ ହୋଇଣ ପରସନ୍ନ ।
ବେଦବ୍ୟାସ ଗୋସାଇଁ ନିଜ ଆଶ୍ରମକୁ
ଗଲେ ଛାଡିଣ ମଇତ୍ରେୟଙ୍କ ପାଶକୁ ।
ମୈତ୍ରେୟ ଉପାଖ୍ୟାନ ହେଲା ସମାପତି
କହଇ କୃଷ୍ଣସିଂହ ନରକୁଳପତି ।

—*—

## ନାରୀ ଧର୍ମ

ଯୁଧିଷ୍ଠିର ବୋଇଲେ ସୁସ୍ତ୍ରିଙ୍କ ଆଚାର
କହ ଶୁଣିବାକୁ ହେଉଛି ମନ ମୋର ।
ଭୀଷ୍ମ ବୋଇଲେ ହେ ସୁମନା ଶାଣ୍ଡିଲୀର
ସମ୍ବାଦକୁ କହିବା ଶୁଣ ନରବର ।
ସୁମନା ପଚାରିଲେ କ ସୁକୃତ କରି
ଆସିଲ ହେ ଶାଣ୍ଡିଲୀ ଦେବଙ୍କର ପୁରୀ ।
ଶାଣ୍ଡିଲୀ ବୋଇଲେ ସନ୍ନ୍ୟାସ ଧର୍ମ କରି
ଆସିନାହିଁ ଜାଣ ହେ ଇନ୍ଦ୍ରଙ୍କର ପୁରୀ ।
ଗୃହସ୍ଥକୁ ମୋର ଅହିତ ବଚନ
ନ କହିବାରୁ ହେଲା ମୋର ସ୍ୱର୍ଗସ୍ଥାନ ।
ଦେବସ୍ୟ ବିନା ଅରହସ୍ୟ ମୁଁ ଗୃହକୁ
ଛାଡିଥିଲି ଦୂରରୁ ଜାଣ କହିବାକୁ ।
ଗୃହସ୍ଥ ଯାହା ମୋର ବୋଲନ୍ତି ମୁଁ ତାହା
କରିବାରେ ଜାଣ ହେ କରଇ ଉତ୍ସାହା ।
ମୋ ପାଶକୁ ଯେବେ ଆସନ୍ତି ମୋର ପତି
ପୂଜଇ ତାଙ୍କୁ ହୋଇ ଅତି ମୁଁ ବିନତି ।
ଯେଉଁକଥା ତାଙ୍କର ଖାଇଁବାକୁ ଇଚ୍ଛା
ନୋହଏ ତା ହୁଅଇ ମୁଁ ନ କରିଣ ବସ୍ତ୍ର ।
ପ୍ରବାସକୁ ଭରତା ଯାଇଥିଲେ ମୁହିଁ
ତାଙ୍କ ଭଲ ବାଞ୍ଛି ଉପାସେ ଥାଏ ରହି ।

ଷନ ସ୍ୱର ହନେ କରଇ ଥରେ ଗ୍ରାସ
ବେଶ ନୋହୁଣ ଦେହ କରଥାଏ କୃଶ ।
ଭର୍ତ୍ତା ଯେବେ ଶୋଇଥାନ୍ତି ମୁଁ ନ ଉଠାଏ
ଉନ୍ନିଦ୍ର ହୋଇ ବସି ପାଦ ଘଷୁଥାଏ ।
ଯେଉଁ ସ୍ତ୍ରୀ ଏ ମୋ ପରି ଧର୍ମ ଆଚରିବ
ସ୍ୱର୍ଗରୁ ସେ ଅଧିକ ଲୋକକୁ ପାଇବ ।
ଏରୂପେ ଶାଣ୍ଡିଲ୍ୟ ସୁମନା ଆଗେ କହି
ଅନ୍ତର୍ଦ୍ଧାନ ହେଲେ ହେ ଜାଣ ନରସାଇଁ ।
ଏହାକୁ ଯେଉଁ ନାରୀ କରଇ ଶ୍ରବଣ
ନିତ୍ୟ ସ୍ୱର୍ଗ ତାହାର ହୁଅଇଟି ଜାଣ ।
ଶାଣ୍ଡିଲ୍ୟ ସୁମନା-ସମ୍ବାଦ ହେଲା ଶେଷ
କହଇ କୃଷ୍ଣସିଂହ ଧରାକୋଟ ଈଶ ।

—*—

## କୃଶତାର କାରଣ

ଯୁଧିଷ୍ଠିର ବୋଇଲେ କଥାରେ କହିବାର
ହେବାର, ଏ ଦୁଇରେ ଅଟଇ କେ ବର ।
ଭୀଷ୍ମ ବୋଇଲେ ହେ ହେବାର କହିବାରେ
ପ୍ରୀତି ହେବାକୁ ହେ ଅଛନ୍ତି ଜାଣ ନରେ ।
ପ୍ରୀତିର ଗୁଣ ଆଗ କହିବା ତୁମ୍ଭଙ୍କୁ
ଦିଅ ତୁମ୍ଭେ ହେ ମନ ଆମ୍ଭର କଥାକୁ ।
ଦ୍ୱିଜଟିକ ବନରେ ରାକ୍ଷସ ଚୋଟାଏ
ଗୋଡ଼ାଇଲା କାଢି ଦେଇଣ ଜଭୁଟାଏ ।
ବ୍ରାହ୍ମଣ ତ ବୁଦ୍ଧିରେ ଅଟନ୍ତି ସମ୍ପୂର୍ଣ୍ଣ
ରାକ୍ଷସକୁ ଚାହିଁ କହିଲେ ଏ ବଚନ ।
ସ୍ୱଭାବରେ ତ ନରେ ତୁମ୍ଭର ଆହାର
ତୁମ୍ଭର ଧାଇଁବାର ହେଲା ଅବେଭାର ।
କେବଳ ମୋ ପ୍ରାଣକୁ ଉଦରଣ କହୁଛି
ରଖ ମୁଁ ତୁମ୍ଭଠାରେ ଶରଣ ପଶୁଛି ।
ରାକ୍ଷସ ବୋଇଲା କାହିଁକି ହେଲୁ କୃଶ
ତା କହିଲେ ନ ଭକ୍ଷିବି ମୁଁ ତୋର ମାଂସ
ମୁହୂର୍ତ୍ତେ ଚିନ୍ତା କରି ବ୍ରାହ୍ମଣ କହିଲେ
ବିଦେଶ ଆପଣ କରିବା ହୋଇଥିଲେ ।
ସୁହୃଦଙ୍କୁ ନ ଦେଇ ଆଗ କଲ ଗ୍ରାସ
ଏଣୁ ହୋଇଗଲଟି ତୁମ୍ଭ ଦେହ କୃଶ ।
ଗୁଣବନ୍ତ ହୋଇଣ ନିର୍ଗୁଣ ଲୋକଙ୍କୁ
ନ କହିବାରୁ ପାଇଲ ଯେ କୃଶତାକୁ ।
ମହତ କଥାରେ ତ ବଳାଇଛ ଆଶା
ଏ ସକାଶୁଁ ହେହେ କୃଶତା କଲା ବସା ।
କ୍ରୋଧ ହୋଇଥିଲେ ତ କହିଲେ ନ ହେନ
ଏହେତୁ କୃଶ ହୋଇଗଲ ଅପଘନ ।
ମିତ୍ରମାନଙ୍କର ଆରତ ନାଶକାରୀ ।
ନୋହିବାରୁ କୃଶତା ଅଛ ତୁମ୍ଭେ ଧରି ।
ପାପୀମାନଙ୍କର ବୃଦ୍ଧି ସାଧୂଙ୍କ ଅଶ୍ରେୟ
ନିରେଖିବାରୁ ହେଲା ତୁମ୍ଭ କାୟା କ୍ଷୟ ।
ଏହିରୂପେ ରାକ୍ଷସ ବ୍ରାହ୍ମଣ ବଚନ
ଶୁଣି ଦ୍ୱିଜଠାରେ ହୋଇଣ ପରସନ ।
ବୋଇଲେ ଆଜଠାରୁ ସଖା ମୋର ହେଲ
ଲାଗିଲା ମୋତେ ଆଜି ତୁମ୍ଭର ସେ ଭଲ ।
ଏତେ କହି ଦ୍ୱିଜଙ୍କୁ ନମସ୍କାରଟାଏ
ନମ୍ର ହୋଇ କଲା ରାକ୍ଷସକୁଳ-ରାୟେ ।
ଦ୍ୱିଜ ସେ ରାକ୍ଷର ବାଞ୍ଛିଣ କଲ୍ୟାଣ
ଘରକୁ ଗଲେ ଯୁଧିଷ୍ଠିର ନୃପ ଜାଣ ।
ବ୍ରାହ୍ମଣ ରାକ୍ଷସର କୃଶତା ସମ୍ବାଦ
ସାରିଲେ କୃଷ୍ଣସିଂହ ନୃପ ବହି ମୋଦ ।
କହଇ ଦାନଧର୍ମ ନୀତି ପ୍ରବନ୍ଧରେ
ନ ପଡ଼ିବ ବୋଲିଣ ସଂସାର-ବନ୍ଧରେ ।

—*—

## ପୁଣ୍ୟ ଲାଭର ଉପାୟ

ଯୁଧିଷ୍ଠିର ବୋଇଲେ ନରଜନ୍ମ ହୋଇ
କି କରିବ ଭୀଷ୍ମ ହେ କହ ଶ୍ରେୟ ପାଇଁ ।
ଏ ବାହାରେ ଗୁପତକଥା ଯାହା ଜାଣ
ତା ମଧ୍ୟ ପିତାମହ କର ହେ ବଖାଣ ।
ଭୀଷ୍ମ ବୋଇଲେ ଆହେ ଧର୍ମ ଗୁପ୍ତକଥା
କହିବା ଶୁଣ ହେ ପାଣ୍ଡବ ମହାରଥା
ଦେବ ପିତୃ ଯଜ୍ଞରେ ହୋଇବେ ତୃପତ
କହିଛନ୍ତି ବ୍ୟାସ, ତା କର ଅବିରତ ।
ଋଷିମାନେ ଯେଉଁ ଧରମ କରିଛନ୍ତି
ତା କଲେ ନରେ ଗୁଣଯୁକ୍ତେ ଲେଖା ଯାନ୍ତି ।
ଦଶଜୀବ ହତ୍ୟା କରିବା ଲୋକଙ୍କର
ସମାନ ଅଟଇ କୁମ୍ଭାର ମନେକର ।
ଦଶ କୁମ୍ଭାରଙ୍କ ସମାନ ଅଟେ ତେଲି ।
ଘଣା ବୁଲାଏ ତ ସେ ବଳଦକୁ ପେଲି ।

ଦଶଚେଲି ସମାନ ଅଟେ ବେଶ୍ୟା ହିଂସା
ଦଶବେଶ୍ୟା ସମ କୁତ୍ସିତ ଦଣ୍ଡଧାଶା ।
ଏହି କଥା ଜାଣି କୁତ୍ସିତ ନୃପ ଧନ
ନ ଖାଇବ କେବେ ପଣ୍ଡିତ ଦ୍ୱିଜଜନ ।
ଯେଉଁ ନର ଅତିଥିଙ୍କି ପୂଜନ କରେ
ଗୋଦାନ ତୀର୍ଥସ୍ନାନ ଫଳ ତା'ର କରେ ।
ଦେବଦୂତ ପୂର୍ବରେ କହିଲା ଇନ୍ଦ୍ରଙ୍କୁ
ଯାହା ତାହା କହିବା ରାଜନ ତୁମ୍ଭଙ୍କୁ ।
ଆନମାନଙ୍କୁ ଏ ଯେ ନୁହଇ ଗୋଚର
ଶୁଣ ତା ଦେବଦୂତ ମନ କର ଧୀର ।
ଶ୍ରାଦ୍ଧ ଦ୍ୱିଜ ଶ୍ରାଦ୍ଧ କରିବା ମନୁଷ୍ୟର
ଶ୍ରାଦ୍ଧଦିନ କମ୍ପାଇ ନୋହିଲି ଶୃଙ୍ଗାର ।
ତିନୋଟି ପିଣ୍ଡ ଶ୍ରାଦ୍ଧେ ବାଢ଼ି ପକ୍ଷପାଖେ
ସେ ଅବା ପଡ଼ଇ ଯାଇ କାହାର ମୁଖେ ।
ଏହିକଥା ପିତୃମାନଙ୍କୁ ପଚ୍ଚରନ୍ତେ
ସେମାନେ ମୋତେ ଏହା କହିଲେ ସୁଚନ୍ତେ
ଶ୍ରାଦ୍ଧଦ୍ୱିଜ ଶ୍ରାଦ୍ଧକରତା ରତି କଲେ
ରେତ ପିତୃମୁଖେ ପ୍ରାପତ ହୋଏ ଭଲେ ।
ପ୍ରଥମ ପିଣ୍ଡ ଦେବ ଜଳରେ ପକାଇ
ତୃତୀୟ ପିଣ୍ଡ ଦେବ ଅଗ୍ନି ମଧ୍ୟେ ଥୋଇ ।
ମଧ୍ୟ ପିଣ୍ଡଟିକ ଯେ ଆପଣା ଭାରିଯା
ଖାଇଲେ, ପିତୃଏ କରନ୍ତି ତୋଷ ମାୟା ।
ତହିଁକି ପୁଚ୍ଛିଲି ପିଣ୍ଡକୁ ତିନଠାରେ
ଦେବ ବୋଲି କହିଲ ତ ମୋହଠାରେ ।
ଏଥିର ଯେ କାରଣ ଅଛି ତା ପିତୃଏ
କହିଲେ ବତାଇ ମୁଁ ଘେନିବି ହୃଦୟେ ।
ପିତୃମାନେ ବୋଇଲେ ପିଣ୍ଡର ବିଧାନ
ଜାଣିଅଛନ୍ତି ମାର୍କଣ୍ଡେୟ ତପୋଧନ ।
ଆନମାନଙ୍କୁ ତାହା ନୁହଇ ଗୋଚର
ଶୁଣ ତା ଦେବଦୂତ ମନ କର ସ୍ଥିର ।
ଜଳରେ ଯେଉଁ ପିଣ୍ଡ ଦିଅନ୍ତି ପ୍ରକାର
ଚନ୍ଦ୍ରଙ୍କର ପ୍ରୀତି ବଢ଼ାଏଟି ସେହି ।
ଚନ୍ଦ୍ର ପ୍ରୀତ ହେଲେ ଦେବଙ୍କ ତୁଲେ ଆମ୍ଭେ
ପ୍ରୀତ ହେଉଁ ବୋଲିକରି ହେ ଜାଣ ତୁମ୍ଭେ ।
ଭାର୍ଯ୍ୟା ଯେଉଁ ପିଣ୍ଡକୁ କରଇ ଭୋଜନ
ସେହି ସକାଶୁଁ ହୁଏ ପ୍ରଜାବନ୍ତ ଜାଣ ।

ଅଗ୍ନିରେ ପିଣ୍ଡ ଦେଲେ ପିତୃତୋଷ ହୋଇ
ମନୋରଥଟିକ ସେ ଦିଅନ୍ତି ପୂରାଇ ।
ସେକାଳେ ବିଦ୍ୟୁତ୍ପ୍ରଭ କହିଲେ ଇନ୍ଦ୍ରଙ୍କୁ
ନରମାନେ ହୃଦୟରେ ବନ୍ଧିଣ ମୋହକୁ ।
କୀଟ ପକ୍ଷୀମାନଙ୍କ ଘେନିଣ ଜୀବନ
ପାପକୁ ସ୍ଥାନ ଦେଉଛନ୍ତି ଅପଘନ ।
ଏଥିକି କେଉଁ କଥା ଅଟେ ପ୍ରତିକାର
କହ ତ ତାହା ମୋତେ ଆହେ ପୁରନ୍ଦର ।
ଇନ୍ଦ୍ର ବୋଇଲେ ଆହେ ତୀର୍ଥଙ୍କରେ ସ୍ନାନ
କଲେ ପାପୀ ଲୋକ ପବିତ୍ର ହୋଏ ଜାଣ ।
ଗାଈ ପୃଷ୍ଠ ଛୁଇଁ ଗାଈଙ୍କ ଲାଙ୍ଗୁଡ଼କୁ
ଜୁହାରିଲେ ଲୋକ ଛାଡ଼ଇ ପାତକକୁ ।
ବିଦ୍ୟୁତ୍ପ୍ରଭ ବୋଇଲେ ବଟକଷା ଅଙ୍ଗେ
ଲଗାଇଲେ ପାତକ ନ ରହଇ ଅଙ୍ଗେ ।
ଷାଠିକା ଧାନ ଭାତ ଖାଇଲେ ବି ପାପ
ହୋଇଯାଏ ଜାଣ ହେ ଇନ୍ଦ୍ରଦେବ ଲୋପ ।
ପର୍ବତରେ ଉଠି ଯେ ଗୋଡ଼କେ ସୂର୍ଯ୍ୟଙ୍କୁ
ଉଦ୍ଦିକରି ରୁହେଁ, ସେ ଛାଡ଼େ ପାତକକୁ ।
ଏହା ଶୁଣିଣ ଇନ୍ଦ୍ର ପୁଚ୍ଛିଲେ ଗୁରୁଙ୍କୁ
କହ ହେ ଲୋକ ଗୁଣ ଦୋଷକୁ ଆମ୍ଭଙ୍କୁ ।
ବୃହସ୍ପତି ବୋଇଲେ ସୂର୍ଯ୍ୟଙ୍କୁ ଅନାଇଁ
ଛାଡ଼େ ଯେ ମଳ ମୂତ୍ର, ମହାପାପୀ ସେହି ।
ସେହି ପାତକରୁ ଯେ ତା ଭାରିଯାମାନେ
ଆନ ଘଇତାକୁ ଇଚ୍ଛନ୍ତି ଅବଚ୍ଛିନ୍ନେ ।
ପବନଙ୍କୁ ନିନ୍ଦା କରଇ ଯେଉଁ ନର
ଗର୍ଭ ଭାଙ୍ଗିଯାଏଟି ତାର ଭାରିଯାର ।
ଜ୍ୱଳନ୍ତା ଅଗ୍ନିରେ ଯେ ହୋମ ନ କରଇ
ସେ ଯେତେ ଦେଲେ ଅଗ୍ନି ତା ପାଆନ୍ତି ନାହିଁ
ବାଳବତ୍ସା ଗାଈର ଦୁଧ ଦୁହେଁ ଯେହି
ଖାଇବା ଲୋଭେ ତା ସନ୍ତାନ ଜନ୍ମଇ ।
ଋଷିମାନେ ପୂର୍ବେ ପିତୃଙ୍କୁ ପଚ୍ଚରିଲେ
କହ କି କଥା କଲେ ତୋଷ ହୁଅ ଭଲେ ।
ପିତୃଏ ବୋଇଲେ ହେ ନୀଳବୃଷ ଦାନ
ଦେଲେ ପୁତ୍ର ତୋଷ ହୁଅଇ ଆମ୍ଭ ମନ ।
ଅମାବାସ୍ୟା ଦିନ ତିଳୋଦକେ ତର୍ପଣ
କଲେ ମଧ୍ୟ ଆମ୍ଭେ ସନ୍ତୋଷ ହେଉ ଜାଣ ।

ବର୍ଷା ଋତୁମାସ ବିଷ୍ଣୁଙ୍କ ସ୍ଥାନେ ଦୀପ
ଆମ୍ଭଙ୍କୁ ଦେଲେ କରୁଁ କଲ୍ୟାଣ ଅମାପ ।
ଏହା ଶୁଣି ପୁଛିଲେ ବୃଦ୍ଧ ଗର୍ଗଋଷି
ଏ ତିନକଥା ଫଳ କହ ପିତୃବର୍ହି ।
ପିତୃଏ ବୋଇଲେ ହେ ବୃଷଭ ଲାଙ୍ଗୂଳ
ପାଣି ତଳେ ପଡିଲେ ବଢ଼େ ଆମ୍ଭ ବଳ ।
ଷାଠିଏ ସହସ୍ର ବରଷ ଶେଷଯାଏ
ଆମ୍ଭର କହିବାର ଯେନ ହେ ହୃଦୟେ ।
ସିଂହରେ ବୃଷଭ ପାଣିରୁ ଆଣେ ପଙ୍କ
ତେଣୁ ଘୁଞ୍ଚେ ଆମ୍ଭର ହୃଦର ଆତଙ୍କ ।
ବରଷାରେ ପ୍ରଦୀପ ଦେଲେ ଆମ୍ଭେମାନେ
ଚନ୍ଦ୍ର ପ୍ରଭା ବହି ଯାଉଁଛି ନିଜସ୍ଥାନେ ।
ଅମାବାସ୍ୟା ଦିନରେ ମଧୁ ତିଳ ଦାନ
ଯେ କରେ ତା କୁଳେ କରଉଁ ପୁଷ୍ଟ ଜାଣ ।
ବାସବ ପଚାରିଲେ ବିଷ୍ଣୁଙ୍କୁ ଅନାଇଁ
କି ଦେଲେ ତୃପ୍ତ ତୁମ୍ଭେ ହୁଅ ଲକ୍ଷ୍ମୀସାଇଁ ।
ବିଷ୍ଣୁ ବୋଇଲେ ଯେହୁ ବ୍ରାହ୍ମଣ ପୂଜନ
କରଇ ସେ ମୋହର ଭକ୍ତ ବୋଲି ଜାଣ
ବ୍ରାହ୍ମଣପ୍ରତି ଦ୍ୱେଷ କରଇଟି ଯେହି
ଅଟଇଟି ଜାଣ ମୋହର ଦୋଷୀ ସେହି ।
ଯେ ଜନ ବ୍ରାହ୍ମଣଙ୍କୁ କରେ ନମସ୍କାର
ତାହାକୁ ମୁହିଁ ବୋଲୁଥାଇଟି ମୋହର ।
ସୁଦରଶନ ଚକ୍ର ମୋର ପାଦ ଦୁଇ
ଯେ ପୂଜଇ ତା ପାପ ଧ୍ୱଂସ କରେ ମୁହିଁ ।
ଅଶ୍ୱତ୍ଥ ଗୋରଚନା ଗାଈଙ୍କୁ ପୂଜନ
ଯେ କରେ ତିନିଲୋକ ପୂଜଇ ସେ ଜାଣ ।
ପାଣିରୁ ବାହାରିବା ବରାହକୁ ଦେଖି
ନମିଲେ ମୁଁ ହୁଅଇ ଜାଣ ମହାସୁଖୀ ।
ଏହା ବାହାରେ ମଧ୍ୟ ବାମନ ପୂଜନ
ଯେ କରେ ତାହାକୁ ପୂଜନ୍ତି ଶଚୀ ରାଣ ।
ଇନ୍ଦ୍ର ପଚାରିଲେ ଏ କଥାର କାରଣ
କହ ତ ଏବେ ମୋତେ ଲକ୍ଷ୍ମୀଙ୍କ ରମଣ ।
ବିଷ୍ଣୁ ବୋଇଲେ ହେ ଚକ୍ରରେ ଦୈତ୍ୟକୁଳ
ମାରିଅଛି ମୁହିଁ ଦେଖାଇ ବାହୁ ବଳ ।
ପାଦରୁ ମୋର ମହୀ ଜନମ ହୋଇଛି
ବରାହରୂପେ ମୁହିଁ ମହୀ ଉଦ୍ଧାରିଛି ।

ବାମନ ରୂପେ ମୁଁ ବଳୀକି ମାଗି ଦାନ
ରଖିଲି ଏ ତିନିଜଗତ ପ୍ରାଣୀଗଣ ।
ଏହି ସକାଶରୁ ଏଥିରେ ମୋର ପ୍ରୀତି
ଥାଏ ଏହା ପୂଜିଲେ ହୋଏ ମୁଁ ତୃପତି ।
ପ୍ରାତଃକାଳୁଁ ଉଠି ଯେ ସ୍ନାନ କରି ସନ୍ଧ୍ୟା
କ ଇ ମାତକରେ ନୁହଇ ସେ ଅନ୍ଧା ।
ବଳଦେବ ପୂର୍ବେ କହିଅଛନ୍ତି ଯାହା
ତାହା କହିବା ଶୁଣ ପାଣ୍ଡବ ନରନାହା ।
ପ୍ରାତଃକାଳୁ ଉଠି ଯେ ଗାଈ ଦଧି ଘୃତ
ଛୁଅଇଁ ତାର ପୁଣ୍ୟ ହୁଅଇ ବହୁତ ।
ଦେବତାଏ ବୋଇଲେ ତାମ୍ର ପାତ୍ର ଧରି
ସଂକଳ୍ପ କଲେ ସିଦ୍ଧି ହୁଅଇ ତାହାରି ।
ତାମ୍ର ପାତ୍ର ବିନା ଆନରେ ତରପଣ
ପିତୃଙ୍କୁ କଲେ ଫଳ ଊଣା ହୋଏ ଜାଣ ।
ଧର୍ମରାଜ ବୋଇଲେ ନାଟୁଆ ଶୂଦ୍ର ସ୍ତ୍ରୀ-
ରତିକାରୀ ଦ୍ୱିଜେ ନ ଦେବ ଦାନ କରି ।
ଅତିଥି ଯାହା ଘରୁ ଆଶାହୀନ ହୋଇ
ଯାଏ ତାହାର ପୁଣ୍ୟ କେବେହେଁ ନୁହଇ
ଦ୍ୱିଜ ଅଗ୍ନି ଗାଈଙ୍କି ଛୁଇଁଲେ ପାଦରେ
ମହାନ ପାପ ଲଭି ପଡ଼େ ବିପଦରେ ।
ବିଶ୍ୱାମିତ୍ର ବୋଇଲେ ଆଶ୍ୱିନ ତ୍ରୟୋଦଶୀ
ମଘା ହୋଇଲେ ଯେ ଶ୍ରାଦ୍ଧ କରେ ବସି ।
ହୀଶ ପତ୍ରରେ ବାଢ଼ି ତାହାର ସୁକୃତ
ବଢ଼ଇଟି ଜାଣ ମହୀରେ ଅପ୍ରମିତ ।
ଗାଈମାନେ ବୋଇଲେ ଆମ୍ଭ ନାମମାନ
ଯେ ଉଚାରେ ସ୍ୱର୍ଗରେ ବୋଲଏ ସେ ଅନ୍ୟ
ଏହା କହି ଭୀଷ୍ମ ବୋଇଲେ ସାତଋଷି
ପୁଛନ୍ତେ ବ୍ରହ୍ମା ଯାହା କହିଛନ୍ତି ବସି ।
ତା କହିବା ତୁମ୍ଭଙ୍କୁ ରାଜା ଯୁଧିଷ୍ଠିର
ମୋହଠାରୁ ଶୁଣ ମନକୁ କରି ଧୀର ।
ବ୍ରହ୍ମା ବୋଇଲେ ଯେ ପୌଷମାସ ଶୁକ୍ଳ-
ପକ୍ଷରେ ରୋହିଣୀ ନକ୍ଷତ୍ରେ ପ୍ରାଣିକୁଳ
ସ୍ନାନ କରିଣ ଆକାଶକୁ ଚାହିଁ ଚନ୍ଦ୍ର
କିରଣକୁ ପିଇଲେ ଅରଜଇ ଭଦ୍ର ।
ବିଶ୍ୱବସୁ ବୋଇଲେ ପଉର୍ଣ୍ଣମୀ ଦିନ
ଚନ୍ଦ୍ରୋଦୟ କାଳରେ କଲେ ବଳ ଦାନ ।

ତିନ ଅଗ୍ନି ହୋମ କରିବା ଫଳ ପାଏ
ଅନ୍ତକାଳେ ଦେବତା ହୋଇ ସ୍ୱର୍ଗେ ରହେ ।
ଅମାବାସ୍ୟା ଦିନରେ ବୃକ୍ଷ ଯେ କାଟଇ
ଅଲକ୍ଷ୍ୟରେ ବ୍ରହ୍ମହତ୍ୟାକୁ ସେ ଆଣଇ ।
ଅମାବାସ୍ୟା ଦିନ କାଠିରେ ଯେହୁ ଦାନ୍ତ
ଘଷଇ ତା ପିତୃ ନୁହନ୍ତି ତୋଷଚିତ୍ତ ।
ଲକ୍ଷ୍ମୀ ବୋଇଲେ ଆହେ କଂସା ଭିନ୍ନ ହୋଇ
ଯା ଘରେ ପଡ଼ିଥାଏ ତାକୁ ମୁଁ ଛାଡ଼ଇ ।
ଗାର୍ଗ୍ୟ ବୋଇଲେ ଆହେ ଗାଈ ବ୍ରାହ୍ମଣଙ୍କୁ
ଯେ ହିଂସା ନ କରେ ସେ ଲଭଇ ସ୍ୱର୍ଗକୁ ।
ଦିବସକାଳେ ନିଦ୍ରା ମାଉଁସ ଭୋଜନ
ଯେ ଛାଡ଼ିଛି ମହତ ସୁକୃତି ସେ ଜନ ।
ରଜସ୍ୱଳା ସୂତିକା ସ୍ତ୍ରୀ ଯାହା ଗୃହେ
ତା ପିତୃ ଦେବ କେବେ ନ ପାଆନ୍ତି ସ୍ନେହେ
ଶୁକ୍ଳଲୁଗା ପିନ୍ଧି ଭାରତ କୀର୍ତ୍ତନ
କଲେ ମହତ ପୁଣ୍ୟବନ୍ତ ହୋଏ ଜନ ।
ଧୌମ୍ୟ ବୋଇଲେ ହେ ବୃକ୍ଷକୁ ନିଜ ଘରେ
ରୋପିଲେ ମହାଦୋଷ ଲଭନ୍ତି ନରେ ।
ଖଜପିବା ମାନେ ଖାଇଲେ ନିତି ହିନ୍ଦୁ
ଜାତ ନୋହନ୍ତି ଉପୁଜେ ତହୁଁ ମହାନନ୍ଦ ।
ଖଜଳ ଖଟରେ ଶୋଇଲେ ଧନ ଯାଏ
ଯାହା ଘରେ ଥାଏ ତା ବୋଲ୍ହିନଏ ସମ୍ପେ ।
କୁଳକୁଣ୍ଡା କୁକୁରଙ୍କ ଦେଖିବା ହବିକ
ଦେବଙ୍କୁ ଦେଲେ କରେ ଦେବ ଅପ୍ରୀତିକ ।
ଯମଦଗ୍ନି ବୋଇଲେ ଚଳେ କରି ମୁଣ୍ଡ
ଯେ ତପ କରଇ ସେ ଜିଣଇ ବ୍ରହ୍ମାଣ୍ଡ ।
ପବନ ବୋଇଲେ ଯେ ଚାତୁର୍ମାସ୍ୟ ଦୀପ
ଦିଏ ସେ ସ୍ୱର୍ଗ ପାଏ ପାପ କରି ଲୋପ ।
ଯାଗାଗ୍ନି ଶୂଦ୍ର ନେଲେ ସ୍ତ୍ରୀ ହବି ଦେଲେ
ଅଗ୍ନି ଦେବ କ୍ରୋଧ ହୁଅନ୍ତେ ଜାଣ ଭଲେ ।
ଲୋମଶ ବୋଇଲେ ଯେ କଉପୁନି ମାରି
ଭୋଗ କରୁଥାନ୍ତି ଲୁଚିଇ ପରସ୍ତ୍ରୀ ।
ତାହାଙ୍କ ପାତକ ସହସ୍ର ସମ୍ବତ୍ସରେ
କହି ନ ପାରିବି ମୁଁ ମୋହର ମୁଖରେ ।
ପରସ୍ତ୍ରୀ ନିରତ ବ୍ରାହ୍ମସ୍ୱ ହରଣ
ବନ୍ଧ୍ୟାସ୍ତ୍ରୀ ମୈଥୁନ ସମାନଦୋଷ ଜାଣ ।

ପ୍ରତି ପଉର୍ଣ୍ଣମୀରେ ପ୍ରତି ଦ୍ୱାଦଶୀରେ
ଘୃତ ଅନ୍ନ ଯେ ଦିଏ ବ୍ରାହ୍ମଣଙ୍କ କରେ ।
ଚନ୍ଦ୍ର ଦେବତାଟି ହୁଅନ୍ତି ଜାଣ ପ୍ରୀତ
ଆୟୁ ଶିରୀ ତାହାର ବଢ଼ଇ ବହୁତ ।
ସଙ୍କ୍ରାନ୍ତି ଗାଧୋଇ ଦ୍ୱିଜଙ୍କୁ ତିଳମାଷ
ଦୀପ ଦେଲେ ଲୋକ ହୁଅନ୍ତି ପବନ ।
ଶ୍ରାଦ୍ଧରେ ତିଳୋଦକ ଦୀପଦାନ ଦେଖିଲେ
ପିତୃଏ ସନ୍ତୋଷ ହୋଇଯାନ୍ତି ଭଲେ ।
ଅରୁନ୍ଧତୀ ବୋଇଲେ ଅତିଥି ତୋଷିଲେ
କପିଳାଦାନ ଫଳ ଲଭଇ ସେ ଭଲେ ।
ଗାଈ ଶୃଙ୍ଗ କୁଶ ପାଣିରେ ଧୋଇ ଆଣି
ସିଞ୍ଚିଦେଲେ ମୁକ୍ତ ହୁଅନ୍ତି ନରଶ୍ରେଣୀ ।
ଯମ ବୋଇଲେ ହେ ପାପପୁଣ୍ୟ କର୍ମେ
ତାକୁ ମୁଁ ଦୁଇକଥା ଭୁଞ୍ଜାଏ କାଳରେ ।
ଏହି ସକାଶରୁ ଯେ ଜ୍ଞାନବନ୍ତ ଜନ
ଦେବ ଜଳ ଦୀପ କପିଳା ଗାଈ ଦାନ ।
ପାପୀଙ୍କ ନରକେ ପକାଇ ଦଣ୍ଡ ଦିଏ
ପୁଣ୍ୟବନ୍ତ ଲୋକଙ୍କି ଏକ ପୂଜା ପାଏ ।
ଜଳଦାନ ଲୋକ ଲୋକକୁ ପୁଣ୍ୟୋଦକ
ନଦୀଜଳ ଦେଇ ଛଡ଼ାଏ ହୁହୁଁ ଦକ ।
ଦୀପଦେବା ଲୋକ ଗଲେ ମୋର ସ୍ଥାନକୁ
ଦିହୁଡ଼ି ଦେଖାଇଣ ନିଏ ମୁଁ ତାହାକୁ ।
ବ୍ରହ୍ମହତ୍ୟା କରିଲା ଲୋକଟି କପିଳା
ଦେଲେ ମାହା ହୁଅଇ ତାକୁ ପୁଣ୍ୟହେଲା ।
ଏ ସକାଶୁଁ ତାହାକୁ ନ ପାରଇ କରି
ଦଣ୍ଡ, ଜାଣିଥାଅ ହେ ସମସ୍ତେ ବିସ୍ତରି ।
ପାଣ୍ଡୋଇ ଛତା ଦିଅଇ ଯେ ଦ୍ୱିଜ କରେ
ଟେକାଏ ସେହୁ ଛନ୍ଦ ଯାଇ ମୋ ଲୋକରେ
ବିଭାବସୁ ବୋଇଲେ ଦାନ ଯେ ଦିଅଇ
ତାହାକୁ ତୁମ୍ଭେ ଯମ ପାରିବନ୍ତି କେହି ।
ନ ବୋଲି ଧର୍ମେ ବ୍ରହ୍ମହତ୍ୟାକୁ କରିବ
ପରସ୍ତ୍ରୀ ଭେନ ଏକାନ୍ତେ ବିହରିବ ।
ପରର ଅପବାଦ ଗାଉଥିବ ମୁଖେ
ବିଶ୍ୱାସଘାତି ହୋଇ ନେବ ଦିନ ସୁଖେ ।
ଏହିପରି ଲୋକକୁ ଶୋଣିତ ଭୋଜନ
ଦେଇ ଏକା ଦଣ୍ଡି ପାରି ହେ ଜନୁଷଣ ।

ଋଷିମାନେ ପୁଚ୍ଛିଲେ ପ୍ରମଥଙ୍କୁ ଗୃହୀଁ
କି କଲେ ଲୋକ ତୁମ୍ଭ ମୁଖରୁ ତରଇ ।
ଏହା ଶୁଣିବାକୁ ହେଉଛୁ ଆମ୍ଭ ମନ
ସତ କରି ପ୍ରମଥଗଣ ହେ ବଖାଣ ।
ପ୍ରମଥ ବୋଇଲେ ହେ ଋଷିଙ୍କ ସଂଭୋଗ
କରି ଶୁଦ୍ଧ ନ କରଇ ଯେ ଅଙ୍ଗଭାଗ ।
ବୃକ୍ଷମୂଳେ ଯେଉଁ ନରଟି ଶୁଅଇ
ଯେ ଲୋକ ସମସ୍ଥାନେ ଆମିଷ ରଖଇ ।
ଜଳରେ ମଳମୂତ୍ର ସିଙ୍ଘାଣି ଉତ୍ସର୍ଗ
ଯେ କରେ, ସେ ହୁଅଇ ଆମ୍ଭରଟି ଭାଗ ।
ଯେଉଁମାନେ ଗୋରଚନାକୁ ଦେନଥାନ୍ତି
ରତନ ସୁନା ଦିଅ ଅଙ୍ଗରେ ବହନ୍ତି ।
ମାଉଁସକୁ ଦେଖି ଯେ ପକାନ୍ତି ଖଙ୍କାର
ତାଙ୍କୁ ଦେଖୁଥିଲେ ଆମ୍ଭଙ୍କୁ ମାଡେ ଡର ।
ଯା ଘରେ ରହିଥାଏ ବାଘଚର୍ମ ଦାନ୍ତ
ଏ ବାହାରେ ଯେ ଛେଳି ଭରାଣ୍ଡ ବନ୍ଧୁତ ।
ଥାଇ ରାତ୍ର ଦିବସ ଅଗ୍ନି ଜଳୁଥାଏ
ତା ଘରକୁ ଦେଖିଲେ ମଣ୍ଡୁଁ ମହାଭୟେ ।
ଏହା ଶୁଣି ଭୀଷ୍ମ ବୋଇଲେ ଯୁଧିଷ୍ଠିର
ପୂର୍ବେ ଇନ୍ଦ୍ରଙ୍କୁ କହିଲେ କୁଶଧର ।
ରେଣୁକାନାଗ ଭଗୀରଥଙ୍କଠାକୁ ଯାନ୍ତୁ
ରହସ୍ୟ ପୁଚ୍ଛି ଆସି ତୁମ୍ଭଙ୍କୁ କହନ୍ତୁ ।
ଏହା ଶୁଣି ଇନ୍ଦ୍ର ଡକାଇ ରେଣୁକକୁ
ବୋଇଲେ ଯାଅ ତୁମ୍ଭେ ଭଗଗଜଙ୍କଠାକୁ ।
ବ୍ରହ୍ମା ବୋଲୁଅଛନ୍ତି ରହସ୍ୟ ପବିତ୍ର
ଆମ୍ଭଙ୍କୁ କହିବ ତା ଆସି ତଥ୍ୟ କରି ।
ରେଣୁକ ନାଗ ଇନ୍ଦ୍ର ବଚନ ଶୁଣିଲେ
ଭଗ୍‌ଗଜଙ୍କୁ ଯାଇଣ ଧରମ ପୁଚ୍ଛିଲେ ।
ଭଗଗଜେ ବୋଇଲେ କାର୍ତ୍ତିକ କୃଷ୍ଣପକ୍ଷେ
ଅଷ୍ଟମୀରେ ଅଶ୍ଳେଷା ନକ୍ଷତ୍ରରେ ସୁଖେ ।
ବଳଦେବ ଆଦି ନାଗକୁ ସୁମରିବ
ଭଇଁଳା ମଧ୍ୟେ ଯେ ବର୍ତ୍ତିକ ବାଳିବ ।
ତାହାର ବଳ ଆୟୁ ବଢ଼ାଅନ୍ତି ନାଗେ
ମହାସୁଖ ପାଇ ବହିରେ ମହାଭାଗେ ।
ଆମ୍ଭେ ଏହିରୂପେ ନାଗଙ୍କୁ ବଳ ଦେଇ
ଥିବାରୁଛି ଜାଣ ହେ ଧରଅଛୁଁ ମହୀ ।

ଭଗଗଜଙ୍କଠାରୁ ଶୁଣିଣ ଏ ବଚନ
ତାଙ୍କ ପଦ ଦୁଇରେ କରିଣ ବନ୍ଦନ ।
ରେଣୁକ ସ୍ୱର୍ଗପୁରେ ଲେଉଟି ଆସିଲେ
ଇନ୍ଦ୍ରଙ୍କର ଆଗରେ ସମସ୍ତ କହିଲେ ।
ରେଣୁକ କହିବାର ଶୁଣି ଶଚୀ-ଈଶ
ରେଣୁକଙ୍କୁ ପ୍ରଶଂସା କଲେଟି ବିଶେଷ ।
ଶିବ ଧର୍ମଗୁହ୍ୟ କହିଅଛନ୍ତି ଯାହା
ତାହା ଶୁଣ ବସି ପାଣ୍ଡବ ନରନାହା ।
ଗାଈଙ୍କି ଯେତୁ ମାସେ ଆହାର ଦିଅଇ
ଏକଭୁକ୍ତ ହୋଇ ସେ ଦିନକୁ ହରଇ ।
ଧର୍ମ କଥାଟିକ ମୁଖରେ କରେ ଗାନ
ତାକୁ ବାଧି ନ ପାରେ ଏ ସଂସାର ବନ ।
ବ୍ରହ୍ମା ବୋଲିବାରୁ ବୃଷଭ ଧ୍ୱଜ ମୁହିଁ
ହୋଇଲି ଯେଣୁ ଜାଣ ପୂଜ୍ୟ ଅଟେ ଗାଈ ।
ଗାଈଙ୍କର ଅବଜ୍ଞା କରଇ ଯେ ନର
ପ୍ରାନ୍ତେ ନରକରେ କରଇ ଯାଇ ଘର ।
ସ୍କନ୍ଦ ବୋଇଲେ ଆହେ ନୀଳବୃଷଭ
ଶୃଙ୍ଗ-ମାଟି ଲଗାଇ ଗାଧୋଏ ଯେ ନର ।
ତିନଦିନ ଯାଏ ସେ ଲଭେ ମହାଫଳ
ସ୍ୱର୍ଗପୁରେ ଦେବଙ୍କ ହୁଅଇ ସେ ମୂଳ ।
ଚମ୍ପାପାନେ ମହୁରେ ପଉର୍ଣ୍ଣମୀ ଦିନ
ଚନ୍ଦ୍ର ଉଦୟରେ ଯେ କରେ ଜଳ ଦାନ ।
ଦେବତାଏ ତାହାକୁ ପାଇ ମହାତୋଷେ
ବସାନ୍ତି ତାକୁ ନେଇ ସ୍ୱର୍ଗରେ ଉଲ୍ଲାସେ ।
ବିଷ୍ଣୁ ବୋଇଲେ ହେ ଏ ଧର୍ମ ଗୁହ୍ୟ କଥା
ଶୁଣିଲେ ଲୋକ ନ ଲଭଇ ଭବ-ବ୍ୟଥା ।
ଏହା କହିସାରି କହିଲେ ରଥିଶିଖ
ଶାନ୍ତନୁ ଯୁଧିଷ୍ଠିରେ ପ୍ରସନ୍ନ କରି ମୁଖ ।
ଏ ରହସ୍ୟ କଥା ମୁଁ ବ୍ୟାସଠାରୁ ଶୁଣି
ପୂର୍ବେ ଥିଲି ଜାଣ ହେ ପାଣ୍ଡବ ନୃମଣି ।
ନିନ୍ଦ୍ୟ ନାସ୍ତିକ ତର୍କିତ ଗୁରୁଦ୍ୱେଷୀ
ଏମାନଙ୍କୁ ଏହା ନ କହିବଟି ବସି ।
କହିବ ଯେବେ ସବୁ ପାତକ ଅର୍ଜିବ
ଅନ୍ତେ ଯାଇ ନରକ ଭୋଗକୁ କରିବ ।
ହେଲା ସର୍ବରହସ୍ୟ ଏଥେଁ ସମାପତି
କହଇ କୃଷ୍ଣସିଂହ ଧରାକୋଟ ପତି ।

—*—

## ଅନ୍ନ ଭୋଜନର ନିଷିଦ୍ଧ ସ୍ଥଳ

ଯୁଧିଷ୍ଠିର ବୋଇଲେ ଚତୁର୍ବର୍ଣ୍ଣ ଯାକ
କାହାକୁ ଭୁଞ୍ଜାଇବେ ରଥୀଙ୍କ ନାୟକ ।
ପିତାମହ ଭୀଷ୍ମ କହ ତ ମୋର ଆଗେ
ଶୁଣିବି ଭାବୁଅଛି ହୃଦୟ ସରାଗେ ।
ଭୀଷ୍ମ ବୋଇଲେ ହେ ଶୂଦ୍ରଙ୍କ ଗୃହ ଦ୍ୱିଜ
ତିନିବର୍ଣ୍ଣ ଭୁଞ୍ଜାଇବ ବେ ମହାରାଜ ।
କ୍ଷତ୍ରି ବୈଶ୍ୟ ଦ୍ୱିଜ ଘରଏ ତିନିବର୍ଣ୍ଣ
ଭୋଜନ କରାଇବା ଅଟଇ ବିଧାନ ।
ଶୂଦ୍ର ଘରେ ଭୁଞ୍ଜିଲେ ପୃଥ୍ୱୀ ପାପଯାକ ।
ଭୁଞ୍ଜିବା ଦୋଷ ହୁଏ ଅବନୀ-ନାୟକ
ବେଦଜ୍ଞାନ ଥିବାର ଦ୍ୱିଜଙ୍କୁ ବ୍ରାହ୍ମଣ
ବୋଲି କରି ବଚନ କରିବ ବଖାଣ ।
ରକ୍ଷାକଲା ପୁରୁଷ କ୍ଷତ୍ରିୟ ବୋଲାଏ
ବାଣିଜ୍ୟବୃତ୍ତି କଲେ ବୈଶ୍ୟ ବୋଲି ରାୟେ
ତିନିବର୍ଣ୍ଣରୁ ଯେ କରିବ ଶୂଦ୍ର କର୍ମ
ତାକୁ ନ ଛୁଇଁବ ଶୂଦ୍ରବ ବୋଲି ଧର୍ମ ।
ବୈଦ୍ୟ ପୁରୋହିତ ଜ୍ୟୋତିଷ ଶସ୍ତ୍ରଧାରୀ
ଦ୍ୱିଜଙ୍କୁ ଶୂଦ୍ର ବୋଲି ଥିବ ମନେ ଧରି ।
ବୈଦ୍ୟ ଜଉତିଷ ଖଚୁଆ ଶିଳ୍ପକାରୀ
ମଦ୍ୟପ ଗୋଘ୍ନ କ୍ଳୀବ ଧନ ଅପହାରୀ ।
ଏମାନଙ୍କ ଅନ୍ନ ଯେ କରଇ ଭୋଜନ
ବ୍ରାହ୍ମଣବଧ ଦୋଷ ଲଭେ ସେ ରାଜନ ।
ଅଭୋଜ୍ୟ-ଅନ୍ନବିଧି ଏଥେଁ ସମାପତି
ହୋଇଲା କହେ କୃଷ୍ଣସିଂହ ନରପତି ।



## ଦାନାନ୍ତେ ବ୍ରାହ୍ମଣର ପ୍ରାୟଶ୍ଚିତ ବିଧି

ଯୁଧିଷ୍ଠିର ବୋଇଲେ ଦ୍ୱିଜ ଦାନ ଘେନି
କି ପୁଣ୍ୟ କରିବ ହେ କହ ରଥୀମଣି ।
ଭୀଷ୍ମ ବୋଇଲେ ଆହେ ବ୍ରାହ୍ମଣ ଭୋଜନ
ପ୍ରତିଗ୍ରହ ପ୍ରାୟଶ୍ଚିତ୍ତ ଯେ ତାହା ଶୁଣ ।
ଘିଅ ରାଶିକ ପ୍ରତିଗ୍ରହ ଦ୍ୱିଜ କଲେ
ସାବିତ୍ରୀରେ ହୋମ କରିବ ଯାଇ ଭଲେ ।
ମଧୁ ମାଂସ ଲୁଣ ଘେନିବ ଯେବେ ଦାନ
ଅହୋରାତ୍ର ଜପ କରିବଟି ବ୍ରାହ୍ମଣ ।
ସୁବର୍ଣ୍ଣ ପ୍ରତିଗ୍ରହ କରିବଟି ଯେବେ
ଗାୟତ୍ରୀମନ୍ତ୍ର ଦ୍ୱିଜ ଜପିବ ହେ ତେବେ ।
ଏହା ବାହାରେ ଅନ୍ନଦାନ ଯେତେ ଅଛି
ତା ଘେନିଲେ ଗାୟତ୍ରୀ ଜପିବ ଲେଖିଛି ।
ପ୍ରେତକର୍ମରେ ଛତ୍ର ବସ୍ତ୍ର ଯେ ଘେନିବ
ଶହେ ଗାୟତ୍ରୀ ଜାଣ ଜପ ସେ କରିବ ।
ଯା ଘରେ ମୃତ ହୋଇଥାଏ ଦିନ ତିନି
ବ୍ରାହ୍ମଣ ନ ଛୁଇଁବ ତାର ଘରୁ ପାଣି ।
ତିନିଦିନ ଉତ୍ତାରୁ ଚତୁର୍ଥ ଦିବସ
ପାଣିପଣା କରିବ ଛୁଇଁ ଅନ୍ନଗ୍ରାସ ।
ଶୂଦ୍ରର ସହିତ ହୋଇ ଯେ ଭୁଞ୍ଜେ ରାୟେ
ପ୍ରାୟଶ୍ଚିତ କଲେଟି ତା'ର ଦୋଷ ଯାଏ ।
କ୍ଷତ୍ରିୟ ବୈଶ୍ୟ କୁଳେ ଭୁଞ୍ଜିଲେ ବି ଦୋଷ
ବ୍ରାହ୍ମଣକୁ ଲାଗଇ ଜାଣ ହେ ନରେଶ ।
ହୋଇଲା ପ୍ରାୟଶ୍ଚିତ ବିଧି ସମାପତି
କହଇ କୃଷ୍ଣସିଂହ ଧରାକୋଟ ପତି ।



## ବଶିଷ୍ଟ ଲୋକଙ୍କର ଦାନ ବିବରଣୀ

ଯୁଧିଷ୍ଠି ବୋଇଲେ ମହୀରେ କେ କି ଦାନ
ଦେଇଛି ତାହା ରଥୀବର ହେ ବଖାଣ ।
ଭୀଷ୍ମ ବୋଇଲେ ହେ ଆତ୍ରେୟ ଋଷିବର
ଜ୍ଞାନ ଶିଖାଇଣ ଲଭିଲେ ବ୍ରହ୍ମପୁର ।
ଶିବି ରାଜା ପ୍ରିୟ ପୁଅକୁ ବ୍ରାହ୍ମଣକୁ
ମାରି ଦେଇ ପାଇଲେ ଇନ୍ଦ୍ର ଆସନକୁ ।
ପ୍ରତର୍ଦ୍ଦନ ପୁଅକୁ ବ୍ରାହ୍ମଣକୁ ଦେଲେ
ଇହ ପର ଦୁଇରେ କୀର୍ତ୍ତି ଅର୍ଜିଲେ ।
ରନ୍ତିଦେବ ଯେ ବଶିଷ୍ଠଙ୍କୁ ଅର୍ଘ୍ୟ ଦେଇ
ସ୍ୱର୍ଗପୁରେ ବସିଲେ ଗୋଡିକୁ ଲମ୍ବାଇ ।
ଦେବାବୃଦ୍ଧ ରାଜା ସୁବର୍ଣ୍ଣ ଛତ୍ର ଦେଲେ
ରମ୍ଭାକୁ କୋଳେ ଧରି ସ୍ୱର୍ଗରେ ବସିଲେ ।
ଅମ୍ବରୀଷ ରାଜା ପୃଥିବୀ ଦ୍ୱିଜେ ଦେଇ
ଉର୍ବଶୀ ରତିଭୋଗ କଲେ ସ୍ୱର୍ଗେ ଯାଇ ।
ସାବିତ୍ରୀ ଜନ୍ମେଜୟ ଯେ କୁଣ୍ଡଳ ଦାନ
ଦେଇକରି କଲେ ସ୍ୱର୍ଗ ପୁରରେ ସ୍ଥାନ ।

ବୃଷାଦର୍ଭି ରତନ ଘର ଦ୍ୱିଜେ ଦେଇ
ଘୃତାଚୀ ରନ୍ତିଦେବ କଲେ ସ୍ୱର୍ଗେ ଯାଇ ।
ନିମି ନୃପତି ଅଗସ୍ତ୍ୟଙ୍କୁ କନ୍ୟାଦାନ
ଦେବାରୁ ଇନ୍ଦ୍ରକରେ ପାଇଲେ ପୂଜନ ।
ପରଶୁରାମ ବ୍ରାହ୍ମଣଙ୍କୁ ଭୂମି ଦେଇ
ଅକ୍ଷୟ ଲୋକେ ବିହରିଲେ ସୁଖ ପାଇ ।
ଅନାବୃଷ୍ଟି କାଳରେ ପ୍ରାଣୀଙ୍କ ଜୀବନ
ରଖିବାରୁ ବଶିଷ୍ଠ ଧନ୍ୟ ହେଲେ ଘେନ ।
କକ୍ଷସେନ ଯେ ବଶିଷ୍ଠଙ୍କୁ ସବୁ ଦେଇ
ନନ୍ଦନ ବନଟିରେ ବସିଲେଟି ଯାଇ ।
ମରୁତ୍ତ ରାଜା ଅଙ୍ଗିରାଙ୍କୁ କନ୍ୟା ଦେଲେ
ସ୍ୱର୍ଗପୁରରେ ଯାଇ ବସିଲେ ସେ ଭଲେ ।
ସଉଦାସ ନୃପତି ଦମୟନ୍ତୀ ଭାର୍ଯ୍ୟା
ଦେବାରୁ ସ୍ୱର୍ଗପୁରେ ପାଇଲେଟି ପୂଜା ।
ସୁଦ୍ୟୁମ୍ନ ରାଜା ଲିଖିତଙ୍କୁ ନ୍ୟାୟଦଣ୍ଡ
ଦେବାରୁଟି ଦେଖିଲେ ଯାଇ ସ୍ୱର୍ଗଦାଣ୍ଡ ।
ସହସ୍ରଚିତ ରାଜା ଦ୍ୱିଜପାଇଁ ମଲେ
ଉଠିଲେ ଦେବତାଙ୍କୁ ଯେବେଟି ଦେଖିଲେ ।
ଶତଦ୍ୟୁମ୍ନ ମୌଦଗଲ୍ୟଙ୍କୁ ଦେଇ ସୁନା
ଘର କଲେ ସ୍ୱର୍ଗପୁରରେ ମହାମନା ।
ସୁମନ୍ୟୁ ଶାଣ୍ଡିଲ୍ୟଙ୍କୁ ଭକ୍ଷ-ପର୍ବତ.
ଦେବାରୁ ଅନ୍ତେ ହେଲା ସ୍ୱର୍ଗ ପରାପତ ।
ଦ୍ୟୁତିମାନ ଋଚୀକଙ୍କୁ ସ୍ୱରାଜ୍ୟ ଦେଲେ
ସୁର-ରାଜ୍ୟରେ ଅଧିକାରୀ ଯାଇ ହେଲେ ।
ମହାରାଶ୍ୱ ହିରଣ୍ୟହସ୍ତେ କନ୍ୟାଦାନ
ଦେବାରୁ ହେଲେ ସ୍ୱର୍ଗେ ଦେବଙ୍କ ସମାନ
ଲୋମପାଦ ଋଷ୍ୟଶୃଙ୍ଗଙ୍କୁ ଶାନ୍ତା ଦେଇ
ସବୁ ମନୋରଥ ପାଇଲେ ନରସାଇଁ ।
ଭଗୀରଥ କୌତ୍ସଙ୍କୁ ହଂସୀ କନ୍ୟା ଦେଲେ ।
ଅକ୍ଷୟଲୋକେ ଗଲେ ରାଜା ପଦାଇଲେ ।
ଏହିରୂପେ ଅନେକ ରାଜା ଦାନ ଦେଇ
ସ୍ୱର୍ଗେ ବସି ମହୀରେ ଜନ୍ମ ଛନ୍ତି ପାଇ ।
ଦାନଧର୍ମ ଏବେ ଶୁଣିଲ ଯୁଧିଷ୍ଠିର
ଯେ ଇଚ୍ଛା ଅଛି କାଲି ଆସିଣ ପଚାର ।
ଦେଖ ସୂର୍ଯ୍ୟଦେବତା ଅସ୍ତ ହେଲେ ଆସି
ସନ୍ଧ୍ୟା କର ଯାଇଣ ଲୀନ ହୋଇ ବସି ।

## ଦାନଭେଦ

ଯୁଧିଷ୍ଠିର ବୋଇଲେ କେତେ ପ୍ରକାରଟି
ଦାନ ହୋଏ ତାହା କହିଲେ ଯିବ ଉଠି ।
ଭୀଷ୍ମ ବୋଇଲେ ଆହେ ଧର୍ମ ଅର୍ଥ କାମ
ଭୟ ଦୟାରେଟି ହୁଅଇଟି ନରୋତ୍ତମ ।
ଦାନମାନ ଏହା ଋଷି ଏ କହିଛନ୍ତି
ମୋ କହିବାରୁ ଜାଣ ପାଣ୍ଡବ-ନୃପତି ।
ଧର୍ମକୁ ଚିହ୍ନିଣ ଯେ ଦିଏ ଦ୍ୱିଜେ ଦାନ
ତା'ର ପୁଣ୍ୟ ଜାଣ ହୁଅଇ ଅକଥନ ।
ମାଗିବା ଲୋକଙ୍କୁ ଯେ ଦାନ ଦେଉଅଛି
ତା ପୁଣ୍ୟ ମଧ୍ୟେ ସେହିରୂପେ ପାଣ୍ଡୁ ବହ୍ନି ।
ଭୟରେ ଦାନ ଦେଲେ ଅଳ୍ପ ହୋଏ ଫଳ
କେବେହେଁ ଦେବାରଟି ନୁହଇ ନିଷ୍ଫଳ ।
ଏ ମୋହର ପ୍ରିୟ ମୁଁ ଏହାରଟି ପ୍ରିୟ
ବୋଲି ଦେଲେ ମଧ୍ୟ ବଢ଼ଇ ଧର୍ମଚୟ ।
ଦରିଦ୍ରକୁ ଦାନ ଦେଉ ଯେ ଅଛି ନିତି
ତା'ର ପୁଣ୍ୟ କହି ନ ପାରେ ବେଦପତି ।
ଦାନଫଳ ଦାନଭେଦ ହୋଇଲା ଶେଷ
କହଇ କୃଷ୍ଣସିଂହ ନରକୁଳ-ଈଶ ।

—*—

## ଶ୍ରୀକୃଷ୍ଣ ମାହାତ୍ମ୍ୟ

ଯୁଧିଷ୍ଠିର ବୋଇଲେ କୃଷ୍ଣଙ୍କ ପ୍ରଭାବ
ଶୁଣିବା ଇଚ୍ଛା ଅଛି, କହିବା ହୋଇବ ।
ଭୀଷ୍ମ ବୋଇଲେ ହେ କୃଷ୍ଣଙ୍କ କଥା ଯାହା
ଶୁଣିଛି ତା କହିବି ଶୁଣ ନରନାହା ।
ଏ ବାହାରେ ଯେ ଉମା ମହେଶ୍ୱରଙ୍କର
ପ୍ରଭାବକୁ ମଧ୍ୟ କହିବି ଯୁଧିଷ୍ଠିର ।
ପୂର୍ବେ କୃଷ୍ଣ ବାରବରଷ ପର୍ବତେ
ଏକାନ୍ତେ ରହି ତପ କଲେ ମହାମତେ ।
ଦେବଳ ବ୍ୟାସ ଧୌମ୍ୟ କାଶ୍ୟପ କୃଷ୍ଣଙ୍କୁ
ଦେଖିବାକୁ ଆସିଲେ ତାଙ୍କ ସମୀପକୁ ।
ଏହାଙ୍କ ସଙ୍ଗତେ ବହୁତ ଋଷିମାନେ
ଆସିଲେଟି ଜାଣ କୃଷ୍ଣଙ୍କ ସନ୍ନିଧାନେ ।
ଋଷିଙ୍କି ଦେଖିକରି ହୋଇଣ ଆନନ୍ଦ
ସନ୍ତଙ୍କ ପାଦ ଦୁଇରେ ନମିଲେ ଗୋବିନ୍ଦ ।

ଆମ୍ଭେନେ ବମାଳ ବିଧିରେ ପୂଜା କରି
କଥା ପଗ୍ଭରିଲେ ହୃଦରେ ଶ୍ରଦ୍ଧା ଧରି ।
ଋଷିମାନେ ଯେ ନାନାଜାତି କଥା କହି
ଶ୍ରୀକୃଷ୍ଣଙ୍କ ମନ ସମସ୍ତେ ନେଲେ ମୋହି ।
ଏହିକାଳେ କୃଷ୍ଣଙ୍କ ମୁଖୁ ଅଗ୍ନି ଜାତ
ହୋଇ ତପୋବନକୁ କଲା ଭସ୍ମୀଭୂତ ।
ଶ୍ରୀକୃଷ୍ଣଙ୍କର ପାଦ ଦୁଇରେ ନମିଲା
ମୂର୍ତ୍ତି ଧରି କର ଯୋଡ଼ିଣ ସେ ରହିଲା ।
ତପୋବନ-ନାଶ ନୟନେ ଦେଖି ହରି
ଦେଲେ ପୂର୍ବପରି ସେ ଅରଣ୍ୟକୁ କରି ।
ମୁନିଯାକ ଦେଖି କୃଷ୍ଣଙ୍କ ମହିମାକୁ
ବିସ୍ମୟରେ ଉଲ୍ଲାସି ହେଲେ ସେ ପ୍ରେମକୁ ।
ଶ୍ରୀକୃଷ୍ଣ ବୋଇଲେ ହେ କାର୍ତ୍ତିକ ବିସ୍ମୟ
ପାଇଲ କହ ତ ମୋତେ ମୁନିଚୟ ।
ଋଷିଏ ବୋଇଲେ ସବୁରି ମାତା ପିତା ।
ଆପଣ ଏ ମହୀର କାରଣ ଦେବତା ।
କାହିଁପାଇଁ ଅଗ୍ନି ମୁଖରୁ ହେଲେ ଜାତ
କହ ଏହା ପଗ୍ଭରୁଅଛୁ ହେ ଅନନ୍ତ ।
ଶ୍ରୀକୃଷ୍ଣ ବୋଇଲେ ହେ ବଇଷ୍ଣବ ତେଜ
ଅଗ୍ନି ହୋଇ ମୁଖରୁ ବାହାରିଲେ ଆଜ ।
ତୁମ୍ଭର ଆରତକୁ ଦେଖିକରି ମୁହିଁ
ତେଜ ସଂହରିଲି ସନ୍ଦେହ ଏଥି ନାହିଁ ।
ପୁତ୍ରକାମୀ ହୋଇ ମୁଁ କରୁଥିଲି ତପ
ଦଇବେ ପ୍ରକାଶ ହେଲା ମୋ ବିଶ୍ୱରୂପ ।
ଶିବଙ୍କ ଆଜ୍ଞାରେ ମୋର ଯେ ତେଜ ପୁତ୍ର
ହୋଇ ମୋ କୋଳେ କୁଳ କରିବ ପବିତ୍ର ।
ତୁମ୍ଭେମାନେ ଏବେ ଭୟକୁ ହିଅ ତ୍ୟକ୍ତ
ଜାଣିଛ ସମସ୍ତେ ମୋ ମାୟା-ଜାଲେ ପଡ଼ି ।
ଏହା ଶୁଣି ଋଷିଏ ହୋଇଣ ଆନନ୍ଦ ।
ବୋଇଲେ ଧନ୍ୟ ଧନ୍ୟ ଅଟ ହେ ଗୋବିନ୍ଦ
କୃଷ୍ଣଙ୍କ ମୁଖୁ ଏହା ଶୁଣି ଋଷିମାନେ
ନାରଦଙ୍କୁ ଗ୍ଭହିଁଣ ପୃଚ୍ଛିଲେ ସୁମନେ ।
ଦେଖିଲୁଁ ଆମ୍ଭେ ଯାହା କୃଷ୍ଣ ମହିମାକୁ
ତାହା ଆମ୍ଭ ଆଗରେ ହେଉ କହିବାକୁ ।

—୦—

## ଉମା-ମହେଶ୍ୱର ସମ୍ବାଦ

ନାରଦ ବୋଇଲେ ହେ ଶିବ ଉମାଙ୍କର
ସମ୍ବାଦକୁ କହିବା ଶୁଣ ହୋଇ ଧୀର ।
ପୂର୍ବେ ହିମାଳୟରେ ଉମାଙ୍କ ସହିତ
ତପ କଲେ ମୁନିମାନଙ୍କ ବ୍ରତ ଧରି ।
ହିମାଳୟ ଶିରରେ ଗନ୍ଧର୍ବ ଅପସରା-
ମାନେ ନାନା ବେଶରେ ହୋଇକରି ତୋଷ
ଗୀତ ବାଦ୍ୟ କରିଣ ଅନଙ୍ଗ ଗରବ
ଭକ୍ତଙ୍କ ହୃଦୟରେ ଥୋଇ ମହାଭାବ ।
ଅପସରାମାନେ ଭଙ୍ଗୀରେ ନୃତ୍ୟ କରି
ହିଅନ୍ତି ଯକ୍ଷ ଗନ୍ଧର୍ବଙ୍କ ମନ ହରି ।
ବ୍ୟାଘ୍ର ଭଲ୍ଲୁ ଉରଗ ସିଂହ ମୃଗଗଣ
ସେହି ବନରେ ପୂରି ରହିଛନ୍ତି ଜାଣ ।
ନାନା ଜନ୍ତୁଙ୍କ ମୁଖ ଧରିଣ ପ୍ରମଥ
ଗଣ ଅଛନ୍ତି ରହି ଟେକିକରି ମାଥ ।
ଶିବଂକର ତପସ୍ୟା ସେ ବନରେ ଜାଣି
ଆସିଲେ ସେହିଠାକୁ ମୁନି ଦେବଶ୍ରେଣୀ ।
ଦେବେ ପୁଷ୍ପବୃଷ୍ଟି ଶିବଙ୍କ ଶିରେ କଲେ
ଔଷଧିକୁଳ ବଳ ତେଜ ପ୍ରକାଶିଲେ ।
ପକ୍ଷୀଏ ଆନନ୍ଦେ ମଧୁରେ କରି ଧ୍ୱନି
ମୋହିଲେ ଅନ୍ତରତେ ଶିବ-କର୍ଣ୍ଣବେଣୀ
ଜଟା ବ୍ୟାଘ୍ରଚର୍ମ ସର୍ପ ଧରି ଶିବ
ବସିଛନ୍ତି ତପରେ ଛାଡ଼ି ସବୁ ଭାବ ।
ଋଷି ଦେବେ ଶିବଂକ ଦେହ-ଶୋଭା ଦେଖି
ଶିବଂକ ଚରଣ ନମିଲେ ହୋଇ ସୁଖୀ ।
କଳଶକୁ ଧରି ଜଗତଲୋକ ମାତ
ଉମା ହେଲେ ଶିବଙ୍କ ସମୀପକୁ ଗତ ।
ଶିବଙ୍କ ଦୁଇଚକ୍ଷୁ ଦୁଇହାତେ ବୁଜି
ଧରିଲେ ଉମାଦେବୀ ହର୍ଷ ରସେମଜ୍ଜି ।
ସେହିକ୍ଷଣି ଜଗତ ଦିଶିଲା ଅନ୍ଧାର
ଲୋକମାନଂକର ନେତ୍ରକୁ ନରବର ।
ଶିବଙ୍କର ଲଲାଟୁ ତେଜ ହୋଇ ଜାତ
ତୃତୀୟ ନେତ୍ର ହୋଇ ହୋଇଲା ସେ ଖ୍ୟାତ
ସେ ତୃତୀୟନେତ୍ର ତେଜରେ ହିମାଳୟ
ଶିରରୁ ପୋଡ଼ିଗଲା ସବୁ ବୃକ୍ଷଚୟ ।

ହିମାଳୟ ପୋଡ଼ିବାର ଉମା ଦେଖି
ହୃଦୟରେ ମହତ ଉତ୍କଣ୍ଠିକ ରଖି ।
କର ଦୁଇ ଯୋଡ଼ି ଶିବଙ୍କ ଆଗେ ଉଭା
ହୋଇଲେ ଭଙ୍ଗି ଦେଇ ବଦନର ପ୍ରଭା ।
ଉମାଙ୍କର ଦେଖି ସେ ବିରସ ବଦନ
ଚାହିଁଲେ ଶିବ କରି ଅମୃତ ନୟନ ।
ସେହିକ୍ଷଣି ହିମାଳୟର ବନରାଜି
ପୂର୍ବପରି ଦିଶିଲା ମହାଶୋଭା ଭଜି ।
ଏଥିଅନ୍ତରେ ଉମା ପୁଚ୍ଛିଲେ ଶିବଙ୍କୁ
କାହିଁପାଇଁ ଆପଣ ବହିଲ କ୍ରୋଧକୁ ।
କପାଳରୁ ନେତ୍ର ଗୋଟିଏ କରି ଜାତ
ହିମାଳୟ ଦହିଲ ତା ମୋତେ କହ ତ
ପୁଣି କେଉଁ କଥା ବା ହୃଦରେ ବିଚାରି
ପୂର୍ବ ପରି କଲ ଏ ହିମାଳୟ ଗିରି ।
ଏହା ଶୁଣିବାକୁ ହେଉଛି ମୋର ମନ
କହ ତ ହେ ଜଗତ-ନାଥ ମୋ ଜୀବନ ।
ଶିବ–ବୋଇଲେ ଆଗୋ ପୂର୍ଣ୍ଣଚନ୍ଦ୍ର ମୁଖି
ବୁଜିଲ ତ ତୁମ୍ଭେ ମୋହର ଦୁଇ ଆଖି ।
ଏ ସକାଶୁ ଜଗତ ହୋଇଲା ଅନ୍ଧାର
କାହାକୁ ନ ଦିଶିଲା ସୂର୍ଯ୍ୟଙ୍କର କର ।
କପାଳରେ ମୁହିଁ ନୟନ କଲି ଜାତ
ହୋଇବା ପାଇଁ ପ୍ରାଣୀମାନଙ୍କର ହିତ ।
ସେ ତେଜକୁ ସହି ନ ପାରି ତୁମ୍ଭ ପିତା
ଜଳିଗଲେ ଜାଣ ଗୋ ପାର୍ବତୀ ବନିତା ।
ତୁମ୍ଭର ବିକଳତା ଦେଖି କରି ମୁହିଁ ।
ପୂର୍ବ ପରି ତାଙ୍କୁ ରଖିଲି ସ୍ନେହ ବହି ।
ଉମା ବୋଇଲେ ହେ ବହିଛ ପଞ୍ଚମୁଖ
କାହିଁ ପାଇଁ ମୋତେ କହ ତ ଦେବଶିଖ ।
ଗୋଟିଏ ବଦନ ଚନ୍ଦ୍ରଙ୍କୁ ନିନ୍ଦୁଛି
ଆଉ ଚାରି ବଦନ ଉଗ୍ର କରାଉଛି ।
ମସ୍ତକ ଦେଶେ ଜଟା ହୋଇଛି ପିଙ୍ଗଳ
ପୁଣି ତ ହୋଇଅଛି କଣ୍ଠଦେଶ ନୀଳ ।
ହସ୍ତଦେଶେ ପିନାକ ଧନୁ ଶୋହୁଅଛି
ଏଥିର କାରଣ ମୁଁ ତୁମ୍ଭଙ୍କୁ ପୁଚ୍ଛୁଛି ।
ତୁମ୍ଭର ତ ମୁହିଁ ହେ ସେବକୀ ଅଟଇ
ଏଣୁ ମାୟା ନ କରି କହ ଦୟା ବହି ।

ଏହା ଶୁଣି ଶିବ ବୋଇଲେ ଉମା ଶୁଣ
ତୁମ୍ଭ ପୁଚ୍ଛିବାକୁ ଯା କହିବା କାରଣ ।
ପୂର୍ବେ ବ୍ରହ୍ମା ସବୁ ରତ୍ନରୁ ତିଳେ ତିଳେ
ବାହାର କରି ତିଳୋତ୍ତମାକୁ ସର୍ଜିଲେ ।
ସେ ତିଳୋତ୍ତମା ନାରୀ ମୋ ରତି ଲମ୍ପଟେ
ପ୍ରଦକ୍ଷିଣ କଲା ମୋହର ଚାରିପଟେ ।
ତା ସୁନ୍ଦରପଣ ମୁଁ ନ ପାରି ମୁରୁଛି
ଚାରିଗୋଟି ମୁଖ କଲି ହିମାଳୟ-ବସି ।
ପୂର୍ବରୁଟି ମୋହର ମୁଖଟିଏ ଥିଲା
ସେ ଚାରି ମୁଖ ମିଶି ପାଞ୍ଚ ମୁଖ ହେଲା ।
ପୂର୍ବ ବଦନେ ମୁହିଁ ଇନ୍ଦ୍ରଙ୍କୁ ପାଳଇ
ଉତ୍ତର ବଦନେ ତୁମ୍ଭଙ୍କୁ ରସାଅଇ ।
ପଶ୍ଚିମ ମୁଖଟିରେ ସବୁ ପ୍ରାଣୀଙ୍କର
ସୁଖ ଜାତ କରଇ ଉମା ମନେ କର ।
ଦକ୍ଷିଣ ମୁଖ ମୋର ଅଟେ ମହାରୌଦ୍ର
ପ୍ରଳୟରେ କରଇ ପ୍ରାଣୀଙ୍କି ଅଭଦ୍ର ।
ଲୋକ ହିତପାଇଁ ମସ୍ତକେ ମୋର ଜଟା
ରହିଅଛି ପାର୍ବତୀ, ବନ୍ଧା ନୋହି ଫିଟା ।
ଦେବକାର୍ଯ୍ୟ କରିବା ପାଇଁ ମୁଁ ପିନାକ
ଧରିଛି ସଂହାରିବି ଦୈତ୍ୟେ ଯେ ନାୟକ ।
ପୂର୍ବେ ଯେ ଇନ୍ଦ୍ର ମୋତେ ବଜ୍ର ଫିଙ୍ଗିଥିଲେ
ସେ ଯେଣୁ ମୋର କଣ୍ଠ ନୀଳ ହୋଇଗଲେ ।
ଉମା ବୋଇଲେ ଆହେ ବୃଷଭବାହନ
କିମ୍ପା ହେଲା କହ ତ ତୁମ୍ଭର ଇଶାନ ।
ଶିବ ହୋଇଲେ ଗୋ ବ୍ରହ୍ମାଙ୍କ ବଚନରେ
ବୃଷଭ ମୋ ବାହନ ହେଲା ନିରନ୍ତରେ ।
ଉମା ବୋଇଲେ, କହ ଶ୍ମଶାନରେ ସ୍ଥାନ
କାହିଁକି କଲ ଛାଡ଼ି ଭଲ ସ୍ଥାନମାନ ।
ଶିବ ବୋଇଲେ ହେ ଶ୍ମଶାନୁଁ ଶୁଦ୍ଧ ହୋଇ
ସ୍ଥାନ ଅଛି ବୋଲି ମୋ ନେତ୍ରେ ଦିଶୁନାହିଁ ।
ମୋର ଭୂତ ପ୍ରେତେ ରହିଲେ ଶ୍ମଶାନରେ
ତାଙ୍କୁ ଛାଡ଼ି ରହି କି ପାରେ ଆନଠାରେ ।
ଉମା ବୋଇଲେ, ଯେ ମୁନି ଏ ତପ ପାଇଁ
ମହୀତ ବୁଲୁଛନ୍ତି ନିତ ପ୍ରୀତି ବହି ।
ତାହାଙ୍କର ତପ-ଲକ୍ଷଣ କହ ମୋତେ
ଆହେ ନୀଳକଣ୍ଠ ଈଶ୍ୱର ମହାମତେ ।

ପାର୍ବତୀ ଏ ରୂପେ ପୁଚ୍ଛି ବାକ୍ଷଣି ମୁନି-
ମାନେ ଧନ୍ୟ ବୋଲି କହିଲେ ସୁନ୍ଦର ବାଣୀ ।
ଶିବ ବୋଇଲେ ହେ ଅହିଂସା ସତ୍ୟଗିର
ଦାନ ଶମ ଉତ୍ତମ ଗୃହସ୍ଥଲୋକଙ୍କର ।
ପର ସ୍ତ୍ରୀ ମଧୁ ମାଂସ ନ୍ୟାସ ଅପହାର
ଯେ ନକରେ ଉତ୍ତମ ଅଟେ ତା ବେଭାର ।
ଉମା ବୋଇଲେ ଆହେ ଚାରିବର୍ଣ୍ଣଙ୍କର
ଧରମ ଶୁଣିବି ମୁଁ କହ ମୋତେ ହର ।
ଶିବ ବୋଇଲେ ହେ ବ୍ରାହ୍ମଣ ଉପବାସ
କରିବାର ଧର୍ମ ଅଟେ ଗୋ ନାସ୍ତି ଈଶ ।
ବ୍ରତ ହୋଇ ବେଦ ପଢ଼ିଣ ବ୍ରହ୍ମଚର୍ଯ୍ୟ
ଦ୍ୱିଜ କଲେ ତାକୁ ପୂଜନ୍ତି ସୁରରାଜ ।
ଗୁରୁର ଅନୁଜ୍ଞାରେ ଦ୍ୱିଜ ବାହା ହୋଇ
ଘର କରି ପିଲା ଗଢ଼ିଲେ ଦୋଷ ନାହିଁ ।
ଶୂଦ୍ରଅନ୍ନ ବର୍ଜନ ଅଗ୍ନିଙ୍କ ଆଦାନ
କଲେ ଦ୍ୱିଜ ପୁଣ୍ୟବନ୍ତରେ ଯାଏ ଜାଣ ।
ପରଜନ ଭୁଞ୍ଜିଲା ଉତ୍ତାରୁ ଭୋଜନ
କରିବ ଯାଗ କରାଇବା ଦ୍ୱିଜଜନ ।
ଗୃହମେଧି ଧରମ ଗୃହସ୍ଥ ଭାରିଯା
ଦୁହିଙ୍କର ଯେବେ ହୁଅଇ ଏକମଜ୍ଜା ।
ଘରେ ଥିବା ଦେବତାଙ୍କୁ ଯେ ବଳି ଦେବ
ସନ୍ଧ୍ୟାକାଳରେ ଥରେ ମାତ୍ରକ ଭୁଞ୍ଜିବ ।
ନିତି ଘରକୁ ଲିପି ଝାଡ଼ୁଆଇ ଦେଲେ
ଗୃହୀ ଦ୍ୱିଜ ଘରେ ରହନ୍ତି ଲକ୍ଷ୍ମୀ ଭଲେ ।
କ୍ଷତ୍ରିୟ ଯେବେ ଧର୍ମେ ପ୍ରଜାଙ୍କୁ ପାଳଇ,
ସେହି ଧର୍ମେ ସେ ପୁଣ୍ୟଲୋକ ଅରଜଇ ।
ଅଗ୍ନି ହୋମ ଯଜ୍ଞ ସ୍ୱାଧ୍ୟାୟ ଉପବୀତ
ବହିବାର ଅଟଇ ଜାଣ ଗୋ ବହିତ ।
ଦୋଷହେବା ଲୋକଙ୍କୁ ରାଜା ଯେବେ ଦଣ୍ଡେ
ରହିଲଇଟି ମହାସୁଖେ ସେ ସ୍ୱର୍ଗ ଦାଣ୍ଡେ ।
ରାଜା ହେଉଥିବାର ଅଟେ ବଡ଼ ଧର୍ମ
ନ ଦେବାରୁ ତାହାର ନାହିଁଟି ଅଧର୍ମ ।
ଗାଈ ବ୍ରାହ୍ମଣ ପାଇଁ ଯୁଦ୍ଧ ଦାଣ୍ଡେ ମଲେ
ଅଶ୍ୱମେଧ ଫଳ ନୃପତି ଲଭେ ଭଲେ ।
ଶମ ଦମ ଅନଳ କୃଷି ଗୋପାଳନ—
କରିବା ବୈଶ୍ୟରଟି ଧର୍ମ ଅଟେ ଜାଣ ।
ରାଣି ଗନ୍ଧ ବସ୍ତ୍ରାକୁ ବୈଶ୍ୟ ଯେବେ ହାଟେ
ସେହି ପାପରୁଟି ସେ ତରିଇ ନରକେ ।
ଶୂଦ୍ର ତିନିବର୍ଣ୍ଣଙ୍କୁ କରେ ଯେତେ ସେବା
ତରିବାର ତାର ବଚନେ କ କହିବା ।
ସତ୍ୟ କହିଣ ଅତିଥିଙ୍କି ସେବା କଲେ
ଶୂଦ୍ରଲୋକ ସୁକୃତ ବଢ଼ଇଟି ଭଲେ ।
ଉମା ବୋଇଲେ ଆହେ ଚାରିବର୍ଣ୍ଣଙ୍କର
ଯେ ଧର୍ମ ହେବ ତାହା କହ ମହେଶ୍ୱର ।
ଶିବ ବୋଇଲେ ସଖି ବ୍ରାହ୍ମଣ ଧରମ
ଯାହା କରଇ ସେ ସବୁର ଅଟେ ଧର୍ମ ।
ବେଦ ସ୍ମୃତି ଆଗ୍ରର ତିନଙ୍କି ଜାଣିଲେ
ଦ୍ୱିଜ ବଡ଼ ବୋଲାଏ ମହୀରେଟି ଭଲେ ।
ଯଜନ ଯାଜନ ଯେ ପ୍ରତିଗ୍ରହ ଦାନ
ଅଧ୍ୟାପନାଧ୍ୟୟନ ଦ୍ୱିଜ-କର୍ମ ଜାଣ ।
ଗୃହସ୍ଥମାନଙ୍କର ଶାନ୍ତିଟି ପରମ
ଧର୍ମ ବୋଲି ଜାଣ ଗୋ ଉମା ସ୍ତ୍ରୀ ଉତ୍ତମ ।
ଅତିଥିଙ୍କି ବିଧିରେ ପୂଜା ଯେ କରଇ
ଧାର୍ମିକ ବୋଲିକରି ତାହାକୁଟି କହି ।
ଆପଣା ସାମର୍ଥ୍ୟକୁ ଗୃହୀକରି ଦେବ
ନିର୍ବାହେବା ଯାଗରେ ମନ ବଳାଇବ ।
ଧରମରେ ଦ୍ରବ୍ୟକୁ ଅରଜିଣ ପ୍ରାଣୀ
ଧର୍ମ କଲେ ପୂଜା କରନ୍ତି ସୁରମଣି ।
ନିବୃତ୍ତିଧର୍ମ ଏବେ କହିବା ତୁମ୍ଭଙ୍କୁ
ତୁମ୍ଭେ ଗୋ ଦିଅ ଆମ୍ଭ କଥାରେ ମନକୁ ।
ମୁମୁକ୍ଷୁ ଲୋକମାନେ ଦୟାବନ୍ତ ହୋଇ
ବୁଲିବେ ସବୁ ଗ୍ରାମେ କ୍ଷଣହେଁ ନ ରହି ।
ବୃକ୍ଷ ମୂଳରେ ରହି ହୋଇ ନିରାହାର
ଭାବେ ଯେ ଈଶ୍ୱରଙ୍କୁ ମୁକ୍ତି ହୁଏ ତାର ।
ଯୋଗୀଏ ବହୁଦକ ହଂସ କୁଟୀଚର
ପରମହଂସ ବୋଲାନ୍ତିଟି ମନେକରି ।
ଉମା ବୋଇଲେ ଋଷିଙ୍କ ଧର୍ମ ମୋତେ
ବିସ୍ତାରିଣ କହିବା ହେଉ ମହାମତେ ।
ଶିବ ବୋଇଲେ ହେ ଫେନ ଯେ ପାନ କରେ
ଫେନପ ମୁନିଟି ବୋଲାଏ ସେ ଲୋକରେ ।
ବାଲଖିଲ୍ୟା ଋଷି ଅଙ୍ଗୁଷ୍ଠ ପବପରି
ଉଞ୍ଛବୃତ୍ତିକରି ନିଅନ୍ତି ଧନ ହରି ।

କାମ କ୍ରୋଧ ଜିଣି କରିଲେ ଋଷି ଧର୍ମ
ହୋଇ ସିଦ୍ଧ ନୋହିଲେ ନୋହିଲେ ଅଧର୍ମ ।
ପାଣିବାତ ପିଇଣ ଫଳମୂଳ ଖାଇ
ଯେ ରହଇ ଋଷି ବୋଲନ୍ତି ତାକୁ କହି ।
ମିତ୍ର ଅମିତ୍ରରେ ସମାନ ବୁଦ୍ଧି ଯାର
ଧର୍ମବନ୍ତମାନଙ୍କେ ଅଟଇ ସେ ସାର ।
ଉମା ବୋଇଲେ ଆହେ ବାନପ୍ରସ୍ଥଲୋକ
ଧରମ କହ ଶିବ ଦେବଙ୍କ ନାୟକ ।
ଶିବ ବୋଇଲେ ଆଗୋ ତ୍ରିକାଳରେ ସ୍ନାନ
ଅଗ୍ନିହୋତ୍ର ପିତୃଦେବତାଙ୍କ ଅର୍ଚ୍ଚନ ।
ଫଳ ମୂଳ ଭକ୍ଷଣ ତଳେ ଶୋଇବାର
ତୃଣ ଧାନ୍ୟ ଗ୍ରହଣ ବାନପ୍ରସ୍ଥଙ୍କର ।
ଧରମ ଅଟଇ ଗଉରୀ ମନେକର
ହେଉ ହୃଦମଧ୍ୟୁ ସନ୍ଦେହ ଅପହାର ।
ଉମା ବୋଇଲେ ଆହେ ରାଜପୁତ୍ରମାନେ
କିସ କଲେ ଭୋଗ କରନ୍ତି ଅବାଞ୍ଛିତେ ।
ଶିବ ବୋଇଲେ ଆଗୋ ଉପବାସ ବ୍ରତ
କଲେ ରାଜପୁତ୍ର ଭୋଗରେ ହୁଏ ଯୁତ ।
ମୃଗଙ୍କର ଉଚ୍ଛିଷ୍ଟ ଧାନ୍ୟ ଯେ ଭୁଞ୍ଜଇ
ମୃଗପତି ସେ ମଧ୍ୟ ସ୍ୱର୍ଗକୁ ଲଭଇ ।
ଝଡ଼ିବା ପତ୍ର ଶିଆଳି ଯେ ଖାଇ ରହେ
ତରଇ ସେ ସଂସାରୁ ନ ପଡ଼ଇ ମୋହେ ।
ପବନ ପାଣି ପିଇ ରହଇ ଯେ ନର
ହୁଅଇ ସେହି ପତି ଯକ୍ଷ ସ୍ତ୍ରୀଙ୍କର ।
ଗ୍ରୀଷ୍ମକାଳେ ଅଗ୍ନି ଚାରିଖାନ ଜାଳି
ତପ କରଇ ଉଷ୍ଣ ଦୁଃଖକୁ ନ ଭାଳି ।
ସୂର୍ଯ୍ୟଦେବତାଙ୍କୁ ଯେ ଅନାଇଁ ନୟନେ
ସେହିଟି ଆସି ରାଜା ହୁଏ ମର୍ତ୍ତ୍ୟଜନେ ।
ଯେଉଁ ଲୋକଟି ବାର ବରଷ ଆହାର
ନିୟମ କରି ଛାଡ଼େ ସମୁଦ୍ରେ ଶରୀର ।
ତାହାକୁଟି ବରୁଣଲୋକ ସରୀପତି
ହୁଅଇ ଜାଣ ଆଗୋ ଗଉରୀ ଯୁବତୀ ।
ଯେଉଁଲୋକ ବାର ବରଷ ଦୀକ୍ଷା କରି
ଅଗ୍ନିଙ୍କର ମଧ୍ୟରେ ପଶିଯାଏ ମରି ।
ତାହାକୁ ଜାଣ ଅଗ୍ନି କରିଣ ଆଦର
ଦିଅନ୍ତି ତାହାଙ୍କର ଯେ ଉତ୍ତମ ଘର ।

ଉମା ବୋଇଲେ କହ ଚାରିବର୍ଣ୍ଣଙ୍କର
କି କଲେ ଭିନ୍ନ ବର୍ଣ୍ଣେ ଜନ୍ମ ତାହାଙ୍କର ।
ହୁଅଇ ଏହା ମୋତେ କହ ତ ବତାଇ
ଶୁଣିବାକୁ ମନ ମୁଁ ଅଛି ପ୍ରବର୍ତ୍ତାଇ ।
ତିନିବର୍ଣ୍ଣ କି କଲେ ହୁଅନ୍ତି ବ୍ରାହ୍ମଣ
ଏହା ମଧ୍ୟ କହିବ ଜଗତ କାରଣ ।
ଶିବ ବୋଇଲେ ହୋ ଦୁଷ୍କୃତ ଦ୍ୱିଜ କଲେ
ଶୂଦ୍ରରୂ ନୀଚଯୋନି ଜନ୍ମ ଲଭେ ଭଲେ ।
କ୍ଷତ୍ରିୟଧର୍ମ ଯେବେ କରଇ ବ୍ରାହ୍ମଣ
ମଲେ ଜନ୍ମ ପାଇ କ୍ଷତ୍ରିୟ ହୋଏ ଜାଣ ।
ବୈଶ୍ୟ କର୍ମକୁ ଯେଉଁ ବ୍ରାହ୍ମଣ କରଇ
ବୈଶ୍ୟ ଯୋନିରେ ସେହି ଜନମ ଲଭଇ ।
ବୈଶ୍ୟ ଯେବେ ଶୂଦ୍ରର କରମକୁ କରେ
ଶୂଦ୍ର ଯୋନି ପାଇ ସେ ମହୀରେ ପ୍ରସରେ ।
ଚାରିବର୍ଣ୍ଣ ଯେବେ ଆପଣା ବୃତ୍ତି ଛାଡ଼ି
ନୀଚବୃତ୍ତି ଲୋଡ଼ି କରନ୍ତି ହରବଡ଼ି ।
ତେବେ ସେମାନଙ୍କର ହୀନଜନ୍ମ ହୋଏ
କହିଛନ୍ତି ଏହା ବେଦରେ ଦେବରାୟେ ।
ଉଗ୍ରଲୋକ ଅନ୍ନ ଗଣାନ୍ନ ଶ୍ରାଦ୍ଧଅନ୍ନ
ସୂତିକାନ୍ନ ଯେ ଦୁଷ୍ଟ ଲୋକଙ୍କର ଅନ୍ନ ।
ଯେ ଭୋଜନ କରଇ ଭୁଞ୍ଜଇ ନରକ
ମନେ ରଖିଥାଅ ଗୋ ସ୍ତ୍ରୀଙ୍କ ତିଳକ ।
ଶୂଦ୍ରଅନ୍ନ ପେଟରେ ଥାଇ ଦ୍ୱିଜ ମଲେ
ଯମ ତା ମୁଣ୍ଡେ ବାଡ଼ି ପିଟଇଟି ଭଲେ ।
ଦ୍ୱିଜ ଜନ୍ମକୁ ପାଇ ଦ୍ୱିଜ ଅଧିକାରୀ
ଇଚ୍ଛା ଯେ କରଇଟି ଧନଇଚ୍ଛା କରି ।
ତାହାକୁଟି ଯମ ଅନ୍ଧାରକୂପେ ନେଇ
ପକାଇ ଲୁହା କଣ୍ଟା ଦେହରେ ମଡ଼ାଇ ।
ବୃଥା ମାଂସ ନ ଖାଇ ଋତୁରେ ଭାର୍ଯ୍ୟାକୁ
ସଂଭୋଗ କଲେ ଶୂଦ୍ର ଲଭେ ବୈଶ୍ୟତ୍ୱକୁ ।
ଏହା କରିଣ ତିନିବର୍ଣ୍ଣର ସେବାରେ
ନିୟତ ନୋହିଲେ ପଡ଼େ ନରକରେ ।
ବୈଶ୍ୟ ହୋଇଣ ବୈଶ୍ୟକର୍ମ ବିନା ଆନ
ନ କଲେ ଲଭଇ ସେ କ୍ଷତ୍ରିୟ ଜନମ ।
କ୍ଷତ୍ରିୟ ପ୍ରଜା ପାଳି ଗୋ ବ୍ରାହ୍ମଣ ପାଇଁ
ଯୁଦ୍ଧ କରି ମରିଲେ ବ୍ରାହ୍ମଣ ହୁଅଇ ।

ଉତ୍ତମ କର୍ମ ଯେବେ ଆଚରଇ ଶୂଦ୍ର
ବ୍ରାହ୍ମଣକୁ ବଳ ସେ ଅରଜଇ ଭଦ୍ର ।
ଦ୍ୱିଜର ଦ୍ୱିଜ ବୃତ୍ତିକି ଭାରିଯା ସୁତ
ଅଧିକ କରି ନ ପାରନ୍ତିଟି ପବସ ।
ଦ୍ୱିଜର ଇନ୍ଦ୍ରିୟ ନିଗ୍ରହ କରିବାର
ଜାଣିଥିବଟି ଉମା ଉତ୍ତମ ବେଭାର ।
ବ୍ରାହ୍ମଣକୁ ଯାହା ଦେଇ ସେ ନୋହେ କ୍ଷୟ
ପରଲୋକ କରାଏ ତା ଭାଗ୍ୟ ଉଦୟ ।
ସତପଥରେ ଥାଇ ବେଦ ପଢ଼ି ଅଗ୍ନି—
ଆଧାନ କରି ଦ୍ୱିଜ ହୁଏ ପୁଣ୍ୟସ୍ୱାମୀ ।
ଉମା ବୋଇଲେ ହେ କି କର୍ମ କଲେ ନର
ସ୍ୱର୍ଗପୁରେ ଯାନ୍ତି ତା କହ ମୋତେ ହର ।
ଶିବ ବୋଇଲେ ହେ ପ୍ରଳୟ ଉତପତ୍ତି
ତତ୍ତ୍ୱ ଜାଣି ଭାଗ୍ୟରେ ନ ହୁଅଇ ମତି ।
କରମରେ ମନରେ ନ କରନ୍ତି ହିଂସା
ହେଲେ ପର ହେବ ଆପଣା ଦୁଃଖଦଶା ।
ସବୁ ପ୍ରାଣୀଙ୍କ ଠାରେ ଦୟା କରିଥାନ୍ତି
ଶୀଳବନ୍ତ ହୋଇଣ ଧନକୁ ହରନ୍ତି ।
ପରର ଧନ ପରଦାର ପର କଥା
ପଡ଼ିଲେ ହୃଦୟରେ ହେଉଥାନ୍ତି ବ୍ୟଥା ।
ଧର୍ମଲବ୍ଧ ଅର୍ଥକୁ ଆଣିଣ ଭୁଞ୍ଜନ୍ତି
ମାତୃ ପିତୃଠାରେ ଯେ ଭକତି କରନ୍ତି ।
ଚୌରବୃତ୍ତି କଥାକୁ ନ ଶୁଣନ୍ତି କାନେ
ଥାଉ ତା ଆଚରଣ କରିବାର ମନେ ।
ଆପଣା ଦାରେ ରତ ହୋଇ ଋତୁକାଳେ
ଭୋଗ କରୁଥାନ୍ତି ଦାରକୁ ଧରି କୋଳେ ।
ଏହି ଲକ୍ଷଣ ଗୋଟି ଗୋଟିକେ ଯେ ଯୁତ
ହୁଏ ଅନ୍ତେ ତାକୁଟି ସ୍ୱର୍ଗ ପରାପତ ।
ଉମା ବୋଲେ ଆହେ ବଚନେ କି କର୍ମ
କଲେ ଲୋକ ସ୍ୱର୍ଗ ଲଭଇ ଲଭି ଧର୍ମ ।
ମହେଶ ବୋଇଲେ ହିତରେ ଅହିତରେ
ହାସରେ ମିଥ୍ୟା ଯେ ନ କହେ ବଚନରେ ।
ତାହାଙ୍କୁଟି ସ୍ୱର୍ଗ କରାନ୍ତି ପରାପତ
ଅନ୍ତଃକାଳରେ ନେଇ ଦେବ ପୁରୁହୂତ ।
ନିଷ୍ଠୁର ଖର ଦୁଇ କଥା ଯେ ନ କହେ
ସ୍ୱର୍ଗେ ରମ୍ଭା ତାଙ୍କୁ ଧରନ୍ତି କୋଳେ ସ୍ନେହେ

ଉମା ବୋଇଲେ କହ କେଉଁକର୍ମ କଲେ
ମାନସରେ ଲୋକ ସ୍ୱର୍ଗକୁ ପାଏ ଭଲେ ।
ଏହା ଶୁଣିବାକୁ ହେଉଛି ମୋର ମନ
କହ ତ ମୋ ଆଗରେ ବସିଣ ଈଶାନ ।
ମହେଶ୍ୱର ବୋଇଲେ ଇଷ୍ଟ ପର ଧନ
ମନରେ ଯେ ନ କରେ, ପାଏ ସ୍ୱର୍ଗସ୍ଥାନ ।
ମନରେ ପରସ୍ତ୍ରୀ-ଇଚ୍ଛା ଯେ ନ କରଇ
ସ୍ୱର୍ଗରେ ବସିବାର ସନ୍ଦେହ ତ ନାହିଁ ।
ଶତ୍ରୁ ମିତ୍ର ଦୁହିଁଙ୍କି ଯେତୁ ତୁଲ୍ୟ ମନେ
ଭଜେ, ସୁମନା ସଙ୍ଗେ ବସେ ସେ ସୁମନେ ।
ଶୁଭ ଅଶୁଭର ଫଳକୁ ଯେ ଜାଣଇଁ
ତାହାକୁଟି ପୂଜା ରଚନ୍ତି ଶଚୀସାଇଁ ।
ଉମା ବୋଇଲେ ଆହେ କେଉଁ କର୍ମ କଲେ
ଦୀର୍ଘାୟୁ ଅଳ୍ପାୟୁରେ ଲେଖା ହୋଏ ଭଲେ ।
ଅକୁଳୀନ କୁଳୀନ ଭାଗ୍ୟ ଅଭାଗ୍ୟକୁ
ଅରଜନ୍ତି ଲୋକ କରିଣ କି କର୍ମକୁ ।
ଶିବ ବୋଇଲେ ହେ ବ୍ୟର୍ଥେ ଯେ ଜୀବ ମାରେ
ମଲେ ଜାଣ ପଡ଼ଇ ଘୋର ନରକରେ ।
ନରକରୁ ଉଦ୍ଧରି ନରଜନ୍ମ ପାଇ
ଦିନାକେତେ ରହିଣ ମରଣ ଲଭଇ ।
ପ୍ରାଣୀଙ୍କଠାରୁ ହିଂସା କରେ ଯେ ବର୍ଜନ
ମଲେ ସେ ଲୋକରଟି ହୁଏ ସ୍ୱର୍ଗସ୍ଥାନ ।
ସ୍ୱର୍ଗରୁ ଚ୍ୟୁତ ହେଲେ ମହୀରେ ଜନ୍ମଇ
ଦୀର୍ଘଆୟୁ ହୋଇ ସେ ସୁଖେ ବିହରଇ ।
ବ୍ରାହ୍ମଣ ଦୀନ ଅନ୍ଧ ଲୋକକୁ ସତ୍କାର
ଯେ କରେ ଦେବ-ପୁରେ କରେ ସେହୁ ଘର ।
ପୋଖରୀ କୂପ ତୋଟା କରଇ ଯେ ଥାଏ
ମଲେ ସେ ସୁଖରେ ନନ୍ଦନ ବନେ ରହେ ।
ଅପସରୀମାନଙ୍କ ବଦନୁଁ ଅମୃତ
ପିଇକରି ଆନନ୍ଦ କରେ ନିତ ଶତ ।
ସୁକୃତ ଅନ୍ତେ ଯେବେ ମହୀରେ ଜନ୍ମଇ
ଧନବନ୍ତ ହୋଇଣ ଭୋଗକୁ ଭୁଞ୍ଜଇ ।
ଦୀନ ଅନ୍ଧ ଲୋକକୁ ନ ଦିଏ ଯେ ଦାନ
ମଲେ ନରକରେ ସେ ଲଭଇ ପତନ ।
ନରକୁଁ ବାହାରିଲେ ନରଜନ୍ମ ପାଏ
ଭିକ୍ଷାରେ ଧଡ଼ି ବାନ୍ଧି ନିତି ବୁଲୁଥାଏ ।

ପୂଜ୍ୟ ଲୋକଙ୍କୁ ସେହୁ ପୂଜା ନ କରଇ
ନର୍କ ଗାର ହୋଏ, ସନ୍ଦେହ ଏଥି ନାହିଁ ।
ନର ହୋଇ ବା ଯେବେ ହୁଅନ୍ତି ଜନମ
ଚଣ୍ଡାଳ ବୃତ୍ତି କର ଅର୍ଜନ୍ତି ଅଧର୍ମ ।
ଯେଉଁ ଲୋକ ପୂ ଜୁ ଦେବତାଙ୍କୁ ପୂଜଇ
ସ୍ୱର୍ଗେ ରହି ଉତ୍ତମ ଭୋଗକୁ ଭୁଞ୍ଜଇ ।
ନରଜନ୍ମ ହେଲେ ଉତ୍ତମ କୁଳେ ଜନ୍ମ
ହୋଇ ଧନ ଅରଜ ହୁଏ ପୂର୍ଣ୍ଣକାମ ।
ବ୍ୟାଧ ବୃତ୍ତି ମନୁଷ୍ୟ କଲେ ନରକକୁ
ଭୁଞ୍ଜି ପୁଣି ଲଭଇ ମନୁଷ୍ୟ ଜନ୍ମକୁ ।
ବହୁତ ବ୍ୟାଧିଯୁକ୍ତ ହୋଇ ଜନ ନିଏ
ଭୋକେ ଶୋଷେ ମର ମାଗିଲେ ନେଲେଖାଏ ।
ଜୀବ ଅହିଂସାକାରୀ ନିରୁଦ୍‌ବେଗୀ ଯେହି
ସ୍ୱର୍ଗ ଭୋଗ କର ମହୀରେ ଜନମଇଁ ।
ଦ୍ରବ୍ୟ ଅଳଙ୍କାର ଚନ୍ଦନ କର ଭୋଗ
ବଢ଼ାଏ ଦ୍ରବ୍ୟ ତ୍ରିଶୂଳୀଙ୍କର ଅନୁରାଗ ।
ଉମା ବୋଇଲେ ହେ ଅପ୍ରାଜ୍ଞ ପ୍ରାଜ୍ଞୋତ୍ତମ
ଅଧମ କଥା ମୋତେ କହ ଦେବୋତ୍ତମ ।
ଅନ୍ଧ ନପୁଂସକ ହୁଅନ୍ତି କିସ କର
ମନୁଷ୍ୟମାନେ ତାହା କହିବ ବିସ୍ତର ।
ମହେଶ୍ୱର ବୋଇଲେ ଦ୍ୱିଜଙ୍କୁ ଯେ ଯେବେ
ସ୍ୱର୍ଗବନା ଆନରେ ନ ବସଇ କେବେ ।
ଜନ୍ମିଲେ ମହୀରେ ପଣ୍ଡିତ ବୃତ୍ତି କର
ସବୁ ପ୍ରାଣୀଙ୍କର ହୁଅଇ ହିଷାକାରୀ ।
ଆସକତ ହୋଇ ରହେଁ ଯେ ପରଦାରେ
ମହାଦଣ୍ଡ ସେ ପାଏ ଯମଙ୍କ ନଗରେ ।
ମର୍ତ୍ତ୍ୟରେ ଜନମ ହୋଇ ନେତ୍ରେ ହୋଏ ହୀନ
ନ ପାରେ କର ନିଜ ରୂପ ଦରଶନ ।
ଉଲଗ୍ନା ସ୍ତ୍ରୀଙ୍କୁ ଯେ ନେତ୍ରେ ରହୁଁଥାଏ
ସେହି ଦେହରେ ଜାଣ ସେହି ରୋଗୀ ହୋଏ ।
ପୁ ରୁଷମୁଖେ ରତି କରଇ ଯେ ନର
ନପୁଂସକ ହୋଇ ଜନମ ହୋଏ ତାର ।
ଉମା ବୋଇଲେ ଆହେ ନିର୍ଦ୍ଦୋଷ ସଦୋଷ
କର୍ମ କଲେ କି ହୋଏ କହ ତା ମହେଶ ।
ଶିବ ବୋଇଲେ ଆଗୋ ସନ୍ମାର୍ଗରେ ଦ୍ୱିଜ
ଜନଙ୍କୁ ଯେ ପୂଜେ ପୂଜନ୍ତି ଦେବରାଜ ।

ଅସତମାର୍ଗୀ ଲୋକଗଣେ ଯମ ନେଇ
ଦିଅନ୍ତି ଦଣ୍ଡ ଆଗୋ ସୁରୁଚନ୍ଦ୍ରମୁହିଁ ।
ଉମା ବୋଇଲେ ଆହେ ବ୍ରାହ୍ମଣ ଜନଙ୍କୁ
ନ ପୁଚ୍ଛି ଅଛନ୍ତି ନର ଧରମକୁ ।
ଯାଗ ହୋମ ଦୁହିଙ୍କି କରନ୍ତି ବର୍ଜନ
ଏପର କେତେ କେତେ ଧର୍ମପରାୟଣ ।
ହୋଏ ଏ ମହୀଭାଗେ ଅଛନ୍ତି ତ ଶିବ
କାହିଁକି ହେଲା ତାହା କହିବା ହୋଇବ ।
ଶିବ ବୋଇଲେ ହେ ଆଗମ ଯେ ପ୍ରମାଣ
ବୋଲି ଜାଣଇ ବ୍ରତ କରଇ ସେ ଜାଣ ।
ମୋହରେ ବଶ ହୋଇ ଅଧର୍ମ ଯେ କରେ
ନିକଟରେ ପଡ଼ଇ ସେ କାଳ ପାଶରେ ।
ପାପୀ କାଳଯୋଗେ ମନୁଷ୍ୟ ଜନ୍ମ ପାଇ
ମହୀରେ ବିହରିଲେ ପାପ ଆଚରଇ ।
ଏହା କହିଣ ଶିବ କହିଲେ ଉମାଙ୍କୁ
କହ ତ ମୋତେ ଯାହା ପୁଚ୍ଛିବି ତୁମ୍ଭଙ୍କୁ ।
ବ୍ରହ୍ମାଙ୍କର ସାବିତ୍ରୀ ଶଚୀ ଇନ୍ଦ୍ରଙ୍କର
ବରୁଣଙ୍କର ଗୌରୀ ସ୍ୱାହା ଅଗ୍ନିଙ୍କର ।
କୁବେରଙ୍କର ବୃଦ୍ଧି ରୋହିଣୀ ଚନ୍ଦ୍ରଙ୍କର
ଆଦିତ୍ୟ କଶ୍ୟପଙ୍କ ସୁବର୍ଚ୍ଚା ସୂର୍ଯ୍ୟଙ୍କର ।
ଏ ଆଦି ଯେତେ ପତିବ୍ରତାମାନେ ଛନ୍ତି
ତାଙ୍କ ତୁଲେ କଥା ହୋଇଛୁ ବହି ପ୍ରୀତି ।
ଏ ସକାଶୁଁ ବୋଲୁ ଛୁ ସ୍ତ୍ରୀଙ୍କର କଥା
କହିଣ ଛଡ଼ାଅ ମୋ ହୃଦୟର ବ୍ୟଥା ।
ତୁମ୍ଭେ ଯାହା ସ୍ତ୍ରୀଙ୍କ ଧରମ କହିବ
ଲୋକରେ ସେ ବିଖ୍ୟାତ ବଡ଼ ହୋଇ ହେବ ।
ତୁମ୍ଭେ ତ ଅଟ ମୋ ଦେହର ଅଧେ ଭାଗ
ଏଣୁ ଛାଡ଼ିଦିଅ ଲଜ୍ଜାରୁ ଅନୁରାଗ ।
ଉମା ବୋଇଲେ ଆହେ ତୁମ୍ଭ ପାଶ ନଈ-
ମାନଙ୍କୁ ପଚାର କହିବ ଏହା ମୁହିଁ ।
ଗଙ୍ଗା ଚନ୍ଦ୍ରଭାଗା ବିତସ୍ତା ଇରାବତୀ
କଉଶିକୀ ସିନ୍ଧୁ ଶତଦ୍ରୁ ଧରସ୍ୱତୀ ।
ବିପାଶା ଦେବିକାଦି ନଦୀଙ୍କି ସ୍ତ୍ରୀଙ୍କର
ଚରିତ ପଚାରିବି ଉଚିତ ମୋହର ।
ଏତେ ବୋଲି ନଦୀମାନଙ୍କ ସମୀପକୁ
ଯାଇ ଉମା ପୁଚ୍ଛିଲେ ସ୍ତ୍ରୀଙ୍କ କଥାକୁ ।

ନଦୀମାନେ ଶୁଣିଣ ପାର୍ବତୀ ବଚନ
କରାଇଣ ଗଙ୍ଗାଦେବୀଙ୍କୁ ପରସନ୍ନ ।
ବୋଇଲେ ତୁମ୍ଭେ କହ ପାର୍ବତୀଙ୍କୁ ଯାଇ
ସ୍ତ୍ରୀର ଧରମଯାକ ପଚ୍ଛରନ୍ତି ସେହି ।
ଗଙ୍ଗା ନିଜରୂପେ ଉମାଙ୍କୁ ଦେଖାଦେଲେ
ତୁମ୍ଭେ କିସ ନ ଜାଣ କହିବୁଁ ବୋଇଲେ ।
ଦିବ୍ୟ ଜ୍ଞାନ ଦିବ୍ୟ ନୟନ ହେ ତୁମ୍ଭର
ଥିବାରୁ ଅଛି କଥା କିବା ଅଗୋଚର ।
ଉମା ଏହା ଶୁଣି ହରଷ ହୃଦେ ଥୋଇ
ଶିବ ସମୀପକୁ ଆସିଲେ ଭବ୍ୟ ହୋଇ ।
କହିଲେ ସ୍ତ୍ରୀଧର୍ମ ଜାଣିଛି ମୁଁ ଯାହା
କହିବ ମୁଁ ତାହା ଶୁଣ ହେ ପ୍ରାଣନାହା ।
ସହଧର୍ମଚାରିଣୀ ହୁଅ ଭର୍ତ୍ତା ତୁଲେ
ବିଭାକାଳେ ବୋଲଇ ପିତା ଧରି କୋଳେ ।
ଏହା ତ ଜାଣି ସ୍ତ୍ରୀର ଭର୍ତ୍ତାଙ୍କୁ ସେବିବ
ଭର୍ତ୍ତା ବିନା ତାହାର ନାହିଁ ଅନ୍ୟ ଦେବ ।
ସକାଳୁ ଉଠି ଭର୍ତ୍ତା ପାଦ ଯେ ଘଷଇ
ଥିବା ଘର ବ୍ୟବହାରକୁ ଛାଡ଼ିଦେଇ ।
ଭର୍ତ୍ତା ଯେବେକେ ଦୁଃଖ କରଇ ହରଷ
ଛାଡ଼ିକରି ସେ ମଧ ହୁଅଇ ବିରସ ।
ଭର୍ତ୍ତା ମନ ଜାଣି କରଇ ବେଭାର
ପତିବ୍ରତା ବୋଲନ୍ତି ତାକୁ ମନେ କର ।
ଘରକୁ ଲିପଇ ଯେ ମାର୍ଜନା କରଇ
ଯାନଜନ ଅଛିକଠାରେ ଦୟା ବହି ।
ଦେଉଥାଏ ଘରରେ ଥାଏ ଯେଉଁ ଅନ୍ନ
ପତିବ୍ରତାଙ୍କରେ ସେ ବୋଲାଅଇ ଧନ୍ୟ ।
ଦରିଦ୍ର ବ୍ୟାଧିମନ୍ତ ରୋଗୀ ହେଲେ ପତି
ତଥାପି ସେହି ଏକା ଯୁବତୀର ଗତି ।
ଏରୂପେ ମହେଶ୍ୱର ଆଗରେ ବଚନ
କହନ୍ତେ ଉମାଦେବୀ ହୋଇଲେ ପ୍ରସନ୍ନ ।
ଯକ୍ଷ ଗନ୍ଧର୍ବଙ୍କ କୁଳରେ ପ୍ରଥମଙ୍କୁ
ଯାଅ ବୋଲିଣ ବର ଦେଲେ ଅନୁଜ୍ଞାକୁ ।
ଏହା ଶୁଣିଣ ଯେତେ ତ୍ରିଜଗତ ପ୍ରାଣୀ
ଥିଲେ ଶିବପାଦେ ନମିଲେ ସେହିକ୍ଷଣି ।
ଯେ ଯାହାର ସ୍ଥାନମାନଙ୍କୁ ଚଳଗଲେ
ଶିବ ଉମା ଋଷି ଯେତେଣ ଯେ ରହିଲେ ।

ଶିବଙ୍କୁ ଜଣାଇଲେ ଯୋଡ଼ି ବେନିକର
ଶୁଣିବାକୁ ଋଷି ମହିମା ହରିଙ୍କର ।
ମହେଶ ବୋଇଲେ ହରିଙ୍କ ମହିମାକୁ
ପୁଚ୍ଛୁଛ ଯେବେ ଆମ୍ଭେ କହିବା ତୁମ୍ଭଙ୍କୁ ।
ଉଦରରୁ ବ୍ରହ୍ମା ଯେ ମସ୍ତକରୁ ମୁହିଁ
ଜନମିଅଛୁଁ ଜାଣ ଏତେ ଲୋକ ସେହି ।
ମସ୍ତକର କେଶରୁ ଜ୍ୟୋତି ହୋଇ ଜାତ
କରୁଅଛି ଏ ତ୍ରିଜଗତ ଦୀପିତ ।
ତୁମ୍ଭେମାନେ ତାଙ୍କ ଦେହରୁ ହୋଇ ଜାତ
କରୁଅଛ ତ୍ରିଜଗତକୁ ପବିତ ।
ଏ ମହୀରେ ସର୍ଜ୍ଜନା ସଂହାରକାରକ
ଅଟନ୍ତି ଜାଣ ହେ ଲକ୍ଷ୍ମୀଙ୍କ ନାୟକ ।
ଦେବତାଙ୍କରେ ଦେବ ବୋଲାଅନ୍ତି ସେହି
ତାହାଙ୍କ ପାଦ ଆଶ୍ରା କରିଅଛି ମୁହିଁ ।
ଶଙ୍ଖ ଚକର ଗଦା ଶାରଙ୍ଗ ଆୟୁଧ
କହିଥାଆନ୍ତି ମାରିବାକୁଟି ଦୁର୍ବୋଧ ।
ଯୋଗମାୟାରେ ସେ ଆବୃତ ହୋଇଥାନ୍ତି
ଯୋଗରେ ମାତ୍ର ଯୋଗୀ ନେତ୍ରକୁ ଦିଶନ୍ତି ।
ମନୁଙ୍କ ବଂଶରେ ସେ ହେବେ ଅବତାର
ତା କହିବା ତୁମ୍ଭଙ୍କୁ ମନ କର ଧୀର ।
ମନୁଙ୍କର ଅଙ୍ଗ ନାମରେ ପୁତ୍ର ହେବେ
ତାଙ୍କର ପୁତ୍ର ଅନ୍ତର୍ଦ୍ଧାମା ବୋଲାଇବେ ।
ଅନ୍ତର୍ଦ୍ଧାମାଙ୍କଠାରୁ ହବିର୍ଦ୍ଧାମା ଖ୍ୟାତ
ହୋଇ କରି ଧର୍ମରେ ବଳାଇବେ ଶତ ।
ପ୍ରାଚୀନବରହିଙ୍କି ଜନ୍ମ ଯେ କରିବେ
ତାଙ୍କଠାରୁ ଦଶ ପ୍ରଚେତା ଉପୁଜିବେ ।
ଦଶ ପ୍ରଚେତାଏ ଗୋଟିଏ ବିଭା ହୋଇ
ଦକ୍ଷ ନୃପତିଙ୍କି କରିବେ ଖ୍ୟାତ ମହୀ ।
ଦକ୍ଷ ନୃପତିଙ୍କ ଅଦିତି ଝିଅ ହେବେ
କଶ୍ୟପ ମହାଋଷିଙ୍କି ସେ ବିଭା ହେବେ ।
ତାଙ୍କ ଆଦ୍ୟେ କରିବେ ଆଦିତ୍ୟଙ୍କୁ ଜାତ
ଆଦିତ୍ୟଙ୍କର ହେବେ ମନୁ ନାମେ ସୁତ ।
ମନୁଙ୍କଠାରୁ ଯେ ସୁଦ୍ୟୁମ୍ନ ହୋଇବେ
ତପୋବନେ ପଶି ସେ ଇଳା ହୋଇଯିବେ ।
ବୁଧଙ୍କର ଆଦ୍ୟେ ସେ କରିବେ ଯେ ସୁତ
ପୁରୁରବା ନାମ ହୋଇବ ତାଙ୍କ ଖ୍ୟାତ ।

ପୁରୁରବାଙ୍କ ପୁତ୍ର ଆୟୁ ବୋଲାଇବେ
ଆୟୁଙ୍କର ନହୁଷ ନନ୍ଦନ ହୋଇବେ ।
ନହୁଷଙ୍କ ନନ୍ଦନ ହୋଇବେ ଯଯାତି
ଯଦୁଙ୍କୁ କରିବେ ସେ କୁଳରେ ନୃପତି ।
ଯଦୁଙ୍କଠାରୁ ଯେ କ୍ରୋଷ୍ଟା ଉପୁଜିବେ
କ୍ରୋଷ୍ଟାଙ୍କର ବୃଜିନୀବାନ ପୁତ୍ର ହେବେ ।
ବୃଜିନୀବାନଙ୍କର ଉଷଦ୍‌ଗୁ ହେବେ ସୁତ
ଉଷଦ୍‌ଗୁ ସୁତ ଚିତ୍ରରଥ ହେବେ ଖ୍ୟାତ ।
ଚିତ୍ରରଥଙ୍କ ଯେ ଶୂର ପୁତ୍ର ହେବେ
ଶୂର ପୁତ୍ର ବସୁଦେବ ସେ ବୋଲାଇବେ ।
ବସୁଦେବ ସୁତ ହୋଇବେ ବାସୁଦେବ
ଦେଖାଇବେ ମହୀରେ ସେ ମହା ପ୍ରଭାବ ।
ଜରାସନ୍ଧ ଆଦି ନରପତିଙ୍କି ଜିଣି
ଫିଟାଇବେ ବନ୍ଦୀରୁ ନରପତିଶ୍ରେଣୀ ।
ଦ୍ୱାରକାରେ ରହିଣ କରିବେ ପାଳନା
ବିଭାହୋଇ ଷୋଳସହସ୍ର ଅଙ୍ଗନା ।
ତୁମ୍ଭେ ତାଙ୍କୁ ଯଥା ବିଧିରେ ପୂଜାକର
ହୋଇବ ସମସ୍ତେଟି ବିଷ୍ଣୁ ରୂପଧାରୀ ।
କୃଷ୍ଣ ଦରଶନେ ମୋହର ଦରଶନ
ଫଳ ହୁଅଇ ବୋଲ ଋଷିମାନେ ଘେନ ।
ସେ ଯାକୁ ସନ୍ତୋଷ ହୁଅନ୍ତି ତାକୁ ତୋଷ
ମୁଁ ମଧ୍ୟ ହୁଅଇ ସନ୍ଦେହ ହିନ୍ଦୁଁ ନାଶ ।
ଶ୍ରୀକୃଷ୍ଣଙ୍କର ପାଦ ଆଶ୍ରା ଯେ କରିବ
ଅଲଭ୍ୟରେ କାହିଁ ଚିନ୍ତାକୁ ସେ ଲଭିବ ।
ସମସ୍ତ ଦେବତାଙ୍କୁ ପୂଜିବାର ଫଳ
କୃଷ୍ଣଙ୍କୁ ଯେ ପୂଜେ ତାଠାରେ ହେବ ଠୁଳ ।
ତାହାଙ୍କୁ ମୁଁ ନିତ୍ୟରେ ନମସ୍କାର କରି
ରହିଛି ଶ୍ମଶାନରେ ଯନ୍ତିରୂପ ଧରି ।
ତାହାଙ୍କର ଦେହ ଅଟଇ ମୋର ବାସ
ସେହିଟି ଅଟନ୍ତି ଏ ଜଗତର ଈଶ ।
ତାଙ୍କର ଜ୍ୟେଷ୍ଠଭାଇ ବଳରାମ ହୋଇ
କଇଳାସଗିରି ଶୋଭାରେ ହେବେ ଦହି ।
ହଳ ମୂଷଳଟି ତାହାଙ୍କର ଆୟୁଧ
ହୋଇକରି କରିବେ ଦୁଷ୍ଟକୁଳ ବଧ ।
ବଳରାମ କୃଷ୍ଣ ଏ ଦୁହିଙ୍କର ଭେଦ
ନାହିଁ ବୋଲ ଉପଦେଶ କରିଥାଅ ହୃଦ ।

ଶିବଙ୍କ ମୁଖୁଁ କୃଷ୍ଣ ମହିମାକୁ ଶୁଣି
ମେଲାଣି ହୋଇଲେ ସକଳ ଋଷିଶ୍ରେଣୀ ।
ଏହିରୂପେ ନାରଦ କହନ୍ତେ ଗୋବିନ୍ଦ
ଋଷିଙ୍କି ପୂଜା କଲେ ହୋଇଣ ଆନନ୍ଦ ।
ଋଷିମାନେ କହିଲେ ତୁମ୍ଭ ଦରଶନ
ନିତି ହେଉଥିବାକୁ ହେଉଛୁ ମୋ ଧନ ।
ପ୍ରସନ୍ନ ହୋଇ ଏହା ଆଜ୍ଞା ଦିଅ ହରି
ଜଣାଉଅଛୁ ଆମ୍ଭେ କର ଯୋଡ଼ି କରି ।
ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ଧନ୍ୟ ଅଟଇ ଏହା ଜୀବନ ତୁମ୍ଭର ।
କୃଷ୍ଣ ପାଦ ଦୁଇରେ ନିତି ଆଶ୍ରା କରି
ହେଲ ବଳରେ ଶତ୍ରୁକୁଳକୁ ସଂହାରି ।
କୃଷ୍ଣଙ୍କ ତେଜାଗ୍ନିରେ ଦୈତ୍ୟବଳ କ୍ଷୟ
ହୋଇଛନ୍ତି ପୂର୍ବରୁ ନାହିଁ ହେ ସଂଶୟ ।
କୃଷ୍ଣଙ୍କର ତେଜ ଥିବାରୁ ଅରଜୁନ
କାଣ୍ଡରେ ଆମ୍ଭ ଗଣ୍ଡି କଲା ଜାଣ ଭିନ୍ନ ।
ବାଳରୂପୀ କୃଷ୍ଣ କାଳରେ ଆମ୍ଭ ପ୍ରାଣ
ଘେନିଲେ ବଜାଇ ଗାଣ୍ଡୀବ ଧନୁବାଣ ।
ଏହି ସକାଶରୁ ମୁଁ କହୁଛି କାଳକୁ
ବଳିବାକୁ ମହୀରେ ନ ଦେଖି ନରଙ୍କୁ ।
କ୍ଷିତିପାଳନାକୁ କରିଣ ଦଣ୍ଡଧାରୀ
ରହିଥାଅ ଘରେ କାଳକୁ ଅନୁସରି ।
ନର ନାରାୟଣ ଯେ କୃଷ୍ଣ ଅରଜୁନ
ଏହାଙ୍କ କର୍ମ କହି ନ ପାରେ ବଚନ ।
କୃଷ୍ଣଙ୍କ ସେବା ଘେନ ସକଳ ବିପଦ
ତରି ସ୍ୱର୍ଗପୁରରେ ପକାଇବ ପାଦ ।
ଦୁର୍ଯ୍ୟୋଧନ ରାଜାକୁ କରୁଛି ମୁଁ ନିନ୍ଦା
କୃଷ୍ଣଙ୍କର ମାୟାରେ ହୋଇକରି ଧନ୍ଦା ।
ତୁମ୍ଭଙ୍କର ତୁଲେ ଗୋଳ କରି ଗୁରୁଙ୍କର
କୁଳ କ୍ଷୟ କରିଲା କରିଣ ସମର ।
ଭୀଷ୍ମଙ୍କରଠାରୁ ଶୁଣିଣ ଏ ବଚନ.
ଆଶ୍ଚର୍ଯ୍ୟ ପାଇ ନୃପ ହୋଇଲେ ମଉନ ।
ଧୃତରାଷ୍ଟ୍ର ଆଦି ଯେତେକ ନୃପ ଥିଲେ
ଧନ୍ୟ ଧନ୍ୟ ହେ କୃଷ୍ଣ ବୋଲି ପ୍ରଶଂସିଲେ ।
ନାରଦ ଆଦି ଋଷିମାନେ ଭୀଷ୍ମ ବାଣୀ
ଶୁଣି ଆନନ୍ଦରେ ମୁଞ୍ଚିଲେ ଅଶ୍ରୁ ପାଣି ।

ପରାଶରନନ୍ଦନ ଚର୍ମବାସ ବ୍ୟାସ
ଉମା ମହେଶ୍ୱର ସମ୍ବାଦ କଲେ ଶେଷ ।
ଏହିଠାରେ ଯେ ମହାସନ୍ତୋଷକୁ ବହି
କୃଷ୍ଣସିଂହ ନରେଶ ଗୀତରସେ କହି ।

## ବିଷ୍ଣୁନାମ କୀର୍ତ୍ତନର ଫଳ

ଏହା କହିଣ ବଇଶମ୍ପାୟନ ଋଷି
କର ଦୁଇ ମସ୍ତକଦେଶରେ ନିବେଶି ।
ପ୍ରଣବକୁ ଆଦ୍ୟରେ ଉଚ୍ଚାରଣ ଧୀରେ
ବାସୁଦେବ ଦେବଙ୍କୁ ଭାବିଲେ ମନରେ ।
ଗୁରୁ ପିତାମହ ଯେ ପ୍ରଧାନ କରତା
ବରିଷ୍ଠ ସୁଖପ୍ରଦ ଈଶ୍ୱର ହରତା ।
ଉଦ୍ଭବ ସ୍ଥିତ ନିଧି ସବୁ ଲୋକଙ୍କର
ହେଉଁ କୃଷ୍ଣ ତାହାଙ୍କୁ କରି ନମସ୍କାର ।
ବିଷ୍ଣୁ ପ୍ରଭୁବିଷ୍ଣୁ ନାମକୁ ଯେ ଉଚ୍ଚାରି
ବୋଇଲେ ଶୁଣ ଜନ୍ମେଜୟ ଦଣ୍ଡଧାରି ।
ଏଥୁଅନ୍ତରେ ଯୁଧିଷ୍ଠିର ମହାରାଜା
ଭୀଷ୍ମଙ୍କର ପାଦଦୁଇରେ କରି ପୂଜା ।
ବୋଇଲେ ହେ ପିତା ଲୋକର ପରାୟଣ
କେଉଁ ଦେବ ଅଟନ୍ତି ତା ତୋତେ ବଖାଣ ।
କାହାକୁ ସ୍ତୁତି କଲେ ମାନବେ ମୁକତି
ହୋଇକରି ପାଆନ୍ତି ପରମ ବିଭୂତି ।
ସବୁ ଧର୍ମଯାକରେ ଅଟନ୍ତି କେ ସାର
ଆହେ ପିତାମହ ତା ମୋ ଆଗେ ବିସ୍ତାର ।
ଭୀଷ୍ମ ବୋଇଲେ ଆରେ ପୁରୁଷଉତ୍ତମ
କୃଷ୍ଣଟି ଏ ଜଗତକାରଣର ଧାମ ।
ତାହାଙ୍କର ନାମସହସ୍ର ଯେ ପଢ଼ଇ
ଅକ୍ଷୟଲୋକକୁ ସେ ଅଳଭ୍ୟେ ଲଭଇ ।
ସବୁ ଧର୍ମଯାକେ ସହସ୍ର ନାମ ସ୍ତବ
ଅଧିକ ଯେ ପଢ଼ଇ ହୃଦେ ବହି ଭାବ ।
ତାହାର ଯେଉଁ ଗତି ହୁଏ ସୁରପତି
ଶତଯାଗେ ଅରଜି ପାରିଟି ନାହାନ୍ତି ।
ତପଙ୍କରେ ତପ ପବିତ୍ରରେ ପବିତ୍ର
ମଙ୍ଗଳେ ମଙ୍ଗଳ ଦେବଙ୍କେ ଦଇବତ ।
ତେଜଙ୍କରେ ତେଜ ପ୍ରାଣୀମାନଙ୍କ ପିତା
ବ୍ରହ୍ମସ୍ୱରୂପୀ କୃଷ୍ଣ ହରତା କରତା ।

ଜଗତନାଥ ବୋଲି ତାହାଙ୍କୁଟି କହି
ତାଙ୍କ ନାମସହସ୍ର ଭୟ ହୁଏ ଦହି ।
ସେ ନାମମାନ ସବୁ କରିବା ପ୍ରକାଶ
ଋଷିଙ୍କେ ଉକ୍ତ ହୋଇଅଛି ହେ ନରେଶ ।
ବିଷ୍ଣୁ ବିଷ୍ଣୁ ମହେଶ୍ୱର ହେ ପ୍ରଭୁ ବିଷ୍ଣୁ
ଦୈତ୍ୟାନ୍ତକ ପୁରୁଷୋତ୍ତମ ମହାବିଷ୍ଣୁ ।
ତାହାଙ୍କର ପାଦ ଦୁଇରେ ନମସ୍କାର
କରି ତାଙ୍କ ସହସ୍ରନାମ ଯୁଧିଷ୍ଠିର ।
ତୁମ୍ଭ ଆଗେ କହୁଛି ହୋଇ ମନ ଲୟ
ହୋଇବ ଅଳଭ୍ୟରେ-ମୁକ୍ତି ଫଳୋଦୟ ।
ଏତେ ବୋଲିଣ ଭୀଷ୍ମ ପ୍ରଣବ ଉଚ୍ଚାରି
କହିଲେ ସେ ସହସ୍ରନାମକୁ ବିସ୍ତରି ।

## ବିଷ୍ଣୁସହସ୍ର ନାମ

ବିଶ୍ୱ ବିଷ୍ଣୁ ବଷଟ୍‌କାର ଭୂତକୃତ
ଭୂତଭବ୍ୟଭବତ ପ୍ରଭୁ ଭୂତଭୃତ ।
ଭାବ ଭୂତଭାବନ ଭୂତାତ୍ମା ପୂତାତ୍ମା
ମୁକ୍ତଙ୍କର ପରମଗତି ପରମାତ୍ମା ।
ଅବ୍ୟୟ ଦେବ ସାକ୍ଷୀ କ୍ଷେତ୍ରଜ୍ଞ ଅକ୍ଷର
ସ୍ଥବିଷ୍ଠ ଯୋଗପ୍ରଧାନପୁରୁଷେଶ୍ୱର ।
ନାରସିଂହପୁର ଶ୍ରୀମାନ ଶ୍ରୀକେଶବ
ପୁରୁଷୋତ୍ତମ ସର୍ବ ସର୍ବ ସ୍ଥାଣୁ ଶିବ ।
ଭୂତନିଧିରବ୍ୟୟ ସମ୍ଭବ ଭାବନ
ପ୍ରଭୁ ଈଶ ଭର୍ତ୍ତା ପ୍ରଭବ ମହାସ୍ୱନ ।
ସ୍ୱୟମ୍ଭୁ ଶମ୍ଭୁରାଦିତ୍ୟ ଅବ୍‌ଜାକ୍ଷ ଧାତା
ଅନାଦିନିଧନ ଧାତୁରୁତ୍ତମ ବିଧାତା ।
ଯୋଗ ଯୋଗବିଦମାନଙ୍କ ନେତା ଅଟି
ଅପ୍ରମେୟ ହୃଷୀକେଈଶ ତ୍ୱଷ୍ଟା ଜ୍ୟେଷ୍ଠ ।
ଅମରପ୍ରଭୁ ବିଶ୍ୱକର୍ମା ପଦ୍ମନାଭ
ସ୍ୱନ ଧ୍ରୁବ ସ୍ଥବିର ହିରଣ୍ୟଗରଭ ।
ଅଗ୍ରାହ୍ୟ କୃଷ୍ଣ ଲୋହିତାକ୍ଷ ପ୍ରତର୍ଦ୍ଦନ
ତ୍ରିକକୁଭଧାମ ମୁଁ ପବିତ୍ର ଈଶାନ ।
ପ୍ରାଣଦ ପ୍ରାଣ ଶ୍ରେଷ୍ଠ ପରମମଙ୍ଗଳ
ପ୍ରଜାପତି ହରି ମଧୁସୂଦନ ବ୍ୟାଳ ।
ଅନୁତ୍ତମ ମାଧବ ଭୂଗର୍ଭ ଶାଶ୍ୱତ
ଦୁରାଧର୍ଷ କୃତଜ୍ଞ ସୁରେଶ ପ୍ରଭୂତ ।

ଶରଣ ଶର୍ମ ବିଶ୍ୱରେତା ଅହଃ ଧନ୍ୱୀ
ପ୍ରଜାଭବ ବିକ୍ରମୀ ପ୍ରତ୍ୟୟ ମେଧାବୀ ।
ସରବ ଦରଶନ ଅଜ ସର୍ବେଶ୍ୱର
ସିଦ୍ଧି ସିଦ୍ଧି ସର୍ବାଦି ଅଚ୍ୟୁତ ଈଶ୍ୱର ।
ବିକ୍ରମ କ୍ରମ ସତ୍ୟ କୃତ ଆତ୍ମାବନ୍ତ
ବସୁମନା ସରବ ଯୋଗ ବିନିସୃତ ।
ବୃଷାକପି ଅମୋଘ ସମ ଅମେୟାତ୍ମା
ପୁଣ୍ଡରୀକାକ୍ଷ ବସୁ ସର୍ବଗ ସମାତ୍ମା ।
ସର୍ବବିଦଭାନୁ ଅନାଦି ଅସମ୍ମିତ
ବୃଷକରମା ବୃଷଆକୃତ ଅମୃତ ।
ଶାଶ୍ୱତ ସ୍ଥାଣୁ ଶୁଚିଶ୍ରବା ଧର୍ମାଧ୍ୟକ୍ଷ
ରୁଦ୍ର ବହୁଶିରା ହେ ବଭ୍ରୁ ସୁରାଧ୍ୟକ୍ଷ ।
ବିଶ୍ୱଯୋନି ବରାରୋହ ବିଶ୍ୱକେତନ
ବେଦବିତ୍ କବି ମହାତପା ଜନାର୍ଦ୍ଦନ ।
ଲୋକାଧ୍ୟକ୍ଷ ଜଗତ ଆଦିଜ ଅବ୍ୟଙ୍ଗ
ଚତୁରାତ୍ମା କୃତଅକୃତ ବେଦଅଙ୍ଗ ।
ଜିଷ୍ଣୁ ଚତୁର୍ବ୍ୟୂହ ଭ୍ରାଜିଷ୍ଣୁ ବେଦବିଦ
ଚତୁର୍ଦ୍ଦଂଷ୍ଟ୍ର ଚତୁର୍ଭୁଜ ସତରବେଦ ।
ସହିଷ୍ଣୁ ପୁନର୍ବସୁ ବିଶ୍ୱଯୋନି ଜେତା
ଭୋଜନାମୋଘ ପ୍ରାଂଶୁ ସଦାଯୋଗୀ ଭୋକ୍ତା ।
ବୀରହା ମଧୁ ଯମ ନିୟମ ଉପେନ୍ଦ୍ର
ବାମନ ଶୁଚିରୂର୍ଜ୍ଜିତ ଧୃତାତ୍ମାତାନ୍ଦ୍ର ।
ବେଦୋ ବୈଦ୍ୟ ହେ ମହାବଳ ଅତୀନ୍ଦ୍ରିୟ
ମହାବୁଦ୍ଧି ମହାର୍ଯ୍ୟାତ୍ମା ମହାମାୟ ।
ମାଧବ ମହୋତ୍ସାହ ସଂଗ୍ରହ ଶକତି
ଅନିର୍ଦ୍ଦେଶ୍ୟବପୁ ଶ୍ରୀମନ୍ତ ମହଦ୍ୟୁତି ।
ଅମେୟାତ୍ମା ମହାଦ୍ରିଧୃକ୍ ମହେଷ୍ୱାସ
ଅନିରୁଦ୍ଧ ପ୍ରଭୁ ମହୀଶ ଶ୍ରୀନିବାସ ।
ମହୀଭର୍ତ୍ତା ଗୋବିଦାଂପତି ସୁରାନନ୍ଦ
ସର୍ବଦୃକ୍ ଦମନ ସତାଂଗତି ଗୋବିନ୍ଦ ।
ସୁବର୍ଣ୍ଣ ହଂସ ସିଂହ ଜିଷ୍ଣୁ ପଦ୍ମନାଭ
ଭୁଜଗୋତ୍ତମ ସୁତପ ହିରଣ୍ୟାଭ ।
ବିଶ୍ରୁତି ଆତ୍ମା ଅଜ ଦୁର୍ମର୍ଷଣ ଶାସ୍ତା
ସନ୍ଧିମାନ ସ୍ଥିର ହେ ଶ୍ରୀମନ୍ତ ସନ୍ଧାତା ।
ସୁରାରିହା ଗୁରୁ ଧାମ ହେ ଗୁରୁତ୍ତମ
ବାଚସ୍ପତି ସତ୍ୟ ଶ୍ରୀ ସତ୍ୟପରାକ୍ରମ ।

ଉଦାରଧୀ ସ୍ରଗ୍ୱୀ ବିଶ୍ୱଆତ୍ମା ଅଗ୍ରଣୀ
ନ୍ୟାୟର ନେତା ସଂପ୍ରମର୍ଦ୍ଦନ ଗ୍ରାମଣୀ ।
ସହସ୍ରମୂର୍ଦ୍ଧା ସମୀରଣ ଅନିମିଷ
ସହସ୍ର ଅକ୍ଷ ଅହଃ ଅନଳ ନିମିଷ ।
ସହସ୍ରପାଦ ଆବର୍ତ୍ତନ ନିବୃତାତ୍ମା
ବହ୍ନି ସମ୍ବର୍ତ୍ତକ ସାଧୁ ପ୍ରସନ୍ନ ଆତ୍ମା ।
ଧରଣୀଧର ବିଭୁ ସତ୍କର୍ତ୍ତା ସଂବୃତ
ସୁପ୍ରସାଦ ନିହ୍ନସିଦ୍ଧାର୍ଥ ସତ୍କୃତ ।
ଶିଷ୍ଟକୃତ ଶୁଚି ସିଦ୍ଧିଦ ବିଶ୍ୱଧୃକ୍
ଅପ୍ରମେୟାତ୍ମା ସିଦ୍ଧି କଳ୍ପ ବିଶ୍ୱାତ୍ମକ ।
ଅସଂଖ୍ୟେୟ ନାରାୟଣ ଯେ ବିଷ୍ଣୁ ନର
ବୃଷଭ ବୃଷପର୍ବା ବୃଷାହୀ ବୃଷୋଦର ।
ସିଦ୍ଧି ସାଧନ ଶ୍ରୁତିସାଗର ବର୍ଦ୍ଧନ
ବସୁଦ ବସୁ ନୈକରୂପ ବର୍ଦ୍ଧମାନ ।
ସୁଭୁଜ ବାଗ୍ମୀ ବୃହଦ୍ରୂପ ଶିପି ବିଷ୍ଟ
ଦୁର୍ଦ୍ଧର ପ୍ରକାଶନ ମହେନ୍ଦ୍ର ବଶିଷ୍ଟ ।
ପ୍ରକାଶଆତ୍ମା ଓଜସ୍ତେଜଦ୍ୟୁତିଧର
ବିବିକ୍ତ ପ୍ରତାପନ ମନ୍ତ୍ର ସ୍ପଷ୍ଟାକ୍ଷର ।
ଜଗସେତୁ ରୁଦ୍ଧି ଔଷଧ କାମକୃତ
ଅମୃତା ଶୁଭବ ଅମରେଶ୍ୱର କାନ୍ତ ।
ଶରବିନ୍ଦୁ ଭାସ୍କର କାମପ୍ରଦ କାମ
ଭାସ୍କରଦ୍ୟୁତି ସତ୍ୟଧର୍ମ ପରାକ୍ରମ ।
ଯୁଗାଦିକୃତ ପ୍ରଭୁ କାମହା ପାବନ
ଅଦୃଶ୍ୟ ବ୍ୟକ୍ତରୂପ ଚନ୍ଦ୍ରାଂଶୁ ପବନ ।
ଭୂତଭବ୍ୟ ଜଗତନାଥ ଯୁଗାବର୍ତ୍ତ
ଅନଳ ନୈକମାୟ ଇଷ୍ଟାନନ୍ତ ଜିତ ।
କ୍ରୋଧକୃତ କରତା କ୍ରୋଧହା ବିଶିଷ୍ଟ
ସହସ୍ରଜିତ ବୃଷ ଶିଖଣ୍ଡୀ ଶିଷ୍ଟେଷ୍ଟ ।
ନହୁଷ ମହାଶନ ପ୍ରାଣଦ ଅଚ୍ୟୁତ
ବାସବାନୁଜ ପ୍ରାଣ ବରଦ ପ୍ରଥିତ ।
ଅପାଂନିଧି ବିଶ୍ୱବାହୁ ହେ ଅପ୍ରମତ୍ତ
ବୃହଦ୍ଭାନୁ ଅଧିଷ୍ଠାନ ପ୍ରତିଷ୍ଠିତ ।
ବାୟୁବାହନ ବାସୁଦେବ ମହୀଧର
ଆଦିଦେବତା ଧୂର୍ଯ୍ୟ ସୁଷେଣ ସ୍କନ୍ଦଧର ।
ଅନୁକୂଳ ଶୋକ ତାରଣ ପୁରନ୍ଦର
ସତାବର୍ତ୍ତ ତାର ଶଉରି ଜନେଶ୍ୱର ।

ପଦ୍ମନଭ ଈକ୍ଷଣ ପଦ୍ମୀ ପଦ୍ମନାଭ
ମହର୍ଦ୍ଧି ଶୂର ସମସଜ୍ଞ ପଦ୍ମଗର୍ଭ ।
ଗରୁଡଧ୍ୱଜ ଋଷି ବୃଦ୍ଧାତ୍ମା ମହାକ୍ଷ
ଶରୀରଭୃତ ହେତୁ ସମାରବନ୍ଧାକ୍ଷ ।
ହର ହର ଅତୁଳ ଶରଭ ଶ୍ରୀମନ୍ତ
ମାର୍ଗ ସର୍ବଲକ୍ଷଣ ଲକ୍ଷଣ୍ୟ ରୋହିତ ।
ଅମିତାଶନୋଦ୍ଭବ ବକ୍ଷୁର ଶ୍ରୀଧର
ସମିତଞ୍ଜୟ ସହ ଦେହ ମହୀଧର ।
ଶ୍ରୀଗର୍ଭ ମହାଭାଗ କ୍ଷୋଭ ବ୍ୟବସ୍ଥାନ
ବ୍ୟବସାୟ ସୁବେଗବନ୍ତ ଶୁଭେକ୍ଷଣ ।
ଗହନ ଗୃହଧ୍ରୁବ ସ୍ଥାନଦ ସଂସ୍ଥାନ
ବିରାମ ରାମ ମାର୍ଗ କରଣ କାରଣ ।
ବରତ ନେୟ ନୟ ଅନୟ କରତା
ପରମେଶ୍ୱର ତୁଷ୍ଟ ପରର୍ଦ୍ଧି ବିକର୍ତ୍ତା ।
ପରମସ୍ପଷ୍ଟ ପୁଷ୍ଟ ଧର୍ମ ବିଦୁତ୍ତମ
ଶକ୍ତିମନ୍ତ ଶ୍ରେଷ୍ଠ ଉଗ୍ର ବୈକୁଣ୍ଠ ଧରମ ।
ପ୍ରଣବ ପ୍ରାଣ ପୃଥୁ ପୁରୁଷ ଶତ୍ରୁଘ୍ନ
ସ୍ୱର୍ଣ୍ଣଗର୍ଭ ବାୟୁ ପ୍ରାଣଦ ସୁଦର୍ଶନ ।
ବ୍ୟାପତ ଅଧୋକ୍ଷଜ ଋତୁ ସମ୍ବତ୍ସର
କାଳ ପରମେଷ୍ଠୀ ଯେ ପରିଗ୍ରହ ବୀର ।
ବିଶ୍ୱ ଦକ୍ଷିଣ ଦକ୍ଷ ବିଶ୍ରାମ ବିସ୍ତାର
ଅବ୍ୟୟ ବୀଜ ସ୍ଥାଣୁ ପ୍ରମାଣ ସ୍ଥାବରଂ ।
ମହାକୋଷ ଅର୍ଥ ଅନର୍ଥ ମହାଧନ
ମହାଭୋଗ ଧରମ ଯୂପ ଅନିର୍ବିଣ୍ଣ ।
ହରି ମହାମନ୍ତ୍ର ନକ୍ଷତ୍ରନେମି କ୍ଷମ
ନକ୍ଷତ୍ରୀ ସମୀହନ ଯଜ୍ଞଇଜ୍ୟ କ୍ଷାମ ।
ସର୍ବଦର୍ଶୀ କ୍ରତୁ ମହେଜ୍ୟ ମହାବ୍ରତ
ସଦ୍‌ଗତି ସ୍ଥୂଳ ସୂକ୍ଷ୍ମ ସୁଘୋଷ ସୁହୃତ ।
ମୁକ୍ତାତ୍ମା ସର୍ବଜ୍ଞ ସୁମୁଖୋତ୍ତରମ ଜ୍ଞାନ
ସୁଖଦ ଜିତକ୍ରୋଧ ସ୍ୱବଶ ସ୍ୱାପନ ।
ବୀରବାହୁ ବିଦାରଣ ସୁମନୋହର
ନୈକକରମ କୃତ ନୈକାତ୍ମା ବତ୍ସର ।
ବତ୍ସଳ ବତ୍ସୀ ରତ୍ନଗର୍ଭ ଧର୍ମକୃତ
ଧନେଶ୍ୱର ବ୍ୟାପୀ ଧରମ ସଦସତ ।
ଧର୍ମଗୁପାକ୍ଷର ଅକ୍ଷର ଅବିଜ୍ଞାତା
ସହସ୍ର ଅଂଶୁ କୃତ ଲକ୍ଷଣ ବିଧାତା ।

ସିଂହ ଭୂତ ମହାଈଶ୍ୱର ଆଦିଦେବ
ଗଭସ୍ତି ନେମି ଦେବଈଶ ମହାଦେବ ।
ଉତ୍ତର ଜ୍ଞାନଗମ୍ୟ ପୁରାତନ ଗୋପ୍ତା
କାୟଭୂତଭୃତ ଦେବଭୃଦ୍‌ଗୁରୁ ଭୋକ୍ତା ।
ସତ୍ତ୍ୱସ୍ଥ ପୁରୁଜିତ ଗୋପତି ସୁଧାମ
କପୀନ୍ଦ୍ର ପୁରୁଷୋତ୍ତମ ହେ ସୋମପ ।
ସାତ୍ତ୍ୱତାଂପତି ଜୀବ ଅମିତବିକ୍ରମ
ଭୂରିଦକ୍ଷିଣ ସାକ୍ଷୀ ବିଜ୍ଞୟ ତାସୋମ ।
ସତ୍ୟସନ୍ଧ ଦଶାର୍ହ ମୁକୁନ୍ଦ ବିନୟ
ଅମ୍ଭୋନିଧି ଅନ୍ତକ ମହୋଦଧିଶୟ ।
ଅନନ୍ତାତ୍ମା ଅଜ ମହାର୍ହ ପ୍ରମୋଦନ
ସ୍ୱାଭାବ୍ୟ ଜିତାମିତ୍ର ଲୃତଜ୍ଞ ନନ୍ଦନ ।
ସତ୍ୟଧର୍ମା ଜୀୟ ମହର୍ଷି ସଦାନନ୍ଦ
ବିଜିତାମିତ୍ର ନନ୍ଦ ସୁଷେଣ ଗୋବିନ୍ଦ ।
କୃତାନ୍ତକୃତ ତ୍ରିବିକ୍ରମ ସଂକର୍ଷଣ
କପିଳାଚାର୍ଯ୍ୟ ମହାବରାହ ବରୁଣ ।
ମେଦିନୀପତି ମହାଶୃଙ୍ଗ ବେଧା ଗୁପ୍ତ
କନକାଙ୍ଗଦୀ ଗୁହ୍ୟ ତ୍ରିପଦ ଅଚ୍ୟୁତ ।
ଅଜିତ କୃଷ୍ଣ ଦୃଢ଼ ତ୍ରିଦଶ ଅଧ୍ୟକ୍ଷ
ସ୍ୱାଙ୍ଗ ମହାମନା ଯେ ବୃକ୍ଷ ପୁଷ୍କରାକ୍ଷ ।
ବନମାଳୀ ହଳାୟୁଧ ହେ ଭଗବାନ
ସହିଷ୍ଣୁ ନନ୍ଦୀ ଜ୍ୟୋତିରାଦିତ୍ୟ ଗହନ ।
ଭଗହା ସୁଧନ୍ୱା ଚକ୍ରଗଦାଧର
ଆଦିତ୍ୟ ବାଚସ୍ପତି ଦାରୁଣ ଗମ୍ଭୀର ।
ଦ୍ରବିଣପ୍ରଦ ଗତିସତ୍ତମ ବାରୁଣ
ସରବନ୍ଦୁକ ବ୍ୟାସ ନିସାମା ନିର୍ବାଣ ।
ଅଯୋନିଜ ଖଣ୍ଡପରଶୁ ଦିବସ୍ପୃକ
ସାମଗ ସାମ ସ୍ରଷ୍ଟା ଭେଷଜ ଭିଷକ ।
ଶୁଭାଙ୍ଗ ଶାନ୍ତ ପରାୟଣ ନିଷ୍ଠାଶାନ୍ତ
ସନ୍ନ୍ୟାସକୃତ ଶମ ଶାନ୍ତ କ୍ଷେମକୃତ ।
କୁବଳେଶୟ ନିବୃତ୍ତାତ୍ମା ଅନିବର୍ତ୍ତୀ
ସଂକ୍ଷେପ୍ତା ଶିବ ଗୋପ୍ତା ଗୋହିତ ଗୋପତି ।
ବୃଷପ୍ରିୟ କୁମୁଦ ବୃଷଭାଗ ଶ୍ରୀଦ
ଶ୍ରୀବତ୍ସ ବକ୍ଷା ଶ୍ରୀଶ ସ୍ୱର୍ଗ ସତାନନ୍ଦ ।
ଶ୍ରୀମନ୍ଦର ଶ୍ରେୟ ହେ ଶ୍ରୀପତି ଶ୍ରୀବାସ
ଶ୍ରୀନିଧି ନନ୍ଦୀ ଜ୍ୟୋତି ସ୍ୱକ୍ଷ ଶ୍ରୀନିବାସ ।

ଲୋକତ୍ରୟଆଶ୍ରୟ ଶ୍ରୀମନ୍ତ ଶ୍ରୀକର
ଶ୍ରୀବିଭାନୁଧାର୍ତ୍ତ ପ୍ରଭୁ ଗଣେଶ୍ୱର ।
ଶାଶ୍ୱତ ସ୍ଥିର ଛିନ୍ନସଂଶୟ ଜିତାତ୍ମା
ସତ୍କୀର୍ତ୍ତି ଅର୍ଚ୍ଚିଷ୍ମନ୍ତାତ୍ମାଣ ବିଧେୟାତ୍ମା ।
ଅନିରୁଦ୍ଧ ଭୂଷୟ କୁମ୍ଭ ବିଶୋଧନ
ସର୍ବତଶ୍ଚକ୍ଷୁ ଭୂତ ବିଶୋକ ଭୂଷଣ ।
ବିଶୁଦ୍ଧାତ୍ମା ଅର୍ଚ୍ଚିତ ଅମିତବିକ୍ରମ୍
କାଳନେମି ନିହା ଶୋକନାଶନ ବ୍ରହ୍ମ ।
ତ୍ରିଲୋକାତ୍ମା ପ୍ରଦ୍ୟୁମ୍ନ ଶୂରଜନେଶ୍ୱର
ଅପ୍ରତିରଥ ଶର ତ୍ରିଲୋକେଶ ବୀର ।
କେଶିହା ହରି କାମପାଳ କାମଦେବ
କାମୀ କାନ୍ତ ବିଷ୍ଣୁ ହେ ଅନନ୍ତ କେଶବ ।
ବୀର ଧନଞ୍ଜୟ ବ୍ରାହ୍ମଣ ବ୍ରହ୍ମକୃତ
ବ୍ରହ୍ମବର୍ଦ୍ଧନ ବ୍ରହ୍ମା ବ୍ରହ୍ମ ବ୍ରହ୍ମବିତ ।
ବ୍ରହ୍ମଜ୍ଞ ବ୍ରହ୍ମୀ କୃତାଗମ ସ୍ତବପ୍ରିୟ
ଅନିର୍ଦ୍ଦେଶ୍ୟବପୁ ବ୍ରାହ୍ମଣ ରଣପ୍ରିୟ ।
ମହାକ୍ରମ ବ୍ରାହ୍ମଣପ୍ରିୟ ସ୍ତୁତି ସ୍ତୋତା
ସ୍ତୋତ୍ର ସ୍ତବନ ମହାହବି ପୂରୟିତା ।
ମହାକରମା ମହାତେଜା ମହୋରଗ
ମହାକ୍ରତୁ ମହାଯଜ୍ୱା ହେ ମହାଯଜ୍ଞ ।
ପୂର୍ଣ୍ଣପୁଣ୍ୟ କୀରତି ମନୋଜବ
ଅନାମୟ ତୀର୍ଥକାରକ ବାସୁଦେବ ।
ବସୁ ବସୁମନା ହବି ଯେ ବସୁପ୍ରଦ
ବସୁରେତା ସକ୍ରୁତଗତି ବସୁଦେବ ।
ଯଦୁଶ୍ରେଷ୍ଠ ସତ୍ତ୍ୱ ସଦ୍ଭୂତ ଶୂରସେନ
ସତ୍ପରାୟଣ ବାସୁଦେବ ସୁଯାମୁନ ।
ଦର୍ପଣ ଦୃପ୍ତାଗ୍ନି ଦର୍ପହା ଶ୍ରୀନିବାସ
ସର୍ବାସୁଧାମ ବାସୁଦେବ ଭୂତାବାସ ।
ଅପରାଜିତ ବିଶ୍ୱମୂର୍ତ୍ତି ମହାମୂର୍ତ୍ତି
ଗୋବିନ୍ଦ ମାଧବ ଅବ୍ୟକ୍ତ ଦୀପ୍ତମୂର୍ତ୍ତି ।
ସ୍ୱର୍ଣ୍ଣବର୍ଣ୍ଣ ଭକ୍ତବତ୍ସଳ ଶତମୂର୍ତ୍ତି
ଏକ ଅନେକ ସର୍ବଗ ଅନେକ ମୂର୍ତ୍ତି ।
କଂ ଅନୁତ୍ତମ ପଦ୍ମାଚଳ ଶତାନନ
ଯତ ତତ ଅମୂର୍ତ୍ତିମାନ ଚଳମାନ ।
ଲୋକବନ୍ଧୁ ବିଷମ ବୀରହା ହେମାଙ୍ଗ
ଘୃତାଶୀ ଚନ୍ଦନାଙ୍ଗଦୀ ହେ ବରାଙ୍ଗ ।

ଅମାନୀ ଲୋକସ୍ୱାମୀ ମାନଦ ସୁମେଧା
ମେଧଜ ଧନ୍ୟ ଧରାଧର ସତ୍ୟମେଧା ।
ତ୍ରିଲୋକଧୃକ ତେଜୋବୃଷ ଦ୍ୟୁତିଧର
ନୈକଶୃଙ୍ଗ ସରବ-ଶସ୍ତ୍ରଭୃତାଂବର ।
ଗଦାଗ୍ରଜ ଚତୁର୍ମୂର୍ତ୍ତି ଚତୁର୍ବ୍ୟୂହ
ଚତୁର୍ବେଦବିଦ ହେ ପ୍ରଗ୍ରହ ନିଗ୍ରହ ।
ବ୍ୟଗ୍ର ଚତୁର୍ଗତି ଦୁର୍ଲ୍ଲଭ ଦୁରଗମ
ଚତୁରାତ୍ମା ଚତୁର୍ଭାବ କୃତଆଗମ ।
ଏକପାଦ ସମାବର୍ତ୍ତ ନିବୃତ୍ତଆତ୍ମା
ଚତୁର୍ବାହୁ ଦୁରତିକ୍ରମ ଇନ୍ଦ୍ରକର୍ମା ।
ଦୁର୍ଗ ଦୁରବାସ ଦୁର୍ଦ୍ଧାର ମହାକର୍ମା
ଦୁରରିହା ଲୋକସାରଙ୍ଗ କୃତକର୍ମା ।
ଶୁଭାଙ୍ଗ ସୁନ୍ଦର ସୁତନୁ ସୁଲୋଚନ
ବାଜସନ ରତ୍ନନାଭ ତନ୍ତୁବର୍ଦ୍ଧନ ।
ଉଦ୍ଭବ ଶୃଙ୍ଗୀ ସର୍ବବିଜୟୀ ଜୟନ୍ତ
ଅର୍କ ସୁନ୍ଦ ସୁବର୍ଣ୍ଣବିନ୍ଦୁ ମହାଗର୍ତ୍ତ ।
ସର୍ବବାଗୀଶ୍ୱର ଈଶ୍ୱର ମହାହ୍ରଦ
ଅକ୍ଷୋଭ୍ୟ ମହାନିଧି କୁନ୍ଦର ମୁକୁନ୍ଦ ।
ସର୍ବତୋମୁଖ ନଳ କୁନ୍ଦ ମହାଭୂତ
ଅମୃତାଂଶ ଅମୃତବପୁ ଶତ୍ରୁଜିତ ।
ନ୍ୟଗ୍ରୋଧ ଉଦୁମ୍ବର ସୁଲଭ ପର୍ଜନ୍ୟ
ସର୍ବଜ୍ଞ ସିଦ୍ଧ ଶତ୍ରୁତାପନ ପବନ ।
ସହସ୍ର ଅର୍ଚ୍ଚି ବୃଷ୍ଣିବନ୍ଧୁ ନିସୂଦନ
ସପ୍ତଜିହ୍ୱ ଅଶ୍ୱତ୍ଥ ସପତବାହନ ।
କୃଶ ସ୍ଥୂଳ ସପ୍ତୈଧା ଭୟଦ ଅମୂର୍ତ୍ତି
ଭୟନାଶନାନଳ ଅଚିନ୍ତ୍ୟ ସୁବ୍ରତ ।
ଗୁଣଭୃତ ନିର୍ଗୁଣ ମହାନ୍ତ ଅଧୃତ
ସ୍ୱାସ୍ୟ ଅଣୁ ବୃହତପ୍ରଦ୍‌ଗଂଶ ସ୍ୱଧୃତ ।
ଯୋଗୀଶ ଯୋଗୀ ସର୍ବକାମଦ କଥିତ
ସୁପର୍ଣ୍ଣ ଧାନୁଷ୍କ ଶ୍ରମଣ ଭାରଭୃତ ।
ଧନୁର୍ବେଦ ଦଣ୍ଡ ଦମନକାରୀ ଦମ
ଅପରାଜିତ ସର୍ବସହ ଶ୍ରମ କ୍ଷାମ ।
ହବିବନ୍ତ ସତ୍ୟଧରମ-ପରାୟଣ
ସାତ୍ତ୍ୱିକ ସତ୍ୟଯମ ବଂଶବରଧନ ।
ଅଭିପ୍ରାୟ ନୟନ୍ତା ନୟମ ପ୍ରିୟାର୍ହ
ପ୍ରିୟକୃତ ପ୍ରୀତିବରଧନ-ଆର୍ହ ।

ସୁରୁଚି ହୁତଭୁକ ବାୟୁବାହନ ଜ୍ୟୋତି
ବ୍ୟାପକ ଧନେଶ୍ୱର ବିହାୟସଦ୍‌ଗତି ।
ତପନ ଅନନ୍ତ ଅବ୍ୟୟ ଅନିର୍ବିଣ୍ଣ
ହୁତଭୁକ ଅଦ୍ଭୁତ ଲୋକଅଧିଷ୍ଠାନ ।
ସଦାମର୍ଷୀ ଭାସ୍କରଲୋଚନ ସବିତା
ସନାତ ସନାତନ ତମ କପି ଭୋକ୍ତା ।
ସ୍ୱସ୍ତିଦ ସ୍ୱସ୍ତିଭୁକ ସୁଖଦ ଅନେକଜ
ସ୍ୱସ୍ତି ଦକ୍ଷିଣ ସ୍ୱସ୍ତି କପିଳ ଅଗ୍ରଜ ।
ଅରୌଦ୍ର ସ୍ୱସ୍ତି କୃତ ଉର୍ଦ୍ଧ୍ୱ ଦଶାସନ
କୁଣ୍ଡଳୀ ଚକ୍ରୀ ପୁଣ୍ୟ ଶ୍ରବଣକୀର୍ତ୍ତନ ।
ଦକ୍ଷିଣ ଦକ୍ଷିଣାବର ଦକ୍ଷ ଅଙ୍କୁର
ଶବ୍ଦସହ ବଳୀ ଶବ୍ଦାତିଗ ଶିଶିର ।
ଶର୍ବରୀକର ଦକ୍ଷ ଦୁଃସ୍ୱପ୍ନନାଶନ
ବିଦ୍ୱତ୍ତମ ବିଗତଭୟ ଉଦ୍ଧାରଣ ।
ଦୁଷ୍କୃତିହା ପବନ ବୀରହା ରକ୍ଷଣ
ଅନନ୍ତ ଶ୍ରୀସ୍ୟନ୍ତ ଯେ ଅନାଦି ଜୀବନ ।
ପର୍ଯ୍ୟବସ୍ଥିତ ଅନନ୍ତ ରୂପ ପ୍ରଜାଗର
ଜିତମନ୍ୟୁ ଧରଣୀଶ ଚତୁରସ ।
ଗଭୀରାତ୍ମା ଜନଜନମାଦି ସୁବୀର
ରୁଚିରାଙ୍ଗଦ ଭୀମ ସତପଥାଚାର ।
ଊର୍ଦ୍ଧ୍ୱଗ ପୁଷ୍ପହାସ ପ୍ରଣଦ ବିଦିଶ
ଭୂର୍ଭୁବୋଲକ୍ଷ୍ମୀ ଭୀମ ପରାକ୍ରମ ଈଶ ।
ପ୍ରାଣଭୃତ ବ୍ୟାଦିଶ ପ୍ରଣବ ଜନନ
ତତ୍ତ୍ୱ ତତ୍ତ୍ୱବିଦ ଏକାତ୍ମା ପରମାଣ ।
ପ୍ରାଣଜୀବନ ପ୍ରାଣନିଳୟ ଯଜ୍ଞଭୃତି
ଯଜ୍ଞଭୁକ ଯଜ୍ଞସାଧନ ଯଜ୍ଞକୃତି ।
ଯଜ୍ଞାନ୍ତ କୃତ ଯଜ୍ଞ ଯଜ୍ଞୀ ସ୍ୱୟଂ ଜାତ
ପାପନାଶୀ ବୈଖାନ ଗଣ ଶଙ୍ଖଭୃତ ।
ଭୂର୍ଭୁବ ସ୍ୱର୍ତରୁ ତାର ଦେବକୀନନ୍ଦନ
ନନ୍ଦକୀ ଚକ୍ରୀ ସାମଗାୟନ ସ୍ରଷ୍ଟାନ୍ନ ।
ଶାର୍ଙ୍ଗଧନ୍ୱା ଯଜ୍ଞବାହନ ଭୟାପହ
ଅର୍ଣ୍ଣବ ଗଦାଧର ଅକ୍ଷୋଭ୍ୟ ଯଜ୍ଞଗୁହ୍ୟ ।
ଦୁର୍ଜୟ ଯଜ୍ଞପତି ପ୍ରପିତାମହ ଧାତା
ଆଧାର ନିଳୟ ଯଜ୍ୱୀ ଯଜ୍ଞାଙ୍ଗ ସବିତା ।
ଜନ୍ମମୃତ୍ୟୁଜରାତିଗ ରଥାଙ୍ଗପାଣି
ସର୍ବପ୍ରହରଣାୟୁଧ ଯେ ଆତ୍ମଯୋନି ।

ଶ୍ରୀକୃଷ୍ଣଙ୍କ ସହସ୍ର ନାମ ଯେ ଶୁଣଇ
ନୋତ୍ତିଲେ ବା ଏକାନ୍ତେ ବସିଣ ପଢ଼ଇ ।
ଇହ ପରରେ ପାଏ ନାହିଁ ଅମଙ୍ଗଳ
ସେ ଲୋକଟି ଜାଣ ହେ ପାଣ୍ଡବ-ନୃପାଳ ।
ବୈଶ୍ୟର ଧନ ବୃଦ୍ଧି କ୍ଷତ୍ରିୟର ଜୟ
ବ୍ରାହ୍ମଣର ବେଦ ଶୂଦ୍ରର ସୁଖୋଦୟ ।
ଦୁଇଟି ସମୟରେ ପଢ଼ିଲେ ଶୁଣିଲେ
ଏ ବାହାରେ ଧର୍ମାର୍ଥସିଦ୍ଧି ଲଭେ ଭଲେ ।
ଧର୍ମ ଆଦି କାମନା ମନେକରି ଶୁଣି
ବସିଲେ ସିଦ୍ଧ ହୋଏ ପାଣ୍ଡବ-ନୃମଣି ।
ଭୟ ବ୍ୟାଧି ରୋଗ ବନ୍ଧନରୁ ମୁକତ
ହୋଏ ଲୋକ ଏ ସ୍ତବ ପଢ଼ିଲେ ନିରତ ।
ବାସୁଦେବ ଆଶ୍ରା କରଇ ଯେଉଁ ନର
ପାପ କରି ନ ପାରେ ତା ଦେହରେ ଘର ।
ବାସୁଦେବ ଭକ୍ତକୁ ଜନ୍ମ ମୃତ୍ୟୁ ଦୁଇ
ବାଧି ନ ପାରେ ହେ ପାଣ୍ଡବ-ନରସାଇଁ ।
ସୁଖ-କ୍ଷମା-ଧୃତି-ଶ୍ରୁତି-କୀରତି ଯୁକ୍ତ
ହୋଏ ନର ଏ ସ୍ତବ ପଢ଼ି ପାଣ୍ଡୁ-ସୁତ ।
ମାତ୍ସର୍ଯ୍ୟ କ୍ରୋଧ ଲୋଭ ଅଶୁଭରେ ବୁଦ୍ଧି
ନୁହେ ଯେ ପୂଜଇ ବିଷ୍ଣୁଙ୍କୁ ଯଥାବିଧି ।
ଚତୁର୍ଦ୍ଦଶ ଭୁବନ ବାସୁଦେବ ବୀର୍ଯ୍ୟ-
ବଳେଟି ଅଛି ହେ ପାଣ୍ଡବମହାରାଜ ।
ସୁରାସୁର ସହିତେ ଚରାଚର ଯେତେ
ଅଛନ୍ତି କୃଷ୍ଣବଶେ ଅଛନ୍ତି ସମସ୍ତେ ।
ଇନ୍ଦ୍ର ମନ ବୁଦ୍ଧି କ୍ଷେତ୍ରଜ୍ଞ କ୍ଷେତ୍ର ସତ୍ତ୍ୱ
ତେଜ ବଳ ଧୃତି ଏ କୃଷ୍ଣଙ୍କର ତତ୍ତ୍ୱ ।
ସବୁ ଆଗମରେ ଆଚାର କହିଛନ୍ତି
ଆଚାରରୁ ଧର୍ମହିଁ ହୁଏ ଉତପତ୍ତି ।
ଧର୍ମର ପ୍ରଭୁଟି ଅଟନ୍ତି ଅଚ୍ୟୁତ
ମୋ କହିବାରୁ ଶୁଣ କୁନ୍ତିଦେବୀ-ସୁତ
ଋଷି ପିତୃ ଦେବତା ପଞ୍ଚମହାଭୂତ ।
ଯୋଗ ଜ୍ଞାନ ସାଂଖ୍ୟ କୃଷ୍ଣଙ୍କଠାରୁ ଜାତ
ଏକା ବିଷ୍ଣୁ ତିନି ଜଗତଯାକକୁ ବ୍ୟାପି
ରହିଛନ୍ତି ପାପୀଙ୍କ କରନ୍ତି ନିଷ୍ପାପୀ ।
ବ୍ୟାସଙ୍କେ କଥିତ ଏ ସ୍ତବ ଯେ ପଢ଼ଇ
ସବୁ ସୁଖ ଲଭି ସେ ସ୍ୱର୍ଗରେ ବସଇ ।

କୃଷ୍ଣଙ୍କୁ ଭଜିବା ଲୋକର ପରାଭବ
ନୁହଇ ଜାଣ ହେ ପାଣ୍ଡବ ନରଦେବ ।
ସତ୍ୟବତୀଙ୍କର ନନ୍ଦନ ବେଦବ୍ୟାସ
କଲେ ବିଷ୍ଣୁଙ୍କର ସହସ୍ର ନାମ ଶେଷ ।
ତାହାଙ୍କର ପାଦପଦ୍ମରେ କୃଷ୍ଣସିଂହ
ମନ-ଭୃଙ୍ଗ ରହିଲା କରି ଅତି ସ୍ନେହ ।

—୦—

## ସାବିତ୍ରୀ ସ୍ତବ

ଯୁଧିଷ୍ଠିର ବୋଇଲେ ପ୍ରସ୍ଥାନ ପ୍ରବାସ
ଦଇବ ଶ୍ରାଦ୍ଧରେ କି ଜପିବ ରଥୀଶ
ଏହା ମୋ ଆଗରେ କହିବା ହେଉ ବସି ।
ଶୁଣିବାକୁ ହେଉଛି ମୁଁ ଅତି ଲାଳସୀ ।
ଭୀଷ୍ମ ବୋଇଲେ ଆହେ ବ୍ୟାସ ଉକ୍ତ ମନ୍ତ୍ର—
ସାବିତ୍ରୀଙ୍କ କହିବା ଶୁଣ ରାଜପୁତ୍ର ।
ସାବିତ୍ରୀ-ଉପାଖ୍ୟାନ କର୍ଣ୍ଣେ ଯେ ଶୁଣଇ
ବହୁତକାଳ ସୁଖ ପାଇ ସେ ରହଇ ।
ବହୁତ ରାଜା ପୂର୍ବେ ସାବିତ୍ରୀ ଆଖ୍ୟାନ
ଶୁଣି ଅରଜିଛି ଅନନ୍ତ ଜାଣ ଧନ ।
ଏତେ ବୋଲି ଭୀଷ୍ମ ବଶିଷ୍ଠ ପରାଶର
ଶିବ ଜନାର୍ଦ୍ଦନଙ୍କୁ କରି ନମସ୍କାର
ସାବିତ୍ରୀଙ୍କ ଉପାଖ୍ୟାନକୁ ମନେ ଗୁଣି
ବୋଇଲେ ଶୁଣ ଆହେ ପାଣ୍ଡବ ନୃମଣି ।।
ଅଜୈକପାଦ ବୃଷ କପି ଅହିର୍ବୁଧ୍ନ୍ୟ
ଅପରାଜିତ ଶମ୍ଭୁ ପିନାକୀବାଦନ ।
ଭୂତ ପିତୃସ୍ୱରୂପ ତ୍ର୍ୟମ୍ବକ ଈଶ୍ୱର
ଅଂଶଭଗ ମିତ୍ର ଯେ ବରୁଣ ଭାସ୍କର ।
ତ୍ୱଷ୍ଟା ପୂଷା ବିଷ୍ଣୁ ଅର୍ଯ୍ୟମା ବୈଜୟନ୍ତ
ଧାତା ବାସବ ଧର ଅନଳ ସାବିତ୍ରୀ ।
ସୋମ ଧ୍ରୁବ ପ୍ରଭାସ ପ୍ରତ୍ୟୁଷ ଅନଳ
ନାସତ୍ୟ ଦସ୍ର ବିଶ୍ୱଦେବ ମୃତ୍ୟୁକାଳ ।
ପିତୃଗଣ ମହାକାୟ ନନ୍ଦୀଈଶ୍ୱର
ଗ୍ରାମଣୀ ରୁଦ୍ରଗଣ ଗରୁଡ଼ ସ୍ଥାବର ।
ସରିତ ଜ୍ୟୋତି ବ୍ୟୋମ ତପୀ ସିଦ୍ଧ-ଚର
ଶୈଳଚୟ ସମୁଦ୍ର ହର-ଅନୁଚର ।
ଅମ୍ବିକା ସଉଣୀତ ସ୍କନ୍ଦ ରୈଭ୍ୟ ବିଷ୍ଣୁ
ଉତଥ୍ୟ କାକ୍ଷୀବାନ ବର୍ହିଷଦ କୃଷ୍ଣ ।
ସାଂଖ୍ୟ ପରିବ୍ୟାଧ ଏକତ ଦ୍ୱିତ ତ୍ରିତ
ଦୁର୍ବାସା ଉନ୍ମୁଚୁ ପ୍ରମୁଚୁ ସାରସ୍ୱତ ।
ଦୃଢ଼ାୟୁ ଊର୍ଦ୍ଧ୍ୱବାହୁ ଅଙ୍ଗିରା ଗୌତମ
ବଶିଷ୍ଠ ଅତ୍ରି ଭରଦ୍ୱାଜ ଧର୍ମ କାମ ।
ଭଗୀରଥ କଶ୍ୟପ ବ୍ୟାସ ବିଶ୍ୱାମିତ୍ର
ଜମଦଗ୍ନି କୌରବ୍ୟ ବାସୁକି ଅଚ୍ୟୁତ ।
ହିମ ମେରୁସାବର୍ଣ୍ଣି ଲୋମଶ ବସୁ କାଳ
ଅଶ୍ୱତ୍ଥାମା ସମ୍ବର୍ତ୍ତ ନାରଦ କପିଳ ।
ପୁରୁରବା ପୃଥୁ ସ୍ୱସ୍ତ୍ୟାତ୍ରେୟ ଭରତ
ମାର୍କଣ୍ଡେୟ ଅଗସ୍ତ୍ୟ ଋଭୁଦେବ ଶ୍ୱେତ ।
ଏମାନଙ୍କୁ ଗଲାରଲବେଳେ ଯେ କୀର୍ତ୍ତନ
କରିଯାଏ ହୋଏ ସେ ମଙ୍ଗଳର ସ୍ଥାନ ।
ଅଗ୍ନି ଚୋର ଭୟରୁ ହୁଅଇ ମୁକତ
ସାହା ତ ହୋଇ ରହିଥାଆନ୍ତି ଅଚ୍ୟୁତ ।
ରୋଗରେ ଆର୍ତ୍ତ ହୋଇ ଏ ନାମମାନଙ୍କୁ
ପଢ଼ିଲେ ରୋଗୀ ଜିଣେ ସକଳ ରୋଗକୁ ।
ଘରମଧ୍ୟେ ପଢ଼ିଲେ କୁଳବୃଦ୍ଧି ହୋଏ
କିଆରୀରେ ପଢ଼ିଲେ ବହୁଶସ୍ୟ ପାଏ ।
ଯୁଦ୍ଧକାଳରେ ଯେବେ କ୍ଷତ୍ରିୟ ଏ ନାମ
ଜପ କରେ ଜିଣଇ ସବୁ ଶତ୍ରୁ ଗ୍ରାମ ।
ଦେବ ପିତୃକର୍ମେ କୀର୍ତ୍ତନ ଏହା କଲେ
ହବ୍ୟ କବ୍ୟ ଦୁହିଙ୍କି ଯୋଗନ୍ତି ସେ ଭଲେ ।
ରାଜା ବ୍ୟାଳ ପିଶାଚ ସକାଶରୁ ଭୟ
ସାବିତ୍ରୀ ସ୍ତବପାଠେ ନୁହଇ ଉଦୟ ।
ଚନ୍ଦ୍ରବଂଶେ ସୂର୍ଯ୍ୟବଂଶରେ ଯେତେ ନୃପ—
ଥିଲେ ପଢ଼ି ସାବିତ୍ରୀ ହେଲେ ସେ ନିଷ୍ପାପ ।
ବଶିଷ୍ଠ ଭୃଗୁ ଅତ୍ରି ଅଙ୍ଗିରା କାଶ୍ୟପ
ଶୁକ୍ରାଗସ୍ତ୍ୟ ଗୌତମ ବସୁଦେବାଧିପ ।
ଆଦି ଋଷି ଦେବଙ୍କ କୁଳରେ ଏ ସ୍ତବ ।
ପଢ଼ି କରି ପାଇଲେ ଶୁଭ ନରଦେବ ।
ଭୃଗୁଙ୍କ କୀର୍ତ୍ତନରେ ଧର୍ମ ଅଙ୍ଗିରାଙ୍କ
କୀର୍ତ୍ତନରେ ଶତ୍ରୁଙ୍କ ବଢ଼ାଏ ଆତଙ୍କ ।
ଇନ୍ଦ୍ରଙ୍କୁ ପ୍ରଣାମ କରେ ଯେ ସଂଗ୍ରାମରେ
ଜିଣି ମହୀ ସେ ଭୋଗ କରଇ ସୁଖରେ ।
ଅଶ୍ୱିନୀକୁମାରେ କୀର୍ତ୍ତନ ଯେ କରଇ
ବ୍ୟାଧିମୁକ୍ତ ହୋଇ ସେ ଶୋଭା ପ୍ରକାଶଇ ।

ସାବିତ୍ରୀ ସ୍ତବ ହେଲା ଏଠାରେ ସମାପ୍ତି
କହଇ କୃଷ୍ଣସିଂହ ନରକୁଳପତି ।



## ବ୍ରାହ୍ମଣଙ୍କ ନମସ୍କାର ବିଧି

ଯୁଧିଷ୍ଠିର ବୋଇଲେ କଲେ କି ଆଚାର
ଶତ୍ରୁଙ୍କୁ ନ ଭଜନ୍ତି କହ ମୋତେ ନର ।
କେଉଁମାନଙ୍କୁଟି କରିବ ନମସ୍କାର
କହ୍ନ ତ ଥିଲେ ଏହା କହ ରଥିବର ।
ଭୀଷ୍ମ ବୋଇଲେ ହେ ଦ୍ୱିଜଙ୍କୁ ନମସ୍କାର
କଲେ ଶତ୍ରୁଦଶାରୁ ହୁଏ ଲୋକ ପାର ।
ଏହି ସକାଶରୁଟି ବ୍ରାହ୍ମଣମାନଙ୍କୁ
କରୁଥିବ ଆଦର କରି ଦର୍ଶନଙ୍କୁ ।
ବ୍ରାହ୍ମଣ ପ୍ରାଣୀଙ୍କରେ ଅଟଇ ନାୟକ
ବ୍ରାହ୍ମଣଙ୍କୁ ସେବଲେ ନ ରହଇ ଦୁଃଖ ।
ଏ ସଂସାର ଯାକୁ ବ୍ରାହ୍ମଣ ଧରିଛି
ବ୍ରାହ୍ମଣରୁ ବଡ଼ ନାହିଁ ହେ କୁନ୍ତୀବହ୍ନି ।
ବ୍ରାହ୍ମଣଙ୍କୁ ଆଶ୍ରୟ କରି ଚକ୍ରବର୍ତ୍ତି
ହେଉଛନ୍ତି ମନୋରଥରେ ପରିପୂର୍ତ୍ତି ।
ସ୍ୱାଧ୍ୟୟବନ୍ତ ହୋଇ ବ୍ରତ ଯେଉଁ ଦ୍ୱିଜ
କରେ, ସର ତାକୁ ନୁହନ୍ତି ସୁରରାଜ ।
ଦେବଙ୍କର ଦେବ କାରଣର କାରଣ
ବ୍ରାହ୍ମଣ ବୋଲିକରି ଯୁଧିଷ୍ଠିର ଜାଣ ।
ବ୍ରାହ୍ମଣରେ ବସୁସେ ସାନ ଅଟେ ଯେହ୍ନ
ତାକୁ ନମୁଥିବ ବୟସ୍ୱବନ୍ତ ହୋଇ ।
ସଂସ୍କୃତ ଅସଂସ୍କୃତ ଅଗ୍ନି ପରି ଦ୍ୱିଜ
ମୂର୍ଖପଣ୍ଡିତଙ୍କୁ ପୂଜିବ ନରରାଜ ।



## ବ୍ରାହ୍ମଣ ମାହାତ୍ମ୍ୟ ( ୧ )
## ପବନ କାର୍ତ୍ତବୀର୍ଯ୍ୟ ସମ୍ବାଦ

ଯୁଧିଷ୍ଠିର ବୋଇଲେ କି ଫଳକୁ ଚାହିଁ
ଦ୍ୱିଜଙ୍କୁ ପୂଜୁଛନ୍ତି କହ ତ ବତାଇ ।
ଭୀଷ୍ମ ବୋଇଲେ ଆହେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ-
ପବନ-ସମ୍ବାଦ କହିବା ଦିଅ ମନ ।
କାର୍ତ୍ତବୀର୍ଯ୍ୟ ମାହିଷ୍ମତୀ ନାମକ ପୁରୀ-
ସିଂହାସନେ ବସି ହୋଇଲେ ଦଣ୍ଡଧାରୀ ।
ଦତ୍ତାତ୍ରେୟ ଋଷିଙ୍କ ପାଖରେ ରଖିଲେ
ବହୁତ ଧନରତ୍ନ ଦେଇଣ ତୋଷିଲେ ।
ଦତ୍ତାତ୍ରେୟ ଋଷି ବୋଇଲେ କାର୍ତ୍ତବୀର୍ଯ୍ୟ
ଯେ ଇଚ୍ଛା ଅଛି ମାଗ ତାହା ଦେବି ଆଜ ।
କାର୍ତ୍ତବୀର୍ଯ୍ୟ ବୋଇଲେ ସହସ୍ର ସଂଖ୍ୟା ବାହା
ଯୁଦ୍ଧେ ହେବ ବର ଦିଅ ହେ ଋଷିନାହା ।
ମୋ ପରାକ୍ରମ ମଧ୍ୟ କ୍ଷତ୍ରିୟେ ପୀଡ଼ିତ
ହୋଇକରି ହୋଇବେ ମୋହର ସେ ଭୃତ୍ୟ ।
ଧରମରେ ପୃଥ୍ୱୀ କରିବ ପାଳନା
ନ ଯିବ ମୋର ବଳ କାହାକୁ କଳନା ।
ମିଥ୍ୟାକଥା ବିଚରୁଥିବେ ଯେଉଁ ନର
ତା ଜାଣି ତାଙ୍କୁ ଦଣ୍ଡ ଦେବି ମୁନିବର ।
ଦତ୍ତାତ୍ରେୟ ବୋଇଲୁ ଆଜ୍ଞା ଏତେ କଥା
ତୁମ୍ଭର ହେଉ, ହୁଅ ଭବେ ମହାରଥୀ ।
ଏରୂପେ ବର ପାଇ ଅର୍ଜ୍ଜୁନ ଗୁସାଇଁ
ମନେ କଲେ ମୋର ପରି ବଳବନ୍ତ ନାହିଁ ।
ଏହିକାଳେ ଶୁଭିଲା ଅଶରୀରୀ ଗିର
ହେଲ କି ମୂର୍ଖ କାର୍ତ୍ତବୀର୍ଯ୍ୟ ନରବର ।
କ୍ଷତ୍ରିୟଙ୍କୁ ପ୍ରତି ସମସ୍ତ ପରକାରେ
ବ୍ରାହ୍ମଣ ଅଧିକଟି ଅଟଇ ସଂସାରେ ।
ବ୍ରାହ୍ମଣଙ୍କୁ ଘେନିଲେ କ୍ଷତ୍ରିୟ ପ୍ରଜାଙ୍କୁ
ପାଳଇ, ନୋହିଲେଟି ଲଭଇ ନାଶଙ୍କୁ ।
କାର୍ତ୍ତବୀର୍ଯ୍ୟ ବୋଲେ କି ବୋଲ ଦେବଗଣ
ଟେ । ହାତେ ଅଛୁ ପ୍ରାଣୀ ଭଲମନ୍ଦ ଜାଣ ।
କ୍ଷତ୍ରିୟ ମୋହପରି ନ ଥିବାରୁ ସୁତ
ବ୍ରାହ୍ମଣେ ହୋଇଥିଲେ ଜଗତେ ବିଦିତ ।
କ୍ଷତ୍ରିୟଙ୍କୁ ଦେଖିଲେ ବ୍ରାହ୍ମଣେ ମାଗନ୍ତି
କ୍ଷତ୍ରିୟ ନ ମାଗଇ ଦେଖିଲେହେଁ ଯତି ।
ଦେଖ ଏବେ ମୋହର ବଳ ପଉରୁଷ
ବ୍ରାହ୍ମଣଙ୍କୁ ରଖିଛି କରି ପାଖେ ବଶ ।
ଆଜଠୁଁ କ୍ଷତ୍ରିୟେ ପ୍ରଧାନ ବୋଲାଇବେ
ଦ୍ୱିଜଙ୍କୁ ସେବା କରାଇଣ ଧନ ନେବେ ।
ଯୁଦ୍ଧ କଲେ ମୋ ବଳ ସହିବାକୁ ମହୀ-
ମଧ୍ୟେ ନର ମୋ ଆଖିରେ ଦିଶୁନାହିଁ ।
ଅର୍ଜ୍ଜୁନର ମୁଖରୁ ଏରୂପେ ଉତ୍ତର
ଶୁଣି ଚନ୍ଦ୍ରଦେବତା ହେଲେ ଥରହର ।

ମନେକଲେ ଦ୍ୱିଜ ଅଟେ ତ ମୋର ଜାତି
ମୋତେ ପୁଣି ମାନିବ ଥିଲେ ଏ ନୃପତି ।
ଯେହ୍ନ ସମୟେ ତେବେଣ ଆକାଶେ ପବନ
ରୂପ ଧରି ବୋଇଲେ ଶୁଣ ହେ ଅର୍ଜ୍ଜୁନ ।
ଏ ପାପକଥାଯାକ ହୃଦୁଁ ଛାଡ଼ିଦେଇ
ଲମ୍ବ ହୋଇ ପଡ଼ ବ୍ରାହ୍ମଣ ପାଦେ ଯାଇ ।
ବ୍ରାହ୍ମଣଠାରେ ତୁମ୍ଭେ କଲେ ଅପରାଧ
ରାଜ୍ୟ ନାଶିଯିବ ହୋଇବ ପ୍ରାଣବଧ ।
କାର୍ତ୍ତବୀର୍ଯ୍ୟ ବୋଲେ କିଏ ଯେ ଅଟ ତୁମ୍ଭେ
ସତ କରି କହ ତ ପୁଚ୍ଛୁଅଛୁଁ ଆମ୍ଭେ ।
ପବନ ବୋଇଲେ ମୁଁ ଅଟଇ ପବନ
ତୁମ୍ଭ ହିତ ପାଇଁ କହୁଛି ରାଜନ ।
ଅରଜୁନ ବୋଇଲେ ପୃଥ୍ୱୀ ଜଳ ତେଜ
ଆକାଶ ବାୟୁ ସୂର୍ଯ୍ୟ ସମାନ କି ଦ୍ୱିଜ ।
ପବନ ବୋଇଲେ ନୃପ ତୁମ୍ଭେ ବାଇ-
ହେଲ ପରି କଥା କହୁଛ କାହିଁପାଇଁ ।
ଯେଉଁ ମାନଙ୍କୁଟି କହିଲ ଟେକି ରାଜା
ସେମାନେ କରୁଛନ୍ତି ବ୍ରାହ୍ମଣଙ୍କୁ ପୂଜା ।
ପୂର୍ବକାଳରେ ଅଙ୍ଗନୃପତି ମହୀକି
ଛାଡ଼ିଯିବାର ପାଇଁ କରନ୍ତେ ମତିକି ।
କଶ୍ୟପ ଆସିକରି ରଖିଣ ତାହାଙ୍କୁ
ଭୋଗ କରାଇଲେ ଅବନୀ ମଣ୍ଡଳକୁ ।
ପୂର୍ବକାଳେ ଅଙ୍ଗିରା ଜଳ ପିଇ ଦେଇ
ଦେଲେ ଜଳରେ ମହାଦେବଙ୍କି ବୁଡ଼ାଇ ।
ଅହଲ୍ୟାଙ୍କୁ ହରନ୍ତେ ଗଉତମ ଋଷି
ଇନ୍ଦ୍ରସୁଖ ନାଶିଲେ ହୋଇ ତାଙ୍କୁ ରୋଷି ।
ବ୍ରାହ୍ମଣଙ୍କ ଶାପରେ ସମୁଦ୍ର ଲୁଣିଆ
ହୋଇଗଲା ଭସ୍ମରେ କମ୍ପାଇଣ ହିୟା ।
ବାଜଜଙ୍ଘ ନୃପଙ୍କୁ ଔର୍ବ ଋଷି ବର
ଦେଖାଇଲେ ନେଇଟି ଯମଙ୍କ ନଗର ।
ଦତ୍ତାତ୍ରେୟ ଋଷି ପ୍ରସାଦେ ବଳ ହୋଇ
ତେଉଁଛ ତୁମ୍ଭେ କରେ ଧନୁ ଖଣ୍ଡେ ବହି ।
ବ୍ରାହ୍ମଣର ମହିମା ଭଲକରି ତୁମ୍ଭେ
ଜାଣିଅଛ ବୋଲି ତ ଜାଣୁଅଛୁ ଆମ୍ଭେ ।
ପୂର୍ବେ ଯେ ଅଙ୍ଗରାଜା ବ୍ରାହ୍ମଣମାନଙ୍କୁ
ଭାବିଲେ ନିଜ ମହୀ ଯୋଟିକୁ ଦେବାକୁ ।
ପୃଥ୍ୱୀ ସେ କଥା ଜାଣି ପଳାଇବା ମନ-
କରନ୍ତେ ରୋଧିଲେ କଶ୍ୟପ ତପୋଧନ ।
ଆହେ କାର୍ତ୍ତବୀର୍ଯ୍ୟ ରାଜନ ଏହା ଜାଣି
ସେବା କର ଡ଼କାଇ ଆଣି ଦ୍ୱିଜଶ୍ରେଣୀ ।
ଶୁଣିଲ ତ ମହୀକି ନରୋଧି କଶ୍ୟପ
ରଖିଲେ, କି କରିବ ଦ୍ୱିଜେ କଲେ କୋପ ।
ଚନ୍ଦ୍ରଙ୍କର ଯେ ଭଦ୍ରା ନାମରେ ଦୁହିତା
ଥିଲେ ତାହାକୁ ଦେଖି ଭୁଲନ୍ତି ଦେବତା ।
ସେ ଝିଅଙ୍କୁ ଉତଥ୍ୟଙ୍କୁ ସେ ବିଭା କଲେ
ବରୁଣ ମାଗିଥିଲେ ତାହାଙ୍କୁ ନ ଦେଲେ ।
ଏହି ଯୋଗାଶରୁ ବରୁଣ କ୍ରୋଧ ବହି
ନେଲେ ଉତଥ୍ୟଙ୍କର ବନିତା ଚୋରାଇ ।
ବଳେ ସେ କାମିନୀର ସଙ୍ଗତେ ସୁରତି
ନାନା ବନ୍ଧେ ରଚିଲେ ଜଳଚରପତି ।
ନାରଦଙ୍କଠାରୁ ଭାର୍ଯ୍ୟାକୁ ନେବାର
ଶୁଣିକରି ଉତଥ୍ୟ ହୋଇ କ୍ରୋଧଭର ।
ନାରଦଙ୍କୁ ବୋଇଲେ ତୁମ୍ଭେ ଥରେ ଯାଅ
ବରୁଣଙ୍କୁ ମାଗି ମୋ ଭାର୍ଯ୍ୟାକୁ ଆଣିଦିଅ ।
ନାରଦ ଶୁଣିଣ ବରୁଣ ପାଶେ ଗଲେ
ଉତଥ୍ୟଙ୍କ ଭାରିଯା ଦିଅ ହେ ବୋଇଲେ ।
ବରୁଣ ବୋଇଲେ ଆଗୁଁ ତ ମାଗିଥିଲି
ଉତଥବିଭା ହେବା ଯୋଗେ ମୁଁ ଆଣିଲି ।
ଏହା ବୋଲି ବରୁଣ ହୋଇ କୋପମୂର୍ତ୍ତି
ବୋଇଲେ ବାଇ ହେଲ କି ନାରଦ ଯତି ।
ମହତ୍ତ୍ୱ ଥାଉଁ ଥାଉଁ ଯାଅ ମୋ ପାଶରୁ
ନୋହୁଛି ମୁଁ ଉତଥ୍ୟ ପ୍ରଭାକୁଟି ଖାରୁ ।
ନାରଦ ମହାଋଷି ଶୁଖାଇ ବଦନ
ଆସି ଉତଥ୍ୟଙ୍କୁ ବୋଇଲେ ତପୋଧନ ।
ତୁମ୍ଭର ଭାରିଯାକୁ ବରୁଣ ରଖିଲେ
ମାଗିଲିକୁ ମୋତେ ଯେ ପରାଭବ କଲେ ।
ଏହା ଶୁଣି ଉତଥ୍ୟ ପୂର୍ବମୁଖ ହୋଇ
ସମୁଦ୍ର ଜଳଯାକ ଦେଲେ ମୁଞ୍ଚେ ପିଇ ।
ଉତଥ୍ୟଙ୍କ ବଚନେ ସରସ୍ୱତୀ ନଦୀ
ଛପିଲେ ନ ବହିଣ ପାତାଳକୁ ଭେଦି ।
ହ୍ରଦ ନଦ ସମୁଦ୍ରେ ଯେତେ ଥିଲେ ଜଳ
ଦେଖାଇଲେ ଉତଥ୍ୟ ପ୍ରଭାବରେ ସ୍ଥଳ ।

ବରୁଣ ତାହା ଦେଖି ମହାଦୁଃଖୀ ହୋଇ
ପଡ଼ିଲେ ଉତଥ୍ୟଙ୍କ ପାଦେ ଲମ୍ବ ହୋଇ ।
ବୋଇଲେ ଆହେ ଋଷି ତୁମ୍ଭ ଭାରଜାଙ୍କୁ
ନିଅ ଜଳରେ ପୃଚ୍ଛିକରି ମୋ ଘରକୁ ।
ଉତଥ୍ୟ ନିଜ ଭାରଯାଙ୍କ ମୁଖ ଦେଖି
ମଦନ-ଶରଘାତେ ହୋଇ ମହାଦୁଃଖୀ ।
ବରୁଣଙ୍କୁ ବୋଇଲେ ଯାଅ ହେ ଘରକୁ
ଛାଡ଼ିଲି ଜାଣ ତୁମ୍ଭଠାରୁ ମୁଁ କ୍ରୋଧକୁ ।
ବରୁଣ ତାହା ଶୁଣି କରି ଦଣ୍ଡବତ
ନିଜ ପୁରେ ଗଲେ ଉଲ୍ଲାସ କରି ଚିତ୍ତ ।
ଉତଥ୍ୟତ କାମରେ ଦୁଃଖୀ ହୋଇଗଲେ
ଭାର୍ଯ୍ୟା ତୁଲେ ନିଜ ଆଶ୍ରମେ ବିହରିଲେ ।
ଏ ଅନ୍ତେ ପବନ କହିଲେ ଅର୍ଜୁନଙ୍କୁ
ଶୁଣ ମହାଋଷି ଅଗସ୍ତ୍ୟ ମହିମାକୁ ।
ଅସୁରଙ୍କ ଭୟେ ପୂର୍ବରେ ଦେବତାଏ
ରଖ ବୋଲି ପଡ଼ିଲେ ଅଗସ୍ତ୍ୟଙ୍କ ପାଏ ।
ଏହା ଶୁଣି ଅଗସ୍ତି କ୍ରୋଧ-ଅନଳରେ
ପୋଡ଼ିଲେ ଅସୁରଙ୍କୁ ତପସ୍ୟା ବଳରେ ।
କେତେ ଦୈତ୍ୟ ଯାଇଁ ଦକ୍ଷିଣ ଦିଗକୁ
ପଳାଇଲେ ରଖିବା ପାଇଁ ପରାଣକୁ ।
ଦେବେ ତାହା ଜାଣି କହିଲେ ଅଗସ୍ତ୍ୟଙ୍କୁ
ଅସୁରେ ଯାଇଛନ୍ତି ନ ତେଜି ପ୍ରାଣକୁ ।
ଆକାଶରେ ଯେତେକ ଦୈତ୍ୟ ରହିଥିଲେ
ତୁମ୍ଭର କ୍ରୋଧ ଅନଳରେ ପୋଡ଼ିଗଲେ ।
ଆଉମାନେ ପଳାଇ ଆସିଲେ ମହୀକି
ତାଙ୍କୁ ମାରି ସରିଜ ଆମ୍ଭର ପୀଡ଼ିକି ।
ଅଗସ୍ତି ବୋଇଲେ ମୁଁ ମହୀରେ ଅସୁରେ
ଯେତେ ଛନ୍ତି ତାଙ୍କୁ ହେ ନ ମାରିବି ସୁରେ ।
ଯେବେ ମାରିବି ମୁଁ ମୋହର ତପ ହାନି
କରିବି ସିନା ଜାଣି ହେଉଛି ମୁଁ ତୁନି ।
ଏକଥା ମନେ କରି କାର୍ତ୍ତବୀର୍ଯ୍ୟ ରାଜା
କରି ଯାଇ ବ୍ରାହ୍ମଣଙ୍କର ସେବାପୂଜା ।
ଶୁଣିଲ ତ ମୋଠାରୁ ଅଗସ୍ତ୍ୟ ମହାତ୍ମା
କହିବା ଶୁଣ ଏବେ ବଶିଷ୍ଠ ମହାତ୍ମା ।
ବୈଖାନସ ସରରେ ଦେବ କଲେ ଯାଗ
ଖାଇବା ପାଇଁ ଅଗ୍ନି ମୁଖେ ହବିର୍ଭାଗ ।
ଦେବଙ୍କ ଯାଗ ଶୁଣି ଦୈତ୍ୟ ହୋଇ ଗୋଟି
ଭାବିଲେ ଦେବା ଦେବତାଙ୍କ ଚପି ତଣ୍ଟି ।
ହବିର୍ଭାଗ ଖାଇଲେ ହେବେ ବଳୀୟାର
କରିବେଟି ଯୁଦ୍ଧରେ ଆମ୍ଭଙ୍କୁ ସଂହାର ।
ଏହିରୂପେ ଦାନବେ ବଶ୍ଚରି ଛାଣ୍ଡାଇ
କରିଉଡ଼ିଲେ ଗିରି ଦେବଙ୍କ ମୁଣ୍ଡେ ନେଇ ।
ଦାନବଙ୍କେ ପୀଡ଼ିତ ହୋଇ ଇନ୍ଦ୍ରପାଦେ
ପଡ଼ିଲେ ଦେବେ ଅତ୍ୟନ୍ତ ପ୍ରମାଦେ ।
ଇନ୍ଦ୍ର ଦେବତାଙ୍କର ବ୍ୟାକୁଳତା ଦେଖି
ବଶିଷ୍ଠଙ୍କୁ କହିଲେ ହୋଇ ଅତି ଦୁଃଖୀ ।
ବଶିଷ୍ଠ ଏହା ଶୁଣି ବୋଇଲେ ନ ଡର
କରିବି ମୁଁ ଦାନବମାନଙ୍କୁ ସଂହାର ।
ଏତେ ବୋଲି ନିଜ ତେଜକୁ ପ୍ରକାଶିଲେ
ଦାନବଙ୍କ ବଳ ତହିଁରେ ବିନାଶିଲେ ।
ଗଙ୍ଗା କଇଳାଶକୁ ଯାଇଥିଲେ ବହି
ବୈଖାସନ ସରେ ରଖିଲେ ତାଙ୍କୁ ସେହି ।
ଗଙ୍ଗା ମିଳିବାରୁ ସେ ବୈଖାନସ ସର
ସରଯୂକୁ ଜାତଟି କଲେ ନୃପବର ।
ଏବେ ଶୁଣ ଅତ୍ରି ଋଷିଙ୍କ ମାହାତ୍ମ୍ୟ
ଆହେ କାର୍ତ୍ତବୀର୍ଯ୍ୟ ନୃପତିଙ୍କ ଉତ୍ତମ ।
ନିବିଡ଼ ଅନ୍ଧକାରେ ଦେବତା ଦାନବ
ଯୁଦ୍ଧ କଲେ କ୍ରୋଧକୁ ହୃଦେ ଦେଇ ଠାବ ।
ଚନ୍ଦ୍ର ସୂର୍ଯ୍ୟ ତୁଲରେ ରାହୁ ଯୁଦ୍ଧ କଲେ
ଖାଇବାକୁ ପାଟି ଦୁଇକ ବିସ୍ତାରିଲେ ।
ଦେବେ ଦାନବଙ୍କ ବଳରେ ବଳ ହୋଇ
ଅତ୍ରିପାଦେ ପଡ଼ିଲେ ଦଣ୍ଡା ହୋଇଯାଇ ।
ଅତ୍ରି ବୋଇଲେ ହେ ଅନ୍ଧାରେ କଲ ଯୁଦ୍ଧ
ଏ ହେତୁ ଅସୁରେ ତୁମ୍ଭଙ୍କୁ କଲେ ବଧ ।
ରଖିବାକୁ ତୁମ୍ଭଙ୍କୁ ବାଟ ଦିଶୁନାହିଁ
ମୋତେ ଆହେ ଜାଣ କହୁଛି ସତ ମୁହିଁ ।
ଦେବେ ବୋଇଲେ ଆହେ ଚନ୍ଦ୍ର ସୂର୍ଯ୍ୟ ହୋଇ
ହିଅ ଯୁଦ୍ଧ ଅନ୍ଧକାରକୁ ତୁମ୍ଭେ ଦହି ।
ଏହା ଶୁଣି ଅଗସ୍ତି ପ୍ରକାଶି ସ୍ୱତେଜ
ଭାଙ୍ଗି ପକାଇଲେ ଯୁଦ୍ଧ ଅନ୍ଧାର ତେଜ ।
ଏହି ସକାଶୁଁ ଦେବତାଏ ବଳୀ ହୋଇ
ଅସ୍ତ୍ର ମୁଖେ ଗିଳିଲେ ଦୈତ୍ୟ ଶେଷ ବହି ।

ଶୁଣିଲ ତ ଅର୍ଜି ଋଷିଙ୍କ ମହାତମ୍ୟ
ଚ୍ୟବନ ମହିମା କହିବା ନରୋତ୍ତମ ।
ଚ୍ୟବନ ତ ଅଶ୍ୱିନୀକୁମାରଙ୍କୁ ଭାଗ
ଯାଚଥିଲେ ପୂର୍ବେ ହୃଦରେ ବହି ରାଗ ।
ଏ ସକାଶୁଁ ଇନ୍ଦ୍ରଙ୍କୁ ଯାଗରେ ବୋଇଲେ
ଭାଗ ଦିଅ ଅଶ୍ୱିନୀ କୁମାରଙ୍କୁ ଭଲେ ।
ଇନ୍ଦ୍ର ବୋଇଲେ ସେହୁ ବୈଦ୍ୟ ତ ଅଟନ୍ତି
କିରୂପେ ଭାଗ ଦେବୁଁ ବୋଲୁଅଛ ଯତି ।
ଚ୍ୟବନ ବୋଇଲେ ହେ ମୋ ବୋଲ ନ ଭାଙ୍ଗ
ଦିଅ ସୋମ ସେ ଦୁଇ ଭ୍ରାତେ କରି ସଙ୍ଗ ।
ଯେବେ ମୋର ବୋଲ ଭାଙ୍ଗିବ ସୁରେଶ୍ୱର
ଅଶ୍ରେୟ ହେଲଟି ଜାଣର ମନେକର ।
ଇନ୍ଦ୍ର ବୋଇଲେ ମୁହିଁ ଅଶ୍ୱିନୀଙ୍କ ତୁଲେ
ପିଇଲେ ସୋମ ଋଷି ନାଶଯିବ ଭଲେ ।
ଏହା ଶୁଣିଣ ଋଷିଙ୍କି ଅତି କ୍ରୋଧ ହୋଇ
କରମ ଆରମ୍ଭିଲେ ଅଶ୍ୱିନୀଙ୍କ ପାଇଁ ।
ତାହା ଦେଖି ଇନ୍ଦ୍ର ଋଷିଙ୍କି ମାରିବାକୁ
ଝିମକଲେ ହାତରେ ଟେକିଣ ବଜ୍ରକୁ ।
ଚ୍ୟବନ ବଜ୍ର ତୁଲେ ଇନ୍ଦ୍ରଙ୍କର କର
ସ୍ତମ୍ଭି ପକାଇଲେ ଅର୍ଜୁନ ନରବର ।
ଇନ୍ଦ୍ର ନାଶପାଇଁ ମଦକୁ ସରଜନା
କଲେ ମହର୍ଷି ଚ୍ୟବନ ମହାମନା ।
ମଦର ଦୁଇଶ ଯୋଜନ ହେଲା ଦାନ୍ତ
ପାଟି ତଳ ଉପରକୁ ସେ କରି ଖ୍ୟାତ ।
ଜିହ୍ୱାମୂଳେ ସବୁ ଇନ୍ଦ୍ରାଦି ଦେବତାଙ୍କୁ
ଗିଳି କରିବାକୁ ମୁଖରେ ଗ୍ରାସକୁ ।
ତାହା ଦେଖିଣ ଦେବେ ଇନ୍ଦ୍ରଙ୍କୁ ବୋଇଲେ
ଭାଗ ଦିଅ ଅଶ୍ୱିନୀକୁମାରଙ୍କୁ ଭଲେ ।
ଇନ୍ଦ୍ର ଚ୍ୟବନଙ୍କର ମାହାତମ୍ୟ ଦେଖି
ମହାଭୟକୁ ପାଇ ବୁଜି ଦୁଇ ଆଖି ।
ଅଶ୍ୱିନୀକୁମାରଙ୍କୁ ଡକାଇ ଆଣିଲେ
ଯାଗ ଭାଗ ଖାଅ ହେ ବୋଲିଣ ବୋଇଲେ ।
ଚ୍ୟବନ ମହର୍ଷି ଇନ୍ଦ୍ରଙ୍କ ଭୟ ଘୁଞ୍ଚି
ମଦକୁ ଖଣ୍ଡଭାଗ କଲେ ତୋଷ ବହି ।
ମଦପାନ ମୃଗୟା ଜୁଆ ସ୍ତ୍ରୀ ଶିଙ୍କରେ
ରଖିଲେ ସେ ମଦକୁ ତପସ୍ୟା ବଳରେ ।
ଇନ୍ଦ୍ରପରି ଲୋକ ବ୍ରାହ୍ମଣ ଅପରାଧ
କରିବାକୁ ହୋଇଥିଲେଟି ପୂର୍ବେ ବଧ ।
ଏହି ସକାଶୁଁ ଏ ଘଟିଏ ଆପଦନ୍ତ
ଜାଣିବା ନରପତିମାନେଟି ନିହନ୍ତ ।
ଚ୍ୟବନଠୁଁ ଜାତ ମଦର ଜିହ୍ୱା ତଳେ
ରହିଲେ ଦେବତାଏ ନୃପ ଯେଉଁକାଳେ ।
ସେ କାଳରେ ଗୁହାରି କଲେ ସେ ବ୍ରହ୍ମାଙ୍କୁ
ଚ୍ୟବନ ଘେନିଗଲେ ବଳରେ ଧରିକୁ ।
କପିମାନେ ନେଲେ ସେ ସ୍ୱର୍ଗପୁର ଘର
କ କରିବୁଁ କହ ତ ରହେ କୁଶଧାରୀ ।
ବ୍ରହ୍ମା ବୋଇଲେ ହେ ବ୍ରାହ୍ମଣ ପରସନ୍ନ
କରାଇ ମହାଭୁଲେ ଲଭ ସ୍ୱର୍ଗସ୍ଥାନ ।
ବ୍ରହ୍ମାଙ୍କ ବୋଲେ ଘେନି ସର୍ବ ଦେବଗଣ
ବ୍ରାହ୍ମଣେ ରଖ ବୋଲି ପଶିଲେ ଶରଣ ।
ବ୍ରାହ୍ମଣେ ବୋଇଲେ ହେ ଭୂମି କପିଗଣ
ଜିଣିବୁଁ ଆମ୍ଭେ ତୁମ୍ଭେ ସ୍ୱର୍ଗକପ ଜାଣ ।
ଏହା କହି ଦ୍ୱିଜେ କପିଙ୍କ ନାଶପାଇଁ
କର୍ମ ଆରମ୍ଭିଲେ ଦେବଙ୍କ ହିତ ଧ୍ୟାଇ ।
ଏହାଜାଣି ଦ୍ୱିଜଙ୍କଠାକୁ ଧର୍ମ ନାମ
ଦୂତକୁ ବରଗିଲେ ବହି ଅତି ପ୍ରେମ ।
ଧର୍ମ କପଙ୍କ ବଚନକୁ ଘେନିଗଲେ
ବ୍ରାହ୍ମଣମାନଙ୍କୁ ସେ ଆସିଣ କହିଲେ ।
ତୁମ୍ଭ ପରି ଧର୍ମସ୍ତ ବେଦପରାୟଣ
କାହିଁ ତାହାଙ୍କର ଘେନିବ ପରାଣ ।
ବୃଥା ମାଂସ ବୃଥା ସ୍ୱଭାବଯାରେ ରତି
ନ କରନ୍ତେ ଧର୍ମେ ସେ ଦେଇଥାନ୍ତି ମତି ।
ଗୁରୁ ଯାହା ବୋଲନ୍ତି ମାନିଥାନ୍ତି ତାହା
କରିଥାଆନ୍ତେ ମାତ୍ର ଧର୍ମକୁ ସେ ସାହା ।
ନିବର୍ତ୍ତି ରହ ଏବେ କହୁଛୁ ତୁମ୍ଭଙ୍କୁ
ନ କର ଉପାୟ ହେ କପଙ୍କ ନାଶକୁ ।
ବ୍ରାହ୍ମଣେ ବୋଇଲେ ନ କହ କିଛୁ ଧର୍ମ
କପଙ୍କୁ ମାରିବୁ କହୁଛୁ ସତ୍ୟ ବାଣୀ ।
ଧର୍ମ ଏହା ଶୁଣି କପଙ୍କଠାକୁ ଗଲେ
ବ୍ରାହ୍ମଣ ତୁମ୍ଭ ନାଶ କରିବେ କହିଲେ ।
କପେ ତାହା ଶୁଣିଣ ହୋଇ ଶସ୍ତ୍ରପାଣି
ବାହାରିଲେ ମାରିବାପାଇଁ ଦ୍ୱିଜଶ୍ରେଣୀ ।

କପ ଆସିବାରେ ଜାଣିଣ ଦ୍ୱିଜଗଣେ
ହୋମ କଲେ ମନ୍ତ୍ର ପଢ଼ିଣ ଜଣେ ଜଣେ ।
ସେ ହୋମ ଅଗ୍ନିରୁ ଅଗ୍ନି ହୋଇ ଜାତ
କପଙ୍କୁ କରିଦେଲେ ତେଜେ ଭସ୍ମୀଭୂତ ।
ଦେବତାଏ ନାରଦ ମୁଖୁଁ କପ-ନାଶ
ଶୁଣିକରି ଫୁଲାଇଦେଲେ ସ୍ୱର୍ଗ-ଦେଶ ।
ଏହା ଶୁଣି ପବନ-ମୁଖରୁ ଅର୍ଜ୍ଜୁନ
ଦ୍ୱିଜଙ୍କ ଉପରେ କମ୍ପାଇ ଅପଘନ ।
ବୋଇଲେ ଦତ୍ତାତ୍ରେୟ ପ୍ରସାଦରେ ମୁହିଁ
କହୁଅଛଇ କଥା ଗୁମାନକୁ ବହି ।
ତୁମ୍ଭଠାରୁ ଶୁଣିଣ ବ୍ରାହ୍ମଣ-ମହିମା
ଗଲା ଯେ ଥିଲା ମୋ ମନରେ ଗରିମା ।
ପବନ ବୋଇଲେ ହେ ବ୍ରାହ୍ମଣଙ୍କୁ ପାଳ
ଭୃଗୁ ସକାଶରୁ ବିନାଶ ଯିବ କାଳ ।
କେତେକାଳ ଅନ୍ତେ ହେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ-
ଆଜଠାରୁ ହୃଦରେ ନ ଥୁଅ ଅଭିମାନ ।
ବ୍ରାହ୍ମଣ ମହାତ୍ମ୍ୟ-ପବନ ଅର୍ଜ୍ଜୁନ
ସମ୍ବାଦକୁ ସାରିଲେ ବ୍ୟାସ ତପୋଧନ ।
ତାହାଙ୍କର ପାଦ-ଯୁଗଳ ମନେ ଧ୍ୟାୟୀ
କୃଷ୍ଣସିଂହ ନରେଶ ଏ ଗୀତେ କହଇ ।

—✼—

## ବ୍ରାହ୍ମଣ ମାହାତ୍ମ୍ୟ (୨)
## ଦୁର୍ବାସା ଋଷିଙ୍କ ସମ୍ବାଦ

ଯୁଧିଷ୍ଠିର ବୋଇଲେ ଦ୍ୱିଜ ପୂଜାଫଳ
କହ ତ ମୋତେ ଏବେ ଶାନ୍ତନୁଙ୍କ ବାଳ ।
ଭୀଷ୍ମ ବୋଇଲେ ଆହେ ପ୍ରାଣ ଯିବାକାଳ
ହେଲାଣି ହେ ଜାଣ ପାଣ୍ଡବ-ନରପାଳ ।
କୃଷ୍ଣଙ୍କୁ ପଚାର ସେ କହିବେ ତୁମ୍ଭଙ୍କୁ
ଜଗ ଯେଣ କଥା ତ ନ ଆସେ କହିବାକୁ ।
ଜ୍ଞାନ ଥିବାଯାକ ମୁଁ କୃଷ୍ଣ-ଅନୁଜ୍ଞାରେ
କହିଲି ଶାସ୍ତ୍ର-କଥା ତୁମ୍ଭର ଆଗରେ ।
ଏତେ ତ ଆସି ହେଲା ମୋର ଜ୍ଞାନ ନାଶ
ଅଛନ୍ତି ବସି ପୁଚ୍ଛ କୃଷ୍ଣଙ୍କୁ ନରେଶ ।
କୃଷ୍ଣ ତ ସଂସାରେ କଉତା ଅଟନ୍ତି
କଳ୍ପ ଅନ୍ତରେ ଯେହୁ ପ୍ରଳୟ କରନ୍ତି ।
ଏ ଚଉଦଭୁବନେ ଛନ୍ତି ଯେତେ ପ୍ରାଣୀ
କୃଷ୍ଣ ବୋଲିକରି ସେ ଜାଣ ନରମଣି ।
ହ୍ରଦ ନଦ ନଦୀ ସମୁଦ୍ର ପରବତ
କୃଷ୍ଣ ବୋଲିକରି ଜାଣ ହେ ପାଣ୍ଡୁ-ସୁତ ।
ନ ଜାଣି ମୂଢ଼ମାନେ ଛାଡ଼ିଣ କୃଷ୍ଣଙ୍କୁ
ପୂଜୁଅଛନ୍ତି ଯାଇ ଅନ୍ୟ ଦେବତାଙ୍କୁ ।
କୃଷ୍ଣଙ୍କ ଅନୁଜ୍ଞାରେ ମୂଢ଼ଙ୍କର କାର୍ଯ୍ୟ
ଦେବେ ସିଦ୍ଧ କରନ୍ତି ଜାଣ ମହାରାଜ ।
ଏହା ଶୁଣିଣ ଯୁଧିଷ୍ଠିର ତୋଷ ବହି
କୃଷ୍ଣଙ୍କୁ ଅନାଇଣ ଯୋଡ଼ି ହାତ ଦୁଇ ।
ବୋଇଲେ ଆହେ କଂସବଳ ବିନାଶନ
ବ୍ରାହ୍ମଣ ପୂଜାଫଳ ମୋ ଆଗେ ବଖାଣ ।
ଶ୍ରୀକୃଷ୍ଣ ବୋଇଲେ ହେ ପୂର୍ବେ ପ୍ରଦ୍ୟୁମନ
ତୁମ୍ଭର ପରି ମୋତେ ପୁଚ୍ଛନ୍ତେ ରାଜନ ।
ତାହାଙ୍କୁ ମୁହିଁ ଯା କହିଅଛି, ତାହା—
ତୁମ୍ଭଙ୍କୁ କହିବି ହେ ଶୁଣ ନରନାହା ।
ଆହେ ସୁତ ବ୍ରାହ୍ମଣେ ସୁଖ ଦୁଃଖ ଦୁଇ
ଦେବା କରତାଟି ଅଟନ୍ତି ଜାଣ ମହୀ ।
ବ୍ରାହ୍ମଣଙ୍କୁ ପୂଜିଲେ ଆୟୁ କୀର୍ତ୍ତି ଯଶ
ପର ଆପଣାରେ ହୁଅଇ ପରକାଶ ।
ଚଉଦ ଭୁବନେ କରନ୍ତି ଦ୍ୱିଜ ପୂଜା
ଏ ସକାଶୁଁ ତହିଁରେ ବଳୁଛି ମୋ ମଜା ।
ପୂର୍ବେ ଦ୍ୱିଜ ଜଣେ ମୋ ଘରକୁ ଆସିଲେ
ରହିବାକୁ ଜାଣ ହେ ପ୍ରଦ୍ୟୁମନ ଭଲେ ।
ତାହାଙ୍କର ନାମଟି ଅଟଇ ଦୁର୍ବାସା
ନାଶ କରନ୍ତି ଯହିଁ କରନ୍ତି ସେ ବସା ।
ମୋତେ ବୋଇଲେ ସେ ମୋହର ବୋଧକରି
ପାରିଲେ ଘରେ ରଖ ମୋତେ ଚକ୍ରଧାରୀ ।
ଏହା ଶୁଣି ମୁହିଁ ଯେ ବୋଇଲି ତାହାଙ୍କୁ
ରହ ମୋ ଘରେ ମୁହିଁ ଭଜିବି ତୁମ୍ଭଙ୍କୁ ।
ମୋ ସମ୍ମତି ଜାଣି ରହିଲେ ସେ ମୋ ଘରେ
ତାଙ୍କର କଥା ତୁମ୍ଭେ ଶୁଣ ଏବେ ଧୀରେ ।
କେତେବେଳେ ଜଣଙ୍କ ଆହାର ଖାଆନ୍ତି
କେତେବେଳେ ସହସ୍ର ଜଣର ଭୁଞ୍ଜନ୍ତି ।
କେତେବେଳେ ବା ବୁଲିଯାଆନ୍ତି ଦାଣ୍ଡକୁ
ଡାକିଲେ ନ ଆସନ୍ତି କେବେହେଁ ଘରକୁ ।

କେବେ ବା କାନ୍ଦନ୍ତି ହସନ୍ତି କେତେବେଳେ
ଘର ପୋଡ଼ି ଦେଇ ଯାଆନ୍ତି କେତେବେଳେ
ମୁଁ ତ ତାହାଙ୍କ ଚରିତ ଭଲକରି ଜାଣେ
ଭଜଥାଏଁ ତାଙ୍କୁ ମୁଁ ବଚନ ପ୍ରମାଣେ ।
ଯେତେବେଳେ ଯାହା ସେ କରୁଥାନ୍ତି ଇଚ୍ଛା
ଦିଏ ମୁହିଁ ତାହା ନ କରି କିଛି ପୃଚ୍ଛା ।
ଦିନେ ସେ ମହରଷି ଡ଼କାଇଣ ମୋତେ
ବୋଇଲେ କ୍ଷୀରି ଆଣି ଦିଅ ହେ ତୁରିତେ ।
ତାହା ଶୁଣି ମୁହିଁ ଯେ ରନ୍ଧାଇଣ କ୍ଷିରି
ଆଣିଦେଲି ତାହାଙ୍କୁ ଆଗେ ରହିକରି ।
ଋଷି ସେ ହୀରିହାଣ୍ଡି ମଧ୍ୟୁଁ ଖାଇ ଅଧେ
ବୋଳି ହୁଅ କ୍ଷିରି ବୋଇଲେ ମୋତେସଧେ
ଏହା ଶୁଣି ମୁହିଁ ଅଇଁଠା କ୍ଷୀରିଯାକ
ବୋଳି ହୋଇଲି ଆହେ ରଥୀଙ୍କ ନାୟକ ।
ମୋ ପାଖରେ ରୁକ୍ମଣୀ ଛିଡ଼ା ହୋଇଥିଲେ
ତାଙ୍କୁ ମଧ୍ୟ ଅଇଁଠା-କ୍ଷୀରି ସେ ବୋଳିଲେ ।
ରଥୂଟିକରେ ବସି ତୁମ୍ଭର ମାତାଙ୍କୁ
ଯୋଚିକରି ବୋଇଲେ ଚଳିଲ ହେ ଦାଣ୍ଡିକୁ ।
ରୁକ୍ମଣୀ ତ ଅତ୍ୟନ୍ତ ବ୍ରହ୍ମଣ୍ୟ ଅଟନ୍ତି
ବୋହିନେଲେ ରଥକୁ ବହି ଅତି ପ୍ରୀତି ।
ସାକ୍ଷାତରେ ମୁହିଁ ତ ଦେଖୁଛି ନୟନେ
ପିଟିଲେ ବାଡ଼ି ତୁମ୍ଭ ମାତା ଅପଘନେ ।
ତେବେହେଁ ମୋହର ନୋହିଲି କିଛି ଦୁଃଖ
ତାଙ୍କ ମାଡ଼ ଦେଖି ମୁଁ ଲଭୁଥିଲି ସୁଖ ।
ଯଦୁମାନେ ତା ଦେଖି ଆଶ୍ଚର୍ଯ୍ୟ ପାଇଲେ
କ୍ରାହ୍ମଣ ଜନ୍ମ ହେବୁ ବୋଲିଣ ବୋଇଲେ ।
କୃଷ୍ଣଙ୍କ ଘରଯାକୁ ରଥେ ଯୋଚିକରି
ପିଟିଲେ ବାଡ଼ି ନିଜ ହସ୍ତେ ବଜ୍ରଧାରି ।
ବ୍ରାହ୍ମଣ ହୋଇବାରୁ କଲେ ଏଡ଼େ କଥା
ଦେଖ ଗୃହିଁ ଛନ୍ତି ଶ୍ରୀକୃଷ୍ଣ ମହାରଥା ।
ଏହିକାଳେ ରୁକ୍ମଣୀ ଦୁଇ ଆଣୁମାଡ଼
ପଡ଼ିଗଲେ ଅଙ୍ଗେ ବାଜନ୍ତେ ଆଣ୍ଟେ ବାଡ଼ ।
ରୁକ୍ମଣୀଙ୍କ ପଡ଼ିବା ଦେଖିଣ ଦୁର୍ବାସା
ରଥୁଁ ଡେ଼ଇଁଲେ ଫୁଲାଇଣ କ୍ରୋଧେ ନାସା ।
ଦକ୍ଷିଣଦିଗେ ମୁଖ କରିଣ ଗମିଲେ
ତା ଦେଖି ତାଙ୍କ କୁଳେ ଧାଇଁଲି ମୁଁ ଭଲେ
ବୋଇଲି ଦୁର୍ବାସା, ପ୍ରସନ୍ନ ହୁଅ ମୋତେ
ପଡ଼ୁଛି ଶତଥର ତୁମ୍ଭ ପାଦଗତେ ।
ଦୁର୍ବାସା ଶୁଣି କରି ମୋହର ବଚନ
ବୋଇଲେ ବର ମୋତେ ମାଗ ଜନାର୍ଦ୍ଦନ
ଏତେ ଦୁଃଖ ତୁମ୍ଭଙ୍କୁ ଦେଲିଠାରେ ମୁହିଁ
ଧାଇଁଅଛ ଯାହାଟି ମୋହ ପ୍ରୀତିପାଇଁ ।
ଏହି ସକାଶରୁ ତୁମ୍ଭଙ୍କୁ ପଟାନ୍ତର
ତୁମ୍ଭେ ଏକା ଅଟ ହେ, ଜାଣ ଚକ୍ରଧର ।
ଦେଉଅଛି ମୁହିଁ ତୁମ୍ଭଙ୍କୁ ଯାଚି ବର
ସବୁଲୋକେ ପ୍ରଭୁବ ହୋଇବ ତୁମ୍ଭର ।
ତିନିଲୋକ ସମ୍ପତ୍ତି ତିନିଲୋକ କୀର୍ତ୍ତି
ତୁମ୍ଭଠାରେ ଆଜୁଁ ରହିବ ଯଦୁପତି ।
ମୋ ଅଇଁଠାକ୍ଷୀରି ଲିପିଛି ଯେତେଠାରେ
ବଜ୍ର ହୋଇଲେ ନ କାଟିବ ତେତେଠାରେ
କେବଳ ପାଦତଳେ ଲିପି ନାହିଁ କ୍ଷୀରି
ତହିଁକି ମୁହିଁ ଦୁଃଖ କରୁଛି ବଶୃରି !
ଋଷି ବର ଦେବାକ୍ଷଣି ମୋ ଅପଘନ
ହେଲା ଲକ୍ଷ୍ମୀଦେବୀଙ୍କ ଆଶ୍ରୟର ସ୍ଥାନ ।
ରୁକ୍ମଣୀଙ୍କି ବୋଇଲେ ବାସ-ଦେହ ବହି
ପତିଙ୍କ ବଲ୍ଲଭୀ ହୋଇବୁ ଗୋ ତୁହି ।
ମୋତେ ପୁଣି ବୋଇଲେ ଦ୍ୱିଜରେ ଅଚ୍ୟୁତ
ରଖିଥିବ ମୋଠାରେ କରି ଭକ୍ତିଚିତ୍ତ ।
ଏରୂପେ ମୋତେ କହି ଅନ୍ତର୍ଦ୍ଧାନ ହେଲେ
ତାଙ୍କ ବଚନକୁ ମୁଁ ଘେନ ହୃଦସ୍ଥଳେ ।
ତୁମ୍ଭର ମାତାକୁଳେ ଆଜଯାଏ ମୁହିଁ
ଅଛି ଦ୍ୱିଜ ସେବାଲେ ତତପର ହୋଇ ।
ଆହେ ଯୁଧିଷ୍ଠିର ଏହିରୂପେ ବ୍ରାହ୍ମଣ—
ମାହାତମ୍ୟକୁ କଲିଥିଲି ମୁଁ ବଖାଣ ।
ପୂର୍ବକାଳରେ ପ୍ରଦ୍ୟୁମନ ଶୁଣେ ଆଗେ
ଏବେ ତା ତୁମ୍ଭ ଆଗେ କହିଲି ସବେଗେ ।
ତୁମ୍ଭେ ତ ମୋଠାରୁ ଶୁଣିଲ ଦଣ୍ଡିଧାରି
ଦିଅ ପାପ ନ ନାଶି ବ୍ରାହ୍ମଣ ପୂଜା କରି ।
ହୋଇଲା ଦୁର୍ବାସାଙ୍କ ଭିକ୍ଷା ସମାପତି
କହଇ କୃଷ୍ଣସିଂହ ନରକୁଳପତି ।

—❋—

## ଶରଶଯ୍ୟାରେ ଭୀଷ୍ମଙ୍କର ଶେଷ ଉପଦେଶ

ଯୁଧିଷ୍ଠି ବୋଇଲେ ଶିବଙ୍କ ମହାଭାଗ୍ୟ-
ମାନ ମୋତେ କହ ଶ୍ରୀକୃଷ୍ଣ ମହାଭାଗ ।
ଶ୍ରୀକୃଷ୍ଣ ବୋଇଲେ ଶିବଙ୍କଠାରୁ ଶ୍ରେୟ
ଯାହା ମୁଁ ପାଇଛି କହିବି ମନ ଦିଅ ।
ପ୍ରାତଃକାଳୁଁ ଉଠି ମୁଁ ଶତରୁଦ୍ର ନିତି
ପଢ଼ଇ ହୃଦୟରେ ବହି ମହାପ୍ରୀତି ।
ପ୍ରଳୟ ଅନ୍ତେ ଶିବ ହୋଇ ତୋଷମନା
ପ୍ରାଣୀଙ୍କି ସରଜିଲେ ହୋଇ ଏକମନା ।
ଶିବଙ୍କରେ ଅର୍ଜିତ ଜାଣ ଏ ସଂସାର
ଶିବଙ୍କୁ ନାହିଁ କେ ତ୍ରିଲୋକେ ବଳୀୟାର ।
ଶିବଙ୍କରେ ଜାଣ ଯେ ଅଛଇ ବଇରି
ତାହାକୁତ ଜଗତ ଥାନ୍ତି ହିଂସା କରି ।
ଦକ୍ଷପ୍ରଜାପତିଙ୍କ ଯାଗକୁଟି ଶିବ
ଧ୍ୱଂସ ପକାଇଲେ କ୍ରୋଧରେ ନରଦେବ ।
ଶିବଙ୍କ ଧନୁଘୋଷ ଶୁଣି ପ୍ରାଣୀଚୟ
ମଣିଲେ ହୋଇଲା କି ପ୍ରଳୟ ଉଦୟ ।
ନାନା ଉତପାତ ଯେ ହୋଇକରି ଗୋଟି
ନାଶ କରିଲା ସବୁ ଦ୍ୱିଜଙ୍କ ପ୍ରଭୃତି ।
ଶିବ କ୍ରୋଧ ହୋଇ ଭୃଗୁଙ୍କ ଆଖି ଦୁଇ
ଫୁଟାଇ ଦେଲେ ହେ ପାଣ୍ଡବ ନରସାଇଁ ।
ପୂଷା ଯେ ପୁରୋଡାସ ବସି ଖାଉଥିଲେ
ଶିବ ତାଙ୍କ ଦୁଇ ଦାନ୍ତକୁ ଭାଙ୍ଗିଦେଲେ ।
ଏ ରୂପେ କରସାରି ଉମାଦେବୀ-କାନ୍ତ
ଧଇଲେ କାଣ୍ଡଟିଏ ହୋଇ କ୍ରୋଧ-ଚଣ୍ଡ ।
ଶିବଙ୍କ ବିକ୍ରମ ନ ସହି ଦେବତାଏ
ପଡ଼ିଲେ ଶତରୁଦ୍ର ମୁଖେ ମହାଭୟେ ।
ଦେବତାଙ୍କର ସ୍ତୁତି ଶୁଣିଣ ପାର୍ବତୀ—
ବଲ୍ଲଭ ତୋଷ ହେଲେ ବହି ମହାପ୍ରୀତି ।
ଶିବଙ୍କରେ ନିହତ ଯେତେ ହୋଇଥିଲେ
ଶିବଙ୍କ ପ୍ରସାଦେ ସେ ଜୀବନ ପାଇଲେ ।
ଅସୁରମାନଙ୍କର ଥିଲା ତିନପୁର
ସୁନା ରୁପା ଲୁହାରେ ପାଣ୍ଡବ-ନୃବର ।
ଶିବ ତ କାଣ୍ଡକରେ ପକାଇଲେ ନାଶି
ଅସୁରଙ୍କୁ ମଧ୍ୟ ସେ କଲେ ଭସ୍ମରାଶି ।

ପୂର୍ବେ ପାର୍ବତୀଙ୍କ କୋଳରେ ପିଲାଟିଏ
ବସିଲେ ଉମାଙ୍କୁ ପୁଚ୍ଛିଲେ ଦେବତାଏ ।
ଉମା ତାହାଙ୍କୁ କଥା ନ କହନ୍ତେ କିଛି
ବଜ୍ର କର ହେଲେ ଅହତଦେହୀ ବଜ୍ରି ।
ସେ ଶିଶୁ ଇନ୍ଦ୍ରଙ୍କ ବଜ୍ରକୁ ସ୍ତମ୍ଭି ଦେଲେ
ବାସବ ବଜ୍ର ହାରି ଚାଳି ନ ପାରିଲେ ।
ଦେବେବସେ ପିଲାର ମାୟାରେ ହୋଇ ଘାଣ୍ଟି
ଜାଣି ନ ପାରିଲେ ଏ ବୋଲଣ ଧୂର୍ଜଟି ।
ବ୍ରହ୍ମା ତା ଜାଣିପାରି ନମିଲେ ପିଲିକୁ
କ୍ଷମାକର ହେ ବୋଲି ଇନ୍ଦ୍ରଙ୍କ ଦୋଷକୁ ।
ସେ ପିଲାଟି ପ୍ରସନ୍ନେ ପୂର୍ବପରି ବାହୁ
ପାଇଲେ ଜାଣ ସ୍ୱୟେ ଇନ୍ଦ୍ର ମହାବାହୁ ।
ସେ ଶିବଟି ଦୁର୍ବାସା ରୂପରେ ଏ ମହୀ
ଭ୍ରମୁଅଛନ୍ତି ହେ ପାଣ୍ଡବ ନରସାଇଁ ।
ମୋ ଘରରେ ସେ କେନାକେତେ ରହିଥିଲେ
ମୋ ସେବା ଘେନକରି ବହୁ ତୁଷ୍ଟ ହେଲେ ।
ସକଳ ଦେବମୟ ଅଟନ୍ତି ସେ ଶିବ
ସଂସାର କରତାର ଅଟନ୍ତି ସେ ଠାବ ।
ଶିବଂକର ଗୁଣକୁ ଶତମୁଖ ବହି
ଥିଲେ ଅବା ପାରନ୍ତି ଶେଷ କରି ମୁହିଁ ।
ଅନଳ ବିଶ୍ୱରୂପ ଏକାକ୍ଷ ଈଶ୍ୱର
ନାମ ଶିବଂକର ଅଟେଟି ମନେକର ।
ରବି ଅଗ୍ନି ବଜ୍ର ଶିବଂକ ଘୋର ମୂର୍ତ୍ତି
ବୋଲନ୍ତି ଆହେ ଜାଣ ଧର୍ମଂକ ସନ୍ତତି ।
ଚନ୍ଦ୍ର ଜଳ ଧରମ ଶିବଂକର ସାମ୍ୟ
ମୂରତି ବୋଲିଏ ହେ ନରଂକ ଉତ୍ତମ ।
ଶିବ ମୂରତିରେ ସେ ବ୍ରହ୍ମଚର୍ଯ୍ୟ କରି
ତପସ୍ୟା କରୁଥାନ୍ତି ପାର୍ବତୀଂକ ଧରି ।
ଘୋରରୂପେ ଯେବେ ଧରନ୍ତି ଉମା କାନ୍ତ
ତିନ ଜଗତକୁ କରନ୍ତି ତେବେ ହତ ।
ବଡ ହେବା ନ୍ୟାୟ ବୋଲନ୍ତି ମହେଶ୍ୱର
ରୁଦ୍ର ବୋଲି କହି କରିବାରୁ ସଂହାର ।
ଦେବତାମାନଂକରେ ଅଟନ୍ତି ତ ଦେବ
ଏଣୁ ସେ ଜଗତେ ବୋଲନ୍ତି ମହାଦେବ ।
ସବୁରି ମଙ୍ଗଳକୁ କରିବାରୁ ଇଚ୍ଛା
ଶିବ ବୋଲି କହନ୍ତି ତାଙ୍କୁ କୁନ୍ତୀ ବତ୍ସା ।

ସ୍ଥିର ଲିଙ୍ଗ ହେବାରୁ ସ୍ଥାଣୁ ବୋଲି କହି
ଅନେକରୂପୀ ଅଟନ୍ତି ତ ଉମାସାଇଁ ।
ଧୂମ୍ରରୂପୀ ହୋଇବା ନିମନ୍ତରୁ ଧୂର୍ଜଟି
ଉମାଦେବୀଙ୍କର ବଲ୍ଲଭ ବୋଲାଅନ୍ତି ।
ସବୁ ଦେବେ ଦେହରେ କରିବାରୁ ଘର
ବିଶ୍ୱରୂପ ନାମ ବୋଲାନ୍ତି ମହେଶ୍ୱର ।
ସହସ୍ରାକ୍ଷ ସର୍ବତୋମୁଖ ଅଯୁତାକ୍ଷ
କଇଳାସବାସୀ ପତିଙ୍କି ଦେଇ ଲକ୍ଷ୍ୟ ।
ପଶୁ ପାଳିବାରୁ ବୋଲାନ୍ତି ପଶୁପତି
ଏରୂପେ ତାଙ୍କ ନାମ ଖ୍ୟାତ ଅଛି କ୍ଷିତି ।
ଶିବଙ୍କର ଲିଙ୍ଗ ତ କଲେ ବ୍ରହ୍ମଚର୍ଯ୍ୟ
ତାଙ୍କୁ ଯେ ପୂଜେ ସୁଖ ପାଏ ମହାରାଜ ।
ଶିବଙ୍କ ଲିଙ୍ଗକୁ ସମସ୍ତ ଦେବତାଏ
ପୂଜୁଛନ୍ତି ଆହେ ଜାଣ ନରରାୟେ ।
ସ୍ତୁତି ଦେବଙ୍କରେ ଶିବଙ୍କ ନାମମାନ
ବିଖ୍ୟାତ ହୋଇଅଛି ଜାଣ ହେ ରାଜନ ।
ଅଛଇ ପାଠ ଶତରୁଦ୍ରୀୟ ବେଦରେ
ତା ଜାଣିଲେ ଲୋକ ପଢ଼ଇ ସଂସାରରେ ।
ଯୁଧିଷ୍ଠିର କୃଷ୍ଣଙ୍କ ମୁଖୁ ଏହା ଶୁଣି
ଭୀଷ୍ମଙ୍କ ମୁଖ ଚାହିଁ କହିଲେ ଏ ବାଣୀ ।
ଆଗମ ପ୍ରତ୍ୟକ୍ଷର ଅଟେ କେ କାରଣ
ଏହା ମୋର ଆଗରେ ବଖାଣ ରଥିରଣ ।
ଭୀଷ୍ମ ବୋଇଲେ ଆହେ ତାର୍କିକମାନେ
ପ୍ରତ୍ୟକ୍ଷକୁ ମାନୁଥାଆନ୍ତି ଅବିଛିନ୍ନେ ।
ପଣ୍ଡିତେ ତା ଶୁଣିଲେ ମନରେ ହସନ୍ତି
ସେ ତ ଆଗମକୁ ଆଗରୁ ଘେନଥାନ୍ତି ।
ଯୁଧିଷ୍ଠିର ବୋଇଲେ ଶିବଙ୍କ ଆସ୍ତିରନ୍ତି
କହ ତ ମୋତେ ଆହେ ଶାନ୍ତନୁ କୁମର ।
ଭୀଷ୍ମ ବୋଇଲେ ଆହେ ବଡ଼ ଲୋକେଯାହା
କହନ୍ତି କାଳରେ ସେ ହୁଏ ନରନାହା ।
କାମ ଲୋଭ ମୋହକୁ ଛାଡ଼ିଛନ୍ତି ଯେହି
ତାହାଙ୍କୁ ପୁଚ୍ଛ ଏହି କଥା ତୁମ୍ଭେ ଯାଇ ।
ଯୁଧିଷ୍ଠି ବୋଇଲେ ସଂଶୟ ହୁଏ ମୋର
ଆସ୍ତିର ବେଦ ପ୍ରତ୍ୟକ୍ଷର ସମାସ୍ତିର ।
ଭିନ୍ନେ ଭିନ୍ନେ କି ଅବା ନ ହୋଇଲେ ଏକ
ଏହା ମୋତେ କହ ଛାଡ଼ୁ ମୋ ହୃଦ ଦକ ।

ଭୀଷ୍ମ ବୋଇଲେ ରହେ ଆସ୍ତିର ପ୍ରତ୍ୟକ୍ଷ
ବେଦକୁ ଯେ ଜାଣଇ ହୁଅଇ ସେ ମୋକ୍ଷ ।
ଅହିଂସା ଦାନ ସତ୍ୟ କ୍ଷମା ଯେ ଆଚରେ
ଧରମ କଲା ବୋଲି ବୋଲାଏ ସଂସାରେ ।
ବ୍ରାହ୍ମଣଙ୍କୁ ପଚ୍ଛରି ଧର୍ମକୁ ଆଚର
କରିବା ଇଚ୍ଛା ଯେବେ ଅଛି ନରବର ।
ଯୁଧିଷ୍ଠିର ବୋଇଲେ ଧରମରେ ସ୍ପୃହା
ଯାର ନାହିଁ ତାର କି ହୋଏ କହ ତାହା ।
ଭୀଷ୍ମ ବୋଇଲେ ହେ ଅଧର୍ମବନ୍ତ ନର
ମାନଙ୍କର ନରକ ହୋଏ ନରବର ।
ଧରମ ଉପାସନା କରିଛନ୍ତି ଯେହି
ସ୍ୱର୍ଗପୁରରେ ଜାଣ ବସନ୍ତିଟି ସେହି ।
ଯୁଧିଷ୍ଠି ବୋଇଲେ ସାଧୁ ଅସାଧୁଙ୍କ
ଚିହ୍ନ ମୋତେ ହେ ରଥୀଙ୍କ ନାୟକ ।
ଭୀଷ୍ମ ବୋଇଲେ ଦୁର୍ମୁଖ ଦୁରାସ୍ତିର
ଲୋକଟିକୁ ଅସାଧୁ ବୋଲି ଯୁଧିଷ୍ଠିର ।
ଶୀଳରେ ସମ୍ପୂର୍ଣ୍ଣ ଅଟନ୍ତି ଯେତେ ପ୍ରାଣୀ
ସାଧୁ ବୋଲିକରି ତାହାଙ୍କୁ ଏକା ଗଣି ।
ରାଜମାର୍ଗଧାନ-ଗାଈଙ୍କର ମଧ୍ୟେ
ବିଷ୍ଠା ମୂତ୍ର ଉତ୍ସର୍ଗ ଯେ ନକରେ ସଧେ ।
ତାହାକୁଟି ବୋଲି ଜାଣଇ ଶିଷ୍ଟାଗ୍ରିର
ଲୋକଙ୍କ ମଧ୍ୟେ ସେ ବୋଲାଏ ସାଧୁନର ।
ଅଗ୍ନି ଚତୁଷ୍ପଥ ବୃଷଭ ଗୋଷ୍ଠ ଦେବ
ଦ୍ୱିଜ ପରକ୍ରମ କରେ ଯେ ବୋହି ଭାବ ।
ତାହାକୁ ଜାଣି ସାଧୁ ବୋଲିକରି କହି ।
ଅସାଧୁ ଗୁଣ ଥିଲେ ଏ ଗୁଣେ ଛପଇ ।
ବୃଦ୍ଧ ଭାରବନ୍ତ ବ୍ରାହ୍ମଣ ସ୍ତ୍ରୀରାଜନ
ଏହାଙ୍କୁ ଦେଖିଲେ ଛାଡ଼ିବ ବାଟ ଜାଣ ।
ଦିବସ ରାତ୍ରିରେ ଯେ ଭୋଜନ କରଇ
ଉପବାସ କଲା ଫଳକୁ ସେ ଲଭଇ ।
ଋତୁକାଳ ବିନା ସ୍ତ୍ରୀରଙ୍କି ମଇଥୁନ
ଆନକାଳେ ନ କଲେ ବୋଲାଏ ସେ ଧନ୍ୟ ।
ପୃଷ୍ଠର ମାଂସ ବୃଥାମାଂସ ଶବମାଂସ
ସମାନ ଅଟଇ ହେ ଜାଣ ନରଈଶ ।
ଦେବ ପିତୃଦେବ ପୃଷ୍ଠର ମାଂସ ଛାଡ଼ି
ଆନ ମାଂସ ଭୁଞ୍ଜିବେ ଗୃହବନ୍ତ ଲୋଡ଼ି ।

ସ୍ୱଦେଶେ ପରଦେଶେ ଦେଖିଲେ ଅତିଥି
ଗ୍ରାସ ଦେବ ତାହାକୁ ନୋହିକରି ବ୍ୟଥୀ ।
ବୃଦ୍ଧ ଜନଙ୍କୁଟି ନ ଦେବ ପରାଭବ
ବସି କରି ତାହାଙ୍କ ଆଜ୍ଞା ନ କାଟିବ ।
କୁଳବୃଦ୍ଧ ପାଶରେ ହୋଇଥିଲେ ଛୁଡ଼ା
ନ ବସିବ ତାହାଙ୍କୁ ପୃଷ୍ଠ ଦେଇ କ୍ରୀଡ଼ା ।
ଉଲଗ୍ନ ସ୍ତ୍ରୀ ପୁରୁଷଙ୍କୁ ନ ଚାହିଁବ
ବୃଦ୍ଧେ ଯା କହିବେ ତା ବସି ଶୁଣୁଥିବ ।
ବଡ଼ ଲୋକମାନଙ୍କୁ ତୁ ତା ବଚନକୁ
କଲେ ନାଶ କରେଟି ଆୟୁଷ ଯଶକୁ ।
ସମାନେ କହିବ ସମାନ କରି ବାଣୀ
ତୁ ତା କରି ଡାକିବ ଦେଖି ନୀଚଶ୍ରେଣୀ ।
ପାପକର୍ମୀମାନେ ହୃଦରେ ରଖି ପାପ
କହୁଥାଆନ୍ତି ବସି ଆପଣା ପ୍ରତାପ ।
ପ୍ରାୟଶ୍ଚିତ ଜଳେ ପାତକ ଲୁଣରାଶି
ମିଳାଇ ଯାଏ ବୋଲି କହିଛନ୍ତି ଋଷି ।
ପାପ କରି ସାଧୁଙ୍କ ଆଗରେ କହିଲେ
ପାପରୁ ମୁକ୍ତ ଲୋକ ହୁଏ ଜାଣ ଭଲେ ।
ଏହି ସକାଶୁ ଜାଣ କରୁଥିବ ଧର୍ମ
ସବୁବେଳେ ଜାଣ ପାଣ୍ଡବ-ନରୋତ୍ତମ ।
ନିଷ୍କପଟ କରଣ ଦେବ ଗୁରୁଙ୍କର
ପୂଜା କଲେ ସଂସାରୁ ହୁଏ ଲୋକ ପାର ।
ପରଲୋକ ଅରଜିବାକୁ ଦେବ ଦାନ
ଆନରେ ପରିତ୍ରାଣ ନାହିଁ ଲୋକେ ଜାଣ ।
ଯୁଧିଷ୍ଠିର ବୋଇଲେ ଆନ-ବଡ଼ ହେଉ
ଭାଗ୍ୟହୀନ ହୋଇଲେ ଧନ ହେବ କାହୁଁ ।
ଭାଗ୍ୟବନ୍ତ ଲୋକ ଯେ ବସିଥାଇ ଘରେ
ଲୋକଙ୍କର ଲେଖା ସେ ହୁଅଇ ଧମାରେ ।
ଅଧରମରେ କ୍ଷୟ, ଧର୍ମରେ ଅକ୍ଷୟ
ହୁଅଇ ଦେଖୁଥାଇଁ ଶାନ୍ତନୁ ତନୟ ।
ନୀତିଶାସ୍ତ୍ର ପଢ଼ିଣ ଲୋକ ମୂକ ହୁଏ
ମୂର୍ଖ ଲୋକ ସଭାରେ ବସି କହୁଥାଏ ।
ଏ କେଉଁ କାରଣରୁ ଗଙ୍ଗାଙ୍କ ନନ୍ଦନ
ହୁଅଇ ମୋର ଆଗେ କରତ ବଖାଣ ।
ବିଦ୍ୟାବନ୍ତ ପୁରୁଷମାନେ ବିଦ୍ୟାହୀନ
ଲୋକଙ୍କୁ ଆଶ୍ରେ କରି ବଞ୍ଚୁଥାନ୍ତି ଦିନ ।

ଆୟୁଷ ଥିଲେ ଲୋକ ଦେହେ କାଣ୍ଡରାଶି
ଗଳି ଯାଇଥିଲେ ଜୀବନେ ଥାଏ ବସି ।
ଯେତେବେଳେ କାଳ ହୁଅଇ ପରାପତ
ବାଜିଲେ ଗୋଡ଼େ କଣ୍ଟା ହୋଇଯାଏ ମୃତ ।
ଭୀଷ୍ମ ବୋଇଲେ ଆହେ ଯତ୍ନ କଲେ ଧନ
ନମିଳିଲେ ତପ କରିବ ଅବିଚ୍ଛିନ୍ନ ।
ଦାନରେ ଭୋଗୀ ବୃଦ୍ଧ ସେବାରେ ମାଧବୀ
ଅହିଂସାରେ ଦୀର୍ଘାୟୁ କହନ୍ତି ଭବ ।
ଏହି ସକାଶରୁ ଧରମ ପରମାଣ
କରିଣ ପ୍ରୀତି କରୁଥିବ ଆଚରଣ ।
ଅସତ ସତ କଥା କରିବାକୁ କାଳ
ପ୍ରମାଣ ଅଟଇ ହେ ଜାଣ ପାଣ୍ଡୁବାଳ ।
ଯୁଧିଷ୍ଠି ବୋଇଲେ କି କଥା କଲେ ଶ୍ରେୟ
ହୁଅଇ ତାହା କହ ଶାନ୍ତନୁ-ତନୟ ।
ଭୀଷ୍ମ ବୋଇଲେ ହେ ଦେବତାଋଷିବଂଶ
କୀର୍ତ୍ତନେ ଶ୍ରେୟ ହୋଇ ହୁଏ ପାପ ଧ୍ୱଂସ ।
ନାରାୟଣ କମଳା ସ୍କନ୍ଦ ଉମାପତି
ବିଶିଖ ଅଗ୍ନି ଯମ ଧୂମୋର୍ଣ୍ଣା ସାବିତ୍ରୀ ।
କୁବେର ଋଦ୍ଧି ଗୌରୀ ବରୁଣ ପବନ
ପିତାମହ ଶଚୀବଲ୍ଲଭ ମରୁଦ୍‌ଗଣ ।
ବିଶ୍ରବା ବାଲଖିଲ୍ୟାଋଷି ମିଶ୍ରକେଶୀ
ବେଦବ୍ୟାସ ସୁରଭି ସାଗର ଉର୍ବଶୀ ।
ସଂକଳ୍ପ ପର୍ବତ ନାରଦ ବିଶ୍ୱାବସୁ
ହାହା ହୁହୁ ତୁମ୍ବରୁ ରବି ରୁଦ୍ର ବସୁ ।
ଚିତ୍ରସେନ ତପସ୍ୟା ଦୀକ୍ଷା ଦେବହୂତ
ବ୍ୟବସାୟ ରାତ୍ରି ଦିବସ ଧର୍ମଶ୍ରୁତ ।
ବୃହସ୍ପତି ମଙ୍ଗଳ ବୁଧ ରାହୁ ଶୁକ୍ର
ନକ୍ଷତ୍ର ଋତୁ ମାସ ବର୍ଷ ଶନୈଶ୍ଚର ।
ମେନକା ରମ୍ଭା ପଞ୍ଚଚୂଡ଼ା ଅଲମ୍ବୁଷ
ତିଲୋତ୍ତମା ଘୃତାଚୀ ବିଶ୍ୱାଚୀ ବିପାଶ ।
ଶତଦ୍ରୁମ ଚନ୍ଦ୍ରଭାଗା ଦେବୀ ସରସ୍ୱତୀ
ନର୍ମଦା ବିପାଶା କାବେରୀ ବେତ୍ରବତୀ ।
ବିଶଲ୍ୟା କରତୋୟା ପର୍ଣ୍ଣାସା ଗୋମତୀ
ଗୋଦାବରୀ ତାମ୍ରରୁଣା ଦୃଶଦ୍‌ବତୀ ।
ଋଷିକୁଲ୍ୟା ଶତବାହିନୀ କୃଷ୍ଣାବେଣୀ
ଭୀମରଥୀ ଯେ ମହାନଦୀ ମନ୍ଦାକିନୀ ।

ପୁଷ୍କର ପ୍ରଭାସ ବାହୁଦା ଅଶ୍ୱବତୀ
ସରସ୍ୱତୀ କୌଶିକୀ, ଯମୁନା ପ୍ଲକ୍ଷବତୀ ।
ହିରଣ୍ୟବତୀ ଯେ ସୂକ୍ଷ୍ମବତୀ ଦେବସ୍ତୃତ
ବିତସ୍ତା ମହେନ୍ଦ୍ର ବାସିନୀ ବେଦମତୀ ।
ନିନ୍ଦିନୀ ସ୍ୱରୂପା ମାଳିକା ପରନନ୍ଦା
ମହାହ୍ରଦ ପ୍ରୟାଗ ନଇମିଷ ନନ୍ଦା ।
କାଶୀ କୁରୁକ୍ଷେତ୍ର ଜାହ୍ନବୀ ଗୟାଦ୍ୱାର ।
ଜମ୍ବୁମାର୍ଗ ଧର୍ମଅରଣ୍ୟ ବ୍ରହ୍ମଶର ।
ଦେବତଟିନୀ ଫଲଗୁ ବିନ୍ଧ୍ୟ ହିମାଳୟ
ଶୃଙ୍ଗବାନ କୈଳାସ ମହେନ୍ଦ୍ର ମଳୟ ।
ମେରୁ ଚିତ୍ରକୂଟ ଯେ ନିଷଧ ମନ୍ଦର
ଗନ୍ଧମାଦନ ଅଞ୍ଜନାଭ ଉଦଦ୍ରୂର ।
ସୋମପର୍ବତ ବିଶ୍ୱଦେବ ବୃକ୍ଷଦଶ
ନକ୍ଷତ୍ର ଗ୍ରହ କ୍ଷିତି ଆକାଶ ଦିବସ ।
ଏବଂ ନୀତ ରୈଭ୍ୟ ଊଷିକ କାଂକ୍ଷୀବାନ
ଅଙ୍ଗିର ଭୃଗୁ ବର୍ହ୍ମ ମେଧାତିଥି କନ୍ୱ ।
ସ୍ତାସ୍ତ୍ୟାନେୟ ଅଗସ୍ତ୍ୟ ଦୃଢାୟୁ ଉନ୍ମୁଚୁ
ଊର୍ଦ୍ଧ୍ୱବାହୁ ଋଷଙ୍ଗୁ ପ୍ରମୁଚୁ ମୁମୁଚୁ ।
ପଇବ୍ୟାଧ ଦୀର୍ଘତମା ଯେ ଗଉତମ
ବିଶ୍ୱାମିତ୍ର ଭରଦ୍ୱାଜ ପରଶୁରାମ ।
ବଶିଷ୍ଠ ଜମଦଗ୍ନି ବ୍ୟାସ ସାରସ୍ୱତ
ପରାଶର ଅତ୍ରି ଏକତ ଦ୍ୱିତ ତ୍ରିତ ।
ଶକଜ ଶ୍ୱେତକେତୁ କୋହଲ ବିଶୁଳ
ଉଦ୍ଦ୍ୟାଳକ ହସ୍ତୀ କଶ୍ୟପ ଯେ ଦେବଳ ।
ନାଚିକେତ ଧବମ୍ୟ ଲୋମଶ ଚ୍ୟବନ
ଉଗ୍ରଶରବା ଶୁକ ଲୋମହରଷଣ ।
ଦିଲୀପ ଚିତ୍ରାଶ୍ୱ ଯଯାତି ଧୂନ୍ଧୁମାର
କୃଶାଶ୍ୱ ସତ୍ୟବାକ ନହୁଷ ସଗର ।
ଯଦୁ ଯୌବନଶ୍ୱ ନୃଗ ପୁରୁ ଦୁଷ୍ମନ୍ତ
ଯବନ ଧୃଷ୍ଟରଥ ଜନକ ଭରତ ।
ଶଶବିନ୍ଦୁ ଦଶରଥ ଯେ ରାମଚନ୍ଦ୍ର
ରଘୁ ଭଗୀରଥ ଅଳର୍କ ହରିଶ୍ଚନ୍ଦ୍ର ।
ଅମ୍ବରୀଷ କଲ୍‌କଲ ଐଳ ଚଇବତ
ମହୋଦୟ କରୁ ମାନଧାତା ମରୁତ ।
ସମ୍ବରଣ ମୁଚୁକୁନ୍ଦ ମିତରଭାନୁ
ଆଦି ରାଜନ ପୃଥୁ ତ୍ରିସଦସ୍ୟୁଜହ୍ନୁ ।

ମହାଭିଷ ନାଭି ଅଷ୍ଟକ କ୍ଷୁପ ଆୟୁ
ଶିବି ଉଶିନର ପରତାପ କଶେୟୁ ।
ଶ୍ୱେତ ଗୟ ନଳ ଯେ ମନୁ ଦିବୋଦାସ
ପ୍ରାଚୀନବର୍ହି ଅଜ ଶାନ୍ତନୁ ସୁଦାସ ।
ଇକ୍ଷ୍ୱାକୁ ଅନରଣ୍ୟ ହିରଧ୍ର ପ୍ରତର୍ଦ୍ଦନ
ପୃଷଧ୍ର ଜାନୁଜଙ୍ଘ ଦକ୍ଷ କକ୍ଷସେନ ।
ଏହିମାନଙ୍କୁ ପ୍ରାତଃକାଳୁ ଯେ କୀର୍ତ୍ତନ
କରଇ ସେ ହୁଅଇ ଧର୍ମର ଭାଜନ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଭୀଷ୍ମଙ୍କରଠାରୁ ଯେ ପାଣ୍ଡବ ରାଜନ ।
ଦାନଧର୍ମଯାକ ଶୁଣିଲେ କର୍ଣ୍ଣଦେଶେ
ନକଲେ କି କଲେ ତା କହ ମୋତେ ତୋଷେ
ବଇଶମ୍ପାୟନ ବୋଇଲେ ଜନ୍ମେଜୟୀ
ଦାନ ଧରମ କହି ଶାନ୍ତନୁତନୟ ।
ତୁନି ହୋଇ ରହିଲେ ପଟ ଚିତ୍ରପରି
ରହିଲେ ତାଙ୍କୁ ଗୁହାଁ ସବୁ ଦଣ୍ଡଧାରୀ ।
ସେହି କାଳରେ ବ୍ୟାସ କହିଲେ ଭୀଷ୍ମଙ୍କୁ
ଯେବେ ଯୁଧିଷ୍ଠିର ତୁମ୍ଭର ବଚନକୁ ।
ରାଜ୍ୟଭୋଗ କରିବା କରଚନ୍ତି ଇଚ୍ଛା
ଯାଅ ବୋଲ ତାହାଙ୍କୁ ଶାନ୍ତନୁଙ୍କ ବତ୍ସା ।
ଭୀଷ୍ମ ବୋଇଲେ ହେ ପାଣ୍ଡୁଙ୍କ ଜ୍ୟେଷ୍ଠବାଳ
ଯାଅ ତୁମ୍ଭେ ଘରକୁ ହେଲାଣି ମୋ କାଳ ।
ମୋଠାରୁ ତ ଧରମ ନୃପତି-ତିଳକ
ଶୁଣିଲ ପାଳ ହେ ହସ୍ତିନା ପ୍ରଜାଯାକ ।
ଉତ୍ତରାୟଣ ହେଲେ ଆସିବ ମୋଠାକୁ
ତୁମ୍ଭ ମୁଖ ଗୁହାଁଲେ ଯିବି ମୁଁ ସ୍ୱର୍ଗକୁ ।
ଏହା ଶୁଣିଣ ଯୁଧିଷ୍ଠିର ଭୀଷ୍ମଙ୍କର
ପାଦ ଦୁଇକ ଧରି କରି ନମସ୍କାର ।
ଧୃତରାଷ୍ଟ୍ର ନୃପତିଙ୍କୁ ନିଜ ଆଗେ କରି
ବାହାରିଲେ ସେ ହସ୍ତିନାକୁ ସୈନ୍ୟ ଧରି ।
ପୁରଦ୍ୱାରେ ରହିଣ ଲୋକଙ୍କ ମେଲାଣି
ଦେଇ ଉତ୍ତରକୁ ଗମିଲେ ନରମଣି ।
ରାଣ୍ଡ ଚିତ୍ରିପାକଙ୍କୁ ଧନ ରତ୍ନ ଦେଲେ
ନ କାନ୍ଦ ଆରେ ବୋଲି ବୋଧିଣ କହିଲେ
ପଞ୍ଚାଶଦିନ ହସ୍ତିନାରେ ନୃପ ରହି
ପୁଣି ଭୀଷ୍ମଠାକୁ ଆସିବେ ଇତର ହୋଇ ।

ଭୀଷ୍ମଙ୍କ ସଂସ୍କାରକୁ ଚନ୍ଦନ ଅଗୁର
ପଟ୍ଟବସ୍ତ୍ରଅଣାଇଲେ ନୃପତିବର ।
ଗାନ୍ଧାରୀ ଧୃତରାଷ୍ଟ୍ର ଶ୍ରୀକୃଷ୍ଣ ବିଦୁର
ଭୀମାର୍ଜ୍ଜୁନ ନକୁଳ ସହଦେବ ବୀର ।
ଯୁଯୁତ୍ସୁ ସାତ୍ୟକୀ ଏ କୁନ୍ତୀଆଦି ତୁଲେ
ଆସିବାବେଳେ ସଙ୍ଗେ ଘେନି ଆସିଥିଲେ
ଯୁଧିଷ୍ଠିର ରାଜା ଯେ ପୁଣି ଭୀଷ୍ମଙ୍କର
ଦାହପାଇଁ ଆଣିଲେ ଯାଗ ବୈଶ୍ୱାନର ।
ଭୀଷ୍ମଙ୍କ ଚଉପଟେ ଋଷିଏ ଅଛନ୍ତି
ଭୀଷ୍ମ ଶର ଶଯ୍ୟାରେ ଶୋଇଣ ଅଛନ୍ତି ।
ଯୁଧିଷ୍ଠିର ରାଜା ପ୍ରଣମି ଋଷିକୁଳ
ବନ୍ଦନା କଲେ ପୁଣି ଭୀଷ୍ମ ପାଦତଳ ।
କହିଲେ ଯାଗ ଅଗ୍ନି ଘେନି ମୁଁ ଆସିଛି
କି କରିବି କହ ହେ ଶାନ୍ତନୁଙ୍କ ବଂଶି ।
ଭାଇ ବାନ୍ଧବ ପୁତ୍ର ନାତି ଜ୍ଞାତିଗଣ
ଅଛନ୍ତି ରହିଁ ଆହେ ଭୀଷ୍ମ ରଥୀଗଣ ।
ଯଦୁକୁଳ ଜୀବନ ମାଧବ ମୁରାରି
ତୁମ୍ଭ କାଳ ଜାଣି ସେ ଅଛନ୍ତି ବିଜେ କରି
ଯେଉଁରୂପେ ମୋତେ ଅନୁଜ୍ଞା ପିତାମହ
ଦେଲେ, ମୁଁ ସେହିରୂପେ କରି ବହି ସ୍ନେହ

—❋—

## ଭୀଷ୍ମଙ୍କର ଦେହତ୍ୟାଗ

ଭୀଷ୍ମ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ବାଧିଲାଣି ତ ମୋତେ ଅର୍ଜ୍ଜୁନର ଶର ।
ଅଠାବନଦିନ ଅର୍ଜ୍ଜୁନ କାଣ୍ଡ ବୋହି
ଗଣ୍ଡିରେ ଶୋଇଛି, କି ଦୁଃଖ କହିହଇଁ ।
ଆଜ ମାଘ ଶୁକ୍ଳ ଅଷ୍ଟମୀ ହୋଇଛି
ମରିବି ମୁଁ ଜାଣ ହେ କୁନ୍ତୀ ଜ୍ୟେଷ୍ଠବଂଶି ।
ଏହା କହିଣ ରହିଁ ଧୃତରାଷ୍ଟ୍ର ମୁଖ
ବୋଇଲେ ନୃପବର ଛାଡ ମନୁ ଦୁଃଖ !
ଯାହା ହେବାକୁ ଯୋଗ ଥିଲା, ସେ ହୋଇଲା
ତୁମ୍ଭେ ବିଚାରିବାର ସବୁ ବୃଥା ହେଲା ।
ବେଦଙ୍କର ରହସ୍ୟ ବ୍ୟାସଙ୍କର ମୁଖୁଁ
ଶୁଣିଲ ରାଜନ, ତରିବ ପୁତ୍ର ଦୁଃଖୁଁ ।
ପାଣ୍ଡୁଙ୍କର ଯେ ସୁତ ତୁମ୍ଭର ସେ ସୁତ
ଏଥିରେ ନ କରିବ ଆଉ ଆନ ଚିତ୍ତ ।

ଯୁଧିଷ୍ଠିର ରାଜା ତ ଧାର୍ମିକ ଅଟନ୍ତି
ନ କରିଲେ ତୁମ୍ଭଙ୍କୁ ସେ ଅନ୍ୟାୟ ରୀତି ।
ଦୁଷ୍ଟ ପୁତ୍ର ପାଇଁ ଶୋକରେ ନୃପବର
କହୁଛି ନ ଛାଡିବ ଆପଣା ଶରୀର ।
ଏରୂପେ ରହି ଧୃତରାଷ୍ଟ୍ରଙ୍କୁ, କୃଷ୍ଣଙ୍କୁ
କହିଲେ ରହିଁ ଭୀଷ୍ମ ବନସ୍ପ ଗରକୁ ।
ପ୍ରଭୁ ହେ ଶଙ୍ଖ-ଚକ୍ରଧର ଗଦାଧର
ଦେବତାମାନଙ୍କର ତୁମ୍ଭେଟି ଈଶ୍ୱର ।
ତୁମ୍ଭ ପାଦଦୁଇରେ ନମସ୍କାର ମୁହିଁ
କରୁଛି ଆଜ୍ଞା ଦିଅ ପ୍ରାଣ ଛାଡିବଇଁ ।
ତୁମ୍ଭ ଚରଣେ ଭକ୍ତି କରିବାକୁ ମୁହିଁ
ଦୁର୍ଯ୍ୟୋଧନ ରାଜାକୁ ବହୁ କହିଲଇଁ ।
ତା ନ ଘେନି ସେ ଦୁଷ୍ଟ ଦେହ ନଷ୍ଟ କଲା
ପାଣ୍ଡବଙ୍କୁ ଯୁଝି କୁଳକୁ ଭ୍ରଷ୍ଟ କଲା ।
ଶ୍ରୀକୃଷ୍ଣ ବୋଇଲେ ଅନୁଜ୍ଞା ମୁଁ ଦେଉଛି
ଯାଅ ବସୁଲୋକକୁ ଶାନ୍ତନୁଙ୍କ ବଂଶି ।
ଇହଲୋକେ ତୁମ୍ଭର ନ ଥିବାରୁ ପାପ
ମୃତ୍ୟୁ ତୁମ୍ଭ ବଶ ଜାଣ ହେ ନରାଧିପ ।
ଶ୍ରୀକୃଷ୍ଣଠାରୁ ଏରୂପେ ଆଜ୍ଞା ପାଇ
ଜ୍ଞାତି ପୁତ୍ର ବନ୍ଧୁଙ୍କୁ ଭୀଷ୍ମ ନେନେ ରହିଁ ।
ବୋଇଲେ ତୁମ୍ଭଙ୍କୁ ମାଗୁଛି ଅନୁଜ୍ଞାକୁ
ବୋଲ ମୁଁ ଯିବି କୃଷ୍ଣ ଏବେ ମୋ ଲୋକକୁ
ଆଜଠାରୁ ମୋ ବୋଲ କରି ତୁମ୍ଭେମାନେ
ସତ୍ୟକୁ କହୁଥିବ ବସିଣ ବଚନେ ।
ପୁଣି ଯୁଧିଷ୍ଠିରଙ୍କୁ କହିଲେ ଦ୍ୱିଜଙ୍କୁ
ପୂଜା କରୁଥିବ ଘେନି ମୋ ବଚନକୁ ।
ଏ ବାହାରେ ଗୁରୁଦେବଙ୍କୁ ନମସ୍କାର
ଦେଖିଲେ କରୁଥିବ ନିତି ଯୁଧିଷ୍ଠିର ।
ଆହେ ଯୁଧିଷ୍ଠିର ଏରୂପେ ଭୀଷ୍ମ କହି
ରହିଲେ ସେ ଯୋଗ ଧ୍ୟାନରେ ତନ୍ମୟହୋଇ
ଯୋଗରେ ଯେଉଁ ଅଙ୍ଗୁ ନେଲେ ଭୀଷ୍ମ ପ୍ରାଣ
ସେ ଅଙ୍ଗରୁ ଖସି ପଡ଼ିଲା ସବୁ ଜାଣ ।
ସବୁ ପ୍ରାଣୀମାନେ ନୟନେ ଦେଖୁଥିଲେ
ଯୋଗରେ ଭୀଷ୍ମ ଶର-ମୁଖୁ ମୁକ୍ତ ହେଲେ
ତାହା ଦେଖିଣ ନୃପେ ପାଇ ଚମତ୍କାର
ବଚନ ବୋଇଲେ ହେ ଧନ୍ୟ ଭୀଷ୍ମ ବୀର ।

ସବୁ ଆତ୍ମ ପ୍ରାଣ ଆଣନ୍ତେ ଭୀଷ୍ମ ରୁନ୍ଧି
ଗମିଲା ସେହି ପ୍ରାଣ ବ୍ରହ୍ମରନ୍ଧ୍ର ଭେଦି ।
ଉଲକା ପରି ଭୀଷ୍ମଙ୍କ ଆତ୍ମାଟି ଦିଶିଲା
ବସୁଙ୍କର ସଙ୍ଗତେ ଯାଇଣ ମିଶିଲା ।
ଭୀଷ୍ମଙ୍କର ଶବକୁ ଦେଖିଣ ପାଣ୍ଡବେ
କି ହେଲା ବୋଲିଣ ପଡ଼ିଲେ ଡକା ସର୍ବେ ।
ଧୃତରାଷ୍ଟ୍ରରାଜା ମୁଣ୍ଡରେ ମାରି ହାତ
ଶୋକକୁ କଲେ ନିଜ ହୃଦ ଦେଶେ ସାଥ ।
ଏ ଅନ୍ତେ ପାଣ୍ଡବେ ବିଦୁର ଯୁଯୁତ୍ସୁଙ୍କ
କୂଳରେ ଚିତା କଲେ କାଢି ଶକ ଶକ ।
ଆଜି ଯେତେ ନୃପତି ସଙ୍ଗତରେ ଥିଲେ
କାହାରିକି ଚିତା ସେ ଛୁଆଇଁ ନ ଦେଲେ ।
ଏ ଅନ୍ତେ ଭୀଷ୍ମଙ୍କୁ ପିନ୍ଧାଇ ପଟ୍ଟବସ୍ତ୍ର
ଫୁଲମାଳେ ମଣ୍ଡିଲେ ଶିର ତୁଟିଲେ ଗାତ୍ର ।
ଯାନୁଟିଏ ମଣ୍ଡାଇ ଭୀଷ୍ମେ ବସାଇଲେ
ଜ୍ଞାତିଙ୍କର ହାତେ ସେ ଯାନ ବୁହାଇଲେ ।
ଯୁଯୁତ୍ସୁ ଛତ୍ର ଚାମର ଭୀମ ଅର୍ଜୁନ
ନକୁଳ ସହଦେବ ଧଇଲେ ବ୍ୟଜନ ।
ସ୍ତ୍ରୀମାନେ ଯେ ପଖାମାନ ପକାଇଲେ
ପୁରୋହିତ ସାମଗାନକୁ ଆରମ୍ଭିଲେ ।
ପିତୃମେଧ ଯାଗ ଶ୍ମଶାନେ ଭୀଷ୍ମଙ୍କର
କରାଇଣ ଯୁଧିଷ୍ଠିର ନୃପତିବର ।
ଚନ୍ଦନକାଠ ଜାଳି ରଇକି ଭୀଷ୍ମଙ୍କୁ
ବୁଲାଇଲେ ରଇମଧ୍ୟରେ ଲଦିବାକୁ ।
ଏରୂପେ ଭୀଷ୍ମଙ୍କର ଦାହ ସମାପତି
କରିଣ ଗଙ୍ଗାଙ୍କରେ ସାରି ପ୍ରେତମିତି ।
ବିଧାନ ଯୁଧିଷ୍ଠିର ରାଜା କୂଳେ ଛିଡ଼ା
ହୋଇ ଦେଲେ ପୁଚ୍ଛ ଲମ୍ବାଇ ବାହୁଯୋଡ଼ା
ନାରଦ ବ୍ୟାସାଦି ଋଷିଏ ସଙ୍ଗେ ଥିଲେ
କୃଷ୍ଣଙ୍କ ତୁଲ୍ୟେ ସବୁ ନୃପେ ମାଣି ଦେଲେ
ଗଙ୍ଗା ଜଳଭିତରୁ ଅଶ୍ରୁମୁଖୀ ହୋଇ
ବାହାରିଣ କହିଲେ କୁରୁଙ୍କୁ ଅନାଇଁ
ପୂର୍ବେ ପରଶୁରାମ ଜିଣି ମୋର ସୁତ
କାଳବଶେ ହେଲା ଶାଣ୍ଡୀ ହାତେ ହତ ।
ଆଜ ଜାଣିଲି ମୁଁ ଯାହା, ମୋ ହୃଦ ଫାଟି
ନ ଯାଏ ପଥରପାରି କି କଲା ଲୋଟି ।

କାଶି ପୁରରେ ସ୍ୱୟମ୍ବରେ ତିନି କନ୍ୟା
ଯୁଦ୍ଧେ ଜିଣି ଆଣିଲା ପୁତ୍ର ମହାମନା ।
ଏରୂପେ ଗଙ୍ଗାଙ୍କର ଶୁଣି ଶୋକ-ବାଣୀ
କହିଲେ ତାଙ୍କୁ ଶାନ୍ତକରି ଚକ୍ରପାଣି ।
ବୋଇଲେ ଆହେ ଗଙ୍ଗା ନ କର ଖେଦନ
ପଇଲେ ଗୋ ପୁତ୍ର ଉତ୍ତମ ଲୋକେ ସ୍ଥାନ ।
ଶାପବଶେ ବସୁ ମନୁଷ୍ୟ ଜନ୍ମ ପାଇ
ଥିଲେ ତୁମ୍ଭେ କମ୍ପା କାନ୍ଦୁଛ ତହିଁ ପାଇ ।
ଯାହା ପୂର୍ବରୁ ଲେଖିଥିଲେ କୁଶଧର
ତା ଆନ କରିବାକୁ ଶକ୍ତି କାହାର ।
ଶିଖଣ୍ଡୀରେ କମ୍ପା ମରିବେ ଦେଉଁ ରଥୀ
ଅର୍ଜୁନ-ବାଣ ଦେଲା ତାଙ୍କ ବଳ ମଥି ।
ଧନୁଶରକୁ ଧରିଥିଲେ ତୁମ୍ଭ ସୁତ
ପାରନ୍ତି ଶତ ଇନ୍ଦ୍ରଙ୍କର ବଳ ହତ ।
ଶୋକ ତ୍ୟାଗ କରି ବିଶୋକ ହୁଅ ତୁମ୍ଭେ
ତୁମ୍ଭେ କିସ ନ ଜାଣ, କହିବୁ କି ଆମ୍ଭେ ।
ଏ ରୂପେ ବ୍ୟାସଙ୍କ କୃଷ୍ଣଙ୍କ ବାଣୀ ଶୁଣି
ବିଗତ ଶୋକ ହୋଇ ଗଙ୍ଗା ନଦୀମଣି ।
ଜଳମଧ୍ୟେ ସେକ୍ଷଣି ଲୁଚିଇଲେ ରୂପେ
ଦେଖୁଥିଲେ କୂଳରେ ରହି ସର୍ବ ଲୋକେ ।
କୃଷ୍ଣ ସେକ୍ଷଣି ନୃପଗଣେ ସଙ୍ଗେ ଧରି
ବାହୁଡ଼ିଲେ ହସ୍ତିନା ଯିବ ଇଚ୍ଛା କରି ।
ଏଥେଁ ଦାନଧର୍ମ-ଶର୍ଣୀକ ଅସ୍ତ-ତମ
ଗ୍ରାସକଲା ଅନ୍ତଃପୁରରେ ଦୋହି ପ୍ରେମ ।
ରାଜଧରମ ମୋକ୍ଷଧର୍ମ ଦାନଧର୍ମ
ଏ ତିନିଙ୍କି ସମାପ୍ତ ଋଷିଙ୍କ ଉତ୍ତମ ।
ବେଦବ୍ୟାସ କରିଲେ ଶାନ୍ତି ପର୍ବଙ୍କରେ
ଏଠାରେ ମୁଁ କହିଲି ଗୀତ ପ୍ରବନ୍ଧରେ ।
ଏଠାରେ ଶାନ୍ତିପର୍ବ କୁମୁଦର ମୋଦ
ହରିଣି ଶେଷ ସୂର୍ଯ୍ୟ କରିଦେଲେ ମୁଦ ।
ଏକାଳକୁ ଶତାବ୍ଦ ସତରଶ ସାତ
ହୋଇଅଛୁ ବୋଲନ୍ତି ପଣ୍ଡିତଙ୍କ ମତ ।
ନମା ମତରେ ବରଷ ଜଣାଯିବା ପାଇଁ
ଶକାବ୍ଦକୁ ମାତର କହିଲଇଁ ମୁହିଁ ।
ଧରାକୋଟ-ମଣ୍ଡଳ-ଈଶ୍ୱର ଅଟଇ
କୃଷ୍ଣସିଂହ ନରେଶ ଏ ଗୀତେ କହଇ ।

ମୁଦ୍ରାକର— ଶ୍ରୀ ବିଦ୍ୟାଧର ସାହୁ, ବିଶ୍ୱବିଦ୍ୟା ପ୍ରେସ, ଅଲିଶା ବଜାର, କଟକ-୨

୰ରାଜା କୃଷ୍ଣସିଂହଙ୍କ କୃତ

# ମହାଭାରତ



## ଅଶ୍ୱମେଧାଦି ପଞ୍ଚପର୍ବ

ପ୍ରଥମ ମୁଦ୍ରଣ

ପ୍ରକାଶକ ଓ ପ୍ରାପ୍ତିସ୍ଥାନ—

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରୋ: ପ୍ରା:—ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ-୨

ଫୋନ ନଂ-୨୪୭୯୨

ମୂଲ୍ୟ—ଟ ୫-୦୦ ପାଞ୍ଚଟଙ୍କା ମାତ୍ର

# ସୂଚୀ



## ଅଶ୍ୱମେଧ ପର୍ବ



—o—

## ଆଶ୍ରମବାସିକ ପର୍ବ



—o—

## ମୌଷଳ ପର୍ବ



—o—

## ଯାନ ପର୍ବ



—o—

## ସ୍ୱର୍ଗାରୋହଣ ପର୍ବ



—o—



৺ ରାଜା କୃଷ୍ଣସିଂହଙ୍କ କୃତ

# ମ ହା ଭା ର ତ

## ଅଶ୍ୱମେଧ ପର୍ବ

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା ।
ଶଲ୍ୟଗ୍ରାହବତୀ କୃପେଣ ବହଗା କର୍ଣ୍ଣେନ ବେଳାକୁଳା ॥
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ କୁରୁନଦୀ କୈବର୍ତ୍ତକଃ କେଶବଃ ॥

### ମଙ୍ଗଳାଚରଣ

ଜୟ ଗୋପୀମନ-ଆନନ୍ଦ-ବରଧନ ।
ଶ୍ରୀରାଧିକାଦେବୀ-ହୃଦୟ-ପ୍ରାଣଧନ ।
ତମାଳ-ନବ-ଘନ-ଶ୍ୟାମଳ-ବରନ
କେକିପୁଚ୍ଛ-ଗୁଞ୍ଜା-ମସ୍ତକ ସୁମଣ୍ଡନ ।
କଂସ କେଶୀ-ବିନାଶୀ ମୁରଲୀ-ବଦନ
ଅଖଣ୍ଡ-ସୁଖଦାତା ଦୁଃଖ-ବିନାଶନ ।
ସର୍ବହୃଦୟ-ସ୍ଥିତ ମଦନ-ମୋହନ
କାଳସ୍ୱରୂପୀ କାଳ-ଯବନ-ଦହନ ।
କାଳିନ୍ଦୀ-ଘାଟ-ଜଗା କାଳୀୟ-ଦମନ
ଗୋପୀକା-ପଞ୍ଚ-ଶ୍ରେଷ୍ଠ କମଳ-ନୟନ ।
ବୃନ୍ଦାବନ-ଚନ୍ଦ୍ରମା ପ୍ରଭୁ ଜନାର୍ଦ୍ଦନ
ଶରଣ୍ୟ ଶଙ୍କର ହେ ଜଗତ-ପାବନ ।
ଅମୋକ୍ଷନାଶୀ-ମୋକ୍ଷକାରୀ ଭଗବାନ
ଦୀନ-ଆର୍ତ୍ତି-ନାଶନ କରୁଣା-ନିଧାନ ।
ଅର୍ଜ୍ଜୁନବୀର-ସଖା କୁରୁ-ମରଦନ ।
ଗୁରୁ ସର୍ବପ୍ରାଣୀଙ୍କ ହେ ବିଶ୍ୱକେତନ ।
ଅଳପ ବୁଦ୍ଧିରେ ତୁମ୍ଭର ମହିମାକୁ
ଅଛି କାହିଁ ଶକ୍ତି କଳ୍ପନା କରିବାକୁ ।
କଳ୍ପନା କରି ସ୍ତୁତି କରୁଛି ତୁମ୍ଭଙ୍କୁ
କାହୋଳ-ଚଳ୍ପ-ଶାସ୍ତି ନ ଦେବ ଦୋଷକୁ ।
ମୋ ବୁଦ୍ଧି ଅଯୋଗ୍ୟ ଅତ୍ୟନ୍ତ ଦୁର୍ବୋଧକୁ
ମୋ ହୃଦନ୍ତରେ ହରି ଥୋଇଣ ଜ୍ଞାନକୁ ।
ଅଶ୍ୱମେଧାଦି ପଞ୍ଚ ପରବମାନଙ୍କୁ
ପ୍ରକାଶ କର ହେ ଦେବ ମୋ ଜଣାଣକୁ ।
ଭାରତର କଲି ଅଷ୍ଟାଦଶପରବକୁ
ମୋର ବୁଦ୍ଧିରେ ମୁହିଁ ଗୀତ କରିବାକୁ ।
ଏଥିରୁ ଅପରାଧ ହୋଇ ଜନ୍ମିବାକୁ
ଥିବା ପରି ଦୋଷ ନ ଦିଶେ ମୋ ନେତ୍ରକୁ ।
ତୁମ୍ଭର ପ୍ରସାଦରେ ଭାରତ-ସିନ୍ଧୁକୁ
ପାର ପାଇ ପାଇଛି ପ୍ରାନ୍ତ ତୀରକୁ ।
ଶକତି ନାହିଁ ମୋ ତହିଁରୁ ତରିବାକୁ
ଦଅ ତୁମ୍ଭେ ହେ ତୁମ୍ଭ ଆଶ୍ରୟ-ଭେଳାକୁ ।
ପାରି ହୋଇ କରିବି ଭାରତ ସମାପ୍ତି
ଏହି ଇଚ୍ଛା ମନରେ କରିଅଛି ନିତି ।
ମୋ ଚିତ୍ତ ହୋଇଅଛି ଗୋଚର ଶ୍ରୀପତି
ଛାଡ଼ି ତ ନ ପାରଇ ଏ ସଂସାର-ରୀତି ।
କିସ ଗୁଡ଼ାଏ ମୁଁ ବା କରିବି ସୁକୃତି
କରାଅ ତୁମ୍ଭ ପାଦ-ପଦ୍ମେ-ମୋ ଭକତି ।
ଅସାଧୁ ସଙ୍ଗରେ ମୁଁ କରିଣ ପୀରତି
କହେ କୃଷ୍ଣସିଂହ ହରୁଛି ଦିନରାତି ।

—୦—

## ସମ୍ବର୍ତ୍ତ ମରୁତ୍ତ ସମ୍ବାଦ

ଏଥୁଅନ୍ତେ ବଇଶମ୍ପାୟନ ମହର୍ଷି
ଜନ୍ମେଜୟରାଜାଙ୍କ ମୁଖେ ଚାହିଁ ହସି ।
କହିଲେ ଶୁଣ ହେ ହସ୍ତିନା-ନରବର
କ୍ରିୟା କର୍ମ ସାରି ପାଣ୍ଡବେ ଭୀଷ୍ମଙ୍କର ।
ଜ୍ୟେଷ୍ଠପିତା ବଡ଼ ବାବୁଙ୍କୁ ଆଗେ କରି
ଉଠି ଗଙ୍ଗାତୀରେ ପଡ଼ିଲେ ଦଣ୍ଡଧାରୀ ।
ଶ୍ରୀକୃଷ୍ଣ ତାହା ଦେଖି ବୋଇଲେ ଭୀମଙ୍କୁ
ଧର ହେ ଧାଇଁ ଯାଇ ପାଣ୍ଡବରାଜାଙ୍କୁ ।
ଯୁଧିଷ୍ଠିର ରାଜାଙ୍କ ଆରତକୁ ଦେଖି ।
ଭାଇମାନେ ନୟନେ ଲୋତକକୁ ରଖି ।
ଆହା କି ହେଲା ବୋଲି ଉଚେ କରି ଡକା
ବୁହାଇଦେଲେ ଝାଳ ହୋଇଣ ଚାଟକା ।
ଧୃତରାଷ୍ଟ୍ର ଜାଣି ବୋଇଲେ ଯୁଧିଷ୍ଠିର
ଉଠ ଉଠ ଶୋକ ମନରୁ ଦୂର କର ।
କ୍ଷତ୍ରିୟଙ୍କ ଧର୍ମେ ତ ଜାଣିଅଛ ମର୍ମ
ଭୋଗ କର ତା ସୁଖେ କହୁଅଛୁ ମୁହିଁ ।
ମୋର ନାତି ପୁତ୍ରମାନେ ତ ମରିଛନ୍ତି
ତୁମ୍ଭେ କମ୍ପା ହେଉଛ ବିକଳତା-ମତି ।
ବିଦୁରଙ୍କ ବାକ୍ୟ ନ ଶୁଣିବାରୁ ମୋର
ପୁତ୍ରମାନେ ମଲେ ହେ ନୃପତି-ଶେଖର ।
ଦୁର୍ଯ୍ୟୋଧନ ଯେ ଦୁଷ୍ଟବୁଦ୍ଧି ଆଚରିଲା
ତୁମ୍ଭର ସଙ୍ଗେ କଳି କରି ଯୁଦ୍ଧେ ମଲା ।
ବିଦୁର ବୋଇଲେ ମୁଁ ହୋଇଥିଲେ ରାଜା
ନ ବାଜନ୍ତା ଜଗତେ ମୋ ଅକୀର୍ତ୍ତି-ବାଜା ।
ତୁମ୍ଭେ କାହିଁ ପାଇଁ ମାରନ୍ତ ମୋ ପୁତ୍ରଙ୍କୁ
ଭଜ ତ ରହିଥାନ୍ତ ମୋର ବଚନକୁ ।
ଧୃତରାଷ୍ଟ୍ର ଏକା କହନ୍ତେ ଯୁଧିଷ୍ଠିର
ଶୋକ ସଙ୍କାଶୁଁ କିଛି ନ ଦେଲେ ଉତ୍ତର ।
ଏହିକାଳେ ଶ୍ରୀକୃଷ୍ଣ ବୋଇଲେ ପାଣ୍ଡବ—
ନରଦେବ ଶୋକରେ ନ ବଳାଅ ଭାବ ।
ଶୋକ ଯେ କରେ ତା ପିତୃଏ-ସୁଖୀ ନୋହି
ମରୁଥାନ୍ତି ଜାଣ ହେ ଦଉବର ହୋଇ ।
ସୋମରେ ଦେବତାଙ୍କ, ଶ୍ରାଦ୍ଧରେ ପିତୃଙ୍କୁ
ଅନ୍ନରେ ଅତିଥିଙ୍କୁ, କାମେ ଦରିଦ୍ରଙ୍କୁ ।
ସନ୍ତୋଷ କରି ଆହେ ନୃପକୁଳରାଣ
ନ ରଖ ଜ୍ଞାତିନାଶେ ଚିତ୍ତରେ ବିଗୁଣ ।
ଭୀଷ୍ମଙ୍କଠାରୁ ତ ଶୁଣିଣ ରାଜଧର୍ମ
ମୂଢ଼ ପରି କମ୍ପାଇ ନନ୍ଦୁଛ କରମ ।
ପିତୃ ପିତାମହ ବୃତ୍ତିକି ଆଶ୍ରେ କରି
ପାଳନା କରି ରାଜ୍ୟ ହୋଇ ଦଣ୍ଡଧାରୀ ।
ଶୋକ କରିଲେ ମଲା ଲୋକଙ୍କୁ ନୟନ
କାହାରି ଦେଖି ନାହିଁ ଶୁଣ ହେ ରାଜନ ।
ଯୁଧିଷ୍ଠିର ବୋଇଲେ ଆହେ ଜନାର୍ଦ୍ଦନ ।
ତୁମ୍ଭର ଅଟେ ମୁହିଁ ଯେରୂପେ ଅଧୀନ ।
ଏହା ତ ହୋଇଅଛି ଗୋଚର ତୁମ୍ଭଙ୍କୁ
ଅନୁଜ୍ଞା କର ମୁହିଁ ଯିବି ଅରଣ୍ୟକୁ ।
କର୍ଣ୍ଣ ଭୀଷ୍ମ ପଞ୍ଚ ମରାଇ ମୁହିଁ ଜ୍ଞାତି
କି ସୁଖ ପାଇବି ଭୋଗ କରି କ୍ଷିତି ।
ବ୍ୟାସ ବୋଇଲେ ହେ ପାଣ୍ଡବ-ନରଈଶ
ହୋଇ ନାହିଁ ତୁମ୍ଭ ଅଜ୍ଞାନ ବୁଦ୍ଧି ନାଶ ।
ଭୀଷ୍ମ ଯେତେ ରୂପରେ କହିଲେ ତଆର
ହେଲା କି ତାହା ତୁମ୍ଭେ ମନରୁ ପାଶୋରି ।
ଦାନ ମୋକ୍ଷ ରାଜଧର୍ମକୁ ତ ଶୁଣିଲ
ତେବେ ହେଲେ ଶୋକରେ ହେଲ କଳବଳ ।
ଈଶ୍ୱର ନିଯୁକତ ଯାହାଙ୍କୁ ଯହିଁରେ
କରିଥାନ୍ତି ତାହା ସେ କରେ ନିରନ୍ତରେ ।
ଯେବେ ପାପକର୍ମା ମଣିଲ ଆପଣାକୁ
ତହିଁକି କହୁଥାଇଁ ଶୁଣ କରମକୁ ।
ଦୁଷ୍କୃତକର୍ମା ହୋଇଛନ୍ତି ଲୋକ ଯେତେ
ଯାଗ କଲେ ତରନ୍ତି ଜାଣ ମହାମତେ ।
ଯାଗବଳରେଟି ଅଧିକ ଦେବେ ହୋଇ
ଅସୁରଙ୍କୁ ଜିଣି ଭୁଞ୍ଜିଲେ ସ୍ୱର୍ଗ-ଭୂଇଁ ।
ରାଜସୂୟ ଅଶ୍ୱମେଧ ମନୁଷ୍ୟମେଧ
ଯାଗମାନ କର ନୃପତି ଯହିଁ ସଧ ।
ନୋହିଲେ ଅଶ୍ୱମେଧ ରାମଚନ୍ଦ୍ରପରି
କରି ତୁଅ ପାପରାଶିରୁ ନୃପ ପାରି ।
ଯୁଧିଷ୍ଠିର ବୋଇଲେ କରିବି ଅଶ୍ୱମେଧ
ଯା ପୁଚ୍ଛିବି ତା କହି କର ମୋତେ ବୋଧ ।
ରାଜାମାନେ ତ କୁରୁପାଣ୍ଡବ-ଯୁଦ୍ଧରେ
ସାଥୀ ହୋଇ ବସିଲେ ଯମଙ୍କ ସାଥିରେ ।

କାଳକେ ଏବେ ହୋଇଛନ୍ତି ରାଜା
ତାହାଙ୍କୁ କର ନମାଟିବ ମୋର ମଜ୍ଜା ।
ହୋଇଅଛୁ ଏଥିକି ଆହେ ଋଷି-ଗଣ
କି ଉପାୟ ଅଛୁ ତା କର ପରକାଶ ।
ଦୁର୍ଯ୍ୟୋଧନର ଘରେ ଯେତେକ କଉଡ଼ି
ଥିଲା ତା ପୁଛେ ବାଣ୍ଟୁ ବାଣ୍ଟୁ ଗଲା ଉଡ଼ି ।
ଅଶ୍ୱମେଧ ପୃଥ୍ୱୀ ଦକ୍ଷିଣା କିବା ଦେବ ।
ବୋଲି ଶଙ୍କ କରୁଅଛୁ ହେ ବ୍ୟାସଦେବ ।
ମୁଁ ତ ମଣ୍ଡି ପ୍ରତିନିଧିରେ ଆନ ଦାନ
ନ ଦେବ ହେବ କେଉଁ ଯାଗ ତପେ ଧନ ।
ବ୍ୟାସ ବୋଇଲେ ହୋଇ ପୂର୍ବେ ଦ୍ୱିଜଜନ
ମରୁତ୍ତଙ୍କ ଯାଗୁ ପାଆନ୍ତେ ବହୁଧନ ।
ହିମାଳୟ-ତଟେ ପକାଇ ଅଧେ ଗଲେ
ଅଧେ ନେଇ ଘରତେ ରକ୍ଷିଣ ଖାଇଲେ ।
ଏବେ ହେ ତୁମ୍ଭେ ସେହି ଧନଯାକ ଆଣି
ଯାଗ ଆରମ୍ଭ କର ପାଣ୍ଡବ-ନୃମଣି ।
ଯୁଧିଷ୍ଠି ବୋଇଲେ ମରୁତ୍ତ ଏତେ ଧନ
କିରୂପେ ଅର୍ଜିଲେ ତା ମୋ ଆଗେ ବଖାଣ ।
ବ୍ୟାସ ବୋଇଲେ ହେ ସତ୍ୟେରେ ସୂର୍ଯ୍ୟସୁତ
ମନୁରାଜ ହୋଇଣ ପାଳିଲେ ଜଗତ ।
ମନୁଙ୍କର ପ୍ରସନ୍ଧି ନାମେ ପୁତ୍ର ହେଲେ
ପ୍ରସନ୍ଧିଙ୍କଠାରୁ ଯେ କ୍ଷୁପ ଉଦ୍ଭବିଲେ ।
କ୍ଷୁପଙ୍କର ହୋଇଲେ ଇକ୍ଷ୍ୱାକୁ କୁମର
ଶଏ ପୁତ୍ର ହେଲେ ଇକ୍ଷ୍ୱାକୁ ନୃପଙ୍କର ।
ଶଏ ପୁତ୍ରଙ୍କରେ ଜ୍ୟେଷ୍ଠ ପୁତ୍ର ବିଂଶ
ହୋଇବାରୁ ହେଲେ ସେ ରାଜ୍ୟ ନରଈଶ ।
ବିଂଶଙ୍କରେ ବିବିଂଶ ନାମେ ପୁତ୍ର ହେଲେ
ବିବିଂଶ ପଞ୍ଚଦଶ ପୁତ୍ର ଜାତ କଲେ ।
ଏ ପନ୍ଦର ପୁତ୍ରରେ ଖନୀନେତ୍ର ଜ୍ୟେଷ୍ଠ
ହେବାରୁ ନୃପ ହେଲେ ଜାଣ ନୃପ-ଶ୍ରେଷ୍ଠ ।
ଖନୀନେତ୍ର ବଳରେ କଲେହେଁ ଶାସନ
ନୋହିଲେ ତାଙ୍କ ବଶୀଭୂତ ପ୍ରଜାଜନ ।
ଏହା ଜାଣିଣ ରାଜ୍ୟଲୋକେ ମେଳ ହୋଇ
କଲେ ତାଙ୍କ ଧ୍ୱଂସକୁ ଥାଇଁ ନରସାଇଁ ।
ଏହି ସକାଶୁଁ ଖନୀନେତ୍ର ପାଇ ପୀଡ଼ା
ବନମଧ୍ୟେ ପଶିଲେ ହୃଦେ ଧରି କ୍ରୀଡ଼ା ।
ଖନୀନେତ୍ର ପୁତ୍ର ସୁବର୍ଚ୍ଚା ଧରମରେ
ବୃଦ୍ଧି ରଖି ପାଳିଲେ ପ୍ରଜା ସୁମନରେ ।
ସୁବର୍ଚ୍ଚାଙ୍କ ପାଳନେ ପ୍ରଜା ସୁଖୀ ହୋଇ
ତାଙ୍କ ଗୁଣ ବର୍ଣ୍ଣି ଗାଇଲେ ନିତିଆଇ ।
ଧର୍ମେ ପ୍ରବର୍ତ୍ତିଲେ ସୁବର୍ଚ୍ଚା ଲୋକ ମନ
ଶିଖାଇବା ଆଶ୍ରୟେ ଊଣ କରି ଧନ ।
ବିଅନ୍ତେ ଅତି ତୋଷେ ଭଣ୍ଡାରୁଟି ଉଣା
ଧନକୁ ଧନ ହେଲା ଜାଣ ମହାମନା ।
ଶତ୍ରୁ ନୃପେ କ୍ଷୀଣକୋଷ ହେବାର ଜାଣି
ବେଢ଼ିଲେ ତାଙ୍କ ରାଜ୍ୟ ଘେନି ସୈନ୍ୟଶ୍ରେଣୀ ।
ଧାର୍ମିକ ହେବାରୁ ତାହାଙ୍କୁ ଶତ୍ରୁକୁଳ
ମାରି ନ ପାରିଲେ ହେ ପାଣ୍ଡବ-ନୃପାଳ ।
ସୁବର୍ଚ୍ଚାରାଜା ଶତ୍ରୁବଳେ ପୀଡ଼ା ପାଇ
ମୁଖେ ହାତ ଦେଇ ଫୁଙ୍କିଲେ ନିତିଆଇ ।
ସେ ସକାଶୁଁ ଜାତ ହୋଇଲେ ସୈନ୍ୟପନ୍ତ
ସୁବର୍ଚ୍ଚାଙ୍କ ଶତ୍ରୁକୁ ପୀଡ଼ା ଦେଲେ ଅତ ।
କର ବଜାଇବାରୁ କରନ୍ଧମ ନାମ
ବହିଲେ ସେ ନୃପତି କୁଳଙ୍କ ଉତ୍ତମ ।
ତାହାଙ୍କ ପୁତ୍ର ଅବିକ୍ଷିତ ବୋଲାଇଲେ
ବଳରେ ସେ ପର ମଣ୍ଡଳ ବଶ କଲେ ।
ଶଏ ଅଶ୍ୱମେଧକୁ କଲେ ନରପାଳ
ପାଇକରି ଅଙ୍ଗିରଋଷିଙ୍କର ବଳ ।
ଅବିକ୍ଷିତଙ୍କର ମରୁତ୍ତ ପୁତ୍ର ହେଲେ
ଅୟୁତ ନାଗବଳ ଦେହରେ ବହିଲେ ।
ନୃପକୁଳ ବଶ କରିଣ ହିମାଳୟ—
ପାଶେ ଯାଗ କରିବ କରିଣ ହୃଦୟ ।
ସୁନାରେ ସବୁଯାକ ପାତ୍ର କରାଇଲେ
ଏତେ କେତେ ବୋଲି ମୁଁ ନ ପାରିବି ଭଲେ
ଯୁଧିଷ୍ଠିର ବୋଇଲେ ମରୁତ୍ତଙ୍କୁ ସୁନା
କିରୂପରେ ମିଳିଲା କହ ମହାମନା ।
ଆମ୍ଭେ ସେ ସୁନାପାତ୍ର ଆଣିବାକୁ ରାହା
କଥାରେ ବତାଅ ହେ ଋଷିକୁଳ-ନାହା ।
ବ୍ୟାସ ବୋଇଲେ ଯେମନ୍ତ ଦକ୍ଷଙ୍କର ।
ସୁରଅସୁର ପୁତ୍ରେ ସ୍ପର୍ଦ୍ଧୀ ପରସ୍ପର ।
ତେମନ୍ତେ ଅଙ୍ଗିର ସମ୍ବର୍ତ୍ତ ବୃହସ୍ପତି
କୁମରେ ହୋଇଲେ ହେ ଜାଣ ନରପତି ।

ବୃହସ୍ପତି ସମ୍ବର୍ତ୍ତ ଦୁହିଁଙ୍କର ଦ୍ୱନ୍ଦ୍ୱ
ହୁଅନ୍ତେ ବୃହସ୍ପତି ଜଳେ ତାଙ୍କ ମନ ।
ଏଣୁ ସକାଶରୁ ସମ୍ବର୍ତ୍ତ ମହାଋଷି
ବୃହସ୍ପତିଙ୍କ ଡରେ ହୋଇଲେ ବନବାସୀ ।
ଯେତେ ଧନ ଘରେ ଅରଜ ରଖିଥିଲେ
ତାହା ମଧ୍ୟ ରାଜନ ଛାଡ଼ି କରି ଗଲେ ।
ଅସୁରଙ୍କୁ ଜିଣିଣ ଶଚୀଙ୍କ ରମଣ
କଲେ ବୃହସ୍ପତିଙ୍କି ଗୁରୁ ନରସ୍ୱଣ ।
କାରନ୍ଧମ ନୃପଙ୍କ ଅଙ୍ଗିର ତ ଗୁରୁ
ଏ ସମ୍ବନ୍ଧେ ବୋଇଲେ ବୃହସ୍ପତି ଗୁରୁ ।
କାରନ୍ଧମ ତନ୍ତ୍ରଧ୍ୱନରୁ ମଧ୍ୟ ଧନ ।
ଜାତ ହୋଇଥିଲେ ହେ ପଣ୍ଡ୍ରାବରାଜନ ।
ସେ ଧନ ଭଣ୍ଡାରେ ପୁରୁଷାନୁକ୍ରମରେ
ରଖାଇଥିଲେ ମନ୍ତ୍ରୀମାନେ ଯତନରେ ।
ମରୁତ୍ତରାଜା ଯେବେ ରାଜ୍ୟେ ହେଲେ ରାଜା
ସେ ଧନକୁ ପାଇ ଆନନ୍ଦ କରି ମଜ୍ଜା ।
ଇନ୍ଦ୍ରଙ୍କ ତୁଲେ ବାଦ କରି ଯାଗ କଲେ
ତା ଜାଣି ଇନ୍ଦ୍ର ବୃହସ୍ପତିଙ୍କି କହିଲେ ।
ଆଜଠାରୁ ତୁମ୍ଭେ ମରୁତ୍ତ ପୁରୋହିତ
ନୋହିବ ଯେବେ ଇଚ୍ଛୁଅଛ ମୋର ହିତ ।
ନୋହିଲେ ମୋତେ ଛାଡ଼ି ଭଜ ମରୁତ୍ତଙ୍କୁ
ଆଉ କସ ଗୁଡ଼ାଏ କହିବି ତୁମ୍ଭଙ୍କୁ ।
ବୃହସ୍ପତି କହିଲେ ତୁମ୍ଭେ ଦେବେଶ୍ୱର
ତୁମ୍ଭଙ୍କ ଗୁରୁ ଆଜ୍ଞା କରିବ କି ନର ।
ସତ୍ୟ କରି କହୁଛି ଆଜୁଁ ନରସାଇଁ
ସ୍ରୁବ ନ ଧରିବ ତା ଯୋଗାଗୁର୍ଯ୍ୟ ହୋଇ ।
କହନ୍ତେ ବୃହସ୍ପତି ଏରୂପେ ବଚନ
ପ୍ରଶଂସିଣ ଗଲେ ତାହାଙ୍କୁ ମଘବାନ ।
ବୃହସ୍ପତି ଯେ ସତ୍ୟ କରିବାର ଶୁଣି
ମନରେ ଦୁଃଖ କରି ମରୁତ୍ତନୃମଣି ।
ମହତ ଯାଗ ପୂର୍ବୁଁ ଆରମ୍ଭିତ ଗଲେ
ଯାଗ ପାଇଁ ବୃହସ୍ପତିଙ୍କ ପାଶେ ଗଲେ
ବୋଇଲେ ଆହେ ଗୁରୁ ତୁମ୍ଭ ସାହା ପାଇ
ଯାଗର ସାମଗ୍ରୀ ଅଛୁ ମୁଁ ଜୁଆଇ ।
ତୁମ୍ଭେ ଆସି ଏବେ କରାଅ ମୋତେ ଯାଗ
ନୋହିଲେ ନିନ୍ଦା ପାଇବଟି ମହାଭାଗ ।
ବୃହସ୍ପତି ବୋଇଲେ ଇନ୍ଦ୍ର ମୋତେ ମନା
କରିଛନ୍ତି ନ କରାଇବ ମହାମନା ।
ତୁମ୍ଭଙ୍କୁ ଯାଇ କର ଯାଗ ମୂର୍ଖ ଜାଣ ।
ଯାଗରେ ଇଚ୍ଛା ଥିଲେ ଆନ ଦ୍ୱିଜେ ଆଣ ।
ଏହା ଶୁଣି ମରୁତ୍ତ ମହାଲଜ ପାଇ
ବାହୁଡ଼ନ୍ତେ ଦେଖି ନାରଦ ଋଷିସାଇଁ ।
ତାଙ୍କ ପାଦ ଦୁଇରେ କରି ନମସ୍କାର
କର ଦୁଇ ଯୋଡ଼ି ରହିଲେ ନୃପବର ।
ନାରଦ ତାହାଙ୍କ ହୃଦୟ ସ୍ଥିତି ଜାଣି
ପୁଚ୍ଛିଲେ ଦୁଃଖ କିମ୍ପା କର ନୃପମଣି ।
ତାହା ମୋହର ଆଗେ କର ହେ ପ୍ରକାଶ
କରିବି ମୁଁ ଜାଣ ତୁମ୍ଭର ଦୁଃଖ ନାଶ ।
ଏହା ଶୁଣିକରି ମରୁତ୍ତ ନରସାଇଁ
ବୃହସ୍ପତି ବୋଲବା କହି ଦୁଃଖୀ ହୋଇ ।
ବଚନରେ ବୋଇଲେ ଛାଡ଼ିବି ମୁଁ ପ୍ରାଣ
ଯେବେ ମୋତେ ଛାଡ଼ିବେ ଗୁରୁ ଋଷିଗଣ ।
ଏ ବାହାରେ କହିଲେ ଗୁରୁ ଯେବେ ମୋତେ
ଛାଡ଼ିଲେକ ନିଶ୍ଚେ ମରିବି ମହାମତେ ।
ନାରଦ ବୋଇଲେ ହେ ଏ ଛାର କଥାକୁ ।
ଛାଡ଼ିବ କିମ୍ପା ନୃପବର ହେ ପ୍ରାଣକୁ ।
ସମ୍ବର୍ତ୍ତଋଷି ସବୁଦିଗେ ବୁଲୁଛନ୍ତି
ତାହାଙ୍କୁ ଆଣି ଯାଗ କର ହେ ନୃପତି ।
ମରୁତ୍ତ ବୋଇଲେ ହେ ଅଛନ୍ତି ସମ୍ବର୍ତ୍ତ
କାହିଁ ମୋତେ କହ ନାରଦ ତପୋବନ୍ତ ।
ସମ୍ବର୍ତ୍ତ ଯେବେ ଯାଗ କରିବାକୁ ନାହିଁ-
କରିବେ ନେବେ ଜାଣ ମରିବଟି ମୁହିଁ ।
ନାରଦ ବୋଇଲେ ହେ ସମ୍ବର୍ତ୍ତ ଉନ୍ମତ୍ତ
ହୋଇ ବୁଲୁଅଛନ୍ତି ଜାଣ ଏ ଜଗତ ।
କାଶୀକ୍ଷେତ୍ର ଦୁଆରେ ମଡ଼ାଟାଏ ଥୋଇ
ବସ ଯାଇ ତୁମ୍ଭେ ମୋ ବୋଲ ନରସାଇଁ ।
ମଡ଼ାକୁ ଦେଖି ଫେରି ଲେଉଟି ଯେ ଯିବ
ତାକୁ ତୁମ୍ଭେ ସମ୍ବର୍ତ୍ତ ବୋଲିଣ ଜାଣିବ ।
ତାହାଙ୍କ ପଛେ ପଛେ ନ କହିଣ କଥା
ଗୋଡ଼ାଇବ ତୁମ୍ଭେ ମରୁତ୍ତ ମହାରଥୀ ।
ଏକାନ୍ତରେ ତାହାଙ୍କୁ ବହୁତ ବିନୟୀ
ହୋଇ କରି କହିବ ସାବଧାନ ହୋଇ ।

ସେ ଯେବେ ପୁଚ୍ଛିବେ କହିଲା କେ ତୁମ୍ଭଙ୍କୁ
ତେବେ ତୁମ୍ଭେ ଚାହାଁଇ କହିବ ଆମ୍ଭଙ୍କୁ ।
ଯେବେ ବା ବୋଲିବେ ନାରଦ କାହିଁ ଗଲେ
ତେବେ ବୋଲିବ ସେହୁ ଅଗ୍ନିରେ ପଶିଲେ ।
ଏହା ଶୁଣି ମରୁତ୍ତ ମହାତୋଷ ହୋଇ
ଗଲେ କାଶୀକ୍ଷେତ୍ରେ ପାଣ୍ଡବ-ନରସାଇଁ ।
ନାରଦଙ୍କ କହିବା ପ୍ରାୟେ କାଶୀ-ଦ୍ୱାରେ
ମଡ଼ାଟି ରଖିଲେ ମରୁତ୍ତ ନିର୍ଭୟରେ ।
ସମ୍ବର୍ତ୍ତ ସେହିକାଳେ ସେ କାଶୀ-ଦ୍ୱାରକୁ
ଆସନ୍ତେ ଦେଖିଲେ ସେ ଦୁଆରେ ମଡ଼ାକୁ ।
ସେ ସକାଶୁ ସମ୍ବର୍ତ୍ତ ବିମୁଖ ହୋଇଲେ
ପଛକୁ ମୁଖ କରି ଲେଉଟିଣ ଗଲେ ।
ସମ୍ବର୍ତ୍ତ ଲେଉଟିବା ଦେଖିଣ ନୃପତି
ନାରଦ ବୋଲି ମାନ ଧାଇଁଲେ ଝଟତି ।
ତା ପଛେ ପଛେ ହେ ଯୁଧିଷ୍ଠିର ନୃପ
ଘୁଞ୍ଚ ଦେଇ କରିଣ ହୃଦୟରୁ ତାପ ।
ମରୁତ୍ତ ଆସିବାର ଜାଣି ନୃପବର
ପକାଇଲେ ଖଙ୍କାର ତାହାଙ୍କୁ ଖଙ୍କାର ।
ଏହିରୂପେ ନୃପ ସମ୍ବର୍ତ୍ତ ଋଷି ପାଶ
ନ ଛାଡ଼ିଲେ ଯେସନ ନାରଦ ଆଦେଶ ।
ସମ୍ବର୍ତ୍ତ ଋଷି ବୁଲି ଶ୍ରାନ୍ତ ହୋଇଥିଲେ
ହାଲିଆ ହୋଇ ବଟ ଛାଇରେ ବସିଲେ ।
ମରୁତ୍ତେ ବୋଇଲେ ତୁମ୍ଭଙ୍କୁ କେ ଚାହାଁଇ
ମୋତେ ଦେଲା ତା କହ ଏବେ ନରସାଇଁ ।
କପଟ କରି ଯେବେ କହିବ ମୋ ଆଗେ
ଫାଟି ମୁଣ୍ଡ ଯାଇ ପଡ଼ିବ ଯମ-ଭାଗେ ।
ମରୁତ୍ତ ବୋଇଲେ ହେ କହିଲେ ନାରଦ
ତୁମ୍ଭେ ତ ମୋର ଗୁରୁ ପୂଜି ହୁଅ ମୋଦ ।
ସମ୍ବର୍ତ୍ତ ବୋଇଲେ ହେ ନାରଦ କାହିଁ ଗଲେ
ଜାଣିଥିଲେ ନୃପ ହେ କହ ତାହା ଭଲେ ।
ମରୁତ୍ତ ବୋଇଲେ ତୁମ୍ଭର ବାର୍ତ୍ତା କହି
ଅଗ୍ନିରେ ପଶିଲେ ନାରଦ-ଋଷିସାଇଁ ।
ଏଥୁଅନ୍ତେ ସମ୍ବର୍ତ୍ତ ନିଷ୍ଠୁର ବଚନେ
ପଳା ବୋଲି କରି କହିଲେ କ୍ରୋଧ ମନେ ।
ମୂର୍ଖ ତ ହୋଇଅଛୁ ବାତରୋଗ ବାଇ
ତୁମ୍ଭେ କମ୍ପା ଆସିଛ ମୋର ସଙ୍ଗେ ଧାଇଁ ।
ଜାଣୁଛୁ ତୁମ୍ଭେ ଚିତ୍ତେ ଯାଗ ପାଇଁ ଲୋଡ଼ା
କରୁଛ ମୋତେ ହୋଇ ଆଗେ ହାତ ଯୋଡ଼ା ।
ମୋର ଭାଇ ବୃହସ୍ପତିଙ୍କି ଘେନ ଆସ
କରିବା ଯାଗ ଆଶା ଥିଲେ ନର-ଈଶ ।
ବୃହସ୍ପତିଙ୍କର ଅନୁଜ୍ଞା ବିନା ମୁହିଁ
ଜାଣ ଯାଗ ତୁମ୍ଭଙ୍କୁ କରାଇବି ନାହିଁ ।
ମରୁତ୍ତ ବୋଇଲେ ମୁଁ ବୃହସ୍ପତିଠାକୁ
ଯାଇକରି ଡାକିଲି ଯାଗ କରିବାକୁ ।
ସେହୁ କହିଲେ ଇନ୍ଦ୍ର ନିଷେଧିଲେ ମୋତେ ।
ଆନ ଦ୍ୱିଜେ ଯାଗ କର ହେ ମହାମତେ ।
ଏରୂପେ ତାଙ୍କଠାରୁ ଶୁଣି ଦୁଃଖ କଲି
ମୁଣ୍ଡ ପୋତି ଗୃହେ ବାହୁଡ଼ି ଆସୁଥିଲି ।
ବାଟେ ମୋତେ ଦେଖିଣ କହିଲେ ନାରଦ
ତୁମ୍ଭର ଚରିତକୁ କହି ଅତି ମୋଦ ।
ଏହି ଘେନ ମୁଁ ଆସିଅଛୁ ତୁମ୍ଭ ଠାକୁ
ଆସ ଋଷି ହେ ଯାଗ କରାଅ ଆମ୍ଭଙ୍କୁ ।
ସମ୍ବର୍ତ୍ତ ବୋଇଲେ ମୁଁ କରାଇଲେ ଯାଗ
ଆସିବେ ବୃହସ୍ପତି ଇନ୍ଦ୍ର ବହି ରାଗ ।
ତାହାକୁ ସହି ତୁମ୍ଭେ ପାରିବ କି ରହି
କହ ସତ୍ୟ କରି ମରୁତ୍ତ ନରସାଇଁ ।
ମରୁତ୍ତ ବୋଇଲେ ମୁଁ କରୁଛି ଏ ବ୍ରତ
ଜୀବନ ଗଲେ ନ ଛାଡ଼ିବି ତୁମ୍ଭ ସାଥ ।
ସମ୍ବର୍ତ୍ତ ବୋଇଲେ ହେ ଇନ୍ଦ୍ରଙ୍କ ସମାନ
କରିବି କରାଇଣ ଯାଗ ମୁଁ ରାଜନ ।
ଯେଉଁଠାରେ ଧନ ରତନ ଅଛି ରହି
ସେ ସ୍ଥାନ କହିଦେବି ଆଣ ନରସାଇଁ ।
ବୃହସ୍ପତି ଇନ୍ଦ୍ରଙ୍କୁ ନାହିଁ ମୋର ଶଙ୍କା
ମୋହର ମନ୍ତ୍ରଭୟେ ପାଡ଼ିବେ ସେ ଡକା ।
ହିମାଳୟ ପାଖରେ ମୁଞ୍ଜବାନ ଗିରି
ଅଛି, ତହିଁ ଅଛନ୍ତି ପାର୍ବତୀ-ହରାଶ୍ରୀ ।
ରୁଦ୍ର ସାଧ୍ୟ ବିଶ୍ୱ ବରୁଣ ଯେ ମରୁତ
ଗନ୍ଧର୍ବ ଯମ ଯକ୍ଷ ଦେବର୍ଷି ଆଦିତ୍ୟ ।
ଅପସରାଗଣ ଯେ ଅଶ୍ୱିନୀକୁମାର ।
ଯାତୁଧାନ ଭୂତ ପିଶାଚ ସେ କୁବେର ।
ଏମାନେ ଯେହି ମୁଞ୍ଜବାନ ଗିରି ପାଶେ
ରହି ମହାଦେବଙ୍କୁ ସ୍ତବନ୍ତି ସନ୍ତୋଷେ ।

ଜରା କ୍ଷୁଧା ତୃଷା ମୃତ୍ୟୁରେ ବିବର୍ଜିତ
ହୋଇଅଛି ସେ ସ୍ଥାନ ଜାଣ ହେ ମରୁତ୍ତ ।
ସେ ପର୍ବତ ପୃଷ୍ଠପଟରେ ଅଛି ସୁନା ।
ଜଗାଇଛନ୍ତି ତା କୁବେର ମହାମନା ।
ରୁଦ୍ର ଶିତିକଣ୍ଠ ସୁରୂପ ନୈକପଦ
କପର୍ଦ୍ଦୀ ସୁବର୍ଚ୍ଚ ହର୍ଯ୍ୟକ୍ଷ ଯେ ବରଦ ।
ପୁଷ୍ପଦନ୍ତ ଉଗ୍ରତ୍ର୍ୟକ୍ଷ ଅବ୍ୟକ୍ତଦେଶ
ବାମନ ଶିବ ସ୍ଥାଣୁ ପ୍ରଭୁ ହରିକେଶ ।
ମୁଣ୍ଡ କୃଶ ସୁତୀର୍ଥୋତ୍ତର ଭୂତାଧର
ହଲ୍ୱଣ୍ଡ ଇଂହ ସୋମବକ୍ତ୍ର ଈଶ୍ୱର ।
ସ୍ଥବିର ଦେବଦେବ ସର୍ବଦଣ୍ଡଧର
ଉଷ୍ଣୀଶୀ ବିଧାତା ଯେ ସୁବକ୍ତ୍ର ଶଙ୍କର ।
ସଦ୍‌ବୃଦ୍ଧ ଧନ୍ୱୀ ତପୋଧର ମୃଗ ବ୍ୟାଧ
ହିରଣ୍ୟବାହୁ ଉଗ୍ର ଲୋକପାଳ ସିଦ୍ଧ ।
ସିଦ୍ଧମନ୍ତ୍ର କୃଷ୍ଣ ଗିରିଶ ସହସ୍ରାକ୍ଷ
ପ୍ରଶାନ୍ତ ମାତୃଭକ୍ତ ଭାର୍ଗବ ଧାତ୍ରାକ୍ଷ ।
ସେନାନୀ ଯତି ବୃଷ ମଞ୍ଚ ପଶୁପତି
ଅଜ ବୈଶ୍ୱାନରମୁଖ ଯେ ଦ୍ୱିଜପତି ।
ତୀକ୍ଷ୍ଣଦଂଷ୍ଟ୍ର ତୀକ୍ଷ୍ଣସୁତେଜା କୃଷ୍ଣନେତ୍ର
କପାଳମାଳୀ ପୃଥୁ ଧାତ୍ର ବସୁରତ ।
ନୃଶଂସ ମୃଦୁ ମହାଦେବ ବିଲୋହିତ
ବଂହୁଶାଳୀ ସୁବର୍ଣ୍ଣମୁକୁଟ ତ୍ରିନେତ୍ର ।
ଅନଘ ବିରୂପାକ୍ଷ କ୍ରୋଧୀ ଦଣ୍ଡୀବର
ଉଗ୍ରତପା ଅକ୍ରୂରକର୍ମା ପୃଥୁହର ।
ମହାଯୋଗୀ ପିନାକୀ ଦଂଷ୍ଟ୍ରୀ ମହେଶ୍ୱର ।
ସର୍ବଭୂତପ୍ରଭବ ଶୂର ବିଶ୍ୱେଶ୍ୱର ।
ସ୍ଥାଣୁ ବହୁରୂପ ଯେ ସହସ୍ର ଚରଣ
ବରଦ ଭୁବନଈଶ୍ୱର ତ୍ରିନୟନ ।
ଦଶଭୁଜ ସହସ୍ରଶିର ତ୍ରିପୁରଘ୍ନ ।
ପାର୍ବତୀ-ପତି ତ୍ରିଲୋକେଶ ମହେଶାନ ।
ତ୍ରିଶୂଳହସ୍ତ ବୃଷଧ୍ୱଜ ଗୌରୀ-ଈଶ
ବୋଲି କରି ନମିବ ଶିବ-ପାଦଦେଶ ।
ଶିବ ଅନୁଜ୍ଞାରେ କୁବେରଦେବ ଧନ ।
ତା ଆଣିବ ସେଠାରୁ ଯାଅ ହେ ରାଜନ ।
ଏହିରୂପେ ସମ୍ବର୍ତ୍ତ ବ୍ୟକ୍ତେ ଅନୁଜ୍ଞାକୁ
ମରୁତ୍ତ ଗଲେ ମୁଞ୍ଜବାନ ପର୍ବତକୁ ।

ସମ୍ବର୍ତ୍ତଙ୍କ କହିବା ପରି ସ୍ତୁତି କଲେ
ଶିବଙ୍କ ଅନୁଜ୍ଞାରେ ସେ ଧନ ଆଣିଲେ ।
ନିଜରାଜ୍ୟ ଶିଳ୍ପୀମାନଙ୍କୁ ଡକାଇଲେ
ସବୁ ଯଜ୍ଞପାତ୍ରମାନଙ୍କୁ କରାଇଲେ ।
ବୃହସ୍ପତି ଶୁଣିଣ ମରୁତ୍ତ ସମ୍ପତ୍ତି
କୃଶ କଲେ ଶରୀର ଚିନ୍ତା କରି ମତି ।
ବଚନେ ବୋଇଲେ ସମ୍ବର୍ତ୍ତ ଭାଇ ମୋର
ହେଲା ତ ଧନବନ୍ତ ଗୁଡ଼ ମୋର ପର ।
ବୃହସ୍ପତିଙ୍କର ଯେ ଦୁଃଖ ମନ ଜାଣି
ପୁଚ୍ଛିଲେ ତାଙ୍କ ପାଶେ ଆସି ବଜ୍ରପାଣି ।
ଆମ୍ଭେମାନେ ଶିଷ୍ୟ ହୋଇଣ ଥିବାଠାରେ
ଦେହ-ତରୁ ନ କାଟ ଚିନ୍ତା-କୁଠାରରେ ।
ଦେବତାଏ ତୁମ୍ଭଙ୍କୁ ନତ ଦଣ୍ଡବତ
କରୁଛନ୍ତି କି ହେ ଅଙ୍ଗିରାଙ୍କ ସୁତ ।
ବୃହସ୍ପତି ବୋଇଲେ ତୁମ୍ଭ ସୁପ୍ରୀତରେ
ଦେବତାଏ ମୋତେ ଖଟନ୍ତି ନିରନ୍ତରେ ।
ଇନ୍ଦ୍ର ବୋଇଲେ ହେ କାହିଁକି ଦେହ କୃଶ ।
କରିଛ ତାହା ତୁମ୍ଭେ କରି ତା ପ୍ରକାଶ ।
ବୃହସ୍ପତି ବୋଇଲେ ମୋ ଭାଇ ସମ୍ବର୍ତ୍ତ
ଯାଗ କରାଇବ ହେ ନୃପତି ମରୁତ୍ତ ।
ବହୁ ଧନମାନ ଶିବଙ୍କଠାରୁ ଆଣି—
ଛନ୍ତି ମୁହିଁ ମଣିଲି ମରୁତ୍ତ ନୃମଣି ।
ବସ କଲେ ସମ୍ବର୍ତ୍ତ ମରୁତ୍ତଙ୍କ ଯାଗ
ନ କରିବେ ତାହା କହ ତ ମହାଭାଗ ।
ଇନ୍ଦ୍ର ବୋଇଲେ ଅହେ ଜରା ମୃତ୍ୟୁ ଦୁଇ
ଜିଣିଛ ତୁମ୍ଭେ ଆମ୍ଭ ପୁରୋହିତ ହୋଇ ।
ସମ୍ବର୍ତ୍ତକୁ କମ୍ପା କହୁଛ କରି ଭୟ
ଏ ବଚନ ତ ହେଉନାହିଁ ମୋର ପ୍ରିୟ ।
ବୃହସ୍ପତି ବୋଇଲେ ଭାଇର ସମୃଦ୍ଧି
ସହିବାକୁ ମୋହର ହେଉନାହିଁ ବୁଦ୍ଧି ।
ଇନ୍ଦ୍ର ଏହା ଶୁଣିଣ ଅଗ୍ନିଙ୍କି ଡାକଲେ
ମରୁତ୍ତଙ୍କୁ ଏହା କହିବ ସେ କହିଲେ ।
ବୃହସ୍ପତି ତୁମ୍ଭଙ୍କୁ କରାଇବେ ଯାଗ
ଅମର ହୋଇଣ କରିବ ସ୍ୱର୍ଗଭୋଗ ।
ଅଗ୍ନି ବୋଇଲେ ମୁଁ ତୁମ୍ଭର ବଚନକୁ
ମାନି କରି ଯାଉଛି ମରୁତ୍ତଙ୍କଠାକୁ ।

କହିଲାପରେ ତୁମ୍ଭେ ତାଙ୍କୁ କହିବଇଁ
ତୁମ୍ଭ କଥା କରୁପେ କରିବ ମୁଁ ନାହିଁ ।
ଆହେ ଯୁଧିଷ୍ଠିର ନରପତି-ଶେଖର
ଏହିରୂପେ ଇନ୍ଦ୍ରଙ୍କୁ କହି ବୈଶ୍ୱାନର ।
ମରୁତ୍ତଙ୍କ ସମୀପକୁ ବାହାର ହେଲେ
ମରୁତ୍ତ ଜାଣି ସମ୍ବର୍ତ୍ତଙ୍କୁ ତା କହିଲେ ।
ଆସୁଛନ୍ତି ଆମ୍ଭଠାକୁ ଯେ ବୈଶ୍ୱାନର
ପୂଜା କର ତାଙ୍କୁ ସମ୍ବର୍ତ୍ତ ଋଷିବର ।
ଅଗ୍ନି ତାହା ଶୁଣି ବୋଇଲେ ହେ ମରୁତ୍ତ
ଆସିଛି ମୁଁ ଇନ୍ଦ୍ରଙ୍କ ହୋଇକରି ଦୂତ ।
ତୁମ୍ଭେ ଦେବା ପାଦ୍ୟ ଆସନକୁ ଯେ ମୁହିଁ
ଘେନଲି କହିବି ଆସିଛି ଯହିଁ ପାଇଁ ।
ମରୁତ୍ତ ବୋଇଲେ ମୋଠାରେ ଇନ୍ଦ୍ର ସୁଖ
କରୁଛନ୍ତି ଟିକି ହେ କହ ଦେବଶିଖ ।
ଅଗ୍ନି ବୋଇଲେ ହେ ସୁଖ ତୁମ୍ଭଠାରେ
କରୁଛନ୍ତି ଇନ୍ଦ୍ର ଜାଣ ହେ ନିରନ୍ତରେ ।
ମୋତେ ଯା କହିଛନ୍ତି ହୋଇ ଏକମନ
ମୋହଠାରୁ ତାହା ଶୁଣ ହେ ନରଗଣ ।
ବୃହସ୍ପତି ତୁମ୍ଭଙ୍କୁ କରାଇବେ ଯାଗ
ଅମର ହୋଇଣ କରିବ ସ୍ୱର୍ଗ ଭୋଗ ।
ମରୁତ୍ତ ବୋଇଲେ ଦେବଙ୍କ ଗୁରୁ ହୋଇ
କିରୂପେ ମୋତେ ଯାଗ କରାଇବେ ସେହି ।
ଅଗ୍ନି ବୋଇଲେ ହେ ଇନ୍ଦ୍ରଙ୍କର ସମ୍ମତେ
ପୁଣ୍ୟ ଲୋକ ସବୁ ପାଇବ ମହାମତେ ।
ବୋଲି ବୃହସ୍ପତି କରାଅନ୍ତୁ ଯେ ଯାଗ
ନରକୁଳଈଶ ମରୁତ ମହାଭାଗ ।
ସମ୍ବର୍ତ୍ତ ବୋଇଲେ ହେ ଅଗ୍ନି ହେଲି ଭାଇ
ତୁମ୍ଭ କଥା ମରୁତ୍ତ କରିବେ କିପାଇଁ ।
ମହଠୁ ଆଜ ଆଜ ବାହୁଡ଼ ହେ ବେଗ
ନୋହିଲେ ଭସ୍ମ ମୁଁ ତ କରିବଟି ସଗେ ।
ଅଗ୍ନି ତାହା ଶୁଣି ଭୟରେ ଥରହର
ହୋଇ କରି ଯାଇ ଭେଟିଲେ ପୁରନ୍ଦର ।
ଇନ୍ଦ୍ର ତାଙ୍କୁ ଦେଖି ବୋଇଲେ ମରୁତ୍ତଙ୍କୁ
କହିଲଟିକି ତୁମ୍ଭେ ଆମ୍ଭ ବଚନକୁ ।
ବୃହସ୍ପତି ଯାଗ କରାଇବାକୁ ନୃପ
ସ୍ୱୀକାର କଲେଟିକି ଯେ ଗୁଣଜ୍ଞ ଭୂପ ।

ଅଗ୍ନି ବୋଇଲେ ମୁହିଁ ତୁମ୍ଭର ବଚନ
କହନ୍ତେ ନାହିଁ କଲେ ମରୁତ୍ତ ରାଜନ ।
ସମ୍ବର୍ତ୍ତ ଋଷି ମୋହଠାରେ କ୍ରୋଧ ଧରି
ବୋଇଲେ ଯାଅ ଥିଲେ ଦେବି ଦାହ କରି ।
ଇନ୍ଦ୍ର ବୋଇଲେ ହେ ଯାଅ ତ ଆଉ ଥରେ
କହ ମରୁତ୍ତଙ୍କୁ ମୋ କଥାଟି ପ୍ରୀତିରେ ।
ଯେବେ ତୁମ୍ଭ ବୋଲି ନ ଘେନିବେ ସେ ନୃପ
ତେବେ ବଜ୍ରେ ହେବ ମରୁତ୍ତ ପଦ ଲୋପ ।
ବୋଇଲେ ଅଗ୍ନି ଯାନ୍ତୁ ଗନ୍ଧର୍ବ ରାଜନ
ଦୂତ ହୋଇ ତାଙ୍କଠାକୁ ହେ ମଘବାନ ।
ମୋତେ ତ ଚଢ଼ିଛନ୍ତି ସେ ସମ୍ବର୍ତ୍ତ ଋଷି
ଗଲେ କରି ଦେବେ କ୍ରୋଧରେ ଭସ୍ମରାଶି ।
ଇନ୍ଦ୍ର ବୋଇଲେ ଆହେ ତୁମ୍ଭର ବଚନ
ଶୁଣି କଲି ମୁହିଁ ମଣୁଛି ବଡ଼ମନ ।
ସବୁ ପ୍ରାଣୀମାନଙ୍କୁ ପୋଡ଼ିପାର ତୁମ୍ଭେ
ତୁମ୍ଭଙ୍କୁ କେ ପୋଡ଼ିବ କହପୂଛୁ ଆମ୍ଭେ ।
ଅଗ୍ନି ବୋଇଲେ ପଶ୍ଚ ତୁମ୍ଭେ ବଳୀୟାର
ହୋଇଣ ହୋଇଥିଲ ସ୍ୱର୍ଗର ଈଶ୍ୱର ।
ବୃତ୍ରାସୁର କମ୍ପା ହେ ସ୍ୱର୍ଗକୁ ଛଡ଼ାଇ
ନେଲେ ଏଥି କାରଣ କହ ଶଚୀସାଇଁ ।
ଇନ୍ଦ୍ର ବୋଇଲେ ମୁହିଁ ପର୍ବତକୁ ଚୂର୍ଣ୍ଣ
କରିପାରେ ନ କରେ ଶତ୍ରୁ ସୋମ ପାନ ।
ଏ ଘେନ ମୋତେ ପୂଜା ତୁଷ୍ଟ କରି ନାହିଁ
ଦୁର୍ବଳ ବୋଲି ବଜ୍ର ନ ମାରିଛି ମୁହିଁ ।
ମରୁତ୍ତ ଯେବେ ମୋର ବୋଲି ନ କରିବେ
କହୁଛି ବଜ୍ରେ ତାଙ୍କୁ ମାରିବି ମୁଁ ତେବେ ।
କାଳକେୟ ପ୍ରଭୃତି ଦାନବଙ୍କୁ ମୁହିଁ
ଦେଖିଛ ତ ଯୁଦ୍ଧେ ଜିଣିଛି ସ୍ୱାହା ସାଇଁ ।
ଅଗ୍ନି ବୋଇଲେ ଆହେ ଶର୍ଯ୍ୟାତିଙ୍କ ଯାଗ-
କଥା ପାସୋରିଲେ କି ଇନ୍ଦ୍ର ମହାଭାଗ ।
ଚ୍ୟବନକୁ ବଜ୍ର ଫିଙ୍ଗିଣ ଚିତ୍ତେ ଭାଳ
ଟେରନ୍ତେଟି କରି ନ ପାରିଲ ହେ ସ୍ଥୂଳ ।
କ୍ଷତ୍ରିୟଙ୍କ ପ୍ରତି ବ୍ରାହ୍ମଣଙ୍କର ବଳ
ଅଧିକ ଅଟଇ ହେ ଅଦିତିଙ୍କ ବାଳ ।
ଏଥି ସକାଶରୁ କହୁଛି ମୁଁ ତୁମ୍ଭଙ୍କୁ
ଯେବେ ନ ଯିବେ ହେ ସମ୍ବର୍ତ୍ତ ସମୀପକୁ ।

ଇନ୍ଦ୍ର ବୋଇଲେ ହେ କହିଲ ଅଗ୍ନି ଆଜ୍ଞା
ମରୁତ୍ତ ତ ନୁହନ୍ତି ଦ୍ୱିଜକୁଳବନ୍ଧା ।
ବଜ୍ର ମାରି ତାଙ୍କର ଫଟାଇଣ ମୁଣ୍ଡ
ନେଇଁଟାଇବି ହେ ଯାଗଦାଣ୍ଡ ଟାରେ ପିଣ୍ଡ ।
ଏରୂପ ପ୍ରତିଜ୍ଞା କରିଣ ଶଚୀପତି
ଡକାଇଣ ଧୃତରାଷ୍ଟ୍ରଙ୍କୁ ସେ ଝଟତି ।
ବୋଇଲେ ତୁମ୍ଭେ ମରୁତ୍ତଙ୍କ ପାଶେ ଯାଅ
ବୃହସ୍ପତି ଯାଗ କରାଇବେ ଯେ କହ ।
ସେ ଯେବେ ନ ମାନିବ କହିବ ତାହାଙ୍କୁ
ମାରିବେଟି ବଜ୍ର ମଘବାନ ତୁମ୍ଭଙ୍କୁ ।
ଇନ୍ଦ୍ର ଆଜ୍ଞା ଘେନି ଗନ୍ଧର୍ବ ଧୃତରାଷ୍ଟ୍ର
ଗଲେ ମରୁତ୍ତଙ୍କ ପାଶକୁ ହୋଇ ହୃଷ୍ଟ ।
ଇନ୍ଦ୍ରଙ୍କର କହିବା ଯଥାଯେ କହିଲେ ।
ତେବେ ହେଲେ ମରୁତ୍ତ ସମ୍ମତି ନ କଲେ ।
ବୋଇଲେ ମୋହ ଯାଗ କରିବେ ସମ୍ବର୍ତ୍ତ
ବୃହସ୍ପତି ଯାଗ କରନ୍ତୁ ପୁରୁହୂତ ।
ଧୃତରାଷ୍ଟ୍ର ବୋଇଲେ ଦେଖ ବଜ୍ରଧାରୀ
ଆକାଶେ ରହିଛନ୍ତି ଶଚୀଙ୍କ ବିହାରୀ ।
ଏଥିକି ଜାଗରୁକ ହୁଅ ନୃପବର
ଅଜାଗରୁକ ହେଲେ ଯିବ ଯମପୁର ।
ଧୃତରାଷ୍ଟ୍ର-ବାଣୀ ଶୁଣିଣ ନରପାଳ
ଚାହିଁଲେ, ଶୂନ୍ୟେ ରହିଛନ୍ତି ଆଖଣ୍ଡଳ ।
କରେ ବଜ୍ର ଧରିଣ ଝମକୁ ଅଛନ୍ତି
ପ୍ରଳୟ ସୂର୍ଯ୍ୟ ପରି ପ୍ରକାଶିଣ କାନ୍ତି ।
ମରୁତ୍ତ ତା ନ ସହି ପାଇ ମହାଭୟ
ଅଶ୍ୱତ୍ଥପତ୍ର ପରି କମ୍ପାଇ ହୃଦୟ ।
ସମ୍ବର୍ତ୍ତଙ୍କୁ ବୋଇଲେ ରକ୍ଷା କର ମୋତେ
ନୋହିଲେ ଯିବଟି ମୁଁ ଯମଙ୍କ ପୁରତେ ।
ପ୍ରଳୟ-ସୂର୍ଯ୍ୟ ପରି ତାଙ୍କ ତେଜରାଶି
ଦେଖ ହୋଇଛନ୍ତି ଇନ୍ଦ୍ର ମୋ ପ୍ରତି ଦ୍ୱେଷୀ ।
ସମ୍ବର୍ତ୍ତ ବୋଇଲେ ହେ ଭୟ ଛାଡ଼ି ନୃପ
ଦେଖ ଏହିକ୍ଷଣି ମୋ ତପସ୍ୟା-ପ୍ରତାପ ।
ସଂସ୍ତମ୍ଭନୀ-ବିଦ୍ୟାରେ ଇନ୍ଦ୍ରଙ୍କ ବଜ୍ରକୁ
ଦେଖାଇବି ମୁହିଁ ଯେ ବାରେଟି ଦିଗକୁ ।
ମେଘମାନେ କରିଣ ଘଡ଼ଘଡ଼ ରଡ଼ି ।
ବଜ୍ରାନଳରେ ଦେବେ ସେ ବ୍ରହ୍ମାଣ୍ଡ ଭିଡ଼ି ।

ଏହି ସକାଶୁଁ ଭୟ ଛାଡ଼ ନରବର
ଯାହା ଇଚ୍ଛା ଅଛି ତା ମାଗ ଦେବି ବର ।
ମରୁତ୍ତ ନୃପ ବୋଇଲେ ହେ ବର ମୋତେ
ଯେବେ ଦେବା ଇଚ୍ଛା କରିଛ ମହାମତେ ।
ଇନ୍ଦ୍ର ଆସି ମୋହର ଯାଗୁଁ ହବିର୍ଭାଗ
ମାଗି କରି ମୋତେ ଖାଆନ୍ତୁ ଛାଡ଼ି ରାଗ ॥
ସମ୍ବର୍ତ୍ତ ବୋଇଲେ ଶୁଣ ନରବର
ଆସୁଛନ୍ତି ଯାଗକୁ ଦେବ ପୁରନ୍ଦର ।
ସମ୍ବର୍ତ୍ତ ମନ୍ତ୍ରବଳେ ଶଚୀଙ୍କ ବିହାରୀ
ଆସିଲେ ଯାଗଭାଗ-ପ୍ରାପ୍ତି ଇଚ୍ଛା କରି ।
ଦେବଙ୍କୁ ଘେନି ଇନ୍ଦ୍ର ଲଗାଇ ଗହଣ
ଆସନ୍ତି ପ୍ରୀତି ବହି ମରୁତ୍ତରାଜନ ।
ସମ୍ବର୍ତ୍ତଙ୍କୁ ଘେନି ଇନ୍ଦ୍ରଙ୍କ ପାଶେ ଗଲେ
ଶାସ୍ତ୍ର ଲେଖିଥିବା ପରାଏ ପୂଜା କଲେ ।
ସମ୍ବର୍ତ୍ତ ବୋଇଲେ ହେ ଇନ୍ଦ୍ର ମହାଭାଗ
ପିଅ ମରୁତ୍ତଙ୍କର ଯାଗ ସୋମଭାଗ ।
ମରୁତ୍ତ ତହିଁ ମଧ୍ୟ ଘେନାଘେନି କରି
ଦୁଇ ଚାରି କଥା କହିଲେ ଦଣ୍ଡଧାରୀ ।
ଇନ୍ଦ୍ର ବୋଇଲେ ଆହେ ସମ୍ବର୍ତ୍ତ ପ୍ରଭାବ
ଘେନି ତୁମ୍ଭଠାକୁ ଆସିଲି ନରଦେବ ।
ସୋମଭାଗ ପାଇଣ ଏବେ ମୁଁ ଯାଉଛି
ଛାଡ଼ କ୍ରୋଧ ମୋଠାରୁ ଆହେ ନୃପବର ।
ସମ୍ବର୍ତ୍ତ ତାହା ଶୁଣି କହିଲେ ଇନ୍ଦ୍ରଙ୍କୁ
ଆପଣ ଥାଇ କର ଯାଗ-ବ୍ୟବସ୍ଥାକୁ ।
ତେବେ ସିନା ମୋହର ପ୍ରିୟ କଲ ଦେବ
ଶୁଣ ହେ ଶଚୀଦେବୀଙ୍କର ପ୍ରାଣଧବ ।
ଏହା ଶୁଣିଣ ଇନ୍ଦ୍ର ବୋଇଲେ ଦେବଙ୍କୁ
ସୁରଗ ପରି କର ଏ ଯାଗ-ଶାଳାକୁ ।
ଇନ୍ଦ୍ର ଆଜ୍ଞାରେ ଯେ ଦେବେ ସେ ଯାଗ-ଶାଳା
ସ୍ୱର୍ଗପୁରଠାରୁ କରିଲେ ଅତି ଭଲ ।
ଅପସରାଏ ଗୀତ ଗାଇଣ ନାଚିଲେ
ଗନ୍ଧର୍ବେ ବୀଣା ମୃଦଙ୍ଗକୁ ବଜାଇଲେ ।
ତାହା ଦେଖିକରି ଆନନ୍ଦେ ଦେବରାଜ ବନ୍ଧା
ବୋଇଲେ ଏହି ନୃତ୍ୟ ପ୍ରବର୍ତ୍ତିଲା ଆଜ୍ଞା ।
ଇନ୍ଦ୍ରଙ୍କ ବୋଲେ ମାଳଭୂଷଣ ମରୁତ୍ତ
ଖଞ୍ଜିର ପ୍ରହାରି ଆପଣେ କଲେ ହତ ।

ହୋମରେ ତ ମାଉଁସ ବଳି କରି ଦେଲେ
ଇନ୍ଦ୍ରାଦି ଦେବତାଏ ବସିଣ ଖାଇଲେ ।
ଯାଗଶେଷେ ଉଠି ମରୁତ୍ତ ନୃପବର
ପିବା ହେଉ ବୋଲନ୍ତେ ଗଲେ ପୁରନ୍ଦର ।
ବ୍ରାହ୍ମଣଙ୍କୁ ଅନେକ ଧନ ରତ୍ନ ଦେଇ
ଯାଗ ସାରି ଆସିଲେ ଗୃହେ ନରସାଇଁ ।
ବ୍ରାହ୍ମଣେ ସେହି ଧନ ରତ୍ନକୁ ତ ନେଇ
ନ ପାରିଲେ ପକାଇ ଦେଲେ ଘର ପାଇ ।
ହିମାଳୟ ସମୀପରେ ହେ ନୃପବର
ତୁମ୍ଭେ ଆଣି ସେ ଧନ ଯାଗ ଏବେ କର ।
ଏରୂପରେ କହନ୍ତେ ବ୍ୟାସ ଋଷିଦେବ
ଆଣିବାକୁ ସେ ଧନ ଭାବିଲେ ପାଣ୍ଡବ ।
ନରକୁଳଙ୍କର ନୃପତି ଯୁଧିଷ୍ଠିର
କହଇ ଗୀତେ କୃଷ୍ଣସିଂହ ନରବର ।
ସମ୍ବର୍ତ୍ତ ମରୁତ୍ତ-ଆଖ୍ୟାନ ସମାପତ
ଏହିଠାରେ କଲେ ବଶିଷ୍ଠ-ପଣନାତି ।

—o—

## ଶ୍ରୀକୃଷ୍ଣଙ୍କ ଆଶ୍ୱାସନାରେ ଯୁଧିଷ୍ଠିରଙ୍କର ରାଜ୍ୟଶାସନ

ଏଥୁଅନ୍ତେ ଶ୍ରୀକୃଷ୍ଣ ଆଶ୍ୱାସନା କରି
କହିଲେ ଶୁଣ ହେ ପାଣ୍ଡବ-ଦଣ୍ଡଧାରୀ ।
କପଟକଥାଯାକ ମୃତ୍ୟୁର କାରଣ
ଅକପଟ କଥାଟି ମୋକ୍ଷ ବୋଲି ଜାଣ ।
ଦେହର ଶତ୍ରୁ ଟିକି ନ ପାରିଛ ଜିଣି
ଆଉ କିସ ଗୁଡ଼ାଏ କହିବା ନୃମଣି ।
ଇନ୍ଦ୍ର ବୃତ୍ରାସୁର ଏ ଦୁହିଙ୍କର ଯୁଦ୍ଧ
କହିବା ଶୁଣିକରି କର ମନ ବୋଧ ।
ବୃତ୍ରଅସୁର ପଞ୍ଚମହାଭୂତେ ଯାଇ
ରହନ୍ତେ ଇନ୍ଦ୍ର ବଜ୍ର ମାରନ୍ତେ ଶେଷାଇ ।
ସେ ସକାଶୁଁ ଗୁଡ଼ିଏ ପଞ୍ଚମହାଭୂତ
ବୃତ୍ର ହୋଇଲେ ଇନ୍ଦ୍ର ଦେହୁଟିକ ଗତ ।
ସେ ଯେଣ ଇନ୍ଦ୍ରଙ୍କ ହୁଅନ୍ତେ ମହାମୋହ
ବଶିଷ୍ଠ ନାଶିଲେ ତା ଇନ୍ଦ୍ରେ କରି ସ୍ନେହ ।
ମୋହ ନାଶ ଯାଆନ୍ତେ ଇନ୍ଦ୍ର ଧୈର୍ଯ୍ୟ ହୋଇ
ନିଜ ଦେହେ ବଜ୍ର ମାଇଲେ ଦ୍ୱେଷ ବହି ।

ବୃତ୍ର ଇନ୍ଦ୍ରଙ୍କର ଦେହରେ ରହିଥିଲେ
ଇନ୍ଦ୍ର ବଜ୍ର ମାରନ୍ତେ ଯମକୁ ଭେଟିଲେ ।
ଋଷିଙ୍କଠାରୁ ଏହା ଶୁଣିଥିଲି ମୁହିଁ
ଏଣୁ କହିଲାଟି ଜାଣ ହେ ନରସାଇଁ ।
ଶରୀରୁ ମାନସ ଯେ ବ୍ୟାଧି ହୋଇ ଜାତ
କରୁଅଛି ଟି ଜାଣ ପ୍ରାଣୀଙ୍କ ନିହତ ।
କଫ ବାତ ପିତ୍ତ ସମାନ ହୋଇଥିଲେ
ଲୋକ ରହିଥାଏ ସୁଖରେ ଜାଣ ଭଲେ ।
ତ୍ରିଗୁଣ ଅଟଇଟି ସତ୍ତ୍ୱ ରଜ ତମ
ସୁଖେ ଥାଏ ଲୋକ ଏ ତିନି ହେଲେ ସମ ।
ହୋଇଲେ ଏ ତିନିରୁ ଅଧିକ ଗୋଟିଏ
ଉଚିତ ତା ଶାନ୍ତି କରିବା ନରସ୍ୱୟେ ।
ହରଷ ଶୋକ ଦୁହେଁ ଅନ୍ୟୋନ୍ୟେ ବଇର
କରିଣ ହୁଅନ୍ତିଟି ବାଧ ପରସ୍ପର ।
ସୁଖୀ ଲୋକ ଦୁଃଖ ସୁମରି ଶୋକ କରେ
ଦୁଃଖୀ ମଧ୍ୟ ସେରୂପରେ ସୁଖକୁ ସୁମରେ ।
ତୁମ୍ଭେ ଦୁଃଖୀ ସୁଖୀ ହୋଇଛ ବାହାର
ଆଚରଣ ମୁହିଁ ଜାଣୁଛି ନରବର ।
ବରଷ ବାର ବନେ ରହି ଫଳମୂଳ
ଖାଇ କରି ବଞ୍ଚିଲ ଧର୍ମଙ୍କ ଦୁଲାଳ ।
ଏ ବାହାରେ ବରଷେ ବିରାଟନଗରେ
ରହିଲ କଙ୍କପଣ୍ଡା ବୋଲାଇ ସଙ୍ଗରେ ।
ସେ କଥାଯାକ ସବୁ ପାସୋରି ପକାଇ
ସୁମରୁଅଛ ଏବେ ଦୁର୍ଯ୍ୟୋଧନ ଭାଇ ।
ଦ୍ରୋଣ-ଭୀଷ୍ମ-ସମର-ସମୁଦ୍ରରୁ ତରି
ମନ -ଯୁଦ୍ଧ-ଜଳେ ବୁଡ଼ିଲ ଦଣ୍ଡଧାରୀ ।
ଯେବେ ତୁମ୍ଭେ ଯୁଦ୍ଧେ ମନକୁ ନ ଜିଣିବ
ତେବେ ଏ ମହୀ ଭୋଗ କରି ନ ପାରିବ ।
ମମତା ଯେ କରଇ ପାଏ ସେ ସଂସାର
ମମତା-ହୀନ ଲୋକ ହୁଏ ବ୍ରହ୍ମାଙ୍କର ।
ସଂସାରରେ ଥାଇ ମମତା ଯାର ନାହିଁ
ସଂସାର ତାକୁ କେଭେଁ ବାନ୍ଧି ନ ପାରଇ ।
ଗୃହତ୍ୟାଗୀ ହୋଇ ବନରେ କରି ଘର
ଭାବୁଥାଏ ସେ ହୃଦେ ଧନ ନିରନ୍ତର
ସେହି ଟି ସଂସାରରୁ ବର୍ତ୍ତି ନ ପାରଇ
ମୋ କଥାରୁ ଜାଣ ପାଣ୍ଡବ-ନରସାଇଁ ।

କାମ ବୋଲୁଥାଏ "ଉପାୟବଳେ ଲୋକ
ମୋତେ ନ ଛାଡ଼େ ମୁହିଁ ହରେ ତା ବିବେକ
ମୋତେ ଯେଉଁ କଥାରେ କରେ ଲୋକ ନାଶ
ମୁହିଁ ସେହି କଥାରେ କରେ ତାକୁ ନାଶ ।
ସବୁ ଲୋକଙ୍କର ମୁଁ ଅବଧ୍ୟ ଅଟଇ
ସବୁ ଲୋକ ବଧ କରିବା ଲୋକ ମୁହିଁ ।"
ଆମ୍ଭେ ବୋଲୁଁ ତୁମ୍ଭେ ନିଷ୍କାମ ଯାଗ କରି
ଆଶ୍ରା କରି ତୁଅ ହେ କାମ-ସିନ୍ଧୁ ପାରି ।
ଯୁଦ୍ଧେ ମଲା ଲୋକଙ୍କୁ କରଇ ଯେ ଶୋକ
ତାକୁ ଲୋକ ବୋଲନ୍ତି ଜାଣ ଅବିବେକ ।
ଯାଗ କରିଣ ଇହ ପରତେ କୀର୍ତ୍ତି କ
ସମ୍ପାଦ ମୋ କହିବା ଆଜ୍ଞିଣ ମସ୍ତକ ।
କୃଷ୍ଣ ତୁଲେ ଏହା କହନ୍ତେ ଋଷିଗଣ
ହୁହୁଁ ଶୋକ ଛାଡ଼ିଲେ ପାଣ୍ଡବରାଜନ ।
ବ୍ୟାସ ଆଦି ଋଷିଙ୍କି କହିଲେ ପ୍ରଣମି
ତୁମ୍ଭ ବଚନେ ମୋର ଗଲା ଦୁଃଖରାଶି ।
ଏହା କହି ବ୍ୟାସଙ୍କୁ କହିଲେ ନରେଶ
ତୁମ୍ଭଙ୍କୁ ଯେଣେ ମୁହିଁ ହିମାଳୟ ପାଶ—
ଯିବି ମୋତେ ଧନ ଦିଅନ୍ତି ଋଷି ତୁମ୍ଭେ
ସେଠାକୁ ଉରଯାଟି କରନ୍ତୁ ଆମ୍ଭେ ।
ଏରୂପେ ଯୁଧିଷ୍ଠିର କହନ୍ତେ ବ୍ୟାସଙ୍କୁ
ଋଷିଏ ଲମ୍ବିଲେ ସେକ୍ଷଣି ଦେହକୁ ।
ବ୍ୟାସ ମଧ୍ୟ କୃଷ୍ଣ ଅର୍ଜୁନ ରହୁଁ ଥିଲେ
ଅନ୍ତର୍ଦ୍ଧାନ ହୋଇ ହେ ଜନ୍ମେଜୟ ଗଲେ ।
ଯୁଧିଷ୍ଠିର ରାଜା ଗଙ୍ଗାଙ୍କ ତୀରେ ରହି
ଦେଲେ ଯେ ଭୀଷ୍ମ-କ୍ରିୟା-କର୍ମକୁ କରାଇ ।
ଦ୍ୱିଜଙ୍କୁ ଭୋଜନ କରାଇ ଧନ ଦେଲେ
ପାଆନ୍ତୁ ସ୍ୱର୍ଗେ ଭୀଷ୍ମ ବୋଲିଣ କହିଲେ ।
ତଦନ୍ତେ ଧୃତରାଷ୍ଟ୍ରଙ୍କୁ ସଙ୍ଗେ ଘେନି
ମିଳିଲେ ନୃପତି ହସ୍ତିନା ରାଜଧାନୀ ।
ଧୃତରାଷ୍ଟ୍ର ନୃପଙ୍କୁ କରି ଆଶ୍ୱାସନା
ଭାଇ ତୁଲେ ମହୀ ପାଳିଲେ ମହାମନା ।
ପାଣ୍ଡବଙ୍କର ଜ୍ୟେଷ୍ଠ ଯୁଧିଷ୍ଠିର-ନୃପ
ଛାଡ଼ି ଦେଇ ହୃଦୟ ମଧ୍ୟରୁ ସନ୍ତାପ ।

—o—

## ଅର୍ଜୁନ ପ୍ରତି ଶ୍ରୀକୃଷ୍ଣଙ୍କ

## ଧର୍ମୋପଦେଶ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଏଅନ୍ତେ କିସ କଲେ କୃଷ୍ଣ ଅରଜୁନ ।
ଏହା ମୋର ଆଗେ ପ୍ରକାଶ କରି କହ
ନ ଶୁଣିଲେ ମୋହର ନ ଛାଡ଼ିବ ମୋହ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଅର୍ଜୁନ ସଙ୍ଗ ପାଇ ଦେବକୀ-ତନୟ ।
ହସ୍ତିନାରେ ରହିଣ ବନ ଉପବନେ
ବିହରିଲେ ସେ ଦୁହେଁ ତୋଷ ଧରି ମନେ ।
ଦିନେ ମୟ ଦେବା ସଭାମଧ୍ୟେ ବସିଣ
ଅର୍ଜୁନ ତୁଲେ କଥା ହୋଇ ଯଦୁରାଣ ।
କଥା ଅନ୍ତେ ଯୁଦ୍ଧ ପ୍ରସଙ୍ଗ ପକାଇଲେ
ଅର୍ଜୁନ ପୁତ୍ର-ମୃତ୍ୟୁ ସ୍ମରି ଶୋକ କଲେ ।
କୃଷ୍ଣ ତାଙ୍କୁ ବହୁତ ପ୍ରବୋଧନା କରି
ବୋଇଲେ ନ କାନ୍ଦ ଗାଣ୍ଡୀବ-ଧନୁର୍ଦ୍ଧାରି ।
ଶ୍ରୀକୃଷ୍ଣ ପ୍ରବୋଧିବା ଘେନି ଅରଜୁନ
ରହନ୍ତେ ମଉନେ, କହିଲେ ଜନାର୍ଦ୍ଦନ ।
ତୁମ୍ଭ ବାହୁବଳରେ ଯୁଧିଷ୍ଠିର ରାଜା—
ଯାକ ଜିଣି ପାଇଲେ ହସ୍ତିନାରେ ପୂଜା ।
ତୁମ୍ଭର ବୁଦ୍ଧି ବଢ଼ ଦେଖି ମୁହିଁ ପ୍ରୀତି
ବଢ଼ାଇଥାଏଁ ତୁମ୍ଭଠାରେ ମହାମତି ।
ତୁମ୍ଭର ସୁଖ ଇଚ୍ଛା କରି ଏତେ କାଳ
ରହିଲି ହସ୍ତିନାରେ ଇନ୍ଦ୍ରଙ୍କ ଦୁଲାଳ ।
ଏବେ ବୋଲ ହେ ମୁହିଁ ଯିବି ଦ୍ୱାରକାକୁ
ମନ ମୋ ହେଉଛି ରାମଙ୍କୁ ଦେଖିବାକୁ ।
ତୁମ୍ଭେ ଏବେ ଯାଇ ରାଜାଙ୍କୁ ଏହା କହ
ଦ୍ୱାରକାକୁ ଯିବାକୁ ବଳୁଛି ମୋ ସ୍ନେହ ।
ଯୁଧିଷ୍ଠିର ରାଜାଙ୍କ ଅସମ୍ମତେ ମୁହିଁ
ସ୍ୱର୍ଗଭୁକ୍ତି ମିଳିଲେ କରିବି ନାହିଁ ।
ଯୁଧିଷ୍ଠିରଙ୍କଠାରୁ ପ୍ରିୟ ତିନିଲୋକ
କେ ଅଛି ମୁଁ ନ ଜାଣେ ପାରିକ ନାୟକ ।
ଏହି ରୂପରେ ଶୁଣି କୃଷ୍ଣଙ୍କ ବଚନ
ସୀକାର କଲେ କଷ୍ଟରେ ଅରଜୁନ ।

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କ୍ଷୟ କରି ଯୁଦ୍ଧରେ କୁରୁଣନ୍ଦନ ।
କୃଷ୍ଣ ଅରଜୁନ ହୋଇଲେ କେଉଁ କଥା
କହ ମୋତେ ଏହା ଗୁରୁ ମୋ ହୃଦ-ବ୍ୟଥା ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଯୁଦ୍ଧେ ଜିଣି ଅର୍ଜୁନ ମହତ ଉଦୟ ।
କୃଷ୍ଣଙ୍କ ଘେନି ମଧ୍ୟ ହସ୍ତିନାରେ ବସି
ଇନ୍ଦ୍ରପ୍ରସ୍ଥେ କଥା ହୋଇଲେ ହସି ହସି ।
କଥା ଅନ୍ତେ ଏକାନ୍ତେ କୃଷ୍ଣେ ଅରଜୁନ
ନେଇ କରି କହିଲେ କୋମଳ ବଚନ ।
ଯୁଦ୍ଧ ଆରମ୍ଭରେ କହିଲ ଯାହା ମୋତେ
ତାହା କହ ମୁଁ ବିସ୍ମରିଛି ମହାମତେ ।
ନୋହିଲେ ଦ୍ୱାରକାକୁ ଯାଅ ତୁମ୍ଭେ ବୋଲି
ମୁହିଁ ବୋଲି ନାହିଁ ହେ ଜାଣ ବନମାଳି ।
ଶ୍ରୀକୃଷ୍ଣ ବୋଇଲେ କହିଲି ସବୁ ଧର୍ମ
ଯା ବୁଝି ନାହିଁ ତୁମ୍ଭେ ଅଟ ତ ଅଧମ ।
ସେ କଥା ଆଉ ଥରେ ପୁଣି କହିବାକୁ
ସାମର୍ଥ୍ୟ ମୋର ନାହିଁ କହୁଛି ତୁମ୍ଭଙ୍କୁ ।
ସେହି ବିଷୟରେ କହିବା ଇତିହାସ
ଶୁଣ ଏକମନେ ହେ ଅର୍ଜୁନ ସୁରେଶ ।
ବ୍ରହ୍ମଲୋକୁ ଦ୍ୱିଜ ଜଣେ ମୋଠାକୁ ଆସି
ଥିଲେ ମୁଁ ପୁଚ୍ଛନ୍ତେ ସେ କହିଲେକ ହସି ।
ପୂର୍ବେ ଦ୍ୱିଜଜଣଙ୍କ ଠାକୁ ଦ୍ୱିଜଜଣେ
ଆସି ଯା କହୁଥିଲେ ଶୁଣିଣ ସା କାନେ ।
ତାହା କହିବି ଆହେ ଶଙ୍ଖ-ଚକ୍ର କର
ବସିଣ ଆପଣ ଏକାଗ୍ର ମନେ ଧର ।
ଏତେ ବୋଲି ମୋତେ ସେ ଦ୍ୱିଜଦୁହିଙ୍କର
ସମ୍ବାଦ ଯା କହିଲେ ଶୁଣ ନରବର ।
କାଶ୍ୟପ ପାଟେ ଦ୍ୱିଜଜଣଙ୍କୁ ଦେଖିଲେ
ଗୁରୁ କରିଣ ପୂଜା ତାହାଙ୍କୁ ସେ କଲେ ।
ସେ ଦ୍ୱିଜ ତୋଷ ହୋଇ କାଶ୍ୟପ ଶିଷ୍ୟଙ୍କୁ
କହିଲେ ଏ ବଚନ ବନ୍ଧି ସଦ୍ଗତିକୁ ।
ନାନା କର୍ମ କଲେ ଲୋକର ନାନା ଗତି
ହୁଅଇ ଜାଣ ହେ କାଶ୍ୟପ ମହାଯତି ।
ପାପ କଥା କଲରୁ ପୁଣ୍ୟସ୍ଥାନ-ଭ୍ରଷ୍ଟ
ହୋଇ କରି ଜାଣ ମୁଁ ପାଉଅଛି କଷ୍ଟ ।

ନାନାଜାତି ଯୋନିମାନଙ୍କେ ଜାତହୋଇ
ଏବେ ଅଛି ମୁଁ ଜାଣ ଦ୍ୱିଜଜନ୍ମ ପାଇ ।
ପୂର୍ବଜନମ ଜ୍ଞାନ ହେବାରୁ ନିର୍ବେଦ
ଉପୁଜନ୍ତେ ମଣିଲି ବିଷୟ ପ୍ରମାଦ ।
ଏ ଦେହରେ ସିଦ୍ଧି ପାଇବା ପାଇଁ ମୁହିଁ
କେବଳ ଭଜୁଛି ବ୍ରହ୍ମଙ୍କୁ ଏକା ହୋଇ ।
ଏ ଦେହ ଗଲେ ମୋର ଏ ସଂସାର-ଦୁଃଖ
ନୋହିବ ଆହେ ଜାଣ ଦ୍ୱିଜକୁଳଶିଖ ।
କାହିଁପାଇଁ ତୁମ୍ଭେ ଅସିଛ ମୋହଠାକୁ
ତା କହ କରିବ ନ କର ବିଳମ୍ବକୁ ।
ତୁମ୍ଭର ସେବା ଦେଖି ସୁଖୀ ହେଲି ମୁହିଁ
ଏଣୁ ପଗ୍ଭରୁଛି ତୁମ୍ଭଙ୍କୁ ଭାବ କହି ।
ନିକଟେ ବ୍ରହ୍ମେ ଦେହ ଲୀନ ହେବା ଦଶା
ପ୍ରବେଶ ହେବ ମୋର ଜାଣ ମହାଯଶା ।
କାଶ୍ୟପ ବୋଇଲେ ହେ ଶରୀର ହେବାର
ଯିବାର କହ ମୋତେ ଆହେ ଦ୍ୱିଜବର ।
କିସ ଧରମ କରି ସଂସାରୁ ମୁକତି
ଲଭିକରି ପ୍ରାଣୀମାନେ ଯେ ଯାଉଛନ୍ତି ।
ଏହି କଥାମାନ ଶୁଣିବା ପାଇଁ ମନ
ହେଉଅଛି ମୋର ଜାଣ ହେ ତପୋଧନ ।
ସିଦ୍ଧି ଦ୍ୱିଜ ବୋଇଲେ ଆୟୁ ହେଲେ କ୍ଷୀଣ
ବିପରୀତ କଥା କହନ୍ତି ପ୍ରାଣୀଗଣ ।
ବିରୁଦ୍ଧ ହେଉଁ ଭକ୍ଷ୍ୟ ହୋଇବ ଦେହକୁ
ନଠାଇ ତାହା ଭକ୍ଷେ କଉଣ ମୋହକୁ ।
ଅବସରେ ଡ଼ାକାଇ ଅନୁକ୍ଷଣେ ମରେ
କହିଲେ କଥା ହୁଡ଼ି କରେ ଥରେ ଥରେ ।
ବାତବେଗେ ପ୍ରେରିତ ପିତ୍ତ ହେଲେ ବେଗ
ପ୍ରାଣୀଙ୍କର ଭାଗେ ଜୀବନ୍ତୁ ଅନୁରାଗ ।
ଆତ୍ମା ଶରୀରରୁ ଅଲଗା ହୋଇଯାନ୍ତେ
ମରିଗଲା ବୋଲି ସେ ବୋଲନ୍ତି ଜଗତେ ।
ସ୍ୱକୃତକୁ ବୁଝି ଶରୀର ଲଭେ ଆତ୍ମା
ମୋ କହିବାରୁ ଜାଣ କାଶ୍ୟପ ମହାତ୍ମା ।
ଯୋଗୀ ବିନା ଆନ ପୁରୁଷକୁ ଆତ୍ମାର
ଗତି ନ ଦିଶେ ଟି କାଶ୍ୟପ ମନେ କର ।
ଭୂଲୋକ ପରଲୋକ ମାତୃଗର୍ଭେ ବିନା
ଆତ୍ମା କାହିଁ ନ ପାରେ ରହି ମହାମନା ।

ଧର୍ମକୁ ଅନାଇଣ ଇହପର ଦୁଇ—
ଲୋକରେ ଟି ସୁଖ ଦୁଃଖକୁ ସେ ଭୁଞ୍ଜଇ ।
ଏହି କଥାକୁ ଜାଣି ପରଲୋକେ ଭଲ
ହୋଇବାକୁ ଧର୍ମ କର ଦ୍ୱିଜବାଳ ।
ସୂର୍ଯ୍ୟ ଚନ୍ଦ୍ରମଣ୍ଡଳ ପୁଣ୍ୟକର୍ମୀଙ୍କର
ସ୍ଥାନ ଅଟଇଟି କାଶ୍ୟପ ମନେକର ।
ପୁଣ୍ୟକର୍ମା ସ୍ୱର୍ଗରେ ବସି ଦିଶୁଛନ୍ତି
ନ ଜାଣି ଲୋକେ ତାଙ୍କୁ ତାରାଟି ବୋଲନ୍ତି ।
ମର୍ତ୍ତ୍ୟରେ ଥିଲା ପରି ସ୍ୱର୍ଗରେ ଉତ୍ତମ
ମଧ୍ୟମାଧମାବସ୍ଥା ଅଛି ଦ୍ୱିଜୋତ୍ତମ ।
ଯେତେ ସମ୍ପତ୍ତି ଲୋକେ ଦେଖନ୍ତି ନେତ୍ରରେ
ସ୍ୱର୍ଗଲୋକେ ମଧ୍ୟ ଭାବନ୍ତି ତ ମନରେ ।
ଗର୍ଭ ଯେଉଁରୂପେ ହୁଅଇ ପ୍ରାଣୀଙ୍କର
ତା କହିବା ଦ୍ୱିଜ ହେ ମନ କର ସ୍ଥିର ।
ଶୁଭାଶୁଭ କରମ କରଥାଏ ଯେହି
ପ୍ରତି ଦେହରେ ତାହା ଭୋଗ କରେ ସେହି ।
ଜୀବ ଶୁକ୍ରେ ମିଶିଣ ଶୋଣିତକୁ ପାଇ
ସ୍ତ୍ରିୟଙ୍କର ଗର୍ଭକୁ ଆଶ୍ରେ କରେ ଯାଇ ।
କ୍ରମରେ ପୁଣି ଅଙ୍ଗମାନଙ୍କୁ ସେ ଧରେ
ଚେତନାନ୍ୱିତ ହୋଇ ସ୍ଥଳେ ଥରେ ଥରେ ।
ମୋକ୍ଷଧର୍ମ ନ ଜାଣିଥିବା ଯାକେ ଜନ୍ମ
ହେଉଥାଏ ପ୍ରାଣୀଟି ହୋଇ ପୁନଃପୁନଃ ।
ବ୍ରହ୍ମଚର୍ଯ୍ୟ ଦ ନ ପ୍ରଶାନ୍ତ ଆଚରଣ
ପ୍ରାଣୀ-ଦୁଃଖହରଣ ବ୍ରହ୍ମଙ୍କ ଧାରଣ ।
ମାତୃ ପିତୃ ଶୁଶ୍ରୂଷା ଶୌଚ ବ୍ରତ ଦମ
ଶୁଭ କର୍ମେ ପ୍ରବୃତ୍ତି ଇନ୍ଦ୍ରିୟ ସଂଯମ ।
ଅନୃଶଂସ୍ୟ ପରସ୍ୱ ଆଦନ ବର୍ଜ୍ଜନ
ଦୟା ଗୁରୁଦେବ ଅତିଥି ସମ୍ପୂଜନ ।
ଏମାନ ଯେ କରଇ ମୋକ୍ଷଧର୍ମ ସେହି
ଜାଣଇଁ ଏ କଥାରେ ସନ୍ଦେହ ତ ନାହିଁ ।
ସନାତନ ଧର୍ମ ଯେ ଲୋକ ଆଚରଇ
ସେ ସାଧୁ ଦୁର୍ଗତିକି କେବେ ଲଭେ ନାହିଁ ।
ଏ କର୍ମ ନ କରି ଯେ ଆନ କର୍ମ କରେ
ଥରକୁ ଥର ଭ୍ରମୁଥାଇ ସେ ସଂସାରେ ।
ବ୍ରହ୍ମା ବିଷ୍ଣୁ-ନାଭିପଦ୍ମରୁ ଜାତ ହୋଇ
ତିନଲୋକ ଆଗେ ସର୍ଜିଲେ ତୋଷ ବହି ।
ପଛେ ପଞ୍ଚମହାଭୂତଙ୍କୁ ସରଜିଲେ
ଜନ୍ମ ମରଣ ଏ ଦୁହିଙ୍କି ଉଆଇଲେ ।
ଏହି ସକାଶୁ ଜାଣ ଜଗତକୁ କ୍ଷର
ବୋଲନ୍ତି, କହନ୍ତିଟି ବ୍ରହ୍ମକୁ ଅକ୍ଷର ।
ସୁଖ ଦୁଃଖ ଅନିତ୍ୟ ବୋଲି ଯେ ଜାଣଇ
ସଂସାର-ସାଗରୁ ସେ ଅଲକ୍ଷ୍ୟେ ତରଇ ।
ପ୍ରାଣୀଙ୍କର ଯେବେ ତରିବା ଇଚ୍ଛା ହେବ
ଆଗ ଚତୁର୍ଭୁଜ ଶ୍ରୀବିଷ୍ଣୁଙ୍କୁ ଭାବିବ ।
ତହିଁ ପଛରେ ସୂକ୍ଷ୍ମ ମୂରତିକି ଧ୍ୟାଇ
ବ୍ରହ୍ମକୁ ଭାବନା କରିବ ପ୍ରୀତି ବହି ।
ଏହିରୂପରେ ତିନପ୍ରକାରେ ଭାବନ
କଲେଟି ବ୍ରହ୍ମଠାରେ ମଜ୍ଜେ ଯାଇ ମନ ।
ସର୍ବମିତ୍ର ସର୍ବସହ୍ୟ ବିଜିତେନ୍ଦ୍ରିୟ
ନିରାକାଂକ୍ଷ ପୁଣି ଅଲଭ ଲାଭ ପ୍ରିୟ ।
ବିଦ୍ୱେଷ ଦୁଃଖ ସୁଖ ଜୀବନ ମରଣ
ଏମାନଙ୍କେ ସମାନ ଅଟଇ ଯେ ଜନ ।
ମୁକତ ହେବା ଦଶା ତାହାର ହୁଅଇ
ବୋଲି ଧର୍ମଶାସ୍ତ୍ର ଜାଣ ତ ଅଛି କହି ।
ପଞ୍ଚଭୂତହୀନ ନିର୍ଗୁଣଗୁଣଭୁକ୍ତ
ବ୍ରହ୍ମକୁ ଦେଖିଲେ ସଂସାର ହୋଏ ତ୍ୟକ୍ତ ।
ଯୋଗଶାସ୍ତ୍ରକୁ ଏବେ କହିବା ତୁମ୍ଭଙ୍କୁ
ଆମ୍ଭଠାରୁ ଶୁଣ ହେ ଦେଇ ତା ମନକୁ ।
ବିଷୟୁଁ ଇନ୍ଦ୍ରିୟମାନଙ୍କୁ ନିବର୍ତ୍ତିଇ
ମନକୁ ଆତ୍ମାରେ ରଖିବ ଯତ୍ନେ ନେଇ ।
ତପ କରି ଯୋଗଧର୍ମକୁ ଆଚରିବ
ଯେବେ, ତେବେ ବ୍ରହ୍ମପୁରୁଷଙ୍କୁ ଦେଖିବ ।
ଯୋଗବଳରେ ଲୋକ ଦେହରୁ ଆତ୍ମାକୁ
ଅଲଗା କରି ଜାଣ କରେ ଦର୍ଶନକୁ ।
ଲୋକ ବିନାଶ ଗଲେ ଭସ୍ମ କ୍ଲେଶ ଦୁଇ
ଯୋଗୀର ନୁହଇଟି ଜାଣ କଦ୍ଭୁଥାଇ ।
ମୃତ୍ୟୁଦେବତାଟି ଯୋଗୀର ଅନୁଗତ
ହୋଇଣ ରହିଥାଏ ଜାଣ ଅବିରତ ।
ଜରାସ୍ଥୁର ଦୁଃଖରୁ ଯୋଗୀ ମୁକ୍ତ ହୋଇ
ଯାହା ଇଚ୍ଛା କରଇ, ସେ ଦେହ ଲଭଇ ।
ଇନ୍ଦ୍ର ହେଲେ ଆସିଲେ ନ ସ୍ଥେଁ ନେତ୍ରରେ
ବସି ତ ଥାଏ ଯୋଗୀ ଯୋଗ ଆସନରେ ।

ମନଃ ଶୁଦ୍ଧ ହେଲେ ପରମଆତ୍ମା ଦିଶେ
ନୟନପଥେ ଆନମାନ ଯେ ନ ଦିଶେ ।
ପରମଆତ୍ମାଙ୍କ ନୟନ ପାଦ ଶିର
ବ୍ୟାପିଛି ଏ ଜଗତଯାକ ମନେକର ।
ଏହିରୂପେ ସେ ସିଦ୍ଧଦ୍ୱିଜ କାଶ୍ୟପଙ୍କୁ
କହିକରି ବୋଇଲେ ଯାଅ ହେ ଘରକୁ ।
ସିଦ୍ଧଙ୍କର ବଚନ ଘେନଣ କାଶ୍ୟପ
ଗଲେ ନଜ ଘରକୁ ଛାଡ଼ି ହୃଦ-ତାପ ।
ଯେରୂପେ ଶୁଣିଥିଲି ସେରୂପେ ମୁଁ ସାର
କହିଲି ତ ଏବେ ଆପଣ ମନେ କର ।
ଭରତପୁଙ୍ଗବ ଆଦ୍ୟେ ଏହି କଥା ମୁହିଁ
ତୁମ୍ଭଙ୍କୁ କହିଥିଲି ସନ୍ଦେହ ତ ନାହିଁ ।
ଅଚତୁର ଲୋକଙ୍କୁ କହିଲେ ଏ କଥା
ଶତଥର ଘେନି ନ ପାରେ ମହାରଥୀ ।
ତୁମ୍ଭେ ହୋଇଅଛ ସର୍ବାଂଶେ ଚତୁର
ରଖ ମୋ କହିବାର ହୃଦୟେ ଭିତର ।
କରମରେ ମର୍ତ୍ତ୍ୟେ ତ ଆବୃତ ହୋଇଛନ୍ତି
ଏଣୁ ମୋକ୍ଷଧର୍ମ ଅଳପ ପ୍ରବର୍ତ୍ତନ୍ତି ।
ମୋକ୍ଷଧର୍ମ ମର୍ତ୍ତ୍ୟଧର୍ମୀଏ ଆଚରିଲେ
ଦେବେ ତନ୍ନକୁ ଆଚରନ୍ତି ଜାଣ ଭଲେ ।
ମୋକ୍ଷଧର୍ମ ଆଶ୍ରୟ କଲେ ସ୍ତ୍ରୀବର୍ଣ୍ଣ
ମୁକତି-ଦଶାଟିକ ପାଅନ୍ତି ଅର୍ଜ୍ଜୁନ ।
ବିଶେଷେ ବ୍ରାହ୍ମଣ କ୍ଷତ୍ରିୟ ମୋକ୍ଷଧର୍ମ
କଲେ ଲୋକ ଲଭନ୍ତି ମହତଟି ଧର୍ମ ।
ଛମାସ ବସି ଯୋଗ ଏକା ଯେ ସାଧଇ
ଯୋଗସିଦ୍ଧି ତାହାର ହେଲା ବୋଲି କହି ।
ଯୋଗୀ ବଡ଼ ହୋଇ ମର୍ତ୍ତ୍ୟରେ ଆନ କଥା
କହିବାକୁ ନାହିଁ ହେ ପାର୍ଥ ମହାରଥୀ ।
ଏହିଠାରେ ଅନୁଗୀତା ହୋଇଲା ଶେଷ
କହଇ କୃଷ୍ଣସିଂହ ନରକୁଳ-ଈଶ ।

—*—

## ବ୍ରାହ୍ମଣ ବ୍ରାହ୍ମଣୀ-ସମ୍ବାଦ

ମୋକ୍ଷଶାସ୍ତ୍ର ବିଷୟେ ହୋଇ ପୁରାତନ
କଥା ଅଛି ଶୁଣ ହେ ପାଣ୍ଡବ ଅର୍ଜ୍ଜୁନ ।
ପୂର୍ବେ ଦ୍ୱିଜଗଣେ ଗୃହସ୍ଥାଶ୍ରମେ ଥାଇ
ଯୋଗରେ ବସିଥିଲେ ଚକାସନ ଦେଇ ।
ତାଙ୍କ ନାରୀ ବୋଇଲା ଛାଡ଼ି ମନୁ ଚିନ୍ତା
କସ ଗତି ହେବ ମୋ କହ ବେଦବେତ୍ତା ।
ସ୍ତ୍ରୀମାନଙ୍କର ତ ପତି ଅଟେ ଗତି
ବୋଲିକରି ଶାସ୍ତ୍ରେ ଋଷିଏ କହିଛନ୍ତି ।
ଏହି କଥାରୁ ଜାଣି ତୁମ୍ଭର ଏ କଥା
ଦେଖି କରି ଜାତ ହୋଇଛି ମୋର ବ୍ୟଥା ।
ଏହା ଶୁଣି ବ୍ରାହ୍ମଣ ହସ ହସ ହୋଇ
ବୋଇଲେ ଶୁଣ ଆଗୋ ସୁରୁଚନ୍ଦ୍ରମୁହିଁ ।
ଶୁଣିବା ଦେଖିବା ଖାଇବା ପିନ୍ଧିବାର
କର୍ମ ବୋଲି ବୋଲନ୍ତି ଏ ସଂସାର-ନର ।
ପ୍ରାଣୀଙ୍କଠାରୁ ଶୁଣି ମୁହିଁ ଏହି ବାଣୀ
ଅଜ୍ଞାନବନ୍ତେ ଥାଏଁ ସେମାନଙ୍କୁ ଗଣି ।
ବିଦ୍ୱାନ ଲୋକମାନେ ଶାନ୍ତଆତ୍ମା ହୋଇ
ବ୍ରହ୍ମକୁ ଭାବନା କରନ୍ତି ପ୍ରାଣସହି ।
ଘାଣେ ଘ୍ରେୟ, ଜିହ୍ୱାରେ ସ୍ୱାଦ୍ୟ, ସ୍ପର୍ଶେ ସ୍ପୃଶ୍ୟ
ଶ୍ରବଣରେ ଶ୍ରାବ୍ୟ ଯେ ନୟନରେ ଦୃଶ୍ୟ ।
ହୁଅଇଟି ବ୍ରହ୍ମସ୍ୱରୂପ ଆଗୋ ସଖି
କେବଳ ଯେ ଗହଳେ ଜନ ପାରେ ଦେଖି ।
ବ୍ରହ୍ମଠାରୁ ସମସ୍ତେ ହୋଇଛନ୍ତି ଜାତ
ବ୍ରହ୍ମରେ ସମସ୍ତେ ହୁଅନ୍ତି ଅନ୍ତର୍ଭୁକ୍ତ ।
ଉଦାନ ପ୍ରାଣ ବ୍ୟାନ ସମାନ ଅପାନ
ବ୍ରହ୍ମଠାରୁ ଜାତଟି ବୋଲି ଜାଣ ଧନ ।
ସମାନ ବ୍ୟାନ ଦୁଇ ମଧ୍ୟେ ପ୍ରାଣ ପାନ
ସଞ୍ଚାରଟି କରୁଅଛନ୍ତି ଅବିଚ୍ଛିନ୍ନ ।
ଆତ୍ମା ତୃପ୍ତ ହେଲେ ସମାନ ବ୍ୟାନ ଦୁଇ
ଲୀନ ହୋଇ ରହନ୍ତି ଶୁଣ କହୁଥାଇ ।
ଅପାନ ପ୍ରାଣ ଦୁଇ ମଧ୍ୟରେ ଉଦାନ
ବ୍ୟାପି ରହିଅଛନ୍ତି ବୋଲିକରି ଘେନ ।
ଆତ୍ମା ନିଦ୍ରା ଯାଇଣ ଥାଇ ଯେଉଁ କାଳେ
ପ୍ରାଣାପାନ ଛାଡ଼ି ନ ଯାନ୍ତି ସେହିକାଳେ ।
ଏ ପଞ୍ଚବନରେ ସାତୋଟି ପ୍ରକାର
ହୋଇକରି କରି ରହିଅଛନ୍ତି ବୈଶ୍ୱାନର ।
ଘ୍ରାଣ ରସନା ଚକ୍ଷୁ ତ୍ୱକ ଶ୍ରୋତ୍ର ମନ
ବୁଦ୍ଧି ମିଶି ସାତେ ଅଗ୍ନିଙ୍କ ଜିହ୍ୱାସ୍ଥାନ ।
ଘ୍ରେୟ ପେୟ ଦୃଶ୍ୟ ମନ୍ତବ୍ୟ ସ୍ପୃଶ୍ୟ ବୋଧ୍ୟ
ଶ୍ରାବ୍ୟ ମିଶି ଏ ସାତତ ଅଟନ୍ତି ସମିଧ ।

ଆଘ୍ରାତା ଭକ୍ଷୟିତା ଦ୍ରଷ୍ଟା ସପ୍ରଷ୍ଟା ଶ୍ରୋତା
ମନ୍ତା ବୋଦ୍ଧା ମିଶି ଋତ୍ୱିକ ଏ ବନତା ।
ପୃଥ୍ୱୀ ବାୟୁ ଆକାଶ ତେଜ ଜଳ ମନ
ବୁଦ୍ଧ ମିଶି ସାତୋଟି ଅଟନ୍ତି କାରଣ ।
ଏଥିରୁ ଗନ୍ଧ ରସ ରୂପ ଶବ୍ଦ ସ୍ପର୍ଶ
ସଂଶୟ ନଷ୍ଟା ମିଶି ଏ ସାତେ ପ୍ରକାଶ ।
ଘ୍ରାଣ ନୟନ ଜିହ୍ୱା ତ୍ୱକ ଶ୍ରୋତ୍ର ମନ
ବୁଦ୍ଧି ଏ ସୂକ୍ଷ୍ମ ରୂପ ଥାଆନ୍ତି ଜାଣ ।
କେହି କାହାକୁହିଁ ନ ଜାଣନ୍ତି ଗୋ ନାରୀ
ମୁଁ କହୁଛୁ ଏହା ହୃଦରେ ଥାଅ ଧରି ।
ବ୍ରାହ୍ମଣୀ ବୋଇଲେ ହେ ଦ୍ୱିଜଶ୍ରେଷ୍ଠ ସ୍ୱାମି
କହ କାହିଁପାଇଁ ଏ ନୁହନ୍ତି ଭେଟି ।
ବ୍ରାହ୍ମଣ ବୋଇଲେ ହେ ଜିହ୍ୱା ଚକ୍ଷୁ କର୍ଣ୍ଣ
ତ୍ୱକ ମନ ବୁଦ୍ଧି ଯେ ଗନ୍ଧର ଗ୍ରହଣ ।
କରି ପାରନ୍ତି ନାହିଁ ଏକା ଯେବେ ଘ୍ରାଣ
କହୁଅଛୁ ମୁଁ ଆଗୋ ନାରୀବର ଜାଣ ।
ଘ୍ରାଣ ନୟନ ତ୍ୱକ ବୁଦ୍ଧ ମନ ଶ୍ରୋତ୍ର
ଜିହ୍ୱା ବିନା ନୁହନ୍ତି ରସ ଅଧିଗତ ।
ଘ୍ରାଣ ଜିହ୍ୱା ଶ୍ରବଣ ତ୍ୱକ ବୁଦ୍ଧି ମନ
ନ ଚରନ୍ତି ଚକ୍ଷୁ ବିନା କି ଦରଶନ ।
ରସନା ଚକ୍ଷୁ ଶ୍ରୋତ୍ର ମନ ବୁଦ୍ଧି ନାକ
ସ୍ପର୍ଶ କରି ନ ପାରନ୍ତି କରେ ତ୍ୱକ ।
ଘ୍ରାଣ ଜିହ୍ୱା ନୟନ ତ୍ୱକ ବୁଦ୍ଧି ମନ
ଶ୍ରୋତ୍ର ବିନା ନ ଜାଣନ୍ତି ଏ ଶବ୍ଦଗୁଣ ।
ଘ୍ରାଣ ଚକ୍ଷୁ ରସନା ତ୍ୱକ ବୁଦ୍ଧି ଶ୍ରୋତ୍ର
ସଂଶୟଚ୍ଛେତା ଏ ସଂଶୟଚ୍ଛେତ୍ତ୍ୱ ଶବ୍ଦ ।
ଶ୍ରୋତ୍ର ତ୍ୱକ ମନ ରସନା ଚକ୍ଷୁ ଘ୍ରାଣ
ପ୍ରତିକ ନଷ୍ଟସ୍ଥଳୁ ଯେତେନ ବୁଦ୍ଧି ଜାଣ ।
ଏ ବିଷୟେ ଇନ୍ଦ୍ରିୟମାନଙ୍କୁ ସମ୍ବାଦ
ଯାହା ଅଛି କହିବା ଶୁଣ କର ମୋଦ ।
ମନ ଯେବେ କହିଲେ ମୋ ବିନା ଇନ୍ଦ୍ରିୟେ
କିଛି ନ ଯେନନ୍ତି କହୁଛି ନିଷ୍ଟୟେ ।
ମୋହରେ ହୀନ ତୁମ୍ଭେ ହୁଅ ଯେଉଁ କାଳେ
ଶବସ ଚନ୍ଦ୍ରପ୍ରଭ ପ୍ରକାଶେ ସେକାଳେ ।
ଇନ୍ଦ୍ରିୟ ବୋଇଲେ ହେ ନୟନରେ ରସ
ଶ୍ରବଣରେ ଗନ୍ଧ ହେ ବୁଦ୍ଧିରେ ସ୍ପରଶ ।

ନାସିକାରେ ରୂପ ତ୍ୱକରେଟି ଶବଦ
ପାରିବ କି ଯେନ ହେ ମନ ଥରେ ବଦ ।
ଏହି ସଭାଶୁଁ ଜାଣ ମନ ହେ ତୁମ୍ଭଙ୍କୁ
କହୁଛୁଁ ଆମ୍ଭେ ଗୁଣ ନ ପାଉ ଆମ୍ଭଙ୍କୁ ।
ଆମ୍ଭେ ସେହିରୂପେ ତୁମ୍ଭଙ୍କୁ ଗୁଣ କରି
କିଛି ଚେଷ୍ଟା ସଂସାରେ ନ ପାରୁଁଟି କରି ।
ପ୍ରାଣ ଉଦାନ ବ୍ୟାନ ସମାନ ଅପାନ
ପବନଟି ହୋତା ଅଟନ୍ତି ପ୍ରାଣଧନ ।

ଏ ପାଞ୍ଚପବନ କେ ବଡ଼ ବୋଲି କରି
ଗୃହାରି କଲେ ଯାଇ ସାଦରୀ-ଛହାରି ।

ବ୍ରହ୍ମା ବୋଇଲେ ଆହେ ତୁମ୍ଭ ପାଞ୍ଚଙ୍କରେ
ଇନ୍ଦ୍ରିୟଙ୍କୁ ସଞ୍ଚାର କରେ ନିରନ୍ତରେ ।

ଯେଉଁ ପବନଟି ସେହିଟି ଅଟେ ବଡ଼
ଆଉ କେହି କାହାକୁ ବଚନେ ନ ହୁଡ଼ ।

ପ୍ରାଣପବନ ତାହା ଶୁଣି ଗର୍ବ ବହି
ଆଗ କରି କହିଲେ ବ୍ରହ୍ମାଙ୍କୁ ଅନାଇଁ ।

ମୁଁ ଲୀନ ହେଲେ ସବୁ ଇନ୍ଦ୍ରିୟଟି ଲୀନ
ମୁଁ ଥିଲେ ପ୍ରକାଶ ଇନ୍ଦ୍ରିୟ ହୋଏ ଜାଣ ।

ଏତେ ବୋଲି ପ୍ରାଣପବନ ଲୀନ ହୋଇ
ଟିକଏକ ଉତ୍ତାରୁ ପଞ୍ଚରିଲା ସେହି ।

ତାହା ଦେଖି ସମାନ ଉଦାନ-କହିଲେ
ତୋତେ ବଡ଼ ଅପାନ ପବନଟି ଭଲେ ।

ଅପାନ ବୋଇଲା ରେ ପ୍ରାଣ ହେଲୁ ବାଇ
ମୁଁ ଲୀନ ହେଲେ ପ୍ରାଣୀ ଇନ୍ଦ୍ରିୟ କି ଥାଇ ।

ତାହା ଶୁଣିଣ ବ୍ୟାନ ଭୁଲରେ ଉଦାନ
କହିଲା ଅପାନକୁ ଅଟୁ ବଡ଼ ହୀନ ।

ବ୍ୟାନ ବୋଇଲା ଆରେ ମୁଁ ଲୀନ ହୋଇଲେ
ଇନ୍ଦ୍ରିୟଯାକ ଲୀନ ହୋଇଯାଏ ଭଲେ ।

ପ୍ରାଣାପାନୋଦାନ ସମାନ ସ୍ୱରି ବାତ
ବ୍ୟାନକୁ ବୋଇଲେ ତୋ ବଳତ କଣ୍ଠିତ ।

ଏତେ କଥା କମ୍ପା କହୁଛୁଁ ଆମ୍ଭ ଆଗେ
ଲାଜ ନାହିଁ କି ରେ ତୋହର ମୁଖଭାଗେ ।

ବ୍ରହ୍ମା ବୋଇଲେ ଆହେ ଅନ୍ୟୋନ୍ୟେ ରକ୍ଷଣ
ହେବାରୁ ତୁମ୍ଭେ ପାଞ୍ଚେ ବଡ ଅଟ ଜାଣ ।

କାହିଁପାଇଁ ସମସ୍ତେ ହେଉଅଛ କଳ
ଏହା ଶୁଣି ମୋହର ହୃଦ ହୋଏ ଗୋଳ ।
ତହୁଁ ପୁଣି ବ୍ରାହ୍ମଣ ବୋଇଲେ ନାରଦ
ଦେବମତ ସମ୍ବାଦ ଶୁଣ ବନ୍ଧୁ ମୋଦ ।
ଦେବମତ ବୋଇଲେ ପାଞ୍ଚପବନରେ
ଜନମ ନୋହୁଁ ରହୁଥାଏ କେ ଅଙ୍ଗରେ ।
ଏହା ମୋର ଆଗେ କହ ତ ଋଷିବର
ନାରଦ ଶୁଣିବାକୁ ଇଚ୍ଛା ହୋଏ ମୋର ।
ନାରଦ ବୋଇଲେ ହେ ଶୁକ୍ର ରଜ ମିଶି
ଗର୍ଭ ହେଲେ ବଢ଼ାଏ ପ୍ରାଣବାତ ଆସି ।
କ୍ରମରେ ଆଉ ଚାରିପବନ ପ୍ରାଣରେ
ମିଶି କରି ଶରୀର ବଢ଼ାନ୍ତି ଗର୍ଭରେ ।
ଆଉ କଥାଟିଏ କହିବା ରେ ନଗାନା
ଶୁଣ ତା ମୋହଠାରୁ ହୋଇ ଏକମନା ।
ଇନ୍ଦ୍ରିୟ ଆତ୍ମା ମୋକ୍ଷ ବିଷୟ ଏ ଚାରି
କଥାରେଟି ଜାଣ ଜଗତ ଅଛୁ ପୂରି ।
ସେ ଜଗତରେ ଶାସ୍ତ୍ରବେଦ ନାରାୟଣ
ଦେବଙ୍କୁ ଏକାଗ୍ରେ ପାଉଅଛୁ ଜାଣ ।
ହୃଦୟସ୍ଥିତ ବ୍ରହ୍ମବନା ଆନଠାରେ
ଶାସ୍ତ୍ରା ଶବଦ ଜାଣି ସମ୍ଭବ ନ ପାରେ ।
ଗୁରୁ ସୁହୃଦ ଶ୍ରୋତା ହେଉଛନ୍ତି ହୃଦୟ-
ସ୍ଥିତ ବୋଲି ଜାଣ ଗୋ ମୋ ଜୀବନ ପ୍ରିୟ ।
ପୂର୍ବରେ ଦେବତାଏ ଋଷିଙ୍କ ସଙ୍ଗତେ
ଭେଟିଲେ କୁଶଧର ବ୍ରହ୍ମା ମହାମତେ ।
ବ୍ରହ୍ମାଙ୍କୁ ପଚାରିଲେ ଯେଉଁ କଥା ଶ୍ରେୟ
ସେ କଥା ପିତାମହ କର ତ ଉଦୟ ।
ବ୍ରହ୍ମା ବୋଇଲେ ହେ ପ୍ରଣବ ଏ ସଂସାରେ
ଶ୍ରେଷ୍ଠ ଅଟଇ ଏହା ବିଚାର ମନରେ ।
ଏରୂପେ ଦେବଋଷି ବ୍ରହ୍ମାଠାରୁ ଶୁଣି
ତାହା ନ କରି କଲେ ଆନ କଥାଶ୍ରେଣୀ ।
କେତେ ଲୋକ ବିଷୟ କରି ଗରଜନ
କେବଳ ବ୍ରହ୍ମାଙ୍କ ରଖିଲେ ନେଇ ମନ ।
ପାପ ଶୁଭ ସୁଖ ଏ ତିନ ମଧ୍ୟେ ରତ
ଯା ସର୍ବେ ସେପରି ହୋଇଲେ ସେ ଜଗତ ।
ଏ ତିନୋଟି କଥାକୁ ଛାଡ଼ଅଛୁ ଯେହୁ
ବ୍ରହ୍ମସ୍ବରୀ ବୋଲି ତାହାଙ୍କୁ ଜାଣ କହୁ ।

କାମ କ୍ରୋଧ ଶୋକ ସଲିଳରେ ଆବୃତ୍ତ
ଦୁର୍ଗକୁ ମୁଁ ଗ୍ରହ କରୁ ଗୋ ପ୍ରାଣମିତ ।
ବନମଧ୍ୟରେ ଆସି ପ୍ରବେଶ ହୋଇଛୁ
ମୋତେ ଆଉ ତୁମ୍ଭେ ନ ପଚାର ଗୋ କଛୁ ।
ବ୍ରାହ୍ମଣୀ ବୋଇଲେ ହେ ବନର କି ରୂପ
ଜାଣିଥିଲେ ମୋ ଆଗେ କହ ଦ୍ବିଜ ନୃପ ।
ବ୍ରାହ୍ମଣ ବୋଇଲେ ସେ ବନ ସ୍ଥୂଳ ସୂକ୍ଷ୍ମ
ରୂପରେ କାହିଁ ନାହିଁ ନାଶଙ୍କ ଉତ୍ତମ ।
ସେ ବନେ ରହିଲେ ନ କରେ କେକ ଶୋକ
ଆଶ୍ରୟ କରି ନ ପାରଇ ହୃଦେ ଦକ ।
ପଞ୍ଚତନମାତ୍ର ମହତ ଅହଙ୍କାର
ଏ ସାତୋଟି ଅଟନ୍ତି ବୃକ୍ଷ ସେ ବନର ।
ଛଅ ଇନ୍ଦ୍ରିୟ ବୁଦ୍ଧି ମିଶିଣ ସାତୋଟି
ଫଳକୁ ସେହିବୃକ୍ଷ କରିଥାଇ ଗୋଟି ।
ରୂପାଦି ପଞ୍ଚ ସୁଖ ଦୁଃଖ ଅଛିଥିରେ
ପ୍ରାର୍ଥିତ ହୋଇଅଛୁ ଜାଣ ନିରନ୍ତରେ ।
ପଞ୍ଚମହାଭୂତ ଯେ ପ୍ରକୃତି ପୁରୁଷ
ଏ ସାତ ଆଶ୍ରମରେ ଯୁକ୍ତ ସେ ନାରାଣ ।
ଭୂତଚତୁଷ୍ଟୟ ଯେ ବୁଦ୍ଧି ଆତ୍ମା ମନ
ସାତଙ୍କ ସେ ବନ ସମାଧି ବୋଲି ଘେନ ।
ଏ ଯୋଗମାନଙ୍କର ସାତ ଉପଦେଶ
ସାତ ଦୀକ୍ଷା ବୋଲିଣ ବିଚାର ମାନସ ।
ପଞ୍ଚଭୂତ ବୃକ୍ଷେ ଯେ ଯାହା ଗୁଣ ପୁଷ୍ପ
ଧରି ରହିଅଛନ୍ତି ସେ ବନେ ଅମାପ ।
ପରମାତ୍ମା ଅଗ୍ନି ହୋଇ ସେ ବନ ମଧ୍ୟେ
ବିହାର କରୁଛନ୍ତି ଜାଣ ଅତି ଶ୍ରଦ୍ଧେ ।
ସେ ବନ ଆଶ୍ରା କରି ମହାଋଷିଗଣ
ବ୍ରହ୍ମଙ୍କଠାରେଟି ନିବେଶନ୍ତି ମନ ।
ପଞ୍ଚମହାଭୂତ ଦେହରେ ଛନ୍ତି ରହି
ତେବେ ହେଲେ ତାଙ୍କର ଗୁଣ ନ ଭାବଇ ।
ଏ ବିଷୟ ଅଧ୍ୱର୍ଯ୍ୟୁ ଯତିଙ୍କ ସମ୍ବାଦ
ଯା ଅଛୁ ତା କହିବା ଶୁଣ ବନ୍ଧୁ ମୋଦ ।
ଅଧ୍ୱର୍ଯ୍ୟୁ ଯାଗ କରି ପଶୁର ବେକଟି
ମୋଡ଼ିବା ବେଳେ ଯତି ଛୁଇଁଣ କାଳୁଟି ।
ବୋଇଲେ ଦ୍ବିଜଜନ୍ମ ହୋଇ ଏ ଅଧମ
କରୁଛୁ କି ପାଇବୁ ଯାଇ ସ୍ୱର୍ଗଧାମ ।

ଅଧ୍ୱର୍ଯ୍ୟୁ ବୋଇଲେ ହେ ଏ ଛେଳର ନାଶ
କେବେ ନାହିଁ ଜାଣ ଯାଗରେ ଯତିଗଣ ।
ବେଦ ଲେଖିଅଛି ଏ ଛେଳ ହେଲେ ହତ
ପଞ୍ଚଭୂତ ହେବେ ଯେ ଯାହା ସ୍ଥାନେ ଗତ ।
ଯତି ବୋଇଲେ ଆହେ ଯାଗରେ ଛେଳକ
ମାଇଲେ ଯେବେ ପାଉଅଛି ସେ ଗତିକ ।
ତେବେ ତୁମ୍ଭର ତ ଯାଗରେ କିଛି କାର୍ଯ୍ୟ
ଥିଲାପରି ଦିଶୁନାହିଁ ହେ ଦ୍ୱିଜରାଜ ।
ପଣ୍ଡିତେ କହୁଛନ୍ତି ସବୁ ଧର୍ମଙ୍କରେ
ଅହିଂସାଟି ସାର ଅଟଇ ଏ ସଂସାରେ ।
ଅଧ୍ୱର୍ଯ୍ୟ ବୋଇଲେ ହେ ହିଂସା ବିନା ଚେଷ୍ଟା
କରି ନ ପାରଇଟି କଲେ ଯେତେ ନିଷ୍ଠା ।
ଯତି ବୋଇଲେ ମୂର୍ଖ ସବୁଠାରେ ସମ
ବୁଦ୍ଧି କରିଣ ହୋଇଅଛି ଯେ ନିର୍ମମ ।
ଏହି ସକଳଟି ପାତକକୁ ଭୟ
କରୁନାହିଁ ଜାଣ ଏ ମୋହର ହୃଦୟ ।
ଅଧ୍ୱର୍ଯ୍ୟୁ ବୋଇଲେ ତୁମ୍ଭର ମତ ଶୁଣି
ଆନନ୍ଦ ହେଉଛି ମୁଁ ମନେ ମନେ ଗୁଣି ।
କେବଳ ଦେବକୃତ ମତ ଆଚରିଛି
ଏ ସବାଙ୍କୁ ପାପର ଭୟ ଛାଡ଼ିଅଛି ।
ଏହା ଶୁଣି ଯତି ରହିଲେ ମୂକ ହୋଇ
ଅଧ୍ୱର୍ଯ୍ୟୁ ଯାଗ ତହୁଁ ଦେଲେ ପ୍ରବର୍ତ୍ତାଇ ।
ଏହି ସକାଶରୁଟି ମୋକ୍ଷ ଅତି ସୂକ୍ଷ୍ମ
ଅଟଇ ଜାଣ ଆଗୋ ଯୁବତୀ ଉତ୍ତମ ।
କାର୍ତ୍ତବୀର୍ଯ୍ୟ ସିନ୍ଧୁ ସମ୍ବାଦ ମୋକ୍ଷ ପାଇ
ଯା ପଡିଛି ତାହା ଶୁଣ ଗୋ ପ୍ରିୟସଖି ।
କାର୍ତ୍ତବୀର୍ଯ୍ୟରାଜା ମହୀରେ ରାଜା ହେଲେ
ସାତରତ୍ନ ସମ୍ପତ୍ତି ଆପଣାର କଲେ ।
ଦିନେ ସେ ସମୁଦ୍ରଙ୍କ ସମୀପକୁ ଯାଇ
ସମୁଦ୍ରଙ୍କୁ କାଣ୍ଡ ବିନ୍ଧିଲେ ରୋଷ ବହି ।
ତାହା ଦେଖି ସମୁଦ୍ର ଧରି ନିଜରୂପ
ବୋଇଲେ ହେ ନୃପ ନ କର ମନେ କୋପ ।
ମୋ ଜଳରେ ଯେତେ ଅନନ୍ତ ଜୀବ ରହି
ମଲେ ସେ ତୁମ୍ଭ କାଣ୍ଡ ଟିଣ୍ଡି ଦେଶେ ବହି ।
ଏ ସକାଶୁ କହୁଛି ତୁମ୍ଭ ଅନୁରୂପ
ନୃପଠାରେ ନୃପତି ରହି ହୃଦତାପ ।

କାର୍ତ୍ତବୀର୍ଯ୍ୟ ବୋଇଲେ ମୋ ସମାନ ବଳୀ
କାହିଁ ଅଛି କହ ତ ସିନ୍ଧୁ ମନେ ଭାଳି ।
ସମୁଦ୍ର ବୋଇଲେ ହେ ଜମଦଗ୍ନି ସୁତେ
ଅଛନ୍ତି ବଳୀୟାର ଯୁଦ୍ଧ ମହାମତେ ।
ଏହା ଶୁଣିଣ କାର୍ତ୍ତବୀର୍ଯ୍ୟ କ୍ରୋଧ ହୋଇ
ଜମଦଗ୍ନିଙ୍କର ଆଶ୍ରମେ ହେଲେ ଯାଇ ।
ରାମଙ୍କୁ କ୍ରୋଧ କରାଇବାକୁ ଉପାୟ
ଭାବ କରିଲେ ଜମଦଗ୍ନିଙ୍କ ଅପ୍ରିୟ ।
ରାମ ତାହା ନ ସହି ପର୍ଶୁ କରେ ବହି ।
କାଟିଲେ କାର୍ତ୍ତବୀର୍ଯ୍ୟ ବହୁ କ୍ରୋଧ ହୋଇ ।
ଏହା ବାହାରେ ପୁଣି ପରଶୁରେ ମୁଣ୍ଡ
ପରଶୁରାମ କାଟି ଗଡ଼ାଇଲେ ଦାଣ୍ଡ ।
ତା ଦେଖି କାର୍ତ୍ତବୀର୍ଯ୍ୟ ଲୋକ ଗୋଟି ହୋଇ
ଯୁଦ୍ଧେ ରାମ ତାଙ୍କୁ ଶୁଆଇଲେ ମହୀ ।
ଏହା କରି ସାରିଣ ପର୍ଶୁରାମ ବୀର
ରକତରେ ଅଙ୍ଗକୁ କରି ଜରଜର ।
ମହୀମଧ୍ୟେ ଯେତେ କ୍ଷତ୍ରିୟ ରହିଥିଲେ
ସେମାନଙ୍କୁ ମଧ୍ୟ ସେ ମାରି ପକାଇଲେ ।
କ୍ଷତ୍ରିୟସ୍ତ୍ରୀଙ୍କ ପେଟକୁ ପରଶୁରେ
କାଟି ପିଲା ମାଇଲେ ରାମ ନିର୍ଭୟରେ ।
ଏରୂପେ ଏକୋଇଶଥର ଯେ କ୍ଷତ୍ରିୟ
କ୍ଷୟ କରିଲେ ଜମଦଗ୍ନିଙ୍କ ତନୟ ।
ରାମଙ୍କ ପିତାମହେ ଦେବଙ୍କର ତୁଲେ
ତାହା ଦେଖି କରିଣ ରାମଙ୍କୁ କହିଲେ ।
ଏତିକ ଅଧରମ ନ କର, ବ୍ରାହ୍ମଣ
ଜନମକୁ ତ ପାଇଅଛ ହେ ଆପଣ ।
ରାମ ଯେ ବୋଇଲେ ବାପାଙ୍କୁ କାର୍ତ୍ତବୀର୍ଯ୍ୟ
ମାରିବାରୁ ମରୁଛି କ୍ଷତ୍ରିୟ-ସମାଜ ।
ତୁମ୍ଭେ କାହିଁପାଇଁ ନିଷେଧ କରୁଅଛ
ମାରିବି ମୁହିଁ ଖୋଜି କ୍ଷତ୍ରିୟଙ୍କ ବଂଶ ।
ପିତୃମାନେ ବୋଇଲେ ଅଯୁକତ କର୍ମ
କହିଲେ କ୍ଷମା ନ ଛାଡ଼ ତୁ ଦ୍ୱିଜୋତ୍ତମ ।
ଏହି ବିଷୟେ ପୁରାତନ ଇତିହାସ
ଯା ଅଛି ତାହା ଶୁଣ ଦେଇଣ ମାନସ ।
ଅଳର୍କରାଜା ଧନୁର୍ବିଦ୍ୟାରେ ଧରଣୀ
ଜିଣି ବ୍ରହ୍ମ ଧ୍ୟାନ କରିବ ମନେ ଗୁଣି ।

ମନକୁ କାଣ୍ଡ ବନ୍ଧ ନାଶିବ ଭାବିଲେ
ମନ ନିବର୍ତ୍ତିଲେ ଯେ ଯାଗ ହେବ ଭଲେ ।
ମନ ବୋଇଲେ ନ ବଞ୍ଚିବି ମୋତେ କାଣ୍ଡେ
ପଡ଼ିବ ଆହେ ତୁମ୍ଭେ ଯାଇ ଯମଦାଣ୍ଡେ ।
ଯେଉଁ କାଣ୍ଡ ବିନ୍ଧିଲେ ନ ମରିବ ତୁମ୍ଭେ
ମୁଁ ମରିବି ସେ କାଣ୍ଡ ବିନ୍ଧି ଦେଲୁ ଅମ୍ଭେ ।
ଏହା ଶୁଣି ରାଜା ବୋଇଲା ମୋର ନାକ
ଘେନୁଅଛୁ ଏ ସଂସାରର ଗନ୍ଧପାକ ।
ଆଗ ଏହାକୁ ମୁହିଁ ପକାଇବି କାଟି
ପଛେ ବର୍ତ୍ତିବି ବ୍ରହ୍ମାଙ୍କ ଭୁବନାଟି ।
ନାକ ବୋଇଲା ଆହେ ଅଜ୍ଞାନାତ୍ମକ
କାଟିଲେ ତୁମ୍ଭେ ବୋଲାଇବଟି ଅନାକ ।
ଏହା କହି ଅଲର୍କ ବୋଇଲେ ଜିଭକୁ
କାଟିବି ଏ ଖାଉଛୁ ସମସ୍ତ ରସକୁ ।
ଜିଭ ବୋଇଲା ହେ କାଟିବ ଯେବେ ମୋତେ
ସାଧିବ ଯୋଗ ବସି ଯମଙ୍କ ପୁରତେ ।
ଜିଭଠାରୁ ଶୁଣିଣ ଏମନ୍ତ ଉତ୍ତର
ତ୍ୱଗିନ୍ଦ୍ରିୟଠାରେ ନମିଲେ ନରବର ।
ତ୍ୱଗିନ୍ଦ୍ରିୟ ବୋଇଲା ମୁଁ ତ ତୁମ୍ଭ ଦେହ
ମୋତେ କାଟିଲେ କି ନୋହିବ ତୁମ୍ଭ ମୋହ ।
ଏରୂପେ ଶ୍ରୋତ୍ର ଚକ୍ଷୁ ବୁଦ୍ଧି କହି କହି
ବୋଧିଲେ ଅଲର୍କକୁ ଜାଣ କହୁଥାଇ ।
ଅଲର୍କ ଘୋର ତପ କରି ସାତଙ୍କର
ନ ଜାଣିଲେ ବିନାଶ କରିବାକୁ ଶର ।
ବହୁତକାଳ ଅନ୍ତେ ଯୋଗ ମାରଗଣ
ପାଇଲେ ସେ ସାତଙ୍କ ନାଶ ପାଇଁ ଜାଣ ।
ସେହି ବାଣଙ୍କରେ ଇନ୍ଦ୍ରିୟଙ୍କର ନାଶ
କଲେ ଏକମନେ ସେ ଅଲର୍କ ନରେଶ ।
ମହତସିଦ୍ଧି ପାଇ ପାଇଲେ ବ୍ରହ୍ମଙ୍କୁ
ତାରି ତ ଥିଲେ ଯୋଗବଳରେ ଆତ୍ମାକୁ ।
ଆହେ ପରଶୁରାମ ଜାଣି ଏହି କଥା
ତପ କରି ନ ଦିଅ କ୍ଷତ୍ରିୟଙ୍କୁ ବ୍ୟଥା ।
ଏରୂପେ ପିତୃଏ ବୋଲନ୍ତେ ପର୍ଶୁରାମ
ତପ କରିଲେ ଗାଢ଼ କ୍ଷତ୍ରିୟଙ୍କୁ ତମ ।
ଏହା କହି ବ୍ରାହ୍ମଣ ବୋଇଲେ ଗୋ ନାରୀ
ଶୁଣ ଆନ କଥା ଏ କହିବି ବିସ୍ତାରି ।

ହରଷାନନ୍ଦ ପ୍ରୀତି ସତ୍ତ୍ୱଗୁଣେ ଶତ୍ରୁ
ଲୋକଙ୍କର ଏହା ମନରେ କରି ହେତୁ ।
ତୃଷ୍ଣା କ୍ରୋଧ ସଂରମ୍ଭ ଅଟେ ରଜୋଗୁଣ
ଶତ୍ରୁ ବୋଲି ତାକୁ ମୋ କହିବାରୁ ଜାଣ ।
ଶ୍ରମ ତନ୍ଦ୍ରା ମୋହ ଏ ତିନି ତମୋଗୁଣ
ଶତ୍ରୁ ଅଟଇ ଆଗୋ ନବୀନା-ରତନ ।
ଏହିମାନ ଜାଣି ଯେ ଏମାନ ଜିଣିଛି
ବ୍ରହ୍ମଙ୍କର ଭୁବନେ ସ୍ଥାନ ସେ ପାଉଛି ।
ଏହି ବିଷୟରେ ଯେ ଅମ୍ବରୀଷରାଜା
ଯାହା ବୋଲିଛନ୍ତି ତା ଶୁଣ ଦେଇ ମନ୍ଥା ।
ସବୁ ଶତ୍ରୁ ଜିଣିଲି ଲୋଭଶତ୍ରୁ ମୁହିଁ
ଜିଣିନାହିଁ ତାହାକୁ ଏବେ ଜିଣିବଇଁ ।
ଲୋଭ ଥିଲେ ସବୁ ଶତ୍ରୁ ଏ ଉପଗତ
ହୋଇ ନ କରନ୍ତି ଧର୍ମକୁ ପରାପତ ।
ଏପରି ଆମ୍ବରୀଷ ଚିନ୍ତା କରି ମନେ
ଲୋଭକୁ ନାଶ କଲେ ଜାଣ ଗୋ ବଦନେ ।
ବ୍ରାହ୍ମଣ ଜନକଙ୍କ ସମ୍ବାଦ ଯେରୂପେ
ପଢ଼ିଛି ତା କହିବା ଶୁଣ ଗୋ ସେରୂପେ ।
କେଉଁଣସି ଦ୍ୱିଜ କରନ୍ତେ ଅପ୍ରାଧକୁ
ଜନକ ନୃପବର ବୋଇଲେ ତାହାଙ୍କୁ ।
ତୁମ୍ଭେ ମୋର ଦେଶରୁ ଯାଅ ହେ ବ୍ରାହ୍ମଣ
ସହି ନ ପାରିବି ମୁଁ ତୁମ୍ଭ ଆଚରଣ ।
ସେ ବ୍ରାହ୍ମଣ ବୋଇଲେ ତୁମ୍ଭ ଦେଶ କେତେ
ଅଛି ତା କହ ମୁଁ ଗ୍ରହିବି ମହାମତେ ।
ଏହା ଶୁଣି ଜନକ ନ କହି କଥାକୁ
ଧ୍ୟାନ କରି ରହିଲେ ଦ୍ୱିଜ ଉତ୍ତରକୁ ।
ଏ ସକାଶୁଁ ତାଙ୍କର ଜାତ ହେଲା ମୋହ
ମୋହକୁ ଛଡ଼ାଇଣ ଜନକ-ନୃସିଂହ ।
କହିଲେ ପିତୃପିତାମହଙ୍କ ଅର୍ଜିତ
ପୃଥିବୀ ହୋଇଅଛି ମୋହର ଆୟତ୍ତ ।
ମୋର ବୋଲି କରି ଭାବନା କଲେ ମୁହିଁ
କେହି ନୁହନ୍ତି ଆହେ ଜାଣ ଦ୍ୱିଜସାଇଁ ।
ଆତ୍ମାରଟି ମୋହର ଯେ ନୁହଇ ଆୟତ୍ତ
ମନ୍ତ୍ରୀ କି ରୂପରେ ହେବ ହେ ଦ୍ୱିଜସୁତ ।
ତୁମ୍ଭର ଏବେ ଯହିଁ ହେଉଅଛି ଇଚ୍ଛା
ତହିଁ ଯାଇଁ ରହ ହେ ଦ୍ୱିଜକୁଳବତ୍ସା ।

ବ୍ରାହ୍ମଣ ବୋଇଲେ କହ କି ଆଶ୍ରେ କରି
ରାଜ୍ୟରୁ ମମତା ଛାଡ଼ିଲେ ଦଣ୍ଡଧାରୀ ।
ଜନକ ବୋଇଲେ ହେ ସବୁର ମୁଁ ନାଶ
ଜାଣିବାରୁ ଛାଡ଼ିଲି ସବୁର ମୂହାଁସ ।
ପଞ୍ଚମହାଭୂତଙ୍କ ପଞ୍ଚଗୁଣଯାକ ।
ଜାଣି ତ ଥିଲି ପୂର୍ବୁଁ ଦ୍ୱିଜଙ୍କ ନାୟକ ।
ମନ ମନୋରଥ କଢ଼ିଲି ଆନଠାକୁ
ମୁଁ ତାକୁ ଘେନଯାଏ ସୂକ୍ଷ୍ମରୂପଠାକୁ ।
କରୁଅଛୁ କରମ ଦେବତା ଅତିଥି
ପାଇ ହେ ଦ୍ୱିଜବର ନୋହୁ କରୁ ବ୍ୟର୍ଥୀ ।
ବ୍ରାହ୍ମଣ ଏହା ଶୁଣି ହୋଇ ହସ ହସ
ବୋଇଲେ ମୁହିଁ ଧର୍ମଦେବତା ନରେଶ ।
ତୁମ୍ଭଙ୍କୁ ଜାଣିବାକୁ ଆସିଥିଲି ମୁହିଁ
ଜାଣିଲି ବ୍ରହ୍ମବିଦ ତୁମ୍ଭେ ନରସାଇଁ ।
ବ୍ରାହ୍ମଣ ବୋଇଲେ ଗୋ ନବୀନା-ରତନ
ଏ ଜଗତେ ବ୍ୟାପ୍ତ ମୁଁ ବ୍ରହ୍ମରୂପେ ଜାଣ ।
ତୁମ୍ଭେ ତ ହୋଇଅଛ ଭାରିଯା ମୋହର
ପାଇବ ମୋର ଦେହ ବୋଲି ମନେ କର ।
ବ୍ରାହ୍ମଣୀ ବୋଇଲେ ହେ କି ଉପାୟ କଲେ
ଏ ଜ୍ଞାନକୁ ଲୋକ ପାଏ ତା କହ ଭଲେ ।
ବ୍ରାହ୍ମଣ ବୋଇଲେ ଗୋ ତପ ଶାସ୍ତ୍ର ଦୁଇ
ଜାଣିଲେ ଏହି ଜ୍ଞାନକୁଟି ଜାଣ ପାଇ ।
ଏହା ଶୁଣି ଆହେ ଅର୍ଜ୍ଜୁନ ନରବର୍ଯ୍ୟ
ବ୍ରାହ୍ମଣୀ ଆତ୍ମଜ୍ଞାନେ ବଳାଇଲେ ବୁଦ୍ଧି ।
ସେ ବ୍ରାହ୍ମଣ ମୋହର ବୋଲନ୍ତୁଟି ମନ
ସେ ବ୍ରାହ୍ମଣୀ ମୋହର ବୁଦ୍ଧି ଅରଜୁନ ।
କ୍ଷେତ୍ରଜ୍ଞ ବୋଲି କରି ଯାହାକୁଟି କହି
ମନେ କର ତୁମ୍ଭେ ଅଟଇଁ ମୁହିଁ ସେହି ।
ବ୍ରାହ୍ମଣ-ଗୀତ ହେଲା ଏଠାରେ ସମାପ୍ତି
କହଇ କୃଷ୍ଣସିଂହ ଧରାକୋଟ ପତି ।

। ● ।

## ଗୁରୁ ଶିଷ୍ୟ-ସମ୍ବାଦ

ଅର୍ଜ୍ଜୁନ ବୋଇଲେ ବୋଲାଏ ବ୍ରହ୍ମ କଏ
ତାହା ମୋତେ କହ ହେ ଯଦୁକୁଳ ରାୟେ ।
ଶ୍ରୀକୃଷ୍ଣ ବୋଇଲେ ହେ ଗୁରୁ ଶିଷ୍ୟଙ୍କର
ସମ୍ବାଦକୁ କହିବା ଶୁଣ ପାର୍ଥବୀର ।
ଶିଷ୍ୟ ଦ୍ୱିଜ ଥରକେ ଗୁରୁଦ୍ୱିଜଠାକୁ
ଯାଇ କରି ପୁଚ୍ଛିଲେ ଶ୍ରେୟର କଥାକୁ ।
ଏହା ବାହାରେ ତୁମ୍ଭେ ଆମ୍ଭେ ଦୁଇଲୋକ
କେଉଁଠାରୁ ଆସିଥାଇଁ ଏ ମର୍ତ୍ତ୍ୟଲୋକ ।
ଏ ସ୍ଥାବର ଜଙ୍ଗମଙ୍କର ପିତା କେହି
ଏହା ମୋତେ କହିବା ହୋଇବ ବତାଇ ।
କାହା ସକାଶରୁଟି ପ୍ରାଣୀଙ୍କର ପ୍ରାଣ
ରହିଛି ପ୍ରାଣୀ ଆୟୁ ଅଟେ କି ପ୍ରମାଣ ।
ସତ୍ୟ ତପସ୍ୟା ଗୁଣ ପନ୍ଥା ସୁଖ କାଏ
ବୋଲାଏ କହ ମୋତେ ଦ୍ୱିଜକୁଳରାୟେ ।
ମୁଁ ତ ଏ ସଂସାରେ ହୋଇଛି ଅତି ଘାରୁ
ଏଣୁ ପଚାରୁଛି ତୁମ୍ଭଙ୍କୁ ଜାଣ ଗୁରୁ ।
ଗୁରୁ ବୋଇଲେ ହେ ପରମବ୍ରହ୍ମ ଆନ
ସନ୍ନ୍ୟାସଟି ଅଟଇ ତପରେ ମଣ୍ଡନ ।
ଯେଉଁ ଲୋକ ଜ୍ଞାନତତ୍ତ୍ୱକୁ ଜାଣିଥାଇ
ସମସ୍ତଙ୍କୁ ବଡ଼ ବୋଲିଟି ତାକୁ କହି ।
ମହତ୍ତ୍ୱନ୍ତୁ ସଂସର୍ଗ ଏକତ୍ର ନକାରି
ଯେ ଜାଣେ, ହୁଏ ସେ ସଂସାର ଦୁଃଖୁଁ ମୁକ୍ତ ।
ଯେଉଁ ଲୋକ କାମନା ଛାଡ଼ି ଅଭିମାନ
ନ କରେ ବ୍ରହ୍ମଠାରେ ହୁଅଇ ସେ ଲୀନ ।
ପ୍ରକୃତି ଗୁଣ ତତ୍ତ୍ୱ ପ୍ରାଣୀଙ୍କ ବିଧାନ
ଯେ ଜାଣେ ପାପମୁକ୍ତ ତାହାର ଜୀବନ ।
ସଂସାରଦୁଃଖକୁ ଯେ ଜ୍ଞାନ ସିରେ କାଟେ
ମୃତ୍ୟୁ ଜନ୍ମ ରହି ନ ପାରେ ତା ନିକଟେ ।
ଉତ୍ତମପଦ ଏବେ କହିବା ତୁମ୍ଭଙ୍କୁ
ତୁମ୍ଭେ ଦିଅ ଆମ୍ଭର କଥାରେ ମନକୁ ।
ବଶିଷ୍ଠ ଗୌତମ ଭାର୍ଗବ ବୃହସ୍ପତି
କାଶ୍ୟପ ଭରଦ୍ୱାଜ ବିଶ୍ୱାମିତ୍ର ଅତ୍ରି ।
ଏମାନେ ଅଙ୍ଗିରାକୁ ଆଗରେ ଚଳାଇ
ଭେଟିଲେ ଯାଇଣ ସାବିତ୍ରୀଦେବୀପାଇଁ ।
ବ୍ରହ୍ମାଙ୍କର ପାଦରେ କରି ନମସ୍କାର
ପଚାରିଲେ ତାହାଙ୍କୁ ଯୋଡ଼ି ବେନି କର ।
କିରୂପରେ କରମ କଲେ ପାପମୁକ୍ତ
ହୋଇ ଜୀବ ହୋଇଛି ବ୍ରହ୍ମଠାକୁ ଗତ ।
କେଉଁ କର୍ମ କରିଲେ ଲୋକ ସାଧୁ ହୋଏ
ତାହାକୁ ସତ୍ୟ ବୋଲି କହ ଦେବରାୟେ ।

କେଉଁ କର୍ମକୁ କଲେ ଉତ୍ତର ଦକ୍ଷିଣ
ମାର୍ଗରେ ଯାଆନ୍ତି ମାନବେ ତା ବଖାଣ ।
ପ୍ରାଣୀମାନଙ୍କର ଉତ୍ପତ୍ତି ପ୍ରଳୟ
କହିବା ହେବ ମଧ୍ୟ ପଦଙ୍କ ତନୟ ।
ବ୍ରହ୍ମା ବୋଇଲେ ଆହେ ସତ୍ୟରୁ ସ୍ଥାବର
ଜଙ୍ଗମ ହୋଇଛନ୍ତି ରାଜା ମନେ କର ।
ତପସ୍ୟା କରିବାକୁ ସଂସାରରେ ଇଚ୍ଛି
ଅଛନ୍ତି ଟି ସେମାନେ ଜାଣ କହୁଥାଇ ।
ବ୍ରହ୍ମ ତପସ୍ୟା ପ୍ରଣାପତି ଏ ଜଗତ—
ମଧ୍ୟରେ ସତ୍ୟ ବୋଲି ହୋଇଛି ଟି ଖ୍ୟାତ ।
ଋଷିମାନେ ସତ୍ୟକୁ ଆଶ୍ରେ କରିବାରୁ
ବୋଲାଉଛନ୍ତି ଚାରିବର୍ଣ୍ଣଙ୍କରେ ଗୁରୁ ।
ଚାରିବେଦ ଚାରିଆଶ୍ରମ ଚାରିବର୍ଣ୍ଣ
ଭିନ୍ନେ ଭିନ୍ନେ କହିବା ଶୁଣ ଦେଇ କାନ ।
ଚତୁଷ୍ପଦ ଧର୍ମକୁ ନିତ୍ୟ ବୋଲି କହି
ଊଣା ହୋଇଲେ ଜାଣ ଅନିତ୍ୟ ବୋଲାଇ ।
ଉତ୍ତମ ପନ୍ଥା ଏବେ କହିବା ତୁମ୍ଭଙ୍କୁ
ଭଲକରି କଥାରେ ନିବେଶ ମନକୁ ।
ଚାରିଆଶ୍ରମରେ ଗୃହସ୍ଥାଶ୍ରମ ସାର
ଆଶ୍ରା ଅଟଇ ହେ ମୁନିଏ ମନେ କର ।
ତିନିବର୍ଣ୍ଣ ଯେ ବାମପ୍ରସ୍ଥକୁ କରିବେ
ଶୁଦ୍ରଠାରେ ତାହା ନ ସମ୍ଭବେଟି କେବେ ।
ଚାରି ଆଶ୍ରମେ ଯେ ଧରମ ଆଚରଇ
ପ୍ରାଣୀଙ୍କ ଉତ୍ପତ୍ତି ଧରମ ସେ ଜାଣଇ ।
ପ୍ରକୃତି ମହତ୍ତତ୍ତ୍ୱ ପଞ୍ଚମହାଭୂତ
ଏକାଦଶେନ୍ଦ୍ରିୟ ଶବ୍ଦାଦି ପଞ୍ଚମାତ୍ର ।
ଏମାନଙ୍କ ସ୍ୱଭାବ ସ୍ୱରୂପକୁ ଜାଣି—
ଥିଲେ ତରି ଯାଏ ସଂସାର ମଧ୍ୟେ ପ୍ରାଣୀ ।
ସତ୍ତ୍ୱ ରଜ ତମକୁ ଗୁଣ ବୋଲି କହି
ଥାଆନ୍ତି ଟି ଏମାନେ ଧରାଧରି ହୋଇ ।
କର୍ମର ଅନିଷ୍ଟସ୍ୱ ଅତ୍ୟାଗ ଅଜ୍ଞାନ
ମୋହ ଭୟ ଶୋକ ଯେ ସୁକୃତ ଭୂଷଣ ।
ହୀନବୃତ୍ତି ନାସ୍ତିକ୍ୟ ଅଶ୍ରଦ୍ଧା ଅମୈତ୍ରୀ
ପରବାଦକଥା ଅକ୍ଷମା ଯେ ଅସ୍ତୁତି ।
ଅନାର୍ଜବ ସେ ଅଚେତନା ମନ୍ୟୁ ଭ୍ରମ
ଅଶୁଭଭକ୍ତି ଲୋଭ ମାତ୍ସର୍ଯ୍ୟ ବୃଥାରମ୍ଭ ।
ବୃଥାଦାନ ବୃଥାଭକ୍ଷଣଟି ତମର—
ସକାଶେଁ ହୋଏ ହେ ଋଷିଏ ମନେ କର ।
ବାହନ କୃମି କୀଟ ନିବ୍ୟାଦ ସ୍ଥାବର
ପଶୁ ଦନ୍ଦଶୂକ ଯେ ଅଣ୍ଡଜ ବଧିର ।
ଜାତୁଧାନ ଚତୁଷ୍ଟରଣ ଉନମତ୍ତ
ବିହଙ୍ଗମ ଆଦିଟି ତମୋଗୁଣବନ୍ତ ।
ମୋହ ମହାମୋହ ତାମିସ୍ର ତମ କ୍ରୋଧ
ଏରୂପେ ତମୋଗୁଣ ହୁଏ ପଞ୍ଚବିଧ ।
ଏହିମାନ ଜାଣି ଯେ ବେଗ୍ଭର କରଇ
ତାମସଗୁଣ ତାକୁ ବାଧି ନ ପାରଇ ।
କହିବି ମୁଁ ମୁନିଏ ତୁମ୍ଭ ସନ୍ନିଧାନେ
ରଜୋଗୁଣ କଥାକୁ ଶୁଣ ଏକମନେ ।
ସୁଖ ଦୁଃଖ ଶ୍ରମ ଯେ ଆତପ ଆୟାସ
ବିଗ୍ରହ ସନ୍ଧି କ୍ଷମା ଯେ ଆତପ ଆୟାସ ।
କଳହ ଦ୍ୱେଷ ଈର୍ଷା ପୈଶୁନ୍ୟ ଐଶ୍ୱର୍ଯ୍ୟ
ବିକ୍ରମ ହସ୍ତ ଲୋକଚନ୍ତାବଳ ଶୌର୍ଯ୍ୟ ।
ମୃଷାବାଦ ମୃଷାଦାନ ଅସ୍ତୁତି ସ୍ତୁତି
ସେବା ତୃଷ୍ଣା ମାନ୍ତ ପ୍ରମାଦ ନମସ୍କୃତି ।
ପରିବାଦ ପରଗ୍ଳାନି ହେ ହେତୁବାଦ
ପ୍ରତାପ ପ୍ରଶଂସା ପରିକ୍ଷଣ ମଦ ।
ନିୟମ ବ୍ରତ ସ୍ୱଧାକାର ସ୍ୱାହାକାର
ତେଜ ହିଂସା ସମର ବଂଶ ବଷଟ୍କାର ।
ଯଜନ ଅଧ୍ୟୟନ ଯାଜନାଧ୍ୟାପନ
ଦାନ ପ୍ରତିଗ୍ରହ ଯେ ପ୍ରାୟଶ୍ଚିତ୍ତ ଭିମାନ ।
ଅଭିଦ୍ରୋହ ମାୟା ଦମ୍ଭ ରାଗ ଭକତି
ପରିତାପ ପ୍ରଜାଗର ଦର୍ପ ପୀରତି ।
ନୃତ୍ୟାଦି ପରସଙ୍ଗ ଦ୍ୟୂତ ପ୍ରମୋଦନ
ରାଜସଲୋକର ଅଟେ ଏ ଗୁଣମାନ ।
ଇହ ପର ଦୁଇରେ ପାଇବାକୁ କୀର୍ତ୍ତି
ରାଜସଧର୍ମଲୋକ କର୍ମ କରୁଥାନ୍ତି ।
ଏହି କଥାକୁ ଜାଣି ସାବଧାନ ହୋଇ
ଧରମ ଆଚରିଲେ ରାଜସ ନୁହଇ ।
ଏବେ ଶୁଣ କହିବା ସତ୍ତ୍ୱଗୁଣ କଥା
ଯାହା କଲେ ଛାଡ଼ଇ ଭବଦୁଃଖ ବ୍ୟଥା ।
ସର୍ବଭୂତହିତ ଆନନ୍ଦ ପରକାଶ
ସାଧୁଜନ ପୀରତି ଆଧିକ୍ୟ ସନ୍ତୋଷ ।

ସୁଖ ଅକାର୍ପଣ୍ୟ ଶରଧା ଅସଂରମ୍ଭ
କ୍ଷମା ଧୃତି ଅହିଂସା ସମତା ବିଶ୍ରମ୍ଭ ।
ସତ୍ୟ ଆରଜବ ଅକ୍ରୋଧ ଅନସୂୟା
ଶୌଚ ଦାକ୍ଷିଣ୍ୟ ପରାକ୍ରମ ଲଜ୍ଜା ଦୟା ।
ଅତନ୍ଦ୍ର ତ୍ୟାଗ ଶୌଚ ଉପେକ୍ଷା ବିସ୍ମୟ
ଅପୈଶୂନ୍ୟ ଆନୃଶଂସତା ଯେ ବିନୟ ।
ସାଧୁବୃତ୍ତି ପ୍ରଶାନ୍ତକର୍ମ ଶୁଭବୁଦ୍ଧି
ବ୍ରହ୍ମଚର୍ଯ୍ୟାସଂମୋହ ନର୍ମମତା ଶୁଦ୍ଧି ।
ସତ୍ତ୍ୱର ଏମାନେଟି ବୋଲାଅନ୍ତି ଗୁଣ
ମୋ କହିବାରୁ ଜାଣ ଆହେ ଋଷିଗଣ ।
ଦାନ ଯୋଗାଧ୍ୟୟନ ପ୍ରତିଗ୍ରହ ବ୍ରତ
ଧରମ ତପରେ ଯେ ନ ବଳାଏ ଚିତ୍ତ ।
ସାତ୍ତ୍ୱିକ ବୋଲକରି ତାହାକୁ ଟି କହି
ଆଶ୍ରା ସେ କରଥାଏ ହରି ପାଦଦୁଇ ।
ସତ୍ତ୍ୱବନ୍ତଲୋକ ଯାଆନ୍ତି ଉପରକୁ ।
ରଜୋବନ୍ତଲୋକ ଯେ ଆସନ୍ତି ମଧ୍ୟକୁ ।
ତପୋବନ୍ତ ଲୋକଟି ନରକକୁ ଯାଇ
ଉକା ପାଡ଼ୁଥାଆନ୍ତି ବୋଲି ବାବୁ ଭାଇ ।
ଏହି ଜଗତଯାକ ତ୍ରିଗୁଣଆତ୍ମକ
ଏଣୁ ଭୋଗ କରନ୍ତି ସୁଖ ଦୁଃଖ ଶୋକ ।
ପ୍ରକୃତିରୁ ଆଗ ହୋଇଲା ମହତତ୍ତ୍ୱ
ଏଣୁ ଏହା ନାମ ପ୍ରଥମସର୍ଗ ଖ୍ୟାତ ।
ମହତତ୍ତ୍ୱକୁଟି ଯେ ବୁଦ୍ଧି ପ୍ରଜ୍ଞା ମତି
ବିଷ୍ଣୁ ଜିଷ୍ଣୁ ଶମ୍ଭୁ ବୋଲିଣ କହିଥାନ୍ତି ।
ଏ ତତ୍ତ୍ୱଂଜାଣିମା ଲୋକର ନାହିଁ ମୋହ
ଦେଖିଲେ ତାକୁ ଦେବେ କରନ୍ତି ସ୍ନେହ ।
ଚିତ୍ତଗୁହାଶୟ ବିଷ୍ଣୁଙ୍କୁ ଯେ ଜାଣଇ
ଏ ସଂସାର ତାହାକୁ ବାଧି ନ ପାରଇ ।
ମହତତତ୍ତ୍ୱରୁ ଟି ଅହଙ୍କାର ଜାତ
ହୋଇବାରୁ ଦ୍ୱିତୀୟସର୍ଗ ନାମ ଖ୍ୟାତ ।
ଅହଙ୍କାର ସାତ୍ତ୍ୱିକ ରାଜସ ତାମସ
ତ୍ରି ପ୍ରକାର ହୋଇଣ ହୁଏ ପରକାଶ ।
ତାମସ ଅହଙ୍କାର ପଞ୍ଚତନମାତ୍ର
ପଞ୍ଚତନମାତ୍ରରୁ ହୁଏ ପଞ୍ଚଭୂତ ।
ଏହିମାନଙ୍କରୁ ଏମାନେ ଜନ୍ମ ହୋଇ
ଏହିମାନଙ୍କରେଟି ରହିଛନ୍ତି ଯାଇ ।

ରାଜସ ଅହଙ୍କାର ଏକାଦଶେନ୍ଦ୍ରିୟ
ଜାତ ହୋଇଅଛନ୍ତି କର ହେ ହୃଦୟ ।
ଇନ୍ଦ୍ରିୟମାନଙ୍କୁ ଯେ ଜଣଇ ନିଷ୍ପାପ
ହୋଇ କରି ଦେଖଇ ହୃଦେ ବ୍ରହ୍ମରୂପ ।
ସ୍ଥଳ ଜଳ ଆକାଶ ପ୍ରାଣୀମାନଙ୍କର
ସ୍ଥାନ ଅଟଇ ହେ ଋଷିଏ ମନେ କର ।
ସ୍ୱେଦଜ ଉଦ୍ଭିଜ୍ଜ ଅଣ୍ଡଜ ଜରାୟୁଜ
ଜନମ ଲଭିଛନ୍ତି ଏ ପ୍ରାଣୀସମାଜ ।
ଆକାଶସମ୍ବନ୍ଧୀ ତ ଅଟଇ ଶ୍ରବଣ
ଅଧ୍ୟାତ୍ମ୍ୟ ବୋଲାଏ ସେ ଜଗତରେ ଜାଣ ।
ତହିଁରେଟି ଶବଦ ଅଟେ ଅଧିଭୂତ
ଦଶକୁଟି କହନ୍ତି ଅଧିଦଇବତ ।
ବାତାଗ୍ନି ଜଳ ପୃଥ୍ୱୀ ଅଧିଦଇବତ
କ୍ରମରେଟି ବିଦ୍ୟୁତ୍ ସୂର୍ଯ୍ୟ ସୋମ ବାତ ।
ତ୍ୱକ ଚକ୍ଷୁ ରସନା ଘ୍ରାଣ ଅଧ୍ୟାତମ
ବୋଲି କରି ଜାଣ ପାଇଛନ୍ତି ନାମ ।
ପବନ ଜ୍ୟୋତି ଜଳ ପୃଥିବୀଟି ଭୂତ
ସ୍ପର୍ଶ ରୂପ ରସ ଗନ୍ଧ ଅଧିଭୂତ ।
ପାଦ ଅଧ୍ୟାତମେ ଗମନ ଅଧିଭୂତ
ବିଷ୍ଣୁ ଦେବତାଙ୍କୁ ଯେ କରଥାଏ ସ୍ଥିତ ।
ଗୁଦ ଅଧ୍ୟାତମେ ଉତ୍ସର୍ଗ ଅଧିଭୂତ
ମିତ୍ର ନାମ ତହିଁରେ ଅଟେ ଦଇବତ ।
ଉପସ୍ଥ ଅଧ୍ୟାତମେ ଶୁକ୍ର ଅଧିଭୂତ
ପ୍ରଜାପତି ଦେବତା ଏ ସବୁରି ମତ ।
ହସ୍ତ ଅଧ୍ୟାତମରେ କର୍ମ ଅଧିଭୂତ ।
ବୋଲନ୍ତି ତହିଁରେ ଦେବତା ପୁରୁହୂତ ।
ବାଦ୍ୟ ଅଧ୍ୟାତମେ ବଚନ ଅଧିଭୂତ
ତହିଁ ଦଇବତ ବୋଲନ୍ତି ବାଚହୋତ୍ର ।
ମନ ଅଧ୍ୟାତମେ ସଂକଳ୍ପ ଅଧିଭୂତ
ରଜନୀକର ବୋଲାଅନ୍ତି ଦଇବତ ।
ଅହଙ୍କାର ଅଧ୍ୟାତ୍ମେ ମାନ ଅଧିଭୂତ
ଦେବତା ଅଟନ୍ତି ପାର୍ବତୀଦେବୀକାନ୍ତ ।
ବୁଦ୍ଧି ଅଧ୍ୟାତମେ ମନ୍ତବ୍ୟ ଅଧିଭୂତ
ଦେବତା ବୋଲି କହି ତହିଁ ପଦ୍ମପୁତ୍ର ।
ଅଧ୍ୟାତ୍ମ ବିଧି ତ ଶୁଣିଲ ଋଷିମାନେ
ଆଉ ଶୁଣ ଜ୍ଞାନ କହିବା ଏକମନେ ।

ପଣ୍ଡିତ ଲୋକ ଯେବେ କାମକୁ ସଂହାର
କରଇ, ସୁଖ ତେବେ ହୁଅଇ ତାହାର ।
ଇନ୍ଦ୍ରିୟ ନିରୋଧରେ ଆତ୍ମା ବୋଧ ହୋଏ
ଅଜ୍ଞମାନ ଉପାୟ ତହିଁକି ନ ପାଏ ।
ଇନ୍ଦ୍ରିୟ ନିରୋଧ ଦୁସ୍ତ୍ୟଜ କାମ କ୍ରୋଧ
ଯା'ଆନ୍ତି ଛାଡ଼ି କରି ପାଇବାରୁ ବୋଧ ।
ସବୁ ଦୋଷରୁ ଲୋକ ମୁକତ ନୋହିଲେ ।
ବ୍ରହ୍ମକୁ ଦେଖି ନ ପାରଇ ଜାଣ ଭଲେ ।
ବ୍ରହ୍ମା ବିଷ୍ଣୁ ଶିବ ସର୍ବତୋ ମୁଖ ଆତ୍ମା
ବୋଲି କରି ଜାଣ ଆହେ ଋଷି ମହାତ୍ମା ।
ସବୁ ପ୍ରାଣୀଙ୍କର ଆତମା ଅଟେ ବନ୍ଦ୍ୟ
ମୁହିଁନ୍ତ କେଉଁଣସି କାଳରେ ସେ ନିନ୍ଦ୍ୟ ।
ସ୍ତ୍ରିୟଙ୍କେ ପୁରୁଷ ନରଙ୍କ ନରସିଂହ
ବାହନରେ କୁଞ୍ଜର ନବଗୀତେ ସିଂହ ।
ପଶୁରେ ମେଷ, ଗାଈଙ୍କରେ ବୃଷ ଶ୍ରେଷ୍ଠ
ବିଳବାସୀଙ୍କରେ ଯେ ମୂଷିକ ଗରିଷ୍ଠ ।
ଅଶ୍ୱତ୍ଥ ବଟ ଜମ୍ବୁ ଶିମୂଳୀ ବାଉଁଶ
ବୃକ୍ଷମାନଙ୍କରେ ସେ ଅଟଇ ବିଶେଷ ।
ପାରିପାତ୍ର ସହ୍ୟ ମହେନ୍ଦ୍ର ହିମବନ୍ତ
ଶିକୁଟ ଶ୍ୱେତ ନୀଳ ବିନ୍ଧ୍ୟ ମାଲ୍ୟବନ୍ତ ।
ପର୍ବତମାନଙ୍କେ ଅଧିକ ଏ ବୋଲନ୍ତି
ବିସ୍ତରିଲେ ଏମାନେ ମହୀ ରଖିଛନ୍ତି ।
ଗ୍ରହଗଣେ ତପନ, ନକ୍ଷତ୍ରରେ ଚନ୍ଦ୍ର
ପିତୃଙ୍କର ଯମ, ନଦୀଙ୍କର ସମୁଦ୍ର ।
ଜଳଙ୍କେ ବରୁଣ, ଦେବଙ୍କେ ସୁରପତି
ଜ୍ୟୋତିଙ୍କରେ ଅଗ୍ନି, ଦ୍ୱିଜଙ୍କେ ବୃହସ୍ପତି ।
ଓଷଧିଙ୍କରେ ସୋମ ବଳୀଙ୍କରେ ହରି
ରୂପଙ୍କରେ ତ୍ୱଷ୍ଟା, ପଶୁରେ କାମବୈଶ୍ୱ ।
ଦିଗଙ୍କେ ଈଶ୍ୱର, କୁବେର ଯକ୍ଷଙ୍କରେ
ପ୍ରଜାରେ ପ୍ରଜାପତି ମୁଁ ସବୁପ୍ରାଣୀରେ ।
ବିଭୂତି ଅଟଇ ହେ ବୋଲି କରି ଜାଣ
ମୋ କହିବାରୁ ବଶିଷ୍ଠାଦି ଋଷିଗଣ ।
ଦେବସ୍ତ୍ରୀରେ ଦୁର୍ଗା, ସ୍ତ୍ରିୟରେ ଅପସରା
ବୋଲନ୍ତିଟି ତିନିଜଗତ ମଧ୍ୟେ ବରା ।
ମେରୁଠାରୁ ତିନିଜଗତେ ଯେତେ ପ୍ରାଣୀ
ଅଛନ୍ତି ତହିଁଟି ବିଷ୍ଣୁଙ୍କୁ ଅଗ୍ରେ ଗଣି ।
ଧର୍ମକାମ ଯେଉଁ ନୃପତିମାନେ ହେବେ
କେବଳ ସେ ଦ୍ୱିଜଙ୍କ ରକ୍ଷାରେ ଦୌଡ଼ିବେ ।
ଯେଉଁ ରାଜା ଦେଶେ ବ୍ରାହ୍ମଣ ହୋଏ ଶୀର୍ଣ୍ଣ
କାଳଦଣ୍ଡପାଣି ତା କାୟ କରେ ଭିନ୍ନ ।
ଅହିଂସା ଯା'ର ଅଛି ଧର୍ମ ତା'ର ଅଛି ।
ହିଂସା ଯେ କରୁଛି ପାପ ସେ ଅରଜୁଛି ।
ଦେବଙ୍କର ପ୍ରକାଶ କର୍ମ ନରଙ୍କର
ଆକାଶର ଶବ୍ଦ ସ୍ପରଶ ପବନର ।
ବସୁନ୍ଧରାର ଗନ୍ଧ ଯୋଗର ପ୍ରବୃତ୍ତି
ସାଧୁଜନମାନଙ୍କ ଅବ୍ୟକତଗତି ।
ଜ୍ୟୋତିଙ୍କର ରୂପ ସେ ଜଳଙ୍କର ରସ
ବାଣୀଙ୍କର ଶବଦ ଜ୍ଞାନର ସନ୍ନ୍ୟାସ ।
ମାନସର ଧ୍ୟାନ ବୁଦ୍ଧିର ବ୍ୟବସାୟ
ଅଟଇଟି ଲକ୍ଷଣ କରି ହେ ହୃଦୟ ।
ସନ୍ନ୍ୟାସୀ ଯେବେ ଜ୍ଞାନେ ଯୁକତ ହୁଅଇ
ତେବେଟି ଜାଣ ଭଲ ଗତିକ ଲଭଇ ।
ସୁଗୁଣମାନଙ୍କର ଗ୍ରାହକ ତୁମ୍ଭଙ୍କୁ
କହିବା ଦିଅ ତୁମ୍ଭେ କଥାରେ ମନକୁ ।
ଚକ୍ଷୁ ଶ୍ରୋତ୍ର ଜିହ୍ୱା ନାସିକା ତ୍ୱଗିନ୍ଦ୍ରିୟ
ରୂପ ଶବଦ ରସ ଗନ୍ଧେ ସ୍ପର୍ଶ ଚୟ ।
ଯେଣିବାରେ ଜାଣ ହେ କାରଣ ଅଟନ୍ତି
ଏ କଥାରେ କିଛି ନ କର ଆହେ ଭ୍ରାନ୍ତି ।
ବ୍ରହ୍ମାଙ୍କୁ ଯେଣିବାକୁ ଏ ପଞ୍ଚେନ୍ଦ୍ରିୟଙ୍କ
ସାମର୍ଥ୍ୟ ନାହିଁ, କରି ଋଷି ଏ ବିବେକ ।
ଦେହକୁ ଜାଣ କ୍ଷେତ୍ର ବୋଲିକରି କହି
ତା ଜାଣିବାରୁ ଆତ୍ମା କ୍ଷେତ୍ରଜ୍ଞ ବୋଲାଇ ।
ସେ ଗୁଣମାନଙ୍କର ଗତିକ କ୍ଷେତ୍ରଜ୍ଞ
ଜାଣୁଛି, ସେ ନ ଜାଣୁଅଛନ୍ତି କ୍ଷେତ୍ରଜ୍ଞ ।
ରଜନୀର ଦିନ ମାସର ଶୁକ୍ଳପକ୍ଷ
ନକ୍ଷତ୍ରମାନଙ୍କ ଶ୍ରବଣାନାମ ଋକ୍ଷ ।
ଗନ୍ଧଙ୍କର ଭୂମି ଯେ ରସଙ୍କର ଜଳ
ରୂପଙ୍କର ଜ୍ୟୋତି ସ୍ପରଶର ଅନଳ ।
ଶବଦର ଆକାଶ ଅଟେ ଆଦ୍ୟ ଜାଣ
ଏଥିରେ ସନ୍ଦେହ ନ କର ଋଷିଗଣ ।
ଜ୍ୟୋତିଙ୍କରେ ତପନ, ବିଦ୍ୟାରେ ସାବିତ୍ରୀ
ଭୂତଙ୍କେ ଜଠରାଗ୍ନି, ଛନ୍ଦରେ ଗାୟତ୍ରୀ ।

ପର୍ବତରେ ମେରୁ, ବଚନରେ ପ୍ରଣବ
ଦେବରେ ପ୍ରଜାପତି, ପକ୍ଷୀରେ ଛଞ୍ଚାଣ ।
ଚତୁଷ୍ପଦରେ ଗାଈ ଦ୍ୱିପଦରେ ଦ୍ୱିଜ
ସରୀସୃପରେ ସର୍ପ, ପଶୁଙ୍କରେ ଅଜ ।
ଜାଗଙ୍କରେ ହୁତ, ରତନରେ ସୁବର୍ଣ୍ଣ
ନଦୀଙ୍କରେ ଗଙ୍ଗା, ଭକ୍ଷଭୋଜ୍ୟରେ ଅନ୍ନ ।
ଯୁଗଙ୍କରେ ସତ୍ୟ, ଦେବଙ୍କରେ ପ୍ରବଣ
ଆଶ୍ରମରେ ଗାର୍ହସ୍ଥ୍ୟ, ଔଷଧରେ ଯବ ।
ଦିଗଙ୍କରେ ପୂର୍ବ, ସରଙ୍କରେ ସାଗର
ସ୍ଥାବରରେ ଅଶ୍ୱତ୍ଥ, ଦ୍ରବ ଦ୍ରବ୍ୟେ ନୀର ।
ସମସ୍ତଙ୍କେ ବଶ୍ୟ ମୁଁ ପ୍ରଜାପତିଙ୍କରେ
ଆଦ୍ୟ ବୋଲି ଋଷିଏ ଘେନ ହେ ମନରେ ।
ଦିବସ ହେଲେ ସନ୍ଧ୍ୟା, ସନ୍ଧ୍ୟା ହେଲେ ପ୍ରାତ
ହେଉଅଛି ଯାହାକି ଏ ମୋହର ମତ ।
ସେହିରୂପେ ସୁଖ ଦୁଃଖ ଏ ଦୁହିଁଙ୍କର
ଅନ୍ତ ଦୁହେଁ ଅଟନ୍ତି ଜାଣ ପରସ୍ପର ।
ଉନ୍ନତିରେ ପତନ ଯୋଗେ ବିପ୍ରଯୋଗ
ସଞ୍ଚୟରେ କ୍ଷୟ ଜନ୍ମରେ ମୃତ୍ୟୁଭୋଗ ।
ହେଉଅଛି ସମସ୍ତ ପ୍ରାଣୀମାନଙ୍କର
ଏଥେ ହେ ମହରଷି ସନ୍ଦେହ ନ କର ।
ସ୍ଥାବର ଜଙ୍ଗମରେ ଛନ୍ତି ଯେତେ ପ୍ରାଣୀ
ଅନିତ୍ୟ ବୋଲି ଜାଣ ମୂର୍ତ୍ତି ଅଛି ଗଣି ।
ଯାଗ ଦାନ ବରତ ଆଦି ଯାନ୍ତି ନାଶ
ଜ୍ଞାନ କେତେବେଳେହିଁ ନୁହଇ ବିଧ୍ୱଂସ ।
ଏହି ସକାଶରୁ ଜ୍ଞାନ ଯେହୁ ଜାଣଇ
ଏ ସଂସାର ତାହାକୁ ବାଧି ନ ପାରଇ ।
କାଳଚକ୍ର ପ୍ରବୃତ୍ତି ନିବୃତ୍ତି ଜାଣଇ
ଯେହୁ ମୋହ ତା ଦେହ ଛୁଇଁ ନ ପାରଇ ।
ଚାରି ଆଶ୍ରମରେ ଗୃହସ୍ଥାଶ୍ରମ ସାର
ମୋ କହିବାରୁ ଜାଣ ସର୍ବ ଋଷିବର ।
ଗୃହସ୍ଥାଶ୍ରମେ ରହି ଇନ୍ଦ୍ରିୟ ନିଗ୍ରହ
କରି ଯେ ତପ କରେ ଧନ୍ୟ ତା'ର ଦେହ !
ଷଟ୍‌କର୍ମ କରିଣ ପ୍ରାନ୍ତରେ ସନ୍ନ୍ୟାସ—
ଧର୍ମ କଲେ ପ୍ରାଣୀ ଲଭଇ ସ୍ୱର୍ଗବାସ ।
ବ୍ରହ୍ମଚର୍ଯ୍ୟ ବ୍ରତକୁ କରି ବଡ଼ ଯେହି
ସ୍ୱର୍ଗଜୟେ ସମର୍ଥ ହୁଅନ୍ତି ସେହି ।

ଆଗ ବ୍ରହ୍ମଚର୍ଯ୍ୟବ୍ରତକୁ କରି ଦ୍ୱିଜ
ଗୃହଧର୍ମେ ତୋଷିବ ଅତିଥି ସମାଜ ।
ତଦଅନ୍ତେ ବାନପ୍ରସ୍ଥକୁ ଆଚରିବ
ବନମଧ୍ୟରେ ତାର ଘରକୁ କରିବ ।
ଦୁଇସନ୍ଧ୍ୟା କାଳରେ କରିବ ସ୍ନାହାନ
ଫଳ ମୂଳ ପତର କରିବ ଭୋଜନ ।
କେଶ ଶ୍ମଶ୍ରୁ ନଖକୁ ଧରିଥିବ ନିତି
ସ୍ଥିର ହେଲେ ଚର୍ମରେ ନୋହିବ ଅପ୍ରୀତି ।
ମୋକ୍ଷ ଆକାଂକ୍ଷା କଲେ ବାନପ୍ରସ୍ଥ ଛାଡ଼ି
ଭିକ୍ଷୁଆଶ୍ରମକୁ ଯେ ଆଚରିବ ଲୋଡ଼ି ।
ସବୁପ୍ରାଣୀଙ୍କର ହିତକୁ ଆଚରିବ
ଅଯାଚକ ହୋଇଣ ଗ୍ରାସକୁ କରିବ ।
ଗ୍ରାସ ବସନ ପରିତ୍ୟାଗ କଲେ ଧନ
ନ ଘେନିବ ଭିକ୍ଷୁ ଆଶ୍ରମୀ ହେବାଜନ ।
ଗ୍ରାସରେ ଭଲ ମନ୍ଦ ନକରିବ ଇଚ୍ଛା
ଷଡ଼ରସଙ୍କରୁ ଯେ ଛାଡ଼ିବ ଲାଳସା ।
ପର୍ବତ ବନ ଶୂନ୍ୟମନ୍ଦିରେ ରହିବ
ନସାନାଙ୍କ ମୁଖ ସ୍ୱପନେ ନ ଚାହିଁବ ।
ଦଇବେ ଗ୍ରାମକୁ ଆସିଲେ ଭିକ୍ଷୁଜନ
ରାତ୍ର ରହି ସକାଳୁ କରିବ ଗମନ ।
ସବୁ ପ୍ରାଣୀଠାରେହିଁ ହୋଇବ ସମାନ
କରିବ ସବୁଠାକୁ ଭୟକୁ ମୋଚନ ।
ଏରୂପେ ଯେଉଁ ଭିକ୍ଷୁ ରହଇ ବନରେ
ତାକୁ ବୋଲି ମୁକତ ହେଲା ଏ ସଂସାରେ ।
କାମନା ନ କରି ଯେ କରମ କରଇ
ବ୍ରାହ୍ମଣ ବୋଲି କରି ତାହାକୁହିଁ କହି ।
ସଂସାର-ବୃକ୍ଷ ଜ୍ଞାନ-ଅସିରେ ଯେ କାଟେ
ମୃତ୍ୟୁ ଜନ୍ମ ଜରା ନ ରହେ ତା ନିକଟେ ।
ଋଷିଏ ଶୁଣିଣ ବୋଇଲେ ପିତାମହ
ଧର୍ମଯାଜକରେ କଏ ବଡ଼ ଅଟେ କହ ।
ବ୍ରହ୍ମା ବୋଇଲେ ହେ ବହୁତ ଏ ସଂସାରେ
ଧରମ ଅଛି ନ ସରିବ ସେ ଭାଷାରେ ।
ଯେ ଯେଉଁ ଧର୍ମଟିକ କରେ ଆଚରଣ
ସେ ସେହି ଧରମକୁ ବଡ଼ ବୋଲେ ଜାଣ ।
ତୁମ୍ଭେ ଯେ ପଚାରିଲ ଧର୍ମ-ତତ୍ତ୍ୱ ମୋତେ
କହିବ ଶୁଣ ତାହା ସର୍ବେ ଏକଚିତ୍ତେ ।

ସାଧୁସମ୍ମତରେ ଅହିଂସା ବଡ଼ ଧର୍ମ
ହିଂସା ଯେ ନ କରେ, ପ୍ରକାଶେ ତାର କର୍ମ ।
ଜ୍ଞାନେ ଶ୍ରେଷ୍ଠ କରି କହନ୍ତି ସବୁ ଜନ
ଜ୍ଞାନବନ୍ତ ଲୋକଟି ପୁଣ୍ୟବନ୍ତେ ଧନ୍ୟ ।
ଲୋଭ-ମୋହ-ଯୁକ୍ତ ହିଂସା-ତତ୍ପର
ହେବା ଲୋକରଟି ନରକ ହୋଏ ଘର ।
ଯେଉଁମାନେ କାମ୍ୟକର୍ମକୁ କରିଥାନ୍ତି
ଜନମ ହୋଇ ସୁଖ ସେହି ଭୁଞ୍ଜୁଥାନ୍ତି ।
ନିଷ୍କାମକର୍ମ କରୁଛନ୍ତି ଯେତେ ନର
ଜନମ ହୋଇବାର କଷ୍ଟ ତାହାଙ୍କର ।
ପଞ୍ଚମହାଭୂତରୁ ମୁକ୍ତ ହେଲେ ନର
ପରମଗତି ପାଏ ଋଷିଏ ବିସ୍ତର ।
ଦୁର୍ଲ୍ଲଭ ସୁଲଭଟି ହୁଏ ତପସ୍ୟାରେ
ତପସ୍ୟାଠାରୁ ବଡ଼ ନାହିଁ ଏ ସଂସାରେ ।
ପଞ୍ଚତନମାତ୍ର ଯେ ପଞ୍ଚମହାଭୂତ
ଅବ୍ୟକ୍ତ ଆଦିଙ୍କ ଅବିଦ୍ୟା ନାମ ଖ୍ୟାତ ।
ମନ୍ଦବୁଦ୍ଧିମାନେ କର୍ମକୁ ପ୍ରଶଂସନ୍ତି
ଅମନ୍ଦବୁଦ୍ଧିମାନେ କର୍ମକୁ ନିନ୍ଦନ୍ତି ।
କର୍ମମସ୍ତ କେବେହେଁ ନୁହଇ ପୁରୁଷ
ଜାଣ ସେହୁ ଅଟଇ ବିଦ୍ୟାର ସଦୃଶ ।
ଆହେ ଋଷିମାନେ ମୋ କହିବାର କଥା
ଆଚରଣ କରିଣ ଛାଡ଼ ଭବ-ବ୍ୟଥା ।
ଏରୂପେ ବ୍ରହ୍ମାଙ୍କର ବଚନକୁ ଶୁଣି
ସେ ବିନୁ ଆଚରଣ କଲେ ଋଷିଶ୍ରେଣୀ ।
ତୁମ୍ଭେ ତ ମୋହଠାରୁ ଶୁଣିଲ ହେ ଶିଷ୍ୟ
ଋଷିଙ୍କି କୁଶଧର ଦେବା ଉପଦେଶ ।
ଏବେ ହେ ଅରଜୁନ ଶିଷ୍ୟ ଗୁରୁଙ୍କର—
ମୁଖୁଁ ଶୁଣି ସବୁ ସଂଶୟ କରି ଦୂର ।
ବ୍ରହ୍ମଙ୍କ ଭାବନାରେ ବଳାଇଣ ମତି
ବ୍ରହ୍ମଙ୍କୁ ଦେଖିକରି ହୋଇଲେ ମୁକତି ।
ଅରଜୁନ ବୋଇଲେ କେ ଶିଷ୍ୟ କେ ଗୁରୁ
ମୋ ଆଗରେ କହ ହେ କୃଷ୍ଣ ଦୟାକାରୁ ।
କୃଷ୍ଣ ବୋଇଲେ ହେ ଅର୍ଜୁନ କ ପରିବର
ଗୁରୁ ବୋଲି ଜାଣି ମୁହିଁଟି ମନେ କର ।
ମୋହର ଯେ ମନ ଅଟଇ ସେହି ଶିଷ୍ୟ
ଏ କଥାରେ ସନ୍ଦେହ ନ କର ବୀରେଶ ।

ମୋର ପାଦ ଦୁଇକ ମାନସରେ ରଖି
ଯୋଗ ଅଭ୍ୟାସ କଲେ ଅର୍ଜୁନ ହେବ ସୁଖୀ ।
ଯୁଦ୍ଧକାଳେ ତୁମ୍ଭଙ୍କୁ କହିଥିଲି ଏହା
ପାଶୋରି ହେଲ ତ ଗାଣ୍ଡୀବଧନୁର୍ବାହା ।
ଏବେ ତ ମୋ ଠାରୁ ଶୁଣିଲ ଭଲକରି
ଆଚରଣ କର ହେ ହୃଦୟରେ ଧରି ।
ବସୁଦେବ ଦେବକୀ ଦର୍ଶନେ ମୋ ମନ
ଦେଉଛି ହେ ବୀର ଅନୁଜ୍ଞା କର ଦାନ ।
ଅରଜୁନ ବୋଇଲେ ଚାଲ ନୃପଠାକୁ
ତାହାଙ୍କୁ କହି ଯିବା ହେବ ହେ ଦ୍ୱାରକାକୁ ।
ହେଲା ଗୁରୁଶିଷ୍ୟ ସମ୍ବାଦ ସମାପତି
କହଇ କୃଷ୍ଣସିଂହ ଧରାକୋଟ ପତି ।



## ଉତଙ୍କ ଉପାଖ୍ୟାନ

ଏଥୁଅନ୍ତେ କୃଷ୍ଣ କହିଲେ ଦାରୁକାକୁ
ତିଆରି କରି ଆଣ ରଥ ମୋ ପାଶକୁ ।
ଦାରୁକ କ୍ଷଣକରେ କୃଷ୍ଣଙ୍କ ଆଜ୍ଞାରେ
ତିଆରି କଲେ ରଥ ଅତ୍ୟନ୍ତ ତୋଷରେ ।
ଅର୍ଜୁନ ବଚନେ ହସ୍ତିନାବାସୀ ନରେ
ଅଣ୍ଟା ବାନ୍ଧିଣ ଛିଡ଼ା ହୋଇଲେ ଆଗରେ ।
ଏ ଅନ୍ତେ କୃଷ୍ଣଅରଜୁନ ଏକା ରଥେ
ବସିଲେ ଧନୁଶର ଧରି କରି ହାତେ ।
ଅର୍ଜୁନ ବାଟରେ କହିଲେ ଶ୍ରୀକୃଷ୍ଣଙ୍କୁ
ତୁମ୍ଭ ପ୍ରସାଦରେ ମୁଁ ମାରିଲି ଶତ୍ରୁଙ୍କୁ ।
ହେ ବିଶ୍ୱଆତ୍ମା ବିଶ୍ୱପିତା ଜନାର୍ଦ୍ଦନ
ତୁମ୍ଭ ପାଦ ଦୁଇରେ କରୁଛି ବନ୍ଦନ ।
ମୃତ୍ୟୁ କ୍ରୋଧନ ଜ୍ୟୋତ୍ସ୍ନା ହାସ ବାତ ପ୍ରାଣ
ମହାଭୂତ ଇନ୍ଦ୍ରିୟ ତବ ନାରାୟଣ ।
ରତି ସନ୍ତୁଷ୍ଟି ଧୃଷ୍ଟି ପୁଷ୍ଟି ଆଦି ଶିରୀ
ଏ ତୁମ୍ଭଙ୍କୁ ନିତି ଅଛନ୍ତି ଆଶ୍ରେ କରି ।
ସହସ୍ରେ ମୁଖ ହେଲେ ତୁମ୍ଭ ଗୁଣଗଣ
କରି ନ ପାରିବି ମୁଁ ବଚନେ ବଖାଣ ।
ନାରଦ ବ୍ୟାସ ଯେ ଦେବଳ ଦେବବ୍ରତ—
ଠାରୁ ଶୁଣି ଜାଣିଛି ତୁମ୍ଭର ବୃତ୍ତାନ୍ତ ।
ଯେତେକ ଶିଖାଇଲ ବସୁଦେବକନ୍ୟା
ଆଚରିବ ଏବେ ତା କରିଛି ମୁଁ ଇଚ୍ଛା ।

ଆପଣ ଆଗ କୁରୁସୈନ୍ୟ ମାରିଥିଲ
ତାହାଙ୍କୁ ମାରି ମୁକ୍ତି ବୋଲାଇଲ ଭଲ ।
ଏବେ ଯେ ଇଚ୍ଛା କରିଅଛ ଦ୍ୱାରକାକୁ—
ଯିବାକୁ, ମୁଁ କହିବି ଯାଇଣ ରାଜାଙ୍କୁ ।
ଏରୂପେ ଦୁଇ କୃଷ୍ଣ କଥାବାର୍ତ୍ତା ହୋଇ
ପ୍ରବେଶ ହୋଇଲେ ହସ୍ତିନା ଦାଣ୍ଡେ ଯାଇ ।
ସିଂହଦ୍ୱାରରେ ରଥ ରଖାଇଣ ଦୁହେଁ
ଗଲେ ଧୃତରାଷ୍ଟ୍ର ପାଶକୁ ଅତି ସ୍ନେହେ ।
ଧୃତରାଷ୍ଟ୍ର ରାଜାଙ୍କୁ କରି ଦଣ୍ଡବତ
ଦେଖାହେଲେ ସବୁରି ସଙ୍ଗତେ ଅଚ୍ୟୁତ ।
କୁରୁରେ ବୃଦ୍ଧ ହୋଇ ନରନାରୀ ଯେତେ—
ଥିଲେ କୃଷ୍ଣାର୍ଜ୍ଜୁନ ନମିଲେ ତୋଷଚିତ୍ତେ
ବିଦୁରଙ୍କ ସଙ୍ଗତ ହେଲେ କଥାବାର୍ତ୍ତା ।
ସନ୍ତୋଷକୁ ଭଜିଲେ ଜଗତ-କରତା ।
ରଜନୀ ପ୍ରବର୍ତ୍ତନ୍ତେ ଧୃତରାଷ୍ଟ୍ରଙ୍କର
ଆଜ୍ଞାକୁ ନ ମାଗିଣ ଶଙ୍ଖଚକ୍ରଧର ।
ଅର୍ଜ୍ଜୁନଙ୍କ ଭୁବନେ ପ୍ରବେଶ ହୋଇଲେ
ଭୋଜନ କରି ସାରି ପଲଙ୍କେ ଶୋଇଲେ ।
ରଜନୀଶେଷେ ଉଠି ପୂର୍ବାହ୍ନ କର୍ମ ସାରି
ଭେଟିଲେ କୃଷ୍ଣାର୍ଜ୍ଜୁନ ପାଣ୍ଡବ ଦଣ୍ଡଧାରୀ ।
ଯୁଧିଷ୍ଠିରଙ୍କର ସନମତରେ ଦୁହେଁ
ବସିଲେ ଯାଇ ଆସନରେ ଅତି ସ୍ନେହେ ।
ଯୁଧିଷ୍ଠିର ପୁଚ୍ଛିଲେ ପାର୍ଥକୁ ଅନାଇଁ
ସକାଳୁ ଆସିଅଛ କାହୁଁ କାହିଁପାଇଁ ।
ଅର୍ଜ୍ଜୁନ ବୋଇଲେ ଆହେ ନୃପବର
ଯିବେ କୃଷ୍ଣ ତାଙ୍କ ଘରକୁ ଆଜ୍ଞା କର ।
ଯୁଧିଷ୍ଠିର ବୋଇଲେ କୃଷ୍ଣ ଇଚ୍ଛା ଯେବେ
କରୁଛନ୍ତି, ଦ୍ୱାରକା ଯାଆନ୍ତୁ ସେ ତେବେ ।
ରହିଲେଣି ତ ଆମ୍ଭପାଶେ ବହୁକାଳ
ନାହିଁ କରିବାକୁ କି ପାଉଅଛୁ ବଳ ।
କେବଳ କହୁଅଛୁ ଏତିକି କୃଷ୍ଣଙ୍କୁ
ପକାଉଥିବେ ମନେ ପାଣ୍ଡବମାନଙ୍କୁ ।
ତାଙ୍କ ବିନା ଆମ୍ଭର ଆନ ବଳ ନାହିଁ
ତାଙ୍କର ଯୋଗୁଁ ଆମ୍ଭେ ହେଲୁ ମହୀସାଇଁ ।
ଏହ କହି କୃଷ୍ଣଙ୍କୁ ବୋଇଲେ ଗୋବିନ୍ଦ
ମୋହର ଯେ ଇଚ୍ଛା ସେ ତୁମ୍ଭର ଆନନ୍ଦ ।

ଅଶ୍ୱମେଧଯାଗ କରନ୍ତେ କରିବଇଁ
ଏଥିକି ଆସିବଟି ଅବଶ୍ୟ କହଇଁ ।
ଯେତେ ଇଚ୍ଛା ହେଉଛି ନିଅ ତେତେ ଧନ
ତୁମ୍ଭର ତ ଦେବାର ଅଟେ ଜନାର୍ଦ୍ଦନ ।
ଶ୍ରୀକୃଷ୍ଣ ବୋଇଲେ ହେ ମୋର ପ୍ରାଣ ଧନ—
ଯାକରେ ତୁମ୍ଭେ ପ୍ରଭୁ ଏଥେ ନାହିଁ ଆନ ।
ଏହା କହି ଯୁଧିଷ୍ଠିରଙ୍କୁ ଯଦୁଈଶ
ନମିଲେ ଯାଇଣ କୁନ୍ତୀଙ୍କ ପାଦଦେଶ ।
କୁନ୍ତୀଙ୍କ ପ୍ରସନ୍ନେ ଗୋବିନ୍ଦ ସୁଖୀ ହୋଇ
ଯିବାକୁ ରଥବର ଆରୋହିଲେ ଯାଇ ।
ପାଣ୍ଡବ ସମ୍ମତ ଭଗ୍ନୀଙ୍କି ଘେନି ସାଥେ
ବୁହାଇଲେ ରଥ ହସ୍ତିନା ରାଜପଥେ ।
କୃଷ୍ଣଙ୍କର ଯିବା ରି ପାଣ୍ଡୁସୁତେ ଦେଖି
ପ୍ରାଣଗଲା ପରି ହୋଇଣ ଅତି ଦୁଃଖୀ ।
ଶ୍ରୀକୃଷ୍ଣଙ୍କର ପଛେ ପଛେ ଗୋଡ଼ାଇଲେ
ଶ୍ରୀକୃଷ୍ଣ ତାଙ୍କୁ ନିବର୍ତ୍ତାଇ ରଖାଇଲେ ।
ମଧୁକୁଳଉଦ୍ଭବ ଶିନିଙ୍କର ନାତି
ସେ ଏକା ଗଲେ କୃଷ୍ଣ ସଙ୍ଗେ କରି ପ୍ରୀତି ।
ଗରୁଡ଼ଧ୍ୱଜରଥ ନ ଦିଶିବା ଯାଏ
ରହିଥିଲେ ଅର୍ଜ୍ଜୁନ କରି ଏକ ଲକ୍ଷ୍ୟେ ।
କୃଷ୍ଣ ଯିବାବେଳେ ସୁଗନ୍ଧ ଶୀତବାତ
ବହି ଉଲ୍ଲାସିଲା ଶ୍ରୀକୃଷ୍ଣଙ୍କର ଚିତ୍ତ ।
ଆକାଶରୁ ପୁଷ୍ପ ବର୍ଷଣ ଗଦା ଗଦା
ହେଲା ଶ୍ରୀକୃଷ୍ଣଙ୍କର ଯିବାଦାଣ୍ଡପଦା ।
ବାଟରେ ଉତ୍ତଙ୍କଙ୍କୁ ଦେଖିଲେ ଅଚ୍ୟୁତ
କଲେ ତାଙ୍କ ଦୁଇପାଦରେ ଦଣ୍ଡବତ ।
ଋଷିଙ୍କ କୃଷ୍ଣଙ୍କୁ କୁଶଳ ପଚାରିଲେ
ତଦନନ୍ତେ କୁରୁଙ୍କ ବାରତା ପୁଚ୍ଛିଲେ ।
ଶୁଣୁ ଯେ ଥିଲୁଁ କୁରୁ ପାଣ୍ଡବଙ୍କ ଗୋଳ
କରିଦେଲେଟି କି ତାହାଙ୍କୁ ଏକମେଳ ।
ଆପଣଙ୍କୁ ନାଥ କରିଣ ପାଣ୍ଡୁ କୁରୁ
ନ କଲେଟିକି ଯୁଦ୍ଧ ଧର୍ମେ ହୋଇ ଥିରୁ ।
କୃଷ୍ଣ ବୋଇଲେ ହେ କହୁଛ ଋଷି ଯାହା
ମୁହିଁ ଯାଇଣଥିଲି ବସ୍ତରିଣ ତାହା ।
ବହୁତ ପ୍ରକାରରେ କହିଲି କୁରୁଙ୍କୁ
ନ ଘେନି କୁରୁଏ ପାଇଲେ ନିଧନକୁ ।

ବଳିବ ଯାହା କରିଥାଏ ତାହା ହୋଏ
ବିଶ୍ୱରିବାର ସବୁ ବ୍ୟର୍ଥ ହୋଇଯାଏ ।
କେବଳ କହୁଥାଇ ପଞ୍ଚ ପାଣ୍ଡବଙ୍କ
ଥିବାରୁ ଧର୍ମେ ଯୁଦ୍ଧ ନେ ହିଲ ଆତଙ୍କ ।
ପୁଅ ନାତି ବାନ୍ଧବ କୁରୁଙ୍କର କୁଳେ
ପାଣ୍ଡବମାନଙ୍କର ଯୁଦ୍ଧେ ଜାଣ ମଲେ ।
ଏହା ଶୁଣି କରିଣ ଉତ୍ତଙ୍କ ଆତଙ୍କ
ଲକ୍ଷି କରି କୃଷ୍ଣଙ୍କୁ କହିଲେ ଧମକ ।
ପାଣ୍ଡବ କୁରୁଙ୍କର ବନ୍ଧୁ ଅଟ ତୁମ୍ଭେ
ତୁମ୍ଭେ ଥାଉଁ ମଲେ ଶୁଣିଲୁଁ ଯୁଦ୍ଧେ ଆମ୍ଭେ ।
ଏଥିଭି କହୁଥାଇଁ ଯଦୁମହାଙ୍କର
ଶାପ ମୁହିଁ ଦେବାକୁ ହେଲେ ତୁମ୍ଭେ ଯୋଗ୍ୟ ।
କୃଷ୍ଣ ବୋଇଲେ ହେ ନ ଉଠ କ୍ରୋଧେ ଋଷି
ମୋ କଥା ଶୁଣ ଆଗ ପିଣ୍ଡ ମାଡ଼ି ବସି ।
ତୁମ୍ଭର ତ ତପସ୍ୟା ଅଟଇ ଅଳପ
ନ କର ତୁମ୍ଭେ ମୁଖେ ଶାପକୁ ଜଳପ ।
ଯେବେ ଶାପ ଜଳପ କର ଋଷଶ୍ରେଷ୍ଠ
ତେବେ ନରକକୁ କାଟିବ ତୁମ୍ଭେ ବାଟ ।
ଉତ୍ତଙ୍କ ବୋଇଲେ ହେ ଜ୍ଞାନ କହ କରି
ତାହା ଶୁଣି କହିବ ଶାନ୍ତମୂର୍ତ୍ତି ଧରି ।
ନୋହିଲେ ବା ତୁମ୍ଭଙ୍କୁ ଦେବି ମୁହିଁ ଶାପ
ହେବା ପାଇଁ ତୁମ୍ଭର ବଂଶଯାକ ଲୋପ ।
କୃଷ୍ଣ ବୋଇଲେ ହେ ମୋ ମହିମାରୁ ଋଷି
କହିବି କିଛି ଶୁଣ ମାନସ ନିବେଶି ।
ତମ ରଜ ସତ୍ତ୍ୱରୁ ରୁଦ୍ର ବସୁ ଦୈତ୍ୟ
ଗନ୍ଧର୍ବ ଯକ୍ଷ ରକ୍ଷ ସିଦ୍ଧ ସଦସତ ।
ବିଦ୍ୟାଧର ଅପ୍ସରା ନାଗ ଅବ୍ୟକତ
ଅକ୍ଷର କ୍ଷର ଦେବ ହୋତା ହବ୍ୟ ବ୍ୟକ୍ତ ।
ଜପ ସୋମ ହୋମ ଯାଗ ମୋଠାରୁ ଜାତ
ବୋଲି କରି ଜାଣ ହେ ଉତ୍ତଙ୍କ ଉଦ୍ରଜସୁତ ।
ଧରମ ଅଧରମ ପିତା ଅଟେ ମୁହିଁ
ମୋତେ ବଳି ଚୌଦଭୁବନେ କଥା ନାହିଁ ।
ଯେଉଁ କାଳେ ଯେଉଁ ଯୋନି ମୁଁ ଆଶ୍ରା କରେ
ସେ କାଳରେ ଖେଳଇ ସେ ଖେଳ ବେଳରେ ।
ଏବେ ତ ନରଜନ୍ମ ପାଇଅଛି ମୁହିଁ
ନର ପରି କହିଲି ଧର୍ମକୁ ଅନାଇଁ ।

ତେବେ ହେଲେ କୁରୁଏ ନ ଘେନି ମୋ ବୋଲ
ଯୁଦ୍ଧ କରି ମଲେ ହୋଇ କଳବଳ ।
ଧର୍ମ ଥିବା ସକାଶୁ ପାଣ୍ଡବେ ଜିଣିଲେ
ପିତୃ ପିତାମହଙ୍କ ରାଜ୍ୟକୁ ଭୁଞ୍ଜିଲେ ।
ଶୁଣିଣ ଉତ୍ତଙ୍କ ବୋଇଲେ ବନମାଳୀ
ଜଗତକର୍ତ୍ତା କରି ତୁମ୍ଭଙ୍କୁ ଜାଣିଲି ।
ତୁମ୍ଭଠାରେ ମୋ ଚିତ୍ତ ହୋଇଲା ପ୍ରସନ୍ନ
ତୁମ୍ଭଙ୍କୁ ଶାପ ଦେଇ ନ ପାରେଁ ମୁଁ ଜାଣ ।
ଅନୁଗ୍ରହ ଯେବେ ହେ ମୋହଠାରେ ଅଛି
ଦେଖାଅ ନିଜରୂପ ମୋ ଇଚ୍ଛା ହେଉଛି ।
କହନ୍ତେ ଉତ୍ତଙ୍କ ଏରୂପେ ବଚନକୁ
ଦେଖାଇଦେଲେ ହରି ବିଶ୍ୱସ୍ୱରୂପକୁ ।
ବିଷ୍ଣୁଙ୍କର ବୈଷ୍ଣବରୂପକୁ ଉତ୍ତଙ୍କ
ଦେଖି କରି ହୃଦରେ ଲଭିଲେ ଆତଙ୍କ ।
ବୋଇଲେ ହେ ହରି ସିଂହର ବିଶ୍ୱରୂପ
ଦେଖି କରି ମୋ ଆଖି ଲଭେ ମହାତାପ ।
ଶ୍ରୀକୃଷ୍ଣ ବୋଇଲେ ଉତ୍ତଙ୍କ ମୁନିବଚ୍ଛା
ମାଗ ବର ତୁମ୍ଭର କିସ ଅଛି ଇଚ୍ଛା ।
ଉତ୍ତଙ୍କ ବୋଇଲେ ମୁଁ ତୁମ୍ଭ ବିଷ୍ଣୁରୂପ
ଦେଖି କରି ଛଡ଼ାଇଲଣି ଦେହପାପ ।
ଆଜ୍ଞା କହ କି ବର ଅଛି ମାଗିବାକୁ
କଲଣି ତ କୃତାର୍ଥ ମୋହର ଆତ୍ମାକୁ ।
ଶ୍ରୀକୃଷ୍ଣ ବୋଇଲେ ହେ ମୋର ଦରଶନ
ବ୍ୟର୍ଥ ନୁହଇ ହେ ଉତ୍ତଙ୍କ ମନେ ଘେନ ।
ଏଣୁ ସକାଶରୁ ହେ ପୁନଃପୁନଃ କରି
ଯାଚୁଅଛି ବର ମାଗ ଅହେ ବିପ୍ରବର ।
ଉତ୍ତଙ୍କ ବୋଇଲେ ହେ ମରୁଦେଶେ ପାଣି
ଇଚ୍ଛା କଲେ ମିଳିବ ମୋତେ ଚକ୍ରପାଣି ।
ଏହି କଥାଟିରେ ହେଉଛି ମୋର ମନ
ବର କରି ମୋତେ ଦିଅ ହେ ଭଗବାନ ।
କୃଷ୍ଣ ବୋଇଲେ ହେ ସ୍ମରଣ କଲେ ମୋତେ
ମରୁଦେଶେ ଜଳ ମିଳିବ ମହାମତେ ।
ଏରୂପେ ବର ଦେଇ ଜଗତ-ପାବନ ।
କଲେ ରଥ ଆରୋହି ଦ୍ୱାରକା ଗମନ ।
ଉତ୍ତଙ୍କ କୃଷ୍ଣଙ୍କୁ ମେଲାଣି ହୋଇକରି
ବାହାରିଲେ ମରୁଦେଶକୁ ତପ କରି ।

ଚୂଲ୍ ଚୂଲ୍ ତୃଷାରେ ଉତ୍ତଙ୍କେ ସାହସ
ସୁମରଣା କଲେ ସେ ଯଦୁକୁଳଈଶ ।
ସେକାଳେ ସେ ଦେଖିଲେ ଧନୁର୍ବାଣ ବହି
ବସିଛୁ ଚଣ୍ଡାଳଟାଏ ଉଲଙ୍ଗ ହୋଇ ।
କୁକୁର ଗୋଟାକେତେ ତା ପାଖେ ଅଛନ୍ତି
ଲଙ୍ଗୁଳ ଝୁଲ ତା'ର ମୁଣ୍ଡକୁ ଶୁଙ୍ଘନ୍ତି ।
ସେହି ଚଣ୍ଡାଳ ସମୀପକୁ ଲାଗି ଜଳ—
ଖାତ ଲାଗିଣ ଅଛୁ ନାହିଁ ତା'ର ଛଳ ।
ଉତ୍ତଙ୍କଙ୍କ ମନ ସେହି ଚଣ୍ଡାଳ ଜାଣି
ବୋଇଲା ମୋହଠାରୁ ଆସି ନଅ ପାଣି ।
ଉତ୍ତଙ୍କ ବୋଇଲେ ତୁ ଜାତରେ ଚଣ୍ଡାଳ
ମୋତେ କେଉଁରୂପରେ ଯାଚିଲୁଟି ଜଳ ।
ଚଣ୍ଡାଳ ତା ଶୁଣି ବୋଇଲା ହେ ଦ୍ୱିଜରାଇ
ଜାତ ଗୋଡ଼ ମୁହଁ ସଭିଏ ବହିଥାଇ ।
ମୋହଠାରୁ ପାଣି ପିଇଲେ କେଉଁଦୋଷ
ହେବ ହେ ଦ୍ୱିଜନାନ କର ତା ପ୍ରକାଶ ।
ଉତ୍ତଙ୍କ ବୋଇଲେ ରେ ଚଣ୍ଡାଳ ଜୀବନ
ଛାଡ଼ିବ ନ ପିଇବ ତୋ ହାତୁ ଜୀବନ ।
ଏହା ଶୁଣି ଚଣ୍ଡାଳ କୁକୁରଙ୍କ କୂଳେ
ଉତ୍ତଙ୍କ ସ୍ମୃତୁଁ ଥିଲେ ଅନ୍ତର୍ହିତ ହେଲେ ।
ଚଣ୍ଡାଳ ଅନ୍ତର୍ଦ୍ଧାନ ଦେଖିଣ ଉତଙ୍କ
ହୃଦୟ ମଧ୍ୟେ ଅତି ହୋଇଣ ଆତଙ୍କ ।
ମନରେ ଭାଳେ ମୋତେ ଯଦୁକୁଳସାଇଁ
ବଞ୍ଚାଇଲେ ଚଣ୍ଡାଳରୂପକୁ ଦେଖାଇ ।
ଶ୍ରୀକୃଷ୍ଣ ଉତ୍ତଙ୍କଙ୍କ ଜାଣି କରି ମନ
ଦେଲେ ନିଜରୂପେ ତାହାଙ୍କୁ ଦରଶନ ।
ଉତ୍ତଙ୍କ ବୋଇଲେ ହେ ଜାଣି ଧର୍ମପୋଥା
ଚଣ୍ଡାଳ ଛଳେ ମୋତେ କରାଇଲ କଥା ।
ପୁଣି ସେ ଚଣ୍ଡାଳ ଯାଚିଲା ମୋତେ ପାଣି
କରୁଣରେ ତାହା ପିଅନ୍ତି ଚକ୍ରପାଣି ।
ଶ୍ରୀକୃଷ୍ଣ ବୋଇଲେ ବସ୍ତ୍ରର ତୁମ୍ଭ ହିତ
ଇନ୍ଦ୍ରଙ୍କୁ ମୁଁ ଡକାଇ ବୋଇଲି ତୁରିତ ।
ଉତ୍ତଙ୍କଋଷି ମୋତେ ଜଳ ମାଗିଛନ୍ତି
ଅମୃତ ଦେଇ ତାଙ୍କୁ କରାଅ ତୃପତି ।
ଇନ୍ଦ୍ର ବୋଇଲେ ହେ ଅଟନ୍ତି ସେ ମନୁଷ୍ୟ
କାହିଁପାଇଁ ତାଙ୍କୁ ଦେବି ସୁଧା ଯଦୁଈଶ ।
ଏହି ସକାଶରୁ ହେ ଚଣ୍ଡାଳରୂପରେ
ଇନ୍ଦ୍ର ଅମୃତଟି ଯାଚିଲେ କପଟରେ ।
ଜାଣି ନ ଥିବାରୁ ନ କଲ ତୁମ୍ଭେ ପାନ
ସେ ବିଷୟେ ଉତ୍ତଙ୍କ ନ କହ ବଚନ ।
ଏବେ ହେ ଜଳ ଇଚ୍ଛା ଅଛୁ ଯେବେ ଋଷି
ବସିଥାଅ ପାଖରେ ମିଳିବ ସେ ଆସି ।
କୃଷ୍ଣଙ୍କର ବୋଲିବା ମାତ୍ରେ ମେଘରାଶି
ବୃଷ୍ଟି କରିଣ ଉତ୍ତଙ୍କଙ୍କୁ ଦେଲେ ତୋଷି ।
ଉତ୍ତଙ୍କ ବୋଇଲେ ଜଳରେ ମୋର ମନ
ଥିଲା ତା ପୂର୍ଣ୍ଣ କଲ ଦେଇ ଭଗବାନ ॥
ଆହେ ଜନମେଜୟ ଆଜ ମେରୁଦେଶେ
ଉତ୍ତଙ୍କ ମେଘେ ବୃଷ୍ଟି କରନ୍ତି ହରଷେ ।
ଏହା ଶୁଣି ଜନମେଜୟ ମହାରାଜା
ବଇଶମ୍ପାୟନ ପାଦରେ କଲେ ପୂଜା ।
ବୋଇଲେ ଉତ୍ତଙ୍କ କି ତପ କରିଥିଲେ
ଏହା ମୋତେ କହିବା ହେଉ ବସିଭଲେ ।
ବଇଶମ୍ପାୟନ ବୋଇଲେ ଗୁରୁସେବା
କଥାରେ ଉପମା ତାହାଙ୍କୁ ଏକା ଦେବା ।
ସେବା କରିଣ ଗଉତମଙ୍କୁ ଉତ୍ତଙ୍କ
ସମସ୍ତ ଶିଷ୍ୟଙ୍କର ରଚିଲେ ଆତଙ୍କ ।
ସବୁ ଶିଷ୍ୟ ପ୍ରତିକି ଗଉତମ ଋଷି
ଦେଖିଲେ ତାହାଙ୍କୁ କହନ୍ତି କଥା ହସି ।
ସବୁ ଶିଷ୍ୟମାନଙ୍କୁ ପଢ଼ାଇଣ ପାଠ
ମେଲାଣି ଦେଲେ ଗଉତମ ଋଷିଶ୍ରେଷ୍ଠ ।
ଉତ୍ତଙ୍କଙ୍କୁ କେବଳ ସମୀପେ ରଖିଲେ
ଅହରନିଶ ବସି ପାଠ ପଢ଼ାଇଲେ ।
ଉତ୍ତଙ୍କ ପଢ଼ିବାରେ ଗୁରୁଙ୍କ ସେବାରେ
ବାର୍ଦ୍ଧକ୍ୟ ଅବସ୍ଥାକୁ ବହିଲେ ଅଙ୍ଗରେ ।
ଦିନକରେ ଗୁରୁଙ୍କ ହୋମକାଠ ପାଇଁ
ଗଲେ ସେ ବନେ ହେ କୁରାଡ଼ି କାନ୍ଧେ ବହି ।
ବନମଧ୍ୟେ ଦେଖି ଶୁଖିଲା କାଠଶ୍ରେଣୀ
ବହିଲେ ଚତୁଁ ଖଣ୍ଡେ କୁରାଡ଼ିରେ ହାଣି ।
ଉତ୍ତଙ୍କ ମହାଋଷି ଦ୍ୱିଜଙ୍କ ଶେଖର
ଆସିଲେ ଗୁରୁସ୍ଥାନେ ହୋଇ ଧୀର ଧୀର ।
ଗୁରୁଙ୍କର ବସା ସମୀପରେ କାଠକୁ
ପକାନ୍ତେ ସେ କାଠ ହେ ଉତ୍ତଙ୍କଜଟାକୁ ।

ଧରି କରି ପଡ଼ନ୍ତେ ଉତ୍ତଙ୍କ ମହର୍ଷି
ସମ୍ଭାଳି ନ ପାରି ପଡ଼ିଲେ ତଳେ ବସି ।
ମନେ ଭାବିଲେ ଯୁବକ ହୋଇଥିଲେ ମୁହିଁ
କାଠ ଧରି ତଳେ ପଡ଼ନ୍ତା କାହିଁପାଇଁ ।
ବୃଦ୍ଧ ହେବା ସକାଶୁ ମୋହର ଏଇ ଦଶା
ହେବାରୁ କାନ୍ଦିଲେ ଉତଙ୍କ ମହାଯଶା ।
ଗଉତମ ତା ଦେଖି କହିଲେ ଝିଅଙ୍କୁ
ବୋଧ ଯାଇ ତୁମେ ମୋ ଶିଷ୍ୟ ଉତ୍ତଙ୍କଙ୍କୁ ।
ବାପଙ୍କର ବଚନ ଘେନି ସେ କୁମାରୀ
ଆସିଲେ ଉତଙ୍କଙ୍କ ପାଶେ ନ ବିସ୍ମରି ।
ଉତଙ୍କଙ୍କ ନୟନୁ ବହିଲା ଲୋତକ
ଧରନ୍ତେ ପଡ଼ିଗଲା ତାଙ୍କ କରଯାକ ।
ଯେବେ ସେ ଅଶ୍ରୁ ବିନ୍ଦୁ ପଡ଼ନ୍ତା ମହୀରେ
ମହୀଦେବୀ ପଡ଼ନ୍ତେ ଯାଇ ପାତାଳରେ ।
ଗଉତମ ବୋଇଲେ ଉତ୍ତଙ୍କ ମହର୍ଷି
କହ ହେ କାହିଁପାଇଁ କାନ୍ଦୁଅଛ ବସି ।
ଉତ୍ତଙ୍କ ବୋଇଲେ ମୁଁ ତୁମ୍ଭ ସେବା ବିନା
କିଛି ନ ଜାଣିଲି ହେ ଋଷି ମହାମନା ।
ବାର୍ଦ୍ଧକ୍ୟ ଅବସ୍ଥା ତ ହୋଇଲା ମୋହର
ଯିବି ତ ନିକଟରେ ଯମଙ୍କର ଘର
ପୁଅ ଭାରଯା ମିତ୍ର ଜ୍ଞାନ ନ ଜାଣିଲି
ଏହି କଥା ଭାବି ହେ ଗୁରୁ ମୁଁ କାନ୍ଦିଲି ।
ଗୌତମ ବୋଇଲେ ଘରକୁ ଯେବେ ମନ
ହେଉଛି ତେବେ ଯାଅ ଆହେ ତପୋଧନ ।
ଉତ୍ତଙ୍କ ବୋଇଲେ ଦକ୍ଷିଣା ମୋତେ ମାଗ
ତା ଦେଇ ଘରକୁ ମୁଁ ଯିବି ମହାଭାଗ ।
ଗଉତମ ବୋଇଲେ ତୁମ୍ଭର ଆଚାର
ଦେଖି ମୁହିଁ ତୋଷୀ ହେଉଛି ମୁନିବର ।
ଅନ୍ୟକୁ ଆଉ ତୁମ୍ଭେ ମାଗିବାକୁ କିଛି
ନ ବୋଲ ଘରକୁ ହେ ଯାଅ ମୁଁ ବୋଲୁଛି ।
ଆଜ ତୁମ୍ଭେ ଯୁବା ହୋଇ ମୋ ଝିଅ-କର
ଧରି କରି ଉତ୍ତଙ୍କ ଋଷି ଘର କର ।
ଋଷି ଅନୁଜ୍ଞାରେ ଉତ୍ତଙ୍କ ଯୁବା ହେଲେ
ଗୁରୁଙ୍କ ସୁତା କର ବିଧିରେ ଧଇଲେ ।
ଗୁରୁପତ୍ନୀ ଆଗେ କହିଲେ ଆଗୋ ମାତ
କି ଦେବି ତୁମ୍ଭଙ୍କୁ ମୁଁ କହ ତା ତୁରିତ ।

ଗୁରୁପତ୍ନୀ ବୋଇଲେ ପାଇଲି ମୁଁ ସବୁ
ହେଲେ ମୋ ଜୁଆଇଁ ଘରକୁ ଯାଅ ବାବୁ ।
ଉତ୍ତଙ୍କ ବୋଇଲେ ମୁଁ ଦକ୍ଷିଣା ନ ଦେଲେ
ଯାଇ ନାହିଁ ଘରକୁ ଜାଣିଥାଅ ଭଲେ ।
ଗୁରୁପତ୍ନୀ ବୋଇଲେ ସଉଦାସ ନାରୀ
ଯେଉଁ କୁଣ୍ଡଳକୁ କର୍ଣ୍ଣରେ ଅଛି ଧରି ।
ତାହା ମୋତେ ଦକ୍ଷିଣା କରି ଆଣି ଦିଅ
ଆଗ୍ରହ ତ କଲ ଉତ୍ତଙ୍କ ଶିଷ୍ୟ ପ୍ରିୟ ।
ଉତ୍ତଙ୍କ ତାହା ଶୁଣି ସଉଦାସଠାକୁ
ବାହାରିଲେ କାନ୍ଧରେ ପକାଇ ଛତାକୁ ।
ଉତ୍ତଙ୍କ ଯିବା ପରେ ପୁଚ୍ଛିଲେ ଗୌତମ
କେଉଁଠାକୁ ଗଲେ ଉତ୍ତଙ୍କ ଶିଷ୍ୟୋତ୍ତମ ।
ଗଉତମ ଆଗେ କହିଲେ ତାଙ୍କ ନାରୀ
କୁଣ୍ଡଳାର୍ଥେ ଗଲେ ଉତ୍ତଙ୍କ ତପସ୍ୱୀ ।
ଗଉତମ ବୋଇଲେ କଲ ଯେଉଁ କଥା
ମୋ ହୃଦୟ ମଧ୍ୟେ ହୋଇଲେ ମହାବ୍ୟଥା ।
ସଉଦାସେ ରାଜା ରାକ୍ଷସ ହୋଇଛନ୍ତି
ଉତ୍ତଙ୍କଙ୍କୁ ଦେଖିଲେ କାହିଁ ହେବ ପ୍ରୀତି ।
ଅହଲ୍ୟା ବୋଇଲେ ନ ଜାଣି ଉତ୍ତଙ୍କଙ୍କୁ
ବରଗିଲି କଲ୍ୟାଣ କର ହେ ତାହାଙ୍କୁ ।
ଭଲ ହୋଇ ଆସନ୍ତୁ ମୋ ପାଶେ ସେ ଋଷି
ନୋହିଲେ ହୋଇଲି ମୁଁ ବ୍ରହ୍ମବଧେ ଦୋଷୀ ।
ଗଉତମ ବୋଇଲେ ନ ପାଅ ଆତଙ୍କ
ଆସିବେ ଅବିଳମ୍ବେ ପାଶକୁ ଉତ୍ତଙ୍କ ।
ଉତ୍ତଙ୍କ ତ ଚାଲିଲେ ସଉଦାସଠାକୁ
ଦେଖିଲେ ସେ ବନରେ ସେ ନୃପବରଙ୍କୁ ।
ଧରିଛନ୍ତି ରାକ୍ଷସ ବପୁଟିକ ସେହି
ରଙ୍ଗ କରୁଛନ୍ତି ମୁଖକୁ ରକ୍ତ ପିଇ ।
ସଉଦାସ ରାଜା ଦେଖିଣ ଉତଙ୍କଙ୍କୁ
ବୋଇଲେ ଆସ ଆସ ଖାଇବି ତୁମ୍ଭଙ୍କୁ ।
ଦିନ କେତେ ହେଲା ଯେ ମିଳି ନାହିଁ ଗ୍ରାସ
ତୋଷ ମୋର ଉଦର ତୁମ୍ଭେ ଦେଇ ମାଂସ ।
ଉତ୍ତଙ୍କ ବୋଇଲେ ଗୁରୁଙ୍କ ପାଇଁ ମୁହିଁ
ଆସିଛି ମୋହତ ନୃପ ଈର୍ଷା କର ନାହିଁ ।
ସଉଦାସ ବୋଇଲେ ଖାଇବା ଗ୍ରାସକୁ
କେ ଛାଡ଼ୁଛି ଉତ୍ତଙ୍କ କହ କି ଧର୍ମକୁ ।

ଉତ୍ତଙ୍କ ବୋଇଲେ କରିବ ପଚ୍ଛେ ତ୍ରାସ
ଆଗ ଗୁରୁ ଦକ୍ଷିଣା ଦେଇ ମନ ତୋଷ ।
ଯେଉଁ ଦକ୍ଷିଣା ମୁହିଁ ଗୁରୁଙ୍କୁ ଯାଚଛି
ତାହା ଦିଅ, ସେ ତୁମ୍ଭଠାରେ ତ ରହିଛି ।
ସତ୍ୟ କରି ତୁମ୍ଭଙ୍କୁ କହେ ନୃପବର
ଦକ୍ଷିଣା ଦେଇ ଭକ୍ଷ୍ୟ ହେବି ମୁଁ ତୁମ୍ଭର ।
ତୁମ୍ଭେ ସେ ଦକ୍ଷିଣାକୁ ଦେଇ ଥାଅ ବସି
ଏହିଠାରେ ମୁହିଁ ମିଳିବି ପୁଣି ଆସି ।
ସଉଦାସ ବୋଇଲେ କି ଦକ୍ଷିଣା ମୋତେ
ମାଗୁଅଛ ଉତ୍ତଙ୍କ ମାଗ ହେ ତୁରିତେ ।
ଉତ୍ତଙ୍କ ବୋଇଲେ ମୁଁ କୁଣ୍ଡଳ ମାଗୁଛି
ମୋତେ ତା ଦିଅ ସଉଦାସ ନୃପବର୍ଯ୍ୟ ।
ସଉଦାସ ବୋଇଲେ ମୋଠାରେ ସେ ନାହିଁ
ମୋ ଭାରିଯା ତାହା କାନରେ ଅଛି ବହି ।
ମୁହିଁ ତାଙ୍କୁ ଛାଡ଼ି କରିଛି ବନେ ବାସ
ତା ଛାଡ଼ି ଆନ ମାଗ ଋଷିକୁଳ-ଈଶ ।
ଉତ୍ତଙ୍କ ବୋଇଲେ ହେ ସତ୍ୟବାକ ହୋଇ
ଅସତ୍ୟବାକ କିମ୍ପା ହୁଅ ନରସାଇଁ ।
ଦେବ ତ ବୋଲିଅଛ ନ ଦେଲ କୁଣ୍ଡଳ
ଅଧରମ ପାଇବ ଆହେ ନରପାଳ ।
ସଉଦାସ ବୋଇଲେ ଯା ମୋ ଭାର୍ଯ୍ୟାଠାକୁ
ମାଗିବ ମୁଁ ବୋଇଲି କହି କୁଣ୍ଡଳକୁ ।
ଉତ୍ତଙ୍କ ବୋଇଲେ ହେ ସେ ତ ରାଜର୍ଷି
ତାଙ୍କୁ ମୁଁ ନୟନରେ ଦେଖିବି କି କରି ।
ତୁମ୍ଭେ ହେ ତାଙ୍କଠାକୁ ଯାଇ କରି ଆଣ
କୁଣ୍ଡଳକୁ ଆହେ ମାନବ-କୁଳଗଣ ।
ସୌଦାସ ବୋଇଲେ ଗଲେ ମୁଁ ଭାର୍ଯ୍ୟାଠାକୁ
ସେ କୁଣ୍ଡଳ ମାଗିବ-ଖାଇବ ତ ତାକୁ ।
ଏହା ଶୁଣି ଉତ୍ତଙ୍କ ମଦୟନ୍ତୀ ପାଶେ ।
ବାହାରିଲେ ସେଠାରୁ ଅତ୍ୟନ୍ତ ହରଷେ ।
ଦେଖିଲେ ବନରେ ଅଛନ୍ତି ମଦୟନ୍ତୀ
ଶୋଭାରେ ନିନ୍ଦା କରି ରମ୍ଭାଙ୍କ ମୂରତି ।
ବୋଇଲେ ତୁମ୍ଭ ଭର୍ତ୍ତା ମୋତେ ତୁମ୍ଭଠାକୁ
ବରଗିଛନ୍ତି ଦିଅ କର୍ଣ୍ଣ-କୁଣ୍ଡଳକୁ ।
ମଦୟନ୍ତୀ ବୋଇଲେ ସଉଦାସଙ୍କର
ସଙ୍କେତ ଆଣିଲେ ମୁଁ ଦେବି ଋଷିବର ।
କପଟରେ ତୁମ୍ଭେ ହେ ମାଗୁଥିବ ମୋତେ
ମୋହର ହେଉନାହିଁ ତୁମ୍ଭକୁ ପରତେ ।
ମୋ କାନର କୁଣ୍ଡଳ ସୂର୍ଯ୍ୟଙ୍କ ପ୍ରଭାବ
ସଦା କରି ବଢ଼ାଅ ପ୍ରାଣୀଙ୍କର ଭାବ ।
ଯାହାଠାରେ ଥାଏ ତାଠାରେ କ୍ଷୁଧା ତୃଷା
କରି ନ ପାରଇ ହେ କଦାଚିତେ ବସା ।
କୁଣ୍ଡଳ ସକାଶରୁ ଲକ୍ଷ ସୁନା ଜାତ
ହେଉଥାଏ ଏ ନିତ୍ୟ ହେ ଜାଣ ଋଷିସୁତ ।
ଏହା ଶୁଣି ଉତ୍ତଙ୍କ ବାହୁଡ଼ି ଆସିଲେ
ମଦୟନ୍ତୀ କହିବା କଥାକୁ କହିଲେ ।
ସୌଦାସ ବୋଇଲେ କହିବ ମୋ ବାମାକୁ
ତୁମ୍ଭେ ତ ଏକା ତାରି ପାରିବ ତାହାଙ୍କୁ ।
ଏହି ବଚନରେ ହେ ଦେବ ସେ କୁଣ୍ଡଳ
କହି ନ ବିସ୍ମର ଯାଅ ହେ ତପଃଶୀଳ ।
ଉତ୍ତଙ୍କ ଏହା ଶୁଣି ମଦୟନ୍ତୀ ପାଶେ
ଯାଇ ନୃପକଥା କହିଲେ ପୁଣି ତୋଷେ ।
ସେ ମଦୟନ୍ତୀ କର୍ଣ୍ଣକୁଣ୍ଡଳ ଦୁହିଁଙ୍କି
କାଢ଼ିଦେଲେ ତାହାଙ୍କୁ କହିଣ ପ୍ରୀତିକି ।
ଉତ୍ତଙ୍କ ସେ କୁଣ୍ଡଳ ଦୁଇଟିକ ପାଇ
ସଉଦାସଠାକୁ ଆସିଲେ ତ୍ୱରା ହୋଇ ।
କହିଲେ ତୁମ୍ଭ ବୋଲେ ଦେଲେ ସେ କୁଣ୍ଡଳ
ଦେଖ ମୋର ହାତରେ ଅଛି ନରପାଳ ।
କି କହିଲ ତୁମ୍ଭେ କହିବାକୁ ତାହାଙ୍କୁ
ତା ବୁଝି ନାହିଁ ମୁହିଁ ବୁଝାଅ ଆମ୍ଭଙ୍କୁ ।
ସଉଦାସ ବୋଇଲେ ବ୍ରାହ୍ମଣ କ୍ରୋଧରୁ
ହେଉଛନ୍ତି କ୍ଷତ୍ରିୟମାନେ ଦୁଃଖେ ଘାରୁ ।
ବ୍ରାହ୍ମଣ ଅକ୍ରୋଧେ ଆୟୁଷ ଯଶ ଧନ
ବଢ଼ଇ ଏ କଥାରେ ସନ୍ଦେହ ନ ଘେନ ।
ମଦୟନ୍ତୀ ବ୍ୟତୀତ ମୋହର ମୁକତି—
ସ୍ଥାନ କେ ଅଛି ଦିଶୁ ନାହିଁ ମହାମତି ।
ଏବେ କୁଣ୍ଡଳକୁ ପାଇଲ ଋଷିବର
ଯାହା ମୋତେ କହୁଛ ତା କର ସତ୍ୱର ।
ଉତ୍ତଙ୍କ ବୋଇଲେ ମୁଁ ପଚାରିବି ଯାହା
ତା କହିଲେ ତାହା କରିବ ନରନାହା ।
ସୌଦାସ ବୋଇଲେ କି ଇଚ୍ଛା ଅଛି ଋଷି
ପଚାର ମୁଁ ତାହା କହିବି ପାଶେ ବସି ।

ଉତଙ୍କ ବୋଇଲେ ହେ ଶାସ୍ତ୍ର ଲେଖିଅଛୁ
କଥା ହେବା ଲୋକ ତ ମିତ୍ର ବୋଲାଉଛୁ ।
ଭ୍ରମର ଭ୍ରଲେ ମୁନି କଥାବର୍ତ୍ତା ହେଲା
ଭ୍ରମ ବୋଲେ କୁଣ୍ଡଳ ଯୋଡ଼ିଏ ପାଇଲା ।
ଏ ସକାଶୁ ବୋଲୁଛି ଭ୍ରମର ପାଶକୁ
ଆସିବା କଥା ନାହିଁ ଉଚିତ ଆମ୍ଭଙ୍କୁ ।
ସୌଦାସ ବୋଇଲେ ଆସିଲେ ମୋର ପାଶେ
ଭ୍ରମଙ୍କୁ ବସାଇବ ଯମଙ୍କର ଦେଶେ ।
ବଚନରେ ଭ୍ରମର ହେଲାଣ ତ ମିତ୍ର
ଏ ସକାଶୁ ଏହା କହିଲ ଭାବ ଚିତ୍ତ ।
ଏଥିପରେ କହନ୍ତେ ସଉଦାସ ରାଜା
ଉତଙ୍କ ମହର୍ଷି ଆନନ୍ଦ ଧରି ମଜା ।
ସଉଦାସନୃପଙ୍କ କରି କଲ୍ୟାଣକୁ
ବାହାରିଲେ କୃଷ୍ଣାଜନେ କୁଣ୍ଡଳ ଯୋଡ଼କୁ ।
ବାଟରେ ଯାଉଁ ବେଲ ପାଚିଛି ଦେଖିଲେ
ଶୋକେ ଋଷି ସେ ଗଛ ଉପରେ ଚଢ଼ିଲେ ।
କୁଣ୍ଡଳବନ୍ଧା କୃଷ୍ଣାଜନେ ତାଳେ ବାନ୍ଧି
ବେଲଫଳେ ନପୁନକେନ କଲେ ବନ୍ଦୀ ।
ଗଛ ପ୍ରଶାଖାଳମାନଙ୍କୁ ଋଷି ଯାଇ
ବେଲ ପଡ଼ିବାକୁ ଝାଡ଼ିଲେ ହଠିଆଇ ।
ଏଥିସକାଶୁ ବେଲ ହୋଇ ଗଦା ଗଦା
ପଡିଣ କଲା ପୂର୍ଣ୍ଣ ଗଛତଳ ପଦା ।
ବାନ୍ଧିବା ଅଜନେ ପଡିଲେ ବେଲ ରାଶି
କୁଣ୍ଡଳ ଭ୍ରଲେ ସେ ପଡ଼ିଲା ତଳେ ଖସି ।
ତାହା ଦେଖି ଅଇରାବତକୁଳ ସର୍ପ
ଆସିଲା ହୃଦେ ତୋଷ ବହିଣ ଅମାପ ।
କୁଣ୍ଡଳକୁ ପାଟିରେ ଜାକିଣ ଧରିଲା
ଉଇ-ବଳବାଟରେ ପାତାଳେ ପଶିଲା ।
ସର୍ପ କୁଣ୍ଡଳକୁ ନେବାର ଦେଖି ଋଷି
ଗଛରୁ ଓହ୍ଲାଇ ପଡ଼ିଲେ ତଳେ ବସି ।
କାଠ ଖଣ୍ଡେ ଧରିଣ ସେ ବିଲ ଖୋଳିଲେ
ପଞ୍ଚତିରିଶଟି ଦିବସ ଯାଏ ଭଲେ ।
ଋଷିଙ୍କର ଖୋଳିବା ଘାତକୁ ନ ସହି
ଥରଥର ହୋଇଣ କମ୍ପିଗଲା ମହୀ ।
ଇନ୍ଦ୍ର ସେହିକାଳରେ ଦ୍ୱିଜରୂପ ବହି
କହିଲେ ଉତଙ୍କଙ୍କ ମୁଖକୁ ଅନାଇଁ ।

ନାଗଲୋକ ସହସ୍ର ସହସ୍ର ଯୋଜନ
ଏଠାକୁ ଅଛି ହେ ଉତଙ୍କ ତପୋଧନ ।
କାଠଖଣ୍ଡିକରେ ଖୋଳିଣ ବାଟ କରି
କିରୂପରେ ଯିବ କହ ତ ତପେଶ୍ୱରି ।
ଉତଙ୍କ ବୋଇଲେ କୁଣ୍ଡଳ ନ ପାଇଲେ
ଏଠାରେ ମରିବି ଦେଖିବ ତୁମ୍ଭେ ଭଲେ ।
ଉତଙ୍କଙ୍କର ଶୁଣି ନିଷ୍ଠୁର ବଚନ
ବଜ୍ରକୁ ଦଣ୍ଡରେ ରଖିଲେ ଭଗବାନ ।
ବଜ୍ର ପ୍ରଭାବରେ ଉତଙ୍କ ମହରଷି
ପାତାଳକୁ ବୋଲି ଖୋଳିଲେ ବାଟ ବସି ।
ଦେଖିଲେ ନାଗଲୋକେ ଅଛି ଦିବ୍ୟପୁର
ଜ୍ୟୋତିରେ ପୀଡ଼ା କରୁଅଛି ନୟନର ।
ଯୋଜନଶତ ଯାଏ ସେ ପୁରର ବାଟ
ହୋଇଅଛି, ଲାଗିଛି ଯୋଡ଼ିଏ କବାଟ ।
ଉତଙ୍କ ମନେ କଲେ ଏ ଦୁଆରେ ଯାଇ
କୁଣ୍ଡଳ କେବେ ହେଲେ ଆଣି ହେବ ନାହିଁ ।
ଘୋଡ଼ାଟିଏ ଆସି କହିଲା ଉତଙ୍କଙ୍କୁ
ଫୁଙ୍କ ମୋର ମଳଉତ୍ସର୍ଗ ଦୁଆରକୁ ।
ନୋହିଲେ କୁଣ୍ଡଳକୁ ନପାଇଣ ଋଷି
ହେଲେ ମଧ ତୁମ୍ଭେ ହେ ଯମପୁରବାସୀ ।
ଉତଙ୍କ ବୋଇଲେ ତୋ ଗୁହ୍ୟଦ୍ୱାରେ ମୁହିଁ
କିରୂପରେ ମୁହଁ ଲଗାଇ ଫୁଙ୍କିବଇଁ ।
ଘୋଡ଼ା ବୋଇଲା ମୁହିଁ ଅଟଇ ଅଗ୍ନିଦେବ
ମୋତେ ତ ପୂର୍ବେ ପୂଜିଥିଲ ବହୁ ଭାବ ।
ଏବେ କିମ୍ପା ନାହିଁ କରୁଛ ଆହେ ଦ୍ୱିଜ
କଲା କଥା କରିଲେ ଅଛି କେଉଁ ଲାଜ ।
ଉତଙ୍କ ଏହା ଶୁଣି ଘୋଡ଼ା ଗୁହ୍ୟଦେଶେ
ମୁଖ ଦେଇ କରି ଫୁଙ୍କିଲେ ସେ ହରଷେ ।
ଏ ସକାଶୁଁ ଅଗ୍ନି ଘୋଡ଼ାର ଗୁହ୍ୟଦ୍ୱାର
ବାଟରୁ ଜାତ ହେଲା ଜାଣ ନରବର ।
ନାଗଲୋକ ଯାକଙ୍କୁ ଜାଳି ଦେବାପାଇଁ
ସେ ନିଆଁଟି ଧାଇଁଲା ଅତି କ୍ରୋଧ ବହି ।
ଅଇରାବତ ନାଗ ତା ଦେଖି ଡରିଲେ
ଉତଙ୍କଙ୍କ କରେ କୁଣ୍ଡଳ ସମର୍ପିଲେ ।
ଉତଙ୍କ ସେ କୁଣ୍ଡଳ ପାଇ ହସ ହସ
ହୋଇ କରି ଆସିଲେ ଗୁରୁଙ୍କ ପାଶ ।

ସ୍ୱର୍ଣ୍ଣପତ୍ରୀ କୁଣ୍ଡଳ ପାଇ ତୋଷ ହୋଇଲ
ତୁ ବାବୁ ଭଲ ଅଛୁ ବୋଲିଣ ବୋଇଲେ ।
ଏବେ ଯାଅ ଘରକୁ ହିଷକୁ ମୋ ଘେନ
ମୋ ବୋଲେ ହେବ ଅନ୍ତଃକାଳେ ପୁଣ୍ୟସ୍ଥାନ
ଉତଙ୍କ ମହରଷି ଶାସ୍ତ୍ରଙ୍କ ବଚନ
ଘେନିଣ ଆଶ୍ରମକୁ ଆସିଲେ ବହନ ।
ଏକାନ୍ତରେ ସେ କ୍ରୀଡ଼ାସରୁଚିଏ କଲେ
ନଗନା ସଙ୍ଗତେ ସୁରତେ ପ୍ରବର୍ତ୍ତିଲେ ।
ନାନାଜାତ ବନ୍ଧୁମାନଙ୍କରେ ସେ ଯତ
ତାହାକୁ ଦେଖି ହାର ଗଲ ରତିପତି ।
ଆହେ ଜନ୍ମେଜୟ ହସ୍ତିନା ନରପାଳ
ଶୁଣିଲ ମୋଠାରୁ ଉତଙ୍କ ତପୋବଳ ।
ଆଉ କ ଇଚ୍ଛା ଥିଲେ ପଚ୍ଛର ତୁ ମୋତେ
ନିଃସନ୍ଦେହ କରି କହିବୁଁ ତାହା ତୋତେ ।
ଏଠାରେ ଉତଙ୍କ ଆଖ୍ୟାନ ହେଲା ଶେଷ
କହଇ କୃଷ୍ଣସିଂହ ଧରଣୀକୋଟ-ଈଶ ।



## ପରୀକ୍ଷିତ ଜନ୍ମ ବୃତ୍ତାନ୍ତ

ଜନ୍ମେଜୟ ବୋଇଲେ କୃଷ୍ଣ ଦ୍ୱାରକାକୁ
ଗଲେ କସ ବା କଲେ କହ ତା ଆମ୍ଭଙ୍କୁ ।
ବଇଶମ୍ପାୟନ ବୋଇଲେ ହେ ରାଜନ
ଆଗ ରଇବତକୁ ଗଲେ ଭଗବାନ ।
ଯଦୁଏ ସେଠାରେ ଉତ୍ସବ କରିଥିଲେ
ଉତ୍ସବ ବିଧି କହୁ ତୁମ୍ଭେ ଶୁଣ ଭଲେ ।
ନାନାଜାତି ବୃନ୍ଦଆ ସେ ଗିରିରେ ଟାଣି
ମଣ୍ଡଳ କରି ପୁଷ୍ପମାଳ ଶ୍ରେଣୀ ଶ୍ରେଣୀ ।
ଭକ୍ଷ୍ୟ ଭୋଜ୍ୟ ପେୟ ଦ୍ରବ୍ୟ ଆଉ ଭୋଜନ
ରଖାଇଛନ୍ତି ସବୁ କରାଇଣ ସ୍ଥାନ ।
ଗିରିମଧ୍ୟରେ ବାଟୁଟାଏ ଅଷ୍ଟରତ୍ନେ
ବସାଇଅଛନ୍ତି ଯଦୁଏ ଅତି ଯତ୍ନେ ।
ସଭାରେ ଯଦୁଏ ଆଶ୍ରମ କରି ବୃକ୍ଷ
ବସିଅଛନ୍ତି ଧାଡ଼ି ହୋଇ ଲକ୍ଷ ଲକ୍ଷ ।
ଗଣିକାଗଣ ଗୀତ ଗାଇ ନାଟ କରି
ନେଉଛନ୍ତି ଯଦୁମାନଙ୍କ ମନ ହରି ।
କୃଷ୍ଣ ସେଠାରେ ଯହୁଁ ହୋଇଲେ ପ୍ରବେଶ
ଦଶିଲା ସେହି ଗିରି ସ୍ୱର୍ଗର ସଦୃଶ ।

କୃଷ୍ଣ ଯଦୁଙ୍କରଠାରୁ ପୂଜାକୁ ପାଇ
ଦ୍ୱାରକାରେ ପ୍ରବେଶ ହୋଇଲେ ସେ ଯାଇଁ ।
ମାତା ପିତା ଦୁହିଙ୍କି କରି ନମସ୍କାର
ଭିତରକୁ ଗଲେ ସେ ଶଙ୍ଖଚକ୍ରଧର ।
ରୁକ୍ମିଣୀଦେବୀ ଆସି ପାଦରେ ନମିଲେ
କୃଷ୍ଣପାଦ ଧୋଇଣ ଘରରେ ପଶିଲେ ।
ବସୁଦେବ ଯାଇ କୃଷ୍ଣଙ୍କ ସମୀପକୁ
ପଚ୍ଛରିଲେ ଭାରତଯୁଦ୍ଧର କଥାକୁ ।
ବାପ ଶୁଣିବାରେ ମୁଁ ନୋହୁଛୁ ସନ୍ତୋଷ
କହ କରୁପରେ କୁରୁଏ ଗଲେ ନାଶ ।
ଶ୍ରୀକୃଷ୍ଣ ବୋଇଲେ ହେ ଶ୍ରେଷ୍ଠ ଦଶଵନ
ଯୁଦ୍ଧ କରିଣ ମଲେ ଶିଖଣ୍ଡିଙ୍କ ଘେନ ।
ତଦନ୍ତେ ଦ୍ରୋଣ ପଞ୍ଚଦିବସ ଯୁଦ୍ଧ
କରି ହେଲେ ଧୃଷ୍ଟଦ୍ୟୁମନ ହାତେ ବଧ ।
ଦୁଇଦିନ ଯୁଦ୍ଧ କରିଣ ସୂତ-ସୁତ
ଅର୍ଜୁନ କାଣ୍ଡରେ ଦେଖିଲେ ବଣ୍ଡଦସ୍ତ ।
ଶଲ୍ୟଅଙ୍ଗେ ଯୁଝି ଓଳାଏ ଧର୍ମରାଜ
ଶକତି ମାରି ଦେଖାଇଲେ ପ୍ରେତରାଜ ।
ଦୁର୍ଯ୍ୟୋଧନରାଜାଙ୍କ ଦୁଇଜଙ୍ଘ ପିଟି
ଗଦାରେ ପ୍ରାଣ ନେଲା ପବନବେଟାଟି ।
ଶଲ୍ୟ ଦୁର୍ଯ୍ୟୋଧନ ଯେ ଏକାଦିନକରେ
ମଲେ ବୋଲି ତାତ ଜାଣ ମୋ କହିବାରେ ।
ସେହି ରାତି ମୁହିଁଟି ଗଲି ହସ୍ତିନାକୁ
ଘେନି କରି ସଙ୍ଗତେ ପାଣ୍ଡବମାନଙ୍କୁ ।
ଏହି ଛିଦ୍ରରେ ଅଶ୍ୱତ୍ଥାମା ପଦାଗ୍ରସ
ଦୋଉଁଲେ ପାଣ୍ଡବ-ଗଡ଼କୁ ମାରି ଛର ।
ଖଣ୍ଡାଟିଏ ଧରି ଦ୍ରୌପଦୀ ପାଞ୍ଚସୁତ
ଶିଖଣ୍ଡି ଧୃଷ୍ଟଦ୍ୟୁମନକୁ କଲେ ହତ ।
ଏବାହାରେ ଅକ୍ଷୌହିଣୀଏ ସେନା ଥିଲେ
ତାହାଙ୍କୁ ସେ ମାଧ୍ୟ ମାରିଣ ପକାଇଲେ ।
ପାଣ୍ଡୁନୃପତଙ୍କର ପାଞ୍ଚପୁତ୍ର ମୁହିଁ
ସାତ୍ୟକ ମିଶି ସାତେ ପ୍ରାଣେ ଅଛୁ ରହି ।
କୃପ କୃତବର୍ମା ବିଦୁର ସଞ୍ଜୟ
ଯୁଯୁତ୍ସୁ ଅଶ୍ୱତ୍ଥାମା ନୋହି ଯୁଦ୍ଧ କ୍ଷୟ ।
ଅଠରଦିନ ଯାକ ଯୁଦ୍ଧ ହେଲା ଜାଣ
ଦୁଇ କୁଳୁଁ ଆମ୍ଭେ ବଞ୍ଚିଲୁ ତେରଜଣ ।

ଯଦୁମାନେ ଏହା ଶୁଣିଣ କେତେ ଶୋକ
କେତେ ବା ସୁଖ କଲେ ଲଭିଣ ବିବେକ ।
ଆହେ ଜନମେଜୟ ପୁଚ୍ଛିଥିଲ ଯାହା
କହିଲି ତ ଏବେ ଶୁଣିଲ ବସି ତାହା ।
ସୁଭଦ୍ରା ସେକାଳେ କୃଷ୍ଣଙ୍କୁ ଅନାଇଁ
ବୋଇଲେ ମୋର ପୁତ୍ର ମରଣ କମାଇଁ ।
କହୁ ନାହିଁ ତ ଆହେ ବାପାଙ୍କର ଆଗେ
ଏତେ ବୋଲି ପଡ଼ିଲେ ଶୋକେ ମହାରାଗେ ।
ବସୁଦେବ ଶୁଣିଣ ନାତିର ମରଣ
ଆହା କି ହେଲା ବୋଲି କଲେ ସେ କାରୁଣ୍ୟ
ବସୁଦେବ ବୋଇଲେ ଆହେ ଚକ୍ରଧର
କହ ବଧ କିରୂପେ ହେଲା ମୋ ନାତିର ।
ମୋ ନାତି ତ ଥିଲେ ସମାନ କୃଷ୍ଣ ପରି
କିରୂପେ କୁରୁଏ ମାରିଲେ ଶସ୍ତ୍ର ଧରି ।
ଏହା ଶୁଣି କୃଷ୍ଣ ବୋଇଲେ ଶୁଣ ତାତ
ଯେରୂପରେ ହୋଇଲେ ଅଭିମନ୍ୟୁ ହତ ।
ଦ୍ରୋଣ କର୍ଣ୍ଣ ସମର-ସମୁଦ୍ର ତରିଲେ
ଦୌଶାସନ ଗୋଷ୍ପଦଜଳେ ବୁଡ଼ି ମଲେ ।
କେବଳ କହୁଛି ଦ୍ରୋଣାଦି ଏକେ ଏକେ
ଯୁଝିଥିଲେ ଯାଇଥାଆନ୍ତେ ଯମଲୋକେ ।
ଅଭିମନ୍ୟୁବୀରଙ୍କ ମଲାବେଳେ ମୁଖ
ନିନ୍ଦା କରୁଥିଲାଟି ଚନ୍ଦ୍ରଙ୍କ ମୟୂଖ ।
ଏହି ସକାଶୁଁ ମୁହିଁ ବୋଲୁଅଛି ସେହି
ଯାଇଥିବେ ସ୍ୱର୍ଗେ ସନ୍ଦେହ ଏଥି ନାହିଁ ।
କ୍ଷତ୍ରିୟ ଯୁଦ୍ଧେ ମରିବାକୁ ଆମ୍ଭେ ଶୋକ
କଲେ ଲୋକ ଶୁଣି ବୋଲିବେ ଅବିବେକ ।
ଏ କଥା ସକାଶରୁ ବୋଲୁଅଛି ମୁହିଁ
ହୃଦୟ ଶୋକଟିକି ଦିଅ ନିବର୍ତ୍ତାଇ ।
ବସୁଦେବ ଶୁଣିଣ କୃଷ୍ଣଙ୍କ ବଚନ
ଶୋକକୁ ଛାଡ଼ି ଡକାଇଣ ଦ୍ୱିଜଜନ ।
ଅଭିମନ୍ୟୁର ପାଇଁ ଭୋଜନ କରାଇ
ରତ୍ନ ଧନ ଗାଈ ଦେଲେ ସେ ଲେଖା ନାହିଁ ।
ଶ୍ରୀକୃଷ୍ଣ ମଧ୍ୟ ନିଜ ଭଣ୍ଡାର ହିତ
ଘର ଦେଲେ ବ୍ରାହ୍ମଣଗଣେ ବହୁ ବିତ ।
ବ୍ରାହ୍ମଣେ ବସୁଦେବ କୃଷ୍ଣଙ୍କ ଦେବାରେ
ସୁଖ ପାଇ କଲ୍ୟାଣ କଲେ ସୁମନରେ ।

ବଳଦେବ ସାତ୍ୟକ ଆଦି ଯଦୁଗଣ
ଅଭିମନ୍ୟୁର ପାଇଁ ଶ୍ରାଦ୍ଧ କଲେ ଜାଣ ।
ପାଣ୍ଡବେ ମଧ୍ୟ ଏହିରୂପେ ଅହର୍ନିଶି
ଅଭିମନ୍ୟୁ ମରଣ ହୃଦୟରେ ଘୋଷି ।
ଦିନଗୋଟିକ ଯୁଗ ପରାୟେ ମଣିଲେ
ମଥାରେ ହାତ ଦୁଇ ଦେଇଣ କାନ୍ଦିଲେ ।
ଉତ୍ତରା ପତିଦୁଃଖେ ଛାଡ଼ଦ୍ୟନ୍ତେ ଅନ୍ନ
ହେଲା ଗର୍ଭରେ ଥିଲା ପୁତ୍ରର ମରଣ ।
ବ୍ୟାସ ତାହା ଶୁଣି କହିଲେ ଉତ୍ତରାଙ୍କୁ
ନ କାନ୍ଦ ଗୋ ମାତ ସୁମରି ଗୃହସ୍ଥଙ୍କୁ ।
ମୋ ବଚନେ କୃଷ୍ଣଙ୍କ ପ୍ରଭାବେ କୁମର
ଗର୍ଭରୁ ଜାତ ହେବ ଉତ୍ତମ କୁମର ।
ଏରୂପେ ବ୍ୟାସ ମଧ୍ୟ କହିଲେ ପାର୍ଥଙ୍କୁ
ଅର୍ଜୁନ ଶୁଣି କରି ଛାଡ଼ିଲେ ଦୁଃଖକୁ ।
ଯୁଧିଷ୍ଠିରରାଜାଙ୍କୁ ଅଶ୍ୱମେଧ କର
ବୋଲି କରିଣ ବ୍ୟାସ ହୋଇଲେ ଅନ୍ତର ।
ଯୁଧିଷ୍ଠିର ଶୁଣି ବ୍ୟାସଙ୍କର ବଚନ
ଯାଗ କରିବାପାଇଁ ବଳାଇଣ ମନ ।
ହିମାଳୟ ସମୀପ ଧନ ଆଣିବାକୁ
ବିଚାରିଲେ ଯେନ ସେ ଆପଣା ଜନଙ୍କୁ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କିରୂପେ ଯୁଧିଷ୍ଠିର ଆଣିଲେ ସେ ଧନ ।
ଏହା ମୋର ଆଗେ କହ ତ ମହାଯଶା
ଶୁଣିବାକୁ ମୋହର ହେଉଛି ଲାଳସା ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଯାଆନ୍ତେ ଦ୍ୱାରକାକୁ ଦେବକୀ-ତନୟ ।
ଭାଇଙ୍କି ବୁଝିଁ ଯୁଧିଷ୍ଠିର ମହାରାଜା
କହିଲେ ଅଶ୍ୱମେଧଯାଗେ କରି ମଜ୍ଜା ।
ହିମାଳୟ ଥାନରୁ କିରୂପରେ ଧନ
ଆଣିମା ମୋର ଆଗେ ତା କର ବଖାଣ ।
ଭୀମ ବୋଇଲେ ହେ ଶିବଙ୍କୁ ଆମ୍ଭେ ନମି
ଆଣିମା ସେ ଧନ ହସ୍ତିନାରାଜ୍ୟ-ସ୍ୱାମୀ ।
ଶିବଙ୍କର ପ୍ରସାଦ ବିନା ସେ ଧନକୁ
ଆଣିବାକୁ ନ ଦେଖି ଆନ ଉପାୟକୁ ।
ଯୁଧିଷ୍ଠିର ବୋଇଲେ କହିଲ ଯା ଭାଇ
ମୋ ମନକୁ ଏହା ପାଉଛି ଭଲ ହୋଇ ।

ଏହା ଶୁଣି ଅର୍ଜ୍ଜୁନ ବୋଇଲେ ରାଜନ
ସ୍ୱାମଙ୍କର କଥାକୁ ପାଇଲା ମୋ ମନ ।
ନକୁଳ ସହଦେବ ଅର୍ଜ୍ଜୁନ ଦେବାକୁ
ଅନୁରୂପ କରିଣ କହିଲେ ରାଜାଙ୍କୁ ।
ଏହିରୂପେ ବହୁର ପାଣ୍ଡବେ ଛୁଣ୍ଡାଇ
ଶିବଙ୍କୁ ପୂଜା କରାଇଲେ ପ୍ରୀତି ବହି ।
କରାଇଣ ସ୍ୱସ୍ତିବାଚନ ବ୍ରାହ୍ମଣଙ୍କୁ
ପ୍ରଦକ୍ଷିଣ କରିଲେ ଅଗ୍ନିଦେବତାଙ୍କୁ ।
ଯାନ ଚଢ଼ି ସଇନ ସଙ୍ଗତେ ଘେନିଲେ
ହିମାଳୟଶଇଳ ପାଶରେ ମିଳିଲେ ।
କେବଳ ଯୁଯୁତ୍ସୁଙ୍କ ଜଗାଇଣ ଘର
ଗଲେ ପାଣ୍ଡୁସୁତେ ରାଜନ ମନେ କର ।
ହିମାଳୟ ତଟରେ ଯୁଧିଷ୍ଠିର ରାଜା
ରଥରୁ ଓହ୍ଲାଇଲେ ତୋଷ କରି ମଜା ।
ସମଭୂମି ସ୍ଥାନରେ ରଖାଇ ସେନାଙ୍କୁ
କି କରିବା ବୋଲି ପୁଚ୍ଛିଲେ ବ୍ରାହ୍ମଣଙ୍କୁ ।
ବ୍ରାହ୍ମଣେ ବୋଇଲେ ଏଠାରେ ପାଣି ପିଇ
ରହିବା ଆଜକ ପାଣ୍ଡବ ନରସାଇଁ ।
ଯୁଧିଷ୍ଠିର ତା ଶୁଣି ଶେଯ କରି କୁଶ
ଶୋଇଲେ ସେ ବହନ୍ତି ପକାଇ ନିଃଶ୍ୱାସ ।
ରଜନୀଶେଷେ ଦ୍ୱିଜେ ରାଜାଙ୍କୁ ଭଣିଲେ
ଉଠ ନୃପ ଶିବଙ୍କୁ ସେବା କରି ଭଲେ ।
ଯୁଧିଷ୍ଠିର ଶୁଣିଣ ବ୍ରାହ୍ମଣ ବଚନ
ସ୍ନାନ ସନ୍ଧ୍ୟା ଦୁହିଁଙ୍କି କରିଣ ବହନ ।
ଶିବଙ୍କର ପୂଜାସାମଗ୍ରୀ ବଢ଼ାଇଲେ
କରାଇ ହୋମ ଆଗ ପଛେ ପୂଜା କଲେ ।
ମୋଦକ ପାୟସ ମାଉଁସ ଦେଲେ ବଳି
ଭୂପତି ହେବାପାଇଁ ମହାଦେବ ଶୂଳୀ ।
କୁବେର ମଣିଭଦ୍ର ଆଦି ଯକ୍ଷକୁଳ—
ମାନଙ୍କୁ ଦିଆଇଲେ ବଳି ନରପାଳ ।
ସହସ୍ରେ ଗାଈ ଦ୍ୱିଜଗଣେ ଦାନ ଦେଇ
ଦକ୍ଷିଣା ଦେଲେ ଧନ ରତ୍ନ ତୋଷ ବହି
ଏରୂପେ ଶିବଙ୍କୁ ପୂଜନ୍ତେ ଯୁଧିଷ୍ଠିର
ଆସିଲେ ସେହିଠାକୁ ବ୍ୟାସ ଋଷିବର ।
ବ୍ୟାସଙ୍କୁ ଦେଖି ଯୁଧିଷ୍ଠିର ନର ସାଇଁ
ବୋଇଲେ ରତ୍ନଠାକୁ ଚାଲ ଆଗ ହୋଇ ।

ବ୍ୟାସ ନୃପତିଙ୍କର ବଚନେ ସରାଗ
ବହି ସେ ରତ୍ନଠାକୁ ଗଲେ ଜାଣ ଆଗ ।
କୁବେରଙ୍କୁ ସେଠାରେ ବଳି ଦିଆଇଲେ
ନମସ୍କାର କରି ସେ ନିଧି ଖୋଳାଇଲେ ।
ବାଜନ୍ତେ ସାବଳାଗ୍ର ସେ ନିଧିଖାତରେ
ଦିଶିଲା ସୁନାପାତ୍ର ଅନେକ ପ୍ରକାରେ ।
ସେମାନ କଢ଼ାଇ ପାଣ୍ଡବ ଯୁଧିଷ୍ଠିର
ଲୋକଙ୍କୁ ବୋଇଲେ ହେ ବୃହ କରି ଭାର ।
ଭାରଆଏ ଯହୁଁ ପାରିଲେ ନାହିଁ ବହି ।
ସହସ୍ର ଷଷ୍ଟି ଓଟେ ଲଦିଲେ ତା ନେଇ ।
ଏ ବାହାରେ ଛକୋଡ଼ି ସହସ୍ର ତୁରଙ୍ଗ
ସେ ଦ୍ରବ୍ୟ ବହିବାରେ ମନ କଲେ ଖଙ୍ଗ ।
ତାହା ଦେଖିଣ ଲକ୍ଷେ ହସ୍ତୀ ଅଣାଇଲେ
ତାଙ୍କ ପିଠିମାନଙ୍କେ ଦ୍ରବ୍ୟ ଲଦାଇଲେ ।
ଶଗଡ଼ ବଳଦରେ ଏତେ ତେତେ ବୋଲି
କହିବାର କହି ନ ପାରଇଟି ଭଳି ।
ଏହିରୂପେ ଦ୍ରବ୍ୟ ଧରାଇ ଯୁଧିଷ୍ଠିର
ପୂଜା କରିଣ ନମି ଶିବଙ୍କ ପୟର ।
ରଥରେ ଚଢି ହସ୍ତିନାକୁ ବାହାରିଲେ
ସଙ୍ଗତେ ନିଜ ସୈନ୍ୟ ଗୋଡ଼ାଇଣ ଥିଲେ ।
ବେଦବ୍ୟାସ ସମ୍ମତେ ଦୁଇକୋଶେ ବସା
କରିଣ ଆସନ୍ତେ ପାଣ୍ଡବ ମହାଯଶା ।
କୃଷ୍ଣ ଜାଣି ଯୁଧିଷ୍ଠିରଙ୍କ ଯାଗକାଳ
ଆସିଲେ ହସ୍ତିନାକୁ ଘେନି ନିଜକୁଳ ।
ଧୃତରାଷ୍ଟ୍ର କୃଷ୍ଣଙ୍କ ଆସିବାର ଜାଣି
ଯୁଯୁତ୍ସୁଙ୍କୁ ଯେ ବରଗିଣ ସେହିକ୍ଷଣି ।
କୃଷ୍ଣଙ୍କୁ ନିଜ ସମୀପକୁ ଅଣାଇଲେ
ଆଜ ଭାଗ୍ୟ ହୋଇଲା ବୋଲିଣ କହିଲେ ।
କୃଷ୍ଣ ଧୃତରାଷ୍ଟ୍ରଙ୍କୁ କରି ନମସ୍କାର
ରହିଲେ ତାଙ୍କ ପାଶେ ପାଇଣ ଆଦର ।
ଏହିକାଳେ ଉତ୍ତରାଗର୍ଭୁଁ ଭୂମି ତାତ
ଜନ୍ମିଲେ ଜନ୍ମେଜୟ ହୋଇକରି ମୃତ ।
ପୁତ୍ର ଜନ୍ମ ଶୁଣି ଆନନ୍ଦ ଆଗ ହେଲେ
ମରିଛି ପୁତ୍ର ଶୁଣି ସମସ୍ତେ କାନ୍ଦିଲେ ।
କୁନ୍ତେ ଅବା ବୋଲିବ କାହିଁକି ସେ ମଲେ
ଅଶ୍ୱତ୍ଥାମା ବ୍ରହ୍ମାସ୍ତ୍ର ବଳେ ଜାଣ ଭଲେ ।

ଶ୍ରୀକୃଷ୍ଣ ଶୁଣି କୁରୁସ୍ତ୍ରୀଙ୍କର ଡାକ
ଗଲେ ପାଣ୍ଡୁସୁତଙ୍କ ପୁରେ ଧାଇଁ ଏକା ।
କେବଳ ତାଙ୍କ ଭୁଲେ ଯୁଯୁଧାନ ବୀର
ଥିଲେ ଜନ୍ମେଜୟ ନୃପତି ମନେ କର ।
ଦେଖିଲେ କୁନ୍ତୀ ବୋହୂଙ୍କୁ ସଙ୍ଗତେ ଧରି
ଆସୁଅଛନ୍ତି ଅସ ବୋଲି ଚକ୍ରଧାରୀ ।
କୃଷ୍ଣ ସେ ସମୟରେ ତାଙ୍କୁ ଆଗେ ପାଇ
ଯାଆନ୍ତେ କହିଲେ ଅତି ଦୁଃଖୀ ହୋଇ ।
ଅଶ୍ୱତ୍ଥାମା ଶରରେ ଧନଞ୍ଜୟକୁମର
ତୁମ୍ଭର ମରିଛି ଜୀଆଅ ଚକ୍ରଧର ।
ଆପଣ ବୋଲିବା ହୋଇଛ ଜୀଆଇବ
ଏବେ ତାହା ସତ୍ୟ କର ମୁଁ କି କହିବ
ଯେବେ ଉତ୍ତରାଙ୍କର କୁମର ଜୀବନ
ନ ପାଇବ ତେବେ ମରିବୁ ଆମ୍ଭେ ଜାଣ ।
ଏରୂପେ କହି କୁନ୍ତୀ ଉଚ୍ଚେ ଡାକ ପାଡ଼ି
ତଳେ ପଡ଼ିକରି ଶୋକରେ ଗଲେ ଗଡ଼ି ।
ଶ୍ରୀକୃଷ୍ଣ ବୋଇଲେ ହେ ନ କାନ୍ଦ ପିଉସୀ
ଏକଥା କଲା ଅଶ୍ୱତ୍ଥାମା ମହାଦୋଷୀ ।
ସୁଭଦ୍ରା ବୋଇଲେ ଯେ ଦ୍ରୋଣଙ୍କ ନନ୍ଦନ
ବ୍ରହ୍ମଶରେ ମୋ ନାତି ପାଇଛି ନିଧନ ।
ଯେବେ ତୁମ୍ଭେ ତାହାକୁ ଜୀଆଇ ନ ଦେବ
ତେବେ ମୁଁ ନିଶ୍ଚୟ ମରିବି ମାଧବ ।
ଅଭିମନ୍ୟୁ ମରଣ ସହି ମୁଁ ଜୀବନ
ରଖିଲି ନାତିବଧେ ଛାଡ଼ିବି ତା ଜାଣ ।
ଶ୍ରୀକୃଷ୍ଣ ବୋଇଲେ ହେ ନ କାନ୍ଦ ଭଗିନି
ସବୁକଥା ହୁଅଇ କରମକୁ ଘେନି ।
ଏତେ ବୋଲି ଉତ୍ତରା-ପ୍ରସବ-ସ୍ଥାନରେ
ପ୍ରବେଶ ହୋଇଲେ ଅତ୍ୟନ୍ତ ବେଗରେ ।
ଦେଖିଲେ ବୈଦ୍ୟମାନେ ତର୍ଜି ହୋଇ ଗୋଟି
ଚାପୁଛନ୍ତି ବାଳକ ନାଡ଼ିକା-ହାରୁଟି ।
ନାନାବିଧ ଔଷଧ କରିଣ ତିଆରି
ଶୁଙ୍ଘାଉଛନ୍ତି ନେଇ ନାକେ ବାଳକରି ।
ଉତ୍ତରା ଦେଖିକରି ଶ୍ରୀକୃଷ୍ଣ ବଦନ
କହିଲେ ଅଶ୍ରୁପୂର୍ଣ୍ଣ କରିଣ ନୟନ ।
ମୋହ ପୁଅଟି ଅଶ୍ୱତ୍ଥାମାଙ୍କ ଶରରେ
ଜୀବନକୁ ଛାଡ଼ି ପଡ଼ିଛି ମହୀପରେ ।

ପୂର୍ବରୁ ତ କହିଅଛ ଜୀଆଇ ଦେବଇଁ
ସେକାଳ ହୋଇଅଛି କି କହିବି ମୁହିଁ ।
ପୁଅ ଆଶେ ପତି ମରଣ ସୁହାଇଲି
ପତିଦଶା ଦଇବ ପୁଅରୁ ଖଣ୍ଡିଲି ।
ଏହି ସକାଶରୁ କହୁଛି ହେ ମାଧବ
ନିଶ୍ଚେ ଏ ଜୀବନ ତେଜିବି ଜୀବଧନ ।
ଏହିରୂପେ କୃଷ୍ଣଙ୍କୁ କହିଣ ଉତ୍ତରା
ଆଶ୍ରେ କଲେ ପ୍ରସବ ହେବା ସ୍ଥାନଧରା ।
ଉତ୍ତରାଙ୍କ ଶୋକ ଦେଖିଣ ଦ୍ରୁପଦୀ
ପାଡ଼ିଲେ ଡାକ ନାରୀମାନେ କୁନ୍ତୀଆଦି ।
ଉତ୍ତରା ଚେତା ପାଇ ବୋଇଲେ ରେ ସୁତ
ହୋଇଛୁ ତ ଭରତବଂଶରେ ତୁ ଜାତ ।
କୃଷ୍ଣ ଆସି ତୋ ପାଖେ ଛିଡ଼ା ହୋଇଛନ୍ତି
ତାହାଙ୍କୁ ସମ୍ଭାଦନା କର ବହି ପ୍ରୀତି ।
ଭରତବଂଶେ ଯେତେ ସ୍ତ୍ରୀ ଗୁରୁଜନ
ତାହାଙ୍କୁ କାହିଁ କରୁନାହୁଁ ସମାଧାନ ।
ମୋ କୋଳେ ଜନମି ଏରୂପେ ଦୁଷ୍ଟରୀତି
କରିବାରୁ ତୋତେ ସମସ୍ତେ ନିନ୍ଦୁଛନ୍ତି ।
ଏରୂପରେ କହିଣ ବାହୁନିଲେ ଉତ୍ତରା
ପୁଅକୁ ଉଠାଅନ୍ତେ ହୋଇକରି ତ୍ୱରା ।
ବେକ ଭାଙ୍ଗିଦେଇ ପଡ଼ନ୍ତେ ଲମ୍ବ ହୋଇ
ମଲା ବୋଲି ବକ୍ଷେ ମାଇଲେ କର ଦୁଇ ।
ଶ୍ରୀକୃଷ୍ଣ ବୋଇଲେ ଗୋ ଉତ୍ତରା ନ କାନ୍ଦ
ବିପତ୍ତିରେ ଆପଣା କରମ ନ ନିନ୍ଦ ।
ଯେବେ ସତ୍ୟ ଦାନ ବ୍ରତ ମୁଁ କରିଅଛି
ଜୀଉ ବୋଲୁଅଛି ତୁମ୍ଭର ଏହି ବସି ।
ଏତେ ବୋଲିଣ ବ୍ରହ୍ମଅସ୍ତ୍ରକୁ ସଂହାର
କରିଲେ ନିଜ ପ୍ରଭାବରେ ଚକ୍ରଧର ।
ଶ୍ରୀକୃଷ୍ଣଙ୍କ ବୋଲିବା ମାତ୍ରକେ ବାଳକ
ଜୀବ ପାଇ କାନ୍ଦି ହୋଇଲା ସକସକ ।
ଏ କାଳେ ଅଶରୀରୀ-ବାଣୀ ଶ୍ରବଣରେ
ଶୁଣିଲେ ଯେ ଥିଲେ ହସ୍ତିନାବାସୀ ନରେ ।
ଆହେ କୃଷ୍ଣ ତୁମ୍ଭ ଏ ଅନୁରୂପ କର୍ମ
କରି ରଖିଲଟି ହେ ପାଣ୍ଡବଙ୍କ ଧର୍ମ ।
ବ୍ରହ୍ମାସ୍ତ୍ର ଛାଡ଼ିଣ ଉତ୍ତରାକୁମରକୁ
ବାହାରିଣ ଗଲା ବ୍ରହ୍ମାଙ୍କ ସମୀପକୁ ।

ରତସିଂହ ସ୍ତ୍ରିୟମାନେ ତାହା ଦେଖି
କୃଷ୍ଣଙ୍କୁ ପ୍ରଶଂସା କଲେ ହୋଇ ସୁଖୀ ।
ଉତ୍ତରା ଧରି କୁମର ପିତାଙ୍କର କୋଳେ
ପଡ଼ିଲେ ଯାଇ କରି ଶ୍ରୀକୃଷ୍ଣଙ୍କ ଗୋଡ଼େ ।
ବୋଇଲେ କୁମର ସେନ ଜୀଇଲା ବାଳକ
ଗଲା ଯଦୁ-ନାୟକ ମୋ ହୃଦୟ-ଶୋକ ।
କୃଷ୍ଣ ଦ୍ୱିଜମାନଙ୍କୁ ବହୁ ରତ୍ନ ଦେଲେ
କୁଳକ୍ଷୟକାଳେ ତ ସେ ସୁତ ଜନ୍ମିଲେ ।
ଏହେତୁ ପରୀକ୍ଷିତ ବୋଲେ ସୁତ ନାମ
ସୂର୍ଯ୍ୟାସ୍ଥିତ-ଉଦାସ ସତ୍ୟସନ୍ଧ ଶ୍ୟାମ ।
ବାଳକ ଜନ୍ମ ହେବା ମାସକ ଉତ୍ତାରେ
ଆସିଲେ ପାଣ୍ଡୁସୁତେ ହସ୍ତିନା ନଗରେ ।
ପାଣ୍ଡବଙ୍କର ଆସିବାର କୃଷ୍ଣ ଶୁଣି
ମଣ୍ଡାଇଲେ ହସ୍ତିନାପୁର-ମାର୍ଗଶ୍ରେଣୀ ।
ପରୀକ୍ଷିତ ଜୀବନୋତ୍ସବ ସମାପତ
ହୋଇଲା କହେ କୃଷ୍ଣସିଂହ ନରପତ ।

—*—

## ଅର୍ଜ୍ଜୁନଙ୍କର ଦିଗ୍ବିଜୟ

ଏଥିଅନ୍ତେ ଶ୍ରୀକୃଷ୍ଣ ସେନ ମନ୍ତ୍ରିଗଣ
ଭେଟିଲେ ଯାଇ ବାଟେ ପାଣ୍ଡବ ରାଜନ ।
ପାଣ୍ଡବେ ଶ୍ରୀକୃଷ୍ଣଙ୍କ ଆସିବାର ଦେଖି
ସମ୍ଭାବନା କୃଷ୍ଣଙ୍କୁ କଲେ ହୋଇ ସୁଖୀ ।
ପାଣ୍ଡୁତନୟେ ଦ୍ରବ୍ୟ ଧରାଇ ଆଗରେ
ପ୍ରବେଶିଲେ ନିଜମନ୍ଦିରେ ସରାଗରେ ।
ସେଠାରେ ନାମମାନ କହିଣ ପାଣ୍ଡବେ
ନମିଲେ ଧୃତରାଷ୍ଟ୍ରଙ୍କର ପାଦେ ସର୍ବେ ।
ଏହା ବାହାରେ କୁନ୍ତୀ ଗାନ୍ଧାରୀ ଦୁହିଁଙ୍କି
ନମସ୍କାର କରିଲେ ବହିଣ ପ୍ରୀତିକି ।
ବିଦୁର ଯୁଯୁତ୍ସୁଙ୍କୁ ସମ୍ଭାବନା କଲେ
ଭଲରେ ଅଛନ୍ତି କି ବୋଲିଣ ପୁଚ୍ଛିଲେ ।
ତାହାଙ୍କଠାରୁ ଶୁଣି ପରୀକ୍ଷିତ ଜନ୍ମ
ବୋଇଲେ ଧନ୍ୟ ଅଟନ୍ତି ହେ ଯଦୁତ୍ତମ ।
ଆମ୍ଭଠାରେ ସେ ପକ୍ଷପାତ କରିଥିଲେ
ଏଣୁ ଆମ୍ଭ ନାତିକି ଜୀବଦାନ ଦେଲେ ।
ହିମାଳୟୁ ଶୈଳୁଁ ଆସିବା କାଳେ ବ୍ୟାସେ
କହିକରି ପାଣ୍ଡବଙ୍କୁ ନରୂଭଙ୍ଗେ ।
ଯାଇଥିଲେ ନିଜ ଆଶ୍ରମକୁ ବାହାରି
ପୁଣି ଆସିଲେ ସେ ହସ୍ତିନା ନାମେ ପୁରୀ ।
ବ୍ୟାସଙ୍କୁ ଦେଖି କୃଷ୍ଣି ଅନ୍ଧଙ୍କ ପାଣ୍ଡବେ
ପୂଜା କଲେ ତାଙ୍କ ପାଦରେ ଭକ୍ତିଭାବେ ।
ଆସନରେ ବସାଇ ନାନାଜାତି କଥା
ହେଲେ ବ୍ୟାସଙ୍କର କୁଳରେ ଗୁଢ଼ ବ୍ୟଥା ।
ଏଥିଅନ୍ତେ ତାଙ୍କୁ କହିଲେ ଯୁଧିଷ୍ଠିର
କୁମର ସେନ ହେଲି ମୁଁ ଧର୍ମଙ୍କ ଈଶ୍ୱର ।
ଏହି ସକାଶୁଁ ମୁହିଁ କହୁଛି ଗୋସାଇଁ
ବୋଲି ଅଶ୍ୱମେଧ ଯେ କରିବଇଁ ମୁହିଁ ।
ବ୍ୟାସ ବୋଇଲେ ଆହେ କର ବାଜିମେଧ
ଯେବେ ବଳଅଛି ଚିତ୍ତିରେ ଭ୍ରମ ସଧ ।
ଯୁଧିଷ୍ଠିର ବ୍ୟାସଙ୍କ ସ୍ୱୀକାର ପାଇ
ଯାଗ-ବଧିଯାକ ସାରିଲେ ପ୍ରୀତି ବହି ।
କୃଷ୍ଣଙ୍କୁ ବୋଇଲେ ହେ କହିବ ମୁଁ ଯାହା
ତାହା କରିବଟି ଶାରଙ୍ଗଧନୁ-ବାହା ।
ତୁମ୍ଭ ପ୍ରସାଦରେ ହସ୍ତିନା-ନରସାଇଁ
ହୋଇ କରି ମୁହିଁ ବସିଛୁ ସୁଖୀ ହୋଇ ।
ଏ ଯାଗରେ ଦୀକ୍ଷିତ ହୋଇଣ ଗୋବନ୍ଦ
କର ବେଗେ ମୋହର ହୃଦୟ ଆନନ୍ଦ ।
ଶ୍ରୀକୃଷ୍ଣ ବୋଇଲେ ହେ କର ନୃପ ଯାଗ
ଦୀକ୍ଷିତ ହୋଇ ଆଜ୍ଞା ପାଳିବ ହେ ଆଗ ।
ଯୁଧିଷ୍ଠିର ଶୁଣିଣ କୃଷ୍ଣଙ୍କ ବଚନ
ବୋଇଲେ ଆହେ ବ୍ୟାସ ଋଷିଙ୍କ ମଣ୍ଡନ ।
ଯେଉଁ କାଳରେ ଦୀକ୍ଷା ସାହିତ ଅଟଇ
ସେକାଳେ କରିଅ ଦୀକ୍ଷିତ ପ୍ରୀତି ବହି ।
ବେଦବ୍ୟାସ ବୋଇଲେ ପୈଳ ଯାଜ୍ଞବଲ୍କ୍ୟ
ସେନ ଆମ୍ଭେ କରିବୁ ଯାଗବଧିପାକ ।
ଏହି କଥାରେ କିଛି ସଂଶୟ ହୃଦୟ
ନୁହ ତ ଆହେ ପାଣ୍ଡୁନୃପଙ୍କ ତନୟ ।
ଚଇତ୍ର ପୂର୍ଣ୍ଣମୀରେ ଯାଗଦୀକ୍ଷା ବଧି
କରିବ ଆହେ ଯୁଧିଷ୍ଠିର ନୃପନିଧି ।
ଅଶ୍ୱବିଦ୍ୟାଜାଣିବା ଲୋକଙ୍କୁ ଡକାଅ
ଯେଉଁ ଘୋଡ଼ା ଯାଗକୁ ଯୋଗ୍ୟ ତା ବୁଝାଅ ।
ସେ ଘୋଡ଼ା ମହୀଯାକ ଥରେ ବୁଲି ଆସୁ
ତେବେ ଯାଗ କରିବ ଦେଇ ଦ୍ୱିଜେ ତୋଷୁ ।

ବ୍ୟାସଙ୍କ କହିବା ପ୍ରସଙ୍ଗେ ଯୁଧିଷ୍ଠିର
କରି ବ୍ୟାସଋଷିଙ୍କି ଦେଲେ ଏ ଉତ୍ତର ।
ତୁମ୍ଭ ଆଜ୍ଞା ପ୍ରମାଣେ କଲି ଯାଗ ବିଧି
ଯାଗ କରାଅ ଆହେ ବ୍ୟାସ ତପୋନିଧି ।
ବ୍ୟାସ ବୋଇଲେ ତହୁଁ ଛାଡ଼ ଅଶ୍ୱବର
ଯାଗର ଇଚ୍ଛା ଥିଲେ ବିଳମ୍ବ ନ କର ।
ସ୍ୱଇଚ୍ଛାରେ ସେ ଘୋଡ଼ା ବୁଲି ଆସୁ ମହି
ଯାଗସିଦ୍ଧି ହେବ ପାଣ୍ଡବ ନରସାଇଁ ।
ଯୁଧିଷ୍ଠିର ବୋଇଲେ ଅଶ୍ୱେ କେ ପାଳନା
କରିବ କହ ମୋତେ ବ୍ୟାସ ମହାମନା ।
ବ୍ୟାସ ବୋଇଲେ ଆହେ ଅରଜୁନ ବୀର
ବୋଲ କରାଇନ୍ତୁ ସେ ପାଳନା ଘୋଡାର ।
ସବୁ ଅସ୍ତ୍ର ଶସ୍ତ୍ର ତାଙ୍କଠାରେ ଅଛି
ତାଙ୍କ ପରି ବୀର ମୁଁ କାହିଁ ନ ଦେଖିଛି ।
ନକୁଳ ଭୀମ ଏ କରନ୍ତୁ ରାଜ୍ୟରକ୍ଷା
ନାହିଁ ଏ ମଣ୍ଡଳରେ ବଳ ତାଙ୍କ କକ୍ଷା ।
ସହଦେବ ବହୁତ ବିଦ୍ୟାର ଜାଣନ୍ତି
ତାଙ୍କୁ କର କୁଟୁମ୍ବେ ନିଯୁକ୍ତ ନୃପତି ।
ଯୁଧିଷ୍ଠିର ଶୁଣିଣ ବ୍ୟାସଙ୍କ ବଚନ
ସମୀପକୁ ଡକାଇ ଅଣାଇ ଅର୍ଜୁନ ।
ଭାଇକି ବୋଇଲେ ଅଶ୍ୱକୁ ରଖ ତୁମ୍ଭେ
ଯାଗଦୀକ୍ଷା କରିଣ ବସୁଅଛୁଁ ଆମ୍ଭେ ।
କେବଳ କହୁଛି ଯୁଝିଲେ ନୃପତିଏ
ନ ଯୁଝିବ ତାହାଙ୍କୁ କ୍ରୋଧ ଅତିଶୟେ ।
ଏରୂପେ ଅର୍ଜୁନଙ୍କୁ କହି ତପଃଶୀଳ
ବ୍ୟାସଙ୍କର କହିବା ପ୍ରାୟେ ନରପାଳ ।
ବାଜା ତିନଭାଇଙ୍କ ସଙ୍ଗେ ନିଯୁକତ
କଲେ ରାଜ୍ୟ କୁଟୁମ୍ବେ ହୋଇ ତୋଷଚିତ୍ତ ।
ଦୀକ୍ଷାକାଳ ଆସି ହୁଅନ୍ତେ ପରାପତ
ଯାଗଦୀକ୍ଷା କରିଲେ ପାଣ୍ଡୁନୃପସୁତ ।
ପଶୁବନ୍ଧନକାଷ୍ଠ ସଂଗ୍ରହ ଯେ କରି
ଛାଡ଼ିଲେ ଯାଗ-ଘୋଡ଼ା ମୋତେ ବିଧି କରି ।
ଅର୍ଜୁନ ତୁଣ୍ଟିଣୀ ଲକ୍ଷଣୀ ଭରି ହାତେ
ଧାଇଁଲେ ଧନୁ କରେ ଧରି ଘୋଡ଼ା ସାଥେ ।
ଯାଜ୍ଞବଲ୍କ୍ୟଋଷି ଯେ ଘେନିଣ ଶିଷ୍ୟଙ୍କୁ
ଗଲେ ଅର୍ଜୁନଙ୍କ ମଙ୍ଗଳ ହୋଇବାକୁ ।

ହସ୍ତିନାରେ ସ୍ତ୍ରୀ ଶିଶୁ ବୃଦ୍ଧ ଯେତେ ଥିଲେ ।
ଅର୍ଜୁନ ଯିବାବେଳେ ସମସ୍ତେ ବୋଇଲେ ।
ଶତ୍ରୁକୁଳକୁ ଜିଣି ଆଣି ଅଶ୍ୱବର
କରାଅ ସମାପତ ଯାଗ ରାଇଙ୍କର ।
ହସ୍ତିନା-ନାରୀ-ପୁରୁଷଙ୍କ ତୋଷବାଣୀ
ଶୁଣି ତୋଷ ହେଲେ ଅର୍ଜୁନ ବୀରମଣି ।
ଅର୍ଜୁନ ଘୋଡ଼ା ବୁଲାଇବାରେ ଯୁଦ୍ଧ
ଯେରୂପେ କଲେ ନୃପ ଶୁଣ କହି ସଧି ।
ଆହେ ଜନ୍ମେଜୟ ହସ୍ତିନା ନରସାଇଁ
ମୋହର କଥା ଶୁଣ ଏକମନ ହୋଇ ।
ଉତ୍ତରଦିଗେ ଆଗ ଯୁଧିଷ୍ଠିର ବାଜି
ଗମନ କଲା ଅତି ବେଗୁଟିକ ତେଜି ।
ସେ ଦିଗେ ତ କସ୍ୱତ ଯବନଙ୍କ ଘର
ବହୁତ କଲେ ସେହୁ ପାର୍ଥଙ୍କୁ ସମର ।
ଏ ବିହାରେ ସେ ଦିଗେ ଥିଲେ ଯେତେ ରାଜା
ସେ ମଧ୍ୟ ଯୁଦ୍ଧ କଲେ କ୍ରୋଧ ଧରି ମଜ୍ଜା ।
ଅର୍ଜୁନ ତାହାଙ୍କୁ ଗାଣ୍ଡୀବ-ଧନୁବାଣେ
ଜିଣି ଯେ ପକାଇଲେ ଅଳପକ ରଣେ ।
ପୂର୍ବ ବଇରତ ତ୍ରିଗର୍ତ୍ତେ ଅର୍ଜୁନର
ଏ ହେତୁ ଯୁଝିବାକୁ ମନ ତାହାଙ୍କର ।
ବହୁର ଛିଣ୍ଡାଇଣ ଅର୍ଜୁନଙ୍କ ଅଶ୍ୱ
ଧରିବାକୁ ଗଲେ ସମସ୍ତେ ଅଶ୍ୱପାଶ ।
ଅର୍ଜୁନ ତାହା ଦେଖି ବୋଇଲେ ତ୍ରିଗର୍ତ୍ତଙ୍କୁ
ନ ଧର ଘୋଡ଼ା ଆସ ଆମ୍ଭର ପାଶକୁ ।
ତ୍ରିଗର୍ତ୍ତେ ସେ ବାଣୀକି କରି ଅନାଦର
ଅରଜୁନଙ୍କ ତୁଲେ ରଚିଲେ ସମର ।
ତେବେ ହେଲେ ଅର୍ଜୁନ କହିଲେ ତାହାଙ୍କୁ
ମସ୍ତକେ ବହି ଯୁଧିଷ୍ଠିରଙ୍କ ଆଜ୍ଞାକୁ ।
ମାରୁ ନାହିଁ ତୁମ୍ଭେ ବାନ୍ଧବହୀନ ହୋଇ
ଥିବାରୁ ତ୍ରିଗର୍ତ୍ତେ ନ ଯୁଝ କ୍ରୋଧ କହି ।
ଏଥିରେ ତ୍ରିଗର୍ତ୍ତେ ଅଧିକେ ଧନୁଘୋଷ
କରି ପୂରାଇଲେ ଅର୍ଜୁନ କର୍ଣ୍ଣଦେଶ ।
ସୂର୍ଯ୍ୟବର୍ମା ଅର୍ଜୁନ ଆଗେ ଧନୁ ଟାଣି
ବିନ୍ଧିଲେ ଶର ତାଙ୍କୁ ନ ପାରିଲେ ଜିଣି ।
କେତୁବର୍ମା ତା ଦେଖି ସୂର୍ଯ୍ୟବର୍ମା ସାହା
ହୋଇ ଯୁଦ୍ଧ କରିଲେ ବୋଇଣ ଉଚ୍ଛାହା ।

ଅର୍ଜୁନ ତା ନ ସହି ମୂନପକ୍ଷା କାଣ୍ଡ
ଛନ୍ଦି କଲେ କେତୁବର୍ମାଙ୍କୁ ଦୁଇଖଣ୍ଡ ।
କେତୁବର୍ମା ମରନ୍ତେ ଧୃତବର୍ମା ବୀର
ଅର୍ଜୁନଙ୍କୁ ବିନ୍ଧିଲେ ରଥେ ମାରି ଶର ।
ଯୁଦ୍ଧେ ଧୃତବର୍ମାଙ୍କ ଶୀଘ୍ର ହସ୍ତ ଦେଖି
ଅର୍ଜୁନ ହୋଇଲେ ତାଙ୍କଠାରେ ସୁଖୀ ।
ଭାବିଲେ ବଳାରେ ଏ ବଡ଼ ଶୀଘ୍ର ହସ୍ତ
ମୋ ବିନା ଆନ ଯୋଦ୍ଧା କରିପାରେ ହତ ।
ଏରୂପରେ ହୃଦରେ ସୁଭଦ୍ରା-ବହାସ
ବସ୍ତ୍ରଣ କାଣ୍ଡ ବିନ୍ଧିଲେ ଅରି କରି ।
ବୋଇଲେ ହୋଇ ନାହିଁ ମୁଁଖ ଦାଢ଼ି ନଶ
କପାଇଁ ଏହାକୁ ଷେପିବ ଯମପାଶ ।
ନ ଜାଣ ବଳ ମୋର ଏ ଯୁଝିଲା ଯେବେ
କ୍ଷମା କରିବାର ଉଚିତ ମୋର ତେବେ ।
ଧୃତବର୍ମା ଏ କଥା ନ ପାରିଣ ଜାଣି
ଅର୍ଜୁନଙ୍କୁ ବିନ୍ଧିଲା ଦିବ୍ୟଶରଶ୍ରେଣୀ ।
ସେ ଶରମାନେ ଆସି ଅର୍ଜୁନଙ୍କ ହସ୍ତ
ବାଜନ୍ତେ ଧନୁ ଖସି ପଡ଼ିଲା ଭୂଇତେ ।
ଅର୍ଜୁନଙ୍କର ଧନୁ ପଡ଼ିବାର ଦେଖି
ଧୃତବର୍ମା ହସିଲେ ହୋଇ ଅତି ସୁଖୀ ।
ଅର୍ଜୁନ ନ ସହି ଗାଣ୍ଡୀବ-ଶରାସନ
ସାଉଁଟିଣ ଧରି ତା ଉଡ଼ିଲେ ଉଦନ ।
ଜଳଧାର ପରାଏ କରି ଶରବୃଷ୍ଟି
ଉଚିଲେ ସେ ଧୃତବର୍ମାଙ୍କ ଦୁଃଖସୃଷ୍ଟି ।
ଅର୍ଜୁନ କ୍ରୋଧ ଦେଖି ତ୍ରିଗର୍ତ୍ତ ଯୋଦ୍ଧାଏ
ଯୁଝିଲେ ଅର୍ଜୁନଙ୍କୁ କ୍ରୋଧେ ଅତିଶୟେ ।
ଧୃତବର୍ମାବୀରର ସର୍ବେ ବାଞ୍ଛି ରକ୍ଷା
ବିନ୍ଧିଲେ ଅର୍ଜୁନଙ୍କୁ କରି ଅତି କକ୍ଷା ।
ଅର୍ଜୁନ-ବାଣେତ ଅତ୍ୟନ୍ତ ଅତି ଟାଣ
ଘେନଲେ ତ୍ରିଗର୍ତ୍ତଙ୍କର ଯୋଦ୍ଧାଙ୍କର ପ୍ରାଣ ।
ତ୍ରିଗର୍ତ୍ତଯୋଦ୍ଧାଏ ଅର୍ଜୁନବଳେ ପୀଡ଼ା
ପାଇ କରି ଭଞ୍ଜଲେ ଯୁଦ୍ଧୁଁ ପ୍ରୌଢ଼ କ୍ରୀଡ଼ା ।
ଏଥିଅନ୍ତେ ତ୍ରିଗର୍ତ୍ତେ ବୋଇଲେ ଅର୍ଜୁନ
ନ ନଷ୍ଟ କାଣ୍ଡମୂନେ ଆମ୍ଭର ଜୀବନ ।
ଆମ୍ଭେମାନେ ରହିଲୁଁ ତୁମ୍ଭର ବଶରେ
ଯାହା ବୋଲିବ ତାହା କରିବୁ ତୋଷରେ

ଅରଜୁନ ବୋଇଲେ ନ ଯୁଝିବ ଯେବେ
ଯାଅ ଯୁଧିଷ୍ଠିର ରାଜାଙ୍କ ଯାଗେ ତେବେ ।
ତ୍ରିଗର୍ତ୍ତେ ସେ କଥାକୁ କରନ୍ତେ ସମ୍ମତ
ସେଠାରୁ ବାହାରିଲେ ଇନ୍ଦ୍ରଙ୍କର ସୁତ ।
ପ୍ରାଗଜ୍ୟୋତିଷ ପୁରେ ହେଲେ ପରବେଶ
ତା ଶୁଣି ଭଗଦତ୍ତସୁତ କରି ରୋଷ ।
ଅର୍ଜୁନଙ୍କର ଘୋଡାଟିକ ବଳେ ଧରି
ବାହାରିଲେ ଘରକୁ ଯୁଦ୍ଧ ଇଚ୍ଛା କରି ।
ଅର୍ଜୁନ ତା ଦେଖି ଗାଣ୍ଡୀବ ଧନୁ ଟାଣି
ବିନ୍ଧିଲେ ଭଗଦତ୍ତ ସୁତେ ଶରଶ୍ରେଣୀ ।
ଭଗଦତ୍ତ-ତନୟ ବଜ୍ରଦତ୍ତ ବୀର
ଆବେଦନ କରି ମହତ କରିବାର ।
ଶ୍ୱେତଛତ୍ର ମସ୍ତକ ଉପରେ ଟେକାଇ
ଅର୍ଜୁନେ ଡାକିଲା ଯୁଝିବା ଆସ ଭାଇ ।
ଅର୍ଜୁନେ ତାହା ଶୁଣି ହୋଇ ହସ ହସ
ଆଉଁସି ଦେଲେ ଦୁଇକରେ ଥରେ ନଶ ।
ବଜ୍ର ଦତ୍ତ ବେହ ବଜାଇ କାଣ୍ଡରାଜ
ବିନ୍ଧିଲେ ଅର୍ଜୁନ ଯୁଦ୍ଧରେ ଗରଜ ।
ବଜ୍ରଦତ ତାହା ନ ସହି କ୍ରୋଧଚିତେ
ଫିଙ୍ଗିଲା ଅର୍ଜୁନେ ସାବେଳୀ ଗୋଟାକେତେ ।
ସେ ସାବେଳୀମାନେ ଯେ ସର୍ପପରି ଗତି
କରନ୍ତେ କାଟିଲେ ବିତହରାର୍ଯ୍ୟନାଥ ।
ବଜ୍ରଦତ ତା ଦେଖି ଧରି ଧନୁର୍ବାଣ
ପାର୍ଥଙ୍କୁ ଯୁଝିଲା ଦେଖାଇ ଦେହଟାଣ ।
ଅର୍ଜୁନ ତା ଦେଖି କ୍ରୋଧରେ ଜାଳି ପିଣ୍ଡ
କମ୍ପାଇଣ କରରେ ଗାଣ୍ଡୀବ-କୋଦଣ୍ଡ ।
ଭଗଦତନୃପ-ତନୟର ଗଣ୍ଡିଟି
ଗଳାନ୍ତେ ପଡ଼ିଲା ସେ ଭୂମିଦେଶେ ଲୋଟି ।
ତେବେ ହେଲେ ତାର ତ ଚେତାଥିଲା ଦେହେ
ବସିଲା ସେ ହାତୀଉପରେ ବଡ଼ କୋହେ ।
ଅର୍ଜୁନ ନ ସହି ବିନ୍ଧିଲେ ଶରରାଶି
ବଜ୍ରଦତ୍ତର ହାତୀ-ଦେହକୁ ଉଦ୍ଦେଶି ।
ମହତ ଗିରିବର ଗେରୁ ମଣ୍ଡି ହେଲା—
ପରାୟେ ହାତୀ ରକ୍ତେ ଶୋଭା ପ୍ରକାଶିଲା ।
ବୃତ୍ରାସୁର ବାସବ ଯୁଝିଲା ପରାୟେ
ତିନନ୍ଦନ ଯୁଝିଲେ ଦୁହେଁ ଅତିଶୟେ ।

ଚତୁର୍ଥଦନ ଭଗଦତ୍ତଙ୍କର ସୁତ
ଅର୍ଜ୍ଜୁନଙ୍କୁ ବୋଇଲେ ନଷ୍ଟପ୍ର ଜୀବତ ।
ଆଜ କାଣ୍ଡମୁନ ମୁଁ ନେବଟି ତୁମ୍ଭର
ଇଷ୍ଟଦେବତାଙ୍କୁ ଏବେ ସୁମରଣା କର ।
ଏତେ ବୋଲ ହାଣ୍ଟ ଅର୍ଜ୍ଜୁନ ସମୀପକୁ
ଟିପିଲା ବଜ୍ରଦତ୍ତ କର ସଗରକୁ ।
ବଜ୍ରଦତ୍ତ ହାଣ୍ଟ ଫୁଲାଇ ଘାତେ ଫେନ
ଜାତ ହୋଇ ପଡ଼ିଲା ପାର୍ଥ ଅପଘନ ।
ପୂର୍ବ ବଇରଭାବ ସୁମରି ଜଗଣ୍ଠୀ
ବନ୍ଧିଲେ ହାଣ୍ଟଙ୍କ ନାରାଚ କୋଟି କୋଟି ।
ଅର୍ଜ୍ଜୁନର କାଣ୍ଡେ ହାଣ୍ଟର ଦେହଯାକ
ଝିଙ୍କ ପରି ଦଶିଲା ହସ୍ତିନା-ନାୟକ ।
ଭଗଦତ୍ତସୁତ ତାହା ନ ସହି ଓଷ୍ଠ
କାମୋଡ଼ି ଯୁଦ୍ଧ କଲା ପାଶେ କରି ରୁଷ୍ଟ ।
ଅର୍ଜ୍ଜୁନ କାଣ୍ଡକରେ ଭଗଦତ୍ତସୁତ
କାଣ୍ଡକୁ କାଟି କରି କଲେ ଭୂମିଗତ ।
ତାହା ନ ସହି ବଜ୍ରଦତ୍ତ ହୋଇ କୋପୀ ।
ପୁଣି ଦେଲା ତାହାର ହାଣ୍ଟିକ ଟିପି ।
ଅରଜୁନ ବନ୍ଧଣ ନାରାଚ ଗୋଟିଏ
ହାଣ୍ଟକ ଦେଖାଇଲେ ପ୍ରେତକୁଳସ୍ଥେ ।
ଏହା କରି ସାରଣ ସୁଭଦ୍ରା-ବହାସ
କହିଲେ ବଜ୍ରଦତ୍ତ-ମୁଖେ ବୃଷ୍ଟି କରି ।
ତୁମ୍ଭେ ଆଉ ମୋ ସଙ୍ଗେ ନ କର ହେ ଗୋଳ
ନଷେଧିଛନ୍ତି ମୋତେ ହସ୍ତିନା-ନୃପାଳ ।
ଏସକାଶୁଁ ତୁମ୍ଭଙ୍କୁ ମାରୁନାହିଁ ମୁହିଁ
ମୁଁ ମନ କଲେ ତୁମ୍ଭେ ଥାଆନ୍ତ କି ଜୀଇ ।
ଭୟ ଛାଡ଼ି କରି ଘରକୁ ଯାଅ ବେଗେ
ଭେଟ ଯାଇ ପାଣ୍ଡବନୃପଙ୍କୁ ସଗରେ ।
ଭଗଦତ୍ତ-ତନୟ ଶୁଣି ଏ ବଚନ
ବୋଇଲେ ଯା ବୋଲ ତା କରିବ ଅର୍ଜ୍ଜୁନ
ଏଥୁଅନ୍ତେ ବୀର ଅର୍ଜ୍ଜୁନ ସିନ୍ଧୁଦେଶେ
ପରବେଶ ହୋଇଲେ ମାନସ ଉଲ୍ଲାସେ ।
ସିନ୍ଧୁଦେଶଲୋକେ ଅର୍ଜ୍ଜୁନ ଆସିବାର
ଶୁଣି ଯୁଦ୍ଧ କରିଲେ ଧରି ଧନୁଶର ।
କୋଠିରେ ଅର୍ଜ୍ଜୁନଙ୍କୁ ରଖିଲା ପରସ୍ୟେ
ରଖିଲେ ସିନ୍ଧୁଦେଶେ ନୃପତି ସେନାଏ ।

ଜୟଦ୍ରଥ ନୃପଙ୍କ ବଧକୁ ସୁମରି
ଯୁଝିଲେ ପାର୍ଥଠାରୁ ସଧ ଛାଡ଼ିକରି ।
ଅର୍ଜ୍ଜୁନ-ସୂର୍ଯ୍ୟ ଶରଘନରେ ଆବୃତ୍ତ
ହୁଅନ୍ତେ ନ ଦେଖିଲା ତାଙ୍କୁ କାହା ନେତ୍ର ।
ଦେହରେ କାଣ୍ଡସଜ ବାଜନ୍ତେ ଗରଜ
ଶୋଇଲେ ଅର୍ଜ୍ଜୁନ ମୋହରେ ଦୁଃଖେ ମଜ୍ଜି ।
ସେହିକାଳେ ହେଲା ବହୁତ ଉତପାତ
କମ୍ପିଗଲା ଯେ କଇଲାସ ପରବତ ।
ସପତଋଷି ଦେବଋଷିଙ୍କର ତୁଟେଲ
ଆହା କି ହେଲା ବୋଲି ହୃଦପୁରେ ଭାବିଲେ ।
ଆଦିତ୍ୟଙ୍କ ମଣ୍ଡଳ ନଷ୍ଟ୍ରଭ ଦଶିଲା
ଚନ୍ଦ୍ରଠାରୁ ଶଶ ଅଲଗା ହୋଇଗଲା ।
ଋଷିଏ ଅର୍ଜ୍ଜୁନଙ୍କ ବିସ୍ମରଣ ହେତ
ଜପିଲେ ହୃଦେ ଜୟମନ୍ତ୍ରକୁ ବହୁତ ।
ଅରଜୁନ ଚେତା ପାଆନ୍ତେ ହୃଦଦେଶେ
ଧଇଲେ ଭିଡ଼ି କରେ ଧନୁକୁ ନସଶେ ।
ବରଷାକାଳ ଘନପ୍ରାୟେ ଶରସଜ
ସରଜଣ ଅର୍ଜ୍ଜୁନ ଉଠିଲେ ଗରଜ ।
ଅରଜୁନ ଶରରେ ସଇନ୍ଧବ ସୈନ୍ୟ
ଆହାନ୍ତକୁ ଲଭନ୍ତେ ଆଶା ହେଲା ତୂର୍ଣ୍ଣ ।
ଏ ସକାଶୁଁ ଯୁଦ୍ଧ ଭୂମିକି ଛାଡ଼ି ଦେଇ
ପଳାଇଲେ ସେନାଏ ବୋଲି ବାବୁ ଭାଇ ।
ଶର-ପବନରେ ସଇନ-ଘନବୃନ୍ଦ
ଉଡ଼ାଇଣ ଅର୍ଜ୍ଜୁନ ଲଭିଲେ ଆନନ୍ଦ ।
ବେଳକୁବେଳ ଦେହ ତେଜ ପ୍ରକାଶିଲେ
ଶତ୍ରୁଙ୍କର ଯେ ବଳ ଥିଲା, ତା ଧ୍ୱଂସିଲେ ।
ପୁଣି ସିନ୍ଧୁଦେଶ ସେନାଏ ଗୋଟି ହୋଇ
ଅର୍ଜ୍ଜୁନଙ୍କୁ ଦେବା ଭୂମିରେ ଲେଉଟାଇ ।
ବିସ୍ମର ଶରକୁ ବହନ୍ତେ କୋଟି କୋଟି
ତାହାଙ୍କୁ ସେହିକାଳେ କହିଲେ ଜଗଣ୍ଠୀ ।
ମୁଁ ତ ମାରିବ ନାହିଁ ଯୁଦ୍ଧରେ ତୁମ୍ଭଙ୍କୁ
ତୁମ୍ଭେ ପୃଷ୍ଠ ଥାଅ ଦେଖାଇ ବିଷମକୁ ।
ସିନ୍ଧୁଦେଶ ନୃପେ ତା ନ ଶୁଣିଲ ପର
ଅର୍ଜ୍ଜୁନକୁ ଯୁଝିଲେ ପୂର୍ବସର ଧରି ।
ସିନ୍ଧୁଦେଶଯୋଦ୍ଧା ବନ୍ଧିଲେ ଯେତେ କାଣ୍ଡ
ମଧ୍ୟରୁ ଅର୍ଜ୍ଜୁନ ତା କଲେ ଦୁଇଖଣ୍ଡ ।

ସଇନ୍ଧବ ସେନା ଜଣକୁ ବଣ ବଣ
ବଜାଇଣ ବନ୍ଧିଲେ ସୁଭଦ୍ରା-ବିଳାସ ।
ତେବେ ହେଲେ ଯୁଦ୍ଧେ ନ ଛାଡ଼ ସଇନ୍ଧବେ
ଯୁଝିଲେ ଅର୍ଜୁନଙ୍କୁ ବେଢ଼ି କରି ସବେ ।
ଅର୍ଜୁନ ଚନ୍ଦ୍ର ବାଡ଼ ମୁନ ଥିବା କାଣ୍ଡ
ବନ୍ଧିଣ ଗଡ଼ାଇଲେ ଯୋଦ୍ଧାଙ୍କର ମୁଣ୍ଡ ।
ପାଚିଲା ତାଳ ଫଳ ପଡ଼ ମହୀଦେଶେ
କମ୍ପାଇଲା ମହୀଦେଶାକ ଶବଦେ ସେ ।
ଦୁଃଶଳା ଶୁଣି ପାରି ସେନାଙ୍କ ମରଣ
ପୌତ୍ରକୁ କୋଳେ ଧରି କରଣ କାରୁଣ୍ୟ ।
ଗାଣ୍ଡୀବ-ଧନୁର୍ଦ୍ଧାରୀ ପାଶକୁ ଆସିଲେ
ସିନ୍ଧୁ ଦେଶେ ଅଶ୍ଚର୍ଯ୍ୟ ହୋଇଲା ଭାଷିଲେ ।
ଅର୍ଜୁନ ଭଗିନୀର ଦେଖିଣ ବଦନ
ଛାଡ଼ ଦେଇ କରି ଗାଣ୍ଡୀବ-ଶରାସନ ।
ବୋଇଲେ କସ ବୋଲୁଅଛ ଆଗୋ ମାତ
ତାହା କହିବ ମୁହିଁ କହ ଗୋ, ତୁରିତ ।
ଦୁଃଶଳା ବୋଇଲେ ତୁମ୍ଭର ଭଣଜାର
କୁମର ଆସିଛି ଏହାକୁ ରକ୍ଷାକର ।
ଅର୍ଜୁନ ବୋଇଲେ ଭଣଜା କାହିଁଛନ୍ତି
କହ ମୋତେ ଆଗୋ ଭଗିନ ବଡ଼ ପ୍ରୀତି ।
ଦୁଃଶଳା ବୋଇଲେ ତୁମ୍ଭର ଆସିବାର
ଶୁଣି କରି ଯେ ମଲେ ଭଣଜା ତୁମ୍ଭର ।
ଏହା ଶୁଣି ଅର୍ଜୁନ କ୍ଷତ୍ରିୟ ଧର୍ମକୁ
ନିନ୍ଦିଣ କହିଲେ ବଚନ ଦୁଃଶଳାକୁ ।
ଦୁର୍ଯ୍ୟୋଧନ ଯୋଗୁଁ ଜୁଆଇଁ-ବଧକାରୀ
ହେଲି, ମୋତେ ତୂରି ଭଣଜା ଗଲା ମରି ।
ଖୋଜିଲେ ଏଥିରୁ ଅଶ୍ଚର୍ଯ୍ୟ ହୋଇ କଥା
ହେବାକୁ ଲେଖି ନାହିଁ ଭାଲେ ସ୍ବରମଥା ।
ଦୁଃଶଳାକୁ ବୋଇଲେ ଯାଅ ଯା ଘରକୁ
ଧିକ ହେଉ ଆମ୍ଭର ଏ ଧନୁର୍ବିଦ୍ୟାକୁ ।
ଦୁଃଶଳା କାନ୍ଦ ଯୋଦ୍ଧାଗଣେ ନବର୍ତ୍ତାଇ
ଘରକୁ ଗଲେ ନାତିଟିକି କୋଳେ ବହି ।
ତାପମୃଗ ସଙ୍ଗରେ ଶିବଙ୍କ ପରାଏ ।
ଧାଇଁଲେ ଘୋଡ଼ା ସଙ୍ଗେ ପାର୍ଥ ବୀରରାଏ ।
କ୍ରମରେ ଘୋଡ଼ା ସବୁଦେଶ ଭ୍ରମି ଭ୍ରମି
ହୋଇଲା ଯାଇ ମଣିପୁର ଦେଶଗାମୀ ।

ମଣିପୁର ବଭ୍ରୁବାହନ ଅର୍ଜୁନଙ୍କ
ଆସିବା ଶୁଣି କରି ଆନନ୍ଦ ଅଧିକ ।
ହୃଦୟ-ଗୃହେ ଭରି ଅର୍ଘ୍ୟକୁ ଧରାଇ
ଆସିଲେ ଅର୍ଜୁନଙ୍କୁ ପୂଜିବାର ପାଇଁ ।
ଅର୍ଜୁନ ତାଙ୍କୁ ଦେଖି ବୋଇଲେ ରେ ସୁତ
ନୁହେ ଏ ବିଧାନ କ୍ଷତ୍ରିୟ ଧର୍ମର ତ ।
ମୁଁ ତ ଆସିଅଛି ଯୁଝିବା ଇଚ୍ଛା ଧରି
ତୁ ମୋତେ ବୋଲୁଅଛୁ କମ୍ପା ପ୍ରୀତି କରି ।
ତୁରୁଆ ନୋହିଲେ କି ନୁଆଇଁ ମଥାକୁ
କହନ୍ତୁ ଆସି ମୋତେ ବିନୟ-କଥାକୁ ।
ଏହା ଶୁଣି ବଭ୍ରୁବାହନ ପାଇ ଲାଜ
ପୋତି ମୁଣ୍ଡ ହେଲେ କି କରିବ ଆଜ ।
ଉଲୁପୀ ପାତାଳକୁ ଭେଦ ସେହି କାଳେ
ପୁଅକୁ ଅନାଇଣ ବଚନ କହିଲେ ।
ବାବୁ ଯେବେ ବୋଲୁଅଛନ୍ତି ଯୁଝିବାକୁ
ଯୁଝ ବାବୁ ଧରିଣ କରରେ ଧନୁକୁ ।
ଏହା ଶୁଣି ବଭ୍ରୁବାହନ କ୍ରୋଧ ହୋଇ
ସୁନା ହଂସଧ୍ବଜ ରଥପରେ ଆରୋହି ।
ସୁନାସାଞ୍ଜୁ ସୁନାଖୋପରି ଲଗାଇଲେ
ଅର୍ଜୁନଙ୍କ ଆଗରେ ରଥ ଛିଡ଼ାକଲେ ।
ବଭ୍ରୁ ବାହନ ଅରଜୁନଙ୍କ ଘୋଡ଼ାକୁ
ଧରି ବୋଲି ବୋଲନ୍ତେ ସେବକମାନଙ୍କୁ ।
ସେମାନେ ବଭ୍ରୁବାହନଙ୍କ ବୋଲ ମାନି
ଘୋଡ଼ାକୁ ଦଉଡ଼ିରେ ବାନ୍ଧିଲେ ସେକ୍ଷଣି ।
ନିଜ ପୁତ୍ର ଘୋଡ଼ା ନେବାର ଦେଖି ସୁଖୀ
ହୋଇଣ ଅର୍ଜୁନ ଛନ୍ଦିଲେ ଶର ଯୋଖି ।
ବଭ୍ରୁବାହନ ତାହା ନ ସହି ଅର୍ଜୁନ
କନ୍ଧଦେଶେ ବନ୍ଧିଲେ କାଣ୍ଡ ଅବଚ୍ଛିନ୍ନ ।
ସେ-କାଣ୍ଡମାନେ ସର୍ପପରାଏ ଆସିଲେ
ଅର୍ଜୁନ କନ୍ଧଦେଶ-ବିଲରେ ପଶିଲେ ।
ଅର୍ଜୁନ ସେ ଘାତରେ ମହାପୀଡ଼ା ପାଇ
ଅଗ୍ନିପରି ଶୋଭା ହେଲେ କ୍ରୋଧ ବହି ।
ବୋଇଲେ ବନ୍ଧିଲୁରେ ପୁତ୍ର ଆଜ୍ଞା କାଣ୍ଡ
ମୁଁ ବନ୍ଧେ ତୁ ଧଇର୍ଯ୍ୟ ଧରିଥାଅ ପିଣ୍ଡ ।
ଏରୂପେ କହି ପୁତ୍ର ଆଗରେ କୁପିତ—
ହୋଇଣ ନାରଚ ବନ୍ଧିଲେ ଇନ୍ଦ୍ରସୁତ ।

ବଭ୍ରୁବାହନ ତାହା ଦେଖି ଭଲ୍ଲକାଣ୍ଡେ
କାଟିକରି ପକାଇଦେଲେ ଯୁଦ୍ଧଦାଣ୍ଡେ ।
ଅର୍ଜୁନ ଅର୍ଦ୍ଧ୍ୟ କାଣ୍ଡଟିରେ ସୁନାହଂସ—
ଧ୍ୱଜ କରିଲେ ବଭ୍ରୁବାହନଙ୍କ ନାଶ ।
ବଭ୍ରୁବାହନଙ୍କ ଘୋଡାକୁ କାଣ୍ଡ ବିନ୍ଧି
ଦେଲେ ତାଙ୍କ ଯିବାର ଦାଣ୍ଡଟିକ ରୁନ୍ଧି ।
ଅର୍ଜୁନଙ୍କ ସୁତ ଅଟନ୍ତ ମହାରଥ
ନ ଡରି ଯୁଦ୍ଧ କଲେ ଘୁଡ଼କରି ରଥ ।
ଅର୍ଜୁନ ଯେ ବଭ୍ରୁ ବାହନ ପୀଡ଼ାକୁ
ଦେଖିଣ ନ ବିନ୍ଧିଲେ ଅଣ୍ଟରେ ଶରକୁ ।
ବାପେ ହେଲେ ଦୁର୍ବଳ ବୋଲି ମନେ ଜାଣି
ଅର୍ଦ୍ଧ୍ୟକାଣ୍ଡ ବିନ୍ଧି ବଭ୍ରୁବାହନ ବଳୀ ।
ପୁଣି ଧନୁ ମଧ୍ୟରେ ସନ୍ଧିକରି କାଣ୍ଡେ
ବିନ୍ଧିଲେ ଅର୍ଜୁନଙ୍କ ହୃଦୟକୁ ଚଣ୍ଡେ ।
ସେ କାଣ୍ଡ ବଜ୍ର ପରି କରି ମହାଧ୍ୱନି
ହୋଇଲା ଅର୍ଜୁନଙ୍କ ହୃଦଦେଶଗାମୀ ।
ଉମକୁ ବୋଲି ବାଜନ୍ତେ ମହାଶର
ଆଶ୍ରିଲେ ମହୀଦେବୀ ସେ ପାଣ୍ଡବ ବୀର ।
ଅର୍ଜୁନ ବାଣେ ଚିତ୍ରାଙ୍ଗଦା-ସୁତ ପୀଡ଼ା
ପାଇ ଯୁଦ୍ଧଭୂମେ ନ ପାରି ହୋଇ ଛିଡ଼ା ।
ମୋହ ଯାଇଣ ଭୂମି ଉପରେ ପଡ଼ିଲେ
ଭଲ ମନ୍ଦ ଦୁଇ କଥାକୁ ନ ଜାଣିଲେ ।
ବାପ ପୁଅଙ୍କର ମୋହକୁ ଶୁଣି କାନେ
ଚିତ୍ରାଙ୍ଗଦା ଆସିଲେ ଯୁଦ୍ଧଭୂମିସ୍ଥାନେ ।
ପତି ପୁତ୍ର ଦୁହିଁଙ୍କି କରି ଆଲୋକନ
ଆହା କି ହେଲା ବୋଲି କଲେ ସେ ରୋଦନ
ନାଗଝିଏ ଉଲୂପୀ ଯେହୁ ଆଗେ ରହି—
ଥିଲେ ତାହାଙ୍କୁ ଚିତ୍ରାଙ୍ଗଦା କ୍ରୋଧ କହି ।
କହିଲେ ତୁମ୍ଭ ସକାଶରୁ ପତି ସୁତ
ଯୁଦ୍ଧ କରି ମୋହର ହେଲେ ଜାଣ ହତ ।
ତୁମ୍ଭର ପତି ଅର୍ଜୁନ ତ ଅଟନ୍ତି
ତାହାଙ୍କୁ ମରାଇଲ କିମ୍ପା ଦୁଷ୍ଟମତି ।
ମୋହର ପୁତ୍ର ସିନା ସାବତପୁତ୍ର
ପତି ତ ନାରୀଙ୍କର ଅଟେ ଦଇବତ ।
ଏ ସକାଶୁ ମୁହିଁ ଜାଣୁଛି ତୁମ୍ଭେ ପାପୀ
ମଲେ ଯମ ଦଣ୍ଡିବ କଷ୍ଟେ ହୋଇ କୋପୀ ।

ପତିଘ୍ନ ହୋଇବାର ସ୍ତ୍ରୀଙ୍କର ବାଳ
ଧରିଣ ନର୍କରେ ଘେନିଯାଏ କାଳ ।
ଏବେ ମୋ ବୋଲ ଘେନ ଜୀଆଅ ପତିଙ୍କି
ନୋହିଲେ ପାଇବଟି ମହାବିପତ୍ତିକି ।
ଝଞ୍ଜିତ ଥିଲା ବିଧି ମୋହର କପାଳେ
ମରିବେ ପୁତ୍ର ପତି ଦୁହେଁ ଏକାବେଳେ ।
ଏ କଥା ଆନ କରିବାକୁ କି ଶକତି
ବିଧାତ ମହିମା ତ ବିବେକ ବୋଲନ୍ତି ।
ଏହିରୂପରେ କାନ୍ଦି ଚିତ୍ରାଙ୍ଗଦାବାମା
ଅର୍ଜୁନେ କହିଲେ ହେଲ ତ ପୂର୍ଣ୍ଣକାମା ।
ପୁତ୍ରକୁ ଯୁଦ୍ଧେ ମାରି ଶୋଇଛ କପାଇଁ
ନିଅ ତୁମ୍ଭେ ଘୋଡ଼ାକୁ ଦେଉଅଛି ମୁହିଁ ।
ଯୁଦ୍ଧେ ତ ଜୀବଧନ ପ୍ରାଣ ପାରି ହରି
କହ ତୁମ୍ଭ ଜୀବନ ନେଲ କେହୁ ହରି ।
ଶୁଣି ଉଲୂପୀକି ବୋଇଲେ ବୁଦ୍ଧି ଲୋପ
କଲୁ କି ଗୋ ତୋହର ହେଉ ନାହିଁ ତାପ ।
ମୋ ପୁତ୍ର ପଛେ ଯମପୁରଟିକି ଯାଉ
ପତିକି ଜୀଆଅ ତୋ କଥା ମର୍ତ୍ତ୍ୟେ ଥାଉ ।
ପତିରେ ରହିତ ମୁଁ ହେଲେ ଜାଣ ଗାତ୍ର
ଧରି ପାରିବି ନାହିଁ କ୍ଷଣଟିଏ ମାତ୍ର ।
ଏରୂପେ ଉଲୂପୀ ଆଗରେ ମଣିପୁର—
ନୃପତି ଦୁହିତା କହି ଚିନ୍ତାତୁର ।
ହୃଦୟରେ ଲଭିଣ, ଅନଶନ କରି
ମରିବି ବୋଲିକରି ରହିଲେ ବିଧୁର ।
ଏ ସମୟରେ ବଭ୍ରୁବାହନ ପାଇ ଚେତା
ଦେଖିଲେ କାନ୍ଦୁଛନ୍ତି ଆପଣାର ମାତା ।
ବୋଇଲେ ଆଗୋ ମାତା ଅନ୍ୟାୟ ମୁଁ କଲି
ବାପାଙ୍କୁ ଯୁଦ୍ଧରେ ଯା ମାରି ପକାଇଲି ।
ଏ ହେତୁ କହୁଛି ତୁମ୍ଭଙ୍କୁ ତୁମ୍ଭେ ଯାଅ
ବାବୁ ସଙ୍ଗେ ମରିବ ଏ ମୋର ହୃଦୟ ।
ନୋହିଲେ ଏକା ମୋର ନିଷ୍କୃତି ତ ନାହିଁ
ଜୀଇ ମହୀ ଭୁଞ୍ଜିବି ପିତୃଘାତୀ ହୋଇ ।
ଏତେ ବୋଲି ବଭ୍ରୁବାହନ ସତ୍ୟ କଲେ
ପ୍ରାୟୋପବେଶନ କରିବି ଆଜ ଭଲେ ।
ଏହା ଦେଖି ଉଲୂପୀ ସଞ୍ଜୀବନୀ ମଣି
ଆଣିଲେ ହୃଦପଦ୍ମ ମଧ୍ୟଦେଶେ ଗୁଣି ।

ବଭ୍ରୁବାହନକୁ ବୋଇଲେ ଉଠ ବାବୁ
ତୋ ବଳେ କି ମରି ଯାଆନ୍ତେ ତୋର ବାବୁ
ଇନ୍ଦ୍ରପରି ଲୋକ ତ ଅର୍ଜ୍ଜୁନଙ୍କୁ ରଣ
କରିଲେ ଭେଟିପିବ ପ୍ରେତ-କୂଳବଣ ।
ମୋହମାମାୟାରେ ମୁଁ କରିଅଛି ଏହା
କହିବା ପଛେ ବାବୁ କାରଣଟି ଯାହା ।
ମୁଁ ଏବେ ଦେଉଅଛି ତୋତେ ମଣିରତ୍ନ
ଥୁଅ ଅର୍ଜ୍ଜୁନଙ୍କ ହୃଦରେ କରି ଯତ୍ନ ।
ଏହା ଶୁଣି ବଭ୍ରୁବାହନ ତୋଷ ହୋଇ
ଜୀବନ୍ୟାସମଣିକି ଧରି ମୁଠିଆଇ ।
ଅର୍ଜ୍ଜୁନଙ୍କର ସମୀପକୁ ବୋଲି ଗଲେ
ଅର୍ଜ୍ଜୁନଙ୍କର ବକ୍ଷସ୍ଥଳରେ ଥୋଇଲେ ।
ମଣିକୁ ଥୋଇଦେବା କ୍ଷଣି ଅରଜୁନ
ଉଠିଲେ ଧଡ଼ପଡ଼େ ପାଇଣ ଜୀବନ ।
ବଭ୍ରୁବାହନ ତାହା ଦେଖି ସୁଖୀ ହୋଇ
ଅର୍ଜ୍ଜୁନଙ୍କୁ ନମିଲେ ଅତି ସେ ବିନୋଇ ।
ଅର୍ଜ୍ଜୁନ ଉଠନ୍ତେ ଇନ୍ଦ୍ରାଦି ଦେବତାଏ
ପୁଷ୍ପବୃଷ୍ଟି କଲେ ଅର୍ଜ୍ଜୁନଙ୍କର କାୟେ ।
ଆକାଶରେ ଦୁନ୍ଦୁଭି ବାଜିଲା ଅନେକ
ନାଚିଲେ ମେଳ ହୋଇ ଅପସରପାକ ।
ଅର୍ଜ୍ଜୁନ ଚହିଁ ବଭ୍ରୁବାହନ ପୁତ୍ରକୁ
କୁଣ୍ଢାଇ ଦେଲେ ମସ୍ତକେ ଚୁମ୍ବନକୁ ।
ଚିତ୍ରାଙ୍ଗଦା ଉଲୂପୀ ଦୁହିଙ୍କି ନିରେଖି
କହିଲେ ବଭ୍ରୁବାହନକୁ ହୃଦେ ରଖି ।
କିମ୍ପାଇଁ ତୁମ୍ଭର ଅଇଲେ ଦୁଇ ମାତ
ମୋର ଆଗରେ ପୁତ୍ର ସେ କଥା କହ ତ ।
ବଭ୍ରୁବାହନ ତାହା ଶୁଣିଣ ବାପଙ୍କୁ
କହିଲେ ପଚ୍ଚର ମୋ ସାବତମାତାଙ୍କୁ ।
ଏହା ଶୁଣି ଅର୍ଜ୍ଜୁନ ଉଲୂପୀକି ଚାହିଁ
ପଚାରିଲେ ତୁମ୍ଭେ ଆସିଲ କାହିଁପାଇଁ ।
ଚିତ୍ରାଙ୍ଗଦା ମଧ୍ୟ ସଙ୍ଗତରେ ଅଛନ୍ତି
ଏ କାରଣ କହି କରିଅ ମୋର ପ୍ରୀତି ।
ଆମ୍ଭର ପିତା ପୁତ୍ର ଦୁହିଙ୍କ କୁଶଳ
ବଞ୍ଚିଅଛଟିକି ତୁମ୍ଭ ହୃଦସ୍ଥଳ ।
ବଭ୍ରୁବାହନ ଚିତ୍ରାଙ୍ଗଦା ମୁଁ ତୁମ୍ଭରେ
ଦୋଷ କରିଥିଲେ ତା କହ ମୋ ଆଗରେ ।

ଉଲୂପୀ ବୋଇଲେ ହେ ମୋହଠାରେ ଦୋଷ
ନାହିଁ ତୁମ୍ଭ ତନୟଙ୍କର ହେ ପ୍ରାଣଈଶ ।
ତୁମ୍ଭ ପ୍ରିୟ ପାଇଁ ମୁଁ ଆଚରଣ ଯାହା
କଲି ତା ଶୁଣ ହେ ଗାଣ୍ଡୀବ-ଧନୁର୍ବାହା ।
ଭାରତଯୁଦ୍ଧରେ ଭୀଷ୍ମଙ୍କୁ ଅଧର୍ମରେ
ମାଇଲ ଶିଖଣ୍ଡୀକି ରଖିଣ ଆଗରେ ।
ପୁଅଙ୍କଠାରୁ ଯେବେ ନୁହନ୍ତା ଏ ଦଶା
ତେବେ କାଳ ପାଆନ୍ତେ ନରକରେ ବସା ।
ଭୀଷ୍ମଙ୍କର ମରଣ ଶୁଣି ବସୁଗଣ
ସ୍ନାନ କଲେ ଗଙ୍ଗାଙ୍କ ତୀରକୁ ଯାଇଣ ।
ଗଙ୍ଗାଙ୍କୁ ବୋଇଲେ ହେ ଶିଖଣ୍ଡୀକି ଆଗେ
କରି ଅରଜୁନ ଯା ମାଇଲେ ଆଶୁଗେ ।
ତୁମ୍ଭ ପୁତ୍ର ତାଙ୍କମାନଙ୍କ ପିତାମହ
ଭୀଷ୍ମଙ୍କୁ ଏହେତୁ ବଢ଼ୁଛି ଆମ୍ଭ କୋହ ।
ଏଣୁ ଶାପ ଦେବାକୁ ପଚ୍ଚରୁଛୁ ମାତ
ଅରଜୁନ କଲେ ମହତ ଅନ୍ୟାୟ ତ ।
ଗଙ୍ଗା ବୋଇଲେ ହେ ମାଇଲ ମୋ ପୁତ୍ରକୁ
ତାଙ୍କୁ ଶାପ ଦେବାକୁ କି ପୃଚ୍ଛ ଆମ୍ଭଙ୍କୁ ।
ଏହା ମୁଁ ଶୁଣି କରି ଆସି ମୋ ବାପାଙ୍କୁ ।
କହିଲି ଅତିଶୟ କରିଣ ଦୁଃଖକୁ ।
ବାପେ ସେହିକ୍ଷଣି ବସୁଙ୍କଠାକୁ ଗଲେ
ତୁମ୍ଭ ପାଇଁ ତାହାଙ୍କୁ ବହୁତ କହିଲେ ।
ବସୁଏ ବୋଇଲେ ହେ ମଣିପୁରେଶ୍ୱର
ସମରରେ ଅର୍ଜ୍ଜୁନ ଗୁଡ଼ ଧନୁଶର ।
ମହୀତଳରେ ଆହେ ପଡ଼ିବେ ସେ ଯେବେ
ଆମ୍ଭେ ତା ଦେଖି ସୁଖ ପାଇବୁଁଟି ତେବେ ।
ଆମ୍ଭେ ଦେବା ଶାପରୁ ହେବ ସେ ମୁକତ
ନ ଲାଗିବ ପାପ ତାହାଙ୍କୁ ଭୀଷ୍ମହତ ।
ମୋ ବାପେ ଆସି ତାହା ମୋତେ ତ କହିଲେ
ସେ ଧନୁ ତୁମ୍ଭ ଶ୍ରେୟ ବଞ୍ଚୁଛି ଭଲେ ।
ଯେବେ ଭେଟ ପଡ଼ିଲା ପୁତ୍ରର ତୁମ୍ଭର
ତେବେ ଯୁଦ୍ଧ କରାଇ ଦେଲି ମନେ କରି ।
ବସୁଙ୍କ ଶାପେ ବଭ୍ରୁବାହନଙ୍କ କାଣ୍ଡେ
ପଡ଼ିଲଟି ତୁମ୍ଭେ ହେ ଏ ସମର-ଦାଣ୍ଡେ ।
ଏହା ନୋହିଲେ ବଜ୍ରଧର ଶଚୀପତି
ଯୁଝିଲେ ତୁମ୍ଭ ତୁଲେ ହାରିଯିବେ ଅତି ।

ଅର୍ଜୁନ ତାହା ଶୁଣି ମହାସୁଖ ପାଇ
ବୋଇଲେ ଆଜ୍ଞା କଲୁ ଆଗୋ ପ୍ରାଣସଖା ।
ଏମନ୍ତେ ପୁତ୍ରକୁ ବୋଇଲେ ଯୁଧିଷ୍ଠିର
ଯାଗକୁ ଯିବୁ ଦୁଇ ମାତା ସେନ ତୋର ।
ଏହା ଶୁଣି ବଭ୍ରୁବାହନ ଅର୍ଜୁନଙ୍କୁ
ବୋଇଲେ ଆସ ପିତା ଆମ୍ଭର ଘରକୁ ।
ରାତକ ରହି କାଲି ସକାଳୁ ଗମନ
କଲେ ହେବ ଜାଣ ମୋହର ସୁଖ ମନ ।
ଅରଜୁନ ବୋଇଲେ ଦୀକ୍ଷା ମୁଁ କରିଛୁ
ପୁରକୁ ନ ଯିବ ରେ ଚିତ୍ରାଙ୍ଗଦାବତ୍ସି ।
ଏହିରୂପେ ପୁତ୍ରକୁ କହି ଛରିଯାକୁ
ଯାଅ ବୋଲି ଅର୍ଜୁନ ଦେଇ ଅଜ୍ଞାନକୁ ।
ସେଠାରୁ ଅଶ୍ୱ ଭୁଲେ ବେଗରେ ଗମନ
କଲେ କରଯୁଷ୍ଟରେ ବହି ଶରାସନ ।
ଜରାସନ୍ଧନୃପତି-ପୁରରେ ମିଳିଲେ
ମେଘସନ୍ଧି ତାହା ଦେଖିଣ ବାହାରିଲେ ।
ହୋଇଛି ତ ବାଳକ ବୟସ ତାଙ୍କର
ଏହି ସକାଶୁ ବୁଦ୍ଧି ହୋଇନାହିଁ ଧୀର ।
ଅର୍ଜୁନଙ୍କୁ ବୋଇଲେ ନେଇଛୁ ମୁଁ ଘୋଡ଼ା
ଦେଖାଅ ବଳ ଥିଲେ ତୁମ୍ଭ ବାହୁଯୋଡ଼ା ।
ମୋହର ପିତାମହ ଜରାସନ୍ଧ ବଳୀ
ଥିଲେ ବଳ ତୁମ୍ଭର ଭାଇ ଭୀମ ଦଳି ।
ନେଇଅଛୁ ତାହାଙ୍କ ସେହି କଥା ଆଜ
ବୁଝାଇବ ଛଡ଼ାଇ ଦେଇ କୁଳ-ଲାଜ ।
ଅରଜୁନ ବୋଇଲେ ବଳୀ ହୋଇ ତୁମ୍ଭେ
ଯେବେ ଅଛ ଯୁଝ ତ ବୋଲଅଛୁଁ ଆମ୍ଭେ ।
ଏହା କହୁଁ ମେଘ ପରାଏ ମେଘସନ୍ଧି ।
ବୃଷ୍ଟି କରିଲା ଶର ଶରାସନେ ସନ୍ଧି ।
ଅରଜୁନ-କାଣ୍ଡରେ ମେଘସନ୍ଧି-କାଣ୍ଡ
ପଡ଼ିଲା ମଝି ତେଶ ହୋଇ ଦୁଇଖଣ୍ଡ ।
ମେଘସନ୍ଧି-ଦେହକୁ ନ ଛନ୍ଧଣ ଶର
ଛନ୍ଧିଲେ ତାର ସ୍ୱରପଟେ ପାର୍ଥବୀର ।
ମେଘସନ୍ଧି ଅତି ତ ଅଟଇ ଦୁର୍ବୁଦ୍ଧି
ମୂର୍ଖ ଜାଣିବ ବୋଲି ସାହସକୁ ବାନ୍ଧି ।
ଅର୍ଜୁନଙ୍କୁ ଅଧିକ ଦେଖାଇଣ ବଳ
ବନ୍ଧିଲା ଗୁଣେ ଯୋଖି କରି ଶରମାଳ ।

ମେଘସନ୍ଧି-କାଣ୍ଡ ଅର୍ଜୁନ-ଦେହେ ବାଜି
ପିଇଲେ ମୁନ-ମୁଖେ ରକ୍ତ ସୁଖେ ମଜ୍ଜି ।
ଅରଜୁନ ଭାବିଲେ ପିଲା ବୋଲି କ୍ଷମା
କରିବାରୁ ବଢ଼ିଲା ଏହାର ଗରିମା ।
ଏବେକ୍ଷଣି ଏହାର ସାରଥି-ଅଶ୍ୱକୁ
ନ ମାଇଲେ ତ ଯୁଝୁଥିବ ଏ ଆମ୍ଭଙ୍କୁ ।
ଏତେ ବୋଲିକରି ସାରଥି-ଅଶ୍ୱ ପ୍ରାଣ
ସେନ ଚକାଇଲେ ଛନ୍ଧଣ ମୁନବାଣ ।
ପୁଣି କ୍ଷୁରକାଣ୍ଡକୁ ଛନ୍ଧଣ କରୀଠୀ
ହାତର ଭୁଲେ ଧନୁ ପକାଇଲେ କାଟି ।
ବିରଥୀ ହୋଇ ମେଘସନ୍ଧି ଗଦା ଧରି
ଆସିଲେ ଅର୍ଜୁନ ପାଖକୁ ରାଗ କରି ।
ଅର୍ଜୁନ ସେ ଗଦାବରକୁ କାଣ୍ଡେ କାଟି
ମାଡ଼ଦେଲେ ଯେ ଥରେ ଧନୁର ଗୁଣଟି ।
ଏହା କରି ମାରଣ ଅରଜୁନ ବୀର
ବୋଇଲେ ଶୁଣ ସହଦେବଙ୍କ କୁମର ।
ଯେତେ ଥିଲା ତେତେ ସମର୍ଥପଣ ବହି
ତେତେ ଦେଖାଇଲ ମୋ ଆଗେ ଯୁଦ୍ଧେ ରହି ।
ଯୁଧିଷ୍ଠିରଙ୍କର ତ ମୋତେ ନାହିଁ ଆଜ୍ଞା
ଏ ସକାଶୁଁ ସହୁଛୁ ତୁମ୍ଭର ପ୍ରତିଜ୍ଞା ।
ମେଘସନ୍ଧି ଏହା ଶୁଣିଣ ଶାନ୍ତ ହୋଇ
କହିଲେ ଅର୍ଜୁନଙ୍କୁ ନମ୍ରତାକୁ ବହି ।
ଅର୍ଜୁନ ବୋଇଲେ ନ ଡର ମଗଧେଶ
ଯୁଧିଷ୍ଠିର-ଯାଗକୁ ଯାଅ ବହି ତୋଷ ।
ଏହା କହି ଅର୍ଜୁନ ଚହୁଁ ଘୋଡ଼ା ଭୁଲେ
ଯାଇ ମ୍ଳେଚ୍ଛଗଣେ ଜିଣିଲେ ଯୁଦ୍ଧ ଭଲେ ।
ଦକ୍ଷିଣଦିଗେ ଚେଦୀଦେଶେ ପରବେଶ
ହୋଇଲେ ଅରଜୁନ ବୀରକୁଳ-ଈଶ ।
ଶିଶୁପାଳ-ପୁଅ ଶରଭ ଅର୍ଜୁନଙ୍କୁ
ସମ୍ଭାବନା କରନ୍ତେ କହିଣ ତାହାଙ୍କୁ ।
କାଶୀ ଓଡ୍ର କୋଶଳ କଗଚ ଯେ ଅଙ୍ଗ
ବଙ୍ଗ ଏହାଙ୍କଠାକୁ ଯାଇ ହୋଇ ସଙ୍ଗ ।
ଅରଜୁନ ଦଶାର୍ଣ୍ଣଦେଶକୁଟି ଗଲେ
ଚିତ୍ରାଙ୍ଗଦ ନୃପତି କୁଳରେ ପୂଜିଲେ ।
ଯୁଦ୍ଧେ ତାହାଙ୍କୁ ଜିଣି ଏକଲବ୍ୟ ସୁତ—
ଭୁଲେ ଯୁଦ୍ଧ କଲେ ସୁଭଦ୍ରାଦେବୀ-କାନ୍ତ ।

ତାଙ୍କୁ ଜିଣି ଦକ୍ଷିଣ-ସିନ୍ଧୁ ସମୀପକୁ
ଗଲେ ଯେ ଅରଜୁନ ଘେନିଣ ଅଶ୍ୱକୁ ।
ଦ୍ରାବିଡ଼ ଆନ୍ଧ୍ର କୋଲ୍ଲ ମହିଷକମାନେ
ଅରଜୁନଙ୍କୁ ହାରିଗଲେ ଯୁଦ୍ଧସ୍ଥାନେ ।
ପ୍ରଭାସ ତୀର୍ଥେ ସ୍ନାନ କରି ବୀରମଣି
ଦ୍ୱାରକାକୁ ଗଲେ ଅଶ୍ୱବର ଘେନି ।
ଉଗ୍ରସେନଙ୍କର ବଚନରେ ଯଦୁଏ
ନ ଯୁଝି ପାର୍ଥଙ୍କୁ ପୂଜିଲେ ଅତିଶୟେ ।
ବସୁଦେବଙ୍କର ସଙ୍ଗତେ ଦେଖା ହୋଇ
ପୁଣି ବାହାରିଲେ ସେଠାରୁ ଭଟ ବହି ।
ପଶ୍ଚିମ ଦେଶକୁ ବୁଲି ସେ ଅଶ୍ୱସାଇଁ
ପଞ୍ଚନଦଦେଶେ ପ୍ରବେଶ ହେଲେ ଯାଇ ।
ତଦନ୍ତେ ଗାନ୍ଧାର ଦେଶକୁ ଘୋଡ଼ା ଗଲା
ଶକୁନିପୁତ୍ର ତାହା ଶୁଣିଣ ଆସିଲା ।
ବହୁସୈନ୍ୟ ସଙ୍ଗ ଘେନି ହେ ଜନ୍ମେଜୟ
ଅର୍ଜୁନର ପାଙ୍ଖ ମନରେ ଅପଚୟ ।
ଅରଜୁନ ବୋଇଲେ ଶକୁନି ପିଲାଟି
କାହିଁକି ଆସିଅଛୁ ଉଡ଼ିଣ ପାଟିଟି ।
ଯୁଧିଷ୍ଠିର ମୋତେ ନିଷେଧ କରିଛନ୍ତି
କରୁଣେ ତୋତେ ମୁଁ ପେଷିବି ବାଳୁକତି ।
ତେବେ ହେଲେ ଶକୁନି ପିଲା ନ ଶୁଣିଲା
ଘୋଡ଼ାକୁ ଧରି ବୋଲି ଲୋକଙ୍କୁ ବୋଇଲା ।
ଅର୍ଜୁନ ତାହା ଶୁଣି ଚନ୍ଦ୍ର ଭୀଷଣକାଣ୍ଡ
କଲେ ତା ଲୋକଙ୍କର ହାତକୁ ଖଣ୍ଡ ଖଣ୍ଡ ।
ଶକୁନିପୁତ୍ର ତା ନ ସହିଣ ରାଗେ
ଅରଜୁନଙ୍କୁ ନିବାରିଲା ସେ ଆଶୁଗେ ।
ଅର୍ଜୁନ ଶକୁନିପୁଅର ଉପ୍ପ ପାଇଁ
ମୁଣ୍ଡର ଟୋପର କାଟିଲେ କ୍ରୋଧ ହୋଇ ।
ଗାନ୍ଧାରବାସୀଏ ତା ଦେଖି ଅର୍ଜୁନଙ୍କୁ
ବହୁତ ପ୍ରଶଂସିଣ ରାଜ-ଜନନୀଙ୍କୁ ।
କହିଲେ ସେ ଶୁଣିଣ ବୃଦ୍ଧମନ୍ତ୍ରୀ ଘେନ
ସଙ୍ଗେ ଆସି ଭେଟିଲେ ପାର୍ଥବୀରମଣି ।
ବୋଇଲେ ମୋର ପୁତ୍ର ନ ଜାଣି ସାହସ
ଯୁଦ୍ଧେ କଲା, କ୍ଷମା କର ହେ ବୀରଈଶ ।
ବାପକୁ ତ ଏହାର ପକାଇଛ ମାରି
ନ ମାରି ଏ ପୁଅକୁ ମାଗୁଛି ସେପରି ।
ଅରଜୁନ ବୋଇଲେ ମୁଁ ତ ଯୁଝିବାକୁ
ନିଷେଧ କରୁଥିଲି ତୁମ୍ଭର ପୁତ୍ରକୁ ।
ସେ ପିନା କ୍ରୋଧ ହୋଇ ମୋ ସଙ୍ଗେ ଯୁଝନ୍ତି
ତାଙ୍କୁ ନିବର୍ତ୍ତାଅ ଗୋ ମାଈଁ ବହି ପ୍ରୀତି ।
ଏହା ଶୁଣି ପୁତ୍ରକୁ ନିବର୍ତ୍ତାଇ ମାତ
ରଖି କରି ବୋଇଲେ ନୁହେ ଏ ଉଚିତ ।
ଅରଜୁନ ବୋଇଲେ ଯୁଧିଷ୍ଠିର ଯାଗେ
ଯାଅ ବୋଲି କହ ପୁତ୍ରକୁ ସରାଗେ ।
ଏରୂପରେ ଶକୁନି-କୁମରକୁ କହି
ଜଣି ବୃରବର ସୁଭଦ୍ରା ଦେବାସାଇଁ ।
ଅଶ୍ୱକୁ ଧରାଇଣ ହସ୍ତିନାପୁରକୁ
ବାହାରିଲେ କରିଣ ମନ୍ଦଗମନକୁ ।

—❀—

## ଯଜ୍ଞ-ସମ୍ପାଦାନ

ଅର୍ଜୁନ ଆସିବାର ଶୁଣି ଯୁଧିଷ୍ଠିର
ମନେ କଲେ ଏ ମହାଭାଗ୍ୟଟି ମୋହର ।
ମାଘମାସ ଶୁକ୍ଳଦ୍ୱାଦଶୀ ଦିନ ଭାଇ—
ମାନଙ୍କୁ ଡକାଇ ପାଣ୍ଡବନରସାଇଁ ।
ବୋଇଲେ ଆହେ ଭୀମ ଆସିଲେ ଅର୍ଜୁନ
ବୋଲି କହୁଅଛନ୍ତି ପରିକରଜନ ।
ବ୍ରାହ୍ମଣଙ୍କୁ ଏବେ ଡକାଇ ଯାଗଶାଳ
କରିବାର ସଜ୍ଜ ତା କରି ତତକାଳ ।
ଭୀମ ଏହା ଶୁଣିଣ ଘେନି ଦ୍ୱିଜାତିଙ୍କି
ମପାଇ ଦେଲେ ଯାଇ ସେ ଯାଗଭୂମିକି ।
ସେ ସ୍ଥାନ ମଣିରତ୍ନେ ମଣ୍ଡି ଯାଗଶାଳା
ରଚିଲେ ସେ ଦିଶିଲା ସ୍ୱର୍ଗଠାରୁ ଭଲା ।
ନୃପତି ବ୍ରାହ୍ମଣଙ୍କ ପାଇଁ ମଧ୍ୟ ଘର
ତାହା ସମୀପେ ତୋଳାଇଲେ ଭୀମବୀର ।
ଯୁଧିଷ୍ଠିର ନୃପଙ୍କ ଆଜ୍ଞାରେ ଦୂତଙ୍କୁ
ବରଗିଲେ ନୃପମାନଙ୍କୁ ଆଣିବାକୁ ।
ରାଜାମାନେ ଯୁଧିଷ୍ଠିରଙ୍କ ଆଜ୍ଞା ମାନି
ଆସିଲେ ଯାଗସ୍ଥାନେ ନାନା ରତ୍ନ ଘେନି ।
ନାନାଜାତି ଦେଶୁଁ ଆସନ୍ତେ ନରଗଣ
ଭୀମ ତାଙ୍କୁ ଚର୍ଚ୍ଚିଲେ ଥାଇଣ ଆପଣ ।
ମୁନିମାନେ ଶିଷ୍ୟମାନଙ୍କୁ ସଙ୍ଗତରେ
ଘେନି ଆସିଲେ ସେ ଯାଗକୁ ସରାଗରେ ।

ଯୁଧିଷ୍ଠିର ଋଷିମାନଙ୍କ ଆସିବାର
ଶୁଣିକରି ଆନନ୍ଦେ ପୁଲକି ଶରୀର ।
ଋଷିଙ୍କି ଖଣ୍ଡଦୂରୁ ଯାଇଣ ଆଣିଲେ
ଅନୁରୂପ କରିଣ ପୂଜା ଚର୍ଚ୍ଚା କଲେ ।
ଏହିକାଳେ ସେବକେ ଯାଗବଧି କରି
ସାରିଣ ଜଣାଇଲେ କର ଯୋଡ଼ି କରି ।
ଆହେ ପାଣ୍ଡୁକୁଳଚନ୍ଦ୍ରମା ନରପତି
ଯାଗବଧି ସାମଗ୍ରୀ ହେଲା ସମାପତି ।
ଏବେ କସ କରିବୁଁ ଆଜ୍ଞା ବେଗେ କର
ଉଚିତ ନୁହଇ ବିଳମ୍ବ କରିବାର ।
ଯୁଧିଷ୍ଠିର ଯାଗବଧି ହେବାର ଶୁଣି
କଲେ ଯାଗ ସଙ୍ଗତେ ଘେନି ଦ୍ୱିଜଶ୍ରେଣୀ ।
ଜନେ ବସି ଯାଗଶାଳାରେ ପାଠଶାଠ
କଲେ ସେ ଦେଖାଇଣ ଆପଣା ସପଠ ।
ସେହି ଯାଗରେ ସବୁ ସୁନାପାତ୍ର ବାଟି
ଅଛନ୍ତି ଯୁଧିଷ୍ଠି ଦେଖାଇ ଧନପ୍ରୀତି ।
ଦାରୁରେ ଯୂପ କରି ମଣ୍ଡି ଚଣ୍ଡି ସୁନା
ରଖାଇଲେ ସେ ଯୁଧିଷ୍ଠିର ମହାମନା ।
ସ୍ଥଳ ଜଳ ପଶୁ ଅଣାଇ ସେ ରାଜନ
କରାଇଲେ ବ୍ରାହ୍ମଣମାନଙ୍କୁ ଭୋଜନ ।
ଲକ୍ଷେ ଦ୍ୱିଜ ଭୁଞ୍ଜିଲା ଉତ୍ତାରୁ ଦୁନ୍ଦୁଭି
ବଜାଅନ୍ତି ଲୋକେ ଥରେ ସନ୍ତୋଷ ଲଭି ।
ସେ ଦୁନ୍ଦୁଭି-ଶବଦ ହେଲା ଅଜଳଣା
ବ୍ରାହ୍ମଣେ ଭୁଞ୍ଜିବାର ନ ଗଲା ତ ଜଣା ।
ଦଧି ଦୁଗ୍ଧ ଘିଅ ନଦୀ ପରବତ
ଅନ୍ନେ କରାଇଲେ ଅନେକ ଧର୍ମଯୁତ ।
ନୃପତିଙ୍କ ଭୁଲେ କୃଷ୍ଣଙ୍କୁ ଯାଗେ ଧାମ
ବହୁତ ପୂଜା କଲେ ହୃଦେ ବହି ପ୍ରେମ ।
ସେହିକାଳେ ଶ୍ରୀକୃଷ୍ଣ କହିଲେ ରାଜାଙ୍କୁ
ଆସିଲେ ଅରଜୁନ ଘେନିଣ ଅଶ୍ୱକୁ
ଯାଗ କରମ କରି କର ସମାପତି
ଆହେ ଧରମରାଜ ପାଣ୍ଡବ-ନୃପତି ।
ଯୁଧିଷ୍ଠିର ବୋଇଲେ ଅର୍ଜୁନ କି ଖବର
କହିଛନ୍ତି ମୋତେ ହେ କହ ଚକ୍ରଧର ।
କୃଷ୍ଣ ବୋଇଲେ ହେ ଅର୍ଜୁନ କହିଥିଲେ
ବହୁତ ନୃପତି ତ ଯାଗକୁ ଆସିଲେ ।

ଯୁଧିଷ୍ଠିର ରାଜାଙ୍କୁ କହିଣ ଆପଣ
ସମ୍ଭାବନା କରିବ ନୃପଙ୍କୁ ଦ୍ୱିଗୁଣ ।
ଯୁଧିଷ୍ଠିର ବୋଇଲେ ଜନ୍ମୁଁ ଅରଜୁନ
ଦୁଃଖ ପାଇବାରେ ବହୁତ ନେଲେ ଦିନ ।
କେଉଁ ଅଲକ୍ଷଣ ତାହାଙ୍କ ଦେହେ ଅଛି
ଜାଣିଥିଲେ ତା ମୋତେ କହତ ଶ୍ରୀବତ୍ସ ।
ଶ୍ରୀକୃଷ୍ଣ ବୋଇଲେ ହେ ଅର୍ଜୁନ ଦେହକୁ
ଜଙ୍ଘ ତ ବହିଅଛି ଅଧିକ ମାଂସକୁ ।
ଏହି ସକାଶୁଁ ପରବାସୀ ହୋଇ ଦିନ
ସାରୁଅଛନ୍ତି ତୁମ୍ଭ ଭାଇ ଅରଜୁନ ।
ଯୁଧିଷ୍ଠିର ବୋଇଲେ କହିଲ ଯା ହରି
ମୋ ମନ ମଧ ତୋଷ ହେଲା ଶୁଣି କରି ।
ଦ୍ରୌପଦୀ ଏହା ଶୁଣି ଚେଳଛି କୃଷ୍ଣଙ୍କୁ
ରୁଷିଲେ ହୃଦମଧ୍ୟେ ଧରିଣ କ୍ରୋଧକୁ ।
କୃଷ୍ଣ ସେ ରହାଣୀକ ନ ଘେନିଣ ରଗ
ଘେନିଲେ ଜନ୍ମେଜୟ ବୋଲି ଅନୁରାଗ ।
ଏହିକାଳେ ଅର୍ଜୁନ ସମୀପରୁ ଦୂତ
ଆସିକରି ଭେଟିଲା ଧର୍ମଙ୍କର ସୁତ ।
କହିଲା ଅରଜୁନ ଆସିଲେ ଯାଗକୁ
ଜିଣି ଏ ମଣ୍ଡଳର ନୃପତିମାନଙ୍କୁ ।
ଯୁଧିଷ୍ଠିର ତାହାକୁ ବସ୍ତ୍ର ଅଳଙ୍କାର
ଅନୁଗ୍ରହ କରିଣ ଦେଲେଟି ଅପାର ।
ଆଉଦିନ ଅର୍ଜୁନ ଆସିଲେ ଯାଗକୁ
ବଢ଼ାଇ କୁରୁଙ୍କର ହୃଦ ପ୍ରମୋଦକୁ ।
ପୁରଜନମାନେ ଯେ ଅର୍ଜୁନଙ୍କୁ ଦେଖି
ଏ ବଚନମାନ ବୋଇଲେ ହୋଇ ସୁଖୀ ।
ତୁମ୍ଭ ବିନା ଆନ ଲୋକର ନରବର
ଜିଣା ନୁହନ୍ତା ହେ ଅର୍ଜୁନ ମେଦିନୀକର ।
ଯୁଧିଷ୍ଠିର ରାଜନ ଭାଗ୍ୟବନ୍ତେ ଲେଖା
ଯେଣୁ ଭାଇ ହୋଇ ହୋଇଛ ତୁମ୍ଭେ ସଖା ।
ତୁମ୍ଭର ବଳେ କୁରୁ ମହୀକି ଜିଣିଲେ
ଏବେ ଅଶ୍ୱମେଧ ଯାଗକୁ ଆରମ୍ଭିଲେ ।
ଏରୂପେ ପାର୍ଥ ଶୁଣି ପୁରଜନ-ହର୍ଷ
ଭେଟିଲେ ଯୁଧିଷ୍ଠିର ନୃପକୁଳ-ଈଶ ।
କ୍ରମରେ ଜ୍ୟେଷ୍ଠମାନଙ୍କର ପାଦେ ନମି
କୃଷ୍ଣଙ୍କୁ ଆଲିଙ୍ଗନ କଲେ ହୋଇ ପ୍ରେମୀ ।

ଏହି କାଳେ ସେ ମଣିପୁର ଦଣ୍ଡଧାରୀ
ଆସିଲେ ମା' ବଭ୍ରୁବାହନ ସଙ୍ଗତରେ ଧରି ।
ଯଜ୍ଞସ୍ଥଳରେ କୁରୁ-ପୁରୁଷ-ସ୍ୱାମୀଙ୍କି
ବନ୍ଦନା କଲେ ହୃଦେ ବହିଣ ପ୍ରୀତିକି ।
ତଦନ୍ତେ କୁନ୍ତୀଙ୍କ ସଦନକୁ ଗଲେ
ଦ୍ରୌପଦୀ ସୁଭଦ୍ରାଙ୍କ କୂଳେ ଦେଖା ହେଲେ
ଦ୍ରୌପଦୀ ସୁଭଦ୍ରାଙ୍କୁ କହନ୍ତେ ବିନୟ
ହୋଇଲେ ସେହୁ ଅତିଶୟ ତାଙ୍କ ପ୍ରିୟ ।
କୁନ୍ତୀ ସେ ଦୁଇ ବଧୂ କୂଳେ ବଧୂ ଦୁଇ—
ମନକୁ ତୋଷିଲେଟି ଧନ ରତ୍ନ ଦେଇ ।
ଦେଇଣ ପୁଣି ବଭ୍ରୁବାହନକୁ ଧନ
ସେ ତିନଜଣ ତୋଷିଲେ ତାହାଙ୍କ ମନ ।
ବଭ୍ରୁବାହନକୁ ଯେ ସୁନାଭୂଷାରଥ
ଦେଲେ ଅତି ପ୍ରୀତି ବହିଣ ଯଦୁନାଥ ।
ତହୁଁ ବେଦବ୍ୟାସ ବୋଇଲେ ଯୁଧିଷ୍ଠିର
ହେଲା ଏ ତୁମ୍ଭ ଯାଗ ତିନୋଟି ପ୍ରକାର ।
ସବୁ ସାମଗ୍ରୀରେ ଅଛୁ ତ ପୂର୍ଣ୍ଣ ହୋଇ
ଏ ସକାଶୁଁ ଏ ଯାଗ ଅଦ୍ଭୁତ ବୋଲାଇ ।
ବହୁତ ସୁବର୍ଣ୍ଣ ତ ହୋଇଅଛୁ ଗୋଟି
ଏଣୁ ବହୁସୁବର୍ଣ୍ଣ ଏ ଯାଗ ନାମଟି ।
ଅଶ୍ୱମେଧଯାଗ ତ କରୁଛ ଆପଣ
ଏଣୁ ଦିଅ ଦକ୍ଷିଣା କରି ତିନଗୁଣ ।
ଏରୂପରେ ବ୍ୟାସ କହନ୍ତେ ତୋଷ ବହି
ଦୀକ୍ଷାରେ ବସିଲେ ପାଣ୍ଡବ ନରସାଇଁ ।
ଯାଜକମାନେ ଶାସ୍ତ୍ର ଲେଖିବା ପରସ୍ତେ
ଯାଗ କରାଇଲେ ହେ ଜନ୍ମେଜୟ ରସ୍ତେ ।
ସେହି ଯାଗକୁ ଆସିଥିଲେ ଯେତେ ପ୍ରାଣୀ
ଖାଇବାରେ ପେଟମାନଙ୍କୁ ଦେଲେ ଟାଣି ।
ଖଦିର ବେଲ ପଲାଶେ ଛ ଛଅ ଯୂପ
କରି ଦେବଦାରୁରେ କଲେ ଦୁଇ ନୃପ ।
ଶ୍ଳେଷ୍ମାତକ କାଠେ ଗୋଟିଏ ନିର୍ମା କଲେ
ଏ ବାହାରେ ଯେ ସୁନାଯୂପ କରାଇଲେ ।
ଅଗ୍ନି ରଖିବାକୁ ସୁନାର ଇଟାମାନ
ବହାଇ କଲେ ତହିଁ ଅଗ୍ନି ସଂସ୍ଥାପନ ।
ତିନଶ ପଶୁ ଯୂପଙ୍କରେ ବନ୍ଧାଇଲେ
ସେବକଙ୍କ ହାତରେ ତାହା ମରାଇଲେ ।

ସେ ଯାଗରେ ଗନ୍ଧର୍ବ ଅପସରାମାନେ
ଗୀତ ଗାଇଣ ନୃତ୍ୟ କଲେ ପ୍ରତିସ୍ଥାନେ ।
ନାରଦ ବୀଣା ଧରି ଆଳାପିଣ ରାଗ
ବଜାଇଲେ ହୃଦରେ ବହିଣ ସରାଗ ।
ଶାସ୍ତ୍ର-ଲେଖିଥିବା ପରାଏ ଘୋଡ଼ା-ପ୍ରାଣ
ନେଲେ ଯେ ଖଣ୍ଡା ପ୍ରହାରିଣ ଦ୍ୱିଜଗଣ ।
ସେ ଘୋଡ଼ା-ବସାକୁ ଅଗ୍ନିରେ କଲେ ହୋମ
ଶୁଂଘିଲେ ତାହା ଯୁଧିଷ୍ଠିର ନରୋତ୍ତମ ।
ଏ ବାହାରେ ଘୋଡ଼ା ମାଉଁସ ଯାକକୁ
ଋତ୍ୱିଜେ ହୋମ କଲେ ଉଚାରି ବେଦକୁ ।
ଏହିପରି କରିଣ ଅଶ୍ୱମେଧ ବିଧି
ସାରି ଯାଗକୁ ଯୁଧିଷ୍ଠିର ଗୁଣନିଧି ।
ସହସ୍ରକୋଟି ଦ୍ୱିଜଗଣେ ସୁନା ଦେଲେ
ହସ୍ତିନା ମହୀ ବ୍ୟାସଦେବେ ସମର୍ପିଲେ ।
ବ୍ୟାସ ହସ୍ତିନାକୁ କରିଣ ପ୍ରତିଗ୍ରହ
କହିଲେ ଯୁଧିଷ୍ଠିର ନୃପେ ବହି ସ୍ନେହ ।
ମୂଲ୍ୟ ଦେଇ ମୋଠାରୁ ନିଅ ହେ ମହୀକ
ବିଳମ୍ବ କରୁଅଛ ନୃପତି କାହିଁକ ।
ଯୁଧିଷ୍ଠିର ଭାଇଙ୍କି ଘେନିଣ ବ୍ୟାସଙ୍କୁଁ
କହିଲେ ଯାଇ କରି ଅତି ବିନୟକୁ ।
ମହୀ ତୁମ୍ଭଙ୍କୁ ମୁହିଁ ଦେଲିନ ତ ଦାନ
କି ରୂପେ ତା ଆଣିବି ଦେଇକରି ଧନ ।
ବନମଧ୍ୟରେ ଯାଇ କରିବି ମୁଁ ତପ
ଆଜ୍ଞା ଦିଅ ମୋତେ ହେ ବ୍ୟାସ ଋଷିନୃପ ।
ବୋଲନ୍ତେ ଏହା ଯୁଧିଷ୍ଠିର ନୃପମଣି
ଶୁଭିଲା ସେହି କାଳେ ଅଶରୀରୀ ବାଣୀ ।
ପାଣ୍ଡବ ନୃପବର କହିଲେ ଯା ବ୍ୟାସ
ଶୁଣିକରି ହୋଇଲା ଆମ୍ଭ ମନ ତୋଷ ।
ବ୍ୟାସ ସେ ଆକାଶର ବାଣୀକି ଶୁଣିଲେ
ଯୁଧିଷ୍ଠିର ନୃପଙ୍କୁ ଏନାଇଁ କହିଲେ ।
ମୁଁ ଦେଉଅଛୁ ମହୀ ନିଅ ନରବର
ଦିଅ ଧନ ଇଚ୍ଛା ଯେ ହେଉଛୁ ଆମ୍ଭର ।
କୃଷ୍ଣ ବୋଇଲେ ଆହେ ବ୍ୟାସଙ୍କ ବଚନ
ନ ଘେନୁଛ କପାଇଁ ପାଣ୍ଡବ ରାଜନ ।
ସେହିକ୍ଷଣି ଶ୍ରୀକୃଷ୍ଣ କହିଲେ ଏ ବାଣୀ
ମହାତୋଷ ହୋଇ ପାଣ୍ଡବ ନରମଣି ।

ନବକୋଟିସୁନା ବ୍ୟାସଙ୍କୁ ଗଣିଦେଲେ
ହସ୍ତୀନାପୁରୀଟିକ ତାହାଙ୍କର କଲେ ।
ବ୍ୟାସ ସୁନା କୋଟିଏ ଦେଲେ ଋତ୍ୱିଜଙ୍କୁ
ଋତ୍ୱିଜେ ତାହା ନେଲେ କରଣ ଜଗକୁ ।
ଏ ବାହାରେ ଯାଗର ସୁନାପାତ୍ର ଯାକ
ବ୍ରାହ୍ମଣ କୁଳେ ଦେଲେ ପାଣ୍ଡବ-ନାୟକ ।
କ୍ଷତ୍ରି ବୈଶ୍ୟ ଶୂଦ୍ର ମ୍ଲେଚ୍ଛଙ୍କୁ ବହୁ ଧନ
ଯୁଧିଷ୍ଠିର ଦେଇ ସନ୍ତୋଷ କଲେ ମନ ।
ବ୍ୟାସ ଆପଣା ଧନ ଭାଗୁଟି କୁନ୍ତୀଙ୍କି
ନଅ ବୋଲିଣ ଦେଲେ କହିଣ ପ୍ରୀତିକି ।
କୁନ୍ତୀ ସେ ଧନ ରଖି ଜାଣେ ଦ୍ୱିଜଜନ—
ମାନଙ୍କୁ ଡକାଇଣ ଦେଲେ କରି ଦାନ ।
ଗଜ ରଥ ଅଶ୍ୱ ଅଲଙ୍କାର ସ୍ତ୍ରିଶି
ଦେଲେ ନୃପତିକ ପାଣ୍ଡବ ଦଣ୍ଡଧାରି ।
ବହୁ ବ୍ରାହ୍ମଣଙ୍କୁ ଯେ କଲେ ସତ୍କାର
ରାଜ୍ୟେ ଯାଅ ବୋଲି ବୋଲେ ଯୁଧିଷ୍ଠିର ।
ଦୁଃଶଳାଙ୍କ ନାତିକି ସିନ୍ଧୁ ଦେଶ ମନ୍ତ୍ରୀ—
ଯାକରେ କରିଲେ ପାଣ୍ଡବ ନରସାଇଁ ।
ଯଦୁ-କୁଳ କୃଷ୍ଣ ରାମଙ୍କୁ ରତ୍ନ ବସ୍ତ୍ର
ଦେଇ ସନ୍ତୋଷ କଲେ ଧର୍ମଙ୍କର ସୁତ ।
ଦ୍ୱାରକାକୁ ତାହାଙ୍କୁ ପଠାଇ ଦେଲେ
ଖଣ୍ଡେ ଦୂର ଯାଏ ଆପଣେ ସଙ୍ଗେ ଗଲେ ।
ଯୁଧିଷ୍ଠି ରାଜାଙ୍କ ଯାଗର ଉତ୍ସବ
କଥାବାର୍ତ୍ତା ହୋଇ ସକଳ ନରଦେବ ।
ଯେ ଯାହାର ପୁରମାନଙ୍କରେ ପ୍ରବେଶ
ହୋଇଲେ ମାନସରେ ଲଭି ମହାତୋଷ ।
ଏ ଅନ୍ତରେ ପାଣ୍ଡବକୁଳ ନରପତି
ହସ୍ତିନାକୁ ଯେ ଗଲେ ଦ୍ରୁପଦ-ଦୁହିତି ।
ସଙ୍ଗତରେ ଧରିଣ ବଜାଇଣ ବାଜା
ପୁରବାସୀମାନେ ଯେ କରୁଥିଲେ ପୂଜା ।
ଏଠାରେ ଯୁଧିଷ୍ଠିର-ନୃପତିଙ୍କ ଯାଗ
ସମାପତି କଲେ ହେ ବ୍ୟାସ ମହାଭାଗ ।
ତାଙ୍କର ପାଦ-ପଦ୍ମ-ଯୁଗଳକୁ ଧ୍ୟାୟି
କୃଷ୍ଣସିଂହ ନରେଶ ଏ ଗୀତ କହଇ ।

—୦—

## ଯଜ୍ଞ ଭୂମିରେ ନକୁଳ ରହସ୍ୟ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହିଲ ତ ସକଳ ଯାଗର ବିଧାନ ।
ଚମତ୍କାର ହେଲା ହେ କି କଥା ଯାଗରେ
ସେ କଥା ଜାଣିଥିଲେ କହ ମୋ ଆଗରେ ।
ବଇସମ୍ପାୟନ ବୋଇଲେ ଜନ୍ମେଜୟ
କହିବା ଯେ ପୁଚ୍ଛିଲ ତହିଁ ଶଅ ଲୟ ।
ଯୁଧିଷ୍ଠିର ନୃପତିଙ୍କର ଯାଗକାଳେ
ଗରଜିଲା ନେଉଳ ଯାଗ-ସଭା-ତଳେ
ସେ ଶବଦରେ ଯାଗ-ସଭା-ଜନ ଚୟ
କିସ ବୋଲି କରି ପାଇଲେ ମହାଭୟ ।
ବଜ୍ର ପରି ନିଷ୍ଠୁର ନେଉଳର ଧ୍ୱନି
ସ୍ତବଧ କରିଦେଲା ସଭିଁର କର୍ଣ୍ଣବେନି ।
ଟିକଏକ ଉତ୍ତାରୁ କହିଲା ନେଉଳ
ଆହେ ଯୁଧିଷ୍ଠିର ପାଣ୍ଡବ ନରପାଳ ।
ଉଞ୍ଛବୃତ୍ତି ବ୍ରାହ୍ମଣ ଛତୁଆଗୁଣ୍ଡଏ
ପୂର୍ବେ ଦେଲେ ଦ୍ୱିଜଜଣକୁ ଆହେ ରାୟ ।
ସେ ଧର୍ମକୁ ତୁମ୍ଭ ଏ ଯାଗ ନୁହେ ସରି
ମୁଁ ମନେ କରୁଅଛି ଆହେ ଦଣ୍ଡଧାରି ।
ଋଷିମାନେ ଏକଥା ଶୁଣିଣ ହସିଲେ
ନେଉଳ ତୁ ନ ଜାଣୁ ବୋଲିଣ କହିଲେ ।
ବିଧିରେ ତ ଆମ୍ଭେ ଯାଗକୁ କରାଇଲୁ
କାହିଁପାଇଁ ତୁ କହ ନିନ୍ଦା ଆସି କଲୁ ।
ନେଉଳ ବୋଇଲା ବୋଇଲେ ହେଲେ ତୁମ୍ଭେ
ଏ ଯାଗକୁ ଜାଣିଛି ମନ ନାହିଁ ଆମ୍ଭେ ।
ଉଞ୍ଛବୃତ୍ତି ବ୍ରାହ୍ମଣଙ୍କର ଧର୍ମଗୁଣ
ମୋହଠାରୁ ଶୁଣ ସକଳ ଋଷିଗଣ ।
ସେ ଦ୍ୱିଜଙ୍କ ଛତୁ ମୋ ଦେହ ଅଧକରେ ।
ପଡ଼ିବାରୁ ଗଣନା ହେଲା ସେ ସୁନାରେ ।
ଆଉ ଅଧେକ ତ ଛତୁଆ ପଡ଼ି ନାହିଁ
ନଜର ବର୍ଣ୍ଣକୁ ସେ ଅଛି ଜାଣ କହି ।
କୁରୁକ୍ଷେତ୍ରେ ଭାରିଯା ପୁତ୍ରବଧୂ କୁଳେ
ଦ୍ୱିଜ ଜଣେ ରହି ତପସ୍ୟା କଲେ ଭଲେ ।
ଏ ବାହାରେ ଷଷ୍ଠକାଳଟିରେ ଭୋଜନ
କରନ୍ତି ସେ ଦ୍ୱିଜ ଶରୀର କରି କ୍ଷୀଣ ।

ଷଷ୍ଠ କାଳରେ ଯେବେ ଗ୍ରାସ ନ ମିଳଇ
ପୁଣି ଷଷ୍ଠକାଳ କରନ୍ତ ପ୍ରୀତି ବହି ।
ଦୁର୍ଭିକ୍ଷ ପଡ଼ିବାରୁ ଷଷ୍ଠକାଳେ ଅନ୍ନ—
ଭୋଜନ କରିବାର ହୋଇଲା ସ୍ୱପନ ।
ଦିନେ ସେ ଦ୍ୱିଜ ଉଞ୍ଛ ପାଇଁ ଯାଇଥିଲେ
ନ ପାଇବାରୁ ହତାଶରେ ଆସିଲେ ।
କ୍ଷୁଧାର୍ତ୍ତ ହୋଇ ଘେନି ପୁଅ ବଧୂ ଭାର୍ଯ୍ୟା—
ଘରେ ରହିଲେ ନ କରିଣ ଆନେ ମଜ୍ଜା ।
ଏମନ୍ତେ କିଛି କାଳ ଯାନ୍ତେ ସେ ବ୍ରାହ୍ମଣ
ଆସିଲେ ଯେ ଯବଧାନକୁ ସାଉଁଟିଣ ।
ସେ ଧାନକୁ ଛତୁଆ କରି ଚାରିଭାଗ
କଲେ ସେ ଦ୍ୱିଜବର ବହିଣ ସରାଗ ।
ଏହିକାଳେ ଅତିଥି ଜଣେ ସେହିଠାକୁ
ଆସିଲେ ହେ ରାଜନ ଭୋକେ ଖାଇବାକୁ ।
ଅତିଥିଙ୍କି ଦେଖିଣ ସେ ଦ୍ୱିଜ ଆଦରେ
ଘେନି ଯାଇ ତାହାଙ୍କୁ ବସାଇଲେ ଘରେ ।
ଆଗ ସେ ଅତିଥିଙ୍କି ପାଦ୍ୟ ଅର୍ଘ୍ୟ ଦେଇ
ପଛେ ଦେଲେ ଛତୁଆଗୁଡ଼ିଏ କୁଢ଼ାଇ ।
ପତରୁଟିଏ ଦେଲେ ଖାଇବାକୁ ତାଙ୍କୁ ।
ତା ଖାଇ ସନ୍ତୋଷ ସେ ନ କଲେ ଚିତ୍ତକୁ ।
ତାହା ଦେଖିଣ ଉଞ୍ଛବୃତ୍ତି ଦ୍ୱିଜବର
ହୃଦୟରେ ଚିନ୍ତାକୁ କଲେ ଯେ ଅପାର ।
ଭାରଯା ତାହା ଦେଖି କହିଲେ ପତିଙ୍କି
ଦିଅ ମୋତେ ଦେବା ଭାଗଟି ଅତିଥିଙ୍କି ।
ସେ ଦ୍ୱିଜ ବୋଇଲେ ହେ ତୁମ୍ଭ ଭାଗ ମୁହିଁ
କିରୂପେ ଦେବି ଅତିଥିଙ୍କି ପ୍ରୀତି ବହି ।
ତୁମ୍ଭେ ତ କରିଅଛ ବହୁ ଉପବାସ
ଲାଗିବ ମୋତେ ମଲେ ସ୍ତ୍ରୀହତ୍ୟା-ଦୋଷ ।
ଭାରଯା ବୋଇଲେ, ଦେଲେ ତ ତୁମ୍ଭ ଭାଗ
କାହିଁକି ନାହିଁକର ଦେବାକୁ ମୋ ଭାଗ ।
ତୁମ୍ଭେ ତ ନ ଖାଇଲେ ମୁହିଁ ତ ନ ଖାଇବି
ସତ୍ୟ କରି ଜାଣ କହୁଛି ଏହା ଭାବି ।
ଏହିରୂପେ ଭାରଯା କହନ୍ତେ ବଚନ
ଅତିଥିଙ୍କି ଦେଲେ ସେ ଭାର୍ଯ୍ୟାଙ୍କ ଭୋଜନ ।
ଅତିଥି ଭାରଯାଙ୍କ ଭାଗଟିକି ଖାଇ
ରହିଲେ ସେ ଦ୍ୱିଜଙ୍କ ମୁଖକୁ ଅନାଇ ।
ଦ୍ୱିଜ ତାହା ଦେଖିଣ ଏହା କଲେ ଚିନ୍ତା
ଅତିଥି ଖସାଇ ଅଣ୍ଟାରୁ କରିସୂତା ।
ବସିଛନ୍ତି ଖାଇବା-ଲମ୍ପଟେ ପିଢ଼ାରେ
କି ଦେବି ଖାଇବାକୁ ଏହାଙ୍କ ଆଗରେ ।
ପୁଅ ବୋଇଲେ ଆହେ ପିତା ନୁହ ଦୁଃଖୀ
ମୋ ଭାଗ ଦେଇ ଅତିଥିଙ୍କି କର ସୁଖୀ ।
ବୁଢ଼ାକାଳେ ତୁମ୍ଭର କଥାରେ ପାଳନା
କରିବାର ମୋର ଉଚିତ ଆହେ ନନା ।
ପିତା ବୋଇଲେ ତୁ ପିଲା ତ ହୋଇଅଛୁ
ମୋ ସଙ୍ଗତେ ମରିବା କଥା କିମ୍ପା ଇଚ୍ଛୁ ।
ପୁଅ ବୋଇଲେ ଆହେ ମୁଁ ତ ତୁମ୍ଭ ଆତ୍ମା
ମୋତେ କିମ୍ପା ଛାଡ଼ୁଛ ହେ ପିତା ମହାତ୍ମା ।
ଏହା ଶୁଣିଣ ଦ୍ୱିଜ ପୁଅର ଭାଗଟି
ଅତିଥିଙ୍କି ଦେଲେ ବହିଣ ସନ୍ତୋଷଟି ।
ଅତିଥି ତା ଖାଇ ମୁହଁକୁ ଜଳ ଜଳ
ଚାହିଁଲେ ବୁଲାଇ ଉଭକୁ ଦୁଇକଳ ।
ଉଞ୍ଛବୃତ୍ତି ଦ୍ୱିଜ ତା ଦେଖି ଲାଜ ପାଇ
ଭାବିଲେ ଆଉ ଦେବାକୁ ତ ମୋର ନାହିଁ ।
ବଧୂ ବୋଇଲେ ଅହେ ଶ୍ୱଶୁର କପାଇଁ
ଦୁଃଖ ଯେ କରୁଅଛ ଅତିଥିଙ୍କି ଚାହିଁ ।
ମୋର ଭାଗଟି ନେଇ ଦିଅ ଅତିଥିଙ୍କି
ବଢ଼ାଅ ତାହାଙ୍କ ହୃଦର-ପ୍ରୀତିକି ।
ଶ୍ୱଶୁର ବୋଇଲେ ଗୋ, ତୋ ଭାଗ ଛତୁଆ-
ନେବାକୁ ହେଉନାହିଁ ଜାଣ ମୋର ସ୍ପୃହା ।
ତୋର ତ ହୋଇଅଛି ବାଳୁତ ବୟସ
କିରୂପେ ଅତିଥିଙ୍କି ଦେବି ତୋର ଗ୍ରାସ ।
ବଧୂ ବୋଇଲେ ହେ ମୋ ଗୁରୁ ଗୁରୁ ତୁମ୍ଭେ-
ନିଅ ଯେ ଛତୁଆକୁ ବୋଲୁଅଛୁ ଆମ୍ଭେ ।
ବଧୂ ବୋଲରେ ଘେନି ଛତୁଆ ଭାଗଟି
ଅତିଥିଙ୍କି ଦିଅନ୍ତେ ସେ କହିଣ ତୁଷ୍ଟି ।
ବୋଇଲେ ତୁମ୍ଭ ଗ୍ରାସ-ଦାନେ ସୁଖୀ ହେଲି
ଧର୍ମ ମୁଁ ତୁମ୍ଭଙ୍କୁ ବଞ୍ଚାଇ ଆସିଥିଲି ।
ଦେଖ ତୁମ୍ଭ ଦାନ-ବଳରେ ପୁଷ୍ପ-ବୃଷ୍ଟି
ଆକାଶଦେଶୁଁ ହେଉଅଛିଟି ଏ ସୃଷ୍ଟି ।
ତୁମ୍ଭର ଏ ଦେବାଠ ଦେଖି ସୁରଗଣ
ବୋଲୁଛନ୍ତି ଧନ୍ୟ ସେ ଅଟଇ ବ୍ରାହ୍ମଣ ।

ଧର୍ମକୁ ସ୍ୱର୍ଣ୍ଣ ଭୂମ୍ୟାକୁ କର ନାଶ
ଯା ମୋତେ ଦେଲେ ଦ୍ୱିଜ ଏ ଧର୍ମ ବିଶେଷ ।
ଯାହାକୁ ଯା ମିଳେ ତହିଁରୁ ସେ ଦଂଶାଶ
ଦେଲେ ସ୍ୱର୍ଗେ ପୂଜା କରନ୍ତି ସୁର-ଈଶ ।
ରନ୍ତି ଦେବ ରାଜା ସଲିଳ ଦାନ ଦେଇ
ସ୍ୱର୍ଗରେ ବସିଛନ୍ତି ଗୁଣିକ ସ୍ଥଳଇ ।
ନ୍ୟାୟଲବ୍ଧ ଦାନକୁ ଆନ ଦାନମାନ
ନୁହଇ ଆହେ ଦ୍ୱିଜବରଙ୍କି ସମାନ ।
ଲକ୍ଷ ଲକ୍ଷ ଗାଈକୁ ନୃପରାଜା ଦେଲେ
ଗୋଟିଏ ଗାଈ ଦୋଷେ ଏଣ୍ଡୁଅ ହୋଇଲେ
ଶିବିରାଜା ଦେହ-ମାଉଁସ ଟି ଦେଇ
ସ୍ୱର୍ଗ-ପୁରେ ଏବେ ଅଛନ୍ତି ସୁଖ ପାଇ ।
କ୍ରୋଧ ଲୋଭ କରି ଦିଅଇ ଯେତୁ ଦାନ
ତାହାର ଫଳଟି ସେ ହୋଏ କ୍ଷୀଣମାନ ।
ତୁମ୍ଭ ଦେବା ଛତୁଆ ତୁଲେ ରାଜସୂୟ
ଫଳ ସରି ନୁହେ ହେ ଦ୍ୱିଜଙ୍କ ତନୟ ।
ଶକ୍ତୁ ପ୍ରଂସ୍ଥ ତୁମ୍ଭେ ଜିଣିଲ ବ୍ରହ୍ମଲୋକ
ଆସ ବ୍ରହ୍ମଲୋକକୁ ହେ ଦ୍ୱିଜ ନାୟକ ।
ଦିବ୍ୟଯାନ ଆସିଛି ତୁମ୍ଭର ଯିବାକୁ
ବସ ନେଇଣ-ପୁତ୍ର ଭାରିଯା ବଧୂକୁ ।
ଏହିରୂପରେ ଧର୍ମ କହନ୍ତେ ବଚନ
ଉଞ୍ଛବୃତ୍ତି ଦ୍ୱିଜ ହୋଇଣ ତୋଷମନ ।
ବିମାନରେ ବସି ସେ ବ୍ରହ୍ମଲୋକ ଗଲେ
ନୟନ କୋଣରେ ମୁଁ ଦେଖିଅଛି ଭଲେ ।
ସେ ଛତୁଆ ଲାଗନ୍ତେ ମୋ ଦେହ ଅଧିକ
ସୁନା ପରି ଦେଖ ଦିଶୁଛି ଜକଜକ ।
ବାକି ଦେହ ଅଧିକ ନୋହିବାରୁ ସୁନା
ବୁଲୁଅଛି ମହୀ ମୁଁ ହୋଇଣ ଖିନ୍ନମନା ।
ଯୁଧିଷ୍ଠିର ଯାଗ ମୁଁ ଶୁଣିଣ ଆସିଲି
ଦେହ ସୁନା ନୋହିବାରୁ ମୁଁ ନିନ୍ଦାକଲି ।
ଏହିରୂପେ ନେଉଳ କହିଣ ବଚନ
ସେଠାରେ ତା'ର ଦେହ କଲା ସେ ଗୋପନ
ଜନ୍ମେଜୟ ବୋଇଲେ ନୃପତିଏ ଯାଗ
କଲେ ବୋଲଅନ୍ତି ମହୀରେ ମହାଭାଗ ।
ତପ କଲେ ସେ ଲୋକ ତାପକୁ ଛଡ଼ାଇ
ବସନ୍ତି ସ୍ୱର୍ଗପୁରେ ଦେଖାଇ ବଢ଼ାଇ ।

ରାଜାର ଯାଗଠାରୁ ହୋଇ ବଡ଼କଥା
ଥିବା ପରି ଜାଣ ହେ ଲେଖି ନାହିଁ ପୋଥା ।
ଶତଯାଗ କରିଣ ଇନ୍ଦ୍ର ସ୍ୱର୍ଗଶିରି
ଭୋଗ କଲେ ଶଚୀଦେବୀଙ୍କି କୋଳେ ଧରି ।
ଯୁଧିଷ୍ଠିରରାଜା ତ ଇନ୍ଦ୍ରପରି ଯାଗ
କଲେ ନିଜ ବଳରେ ଜାଣି ମହାଭାଗ ।
କାହିଁପାଇଁ ନକୁଳ କଲା ତାହା ନିନ୍ଦା
ଏ ସକାଶୁ ମୋ ମନେ ହେଉଅଛି ଧନ୍ଦା ।
ବଇଶମ୍ପାୟନ ବୋଇଲେ ହେ ଯାଗର
ବିଧାନ ଫଳ ଶୁଣ ନୃପକୁଳବର ।
ପୂର୍ବେ ଇନ୍ଦ୍ର-ଯାଗରେ ପଶୁଙ୍କ ବିକଳ
ଦେଖିଣ କହିଲେ ସକଳ ତପଃଶୀଳ ।
ଇନ୍ଦ୍ର ହୋଇ ତୁମ୍ଭେ ମାରୁଛ କମ୍ପା ପଶୁ
ଭୁଞ୍ଜୁଅଛ ତ ତିନଲୋକଯାକ ବସୁ ।
ମ୍ଳାନ ହୋଇଣ ଦେଖି ଶୁଖାଇ ବଦନ
ପଶୁଏ ମୁଞ୍ଚୁଛନ୍ତି ନୟନରୁ ବନ ।
ଏହି ସକାଶରୁ ଯେ କହୁଛୁ ତୁମ୍ଭଙ୍କୁ
ପିଷ୍ଟପଶୁ କରିଣ ତୋଷ ଦେବତାଙ୍କୁ ।
ଇନ୍ଦ୍ର ଋଷିଙ୍କର ବଚନକୁ ଶୁଣିଲେ
କହୁଛ କି ଗୁଡ଼ାଏ ଋଷିଏ ବୋଇଲେ ।
ଋଷିଏ ଇନ୍ଦ୍ରଙ୍କ ନ ଶୁଣି ସନମତ
ପଚାରିଲେ ରାଜର୍ଷିଣ ବସୁ ମହୀକ୍ଷିତ ।
ପିଷ୍ଟପଶୁ ସାକ୍ଷାତ ପଶୁରେ ଯାଗ କଲେ
କୋଉଟିରେ ଦେବ ନୃପତି କହ ଭଲେ ।
ବସୁଦେବତାଙ୍କର ମନକୁ ଜଣାଇଁ
କହିଲେ ପଶୁଯାଗ ବିହିତ ଅଟଇ ।
ଏହା ଶୁଣି ଋଷିଏ ହୋଇ ମହାକ୍ରୋଧ
ଶାପ ଦେଇଣ ତାଙ୍କୁ ଦେଖାଇଲେ ଅଧଃ ।
ଏହି ସକାଶରୁ ହେ ପରୀକ୍ଷିତ ସୁତ
ଧର୍ମଜ୍ଞାନ ପ୍ରତିକି ଯାଗ ନୋହେ ହିତ ।
ଯୁଧିଷ୍ଠିର ରାଜା ତ ପଶୁହିଂସା କଲେ
ଏହା ଜାଣି ନକୁଳ ଯାଗକୁ ନିନ୍ଦିଲେ ।
ପିଷ୍ଟପଶୁ ଯାଗ ଯେତେକଟି ଥାନ୍ତେ କରି
ନିନ୍ଦା ନ ପାଆନ୍ତେ ପାଣ୍ଡବ-ଦଣ୍ଡଧାରୀ ।
ଅଶ୍ୱମେଧ ଉଷ୍ଟିସେନ ଯେ କକ୍ଷସେନ
ଦଲ୍ଲୀପ ସିନ୍ଧୁ ଜନାବାନ୍ଧ ନୃପଗଣ ।

ନ୍ୟାୟୁଲବ୍ଧ ଦାନ ଦେଇଣ ସ୍ୱର୍ଗଲୋକ
ଭୋଗ କଲେ ହୃଦୟମଧ୍ୟୁ ଗୁଡ଼ି ଶୋକ ।
ଜନ୍ମେଜୟ ବୋଇଲେ ଦାନଫଳ ଶ୍ରେଷ୍ଠ
ବୋଲି କହିଲ ତ ହେ ଋଷିଙ୍କ ବରିଷ୍ଠ ।
ଏହିସକାଶରୁ ଛାଡ଼ନ୍ତୁ ଜନେ ଯାଗକୁ
ଆଚରନ୍ତୁ ଜନେ ମହୀରେ ଦାନଟିକୁ ।
ବଇଶମ୍ପାୟନ କହିଲେ ନରପତି
ପୂର୍ବେ ଯାଗ କଲେ ଅଗସ୍ତ୍ୟ ମହାମତି ।
ଧାର୍ମିକ ଋଷିମାନେ ହେଲେ ତାଙ୍କ ହୋତା
ଏଣୁ ଛାଡ଼ିଲେ ସେହି ପଶୁବଧ ଚିନ୍ତା ।
ପଶୁ ନ ମାରିବାରୁ ଅଦିତିଙ୍କ ବାଳ
ଇନ୍ଦ୍ର କ୍ରୋଧେ ଅଜ୍ଜ ନ ବରଷିଲେ ଜଳ ।
ଋଷି ଏ ଇନ୍ଦ୍ରଙ୍କର ଘଟଣିକ ଜାଣି
ହୋଇଲେ ସେ ତାଙ୍କରେ ଚାଙ୍କରେ ବଖାଣି ।
ବାରବରଷକାଳ କରିବେ ଏ ଯାଗ
ନ ବର୍ଷିବେ ଇନ୍ଦ୍ର ବରଷା କରି ରାଗ ।
ଅନ୍ନ କେଉଁଠାରୁ ଆମ୍ଭଙ୍କୁ ଖୁଆଇବେ
ଏତେ ବୋଲି ବସିଲେ ଚିନ୍ତାଇଣ ସର୍ବେ ।
ଅଗସ୍ତି ଋଷିଙ୍କି ସେ ବସ୍ଥା କରିବାକୁ
ଲାଗିଲେ ହୃଦୟରେ ବସି ଉପାୟକୁ ।
ଅଗସ୍ତି ତାହା ଜାଣି ପାରିଣ ଋଷିଙ୍କି
କହିଲେ ହସି କରି କହିଣ ପ୍ରୀତିକି ।
ନ ବର୍ଷିବେ ଯେବେ ମହୀରେ ଇନ୍ଦ୍ର ଜଳ
ତେବେ ଦେଖ ଋଷିଏ ମୋର ତପୋବଳ ।
ଯେ ଯାହା ଇଚ୍ଛା କରୁଥିବ ମୁଁ ତାହାଙ୍କୁ ।
ତାହା ଦେଉଥିବି ଜାଣ ହେ ଖାଇବାକୁ ।
ଇନ୍ଦ୍ର ହୋଇ ବରଷି ପାରଇଁ ମୁଁ ଜଳ
ଏଥିପାଇଁ କମ୍ପା ସମସ୍ତେ ବସି ଭଲ ।
ଏବେ ମୁଁ ବୋଲୁଅଛି ତ୍ରିଭୁବନ-ଭୂତ
ମୋର ଯାଗରେ ଆସି ହେଉ ଉପସ୍ଥିତ ।
ଅପସରି ଗନ୍ଧର୍ବ କିନ୍ନର ଉରଗ
ଆସନ୍ତୁ ମୋ ଯାଗକୁ କହିଣ ସରାଗ ।
ଏ ବାହାରେ ସ୍ୱର୍ଗରେ ଯେତେ ଦେବେ ଛନ୍ତି
ସ୍ୱର୍ଗଧର୍ମ ଘେନ ସେ ଆସନ୍ତୁ ଝଟତି ।
ଏରୂପେ ଯେଉଁକ୍ଷଣି ବୋଇଲେ ଅଗସ୍ତି
ସେରୂପେ ହେଲା ଜନ୍ମେଜୟ ନରପତି ।

ମୁନିମାନେ ଯେ ଅଗସ୍ତିଙ୍କ ତପୋବଳ
ଦେଖିକରି କହିଲେ ମୋହିଣ ସକଳ ।
ତୁମ୍ଭର ତପୋବଳ ଦେଖି ଆମ୍ଭେ ପ୍ରୀତି
ପାଇଲୁ ଜାଣ ହେ ଅଗସ୍ତି ମହାମତି ।
ଅହିଂସାରେ ଯାହା କଲଟି ତୁମ୍ଭେ ଯାଗ
ଏ ତିନିଲୋକ ଏକା ତୁମ୍ଭେ ମହାଭାଗ ।
ଦେଖି ଅଗସ୍ତିଙ୍କ ତପକୁ ସହସ୍ରାକ୍ଷ
ବିଚାରିଲେ ଅଗସ୍ତି ଋଷିଙ୍କରେ ମୁଖ୍ୟ ।
ଏହାଙ୍କ ମନ ଏବେ ତୋଷିବଇଁ ମୁହିଁ
ନୋହିଲେ ଇନ୍ଦ୍ରପଦ ରହିବ ମୋ ନାହିଁ ।
ଆହେ ଜନ୍ମେଜୟ ଏରୂପେ ବଜ୍ରହସ୍ତ
ଶ୍ରାବଣ ବରଷିଲେ ଜଳ ହୋଇ ବ୍ୟସ୍ତ ।
ଏହା ବାହାରେ ଇନ୍ଦ୍ର ବୃହସ୍ପତି ତୁଲେ
ଅଗସ୍ତିଙ୍କ ପାଖକୁ ଆପଣେ ଆସିଲେ ।
କହିଲେ ନ ଜାଣିବାପଣ ହେଲା ମୋର
କ୍ଷମାକର ଆହେ ଅଗସ୍ତି ମୁନିବର ।
ଏହିରୂପେ ଅଗସ୍ତି ଯାଗ କରିଛନ୍ତି
ଜାଣ ହେ ବୀର ଅଭିମନ୍ୟୁଙ୍କର ନାତି ।
ହିଂସା-ରହିତରେ କରିବେ ଯେତେ ଯାଗ
ନୁହଇଟି-ଦାନ ସେ ଯାଗରକ୍ଷା ଆଗ ।
ଜନ୍ମେଜୟ ବୋଇଲେ ନେଉଳ କିଏ ସେ
କହ ହେ ମୁନିବର ତାହା ମୋତେ ତୋଷେ ।
ବଇଶମ୍ପାୟନ ବୋଇଲେ ହେ ନକୁଳ
କଥା ଶୁଣ କହିବା ପରୀକ୍ଷିତ ବାଳ ।
ପୂର୍ବକାଳରେ ଜମଦଗ୍ନି ଶ୍ରାଦ୍ଧ ପାଇଁ
ଦୁଗ୍ଧ ଦହି ରଖିଲେ ପାତ୍ରରେ ପୂରାଇ ।
ଧର୍ମ ସେ ଦୁଧପାତ୍ରେ ପରିବେଶ ହୋଇ
ପକାଇ ଦେଲେ ଦୁଧପାତ୍ରକୁ ଛିଣ୍ଡାଇ ।
ଜମଦଗ୍ନି ମୁନି ତାହା ଜାଣି ପାରିଲେ
ଭଲମନ୍ଦ କଥା ସେ କିଛି ନ ଭଣିଲେ ।
ଧର୍ମ ତାହା ଦେଖି ଭୟରେ ବୁଜି ଆଖି
ବୋଇଲେ ମୁନି ମୁହ ମୋହଠାରେ ଦୁଃଖୀ ।
ନ ଜାଣି ମୁହିଁ କଲି ତୁମ୍ଭ ଅପରାଧ
ମୋ କହିବାରେ ତୁଅ ଜମଦଗ୍ନି ବୋଧ ।
ଜମଦଗ୍ନି ବୋଇଲେ ନ ଡ଼ରଟି ମୋତେ
ବୋଲୁଅଛି ଘରକୁ ଯାଅ ତୋଷଚିତ୍ତେ ।

ପିତୃଙ୍କ ପାଇଁ ସିନା ରଖିଥିଲ ଦୁଧ
ତାଙ୍କଠାକୁ ଗଲେ ତୁମ୍ଭଙ୍କୁ ହେବେ କୋଧ ।
ଧର୍ମ ଏହା ଶୁଣି ପିତୃଙ୍କ ପାଶେ ଗଲେ
ପିତୃଙ୍କର ଶାପରେ ନକୁଳ ହୋଇଲେ ।
ନକୁଳ ହେବାବେଳେ ପୁଚ୍ଛିଲେ ଧରମ
କହ ମୋହର କେବେ ପ୍ରକାଶିବ କର୍ମ ।
ପିତୃଏ ବୋଇଲେ ଯାଗକୁ ଅଧିକ୍ଷେପ
କରିବ ଯେବେ ତେବେ ହେବ ଶାପଲୋପ ।
ଏ ଯେଣୁ ଯୁଧିଷ୍ଠିର ଯାଗକୁ ଆସିଲେ
ନକୁଳଟି ଶକ୍ତୁ ପ୍ରସ୍ଥକୁ ଟେକ ଦେଲେ ।
ପିତୃମାନେ ତାଙ୍କୁ ଯେରୂପେ କହିଥିଲେ
ସେରୂପେ କହି ସେ ନେଉଳ ମୁକ୍ତ ହେଲେ ।
ଏଠାରେ ପରାଶର-ସୁତ ବେଦବ୍ୟାସ—
ମହର୍ଷି ଅଶ୍ୱମେଧିକପର୍ବ ଶେଷ ।
କରିଲେ ମାନସରେ ଅତି ତୋଷବହି ।
କୃଷ୍ଣସିଂହ ନରେଶ ତାଙ୍କ ପାଦେ ଧ୍ୟାୟି ।



# ବ୍ୟାସାଶ୍ରମ ପର୍ବ

## ବନ୍ଦନା

ଜୟ ଜୟ ହେ କୃଷ୍ଣ ମୁକୁନ୍ଦ ମାଧବ
ଯୋଗୀଙ୍କର ହୃଦୟ-କମଳ-କାଦମ୍ବ ।
ବୃନ୍ଦାବନ-ଗଗନ-କୁମୁଦ-ବାନ୍ଧବ
ତମାଳ-ଘନ-ଶ୍ୟାମ-ବରନ-କେଶବ ।
ମୋ ମତରେ ମୂର୍ତ୍ତି ତୁମ୍ଭର ପାଦେ ଭାବ
ବତାଇଅଛି କିରୂପେ ସେ ନିର୍ବା ହେବ ।
ତୁମ୍ଭର ଦୟା ବିନା ଆହେ ବାସୁଦେବ
ତୁମ୍ଭ ସେବା କରିବାକୁ କା ଶକ୍ତି ହେବ ।

—*—

## ଧୃତରାଷ୍ଟ୍ରଙ୍କର ବନଗମନ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଏଥିଅନନ୍ତରେ ଯେ ପାଣ୍ଡବ ରାଜନ ।
ଧୃତରାଷ୍ଟ୍ର ନୃପେ କିରୂପେ ସମ୍ଭାବନା
କଲେ ଏହା କହ ହେ ଋଷି ମହାମନା ।
ଧୃତରାଷ୍ଟ୍ର ଗାନ୍ଧାରୀ ପାଣ୍ଡବମାନଙ୍କୁ
ଘର ଧରଣ ଅବା ଛାଡ଼ିଲେ ସେ କିଙ୍କୁ ।
ପାଣ୍ଡୁସୁତେ ଯେ କେତେ କାଳ ରାଜ୍ୟଭୋଗ
କଲେ ଜଣା ନ ଗଲା ଋଷି ମହାଭାଗ ।
ଏସମାନ ମୋତେ ହୃଦରେ ଦୟାବନ୍ତ
କହ ଋଷି ବିସ୍ତାର କରିଣ ବତାଇ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ପାଆନ୍ତେ କୁରୁ-ମହୀ ପାଣ୍ଡୁଙ୍କ ତନୟ ।
ଧୃତରାଷ୍ଟ୍ର ରାଜାଙ୍କ ପଛର ପ୍ରଜାଙ୍କୁ—
ପାଳିଲେ ଧର୍ମସୁତ ବନ୍ଧୁ ସଗରକୁ ।
ଏହା ବାହାରେ ଆନ କାର୍ଯ୍ୟ ଯେ ପଡ଼ଇ
ତା ମଧ୍ୟ ନ ପଚାରି ନ କରନ୍ତି ସେହି ।
ଏରୂପେ ପନ୍ଦର ବରଷ ପୂର୍ଣ୍ଣ ଯାଏ
ଧୃତରାଷ୍ଟ୍ର ବୋଲରେ ଚଳିଲେ ସଭିଏ ।
ପାଣ୍ଡୁସୁତେ ଧରମ କଥାକୁ ଅନାଇଁ
ଏ କଥାରେ ଜାଣ ସନ୍ଦେହ କିଛି ନାହିଁ ।
ଗାନ୍ଧାରୀଙ୍କ ସମ୍ମାନନାରେ କୁନ୍ତୀ ନିତି
ରହିଲେ ଜାଣ ବନ୍ଧୁ ମାନସେ ପୀରତି ।
ଦ୍ରୌପଦୀ ସୁଭଦ୍ରାଙ୍କ ତୁଲରେ ସଭିଏ
ସେ ଦୁଇ ଶାଶୁଙ୍କୁ ସେବିଲେ ଅତିଶୟେ ।
ଯୁଧିଷ୍ଠିର ଉତ୍ତମ ପଦାର୍ଥ ମିଳିଲେ
ହୃଷ୍ଟେ ଧୃତରାଷ୍ଟ୍ରଙ୍କୁ ଦିଅନ୍ତି ତା ଭଲେ ।
ଯୁଯୁତ୍ସୁ ବିଦୁର ସଞ୍ଜୟ ଧୃତରାଷ୍ଟ୍ର
ଆଜ୍ଞାକୁ କେତେବେଳେ ନ କରନ୍ତି ନଷ୍ଟ ।
କୃପ ବେଦବ୍ୟାସ ଧୃତରାଷ୍ଟ୍ରଙ୍କ ଆଗେ
କହନ୍ତି ପୁରାତନ କଥା କଥାବାଗେ ।
ଧୃତରାଷ୍ଟ୍ର ଅନୁଜ୍ଞା କରନ୍ତି ଯାହା
ବିଦୁର ସେକ୍ଷଣି ଦିଅନ୍ତି କରି ତାହା ।
ପୂର୍ବସୁଖ ସମାନ ଧୃତରାଷ୍ଟ୍ର ସୁଖ
ପାଆନ୍ତେ ଛାଡ଼ିଦେଲେ ହୃଦୟରୁ ଦୁଃଖ ।
ରାଜାମାନେ ଯେବେ ଆସନ୍ତି ହସ୍ତିନାକୁ
ଆଗ ଭେଟି ଯାଆନ୍ତି ସେ ଧୃତରାଷ୍ଟ୍ରଙ୍କୁ ।
ଚିତ୍ରାଙ୍ଗଦା ଉଲୂପୀ ଦୁହେଁ ଥିଲେ ରହି
କୁନ୍ତୀ ଗାନ୍ଧାରୀଙ୍କି ସେବିଲେ ନିତି ଯାଇ ।
ଯୁଧିଷ୍ଠିର ଭାଇଙ୍କି କହୁଥାନ୍ତି ନିତି
କିରୂପେ ପୁତ୍ରଶୋକ ଛାଡ଼ି କରି ପ୍ରୀତି ।
ହୃଦୟେ ବଞ୍ଚିବେ ରାଜନ ଧୃତରାଷ୍ଟ୍ର
ସେ ରୂପେ କରୁଥିବ ପାଇଲେଟି କଷ୍ଟ ।
ଭୀମ ସେ ବାଣୀଟିକି କଲେ ଅନାଦର
ଜୁଆଖେଳ କଥାକୁ ସ୍ମରି ନିରନ୍ତର ।
ଧୃତରାଷ୍ଟ୍ରରାଜାଙ୍କ ପାଶକୁ ନ ଯାନ୍ତି
ପଡ଼ିଲେ ତାଙ୍କ କଥା ହୃଷ୍ଟ ସେ ହୁଅନ୍ତି ।
ଆଉ ଭାଇମାନେ ଭାଇଙ୍କ ବାଣୀ ମାନି
ସେବା କରିଲେ ଧୃତରାଷ୍ଟ୍ର ନରମଣି ।
ଧୃତରାଷ୍ଟ୍ର ଦ୍ୱିଜଙ୍କୁ ଦେଉଥିଲେ ଯାହା
ଯୋଗାଉଥିଲେ ତା ଦ୍ରୌପଦୀ-ପ୍ରାଣନାହା ।
ଧୃତରାଷ୍ଟ୍ର ନୃପେ ଯେ ହୋଏ ବିପରୀତ
ତାକୁ ତ୍ୟାଗ କରନ୍ତି ଧର୍ମଙ୍କର ସୁତ ।
ପୁତ୍ର ଶ୍ରାଦ୍ଧଙ୍କରେ ତତ୍ପର ଧୃତରାଷ୍ଟ୍ର
ଦ୍ୱିଜଙ୍କୁ ଦେଉଥାନ୍ତି ଧନ ହୋଇ ହୃଷ୍ଟ ।

ଧୃତରାଷ୍ଟ୍ରଙ୍କର ସୁପ୍ରିୟ ହେବାପାଇଁ
ପାଣ୍ଡବେ ତପ ଶ୍ରଦ୍ଧାକୁ ନଛେଧିଲେ ନାହିଁ ।
ଧୃତରାଷ୍ଟ୍ରଙ୍କର ଯିବାକୁ ପୁତ୍ର ଶୋକ
ପ୍ରତ୍ୟହ ଭାବୁଥାନ୍ତି ପଣ୍ଡୁସୁତ ଯାକ ।
ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କର ଛିଦ୍ରକୁ
ନ ଦେଖିଣ ସେବାରେ ପାଇଲେ ତୋଷକୁ ।
ପୁତ୍ରଶୋକ ଛାଡ଼ି ଗାନ୍ଧାରୀ ପୁତ୍ର ପରି
ମଣିଲେ ପାଣ୍ଡବମାନଙ୍କୁ ଦେଖିକରି ।
ଧୃତରାଷ୍ଟ୍ର ପ୍ରଭାତ କାଳରୁ ଉଠନ୍ତି
ପାଣ୍ଡବଙ୍କ ଜୟର ପ୍ରଶଂସା କରନ୍ତି ।
ଏ ବାହାରେ ପୃଭୁଗମାନଙ୍କ ଆୟୁଷ
ବଢ଼ିବାକୁ ଦଅନ୍ତି ଧନ ବସ୍ତ୍ର ତୋଷ ।
ପାଣ୍ଡବଙ୍କର ସୁଖ ଦେଖି ପରି ସୁତେ
ନ ଦେଇଥିଲେ ବୋଲି ଖେଦନ୍ତେ ସେ ଚିତ୍ତେ
ଏହା ଶୁଣି ହସ୍ତିନାବାସୀ ବହୁ ପ୍ରୀତି
ପଣ୍ଡୁସୁତ ଧୃତରାଷ୍ଟ୍ରଙ୍କୁ ପ୍ରଶଂସନ୍ତି ।
ଯୁଧିଷ୍ଠିରଙ୍କ ଭୟରେ ଦୁର୍ଯ୍ୟୋଧନ—
ରାଜାଙ୍କୁ ନିନ୍ଦା ନ କଲେଟି ଚର୍ଚ୍ଚି ଜନ ।
ଭୀମଙ୍କର ଦୁଷ୍ଟତା ଧୃତରାଷ୍ଟ୍ରଙ୍କରେ
ଦେଖିକରି ବିଦୁର ଭାବନ୍ତି ମନରେ ।
ଜ୍ୟେଷ୍ଠବାପୁ ଅନ୍ଧ ତାହାଙ୍କଠାରେ କ୍ରୋଧ
ଯା କରୁଅଛି ଭୀମ ଅଟଇ ଦୁର୍ବୋଧ ।
ଧୃତରାଷ୍ଟ୍ର ଯେଉଁକାଳରେ ଅପତ୍ୟଙ୍କୁ
ସୁମରନ୍ତି ଡରନ୍ତି ଭୀମଙ୍କ ବଳକୁ ।
ପୂର୍ବ ବଇରକୁ ସୁମରିଣ ସେ ଭୀମ
ଲବେହେଁ ନ କରନ୍ତି ଧୃତରାଷ୍ଟ୍ରେ ପ୍ରେମ ।
ଭାଇଙ୍କି ଲୁଚାଇଣ ଧୃତରାଷ୍ଟ୍ରଙ୍କର
ଅପ୍ରିୟକୁ ଯେ କରୁଥାନ୍ତି ନିରନ୍ତର ।
ଧୃତରାଷ୍ଟ୍ର ରାଜାଙ୍କୁ ଶୁଭାଇ ସେ ଭୀମ
ବାହୁଶବ୍ଦ କରି କରନ୍ତି ଗରଜନ ।
ଏ ବାହାରେ କଥା ଉଚ୍ଚାରି ବୋଲୁଥାନ୍ତି
ଏ ବାହୁ ଦେଲା ଦୁର୍ଯ୍ୟୋଧନଙ୍କୁ ବିପତ୍ତି ।
ଧୃତରାଷ୍ଟ୍ର ଗାନ୍ଧାରୀ ଶୁଣି ଏ ବଚନ
ବୋଲନ୍ତି କିଛି ନୋହେ ଦୁର୍ବୁଦ୍ଧି ଟି ଭୀମ ।
ଯୁଧିଷ୍ଠିର ଆମ୍ଭଙ୍କୁ କରନ୍ତି ଯେ ପୂଜା
ଦେଖିଲେ ତାହା କ୍ରୋଧ ଧରେ ଭୀମ ମଜା ।

ଭୀମଙ୍କ ଏ ବଚନ ପାଣ୍ଡବମାନଙ୍କୁ
ନ କହନ୍ତି କେହି ଡରିଣ ସେ ଭୀମଙ୍କୁ ।
ଏରୂପେ ପନ୍ଦର ବରଷ କଲେ ଶେଷ
ଧୃତରାଷ୍ଟ୍ର ଭୀମଙ୍କୁ ଲଭିଣ ବିରସ ।
ଦିନେ ଧୃତରାଷ୍ଟ୍ର ଏକ ସଭା କରାଇ
କହିଲେ ସଭାମଧ୍ୟେ କୁରୁଙ୍କୁ ଅନାଇଁ ।
ମୋହର ଦୁଷ୍ଟପଣ ଜାଣିଛ ତ ତୁମ୍ଭେ
ଆଜ କସ ଗୁଡ଼ାଏ କହିବୁଁ ହେ ଆମ୍ଭେ ।
ବିଦୁର ଭୀଷ୍ମ ଦ୍ରୋଣ କୃପ ବେଦବ୍ୟାସ
କୃଷ୍ଣ ବୁଦ୍ଧି ନ କରି ସୁତେ ଗଲେ ନାଶ ।
ମୁଁ ମଧ୍ୟ ପୁତ୍ରଙ୍କର ଶିକ୍ଷାରେ ପଡ଼ିଲି
ପାଣ୍ଡବଙ୍କଠାରେ ମୁଁ ହିଂସାବୁଦ୍ଧି କଲି ।
ଏବେ ପାଣ୍ଡବଙ୍କ ସେବାରେ ହେଲି ତୋଷ
ପୂର୍ବ ବଇରୁଟି କରୁଛି ମୋତେ କୃଶ ।
ବୟସ ତ ଆସି ଗଲାଣି ମୋର ପାଇ
କେଉଁ କାର୍ଯ୍ୟ କରିବି ଅବା ଘରେ ଥାଇ ।
ଦୁଇ ବୃନ୍ଦନେ ଥରେ ମୁଁ ଗ୍ରାସ କରେ
ଗାନ୍ଧାରୀ ବିନା ଖ୍ୟାତ ନୋହେ ସେ ଲୋକରେ
ଏହା କହି କୁରୁମାନଙ୍କୁ ଧୃତରାଷ୍ଟ୍ର
ବୋଇଲେ ଶୁଣ ଆହେ ପାଣ୍ଡବ-ବରିଷ୍ଠ ।
ତୁମ୍ଭେ ମୋତେ ସେବାରେ ମହାସୁଖ ଦେଇ
ପୁତ୍ରଙ୍କର ମରଣ ଦେଲ ପାଶୋରାଇ ।
ପୁତ୍ରଙ୍କ ଥିବାବେଳ ପ୍ରତାପ ମୋହର
କରାଇଲ ଦ୍ୱିଗୁଣ କରି ଅଧିକାର ।
ମୋ ବୋଲରୁ ତୁମ୍ଭେ ବାହାର ନୋହି କ୍ଷଣେ
ମୋର ବୋଲିବା କଥା କରି ଆଚରଣେ ।
ଏବେ ମୁଁ କହୁଛି ବୃଦ୍ଧ ତ ହୋଇଲିଣ
ବନମଧ୍ୟେ ଯିବି ତେଜି ଏ ରାଜଧାନୀ ।
ତୁମ୍ଭେ ନ ବୋଇଲେ ଯିବାକୁ ଅରଣ୍ୟକୁ
ନାହିଁ ମୋର ସାମର୍ଥ୍ୟ କହୁଛି ତୁମ୍ଭଙ୍କୁ ।
ବନେ ରହି ତୁମ୍ଭଙ୍କୁ କରିଣ କଲ୍ୟାଣ
ବଢ଼ାଇବି ତୁମ୍ଭର ଆୟୁଷ ଦ୍ୱିଗୁଣ ।
ଆମ୍ଭ କୁଳରେ ଅଛି ବୟସ-ପ୍ରାନ୍ତରେ
ପୁତ୍ରକୁ ଦେଇ ରାଜ୍ୟ ରହିବ ବନରେ ।
ତୁମ୍ଭେ ସବୁଅଂଶେ ହୋଇଛ ପାରିବାର
ଭୁଞ୍ଜ ଏ ମହୀ, ବନେ ମୁଁ କରିବି ଘର ।।

ଯୁଧିଷ୍ଠି ବୋଇଲେ ରାଜନ ତୁମ୍ଭ ଦୁଃଖ
ଆଜଯାଏ ଜାଣି ମୁଁ ନାହିଁ ବଡ଼ମୂର୍ଖ ।
ଚତୁର୍ଥକାଳ କରି ବଞ୍ଚୁଅଛୁ ଜନ
ମୋ କରମ କେଡ଼େ ଅଟଇ ହୀନମାନ ।
ରାଜ୍ୟ ଭୋଗଯାକ ଯାହା ତ କଲି ମୁହିଁ
ଏବେ ଜାଣିଲି ତାହା ଗଲା ବ୍ୟର୍ଥ ହୋଇ ।
ମାତା ପିତା ଗୁରୁ ତୁମ୍ଭର ବିନୁ ଆନ
ଆମ୍ଭର ନାହିଁ ହେ ରାଜନ ମନେ ଘେନ ।
ଏବେ ଯୁଯୁତ୍ସୁଙ୍କୁ ଦେଉଛୁ ମୁହିଁ ରାଜ୍ୟ
ତାଙ୍କୁ ଘେନ ପାଳନା କର ମହାରାଜ ।
ବନମଧ୍ୟେ ଯାଇ କରିବି ମୁହିଁ ତପ
ଭ୍ରାତୃବଧ-ଦୋଷକୁ କରିବାକୁ ଲୋପ ।
ତୁମ୍ଭେ ଥିବାଠାରେ ନୋହେଁ ତ ରାଜା ମୁହିଁ
ତୁମ୍ଭଙ୍କୁ ଯାଅ ବୋଲି ବୋଲିବଟି କେହିଁ ।
ଦୁର୍ଯ୍ୟୋଧନ ପରି ଆମ୍ଭେ ତୁମ୍ଭର ସୁତ
ଆମ୍ଭେ ଥାଉଁ କ୍ଷମା କରୁଛ ଦୁଃଖଚିତ୍ତ ।
ତୁମ୍ଭେ ଯେବେ ବନକୁ ଯିବ ନରସାଇଁ
ମୁଁ ଯିବି ତୁମ୍ଭ ସଙ୍ଗେ ବନକୁ ଗୋଡ଼ାଇ ।
ଧୃତରାଷ୍ଟ୍ର ବୋଇଲେ ଯାଉଛି ସନ୍ତୋଷ
ମୁଁ ହୋଇ, ଜାଣ ହେ ପାଣ୍ଡୁଙ୍କ ଜ୍ୟେଷ୍ଠଶିଷ୍ୟ
ବନମଧ୍ୟରେ ଯାଇ କରିବି ମୁଁ ତପ
ଛଡ଼ାଇବି ଦେହରେ ଅଛି ଯେତେ ପାପ ।
ଯୁଧିଷ୍ଠିରଙ୍କର ନ ଶୁଣି ସ୍ୱୀକାର
ଦୁଃଖ କରିଣ ଧୃତରାଷ୍ଟ୍ର ନରବର ।
କୃପ ସଞ୍ଜୟଙ୍କୁ ବୋଇଲେ ରାଜନଙ୍କୁ
କହ କେଉଁରୂପେ ଯିବି ମୁଁ ଅରଣ୍ୟକୁ ।
ଏହା କହିଣ ଧୃତରାଷ୍ଟ୍ର ନରସିଂହ
ଗାନ୍ଧାରୀଙ୍କି ଆଉଜି ଭଜିଲେ ଯେ ମୋହ !
ଯୁଧିଷ୍ଠିର ତା ଦେଖି କହିବେ ଲୋକଙ୍କୁ
ଧିକ ହେଉ ଜନା ଆମ୍ଭର ଜୀବନକୁ ।
ସହସ୍ର ନାଗବଳ ନୃପ ଧୃତରାଷ୍ଟ୍ର
କହିଣ ଖେଦ କରିଛନ୍ତି ଜ୍ଞାନ କଷ୍ଟ ।
ଗାନ୍ଧାରୀଙ୍କି ଆଉଜି ରହିଛନ୍ତି ଯାହା
ଏହା କି ବଚନେ ପାରିବ ହେଇ କୁହା ।
ଏହା କହିଣ ଯୁଧିଷ୍ଠିର ନରଶିଖ
ପାଣି ଦେଇ ପୋଛିଲେ ଧୃତରାଷ୍ଟ୍ର-ମୁଖ ।

ଏଥି ସକାଶୁଁ ଧୃତରାଷ୍ଟ୍ରଙ୍କର ଜ୍ଞାନ
ସଞ୍ଚରିଲେ ଗୁଲିଲେ ସେ ବେନି ନୟନ ।
ବୋଇଲେ ଆହେ ନୃପ ତୁମ୍ଭର ପରଶ
ବଡ଼ ହର୍ଷ ଜାତ କଲା ମୋର ମାନସ ।
ବ୍ରତଧନ ହେଲି ମୁଁ ଅନ୍ନ ଖାଇ ନାହିଁ
ତୁମ୍ଭଙ୍କୁ ପୋଟାଳିବି ଶକ୍ତି ହେବ ନାହିଁ ।
ନୋହିଲେ ପୋଟାଳିଣ ତୁମ୍ଭର ମୁର୍ଦ୍ଧାକୁ
ଆଘ୍ରାଣ କରି ମୁଁ ଦିଅନ୍ତି ଚୁମ୍ବନକୁ ।
ଏହା ଶୁଣିଣ ଯୁଧିଷ୍ଠିର ଦଣ୍ଡଧାରୀ
ଘସିଲେ ଧୃତରାଷ୍ଟ୍ର ଦେହେ ଥିର କରି ।
ଧୃତରାଷ୍ଟ୍ରରାଜା ସେହିକ୍ଷଣି ସାଷ୍ଟମ
ହୋଇ ପୋଟାଳିଲେ ତାହାଙ୍କୁ ବହି ପ୍ରେମ ।
ବିଦୁରାଦି ତା ଦେଖି କରି ଉଚ୍ଚେ ଡାକ
ବୋଇଲେ ନୃପ କମ୍ପା ବନେ ଯିବ ଏକା ।
ଧୃତରାଷ୍ଟ୍ର ପୁଣି ବୋଇଲେ ଯୁଧିଷ୍ଠିର
ବନେ ଯିବି ଆଜ୍ଞା ଦିଅ ହେ ତାତପର ।
ଏହା ଶୁଣି ହସ୍ତିନାବାସୀଙ୍କ ତାଟକା
ଝାଳ ବହି ହୃଦରେ ଆଶ୍ରୁ କଲା ଦକା ।
ଯୁଧିଷ୍ଠିର ବୋଇଲେ ଭୋଜନ କର ପିତା
ପଛେ ପକାଇବା ବନକୁ ଯିବା ଚିନ୍ତା ।
ଧୃତରାଷ୍ଟ୍ର ବୋଇଲେ ଭୁଞ୍ଜି ଯିବି ବାବୁ
ତୋଟତ ଲାଗଇଟି ମୋହର ଘାରି ସବୁ ।
ଏଥି କାଳରେ ବ୍ୟାସ ଆସି ଯୁଧିଷ୍ଠିର —
ନୃପଙ୍କୁ ଚାହିଁଣ କଲେ ଏ ଉତ୍ତର ।
ଧୃତରାଷ୍ଟ୍ର ରାଜା ଯେ କଥା ବୋଲୁଛନ୍ତି
ତାହା ତୁମ୍ଭେ କର ମାନସେ ବହି ପ୍ରୀତି ।
ତାଙ୍କର ତ ଆସି ହେଲାଣି ମୃତ୍ୟୁକାଳ
ଏହାଙ୍କୁ ନ ରଖ ହେ ପାଣ୍ଡବ-ନୃପାଳ ।
ଯେବେ ତୁମ୍ଭେ ବଳାଇ ରଖିବ ଏହାଙ୍କୁ
ପାଇବଟି ଲୋକରେ ମହତ ନିନ୍ଦାକୁ ।
ଅବଶ୍ୟ ପୁତ୍ରଶୋକେ ଏ ଯିବେଟି ନାଶ
ଏ ଘେନ ନାଶ ଯିବ ତୁମ୍ଭ ଆୟୁଯଶ ।
ଯୁଧିଷ୍ଠିର ବୋଇଲେ ବୋଲିବ ଯା ତୁମ୍ଭେ
ନାହିଁକରି ତାହା ପାରିବୁଁ କବା ଆମ୍ଭେ ।
ବ୍ୟାସ ବୋଇଲେ ଆହେ ବନେ ରହି ତପ
କରି ମରିବା ଆଚରନ୍ତି ବହୁ ନୃପ ।

ଧୃତରାଷ୍ଟ୍ରରାଜା କରିଲେ ଯେବେ ତାହା
ନାହିଁ କମ୍ପା କରିବ ଆହେ ନରନାହା ।
ଅନେକ ତ ଭୋଗ କଲେଣି ଧୃତରାଷ୍ଟ୍ର
ତପ କରି ଦେଖନ୍ତୁ ଯାଇ ସ୍ୱର୍ଗରାଷ୍ଟ୍ର ।
ଏହା କହିଣ ବ୍ୟାସ ଅନ୍ତର୍ହିତ ହୋଇ
ଯାଆନ୍ତେ ଯୁଧିଷ୍ଠିର ଦୁଃଖ ଛାଡଦେଇ ।
ଧୃତରାଷ୍ଟ୍ରରାଜାଙ୍କୁ ବୋଇଲେ ବନକୁ
ଯିବ ଯେବେ ବୋଲୁଅଛ ଆହେ ଆମ୍ଭଙ୍କୁ ।
ବେଦବ୍ୟାସ ଗୋସାଇଁ ଏଥେଁ ଆସିକରି
କହିଲେ ବୋଲି ତାଙ୍କୁ ଯାନ୍ତୁ ସେ ବାହାରି ।
ବନମଧ୍ୟେ ଯାଇ କରନ୍ତୁ ଘୋର ତପ
ଏ ସକାଶୁଁ ଜାଣ ଛାଡଲ ମୋର ତାପ ।
ଧୃତରାଷ୍ଟ୍ର ରାଜା ଶୁଣିଣ ତୋଷ ବହି
ଘରକୁ ଗଲେ ଧୀରେ ପଦହଣ୍ଡ ପକାଇ ।
ତାହାଙ୍କ ସଙ୍ଗେ କୃପ ବିଦୁର ସଞ୍ଜୟ
ଗୋଡ଼ାଇଣ ଗଲେ ହୃଦରେ ବହି ପ୍ରିୟ ।
ପୂର୍ବାହ୍ନକର୍ମ ସାରି ଧୃତରାଷ୍ଟ୍ର ରାୟେ
ଭୁଞ୍ଜି ସନ୍ତୋଷ କଲେ ଆପଣାର କାୟେ ।
କୁରୁମାନେ ଯେ କୁରୁସ୍ତ୍ରୀଙ୍କ ସଙ୍ଗତେ
ଏ ଅନ୍ତରେ ଭୋଜନ କଲେ ତୋଷଚିତ୍ତେ ।
ତଦନ୍ତେ ଯୁଧିଷ୍ଠିର ନୃପଙ୍କୁ ଡକାଇ
ଧୃତରାଷ୍ଟ୍ର ରାଜନ ପାଶରେ ବସାଇ ।
କହିଲେ ବାବୁ ରାଜ୍ୟ ସାବଧାନ ହୋଇ
ପାଳନ କରୁଥିବ ଧର୍ମକୁ ଅନାଇଁ ।
ବିଦ୍ୟା-ବୃଦ୍ଧମାନେ ଯେ ବୋଲୁଥିବେ ଯାହା
ସାବଧାନ ହୋଇଣ କରୁଥିବ ତାହା ।
ଏକାଦଶ ଇନ୍ଦ୍ରିୟକୁଟି ଜଗିଥିବ
ପରଦ୍ରବ୍ୟେ କେବେହେଁ ନ ବଳାଇ ଭାବ ।
ଚାରକୁ ପଠାଇ ପରରାଜ୍ୟ କଥା
ବୁଝୁଥିବ ନିତ ହେ ରାଜା-ମହାରଥୀ ।
ପୁରୁଟି ଅତି ଗୁପ୍ତ ହୋଇବାର ପାଇଁ
ବିବିଧ ଦୁଆର କରିବ ପ୍ରୀତି ବହି ।
ଦୁଆରେ ରଖିଥିବ ବାଛି ଭଲଲୋକ
ନ ଥିବ ଯେଉଁରୂପେ ଶତ୍ରୁଠାରେ ଦକ ।
ବାହାର ଆହାରରେ ଜଗିବ ଆତ୍ମାକୁ
ଜଗାଇବ ସ୍ତ୍ରୀଙ୍କି ଉତ୍ତମ ଲୋକଙ୍କୁ ।

ଧର୍ମ ଅର୍ଥ ଜାଣିବା ଦ୍ୱିଜେ କରି ଗୋଷ୍ଠି
ବିଚାର କରୁଥିବ ସେ ଭଲ କଥାଟି ।
ବିଚାର ଘରୁଟିକ ଅଛନ୍ନ କରିବ
ରାତିରେ କଦାପି ବିଚାର ନ କରିବ ।
ବିଚାର ଫୁଟ ହେଲେ ଯାଏ ରାଜା ପ୍ରାଣ
ଏ କଥାରେ କିଛି ସନ୍ଦେହ ନାହିଁ ଜାଣ ।
ପୁରୁଦେଶରେ ଯେତେ ଲୋକ ରହିଛନ୍ତି
ତାହାଙ୍କ ଭଲ ମନ୍ଦ ବୁଝୁଥିବ ନିତି ।
ଆପଣାଲୋକ ହାତେ ଯଥା ନ୍ୟାୟ ଦଣ୍ଡେ
ଦୋଷୀକି ଦଣ୍ଡଦାନ କରୁଥିବ ଖଣ୍ଡେ ।
ଦୋଷୀ ହେବା ଲୋକକୁ ଦଣ୍ଡିବାକୁ କାଳ
ନୋହିଥିଲେ ନ ଦଣ୍ଡିବ ହେ ନରପାଳ ।
ପ୍ରାତଃକାଳୁ ବୁଝିବ ଆୟବ୍ୟୟଯାକ
ପଛେ ସ୍ନାନ କରିବ ପାଣ୍ଡବନାୟକ ।
ସ୍ନାନଅନ୍ତେ ଅଳଙ୍କାରକୁ ଅଙ୍ଗେ ଭରି
ବସିବ ପ୍ରଜା କରି ଗୁଣ୍ଡ ଡେଚକରି ।
ଯେଉଁରୂପେ ଭଣ୍ଡାର ହେଉଥିବ ବୃଦ୍ଧି
ତହିଁକି ନିତି ବସି କରୁଥିବ ବୁଦ୍ଧି ।
ଚାରମାନଙ୍କରେ ଯେ ଶତ୍ରୁଙ୍କର ବଳ
ଜାଣିକରି ପୁରାଇବ ତାହାଙ୍କ କାଳ ।
ଦୃଢ଼ବ୍ରତ ସ୍ୱର୍ଣ୍ଣିଣ ଲୋକ ସଇନରେ
ନାୟକ କରୁଥିବ ତୋଷିଣ ଧନରେ ।
ଷଡ଼ଗୁଣଯାକରେ ହୋଇ ପରିପୂର୍ଣ୍ଣ
ଲୋକଙ୍କର ବୁଝାଉଥିବ ନିତି ମନ ।
ଆପଣାକୁ ପ୍ରକଟି ବଳୀୟାର ଶତ୍ରୁ
ହେଲେ ତାକୁ ପ୍ରୀତିରେ ଭେଟାଇବ ମିତ୍ର ।
ଶତ୍ରୁ ଯେବେ ପାଦରେ ଶରଣ ପଶିବ
ତେବେ ତାକୁ ଉତ୍ତମ କରିଣ ରଖିବ ।
ଇହ ପର ଦୁଇଲୋକରେ ଯାହା ଶ୍ରେୟ
ହୋଇବ ତାହା କରୁଥିବ ବହି ପ୍ରିୟ ।
କୃଷ୍ଣ ଶାସ୍ତ୍ର ବିଦୁର ରାଜନୀତିଯାକ
କହିଛନ୍ତି ଜାଣିଛ ପାଣ୍ଡବ-ନାୟକ ।
ଏମନ୍ତ ହେଲେ ମୂର୍ଖ ପୁତ୍ର ବୋଲି କରି
କହିଲଟି ଜାଣି ହେ କ୍ଷମନ୍ତୁ ତୁମ୍ଭେ ହରି ।
ସହସ୍ରେ ଅଶ୍ୱମେଧ କଲେ ପ୍ରଜାଙ୍କର
ପାଳନା-ଧର୍ମଟି ସମାନ ଯୁଧିଷ୍ଠିର ।

ଯୁଧିଷ୍ଠିର ବୋଇଲେ ଉଚିତ ଅନୁଚିତ
ଶିକ୍ଷା ଦେଲ କରିବୁଁ ଏ ଆମ୍ଭ ସମ୍ମତ ।
ଶାସ୍ତ୍ର କୃଷ୍ଣ ନ ଥିବାଠାରେ ତୁମ୍ଭ ବିନା
ମୋତେ କେ କହନ୍ତା ହେ ରାଜମହାମନା ।
ଧୃତରାଷ୍ଟ୍ର ବୋଇଲେ ଆହେ ଯୁଧିଷ୍ଠିର
ସୁହୃକାର୍ଯ୍ୟମାନ ଯେ କଲ ତୁମ୍ଭେ ମୋର ।
ଏବେ ମୁଁ ବୋଲୁଅଛି ତୁମୀ ହୋଇ ରହ
ବନକୁ ଯିବି ମୋତେ ଅନୁଜ୍ଞାକୁ ଦିଅ ।
ଏମନ୍ତ ସମୟରେ ପୁଚ୍ଛିଲେ ଗାନ୍ଧାରୀ
ବନକୁ କେବେ ଯିବ କହ ଦଣ୍ଡଧାରୀ ।
ଧୃତରାଷ୍ଟ୍ର ବୋଇଲେ ବନେ ଯିବି ମୁହିଁ
ନିକଟେ ଗାନ୍ଧାରୀ, ସନ୍ଦେହ କିଛି ନାହିଁ ।
ଯୁଧିଷ୍ଠିର ରାଜା କଲେକ ସନମତ
ଆଉ ତୁମ୍ଭେ ବସି ନ କର ଦୁଃଖଚିତ୍ତ ।
ଏତେ ବୋଲି ହସ୍ତିନାବାସୀଙ୍କି ଡକାଅ
କହିଲେ ଧୃତରାଷ୍ଟ୍ର ନମ୍ରଚିତ୍ତ ହୋଇ ।
ବ୍ୟାସ ଯୁଧିଷ୍ଠିରଙ୍କ ସନମତେ ମୁହିଁ
ବନକୁ ଯାଉଅଛି ଧର୍ମ ହେବାପାଇଁ ।
ତୁମ୍ଭେମାନେ ମୋତେଟି ନ କର ନିଷେଧ
ବୃଦ୍ଧ ବୋଲିକରି କରିଣ ମୋତେ ସଧ ।
ଦୁର୍ଯ୍ୟୋଧନ ପ୍ରତିକ ଯୁଧିଷ୍ଠିରରାଜା
କହୁଅଛି ସତ୍ୟ ଅଧିକ କଲେ ପୂଜା ।
କେବଳ ଯାଉଅଛି କାଳକୁ ଅନାଇଁ
ଘରେ ଥିଲେ ମୋହର ଗତି ହେବ ନାହିଁ ।
ଧୃତରାଷ୍ଟ୍ରଙ୍କର ଶୁଣିଣ ଏ ବଚନ
ହସ୍ତିନାଲୋକେ କରି ନେତ୍ରେ ଅଶ୍ରୁ ପୂର୍ଣ୍ଣ ।
ବୋଇଲେ ଏତେକେ କି କଷ୍ଟ ହେଲା ଆସି
ହେଉଅଛନ୍ତି ଧୃତରାଷ୍ଟ୍ର ବନବାସୀ ।
ଧୃତରାଷ୍ଟ୍ର ବୋଇଲେ ପାଳନା ଯେତେକ
କରିଛ ତହିଁ ଦୋଷ ଛାଡ଼ ସବୁଲୋକ ।
ଦୁର୍ଯ୍ୟୋଧନ ପାଳନା ଯହିଁରୁ କଷ୍ଟ
ପାଇଛ ଯେଣୁ ବୁଦ୍ଧି ଅଟେ ତା'ର ନଷ୍ଟ ।
ସେହି କଥା ତୁମ୍ଭଙ୍କୁ ମାଗୁଅଛି ମୁହିଁ
ତା ଦୋଷମାନ କ୍ଷମା କର ପ୍ରୀତି ବହି ।
ହତପୁତ୍ର ଆମ୍ଭେ ଯେ ଗୃହସ୍ଥ ଭାରିଯା
ହେବାରୁ ବନେ ଯିବୁଁ ବୋଲି କଲୁଁ ମଜ୍ଜା ।

ଯୁଧିଷ୍ଠିରରାଜା ତ ଅଟନ୍ତି ଧାର୍ମିକ
ହେବାରୁ ସେ ଛଡ଼ାଇବେ ତୁମ୍ଭର ଶୋକ ।
ଏରୂପେ ଧୃତରାଷ୍ଟ୍ର-ମୁଖୁଁ ଲୋକଶ୍ରେଣୀ
ଶୁଣି ତୁନୀ ହେଲେ ନୟନୁଁ ମୁଞ୍ଚି ପାଣି ।
ବ୍ରାହ୍ମଣେ ଏହା ଦେଖି ଦୁଃଖିତ ମନରେ
କୁହାଇଲେ ବୃଦ୍ଧ ବ୍ରାହ୍ମଣଙ୍କ ଦ୍ୱାରାରେ ।
ଆପଣ ଏବେ ଯାହା କହିବା ହେଉଛି
ତୁମ୍ଭ ଅନୁରୂପ ଏ ମନକୁ ପାଉଛି ।
ଭାଇ ପୁତ୍ର ସର୍ବେ ପାଳନ୍ତି ଆମ୍ଭଙ୍କୁ
କାହିଁକି ମାଗ ଦୁର୍ଯ୍ୟୋଧନ-ଅପ୍ରାଧକୁ ।
କିଛି ଅପରାଧ ସେ ଆମ୍ଭଠାରେ କରି—
ନାହାନ୍ତି ବିଚାରିଲେ ଜାଣ ଦଣ୍ଡଧାରୀ ।
ବ୍ୟାସଙ୍କର ବୋଲିବା ପରାଏ ଆପଣ
କରନ୍ତୁ ଏବେ କହୁଅଛୁଁ ଆଚରଣ ।
ଯୁଧିଷ୍ଠିରରାଜାଙ୍କ ପାଳନାରେ ଆମ୍ଭେ
ମହାସୁଖ ପାଉଛୁଁ ଜାଣୁଛ ତ ତୁମ୍ଭେ ।
ନିଜ କୁଳଧର୍ମ ଅନାଇଁ ଯୁଧିଷ୍ଠିର ।
ଆଚରଣ କରୁଅଛନ୍ତି ନିରନ୍ତର ।
କୁରୁମାନେ ସେ ଯାହା ପାଇଲେ ମରଣ
ଦଇବ କରିଥିଲା ବୋଲି ନୃପ ଜାଣ ।
ଅବଶ୍ୟ ତ ହୁଅନ୍ତା କାଳରେ ମରଣ
ଯୁଦ୍ଧେ ଯା ମଲେ ଗତି ପାଇଲେ ସେ ଜାଣ ।
ଏବେ ଆମ୍ଭେ ସମସ୍ତେ କରୁଛୁଁ କଲ୍ୟାଣ
ସାରଲୋକେ ବସନ୍ତୁ ଦୁର୍ଯ୍ୟୋଧନ-ଗଣ
ଆପଣ ମଧ ତପ କରି ପ୍ରାଣ ଛାଡ଼ି
ବସିବ ନିକଟରେ ସ୍ୱର୍ଗପୁର ମାଡ଼ି ।
କୁନ୍ତୀ-ପୁତ୍ରମାନେ ତ ଅଟନ୍ତି ଧାର୍ମିକ
ଅବିବେକୀ ଲୋକର କରିବେ ବିବେକ ।
ଧୃତରାଷ୍ଟ୍ରରାଜା ସେ ଦ୍ୱିଜବାଣୀ ଶୁଣି
କହିଲେ ଆଛା ବୋଲି ପ୍ରଶଂସାରେ ବାଣୀ ।
ପାଖରେ ଯେତେ ଲୋକ ଠିଆ ହୋଇଥିଲେ
ଯାଅ ବୋଲି ତାହାଙ୍କୁ ଅନୁଜ୍ଞା ସେ ଦେଲେ ।
ତଦନ୍ତେ ଗାନ୍ଧାରୀ ଦେବୀଙ୍କି ସଙ୍ଗେ ଧରି
ନିଜମନ୍ଦିରକୁ ଗଲେ ସେ ଦଣ୍ଡଧାରୀ ।
ଧୃତରାଷ୍ଟ୍ର-ନୃପତି ରଜନୀ ଶେଷରେ
ବିଦୁରଙ୍କୁ ପେଷିଲେ ଅତ୍ୟନ୍ତ ତୋଷରେ ।

ବୋଇଲେ ତୁମ୍ଭେ କହ ମୋର ପୁତ୍ରଗଣଙ୍କୁ
କରିବ ଶ୍ରାଦ୍ଧ ଭୀଷ୍ମ ଦ୍ରୋଣାଦିମାନଙ୍କୁ ।
ବୋଲିବେ ଯେବେ ସେହି ପିଣ୍ଡ ଗ୍ରହଣ କରି
ପିଣ୍ଡଟିଏ ଦେବି ମୁଁ ବହୁତ ପ୍ରୀତିକେ ;
ଏଥିକି ଅନୁରୂପ ହେବ ଯେତେ ଧନ
ଦିଅନ୍ତୁ ମୋତେ ତାହା ଧର୍ମଙ୍କ ନନ୍ଦନ ।
ବିଦୁର ଧୃତରାଷ୍ଟ୍ର ବଚନରେ ଗଲେ
ଯୁଧିଷ୍ଠିର ଆଗରେ ଏରୂପେ କହିଲେ ।
ପାଣ୍ଡୁସୁତେ ତା ଶୁଣି କଲେ ସ୍ୱୀକାର
ନ ପାଇଲା ମନକୁ ଏକା ଭୀମଙ୍କର ।
ଭୀମଙ୍କର ଚିତ୍ତକୁ ଅରଜୁନ ଜାଣି
ବୋଇଲେ ଶୁଣ ଯାହା କହୁଛି ମୁଁ ବାଣୀ ।
ଧୃତରାଷ୍ଟ୍ର ରାଜା କୁରୁଙ୍କ ପାଇଁ ଦାନ
ଦେବେ ତୁମ୍ଭେ କପାଇ ହେଉଛ ଦମନ ।
ତୁମ୍ଭଙ୍କୁ ପୁଣି ଧନ ସେ ମଗାଇଛନ୍ତି
ଏଥିରେ ଉଚିତଟି ନୁହଇ ଦମତ ।
ପୂର୍ବେ ତାହାଙ୍କଠାରୁ ଧନ ଆମ୍ଭେ ଆଣି
ଖାଇ ବସିଥିଲୁ ସଭାରେ ହୋଇ ଠାଣି ।
ସେ ଏବେ ମାଗୁଛନ୍ତି ଆମ୍ଭଙ୍କୁ ଯା ଧନ
ଏଥିରୁ ଭାଗ୍ୟ ଆଉ ହେବ କି ହେ ଯେନ ।
କାଳ କରୁଅଛି ସଭିଙ୍କି ସାନ ବଡ଼
ବିସ୍ମରିଲେ କାଳକୁ ନୁହେ କେହି ବଡ଼ ।
ଯୁଧିଷ୍ଠିରରାଜାଙ୍କୁ କହିକରି ତୁମ୍ଭେ
ଦିଆଇଦିଅ ଧନ ବୋଲୁଅଛୁଁ ଆମ୍ଭେ ।
ଏରୂପେ ଅର୍ଜୁନ କହନ୍ତେ ହସି ବାଣୀ
ପ୍ରଶଂସିଲେ ଧର୍ମନନ୍ଦନ ତାହା ଶୁଣି ।
ଭୀମ ବୋଇଲେ ହେ କାହିଁକି ଧୃତରାଷ୍ଟ୍ର
ଧନ ଦେବେ କୁରୁଙ୍କ ପାଇଁ ହୋଇ ହୃଷ୍ଟ ।
ଆମ୍ଭେ ଏବେ ବ୍ରାହ୍ମଣମାନଙ୍କୁ ଡକାଇ
ଧନ ଦେବା ଭୀଷ୍ମ ଦ୍ରୋଣଆଦିଙ୍କ ପାଇଁ ।
କର୍ଣ୍ଣ ପାଇଁ କୁନ୍ତୀ ଦିଅନ୍ତୁ ଦ୍ୱିଜେ ଦାନ
ଏଥିପାଇଁ ମୁହିଁ ହେଉଛି କି ଦମନ ।
ଦୁର୍ଯ୍ୟୋଧନାଦି ଶଏ ଭାଇଙ୍କର ପାଇଁ
ଧନ ଦେବାକୁ ମୁଁ ମରୁଛି କୋଡ଼ ହୋଇ ।
ତାହାର ସକାଶରୁ ଯିବା କୁରୁକୁଳ
ଆମ୍ଭ ସଙ୍ଗତେ ଯୁଦ୍ଧି ହୋଇଲା ନିର୍ମୂଳ ।

ଦୁର୍ଯ୍ୟୋଧନ ଦ୍ରୌପଦୀ ଦେବୀଙ୍କି ସଭାରେ
ଲଙ୍ଗଳା କରାଇଲା ଆମ୍ଭର ଆଗରେ ।
ଧୃତରାଷ୍ଟ୍ର ନୃପତି ତା ଯହୁଁ ଶୁଣିଲେ
ମୁଖରେ ଲୁଗାକାନି ଦେଇଣ ହସିଲେ ।
ଏ ବାହାନରେ ବାର ବରଷ ବନବାସ
କଲି ତାଙ୍କ ଯୋଗ ଶରୀର କରି କୃଶ ।
ସେ ସବୁକୁ ପାଶୋରି ଦେଲି କି ହେ ରସ୍ତେ
ସେ ତ ସବୁ ରହିଛି ମୋହର ହୃଦୟେ ।
ଏହି ସକାଶୁ ମୁହିଁ ହେଉଥାଏ ଘାଣ୍ଟି
ଅନ୍ଧକୁ ଦେଖିଲେ ମୋ ବଢ଼ଇ କ୍ରୋଧଟି ।
ଧଡ଼ିବାକୁ ବୋଲଣ ନ ପିଟଇଁ ଗଦା
ନୋହିଲେ ତାର ମୁଣ୍ଡ କରିଥାନ୍ତି ପଦା ।
ଯୁଧିଷ୍ଠିର ବୋଇଲେ ପିଲା ପରି ଭୀମ
କେତେ କହୁଅଛ ହେ ବନ୍ଧୁ ଏତେ ଛମ ।
ଆମ୍ଭ ଅଦୃଷ୍ଟରେ ଯା ଥିଲା ଲେଖି ବିହି
ତାହାହିଁ ହେଲା ବୋଲି ଜାଣ ଅହେ ଭାଇ ।
ଅରଜୁନ ବୋଇଲେ ଦୁଷ୍ଟ ଆଚରଣ
କଲେ ତାଙ୍କପରି ହୋଇବା ଆମ୍ଭେ ଜାଣ ।
ସେ ଦୁଷ୍ଟପଣ କରିବାରୁ ଆହେ ଭାଇ
ନିନ୍ଦୁଛନ୍ତି ତାଙ୍କୁ ସକଳ ନରସାଇଁ ।
ଏହା କହି କହିଲେ ପାର୍ଥ ବିଦୁରଙ୍କୁ
କହ ଧୃତରାଷ୍ଟ୍ର-ନୃପତି-ତିଳକଙ୍କୁ ।
ଯେତେକ ଇଚ୍ଛା ଧନ କରିଛନ୍ତି ସେହି
ତେତେ ଆମ୍ଭେ ଦେବୁ ଭଣ୍ଡାର-ଘର ଫେଡ଼ି
ଭୀମ ଏହା ଶୁଣି ବହରେ ଅରଜୁନ
ମୁହଁକୁ ଚରଦେଲେ ଥରେ ଆଲୋକନ ।
ଯୁଧିଷ୍ଠିର ବୋଇଲେ କହିବ ରାଜାକୁ
ନ କରିବେ ଦୁଃଖ ଭୀମର ବଚନକୁ ।
ମୋ ଘରେ ଅରଜୁନ ଘରେ ଯେତେ ଧନ
ଅଛି ତହିଁ ସ୍ୱାମୀ ଟି ଅଟନ୍ତି ସେ ଜାଣ ।
ଏହା ଶୁଣି ବିଦୁର ଧୃତରାଷ୍ଟ୍ର ପାଶେ
କହିଲେ ଧନ ଦେବେ ବୋଲିକରି ତୋଷେ ।
ବାପ ପରି ତୁମ୍ଭଙ୍କୁ ମାନି ଧର୍ମସୁତ
ଏଥି ଥିଲେ ରାଜା ସନ୍ଦେହ ଛାଡ଼ ଚିତ୍ତ ।
ଧନ ଦେବା କଥାରେ ଭୀମଙ୍କ ବଚନ
ନିଃସନ୍ଦେହରେ ନ ଉଚରିଲ ରାଜନ ।

ଆଶ୍ରମ ନଙ୍କର କଥାରେ କିଛି ଦୋଷ
ନ ଦେଖିଲେ ମୂର୍ତ୍ତି ହେ ଗାନ୍ଧାରୀ ଦେବୀଶ ।
ରାମଙ୍କ କଥାକୁ ପାଣ୍ଡବଦଣ୍ଡଧାରୀ
କହିଅଛନ୍ତି କ୍ରୋଧ ନେ'ହିବ ଈଶ୍ୱର ।
ଏରୂପେ ଯୁଧିଷ୍ଠିର କହୁଛନ୍ତି ନୃପ
ଏହା ଶୁଣିକରି ଗୁଡ଼ ହୃଦୟ ତାପ ।
ବିଦୁରଙ୍କ ମୁଖରୁ ଶୁଣିଣ ଏ ବାଣୀ
ହୃଷ୍ଟ ହୋଇଣ ଧୃତରାଷ୍ଟ୍ର ନରମଣି ।
କାର୍ତ୍ତିକ ପୂର୍ଣ୍ଣମୀରେ ଡାକି ଦ୍ୱିଜଜନ
ଦେଲେ ବୃଷମାନଙ୍କୁ ଉଦ୍ଦେଶିଣ ଦାନ ।
ଧୃତରାଷ୍ଟ୍ରଙ୍କଠାରୁ ଦ୍ୱିଜେ ସୁନା ଗାଈ
ଧନ ରତ୍ନ ବସ୍ତ୍ର ପାଇଣ ତୋଷ ବହି ।
ବୋଇଲେ ତୁମ୍ଭ ସୁତେ ପାଇ ସ୍ୱର୍ଗସ୍ଥାନ
ରହିଲେ ସୁଖ ଏଥି ସନ୍ଦେହ ନ ଘେନ ।
ଏ ବାହାରେ ସେ ଦ୍ରୋଣ ଭୀଷ୍ମ ବାହ୍ଲିକାଦି
ପାଇ ଦାନ ଦେବେ ସେ ହୋଇଣ ପ୍ରମୋଦ ।
ଏ ଉତ୍ସାରେ ଗାନ୍ଧାରୀ ନିଜ ପାଇଁ ଦାନ
ଦେଲେ ବୃଷ୍ଟିକରି ଉତ୍ତମ ଦ୍ୱିଜଜନ ।
ଏହିରୂପେ କାର୍ତ୍ତିକ ପୂର୍ଣ୍ଣମୀର ଦାନ
ଦେଇ ସାରିଣ ଧୃତରାଷ୍ଟ୍ର ନରଗଣ ।
ପ୍ରତିପଦା ଦିନ ଦ୍ୱିଜଙ୍କ ସଙ୍ଗେ ଧରି
ବାହାରିଲେ ବନେ ଅଗ୍ନିଙ୍କି ଆଗକରି ।
ଧୃତରାଷ୍ଟ୍ରରାଜନ ବାହାରନ୍ତେ ଘରୁ
କୁରୁସ୍ତ୍ରୀମାନେ ଦୁଃଖରେ ହୋଇ ଅଥିରୁ ।
ଆହା କି ହେଲା ବୋଲି ପାଡ଼ି ଉଚ୍ଚେ ଡାକ
ଝାଳରେ ହୋଇଗଲା ତାଙ୍କ ଦେହ ଜକା ।
ଯୁଧିଷ୍ଠିର ରାଜନ ଧୃତରାଷ୍ଟ୍ରଙ୍କର
ଯିବାର ଦେଖିକରି ହୋଇଲେ କାତର ।
କାହିଁ ଯାଉଅଛ ହେ ବୋଲିକରି ପିତା
ପଡ଼ିଲେ ମଣ୍ଡପମଧ୍ୟେ ଗୁଡ଼ ବିବେକତା ।
ଭାଇଙ୍କ ତୁଲେ ଭୀମ ଗୁଡ଼ ଦୁଃଖରଡ଼ି
ଝୁଲିଲେ ଧୃତରାଷ୍ଟ୍ରଙ୍କର ପଛେ ମାଡ଼ି ।
ଗାନ୍ଧାରୀଙ୍କ କାନ୍ଧରେ ଧୃତରାଷ୍ଟ୍ରନୃପ
ହାତ ଦେଇ ଚାଲିଲେ ଲଭି ପାଦତାପ ।
କୁନ୍ତୀ ଗାନ୍ଧାରୀଙ୍କ କରୁଣିକ ଧରି
ବାହାରିଲେ ଯେ ଝାଲଡ଼ିପ କଷ୍ଟ କରି ।
ଦ୍ରୌପଦୀ ସୁଭଦ୍ରାଙ୍କ ତୁଲେ ପାଣ୍ଡୁସ୍ତ୍ରୀ—
ମାନେ ଗୋଡ଼ାଇଲେ ସଙ୍ଗତେ କାନ୍ଦକରି ।
ଏ ବାହାରେ ହସ୍ତିନାବାସୀ ନାରୀକୁଳ
ଗୋଡ଼ାଇଲେ ସଙ୍ଗେ ନୟନୁଁ ପୋଛି ଜଳ ।
ପାଣ୍ଡୁସୁତେ ବନକୁ ଯିବାକାଳ ଶୋକ
ପ୍ରତିକ ହୋଇଲାଟି ଏ ଶୋକ ଅଧିକ ।
ଚନ୍ଦ୍ର ସୂର୍ଯ୍ୟ ନ ଦେଖିଥିବା ସ୍ତ୍ରୀକୁଳ
ସେକାଳେ ଆସି ହେଲେ ବାଣ୍ଡରେଟି ଠୁଳ ।
ଧୃତରାଷ୍ଟ୍ର ରାଜା ହସ୍ତିନା-ସିଂହଦ୍ୱାର
ଲଙ୍ଘିଲେ ମହାକଷ୍ଟେ ହୋଇଣ ଆତୁର ।
ଲୋକରେ ତ ସଙ୍କୁଳ ହୋଇଥିଲା ବାଟ
ଏଣୁ ରୁନ୍ଧ ହେଲେ ଅମ୍ବିକାଦେବୀ ସୁତ ।
ଲୋକଙ୍କୁ ବୋଇଲେ ନିବର୍ତ୍ତିରହ ତୁମ୍ଭେ
ଯାଉଅଛୁ ଏକା ହୋଇଣ ବନେ ଆମ୍ଭେ ।
ଯୁଯୁତ୍ସୁ କୃପ ଏ ଦୁହିଁଙ୍କି ନିବର୍ତ୍ତାଇ
ସଞ୍ଜୟଙ୍କୁ ଘେନ ବିଦୁର ତୋଷ ବହି ।
ଧୃତରାଷ୍ଟ୍ରରୂପେ କହିଲେ ଆମ୍ଭେ ଦୁହେଁ
ବନମଧ୍ୟେ ରହିବୁ ଯାଇ ତୁମ୍ଭ ସ୍ନେହେ ।
କୁନ୍ତୀଙ୍କି ଯୁଧିଷ୍ଠିର ବୋଇଲେ ଗୋ ମାତ
ବଧୂଙ୍କୁ ଘେନିଯାଅ ଗୃହକୁ ତୁରିତ ।
ଭାଇଙ୍କି ଘେନ ମୁଁ ରାଜାଙ୍କୁ ଯିବ ଗୁଡ଼
ରହିବ ଜନାକେତେ ବନେ ଦୁଃଖେ ପଡ଼ି ।
କୁନ୍ତୀ ବୋଇଲେ ହେ ମୋର ଜ୍ୟେଷ୍ଠନନ୍ଦନ
ସହଦେବଠାରେ ଥିବଟି ସ୍ନେହମନ ।
ମୁଁ ମଧ୍ୟ ଗାନ୍ଧାରୀଙ୍କ ସଙ୍ଗେ ସଙ୍ଗୀ ହୋଇ
ରହିବି ବନମଧ୍ୟେ ସନ୍ଦେହଟି ନାହିଁ ।
କହୁଛି କେବଳ କର୍ଣ୍ଣର ମଲଦନ
ଦେଇଥିବ ବାବୁ ଦ୍ୱିଜଙ୍କୁ ଡାକି ଦାନ ।
ତୁମ୍ଭର ତ ଅଟଇ କର୍ଣ୍ଣ ଜ୍ୟେଷ୍ଠଭାଇ
ତାଠାରୁ କ୍ରୋଧ ଦେବ ହୃଦରୁ ଛଡ଼ାଇ ।
ଭାଇ ଭାଇଙ୍କରେ ଯେ ଭେଦ ହେଲେ ଜାତ ।
ତାହା ଭଙ୍ଗୁଥିବ ଧର୍ମରେ ଦେଇ ଚିତ୍ତ ।
ଦ୍ରୌପଦୀ ଆଦି ବଧୂ ନାରୀଙ୍କର ମନ
ନେଉଥିବ ଦେଇ କରିଣ ବସ୍ତ୍ର ଧନ ।
ଯୁଧିଷ୍ଠିର ଏ କଥା ଶୁଣି ଶୀର୍ଣ୍ଣ ହୋଇ
ରହିଲେ ମାତାଙ୍କର ମୁଖକୁ ଅନାଇଁ ।

ଟିକଏକ ପରେ କହିଲେ ନୃପବର
ଆଜ କମ୍ପା ଏରୂପେ ବୋଲ ମାତା ମୋର ।
ତୁମ୍ଭର ବୋଲବାରୁ ଯୁଦ୍ଧ ମୁଣ୍ଡି କଲି
ଧର୍ମରେ ଜିଣି ହସ୍ତିନାରେ ରଜା ହେଲି ।
ଏରୂପେ ମୋତେ ଛାଡ଼ି ଯିବା ଯେବେ ମନ
ଥିଲା, ତେବେ ନ କରିଥାନ୍ତ ଆୟୋଧନ ।
ଏରୂପେ ଯୁଧିଷ୍ଠିର ବଚନକୁ ଶୁଣି
କାନ୍ଦି କାନ୍ଦି ସେ ପାଣ୍ଡୁ ନୃପଙ୍କ ଘରଣୀ ।
କୁନ୍ତୀ ବନ ଯିବାକୁ ଆଗକୁ ପଦଣ୍ଡ
ପକାଇଲେ ଛାଡ଼ି ପୁତ୍ରରୁ ସ୍ନେହଖଣ୍ଡ ।
ଭୀମ ବୋଇଲେ ଆଗୋ ମାତ ହେଲ ବାଇ
କାହିଁକି ଯାଉଅଛ ଆମ୍ଭଙ୍କୁ ନ ଚାହିଁ ।
ଦୁଃଖ ହେବା କାଳରେ ଘରେ ରହିଥିଲ
ସୁଖ ହେବାରୁ କହ ବନେ କମ୍ପା ଗଲ ।
ବନରେ ତ ପିତା ତୁମ୍ଭଙ୍କୁ ରଖିଥିଲେ
ଆମ୍ଭ ଯେଣୁ ତୁମ୍ଭେ ଛାଡ଼ିଲ ତାହା ଭଲେ ।
ମୋ ବୋଲରେ ଏବେ ପ୍ରସନ୍ନ ହୋଇ ମାତ
ଭୁଞ୍ଜ ହସ୍ତିନା-ଶିରୀ ହୋଇ ତୋଷ-ଚିତ୍ତ ।
କୁନ୍ତୀ ବନ ଯିବା ଇଚ୍ଛା ତ କରିଥିଲେ
ତେଣୁ ପୁତ୍ରଙ୍କର ବଚନ ନ ଶୁଣିଲେ ।
ଏହିରୂପେ ବଧୂ ଏ କହିଣ କୁନ୍ତୀଙ୍କି
ଗୋଡ଼ାଇଲେ ସଙ୍ଗତେ ବହିଣ ପ୍ରୀତିକ ।
କୁନ୍ତୀ ବୋଇଲେ ଆହେ ଶୁଣ ଭୀମସେନ
ତୁମ୍ଭ ଦୁଃଖରେ ମୁଁ ହୋଇଲି ଅତି ଖିନ୍ନ ।
ଏ ବାହାରେ ଦ୍ରୌପଦୀ ବଧୂଙ୍କର କ୍ଲେଶ
ବାସ କଲା ନିରତେ ମୋର ହୃଦଦେଶ ।
ପାଣ୍ଡୁ ନୃପତିଙ୍କର ତୁମ୍ଭେ ପଞ୍ଚସୁତ
ଥିଲ ଯେବେ ମରନ୍ତ ହୋଇ ଅରକ୍ଷିତ ।
ତେବେ ପାଣ୍ଡୁଙ୍କର ହୁଅନ୍ତା ପିଣ୍ଡଲୋପ
ଏ କଥାରେ ବଢ଼ନ୍ତା ମୋ ହୃଦ-ସନ୍ତାପ ।
ଇନ୍ଦ୍ରପରି ବିକ୍ରମ ବହି ପାଞ୍ଚଭାଇ
ରହନ୍ତ ଲୋକ ପରି ସେବା କରି କେହି ।
ଦ୍ରୌପଦୀ ତ ଅଟନ୍ତି ଅତି ସୁକୁମାରୀ
କ୍ଲେଶସହ ନୁହଇ ଶରୀର ତାଙ୍କରି ।
ଏହି କଥାମାନ ଜାଣି ମୁଁ ଶ୍ରୀକୃଷ୍ଣଙ୍କୁ
କହିଲି କହିବ ମୋ ପୁତ୍ରଟିମାନଙ୍କୁ ।
ଯୁଦ୍ଧ କରି ନଅନ୍ତୁ ଦୁର୍ଯ୍ୟୋଧନ-ପ୍ରାଣ
ନୋହିଲେ ତାଙ୍କ ଜୀବ ଅଟେ ଅକାରଣ ।
ତୁମ୍ଭ ହେବା ସୁଖୁ ପାଣ୍ଡୁଙ୍କ ଥିବାକାଳେ
ଅଧିକ ସୁଖ ଭୋଗ କରିଛି ମୁଁ ହେଲେ ।
ବେଦସାକରେ ମୋ ପତି ହୋଇ ପତି
ଭୋଗ କରିଥିଲେ ଅଶିଣ ସବୁ ଭୂତି ।
ଧୃତରାଷ୍ଟ୍ରରଜା ହେବାରୁ ବୁଦ୍ଧି ଭ୍ରଷ୍ଟ
ତୁମ୍ଭେ ଯିନା ପିଲାଏ ପାଇଲ ଏ କଷ୍ଟ ।
ଏହା ଶୁଣି ପାଣ୍ଡବମାନେ ଲଜ୍ଜା ପାଇ
ଲେଉଟିଲେ ମାତାଙ୍କୁ ବଚନ ନ କହି ।
ଧୃତରାଷ୍ଟ୍ର ବୋଇଲେ ଗାନ୍ଧାରୀ ବିଦୁର
କୁନ୍ତୀଙ୍କୁ ଲେଉଟାଅ କହୁଛି ମୁଁ ଗିର ।
ଯୁଧିଷ୍ଠିର ହୋଇଛନ୍ତି ତ ମହୀସାଇଁ
ଏ କମ୍ପା ଅମ୍ଭ ସଙ୍ଗେ ଆସୁଛନ୍ତି ଧାଇଁ ।
ଧୃତରାଷ୍ଟ୍ର କହିବା ମାତ୍ରକେ ବିଦୁର
ଗାନ୍ଧାରୀ କୁନ୍ତୀ ଆଗେ କହିଲେ ସେ ଧୀର ।
ତୁମ୍ଭ ପୁତ୍ରମାନେ ତ ପାଳୁଛନ୍ତି ପ୍ରଜା
ତୁମ୍ଭେ କମ୍ପା ବନକୁ କରିଅଛ ମଜ୍ଜା ।
କୁନ୍ତୀ ବୋଇଲେ ହେ ନ କହ ଏହା ମୋତେ
ବନେ ତପ କରିବି କରିଛି ମୁଁ ଚିତ୍ତେ ।
କୁନ୍ତୀଙ୍କର ନ ଯିବା ଘାତଟିକ ଜାଣି
ତୁଷ୍ଣୀ ହୋଇଲେ ଧୃତରାଷ୍ଟ୍ର ନରମଣି ।
ଯୁଧିଷ୍ଠିର ଆସିଲେ ହସ୍ତିନା ପୁରକୁ
ଘେନିଣ ସଙ୍ଗତରେ ହସ୍ତିନାଲୋକଙ୍କୁ ।
ଧୃତରାଷ୍ଟ୍ର ଗଙ୍ଗାଙ୍କ ତୀରେ ପରବେଶ
ହେବା ସମୟରେ ଅସ୍ତ ହୋଇଲେ ଦିନେଶ ।
ସେଠାରେ ସନ୍ଧ୍ୟା-ବିଧି ସାରି ହୋମକର୍ମ
କରିଲେ ଧୃତରାଷ୍ଟ୍ରନରଙ୍କ ଉତ୍ତମ ।
ତଦନ୍ତେ ବିଦୁର ସଞ୍ଜୟ ନୃପତିଙ୍କୁ
ପାଡ଼ି ଦେଲେ କୁଶଗୁଚ୍ଛ ଶୋଇବାକୁ ।
ସେ କୁଶ-ଶଯ୍ୟାଟିରେ ଧୃତରାଷ୍ଟ୍ର ନୃପ
ଗାନ୍ଧାରୀଙ୍କ ତୁଲେ ଶୋଇଲେ ଛାଡ଼ି ତାପ ।
ଗାନ୍ଧାରୀଙ୍କର ସମୀପକୁ କୁଶ ପାଡ଼ି
ଶୋଇଲେ ଯୁଧିଷ୍ଠିର ମାତା କରି ମାଡ଼ି ।
ଚଳି ଖଣ୍ଡଦୂରକୁ ବିଦୁର ସଞ୍ଜୟ
କୁଶାସନ କରି ଶୋଇଲେ ବେନି ପ୍ରିୟ ।

ବିଦୁର ସଞ୍ଜୟ ଉତ୍ତରୁ ଦ୍ୱିଜମାନେ
ଶୋଇଲେ କୁଶାସନ କରି ତୋଷ ମନେ ।
ରାତ୍ରିଶେଷରେ ପୌର୍ବାହ୍ଣିକ-କର୍ମ ସାରି
ଉତ୍ତରମୁଖରେ ଗମିଲେ ଦଣ୍ଡଧାରୀ ।
କୁରୁକ୍ଷେତ୍ରରେ ଶତଯୂପରାଜା ଥିଲେ
ତାହାଙ୍କ ପାଶେ ଧୃତରାଷ୍ଟ୍ର ଯାଇ ହେଲେ ।
ଧୃତରାଷ୍ଟ୍ରନୃପ ଦେଖି ସେ ହୋଇ ସୁଖୀ
କହିଲେ ମୁଁ ଆସିଛି ପୁତ୍ରେ ରାଜ୍ୟ ରଖି ।
ତୁମ୍ଭେ ଯେବେ ବନେ ଆସିଲ ନୃପବର
ଆଜ୍ଞା ହେଲ ବନେ କରିବା ଆମ୍ଭେ ଘର ।
ଧୃତରାଷ୍ଟ୍ର ବୋଇଲେ ମୋହର ଏ ବାଞ୍ଛା
ଥିଲା ହେଉ ତୁମ୍ଭ ହେଲା ଯେବେ ଇଚ୍ଛା ।
ସେ ଦୁଇ ନୃପତି ଏକମନ ହୋଇ
ବ୍ୟାସଙ୍କ ଆଶ୍ରମ ପ୍ରବେଶ ହେଲେ ଯାଇ ।
ବ୍ୟାସଙ୍କଠାରୁ ଦୀକ୍ଷା କରି ଧୃତରାଷ୍ଟ୍ର
ଶତଯୂପାଶ୍ରମେ ରହିଲେ ହୋଇ ହୃଷ୍ଟ ।
ସେ ରାଜା ବନ୍ୟ-ବିଧି ଯେତେ ଜାଣିଥିଲେ
ବ୍ୟାସ-ମତେ ଧୃତରାଷ୍ଟ୍ରଙ୍କୁ ଶିଖାଇଲେ ।
ଧୃତରାଷ୍ଟ୍ରରାଜା ଅଜିନ ଜଟା ବହି
ତପ କଲେ ଶରୀର କୃଶ ହେବାପାଇଁ ।
ଗାନ୍ଧାରୀ କୁନ୍ତୀ ମଧ୍ୟ କଲେ ମହାତପ
ତରିବାକୁ ଭବ-ଜଳଧି-ଘୋର ଆପ ।
ଅଜିନ ଚୀର ପିନ୍ଧି ବିଦୁର ସଞ୍ଜୟ
ରାଜାଙ୍କୁ ସେବା କଲେ ହୃଦେ ବହି ପ୍ରିୟ ।
ଏହି ସମୟେ ବ୍ୟାସ ନାରଦ ପର୍ବତ
ଧୃତରାଷ୍ଟ୍ରଠାରୁ ହୋଇଲେ ଉପଗତ ।
ତାହାଙ୍କ ତୁଲେ ନାନାଜାତି ଋଷିମାନେ
ଆସିଛନ୍ତି ନୃପ ଦେଖିବା ଇଚ୍ଛା ମନେ ।
ଋଷିଙ୍କି ଦେଖି ଶତଯୂପରାଜା କୁନ୍ତୀ
ପୂଜା କରିଲେ ମାନସରେ ବହି ପ୍ରୀତି ।
ଋଷି ଏ ଧୃତରାଷ୍ଟ୍ରରାଜା-ପାଖେ ବସି
କଥା କହି ନେଲେ ତାହାଙ୍କ ମନ ତୋଷି ।
କଥାଅନ୍ତେ ନାରଦ କହିଲେ ରାଜାଙ୍କୁ
ଶୁଣ ମୋହର କଥା ଦେଇଣ ମନକୁ ।
କେକୟଙ୍କେ ସହସ୍ରଚିତ୍ୟ ରାଜା ଥିଲେ
ପୁତ୍ରଙ୍କୁ ରାଜ୍ୟ ଦେଇ ବନରେ ରହିଲେ ।
ବନରେ ତପ କରି ଗଲାନ୍ତେ ସେ ପ୍ରାଣ
ପୂଜିଲେ ଇନ୍ଦ୍ର ତାଙ୍କୁ ଦେଖିଛି ମୁଁ ଜାଣ ।
ଶୈଳାଳୟରାଜା ସେହିରୂପେ କରି
ଭୋଗ କଲେ ସ୍ୱର୍ଗେ ରମ୍ଭାଦି ଅପସରୀ ।
ପୃଷଧ୍ରରାଜା ତପେ ଦେହ କଲେ କ୍ଷୀଣ
ଅନ୍ତଃକାଳେ ପାଇଲେ ସ୍ୱର୍ଗପୁରେ ସ୍ଥାନ ।
ପୁରୁକୁତ୍ସ ଶତଲୋମା ଏ ଦୁଇରାଜା
ତପରେ ମରନ୍ତେ ପାଇଲେ ସ୍ୱର୍ଗେ ପୂଜା ।
ବେଦବ୍ୟାସଙ୍କର ପ୍ରସାଦୁଁ ସେ ଗାନ୍ଧାରୀ
ତୁମ୍ଭେ ଉର୍ଦ୍ଧ୍ୱଗତି ପାଇବ ଦଣ୍ଡଧାରୀ ।
ଇନ୍ଦ୍ରଙ୍କ ପାଶେ ପାଣ୍ଡୁରାଜା ତ ଅଛନ୍ତି
ସେ ତୁମ୍ଭକୁ ନିତି ସୁମରୁଥାଆନ୍ତି ।
ତୁମ୍ଭଙ୍କୁ ସେବା କରି ଭର୍ତ୍ତାଙ୍କର ଲୋକ
ପାଇବେ କୁନ୍ତୀ ଏଥି କିଛି ନାହିଁ ଦକ ।
ବିଦୁର ଯୁଧିଷ୍ଠିର ଦେହେ ପରବେଶ
ହୋଇବ ସନ୍ଦେହ ତ ନାହିଁ ନରଈଶ ।
ସଞ୍ଜୟ ଅଧଃସ୍ୱର୍ଗେ ବସି ତୁମ୍ଭ ସଙ୍ଗେ
ମାତିବେ ଅପସରାଙ୍କର ରତି-ରଙ୍ଗେ ।
ନାରଦ-ମୁଖରୁ ଶୁଣି ନୃପ ଧୃତରାଷ୍ଟ୍ର
ପ୍ରଶଂସିଲେ ତାହାଙ୍କୁ ହୋଇ ଅତିହୃଷ୍ଟ ।
ନାରଦଙ୍କ ବଚନ ଶତଯୂପରାଜା
ପୁଣିକରି କରିଲେ ନାରଦଙ୍କୁ ପୂଜା ।
ଶତଯୂପରାଜା ବୋଇଲେ ହେ ନାରଦ
ଧୃତରାଷ୍ଟ୍ର ପାଇବେ କି ଲୋକ ତା' ବଦ ।
ନାରଦ ବୋଇଲେ ହେ ଇନ୍ଦ୍ର-ମୁଖୁଁ ଯାହା
ଶୁଣିଛି, ତା କହିବି ଶୁଣ ନରନାହା ।
ଦେବତାଙ୍କୁ ସ୍ୱାମିଣି ଶଚୀଦେବୀ ବର
ଧୃତରାଷ୍ଟ୍ର ବିଷୟେ କହିଲେ ଉତ୍ତର ।
ବର୍ଷ ତିନ ଆଉ ଜୀଇବେ ଧୃତରାଷ୍ଟ୍ର
ତପ କରୁଛନ୍ତି ବନରେ ପାଇ କଷ୍ଟ ।
ଦେହାନ୍ତେ ଗାନ୍ଧାରୀ ତୁଲେ ସେ ନରବର
କୁବେର-ଭୁବନେ ଯିବେ, ଏ ମତ ମୋର ।
ନାରଦଙ୍କ ମୁଖରୁ ଏହିରୂପେ ଶୁଣି
ସନ୍ତୋଷ ହେଲେ ଶତଯୂପ ନରମଣି ।
ଋଷିମାନେ ଏ ଅନ୍ତେ ସେ ଦୁଇ ନୃପଙ୍କୁ
କଲ୍ୟାଣ କରି ଗଲେ ଯେଝା ଆଶ୍ରମକୁ ।

—o—

## ପାଣ୍ଡବଙ୍କର ବନରେ ଧୃତରାଷ୍ଟ୍ରଙ୍କ ସହ ମିଳନ

ଧୃତରାଷ୍ଟ୍ରରାଜନ ବନକୁ ଯାଆନ୍ତେ
ହସ୍ତିନାରେ ରହିଣ ପାଣ୍ଡୁଙ୍କର ସୁତେ ।
କୁନ୍ତୀଙ୍କ ଗୁଣଗଣ ମନରେ ପକାଇ
ପାଡ଼ିଲେ ଡାକ ଉଚେ ବାଇ ପ୍ରାୟେ ହୋଇ ।
ସେ କାନ୍ଦଣା ଶୁଣିଣ ହସ୍ତିନାବାସୀଏ ।
କାନ୍ଦବାରେ ହୋଇଲେ ସମସ୍ତେ ଅଥୟ ।
ବୋଇଲେ କେବେ ଧୃତରାଷ୍ଟ୍ର-ନରପତି
ବୃଦ୍ଧରାଣୀ କଷ୍ଟୀ, କେଉଁ ସହିବେ ବିପତ୍ତି ।
ଘରେ ବସି ଗ୍ରାସ କରନ୍ତି ଦୁଇବେଳ
ପଖା ନ ହେଲେ ଗଳାଇ ଦେଉଁ ଥାଳ ।
ସେ କେହ୍ନେ ଖଟରେ ମୁଣ୍ଡରୁ ଲୁଗା ଘୁଡ଼
ଚପ କରିବେ ଆହେ କୁଶାସନ ମାଡ଼ ।
ଆହା ଦଇବରେ ନୃପତି-କୁଳଶିଖ
ଧୃତରାଷ୍ଟ୍ର ନୃପେ ଭଞ୍ଜିଲୁ କର୍ପା ଦୁଃଖ ।
କୁନ୍ତୀ ମଧ୍ୟ ବଡ଼ ଦୁଷ୍କର କର୍ମ କଲେ ।
ରାଜ୍ୟ-ଶିରୀ ଘୁଡ଼ ବନକୁ ଯାହା ଗଲେ ।
ପାଣ୍ଡବେ ବନେ ଯିବା ଲୋକଙ୍କୁ ସୁମରି
ଆହାର ଖାଇବାର ଦେଲେ ଊଣା କରି ।
କେବଳ ଦେଖିକରି ଅଭିମନ୍ୟୁସୁତ
ରଖିଲେ ପରାଣକୁ ହେଲେ କଣ୍ଠାଗତ ।
ମନ୍ତ୍ରୀମାନେ ମହାଶୋକ-ଜଳରେ ବୁଡ଼
ଦେଲେ ରାଜକାର୍ଯ୍ୟକୁ ହୃଦୟରୁ ଛାଡ଼ ।
ଏରୂପେ ଯୁଧିଷ୍ଠିର ବହୁ ଦୁଃଖ କରି
ହସ୍ତିନାବାସୀ ଲୋକଗଣେ ସଙ୍ଗେ ଧରି ।
ବାହାରିଲାବେଳେ କହିଲେ ସହଦେବ ।
ମୁଁ ଯିବି ମାତାଠାରେ ବଳଛି ମୋ ହୃଦ ।
ଦ୍ରୌପଦୀ ଆଦି ଯେତେ ବଧୂଗଣେ ଥିଲେ
ଏ ମଧ୍ୟ ଯିବାପାଇଁ ରାଜାଙ୍କୁ କହିଲେ ।
ଯୁଧିଷ୍ଠିର ତାହା କରିଣ ସ୍ୱୀକାର
କରାଇଲେ ସଇନଜନଙ୍କୁ ତିଆର ।
କୁରୁବୃଦ୍ଧଗଣେ ବୋଇଲେ ଯାନମାନ
ତିଆର କର ଚଳି ଯିବେ ପ୍ରଜାଜନ ।
ଯେଉଁମାନଙ୍କରଟି ହେଉଅଛି ଇଚ୍ଛା
ଯିବାକୁ ଆହନ୍ତୁ ନୃପ ନ କରିଣ ପୃଚ୍ଛା ।

ଭକ୍ଷ୍ୟ ଭୋଜ୍ୟ ପେୟ ସାମଗ୍ରୀ ଶଗଡ଼ରେ
ବୁହାଇଣ ଯାଆନ୍ତୁ ଆଗରେ ସୁଆରେ ।
ବାଟରେ ଲୋକପାଇଁ ପଣା ପାଣି ରଖି
ଥାଆନ୍ତୁ ଲୋକେ ଜଗି ଯିବାକୁ ହୋଇ ସୁଖୀ ।
ଯୁଧିଷ୍ଠିର ନୃପଙ୍କ ଆଜ୍ଞାଟିକ ମାନ
ଲୋକେ କଲେ ତିଆରି ସାମଗ୍ରୀ ସେକ୍ଷଣି ।
ଗୃହକର୍ମେ ପୂର୍ବାହ୍ଣକର୍ମ ଯୁଧିଷ୍ଠିର
ସାରି ଯିବା ପାଇଁ ଡକାଇ ପରକର ।
ବୋଇଲେ ଆମ୍ଭ ପାଞ୍ଚଭାଇଙ୍କର ଯାନ
ତିଆର କର, ଯିବା ପାଇଁ ହୋଏ ମନ ।
ସେବକ ଏହା ଶୁଣି ନୃପ ଯିବାପାଇଁ
ତିଆରି କଲେ ରଥମାନ ଉଗ୍ର ହୋଇ ।
ଯୁଧିଷ୍ଠିର ଯିବାର ସମୟକୁ ଜାଣି
ବାହାରିଲେ ହସ୍ତିନାବାସୀ ଲୋକଶ୍ରେଣୀ ।
ହାତୀ ଘୋଡ଼ା ରଥରେ ଆରୋହଣ ଲୋକ
ଆସିଲେ, ଲାଗିଥିଲେ ସଙ୍ଗରେ ପାଇକ ।
କୃପାଚାର୍ଯ୍ୟ ରଥରେ ଆରୋହଣ କରି
ବାହାରିଲେ ଦ୍ୱିଜମାନଙ୍କୁ ସଙ୍ଗେ ଧରି ।
ଯୁଧିଷ୍ଠିରରାଜା ଟେକାଇ ଶ୍ୱେତଛତ୍ର
ହୋଇଲେ ଆପଣାର ରଥମଧ୍ୟଗତ ।
ନକୁଳ ସହଦେବ ସେନା ଘେନି ସେନା
କଲେ ଯୁଧିଷ୍ଠିରଙ୍କ ପୃଷ୍ଠକୁ ପାଳନା ।
ଭୀମ ଦେହ ସମ ହାତୀରେ ଆରୋହି
ବସିଲେ ଚନ୍ଦ୍ରପରି ଛତ୍ରକୁ ଟେକାଇ ।
ଅରଜୁନ ପବନୁଁ ବେଗ ରଥବରେ
ବସି ବାହାରିଲେ ରାଜାଙ୍କ ସଙ୍ଗତରେ ।
ଦ୍ରୌପଦୀ ଆଦି ପଣ୍ଡୁସ୍ତ୍ରୀଏ ସଜ ହୋଇ
ବାହାରିଲେ ଶିବିକାମାନଙ୍କୁ ଆରୋହି ।
ବୃଦ୍ଧଲୋକମାନେ ପାଣ୍ଡବ-ବଧୂଙ୍କର
ପାଶୁଟିକ ଜଗିଲେ ନୋହିଣ ଅନ୍ତର ।
ବେଣୁ ବୀଣା ମୃଦଙ୍ଗ ଶବ୍ଦେ ବନା କାନ
ସେକାଳରେ ଶୁଣି ନ ପାରଲଟି ଆନ ।
ଯୁଯୁତ୍ସୁ ଧୌମ୍ୟ ଦୁହେଁ ରାଜାଙ୍କର ବୋଲେ
ରାଜାଙ୍କପୁରକୁ ଜଗିଣ ରହିଲେ ।
ଯୁଧିଷ୍ଠିର କ୍ରମେ ପାବନୀ ଯମୁନାକୁ
ଲଙ୍ଘିଗଲେ ଶତଯୂପଙ୍କ ଆଶ୍ରମକୁ ।

ଧୃତରାଷ୍ଟ୍ରଙ୍କର ସମୀପରେ ପାଆନ୍ତେ
ସ୍ଖଳିଲେ ପାଦେ ଯାନୁ ଓହ୍ଲାଇ ସମସ୍ତେ ।
ଦେଖିଲେ ଧୃତରାଷ୍ଟ୍ର ନୃପତିଙ୍କ ସ୍ଥାନ
କଦଳୀବୃକ୍ଷଙ୍କରେ ହୋଇଛି ଆକୀର୍ଣ୍ଣ ।
ଧୃତରାଷ୍ଟ୍ର ରାଜା ସେଠାରୁ ଆନସ୍ଥାନେ
ଥିଲେ ତାଙ୍କୁ ନ ଦେଖିଲା କେହି ନୟନେ ।
ପାଣ୍ଡୁସୁତମାନଙ୍କ ଆସିବାର ଦେଖି
ଋଷିଏ ସେଠାକୁ ଆସିଲେ ହୋଇ ସୁଖୀ ।
ରାଜା ଋଷିଗଣେ ବୋଇଲେ ଆମ୍ଭ ପିତା
କେଉଁଠାରେ ଅଛନ୍ତି କହ ବେଦବେତ୍ତା ।
ଋଷିମାନେ ବୋଇଲେ ଫୁଲ ପାଣି ପାଇଁ
ଯମୁନାକୁ ଯାଇଅଛନ୍ତି ନରସାଇଁ ।
ଋଷିଙ୍କରଠାରୁ ଶୁଣିଣ ଏ ବଚନ
ଗଲେ ଯମୁନାକୁ ପାଣ୍ଡବ ନରରାଣ ।
ସହଦେବ ମାତାଙ୍କ ଦୁଇଗୋଡ଼ ଧରି
ଛୁଡ଼ଲେ ଡକା ଆଗୋ ମାତା ବୋଲିକରି ।
କୁନ୍ତୀ ସହଦେବେ ପୋଟଳ ପକାଇଲେ
ଦେଖିଲ ବାବୁ ତୋତେ ବୋଲିଣ ବୋଇଲେ
ଏ ଅଟନ୍ତେ ଯୁଧିଷ୍ଠିର ଭୀମ ଅରଜୁନ
ନକୁଳ କୁନ୍ତୀଙ୍କ ବଦନ ଆଲୋକନ ।
କରି ଡକା ପାଡ଼ି ପଡ଼ଲେ ମୋ ଯାଇ
ବଚନରେ ହଜେ ବୋଲିଣ ବାପ ଭାଇ ।
କୁନ୍ତୀ ଧୃତରାଷ୍ଟ୍ର ଗାନ୍ଧାରୀ ପାଣିକୁମ୍ଭ
ବହିଥିଲେ ଦେଖି ପାଣ୍ଡବେ ଗୁଡ଼ ଦମ୍ଭ ।
ସେ ପାଣିମାଠିଆମାନଙ୍କୁ ଧଇଲେ
କ ଯୋଗ ଥିବ ଭୁମ୍ଭ କରମେ ବୋଇଲେ ।
ଧୃତରାଷ୍ଟ୍ରରାଜାଙ୍କୁ ହସ୍ତିନାର ଲୋକ
ନାମ ଧରି କହିଲେ ପାଣ୍ଡବ-ନାୟକ ।
ଏବାହାରେ କହିଲେ କୁମ୍ଭ ଦର୍ଶନକୁ
ଆସିଛନ୍ତି ରାଜନ ଜାଣ ଏ ବନକୁ ॥
ଧୃତରାଷ୍ଟ୍ରରାଜା ହସ୍ତିନା ଲୋକଯାକ
ଆସିବାର ଜାଣିଣ ସନ୍ତୋଷ ଅଧିକ ।
ହୋଇ ମନେକଲେ ଅଛି ମୁଁ ହସ୍ତିନାରେ
ନୋହିଲେ କପାଁ ଛନ୍ତି ହସ୍ତିନାର ନରେ ।
ଏ ଅନ୍ତେ ନିଜ ଆଶ୍ରମରେ ପରବେଶ
ହୋଇଲେ ଧୃତରାଷ୍ଟ୍ର ନରକୁଳ-ଈଶ ।

ଏକାଳେ ଋଷିଏ ଆସିଲେ ପାଣ୍ଡବଙ୍କୁ
ଦେଖିବା ଧୃତରାଷ୍ଟ୍ରଙ୍କ ଆଶ୍ରମକୁ ।
ପାଣ୍ଡବଙ୍କୁ ସେମାନେ ଚିହ୍ନି ନ ଥିଲେ
ସଞ୍ଜୟଙ୍କୁ ଚିହ୍ନାଇ ଦିଅ ସେ ବୋଇଲେ ।
ସଞ୍ଜୟ ବୋଇଲେ ସୁବର୍ଣ୍ଣ ପରି ଗାତ୍ର
ତାମ୍ର ପରି ଆରକ୍ତ ଦିଶେ ଦୁଇ ନେତ୍ର ।
ବଡ଼ ଦିଶୁଅଛି ନାସିକା ଯାହାଙ୍କର
ପାଣ୍ଡବରାଜନ ସେ ନାମ ଯୁଧିଷ୍ଠିର ।
ସୁନା ପରି ଗଉର ହସ୍ତି ପରି ଗତି
ମୁଖରେ ଯାହାଙ୍କର ନାହିଁ ରୋମପନ୍ତି ।
ତାହାଙ୍କୁ ଜାଣ ଭୀମ ବୋଲିକରି କହି
ହେ ଋଷିମାନେ ଦିଅ ଏବେ ଥରେ ଚାହିଁ ।
ସିଂହ ପରାଏ ସ୍କନ୍ଧ କମଳ-ନୟନ
ଶ୍ୟାମଳ-ବରନ ଯେ ସେହିଟି ଅର୍ଜୁନ ।
କୁନ୍ତୀଙ୍କ ପାଖେ କାମ କରି ମୂର୍ତ୍ତି ବହି
ଯେ ଅଛନ୍ତି ସେହିଟି ମାଦ୍ରୀପୁତ୍ର ଦୁଇ ।
ନୀଳୋତ୍ପଳ-ବରଣୀ ପଦ୍ମପତ୍ର-ଆଖି
ନାରୀ ଜାଣ ଏହି ଦ୍ରୌପଦୀ ଚନ୍ଦ୍ରମୁଖୀ ।
ସୁବର୍ଣ୍ଣ ପରି କାନ୍ତି ଅଟେ ଯାହାଙ୍କର
ତାହାଙ୍କର ଭାଇ ଅଟନ୍ତି ଚକ୍ରଧର ।
ଅର୍ଜୁନଙ୍କ ଭାରିଯା ଉଲୁପୀଙ୍କି ଦେଖ
ସୁନା ସମାନ ଦେହ ଦେଉଅଛି ଯୋଖ ।
ଚିତ୍ରାଙ୍ଗଦା ମଧ୍ୟ ଅର୍ଜୁନ ମନୋହାରୀ
ଦିଶେ ଦେଖ ଦେହ ମଧୂକପୁଷ୍ପ ପରି ।
ନୀଳୋତ୍ପଳ ପରି ଦିଶୁଛି ଯା ବରନ
ଭୀମଙ୍କ ଭାରିଯା ସେ ବୋଲି ମନେ ଘେନ ।
ସହଦେବ ଭଗିନୀ ସହଦେବ-ଜାୟା
ଏ ଗୌରାଙ୍ଗୀ ଜାଣ ହେ ନାହିଁ ଏଥିମାୟା ।
ଇନ୍ଦୀବର ପରି ଦିଶୁଛି ଯା ଦେହଟି
ନକୁଳଙ୍କ ଭାରିଯା ତାହାଙ୍କୁ କହିଟି ।
ପୁତ୍ର ଧରିଣ ଯେଉଁ ନାରୀ ବସିଛନ୍ତି
ବିରାଟ ନୃପତିଙ୍କ ଅଟନ୍ତି ଦୁହିତା ।
କୃଷ୍ଣଙ୍କର ଅଟନ୍ତି ଯେଏଟି ଭଣଜା
ତାଙ୍କର ଅଟନ୍ତି ସେ ବିବାହିତା ଭାର୍ଯ୍ୟା ।
ଶୁକ୍ଳଲୁଗା ପିନ୍ଧି ଅଛନ୍ତି ଯେତେ ସ୍ତିରୀ
ଧୃତରାଷ୍ଟ୍ରଙ୍କର ବଧୂଏ ତପସ୍ୱିରୀ ।

ସମସ୍ତ ଚିନ୍ତାଇଣ କହିଲ ତୁମ୍ଭଙ୍କୁ
ଘୁଞ୍ଚ ହୃଦୟରୁ ଯେ ଅଛୁ ସଂଶୟକୁ ।
ଋଷିମାନେ ଶୁଣିଣ ସନ୍ତୋଷ ହୋଇଲେ
ସେକ୍ଷଣି ଯେ ଯାହାର ଆଶ୍ରମକୁ ଗଲେ ।
ତହୁଁ ଧୃତରାଷ୍ଟ୍ର ପୁଚ୍ଛିଲେ ପାଣ୍ଡବଙ୍କୁ
ଅଛଟିକି ସୁଖରେ ଘୁଞ୍ଚିଣ ଦୁଃଖକୁ ।
ତୁମ୍ଭଙ୍କୁ ଆଶ୍ରେ କରିଛନ୍ତି ଯେତେ ଜନ
ତାହାଙ୍କର କୁଶଳ ଟିକି ହେ ରାଜନ ।
ଭଣ୍ଡାରଘରଟିରେ ସମ୍ପତ୍ତିକି ରଖି
ଶତ୍ରୁମିତ୍ର ଜାଣୁଛ ଟିକି ଚାରି ଆଖି ।
ଚାରିବର୍ଣ୍ଣଜାକ ଯେ ଯାହା କର୍ମେ ରତ
ହୋଇଛନ୍ତି ଟିକି ହେ ଧର୍ମଙ୍କର ସୁତ ।
କ୍ଷୁଦ୍ର ହୀନଲୋକେ ତୁମ୍ଭ ରାଜ୍ୟରେ ବସା
ନ କରନ୍ତି ଟି ହେ ପାଣ୍ଡବ ମହାଯଶା ।
ଯୁଧିଷ୍ଠିର ବୋଇଲେ ତୁମ୍ଭର ପ୍ରସାଦେ
ଅଛୁ ମୁହିଁ ରାଜନ ଜାଣ ଅପ୍ରମାଦେ ।
ମୋହର ଦୁଇ ମାତା ଦାସୀ ପରି ହୋଇ
ତୁମ୍ଭଙ୍କୁ ସେବୁଛନ୍ତି ଟିକି ପ୍ରୀତି ବହି ।
ବିଦୁର କେଉଁଠାରେ ଅଛନ୍ତି ରାଜନ
ଖୋଜୁଛି ଦେଖିନାହିଁ ତାହାଙ୍କୁ ନୟନ ।
ଧୃତରାଷ୍ଟ୍ର ବୋଲେ ବିଦୁର ଏକାନ୍ତରେ
ତପସ୍ୟା କରୁଅଛନ୍ତି ବାୟୁ ଭକ୍ଷଣରେ ।
ଥରେ ଥରେ ତାହାଙ୍କୁ ଋଷିବିନା ଆନ—
ମନୁଷ୍ୟ କରି ନ ପାରଇ ଦରଶନ ।
ଏହିରୂପରେ ଧୃତରାଷ୍ଟ୍ର ନରଈଶ
କହନ୍ତେ ତାଙ୍କୁ ଦେଖି ଗଲେ ପାଣ୍ଡୁଶିଷ୍ୟ ।
ମସ୍ତକରେ ଜଟା ଗୋଟିଏ ବାନ୍ଧିଛନ୍ତି
ଭଜଅଛି ଶରୀର କ୍ଷୀଣତାକୁ ଅତି ।
ଯୁଧିଷ୍ଠିର ଆସିବା ଲୋକଙ୍କ ଶବଦ
ଶୁଣିଣ ଉଠିଲେ ସେ ନ ବହିଣ ମୋଦ ।
ଯୁଧିଷ୍ଠିର ରାଜନ ବିଦୁର ପାଶକୁ
ଏକା ହୋଇ ଧାଇଁଲେ କଥା ହୋଇବାକୁ ।
ଦୃଶ୍ୟ କେବେ ଅଦୃଶ୍ୟ ଯୁଧିଷ୍ଠିରଙ୍କର
ନୟନକୁ ଭଜୁଥାଆନ୍ତି ସେ ବିଦୁର ।
ନିଜ ନାମ କହି ପାଣ୍ଡବ ମହାରଥୀ
ବୋଲନ୍ତି ଦାଦ କିପାଁ ନ କହୁଛ କଥା ।

ବିଦୁର ଏହା ଶୁଣି ଯୁଧିଷ୍ଠିର ଆଗେ
ରହିଲେ ବୃକ୍ଷ ଗୋଟିଏ ଧରିଣ ସରାଗେ ।
ଯୁଧିଷ୍ଠି ରାଜାଙ୍କୁ ବିଦୁର ମହାମନା
ଏ ଭାବରେ କରି ଅତ୍ୟନ୍ତ ସମ୍ଭାବନା ।
ଯୁଧିଷ୍ଠି ଅଙ୍ଗକୁ ଏହାଙ୍କ ଅଙ୍ଗଯାକ
ଯୋଗବଳେ ବିଦୁର କରିଦେଲେ ଏକ ।
କେବଳ ଦେହଟିକି ଗଛ ପରି ଗଛେ
ରଖି ଦେଇଛନ୍ତି ବିଦୁର ମହାସ୍ୱଚ୍ଛେ ।
ବ୍ୟାସ କହିବାର କଥାକୁ ଯୁଧିଷ୍ଠିର୍
ସୁମରନ୍ତେ ବଢିଲା ବଳ ତାହାଙ୍କର ।
ବିଦୁରଙ୍କ ଶବକୁ ଯୁଧିଷ୍ଠିର ଦେଖି
ପୋଡାଇବା ବୋଲି ଭାବନ୍ତେ ହୋଇ ଦୁଃଖି
ସେହିକାଳେ ଶୁଭିଲା ବାଣୀ ଅଶରୀର
ନ ପୋଡାଅ ତୁମ୍ଭେହେ ବିଦୁର-ଶରୀର ।
ଧର୍ମ ବିଦୁରଙ୍କ ରୂପରେ ଜନ୍ମ ହୋଇ
ଥିଲେ ବୋଲି ଜାଣ ପାଣ୍ଡବ ନରସାଇଁ ।
ପୂର୍ଣ୍ଣିତ ଯତି-ଧର୍ମ ଆଶ୍ରା କରି ପ୍ରାଣ
ଘୁଞ୍ଚି ଅଛନ୍ତି ପୋଡ଼ିବାର ନୋହେ ଜାଣ ।
ଯୁଧିଷ୍ଠିର ଆକାଶ-ବାଣୀଟିକି ମାନି
ଧୃତରାଷ୍ଟ୍ର ପାଖେ ଆସିଲେ ହୋଇ ଭୂମି ।
ବିଦୁରଙ୍କ ମରିବା କଥା ଧୃତରାଷ୍ଟ୍ର—
ଆଗରେ କହି ନୃପ ହେଲେ ଶୋକାବିଷ୍ଟ ।
ବିଦୁରଙ୍କ ମରଣ ଚମତ୍କାର ଶୁଣି
ଆଶ୍ଚର୍ଯ୍ୟ ପାଇଲେ ପାଣ୍ଡବ-ଲୋକଶ୍ରେଣୀ ।
ଏ ଅନ୍ତେ ଧୃତରାଷ୍ଟ୍ର ପାଣ୍ଡବମାନଙ୍କୁ
ଫଳ ମୂଳ ଆଣିଣ ଦେଲେ ଖାଇବାକୁ ।
ଯୁଧିଷ୍ଠିର ସେ ଫଳ ମୂଳ ଖାଇ ହସି
ପାଣି ପିଇ ବସିଲେ ପେଟକୁ ଆଉଁଷି ।
ସେ ରାତିକି ଧୃତରାଷ୍ଟ୍ରଙ୍କ ଆଶ୍ରମରେ
ରହିଲେ ପାଣ୍ଡୁସୁତେ ଅତି ସୁମନରେ ।
ଧୃତରାଷ୍ଟ୍ରଙ୍କର ପରାୟେ କୁଶ ପୋଢ଼
ପାଣ୍ଡୁସୁତେ ଶୋଇଲେ ଯେଝା କରି ମାଡ ।
ରାତିଶେଷରେ ଧୃତରାଷ୍ଟ୍ରଙ୍କ ଆଶ୍ରମ
ସ୍ଥାନ ସାରା ଦେଖିଲେ ସେ ନୃପ-ଉତ୍ତମ ।
ସେ ଆଶ୍ରମରେ ଯେତେ ଋଷି ଦ୍ୱିଜ ଥିଲେ
ତାଙ୍କୁ ସୁନାସମ୍ବନ୍ଧ ପତ୍ରମାନ ଦେଲେ ।

ଲେଉଟିଣ ଆଶ୍ରମକୁ ସେ ନରବର
ଧୃତରାଷ୍ଟ୍ରନୃପଙ୍କୁ କଲେ ନମସ୍କାର ।
ଧୃତରାଷ୍ଟ୍ରଙ୍କର ସମ୍ମୁଖେ ଆସନରେ
ବସିଲେ ଯୁଧିଷ୍ଠିର ରାଜା ସୁମନରେ ।
ଭୀମ ଆଦି ଯେତେ ଭାଇଏ ଥିଲେ ପାଖେ
ସେ ମଧ୍ୟ ଆନନ୍ଦେ ବସିଲେ ଯେଝା ସୁଖେ ।
କୁରୁକ୍ଷେତ୍ରଋଷିଙ୍କି ଘେନ ବେଦବ୍ୟାସ
ହେଲେ ଧୃତରାଷ୍ଟ୍ରଙ୍କ ପାଶେ ପରବେଶ ।
ଯୁଧିଷ୍ଠିର ଆଦି ବ୍ୟାସଙ୍କୁ ଦେଖିକରି
ନମିଲେ ତାଙ୍କୁ ନିଜ ନାମକୁ ଉଚାରି ।
ଧୃତରାଷ୍ଟ୍ର ସ୍ଥାନ ତ୍ୟଜନ୍ତେ ହୋଇ ହୃଷ୍ଟ
ବସିଲେ ତହିଁ ବ୍ୟାସ ଋଷିଙ୍କ ବରିଷ୍ଠ ।
ବେଦବ୍ୟାସଙ୍କର ଆଜ୍ଞାରେ ଋଷିଶ୍ରେଣୀ
ବସିଲେ ଆସନରେ ଯୁକ୍ତ ମାନ ଜାଣି ।
ବ୍ୟାସ ବୋଇଲେ ହେ ଧୃତରାଷ୍ଟ୍ର ମୃତ୍ୟୁ ଚନ୍ଦ୍ର
ଭ୍ରମୁନାହିଁ ଚିତ୍ତ ତ ହସ୍ତିନା ନୃପତି ।
ତୁମ୍ଭର ହେଉଛନ୍ତି ତପ ବଢ଼ିଥିତ
ଆରଣ୍ୟକ ବିଧି କରୁଛ ପାଳନ ତ ।
ଗାନ୍ଧାରୀ କୁନ୍ତୀ ତୁମ୍ଭ ସେବାରେ ନିଯୁକ୍ତ
ହୋଇଛନ୍ତି ଠିକ ରାଜନ ଅବିରତ ।
ଦେବଙ୍କର ବୃହସ୍ପତିଙ୍କର ପରାୟେ
ବିଦୁର ତୁମ୍ଭ କୁଳେ ଅଟନ୍ତି ହେ ରାୟେ ।
ବିଦୁର ଯୁଧିଷ୍ଠିର ଦୁହେଁ ଧର୍ମରୂପ
ବୋଲିକରି ଜାଣ ହସ୍ତିନା-ମଣ୍ଡ-ନୃପ ।
ବିଦୁର ଯୁଧିଷ୍ଠିର ଦୁହିଙ୍କ ଭେଦକୁ
ନାହିଁଟି କାହାର ବଚନ କହିବାକୁ ।
ଯାହା ତୁମ୍ଭର ଆହେ ହେଉଅଛି ଇଚ୍ଛା
ତା ବୋଲ କରିବ ଅମ୍ବିକାଦେଶ ବତ୍ସା ।
ମୁଁ ସମସ୍ତ ଆଶ୍ଚର୍ଯ୍ୟ କଥା ତପୋବଳେ
କରି ପାରଇ ହେ ରାଜନ ଜାଣ ହେଲେ ।
ମୁଁ ଯାହା କରିଥିବି ଆନ ଋଷି ତାହା
କରିବ ନ ପାରିବ ଜାଣ ହେ ନରନାହା ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କି ଆଶ୍ଚର୍ଯ୍ୟ କଲେ ବ୍ୟାସ ତାହା ବଖାଣ ।
ଯୁଧିଷ୍ଠିର ସେଠାରେ କେତେକାଳ ରହି
ହସ୍ତିନା ଗଲେ କହ ତା ମୋତେ ବତାଇ ।

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ମାସେ ତହିଁ ରହିଲେ ଧର୍ମଙ୍କ ତନୟ ।
ନାରଦାଦି ଋଷିଏ ମଧ୍ୟ ସେହିଠାକୁ
ଆସିଲେ ପାଣ୍ଡବମାନଙ୍କୁ ଦେଖିବାକୁ ।
ଗନ୍ଧର୍ବ ଅପସରମାନେ କୋଟି କୋଟି
ପାଣ୍ଡବଙ୍କର ଥିବା ସ୍ଥାନ ହେଲେ ଗୋଟି ।
ଧୃତରାଷ୍ଟ୍ରଙ୍କର ଆଜ୍ଞାରେ ଯୁଧିଷ୍ଠିର
କଲେ ଋଷିମାନଙ୍କୁ ବହୁତ ସତ୍କାର ।
ବ୍ୟାସ ସେ କାଳେ ଧୃତରାଷ୍ଟ୍ର ମୁଖ ଚାହିଁ
ବୋଇଲେ ଆସିଛୁ ଫଳପ୍ରଦାତା ହୋଇ ।
ଯାହା ଇଚ୍ଛା ହେଉଛି ମାଗ ନରପାଳ
ଦେଖନ୍ତୁ ମୋ ତପସ୍ୟାବଳ ଋଷିକୁଳ ।
ଧୃତରାଷ୍ଟ୍ର ବୋଇଲେ ତୁମ୍ଭ ଯେବେ ଦୟା
ଅଛି, ପାପ ଛାଡ଼ିଲା ଜାଣିଲି ମୋ କାୟା ।
ମୁଁ କହୁଅଛି ଆହେ ବ୍ୟାସ ଋଷିବର
ହେଉଛି ପୁତ୍ରଙ୍କୁ ଦେଖିବା ଇଚ୍ଛା ମୋର ।
ଯୁଦ୍ଧେ ବା ବୋଲିବି ସେ ପୁତ୍ର କୋଟି କୋଟି
ବୁଡ଼ାଇଅଛି ପରଲୋକକୁ ଗଲେଟି ।
ତାଙ୍କ କହୁଥାଇ ସେ ତ ଦେହେଁ ଜାତ
ହେଲା ଏଣୁ ତାକୁ ନ ପାରେ ଭୁଲି ଚିତ୍ତ ।
ଧୃତରାଷ୍ଟ୍ରମୁଖରୁ ଶୁଣି ଏ ବଚନ
ଗାନ୍ଧାରୀ କୁନ୍ତୀ ଦୁହେଁ ହେଲେ ଶୋକମନ ।
ଏହାହାରେ ଦ୍ରୌପଦୀ ଆଦି ଯେତେ ସ୍ତ୍ରୀରି
ଥିଲେ ଉଚ୍ଚା ପାଡ଼ିଲେ ପୁତ୍ର ନାମ ଧରି ।
ଗାନ୍ଧାରୀ ବୋଇଲେ ହେ ବେଦବ୍ୟାସେ ଶୁଣ
ପୁତ୍ର ଶୋକରେ ଧୃତରାଷ୍ଟ୍ର ନରୋତ୍ତମ ।
ବନମଧ୍ୟେ ରହିଣ ସୁମରୁଅଛନ୍ତି
ଘରେ ସ୍ୱକାର କହିବା କେତେ ଯତି ।
ତୁମ୍ଭ ତପୋବଳେ ସଜୀବ ଏ ସଂସାର
କୁରୁଙ୍କୁ ଦେଖାଇବା ହେବ କେତେକର ।
କୁରୁ ପାଣ୍ଡୁ ସ୍ତ୍ରୀଗଣ ପୁତ୍ର ଦୁଃଖ ସହି—
ଯାଉଛନ୍ତି ଜାଣ ହେ ଋଷି ଘଡ଼ିଘଡ଼ି ।
ଏହିରୂପେ ଗାନ୍ଧାରୀ କହନ୍ତେ ବଚନ
କୁନ୍ତୀ ଉଚ୍ଚା ପାଡ଼ି ହା ମଲୁ ବୋଲି କର୍ଣ୍ଣ ।
ବ୍ୟାସ ତା ଦେଖିକରି ବୋଇଲେ ଗୋ କୁନ୍ତୀ
ନ କାନ୍ଦ କହ କସ କରିଅଛ ମତି ।

କୁନ୍ତୀ ବୋଇଲେ ହେ ବାପଙ୍କ ଘରେ ଥାଇ
ଦୁର୍ବାସା-ବରେ ସୂର୍ଯ୍ୟଆଡ଼େ ଥିଲି ପାଇ ।
କର୍ଣ୍ଣକୁ ଆହେ ଜାଣ ଋଷିକୁଳ-ଈଶ
ଛାଡ଼ିଲି ତାକୁ ମୋତେ ହେବ ବୋଲି ଦୋଷ
ମୁଁ ଛାଡ଼ିବାରୁ ତାକୁ ରାଧାଙ୍କ ଭରତା
ପାଳଣ କରାଇଲେ ଧନୁର୍ବେଦ ଦେବଜ୍ଞ ।
ଦୁର୍ଯ୍ୟୋଧନ ଆଶ୍ରା କରି ମୋ ନନ୍ଦନ
ଯୁଦ୍ଧେ ହୋଇଲା ସବ୍ୟସାଚୀରେ ନିଧନ ।
ବ୍ୟାସ ବୋଇଲେ ଆଗୋ, ତୁମ୍ଭ ପତିଭକ୍ତି
ଏ ଯେଣ୍ଣ କିଛି ଊଣା ହୋଇନାହିଁ କୁନ୍ତୀ ।
ଦେବେ ତ ମନୁଷ୍ୟରେ ହୁଅନ୍ତି ପ୍ରବେଶ
ବୋଲୁଅଛୁଁ ଏଣୁ ତୁମ୍ଭର ନାହିଁ ଦୋଷ ।
ନରଙ୍କରେ ଯେବେ ପ୍ରବର୍ତ୍ତିଥାନ୍ତି ତୁମ୍ଭେ
ଦୁର୍ବୁଦ୍ଧି କଲ ବୋଲି ବୋଲୁଥାନ୍ତୁ ଆମ୍ଭେ ।
ଏହା କହି କହିଲେ ଯୁଦ୍ଧେ ଯେତେ ମୃତ
ହୋଇଛନ୍ତି ତାହାଙ୍କୁ ଆଜ ତୁମ୍ଭ ନେତ ।
ଦେଖିବ ଯେଉଁରୂପେ ସେହି ରୂପେ ମୂର୍ତ୍ତି
କରିବ ତପୋବଳେ ଦ୍ୱିଧା ଏଥି ନାହିଁ ।
ଦେବକାର୍ଯ୍ୟ ପାଇଁକି ଗନ୍ଧର୍ବ ରାକ୍ଷସ
ଯକ୍ଷ ହୋଇଥିଲେକି ମର୍ତ୍ତ୍ୟରେ ପ୍ରକାଶ ।
ଦେବକାର୍ଯ୍ୟ କରଣ ହୋଇ ମରମର
ବସିଲେ ସ୍ୱଇଚ୍ଛାରେ ଯାଇଁ ଯେଝା ପୁରୀ ।
ଯେଉଁ ଧୃତରାଷ୍ଟ୍ର ଗନ୍ଧର୍ବଙ୍କର ପତି
ସେହି ହୋଇଛନ୍ତି ତ ଗାନ୍ଧାରୀଙ୍କ ପତି ।
ମରୁତଗଣମାନଙ୍କରୁ ପାଣ୍ଡୁ ରାଜା
ଜନ୍ମି ଏ ମର୍ତ୍ତ୍ୟରେ ପାଇଲେ ନରେ ପୂଜା ।
ଧର୍ମଙ୍କର ଅଂଶ ବିଦୁର ଯୁଧିଷ୍ଠିର
ହେବାରୁ ଧର୍ମେ ଥାଏ ମତି ତାହାଙ୍କର ।
ଦୁର୍ଯ୍ୟୋଧନ କଳି ଶକୁନି ଯେ ଦ୍ୱାପର
ଦୁହେଁ ଜନ୍ମିଥିଲେ ହେବାକୁ ମହୀଭାର ।
ଦୁଃଶାସନ ଆଦି ଗାନ୍ଧାରୀ-ସୁତମାନେ
ରାକ୍ଷସ ଅଂଶ ବୋଲି ବିଚାର ଗୋ ମନେ ।
ମରୁତଗଣୁ ଭୀମ ହୋଇବାରୁ ଜାତ
ବହୁତ ବଳ ବହିଅଛି ତାଙ୍କ ହସ୍ତ ।
ନାରାୟଣ ନର ଯେ କୃଷ୍ଣ ଅରଜୁନ
ହେବାରୁ ହୋଇଲେ ଏ ଜଗତପାଳନ ।

ଅଶ୍ୱିନଙ୍କ ଅଂଶୁ ମାଦ୍ରୀଙ୍କ ଦୁଇ ସୁତ
ଜନ୍ମ ହୋଇଛନ୍ତି ଯେଣ ତୁମ୍ଭେ ଚିତ୍ତେ ।
ଭୀଷ୍ମ ଦ୍ରୋଣ ବସୁ ଏ ବୃହସ୍ପତି ଅଂଶ
ବୋଲି କରି ଜାଣ ଗୋ କୁନ୍ତୀ-ଦେବୀ-ଈଶ ।
କର୍ଣ୍ଣ ସୂର୍ଯ୍ୟ ଅଂଶୁ ଯେ ଅଭିମନ୍ୟୁ ଶଶି
ଅଂଶରୁ ମର୍ତ୍ତ୍ୟମଧ୍ୟେ ଥିଲେକି ପ୍ରକାଶି ।
ପାବକଅଂଶୁ ଧୃଷ୍ଟଦ୍ୟୁମ୍ନ ତ ଜାତ
ଏଣୁ ତେଜ ବହିଥାନ୍ତି ସେ ଅପ୍ରମିତ ।
ରାକ୍ଷସଅଂଶରୁକି ଶିଖଣ୍ଡୀ ସମ୍ଭବ
ରୁଦ୍ରଅଂଶରୁ ଅଶ୍ୱତ୍ଥାମା ଭୂମିଦେବ ।
ଯେବେ ଏମାନଙ୍କୁ ଦେଖିବା ଇଚ୍ଛା ଅଛି
ଗଙ୍ଗାସ୍ନାନ କରି ଯାଇ ମୁଁ ଦେଖାଉଛି ।
ଏରୂପେ ବ୍ୟାସଠାରୁ ଯହୁଁ ସେ ଶୁଣିଲେ
କୁରୁ ପାଣ୍ଡୁ ସ୍ତ୍ରିୟେ ଗଙ୍ଗା-ତଟେ ଗଲେ ।
ଧୃତରାଷ୍ଟ୍ର ଯେଜଣ ପାଣ୍ଡବମାନଙ୍କୁ
ଗଲେ ଗଙ୍ଗାତଟକୁ ପୁତ୍ର ଦେଖିବାକୁ ।
ସୂର୍ଯ୍ୟାସ୍ତେ ସମସ୍ତେ ସାରିଲେ ସ୍ନାନବିଧି
ଦେଖିବା ଯୁଦ୍ଧେ ମଲେଲୋକେ କରି ବୁଦ୍ଧି ।
ବ୍ୟାସ ମଧ୍ୟ ସେ ଜଳେ ସ୍ନାନକୁ ସାରିଲେ
ଯୁଦ୍ଧେ ମଲାଲୋକଙ୍କୁ ଆବାହନ କଲେ ।
ବ୍ୟାସ ଆବାହନ କରିବା ମାତ୍ରକରେ
ମହାଧ୍ୱନି ଶୁଭିଲା ସବୁରି କର୍ଣ୍ଣରେ ।
ଯିଏ ଯାହାର ରଥ, ଯେ ଯାହାର ଘୋଡ଼ା
ଚଢ଼ି ବାହାରିଲେ ଜଳରୁ କୁରୁଭିଡ଼ା ।
ପୂର୍ବ ପ୍ରତି ଛନ୍ତି ଅଧିକ ତେଜ ଧରି
ଅଳଙ୍କାରେ ବେଶ ସବୁରି ସେହିପରି ।
ଦୁର୍ଯ୍ୟୋଧନ ରାଜା କର୍ଣ୍ଣ ଭାଇଙ୍କ ତୁଲେ
ରହିଅଛନ୍ତି ଭିନ୍ନ ହୋଇଣ ମନରେ ।
ଭୀଷ୍ମ ଦ୍ରୋଣ ଶକୁନି ଜୟଦ୍ରଥ ଆଦି
ନୃପ ପାଶେ ଛନ୍ତି ହୋଇଣ ନିର୍ବିବାଦି ।
ଦ୍ରୌପଦୀ ପାଞ୍ଚସୁତେ ଅଭିମନ୍ୟୁ ତୁଲେ
ରଥକୁ ଚଳାଇ ବାହାରିଛନ୍ତି ବେଳେ ।
ବାହ୍ଲିକ ସୋମଦତ୍ତ ବିରାଟ ଦ୍ରୁପଦ
ରଥ ଚଢ଼ି ଆସନ୍ତି ବହିଣ ପ୍ରମୋଦ ।
କାହାରି କାହାଠାରେ ନାହିଁ କିଛି ହିଂସା
କେହି କାହାକୁ ନ କହନ୍ତି କିଛି ଭାଷା ।

ଏ ବାହାରେ ଅଠର ଅକ୍ଷୌହିଣୀ ସେନା
ଅଛନ୍ତି ପାଶେ ବେଶ ହୋଇ ନାନା ନାନା ।
ଗନ୍ଧର୍ବ ଯକ୍ଷକିନ୍ନରୀମାନେ ଗୀତ ଗାଇ
ନୃତ୍ୟ କରି ନଅନ୍ତି ତାଙ୍କ ମନ ମୋହି ।
ଧୃତରାଷ୍ଟ୍ର ଗାନ୍ଧାରୀ ଦୁହେଁ ଦିବ୍ୟନେତ୍ର
ପାଇଲେ ଦେଖିବାକୁ ସତ୍ୟ-ବନ୍ତ ସୁତ ।
ସେତେବେଳେ ସେ ଦୁହେଁ ପୁତ୍ରଟିମାନଙ୍କୁ
ଦେଖି ସୈନ୍ୟ ଭୁଲେ ପାଇଲେ ଆଶ୍ଚାର୍ଯ୍ୟକୁ ।
ପାଣ୍ଡୁସୁତେ ଦେଖି ବୋଇଲେ ଧନ୍ୟ ଧନ୍ୟ
ଅଟନ୍ତି ତପୀଙ୍କରେ ବ୍ୟାସ ତପୋଧନ ।
ତଦନ୍ତେ କୁରୁ ପାଣ୍ଡୁସେନା ଯାଇବାର
ଲୋକଙ୍କଠାକୁ ଆସି କଲେ ସତକାର ।
ଯାଇବା ଲୋକମାନେ ତାଙ୍କ ପୂଜାବିଧି
କରନ୍ତେ କହିଲେ ଯିବାକୁ କରି ବୁଦ୍ଧି ।
ଯାଅ ବୋଲି ବୋଲନ୍ତେ ସେହି ଗଙ୍ଗାଜଳେ
ଲୀନ ହୋଇଗଲେ ବ୍ୟାସଙ୍କ ମନ୍ତ୍ରବଳେ ।
ଯେ ଯେଉଁ ଲୋକଟି ଜନ୍ମେଜୟଗଣ
ଆସିଥିଲେ ସେ ସେହି ଲୋକ ଗଲେ ଜାଣ ।
ଏ ଅନ୍ତରେ କହିଲେ ବ୍ୟାସଋଷି ବଡ଼—
ପତିଙ୍କି ଇଚ୍ଛା ଥିଲେ ଗଙ୍ଗାଙ୍କରେ ବୁଡ଼ ।
ଏହା ଶୁଣିଣ ଯୁଦ୍ଧ ହତପତି ରଣ୍ଡେ
ଧୃତରାଷ୍ଟ୍ର ନୃପେ ମାଗିଲେ ଆଜ୍ଞାରଣ୍ଡେ ।
ଧୃତରାଷ୍ଟ୍ରଙ୍କର ପାଇଣ ସନମତ
ଗଙ୍ଗାଙ୍କ ମଧ୍ୟକୁ ହେଲେ ସେ ଉପଗତ ।
ଗଙ୍ଗାରେ ବୁଡ଼ନ୍ତେ ପାର୍ଥିବ ଦେହ ଛାଡ଼ି
ସ୍ୱର୍ଗକୁ ଗଲେ ଦିବ୍ୟ ବିମାନକୁ ଚଢ଼ି ।
ଯେ ଯାହାର ପତିମାନଙ୍କୁ କଲେ ସେବା
ପୁଣ୍ୟ ପରି ଲଭିଣ କୃତାର୍ଥ ହୋଇବା ।
ଯେଉଁ ଲୋକ ଏ ସମାଗମକୁ ଶୁଣଇ
ମୁକ୍ତ-ପାପ ହୋଇ ସେ ସ୍ୱର୍ଗରେ ବସଇ ।
ପତିଲୋକପ୍ରାପ୍ତି ଏଠାରେ ହେଲା ଶେଷ
କହଇ କୃଷ୍ଣସିଂହ ଧରାକୋଟ ଈଶ ।

—o—

## ପାଣ୍ଡବଙ୍କର ହସ୍ତିନାକୁ ପ୍ରତ୍ୟାବର୍ତ୍ତନ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହିଲ ତ ମହା ଆଶ୍ଚର୍ଯ୍ୟ କଥାମାନ ।
ଏହିସକାଶରୁ ପଚାରୁ ଅଛି ମୁହିଁ
କହି ଦିଅ ମୋ ହୃଦ-ସନ୍ଦେହ ଛଡ଼ାଇ ।
ଦେହ ଛାଡ଼ି ଯୁଦ୍ଧେ କରିବା ଲୋକମାନେ
ଦେହ ଧରି କେମନ୍ତେ ଆସିଲେ ମର୍ତ୍ତ୍ୟ ସ୍ଥାନେ ।
ଏଥିର କି କାରଣ ଅଛି ନୃପବର
ଜଣା ଯେବେ ଅଛି କହିଣ ତା ବିସ୍ତର ।
ବଇଶମ୍ପାୟନ ବୋଇଲେ କରମକୁ
ଅନୁରୂପ ଲୋକ ଭଜନ୍ତି ଶରୀରକୁ ।
କର୍ମ ତ କେତେବେଳେ ନୁହଇ ଟି କ୍ଷୟ
ମୋ କହିବାରୁ ଜାଣ ଆହେ ଜନ୍ମେଜୟ ।
ଦେହର ବିଯୋଗରେ ଶୋକ ଯେ କରଇ
ତାହାଠାରୁ ଲୋକରେ ବଳ ବାଇ ନାହିଁ ।
ଏହି ଶକାଶରୁ ବ୍ୟାସଙ୍କ ପ୍ରମୋଦରେ
କୁରୁଏ ମୃତଲୋକ ଦେଖିଲେ ନେତ୍ରରେ ।
ଜନ୍ମେଜୟ ବୋଇଲେ ମୋହର ବାପକୁ
ଦେଖାଇଲେ ସେ ମୋତେ ଯିବ ବିଶ୍ୱାସକୁ ।
ବ୍ୟାସ ତ ଜନ୍ମେଜୟ ଯାଗୃହିରେ ଥିଲେ.
ଏହା ଶୁଣି ସେ ପରୀକ୍ଷିତ ଦେଖାଇଲେ ।
ପୂର୍ବ ପରି ପାଖେ ଅଛନ୍ତି ମନ୍ତ୍ରୀକୁଳ
ପାଚନ୍ତି ଗୋଟିକେତେ ନୃପ ମୁଣ୍ଡବାଳ ।
ଶମୀକ ଶୃଙ୍ଗୀ ଦୁଇଋଷିଏ ପାଖରେ
ରହିଛନ୍ତି ତାଙ୍କର ଅତ୍ୟନ୍ତ ସୁଖରେ ।
ଜନ୍ମେଜୟ ବାପଙ୍କୁ ଅବଭୃଥ-ସ୍ନାନ
କରାଇଣ ଆପଣେ ମଧ୍ୟ କଲେ ସ୍ନାନ ।
ଏହା କରି ସାରିଣ ଆସ୍ତିକକୁ ଚାହିଁ
କହିଲେ ଜନ୍ମେଜୟ ନରକୁଳସାଇଁ ।
ବାବୁ ଯାହା ମୋହର ଆସିଲେ ଯାଗକୁ
ଏଥୁ ନାହିଁ ଭାଗ୍ୟ ମୋହର ଅର୍ଜିବାକୁ ।
ଆସ୍ତିକ ବୋଇଲେ ହେ ବ୍ୟାସ ଋଷିରାଜ ।
ଛନ୍ତି ଯହିଁ ତହିଁ ଏ କଥା କି ଆଶ୍ଚର୍ଯ୍ୟ ।
ଏବେ ଭୂମିର ଶତ୍ରୁ ସର୍ପକୁଳ ନାଶୀ
ଋଷିଙ୍କ ପୂଜା କରି ରାଜା ହୋଇ ତୋଷୀ ।
ଏ ଅନ୍ତେ ଜନ୍ମେଜୟ ବଇଶମ୍ପାୟନ
ଋଷିଙ୍କି ଚାହିଁ କରି କହିଲେ ବଚନ ।
ଧୃତରାଷ୍ଟ୍ରରାଜା ତ ପୁତ୍ରଙ୍କୁ ଦେଖିଲେ
କହ ଏଥୁଅନ୍ତେ ସେ କେଉଁ କଥା କଲେ ।

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଆଶ୍ରମରେ ବସିଣ ଅମ୍ବିକା-ତନୟ ।
ଋଷିଙ୍କି ବୋଇଲେ ହେ ଯେ ଯାହା ସ୍ଥାନକୁ
ଯାଅ କରି କଲ୍ୟାଣ ପାଣ୍ଡବମାନଙ୍କୁ ।
ବ୍ୟାସ ବୋଇଲେ ଆହେ ପାଣ୍ଡୁସୁତମାନେ
ମାସେ ହେଲା ରହିଲେ ତୁମ୍ଭ ସନ୍ନିଧାନେ ।
ଆମ୍ଭେ ମଧ୍ୟ ବୋଲୁଅଛୁ ତାହାଙ୍କୁ ମେଲାଣି
କରି ନିଜ ରାଜ୍ୟେ ଯାନ୍ତୁ ସେ ସୈନ୍ୟ ଘେନି
ଧୃତରାଷ୍ଟ୍ର ବ୍ୟାସଙ୍କ ବଚନ ଘେନିଲେ
ପାଣ୍ଡୁସୁତମାନଙ୍କୁ ଡକାଇ ଆଣିଲେ ।
ବୋଇଲେ ମାସେ ହେଲା ମୋ ପାଶେ ରହିଲ
କଲ ମୋର ହୃଦୟଦେଶକୁ ଉତ୍‌ଫୁଲ୍ଲ ।
ତୁମ୍ଭେ ରହିବାରୁ ମୋହର ଏ ଆଶ୍ରମ
ହୋଇଲା ରାଜନ ହସ୍ତିନା ସରି ସମ ।
ଏବେ ବୋଲୁଅଛି ମୁଁ ଯାଅ ଯେ ରାଜ୍ୟକୁ
କରିବି ମୁଁ ବନେ ମହତ ତପସ୍ୟାକୁ ।
ଯୁଧିଷ୍ଠିର ବୋଇଲେ ନ ଯିବି ରାଜ୍ୟକୁ
ଯାଆନ୍ତୁ ଭାଇମାନେ ଘେନିଣ ସୈନ୍ୟଙ୍କୁ ।
ତୁମ୍ଭରି ସେବାରେ ମୁଁ ଦେହକୁ କୃତାର୍ଥ
କରି ଅରଜିବି ସ୍ୱର୍ଗରେ ପୁରୁଷାର୍ଥ ।
ଗାନ୍ଧାରୀ ବୋଇଲେ କାହିଁକି ବାବୁ ଏହା
ବୋଲୁଅଛ ବନରେ ହୋଇବି ମୁଁ ସାହା ।
ଏବେ ଆମ୍ଭେ ସନ୍ତୋଷ ହୋଇଣ ବୋଲୁଅଛୁ
ଯାଅ ହେ ବାବୁ ପିଣ୍ଡ ଦେବାକୁ ତ ଅଛୁ ।
ଯୁଧିଷ୍ଠିର ବୋଇଲେ ତପରେ ମୋ ମନ
ବଳଅଛି ମାତା ନ କହ ଗୋ ବଚନ ।
କୃଷ୍ଣ ବିନା ମହୀରେ ବନ୍ଧୁ ମିତ୍ର ହୋଇ
ରହିଁଲେ କାହାକୁ ନୟନେ ଦେଖୁନାହିଁ ।
ଯୁଦ୍ଧରେ ନ ହୋଇଲେ ଜ୍ଞାତି ବନ୍ଧୁ ହତ
କାହିଁକି ହସ୍ତିନା ଯିବାକୁ ହେବ ଚିତ୍ତ ।
ସହଦେବ ବୋଇଲେ ଆହେ ନରସାଇଁ
ମୁଁ ଥିବି ମାତା ପାଖେ ହସ୍ତିନା ନ ଯାଇ ।
କୁନ୍ତୀ ବୋଇଲେ ରେ ମୋ ଦୁଇପୁତ୍ରଯାକ
କହ ହାରିଲ କବା ଦେହରୁ ବିବେକ ।
ବୃଦ୍ଧ ହୋଇଯିବାରୁ ବନମଧ୍ୟେ ରହି
ତପ କଲୁ ଆମ୍ଭେ କୃତାର୍ଥ ହେବା ପାଇଁ ।
ତୁମ୍ଭର ତ ହୋଇଛି ଏବେ ଯୁବା କାଳ
ପାଳ ଯାଇ ହସ୍ତିନାବାସୀ ପ୍ରଜାକୁଳ ।
କାଳରେ ଆମ୍ଭପରି ବନେ ତପ କରି
ଭୁଞ୍ଜିବାକୁ ହେବବ ସ୍ୱର୍ଗପୁର-ଶିରୀ ।
ମାତାଙ୍କଠାରୁ ଶୁଣି ଯଥାର୍ଥ ବଚନ
ହସ୍ତିନାକୁ ଯିବାକୁ ନୃପ କଲେ ମନ ।
ଧୃତରାଷ୍ଟ୍ରଙ୍କର ସମ୍ମୁଖରେ ପାଣ୍ଡୁ-ସୁତେ
ଜଣାଇଲେ ହସ୍ତିନାପୁର ଯିବା ଚିତ୍ତେ ।
ଧୃତରାଷ୍ଟ୍ର ରାଜନ ପାଣ୍ଡବମାନଙ୍କୁ
ଆଲିଙ୍ଗନ କରିଣ ଶୁଙ୍ଘିଲେ ମୁର୍ଦ୍ଧାକୁ ।
ତହୁଁ ପାଣ୍ଡୁସୁତେ ବଧୂଙ୍କୁ ସଙ୍ଗେ ଧରି
ନମସ୍କାର କରିଲେ ପ୍ରଦକ୍ଷିଣ କରି ।
ଯେ ଯାହାର ଯାନମାନଙ୍କରେ ବସିଲେ
ସୈନ୍ୟ ଘେନି ହସ୍ତିନାପୁରକୁ ଆସିଲେ ।
ଗତଶୋକ ହୋଇଣ-ପାଣ୍ଡବ-ନାୟକ
ଘେନି ସଙ୍ଗେ ଦ୍ରୌପଦୀ ସ୍ତ୍ରିରୀଙ୍କ ତିଳକ ।
ନାନାଜାତି ବେଶ ବହନ ଭୋଗ କରି
କ୍ଷଣ ପରି ଦେଲେ ରଜନୀ ଦିନ ସାରି ।

—※—

## ନାରଦ କର୍ତ୍ତୃକ କୁନ୍ତୀ ଓ ଗାନ୍ଧାରୀସହ ଧୃତରାଷ୍ଟ୍ରଙ୍କର ମୃତ୍ୟୁ ସମ୍ବାଦ ଦାନ

ଏରୂପେ ଯାଆନ୍ତେ ବରଷ ଦୁଇ କାଳ
ଆସିଲେ ସେଠାକୁ ନାରଦ ତପଃଶୀଳ ।
ନାରଦଙ୍କୁ ଦେଖିଣ ଯୁଧିଷ୍ଠିର ନୃପ
ପୂଜା କରି ପୁଚ୍ଛିଲେ ହୃଦୁଁ ଗୁଡ଼ି ତାପ ।
କି କାର୍ଯ୍ୟକୁ ଏଠାକୁ ଆସିବା ହୋଇଛି
କହ ତାହା କରି ଦେଉଛି ବ୍ରହ୍ମର୍ଷି ।
ନାରଦ ବୋଇଲେ ହେ ତୀର୍ଥ କରିସାରି
ଆସିଛି ତପୋବନ ଦେଖି ଦଣ୍ଡଧାରି ।
ଯୁଧିଷ୍ଠିର ବୋଇଲେ ତପୋବନେ ପିତା
ତପ କରୁଅଛନ୍ତି କି କରୁଛନ୍ତି ମାତା
ଏ ବାହାରେ ଜ୍ୟେଷ୍ଠ ସୋଦର ଦୁଇ ମାତ
ଅଛନ୍ତି ଭଲେକି କହ ତପୋବନ ।
ନାରଦ ବୋଇଲେ ଆସନ୍ତେ ତୁମ୍ଭେମାନେ
ଧୃତରାଷ୍ଟ୍ରରାଜା ତପସ୍ୟା-ଇଚ୍ଛା ମନେ ।

ସେଠାରୁ ଯାଇ ଗଙ୍ଗା ଦ୍ୱାରେ କଲେ ବାସ
ତପ କଲେ କରିଣ ପବନକୁ ଗ୍ରାସ ।
ଗାନ୍ଧାରୀ ଜଳ ପିଇ ବଞ୍ଚିଲେକ ତନ
କୁନ୍ତୀ କଲେ ମାସକେ ଥରେଟି ଭୋଜନ ।
ଷଷ୍ଠକାଳେ ସଞ୍ଜୟ ମନ୍ତ୍ରୀବର କଲେ
ଏକଷପରୁ ଚଉଳ ନିବର୍ତ୍ତାଇ ଦେଲେ ।
ଦିନେ ଗଙ୍ଗାରେ ସ୍ନାନ କରିଣ ଆଶ୍ରମେ
ବସନ୍ତେ ସେମାନେ ଅତ୍ୟନ୍ତ ଦେହ-ଶ୍ରମେ ।
ନିଦ୍ରିତ ହୋଇକରି ସେହି କାଳେ ବାତ
ବହନ୍ତେ ହେଲା ବୃକ୍ଷଙ୍କରୁ ଅଗ୍ନି ଜାତ ।
ଧୃତରାଷ୍ଟ୍ରରାଜାଙ୍କ ଗୃହପଟ ବେଢ଼ି
ଆସିଲେ ସେହି ଅଗ୍ନି ଜଳନ୍ତା ଘୋଡ଼ି ।
ଧୃତରାଷ୍ଟ୍ର ଦେଖି କହିଲେ ସଞ୍ଜୟଙ୍କୁ
ଯାଅ ଆହେ ସଞ୍ଜୟ ଛାଡ଼ିଣ ଆମ୍ଭଙ୍କୁ ।
କୁନ୍ତୀ ଗାନ୍ଧାରୀଙ୍କି ଟି ଘେନି କରି ମୁହିଁ
ଏଠାରେ ମରିବି ସନ୍ଦେହ କିଛି ନାହିଁ ।
ସଞ୍ଜୟ ବୋଇଲେ ଅଗ୍ନିରେ ପୋଡ଼ି ମଲେ
ଗତି ଊଣା ହୁଏ କହନ୍ତି ଲୋକେ ଭଲେ ।
ଧୃତରାଷ୍ଟ୍ର ବୋଇଲେ ତପୀମାନଙ୍କର
ଜଳ ଅଗ୍ନି କାଠେ ମରଣ ଅଟେ ସାର ।
ଏରୂପେ ଭ୍ରମନ୍ତ ପିତା ସଞ୍ଜୟଙ୍କୁ କହି
ଗାନ୍ଧାରୀଙ୍କି କୁନ୍ତୀଙ୍କି ପାଖରେ ବସାଇ ।
ପୂର୍ବକୁ ମୁଖ କରି ଆପଣେ ବସିଲେ
ଆତ୍ମାଟିକ ଯୋଗରେ ନିଯୁକତ କଲେ ।
ଏକାଳେ ଦାବାଗ୍ନି ଲାଗନ୍ତେ ଦେହେ ଆସି
ହେଲେ ସେ ତିନିଲୋକ ସ୍ୱର୍ଗପୁର-ବାସୀ ।
ସଞ୍ଜୟ ଦାବାଗ୍ନିରୁ ବଞ୍ଚିଣ ଆସିଲେ
ବାଟରେ ମୋତେ ଦେଖି ଏ ବାର୍ତ୍ତା କହିଲେ ।
ହିମାଳୟ-ତଟକୁ ଗଲେ ତପ କରି
ଏତିକ ମୁଁ ଜାଣେ ପାଣ୍ଡବ-ଦଣ୍ଡଧାରୀ ।
ତୁମ୍ଭେ ଏଥିପାଇଁ ନ କର ରାଜ୍ୟେ ଶୋକ
ହେଲା ସେମାନଙ୍କର ଜାଣ ଭଲଲୋକ ।

—*—

## ଯୁଧିଷ୍ଠିରଙ୍କ କର୍ତ୍ତୃକ ପ୍ରେତକ୍ରିୟା ସମ୍ପାଦନ

ଏହା ଶୁଣି ହସ୍ତିନାବାସୀ ଯେତେଥିଲେ
ରାଜା ମଲେ ବୋଲି ସେ ଉଚ୍ଚରେ କାନ୍ଦିଲେ ।
ପାଣ୍ଡୁସୁତମାନେ ଯେ ହୋଇଣ ତାଟକା
ବୁହାଇଲେ ଦେହୁଁ ଝାଳଟି କଏ ଏକା ।
ଯୁଧିଷ୍ଠିର ରାଜା ଏ ଅନ୍ତେ ଧୈର୍ଯ୍ୟ ହୋଇ
କହିଲେ ନିଜ ଲୋକମାନଙ୍କୁ ଅନାଇ ।
ଧୃତରାଷ୍ଟ୍ର ରାଜାଙ୍କୁ ଦଇବ ମୂରୁଖ
ଦେଖ ସୁଖ ଛଡ଼ାଇ ଖଞ୍ଜିଲା କି ଦୁଃଖ ।
ଏ ସକାଶୁଁ ବୋଲୁଛି ଦଇବକୁ ବଳ
ହୋଇ ନ ପାରଇ ହେ ହେଲେ ମହୀପାଳ ।
ଆମ୍ଭେ ଜୀଇଥାଉଁ ଆମ୍ଭର ମାତା ଭଲେ
ବନରେ ଛଟପଟ ହୋଇ ପୋଡ଼ି ମଲେ ।
ବାହୁବଳେ ଜିଣିଲେ ହେଁ ଏ ଭୁବନକୁ
ହାରିଲଇଁ ଆମ୍ଭେ ଯମଙ୍କ ବନ୍ଧନକୁ ।
ଅର୍ଜୁନ ଅଗ୍ନିକି ଖାଣ୍ଡବ-ବନ ଦେଇ
ଉପକାର କରିବା ଫଳ ଦେଲେ ସେହି ।
ଝୁରୁଅଛୁ ନିଆଁ ଲାଗିବା ବେଳେ କୁନ୍ତୀ
ସୁମରୁଥିଲେ ଆମ୍ଭମାନଙ୍କର ପ୍ରୀତି ।
ଯୁଧିଷ୍ଠିରଙ୍କଠାରୁ ଶୁଣି ଏ ବଚନ
ହସ୍ତିନାବାସୀ କଲେ ମୁଖ ଅଶ୍ରୁପୂର୍ଣ୍ଣ ।
ନାରଦ ବୋଇଲେ ଯାଗାଗ୍ନି ବିସର୍ଜନ
କରିଲେ ଧୃତରାଷ୍ଟ୍ର ଯାଜକେ ତା ବନ—
ମଧ୍ୟରେ ପକାଇଲେ ହୋଇ ସେ ବର୍ଦ୍ଧନ
ଦେଲା ଧୃତରାଷ୍ଟ୍ର ନୃପଙ୍କୁ ସ୍ୱର୍ଗସ୍ଥାନ ।
ତୁମ୍ଭେ ଏଥିପାଇଁ କରିବ ଯେବେ ଚିନ୍ତା
ନିନ୍ଦିବେ ତୁମ୍ଭକୁ ଟି ଶୁଣି ବେଦବେତ୍ତା ।
ଏବେ ଭାଇମାନଙ୍କୁ ଘେନି ନୃପବର
ଜଳକ୍ରିୟା ବେଗେ କର ହେ ତାହାଙ୍କର ।
ଏହା ଶୁଣି ରାଜା ଶୋକକୁ ସମ୍ଭାଳିଲେ
ଜ୍ଞାତି ମିତ୍ରଙ୍କୁ ଘେନି ସ୍ନାନ କରି ଗଲେ ।
ଗଙ୍ଗାରେ ସ୍ନାନ କରି ଧରି କୁଶପାଣି
ତିଳ ମିଶାଇଣ ଦେଲେ ତା ନିରମଣି ।
ଏ ବାହାରେ ଦ୍ୱିଜମାନଙ୍କୁ ଡ଼କାଇଲେ
କୁଳ ଅନୁରୂପ ବସ୍ତ୍ରେ ଶୁଦ୍ଧ ହେଲେ ।

ବ୍ରାହ୍ମଣଙ୍କୁ ଯେ ନାନାଜାତିରେ ଦକ୍ଷିଣା
ଦେଲେ ଯୁଧିଷ୍ଠିର ନୃପତି ଅକଳନା ।
ଗାନ୍ଧାରୀ କୁନ୍ତୀ ଦୁଇ ନାମକୁ ଉଦ୍ଦେଶ
ଦେଲେ ଦ୍ୱିଜମାନଙ୍କୁ ଦାନ ବଣ୍ଡଧାରୀ ।
ଏ ଅନ୍ତେ ହସ୍ତିନାକୁ ଲେଉଟି ଆସିଲେ
ମେଲାଣି ହୋଇ ତହୁଁ ନାରଦ ଯେ ଗଲେ ।

ଯୁଧିଷ୍ଠିର ରାଜା ହୋଇଣ ଅତି ପ୍ରୀତ
ରାଜ୍ୟଭୋଗରୁ ଊଣା କରିଦେଲେ ଚିତ୍ତ ।
ବ୍ୟାସାଶ୍ରମପର୍ବ ଏଠାରେ ସମାପତ
କଲେ ଶ୍ଳୋକରେ କାଢ଼ି ପରାଶର-ସୁତ ।
ତାହାଙ୍କର ପାଦ-କମଳେ ଅବିଚ୍ଛିନ୍ନ
କୃଷ୍ଣସିଂହ-ନୃପ-ଭ୍ରମର କଲା ସ୍ଥାନ ।



# ମୌଷଳ ପର୍ବ

## ମଙ୍ଗଳା ଚରଣ

ଅହେ ଶ୍ରୀ ଜଗନ୍ନାଥ ନୀଳାଦ୍ରି ବିହାରି
ଯୋଗି-ମନ-ରଞ୍ଜନ-କ୍ଷେତ୍ର ଦଇତ୍ୟାରି ।
ଜନ୍ମିତ ପାପହାରି ବିକାରି ଅଘାରି
ପତିତୋଦ୍ଧାରଣ ପୂର୍ବକ ନିର୍ବିକାରି ।
ତୁମ୍ଭଙ୍କୁ ଯେ ବୋଲନ୍ତି ତ୍ରିଜଗତ-ଲୋକ
ତେଣୁ ଜଣାଉଛି ମୁଁ ହୃଦୁଁ ଗୁଢ଼ ଦୁଖ ।
ମୁଁ ତ ମହାପତିତ ମୋ ମୁଖେ ଭାରତ—
ଶ୍ଲୋକ-ଗୀତ ସମ୍ପୂର୍ଣ୍ଣ କଲ ହୋଇ ପ୍ରୀତ ।
ଏବେ ଯେ ତିନପର୍ବ ଅଛନ୍ତି ଗୀତକୁ
ଏ ସକାଶୁଁ ଏହା କହୁଛି ମୁଁ ତଉକୁ ।
ହରିପାଦ ଭେଳା ଦୁଇକ ଆଶ୍ରେ କରି
ପାଅ ମହାଭାରତ-ସିନ୍ଧୁ ମଧ୍ୟୁ ତରି ।
ସେ ମନ ତ ମୋହର ନୋହୁଛି ଆୟତ୍ତ
ତାକୁ କୃପା କର ହେ -ରାଧାଦେବୀ-କାନ୍ତ ।

—*—

## ଯଦୁବଂଶ-ଧ୍ୱଂସ

ବୈଶମ୍ପାୟନ ବୋଇଲେ ନୃପସୁତ
ମୌଷଳପର୍ବ ଶୁଣ ହୋଇ ଏକଚିତ୍ତ ।
ସେ ଯୁଧିଷ୍ଠିରଙ୍କର ରାଜତ୍ୱ ଛତିଶି—
ବର୍ଷ ପୂର୍ଣ୍ଣକାଳ ହୋଇଲା ଯେବେ ଆସି ।
ତେବେ ଯେ ଦ୍ୱାରକାରେ ମହା-ଉତପାତ
ଜାତ କଲା ପ୍ରବଳେ ବହୁଳ ବାତ ।
ବୃକ୍ଷମାନେ ଆକସ୍ମିତ ହୋଇଣ ଭାଜି
ମହୀମଧ୍ୟେ ଶୋଇଲେ ଦୁଃଖ-ରସେ ମଜ୍ଜି ।
କୋଟି କୋଟି ହୋଇଣ ନିର୍ଘାତ ପଡ଼ିଲେ
ନଦୀମାନେ ପଶ୍ଚିମ-ମୁଖରେ ବହିଲେ ।
କୁହୁଡ଼ିରେ ଦିଗସବୁ ହୋନ୍ତେ ଆବୃତ୍ତ
ଜାଣି ନ ପାରିଲା ଦିଗକୁ କେବେ ନେତ୍ର ।
ଅଙ୍ଗାର ଧୂଳି ଖପରକୁ ମେଘମାନେ
ବର୍ଷିଲେ ପ୍ରବଳରେ ଦ୍ୱାରକା-ଭୁବନେ ।
ଉଲ୍କା ପଡ଼ିବାରେ ଯଦୁବଂଶଯାକ
ହୃଦୟର ମଧ୍ୟକୁ କଲେ ଦକ ଦକ ।
ସୂର୍ଯ୍ୟଙ୍କର କିରଣ ନ ପଡ଼ିଲା ମହୀ
କବନ୍ଧରେ ରହିଲେ ଆଚ୍ଛନ୍ନ ସେ ହୋଇ ।
ଶ୍ୟାମବର୍ଣ୍ଣ ହୋଇଣ ସୂର୍ଯ୍ୟ ଚନ୍ଦ୍ରଙ୍କର
ମଣ୍ଡଳ ନୟନକୁ ହୋଇଲା ଗୋଚର ।
ଏହି ରୂପରେ ନାନା ଉତପାତଗଣ
ରାଷ୍ଟ ଝନେ ଜାତ ହୋଇଲା ନରରାଣ ।
ବୃଷ୍ଣିମାନଙ୍କର ନିଧନ ହୋଇବାକୁ
ମୋ କହିବାରୁ ରସ୍ୱେ ଆଣ ହେ ମନକୁ ।
ଜନ୍ମେଜୟ ବୋଇଲେ କୃଷ୍ଣ ଭଗବାନ
ସେ ଥାଉଁ କିରୂପେ ସେ ହୋଇଲେ ନିଧନ ।
ଏହିକଥା ମୋହର ମନକୁ ପାଉନାହିଁ
ବିସ୍ତୃତ କରି ମୋତେ କହ ଋଷି ସାଇଁ ।
ବୈଶମ୍ପାୟନ ବୋଇଲେ ନରପାଳ
ବୃଷ୍ଣିଏ ମଲେ ପାଇ ଏରକା ମୂଷଳ ।
ଯେଉଁରୂପେ ତାହା ସେରୂପେ ତୁମ୍ଭ ଆଗେ
କହିବା ତୁମ୍ଭେ ବସି ଶୁଣ ହେ ସରାଗେ ।
ବିଶ୍ୱାମିତ୍ର କଣ୍ୱ ନାରଦ ଦ୍ୱାରକାକୁ
ବାହାରିଲେ ଯେ ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ।
କୃଷ୍ଣପୁଅମାନେ ଶାମ୍ବକୁ କରି ସ୍ତ୍ରୀବେଶ
ପୁଚ୍ଛିଲେ ସେ ଋଷିଙ୍କି ପରିହାସ କରି ।
କି ପ୍ରସବିବ ଏହି କହ ଋଷିବଂଶ
ଶୁଣିବାକୁ ଚାହାଁଟି ଆମ୍ଭର ମାନସ ।
ଋଷିଏ ତା ପୁଣି ବୋଇଲେ ଆରେ ବାଇ
ମୂଷଳ ଜନମିବ ବୃଷ୍ଣି ନାଶପାଇଁ ।
କୃଷ୍ଣ ବଳରାମ ବ୍ୟତୀତ ମୂଷଳ
କରିବ ଯେ ତୁମ୍ଭମାନଙ୍କର କାଳ ।

ବଳଦେବ କୁମର ଦୁର୍ମତିକ ଦେଖି
ଦେହଗୁଡ଼ ସମୁଦ୍ରେ ପିବେ ହୋଇ ଦୁଃଖୀ ।
ଶ୍ରୀକୃଷ୍ଣ ଶ୍ରାନ୍ତ ହୋଇ ଶୋଇ ପଡ଼ିଥିବେ
ଶବର-କାଣ୍ଡମୁନେ ସ୍ୱର୍ଗକୁ ଦେଖିବେ ।
ଏରୂପେ ମୁନିମାନେ ଦେଇକରି ଶାପ
ଚଳିଗଲେ ବଢ଼ିଲା ଯଦୁଙ୍କର ତାପ ।
ଶ୍ରୀକୃଷ୍ଣଙ୍କ ପାଖକୁ ଯଦୁଏ ଆସିଲେ
ମୁନିଙ୍କର ବୋଲିବା-ବଚନ ଭାଷିଲେ ।
ଶ୍ରୀକୃଷ୍ଣ ବୋଇଲେ ହେ ହେବାକୁ ଏ ଯୋଗ
ଥିଲେ ଜାଣ ହୋଇବ ବୋଇଲେ ଅଭାଗ୍ୟ ।
ଏହା କହି ନିଜପୁରକୁ କୃଷ୍ଣ ଗଲେ
ଯଦୁଏ ଆଉ ବୃଷ୍ଣି କଥା ନ କହିଲେ ।
ରାତିଶେଷେ ଶାମ୍ବ ମୂଷଳ କଲେ ଜାତ
ହୋଇଛି ସେ ଅନଳ ପରାୟେ ଧାପତ ।
ମୂଷଳ ଜନ୍ମ ହେବା ଦେଖିଣ ଯଦୁଏ
ଉଗ୍ରସେନ-ରାଜାଙ୍କୁ କହିଲେ ସଭଏ ।
ଉଗ୍ରସେନ ଶୁଣି ମୂଷଳ ଘୋରାଇଲେ
ମୂଷଳ ଚୂର୍ଣ୍ଣକୁ ସମୁଦ୍ରେ ପକାଇଲେ ।
ଯଦୁ ବୃଷ୍ଣି ଅନ୍ଧକମାନଙ୍କୁ ଡକାଇ
ବୋଇଲେ ମଦ୍ୟପାନ ଛାଡ଼ିଦିଅ ଭାଇ ।
ବ୍ରାହ୍ମଣଙ୍କ କୁମରଙ୍କୁ ହୋଇଅଛି ଶାପ
ମଦ୍ୟପାନ ପଲେ ଜାଣନ୍ତି ହେବ ଲୋପ ।
ଏହା ଶୁଣି ଯଦୁଏ ଚିତ୍ତେ ଭୟ କରି
ଛାଡ଼ିଲେ ମଦିରା ନିୟମ ମାନିକରି ।
କାଳ ବୃଷ୍ଣିମାନଙ୍କ ଘରକୁ ସେ ଦିନୁ
ଅଦୃଶ୍ୟରେ ଆସିଲା ଧରି କାଳତନୁ ।
ବୃଷ୍ଣିମାନେ କାଳକୁ ଆସିବାର ଜାଣି
ବିନ୍ଧିଲେ ସେ କାଳକୁ ଶର ଧନୁ ଟାଣି ।
କାଳତ ସାକ୍ଷାତରେ ଅଟନ୍ତି ଈଶ୍ୱର
କିସ କରି ପାରିବ ତାଙ୍କୁ ବୃଷ୍ଣି ଶର ।
ପ୍ରତିଦିନ ବୃଷ୍ଣି ଅନ୍ଧକ ନାଶପାଇଁ
ଘୂମ ବାତେ କମ୍ପେ ଦ୍ୱାରକାପୁର୍ ମହୀ ।
ଦିବସରେ ମଶାଏ କରି ଘୂର୍ଣ୍ଣିନାଦ
ପିଇଲେ ବୃଷ୍ଣିଙ୍କ ରକତ କରି ମୋଦ ।
ଶୋଇଥିବା ଲୋକଙ୍କୁ ନଖ ରୋମ କ୍ଲେଶ
ମୂଷାଏ ଆସି ସୁଖେ କରିଗଲେ ଗ୍ରାସ ।

ଚୀଚୀକୁଚୀ ଧ୍ୱନିକୁ ସାରିକାଏ କଲେ
ଶୁଆ ବୃଷ୍ଣି-ବଧ ଙ୍କ ମୁଖରେ ବସିଲେ ।
ହଂସମାନେ ଉଲ୍ଲୂକ ପ୍ରାୟେ କଲେ ଧ୍ୱନି
ଉଲ୍ଲୂକେ ଗଲେ ହଂସ ଧ୍ୱନିଟିକ ଜଣି ।
ଛେଳିମାନେ ଭାଲୁଆ ପରି କରି ନାଦ
ବଢ଼ାଇଲେ ଯଦୁମାନଙ୍କ ଅପ୍ରମୋଦ ।
ବୃଷ୍ଣି ଅନ୍ଧକଙ୍କ ସଦନରେ କାପତା
ରହିଲେ ବେତାମାନଙ୍କରେ ବେତା ବେତା ।
ଜନ୍ତୁମାନେ ଯେ ଯାହା ଜାତିଟିକ ଛାଡ଼
ଆନକୁ ପ୍ରସବ କରିଲେ ହରବଡ଼ ।
ବୃଷ୍ଣିମାନେ ବ୍ରାହ୍ମଣ ଦେବତା ଅତିଥି
ପୂଜାକଥା ପଡ଼ିଲେ ହେଲେ ଅତି ବ୍ୟଥୀ ।
ଶ୍ରୀକୃଷ୍ଣ ବଳରାମ ଦୁହିଙ୍କର ବିନା
ସମସ୍ତେ ଦ୍ୱିଜଠାରେ ହୋଇଲେ ବିମନା ।
ସ୍ତ୍ରୀମାନେ ପତିମାନଙ୍କୁ ଅତିକ୍ରମ
କରି ଶିଖାଇଲେ ତାହାଙ୍କୁ ପାପଧର୍ମ ।
ଅଗ୍ନି ନୀଳ ଲୋହିତ କିରଣକୁ ଛାଡ଼
ମନ୍ଦ ମନ୍ଦ ହୋଇ ଜଳିଲେ ହରବଡ଼ ।
ଘୃତକୁ ହାଣ୍ଡିରେ ରଖନ୍ତି ଯେତେ ଲୋକ
ଦେଖିଲାବେଳକୁ ସେ ହୋଇଥାଇ ପୋକ ।
ପାଞ୍ଚଜନ୍ୟଶଙ୍ଖକୁ ବସୁଦେବ-ସୁତ
ବଜାଇଲେ ଗଧେ ରାବନ୍ତି ସେପରି ତ ।
ଏରୂପେ ଉତପାତ ଦେଖି ଚକ୍ରପାଣି
ସ୍ମରିଲେ ମନରେ ଗାନ୍ଧାରୀଙ୍କ ବାଣୀ ।
ଛତିଶି ବରଷ ହୋଇଲା ଆସି ପୂର୍ଣ୍ଣ
ଏବେ ତ ହେବ ଆମ୍ଭମାନଙ୍କ ନିଧନ ।
ନୋହିଲେ କି ହୁଅନ୍ତା ଏତେ ଉତପାତ
ଆଜଯାଏ ଏହା ନ ଥିଲା ଦେଖି ନେତ୍ର ।
ଭାରତ ଯୁଦ୍ଧ ଉତପାତ ହେଲା ପ୍ରାୟେ
ଦ୍ୱାରକାରେ ଉତପାତ ପ୍ରତ୍ୟହ ହୋଏ ।
ବୃଷ୍ଣିଙ୍କ ମୃତ୍ୟୁକୁ ଖଞ୍ଜିଲା କୁଶପାଣି
ଜଣାଗଲା ଦେଖି ଏ ଉତପାତ-ଶ୍ରେଣୀ ।
ଏରୂପେ ଅନେକ ବିଚାରି ଯଦୁସାଇଁ
କହିଲେ ଦିନେ ଯଦୁମାନଙ୍କୁ ଡ଼କାଇ ।
ଆସ ହେ ପ୍ରଭାସକୁ ଯିବା ସ୍ନାନକରି
ନୋହିଲେ ଉତପାତୁଁ ନ ପାରିବା ତରି ।

ଏହିକାଳରେ କଳାନ୍ତି ସ୍ତ୍ରୀଟିଏ ଆସି
ହସଇଲ ବୃଷ୍ଣିମାନଙ୍କ ଘରେ ପଶି ।
ସ୍ୱପନେ ଦେଖିଲେ ଅନ୍ଧକ ବୃଷ୍ଣିକୁଳ
ଦେହମାଂସ କରନ୍ତ କୁକ୍କୁରେ କବଳ ।
ବୃଷ୍ଣିଙ୍କର ଧନ ସମ୍ପତ୍ତି ଯେତେ ଥିଲେ
ଲୁହୁଁଥିଲେ ରାକ୍ଷସେ ତାହା ଘେନଗଲେ ।
ସୁଦର୍ଶନଚକ୍ର କୃଷ୍ଣଙ୍କ କରୁ ଖସି
ଦେଖୁଥିଲେ ସର୍ବେ ଆକାଶେ ଗଲେ ପଶି ।
ଗରୁଡ଼ଧ୍ୱଜ ତାଳଧ୍ୱଜ ରଥ ଦୁଇ
ଆକାଶେ ଗମିଲେ ଯଦୁଏ ଥିଲେ ଚାହିଁ ।
ସେ ଦୁଇରଥଙ୍କ ଘୋଡ଼ାଏ ସେହିପରି
ଗଲେ ବୋଲି ଜାଣ ହସ୍ତିନା-ଦଣ୍ଡଧାରୀ ।
ଆକାଶରେ ରହିଣ ଅପସରାକୁଳ
ଯଦୁଙ୍କୁ ବୋଇଲେ ଯେ ହୋଇ ଏକାମନ ।
ପ୍ରଭାସତୀର୍ଥ ତଟିରେ ସ୍ନାନ ଯାଇ କର
ଘେନ ଯେବେ ବଚନ ଆମ୍ଭମାନଙ୍କର ।
କୃଷ୍ଣ ଯଦୁମାନଙ୍କୁ ପୂର୍ବୁଁ ବୋଲିଥିଲେ
ପୁଣି ସେ ଆକାଶରେ ବଚନ ଶୁଣିଲେ ।
ଏ ସକାଶୁଁ ତୀର୍ଥସ୍ନାନରେ ଉଗ୍ର ହୋଇ
ବାହାରିଲେ ଯେ ଭକ୍ଷ୍ୟ ମଦ୍ୟକୁ ଘେନାଇଁ ।
ପ୍ରଭାସତୀର୍ଥେ ଯାଇ ବୃଷ୍ଣିଏ ରହିଲେ
ଭାରିଯାମାନେ ମଧ୍ୟ ସଙ୍ଗତରେ ଥିଲେ ।
ଉଦ୍ଧବ ଜାଣି ବୃଷ୍ଣିମାନଙ୍କର ନାଶ
ଯୋଗବଳେ କଲେ ସେ ଆନଠାରେ ବାସ ।
କୃଷ୍ଣ ତ ଜାଣନ୍ତି ବୃଷ୍ଣିଏ ଯିବେ ନାଶ
ଏଣୁ ହେଲେ ଉଦ୍ଧବ ଯିବାରେ ସେ ତୋଷ ।
ଯଦୁଏ ପ୍ରଭାସ-ତୀର୍ଥରେ ରହିଥିଲେ
କୃଷ୍ଣଙ୍କ କଥାରେ ସେ ତୀର୍ଥେ ସ୍ନାନ କଲେ ।
ବାନରଙ୍କୁ ଯେ ମଦ୍ୟ ଭକ୍ଷ୍ୟ ଦେଇ
ତାହାକୁ ଖାଇଲେ ଯଦୁଏ ତୋଷ ହୋଇ ।
ବେଶ୍ୟାସ୍ତ୍ରୀମାନଙ୍କୁ କରାଇଣ ନାଟ
ହୋଇଲେ ଅତି କାମ ସକାଶୁ ଉଚ୍ଚାଟ ।
କୃଷ୍ଣଙ୍କର ଆଗରେ ସମଙ୍କର ବୁଲେ
ବୃଷ୍ଣିମାନେ ବସି ମଦିରା ପାନ କଲେ ।
ମଦ୍ୟ ନସ୍ୟନରେ ହୁଅନ୍ତେ ଆସି ଘାର
କହିଲେ ପ୍ରଳାପରେ ବଚନ ଉଚ୍ଚାର ।

ସେହିକାଳେ ସାତ୍ୟକ କୃତବର୍ମା ଆଗେ
ଜଣ ଦୁଇ ମୋହିଣ ବୋଇଲେ ସରାଗେ ।
ଶୋଇବା କ୍ଷତ୍ରିୟଙ୍କୁ ମାରିଣ କ୍ଷତ୍ରିୟ
ହୋଇଅଛ ସିନା ହେ ହୃଦିକଙ୍କ ପୁଅ ।
ତୁମ୍ଭ ବିନା ଏଡ଼େ ନୃଶଂସ-କର୍ମକାରୀ
କେ ହୋଇବ ହାତରେ ଧନୁଶର ଧରି ।
ଏହା ଶୁଣିଣ ପ୍ରଦ୍ୟୁମ୍ନ ମହାଯଶା
ପ୍ରଶଂସି କଲେ ଯେ ଗୋଟିଏ ଅଟ୍ଟହସା ।
କୃତବର୍ମା ବୋଇଲେ ଛିନ୍ନବାହୁ ହୋଇ
ଥିଲେ ଭୂରିଶ୍ରବା ଯେ ହାଣିଅଛୁ ତୁହି ।
କେତେ ବୀର ହୋଇଣ ମୋ ଓଡ଼ ଅଛୁ ଜଣ
ରହ ତୁମ୍ଭ ହୋଇ ନୋହିଲେ ଯିବୁ ନାଶ ।
କୃଷ୍ଣ ଏହା ଶୁଣି ତେରଛା ଥରେ ଚାହିଁ—
ହେଲେ କୃତବର୍ମାଙ୍କୁ ମନେ କ୍ରୋଧ ବହି ।
ସାତ୍ୟକ ସେହିକାଳେ କୃଷ୍ଣଙ୍କୁ ଶୁଣାଇଁ
ବୋଇଲେ ଶମନ୍ତକ ମଣି ନେଲା ଏହି ।
ପିତା ନାମ ଶୁଣିଣ ସତ୍ୟଭାମା ବାମା
କାନ୍ଦିଲେ ହେ ଦେଖାଇ ସୌଭାଗ୍ୟ-ଗାରିମା ।
ସାତ୍ୟକ ତାହା ଦେଖି ବୋଇଲେ ସୁମୁଖି
ନ କାନ୍ଦ ରହ ତୁହୁଁ ଦୁଃଖକୁ ଉପେକ୍ଷି ।
ଦ୍ରୌପଦୀସୁତଙ୍କର ପଦବୀ ଏହାକୁ
ଦେଖାଇବି, ଦେଖ ମୋହର ବିକ୍ରମକୁ ।
ଏହା କହି ତରଳ-ଧଉତ-ଖଡ଼ଗ
ଖାପରୁ କାଢ଼ିଲେ ସାତ୍ୟକ ବହି ରାଗ ।
କୃଷ୍ଣଙ୍କର ସମୀପେ କୃତବର୍ମା-ବେକେ
ପ୍ରହାରି କାଟି ପକାଇଲେ ତ ନିଃଶଙ୍କେ ।
ଏହା କରି କୃତବର୍ମାଙ୍କ ପାଖଲୋକ—
ମାନଙ୍କର କାଟିବି ବୋଲି କରି ବେକ ।
ଖଣ୍ଡା ଧରିଣ ବୁଲନ୍ତେ ପହଣ୍ଡେ ପକାନ୍ତେ
କୃଷ୍ଣ ନିଷେଧିବା ଭାବନା କଲେ ଚିତ୍ତେ ।
ଏହିକାଳରେ ଯଦୁଏ ଏକମନ ହେଲେ
ସାତ୍ୟକଙ୍କର ବିରପଟରେ ରହିଲେ ।
ଶ୍ରୀକୃଷ୍ଣ ମନେ କଲେ କାଳ ତ ହୋଇଛି
ନିଷେଧିବାକୁ ଆଉ କେଉଁ କଥା ଅଛି ।
ଏତେ ଭାବି ରହନ୍ତେ କୃଷ୍ଣ ତୁନି ହୋଇ
ସାତ୍ୟକଙ୍କି ଯଦୁଏ ବେଢ଼ିଥିଲେ ରହି ।

ସେ ଯାହାର ଶସ୍ତ୍ରମାନଙ୍କୁ ଟେକି ଦେଲେ
ଏହି ପାପକୁ ଲୋପ କରିବା ବୋଇଲେ ।
ପଦ୍ନ ତାହା ଦେଖି ନିଷେଧି ଯଦୁଙ୍କୁ
ଆସନ୍ତେ ସେ ଭବଣ ସାତ୍ୟକି ହତକୁ ।
ଯଦୁଏ ତ ବହୁତ ଗୋଟି ହୋଇଥିଲେ
ସାତ୍ୟକି ପଦୁନ ଏ ଦୁହିଁଙ୍କି ମାଇଲେ ।
ସାତ୍ୟକି ପଦୁନ ହୋଇଯାନ୍ତେ ନିଧନ
ଏରକାକୁ ମୁଠିରେ ଧରି ଭଗବାନ ।
ଯେଉଁ ଯଦୁମାନେ ସମୀପେ ରହିଥିଲେ
ଏରକାରେ ଶ୍ରୀକୃଷ୍ଣ ତାହାଙ୍କୁ ନାଶିଲେ ।
ଆହେ ଜନ୍ମେଜୟ ହସ୍ତୀନା-ନରପାଳ
ମାରନ୍ତେ ସେ ଏରକା ହେଲଟି ମୂଷଳ ।
ଏ ସକାଶୁ ଯଦୁଙ୍କ ବଜ୍ର ପରି ଅଙ୍ଗ—
ମାନଙ୍କୁ କଲା ହେଲେ ରକତେ ସେ ରଙ୍ଗ ।
ଉନମତ୍ତ ହୋଇଣ ଯଦୁ ବୃଷ୍ଣି ମାନେ
ଯୁଦ୍ଧ କଲେ ପ୍ରଭାସନାମ ତୀର୍ଥସ୍ଥାନେ ।
ପିତା ପୁତ୍ରେ ଏରକାଙ୍କରେ ପିଟାପିଟି
ହୋଇ ମହୀମଧ୍ୟେ ପଡ଼ିଲେ ଲୋଟି ଲୋଟି ।
ପଳାଇବା ବୁଦ୍ଧି ତ ଯଦୁଏ ନ କଲେ
ଏହି ସକାଶୁଁ ଏରକାରେ ପ୍ରାଣ ଦେଲେ ।
ପ୍ରଦ୍ୟୁମନ ଆଦି ପୁତ୍ରଙ୍କର ମରଣ
ଦେଖିଣ ମହାକ୍ରୋଧ ହୋଇ ନାରାୟଣ ।
ମୂଷଳ ପରି ତ ଏରକା ହୋଇଥିଲେ
ତହିଁରେ ଯଦୁଙ୍କ ପରାଣ ସେ ନେଲେ ।
ଦାରୁକ ବଭ୍ରୁ ଦୁହେଁ କହିଲେ କୃଷ୍ଣଙ୍କୁ
ଚାଲ ଆହେ କୃଷ୍ଣ, ରାମଙ୍କ ସମୀପକୁ ।
ଶ୍ରୀକୃଷ୍ଣ ସେ ଦୁହିଙ୍କ ବଚନ ଶୁଣିଲେ
ତାଙ୍କୁ ଘେନ ରାମଙ୍କ ସମୀପକୁ ଗଲେ ।
ଦେଖିଲେ ରାମ ବୃକ୍ଷମୂଳ ଟିକେ ବସି
ବିଚାର କରୁଛନ୍ତି ଆଖି ଝଲେ ଖୋଷି ।
ତାହା ଦେଖି କୃଷ୍ଣ ଦାରୁକ ମୁଖ ଚାହିଁ
ବୋଇଲେ ଅର୍ଜ୍ଜୁନଙ୍କୁ କହ ତୁମ୍ଭେ ଯାଇ ।
ଯଦୁମାନେ ବ୍ରହ୍ମଶାପରେ ଗଲେ ନାଶ
କହିବ କୃଷ୍ଣ ଦେଇଅଛନ୍ତି ଆଦେଶ ।
ବେଗ ହୋଇଣ ତୁମ୍ଭେ ଆସିବ ଏଠାକୁ
କହି କରି ଥରେ ସେ ପାଣ୍ଡବରାଜାଙ୍କୁ ।

ଏହା କହୁଁ ଦାରୁକ ଚଢ଼ି କରି ଯାନ
କଲେ ସେ ହସ୍ତିନାକୁ ସେକ୍ଷଣି ଗମନ ।
ପୁଣି କୃଷ୍ଣ ବଭ୍ରୁଙ୍କୁ ବୋଇଲେ ଯା ସାର
ସ୍ତ୍ରୀମାନଙ୍କର ରକ୍ଷାରେ ଯତ୍ନ କର ।
କୃଷ୍ଣଙ୍କ ଅନୁଜ୍ଞାରେ ବଭ୍ରୁ ଯାଉଥିଲେ
ବାଟରେ ଯଦୁଗଣେ ତାହାଙ୍କୁ ମାଇଲେ ।
ବଭ୍ରୁଙ୍କର ମରଣ ଦେଖି ଜନାର୍ଦ୍ଦନ
କହିଲେ ବଡ଼ଭାଇ ରାମଙ୍କୁ ବଚନ ।
ତୁମ୍ଭେ ଏହିଠାରେ ଟିକିଏ ଥାଅ ରହି
ସ୍ତ୍ରୀଙ୍କି ଦ୍ୱାରକାରେ ରଖି ଆସିବଇଁ ।
ଏହା କହି କୃଷ୍ଣ କ୍ଷଣକେ ଦ୍ୱାରକାକୁ
ଯାଇ କରି କହିଲେ ଆପଣା ବାପକୁ ।
ଯଦୁମାନେ ସମସ୍ତେ ପିଟା ପିଟି ହୋଇ
ମଲେ, ମୁହିଁ ଆସିଛି ଏକା ହୋଇ କହି ।
ଅର୍ଜ୍ଜୁନ ଆସିବାଯାଏ ସ୍ତ୍ରୀକୁଳ
ରକ୍ଷା କରିଥାଅ ଦେଖାଇ ଦେହବଳ ।
ଯଦୁଙ୍କ ବିନା ମୁହିଁ ଘରେ ରହିବାକୁ
କ୍ଷଣେ କରୁନାହିଁ ଜାଣ ହେ ମନକୁ ।
ରାମ ଏକା ହୋଇଣ ରହିଛନ୍ତି ମୋତେ
ତାଙ୍କଠାକୁ ମୁହିଁ ଯାଉଛି ମହାମତେ ।
ତାହାଙ୍କୁ ଘେନ ସଙ୍ଗେ ଅରଣ୍ୟରେ ମୁହିଁ
ତପ କରି ସ୍ୱର୍ଗଭୂମିକୁ ଦେଖିବଇଁ ।
ଏହିରୂପେ ବାପଙ୍କୁ କହି ଜନାର୍ଦ୍ଦନ
ବାହାରନ୍ତେ ବନ୍ଦି ବାପାଙ୍କର ଚରଣ ।
ଦ୍ୱାରକା ସ୍ତ୍ରୀଏ କରୁଡ଼ ଗଡ଼ୁ ବାହି
ଆହା କି ହେଲା ବୋଲି କାନ୍ଦିଲେ ବୋବାଇ ।
ଶ୍ରୀକୃଷ୍ଣ ବୋଇଲେ ହେ ନ କାନ୍ଦ ସ୍ତ୍ରୀଏ
କରିବେ ତୁମ୍ଭ ପ୍ରୀତି ପାର୍ଥ ଶାରସେ ।



## କୃଷ୍ଣଙ୍କର ଦେହ-ତ୍ୟାଗ

ଏରୂପେ କହି କୃଷ୍ଣ ଯାନ୍ତେ ରାମଠାକୁ
ଦେଖିଲେ ବସିଛନ୍ତି ସେ କରି ଯୋଗକୁ ।
ମୁଖବାଟେ ସହସ୍ରଫଣା ଟେକି ଦେଇ
ବାହାରୁଛନ୍ତି ଶ୍ୱେତନାଗ ତୋରା ହୋଇ ।
ସେ ନାଗକୁ ସମୁଦ୍ର ନଦୀ ଦିବ୍ୟନାଗ—
ମାନେ ପୂଜାକୁ କରି ବନ୍ଦିଣ ସରାଗ ।

ସମୁଦ୍ରଙ୍କ ଭିତରକୁ ଯେ ଯେବେ ଗଲେ
କୃଷ୍ଣ ସେ କଥା ଭାବି ସେଠାରେ ବସିଲେ ।
ଗାନ୍ଧାରୀ ଦୁର୍ବାସାଙ୍କ କଥା ସୁମରଣ
କଲେ ନିଜ ହୃଦମଧ୍ୟରେ ନାରାୟଣ ।
ବୋଇଲେ ଯିବାକାଳ ହୋଇଛି ତ ଏବେ
ଶୋଚନା କରିବା ଉଚିତ ନୋହେ ଲବେ ।
ଯୋଗଆଶ୍ରେ କରି ଇନ୍ଦ୍ରିୟଙ୍କୁ ନିରୋଧି
ଶୋଇଲେ ଚିତ ହୋଇ କ୍ଷିତିରେ ବାହୁ ଛନ୍ଦି ।
ଜରା ନାମେ ଶବର ଆସିଲା ସେଠାକୁ
ଦେଖିଲା ନୟନରେ କୃଷ୍ଣଙ୍କ ପାଦକୁ ।
ପାଦତଳ ଅତି ରଙ୍ଗ ତ ଦିଶୁଥିଲେ
ମୃଗକର୍ଣ୍ଣ ବୋଲି ଭ୍ରମିଲା ସେହି ଭିଲେ ।
ତ ଆରକାଣ୍ଡ ଟିଏ ଟାଣି ଅତିଶୀଘ୍ରେ
ବିନ୍ଧିଲା ସେ ପାଦକୁ ଗାଢ଼େ ବ୍ୟାଧବ୍ରେ ।
ସେ କାଣ୍ଡେ ଧ୍ୱନିଟାଏ କରି ବଜ୍ର ପରି
ରହିଲା କୃଷ୍ଣପାଦ ମଧ୍ୟେ ଗଳି କରି ।
ମାଇଲି ମୃଗ ବୋଲି ଆସନ୍ତେ ସେ ଧାଇଁ
ଦେଖିଲା କୃଷ୍ଣ ଛନ୍ତି ଚତୁର୍ଭୁଜ ହୋଇ ।
କି କର୍ମ କଲି ବୋଲି ଗୁଡ଼ି ଧନୁଃଶର
ବୋଇଲା ରକ୍ଷାକର ମୋତେ ଚକ୍ରଧର ।
ହରିଣ ବୋଲି ତୁମ୍ଭ ପାଦକୁ ମୁଁ କାଣ୍ଡ
ବିନ୍ଧିଲି କ୍ଷମା କର ମୋର ଦୋଷ ଖଣ୍ଡ ।
ଶ୍ରୀକୃଷ୍ଣ ବୋଇଲେ ହେ ଯେ ଯୋଗ ଆମ୍ଭଙ୍କୁ
ଥିଲା ସେ ହେଲା ବ୍ୟାଧ ଗୁଡ଼ ଯେ ଭୟକୁ ।
ଏତେ ବୋଲି କଳେବରକୁ ମର୍ତ୍ତ୍ୟେ ଥୋଇ
ଗଲେ ନିଜଧାମେ ରୁକ୍ମଣୀ-ପ୍ରାଣସାଇଁ ।

—•❋—

## ଅର୍ଜ୍ଜୁନଙ୍କର ଦ୍ୱାରକାଗମନ

ଦେବତାମାନଙ୍କରେ ହୋଇକରି ସ୍ଥିତ
ମୋ କହିବାଛୁ ଜାଣ ପରୀକ୍ଷିତ-ସୁତ ।
ଦାରୁକ ହସ୍ତିନା ପୁରକୁ ଯାଇଥିଲେ
ପାଣ୍ଡବଙ୍କୁ କୃଷ୍ଣଙ୍କ ମୃତ୍ୟୁ ସେ କହିଲେ ।
ବୃଷ୍ଣି ମାନଙ୍କର ବିନାଶକୁ ସେ ଶୁଣି
ପାଡ଼ିଲେ ଡ଼କା ଉଚେ ପାଣ୍ଡବ-ନୃମଣି ।
ଅର୍ଜ୍ଜୁନ ଯୁଧିଷ୍ଠିର ରାଜାଙ୍କୁ କହିଲେ
ମୁଁ ଯିବି ଦ୍ୱାରକା ଆପଣ ଆଜ୍ଞା ଦେଲେ ।
ଯୁଧିଷ୍ଠିର ବୋଇଲେ କି ପଚାରୁ ଭାଇ
ଯାଅ ଯାଅ ହେ ଦ୍ୱାରକାକୁ ଶୀଘ୍ର ହୋଇ ।
ଅର୍ଜ୍ଜୁନ ଦ୍ୱାରକାରେ ହୋଇ ପରବେଶ
ଦେଖିଲେ ନାରୀ ବୃଷ୍ଣି ସ୍ତ୍ରୀଙ୍କର ବେଶ ।
ହା ନାଥ ବୋଲିକରି ପାଡ଼ୁଛନ୍ତି ଡ଼କା
ଶୋକ-ଜଳେ ଦେହ ପୂରିଅଛି ଏକା ।
ଅର୍ଜ୍ଜୁନଙ୍କୁ ଦେଖିଣ କୃଷ୍ଣ କାମିନୀଏ
ହା ପ୍ରାଣନାଥ ବୋଲି କାନ୍ଦିଲେ ସଭିଏ ।
ଶ୍ରୀକୃଷ୍ଣ-ଭାର୍ଯ୍ୟାଙ୍କ ରୋଦନକୁ ଦେଖି
ଅରଜୁନ ଦୁଇ ଆଖିରେ ଅଶ୍ରୁ ରଖି ।
କୃଷ୍ଣଙ୍କର ପୀରତି ହୃଦରେ ସୁମରି
ପଡ଼ିଲେ ମହୀମଧ୍ୟେ ଧନୁ ଗୁଡ଼ି କରି ।
ସତ୍ୟଭାମା ରୁକ୍ମଣୀ ଆଦି ଅର୍ଜ୍ଜୁନଙ୍କୁ
ବେଢ଼ିକରି କାନ୍ଦିଲେ ସୁମରି କୃଷ୍ଣଙ୍କୁ ।
ପାର୍ଥ ଚେତା ପାଇ ଉଠନ୍ତେ ଧୈର୍ଯ୍ୟ ହୋଇ
ବସାଇଲେ ତାହାକୁ ଆସନେ ସେ ନେଇ ।
ଅରଜୁନ ଶ୍ରୀକୃଷ୍ଣ-ଭାର୍ଯ୍ୟାମାନଙ୍କୁ
ପ୍ରବୋଧି କରି ଗଲେ ମାମୁଙ୍କ ପାଶକୁ ।
ଦେଖିଲେ ପୁତ୍ରଶୋକେ ବସୁଦେବ ଶୋଇ
ଅଛନ୍ତି ନେତ୍ରନୀର ଯାଉଅଛି ବହି ।
ଅରଜୁନ ଉଚ୍ଚରେ କରିଣ ରୋଦନ
ଧଇଲେ ଯାଇ ବସୁଦେବଙ୍କ ଚରଣ ।
ଉଠି ଅର୍ଜ୍ଜୁନଙ୍କ ମୂର୍ଦ୍ଧାକୁ ଶୁଙ୍ଘିବାକୁ
ଭାବନ୍ତେ ନ ପାରିଲେ ଗୁଡ଼ି ସେ ତଳକୁ ।
ଅତି କଷ୍ଟରେ ଉଠି କରି ବସୁଦେବ
ପାର୍ଥଙ୍କୁ ପୋଟାଳି କାନ୍ଦିଲେ ବହୁ ଭାବ ।
କହିଲେ ଶତ ଶତ ଦଇତଙ୍କୁ ମାରି
ସିନ୍ଧୁ ମଧ୍ୟେ କରି ଦାରକା ନାମେ ପୁରୀ ।
କାହିଁ ଗଲେ ମୋ ସୁତ କୃଷ୍ଣ ଅରଜୁନ
ଜାଣିଥିଲେ ତାହା ମୋ ଆଗରେ ବଖାଣ ।
ପ୍ରଦ୍ୟୁମ୍ନ ସାତ୍ୟକି କୁମ୍ଭର ପ୍ରିୟଶିଷ୍ୟ
ହୋଇଥିଲେ, ବାବୁ ସେ ଯୁଦ୍ଧେ ହେଲେ ନାଶ
କ୍ଷ୍ୟାତାକୁ ମୁହିଁ ନିନ୍ଦା ତ କରୁ ନାହିଁ
ପୂର୍ବ ଦୁଷ୍କୃତରୁ ଅର୍ଜ୍ଜିଲି ଏହା ମୁହିଁ ।
ମୋ ପୁଅ କୃଷ୍ଣ ବଳେ ଜିଣି ମହୀଲୋକ
ଭୋଗ କଲି ଆଣିଣ ଭଲ ଦ୍ରବ୍ୟଯାକ ।

ଦେବଙ୍କର ଦେବ ଅଟଇ ବାବୁ ସେହି
ତାହାଙ୍କୁ କାଳ ବାଧି ପାରନ୍ତାଟି କେହି ।
ସ୍ୱଇଚ୍ଛାରେ ବଂଶର କୁଳର ମରଣ
କରିଲେ ବୋଲି ମୁହିଁ ଜାଣୁଅଛୁ ଜାଣ ।
ଗାନ୍ଧାରୀ ତ ପୂର୍ବରେ ଶାପ ଦେଇଥିଲେ ।
ଜାଣିଲ ତା ପାଳଲ ମୋର ପୁଅ ଭଲେ ।
ତ୍ରିନଲୋକ ଅନ୍ୟଥା କରିପାରେ ସେହି
ତାକୁ କେହି ଅନ୍ୟଥା କରିବାକୁ ନାହିଁ ।
ଦେଖିଛ ତ ତୁମ୍ଭେ ତୁମ୍ଭର ନାତିଟିକ
ଖାଆଇ ବଢ଼ାଇଲେ ତୁମ୍ଭର ପ୍ରୀତିକ ।
ଗୁରୁ ବୋଲେ ଗୁରୁ-ପୁତ୍ରକୁ ଖାଆଇଲେ
ଆଜ କି କଥା ନ ପାରନ୍ତି କରି ଭଲେ ।
ଯମଙ୍କର ଯମ ବୋଲିଣ ମୁଁ ତାହାଙ୍କୁ
ଜାଣଇ ବାବୁ ଭାବ ତାଙ୍କର ଗୁଣକୁ ।
ଯଦୁ ବୃଷ୍ଣି ମଲେ ଉତ୍ତରୁ କୃଷ୍ଣ ଆସି
କହିଲେ ନୃହ ପିତା ଶୋକରେ ଜଳସୀ ।
ଅର୍ଜ୍ଜୁନ ଯେ ଆସି କରି ଏହିଠାକୁ
କରିବେ ତୁମ୍ଭ ଶାନ୍ତ କହୁଛି ତୁମ୍ଭଙ୍କୁ ।
ଅର୍ଜ୍ଜୁନ ମୋହର ନାହିଁ ପରାଭିନ୍ନ
କହୁଛି କରିବଟି ଅର୍ଜ୍ଜୁନ ବଚନ ।
କୁଳ ଅନ୍ତକାଳ ତ ପ୍ରାପ୍ତ ହେଲା ଆସି
ଯାଉଛି ମୁହିଁ ପିତା ହୋଇ ବନବାସୀ ।
ପାର୍ଥଥିବାଯାକ ଦ୍ୱାରକା ରହିଥିବ
ଅର୍ଜ୍ଜୁନ ଗଲାକ୍ଷଣି ଜଳରେ ବୁଡ଼ିବ ।
ଏହି ରୂପେ କହି ଗଲେ ସେ ଅରଣ୍ୟକୁ
କି କରିବି ବାବୁ ମୁଁ କହୁଛି ତୁମ୍ଭଙ୍କୁ ।
ବୃଷ୍ଣି ଯଦୁଙ୍କର ସମ୍ପତ୍ତି ସ୍ତ୍ରୀଯାକ
ତୁମ୍ଭଙ୍କୁ ଲାଗିଲା ହେ ବୀରଙ୍କ ନାୟକ ।
ପ୍ରାଣକୁ ରଖିବାକୁ ଦେହରେ ସାମର୍ଥ୍ୟ
ନାହିଁ ମୋର ଜାଣ ଏଣିକି ହେ ପାର୍ଥ ।
ଅର୍ଜ୍ଜୁନ ବୋଇଲେ ଶ୍ରୀକୃଷ୍ଣ ଗଲେ ଯେବେ
ଭୁବନେ ମୁଁ ରହି ନ ପାରେ ଜାଣ ତେବେ ।
କୃଷ୍ଣ ଥିବାଯାକ ମୋହର ଥିଲା ବଳ
କୃଷ୍ଣ ଗଲାରୁ ମୁଁ ହେଲିଣି ଦୁର୍ବଳ ।
ଆମ୍ଭ ପାଞ୍ଚଭାଇ ଦ୍ରୌପଦୀଙ୍କର କାଳ
ହେଲାଣି, ନିକଟେ ଝିଙ୍କିବ କାଳ ବାଳ ।

ଏତେ ବୋଲିଣ ଦାରୁକକୁ ଡକାଇଲେ
ତାଙ୍କୁ ଘେନି ସୁଧର୍ମା-ସଭାକୁ ସେ ଗଲେ ।
ବୃଷ୍ଣି ଯଦୁଙ୍କରେ ଯେ ବୃଦ୍ଧ ଜନମାନେ
ଥିଲେ, ସେ ଆସିଲେ ପାର୍ଥଙ୍କ ସନ୍ନିଧାନେ ।
ଅର୍ଜ୍ଜୁନ ତାହାଙ୍କୁ ବୋଇଲେ ରତ୍ନ ଧନ —
ମାନଙ୍କରେ ପୂରଣ କରି ଯେତେ ଯାନ ।
ଆଜଠୁଁ ସାତଦିନେ ମହୋଦଧି ମାଡ଼ି
ଆସିବ ବୁଲି ଆମ୍ଭ ଯିବା ଏହା ଛାଡ଼ି ।
ବଜ୍ର ଇନ୍ଦ୍ରପ୍ରସ୍ଥରେ ହୋଇବେ ରାଜନ
ହସ୍ତିନାରାଜା ହେବ ମୋର ନାତି ଜାଣ ।
କୃଷ୍ଣ ବିନା ଆମ୍ଭେ ମଣୁଛୁଁ ମହୀ ଶୂନ୍ୟ
ଯିବୁଁ ପାଞ୍ଚଭାଇ ତେଜିଣ ଏ ଭୁବନ ।
ଏହା ଶୁଣି ସମସ୍ତେ ଯାନମାନଙ୍କରେ
ପୂରାଇଲେ ଧନମାନଙ୍କୁ ସଯତ୍ନରେ ।
ସେ ଦିନ ରାତ୍ରିଶେଷେ ଉଠନ୍ତେ ଅର୍ଜ୍ଜୁନ
ଶୁଣିଲେ-ବସୁଦେବ ହୋଇଲେ ନିଧନ ।
ବସୁଦେବଙ୍କର ଯେତେ ଭାରିଯା ଥିଲେ
ଆହା ରେ ପ୍ରାଣନାଥ ବୋଲିଣ କାନ୍ଦିଲେ ।
ଅର୍ଜ୍ଜୁନ ବସୁଦେବ-ଶବ ପାଲଙ୍କିରେ
ଶୁଆଇ ବୁହାଇଣ ଯଦୁଙ୍କ କାନ୍ଧରେ ।
ଯାଗ-ଅଗ୍ନି ଘେନି ଆଗରେ ପୁରୋହିତ
ବାହାରିଲେ ଦେହକୁ ମନ୍ତ୍ରେ କରି ପୂତ ।
ଶ୍ମଶାନରେ ସେ ଚିତା-ଅଗ୍ନିକି ଥାପିଲେ
ବସୁଦେବ-ଶବକୁ ତହିଁରେ ରଖିଲେ ।
ନଜଉଡନ୍ତେ ଘିଅ ପ୍ରଳୟ-ଅଗ୍ନି ପରି
ଉଠିଲେ ଅଗ୍ନି ଜଳି ମହାତେଜ ଧରି ।
ତାହା ଦେଖିଣ ଦେବକୀ ରୋହିଣୀ ସନ
ହୋଇ ବାହାରିଲେ ବଦନୁ ଛାଡ଼ି ଲାଜ ।
ମଦିରା ଭଦ୍ରା ଦୁହେଁ ସେ ଦୁହିଙ୍କ ପଛେ
ବାହାରିଲେ ଯିବା ବୋଲିଣି ପତିସାଥେ ।
ବସୁଦେବଙ୍କର ଦାହ ଅଗ୍ନିକି ଦେଖି
ସେ ଚାରି ସୁମୁଖୀ ଏ ନୋହି କଟୁ ଦୁଃଖୀ ।
ପ୍ରଦକ୍ଷିଣ କରି ଅଗ୍ନିରେ ପରବେଶ
ହେଲେ ତା ଦେଖୁଥିଲେ ଅର୍ଜ୍ଜୁନ ବୀରେଶ ।
କରିସାରି ବସୁଦେବଙ୍କ ଦାହ-ବିଧି
ଜଳଦାନ ପାଇଁ ଯଦୁଏ କରି ବୁଦ୍ଧି ।

ସ୍ନାନ କରଣ ତିଳପୂର୍ଣ୍ଣ ଜଳାଞ୍ଜଳି
ଦେଲେ ବସୁଦେବଙ୍କୁ ପାଣ୍ଡବ ବୋଲି ।

—*—

## ସମୁଦ୍ର ଜଳରେ ଦ୍ୱାରକା ବୁଡ଼ିଯିବା

ଏ ଅନ୍ତେ ଅରଜୁନ ପ୍ରଭାସ-ତୀର୍ଥକୁ ।
ଗଲେ ଯଦୁମାନଙ୍କୁ ଦାହ କରିବାକୁ ।
ରାମକୃଷ୍ଣଙ୍କର ଦେହକୁ ଅଣାଇଲେ
ଜ୍ଞାତିଙ୍କର ହାତରେ ଦାହ କରାଇଲେ ।
ପ୍ରେତକାର୍ଯ୍ୟ ସାରଣ ବୃଷ୍ଣିମାନଙ୍କର
ବାହାରିଲେ ହସ୍ତିନା ସୁଭଦ୍ରାଙ୍କ ବର ।
ଅରଜୁନ ଯ ଆନ୍ତେ ବୃଷ୍ଣିସ୍ତ୍ରୀରାଜ
ଗଲେ ତାଙ୍କ ସଙ୍ଗେ କରି ମହାଶୋକ ।
ରଥ ହାତୀ ଅଶ୍ୱ ଚଢ଼ିଣ ଯଦୁକୁଳ
ବାହାରିଲେ ଅର୍ଜୁନ ସଙ୍ଗେ ସେନ ବଳ ।
ସୁବର୍ଣ୍ଣପୀଠ ଦ୍ୱାରକା କରି ତୁଚ୍ଛ
ପାର୍ଥ ସଙ୍ଗେ ଗଲେ ହସ୍ତିନା କରି ଇଚ୍ଛା ।
କୃଷ୍ଣଙ୍କର ସ୍ତ୍ରୀଏ ଛାଡ଼ି ଦ୍ୱାରକାକୁ
ବାହାରିଲେ ଧରିଣ ବ୍ରଜବାଳକଙ୍କୁ ।
ଏରୂପେ ଯଦୁ, ଯଦୁସ୍ତ୍ରୀଏ ଯାଆନ୍ତେ
ସମୁଦ୍ର ଦ୍ୱାରକାକୁ ଆସିଲେ ତୁରିତେ ।
ସେ ସକାଶୁଁ ଦ୍ୱାରକାପୁରପୀଠ ରାଜ
ରହିଲା ଯେ ସଲିଳ ମଧ୍ୟଦେଶେ ମଜ୍ଜି ।

—o—

## କୃଷ୍ଣବିରହରେ ଅର୍ଜୁନଙ୍କର ବଳହ୍ରାସ ଓ ପାଣ୍ଡବଙ୍କର ରାଜ୍ୟତ୍ୟାଗ ପ୍ରସ୍ତାବ

ଅରଜୁନ ବାଟେ ଅଳପ ଭୁଲି ବସା
କରନ୍ତି ସଙ୍ଗେ ଥିବାରୁ ଯଦୁ-ଯୋଷା ।
ପଞ୍ଚନଦ ଦେଶେ ଖଣ୍ଟେ ତ ରହିଥିଲେ
ଗୁଡ଼ାଏ ସ୍ତ୍ରୀ ଯାଉ ଅଛନ୍ତି ଦେଖିଲେ ।
ବୋଲିବୋଲି ହେଲେ ଅର୍ଜୁନ ଏକା ହୋଇ
ନେଉଛି ହସ୍ତିନାକୁ ସ୍ତ୍ରୀଙ୍କ ଭିଡ଼ କରି ।
ସ୍ତ୍ରୀଙ୍କ ଜଗି ରହିଛନ୍ତି ଯେଉଁ ସୈନ୍ୟ
ବଞ୍ଚିଛନ୍ତି ତେଜେ ସେ ଅତି ସ୍ଥାନମାନ ।

ଏହି ସକାଶରୁ ଏ ସମୟରେ ବଳ
ଦେଖାଇଲେ ଛଡ଼ାଇ ଆଣିବା ସ୍ତ୍ରୀକୁଳ ।
ଏରୂପେ ମନେ କରି ଖଣ୍ଟେ ପିଟି ଠେଙ୍ଗା
ରଚିଲେ ବୃଷ୍ଣି-ସ୍ତ୍ରୀମାନଙ୍କ ହୃଦେ ଦଗା ।
ଅରଜୁନ ବୋଇଲେ ଖଣ୍ଟେ ଖଣ୍ଟଗଣ
ଯାଅ, ନୋହିଲେ ମୃତ୍ୟୁ ନେବ ତୁମ୍ଭ ପ୍ରାଣ ।
ମୋର ବାହୁବଳ କି ଜାଣିନାହଁ ତୁମ୍ଭେ
ତୁମ୍ଭର ଏ କଥାକୁ ଡରୁଁ କି ଆମ୍ଭେ ।
ଏହା କହି ଅର୍ଜୁନ ଗାଣ୍ଡୀବ-ଧନୁକୁ
ଗୁଣ ଦେଲେ କଷ୍ଟେ ଖଣ୍ଟଙ୍କୁ ମାରିବାକୁ ।
ଅସ୍ତ୍ରମାନଙ୍କୁ ସୁମରନ୍ତେ ଅରଜୁନ
କିନ୍ତୁ ସେ ନୋହିଲେ ଅର୍ଜୁନଙ୍କୁ ପ୍ରସନ୍ନ ।
ତହୁଁ ସେ ଯୋଦ୍ଧାମାନେ ଖଣ୍ଟଙ୍କ ଆଣ୍ଟ ଦେଖି
ରହିଲେ ତୁନି ହୋଇ ବୁଜି ଦୁଇ ଆଖି ।
କଷ୍ଟରେ ଅର୍ଜୁନ ଓଟାରି ମାରଗଣ
ବନ୍ଧିଲେ କ୍ଷୟ ହେଲା ସେ ଅକ୍ଷୟ ତୂଣ ।
ଏ ସକାଶୁ ଅର୍ଜୁନ ମହାଲଜ ପାଇ
ଧନୁହଁଲେ ଖଣ୍ଟେ ମାଇଲେ କ୍ରୋଧ କରି ।
ଖଣ୍ଟେ ତାହା ଦେଖି ବୋଇଲେ ଆରେବୋକା
ଆମ୍ଭର କିସ ହେବ ତୋ ବଳରେ ଏକା ।
ଏତେ ବୋଲି କେତେ ସ୍ତ୍ରୀଙ୍କି ବାଡ଼ି ପିଟି ।
ଅଡ଼ାଇ ସେନ ଗଲେ ଦେଖାଇ ବଳୁଟି ।
କେତେ ସ୍ତ୍ରୀ ଖଣ୍ଟଙ୍କ ଘରେ ରହିବାକୁ
ଇଚ୍ଛାରେ ଗଲେ ଖଣ୍ଟମାନଙ୍କ ପାଖକୁ ।
ଅର୍ଜୁନ ଅସ୍ତ୍ର ଧନୁ ଆପଣାର ବଳ—
ହୀନ ଦେଖି କରିକୁ ମାରିଣ କପାଳ ।
ମନେ କଲେ ଶ୍ରୀକୃଷ୍ଣ ଆମ୍ଭଙ୍କୁ ଏ ଦୁଃଖ
ଦେଇଣ ସ୍ୱର୍ଗ ଗଲେ ଲଭିବାକୁ ସୁଖ ।
ବାକି ଅବଶେଷ ଯଦୁସ୍ତ୍ରୀଙ୍କୁ ସେନ
ମିଳିଲେ ଅର୍ଜୁନ ହସ୍ତିନା-ରାଜଧାନୀ ।
କୃତବର୍ମାପୁଅଙ୍କୁ ତାଙ୍କ ମାତା ତୁଲେ
ମାର୍ତ୍ତିକାବତରେ ଅର୍ଜୁନ ରଖାଇଲେ ।
ଇନ୍ଦ୍ରପ୍ରସ୍ଥେ ବଜ୍ରଙ୍କୁ କରି ନରବର
ଦେଲେ ଯଦୁସ୍ତ୍ରୀମାନଙ୍କୁ ତହିଁ ଘର ।
ବଜ୍ରଙ୍କର ନିଷେଧ ନ ମାନି ଅକ୍ରୂର
ଘରଯାଏ ବନରେ କଲେ ଯାଇ ଘର ।

ରୁକ୍ମିଣୀ ହୈମବତୀ ଶୈବ୍ୟା ଜାମ୍ବବତୀ
ଗାନ୍ଧାରୀ ଅଗ୍ନି ପ୍ରବେଶିଲେ ବହୁ ପ୍ରୀତି ।
ସତ୍ୟଭାମା ଇତ୍ୟାଦି ଆଉ ସ୍ତ୍ରୀମାନେ
ବନ ଗଲେ ତପ କରିବା ଭାବି ମନେ ।
ଏ ଅନ୍ତେ ଅର୍ଜୁନ ବ୍ୟାସଙ୍କ ସମୀପକୁ
ଗଲେ ନିଜ କରମ କଥା ପୁଚ୍ଛିବାକୁ ।
ଅରଜୁନ ବୋଲିବା ନାମକୁ ଶୁଣାଇଁ
ପଡ଼ିଲେ ବ୍ୟାସଙ୍କ ପାଦରେ ଲମ୍ବ ହୋଇ ।
ବ୍ୟାସ ମହର୍ଷି ଯେ ପଚାରି କୁଶଳ
ବୋଇଲେ ବସ ଆହେ ଇନ୍ଦ୍ରଙ୍କର ବାଳ ।
ଏ ବାହାରେ ବୋଇଲେ ଛେଳ ସ୍ତ୍ରୀଙ୍କର
ପାଦଧୂଳି ଦେହରେ ଝଡ଼ିଲ କି ବୀର ।
ନୋହିଲେ କି ବ୍ରହ୍ମହତ୍ୟା ତୁମ୍ଭେ କଲ
ଏ ନୋହିଲେ ପରାଜୟକୁ ବା ପାଇଲ ।
ଏତେ କଥାଟିରୁ ହୋଇଛି କେଉଁ କଥା
ସତ କରି କହ ଅର୍ଜୁନ ମହାରଥୀ ।
ହୋଇଅଛ ତୁମ୍ଭେ ବହୁତ ଅପ୍ରସନ୍ନ
ଏଣୁ ଶଙ୍କାଜାତ ହେଉଛି ମୋର ମନ ।
ଅରଜୁନ ବୋଇଲେ ଏରକା ମୂଷଳେ
ଯଦୁଏ ପିଟାପିଟି ହୋଇକରି ମଲେ ।
ରାମକୃଷ୍ଣ ଦୁଇ ଭାଇ ଛାଡ଼ିଣ ଦେହ
ସ୍ୱର୍ଗକୁ ସେ ଗଲେ ଦୂରି କରିଣ ମୋହ ।
ସମୁଦ୍ର ଶୁଖିଯିବା ପ୍ରାୟେ ସେ ଦୁହିଙ୍କ
ମରଣ ଜାଣ ଆହେ ଋଷିଙ୍କ ତିଳକ ।
ମୋହ ମତରେ ମେରୁ ଯିବ ମଧ୍ୟ ଟଳି
ତାଙ୍କୁ ଏ ମହୀ ମଧ୍ୟେ ନ ପାରେ କେ ଟାଳି ।
କୃଷ୍ଣ ଯିବାବେଳୁ ସଂସାର ଛାଡ଼ିବାକୁ
ହୋଇଛି ମନ ସତ୍ୟ କହୁଛି ତୁମ୍ଭଙ୍କୁ ।
ଏ ବାହାରେ ଶୁଣ କହିବି କଥା ଟିଏ
କୃଷ୍ଣ ମଲାଠୁ ସେ ବଳୁଛି ଅତିଶୟେ ।
କୃଷ୍ଣଙ୍କ ଭାରିଯାକୁ ନେଇ ଆସିଥିଲି
ଦଇବରେ ଖଣ୍ଟଙ୍କ ଆଗରେ ପଡ଼ିଲି ।
ଖଣ୍ଟେ ଯେ ମୋତେ ଟେକା ବାଡ଼ିରେ ନିବାରି
ନେଇ ଗଲେ ସ୍ତ୍ରୀଙ୍କି ବଳାତ୍କାର କରି ।
ତା ନ ସହି ଗାଣ୍ଡୀବେ ଗୁଣ କଷ୍ଟେ କଷ୍ଟେ
ବଅନ୍ତେ ନ ସରିଲି ଅସ୍ତ୍ର କଣ୍ଠତଟେ ।

ଗାଣ୍ଡୀବେ ଶର ସନ୍ଧି ଝିଙ୍କନ୍ତେ ମୁଁ ଯେବେ
ଭୂଜଣୀ ହାତ୍ସିଟି ମୋ ହୋଇଗଲା ଆଗେ ।
ଅକ୍ଷୟ ତୂଣେ ଯେତେ ଶର ମୋର ଥିଲେ
ସ୍ୱତଃ ସ୍ୱତଃ କ୍ଷୟ ହୋଇ ସେ ଯାଇଁ ଗଲେ ।
ଏ ଯେଣୁ ଋଷିବର ହୋଇ ମୁଁ ଚାଳକା
ବୁହାଇଲି ଝାଳ ଦେହରୁ ଜାଣ ଏକା ।
କୃଷ୍ଣଙ୍କର ବଳରେ ବଳୀ ମୁହିଁ ହୋଇ
ଜିଣିଥିଲି କୌରବମାନଙ୍କ ଗୋସାଇଁ ।
ଏ ବାହାରେ ଏବେ ମୁଁ କହିଲି ବୃତ୍ତାନ୍ତ
କଣିପାରେ ଛନ୍ଦିଲେ ଟାଣୀବରେ ଜାଣ ।
କୃଷ୍ଣ ନେଲେ ମୋ ସେ କଥା ଗଣ ଜାଣି
ହେ ବେଦବ୍ୟାସ ମୁଁ ତ ଜାଣି ପାରୁ ନାହିଁ ।
କୃଷ୍ଣ ଯଦା ମହି ଛାଡ଼ିଛି ମୋହି ଶୂନ୍ୟ
କି ଶେଷ ହେବ ମୋର ତହିଁ ତପୋଧନ ।
ବେଦବ୍ୟାସ ବୋଇଲେ ବ୍ରାହ୍ମଣଙ୍କ କ୍ରୋଧ
ନବାଇବାରୁ ଯଦୁମାନେ ହେଲେ ବଧ ।
ତୁମ୍ଭେ ତାଙ୍କ ଶୋଚନା ନ କର ହେ ବୀର
ଏ ନୁହଇ ଧର୍ମ କ୍ଷତ୍ରିୟମାନଙ୍କର ।
ନିଶ୍ଚେ କି ଅନ୍ୟଥା ମାନନ୍ତି କୃଷ୍ଣ କରି
ବ୍ରାହ୍ମଣ କ୍ରୋଧରେ କି ଯାଆନ୍ତି ସେ ମରି ।
ତାଙ୍କ ଇଚ୍ଛା ହେବାରୁ ଗଲେ ସ୍ୱସ୍ଥାନକୁ
ଅରଜୁନ ନ କର ଚମନ ମନକୁ ।
ତୁମ୍ଭ ହାତେ ଥାଇ ଦେବଙ୍କ କାର୍ଯ୍ୟ କରି
ସାରିଲେ ତ ରହନ୍ତେ କାହିଁ ମର୍ତ୍ତ୍ୟପୁରୀ ।
ତୁମ୍ଭେ ପାଞ୍ଚଭାଇ ଦେବତାଙ୍କ ମହତ—
କାର୍ଯ୍ୟ କଲ ଧର୍ମରେ ହୋଇ ମଧ୍ୟ ସ୍ଥିତ ।
ଏବେ ତୁମ୍ଭମାନଙ୍କ ନହିବାର କାଳ
ହୋଇ ନାହିଁ ଆଉ ହେ ହୋଇ ମହୀପାଳ ।
ସଂସାରଯାକକୁ ଅଟଇ କାଳ ମୂଳ
କାଳ ସବୁ ପ୍ରାଣୀଙ୍କି କରୁଛି କବଳ ।
କାଳ ଅନୁକୂଳରୁ ଅସ୍ତ୍ର ସ୍ଫୁରୁଥିଲେ
କାଳ ପ୍ରତିକୂଳ ହେବାରୁ ନ ସ୍ଫୁରିଲେ ।
କାଳକୁ ସର୍ବେଣ ବସ୍ତୁର କର ସାର
ବୋଲୁଅଛ ତ ତୁମ୍ଭେ ପଣ୍ଡିତଙ୍କରେ ଧୀର ।

ବ୍ୟାସଙ୍କର ମୁଖରୁ ଏରୂପରେ ଶୁଣି
ଗଲେ ହସ୍ତିନାକୁ ଗାଣ୍ଡୀବ-ଧନୁଷ୍ପାଣି ।
ଯୁଧିଷ୍ଠିର ରାଜାଙ୍କୁ କରି ନମସ୍କାର
କହିଲେ ସେ ମରଣ ବୃଷ୍ଣିମାନଙ୍କର ।

ମୁଷଲପର୍ବ ଚର୍ମଦାସ ବେଦବ୍ୟାସ'
ମହରଷି କରିଲେ ଏହିଠାରେ ଶେଷ ।
ତାହାଙ୍କ ପାଦ-ପଦ୍ମେ କୃଷ୍ଣସିଂହ-ମନ
ମିଳି ଅବଚ୍ଛିନ୍ନେ ହୋଇଲା ନମଗନ ।



# ଯାନ ପର୍ବ



## ପାଣ୍ଡବଙ୍କର ରାଜ୍ୟତ୍ୟାଗ

ଜୟ ଜୟ ଯଶୋଦା-ସୁତ ଯାମଳାରି
ତୁଅ ମୋର ପାତକ-ଭେଳା ନ ଶକାରି ।
ଭାରତ ଯାନପର୍ବ ମୋ ମୁଖେ ପ୍ରଚାରି
ଶୁଣାଅ ସୁଖେ ମହାପ୍ରଭୁ ହେ ବିସ୍ତାରି ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଯୁଧିଷ୍ଠିର ଶୁଣିଣ କୃଷ୍ଣଙ୍କ ନିଧନ ।
କେଉଁ କଥା କଲେ ତାହାକୁ ମୋ ଆଗରେ
କହ ଏବେ ହେ ମହରଷି ସତ୍ୱରେ ।
ବଇଶମ୍ପାୟନ ବୋଇଲେ କୃଷ୍ଣଙ୍କର
ନିଧନକୁ ଶୁଣି କରୁଣ ଯୁଧିଷ୍ଠିର ।
ଅର୍ଜୁନେ ବୋଇଲେ ଆଉ କି କହ ଭାଇ
କାଳ ସବୁ ପ୍ରାଣୀଙ୍କି ଦେଉଅଛି ଖାଇ ।
ଧରାରେ ଆମ୍ଭର ଏଣିକି କିଛି କାର୍ଯ୍ୟ
ନାହିଁ; ପ୍ରାନ୍ତେ ଉପୁଜିବଟି ମହାଲାଜ ।
କୃଷ୍ଣଙ୍କ ବଳେ ଆମ୍ଭେ ହୋଇ ଠାଣି ଠୁଣି
ମହୀ ଭୋଗ କଲୁଁ ଜିଣି ନୃପଶ୍ରେଣୀ ।
ସେ ଯେବେ ଛାଡ଼ିକରି ଗଲେଣି ଆମ୍ଭଙ୍କୁ
ଚାଲ ଆମ୍ଭେ ଛାଡ଼ିଣ ଯିବା ହସ୍ତିନାକୁ ।
ଅର୍ଜୁନ ବୋଇଲେ କୃଷ୍ଣ ମହାମନା
ଯିବାରୁ ଏହା ଭାବୁଛି ମୁଁ ଜାଣ ନନା ।
ଭୀମସେନ ନକୁଳ ସହଦେବ ମଧ୍ୟ
ବନେ ଯିବା ବୋଲି ବୋଇଲେ କରି ସଧ ।
ଅଭିମନ୍ୟୁ-ସୁତକୁ ରାଜ୍ୟ ଅଭିଷେକ
କରିଲେ ଯୁଧିଷ୍ଠିର ପାଣ୍ଡବ ତିଳକ
ଯୁଯୁତ୍ସୁଙ୍କୁ ସେହି ପୁତ୍ରଙ୍କୁ ସମର୍ପିଲେ
ଲାଗିଲା ଏହି ରାଜ୍ୟ ତୁମ୍ଭଙ୍କୁ ବୋଇଲେ ।
ଥିବାରୁ କାଳ ଆମ୍ଭେ ହୋଇ ମହୀପାଳ
ପାଳୁଥିଲୁ ରାଜ୍ୟ, ହେଲା ତ ଏବେ କାଳ ।
ଯୁଯୁତ୍ସୁ ଏ ହସ୍ତିନାପୁରୁଟି ତୁମ୍ଭଙ୍କୁ
ଆଜି ଦେଲୁଁ ଆଉଟି ନ ପୁଚ୍ଛ ଆମ୍ଭଙ୍କୁ ।
ସୁଭଦ୍ରାଙ୍କୁ କହିଲେ ବଜ୍ରେ ଇନ୍ଦ୍ରପ୍ରସ୍ଥ—
ରାଜ୍ୟ ଦେଇ କଲୁଁ ହେବୁଙ୍କୁ ତହିଁ ସୁସ୍ଥ ।
ପରୀକ୍ଷିତ ହସ୍ତିନା-ପୁରେ ରାଜା ହେଲେ
ତୁମ୍ଭେ ଥାଇ ଦୁହିଁଙ୍କି ପାଳିବଟି ଭଲେ ।
ଏହା କହି କୃଷ୍ଣ ରାମଙ୍କ ହିତପାଇଁ
ବିପ୍ରଙ୍କୁ ଦେଲେ ଧନ ରତ୍ନ ଗ୍ରାମ ଗାଈ ।
କୃପଙ୍କୁ ବୋଇଲେ ହେ ଆମ୍ଭ ନାତିଟିକ
ଶିଖାଅ ଧନୁର୍ବିଦ୍ୟା କହିଣ ପ୍ରୀତିକ ।
ପୁରଲୋକମାନଙ୍କୁ ଡକାଇ ଆଣିଲେ
ଯାଉଛୁଁ ବୋଲି ବନ ମଧ୍ୟକୁ ବୋଇଲେ ।
ଲୋକେ ତାହା ଶୁଣି ବୋଇଲେ ଆହା ଆହା
କହିଲେ ଏ ପାପ ନ କର ନରନାହା ।
ଯୁଧିଷ୍ଠିର ତାଙ୍କ ବଚନ ନ ଘେନିଲେ
ନ ଜାଣ ତୁମ୍ଭେମାନେ ବୋଲିଣ ବୋଇଲେ ।
ଭାଇଙ୍କ ତୁଲେ ବସ୍ତ୍ର ଅଳଙ୍କାର ଛାଡ଼ି
ପିନ୍ଧିଲେ ତହୁଁ ସର୍ବ ବକଳକୁ ଭିଡ଼ି ।
ଦ୍ରୌପଦୀ ଦେଖି କରି ପତିଙ୍କ ଏ ଦଶା
ବକଳକୁ ପିନ୍ଧିଲେ ଛାଡ଼ି ଲୋକହସା ।
ଇଷ୍ଟି ଏକ କରାଇ ଧୌମ୍ୟଙ୍କ ହାତରେ
ସେ ଅଗ୍ନି ବିସର୍ଜନ କଲେ ସେ ଜଳରେ ।
ଏହା ଦେଖି କୁରୁସ୍ତ୍ରୀଏ ଡକା ପାଡ଼ି
ମଣିଲେ ଆକାଶ ପଡ଼ିଲା ମୁଣ୍ଡେ ମାଡ଼ି ।
ସେ ଟାଙ୍ଗରାଇ ଦ୍ରୌପଦୀଙ୍କ ଯିବାବେଳେ
କୁକୁରଟାଏ ଗଲା ହସ୍ତିନାରୁ ତୁଲେ ।
ଅଧବାଟୁଁ ହସ୍ତିନାଲୋକଙ୍କୁ ଫେରାଇ
ପଠାଇ ଦେଲେ ପାଣ୍ଡବ ନରସାଇଁ ।
ଉଲୂପୀ ଏଥିଅନ୍ତେ ଗଙ୍ଗାଙ୍କ ଜଳରେ
ପଶି ନାଗ-ଲୋକକୁ ଗଲେ ସେ ବେଳରେ ।
ଚିତ୍ରାଙ୍ଗଦା ମଣିପୁରକୁ ଖୋଜ ବାଟ
ଗଲେ ଦେଖିବାପାଇଁ ଆପଣାର ଘାଟ ।
ପାଣ୍ଡବଙ୍କ ବାକି ଭାର୍ଯ୍ୟାଏ ହସ୍ତିନାରେ
ରହିଲେ ହେ ରାଜନ ଜାଣ ଏମନରେ ।
କୃପଙ୍କର ବୋଲେ ଯୁଯୁତ୍ସୁ ଘରେ ରହି
ପରୀକ୍ଷିତ ଆଜ୍ଞାରେ ପାଳିଲେ ସେ ମହୀ ।

—୦—

## ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ
## ଓ
## ଦ୍ରୌପଦୀଙ୍କର ଦେହତ୍ୟାଗ

ପୃଥ୍ୱୀକୁ ମୁଖ କରି ଯାନ ବଡ଼ ଶ୍ରମ
ହୋଇ ପାଣ୍ଡୁସୁତ ଛାଡ଼ିଲେ ନିଜ ଗ୍ରାମ ।
ସଭ ପଛେ ଦ୍ରୌପଦୀ, ଦ୍ରୌପଦୀଙ୍କ ପଛେ
କୁକୁରଟି ଚାଲିଲା ଜାଣ ଅତି ସ୍ୱଚ୍ଛେ ।
ସମୁଦ୍ର ତୀରରେ ହେଲେ ପରବେଶ
ଭରଯା ଭୁଲେ ପାଣ୍ଡୁଙ୍କର ପାଞ୍ଚଶିଷ୍ୟ ।
ଅକ୍ଷୟ ତୂଣ ଗାଣ୍ଡୀବକୁ ଅର୍ଜ୍ଜୁନ
ଧରିଥିଲେ ଲୋଭରେ ନ କରି ମୋଚନ ।
ଅଗ୍ନି ତାହା ଜାଣିଣ ମୂର୍ତ୍ତିମନ୍ତ ହୋଇ
କହିଲେ ବାଟେ ଯୁଧିଷ୍ଠିରଙ୍କୁ ଅନାଇଁ ।
ତୁମ୍ଭ ଭାଇ ଅର୍ଜ୍ଜୁନ ଲୋଭେ ଧନୁ ତୂଣ
ଧରିଛନ୍ତି ନୋହେ ସେ ଏ କାଳକୁ ଗୁଣ ।
ଅଗ୍ନି ଦେବତାଟି ମୁଁ କହୁଛି ତୁମ୍ଭଙ୍କୁ
ଦିଅ ଧନୁ ତୂଣକୁ ବରୁଣ ଦେବଙ୍କୁ ।
କାଳ ହେଲେ ପୁଣି ପାର୍ଥ ଧନୁ ତୂଣ
ମୂର୍ତ୍ତି ଆଣି ଦେବ ହେ ଯୁଧିଷ୍ଠିର ଜାଣ ।
କୃଷ୍ଣଙ୍କୁ ଯେଉଁ ଚକ୍ର ଦେଇଥିଲି ମୁହିଁ
କୃଷ୍ଣଙ୍କ ଛାଡ଼ିଗଲା ଅନ୍ତର୍ଦ୍ଧାନ ହୋଇ ।
କାଲି ସକାଳରୁ ହେଉଛୁ ଯାନ ବଡ଼
ଦିଅ ହେ ଧନୁ ତୂଣ କଥାକୁ ନ ବାଢ଼ ।
ଏହା ଶୁଣି ଭାଇଏ ଅର୍ଜ୍ଜୁନଙ୍କୁ କହି
ଅଗ୍ନିଙ୍କ କରେ ଦେଲେ ଧନୁ ତୂଣ ଦୁଇ ।
ଅଗ୍ନି ସେ ଧନୁ ତୂଣ କରି ଅନ୍ତର୍ଦ୍ଧାନ
ହୋଇଲେ ସେହିକ୍ଷଣି ହେ ପରୀକ୍ଷିତ-ରାଣ ।
ଏ ଅନ୍ତେ ଦକ୍ଷିଣ-ସମୁଦ୍ରେ ପାଣ୍ଡୁସୁତେ
ପ୍ରବେଶିଲେ ମହୀ ବୁଲିବା କରି ଚିନ୍ତେ ।
ସେଠାରୁ ଯାଇ କରି ପଶ୍ଚିମ ସମୁଦ୍ର
ଦେଖିଲେ ହୋଇବାକୁ ନିଜୁଟିର ଭଦ୍ର ।
ଉତ୍ତର ଦିଗୁଟିକ ଏ ଅନ୍ତେ ଦେଖିଲେ
ହିମାଳୟ-ତଟରେ ପରବେଶ ହେଲେ ।
ହିମାଳୟଗିରିଙ୍କି ଅତିକ୍ରମ କରି
ମେରୁଗିରି ଦେଖିଲେ ଜାଣ ଦଣ୍ଡଧାରୀ ।
ତହିଁରେ ପଡ଼ିଛୁ ବହୁତ ସୁନାବାଲି
ଏ ସକାଶୁଁ ନ ପାରିଲେ ସେ ବେଗେ ଚାଲି ।
ଦ୍ରୌପଦୀଦେବୀ ଯୋଗୁଁ ଭ୍ରଷ୍ଟ କରି ଶକ୍ତି
ପଡ଼ି ହେଲେ ସେ ବାଲିମଧ୍ୟଟିରେ ହତ ।
ଭୀମ ସେହିକାଳେ ଯେ ପୁଚ୍ଛିଲେ ରାଜାଙ୍କୁ
ପଡ଼ିଲେ କପାଁ କୃଷ୍ଣା ଛାଡ଼ିଣ ଆମ୍ଭଙ୍କୁ ।
ଏହାଙ୍କର ପାତକ ମୋ ଦେହଙ୍କ ମୁହିଁ
କହୁ ତ ଜାଣିନାହିଁ, କହ ନରସାଇଁ ।
ଯୁଧିଷ୍ଠିର ବୋଇଲେ ଆମ୍ଭ ଭାଇଙ୍କରେ
ଅର୍ଜ୍ଜୁନଙ୍କୁ ସୁଖ ଏ ପାନ୍ତ ଅଧିକରେ ।
ଏ ହେତୁ ପଡ଼ିଲେ ଜାଣ ହେ ଭୀମସାଇଁ
ଆସ ଆସ ବାହାର ତାଙ୍କୁ ନ ଅନାଇଁ ।
ତହୁଁ କେତେଦୂର ଯାଆନ୍ତେ ସହଦେବ
ପଡ଼ିଲେ ମହୀମଧ୍ୟେ ଛାଡ଼ି ଜୀବଭାବ ।
ଭୀମ ବୋଇଲେ ଆମ୍ଭଙ୍କୁ ସେବି ଧର୍ମେ ଥାନ୍ତି
କହ କପାଁ ହେଲା ତ ଏହାଙ୍କ ଏ ଗତି ।
ଯୁଧିଷ୍ଠିର ବୋଇଲେ ସହଦେବ ନିତି
ମୁଁ ପଣ୍ଡିତ ହୋଇଲିଣ ଭାବୁଥାଏ ମତି ।
ଏହି ସକାଶୁଁ ଆହେ ଭୀମ ଛାଡ଼ି ଜୀବ
ପଡ଼ିଲେ ମହୀଦେଶେ ଜାଣ ସହଦେବ ।
ଦ୍ରୌପଦୀ ସହଦେବ ପଡ଼ିବାର ଦେଖି
ନକୁଳ ହୃଦୟରେ ହୋଇ ମହାଦୁଃଖୀ ।
ପଡ଼ନ୍ତେ ଭୀମସେନ ପୁଚ୍ଛିଲେ ରାଜାଙ୍କୁ ।
କହ ନକୁଳଙ୍କର ଦୋଷ ହେ ଆମ୍ଭଙ୍କୁ ।
ଯୁଧିଷ୍ଠିର ବୋଇଲେ ନକୁଳ ସୁନ୍ଦର
ବୋଲି ହୃଦେ କରିଥାଆନ୍ତି ଅହଙ୍କାର ।
ସେ ନ ପଡ଼ିଣ ଆଜ ପଡ଼ନ୍ତା କେ ବାବୁ
ପଚୁରୁଛୁଁ, ତା କେତେ ତୋତେ ବୁଝାଇବୁ ।
ଏ ଅନ୍ତେ କେତେଦୂର ଯାଆନ୍ତେ ଅର୍ଜ୍ଜୁନ
ପଡ଼ିଲେ ଭାବ କରି ଭ୍ରାତୃ-ଈର୍ଷ୍ୟା ପୁଣ ।
ଭୀମ ବୋଇଲେ ହେ ଅର୍ଜ୍ଜୁନ କାହିଁପାଇଁ
ପଡ଼ିଲେ କହ ତ ହସ୍ତିନା ନରସାଇଁ ।
ସ୍ୱପନେ ତ ମିଥ୍ୟା ବଚନ ଅରଜୁନ
କହିଅଛନ୍ତି ବୋଲି ଶୁଣି ନାହିଁ କାନ
ଯୁଧିଷ୍ଠିର ବୋଇଲେ ଦିନକେ କୁରୁଙ୍କୁ
ମାରିବି ବୋଲି କଲେ ପାର୍ଥ ପ୍ରତିଜ୍ଞାକୁ ।

ଅଠରଦିନଯାଏ ଯୁଦ୍ଧ ସେହୁ କଲେ
ଏଣୁ ମିଥ୍ୟାଦୋଷ ସେ ସୁଖେ ଅରଜିଲେ ।
ଏ ବାହୁରେ କ୍ଷତ୍ରିୟମାନଙ୍କ ବଳକୁ
ନ ମାନନ୍ତି ଦେଖାଇ ନିଜ ବିକ୍ରମକୁ ।
ଏହି ଦୋଷପାଇଁ କାଳରେ ଗୋଟି ହୋଇ
ଦେଲେ ଯେ ଫାଲ୍ଗୁନୀଙ୍କି ଭୂମିରେ ଶୁଆଇ ।
ଏହା କହି ଯାନ୍ତେ ଭୀମଙ୍କୁ କରି ସଙ୍ଗୀ
ଭୀମ ବାଟେ ପଡ଼ିଲେ ଦୁଇଗୋଡ଼ ଭାଙ୍ଗି ।
ଭୀମ ପଡ଼ି ବୋଇଲେ ମୋହର କି ଦୋଷ
ଅଛି ତା ନରବର କର ହେ ପ୍ରକାଶ ।
ଯୁଧିଷ୍ଠି ବୋଇଲେ ଗୁଡ଼ାଏ ଖାଇଦେଇ
ମୁଁ ବଳୀୟାର ବୋଲି କହୁଥିଅ ଭାଇ ।
ତହିଁରେ ଫଳ ଏବେ ଫଳିଲା ତୁମ୍ଭଙ୍କୁ
ରହ ତୁମ୍ଭେ, ଆମ୍ଭେ ଯାଉଛୁଁ ଆଗଠାକୁ ।

—o—

## ଯୁଧିଷ୍ଠିରଙ୍କର ସଶରୀରେ ସ୍ୱର୍ଗଯାତ୍ରା

ଯୁଧିଷ୍ଠିରଙ୍କର ସଙ୍ଗତରେ କୁକୁର
ଏକା ଥିଲା ଜନମେଜୟ ମନେ କର ।
ଏତିକାଳରେ ଇନ୍ଦ୍ର ଚଢ଼ି ରଥବର
ଆସିଣ ବୋଇଲେ ଶୁଣ ହେ ଯୁଧିଷ୍ଠିର ।
ଆଣିଅଛି ଯାନ ତୁମପାଇଁ ମୁହିଁ
ଆସ ସ୍ୱର୍ଗପୁରେ ବସିବ ସୁଖ ପାଇ ।
ଯୁଧିଷ୍ଠି ବୋଇଲେ ପଡ଼ିଲେ ବନ୍ଧୁ ଭାଇ
ପଡ଼ିଲେ ପୁଣି ଦ୍ରୁପଦୀ ଚନ୍ଦ୍ରମୁହିଁ ।
ଏକାକୀ ହୋଇ ମୁହିଁ ଯାଇଣ ସ୍ୱର୍ଗକୁ
କିସ ସୁଖ ପାଇବି କି କହ ଆମ୍ଭଙ୍କୁ ।
ଇନ୍ଦ୍ର ବୋଇଲେ ହେ ତୁମ୍ଭର ଭାଇ ବୀର
ସୁମନରେ ସୁମନାଙ୍କୁ କୋଳରେ ଧରି ।
ସୁମନାଙ୍କ ସଙ୍ଗେ ବିହରୁଛନ୍ତି ସୁଖେ
ତୁମ୍ଭେ କିପାଁ ରହିବ ଏଥେ କହ ଦୁଃଖେ ।
ତୁମ୍ଭେ ତ କରିଅଛ ମହତ ସୁକୃତ
ଏଣୁ ଏ ଦେହେ ଆସ ସ୍ୱର୍ଗେ ଧର୍ମସୁତ ।
ଯୁଧିଷ୍ଠିର ବୋଇଲେ ମୋ ସଙ୍ଗେ ଗୋଡ଼ାଇ
ଆସିଅଛି କୁକୁର ଛାଡ଼ିବି ମୁଁ ନାହିଁ ।
ଏ ଯେବେ ଯିବ, ମୁହିଁ ତେବେ ଯିବି ସ୍ୱର୍ଗ
ନୋହିଲେ ମୋର ତହିଁ ନାହିଁ ଅନୁରାଗ ।

ଇନ୍ଦ୍ର ବୋଇଲେ ସ୍ୱର୍ଗେ ବସି ମୋହ ପରି
ସୁଖ ଭୁଞ୍ଜିବ ହେ ପାଣ୍ଡବ-ବଂଶଧାରୀ ।
ଏହା ଛାଡ଼ି କିପାଇଁ କୁକୁରକୁ ସ୍ନେହ
କରୁଛ, ଏ ଉଚିତ ନୁହେ ନରସିଂହ ।
ଯୁଧିଷ୍ଠିର ବୋଇଲେ କୁକୁର ମୋ ଭକ୍ତ
ଏହାକୁ କେବେ ଛାଡ଼ି ନାହିଁ ପୁରୁହୂତ ।
ଶରଣାଗତ ଲୋକ ଆଜଯାଏ ମୁହିଁ
ଥାଇ ଛାଡ଼ିବାର, ସ୍ୱପନେ ଜାଣି ନାହିଁ ।
ଇନ୍ଦ୍ର ବୋଇଲେ ଆହେ ଦାଉ ଜ୍ଞାତିଯାଙ୍କୁ
ଛାଡ଼ି କିପାଇଁ ଛାଡ଼ୁ ନାହିଁ କୁକୁରକୁ ।
ସେ କାଳେ ରାଜାଙ୍କ ଛାମୁରେ ଆସି ଧର୍ମ
ଜାଣିଅଛି ମୁଁ ହେଳିତନେ ତୁମ୍ଭ ଧର୍ମ ।
ଏବେ ମଧ୍ୟ ସେହିପରିଟି ଧର୍ମ ନାହିଁ
ବୁଝିଲି ତୁମ୍ଭ ପରି ଧାର୍ମିକ କେ ନାହିଁ ।
ସଶରୀରରେ ତୁମ୍ଭେ ପାଉଅଛ ସ୍ୱର୍ଗ
ଏରୂପେ ନୋହେ ମର୍ତ୍ତ୍ୟଲୋକଙ୍କର ଭୋଗ ।
ଏରୂପେ ଧର୍ମ କହୁଁ କହୁଁ ସେ କୁକୁର
ଲୁଚିଇଦେଲା ସେହିଠାରେ ତା ଶରୀର ।
ଧର୍ମ ଇନ୍ଦ୍ର ମରୁତ ଅଶ୍ୱିନୀକୁମାରେ
ଯୁଧିଷ୍ଠିରଙ୍କ ହାତ ଧରି ସବଟରେ ।
ଦିବ୍ୟ ରଥବରେ ଯେ ବସାଇଲେ ନେଇ
ଆସ ସ୍ୱର୍ଗପୁରକୁ ଯିବା ବୋଲି ଭାଇ ।
ଯୁଧିଷ୍ଠିରରାଜା ବସିଣ ଦିବ୍ୟରଥେ
ବାହାରିଲେ ସୁଖ ପାଇ ସ୍ୱରଗ-ପଥେ ।
ନାରଦ ଦେବତାଙ୍କ ମଧ୍ୟରେ କହିଲେ
ଧର୍ମରେ ଯୁଧିଷ୍ଠିର ମହାନ୍ତ ଜିଣିଲେ ।
ଆଜଯାଏ ଶରୀର ଘେନି କେହି କେହି
ସ୍ୱର୍ଗକୁ ଆସିବାର ଆମ୍ଭେ ଦେଖି ନାହିଁ ।
ଯୁଧିଷ୍ଠିର ବୋଇଲେ ଶୁଣିଣ ଇନ୍ଦ୍ରଙ୍କୁ
ନିଅ ମୋତେ ଭାଇମାନଙ୍କ ସମୀପକୁ ।
ପାପ ପୁଣ୍ୟ ଦୁଇରୁ ସେ ଯା ଭୁଞ୍ଜୁଥିବେ
ତା ମୋତେ ଭୁଞ୍ଜାଅ ପ୍ରୀତିରେ ସବୁ ଦେବେ ।
ଇନ୍ଦ୍ର ବୋଇଲେ ହେ ପାଣ୍ଡବ-ନରବର
ମାନୁଷ ସ୍ନେହଟିକି ମନୁଁ କର ଦୂର ।
ଯୁଧିଷ୍ଠିର ବୋଇଲେ ଭାଇ ଭାର୍ଯ୍ୟା ବିନା
ସ୍ୱର୍ଗେ ଥିଲେ ପୂର୍ଣ୍ଣ ନୋହିବ ମୋ କାମନା ।
ଏଠାରେ ହେଲା ଯାନପର୍ବ ସମାପତି
କହଇ କୃଷ୍ଣସିଂହ ନରକୁଳ ପତି ।

# ସ୍ୱର୍ଗାରୋହଣ ପର୍ବ



## ପ୍ରାର୍ଥନା

ଜୟ ଶ୍ରୀକୃଷ୍ଣ ଜୟ ରାମ ଦୀନ-ଈଶ
ଯୋଗି-ଜନ-ହୃଦୟ-କମଳ ବିଳାସ ।
କହୁଛି ମୋର ହୃଦେ କରିଣ ନିବାସ
କରାଅ ଝବାରୋହ-ପରବ ପ୍ରକାଶ ।

—o—

## ଯୁଧିଷ୍ଠିରଙ୍କ ନରକ-ଦର୍ଶନ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ପାଣ୍ଡୁ ଧୃତରାଷ୍ଟ୍ର-ତନୟେ ସ୍ୱର୍ଗ ସ୍ଥାନ ।
ପାଇ କେ କେଉଁଠି ରହିଲେ ତା ବତାଇ
କହ ଶ୍ରବଣେ ମନ ଅଛି ମୁଁ ବଳାଇ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ସ୍ୱର୍ଗରେ ବସିଥିଲେ ଗାନ୍ଧାରୀ-ତନୟ ।
ଦୁର୍ଯ୍ୟୋଧନ ପୁଣ୍ୟଲୋକ ସଙ୍ଗତେ ଘେନି
ଦେଖିଲେ ତାହା ଯୁଧିଷ୍ଠିର ନରମଣି ।
ବୋଇଲେ ଏ ଅନିଷ୍ଟକାରୀ ଦୁର୍ଯ୍ୟୋଧନ—
ସଙ୍ଗେ ସ୍ୱର୍ଗରେ ରହିବାକୁ ନୁହେ ମନ ।
ଭାଇମାନେ ମୋହର ନର୍କେ ଥିଲେ ପଡ଼ି
ଯିବି ମୁହିଁ ସେହିଠାକୁଟି ଲୋଡ଼ି ଲୋଡ଼ି ।
ନାରଦ ବୋଇଲେ ହେ ସ୍ୱର୍ଗରେ ଯେ ହିଂସା
କରେ, ସେ ନ ପାଏଟି ସ୍ୱର୍ଗପୁରେ ବସା ।
ଯୁଦ୍ଧ-ଅନଳରେ ତ ତନୁ-ଘୃତ ହୋମ
କରିଲେ ଦୁର୍ଯ୍ୟୋଧନ ବୀରଙ୍କ ଉତ୍ତମ ।
ଏ ସକାଶୁଁ ଇନ୍ଦ୍ରାଦି ଦେବେ ଦୁର୍ଯ୍ୟୋଧନ
ରଜାଙ୍କୁ ଆଣିକରି ଦେଲେ ସ୍ୱର୍ଗ ସ୍ଥାନ ।
ଯୁଧିଷ୍ଠିର ବୋଇଲେ କୁଳର ହନ୍ତକ
ଘୋଟିଆଇଥିଲା ସମସ୍ତ ପାପଯାକ ।
ଯେଉଁ ଦୁର୍ଯ୍ୟୋଧନ, ତାହାକୁ ଯେବେ ସ୍ୱର୍ଗ
ଦେଲେ ଯୁଝେ ମଲରୁ ବଳି ଅନୁରାଗ ।
ମୋ ଭାଇମାନେ ମହାରଥ ଶୂର ସତ୍ୟ
ବାଧ୍ୟ ହୋଇ ବନ ବଞ୍ଚନ୍ତି ଅବିରତ ।
କହ ତାହାଙ୍କର ହୋଇଛି କେଉଁ ଲୋକ
ଆହେ ବ୍ରହ୍ମପୁତ୍ର ଋଷିଙ୍କର ତିଳକ ।
କର୍ଣ୍ଣ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ବିରାଟ
ଦ୍ରୁପଦ ଅଭିମନ୍ୟୁ ଦ୍ରୌପଦୀଙ୍କ ସୁଟ ।
ଏମାନେ କେଉଁଠାରେ ଛନ୍ତି ଘର ପାଇ
ଜାଣିଥିଲେ ତା ଏବେ କହ ତ ବତାଇ ।
ଯୁଦ୍ଧରେ ତ ଏମାନେ ଉତ୍ତମ ମନୁଆଁ
ନୋହିବେ କିମ୍ପା ଋଷି ସ୍ୱର୍ଗପୁରେ ଠିଆ ।
ଏ ସକାଶୁଁ ତାଙ୍କୁ ମୁଁ ଖୋଜୁଛି ଏ ପୁରେ
ନ ଦେଖିବାରୁ ଶୋକ ମୋ ହୃଦରେ ପୂରେ ।
ଭାଇଏ ମୋର ତ ଶୂରଙ୍କ ଶିରୋମଣି
କିମ୍ପା ସେ ନ ଭୋଗିଲେ ସ୍ୱର୍ଗ-ସୁରମଣି ।
ଏରୂପେ ନାରଦ ଋଷିଙ୍କି ଯୁଧିଷ୍ଠିର
କହନ୍ତେ ଦେବେ ତାଙ୍କୁ କହିଲେ ଉତ୍ତର ।
ଯେବେ ଦେଖିବାକୁ ଭାଇଙ୍କି ଅଛି ଇଚ୍ଛା
ଦେଖାଇବା ତାଙ୍କୁ ତୁମ୍ଭଙ୍କୁ ଧର୍ମବତ୍ସା ।
ଏହା କହି ଦେବେ ଦୂତଙ୍କୁ ଦେଲେ କହି
ଦେଖାଅ ଏହାଙ୍କର ସୁହୃଦଙ୍କୁ ନେଇ ।
ଦେବଦୂତ ଯୁଧିଷ୍ଠିରଙ୍କୁ ଘେନିଗଲେ
ଭୀମାଦି ଭାଇଥିବା ସ୍ଥାନେ ବାହାରିଲେ ।
ଦେଖିଲେ ରକ୍ତମାଂସ ଅସ୍ଥି କେଶ ନଖ
ମାନଙ୍କେ ପୂରଣଠି ଅଛି ଲକ୍ଷ ଲକ୍ଷ ।
ସୂଚୀମୁହାଁ ପ୍ରେତେ ଯେ ବିନ୍ଧ୍ୟ-ପରବତ—
ପରାୟେ ଦେହ କରିଛନ୍ତି ଅପ୍ରମିତ ।
ଶାଗୁଣା କୁଆ ଲୁହାଥଣ୍ଟମାନ ବସି
ସେ ଯାଗରେ ଉଡ଼ୁଅଛନ୍ତି ଘଞ୍ଚ ହୋଇ ।
ତଇଳପୂର୍ଣ୍ଣ ଲୁହାକୁମ୍ଭ ହୋଇ ତତା
ରହିଛି ସେ ସ୍ଥାନରେ ଗଣିବ କିଏ ତା ।
ଶିମୁଳୀବୃକ୍ଷର କଣ୍ଟାରେ ହୋଇ ପୂର୍ଣ୍ଣ
ଦିଶୁଅଛି ନେତ୍ରକୁ ସେ ଅତି ଭୀଷଣ ।
ଯୁଧିଷ୍ଠିର ନରକ ଦେଖି ଦୁଃଖୀ ହୋଇ
ଦୂତଙ୍କୁ ବୋଇଲେ ଏ କି ଦେଶ ଅଟଇ ।
ଏ ବାଟରେ ବା କେତେଦୂର ଆମ୍ଭେ ଯିବୁ
ଭାଇଙ୍କି କହ କେତେବେଳେ ହେ ଦେଖିବୁ ।

ଦେବଦୂତ ବୋଇଲେ ଯେବେ ହେଲ ଶ୍ରାନ୍ତ
ଚାଲ ଯିବା ସ୍ୱର୍ଗକୁ ଆହେ ଧର୍ମସୁତ ।
ଏଥି ଯାଏ ତୁମ୍ଭର ଆସିବାକୁ ଯୋଗ
ଥିଲା ବୋଲି କରି ଜାଣ ହେ ମହାଭାଗ ।
ଯୁଧିଷ୍ଠିର ସେ ନର୍କ-ଗନ୍ଧେ ନାକେ ବାସ
ବେଇ ମୁହଁ ମୋଡ଼ିଲେ ହୋଇଣ ନିରାଶ ।
ଯୁଧିଷ୍ଠିର ଆସିବା କାଳେ ନାରକୀଏ
ପାଡ଼ିଲେ ଡକା ସେତୁ ରହ ଟିକେ ରାଜେ ।
ତୁମ୍ଭ ଦେହ-ବାତ ସ୍ପରଶେ ଆମ୍ଭ ସୁଖ
ହୋଇଅଛି ଜାଣ ହେ ନୃପକୁଳ ଶିଖ ।
ନାରକୀମାନଙ୍କ ବିକଳ ବାଣୀ ଶୁଣି
ରହିଲେ ସେଠାରେ ପାଣ୍ଡବ ନରମଣି ।
ପଚାରିଲେ ତୁମ୍ଭେମାନେ ହେ କିଏ ଅଟ
କାହିଁକି ଡକା ପାଡ଼ କଣ୍ଠ କରି ମୋଟ ।
ନାରକୀଏ ବୋଇଲେ ଆମ୍ଭ ତୁମ୍ଭ ଭାଇ
ଥିଲୁ ବୋଲିକରି ଜାଣ ହେ ନରସାଇଁ ।
ଏ ବାହାରେ ଦ୍ରୌପଦୀ କର୍ଣ୍ଣ ଧୃଷ୍ଟଦ୍ୟୁମ୍ନ
ଆଦି ଆମ୍ଭ ସଙ୍ଗେ ଅଛନ୍ତି ବୋଲି ଜାଣ ।
ପାପ ଅର୍ଜିବାରୁ ସୁକୃତ ନାଶ କରି
ନରକରେ ପଡ଼ିଣ ହେଉଅଛୁଁ ଘାରି ।
ଯୁଧିଷ୍ଠିର ଏହା ଶୁଣିଣ କାନେ ହାତ
ଦେଇକରି ଯେ ମାରି କରି ଦୁଇ ମାଥ ।
ମନେ କରିଲେ ଏମାନଙ୍କର ଦୁଷ୍କୃତ
ପିଲକାନ୍ତୁଁ ଦେଖି ନାହିଁତ ମୋର ନେତ୍ର ।
ଧର୍ମ କରି ଯେବେ ପଡ଼ିଲେ ଏ ନରକେ
ଧର୍ମ କପାଇଁ ଆଉ ମାନିବେଟି ଲୋକେ ।
ଦୁର୍ଯ୍ୟୋଧନ ଅଧର୍ମ କରି ସ୍ୱର୍ଗ ଲୋକ
ଲଭିଲା ଏହା କେଉଁ ବିକୃତ ପାତକ ।
ନୋହିଲେ ଅବା ପିତୃଭ୍ରମ ହେଲା ମୋତେ
ସମସ୍ତ ବିପରୀତ ଦିଶୁଅଛି ନେତେ ।
ଏରୂପେ ଅନେକ ବିଚାରି ଯୁଧିଷ୍ଠିର
ଧର୍ମ ତୁଲେ ଦେବଙ୍କୁ ନିନ୍ଦିଲେ ଅପାର ।
ପୁଣି ଦେବଦୂତଙ୍କୁ ଅନାଇ ରାଜନ
ବୋଇଲେ କର ତୁମ୍ଭେ ମୋ ପାଶୁ ଗମନ ।
ଭାଇଙ୍କର ମୋ ହୋଇଅଛି ଯେଉଁ ଦଶା
ମୋହର ଜାଣ ଦୂତ ହେଉ ସେହି ଦଶା ।

ଯୁଧିଷ୍ଠିର-ବଚନେ ଦେବଦୂତ ଗଲେ
ଯୁଧିଷ୍ଠିର ବୋଲିବା ଇନ୍ଦ୍ରଙ୍କୁ କହିଲେ ।
ଦେବଦୂତଠାରୁ ଯୁଧିଷ୍ଠିରଙ୍କର
ବୋଲିବାର ଶୁଣି କରି ଯେ ପୁରନ୍ଦର ।
ଯୁଧିଷ୍ଠିର ନୃପଙ୍କ ସମୀପକୁ ଗଲେ
ଦେବଙ୍କ ତୁଲେ ଧର୍ମ ସଙ୍ଗତେ ମଧ୍ୟ ଥିଲେ ।
ତେବେ ତକ୍ଷଣି ସେ ନର୍କ ଅନ୍ତର୍ଦ୍ଧାନ
ହୋଇଗଲା ଆହେ ଜନମେଜୟ ଜାଣ ।
ମନ୍ଦ-ଶୀତ-ଗନ୍ଧକୁ ବହିଣ ପବନ
ବହି ସନ୍ତୋଷ କଲା ଯୁଧିଷ୍ଠିର-ମନ ।
ଯୁଧିଷ୍ଠିର-ନୃପେ ବୋଇଲେ ଶଚୀପତି
ଛାଡ଼ ଦୁଃଖ ମୋର ବଚନେ ହେ ନୃପତି ।
ରାଜା ତ କରେ ଶୁଭାଶୁଭ କର୍ମମାନ
ଏ ସକାଶୁଁ ସେ କରେ ନରକ ଦର୍ଶନ ।
ନରକକୁ ଯେ ଆଗ ଭୁଞ୍ଜାଇ ସେ ଯାଇ
ପଛେ ସ୍ୱର୍ଗ ଭୁଞ୍ଜଇ ଜାଣ ସୁଖ ପାଇ ।
ସ୍ୱର୍ଗ ସୁଖ ଆଗ ଭୁଞ୍ଜଇ ଯେଉଁ ଲୋକ
ପଛେ ସେ ନରକରେ ଲଭେ ମହାଶୋକ ।
ତୁମ୍ଭେ ତ ଗୁରୁ ଆଗ ମିଥ୍ୟା ଥିଲ କହି
ଏ ହେତୁ ଦେଖାଇଲି ମିଥ୍ୟା-ନର୍କ ମୂର୍ତ୍ତି ।
ତୁମ୍ଭ ଦେହ ପରି ତୁମ୍ଭର ସବୁଭାଇ
ବୋଲି କହି ଜାଣ ପାଣ୍ଡବ ନରସାଇଁ ।
ଦ୍ରୌପଦୀ ତ ତୁମ୍ଭ ପାଞ୍ଚଙ୍କ ପାଞ୍ଚପ୍ରାଣ
ଏଣୁ ସେ ତୁମ୍ଭ ଦୁଃଖସୁଖେ ଭାଗୀ ଜାଣ ।
ଧର୍ମ ଏ କାରଣରୁ ନୃପତିମାନଙ୍କୁ
ସୁକୃତ ଥିଲେ ହେଲେ ଭୁଞ୍ଜାନ୍ତି ନର୍କକୁ ।
ତୁମ୍ଭ ପକ୍ଷେ ଥିବା ନୃପତି ନୃପପୁତ୍ର
ନର୍କେ ବୁଡ଼ାଇଲେ ଏ ହେତୁ ଜାଣ ତାତ ।
କର୍ଣ୍ଣଙ୍କୁ ତୁମ୍ଭେ ମୋର ଭାଇତ ବୋଇଲ
ଏଣୁ ଯେ ନରକରେ ତାହାଙ୍କୁ ଦେଖିଲ ।
କର୍ଣ୍ଣ ଆଦି ଭାଇଏ ଦ୍ରୌପଦୀଙ୍କ ତୁଲେ
ବସିଲେଣି ରାଜନ ସ୍ୱର୍ଗପୁରେ ଭଲେ ।
ତୁମ୍ଭେ ଏବେ ମୋହର ସଙ୍ଗତେ ବାହାରି
ଚାଅ ମନୁ ମର୍ତ୍ତ୍ୟ କଥାକୁ ଦୂର କରି ।
ହରିଶ୍ଚନ୍ଦ୍ର ମାନ୍ଧାତା ଭରତ ଭଗୀରଥ
ନୃପତିମାନଙ୍କର ପାଇକରି ସାଥ ।

ରହ ମହାସୁଖରେ ଦ୍ରୌପଦୀ-ବିହାର
ତୁଚ୍ଛ କରି ଦେଇଣ ହସ୍ତିନାର ଶିରୀ ।
ଆକାଶ ଗଙ୍ଗାଙ୍କରେ ସ୍ନାନ ଏବେ କର
ମନୁଷ୍ୟଭାବୁ ଦେବ ହୋଇବ ଅନ୍ତର ।
ଧର୍ମ ବୋଇଲେ ଆହେ ଏ ଥରକୁ ମିଶି
ଏକଥର ବୁଡ଼ିଲ ତୁମ୍ଭ ସତ୍ୟ ଆସି ।
ତୁମ୍ଭର ଭାଇମାନେ ନରକକୁ ଯୋଗ୍ୟ
ନୁହନ୍ତି ବୋଲି ଜାଣ ଆହେ ମହାଭାଗ ।
ମାୟା କରିଛି ଇନ୍ଦ୍ର ନରକ ତୁମ୍ଭଙ୍କୁ
ଦେଖାଇଲେ ପକାଇ ଭ୍ରମାନ୍ଧ ମାନଙ୍କୁ ।
ଇନ୍ଦ୍ର ବୋଲୁଛନ୍ତି ଗଙ୍ଗାରେ ସ୍ନାନ କରି
ମନୁଷ୍ୟଭାବୁ ତୁମ୍ଭେ ହୋଇବ ଅନ୍ତର ।

—*—

## ସ୍ୱର୍ଗ-ବିହାର

ଏରୂପେ ଧର୍ମଙ୍କର ବଚନକୁ ଶୁଣି
ବାହାରିଲେ ଦେବଙ୍କୁ ଘେନି ନୃପମଣି ।
ଆକାଶ-ଗଙ୍ଗାଙ୍କର ତୀରେ ପରବେଶ
ହୋଇ ସ୍ନାନ କଲେ ମାନସେ ବହି ତୋଷ ।
ବୁଡ଼ିବା ମାତ୍ରକରେ ଦିବ୍ୟ ଦେହ ଧରି
ଦେବଙ୍କୁ ଘେନି ଗଲେ ରାଜା ସ୍ୱର୍ଗପୁରୀ ।
ଦେଖିଲେ କୃଷ୍ଣ ଅରଜୁନ ବେନି ଦୁଃଖ –
ଛାଡ଼ି ବସିଛନ୍ତି ସ୍ୱର୍ଗରେ ପାଇ ସୁଖ ।
ଚକ୍ର ଆଦି ଆୟୁଧମାନେ ପୂର୍ବପରି
ରହିଅଛନ୍ତି ଶ୍ରୀକୃଷ୍ଣଙ୍କୁ ଆଶ୍ରେ କରି ।
ଯୁଧିଷ୍ଠିର ରାଜାଙ୍କୁ ପ୍ରଣବ ସମୟେ
ନମିଲେ ଅରଜୁନ ତୁଲେ ଯଦୁ ରାୟେ ।
ତହୁଁ କେତେଦୂର ଯାଆନ୍ତେ ଯୁଧିଷ୍ଠିର
ଦେଖିଲେ ଆଦିତ୍ୟଙ୍କ ତୁଲେ କର୍ଣ୍ଣବୀର ।
ବସିଛନ୍ତି କୁଣ୍ଡଳ ବେନିକି ଲଗାଇ
କହିଲେ କଥା କାନ୍ଧଦେଶ ଦୋହଲାଇ ।
ପବନଙ୍କ ପାଶରେ ରହିଛନ୍ତି ଭୀମ
ଦେଖିଲେ ଯୁଧିଷ୍ଠିର ହାରି ଦେହୁ ଶ୍ରମ ।
ଅଶ୍ୱିନୀଙ୍କ ସ୍ଥାନରେ ଦେଖିଲେ ନକୁଳ
ସହଦେବ ବସି ଲଗାଇଛନ୍ତି ଖେଳ ।
ତଦନ୍ତେ ଦେଖିଲେ ହୋଇ ପଦ୍ମକର ।
ବସିଛନ୍ତି ଦ୍ରୌପଦୀ ରମଣୀଙ୍କ-ବର ।

ଇନ୍ଦ୍ର ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ଏ ଦ୍ରୌପଦୀ ଅଟନ୍ତି ଲକ୍ଷ୍ମୀଟି ଆମ୍ଭର ।
ତୁମ୍ଭ ପ୍ରିୟ କରିବା ପାଇଁ ଉମାପତି
କରିଥିଲେ ଏହାଙ୍କୁ ଦ୍ରୁପଦ ଦୁହିତୀ ।
ଦ୍ରୌପଦୀ ପାଞ୍ଚପୋଏ ପାଞ୍ଚୋଟି ଗନ୍ଧର୍ବ
ବୋଲିକରି ଜାଣ ପାଣ୍ଡବ-ନରଦେବ ।
ଗନ୍ଧର୍ବ ଧୃତରାଷ୍ଟ୍ର ଧୃତରାଷ୍ଟ୍ରରାଜା
ବୋଲି ଜାଣ ହେ ନିଃସନ୍ଦେହ କରି ମଜ୍ଜା ।
ବୃଷ୍ଣିଭୋଜମାନେ ମରୁତ ବିଶ୍ୱ ସାଧ୍ୟ
ଜନମିଥିଲେ ଦୁଷ୍ଟେ କରିବାକୁ ସାଧ୍ୟ ।
ଚନ୍ଦ୍ରଙ୍କ ତୁଲେ ଅଭିମନ୍ୟୁ ରହିଛନ୍ତି
ଦେଖ ହେ ଚନ୍ଦ୍ରପୁତ୍ର ସେହିଟି ଅଟନ୍ତି ।
କୁନ୍ତୀ ମାଦ୍ରୀ ତୁଳରେ ଦେଖ ତୁମ୍ଭ ପିତା
ମୋଠାକୁ ଆସୁଛନ୍ତି ଛାଡ଼ି ହୃଦୁ ଚିନ୍ତା ।
ବୃହସ୍ପତି ପାଶରେ ଦେଖ ଦ୍ରୋଣଋଷି
ବସୁଙ୍କ ପାଶେ ଭୀଷ୍ମବସୁ ବସିଛନ୍ତି ।
ଭାରତ-ଯୁଦ୍ଧେ ମରିଗଲେ ଯେତେ ଲୋକ
ଦେଖ ସ୍ୱର୍ଗପୁରେ ବୁଲନ୍ତି ଛାଡ଼ି ଦୁଃଖ ।
ଏତେ କହି ଯୁଧିଷ୍ଠିରଙ୍କୁ ଶଚୀବର
ଧରମଙ୍କର ସ୍ଥାନୁଟିକ ଦେଲେ ବର ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଭାରତଯୁଦ୍ଧେ ମରିଲେ ଯେତେ ଜନ ।
କହିଲ ତ ସମସ୍ତେ ପାଇଲେ ସ୍ୱର୍ଗକୁ
କହ ସେ ଆଉ ନ ଆସିବେ କି ମର୍ତ୍ତ୍ୟକୁ ।
ବଇଶମ୍ପାୟନ ବୋଇଲେ ନରଗଣ
କହି ତ ଅଛି ମୁହିଁ ଅଂଶାବତରଣ ।
ଯେ ଯେଉଁ ଅଂଶରୁଟି ଜନ୍ମ ହୋଇଥିଲେ
ସେ-ସେହି ଅଂଶେ ଜାଣ ପରବେଶ ହେଲେ ।
ବସୁଦେବ-ନନ୍ଦନ ପ୍ରଦ୍ୟୁମ୍ନ-ତାତ
ସେ ମଧ୍ୟ ହେଲେ ନାରାୟଣ ମଧ୍ୟେ ସ୍ଥିତ ।
ବଳଦେବ ଶେଷ ଅଂଶରେ ମିଶିଗଲେ
ବ୍ରହ୍ମାଙ୍କ ନିଯୋଗରେ ମହୀକି ଧଇଲେ ।
କୃଷ୍ଣଙ୍କର ଯେ ଷୋଳସହସ୍ର ନାରୀଏ
ସରସ୍ୱତୀ ନଦୀରେ ବୁଡ଼ାଇଣ କାୟେ ।
ଅପସରାରୂପକୁ ଧରି ସ୍ୱର୍ଗେ ରହି
ଭଜିଲେ ସେ କୃଷ୍ଣଙ୍କୁ ପୁଣି ପ୍ରୀତି ବହି ।

ଏରୂପେ ସଉତି ଋଷିଙ୍କ ଆଗେ କହି
ବୋଇଲେ ଶୁଣ ହେ ଶୌନକ ଋଷିସାଇଁ ।
ଜନମେଜୟ ରାଜା ଭାରତ ଚରିତ
ଶୁଣିଣ ଚମତ୍କାର ପାଇଲେ ବହୁତ ।
ଭାରତ-କଥା ଅନ୍ତେ ଯାଜକେ ଯାଗକୁ
ସାରିଦେଲେ ହୃଦରେ ବାନ୍ଧି ସବଗକୁ ।
ଆସ୍ତିକ ମହର୍ଷି ସାପଙ୍କୁ ମୋକ୍ଷ କରି
ଗଲେ ମାମୁମାନଙ୍କ ସ୍ଥାନକୁ ବାହାରି ।
ଜନ୍ମେଜୟ ଦ୍ୱିଜଙ୍କୁ ବହୁତ ସୁବର୍ଣ୍ଣ
ଦକ୍ଷିଣା ଦେଇ କଲେ ଦ୍ୱିଜ-ମନ ପୂର୍ଣ୍ଣ ।
ଯେ ଯାହା ଗୃହେ ଦ୍ୱିଜେ ଘେନିଣ ମେଲାଣି
ଗଲେ ଜନ୍ମେଜୟଙ୍କ ଶୁଭ ହୃଦେ ଗୁଣି ।
ଯାଗ ସମାପତ ହୁଅନ୍ତେ ସେ ରାଜନ
ଛାଡ଼ିଲେ ଜାଣ ତକ୍ଷଶିଳା ନାମେ ସ୍ଥାନ ।
ହସ୍ତିନାରେ ଆସି ହୋଇଲେ ପରବେଶ
ହସ ହସ ହୋଇଣ ମେଣ୍ଢ଼ ଦୁଇ ନଶ ।
ମନ୍ତ୍ରୀଙ୍କି ବୋଇଲେ ହେ ତକ୍ଷକଙ୍କୁ ମୁହିଁ
ମରାନ୍ତି ନ ଆସିଲେ, ଆସ୍ତିକ ଗୋସାଇଁ ।
ମନ୍ତ୍ରୀଏ ବୋଇଲେ, ରାଜନ ତୁମ୍ଭେ ମନ
କଲେ ବଶ କରି ପାର ହେ ତ୍ରିଭୁବନ ।
ସାପଙ୍କୁ ମରାଇବା କଥା ଚମତ୍କାର
ନୁହଇ ତୁମ୍ଭଙ୍କୁ ହେ ନୃପ ମନେ କର ।
ଏହା ଶୁଣି ଜନମେଜୟ ହୋଇ ହୋଇ
ବୋଲକରି ଗଲେ ଘରକୁ ପ୍ରୀତି ବହି ।
ମନ୍ତ୍ରୀମାନେ ଯେ ଯାହା ସଦନକୁ ଗଲେ
ଆମ୍ଭର ରାଜା ଆଚ୍ଛା ଅଛନ୍ତି ବୋଇଲେ ।

—o—

## ମହାଭାରତ ମାହାତ୍ମ୍ୟ

ଏ ଭାରତ ମାହାତ୍ମ୍ୟ କହିବା ଶୌନକ
ମୋଠାରୁ ଶୁଣ ମନ ଲୟ କରି ଏକ ।
ଯେଉଁ ଲୋକଟି ବାରି ପୂର୍ଣ୍ଣମୀରେ ଏହା
ଶୁଣନ୍ତି, ତାହାଙ୍କୁ ପୂଜନ୍ତି ବଜ୍ରବାହା ।
ଶ୍ରାଦ୍ଧେ ବ୍ରାହ୍ମଣଙ୍କୁ ଭାରତ ଯେ ଶୁଣାଏ
ତା ଦେବା ଦ୍ରବ୍ୟସବୁ ପିତୃଯୋଗ୍ୟ ହୋଏ ।
ଦିବସେ ପାପ କରି ସନ୍ଧ୍ୟାରେ ଭାରତ
ପଠନ କଲା ଲୋକ ହୁଅଇ ମୁକତ ।
ରାତ୍ରପାପ ଦିବସ ପଠନରେ ଯାଏ
କହିଅଛନ୍ତି ଏହା ବ୍ୟାସ ଋଷିରାୟେ ।
ଧରମ ଅର୍ଥ କାମ ମୋକ୍ଷ ଏ ଚାରିଏ
ଜାଣ ଆହେ ଶୌନକ ଭାରତଙ୍କ କାୟେ ।
ଭାରତ-ପୋଥିଙ୍କରେ ଯାହା ପଡ଼ି ନାହିଁ
ଆନ ପୋଥିରେଟି ଦୁର୍ମିଳ ଅଟେ ସେହି ।
ଭାରତଙ୍କର ନାମ ଅଟଇଟି ଜୟ
ଯେ ଶୁଣଇ ତାହାର ହୁଅଇ ଉଦୟ ।
ଗର୍ଭିଣୀ ସ୍ତିରୀ ଯେବେ ଭାରତ ଶୁଣଇ
କୁଳକୁ ଅନୁରୂପ ପୁତ୍ର ପ୍ରସବଇ ।
ତିନି ବରଷରେ ଯେ ବ୍ୟାସ ମହାଯତି
କଲେ ମହାଭାରତଙ୍କୁଟି ସମାପତି ।
ତିନବର୍ଣ୍ଣଙ୍କୁ ଯେହୁ ଶୁଣାଏ ଭାରତ
ଖାଣ୍ଟି ସ୍ୱର୍ଗ ତାହାକୁ ହୁଅଇ ପ୍ରାପତ ।
ଭାରତଙ୍କରୁ ପଦେ ପଢ଼ଇ ଯେ ମୁଖେ
ନ ପଡ଼େ ପାତକ ଘେନି ସେ କେବେ ଦୁଃଖେ
ବ୍ୟାସଦେବ ଏ ଭାରତଙ୍କୁ ଯେବେ କଲେ
ତେବେ ଶୁକଙ୍କୁ ଏହି ଶ୍ଳୋକ ପଢ଼ାଇଲେ ।
ସହସ୍ର ସଂଖ୍ୟା ମାତୃ ପିତୃ ପୁତ୍ର ଦାର
ମରୁଛନ୍ତି ଅନନ୍ତ୍ୟ ହେବାରୁ ସଂସାର ।
ହର୍ଷ ଭୟ ଶତ ସହସ୍ର ସଂଖ୍ୟା ହୋଇ
ମୂର୍ଖ ବିନା ପଣ୍ଡିତଟିଙ୍କୁ ନ ଭଜଇ ।
ଧର୍ମ ଯେଉଁ ଲୋକ କରୁଛି ଆଚରଣ
ଅର୍ଥ କାମ ଦୁହେଁ ହୁଅନ୍ତି ତାର ଜାଣ ।
ଏହା ତ ଜାଣୁ ଜାଣୁ ପାପୀଜନମାନେ
ଧରମ ବିଷୟକୁ ନ ଶୁଣନ୍ତି କାନେ ।
ଏ ଭାରତ-ସଂହିତା ପ୍ରାତୁଂ ଯେ ପଢ଼ଇ
ମୁକତ ହେବାରେ ସନ୍ଦେହ ତାର ନାହିଁ ।
ସମୁଦ୍ର ହିମାଳୟ ରତ୍ନନିଧି ପ୍ରାୟେ
ଭାରତ ରତ୍ନନିଧି ବୋଲନ୍ତି ସଭିଏ ।
ଏରୂପେ ଅଶ୍ୱମେଧ ଆଦି ପଞ୍ଚପର୍ବ
ସାରିଲେ ବ୍ୟାସ ଋଷି ବହି ମହାଗର୍ବ ।
ମୁଁ କହୁଛି ଭାରତ ସମାପତ ପାଇଁ
ହରିବଂଶେ ଲେଖିବା ଫଳ ପ୍ରୀତି ବହି ।

—o—

## ଭାରତ ଶ୍ରବଣ ବିଧି

ହରିବଂଶ ଶେଷରେ ପରୀକ୍ଷିତ-ଶିଷ୍ୟ
ପୃଚ୍ଛିଲେ ବଇଶମ୍ପାୟନେ ହୋଇ ତୋଷ ॥
ଭାରତ କେ କହିବ କେଏ ବା ଶୁଣିବ
ଭାରତ ପ୍ରତି ପର୍ବେ ଦକ୍ଷିଣା କେ ଦେବ ।
ଭାରତ ଶୁଣିବାରେ ହୁଅଇ କି ଫଳ
ତା କହ ବଇଶମ୍ପାୟନ ତପଶୀଳ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ—
ନୃପ ଯା ପୃଚ୍ଛିଲେ କହିବା ମନ ଦିଅ ।
ରୁଦ୍ର ସାଧ୍ୟ ବିଶ୍ୱ ସେ ଆଦିତ୍ୟ ଅପ୍ସନ
ଗନ୍ଧର୍ବ ନାଗ ବିଦ୍ୟାଧର କାତ୍ୟାୟନ ।
ସ୍ୱୟମ୍ଭୁ ଭୃଗୁ ଋଭୁ ଅଶ୍ୱିନୀକୁମାର
ଅପସରାଗଣ ସମ୍ବତ୍ସର ସାଗର ।
ଏ ସମସ୍ତେ ଭାରତ-ଗ୍ରନ୍ଥରେ ଅଛନ୍ତି
ମୋ କହିବାରୁ ଜାଣ ଅଭିମନ୍ୟୁ-ନାତି ।
ରତନ ଗାଈ ଗୃହ ବସନ ସୁବର୍ଣ୍ଣ
ଘୋଟକ ଶଯ୍ୟା ଭୂମି କଂସ ରୁପା ଦାନ ।
ଭାରତ କହିବା ଲୋକକୁ ଯେ ଦିଅଇ
ଭାରତ ଶୁଣିବାର ଫଳ ସେ ଲଭଇ ।
ଶୁଦ୍ଧମତି ଜିତେନ୍ଦ୍ରିୟ ସୁଶୀଳାନତ
ସତ୍ୟବାଦୀ ଶାସ୍ତ୍ରଯୁକ୍ତ ରୂପବନ୍ତ ।
ଏମନ୍ତ ଦ୍ୱିଜକୁ ପିନ୍ଧାଇ ଶୁକ୍ଳବାସ
ଭାରତ କରାଇବ ତା ମୁଖେ ପ୍ରକାଶ ।
ଅବିଳମ୍ବରେ ସ୍ପଷ୍ଟ ଅକ୍ଷରେ ଶ୍ଳୋକକୁ
ପଢ଼ି ସଭାମାନଙ୍କେ କହିବ ଅର୍ଥକୁ ।
ସମସ୍ତ ବର୍ଣ୍ଣମାନେ ଉର କଣ୍ଠ ଶିର
ତାଳୁ ରସନା ଦନ୍ତ ନାସିକା ଅକ୍ଷର—
ମାନଙ୍କରେ ଯୁକ୍ତ ହୋଇଣ ଯେବେ ଥାନ୍ତି
ଭାରତ ଶୁଦ୍ଧ ହୋଇ ତେବେ ବାହାରନ୍ତି ।
ଏରେ ମହାଭାରତ ଶୁଣିଲେ କର୍ଣ୍ଣରେ
ମହତ ବିମାନକୁ ଆସେବ ତୂର୍ଣ୍ଣରେ ।
ଅପସରାମାନଙ୍କୁ ସମୀପେ ବସାଇ
ଭେଟଇ ସ୍ୱର୍ଗପୁରେ ଯାଇ ଶଚୀସାଇଁ ।
ଦଶରଥ ଶୁଣଇ ଭାରତ ଯେ ନର
ଭାଗ୍ୟ କହିବାକୁ ଶକତି କାହାର ।

ଭାରତ ପ୍ରତିପର୍ବେ ଦେବ ଯେଉଁମାନ
ତା କହିବା ଶୁଣ ହେ ନୃପତି-ମଣ୍ଡନ ।
ଆଦିପର୍ବ ସରିବା-ଦିନ ବାଚକକୁ
ଦେବ ଆଗ କରି ବସନ ଚନ୍ଦନକୁ ।
ପଛେ ଦ୍ୱିଜମାନଙ୍କୁ ଡ଼କାଇ ଆଣିବ
ମଧୁ କ୍ଷୀର ଦେଇ ଭୋଜନ କରାଇବ ।
ଏ ବାହାରେ ଅନ୍ନରେ ଗୁଡ଼କୁ ମିଶାଇ
ଖୁଆଇବାରେ ଦେବ ଦ୍ୱିଜଙ୍କୁ ଭସାଇ ।
ସଭାପର୍ବ ଶେଷରେ ପିଠା ଖଜା ଦେବ
ଏ ବାହାରେ ହବିଷ୍ୟ ଦ୍ରବ୍ୟ ଭୁଞ୍ଜାଇବ ।
ଫଳ ମୂଳ ଆଣିଣ ଆରଣ୍ୟକପର୍ବ—
ପ୍ରାନ୍ତେ ଦେଇ କରିବ ଆଚାର୍ଯ୍ୟର ଭାବ ।
ବିରାଟପର୍ବ ପ୍ରାନ୍ତେ ବସନକୁ ଦେଇ
ଘୃତଅନ୍ନ ଦ୍ୱିଜଙ୍କୁ ଖୁଆଇବ ନେଇ ।
ଉଦ୍ୟୋଗପର୍ବର ପ୍ରାନ୍ତରେ ଚନ୍ଦନ
ଫୁଲ ଦେଇ ତୋଷିବ ବ୍ରାହ୍ମଣିଆ ମନ ।
ଏ ବାହାରେ କାନରେ ବେକରେ ହାତରେ
ସ୍ୱର୍ଣ୍ଣ ମଣ୍ଡାଇବ ଅତ୍ୟନ୍ତ ଯତନରେ ।
ଭୀଷ୍ମପର୍ବର ଅନ୍ତେ ଆଚାର୍ଯ୍ୟଙ୍କୁ ଯାନ
ଅନ୍ନ ଦେଇ କରିବ ତାଙ୍କୁ ତୋଷମନ ।
ଦ୍ରୋଣପର୍ବ ପ୍ରାନ୍ତେ ଯେ ଧନୁ ଶର ଆସି
ଆଚାର୍ଯ୍ୟଙ୍କୁ ଦେବ ହୋଇଣ ଅତି ତୋଷୀ ।
କର୍ଣ୍ଣପର୍ବ ପ୍ରାନ୍ତେ ଭୋଜନ କରାଇବ
ଶଲ୍ୟପର୍ବର ପ୍ରାନ୍ତେ ଖଜା ପିଠା ଦେବ ।
ଗଦାପର୍ବର ଅନ୍ତେ ମିଶାଇଣ ଗୁଡ଼
ଦ୍ୱିଜଙ୍କୁ ଖୋଇବ ବଢ଼ାଇ ଅନ୍ନକୁଡ଼ ।
ସ୍ତ୍ରୀପର୍ବ ପ୍ରାନ୍ତେ ରତନ ଆଚାର୍ଯ୍ୟଙ୍କୁ
ଦେଇକରି ନମିବ ସେ ବେନି ପାଦକୁ ।
ଐଷିକପର୍ବ ପ୍ରାନ୍ତେ ଦେଇ ଘିଅ ଭାତ
ଆଚାର୍ଯ୍ୟ ବୋଲିବ ହେଲି କି ତୋଷଚିତ୍ତ ।
ଶାନ୍ତିପର୍ବ ପ୍ରାନ୍ତେ ହବିଷ୍ୟସାମଗ୍ରୀ
ଖୁଆଇବ ଦ୍ୱିଜମାନଙ୍କୁ ମୋଦ ଧରି ।
ଅଶ୍ୱମେଧ ପ୍ରାନ୍ତେ ଆଚାର୍ଯ୍ୟ ଯା ମାଗିବ
ତାହା ଦେଇ କରି ତା ମନକୁ ତୋଷିବ ।
ଆଶ୍ରମବାସ ପ୍ରାନ୍ତେ ହବିଷ୍ୟ ଦ୍ୱିଜଙ୍କୁ
କରାଇବ ହୋଇବା ପାଇଁ କୃତାର୍ଥକୁ ।

ମୌଷଳପର୍ବ ପ୍ରାନ୍ତେ ପୁଷ୍ପ ଗନ୍ଧ ଦେଇ
ଖୁଆଇବ ବ୍ରାହ୍ମଣମାନଙ୍କୁ ବସାଇ ।
ଗ୍ରନ୍ଥର ସମାପତ ହେବ ଯେଉଁଦିନ
ପାଠବସ୍ତ୍ରେ ପୁସ୍ତକ କରିବ ସ୍ଥାପନ ।
ଚନ୍ଦନ ପୁଷ୍ପ ଧୂପ ଦୀପମାନ ଦେଇ
କରିବ ପୂଜା ଦ୍ରବ୍ୟ-ସାମଗ୍ରୀ ବଢ଼ାଇ ।
ନର ନାରାୟଣ ଭାରତ ଅଧିଷ୍ଠାତା
ଦେବତାଙ୍କୁ ମଧ୍ୟ କରିବ ବସି ଚିନ୍ତା ।
ଭାରତ ଶୁଣି ଭାରତ ଯେ ଘରେ ରଖେ
ଦୁଃଖଟି ନ ପାଏ ସେ ଜାଣ ଶମ୍ଭୁ-ମୁଖେ ।
ଭାରତରୁ ପୁଣ୍ୟ ହୋଇଣ କଥା ନାହିଁ
ଭାରତଙ୍କୁ ପରମପଦ ବୋଲି କହି ।
ଭାରତଟି ଅଟଇ ଶାସ୍ତ୍ରରେ ଉତ୍ତମ
ମୋ କହିବାରୁ ଜାଣ ନୃପତି-ଉତ୍ତମ ।
ଭାରତଙ୍କର ଆଦ୍ୟ ଅନ୍ତ ମଧ୍ୟେ ହରି—
ନାମକୁ କୀର୍ତ୍ତନ କରିବ ନ ପସୋରି ।

ଉପସଂହାର

ହରିବଂଶ ଗ୍ରନ୍ଥିଣ ଶ୍ରୀ ମହାଭାରତ
ଏହିଠାରେ ଆସି ହୋଇଲା ସମାପତ
ଏ କାଳର ଶକାବ୍ଦ ସତରଶସାତ ।
ହୋଇଛି ବୋଲିକରି ଗଣକଙ୍କ ମତ ।
ଚୈତ୍ର ଶୁକ୍ଳ ରବିବାର ନବମୀରେ
ଏ ଗୀତ ପୂର୍ଣ୍ଣ ହେଲା ଶ୍ରୀକୃଷ୍ଣ-କୃପାରେ ।
ଆମ୍ଭରଠାରୁ ସମାପତକ ବରଷ—
ତିନ ହୋଇଅଛି ସୁଜନେ ଜାଣ ଶେଷ ।
କାଳସଂଖ୍ୟା ଜଣା ଯିବାକୁ ଏହା ଗୀତେ
ବସାଇଲି ଏ ଦୋଷ ନ ଧରିବ ଚିତ୍ତେ ।
ସୂରୀମୁନେ କ ଗିରିବର ଦୁଏ ଠାଳ
ପଣ୍ଡିତେ ଏ କଥା ଘେନିବ ମନେ ଭଲ ।
ସତ୍ୟବତୀ-ହର୍ଷବର୍ଦ୍ଧନ ବେଦବ୍ୟାସ
ତାହାଙ୍କ କୃପାରୁ ଜାଣ ଏ ହେଲା ଶେଷ ।
ମୂର୍ଖମାନଙ୍କରେ ମୁଁ ଅତିହିଁ ମୂରୁଖ
ମୋ ଗୀତ ଶୁଣି ଜନେ ନୋହିବ ବିମୁଖ ।

ଗଙ୍ଗାଙ୍କ ଜଳ ସମ ବ୍ୟାସଙ୍କର ବାଣୀ
ଗୀତରେ ମୁହିଁ ଯାହା ହୋଇଲି ବଖାଣି ।
ଏଥିରୁ ଅପରାଧ ହୋଇବାର କଥା
ଥିବା ପରି ଲେଖି ନ ଥିବ ଜାଣ ପୋଥା ।
ଏ କଥା ଜାଣି ମୁଁ କହୁଛି ପଣ୍ଡିତଙ୍କୁ
ମୋ ବୁଦ୍ଧି ଯୋଗ କ ଭାରତ କରିବାକୁ ।
ଯାହା କଲି ଭାରତ ଗୀତ ପ୍ରବନ୍ଧରେ
ଲେଖା ଗଲି ମୁହିଁଟି ମନୁଷ୍ୟ ମନ୍ଦରେ ।
କେବଳ ଏ ଗୀତରେ ନର-ନାରାୟଣ
ମହିମା ପୂର୍ଣ୍ଣ ହୋଇ ହୋଇଛି ବଖାଣ ।
ଏଣୁ ସବାଶରୁ ଆଦର କରିବାର
ଉଚିତ ଅଟେ ହେ ପଣ୍ଡିତେ ମନେକର ।
ଚଣ୍ଡାଳ ହୋଇ ବସ୍ତୁ ଆଶ୍ରା ସେବେ କରେ
ତାହାକୁ ସର୍ବେ ପୂଜା କରନ୍ତି ସଭାରେ ।
ଆଉ କହିବାପାଇଁ କଥା ନାହିଁ କିଛି
ମୋର କରିବାର ନ ଘେନ ମୁଁ ବୋଲୁଛି ।
ଶ୍ରୀକୃଷ୍ଣ ରାମାନୁଜ ମଙ୍ଗଳ କାରକ
କଳାପି-ପିଚ୍ଛ-ଚୂଡ଼ା ପୂତନା-ଶୋଷକ ।
କମଳଜ-ନୟନ ଆନନ୍ଦ-ଦାୟକ
କମଳା-ପ୍ରାଣପତି ଦେବଙ୍କ ନାୟକ ।
କମଳଜ-ତାତ ହେ ଯଦୁଙ୍କ ତିଳକ
କମଳମୁଖୀ-ଗୋପୀ-ସୁଖ-ବିଧାୟକ ।
କାଳୀୟ-ଗର୍ବ ଗଞ୍ଜା ଯଶୋଦା-ଶାବକ
କେଶୀ-ଅଘ-ହନ୍ତା ହେ ପାତକ-ପାବକ ।
କଳକଣ୍ଠୀ-ରାଧିକା-ହୃଦୟ-ହାରକ
କୋଟିକାମ-ଲାବଣ୍ୟ-ନିକର-ଧାରକ ।
କନକ-ଦୁକୂଳୀୟା ହିରଣ୍ୟ ଦାରକ
କାଳନ୍ଦୀ-ଜଳମଧ୍ୟ-ବିହାର କାରକ ।
କରି-ଆର୍ତ୍ତି-ନାଶନ ବ୍ରହ୍ମାଣ୍ଡ-ପାଳକ
କଂସ-ନୃପତିଙ୍କର କେଶ-ଆକର୍ଷକ ।
କେଶବ ବାସୁଦେବ ଜଗତ-ପ୍ରେରକ
କଦମ୍ବବୃକ୍ଷ-ଚଢ଼ା ଯାମଳ-ଭଞ୍ଜକ ।
କର ହେ କୃପା କୃଷ୍ଣସିଂହ ଅକ୍ଷରକ
କରଅ ମହାପ୍ରଭୁ ତୁମ୍ଭର ସେବକ ।

ଓଁ ଶାନ୍ତି ! ଶାନ୍ତି !! ଶାନ୍ତି !!!

ମହାଭାରତ-ମାହାତ୍ମ୍ୟ ଓ ଅଷ୍ଟାଦଶ ପର୍ବ ସମ୍ପୂର୍ଣ୍ଣ

ମୁଦ୍ରାକର—ଜାନକୀ ମହାନ୍ତି, ଶଶିକା ପ୍ରିଣ୍ଟିଂ ପ୍ରେସ, କଟକ-୨

# କେତେକ ଉପାଦେୟ ଗ୍ରନ୍ଥ
# ପ୍ରକାଶ ପାଇଲା

| | |
|---|---|
| ❊ ଋଗ୍ବେଦ (ଓଡ଼ିଆରେ ଭାବାର୍ଥ ସହ) ଖ ୧୫ | ଟ ୯୦୦-୦୦ |
| ❊ (ସର୍ବାର୍ଥ ପ୍ରକାଶ) ସିଦ୍ଧାନ୍ତ ଦର୍ପଣ ସେଟ | ଟ ୭୯-୦୦ |
| ❊ ଭୃଗୁ ସଂହିତା ସେଟ | ଟ ୨୫୦-୦୦ |
| ❊ ଉପେନ୍ଦ୍ରଭଞ୍ଜ ଗ୍ରନ୍ଥାବଳୀ ସେଟ (ଅଧ୍ୟାପକ ଗୌରକୁମାର ବ୍ରହ୍ମାଙ୍କ ଭୂମିକା ସହ) | ଟ ୧୭୦-୦୦ |
| ❊ ଭୀମଭୋଇ ଗ୍ରନ୍ଥାବଳୀ | ଟ ୪୫-୦୦ |
| ❊ ଶଙ୍କରସୂର୍ଯ୍ୟ ଗ୍ରନ୍ଥାବଳୀ | ଟ ୨୫-୦୦ |
| ❊ ବେଣୁଧର ପଦ୍ୟାବଳୀ | ଟ ୨୫-୦୦ |
| * ମନୁ ସଂହିତା | ଟ ୨୫-୦୦ |
| ❊ ପଣ୍ଡିତ ସର୍ବସ୍ୱ ( ଆଠମଲ୍ଲିକ ରାଜାଙ୍କ କୃତ ) | ଟ ୪୦-୦୦ |
| ❊ ଗଦାଧର ପଦ୍ଧତି | ଟ ୪୦-୦୦ |
| ❊ ପୁରୋହିତ କର୍ମକାଣ୍ଡ ( ଖ୭ଣ୍ଡ ସେଟ ) | ଟ ୧୦୦-୦୦ |
| ❊ ବହାଗ୍ରଲଲ ଗୀତା | ଟ ୫୭-୦୦ |
| ❊ ବହାଗ୍ର କର୍ମକାଣ୍ଡ | ଟ ୧୪-୫୦ |
| ❊ ଶ୍ରୀ ଚୈତନ୍ୟ ଭାଗବତ (ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ କୃତ) | ଟ ୨୫-୦୦ |
| ❊ ଯୁଗଳ ରସାମୃତ ଲହରୀ | ଟ ୪-୦୦ |
| ❊ ଓଡ଼ିଶାର ରଙ୍ଗମଞ୍ଚ ଇତିହାସ (ଅଧ୍ୟାପକ ରମେଶ ସାମନ୍ତରାୟଙ୍କ) | ଟ ୧୦-୦୦ |
| ❊ ଓଡ଼ିଆ ସାହିତ୍ୟରେ ଭୀମଭୋଇ | ଟ ୪-୦୦ |
| * MAHIMA DHARMA (By N. Senapati) | Rs 4-00 |